# ପଣ୍ଡିତ ଗୋପୀନାଥ ନନ୍ଦ

# ଗ୍ରନ୍ଥାବଳୀ

## ପ୍ରଥମ ଭାଗ



ସଂପାଦକ

ପ୍ରଫେସର ସୁଦର୍ଶନ ଆଚାର୍ଯ୍ୟ

ପଣ୍ଡିତ ଗୋପୀନାଥ ନନ୍ଦ ଶର୍ମାଙ୍କ ପାଣ୍ଡିତ୍ୟ ଅକଳନୀୟ, ଅଧ୍ୟବସାୟ ଅଚିନ୍ତନୀୟ, ସମାଲୋଚନା ରୀତି ଅନୁକରଣୀୟ ଏବଂ ଦିଗ୍‌ଦର୍ଶନ ଅବଲମ୍ବନୀୟ । ଓଡ଼ିଆ ଶବ୍ଦତତ୍ତ୍ୱବୋଧ ଅଭିଧାନ, ଭାଷାତତ୍ତ୍ୱ, ଛନ୍ଦବିଚାରପରି ଓଡ଼ିଆ ସାହିତ୍ୟର ବୃହତ୍ ଇତିହାସ ପ୍ରଣୟନ ଦିଗରେ ସେ ପ୍ରଥମ ପଥିକୃତ୍ । ଇତିହାସକୁ ପୂର୍ଣ୍ଣାଙ୍ଗ ରୂପ ଦେବାପାଇଁ ସେ ସମୟ ପାଇନାହାନ୍ତି, ତଥାପି ଉପଲବ୍ଧ ଅଂଶ ଓଡ଼ିଆ ସାହିତ୍ୟ ସମାଲୋଚନା ଇତିହାସରେ କାଳଜୟୀ ଅକ୍ଷୟ ସଂପଦ । ଏହାର ମହତ୍ତ୍ୱ ଉପଲବ୍ଧି କରିଥିଲେ ବିଶ୍ୱନାଥ କର, କରିଥିଲେ ବ୍ରଜସୁନ୍ଦର ଦାସ, ଗୋପବନ୍ଧୁ, ନୀଳକଣ୍ଠ ପ୍ରମୁଖ । ଓଡ଼ିଶାର ଲେଖକ, ପାଠକ ଓ ପ୍ରକାଶକଙ୍କ ପ୍ରତି ପଣ୍ଡିତ ମହାଶୟଙ୍କ ଆକୁଳ ନିବେଦନ ବ୍ୟର୍ଥ ନ ଯାଉ !

# ପଣ୍ଡିତ ଗୋପୀନାଥ ନନ୍ଦ ଗ୍ରନ୍ଥାବଳୀ

## (ପ୍ରଥମ ଭାଗ)

## ଓଡ଼ିଆ ସାହିତ୍ୟର ଇତିହାସ

ସଂପାଦନା :
ପ୍ରଫେସର୍ ସୁଦର୍ଶନ ଆଚାର୍ଯ୍ୟ

ପ୍ରାଚୀ ସାହିତ୍ୟ ପ୍ରତିଷ୍ଠାନ
ବିନୋଦବିହାରୀ, କଟକ-୨

**ପଣ୍ଡିତ ଗୋପୀନାଥ ନନ୍ଦ ଗ୍ରନ୍ଥାବଳୀ (ପ୍ରଥମ ଭାଗ)**
**(ଓଡ଼ିଆ ସାହିତ୍ୟର ଇତିହାସ)**

■
ସଂପାଦନା :
**ପ୍ରଫେସର୍ ସୁଦର୍ଶନ ଆଚାର୍ଯ୍ୟ**
ଯତିରାଜ ନିକେତନ
୧-ଅଶୋକ ନଗର, ବ୍ରହ୍ମପୁର-୭୬୦ ୦୦୪
■
ପ୍ରକାଶକ :
**ଶ୍ରୀ ଗଙ୍ଗାଧର ତ୍ରିପାଠୀ**
**ପ୍ରାଚୀ ସାହିତ୍ୟ ପ୍ରତିଷ୍ଠାନ**
ବିନୋଦବିହାରୀ, କଟକ-୭୫୩୦୦୨
■
ପ୍ରଥମ ସଂସ୍କରଣ : ୨୦୧୧
■
ପ୍ରଚ୍ଛଦ ଅଳଂକରଣ :
**ବିଜୟ ପ୍ରଧାନ**
■
ଅକ୍ଷର ସଜ୍ଜା :
**ମିନି ଡିଟିପି, କଟକ-୨**
■
ମୁଦ୍ରଣ :
**ସଂଗୀତା ପ୍ରିଣ୍ଟର୍ସ, କଟକ-୨**
■
ମୂଲ୍ୟ : **ଟ. ୪୨୫.୦୦**

**PT. GOPINATH NANDA GRANTHABALI**
**(PART-I)**
■
Editor :
**Prof. Sudarsana Acharya**
Yatiraj Niketan, 1-Ashok Nagar,
Brahmapur-760 004
■
Published by :
**Sri Gangadhar Tripathy**
**PRACHI SAHITYA PRATISTHAN**
Binod bihari, Cuttack-753 002
■
1st Edition : 2011
■
Cover Design :
**Bijay Pradhan**
■
Type set at :
**MINI DTP CENTRE**, Cuttack-2
■
Printed at :
**SANGITA PRINTERS**, Cuttack-2
■
Price : **Rs. 425.00**

# ସୂଚୀ





## ସଂଗ୍ରହ ଓ ସଂପାଦନା ସମ୍ପର୍କରେ......

୧୯୬୯ ମସିହା ଜୁଲାଇ ମାସ, ଆନ୍ଧ୍ର ବିଶ୍ୱବିଦ୍ୟାଳୟର ପାଠ୍ୟନିର୍ଦ୍ଧାରଣ ସମିତିରେ ଯୋଗ ଦେବାପାଇଁ ବିଶାଖାପାଟଣା ଯାଇଥାଏ । ସନ୍ଧ୍ୟାବେଳେ ବୁଲିବା ପାଇଁ ଯିବା ବାଟରେ ଆଖିରେ ପଡ଼ିଲା । ଗୋଟିଏ ଦୁଇ ମହଲା କୋଠା । ଲେଖାଥାଏ **ଉତ୍କଳ ସମ୍ମିଳନୀ** । ପୂର୍ବରୁ ବିଶ୍ୱବିଦ୍ୟାଳୟ କାର୍ଯ୍ୟରେ ମୋ ସହିତ ଯାଉଥିବା ଡ. ବେଣୀମାଧବ ପାଢ଼ୀ, ଡ. କାହ୍ନୁଚରଣ ମିଶ୍ର, ଶ୍ରୀଯୁକ୍ତ ହରିକୃଷ୍ଣ ପଟ୍ଟନାୟକ ଏହିଠାରେ ରହୁଥିଲେ । ଏ ବର୍ଷ ସେମାନେ କେହି ଆସି ପାରି ନଥାନ୍ତି । କୋଠାଟିର ଉପର ମହଲାରେ ରହିବାପାଇଁ ସୁବିଧା ଥାଏ । ପୂର୍ବରୁ ଫକୀରମୋହନ ସେନାପତି, ଗୋପବନ୍ଧୁ ଦାସ, ପଣ୍ଡିତ ନୀଳକଣ୍ଠ ଦାସ, ଗୋଦାବରୀଶ ମିଶ୍ର, ଚିନ୍ତାମଣି ମହାନ୍ତି ପ୍ରମୁଖ ସମ୍ମିଳନୀ କାର୍ଯ୍ୟରେ ବିଚ୍ଛିନ୍ନାଞ୍ଚଳ ଗସ୍ତରେ ଗଲେ ଏଠାରେ ରହୁଥିଲେ । କୋଠାଟିରେ ତାଲା ଝୁଲୁଥାଏ । କୌତୂହଳବଶତଃ ଖବର ନେବାରୁ ଜଣାଗଲା ନିକଟରେ ରହୁଥିବା ଜଗନ୍ନାଥ ମିଶ୍ର ତା'ର ତତ୍ତ୍ୱାବଧାରକ । ତାଙ୍କ ସହିତ ସାକ୍ଷାତ କଲି । କଥାବାର୍ତ୍ତା ପରେ ଜାଣିଲି ସେ ଆମ ବ୍ରହ୍ମପୁର ବିଶ୍ୱବିଦ୍ୟାଳୟର ତତ୍‌କାଳୀନ ସହକାରୀ କୁଳସଚିବ ଶ୍ୟାମସୁନ୍ଦର ମିଶ୍ରଙ୍କ ଭାଇ । ମୋର ଅନୁରୋଧ କ୍ରମେ ସେ କୋଠରୀଗୁଡ଼ିକ ଦେଖିବାପାଇଁ ଚାବିଟି ବଢ଼ାଇ ଦେଲେ । ଦେଖିଲି ରହିବାପାଇଁ ବ୍ୟବସ୍ଥା ଥିବା କୋଠରୀକୁ ଲାଗି ଆଉ ଗୋଟିଏ ଅବରୁଦ୍ଧ କୋଠରୀ, ଚାବି ତାଙ୍କ ପାଖରେ ନାହିଁ; ସେ ମଧ କେବେ ତାହାକୁ ଖୋଲି ନାହାନ୍ତି । ଶୁଣିଲି ସେଥିରେ କ'ଣ ସବୁ ବହିପତ୍ର ଅଛି । ତାଙ୍କ ଅନୁମତିକ୍ରମେ ତାଲାଟି ଖୋଲି ଦେଖିଲି, ଥାକ ଥାକ ହୋଇ ରହିଥିବା ବିଂଶ ଶତାବ୍ଦୀର ଆଦ୍ୟରୁ ପ୍ରକାଶିତ ପ୍ରାୟ ସମସ୍ତ ପୁସ୍ତକ ଓ ପତ୍ରପତ୍ରିକାର ଏକ ଅମୂଲ୍ୟ ଭଣ୍ଡାର । ସବୁ ଦେଖିବା ପାଇଁ ସମୟ ପାଇଲି ନାହିଁ । ଆଖିରେ ପଡ଼ିଲା ସ୍ୱର୍ଗତ ତାରିଣୀ ଚରଣ ରଥ, ସ୍ୱର୍ଗତ ଗୋପୀନାଥ ନନ୍ଦଶର୍ମା, ୰ ପଦ୍ମନାଭ ନାରାୟଣ ଦେବଙ୍କ ପୁସ୍ତକାବଳୀ । ତତ୍ତ୍ୱାବଧାରକଙ୍କ ଅନୁମତିକ୍ରମେ ସେଗୁଡ଼ିକ ସଂଗ୍ରହ କରି ଆଣିଲି । ଓଡ଼ିଆ ସାହିତ୍ୟର ଦୁର୍ଭାଗ୍ୟ, ପରବର୍ତ୍ତୀ ସମୟରେ ବହିଗୁଡ଼ିକ ଫେରାଇବାକୁ ଗଲାବେଳେ ତତ୍ତ୍ୱାବଧାରକ ମହାଶୟ ଜଣାଇଲେ, ଘରଟିକୁ ନେଇ ଘର ମାଲିକଙ୍କ ସହିତ ଯେଉଁ ମକଦ୍ଦମା ଚାଲିଥିଲା ସେଥିପ୍ରତି ଉତ୍କଳ ସମ୍ମିଳନୀର କର୍ମକର୍ତ୍ତା କିମ୍ୱା ଓଡ଼ିଶା ସରକାର ଆଗ୍ରହ ପ୍ରକାଶ ନ କରିବାରୁ ଘର ମାଲିକ ସପକ୍ଷରେ ରାୟ ମିଳିଲା । ତେଣୁ ଯାହାସବୁ ବହିପତ୍ର, ଚିଠିପତ୍ର ରହିଥିଲା ସେଗୁଡ଼ିକ ସିନ୍ଧିୟା କାରଖାନାର ଓଡ଼ିଆ ବସ୍ତିରେ ଥିବା

ପାଠାଗାରକୁ ହସ୍ତାନ୍ତର କରିଦିଆଗଲା । ସେଠାରେ ପହଞ୍ଚି ଶୁଣିଲି ସେମାନେ ନିଜର ବ୍ୟବହାରପାଇଁ ଆଲ୍‌ମିରା ଓ ଟେବୁଲ ଚୌକିତକ ରଖି 'ଧରିଲେ ଛିଣ୍ଡି ଯାଉଥିବା' ପୁରୁଣା ପତ୍ରପତ୍ରିକା ଏବଂ ପୁସ୍ତକଗୁଡ଼ିକୁ ବଙ୍ଗୋପସାଗରରେ ନିକ୍ଷେପ କରିସାରିଛନ୍ତି । ଓଡ଼ିଆ ଜାତି ଓ ଓଡ଼ିଆ ସାହିତ୍ୟର ଦୁର୍ଭାଗ୍ୟ !

ପଣ୍ଡିତ ମହାଶୟଙ୍କ ପୁସ୍ତକଗୁଡ଼ିକୁ ଦେଖିଲାପରେ ତାଙ୍କ ସମ୍ପର୍କରେ ଅଧିକ ଜାଣିବାପାଇଁ ଆଗ୍ରହ ବଢ଼ିଲା । ପୂର୍ବରୁ ସ୍ନାତକ ଶ୍ରେଣୀରେ ତାଙ୍କ ଓଡ଼ିଆ ଭାଷାତତ୍ତ୍ୱ ପଢ଼ିଥିଲି । 'ଶବ୍ଦତତ୍ତ୍ୱ ଅଭିଧାନ' ଏବଂ 'ଓଡ଼ିଆ ଭାଷାତତ୍ତ୍ୱ' ବହି ଦୁଇଟିକୁ ମଞ୍ଜୁଷାରେ ଭାରରେ ଧରି ବୁଲୁଥିବା ତାଙ୍କର କୌଣସି ଉତ୍ତରଦାୟାଦଙ୍କଠାରୁ ମାଣେ ଚାଉଳ ଦେଇ କିଣିଥିଲେ ବୋଲି ନନା କହୁଥାଆନ୍ତି । ଶଶିଭୂଷଣ ରଥଙ୍କ ସମ୍ପାଦିତ 'ପ୍ରଦୀପ' ପତ୍ରିକାରେ 'ରଘୁବଂଶ ବିଚାର' ପ୍ରବନ୍ଧଟି ଉପାଧ୍ୟୁତ୍ତର ଶ୍ରେଣୀରେ ରଘୁବଂଶ ପଢ଼ାଇଲାବେଳେ ସାହାଯ୍ୟ କରୁଥିଲା । ସେହିବର୍ଷ ଥାଏ ଗୋପୀନାଥ ନନ୍ଦଶର୍ମାଙ୍କ ଜନ୍ମ ଶତବାର୍ଷିକୀ । ଏହି ଅବସରରେ ୧୯୬୯ ଅଗଷ୍ଟ ୨୧ ତାରିଖ ଦିନ 'କଳିଙ୍ଗ' ଓ 'ପ୍ରଜାତନ୍ତ୍ର' ପତ୍ରିକାରେ ମୋର ଦୁଇଟି ପ୍ରବନ୍ଧ ପ୍ରକାଶ ପାଇଲା – 'ପଣ୍ଡିତ ଗୋପୀନାଥ ନନ୍ଦଙ୍କ ରଚନାବଳୀ' ଏବଂ 'ପଣ୍ଡିତ ଗୋପୀନାଥ ନନ୍ଦଙ୍କ କ୍ଲାସ୍ ନୋଟ୍' । ନନ୍ଦ ପଣ୍ଡିତଙ୍କ ଦେହାବସାନ ପରେ ଏହାହିଁ ବୋଧହୁଏ ଥିଲା ତାଙ୍କ ବ୍ୟକ୍ତିତ୍ୱ ଓ କୃତିତ୍ୱ ସମ୍ପର୍କିତ ପ୍ରଥମ ଆଲୋଚନା । ପ୍ରବନ୍ଧ ଦୁଇଟି ପଢ଼ି ପଣ୍ଡିତ ମହାଶୟଙ୍କ ବିସ୍ମୃତ ରଚନାଗୁଡ଼ିକ ଉଦ୍ଧାର ପାଇଥିବା ସମ୍ପର୍କରେ ଅବଗତ ହେଲେ ତାଙ୍କ ପ୍ରତ୍ୟକ୍ଷ ଶିଷ୍ୟ ସ୍ୱନାମଧନ୍ୟ ଗବେଷକ ଓ ଚିକିତ୍ସକ ସ୍ୱର୍ଗତ ରାଧାଚରଣ ପଣ୍ଡା । ସେ ମୋ ନନାଙ୍କ ଅନ୍ତରଙ୍ଗ ବନ୍ଧୁ ଏବଂ ଶ୍ୱଶୁରାଳୟ ମଞ୍ଜୁଷା ଆସୁଥିଲାବେଳେ ଆମ ପରିବାରର ଚିକିତ୍ସକ । ପୁସ୍ତକଗୁଡ଼ିକୁ ଏକତ୍ର କରି ଗ୍ରନ୍ଥାବଳୀଟିଏ ପ୍ରକାଶ କରିବାପାଇଁ ତାଙ୍କ ଆଗ୍ରହରୁ କଟକ ଷ୍ଟୁଡେଣ୍ଟସ୍ ଷ୍ଟୋର୍‌ର ତତ୍ତ୍ୱାବଧାରକ ସ୍ୱର୍ଗତ ଅନନ୍ତ ମିଶ୍ର ପ୍ରକାଶ କରିଛନ୍ତି 'ଗୋପୀନାଥ ନନ୍ଦ ଗ୍ରନ୍ଥାବଳୀ' । କିନ୍ତୁ ସେଥିରେ ନନ୍ଦ ପଣ୍ଡିତଙ୍କ ସବୁ ରଚନା ସ୍ଥାନ ପାଇପାରି ନାହିଁ । ଅଦ୍‌ଭୁତକର୍ମା ପଣ୍ଡିତଙ୍କ ବହୁ ରଚନା ତଥାପି ପୁରାତନ ପତ୍ରପତ୍ରିକାର ଛିନ୍ନ ପୃଷ୍ଠା ଭିତରେ ଆଲୋକ ଖୋଜୁଥିଲେ । ସେ ସବୁର ସଂଗ୍ରହବେଳେ ଆଖିରେ ପଡ଼ିଲା 'ଶବ୍ଦତତ୍ତ୍ୱବୋଧ ଅଭିଧାନ'ର ସପକ୍ଷ ଓ ବିପକ୍ଷରେ ପ୍ରକାଶ ପାଇଥିବା ଅସଂଖ୍ୟ ଆଲୋଚନା । ଅଭିଧାନ ପ୍ରକାଶ ପରେ ଓଡ଼ିଶାର ଏପରି କୌଣସି ପତ୍ରିକା ନଥିଲା ଯେଉଁଥିରେ ଏହାର ଆଲୋଚନା-ପ୍ରତିଆଲୋଚନା ପ୍ରକାଶ ପାଇନାହିଁ । ଏଗୁଡ଼ିକୁ ସଂଗ୍ରହ କରିବାରେ ଏବଂ ଏ ସମ୍ପର୍କରେ ସୂଚନା ଦେବାରେ ଯେଉଁମାନେ ସହୃଦୟତାର ସହ କଷ୍ଟ ସ୍ୱୀକାର କରିଛନ୍ତି, ସେମାନେ ହେଲେ ଡ. ଫଣୀନ୍ଦ୍ର ଭୂଷଣ ନନ୍ଦ, ଡ, ଗୌରାଙ୍ଗ ଚରଣ ଦାସ, ଶ୍ରୀଯୁକ୍ତ ଦେବେନ୍ଦ୍ର କୁମାର ଦାସ, ପ୍ରାଧ୍ୟାପକ

ଅଶୋକ ଦାସ ପ୍ରମୁଖ । ଏମାନଙ୍କ ସହଯୋଗ ବିନା ଏପରି ଏକ ଦୁରୂହ କାର୍ଯ୍ୟରେ ମୁଁ କଦାପି ଏତେଦୂର ସଫଳତା ପାଇପାରି ନଥାନ୍ତି । ପତ୍ରପତ୍ରିକାରୁ ତଥ୍ୟ ଉଦ୍ଧାର କରିବା ପାଇଁ ସାହାଯ୍ୟ କରିଛନ୍ତି, ମୋର କଲ୍ୟାଣୀୟ ଛାତ୍ର ଅଧ୍ୟାପକ ଡ. ଅଶୋକ କୁମାର ପଟ୍ଟନାୟକ (ଖଡ଼ିଆଳ କଲେଜ) ଏବଂ ଡ. ପଦ୍ମନାଭ ସାହୁ (ଜନଗଣନା ବିଭାଗ, ଭୁବନେଶ୍ୱର) । ବିନା ଦ୍ୱିଧା ଓ କୁଣ୍ଠାରେ ଉତ୍କଳ ସାହିତ୍ୟ ସମାଜର ଗ୍ରନ୍ଥଗାରିକା କୁମାରୀ ଲକ୍ଷ୍ମୀପ୍ରିୟା ଜେନା ଏବଂ ଓଡ଼ିଶା ରାଜ୍ୟ ଅଭିଲେଖାଗାରର ଅଧକ୍ଷ, ଗ୍ରନ୍ଥାଗାରିକା ଏବଂ ଗ୍ରନ୍ଥାଗାର ସହାୟିକା ଶ୍ରୀମତୀ ସବିତା ମିଶ୍ର, ଶ୍ରୀମତୀ ରଶ୍ମୀ ଶତପଥୀ ଏବଂ ପୁଷ୍ପା ଲାକ୍ରା ଆଗ୍ରହର ସହିତ ଦୁଷ୍ପ୍ରାପ୍ୟ ପତ୍ରପତ୍ରିକାଗୁଡ଼ିକରୁ ତଥ୍ୟ ସଂଗ୍ରହ କରିବା ପାଇଁ ମୋର ସହାୟକ ହୋଇଛନ୍ତି । ସଂକଳନ କାର୍ଯ୍ୟ ଶେଷ ହୋଇ ଆସିବା ବେଳକୁ ଓଡ଼ିଶା ରାଜ୍ୟ ସଂଗ୍ରହାଳୟର ବିବିଧ କଳାନିପୁଣା କ୍ୟୁରେଟଣର୍ ଶ୍ରୀମତୀ (ଡ.) ଭାଗ୍ୟଲିପି ମଲ୍ଲ ଯେଉଁସବୁ ତଥ୍ୟ ଯୋଗାଇ ଦେଲେ, ତାହା ନନ୍ଦ ପଣ୍ଡିତଙ୍କ ପ୍ରତିଭା ଓ ଅପୂର୍ବ ସାଧନାର ଅନାଲୋଚିତ ଦିଗର ଉନ୍ମୋଚନରେ ଯଥେଷ୍ଟ ସାହାଯ୍ୟ କରିଛି । ଏ ସମସ୍ତଙ୍କ ନିକଟରେ ମୁଁ କୃତଜ୍ଞ ।

ମୋର ଦୃଢ଼ ବିଶ୍ୱାସ, ଦେବାବତାର ଲେଖକ ବା ଗ୍ରନ୍ଥର (ବିଶେଷତଃ ରାମାୟଣ, ଭାଗବତ ପରି ପବିତ୍ର ଗ୍ରନ୍ଥର) ଶୁଭ ଆଶୀର୍ବାଦ ବିନା ଆଲୋଚନାରେ ସଫଳତା ଲାଭ କରିବା ସମ୍ଭବ ନୁହେଁ । ଏଥିପାଇଁ ମୁଁ ପଣ୍ଡିତ ମହାଶୟଙ୍କ ସ୍ୱର୍ଗତ ଆତ୍ମାର ଆଶୀର୍ବାଦ ଚାହୁଁଥିଲି । ତାଙ୍କ ଅଦୃଶ୍ୟ ଆଶୀର୍ବାଦରୁ ପ୍ରଥମେ ମୋର ପୂଜ୍ୟ ଗୁରୁଦେବ ଡ. ନଟବର ସାମନ୍ତରାୟ ତାଙ୍କ ସହିତ ଜରୁରୀ ଦେଖା କରିବାପାଇଁ ପତ୍ର ଦେଲେ । ମୁଁ ଯାଇ ଦେଖା କଲି । ସେ ମୋତେ ଗୋଟିଏ ପାଣ୍ଡୁଲିପି ଫାଇଲ୍ ଏବଂ ଗୋପୀନାଥ ନନ୍ଦଙ୍କ 'ଜାନକୀ ପରିଣୟ' ନାଟକଟି ଧରାଇଦେଇ କହିଲେ, 'ତୁ ଯାକୁ ରଖ, ଏ ପାଣ୍ଡୁଲିପି ପଢ଼ିବା ମୋ ପକ୍ଷରେ ଆଉ ସମ୍ଭବ ନୁହେଁ, ଯଦି ପାରିବୁ ନକଲ କରି ଛାପିବାର ବ୍ୟବସ୍ଥା କରିବୁ ।' ପାଣ୍ଡୁଲିପିଟ ଥିଲା ପଣ୍ଡିତ ଗୋପୀନାଥ ନନ୍ଦଙ୍କ ରାମାୟଣ ସମାଲୋଚନାର କିଛି ଅପ୍ରକାଶିତ ଅଂଶ । ତାକୁ ପଣ୍ଡିତ ମହାଶୟଙ୍କ ମୂଳ ପାଣ୍ଡୁଲିପିରୁ କେହି ଜଣେ ସାହିତ୍ୟଜ୍ଞାନରହିତ ନକଲକାର ଉତାରିଥିଲେ । ପଣ୍ଡିତ ମହାଶୟଙ୍କ ହସ୍ତାକ୍ଷର ସୁନ୍ଦର ହେଲେ ସୁଦ୍ଧା ପୁରାତନ ଧରଣର; ତାଙ୍କ ଭାଷା ପାଣ୍ଡିତ୍ୟପୂର୍ଣ୍ଣ ଏବଂ ପାଦଟୀକାରେ ସଂସ୍କୃତ ଶ୍ଳୋକ ଓ ରାମାୟଣଟୀକାର ଉଦ୍ଧୃତି – ଏ ସବୁକୁ ଯେପରିଭାବେ ନକଲ କରାଯାଇଥିଲା ତାହା ଥିଲା ଏକ ପ୍ରକାର ଦୁଷ୍ପାଠ୍ୟ । ପୂର୍ବରୁ ବ୍ରଜସୁନ୍ଦର ଦାସଙ୍କ ସମ୍ପାଦିତ 'ମୁକୁର' ପତ୍ରିକାରେ ବଳରାମ ଦାସଙ୍କ ରାମାୟଣ ସମାଲୋଚନାର କିଛି ଅଂଶ ପ୍ରକାଶ ପାଇଥିଲା । ସେସବୁ ଏବଂ ଶ୍ରୀ ଭାରତଦର୍ପଣକୁ ଦୃଷ୍ଟିରେ ରଖି ପାଣ୍ଡୁଲିପିଟିରୁ ପୁଣି ଅନ୍ୟ ଏକ ପ୍ରତିଲିପି ପ୍ରସ୍ତୁତ କରିବାକୁ ହେଲା । ମୃତ୍ୟୁ ପୂର୍ବରୁ ସାର୍ ଏ ସମ୍ପର୍କରେ ଥରେ ଦୁଇଥର ମନେପକାଇ

ଦେଇ ନାହାନ୍ତି ତା' ନୁହେଁ, କିନ୍ତୁ ତାଙ୍କ ଜୀବଦ୍ଦଶାରେ ଏହାର ପ୍ରକାଶନ ସମ୍ଭବ ହୋଇପାରିଲା ନାହିଁ । ଆଜି ହୁଏତ ସେହି ସ୍ୱର୍ଗତ ଆତ୍ମା ମୋତେ ଏ ଦାୟିତ୍ୱରୁ ମୁକ୍ତ ହେବାର ଦେଖି ଆଶୀର୍ବାଦ ଦେବେ ।

ସେହିପରି ମୋର ଅନ୍ୟ ଜଣେ ପିତୃପ୍ରତିମ ଗୁରୁଦେବ ଏବଂ ନନ୍ଦଶର୍ମାଙ୍କ ପୁତ୍ରରା ଓଡ଼ିଶାର ପ୍ରଖ୍ୟାତଯଶା ବାଗ୍ମୀ ଏବଂ ବହୁଭାଷାବିତ୍ ପଣ୍ଡିତପ୍ରବର ଗୌରୀକୁମାର ବ୍ରହ୍ମାଙ୍କ ନିକଟକୁ ଯିବାପାଇଁ ନିର୍ଦ୍ଦେଶ ପାଇଲି । ତାଙ୍କ ପିତା ପ୍ରଚଣ୍ଡ ପ୍ରତିଭାଧର ସ୍ୱର୍ଗତ ଚନ୍ଦ୍ରଶେଖର ବ୍ରହ୍ମା ମୋ ନନାଙ୍କ ଗୁରୁ ଏବଂ ସାହିତ୍ୟ ସୃଷ୍ଟିର ମାର୍ଗଦର୍ଶକ । ଜିଦ୍ କରି ନନା ତାଙ୍କୁ ଆମ ଗାଁ ସୁବର୍ଣ୍ଣପୁର ମଠରେ ଆତିଥ୍ୟ ଦେଇ ତାଙ୍କଠାରୁ ବ୍ରହ୍ମସୂତ୍ରର ଶାଙ୍କରଭାଷ୍ୟ ଏବଂ ମାଘ କାବ୍ୟ ଅଧ୍ୟୟନ କରିଥିଲେ । ତେଣୁ ଜନ୍ମିତ ପୁତ୍ର ଏବଂ ଶିଷ୍ୟପୁତ୍ରଙ୍କ ମଧ୍ୟରେ ସମ୍ପର୍କ ଥିଲା ନିବିଡ଼ । ମୁଁ ମଧ୍ୟ ରେଭେନ୍ସା କଲେଜରେ ଅଧ୍ୟୟନ କଲାବେଳେ ଅଧ୍ୟାପକ ବ୍ରହ୍ମାଙ୍କ ଶ୍ରୁତଲେଖକ ଭାବେ କିଛିଦିନ କାର୍ଯ୍ୟ କରୁଥିଲି । ନନ୍ଦ ପଣ୍ଡିତଙ୍କ ପ୍ରେରଣାରୁ ଦିନେ ସକାଳେ ଯାଇ ପୂଜ୍ୟ ଅଧ୍ୟାପକଙ୍କୁ ସାକ୍ଷାତ୍ କଲି । ଦୀର୍ଘ ବ୍ୟବଧାନ ପରେ ସାକ୍ଷାତ୍‌ର ସେହି ମୁହୂର୍ତ୍ତ ଜୀବନର ଏକ ଅବିସ୍ମରଣୀୟ ମୁହୂର୍ତ୍ତ । ବାସଲ୍ୟଭରା ବିହ୍ୱଳତା ଏବଂ ଅଶ୍ରୁ କଦାପି ଭୁଲିବାର ନୁହେଁ । କଥା ପ୍ରସଙ୍ଗରେ ମୁଁ ମୋର ଉଦ୍ଦେଶ୍ୟ ଜଣାଇଲି । ଅପେକ୍ଷା କରିବାକୁ କହି ସେ ପିଉସାଙ୍କ ଗୃହରୁ ସଂଗ୍ରହ କରିଥିବା କେତୋଟି ହାତଲେଖା ଖାତା ଆଣି ମୋ ହାତକୁ ବଢ଼ାଇଦେଲେ । ସେଗୁଡ଼ିକର ଅବସ୍ଥା ଅବଶ୍ୟ ଜୀର୍ଣ୍ଣଶୀର୍ଣ୍ଣ । ହରିଡ଼ା କାଳିରେ ଲେଖାଯାଇଥିବା ଯୋଗୁଁ ପୃଷ୍ଠାଗୁଡ଼ିକରୁ ଅକ୍ଷରଗୁଡ଼ିକ ଝୁଲନ୍ତ ଅବସ୍ଥାରେ ରହିଥିଲା । କିନ୍ତୁ ତା' ଭିତରେ ଥିଲା ପଣ୍ଡିତ ମହାଶୟଙ୍କ କେତୋଟି ଅଜ୍ଞାତ ରଚନା- ରାମାୟଣ ସମାଲୋଚନାର ଆଉ କିଛି ଅପ୍ରାପ୍ତ ଅଂଶ ଏବଂ ଟିପା, କୁମାରସମ୍ଭବ ଅନୁବାଦର କିଛି ଅଂଶ ଏବଂ ଖଣ୍ଡିତ ହେଲେ ସୁଦ୍ଧା ଓଡ଼ିଆ ଛନ୍ଦ ସଂପର୍କରେ ମୌଳିକ ଆଲୋଚନା 'ଉଭୟବୃତ୍ତ ରତ୍ନାକର' । ମୁଁ ଅଭିଭୂତ ହୋଇପଡ଼ିଲି । ଗୁରୁଦେବଙ୍କ ଚରଣ ସ୍ପର୍ଶ କରି ପ୍ରଣିପାତ କଲି । ଆଉ କିଛିଦିନ ମଧ୍ୟରେ ସେଗୁଡ଼ିକ ହୁଏତ କାଳଗର୍ଭରେ ବିଲୀନ ହୋଇଯାଇଥାଆନ୍ତା । ପୂଜ୍ୟପାଦଙ୍କୁ ତାଙ୍କ ପିଉସାଙ୍କ ଏହି ପାଣ୍ଡୁଲିପିଗୁଡ଼ିକ ପ୍ରକାଶ କରିବାର ପ୍ରତିଶ୍ରୁତି ଦେଇ ଆଶୀର୍ବାଦ ଗ୍ରହଣପୂର୍ବକ ଫେରିଆସିଲି ।

ଏ ଉଭୟ ପୂଜ୍ୟଗୁରୁଙ୍କ ଅଯାଚିତ ଏବଂ ଅକୁଣ୍ଠ ଦାନର ପ୍ରତିଦାନ ଦେବା ପାଇଁ ମୁଁ ଅସମର୍ଥ ।

ପୂର୍ବରୁ 'ପ୍ରାଚୀ ସାହିତ୍ୟ ପ୍ରତିଷ୍ଠାନ' ସଂସ୍ଥାର ତତ୍ତ୍ୱାବଧାରକ ଶ୍ରୀଯୁକ୍ତ ଗଙ୍ଗାଧର ତ୍ରିପାଠୀ ଏବଂ ତାଙ୍କର ଦୁଇ ସୁଯୋଗ୍ୟ ପୁତ୍ର ଶକ୍ତିପ୍ରସାଦ ଏବଂ ବିଭୁପ୍ରସାଦ ସ୍ୱତଃପ୍ରବୃତ୍ତ

ଭାବେ ଗୋପୀନାଥ ନନ୍ଦଙ୍କ ରଚନାବଳୀ ପ୍ରକାଶ କରିବା ଦାୟିତ୍ୱ ଗ୍ରହଣ କରିଥିଲେ । କିନ୍ତୁ ନିର୍ଦ୍ଧାରିତ ସମୟରେ ପାଣ୍ଡୁଲିପି ହସ୍ତାନ୍ତର କରିବା ମୋ ପକ୍ଷରେ ସମ୍ଭବ ହେଲା ନାହିଁ । ମୁଁ ପଣ୍ଡିତ ମହୋଦୟଙ୍କ ରଚନାବଳୀ ଖୋଜିବା ପାଇଁ ଯେତିକି ଉଦ୍ୟମ କଲି ସେତିକି ନୂତନ ତଥ୍ୟ ମୋ ଦୃଷ୍ଟିକୁ ଆସିବାକୁ ଲାଗିଲା । ଏବେ ମଧ ସବୁ ଯେ ସଂଗୃହୀତ ହୋଇପାରିଛି କହିବାର ଦୁଃସାହସ ମୋର ନାହିଁ । ସେହି ଅଦ୍‌ଭୂତକର୍ମା ପଣ୍ଡିତଙ୍କ ନିଜସ୍ୱ ରଚନା ଏବଂ ତାଙ୍କ ସମ୍ପର୍କରେ ଚାଲିଥିବା ବାଦପ୍ରତିବାଦ ବିଭିନ୍ନ ପତ୍ରିକାରୁ ସଂଗ୍ରହ କରିବା ସହଜସାଧ ନୁହେଁ । ତଥାପି ପ୍ରକାଶକଙ୍କ ଧୈର୍ଯ୍ୟ ଅସୀମ । ମୁଦ୍ରଣ ଭାର ଗ୍ରହଣ କରିଛନ୍ତି 'ଗୀତାଞ୍ଜଳି' ମୁଦ୍ରଣାଳୟର ପ୍ରବୀଣ ଓ ନିଷ୍ଠାପର ତତ୍ତ୍ୱାବଧାରକ ଶ୍ରୀଯୁକ୍ତ ବିଜୟ କୁମାର ଦାଶ । ପଣ୍ଡିତ ମହାଶୟଙ୍କ ପାଣ୍ଡୁଲିପିକୁ ମୁଦ୍ରଣ କରିବାପାଇଁ ସେ ଯେତିକି କଷ୍ଟ ସ୍ୱୀକାର କରିଛନ୍ତି ଏବଂ ସଫେଇ ପାଣ୍ଡୁଲିପିକୁ ଯେପରି ଅପେକ୍ଷା କରିଛନ୍ତି ସେଥିପାଇଁ ତାଙ୍କୁ ଧନ୍ୟବାଦ ଦେବାର ଭାଷା ମୋ ପାଖରେ ନାହିଁ । ମୁଁ ଉଭୟ ସଂସ୍ଥାର ଉତ୍ତରୋତ୍ତର ଅଭିବୃଦ୍ଧି କାମନା କରୁଛି । ଏମାନଙ୍କ ଧୈର୍ଯ୍ୟ ଓ ନିଷ୍ଠା ବିନା ରଚନାବଳୀଟି ଯଥାସମ୍ଭବ ନିର୍ଭୁଲ ଓ ସୁଦୃଶ୍ୟଭାବେ ପ୍ରକାଶ ପାଇପାରି ନ ଥାନ୍ତା । ପଣ୍ଡିତ ଗୋପୀନାଥ ନନ୍ଦଙ୍କ ସ୍ୱର୍ଗତ ଆତ୍ମା ଏମାନଙ୍କ ଉପରେ ଆଶୀର୍ବାଦ ବୃଷ୍ଟି କରୁ ।

ଗୋପୀନାଥ ନନ୍ଦଶର୍ମାଙ୍କ କାବ୍ୟ, କବିତା, ନାଟକଗୁଡ଼ିକ ବିଭିନ୍ନ ରାଜା ମହାରାଜାଙ୍କ ଆନୁକୂଲ୍ୟରେ ବିଶିଷ୍ଟ ସାହିତ୍ୟିକମାନଙ୍କ ଅଭିମତ ସହ ପୁସ୍ତକାକାରରେ ପ୍ରକାଶ ପାଇଥିଲା । ଶବ୍ଦତତ୍ତ୍ୱ ଅଭିଧାନ ମଧ୍ୟ ୧୯୧୬ ମସିହାରେ ପ୍ରକାଶିତ । ପଣ୍ଡିତ ମହାଶୟଙ୍କ ଦେହାନ୍ତ ପରେ କନିଷ୍ଠ ଭ୍ରାତା ବଳଭଦ୍ର ନନ୍ଦଶର୍ମା ଉତ୍କଳ ସାହିତ୍ୟ, ମୁକୁର ଓ ସତ୍ୟବାଦୀ ପତ୍ରିକାରୁ ସଂଗ୍ରହ କରି ଶ୍ରୀ ଭାରତ ଦର୍ପଣ ଏବଂ ଓଡ଼ିଆ ଭାଷାତତ୍ତ୍ୱ ପ୍ରକାଶ କରିଛନ୍ତି । କିନ୍ତୁ ପଣ୍ଡିତ ମହାଶୟଙ୍କ ଅନ୍ୟାନ୍ୟ ବହୁ ରଚନା ତଥାପି ଅସଂକଳିତ ଅବସ୍ଥାରେ ବିକ୍ଷିପ୍ତ ଭାବରେ ପଡ଼ିରହିଥିଲା । ବର୍ତ୍ତମାନ ଦୁଷ୍ପ୍ରାପ୍ୟ ଉତ୍କଳ ସାହିତ୍ୟ, ମୁକୁର, ସତ୍ୟବାଦୀ, ସମ୍ବଲପୁର ହିତୈଷିଣୀ, ଉତ୍କଳ ଦୀପିକା, ପ୍ରଦୀପ, ଆଶା ପତ୍ରିକାରୁ ଏଗୁଡ଼ିକୁ ସଂଗ୍ରହ କରିବା କମ୍ କଷ୍ଟସାଧ ବ୍ୟାପାର ନୁହେଁ । ଅନେକ ସ୍ଥଳରେ ପତ୍ରିକାଗୁଡ଼ିକର ପୃଷ୍ଠା ଛିନ୍ନ, ଅକ୍ଷରଗୁଡ଼ିକ ଅସ୍ପଷ୍ଟ, ବିରାମ ଚିହ୍ନଗୁଡ଼ିକ ବିଲୁପ୍ତ, ବନାନଗୁଡ଼ିକର ସୂଚନା ମାତ୍ର ପରିଦୃଷ୍ଟ; ଛିନ୍ନପୃଷ୍ଠାଗୁଡ଼ିକୁ ରକ୍ଷା କରିବା ପାଇଁ ତତ୍ତ୍ୱାବଧାରକମାନେ ଯେଉଁ କୌଶଳ ଅବଲମ୍ବନ କରିଛନ୍ତି ତାଦ୍ୱାରା ସ୍ଥାନେ ସ୍ଥାନେ ପାଠ

ଅସ୍ପଷ୍ଟ ଓ ଲୁପ୍ତପ୍ରାୟ; ଗୋଟିଏ ଗୋଟିଏ ପତ୍ରିକାର ସମସ୍ତ ସଂଖ୍ୟା ଉପଲବ୍ଧ ନଥିବା ଯୋଗୁଁ କେତେକ ରଚନାର କିଛି ଅଂଶ ମଧ୍ୟ ଅନୁପଲବ୍ଧ । ଉତ୍ତରଦାୟାଦମାନଙ୍କଠାରୁ ଯେଉଁସବୁ ପାଣ୍ଡୁଲିପି ସଂଗୃହୀତ, ସେଗୁଡ଼ିକ ମଧ୍ୟ ଅସଂପୂର୍ଣ୍ଣ ଏବଂ ଖଣ୍ଡିତ; ପୃଷ୍ଠାଗୁଡ଼ିକର ଉଭୟ ପଟେ ହରିଦ୍ରା କାଳିରେ ଲେଖା ଯାଇଥିବା ଅକ୍ଷରଗୁଡ଼ିକ ଦୀର୍ଘଦିନ ରହଣିରେ ଅସ୍ପଷ୍ଟ । ତଥାପି ଉପଲବ୍ଧ ରଚନା ଓ ତଥ୍ୟସମୂହକୁ ଉଦ୍ଧାର କରିବାପାଇଁ ଯଥାସାଧ ଚେଷ୍ଟା କରାଯାଇଛି । ଯେଉଁସବୁ ସ୍ଥାନରେ ପାଠୋଦ୍ଧାର ସମ୍ଭବ ନୁହେଁ ସେଠାରେ ନିଜର ବୁଦ୍ଧିମତା ଖଟାଇବାପାଇଁ ଆମେ ଅପପ୍ରୟାସ କରିନାହୁଁ । ପଣ୍ଡିତ ମହାଶୟଙ୍କ ସମକାଳରେ ପ୍ରକାଶ ପାଉଥିବା ସମସ୍ତ ପତ୍ରପତ୍ରିକା ଦେଖିବାର ସୁଯୋଗ ଆମେ ପାଇପାରି ନାହୁଁ । ସେଗୁଡ଼ିକ ବିଭିନ୍ନ ବ୍ୟକ୍ତିବିଶେଷଙ୍କ ନିକଟରେ ଥାଇପାରେ । ଯଦି ଲେଖକଙ୍କ କୌଣସି ଅସଂକଳିତ ରଚନା କିମ୍ବା ଚିଠିପତ୍ର କାହାରି ଦୃଷ୍ଟିକୁ ଆସେ, ସହୃଦୟତାର ସହିତ ତା'ର ସଂଧାନ ଦେଲେ ଆମେ ସେମାନଙ୍କ ନିକଟରେ କୃତଜ୍ଞ ରହିବୁ । ପଣ୍ଡିତଙ୍କ ଅସଂପୂର୍ଣ୍ଣ ରଚନାଗୁଡ଼ିକ ସଂପର୍କରେ ଯଥାସ୍ଥାନରେ ସୂଚନା ଦିଆଯାଇଛି ।

ଗୋପୀନାଥ ନନ୍ଦଶର୍ମାଙ୍କ ପ୍ରକାଶିତ, ସଂକଳିତ, ଅସଂକଳିତ ଏବଂ ଅପ୍ରକାଶିତ ରଚନାଗୁଡ଼ିକୁ ପ୍ରସ୍ତୁତ ଗୋପୀନାଥ ନନ୍ଦ ରଚନାବଳୀରେ ସମାୟନ କଲାବେଳେ ଆମେ ଏସବୁକୁ ତିନୋଟି ଭାଗରେ ପ୍ରକାଶ କରିବା ପାଇଁ ଯୋଜନା କରିଛୁଁ । ପ୍ରଥମ ଭାଗରେ ପଣ୍ଡିତ ମହାଶୟଙ୍କ ମତ୍ସ୍ୟେନ୍ଦ୍ରନାଥ ଓ ଗୋରକ୍ଷନାଥ ପ୍ରବନ୍ଧ, ସାରଳା ମହାଭାରତ ସମାଲୋଚନା ବା ଶ୍ରୀ ଭାରତଦର୍ପଣ, ଶ୍ରୀମଦ୍ ରାମାୟଣ ସମାଲୋଚନା ଏବଂ ଶ୍ରୀମଦ୍ ଭାଗବତ ସମାଲୋଚନା ସ୍ଥାନ ପାଇଛି । ଓଡ଼ିଆ ଅଭିଧାନ ଏବଂ ଭାଷାତତ୍ତ୍ୱ ସହିତ ଉତ୍କଳ ସାହିତ୍ୟ ସମାଜର ଗୃହୀତ ପ୍ରସ୍ତାବରେ ଥିବା ଓଡ଼ିଆ ସାହିତ୍ୟର ଇତିହାସ ପ୍ରଣୟନ ପାଇଁ ପାରଳାଖେମୁଣ୍ଡିର ବିଦଗ୍ଧ ଗବେଷକମାନେ ଯେଉଁ ଉଦ୍ୟମ ଆରମ୍ଭ କରିଥିଲେ ଏ ଚାରୋଟି ହେଉଛି ତା'ର ଫଳଶ୍ରୁତି । ତେଣୁ ପ୍ରଥମ ଭାଗଟିକୁ ଓଡ଼ିଆ ସାହିତ୍ୟର ଇତିହାସ ଭାବେ ନାମିତ କରାଯାଇଛି; ଦ୍ୱିତୀୟ ଭାଗରେ ରହିବ ନନ୍ଦ ମହୋଦୟଙ୍କ ଅପ୍ରକାଶିତ ଉଭୟବୃତ୍ତ ରତ୍ନାବଳୀ, ବିଭିନ୍ନ ସମୟରେ ପ୍ରକାଶିତ ପ୍ରବନ୍ଧ ଓ ସାହିତ୍ୟ ସମାଲୋଚନା, ଅନୁବାଦ ଓ ଶିଶୁ ସାହିତ୍ୟ ସହିତ କେତୋଟି ମନ୍ତବ୍ୟ ଓ ଶୋକ ସମ୍ବାଦ । ଶବ୍ଦତତ୍ତ୍ୱବୋଧ ଅଭିଧାନ ପ୍ରକାଶ ପାଇବା ପରେ ଏହାକୁ ନେଇ ଯେଉଁ ବାଦାନୁବାଦ ସୃଷ୍ଟି ହୋଇଥିଲା ତା'ର ଇତିହାସ ବଡ଼ କୌତୂହଳୋଦ୍ଦୀପକ । ୧୯୧୪ରୁ ୧୯୧୭ ପର୍ଯ୍ୟନ୍ତ ଏହି ଅଭିଧାନ ଏବଂ ଭାଷାତାତ୍ତ୍ୱିକ ପ୍ରବନ୍ଧାବଳୀ ସଂପର୍କରେ ବିଭିନ୍ନ ପତ୍ରପତ୍ରିକାରେ ମନ୍ତବ୍ୟ, ପ୍ରେରିତ ପତ୍ର, ଏ ବିବାଦର ମୂଳ କିଏ, ନନ୍ଦଙ୍କ ଅଭିଧାନ ଇତ୍ୟାଦି ଶିରୋନାମାରେ ସପକ୍ଷ ଓ ବିପକ୍ଷବାଦୀଙ୍କ ବହୁ ଲେଖା ପ୍ରକାଶ ପାଇଛି । ନନ୍ଦ

ପଣ୍ଡିତଙ୍କ ଭାଷାତତ୍ତ୍ୱ ଗବେଷଣାର ମୂଲ୍ୟାୟନପାଇଁ ଏଗୁଡ଼ିକ ନିଶ୍ଚିତଭାବେ ମୂଲ୍ୟବାନ୍ । ଏ ଦୃଷ୍ଟିରୁ ଆମେ ସେସବୁକୁ ସଂଗ୍ରହ କରି ଦ୍ୱିତୀୟ ଭାଗର ପରିଶିଷ୍ଟ ରୂପେ ସ୍ଥାନିତ କରିଛୁ । ତୃତୀୟ ଭାଗରେ ନନ୍ଦଶର୍ମାଙ୍କ କାରୟିତ୍ରୀ ପ୍ରତିଭାର ନିଦର୍ଶନସ୍ୱରୂପ ପ୍ରକାଶିତ ମୌଳିକ ତଥା ଅନୂଦିତ କାବ୍ୟ କବିତା ଓ ନାଟକାବଳୀକୁ ସଂକଳନ କରାଯାଇଛି ।

ପ୍ରକାଶ ଥାଉ କି, ଗ୍ରନ୍ଥାବଳୀ ସଂକଳନ ବେଳେ ପଣ୍ଡିତ ନନ୍ଦଶର୍ମାଙ୍କ ଜୀବଦ୍ଦଶାରେ ପ୍ରକାଶିତ ପୁସ୍ତକାବଳୀ ବ୍ୟତୀତ ଅନ୍ୟ ସମସ୍ତ ରଚନା ପାଇଁ ଆମେ ପ୍ରକାଶିତ ପୁସ୍ତକ ପରିବର୍ତ୍ତେ ମୂଳ ପତ୍ରପତ୍ରିକା ଏବଂ ତାଙ୍କ ହସ୍ତଲିଖିତ ପାଣ୍ଡୁଲିପିକୁହିଁ ଆଧାରରୂପେ ଗ୍ରହଣ କରିଛୁଁ । ଆଶା, ପଣ୍ଡିତ ଗୋପୀନାଥ ନନ୍ଦଶର୍ମାଙ୍କ ପରି ଜଣେ ଅଦ୍ଭୁତକର୍ମା ସାହିତ୍ୟିକଙ୍କ ପ୍ରତିଭା ଆକଳନ ପାଇଁ ଏହା ସମାଲୋଚକ ଏବଂ ଗବେଷକମାନଙ୍କ ସହାୟକ ହେବ ।

ବିଷୁବ, ୨୦୧୦ **ସୁଦର୍ଶନ ଆଚାର୍ଯ୍ୟ**
ଯତିରାଜ ନିକେତନ
ବ୍ରହ୍ମପୁର
ତା ୧୪.୪.୨୦୧୦



# ପଣ୍ଡିତ ଗୋପୀନାଥ ନନ୍ଦଶର୍ମା

ଓଡ଼ିଶାର ରାଜନୈତିକ, ସାମାଜିକ, ସାହିତ୍ୟିକ ଏବଂ ସାଂସ୍କୃତିକ ଇତିହାସରେ ଊନବିଂଶ ଶତାବ୍ଦୀର ବହୁ ଘଟଣା ଓ ଦୁର୍ଘଟଣାପୂର୍ଣ୍ଣ ସପ୍ତମ ଦଶକଟି ଏକାନ୍ତ ସ୍ମରଣୀୟ । ନ'ଅଙ୍କ ଦୁର୍ଭିକ୍ଷର କରାଳ ଗ୍ରାସ ଓଡ଼ିଆ ଜାତିକୁ ଏକପ୍ରକାର ନିଶ୍ଚିହ୍ନ କରିବାପାଇଁ ବସିଥିଲା । ମନୁଷ୍ୟକୃତ ଏହି ଦୁର୍ବିପାକରୁ ସୌଭାଗ୍ୟକ୍ରମେ ବର୍ତ୍ତିଯାଇଥିବା ବୁଦ୍ଧିଜୀବୀମାନେ ଅବଶ୍ୟ ବୁଭୁକ୍ଷୁ ଜନତାର ଆର୍ତ୍ତ ଚିତ୍କାର ଭିତରୁ ଆତ୍ମସଚେତନ ହେବାପାଇଁ ଅଭିନବ ପ୍ରେରଣା ଲାଭ କରିଥିଲେ, କ୍ଷୁଧାପୀଡ଼ିତ ମଣିଷମାନଙ୍କ କରୁଣ ସ୍ୱର ଲହରୀରେ ଶୁଣିବାକୁ ପାଇଥିଲେ ଗୋଟିଏ ଅହେତୁକ ଉତ୍ପୀଡ଼ିତ ଜାତିର କରୁଣ ବିଳାପ ଧ୍ୱନି ଏବଂ ସ୍ୱାଭିମାନର ସହିତ ବଞ୍ଚିବା ପାଇଁ ଆକୁଳ ପ୍ରାର୍ଥନା; ସହରର ଗଳିକନ୍ଦିରେ ବୁଲୁଥିବା ବାଧ କାଙ୍ଗାଳମାନଙ୍କ ମଧ୍ୟରେ ଲକ୍ଷ୍ୟ କରିଥିଲେ ଓଡ଼ିଆ ଜାତିର କଙ୍କାଳସାର ରୂପ । ଏହି କଙ୍କାଳସାର ଜାତିକୁ ଜାଗ୍ରତ କରି ବିଳାପର ସ୍ୱରକୁ ଜାଗରଣ ସଂଗୀତରେ ରୂପାୟନ କରିବାପାଇଁ ୧୮୬୬ ମସିହାରେ ପ୍ରକାଶ ପାଇଥିଲା ସାପ୍ତାହିକ ଓଡ଼ିଆ ସମ୍ବାଦପତ୍ର 'ଉତ୍କଳ ଦୀପିକା'; ସମ୍ପାଦକ ଥିଲେ ଦେଶ ଓ ଜାତିପ୍ରାଣ ଗୌରୀଶଙ୍କର ରାୟ । ରେଭେନ୍‌ସା ସାହେବଙ୍କ ପ୍ରଶାସନିକ ଦକ୍ଷତାରୁ ଓଡ଼ିଆ ଜାତି ମରୁ ମରୁ ବଞ୍ଚିଗଲା, କିନ୍ତୁ ଯେଉଁମାନଙ୍କ ଅବହେଳାରୁ ଲକ୍ଷ ଲକ୍ଷ ନିରୀହ ଓଡ଼ିଆ ଉଦ୍‌ବାସ୍ତୁ ହୋଇ ମୃତ୍ୟୁମୁଖରେ ପଡ଼ିଥିଲେ, ସେମାନେ ଏଥିରେ ଅଧିକ ଉଦ୍‌କ୍ଷିପ୍ତ ହୋଇ ଉଠିଥିଲେ । ଭାଷା ଓ ସାହିତ୍ୟ ଗୋଟିଏ ଜାତିର ଚିହ୍ନଟପତ୍ର; ତେଣୁ ଆରମ୍ଭ ହୋଇଥିଲା ଓଡ଼ିଆ ଭାଷା ଏବଂ ତା ମାଧ୍ୟମରେ ଗୋଟିଏ ଜାତିର ସ୍ୱତନ୍ତ୍ର ସତ୍ତା ବିଲୋପପାଇଁ ଆଉ ଏକ ନୂତନ ଚକ୍ରାନ୍ତ । ବଣିକ ସରକାରଙ୍କ ରାଜକୋଷର ଅଭିବୃଦ୍ଧିକୁ ସୁହାଇଲା ଭଳି ପ୍ରସ୍ତାବମାନ ପ୍ରସ୍ତୁତ କରି ଦୂରଦୃଷ୍ଟି ସଂପନ୍ନ ଚକ୍ରାନ୍ତକାରୀମାନେ ନିଜର ଦୂରଭିସନ୍ଧିକୁ କାର୍ଯ୍ୟକାରୀ କରିବାପାଇଁ ପ୍ରବଳ ଉଦ୍ୟମ ଆରମ୍ଭ କରିଥିଲେ । ଏକଦିଗରେ ଗୌରୀଶଙ୍କର, ଫକୀରମୋହନ ପ୍ରମୁଖ ଓଡ଼ିଆ ଭାଷାକୁ ବଙ୍ଗଳାର ପ୍ରଭାବରୁ ମୁକ୍ତ କରିବାପାଇଁ ପ୍ରୟାସ କରୁଥିଲାବେଳେ ଉମାଚରଣ ହାଲଦାର, ରାଜେନ୍ଦ୍ରଲାଲ ମିତ୍ର, ଶିବ ଦାସ ଭଟ୍ଟାଚାର୍ଯ୍ୟ ପ୍ରମୁଖ ଓଡ଼ିଆ ଭାଷାର ସ୍ୱାତନ୍ତ୍ର୍ୟ ସଂପର୍କରେ ପ୍ରଶ୍ନବାଚୀ ସୃଷ୍ଟିକରି ଯେକୌଣସି କୌଶଳରେ ଓଡ଼ିଶାରୁ ଓଡ଼ିଆ ଭାଷାକୁ ବିଦାୟ ଦେବାପାଇଁ ପ୍ରବଳ ଅପଉଦ୍ୟମ ଆରମ୍ଭ କରିଥିଲେ । ଉମାଚରଣ ହାଲଦାରଙ୍କ ବଙ୍ଗ ଅକ୍ଷରରେ ଉତ୍କଳଭାଷା

ଲେଖିବା (ଉତ୍କଳ ଦୀପିକା, ୧୦।୭।୧୮୬୯), ରଙ୍ଗଲାଲ ବନ୍ଦୋପାଧ୍ୟାୟଙ୍କ ଓଡ଼ିଆ ଅକ୍ଷର ପରିବର୍ତ୍ତେ ଦେବନାଗରୀ ଅକ୍ଷର ପ୍ରଚଳନ ପାଇଁ ପ୍ରସ୍ତାବ (ଉତ୍କଳ ଦୀପିକା, ୧୪।୮।୧୮୬୯) ଇତ୍ୟାଦି ଏହାର ନିଦର୍ଶନ । ଏହି ଚକ୍ରାନ୍ତର ସର୍ବଶେଷ ପରିପ୍ରକାଶ କାନ୍ତିଚନ୍ଦ୍ର ଭଟ୍ଟାଚାର୍ଯ୍ୟଙ୍କ 'ଉଡ଼ିୟା ସ୍ୱତନ୍ତ୍ର ଭାଷା ନହେ' ପୁସ୍ତିକା, ବଡ଼ ଚମତ୍କାର କୌଶଳ । ଓଡ଼ିଆ ଭାଷାକୁ ଅସ୍ୱୀକାର ନ କରି ସେ ଏହା ଯେ ବଙ୍ଗଳାର ଏକ ଉପଭାଷା, ତାହା ପ୍ରମାଣ କରିବାପାଇଁ ଚେଷ୍ଟା କରିଥିଲେ । କିନ୍ତୁ କାନ୍ତିଚନ୍ଦ୍ରଙ୍କ ଅଭିମତ ଯେ ବିଭ୍ରାନ୍ତିକର ଏବଂ ଅଭିସନ୍ଧିମୂଳକ ଏହା ପ୍ରବୀଣ ଭାରତୀୟ ଭାଷାତତ୍ତ୍ୱବିତ୍ ଜନ୍ ବିମସ୍‌ଙ୍କ ଦୃଷ୍ଟିରୁ ତୂରେଇ ଯାଇ ନଥିଲା । ସେ ଓଡ଼ିଆ ଭାଷାର ସ୍ୱାତନ୍ତ୍ର୍ୟ ପ୍ରତିପାଦନ କରି ଏସିଆଟିକ୍ ସୋସାଇଟି ଅଫ୍ ବେଙ୍ଗଲର ଏକ ଅଧିବେଶନରେ ପ୍ରବନ୍ଧଟିଏ ଉପସ୍ଥାପନ କରିଥିଲେ : ON THE RELATION OF THE URIYA TO THE OTHER MODERN ARYAN LANGUAGES, (PROCEEDINGS OF THE ASIATIC SOCIETY, JUNE, 1870, pp, 192-201) ପ୍ରବନ୍ଧଟି ବଙ୍ଗୀୟ ବିଦ୍ୱାନମାନଙ୍କୁ ଏପରି ଅପଚେଷ୍ଟାରୁ ନିବୃତ୍ତ ରହିବାପାଇଁ ବାଧ କରିଥିଲା। ଅବଶ୍ୟ ମହାମନା ବିମ୍‌ସ୍ ନିଜ ଅଭିମତରେ ଥିବା ଅଭାବ ସଂପର୍କରେ ସଚେତନ ଥିଲେ । ତେଣୁ ପ୍ରବନ୍ଧର ଉପସଂହାରରେ ସେ ସୂଚାଇଥିଲେ –

> *Much more may, of course, be said on the subject, in fact a tolerable large book might be written on it. Unfortunately such a book could only be written by a resident of the province, as no responsible grammar or dictionary of the language has yet been published; and as there are few persons in Orissa who are competent to take up the enquiry and work it out fully, we can not expect to see a good answer to Babu Kanti Chandra's book yet a while.*

ବିମ୍‌ସ ସାହେବଙ୍କ ପ୍ରବନ୍ଧ ପ୍ରସ୍ତୁତିବେଳେ ତାଙ୍କ ଅବଶୋଷକୁ ଦୂରୀଭୂତ କରି ଓଡ଼ିଆ ଭାଷାର ବିଶୁଦ୍ଧ ବ୍ୟାକରଣ ଓ ଅଭିଧାନ ପ୍ରଣୟନ କରିବାପାଇଁ ମାତୃକାଳୟ ମଞ୍ଜୁଷାଠାରେ ଜନ୍ମଗ୍ରହଣ କରିଥିବା ଶିଶୁ ଗୋପୀନାଥ ଦୈବୀ ପ୍ରେରିତ ତୁଲ୍ୟ ନିଜର ପୁଣ୍ୟ ସାଧନାପୀଠ ପାରଳାଖେମୁଣ୍ଡିରେ ପ୍ରବନ୍ଧ ପ୍ରକାଶ ପାଇବା ବେଳକୁ ଅର୍ଥାତ୍ ୧୮୭୦ ମସିହାରେ ପଦାର୍ପଣ କରନ୍ତି ।

- ୨ -

୧୮୬୯ ମସିହା ଅଗଷ୍ଟ ମାସ ୨୧ ତାରିଖ, ଶ୍ରାବଣ ଶୁକ୍ଳ ଅଷ୍ଟମୀ, ସିଂହ ସାତଦିନ ଶନିବାରର ପୁଣ୍ୟତିଥିରେ ଗୋପୀନାଥ ନନ୍ଦଙ୍କ ଜନ୍ମ । ପିତା ରଘୁନାଥ ନନ୍ଦ ଏବଂ ମାତା ରମାଦେବୀଙ୍କର ସେ ଥିଲେ ଦ୍ୱିତୀୟ ସନ୍ତାନ । ପ୍ରଚଳିତ ଆଞ୍ଚଳିକ ବିଧି ଅନୁଯାୟୀ କନ୍ୟାର ପ୍ରଥମ ଦୁଇଟି ସନ୍ତାନ ପିତ୍ରାଳୟରେ ହିଁ ଜନ୍ମନେବା କଥା । ଏଣୁ ରମାଦେବୀ ଦ୍ୱିତୀୟ ପୁତ୍ରଟିକୁ ମଞ୍ଜୁଷାଠାରେ ହିଁ ଜନ୍ମ ଦେଇଥିଲେ । ଗୋପୀନାଥଙ୍କ ମୂଳ ଜାତକ ଦେଖିବାର ସୁଯୋଗ ଆମେ ପାଇନାହୁଁ । କିନ୍ତୁ ବର୍ତ୍ତମାନ ଜ୍ୟୋତିର୍ବିଜ୍ଞାନୀ ଶ୍ରୀଯୁକ୍ତ ଦଣ୍ଡପାଣୀ ପଣ୍ଡା ଚନ୍ଦ୍ରଲଗ୍ନ ଓ ଗୋପୀନାଥଙ୍କ ବ୍ୟକ୍ତିତ୍ୱ ଓ କୃତିତ୍ୱ ଆଧାରରେ ଯେଉଁ କୋଷ୍ଠୀ ପ୍ରସ୍ତୁତ କରିଛନ୍ତି ତାହା ଏଠାରେ ପ୍ରଦତ୍ତ ହେଲା —




ମାତା ରମାଦେବୀ ଥିଲେ ବର୍ତ୍ତମାନ ରାଜନୈତିକ ଓଡ଼ିଶାଠାରୁ ବିଚ୍ଛିନ୍ନ ହୋଇପଡ଼ିଥିବା ମଞ୍ଜୁଷା ରାଜ୍ୟର ରାଜବୈଦ୍ୟ ଲିଙ୍ଗରାଜ ସଦସ୍ୟଙ୍କ ଭଗିନୀ । ସେତେବେଳେ ମଞ୍ଜୁଷା ଥିଲା ବିଭିନ୍ନ ଶାସ୍ତ୍ରରେ ପ୍ରବୀଣ ପଣ୍ଡିତମାନଙ୍କର ବିଳାସ କ୍ଷେତ୍ର । ରାଜା ଥିଲେ ଲକ୍ଷ୍ମଣ ରାଜମଣିଙ୍କ ପୌତ୍ର ଏବଂ ଶ୍ରୀନିବାସ ରାଜମଣିଙ୍କ ପୁତ୍ର ଜଗନ୍ନାଥ ରାଜମଣି ରାଜଦେବ ସି.ଆଇ.ଇ. 'ଯୁବ ଜୀବନ', 'ଅଭିନୟ ଚନ୍ଦ୍ରିକା', 'ବିଷ୍ଣୁ ସହସ୍ର ନାମାର୍ଥ କୁସୁମାଞ୍ଜଳୀ', 'ଲକ୍ଷ୍ମୀ ଅଷ୍ଟୋତ୍ତରଶତନାମ ବ୍ୟାଖ୍ୟା' ଇତ୍ୟାଦିର ପ୍ରଣେତା ଏବଂ ପ୍ରସିଦ୍ଧ 'ସର୍ବସ୍ମୃତି ସାର ସଂଗ୍ରହ' ସଂକଳୟିତା ଖଞ୍ଜା ଗୋବିନ୍ଦ ଦାସଙ୍କ ପୃଷ୍ଟପୋଷକ ଶ୍ରୀନିବାସ ରାଜମଣିଙ୍କ ସାରସ୍ୱତ ପରଂପରାକୁ ସେ ଉଜ୍ଜୀବିତ ରଖିଥିଲେ । ତାଙ୍କ ସମୟରେ ହିଁ ମଞ୍ଜୁଷାଠାରେ ଇଂରେଜୀ ଓ ସଂସ୍କୃତ ବିଦ୍ୟାଳୟମାନ ସ୍ଥାପିତ ହୋଇଥିଲା । ସାହିତ୍ୟ ଓ ଶାସ୍ତ୍ର ଚର୍ଚ୍ଚାର କୋଳାହଳମୟ ପବିତ୍ର ପରିବେଶରେ ଗୋପୀନାଥଙ୍କ ଜନ୍ମ । ଏଣୁ ଉଭୟ ପିତୃ ଓ ମାତୃ ପରିବାରର ସଂସ୍କାର ଓ ବିଦ୍ୱତ୍ତା ରମାଦେବୀଙ୍କ ସନ୍ତାନମାନଙ୍କୁ ପ୍ରଭାବିତ କରିବା ସ୍ୱାଭାବିକ । ମଞ୍ଜୁଷାର ସଦସ୍ୟ ପରିବାର ପରି ପାରଳାଖେମୁଣ୍ଡିର

ନନ୍ଦ ପରିବାର ମଧ୍ୟ ଥିଲେ ରାଜବୈଦ୍ୟ । ଗୋପୀନାଥଙ୍କ ପିତା ରଘୁନାଥ ନନ୍ଦ ମଧ୍ୟ କୌଳିକ ବୃତ୍ତିରେ ଧୂରୀଣ । ସ୍ୱର୍ଗତ ରାଧାଚରଣ ପଣ୍ଡା ନିଜ ସଂକଳିତ ଗୋପୀନାଥ ଗ୍ରନ୍ଥାବଳୀର ଆରମ୍ଭରେ ଏହି ବଂଶର ଯେଉଁ ଇତିବୃତ୍ତ ଉଲ୍ଲେଖ କରିଛନ୍ତି ସେଥିରେ ରଘୁନାଥଙ୍କ ପଞ୍ଚମ ପୂର୍ବପୁରୁଷ ଅବିଭକ୍ତ ପାରଳାଖେମୁଣ୍ଡିର ପ୍ରଥମ ରାଜା କଳାହମୀରଙ୍କ ସମୟରେ ପାରଳାଖେମୁଣ୍ଡିରେ ପଦାର୍ପଣ କରିଥିବା କଥା ସୂଚିତ ଅଛି । ସେ ନିମ୍ନଲିଖିତ ମତେ ତାଙ୍କ ବଂଶାବଳୀ ପ୍ରଦାନ କରିଛନ୍ତି –

(୧) ଭିକାରୀ (ବିକେଇ) ନନ୍ଦ 'ବୈଦ୍ୟ ବିଦ୍ୟାଭୂଷଣ'
|
(୨) ଗଣନାଥ ନନ୍ଦ
|
(୩) ଜୀବନାଥ ନନ୍ଦ
|
(୪) ପ୍ରାଣନାଥ ନନ୍ଦ
|
(୫) ନାରାୟଣ ନନ୍ଦ
|
(୬) ରଘୁନାଥ ନନ୍ଦ + ରମାଦେବୀ
|

| (୧) | (୨) | (୩) | (୪) | (୫) | (୬) | (୭) | (୮) |
|---|---|---|---|---|---|---|---|
| ବାସୁଦେବ | ଗୋପୀନାଥ (ପଣ୍ଡିତ) (୧୮୬୯-୧୯୨୪) | ବଳଭଦ୍ର | ନରସିଂହ | ବଂଶୀଧର | ଗୋବିନ୍ଦ | ମନମୋହନ | ଝିଅ |

ସ୍ୱର୍ଗତ ରାଧାଚରଣ ପଣ୍ଡା କେଉଁ ସୂତ୍ରରୁ କଳା ହମୀରଙ୍କ ସମୟରେ ଗୋପୀନାଥ ନନ୍ଦଙ୍କ ପୂର୍ବପୁରୁଷ ପାରାଳାଖେମୁଣ୍ଡି ଆସିଥିବା ସଂପର୍କରେ ତଥ୍ୟ ସଂଗ୍ରହ କରିଥିଲେ ଜାଣିବାର ଉପାୟ ନାହିଁ, କିନ୍ତୁ ଏହି କଳା ହମୀର କିମ୍ବଦନ୍ତୀ ଅନୁଯାୟୀ ସୂର୍ଯ୍ୟବଂଶୀ ଗଜପତି କପିଳେନ୍ଦ୍ର ଦେବଙ୍କ ପୁତ୍ର ହୁଅନ୍ତୁ କିମ୍ବା ଇତିହାସର ୧୪୬୭ ମସିହାରେ ସିଂହାସନ ଆରୋହଣ କରିଥିବା ସର୍ବଜ୍ଞଭାବେ ପରିଚିତ ମୃତ୍ୟୁଞ୍ଜୟ ଭାନୁଙ୍କ ପୁତ୍ର ହମୀର ମାଧବ ସୁନ୍ଦର ଗଜପତି ହୁଅନ୍ତୁ କେହି ଗୋପୀନାଥ ନନ୍ଦଙ୍କ ସପ୍ତମ ପୁରୁଷଙ୍କ ସମସାମୟିକ ହେବା ସମ୍ଭାବନା (ପ୍ରତ୍ୟେକ ପୁରୁଷକୁ ବ୨୫ର୍ଷ ଧରାଗଲେ) ସତ୍ୟ ବୋଲି ମନେହୁଏ ନାହିଁ । ଶବ୍ଦତତ୍ତ୍ୱବୋଧ ଅଭିଧାନର ଉତ୍ସର୍ଗପତ୍ରରୁ ମିଳୁଥିବା ସୂଚନାକ୍ରମେ ଗୋପୀନାଥ

ନନ୍ଦଙ୍କ ଯେଉଁ ପୂର୍ବପୁରୁଷ ପ୍ରଥମେ ପାରଳାଖେମୁଣ୍ଡି ଶାସକଙ୍କର ପୃଷ୍ଠପୋଷକତା ଲାଭ କରି ସେଠାରେ ପଦାର୍ପଣ କରିଥିଲେ, ତାଙ୍କ ସମୟ ପ୍ରାୟ ୧୭୬୦ରୁ ୧୭୮୦ ମସିହା ମଧ୍ୟରେ ହେବା ସ୍ଥିର କରାଯାଇପାରେ । ଏ ସମ୍ପର୍କରେ ବଳଭଦ୍ର ନନ୍ଦଙ୍କ ପରିବାରରୁ ମିଳିଥିବା ଏକ ପୁରାତନ ହସ୍ତଲିଖିତ ଛିନ୍ନ ପାଣ୍ଡୁଲିପିରୁ ଯେଉଁ ବିବରଣୀ ମିଳେ ତାହା ଏଠାରେ ଉଦ୍ଧାର କରାଯାଉଛି –

*ବଳଭଦ୍ରପୁର ଶାସନରୁ ଜଗଦାନନ୍ଦ ନନ୍ଦେଙ୍କୁ ସୁରଙ୍ଗୀରାଜା ଅଣାଇଲେ । ସେ ସୁରଙ୍ଗୀଠାରେ ରହିଲେ । ତାହାପରେ ତାଙ୍କ ଜ୍ଞାତିର ଅନ୍ୟ ଦୁଇଜଣ ଆସି ଖଲ୍ଲିକୋଟ ବାଟଗାଁ ଓ ବରଗଡ଼ କରଡ଼ାକନ୍ଦାରେ ରହିଲେ । ସୁରଙ୍ଗୀଠାରୁ ପାରଳାକୁ ବିଦ୍ୟାଧର ଭିକାରୀ ନନ୍ଦେ ଆସିଲେ । ଏ ଅନେକ କବିତା ଲେଖିଥିଲେ । ପୂର୍ବ ଜଗନ୍ନାଥ ଦେବ ନାରାୟଣ ଦେବ ଏହାଙ୍କୁ ମାଙ୍ଗାମ୍ବା ପାଲେମୁ ଗ୍ରାମ ଦେଇଥିଲେ । ଟେକାଲି ଜଗଦେବ ବଗ୍ଗାଇପୁରରେ ଦୁଇଭାଗ ଦେଇଥିଲେ । ଏ ପୁରୁଣାପାଟଣା ନିକଟ ବୁରୁଗାଁରେ ଥିଲେ । ଏହାଙ୍କ ପୁଅ ଧନି ନନ୍ଦେ ।*




ଉଭୟ ବଂଶଲତାରେ କିଛି ପାର୍ଥକ୍ୟ ପରିଲକ୍ଷିତ, କିନ୍ତୁ ଏହାର ସମାଧାନ କରିବା ସମ୍ଭବ ହୋଇପାରୁ ନାହିଁ । ଅବଶ୍ୟ ପାରଳା ନନ୍ଦବଂଶର ପୂର୍ବପୁରୁଷମାନେ ପୁରୀ ବଳଭଦ୍ରପୁର ଶାସନରୁ ଆସିଥିବା ନିଶ୍ଚିତ । ସେମାନେ ଗଞ୍ଜାମର ସୁରଙ୍ଗୀ ରାଜ୍ୟ ଦେଇ ପାରଳାଖେମୁଣ୍ଡିରେ ପଦାର୍ପଣ କରିଥିଲେ । ପ୍ରଥମେ ବିଦ୍ୟାଭୂଷଣ ଭିକାରୀ ନନ୍ଦ ପୁରୁଣା ପାଟଣା ନିକଟସ୍ଥ ବୁରୁଗାଁରେ କିଛିବର୍ଷ ବସବାସ କରିଥିଲେ । ସେତେବେଳେ ପୁରୁଣାପାଟଣା ଥିଲା ପାରଳାଖେମୁଣ୍ଡିର ରାଜଧାନୀ । ପ୍ରତାପରୁଦ୍ର ଗଜପତି ନାରାୟଣ ଦେବ (୧୭୪୮-୧୭୬୬) ରାଜ୍ୟର ନିରାପତ୍ତା ଦୃଷ୍ଟିରୁ ରାଜଧାନୀକୁ ପୁରୁଣାପାଟଣାରୁ

ଆଧୁନିକ ପାରଳାଖେମୁଣ୍ଡି ସହରକୁ ଉଠାଇ ଆଣିଥିଲେ । ଫଳରେ ନନ୍ଦ ପରିବାର ମଧ୍ୟ ବୁରୁଗାଁରୁ ଉଠିଆସି ପାରଳାଖେମୁଣ୍ଡିର ରାଜଗୁରୁ ସାହିରେ ନିଜର ନୂତନ ବାସଗୃହ ସ୍ଥାପନା କଲେ । ଏବେ ସୁଦ୍ଧା ନନ୍ଦବଂଶର ଭିଟାମାଟି ସେଠାରୁ ଲୋପ ପାଇ ନାହିଁ ।

ରଘୁନାଥ ନନ୍ଦ ଥିଲେ ସାତୋଟି ପୁତ୍ର ଏବଂ ଗୋଟିଏ କନ୍ୟାର ଜନକ । ଜ୍ୟେଷ୍ଠପୁତ୍ର ବାସୁଦେବଙ୍କ ପ୍ରଖର ସ୍ମରଣଶକ୍ତି ଏବଂ ଅଧ୍ୟୟନ ପ୍ରତି ଆଗ୍ରହ ଲକ୍ଷ୍ୟକରି ପିତା ତାଙ୍କୁ ଉଚ୍ଚତର ଶିକ୍ଷାଲାଭପାଇଁ ବାରାଣାସୀ ପଠାଇଥିଲେ । ସେଠାରେ ବେଦ, ବେଦାନ୍ତ, ଦର୍ଶନ ଓ ସାହିତ୍ୟ ପ୍ରଭୃତି ଅଧ୍ୟୟନ କରି ପ୍ରତ୍ୟାବର୍ତ୍ତନ କରି ଆସିବାବେଳେ ମଞ୍ଜୁଷାଠାରେ ସେ ବିସୂଚିକା ରୋଗରେ ଆକ୍ରାନ୍ତ ହୋଇପଡ଼ିଲେ । ସେଠାରେ ହିଁ ତାଙ୍କର ଅକାଳ ମୃତ୍ୟୁ ଘଟିଲା । ତୃତୀୟ ପୁତ୍ର ବଳଭଦ୍ର ଥିଲେ ଜ୍ୟେଷ୍ଠଭ୍ରାତା ଗୋପୀନାଥଙ୍କ ଅତ୍ୟନ୍ତ ଅନୁଗତ ଓ ସାହିତ୍ୟ ସାଧନାର ସହାୟକ । ନାଟ୍ୟ ନିର୍ଦ୍ଦେଶନା ଏବଂ ମଞ୍ଚ ପରିଚାଳନାରେ ତାଙ୍କର ଯଥେଷ୍ଟ ଦକ୍ଷତା ଥିଲା । କିଛିବର୍ଷ ପାଇଁ ସେ ପଦ୍ମନାଭ ରଙ୍ଗାଳୟର ପରିଚାଳନାରେ ମଧ୍ୟ ରହିଥିଲେ । ତାଙ୍କଦ୍ୱାରା ହିଁ ପତ୍ରିକା ପୃଷ୍ଠାରୁ ସଂଗୃହୀତ ହୋଇ ଗୋପୀନାଥଙ୍କ ମହାଭାରତ ସମାଲୋଚନା ଏବଂ ଭାଷାତାତ୍ତ୍ୱିକ ପ୍ରବନ୍ଧଗୁଡ଼ିକ ପୁସ୍ତକାକାରରେ ପ୍ରକାଶିତ । ଗୋପୀନାଥଙ୍କ ନାଟକଗୁଡ଼ିକର ରଚନା ଏବଂ ମଞ୍ଚାୟନରେ ସେ ଥିଲେ ସହଯୋଗୀ । ଭ୍ରାତୃପ୍ରୀତିର ନିଦର୍ଶନ ସ୍ୱରୂପ ନାଟ୍ୟକାର ଗୋପୀନାଥ ନିଜ 'ବିକ୍ରମୋର୍ବଶୀୟ' ନାଟକରେ ତାଙ୍କ ରଚିତ ଦୁଇଟି ସଙ୍ଗୀତକୁ ସ୍ଥାନିତ କରିଛନ୍ତି । ବଳଭଦ୍ରଙ୍କ ପ୍ରଥମା ପତ୍ନୀ ବୈଦେହୀଙ୍କ (ଦ୍ୱିତୀୟ କମଳା) ପୁତ୍ର ରାସବିହାରୀଙ୍କୁ ହିଁ ଗୋପୀନାଥ ଦତ୍ତପୁତ୍ର ରୂପେ ଗ୍ରହଣ କରିଥିବା ତାଙ୍କ ପରିବାରରୁ ଜଣାଯାଏ । ରାସବିହାରୀ ଶୈଶବରେ ହିଁ ବାଣ ଫୁଟାଇଲା ବେଳେ ମୃତ୍ୟୁବରଣ କରିଥିଲା । ରଘୁନାଥଙ୍କ ଚତୁର୍ଥପୁତ୍ର ନରସିଂହ ନନ୍ଦ । ସେ ନରହତ୍ୟା ଦୋଷରେ ଆଜୀବନ କାରାଦଣ୍ଡରେ ଦଣ୍ଡିତ ହୋଇ କଳାପାଣିରେ କାରାବାସ କରିଥିଲେ । ପାରଳାଖେମୁଣ୍ଡିର ବୟୋଜ୍ୟେଷ୍ଠ ବ୍ୟକ୍ତି ଏବଂ ଜନଶ୍ରୁତି କହନ୍ତି, ଏହି ନରହତ୍ୟା ତାଙ୍କଦ୍ୱାରା ସଂଘଟିତ ନ ହୋଇ ଜ୍ୟେଷ୍ଠ ଭ୍ରାତା ଗୋପୀନାଥଙ୍କ ଦ୍ୱାରା ଅକସ୍ମାତ ହୋଇଯାଇଥିଲା । ଭ୍ରାତୃଭକ୍ତିରୁ ଏବଂ ଗୋପୀନାଥଙ୍କ ସାହିତ୍ୟ ସାଧନକୁ ଅବ୍ୟାହତ ରଖିବା ନିମିତ୍ତ ଏହି ଦୋଷକୁ ନିଜେ ମୁଣ୍ଡାଇ ନେଇ ସେ କାରାବରଣ କରିଥିଲେ । ଅବଶ୍ୟ ଏହାର ସତ୍ୟତା ତଥାପି ପ୍ରମାଣ ସାପେକ୍ଷ, କିନ୍ତୁ ଶୁଣାଯାଏ କୌଣସି ପ୍ରେତାତ୍ମାର ଉତ୍ପୀଡ଼ନରୁ ଗୋପୀନାଥ ତାଙ୍କ ଗୃହର ମଧ୍ୟଭାଗରେ ଥିବା ଠାକୁର ଗୃହ ମଧ୍ୟରେ ବିନିଦ୍ର ରଜନୀ ଯାପନ କରିବାପାଇଁ ବାଧ୍ୟ ହେଉଥିଲେ । ନରସିଂହଙ୍କ ସମ୍ପର୍କରେ ପୁଣି ଶୁଣାଯାଏ, ସେ କଳାପାଣିରୁ ଫେରି ବିବାହ କରିଥିଲେ ଏବଂ ତାଙ୍କ ପୁତ୍ର ହିଁ ଥିଲା ଗୋପୀନାଥ ନନ୍ଦଙ୍କ କୃତକ ପୁତ୍ର ରାସବିହାରୀ । କୌଣସି ଦୀପାବଳୀ ଅବସରରେ ବାଣ ତିଆରି ବେଳେ ଉଭୟ ପିତା ଓ ପୁତ୍ରଙ୍କ ଦେହାନ୍ତ ହୋଇଥିଲା । ମାତ୍ର ଶହେବର୍ଷର ବ୍ୟବଧାନରେ ଏପରି ଏକ ପ୍ରତିଷ୍ଠିତ ପରିବାର

ସମ୍ପର୍କରେ ସଠିକ୍ ବିବରଣୀ ନ ମିଳିବା ବିଚିତ୍ର ମନେହୁଏ । ବଂଶୀଧର ଏବଂ ଗୋବିନ୍ଦଙ୍କ ସମ୍ପର୍କରେ ବିଶେଷ କିଛି ତଥ୍ୟ ମିଳେ ନାହିଁ । ସେମାନେ ବୋଧହୁଏ ନିଃସନ୍ତାନଭାବେ ଅକାଳରେ ମୃତ୍ୟୁବରଣ କରିଥିଲେ । ଗୋପୀନାଥଙ୍କ କନିଷ୍ଠ ଭ୍ରାତା ମଦନମୋହନ କୌଳିକ ବୈଦ୍ୟବୃତ୍ତିରେ ଥିଲେ ପ୍ରବୀଣ । 'ଭିଷକ୍ ଚୂଡ଼ାମଣି' ତାଙ୍କର ଏକ ବିଶିଷ୍ଟ ଆୟୁର୍ବେଦ ଗ୍ରନ୍ଥ । ଏତଦ୍‌ବ୍ୟତୀତ ସାହିତ୍ୟ ଓ ସଙ୍ଗୀତ କ୍ଷେତ୍ରରେ ଜ୍ୟେଷ୍ଠଭ୍ରାତାମାନଙ୍କ ଅନୁଗାମୀ ହୋଇ ସେ "ସୁଭକ୍ତ କର୍ଣ୍ଣାମୃତ", "ଶରତ ରାସୋତ୍ସବ", "ରାଧାମାଧବ ଚମ୍ପୂ" ପରି କେତୋଟି ସାହିତ୍ୟ କୃତି ରଚନା କରିଛନ୍ତି । ସେ ମଧ୍ୟ ଅପୁତ୍ରକ ଥାଇ ଉମାକାନ୍ତଙ୍କୁ ଦତ୍ତପୁତ୍ର ରୂପେ ଗ୍ରହଣ କରିଥିଲେ । ଗୋଟିଏ ପରିବାରରେ ଛଅଜଣ ଭ୍ରାତାଙ୍କ ବଂଶରକ୍ଷା ପାଇଁ ପୁତ୍ରଟିଏ ନଥିବା ମଧ୍ୟ ବଡ଼ ଆଶ୍ଚର୍ଯ୍ୟଜନକ । ବଳଭଦ୍ର ନନ୍ଦଙ୍କ ଜୀବିତ ଥିବା ଗୋଟିଏ କନ୍ୟା ମଞ୍ଜୁଷାର ସାନ ଅଗାଧୁ ଆଚର୍ଯ୍ୟଙ୍କ ସହ ବିବାହ କରିଥିଲା । ସେ କିନ୍ତୁ ଅକାଳରେ ଚାଲିଯିବାରୁ ଅଗାଧୁ ଦ୍ୱିତୀୟ ବିବାହ କରି ସୁଦ୍ଧା ନିଃସନ୍ତାନ ଥିଲେ । ଏଣୁ ତାଙ୍କଦ୍ୱାରା ଗୃହୀତ ପୁତ୍ର କାଳିଚରଣ ନନ୍ଦଙ୍କ ବଂଶଧରମାନେ ଆଜି ନନ୍ଦବଂଶର ସ୍ମୃତିକୁ ଜାଗ୍ରତ ରଖିଛନ୍ତି । ଏହି ବଂଶର ଅନ୍ୟତମ ବଂଶଧର ମଞ୍ଜୁଷାଠାରେ ରହୁଥିବା ଡାକ୍ତର ସତ୍ୟନାରାୟଣ ନନ୍ଦଙ୍କଠାରୁ ହିଁ ଆମେ କିଛି ତଥ୍ୟ ସଂଗ୍ରହ କରିବାପାଇଁ ସମର୍ଥ ହୋଇପାରିଛୁ । ସେ ନନ୍ଦବଂଶର କୌଳିକ ବୃତ୍ତି ଓ କୀର୍ତ୍ତିକୁ ଆଜିପର୍ଯ୍ୟନ୍ତ ମ୍ଳାନୀଭୂତ ହେବାକୁ ଦେଇନାହାନ୍ତି ।

-୩-

ଗୋପୀନାଥ ନନ୍ଦଙ୍କ ଜୀବନୀ ଆଲୋଚନା କଲେ ମନେହୁଏ ଓଡ଼ିଆ ଭାଷା ଓ ସାହିତ୍ୟରେ ଏକ ବଡ଼ ଅଭାବ ପୂରଣ କରିବା ପାଇଁ ବିଧାତା ତାଙ୍କୁ ପ୍ରେରଣ କରିଥିଲେ । ସଂସାର ଓ ସାଂସାରିକ ବିଷୟ ଜଞ୍ଜାଳଠାରୁ ଦୂରେଇ ନ ରହିଲେ ସାହିତ୍ୟ ସୃଷ୍ଟି କରିବା, ନିଜର ଗୋଷ୍ଠୀ ଗଠନକରି ସୁନାମ ଅର୍ଜନ କରିବା କିମ୍ୱା ଉପାଧି ଓ ମାନପତ୍ରରେ ଆଚ୍ଛାଦିତ ହୋଇପଡ଼ିବା ସମ୍ଭବ, କିନ୍ତୁ କାଳଜୟୀ ରଚନା ସୃଷ୍ଟିକରି ମାତୃସାହିତ୍ୟର ଅଭାବ ପୂରଣ ସହିତ ସ୍ୱାଭିମାନକୁ ଜାଗ୍ରତ ରଖିବା ସମ୍ଭବ ନୁହେଁ । ସାହିତ୍ୟ କ୍ଷେତ୍ରରେ ଏପରି ସାଧକ ବିରଳ ନୁହନ୍ତି କିନ୍ତୁ ଅଙ୍ଗୁଳିମେୟ । ଏମାନଙ୍କପାଇଁ ସାହିତ୍ୟ ଏକ ସୌଖିନ ବିଳାସ ନୁହେଁ କିମ୍ୱା ଆତ୍ମପ୍ରଚାରର ଏକ ମାଧ୍ୟମ ନୁହେଁ, କିନ୍ତୁ ସାହିତ୍ୟ ଏମାନଙ୍କ ପ୍ରାଣ, ଧନସମ୍ପତ୍ତି, ସନ୍ତାନସନ୍ତତି, ପ୍ରିୟାପ୍ରୀତି ଅପେକ୍ଷା ଅଧିକ ଆତ୍ମୀୟ ଓ ମୂଲ୍ୟବାନ । ଏମାନେ ନିଜ ଭାଷା ଓ ସାହିତ୍ୟର ଅତୀତକୁ ଅନୁଶୀଳନ କରନ୍ତି, ତା'ର ସ୍ୱାତନ୍ତ୍ର୍ୟ ଓ ସମୃଦ୍ଧିକୁ ଅନ୍ୟମାନଙ୍କ ସମ୍ମୁଖରେ ଉପସ୍ଥାପନ କରନ୍ତି, ସମସାମୟିକ ସୃଷ୍ଟିର ଦୋଷ ଗୁଣ ସମ୍ପର୍କରେ ସଚେତନତା ସୃଷ୍ଟି କରନ୍ତି ଏବଂ ଭବିଷ୍ୟତ ସାଧକମାନଙ୍କପାଇଁ ଅଭିନବ ମାର୍ଗର ସନ୍ଧାନ ଦିଅନ୍ତି । ଗୋପୀନାଥ ନନ୍ଦ ଓଡ଼ିଆ ଭାଷା ଓ ସାହିତ୍ୟ ପାଇଁ ଏହିପରି ଜଣେ ଉତ୍ସର୍ଗୀକୃତ ସାହିତ୍ୟ ସାଧକ । । ଗୋପବନ୍ଧୁଙ୍କ ଭାଷାରେ "ନାମରେ ପ୍ରୟାସ ନାହିଁ, ଅର୍ଥରେ ପିପାସା ନାହିଁ,

ନିନ୍ଦା ସ୍ତୁତି ପ୍ରତି ଭ୍ରୂକ୍ଷେପ ନାହିଁ । ଅନନ୍ୟ ଚିତ୍ତରେ କେବଳ ସାହିତ୍ୟ ନିମନ୍ତେ ସାହିତ୍ୟର ଅନୁଶୀଳନ ନନ୍ଦ ମହାଶୟଙ୍କ ଜୀବନର ବ୍ରତ ହୋଇଅଛି ।'' ଶୈଶବରୁ ହିଁ ଗୋପୀନାଥଙ୍କ ଭାବି ସାଧକ ଜୀବନର ସୂଚନା ମିଳୁଥିଲା । ଭାଇ ଭଉଣୀ ଓ ରାଜଗୁରୁ ସାହିର ଶିଶୁମାନେ ଦାଣ୍ଡରେ ଖେଳାବୁଲା ହୋହଲ୍ଲା କରୁଥିଲାବେଳେ ସେ ଏକାନ୍ତରେ ରହିବାପାଇଁ ଭଲ ପାଉଥିଲେ । ଅନ୍ୟ ଶିଶୁମାନଙ୍କଠାରୁ ତାଙ୍କ ସ୍ୱଭାବ ଥିଲା ଭିନ୍ନ । ଶୈଶବ ଓ କୈଶୋର ଜୀବନର ଏହି ଏକାନ୍ତପ୍ରୀତି ପରବର୍ତ୍ତୀ ଜୀବନରେ ତାଙ୍କୁ କିପରି ଅସୁବିଧାର ସମ୍ମୁଖୀନ କରାଇଥିଲା ସେ ସମ୍ପର୍କରେ ସୂଚନା ଦେଇ ତାଙ୍କର ଅନ୍ୟତମ ପୃଷ୍ଠପୋଷକ ଧରାକୋଟ ରାଜା ମଦନମୋହନ ସିଂହଦେବ 'ଶବ୍ଦତତ୍ତ୍ୱବୋଧ ଅଭିଧାନ' ଗ୍ରନ୍ଥର ଭୂମିକାରେ ଲେଖିଛନ୍ତି –

> *ମୁଁ ଯେତେଦୂର ଜାଣେ, ଏ ପଣ୍ଡିତ ମହାଶୟ ଶୈଶବରୁ ଖେଳ ଖେୟାଲ ଜାଣନ୍ତି ନାହିଁ । ପିଲାବେଳେ ପିଲାଙ୍କ ସଙ୍ଗେ ଧୂଳିଖେଳା ସୁଦ୍ଧା କରିଅଛନ୍ତି କି ନାହିଁ କହି ନ ପାରେଁ । ତାହା ତାଙ୍କର ମନେ ନାହିଁ ବୋଲି କହନ୍ତି । ଅତଏବ ଖେଳରେ ବ୍ୟବହୃତ ଶବ୍ଦଗୁଡ଼ିକରେ ସେ ସଂପୂର୍ଣ୍ଣ ଅନଭିଜ୍ଞ । ସେପରି ଶବ୍ଦମାନ କୌଣସି ପୁସ୍ତକରୁ ତ ବାହାରି ନ ପାରେ, ସୁତରାଂ ସେଭଳି ପୁସ୍ତକ ତ ଓଡ଼ିଆରେ ଆଜଯାଏଁ ଲେଖା ହୋଇନାହିଁ । ଏତେବେଳେ ଯେ ଅନଭିଜ୍ଞତାର ଅପନୟନ ନ କଲେ ନ ଚଳେ । ସେଥିପାଇଁ ନାନା ପ୍ରକାର ଖେଳାଳୀଙ୍କର ଆଶ୍ରୟ ନେଇ ଅଛନ୍ତି ।* (*ଶବ୍ଦତତ୍ତ୍ୱବୋଧ ଅଭିଧାନ – ମୁଖବନ୍ଧ*)

ଗୋପୀନାଥଙ୍କ ବାଲ୍ୟଶିକ୍ଷା ସ୍ୱଗୃହରୁ ହିଁ ଆରମ୍ଭ ହୋଇଥିବା ସ୍ୱାଭାବିକ । ପିତା ରାଜବୈଦ୍ୟ ଏବଂ ମାତା ଏକ ବିଦ୍‌ବତ୍ ପରିବାରର କନ୍ୟା । ତେଣୁ ପ୍ରଚଳିତ ପରଂପରା ଅନୁଯାୟୀ ଅମରକୋଷ, ଚାଣକ୍ୟନୀତି, ସରଳ ସ୍ତୁତିସ୍ତୋତ୍ର, ଲଘୁ କୌମୁଦୀ ବା ସିଦ୍ଧାନ୍ତ ଚନ୍ଦ୍ରିକାରୁ ତାଙ୍କ ଖଡ଼ିପାଠ ଆରମ୍ଭ ହୋଇଥିବ । କୌଣସି ଚାଟଶାଳୀ ବା ବିଦ୍ୟାଳୟରେ ନାମ ଲେଖାଇବା ପୂର୍ବରୁ ଏ ସବୁକୁ ମୁଖସ୍ଥ କରାଇବା ପଣ୍ଡିତ ପରିବାରର ପରଂପରାଗତ ପ୍ରାଥମିକ ଶିକ୍ଷା । ଏହାପରେ ସେ ନିତ୍ୟାନନ୍ଦ ଶତପଥୀଙ୍କ ଭଣ୍ଡାରିସାହି ଚାଟଶାଳୀରେ ଆନୁଷ୍ଠାନିକ ଶିକ୍ଷାଲାଭପାଇଁ ପ୍ରବେଶ କରିଥିଲେ । ସେତେବେଳେ ଜଣେ ଜଣେ ଶିକ୍ଷକ ବା ଅବଧାନଙ୍କଦ୍ୱାରା ଏହିପରି ଚାଟଶାଳୀମାନ ପରିଚାଳିତ ହେଉଥିଲା । ଏଠାରେ କିଛି ଭାଷା, ସାହିତ୍ୟ ଓ ଅଙ୍କ ଶିକ୍ଷା ପରେ ଗୋପୀନାଥ ପାରଳାଖେମୁଣ୍ଡିରେ ସ୍ଥାପିତ ସରକାରୀ ବିଦ୍ୟାଳୟରେ ଯୋଗଦେଇ ଫାଷ୍ଟ ଫର୍ମ ବା ଷଷ୍ଠଶ୍ରେଣୀ ପର୍ଯ୍ୟନ୍ତ ଇଂରେଜୀ ଓ ତେଲୁଗୁ ଭାଷା ସହିତ ଆଧୁନିକ ପାଠ୍ୟପୁସ୍ତକମାନ ଅଧ୍ୟୟନ କରିବାର ସୁଯୋଗ ପାଇଥିଲେ । କେତେକ ବିଶିଷ୍ଟ କାରଣରୁ ଏହିଠାରେ ହିଁ ତାଙ୍କ ଆନୁଷ୍ଠାନିକ ଶିକ୍ଷାରେ ପୂର୍ଣ୍ଣଚ୍ଛେଦ ପଡ଼ିଯାଇଥିଲା ।

ତତ୍କାଳୀନ ପ୍ରଥାନୁଯାୟୀ ପିତା କିଶୋର ଗୋପୀନାଥଙ୍କୁ ୧୪ବର୍ଷ ବୟସରେ ବିବାହ ବନ୍ଧନରେ ବାନ୍ଧି ଦେଇଥିଲେ । ନିକଟବର୍ତ୍ତୀ ଦଶରଥପୁର (ପଣ୍ଡିତ ସୂର୍ଯ୍ୟନାରାୟଣ ଦାଶଙ୍କ ଜନ୍ମସ୍ଥାନ) ଗ୍ରାମର ଏକ ନୈଷ୍ଠିକ ବ୍ରାହ୍ମଣ ପରିବାରର ନାବାଳିକା କନ୍ୟା ସହ ତାଙ୍କ ବିବାହ ସମ୍ପନ୍ନ ହୋଇଥିଲା । କିନ୍ତୁ ଦୁର୍ଭାଗ୍ୟବଶତଃ ବିବାହର ଗୋଟିଏ ବର୍ଷ ମଧ୍ୟରେ କନ୍ୟାଟି ମୃତ୍ୟୁମୁଖରେ ପଡ଼ିଥିଲା । ଦୁର୍ଭାଗ୍ୟବଶତଃ ଗୋପୀନାଥ ସେହିବର୍ଷ ହିଁ ମାତୃ ସ୍ନେହରୁ ଚିରଦିନପାଇଁ ବଞ୍ଚିତ ହୋଇଥିଲେ । ଉଭୟ ଦୁଃଖଦ ଘଟଣା ତାଙ୍କ ମନରେ ଗଭୀର ରେଖାପାତ କରିଥିଲା । ଶୈଶବରୁ ପିତାଙ୍କ ସହିତ ପାରଳାଖେମୁଣ୍ଡିର ବିଭିନ୍ନ ମଠମନ୍ଦିରକୁ ସକାଳ ଓ ସଂଧ୍ୟାରେ ଯିବା ଥିଲା ତାଙ୍କ ଦୈନନ୍ଦିନ ଅଭ୍ୟାସ । ସାଂଧ୍ୟ ଆଳତୀ ଦର୍ଶନ, ସ୍ଥାନୀୟ ଓ ଅତିଥି ବୈଷ୍ଣବମାନଙ୍କ ଗହଣରେ ଭଜନ କୀର୍ତ୍ତନରେ ସେ ଯୋଗ ଦେଉଥିଲେ । ଶିଶୁକଣ୍ଠର ଭଜନ ଆବୃତ୍ତି ଏବଂ ଶିଶୁଟିର ଭକ୍ତିଭାବନା ସେମାନଙ୍କୁ ମୁଗ୍ଧ କରୁଥିଲା । ସେ ସମୟରେ ବିଭିନ୍ନ ସ୍ୱଚ୍ଛଳ ମଠମାନଙ୍କୁ ଆସୁଥିବା ନାଗା ସନ୍ନ୍ୟାସୀମାନେ କିଶୋର ବୟସର ପିଲାମାନଙ୍କ ମନରେ କମ୍ କୌତୂହଳ ସୃଷ୍ଟି କରୁ ନଥିଲେ । ସେମାନଙ୍କ ବେଶଭୂଷା, ଧୁନି ପ୍ରଜ୍ୱଳନ, ଓଟ, ହାତୀ ପ୍ରଭୃତି ଯାନବାହନ ଏ ଅଞ୍ଚଳପାଇଁ ଥିଲା ଅଭିନବ । ଏହା ସହିତ ସେମାନଙ୍କଠାରୁ ବିଚିତ୍ର ଭ୍ରମଣ କାହାଣୀମାନ ଶୁଣି କିଶୋର ବୟସର ପିଲାମାନଙ୍କ ମନରେ ସନ୍ନ୍ୟାସ ହେବାର ସ୍ୱପ୍ନ ଉଙ୍କି ମାରୁଥିଲା । ଅନୂଢ଼ା ପତ୍ନୀ ଏବଂ ମାତୃହରା ଗୋପୀନାଥ ମଧ୍ୟ ଏ ପ୍ରକାର ସ୍ୱପ୍ନରେ ବିଭୋର ହୋଇ ପରିବାରର ଅଜ୍ଞାତସାରରେ ଏପରି ଏକ ଦଳ ସହିତ ଗୃହରୁ ପଳାୟନ କରିଥିଲେ, କିନ୍ତୁ ପିତା କଟକଠାରୁ ତାଙ୍କୁ ଫେରାଇ ଆଣିବା ଫଳରେ ତାଙ୍କ ସନ୍ନ୍ୟାସ ହେବାର ସ୍ୱପ୍ନ ସଫଳ ହୋଇପାରିଲା ନାହିଁ । ସନ୍ନ୍ୟାସୀ ହେବା ସମସ୍ତଙ୍କ ଜାତକରେ ଲେଖା ନ ଥାଏ । ଉତ୍କଳ ଜନନୀର ସେବା କରିବାପାଇଁ ଯା'ର ଜନ୍ମ, ସେ ଓଡ଼ିଶା ବାହାରକୁ ଯିବ ବା କିପରି ! ସନ୍ନ୍ୟାସ ହେବା ସିନା ହେଲା ନାହିଁ କିନ୍ତୁ ଜଣେ ଗୃହୀ ସନ୍ନ୍ୟାସୀର ଜୀବନଚର୍ଯ୍ୟା ଆଜୀବନ ତାଙ୍କୁ ନିୟନ୍ତ୍ରଣ କରିଥିଲା । ତାଙ୍କ ଦୈନନ୍ଦିନ ଜୀବନଚର୍ଯ୍ୟା ଓ ବ୍ୟକ୍ତିତ୍ୱ ସଂପର୍କରେ ତାଙ୍କ ପ୍ରତ୍ୟକ୍ଷ ସମ୍ପର୍କରେ ଆସିଥିବା ଛାତ୍ର ସ୍ୱର୍ଗତ ରାଧାଚରଣ ପଣ୍ଡା ଜଣାଇଛନ୍ତି –

> *ବୈଷ୍ଣବ ବ୍ରାହ୍ମଣ ହେବାରୁ ତାହାଙ୍କର ବେକରେ ଦୁଇ ସରା ତୁଳସୀ ମାଳି ଥିଲା । ସେ ନାକରେ କଳୀ ଚିତା କାଟୁଥିଲେ । ସଂଧ୍ୟା ସମୟରେ ନିଜ ଠାକୁରଙ୍କଠାରେ ସଂକୀର୍ତ୍ତନ, ଧୂପ ଦୀପ ପ୍ରଭୃତି ଦେଇ ନିଜ ପିଣ୍ଡାରେ ବସି 'ଝୁଲି ମୁଣା' ଧରି ମାଳୀ ଗଡ଼ାଉଥିଲେ । ନିଜର ଠାକୁର ମଧ୍ୟରୁ ଶ୍ରୀକୃଷ୍ଣ ଚନ୍ଦ୍ରମା, ଶ୍ରୀରାଧା ଓ ଲଳିତା ମୂର୍ତ୍ତିକୁ ରଖିଥିଲେ । ପ୍ରତିଦିନ ତ୍ରିକାଳ ସନ୍ଧ୍ୟାରେ ସେମାନଙ୍କର ସେବାପୂଜା ଓ ଭୋଗ ପ୍ରଭୃତି ସେ ନିଜେ କରୁଥିଲେ । ଅଧିକାଂଶ ସମୟରେ ସେ 'ନିରାମିଷ' ଖାଦ୍ୟ*

*ଖାଉଥିଲେ । ସୋମବାର, ଗୁରୁବାର, ଦଶମୀ, ଏକାଦଶୀ, ଅମାବାସ୍ୟା ଓ ସଂକ୍ରାନ୍ତି ଦିନଗୁଡ଼ିକରେ ସେ ଜଳଖିଆ ଖାଇ ରହୁଥିଲେ ।*

*ପ୍ରୌଢ଼ ବୟସଠାରୁ ମୃତ୍ୟୁ ପର୍ଯ୍ୟନ୍ତ ସେ ଅତି ଶାନ୍ତ, ଧୀର ସ୍ଥିର ଭାବରେ ଗ୍ରାମର ସମସ୍ତଙ୍କ ସାଙ୍ଗରେ ବନ୍ଧୁ ଭାବରେ ଚଳୁଥିଲେ । କୌଣସି ଲୋକ ସହିତ କଳିକଜିଆ କିମ୍ବା ଅଯଥା ମାଲି ମକଦ୍ଦମା ପ୍ରଭୃତି କେବେ କରି ନଥିଲେ । (ଗୋପୀନାଥ ଗ୍ରନ୍ଥାବଳୀରେ ଥିବା ଜୀବନ ଚରିତ, ପୃ-୩୮) ।*

**[ ଗୋପୀନାଥଙ୍କ ଠାକୁରଘରେ ଥିବା କୁଳଦେବତା ଶ୍ରୀକୃଷ୍ଣ, ଶ୍ରୀରାଧା ଏବଂ ଶ୍ରୀଲଳିତା ତ୍ରିମୂର୍ତ୍ତିଙ୍କ ପ୍ରତିଚିତ୍ର ପ୍ରଚ୍ଛଦପଛରେ ପ୍ରଦତ୍ତ । ଏ ତ୍ରିମୂର୍ତ୍ତି ବର୍ତ୍ତମାନ ପଥର ବାବାଜି ମଠରେ ପୂଜା ପାଉଛନ୍ତି । ]**

ପୁତ୍ରକୁ ସଂସାରାଭିମୁଖୀ କରିବାପାଇଁ ପିତା ତାଙ୍କୁ ପୁଣି ଥରେ ବିବାହ ବନ୍ଧନରେ ଆବଦ୍ଧ କଲେ । ଦ୍ୱିତୀୟା ପତ୍ନୀ ଥିଲେ ଆଧୁନିକ ଭଞ୍ଜନଗର ନିକଟବର୍ତ୍ତୀ ପରସୁଲୁଣ୍ଡା ବା ପ୍ରତାପ ଲକ୍ଷ୍ମଣପୁର ଶାସନର ଏକ ପ୍ରସିଦ୍ଧ ପଣ୍ଡିତ ପରିବାରର କନ୍ୟା । ପିତା ପୀତାମ୍ବର ବ୍ରହ୍ମା ଆୟୁର୍ବେଦ ଓ ତନ୍ତ୍ରଶାସ୍ତ୍ରରେ ପ୍ରବୀଣ; ଭ୍ରାତା ଚନ୍ଦ୍ରଶେଖର ବ୍ରହ୍ମା ସେ କାଳର ଜଣେ ବହୁଶାସ୍ତ୍ରଦର୍ଶୀ ପ୍ରତ୍ୟୁତ୍ପନ୍ନମତି ସ୍ୱନାମଧନ୍ୟ ପଣ୍ଡିତ; କନିଷ୍ଠା ଭଗିନୀ ରମା ମଧ୍ୟ ଭଞ୍ଜ ସାହିତ୍ୟ, ବିଶେଷତଃ ବୈଦେହୀଶ ବିଳାସର ପାଣ୍ଡିତ୍ୟପୂର୍ଣ୍ଣ ବ୍ୟାଖ୍ୟା କରିବାରେ ବିଦଗ୍ଧା । ଏପରି ଏକ ପଣ୍ଡିତ ତଥା ଆଚାରନିଷ୍ଠ ପରିବାରରୁ ଆସିଥିବା ଯୋଗୁଁ ଅପର୍ଣ୍ଣା ଗୋପୀନାଥଙ୍କ ଯଥାର୍ଥ ସହଧର୍ମିଣୀ ଓ ସହକର୍ମିଣୀ ହୋଇପାରିଥିଲେ । ଗୋପୀନାଥଙ୍କ ଆର୍ଥିକ ଅବସ୍ଥାନ ଅସ୍ୱଚ୍ଛଳ ନଥିଲା । ରାଜପ୍ରଦତ୍ତ ଜମିଜମାରୁ ଯେଉଁ ଶସ୍ୟ ଆଦାୟ ହେଉଥିଲା ସେଥିରେ ନନ୍ଦ ପରିବାର ସ୍ୱଚ୍ଛନ୍ଦରେ ଚଳିଯାଉଥିଲେ । ଏହା ବ୍ୟତୀତ ନିଜର ଓ ଭ୍ରାତାମାନଙ୍କ ଆୟ ମିଶି ଯାଉଥିଲା । ଆଡ଼ମ୍ବରପୂର୍ଣ୍ଣ ଜୀବନଯାପନ ପ୍ରତି ମୋହ ନଥିବା ଯୋଗୁଁ ନନ୍ଦେ ଅଭାବୀ ନଥିଲେ । ଅଭାବ ତ ଏକ ମାନସିକ ବ୍ୟାଧି । ଆନୁଷ୍ଠାନିକ ଶିକ୍ଷା ନ ଥିଲେ ସୁଦ୍ଧା ନିଜର ପାଣ୍ଡିତ୍ୟ ଓ ଶାସ୍ତ୍ରଚର୍ଚ୍ଚା ବଳରେ ସେ ପାରଳାଖେମୁଣ୍ଡି ରାଜକୀୟ ମହାବିଦ୍ୟାଳୟରେ ପ୍ରଥମେ ଦ୍ୱିତୀୟ ଓ ପରେ ହେଡ୍ ପଣ୍ଡିତ ରୂପେ ଦୀର୍ଘ ୨୩ ବର୍ଷ କାଳ ନିଯୁକ୍ତ ଥିଲେ । ଥରେ ଏହି ପଦରୁ ଅବ୍ୟାହତି ନେଲେ ସୁଦ୍ଧା ପୁଣିଥରେ ତାଙ୍କୁ ସେହି ପଦରେ ନିଯୁକ୍ତି ଦିଆଯାଇଥିଲା ।

ଗୋପୀନାଥଙ୍କ ସାରସ୍ୱତ ସାଧନାପାଇଁ ବିଧାତା ଏପରି ଅନୁକୂଳ ପରିସ୍ଥିତି ସୃଷ୍ଟି କରିଥିଲେ ମଧ୍ୟ ତାଙ୍କୁ ବହୁ ପ୍ରତିକୂଳ ପରିସ୍ଥିତିର ସମ୍ମୁଖୀନ କରାଇଥିଲା । ସୁଗୃହିଣୀଟିଏ ପାଇ ସୁଦ୍ଧା ସେ ଥିଲେ ନିଃସନ୍ତାନ । ପିଣ୍ଡ ଆଶାୟୀ ହୋଇ ପୋଷ୍ୟପୁତ୍ର ଗ୍ରହଣ କରି ମଧ୍ୟ ତାଙ୍କ ଆଶା ପୂର୍ଣ୍ଣ ହୋଇପାରି ନଥିଲା । ବାଣ ତିଆରି ବେଳେ ବିସ୍ଫୋରଣ ଯୋଗୁଁ କୈଶୋରରେ ହିଁ ଗୋପୀନାଥ ଦମ୍ପତିଙ୍କୁ ତ୍ୟାଗକରି ଚାଲିଯାଇଥିଲା । ଗୋପୀନାଥ ପୁତ୍ର

ବାତ୍ସଲ୍ୟରୁ ବଞ୍ଚିତ ହେଲେ, କିନ୍ତୁ ଶାସ୍ତ୍ରଚର୍ଚ୍ଚାରେ ଏକାଗ୍ରତା ଭଙ୍ଗ କରିବାପାଇଁ ସନ୍ତାନର ଭବିଷ୍ୟତ ଚିନ୍ତା ଆଉ ରହିଲା ନାହିଁ । ମାନସସନ୍ତାନମାନେ ହିଁ ତାଙ୍କ ସ୍ମୃତିକୁ ଏପର୍ଯ୍ୟନ୍ତ ଉଜ୍ଜୀବିତ ରଖିପାରିଛନ୍ତି । ଶବ୍ଦତତ୍ତ୍ୱବୋଧ ଅଭିଧାନ, ଓଡ଼ିଆ ଭାଷାତତ୍ତ୍ୱ, ଶ୍ରୀଭାରତ ଦର୍ପଣ ତାଙ୍କର ଗୋଟିଏ ଗୋଟିଏ ମାନସସନ୍ତାନ ନୁହନ୍ତି କି ?

କୌଳିକ ବୈଦ୍ୟ ବୃତ୍ତିରେ ଗୋପୀନାଥ ଥିଲେ ପ୍ରବୀଣ । ରୋଗନିଦାନ, ଔଷଧ ପ୍ରୟୋଗ, ପଥ୍ୟାପଥ୍ୟବିନିଶ୍ଚୟ, କର୍ମବିପାକ ଓ ପ୍ରାୟଶ୍ଚିତ ବିଧାନ ସଂପର୍କରେ ଧୂରୀଣ କିନ୍ତୁ ନିଜ ହସ୍ତରେ ଔଷଧ ପ୍ରଦାନ କରିବାର ସୌଭାଗ୍ୟ ବିଧାତା ତାଙ୍କୁ ଦେଇ ନଥିଲେ । ବହୁ ସ୍ୱନାମଧନ୍ୟ ଚିକିତ୍ସକଙ୍କ ପରି ସେ ଥିଲେ ବିଷହସ୍ତା । ତେଣୁ ବୈଦ୍ୟବୃତ୍ତି ତାଙ୍କ ପାଇଁ ଗୌଣ ହୋଇ ପଡ଼ିଥିଲା ।

ଅନୁରୂପଭାବେ ଦୈବ ପ୍ରତିକୂଳତା ତାଙ୍କୁ ଶ୍ରବଣ ଶକ୍ତିରହିତ କରିଦେଇଥିଲା । ନିକଟରେ ବଜ୍ରପାତ ହେବା ଫଳରେ ତାଙ୍କ ଶ୍ରବଣଶକ୍ତି ଦୁର୍ବଳ ହୋଇପଡ଼ିଥିଲା । କିନ୍ତୁ ଏହାଦ୍ୱାରା ଈର୍ଷାଳୁମାନଙ୍କ ଚୁଗୁଲି, ଗାଁ ଦାଣ୍ଡର କୋଳାହଳ, ଦୁଷ୍ଟମାନଙ୍କ ତିକ୍ତ ସମାଲୋଚନା କିମ୍ବା ବିରୁଦ୍ଧ ମନ୍ତବ୍ୟ ତାଙ୍କ ଏକାଗ୍ରତାରେ ଚାଞ୍ଚଲ୍ୟ ସୃଷ୍ଟି କରିବାପାଇଁ ସମର୍ଥ ନଥିଲେ ।

ସାଂସାରିକ ଜୀବନରେ ବିଧାତା ଯେପରି ତାଙ୍କର ପ୍ରତିକୂଳ ଥିଲା ସାହିତ୍ୟିକ ଜୀବନରେ ସମକାଳୀନ ଓଡ଼ିଶାର କିଛି ସାହିତ୍ୟିକ ବଡ଼ପଣ୍ଡା ତାଙ୍କ ପ୍ରତି ଈର୍ଷା ପ୍ରଣୋଦିତ ପ୍ରତିକୂଳତା ଆଚରଣ କରିଥିଲେ । ବିଶୁଦ୍ଧ ଶବ୍ଦକୋଷ ସଙ୍କଳନପାଇଁ ଉତ୍କଳ ସାହିତ୍ୟ ସମାଜର ବରେଣ୍ୟ ସଭ୍ୟମାନେ ୧୯୦୪ ମସିହାରେ ଚିନ୍ତା କରିବା ପୂର୍ବରୁ ପଣ୍ଡିତ ନନ୍ଦ ଶବ୍ଦତତ୍ତ୍ୱବୋଧ ଅଭିଧାନର ସଂକଳନ କାର୍ଯ୍ୟ ଶେଷ କରି ସାରିଥିଲେ । ବହୁ ପରୀକ୍ଷା ନିରୀକ୍ଷା ପରେ ସମାଜ ଏହାର ପ୍ରକାଶନ ଦାୟିତ୍ୱ ଗ୍ରହଣ କରି ସୁଦ୍ଧା ଦୀର୍ଘ ୧୨ ବର୍ଷ ମଧ୍ୟରେ ନିଜର ପ୍ରତିଶ୍ରୁତି ରକ୍ଷା କରିପାରିଲେନାହିଁ । ଶେଷରେ ମାନ୍ଦ୍ରାଜ ଓ ବିହାର-ଓଡ଼ିଶା ସରକାରଙ୍କ ଆର୍ଥିକ ସହାୟତା ଏବଂ ଧରାକୋଟ ରାଜା ମଦନମୋହନ ସିଂହ ଦେଓ ଏବଂ ପାରଳାଖେମୁଣ୍ଡି ମହାରାଜା କୃଷ୍ଣଚନ୍ଦ୍ର ଗଜପତି ନାରାୟଣ ଦେବଙ୍କ ସୌଜନ୍ୟରୁ ଏହା ୧୯୧୬ ମସିହାରେ ମୁଦ୍ରିତ ହୋଇପାରିଥିଲା । ଅଭିଧାନଟି ପାଠକମାନଙ୍କ ହସ୍ତଗତ ହେବା ପୂର୍ବରୁ ଏ ସଂପର୍କରେ ଯେଉଁ ତୀବ୍ର ବାଦାନୁବାଦ ସୃଷ୍ଟି ହୋଇଥିଲା ତାହାହିଁ ଥିଲା ପଣ୍ଡିତ ମହାଶୟଙ୍କ ପ୍ରତି 'ସମାଜ'ର ଚରମ ଓ ପରମ କୃତଜ୍ଞତା ଜ୍ଞାପନ । 'ସାହିତ୍ୟ ସମାଜ'ର ସଭ୍ୟ ବୋଲାଉଥିବା ଜଣେ ବେନାମୀ ଲେଖକ ଅଭିଧାନଟି ମୁଦ୍ରିତ ହେଉଥିବା ଉତ୍କଳ ସାହିତ୍ୟ ପ୍ରେସ୍‌ରେ ବସୁ ବସୁ କେତୋଟି ପୃଷ୍ଠା ଓଲଟାଇ ଯେଉଁ ମନ୍ତବ୍ୟ ଉତ୍କଳ ଦୀପିକାରେ (ତା ୮-୪-୧୯୧୬ ସଂଖ୍ୟା) ପ୍ରକାଶ କରିଥିଲେ ତାହା ଦୀର୍ଘଦିନ ଧରି 'ତୁମୁଳ ତର୍କ ଯୁଦ୍ଧ' ଓ 'ବାକ୍ ବିତଣ୍ଡା'ର ସୂତ୍ରପାତ କରିଥିଲା । ଏଥିରେ ଫକୀରମୋହନ ସେନାପତି, ଗୋପାଳଚନ୍ଦ୍ର ପ୍ରହରାଜ, ମୃତ୍ୟୁଞ୍ଜୟ

ରଥ, ପୁରୁଷୋତ୍ତମ ତର୍କାଳଙ୍କାର, ଗୋପବନ୍ଧୁ ଦାସ, ନୀଳକଣ୍ଠ ଦାସ, ବିଶ୍ୱନାଥ କର, ମଧୁସୂଦନ ଦାସ, ଯୋଗେଶ ଚନ୍ଦ୍ର ରାୟ, କୃଷ୍ଣ ପ୍ରସାଦ ଚୌଧୁରୀ, ଶଶିଭୂଷଣ ରାୟ, ଶଶିଭୂଷଣ ରଥ, ସୁଦାମ ଚରଣ ନାୟକ ପ୍ରମୁଖଙ୍କ ପରି ବହୁ ପ୍ରବୀଣ ସାହିତ୍ୟିକ ଜଡ଼ିତ ହୋଇପଡ଼ିଥିଲେ । ସେ ସମୟରେ ପ୍ରକାଶ ପାଉଥିବା ଅଧିକାଂଶ ସମ୍ବାଦ ଓ ସାହିତ୍ୟ ପତ୍ରିକାରେ ପଣ୍ଡିତ ନନ୍ଦଶର୍ମା ଏବଂ ତାଙ୍କ ଅଭିଧାନ ସଂପର୍କରେ ଅନୁକୂଳ ଓ ପ୍ରତିକୂଳ ମନ୍ତବ୍ୟମାନ ଦେଖିବାକୁ ମିଳେ । ଆଲୋଚନା ଅଭିଧାନର ସୀମା ଲଙ୍ଘନ କରି ବ୍ୟକ୍ତିଗତ ଓ ଆଞ୍ଚଳିକତା ସ୍ତରକୁ ଖେପି ଯାଇଛି । ନିଜ ମତକୁ ପ୍ରତିଷ୍ଠା କରିବା ପାଇଁ ବିରୋଧୀମାନଙ୍କ ହାତରେ ବଳିଷ୍ଠ ଯୁକ୍ତି ନ ଥିଲେ କିମ୍ବା ପ୍ରମାଣ ସଂଗ୍ରହ କରି ନ ପାରିଲେ ଆଲୋଚନାର ଏହାହିଁ ପରିଣତି ହୋଇଥାଏ । 'ଅଯଥାବାଦୀ', 'ଅବିମୃଶ୍ୟକାରୀ', ଭାଷାତତ୍ତ୍ୱଜ୍ଞାନଶୂନ୍ୟ, ଅଜ୍ଞଜ୍ଞତାରେ ପଣ୍ଡିତଂ ମନ୍ୟମାନ, ଜ୍ଞାନ ଲବ-ଦୁର୍ବିଦଗ୍ଧ ଆଲୋଚକମାନଙ୍କର 'ଅସଙ୍ଗତ', 'ଅସମୀଚୀନ, ବୈତଣ୍ଡିକ ବାକ୍‌ଜାଲ' ସାଧନାପଥରୁ ତାଙ୍କୁ ବିଚ୍ୟୁତ କରିବା ପରିବର୍ତ୍ତେ 'ଆଦର୍ଶକୁ ଦୃଢ଼ କରି କ୍ରମେ ନୀତି ପୀଠରେ ଦଣ୍ଡାୟମାନ ହୋଇ ପ୍ରତିବାଦମାନଙ୍କର ଉତ୍ତର' ଦେବା ପାଇଁ ଅଧିକ ଶାସ୍ତ୍ରାନ୍ୱେଷୀ ଓ ଅନୁସନ୍ଧିତ୍ସୁ କରିଥିଲା । ଭାଷାତତ୍ତ୍ୱ ଆଲୋଚନା ଅବସରରେ ନନ୍ଦେ ଅଭିଧାନ ସମ୍ପର୍କରେ ଭିନ୍ନମତ ପୋଷଣ କରୁଥିବା ପ୍ରତିବାଦୀମାନଙ୍କ ଭ୍ରମ ଦୂର କରିବାପାଇଁ ଯଥାସାଧ୍ୟ ଉଦ୍ୟମ କରିଛନ୍ତି । ଏହି ଅଶୋଭନୀୟ ବାଦାନୁବାଦର ବିସ୍ତୃତ ବିବରଣୀ ରଚନାବଳୀର ଦ୍ୱିତୀୟ ଖଣ୍ଡରେ ଆପଣମାନେ ଦେଖିପାରିବେ । ସେହିପରି 'ସାରଳା ମହାଭାରତ ଆଲୋଚନା' 'ଉତ୍କଳ ସାହିତ୍ୟ ପତ୍ରିକା'ରେ ଧାରାବାହିକ ଭାବେ ପ୍ରକାଶ ପାଉଥିବାବେଳେ ସେଥିରେ ପ୍ରତିବନ୍ଧକ ସୃଷ୍ଟି କରିବାପାଇଁ କମ୍ ଅପଚେଷ୍ଟା କରାଯାଇ ନାହିଁ ।

ସମସ୍ତ ଦୈବୀ ପ୍ରତିକୂଳତା, ବ୍ୟକ୍ତିଗତ ଓ ସାମାଜିକ ଦୁଃଖ ଓ ଯାତନା ଏବଂ ସମାଲୋଚନା ରୂପ ହଳାହଳକୁ ନିର୍ବିକାର ଚିତ୍ତରେ ପାନକରି ପାରଳାଖେମୁଣ୍ଡିର ନନ୍ଦଶର୍ମା ଓଡ଼ିଆ ଭାଷା, ସାହିତ୍ୟ ଓ ଜାତିପାଇଁ କେବଳ ଅମୃତ ହିଁ ବିତରଣ କରିଯାଇଛନ୍ତି । ଏଥିପାଇଁ ତ ଶହେବର୍ଷ ପରେ ମଧ୍ୟ ତାଙ୍କ ଅକ୍ଷରମାଳିନୀ କୀର୍ତ୍ତି ଅମ୍ଳାନ ରହିଛି; କୀର୍ତ୍ତିସ୍ତମ୍ଭ ଭଗ୍ନସ୍ତୂପରେ ପରିଣତ ହେବା ପରିବର୍ତ୍ତେ ଦୀର୍ଘୀଭୂତ ହୋଇ ଚାଲିଛି । ଜୀବଦ୍ଦଶାରେ କିଛି ଅସହିଷ୍ଣୁ ଓ ଈର୍ଷାଳୁ ବ୍ୟକ୍ତିବିଶେଷଙ୍କ ଚକ୍ଷୁଶୂଳ ହୋଇଥିଲେ ସୁଦ୍ଧା ବିଭିନ୍ନ ରାଜ୍ୟର ଗୁଣଗ୍ରାହୀ ରାଜା ମହାରାଜାମାନଙ୍କ ଶ୍ରଦ୍ଧା ଓ ସମ୍ମାନର ପାତ୍ର ହୋଇଛନ୍ତି । ସମକାଳୀନ ବହୁ ବରିଷ୍ଠ ସାହିତ୍ୟିକ ତାଙ୍କ ସାଧନାର ଭୂରିଭୂରି ପ୍ରଶଂସା କରିଛନ୍ତି । କେଳବ ଓଡ଼ିଶାରେ ନୁହେଁ ଓଡ଼ିଶା ବାହାରେ ମଧ୍ୟ ଗୋପୀନାଥ ନିଜ ପାଣ୍ଡିତ୍ୟର ପରାକାଷ୍ଠା ପ୍ରଦର୍ଶନ କରି ସମ୍ମାନପ୍ରାପ୍ତ ହୋଇଛନ୍ତି । ୧୯୨୨ ମସିହା ଜାନୁୟାରୀ ୧୩ ତାରିଖରେ ବ୍ରିଟିଶ ଯୁବରାଜ ପ୍ରିନ୍‌ସ ଅଫ୍ ୱେଲସ୍‌ଙ୍କ ଆଗମନ ଉପଲକ୍ଷେ ମାନ୍ଦ୍ରାଜଠାରେ ଯେଉଁ ସର୍ବଭାରତୀୟ ପଣ୍ଡିତ

ସଭାର ଆୟୋଜନ କରାଯାଇଥିଲା, ସେଥିରେ ଭାରତର ଅନ୍ୟାନ୍ୟ ଭାଷାଭାଷୀ ପଣ୍ଡିତମାନଙ୍କ ସହ ପଣ୍ଡିତ ନନ୍ଦ ସ୍ୱୀୟ ପାଣ୍ଡିତ୍ୟପାଇଁ ଯୁବରାଜଙ୍କଠାରୁ ସ୍ୱର୍ଣ୍ଣକଙ୍କଣ, ମାନପତ୍ର ଓ ସ୍ୱର୍ଣ୍ଣପଦକ ପ୍ରାପ୍ତ ହୋଇଥିଲେ । ଏହି ସମ୍ବାଦ ପରିବେଷଣ କରି ଶଶିଭୂଷଣ ରଥ ଆଶା ପତ୍ରିକାର ନବମ ଭାଗ ୧୯ଶ ସଂଖ୍ୟାରେ (ତା ୧୬-୧-୧୯୨୨) ଲେଖିଥିଲେ –

*ଭା. ୯/୧୯ଶ ସଂଖ୍ୟ* **ଆଶା** *ତା ୧୬.୧.୧୯୨୨*

*ଯୁବରାଜଙ୍କ ମାନ୍ଦ୍ରାଜ ଆଗମନ ଉପଲକ୍ଷେ ଗଞ୍ଜାମର ନିମ୍ନଲିଖିତ ବ୍ୟକ୍ତି ବିଶେଷ ମାନ୍ଦ୍ରାଜରେ ଉପସ୍ଥିତ ଅଛନ୍ତି –*

*– ଧରାକୋଟ, ଖଲିକୋଟ, ମଞ୍ଜୁଷା, ସୁରଙ୍ଗୀର ରାଜାସାହେବମାନେ, ଟେକାଳି ଧରାକୋଟ ଓ ସୁରଙ୍ଗୀର ଯୁବରାଜମାନେ, ଶ୍ରୀମାନ୍ ବିଶ୍ୱନାଥ ଦାସ, ଶ୍ରୀମାନ୍ ଶଶିଭୂଷଣ ରଥ ଏବଂ ପଣ୍ଡିତ ଗୋପୀନାଥ ନନ୍ଦ, ମଞ୍ଜୁଷା ରାଜାଙ୍କ ସଙ୍ଗେ ଶ୍ରୀ ରାମକୃଷ୍ଣ ଦେବ ଏବଂ ଟେକାଳି ଯୁବରାଜଙ୍କ ସଙ୍ଗେ ପଟ୍ଟାୟତ ପ୍ରଭୃତିମାନେ ଅଛନ୍ତି ।*

*– ପାରଳା କଲେଜର ଓଡ଼ିଆ ପଣ୍ଡିତ, ଉତ୍କଳ ସାହିତ୍ୟରେ ପାରଦର୍ଶୀ ପଣ୍ଡିତ ଗୋପୀନାଥ ନନ୍ଦ ଏ ମାସ ୧୩ ତାରିଖ ଦିନ ମାନ୍ଦ୍ରାଜ ସିନେଟ୍ ଗୃହରେ ମହାମହିମ ଯୁବରାଜଙ୍କ ଦ୍ୱାରା ଓଡ଼ିଆରେ ପାଣ୍ଡିତ୍ୟ ସକାଶେ ସ୍ୱର୍ଣ୍ଣ କଙ୍କଣ ଓ ପଦକ ପ୍ରାପ୍ତ ହୋଇ ଅଛନ୍ତି । ପଣ୍ଡିତ ନନ୍ଦଙ୍କ ସଙ୍ଗେ ୨୦ଜଣ ବିଭିନ୍ନ ଭାଷାର ପଣ୍ଡିତ ଏପରି ଖିଲତ୍ ପାଇଥିଲେ ।*

ସର୍ବଭାରତୀୟ ସ୍ତରରେ ସମ୍ମାନିତ ଏପରି ଜଣେ ମହାନ୍ ପଣ୍ଡିତଙ୍କ ସାଧନାରେ ଯେ ଏତେଶୀଘ୍ର ପୂର୍ଣ୍ଣଚ୍ଛେଦ ପଡ଼ିବ କିଏ ଜାଣିଥିଲା ! ଠିକ୍ ଦୁଇଟି ବର୍ଷ ବ୍ୟବଧାନରେ ପଣ୍ଡିତ ମହାଶୟ ଇହଧାମରୁ ବିଦାୟ ନେଇଥିଲେ । ସେହିଦିନ ହିଁ 'ଆଶା' ପତ୍ରିକାରେ ଏହି ଶୋକସମ୍ବାଦ ପରିବେଷିତ ହୋଇଥିଲା ।

*ଭା. ୧୧/୧୬ଶ ସଂ* **ଆଶା** *ତା ୧୪.୧.୧୯୨୪*

**ଶୋକ ସମ୍ବାଦ**

**ସ୍ୱର୍ଗୀୟ ପଣ୍ଡିତ ଗୋପୀନାଥ ନନ୍ଦ**

*ପଣ୍ଡିତ ଗୋପୀନାଥ ନନ୍ଦଙ୍କର ଅକାଳ ବିୟୋଗ ବାର୍ତ୍ତା ଶୁଣି ଆମ୍ଭେମାନେ ନିତାନ୍ତ ମ୍ରିୟମାଣ । ଆମ୍ଭମାନଙ୍କ ପତ୍ରିକାର ମୁଦ୍ରଣ ଶେଷ ହେବାବେଳେ ପଣ୍ଡିତ ମହୋଦୟଙ୍କର ମୃତ୍ୟୁ ସମ୍ବାଦ ଆମ୍ଭମାନଙ୍କର*

କର୍ଣ୍ଣଗୋଚର ହେଲା । ଆମ୍ଭମାନଙ୍କ ନିକଟକୁ ଶ୍ରୀଯୁକ୍ତ ବଳଭଦ୍ର ନନ୍ଦ ପତ୍ର ଦ୍ୱାରା ଅବଗତ କରାଇ ଦେଇଅଛନ୍ତି ଯେ ନନ୍ଦ ମହାଶୟ ଆଜି ଜାନୁଏରି ୧୪ ତାରିଖ ପ୍ରାତଃ ୭ ଘଣ୍ଟା ସମୟରେ ଇହଧାମ ତ୍ୟାଗ କରିଅଛନ୍ତି । ପଣ୍ଡିତ ଗୋପୀନାଥ ନନ୍ଦ ନିଖିଳ ଉତ୍କଳରେ ସୁପରିଚିତ, ତାଙ୍କର ବିଦ୍ୟାବୁଦ୍ଧିର ଉଲ୍ଲେଖ କରିବା ବାହୁଲ୍ୟ ମାତ୍ର ।

ନନ୍ଦ ମହୋଦୟ ଗଞ୍ଜାମର ଏକମାତ୍ର ଆଦର୍ଶ ପଣ୍ଡିତ କହିଲେ ଅତ୍ୟୁକ୍ତି ହେବ ନାହିଁ । ଅବଶ୍ୟ ସେ ତେତେ ବିଶିଷ୍ଟ ସଂସ୍କୃତଜ୍ଞ ନଥିଲେ; କିନ୍ତୁ ଓଡ଼ିଆ ଭାଷା, ଓଡ଼ିଆ ସାହିତ୍ୟ ସମ୍ବନ୍ଧରେ ତାଙ୍କର ଯେପରି ଅଭିଜ୍ଞତା ତାହା ସମଗ୍ର ଗଞ୍ଜାମରେ ତଥା ସମଗ୍ର ଉତ୍କଳରେ ସୁଦ୍ଧା ଅନୁପମ, ଅଦ୍ୱିତୀୟ କହିଲେ ବାହୁଲ୍ୟ ବୋଧ ହେବ ନାହିଁ ।

ଗଞ୍ଜାମୀ ଭାଷା ବିକୃତ ବିକଳାଙ୍ଗ ହୋଇ ପଡ଼ିଥିଲା । ପଣ୍ଡିତ ଗୋପୀନାଥ ନନ୍ଦ ତାର ବିହିତ ସଂସ୍କାର ଓ ମାର୍ଜନା କରି ଅଛନ୍ତି । ପାରଳାଖେମଣ୍ଡିର ଓଡ଼ିଆ ଭାଷା ଅଦ୍ୟାପି ବିକୃତ ବିକଳାଙ୍ଗ ହୋଇ ରହିଛି, ତଥାପି ସେ ଭୂମିରେ ଗୋପାଳକୃଷ୍ଣଙ୍କ ଜନ୍ମ ଏବଂ ପଣ୍ଡିତ ଗୋପୀନାଥ ନନ୍ଦଙ୍କ ଜନ୍ମ । ପଣ୍ଡିତ ଗୋପୀନାଥ ନନ୍ଦ ପାରଳାଖେମଣ୍ଡି ରାଜାଙ୍କ କଲେଜର ପ୍ରଧାନ ଓଡ଼ିଆ ପଣ୍ଡିତ ରୂପେ ଛାତ୍ରମାନଙ୍କ ଭାଷା ସଂଶୋଧନ ପୂର୍ବକ ଗଞ୍ଜାମ ଓଡ଼ିଆର ମୌଳିକତ୍ୱ ସଂରକ୍ଷଣ ସଙ୍ଗେ ସଙ୍ଗେ ଯେଉଁ ସଂସ୍କାର ଓ ସମ୍ମାର୍ଜନ କରିଯାଇଛନ୍ତି ତାହା କାହାର ଅବିଦିତ ନୁହେ ।

ତଦୀୟ ପାଣ୍ଡିତ୍ୟର ପରିଚୟ ଦେବା ଅନାବଶ୍ୟକ । ଓଡ଼ିଆ ଭାଷାତତ୍ତ୍ୱ ଶୀର୍ଷକ ପ୍ରବନ୍ଧାବଳି, ସାରଳା ଭାରତ ସମାଲୋଚନା, ବଳରାମ ଦାସ ରାମାୟଣ ସମାଲୋଚନା, ଶବ୍ଦତତ୍ତ୍ୱବୋଧ ଓଡ଼ିଆ ଅଭିଧାନ ତଦୀୟ ଜ୍ଞାନଗୌରବ, ଶୌର୍ଯ୍ୟ ଅଧ୍ୟବସାୟର ପୂର୍ଣ୍ଣ ପରିଚୟ ପ୍ରଦାନ କରୁଅଛି । ତଦୀୟ ମୌଳିକ ଅନୁଦିତ ଗଳ୍ପ, ପ୍ରବନ୍ଧ ଓ ପୁସ୍ତକାବଳି ମଧ୍ୟ କିଛି କମ୍ ଗୌରବର ଜିନିଷ ନୁହେ । ଓଡ଼ିଆ ଜାତି, ଓଡ଼ିଆ ଭାଷା ଯେତେଦିନ ଜୀବିତ ଥିବ ପଣ୍ଡିତ ଗୋପୀନାଥ ନନ୍ଦଙ୍କ କୀର୍ତ୍ତି ତଦବଧି କୀର୍ତ୍ତିତ ଓ ଉଦ୍‌ଘୋଷିତ ହେଉଥିବ ।

ପଣ୍ଡିତ ଗୋପୀନାଥ ନନ୍ଦ ଆଉ ଇହଧାମରେ ନାହାନ୍ତି କିନ୍ତୁ ତାଙ୍କର ଅମର ସାଧନା ଚିରଦିନ ଉତ୍କଳକୁ ଉତ୍ସାହ ଉଦ୍‌ବୋଧନ ଦେଉଥିବ । ଆମ୍ଭମାନଙ୍କର ପ୍ରାଣର କାମନା ନନ୍ଦ ମହୋଦୟଙ୍କ ଆତ୍ମାର ସଦ୍‌ଗତି

*ହେଲ ଏବଂ ତଦୀୟ ଅନୁଶୀଳନ ଲିପ୍ସା, ଅଧ୍ୟବସାୟ, ସାହିତ୍ୟ ଚର୍ଚ୍ଚା, ଭାଷାତତ୍ତ୍ୱାନୁସନ୍ଧିତ୍ସା ଉତ୍କଳୀୟ ସାହିତ୍ୟସେବୀମାନଙ୍କୁ ଅନୁପ୍ରାଣିତ କରୁ ।*

*ସଂପାଦକ*

*(ଶଶିଭୂଷଣ ରଥ)*

ଯେଉଁ 'ଉତ୍କଳ ଦୀପିକା' ନନ୍ଦଙ୍କ ଶବ୍ଦତତ୍ତ୍ୱ ଅଭିଧାନ ବିରୋଧରେ ବହୁ ସମ୍ବାଦ ଓ ପ୍ରବନ୍ଧ ପ୍ରକାଶ କରିଥିଲେ ୧୯୨୪ ବେଳକୁ ତାର ସମ୍ପାଦକ ପରିବର୍ତ୍ତିତ ହୋଇଯାଇଥିଲେ । ରାୟବାହାଦୂର ସୁଦାମ ଚରଣ ନାୟକଙ୍କଠାରୁ ଦାୟିତ୍ୱ ଗ୍ରହଣ କରିଥିଲେ ନୀଳମଣି ବିଦ୍ୟାରତ୍ନ । ସେ 'ନନ୍ଦ ପଣ୍ଡିତଙ୍କ ପରଲୋକ ଯାତ୍ରା' ଶିରୋନାମାରେ ଶୋକ ପ୍ରକାଶ କରି ଲେଖିଥିଲେ –

*ଭା. ୫୯/୩ ସଂ* **ଉତ୍କଳ ଦୀପିକା** *ତା ୧୯.୧.୧୯୨୪*

## *ନନ୍ଦ ପଣ୍ଡିତଙ୍କ ପରଲୋକ ଯାତ୍ରା*

*ପାରଳାଖେମୁଣ୍ଡି କଲେଜର ପଣ୍ଡିତ ପାରଳାଖେମୁଣ୍ଡି ନିବାସୀ ଉତ୍କଳର ସୁପରିଚିତ ସାହିତ୍ୟ ସେବକ ଶ୍ରୀଯୁକ୍ତ ଗୋପୀନାଥ ନନ୍ଦ ମହାଶୟ ଗତ ୧୪ ତାରିଖ ପ୍ରାତଃ ୭ଘଣ୍ଟା ସମୟରେ ଶରୀର ତ୍ୟାଗ କରି ଅମରଧାମକୁ ଯାତ୍ରା କରି ଅଛନ୍ତି । ସେ ବିଶାଳ ଉତ୍କଳ ଦେଶରେ ଜଣେ ଅଧ୍ୟବସାୟଶୀଳ ନିଷ୍ଠାପର ସାହିତ୍ୟ ସେବକ ଥିଲେ । ସେ ଗୋଟିଏ କାର୍ଯ୍ୟଭାର ବହନ କରି ସାମାନ୍ୟ ଅବକାଶକୁ ସାହିତ୍ୟ ଚର୍ଚ୍ଚାରେ ନିଯୁକ୍ତ କରୁଥିଲେ । ତାଙ୍କର ରଚିତ ଅନେକଗୁଡ଼ିଏ ପୁସ୍ତକ ଅଛି । ସେଥିମଧ୍ୟରୁ ସେ କେତେଖଣ୍ଡ ପ୍ରକାଶ କରିଯାଇଛନ୍ତି । ତାଙ୍କ ଭାଷାତତ୍ତ୍ୱ ଛାପା ହୋଇଅଛି । ଦୁଃଖର କଥା ସେ ତାହାର ସମାପ୍ତି ଦେଖିଯାଇ ପାରିଲେ ନାହିଁ । ତାଙ୍କର ଅନ୍ୟାନ୍ୟ ପୁସ୍ତକ କଥା ତେଣେ ଥାଉ, ତାଙ୍କର ଅଭିଧାନ ତାଙ୍କୁ ଅମର କରି ରଖିବ । ସେ ଜୀବଦ୍ଦଶାରେ ଭାରତର ଯୁବରାଜଙ୍କ ଛାମୁରୁ ନିଜ ଯୋଗ୍ୟତାର ପୁରସ୍କାର ପାଇ ନିଜ ଜୀବନକୁ ଧନ୍ୟ ମନେ କରିଯାଇଅଛନ୍ତି । ତାଙ୍କର ବୟସ କିଛି ବେଶୀ ହୋଇ ନଥିଲା । ତାଙ୍କର ଅକାଳ ମୃତ୍ୟୁରେ ଉତ୍କଳ ଦେଶର ଯେଉଁ କ୍ଷତି ହେଲା ତାହା ସହଜରେ ଶୀଘ୍ର ପୂରଣ ହେବାର ସମ୍ଭାବନା ନାହିଁ । ସେ ପୀଡ଼ିତ ହେବାର ସମ୍ବାଦ କେହି ପାଇ ନ ଥିଲେ । ହଠାତ୍ ତାଙ୍କର ମୃତ୍ୟୁ ସମ୍ବାଦ ଶ୍ରବଣ କରି ସମସ୍ତେ ଗଭୀର ଦୁଃଖାଭିଭୂତ ହୋଇ ପଡ଼ିଅଛନ୍ତି । ସେ*

*ଆମମାନଙ୍କର ୩୦ ବର୍ଷ କାଳର ଜଣେ ବନ୍ଧୁ ଥିଲେ । ଅକାଳରେ ଏହି ଅକୃତ୍ରିମ ନିଷ୍ଠାପର ସାହିତ୍ୟପ୍ରେମିକ ବନ୍ଧୁଙ୍କୁ ହରାଇ ଆମ୍ଭେମାନେ ନିରତିଶୟ ଦୁଃଖାନୁଭବ କରୁଅଛୁଁ । ଈଶ୍ୱର ତାଙ୍କର ପାରତ୍ରିକ ମଙ୍ଗଳ କରନ୍ତୁ ଏବଂ ଶୋକସନ୍ତପ୍ତ ତଦୀୟ ପରିଜନମାନଙ୍କ ତାପିତ ହୃଦୟରେ ଶାନ୍ତିବାରି ସେଚନ କରନ୍ତୁ, ଏହି ପ୍ରାର୍ଥନା କରୁଅଛୁଁ ।*

*ସଂପାଦକ*
*(ନୀଳମଣି ବିଦ୍ୟାରତ୍ନ)*

ପ୍ରସଙ୍ଗକ୍ରମେ ଏଠାରେ ଉଲ୍ଲେଖ କରାଯାଇପାରେ ଯେ ୧୯୨୪ ମସିହାଟି ଥିଲା ଓଡ଼ିଆ ସାହିତ୍ୟପାଇଁ ଏକ ଦୁଃଖଦ ବର୍ଷ, ଏହିବର୍ଷ ପଣ୍ଡିତ ନନ୍ଦଙ୍କ ତିରୋଧାନର ମାତ୍ର ତିନୋଟି ମାସ ବ୍ୟବଧାନରେ ସ୍ୱଭାବକବି ଗଙ୍ଗାଧର (୪/୪/୧୯୨୪) ଏବଂ ବାଣୀଭୂଷଣ ମୃତ୍ୟୁଞ୍ଜୟ ରଥ (୧୦/୪/୧୯୨୪) ଇହଧାମ ତ୍ୟାଗ କରିଥିଲେ । ଏମାନଙ୍କ ସ୍ମୃତିରକ୍ଷା ନିମିତ୍ତ କଟକ 'ଉତ୍କଳ ସାହିତ୍ୟ ସମାଜ' ଏକ ଶୋକସଭାର ଆୟୋଜନ କରିଥିଲେ । ବାଣୀଭୂଷଣଙ୍କ ଶିଷ୍ୟ ଶ୍ରୀ ଗୋପବନ୍ଧୁ ବାବୁ ଏବଂ ଶ୍ରୀ ଚିନ୍ତାମଣି ଆଚାର୍ଯ୍ୟ ଏବଂ ପଣ୍ଡିତ ନନ୍ଦ ଓ କବି ଗଙ୍ଗାଧରଙ୍କ ଗୁଣମୁଗ୍ଧ ବିରାଜମୋହନ ସେନାପତି 'ଉତ୍କଳ ସାହିତ୍ୟ ସମାଜ' ପ୍ରକୋଷ୍ଠରେ ଏହି ତିନିଜଣ ସ୍ୱନାମଧନ୍ୟ ସାହିତ୍ୟ ସାଧକଙ୍କ ତୈଳଚିତ୍ର ରଖିବା ସକାଶେ ପ୍ରସ୍ତାବ ଦେଇଥିଲେ । ଏହି ସମ୍ବାଦ 'କଟକରେ ଶୋକସଭା' ଶିରୋନାମାରେ ପୁରୀରୁ ଶ୍ରୀ ପୂର୍ଣ୍ଣଚନ୍ଦ୍ର ଦାସଙ୍କ ସମ୍ପାଦନାରେ ପ୍ରକାଶ ପାଉଥିବା 'ଶକ୍ତି' ପତ୍ରିକାର ୨୪/୪/୧୯୦୪ ସଂଖ୍ୟାରେ ପ୍ରକାଶିତ ହୋଇଥିଲା –

*ପଣ୍ଡିତ ଗୋପୀନାଥ ନନ୍ଦ, ସୁଲେଖକ ମୃତ୍ୟୁଞ୍ଜୟ ରଥ ବାଣୀଭୂଷଣ ଏବଂ ସୁକବି ଗଙ୍ଗାଧର ମେହେର ମହୋଦୟମାନଙ୍କ ପରଲୋକ ଯାତ୍ରା ଉପଲକ୍ଷେ ଶୋକ ପ୍ରକାଶ କରିବା ପାଇଁ ଉତ୍କଳ ସାହିତ୍ୟ ସମାଜର ଆହ୍ୱାନ ଅନୁସାରେ ଗତ ତା୧୫ରିଖ ମଙ୍ଗଳବାର ସନ୍ଧ୍ୟା ଘ୬.୩୦ମି. ବେଳେ କଟକ ଟାଉନ୍ ହଲ୍‌ରେ ଗୋଟିଏ ସାଧାରଣ ସଭାର ଆୟୋଜନ ହୋଇଥିଲା । ବିରାଟ ଟାଉନ୍ ହଲ୍ ସୁଶିକ୍ଷିତ ଭଦ୍ରଲୋକ ଏବଂ ଛାତ୍ରମଣ୍ଡଳୀଦ୍ୱାରା ପୂର୍ଣ୍ଣ ହୋଇଥିଲା ଶ୍ରୀଯୁତ ରାମଶଙ୍କର ରାୟ ଦେବବର୍ମା ସଭାପତି ପଦର କାର୍ଯ୍ୟ କରିଥିଲେ ପ୍ରାରମ୍ଭିକ ସଙ୍ଗୀତ ପାଠ ସଭାପତିଙ୍କ ବେଦୋଚ୍ଚାରଣ ପରେ ମୃତ ମହାଶୟମାନଙ୍କର ପରିଚୟ ଏବଂ ପାରଲୌକିକ ମଙ୍ଗଳ କାମନା କରିଥିଲେ, ତଦନନ୍ତର ସଭାପତିଙ୍କ ଦ୍ୱାରା ଆହୂତ ହୋଇ ଶ୍ରୀ ଚିନ୍ତାମଣି ଆଚାର୍ଯ୍ୟ ବି.ଏଲ୍.*

*ଶ୍ରୀ ଗୋପାଳ ଚନ୍ଦ୍ର ପହରାଜ ବି.ଏଲ୍. ଶ୍ରୀ ନୀଳମଣି ବିଦ୍ୟାରତ୍ନ, ଦେବାନବାହାଦୂର ଶ୍ରୀ କୃଷ୍ଣ ମହାପାତ୍ର ଭକ୍ତିଭୂଷଣ ଏବଂ ଶ୍ରୀ ବିଶ୍ୱନାଥ କର ମହାଶୟମାନେ ପ୍ରତ୍ୟେକ ସ୍ୱର୍ଗୀୟ ମହାନୁଭବମାନଙ୍କର ଅଦ୍ଭୁତ ସାଧନା, ଅସାଧାରଣ ଅଧ୍ୟବସାୟ ଅନୁପମ ସ୍ୱାବଲମ୍ବନଶୀଳତା ଏବଂ ଅସାମାନ୍ୟ ପ୍ରତିଭା ବିଷୟରେ ସ୍ୱୀୟ ଅଣଭୂତି କଥା ସଂକ୍ଷେପରେ ପ୍ରକାଶ କରିଥିଲେ ପରେ ସଭାପତିଙ୍କ ଆଦେଶାନୁସାରେ ସମସ୍ତେ ଦଣ୍ଡାୟମାନ ହୋଇ ମୃତ ମହାଜନମାନଙ୍କ ଆତ୍ମାର ସଦ୍‌ଗତି କାମନା କରିଥିଲେ ତଦନନ୍ତର ଶୋକ ପ୍ରକାଶକ ପ୍ରସ୍ତାବ ଏବଂ ସେମାନଙ୍କ ସ୍ୱଜନମାନଙ୍କୁ ସଭାର ସମବେଦନାର କଥା ଜଣାଇଦେବା ପ୍ରସ୍ତାବ ନିର୍ଦ୍ଧାରିତ ହେଲା ପରିଶେଷରେ ସଭାରେ ପ୍ରକାଶିତ ହେଲା ଯେ ବାଣୀଭୂଷଣ ମହାଭୂଷଣଙ୍କ ଜଣେ ଶିଷ୍ୟ ଶ୍ରୀ ଗୋପବନ୍ଧୁ ବାବୁ ତାଙ୍କ ସମାଧି ନିର୍ମାଣ ସାହାଯ୍ୟ ପାଇଁ ଦୁଇଶତ ଟଙ୍କା ଦେବାକୁ ଅଙ୍ଗୀକାର କରିଛନ୍ତି ଏବଂ ଅନ୍ୟତମ ଛାତ୍ର ଶ୍ରୀ ଚିନ୍ତାମଣି ଆଚାର୍ଯ୍ୟ ତାଙ୍କର ଖଣ୍ଡିଏ ତୈଳଚିତ୍ର ସାହିତ୍ୟ ସମାଜର ଗୃହରେ ରକ୍ଷା କରିବା ପାଇଁ ''ନିଜ ବ୍ୟୟରେ ପ୍ରଦାନ କରିବେ'' ତଦନନ୍ତର ଶ୍ରୀ ବିରାଜମୋହନ ସେନାପତିଙ୍କ ପ୍ରସ୍ତାବ ଅନୁସାରେ ଅପର ଦୁଇ ବ୍ୟକ୍ତିଙ୍କର ତୈଳଚିତ୍ର ମଧ୍ୟ ସାହିତ୍ୟ ସମାଜ ଗୃହରେ ରଖାଯିବାର ପ୍ରସ୍ତାବହୋଇ ପରିଶେଷରେ ସଭା ଭଙ୍ଗ ହେଲା । ଉତ୍କଳରୁ ଲାଗେ ୨ ଉତ୍କଳର ତିନିଜଣ ନିଷ୍ଠାପର ସାହିତ୍ୟ ସେବକ ବାହାରିଯିବା ଦେଶ ପକ୍ଷରେ ବିଶେଷ କ୍ଷତିକରେ । ଏହି କ୍ଷତି ପୂରଣର ଚେଷ୍ଟା କରିବା ନିମନ୍ତେ ସଭାପତି ଏବଂ ବକ୍ତାମାନେ ଛାତ୍ରମଣ୍ଡଳୀଙ୍କୁ ଚେଷ୍ଟା କରିବା ଲାଗି ଅନୁରୋଧ କରିଥିଲେ ।*

'ପ୍ରାଣୀର ଭଲ ମନ୍ଦ ବାଣୀ ମରଣ କାଳେ ତାହା ଜାଣି' – ମାତ୍ର ୫୫ ବର୍ଷ ବୟସରେ ଦେହତ୍ୟାଗ କରିଥିବା ପଣ୍ଡିତ ଗୋପୀନାଥ ନନ୍ଦ ଯେ ଓଡ଼ିଶାର ସାରସ୍ୱତ କ୍ଷେତ୍ରରେ ନିଜପାଇଁ ଏକ ମର୍ଯ୍ୟାଦାସମ୍ପନ୍ନ ଆସନ ପ୍ରତିଷ୍ଠା କରିପାରିଥିଲେ, ଏହା ଏହି ଶୋକବାର୍ତ୍ତା ଏବଂ ବିଭିନ୍ନ ରଚନାର ପ୍ରଶଂସାପତ୍ରଗୁଡ଼ିକରୁ ସ୍ପଷ୍ଟ ଅବଧାରିତ ହୁଏ ।

- ୪ -

ପଞ୍ଚାବନ ବର୍ଷ ବୟସରେ ଇହଲୀଳା ସମ୍ବରଣ କରିଥିବା ନନ୍ଦ ଆଦ୍ୟ ଯୌବନରୁ ଜୀବନର ଗୋଟିଏ ମାତ୍ର ମୁହୂର୍ତ୍ତକୁ ଅପବ୍ୟୟ ନ କରି ଦୀର୍ଘ ଚାଳିଶି ବର୍ଷ ଧରି ସାହିତ୍ୟ ସାଧନାକୁ ଯେପରି ଜୀବନର ଏକମାତ୍ର ବ୍ରତ ରୂପେ ଗ୍ରହଣ କରିନେଇଛନ୍ତି, ତା'ର

ପଟାନ୍ତର ନାହିଁ । ୧୮୮୫ ବେଳକୁ ତାଙ୍କ ସନ୍ୟାସୀ ହେବାର ଉନ୍ମାଦନାରେ ଭଟ୍ଟା ପଡ଼ିଯାଇଥିଲା । ପାରଳା ପ୍ରତ୍ୟାବର୍ତ୍ତନ ପରେ ସେ ଆଉ ଆନୁଷ୍ଠାନିକ ଶିକ୍ଷାପାଇଁ କୌଣସି ବିଦ୍ୟାଳୟରେ ପଦାର୍ପଣ କରି ନାହାନ୍ତି । ଅନିଶ୍ଚିତ ଭବିଷ୍ୟତ ନିମିତ୍ତ ଅପେକ୍ଷା କରୁଥିଲା ବେଳେ ସେହି ୧୮୮୫ ମସିହାରେ ସ୍ୱର୍ଗତ ଆପନ୍ନା ପଣ୍ଡା ଓଡ଼ିଆ ଛାତ୍ରମାନଙ୍କପାଇଁ ପାରଳାଖେମୁଣ୍ଡିରେ ଏକ ଘରୋଇ ବିଦ୍ୟାଳୟ ସହିତ ତତ୍କାଳୀନ ରାଜନୈତିକ ଓଡ଼ିଶାରୁ ବିଚ୍ଛିନ୍ନ ହୋଇ ରହିଥିବା ଓଡ଼ିଆମାନଙ୍କ ଉନ୍ନତି ସକାଶେ ଏକ ଅନୁଷ୍ଠାନ ଆରମ୍ଭ କରନ୍ତି । ଏହା ହିଁ ଓଡ଼ିଆମାନଙ୍କ ସ୍ୱାର୍ଥ ଓ ସ୍ୱାଭିମାନକୁ ସୁରକ୍ଷା ଦେଇ ଆଜି ପର୍ଯ୍ୟନ୍ତ ବହୁ ଉତ୍ଥାନ ପତନ ମଧ୍ୟରେ ଜୀବିତ ଥିବା 'ଉତ୍କଳ ହିତୈଷିଣୀ ସମାଜ' । ଏହି ସମାଜର ପ୍ରଥମ ସଭାପତି ଥିଲେ ଊଣେଇଶି ବର୍ଷର ଯୁବକ ଏବଂ ଉଚ୍ଚ ବିଦ୍ୟାଳୟର ଉଦୀୟମାନ ଛାତ୍ର ଶ୍ୟାମସୁନ୍ଦର ରାଜଗୁରୁ । ଆପନ୍ନା ପଣ୍ଡାଙ୍କ ଲିଖିତ 'ନବ ଗଞ୍ଜାମ' (୧୯୧୭) ପୁସ୍ତିକାରୁ ନିମ୍ନଲିଖିତ କର୍ମକର୍ତ୍ତାମାନଙ୍କଦ୍ୱାରା ଏହି ସମାଜ ପରିଚାଳିତ ହେଉଥିବା ଜଣାଯାଏ –

| | | | |
|---|---|---|---|
| ୧. | ଶ୍ରୀ ଶ୍ୟାମସୁନ୍ଦର ରାଜଗୁରୁ | – | ସଭାପତି |
| ୨. | ଶ୍ରୀ ରାଧାଚରଣ ଅଧିକାରୀ | – | ସହକାରୀ ସଭାପତି |
| ୩. | ଶ୍ରୀ ବୃନ୍ଦାବନ ଦାସ | – | କୋଷାଧ୍ୟକ୍ଷ |
| ୪. | ଶ୍ରୀ ନୀଳମଣି ପରିଚ୍ଛା | – | ସଭ୍ୟ |
| ୫. | ଶ୍ରୀ ନରସିଂହ ନାୟକ | – | ସଭ୍ୟ |
| ୬. | ଶ୍ରୀ ଗୋବିନ୍ଦ ପଣ୍ଡା | – | ସଭ୍ୟ |
| ୭. | ଶ୍ରୀ ବୃନ୍ଦାବନ ଚନ୍ଦ୍ର ପାଣିଗ୍ରାହୀ | – | ସଭ୍ୟ |
| ୮. | ଶ୍ରୀ ଅନାମ ପାଣିଗ୍ରାହୀ | – | ସଭ୍ୟ |
| ୯. | ଶ୍ରୀ ବଳଭଦ୍ର ମହାପାତ୍ର | – | ସଭ୍ୟ |
| ୧୦. | ଶ୍ରୀ ଜଗନ୍ମୋହନ ଦାସ | – | ସଭ୍ୟ |

'ଉତ୍କଳ ହିତୈଷିଣୀ ସମାଜ' ପକ୍ଷରୁ ୧୨୫ତମ ବାର୍ଷିକୀ ଓ ଶତବାର୍ଷିକୀ ଉତ୍ସବ ଉପଲକ୍ଷେ ପ୍ରକାଶିତ 'ବିସ୍ମୃତ ସ୍ମୃତି' (୨୦୦୯) ସ୍ମରଣିକାରେ ଖ୍ୟାତିତ ଗବେଷକ ପୂର୍ଣ୍ଣଚନ୍ଦ୍ର ମହାପାତ୍ର 'ଉତ୍କଳ ହିତୈଷିଣୀ ସମାଜ'ର ଯେଉଁ ଇତିବୃତ୍ତ ଦେଇଛନ୍ତି ସେଥିରୁ ମନେହୁଏ ଆପନ୍ନା ପଣ୍ଡା ଥିଲେ ଏହାର ସଂପାଦକ । ସଭାପତି ଏବଂ ପ୍ରାୟ ସମସ୍ତ ସଭ୍ୟ ଯୌବନର ଉନ୍ମାଦନାରେ ଉନ୍ମାଦିତ; ଓଡ଼ିଶା, ଓଡ଼ିଆ ଭାଷା ଓ ସାହିତ୍ୟର ଉଜ୍ଜଳ ଭବିଷ୍ୟତ ସମସ୍ତଙ୍କ ସ୍ୱପ୍ନ । ସରକାରୀ ଦପ୍ତରମାନଙ୍କରେ ଓଡ଼ିଆ ଭାଷାର ପ୍ରଚଳନ ନିମନ୍ତେ ଏ 'ସମାଜ' ଦକ୍ଷିଣ ବିଚ୍ଛିନ୍ନାଞ୍ଚଳରୁ ଏକଲକ୍ଷ ସ୍ୱାକ୍ଷର ସଂଗ୍ରହ କରି ଏକ ସ୍ମାରକ ପତ୍ର ସହିତ ୧୮୮୯ ମସିହାରେ ସୋମପେଣ୍ଠ ନିକଟବର୍ତ୍ତୀ କାଞ୍ଚୁଲିଠାରେ ଦରବାର

କରୁଥିବା ମାନ୍ଦ୍ରାଜର ଲାଟ୍ ଲର୍ଡ କାନ୍‌ମୋରାଙ୍କୁ ପ୍ରଦାନ କରିଥିଲେ । ଏହି ଆବେଦନ ନିଷ୍ଫଳ ହୋଇ ନଥିଲା । 'ସମାଜ'ର ସମବୟସ୍କ ସକ୍ରିୟ କର୍ମକର୍ତ୍ତାମାନଙ୍କ ପ୍ରଭାବରୁ ସଂସାର ପ୍ରତି ବିରକ୍ତ ହୋଇ ଆସୁଥିବା ଗୋପୀନାଥ ନନ୍ଦ ଏହି ଜାତୀୟ କାର୍ଯ୍ୟକ୍ରମରେ ଯୋଗଦାନ କରିଥିବା ସମ୍ଭବପର । କିନ୍ତୁ କୌଣସି ରାଜନୈତିକ କିମ୍ବା ସାମାଜିକ କାର୍ଯ୍ୟକ୍ରମରେ ସେ ସକ୍ରିୟ ଅଂଶ ଗ୍ରହଣ କରିଥିବା ପ୍ରମାଣ ମିଳେ ନାହିଁ । ପରବର୍ତ୍ତୀ ସମୟରେ 'ଉତ୍କଳ ସମ୍ମିଳନୀ' ଓ 'ଉତ୍କଳ ସାହିତ୍ୟ ସମାଜ'ର କେତୋଟି ଅଧିବେଶନରେ ଯୋଗ ଦେଇଥିବା ଅଧିବେଶନ ଗୁଡ଼ିକର ବିବରଣୀରୁ ଜଣାଯାଏ । ସେ ସାହିତ୍ୟ ଚର୍ଚ୍ଚା ଓ ସାହିତ୍ୟ ସାଧନା ମଧ୍ୟରେ ହିଁ ନିଜକୁ ନିମଜ୍ଜିତ କରିଦେଇଥିବା ଏଥିରୁ ଅନୁମିତ ହୁଏ । ମାନସିକ ଅଶାନ୍ତି ଦୂର କରିବାପାଇଁ କୌଳିକ ବୃତ୍ତିରେ ମନୋନିବେଶ, ଦେବାରାଧନା ଏବଂ ସାହିତ୍ୟ ପାଠ ତ ତିନୋଟି ପ୍ରକୃଷ୍ଟ ସାଧନ । ଗୋପୀନାଥ ଏ ତିନୋଟିକୁ ହିଁ ଜୀବନ ସାଥୀ ରୂପେ ଗ୍ରହଣ କରି ନେଇଥିଲେ । 'କାବ୍ୟଶାସ୍ତ୍ର ବିନୋଦେନ କାଳୋଗଚ୍ଛତି ଧୀମତାମ୍' ।

କୌଳିକ ବୃତ୍ତିରେ ଦକ୍ଷତା ହାସଲ କରିବାପାଇଁ ଗୋପୀନାଥ ଆରମ୍ଭ କରିଛନ୍ତି ବିଭିନ୍ନ ଆୟୁର୍ବେଦ ଗ୍ରନ୍ଥ ଅନୁଶୀଳନ । ଗ୍ରନ୍ଥଗୁଡ଼ିକର ଭାବବୋଧ ସକାଶେ ସଂସ୍କୃତ ବ୍ୟାକରଣ ଓ ସାହିତ୍ୟ ଅଧ୍ୟୟନର ଆବଶ୍ୟକତା ଉପଲବ୍ଧି କରି ଆରମ୍ଭ ହୋଇଛି ତାଙ୍କର ସଂସ୍କୃତ ଶିକ୍ଷା । ଥରେ ସାହିତ୍ୟ ଅଧ୍ୟୟନ ପ୍ରତି ଶ୍ରଦ୍ଧା ଓ ଆଗ୍ରହ ସୃଷ୍ଟି ହେଲେ, ତାହା କେତେ ଦିଗରେ କେତେଦୂର ପର୍ଯ୍ୟନ୍ତ କିପରି ଯେ ସଂପ୍ରସାରିତ ହୋଇପାରେ, ତାହା ସାହିତ୍ୟିକମାନଙ୍କ ଅଗୋଚର ନୁହେଁ । ଅନୁକୂଳ ବାତାବରଣରେ ସୂକ୍ଷ୍ମ ବୀଜଟିଏ ଯେପରି ବହୁଶାଖ ମହାଦ୍ରୁମରେ ପରିଣତ ହୋଇପାରେ, ସେହିପରି ଥରେ ସାହିତ୍ୟ ଜିଜ୍ଞାସା ଆରମ୍ଭ ହେଲେ ଜୀବନର ଅବସାନ ପର୍ଯ୍ୟନ୍ତ ତାହା ଶେଷ ହେବାର ନୁହେ । ପାରଳାଖେମୁଣ୍ଡି ତ ବହୁ ପୂର୍ବରୁ ଉଭୟ ସଂସ୍କୃତ ଓ ଓଡ଼ିଆ ସାହିତ୍ୟର ଏକ ପ୍ରଧାନ କେନ୍ଦ୍ର ରୂପେ ରହି ଆସିଛି । ରାଜାମାନଙ୍କର ଶାସ୍ତ୍ରଜ୍ଞାନ, ସାହିତ୍ୟ ପ୍ରୀତି, କାବ୍ୟସୃଷ୍ଟି ପ୍ରତି ଆଗ୍ରହ ଏବଂ ବିଦ୍ୱଦ୍-ପୃଷ୍ଠପୋଷକତା ଦେଶୀୟ ଓ ବୈଦେଶିକ ବହୁ ପଣ୍ଡିତଙ୍କୁ ଆକୃଷ୍ଟ କରିବା ସହିତ ସ୍ଥାନୀୟ କବି, ସଙ୍ଗୀତଜ୍ଞଙ୍କ ମଧୁର ମୂର୍ଚ୍ଛନାରେ ପାରଳାଖେମୁଣ୍ଡିର ଗଳିକନ୍ଦିକୁ ମୁଖରିତ କରୁଥିଲା । ମଠମନ୍ଦିରମାନ ଭକ୍ତମାନଙ୍କୁ କେବଳ ଦେବଦର୍ଶନର ଯେ ସୁଯୋଗ ଦେଉଥିଲେ ତା ନୁହେ, ବହୁ ଦୁର୍ମୂଲ୍ୟ ଗ୍ରନ୍ଥରାଜିର ପ୍ରତିଲିପି ପ୍ରସ୍ତୁତ କରାଇ ସେମାନଙ୍କ ପିପଠିଷା ଜାଗ୍ରତ କରାଉଥିଲେ । ରାଜସଭା ଓ ଚତୁଷ୍ପାଠୀ ଗୁଡ଼ିକରେ ବିଦଗ୍ଧ ପଣ୍ଡିତଙ୍କ ଅଭାବ ନଥିଲା । ଜିଜ୍ଞାସୁ ଗୋପୀନାଥ ଏମାନଙ୍କ ସାହାଯ୍ୟ ନେଇଛନ୍ତି; ବିଭିନ୍ନ ଶାସ୍ତ୍ର ଅଧ୍ୟୟନ କରି ପଣ୍ଡିତ ବୋଲାଇଛନ୍ତି; ଶତ୍ରୁଠାରୁ ଶାସ୍ତ୍ରଶିକ୍ଷା କରିବାପାଇଁ କଦାପି କୁଣ୍ଠା ପ୍ରକାଶ କରିନାହାନ୍ତି । ଗିଡ଼ିଗୁ ବେଙ୍କଟ ରାମମୂର୍ତ୍ତି ତ ତାଙ୍କ ଗବେଷଣାର ଅନ୍ୟତମ ପଥପ୍ରଦର୍ଶକ ।

ନିଜର ଅଧ୍ୟୟନ, ଓଡ଼ିଆ ଓ ତେଲୁଗୁ ପଣ୍ଡିତମାନଙ୍କ ସାନ୍ନିଧ୍ୟ ଏବଂ ପାରଳାର କବି ଓ ସଙ୍ଗୀତଜ୍ଞମାନଙ୍କ ସାହଚର୍ଯ୍ୟ ୧୮୯୦ ମସିହା ବେଳକୁ ତାଙ୍କୁ କବିତା ରଚନାରେ ପ୍ରବୃତ୍ତ କରାଇଥିଲା । ସୃଷ୍ଟି ହୋଇଥିଲା 'କର୍ମ ବିପାକ' ପରି ଆୟୁର୍ବେଦ ଶାସ୍ତ୍ରୀୟ ପଦ୍ୟ, 'ବିରହ ଗୀତିକା' ଓ 'ଚନ୍ଦ୍ରୋଦୟ' ପରି ଶୃଙ୍ଗାର ରସସିକ୍ତ କବିତା । କାରୟିତ୍ରୀ ପ୍ରତିଭାର ଏହି ଆଦ୍ୟ ପରିସ୍ଫୁରଣ ଅନୁକୂଳ ବାତାବରଣରେ ହୋଇଉଠିଛି ଦୀପ୍ତିବନ୍ତ ।

ଊନବିଂଶ ଶତାବ୍ଦୀର ଶେଷ ଦଶକ କେବଳ ରାଜନୈତିକ ଦୃଷ୍ଟିକୋଣରୁ ନୁହେଁ ସାହିତ୍ୟ ସୃଷ୍ଟି ଦିଗରୁ ମଧ୍ୟ ପାରଳାଖେମୁଣ୍ଡିପାଇଁ ଥିଲା ଏକ ଗୁରୁତ୍ୱପୂର୍ଣ୍ଣ ଦଶକ । ୧୮୯୧ ସାଲ୍‌ରେ ଗୌରଚନ୍ଦ୍ର ଗଜପତି ନାରାୟଣ ଦେବ କୋର୍ଟ ଅଫ୍ ୱାର୍ଡ୍‌ସ୍‌ରୁ ରାଜ୍ୟ ଫେରିପାଇ ପାରଳାର ଶାସନଭାର ଗ୍ରହଣ କଲେ । ସେହିବର୍ଷ ହିଁ ଶ୍ୟାମସୁନ୍ଦର ରାଜଗୁରୁ ରାଜମହେନ୍ଦ୍ରି ସରକାରୀ ମହାବିଦ୍ୟାଳୟରୁ ବି.ଏ. ପାଶ୍ କରି ପାରଳାଖେମୁଣ୍ଡି ଫେରିଥିଲେ । ରାଜଗୁରୁ ପରିବାରର ଉନ୍ନତ ପରଂପରାକୁ ସମୁନ୍ନତ ରଖିବାକୁ ସେ ଡେପୁଟି ମାଜିଷ୍ଟ୍ରେଟ୍ ଚାକିରି ପରିତ୍ୟାଗ କରି ରାଜକୁମାରଙ୍କ ଶିକ୍ଷାଦାନ ଭାର ଗ୍ରହଣ କରିଥିଲେ ଏବଂ ଓଡ଼ିଆ ଭାଷା ସାହିତ୍ୟର ଉନ୍ନତିପାଇଁ ସମ୍ପୂର୍ଣ୍ଣ ସମର୍ପିତ ହୋଇଯାଇଥିଲେ । ତାଙ୍କ ସୁଶିକ୍ଷା ଫଳରେ ଚନ୍ଦ୍ର ମହାରାଜା ରୂପେ ସୁପରିଚିତ ପଦ୍ମନାଭ ନାରାୟଣ ଦେବ କବିତା ଓ ନାଟକ ରଚନା କ୍ଷେତ୍ରରେ ପ୍ରସିଦ୍ଧି ଅର୍ଜନ କରିଥିବା ସୁବିଦିତ । ତାଙ୍କ ସହଚାରୀ ଭାବେ ପଦ୍ମନାଭ ଭାରତୀୟ ଜାତୀୟ କଂଗ୍ରେସର ଅଧିବେଶନରେ ଯୋଗଦାନ କରିବା ସହିତ ଭାରତବର୍ଷର ବହୁ ତୀର୍ଥସ୍ଥାନ, ସହର, ଦର୍ଶନୀୟ ସ୍ଥାନ ପରିଭ୍ରମଣ କରି ଯେଉଁ ଅଭିଜ୍ଞତା ଅର୍ଜନ କରିଥିଲେ, ତା ଫଳରେ ପାରଳାଖେମୁଣ୍ଡି ଏକ ଆଧୁନିକ ସହର ରୂପେ ଗଢ଼ିଉଠିଥିଲା । ଗଜପତି ପ୍ରେସ୍, ପଦ୍ମନାଭ ରଙ୍ଗାଳୟ, ଗୌରଚନ୍ଦ୍ର ପାଠାଗାର, ମହାବିଦ୍ୟାଳୟ ସ୍ଥାପନ ଫଳରେ ପାରଳାଖେମୁଣ୍ଡିର ଯୁବକମାନେ ଆଧୁନିକ ଜ୍ଞାନାଲୋକ ପ୍ରାପ୍ତିର ସୁଯୋଗ ଲାଭ କରିଥିଲେ । ରାଜବାଟୀ, ମହାବିଦ୍ୟାଳୟ ଓ ଆପନା ପରିଚ୍ଛାଙ୍କ ରାଧାକାନ୍ତ ମଠରେ ସମୃଦ୍ଧ ପାଠାଗାରମାନ ସ୍ଥାପିତ ହୋଇଥିଲା । ଓଡ଼ିଆ, ତେଲୁଗୁ, ଇଂରେଜୀ, ବଙ୍ଗଳା, ହିନ୍ଦୀ, ସଂସ୍କୃତ ଇତ୍ୟାଦି ଭାଷାର ସଦ୍ୟ ପ୍ରକାଶିତ ଗ୍ରନ୍ଥ ଓ ପତ୍ରପତ୍ରିକା ପାଠ କରିବାର ସୌଭାଗ୍ୟ ପାରଳାର ଉଦୀୟମାନ ଯୁବକମାନଙ୍କୁ ମିଳିପାରିଥିଲା । ଏଠାରେ ଉଲ୍ଲେଖଯୋଗ୍ୟ ଯେ ପାରଳାର ଯୁବଲେଖକମାନେ ଇନ୍ଦ୍ରଧନୁ-ବିଜୁଳି ବିବାଦ ବେଳେ ଇନ୍ଦ୍ରଧନୁ ଗୋଷ୍ଠୀର ଅନ୍ତର୍ଭୁକ୍ତ ଥିଲେ । ଦକ୍ଷିଣ ଓଡ଼ିଶାପାଇଁ ଶ୍ୟାମସୁନ୍ଦର ରାଜଗୁରୁ ଥିଲେ 'ଇନ୍ଦ୍ରଧନୁ' ପତ୍ରିକାର ବିତରକ । ପଦ୍ମନାଭ ନାରାୟଣ ଦେବ ଏହାକୁ ଯେ ଆର୍ଥିକ ସାହାଯ୍ୟ ପ୍ରଦାନ କରୁଥିଲେ ତା' ନୁହେ, ନିଜ ରଚନା ଦ୍ୱାରା ତା'ର ପୃଷ୍ଠା ମଧ୍ୟ ମଣ୍ଡନ କରୁଥିଲେ । ୧୮୯୦ ସାଲରେ ହିଁ ଗଞ୍ଜାମର କୋର୍ଟ କଚେରୀରେ ଓଡ଼ିଆ ଭାଷାର ପ୍ରଚଳନ ଆରମ୍ଭ ହୋଇଥିଲା । ଓଡ଼ିଶାର ପ୍ରଥମ ଦୀର୍ଘସ୍ଥାୟୀ ରଙ୍ଗମଞ୍ଚ ପଦ୍ମନାଭ ରଙ୍ଗାଳୟ ଏହ ଦଶକରେ ହିଁ ସ୍ଥାପିତ ହୋଇଥିଲା ।

ଏଠାରେ ଅନ୍ୟ ଏକ ବିଷୟ ମଧ୍ଯ ଅବଶ୍ୟ ଉଲ୍ଲେଖନୀୟ । ଓଡ଼ିଶାରେ ପ୍ରାଚୀନ ଏବଂ ଆଧୁନିକ ସାହିତ୍ୟକୁ ନେଇ ଯେପରି ଇନ୍ଦ୍ରଧନୁ-ବିଜୁଳି ବିବାଦ ଉପୁଜିଥିଲା, ବିଂଶ ଶତାବ୍ଦୀର ପ୍ରଥମ ଦଶକରେ ପାଣ୍ଡିତ୍ୟପୂର୍ଣ୍ଣ ଗ୍ରାନ୍ଥିକ ବା ସରଳ ଗ୍ରାନ୍ଥିକ ଭାଷା ଏବଂ ବ୍ୟାବହାରିକ ଭାଷାରେ ପାଠ୍ୟପୁସ୍ତକ ପ୍ରଣୟନ ନେଇ ତେଲୁଗୁ ବିଦ୍ୱାନ୍‌ମାନଙ୍କ ମଧ୍ୟରେ ଏକ ବିବାଦ ସୃଷ୍ଟି ହୋଇଥିଲା । ଏହା ତେଲୁଗୁ ସାହିତ୍ୟର ଇତିହାସରେ ବ୍ୟାବହାରିକ-ଗ୍ରାନ୍ଥିକ ଭାଷା ଆନ୍ଦୋଳନ ବା ମଡ଼େର୍ଣ୍ଣ ତେଲୁଗୁ ମୁଭ୍‌ମେଣ୍ଟ ରୂପେ ପରିଚିତ । ସାଧାରଣ ବ୍ୟାବହାରିକ ଭାଷାକୁ ଶିକ୍ଷାଦାନ କ୍ଷେତ୍ରରେ ପ୍ରାଧାନ୍ୟ ଆରୋପ କରିବାପାଇଁ ୧୯୦୬ ମସିହାରେ ମାଡ୍ରାସ୍ ପ୍ରେସିଡ଼େନ୍‌ସିର ଉତ୍ତର ଜିଲ୍ଲାମାନଙ୍କର ସ୍କୁଲ ଇନସ୍‌ପେକ୍ଟର ଜେ.ଏ. ୟାର୍ଡ଼ସ୍‌ଙ୍କ ମନରେ ଯେଉଁ ଚିନ୍ତା ଜାଗ୍ରତ ହୋଇଥିଲା, ତା'ର ସମର୍ଥକ ଥିଲେ ପାରଳାଖେମୁଣ୍ଡି ମହାବିଦ୍ୟାଳୟର ତତ୍କାଳୀନ ଇତିହାସ ଅଧ୍ୟାପକ ଏବଂ ପ୍ରବୀଣ ଭାଷାତତ୍ତ୍ୱବିତ୍ ଗିଡୁଗୁ ବେଙ୍କଟ ରାମମୂର୍ତ୍ତି । ଏଣୁ ସେତେବେଳେ ପାରଳାଖେମୁଣ୍ଡି ତେଲୁଗୁ ସାହିତ୍ୟ ଚର୍ଚ୍ଚାର ଏକ ପ୍ରମୁଖ କେନ୍ଦ୍ରରୂପେ ପରିଚିତ ଥିଲା । ରାମମୂର୍ତ୍ତି ଆଜୀବନ ଏହି ଆନ୍ଦୋଳନକୁ ଫଳପ୍ରସୂ କରିବାପାଇଁ ଉଦ୍ୟମ ଜାରି ରଖିଥିଲେ । ଅବଶ୍ୟ ତାଙ୍କ ଜୀବଦ୍ଦଶାରେ ନ ହେଲେ ସୁଦ୍ଧା ପରବର୍ତ୍ତୀ ସମୟରେ ବିଶ୍ୱବିଦ୍ୟାଳୟ ଓ ଶିକ୍ଷା ବିଭାଗ ଏହାକୁ ଗ୍ରହଣ କରିଥିଲେ । ନିଜ ଭାଷା ଏବଂ ପାଣ୍ଡିତ୍ୟ ପାଇଁ ରାମମୂର୍ତ୍ତିଙ୍କ ମନରେ କମ୍ ଅହଂକାର ନଥିଲା । ସେ ବିଭିନ୍ନ ସମୟରେ ଓଡ଼ିଆ ଭାଷା ଓ ସାହିତ୍ୟ ପ୍ରତି କଟୁ ମନ୍ତବ୍ୟ ଦେବାରେ ପଶ୍ଚାତ୍‌ପଦ ନ ଥିଲେ । କେବଳ ରାମମୂର୍ତ୍ତି ନୁହନ୍ତି ସେ ସମୟରେ ପ୍ରାୟ ସମସ୍ତ ତେଲୁଗୁ ବୁଦ୍ଧିଜୀବୀମାନଙ୍କ ମନରେ ନିଜ ଭାଷା ଓ ସାହିତ୍ୟକୁ ଧରି ଏ ପ୍ରକାର ଅହମିକା ହିଁ ରହିଥିଲା । ମାନ୍ଦ୍ରାଜ ପ୍ରେସିଡ଼େନ୍‌ସିର ଶାସନକେନ୍ଦ୍ର ନିକଟରେ ରହିଥିବାଯୋଗୁଁ ତେଲୁଗୁମାନେ ପାଶ୍ଚାତ୍ୟ ଶିକ୍ଷା ଆହରଣ କରିବାର ଅଧିକ ସୁଯୋଗ ଲାଭ କରିଥିଲେ । ଫଳରେ ସରକାରୀ କାର୍ଯ୍ୟାଳୟମାନଙ୍କରେ ସେମାନଙ୍କ ସଂଖ୍ୟା ହିଁ ଅଧିକ ଥିଲା । ତେଲୁଗୁ ଭାଷାରେ ରାଜକାର୍ଯ୍ୟ ପରିଚାଳିତ ହେଉଥିବା ଯୋଗୁଁ ଓଡ଼ିଆ ରାଜାମାନଙ୍କ ଦପ୍ତର ଓ ରାଜସଭାରେ ମଧ୍ୟ ସେମାନଙ୍କ ଆଧିପତ୍ୟ ରହିଥିଲା । ପାରଳାଖେମୁଣ୍ଡି ମହାବିଦ୍ୟାଳୟରେ ଜଣେ ମାତ୍ର ଓଡ଼ିଆ ପଣ୍ଡିତଙ୍କୁ ଛାଡ଼ିଦେଲେ ଅନ୍ୟ ସମସ୍ତେ ତେଲୁଗୁ ଭାଷାଭାଷୀ ଥିବା ଆପନ୍ନା ପଣ୍ଡାଙ୍କ ବିବରଣୀରୁ ଜଣାଯାଏ (ନବଗଂଜାମ) । ଓଡ଼ିଆ ଭାଷାର ପ୍ରାଚୀନତା ଏବଂ ପ୍ରାଚୀନ ଓ ଆଧୁନିକ ଓଡ଼ିଆ ସାହିତ୍ୟର ପୁଷ୍କଳତା ସମ୍ପର୍କରେ ଧାରଣା ନ ଥିବା ଯୋଗୁଁ ଏମାନେ ନିଜର ବଡ଼ିମା ପ୍ରକାଶ କରୁଥିଲେ । ଏ ସମ୍ପର୍କରେ ଓଡ଼ିଆମାନଙ୍କର ମଧ୍ୟ ବିଶେଷ ଧାରଣା ନଥିବାରୁ ସେମାନେ ତ୍ରୈଲଙ୍ଗ୍ୟମାନଙ୍କ 'ଆର୍ଭଟି'ର ଯଥାର୍ଥ ଉତ୍ତର ଦେଇ ନ ପାରି ହୀନମନ୍ୟତାର ଶିକାର ହୋଇପଡୁଥିଲେ । ସେ ସମ୍ପର୍କରେ ପଣ୍ଡିତ

ଗୋପୀନାଥ ନନ୍ଦଶର୍ମାଙ୍କ ସଂସ୍କୃତରୁ ଅନୂଦିତ 'ଜାନକୀ ପରିଣୟ' ନାଟକର ଭୂମିକାରେ ଥିବା ନିମ୍ନଲିଖିତ ବିବୃତିଟି ପ୍ରଣିଧାନଯୋଗ୍ୟ –

*୧୯୦୦ ବର୍ଷର ମଧ୍ୟଭାଗରେ ସମ୍ଭବତଃ ଜୁଲାଇ ମାସରେ ଏହି ନାଟକଟିକୁ ଅନୁବାଦିତ କରିଥିଲି । ଏତତ୍ ପୂର୍ବରୁ ତ୍ରୈଲଙ୍ଗ୍ୟ ଭାଷାରେ ଅନୁବାଦିତ ଏହି ଜାନକୀ ପରିଣୟ ନାଟକଟି ସେହିବର୍ଷ କେବଳ ଏଫ୍.ଏ. କ୍ଲାସ୍‌ର ତ୍ରୈଲଙ୍ଗ୍ୟ ପାଠ୍ୟପୁସ୍ତକ ରୂପେ ନିର୍ବାଚିତ ହୋଇଥିଲା; ଅତ୍ରତ୍ୟ ରାଜକଲେଜରେ ମଧ୍ୟ ପଠିତ ହେଉଥିଲା । ବୋଧହୁଏ ସେ ସମୟକୁ ଓଡ଼ିଆରେ ତାଦୃଶ ନାଟକ ଲିଖିତ ଓ ମୁଦ୍ରିତ ହୋଇପାରି ନଥିଲା ବୋଲି ପ୍ରୋକ୍ତ ଶ୍ରେଣୀ ସକାଶେ ଅନ୍ୟାନ୍ୟ ପୁସ୍ତକମାନ ନିର୍ବାଚିତ କରାଯାଇଥିଲା । ତେତେବେଳେ ଏହି କଲେଜର ଇତିହାସ ଅଧ୍ୟାପକ ଶ୍ରୀ ରାମମୂର୍ତ୍ତି, ବି.ଏ. ମହାଶୟ ପ୍ରଭୃତି କେତେକ ତ୍ରୈଲଙ୍ଗୀୟ ବ୍ୟକ୍ତି କିଞ୍ଚିତ ତାଚ୍ଛଲ୍ୟରେ ମୋତେ କହିଲେ କି, "ଦେଖନ୍ତୁ, କଲେଜ କ୍ଲାସରେ ଆମ୍ଭମାନଙ୍କ ଭାଷାରେ କାଦୃଶ ଉଚ୍ଚ ଧରଣର ପୁସ୍ତକ ପଢ଼ାଯାଉଅଛି, ଜାନକୀ ପରିଣୟ ନାଟକର ସଦୃଶ ଖଣ୍ଡିଏ ପୁସ୍ତକ ଆପଣମାନଙ୍କ ସାହିତ୍ୟରେ ଅଛି କି ? ଏଭଳି ଗଣନିବଦ୍ଧ ପଦ୍ୟ ରଚନାକ୍ରମ ଓଡ଼ିଆ ସାହିତ୍ୟରେ ଅଛି କି" ଇତ୍ୟାଦି । କେଜାଣି ଅବା କାହିଁକି, ଏବେ କାରଣ କହି ନ ପାରେଁ, ତାହା ଶୁଣିବା ମାତ୍ରକେ ହୃଦୟର ଏକଆଡୁ କ୍ରୋଧାଗ୍ନି ସାବହିତ୍ୱଥରୂପେ ଧମଧମାୟମାନ ହୋଇ ଉଠିଲା, ଅନ୍ୟଆଡ଼େ ଅଭିମାନ ହୃଦୟକୁ ଅସ୍ତବ୍ୟସ୍ତ ଓ ଅବସନ୍ନ କରି ପକାଇଲା । ଯାହାହେଉ ତେତେବେଳେ କୌଣସି ପ୍ରକାରେ ସ୍ଥିର ହୋଇ ସହସା ଭଞ୍ଜ ସାହିତ୍ୟର ସମୁତ୍କୃଷ୍ଟତା କୀର୍ତ୍ତନ ଓ ପ୍ରଦର୍ଶନପୂର୍ବକ ସମୁଚିତ ଉତ୍ତରରେ ପ୍ରୋକ୍ତ ପ୍ରଶ୍ନର ସମାଧି ସମ୍ପନ୍ନ କରିଦେଇଥିଲି । ତା ପରେ ବିଚାର କଲି, ସତ୍ୟ କହିବାକୁ ଗଲେ ତ୍ରୈଲଙ୍ଗ ସାହିତ୍ୟରେ ଯାଦୃଶ ପ୍ରୌଢ଼ରୀତିରେ ପଦ୍ୟରଚନା ପରିପାଟୀର ପଟିମା ପରିଦୃଷ୍ଟ ହୁଏ, ତାହା ଆମ୍ଭମାନଙ୍କ ସାହିତ୍ୟରେ କେତେ ପରିମାଣରେ ଅଛି ? ସେହି ଭାଷାର ନିୟମାନୁସାରେ ଉଚ୍ଚ ସାହିତ୍ୟିକ ପଦ୍ୟକାବ୍ୟ ଲେଖିବାପାଇଁ ସେମାନେ ଯେତେଦୂର ବିଦ୍ୱତ୍ତା ଓ ପ୍ରତିଭା ଆବଶ୍ୟକ ମନେ କରନ୍ତି, ବର୍ତ୍ତମାନ ଓଡ଼ିଆ ପଦ୍ୟଲେଖାରେ ସର୍ବତ୍ର ତେତେ ଦରକାର ପଡୁଅଛି କି ? ଦେଖୁଅଛୁଁ, ବିଚାରରେ ଯେକୌଣସିମତେ କେବଳ ଅନ୍ତିମ ଉପଧା ମିଳାଇ ଦେଲେ ପଦ୍ୟ ରଚନା ତ ଖୁବ୍ ସମୀଚୀନ ବୋଧ ହୋଇ*

*ଯାଉଅଛି ! + + + ତଥାପି ତେତେବେଳେ ଧୈର୍ଯ୍ୟ-ଦତ୍ତ ହତୋତ୍ସାହରେ ପ୍ରୋକ୍ତ ତ୍ରୈଲଙ୍ଗ ବନ୍ଧୁଙ୍କୁ କହିଲି, "ଆଚ୍ଛା ହେଉ, ଦେଖିବ ? ଥାଅ, ପ୍ରୋକ୍ତ ନାଟକଟିକୁ ଅଳ୍ପ ସମୟ ମଧ୍ୟରେ ଏତାଦୃଶ ଧରଣରେ ଲେଖିଆଣି ଦେଖାଇବି ।" ତା ପରେ ଏହି ନାଟକର ଅନୁବାଦରେ ଲାଗିଲି । ପ୍ରାୟଶଃ ମାସଷଟ୍କରେ ରଚନା ଶେଷ କଲି । ଯେତେବେଳେ ନାଟକର ଲେଖା ସମାପ୍ତ ହେଲା, ତଦାନୀନ୍ତନ ଅତ୍ରତ୍ୟ ପ୍ରଧାନ ସାହିତ୍ୟରସିକ ସ୍ୱର୍ଗୀୟ ୰ ପଦ୍ମନାଭ ନାରାୟଣ ମହୋଦୟଙ୍କୁ ଜଣାଇଥିଲି । ସେ ମହୋଦୟ ସାଦରେ ଶୁଣିବାର ଇଚ୍ଛାକରି ଗୋଟିଏ ପଣ୍ଡିତ ସଭା ଆହୂତ କରିଥିଲେ । ସଭାରେ କ୍ରମଶଃ ନାଟକଖଣ୍ଡିକ ପଠିତ ହେଲା । ସଭାସଦ ସମସ୍ତେ ପରିତୁଷ୍ଟ ହୃଦୟରେ ଯେ ଯାହାର ମନ୍ତବ୍ୟ ପ୍ରକାଶ କଲେ । ଅନେକେ ଲିଖିତ ମନ୍ତବ୍ୟ ଦେଇଥିଲେ । ସେଥିରୁ କେତେଗୋଟି ମାତ୍ର ପୁସ୍ତକର ଏକ ପ୍ରଦେଶରେ ନିହିତ କରିଅଛି ଏବଂ ଅନ୍ୟତ୍ର ପ୍ରାପ୍ତ ମନ୍ତବ୍ୟଗୁଡ଼ିକରୁ କେତେକ ଖଣ୍ଡି ମଧ୍ୟ ଦେଇଅଛି ।*

*ତାହାର କେତେକ ଦିନ ପରେ ଏହି ନାଟକର ପାଣ୍ଡୁଲିପିଟି ନେଇ ପୂର୍ବୋକ୍ତ ତ୍ରୈଲଙ୍ଗୀୟ ବନ୍ଧୁଙ୍କ ହସ୍ତରେ ଦେଲି । ସେ ମହାଶୟ ବିଶେଷତଃ ସଂସ୍କୃତ ଏବଂ ସାମାନ୍ୟତଃ ଓଡ଼ିଆ ଭାଷା ମଧ୍ୟ ଜାଣନ୍ତି । ନାଟକଟି କେତେକଦିନ ପର୍ଯ୍ୟନ୍ତ ଆମୂଳାନ୍ତ ସଂସ୍କୃତ ମୂଳଗ୍ରନ୍ଥ ସହ ମିଳାଇ ଦେଖିନେଲେ । ପରିତୁଷ୍ଟ ହୃଦୟରେ ଇଂରେଜୀ ଭାଷାରେ ଖଣ୍ଡିଏ ମନ୍ତବ୍ୟ ପତ୍ର ମୋଠାକୁ ପଠାଇ ଦେଇଥିଲେ । ସେଥିରେ ଏକ ପ୍ରଦେଶରେ ସେ ଲେଖିଅଛନ୍ତି କି –*

*I compared your Oriya translation of several passages in the Janakiparinaya with the Original and found it quite accurate. The beauty of the Sanskrit original is literally transferred into the Oriya translation. To put it briefly I am of opinion that the Oriya literature is enriched by your literary productions.*

ପାରଳାଖେମୁଣ୍ଡିର ଏହି ତତ୍କାଳୀନ ବାତାବରଣ ପଦେପଦେ ଗୋପୀନାଥ ନନ୍ଦଶର୍ମାଙ୍କ ସାରସ୍ୱତ ସୃଷ୍ଟିକୁ ନିୟନ୍ତ୍ରଣ କରିଛି । କବିତା ରଚନାପାଇଁ ସେ ପ୍ରେରଣା ପାଇଛନ୍ତି ପାରଳାଖେମୁଣ୍ଡିର ଅତୀତ ଓ ବର୍ତ୍ତମାନର କବି ଓ ସଂଗୀତଜ୍ଞମାନଙ୍କଠାରୁ ।

କିଛିଦିନ ରାଧାନାଥଙ୍କ ପ୍ରଭାବରେ ସେ ଉପଧା ମେଳ ରଖି ପଦ୍ୟ ରଚନା କରିଛନ୍ତି । କିନ୍ତୁ ଇନ୍ଦ୍ରଧନୁ ଗୋଷ୍ଠୀର ରାଧାନାଥ ବିରୋଧୀ ମନୋବୃତ୍ତି ପରବର୍ତ୍ତୀ ସମୟରେ ତାଙ୍କୁ ଏଥିରୁ ନିବୃତ୍ତ କରିଛି । ପଦ୍ମନାଭ ରଙ୍ଗାଳୟପାଇଁ ସେ ସଂସ୍କୃତ ନାଟକର ଅନୁସରଣରେ ଏକରାତ୍ରାଭିନୟ ଉପଯୋଗୀ ନାଟକ ରଚନାରେ ହାତ ଦେଇଛନ୍ତି । ଆଧୁନିକ ତେଲେଗୁ ଆନ୍ଦୋଳନରେ ବିରୁଦ୍ଧ ଗୋଷ୍ଠୀର ସପକ୍ଷରେ ଯାଇ ନିଜ ଭାଷାକୁ କରିଛନ୍ତି ସଂସ୍କୃତାନୁଗ ଏବଂ ଦୀର୍ଘ ସମାସ-ଅନୁପ୍ରାସ-ସାର୍ଥକବିଶେଷଣବହୁଳ । ଓଡ଼ିଆ ଭାଷାରେ ଯେ ଗଣ ଓ ମାତ୍ରାବୃତ୍ତ ଛନ୍ଦ ବିଶିଷ୍ଟ ପଦ୍ୟରଚନା କରାଯାଇପାରେ, ତାହା ତେଲେଗୁ କବି ଓ ସାହିତ୍ୟିକମାନଙ୍କୁ ଜଣାଇ ଦେବାପାଇଁ ନିଜ ଅନୁବାଦ ଓ ନାଟକ ଗ୍ରନ୍ଥଗୁଡ଼ିକରେ ସଂସ୍କୃତ ଛନ୍ଦ ବ୍ୟବହାର କରିଛନ୍ତି । ପଦ୍ମନାଭ ଏବଂ ଗୌରଚନ୍ଦ୍ରଙ୍କ ନାଟକରେ ଆଞ୍ଚଳିକ ଶବ୍ଦ ଓ ଭାଷାର ପ୍ରୟୋଗ ପ୍ରତି କଟକରୁ ପ୍ରକାଶିତ ଉତ୍କଳ ଦୀପିକା, ଉତ୍କଳ ସାହିତ୍ୟ ପ୍ରଭୃତି ପତ୍ରିକାରେ ତିକ୍ତ ମନ୍ତବ୍ୟ ପ୍ରକାଶ ପାଇବା ଫଳରେ ଶ୍ୟାମସୁନ୍ଦର ରାଜଗୁରୁ ଯେତେବେଳେ ତା'ର ପ୍ରତିବାଦ କରିବାପାଇଁ ପ୍ରବନ୍ଧମାନ ଲେଖିଛନ୍ତି, ଗୋପୀନାଥ ବୋଧହୁଏ ଆଧୁନିକ-ଶିକ୍ଷିତ ବୟୋଜ୍ୟେଷ୍ଠ ବନ୍ଧୁଙ୍କ ସହିତ ସହଯୋଗ କରିଛନ୍ତି; ଓଡ଼ିଆ ଭାଷା ଅନୁଶୀଳନରେ ବ୍ରତୀ ହୋଇଛନ୍ତି । କିନ୍ତୁ ସବୁଠାରୁ ବଡ଼ କଥା ହେଲା ଓଡ଼ିଆ ଭାଷା ଓ ସାହିତ୍ୟ ଗବେଷଣା ଏବଂ ଶବ୍ଦତାତ୍ତ୍ୱିକ ଅଭିଧାନ ପ୍ରଣୟନପ୍ରତି ତାଙ୍କର ଆଗ୍ରହ । ନନ୍ଦେ ବୋଧହୁଏ ଅନୁଭବ କରିଥିବେ ଯେ ତେଲେଗୁ ସାହିତ୍ୟ-ସମାଲୋଚକ ଏବଂ ଗବେଷକମାନଙ୍କ ପଦାଙ୍କ ଅନୁସରଣ କରି ହିଁ ସେ ପଡ଼ୋଶୀ ଭାଷାର ଅଧ୍ୟାପକ ଓ ସାହିତ୍ୟିକମାନଙ୍କୁ ସଠିକ୍ ଉତ୍ତର ଦେଇପାରିବେ । ଏ ଦିଗରେ ତାଙ୍କ ପଥପ୍ରଦର୍ଶକ ହୋଇଛନ୍ତି ଚାର୍ଲସ୍ ଫିଲିପ୍ ବ୍ରାଉନ୍ । ତେଲୁଗୁ ଭାଷା ଓ ସାହିତ୍ୟ ପାଇଁ ସେ ଯାହା କରିଯାଇଛନ୍ତି, ସେଥିପାଇଁ ସେ ତେଲୁଗୁଭାଷାଭାଷୀମାନଙ୍କ ନିକଟରେ ବ୍ରାଉନ୍ ଦୋରା ବା ବ୍ରାଉନ୍ ଶାସ୍ତ୍ରୀ ରୂପେ ସୁପରିଚିତ । ଏହି କୃତୀ ସାଧକଙ୍କ ସାରସ୍ୱତ କୃତିତ୍ୱ ସଂପର୍କରେ ଅବହିତ ନହେଲେ ଗବେଷକ ଗୋପୀନାଥ ନନ୍ଦଙ୍କ ସାଧନାର ସ୍ୱରୂପ ଜାଣିବା ଅସଂପୂର୍ଣ୍ଣ ରହିଯିବ ।

- ୫ -

୧୭୯୮ ମସିହାରେ କଲିକତାଠାରେ ଚାର୍ଲସ୍ ଫିଲିପ ବ୍ରାଉନ୍‌ଙ୍କ ଜନ୍ମ । ପିତା ରଭରେଣ୍ଡ ଡେଭିଡ୍ ବ୍ରାଉନ୍ (୧୭୬୩ଠାରୁ ୧୮୧୨) ଥିଲେ ସେ ସମୟରେ କଲିକତାରେ ରହୁଥିବା ମିଶନାରୀ ଏବଂ ଖ୍ରୀଷ୍ଟିଆନମାନଙ୍କ ମଧ୍ୟରେ ଅତ୍ୟନ୍ତ ସୁପରିଚିତ । ବିଭିନ୍ନ ଭାରତୀୟ ଭାଷା ସହିତ ହିବ୍ରୁ, ସିରିଏକ, ଆରବିକ, ପାର୍ଶୀ, ଗ୍ରୀକ୍ ଓ ଲେଟିନ୍ ଭାଷାରେ ତାଙ୍କର ଗଭୀର ପ୍ରବେଶ ଥିଲା । ମୃତ୍ୟୁ ପର୍ଯ୍ୟନ୍ତ ସେ ପୁତ୍ର ଚାର୍ଲସ୍‌କୁ ଏସବୁ ଭାଷା ସଂପର୍କରେ ପ୍ରାଥମିକ ଶିକ୍ଷା ଦେଉଥିଲେ । ୧୮୧୨ ମସିହାରେ ପିତାଙ୍କ ମୃତ୍ୟୁ ପରେ ଚାର୍ଲସ୍‌ଙ୍କ ପରିବାର ଲଣ୍ଡନକୁ ଉଠିଯିବା ଫଳରେ ସେ ସେଠାରେ ପାଞ୍ଚବର୍ଷପାଇଁ ଶିକ୍ଷାଲାଭ

କରି ଇଷ୍ଟ ଇଣ୍ଡିଆ କଂପାନୀରେ ଯୋଗ ଦେଲେ । ୧୮୧୭ ମସିହାରେ କଂପାନୀ ତାଙ୍କୁ ମାନ୍ଦ୍ରାଜଠାରେ ବେସାମରିକ ପ୍ରଶାସକରୂପେ ନିଯୁକ୍ତି ଦିଅନ୍ତି । ସେତେବେଳେ ସେ ତେଲୁଗୁ ଭାଷା ସଂପର୍କରେ ସଂପୂର୍ଣ୍ଣ ଅଜ୍ଞ । ତତ୍କାଳୀନ ମାନ୍ଦ୍ରାଜର ଗଭର୍ଣ୍ଣର ସାର୍ ଥୋମାସ୍ ମୁନ୍‌ରୋ କନିଷ୍ଠ ପ୍ରଶାସକମାନଙ୍କୁ ଆଞ୍ଚଳିକ ଭାଷା ଶିକ୍ଷା କରିବାପାଇଁ ବାଧ୍ୟ କରିବାରୁ ସେ ତେଲେଗୁ ଭାଷା ଶିକ୍ଷା ଆରମ୍ଭ କରିଥିଲେ । କିଛି ଉପରିସ୍ଥ କର୍ମଚାରୀଙ୍କ ତେଲୁଗୁ ଭାଷାରେ ପ୍ରବୀଣତା ତାଙ୍କୁ ଏ ଦିଗରେ ଅଧିକ ପ୍ରୋତ୍ସାହିତ କରିଥିଲା । ମସୁଲି-ପାଟଣାମ୍‌ଠାରେ ଥିଲାବେଳେ ୧୮୨୪ ମସିହାରୁ ତେଲୁଗୁ ଭାଷା ଓ ସାହିତ୍ୟ ପ୍ରତି ତାଙ୍କର ଆଗ୍ରହ ସୃଷ୍ଟି ହୋଇଥିଲା । ସେତେବେଳେ ସେ ଯେଉଁ ଶିକ୍ଷକମାନଙ୍କଠାରୁ ଶିକ୍ଷା ଗ୍ରହଣ କରିବାପାଇଁ ଚେଷ୍ଟା କରୁଥିଲେ ସେମାନେ ପରଂପରାଗତ ଶୈଳୀରେ ତାଙ୍କୁ ବ୍ୟାକରଣର ସୂତ୍ରାବଳୀ ଏବଂ କାବ୍ୟଗୁଡ଼ିକୁ ମୁଖସ୍ଥ କରିବାପାଇଁ ହିଁ ପ୍ରବର୍ତ୍ତାଇ ଥିଲେ । ଏହା ବ୍ରାଉନ୍‌ଙ୍କପାଇଁ ସନ୍ତୋଷଜନକ ନ ଥିଲା । ଅଧ୍ୟୟନ ବେଳେ ତେଲୁଗୁ ରଚନାଗୁଡ଼ିକର ବ୍ୟାଖ୍ୟାଗୁଡ଼ିକ ମଧ ସଠିକ୍ ନ ଥିବା ତାଙ୍କର ହୃଦ୍‌ବୋଧ ହୋଇଥିଲା । ତେଣୁ ସାଧାରଣ କଥିତ ଭାଷାରେ ପ୍ରୌଢ଼ ପ୍ରବନ୍ଧ କାବ୍ୟଗୁଡ଼ିକର ଅର୍ଥ ଓ ରସସୌନ୍ଦର୍ଯ୍ୟ ପାଠକମାନଙ୍କ ନିକଟରେ ଉପସ୍ଥାପନ କରିବାପାଇଁ ସେ ଉଦ୍ୟମ ଆରମ୍ଭ କରିଥିଲେ । ଧୀରେ ଧୀରେ ତେଲୁଗୁ ସାହିତ୍ୟର ବିପୁଳ ସମ୍ପଦ ତାଙ୍କ ଦୃଷ୍ଟିକୁ ଆସିବାକୁ ଲାଗିଲା । ସେଗୁଡ଼ିକର ଅର୍ଥ ଅବବୋଧପାଇଁ ସେ ତେଲୁଗୁ ବ୍ୟତୀତ ସଂସ୍କୃତ, ତାମିଲ୍, କନ୍ନଡ଼, ମରାଠୀ ଇତ୍ୟାଦି ଅନ୍ୟାନ୍ୟ ଭାରତୀୟ ଭାଷା ମଧ ଶିଖିବାସକାଶେ ଚେଷ୍ଟା କଲେ । ମସୁଲିପାଟନମ୍, ରାଜମହେନ୍ଦ୍ରି, ଗୁଣ୍ଟୁର, ମେଡ୍ରାସ୍ ପ୍ରଭୃତି ଯେଉଁ ଯେଉଁ ଜିଲ୍ଲାରେ ସେ କାର୍ଯ୍ୟ କରିଛନ୍ତି ସେଠାରେ ଥିବା ସଂସ୍କୃତ ଓ ତେଲୁଗୁ ପଣ୍ଡିତ ଏବଂ କର୍ମଚାରୀଙ୍କ ସାହାଯ୍ୟରେ ପାଣ୍ଡୁଲିପିମାନ ସଂଗ୍ରହ କରିଛନ୍ତି । ଏମାନେ ତେଲୁଗୁ ଭାଷାଭାଷୀ ଅଞ୍ଚଳରେ ଥିବା ରାଜକୀୟ ଏବଂ ଘରୋଇ ଗ୍ରନ୍ଥଭଣ୍ଡାରଗୁଡ଼ିକ ସଂପର୍କରେ ସୂଚନା ଦେଇଛନ୍ତି । ଏ କ୍ଷେତ୍ରରେ ପ୍ରଶାସନିକ କ୍ଷମତା ତାଙ୍କୁ ଯେତେ ପରିମାଣରେ ସାହାଯ୍ୟ କରିଥିଲା, ତା ଅପେକ୍ଷା ଅଧିକ ସହାୟକ ଥିଲା ତାଙ୍କ ଉଦାରତା, ନମ୍ର ଆଚରଣ, ଜ୍ଞାନ ଗଭୀରତା ଏବଂ ତେଲୁଗୁ ସାହିତ୍ୟର ଉନ୍ନତି କଳ୍ପେ ଅକାତରଭାବେ ଅର୍ଥବ୍ୟୟ । ଫଳରେ ସେ ଜାଲୁରି ଆପ୍ପୟା ପାନ୍ତୁଲୁ, ପଠ୍ୟମ୍ ଅଦ୍ୱୈତ ବ୍ରହ୍ମଶାସ୍ତ୍ରୀ, କାଣ୍ଡେଗୁଲା ଜଗନ୍ନାଥ ରାଓ, ଆକ୍ଷିନ୍ତାଲା ସୁଜାରାଓ ଶାସ୍ତ୍ରୀ, ମାମିଡ଼ି ଭେଙ୍କୟା, ବଙ୍ଗିପୁରମ୍ ଭେଙ୍କଟ କୃଷ୍ଣମାଚାର୍ଯ୍ୟ, ବୁଚାୟା ଶାସ୍ତ୍ରୀ ପ୍ରଭୃତିଙ୍କପରି ବିଦ୍ୱାନମାନଙ୍କ ସାହାଯ୍ୟ ଓ ସହଯୋଗ ଲାଭ କରିପାରିଥିଲେ । ସେ ପୋଷ୍ଟମାଷ୍ଟର ଜେନେରାଲ, ସରକାରୀ ତେଲୁଗୁ ଅନୁବାଦକ, ଶିକ୍ଷା କାଉନ୍‌ସିଲର ମନୋନୀତ ସଦସ୍ୟ, ମାନ୍ଦ୍ରାଜ ବ୍ୟାଙ୍କର ଡାଇରେକ୍ଟର, ମେଡ୍ରାସ୍ କଲେଜ ଲାଇବ୍ରେରୀର ପାଣ୍ଡୁଲିପି କ୍ୟୁରେଟର, ଆଇନ ଓ ରାଜସ୍ୱ ବିଭାଗର ପଦସ୍ଥ କର୍ମଚାରୀ ରୂପେ ଦୀର୍ଘ ଦିନ କାର୍ଯ୍ୟକରି ସ୍ୱାସ୍ଥ୍ୟଗତ

କାରଣରୁ ୧୮୫୫ ମସିହାରେ ଲଣ୍ଡନ ଫେରି ଯାଇଥିଲେ । କିନ୍ତୁ ସେଠାରେ ମଧ୍ୟ ତେଲୁଗୁ ସାହିତ୍ୟ ଓ ଭାଷା ଗବେଷଣାରେ ପୂର୍ଣ୍ଣଚ୍ଛେଦ ପଡ଼ିନଥିଲା । ଇହଧାମରୁ ବିଦାୟ ନେବା ପର୍ଯ୍ୟନ୍ତ ସେ ଲଣ୍ଡନ ବିଶ୍ୱବିଦ୍ୟାଳୟର ତେଲୁଗୁ ଅଧ୍ୟାପକରୂପେ କାର୍ଯ୍ୟ କରିବା ସହିତ ଲଣ୍ଡନର ବିଭିନ୍ନ ଅନୁଷ୍ଠାନରେ ଥିବା ତେଲୁଗୁ ଓ କନାଡ଼ା ପାଣ୍ଡୁଲିପିଗୁଡ଼ିକର ଏକ ତାଲିକା ପ୍ରସ୍ତୁତ କରିଥିଲେ ।

ପ୍ରାଥମିକ ସ୍ତରରେ ପରଂପରାପୁଷ୍ଟ ପଣ୍ଡିତମାନଙ୍କଠାରୁ ବ୍ରାଉନ୍‌ଦ୍ୱାରା ତେଲୁଗୁ ଭାଷା ଓ ସାହିତ୍ୟ ସଂପର୍କରେ ଯେଉଁ ସବୁ ତଥ୍ୟ ଶୁଣିବାକୁ ପାଇଲେ ସେଥିରେ ତାଙ୍କର ମନଃପୂତ ହେଲା ନାହିଁ । ପାଶ୍ଚାତ୍ୟ ବୈଜ୍ଞାନିକ ପଦ୍ଧତିରେ ତାଙ୍କ ଗବେଷଣା କାର୍ଯ୍ୟକୁ ପରିଚାଳନା କରିବାପାଇଁ ସେ ଏକ ସୁଚିନ୍ତିତ ଯୋଜନା ପ୍ରସ୍ତୁତ କଲେ । ତାହା ଥିଲା – ପାଣ୍ଡୁଲିପି ସଂଗ୍ରହଣ, ସଂରକ୍ଷଣ, ପାଠୋଦ୍ଧାର, ପାଠସଂସ୍କାର, ସଂପାଦନ, ଟୀକାୟନ, ବ୍ୟାକରଣ ଓ ଅଭିଧାନ ସଂକଳନ, ତେଲୁଗୁ ସାହିତ୍ୟର କାଳାନୁକ୍ରମିକ ଇତିହାସ ପ୍ରଣୟନ, ପ୍ରକାଶନ ଏବଂ ବିତରଣ ।

ପୂର୍ବରୁ କୁହଯାଇଛି ବ୍ରାଉନ୍ ତ୍ରୈଲଙ୍ଗ୍ୟ ପ୍ରଦେଶରେ ଥିବା ରାଜକୀୟ ଓ ଘରୋଇ ପାଣ୍ଡୁଲିପି ସଂଗ୍ରହାଳୟଗୁଡ଼ିକର ଏକ ତାଲିକା ପ୍ରସ୍ତୁତ କରିଥିଲେ । ଏହି ଗ୍ରନ୍ଥାଗାରଗୁଡ଼ିକରେ ଏବଂ ବ୍ୟକ୍ତିବିଶେଷଙ୍କଠାରେ ଥିବା ପାଣ୍ଡୁଲିପିଗୁଡ଼ିକୁ ସେ ପ୍ରତିଲିପିକାରଙ୍କ ସହାୟତାରେ ପାଠୋଦ୍ଧାର କରି ଆଣୁଥିଲେ ଏବଂ ଆବଶ୍ୟକସ୍ଥଳେ ନିଜେ କ୍ରୟ କରୁଥିଲେ । ଏଥିପାଇଁ ସେତେବେଳେ ସେ ତିରିଶ ହଜାର ଟଙ୍କା ବ୍ୟୟ କରିଥିବା ସ୍ୱୀକାର କରିଛନ୍ତି । ଓଡ଼ିଶାରୁ ମଧ୍ୟ ରାଘବ ପାଣ୍ଡବୀୟମ୍ ସଂସ୍କୃତ ଗ୍ରନ୍ଥ ତାଙ୍କଦ୍ୱାରା ସଂଗୃହୀତ ହୋଇ ଟୀକାୟିତ ହୋଇଥିଲା । ଶୁଦ୍ଧ ପାଠ ନିର୍ଣ୍ଣୟ ପାଇଁ ଗୋଟିଏ ଗୋଟିଏ ରଚନାର ବହୁ ପ୍ରତିଲିପି ସଂଗ୍ରହ କରିବାର ଆବଶ୍ୟକତା ସେ ପ୍ରଥମେ ଉପଲବ୍ଧି କରିଥିଲେ ।

କେବଳ ସଂଗ୍ରହ ନୁହେଁ ସଂଗୃହୀତ ପାଣ୍ଡୁଲିପିଗୁଡ଼ିକର ସଂରକ୍ଷଣପାଇଁ ମଧ୍ୟ ତାଙ୍କ ତତ୍ପରତା କମ୍ ନ ଥିଲା । ସେ ସହାୟକମାନଙ୍କୁ ଅଫିସରେ ଫାଇଲଗୁଡ଼ିକୁ ଯେପରି ସଜାଡ଼ି ରଖାଯାଏ, ପାଣ୍ଡୁଲିପିଗୁଡ଼ିକୁ ସେହିପରି ନିର୍ଦ୍ଦିଷ୍ଟ କ୍ରମରେ ସଜାଇ ରଖିବାପାଇଁ ନିର୍ଦ୍ଦେଶ ଦେଉଥିଲେ ।

ଅନେକ ସମୟରେ ପ୍ରତିଲିପିକାରମାନଙ୍କ ଅଜ୍ଞାନତା, ଅସାବଧାନତା, ହସ୍ତାକ୍ଷରର ଅସ୍ପଷ୍ଟତାଯୋଗୁଁ ପାଣ୍ଡୁଲିପିଗୁଡ଼ିକ ପଢ଼ିବା ସହଜସାଧ୍ୟ ହୋଇ ନଥାଏ । କିଛି ପ୍ରସିଦ୍ଧ ରଚନାକୁ ଲୋକଲୋଚନକୁ ଆଣିବାପାଇଁ ପ୍ରକାଶକମାନେ ଗୋଟିଏ ପାଣ୍ଡୁଲିପି ଆଧାରରେ ଯାହାସବୁ ପ୍ରକାଶ କରିଥାନ୍ତି, ତାହା ଭ୍ରମପ୍ରମାଦମୁକ୍ତ ନଥାଏ । ଏପରି କିଛି ମୁଦ୍ରିତ ପୁସ୍ତକ ବ୍ରାଉନ୍‌ଙ୍କ ଦୃଷ୍ଟିକୁ ଆସିଥିଲା । ସେଗୁଡ଼ିକ ମାଡ୍ରାସ୍ କଲେଜ ବୋର୍ଡ଼ ପ୍ରକାଶ କରିଥିଲେ, କିନ୍ତୁ ସେଗୁଡ଼ିକ ପ୍ରମାଦପୂର୍ଣ୍ଣ ଥିବା ଲକ୍ଷ୍ୟ କରି ବ୍ରାଉନ୍ ଲେଖିଥିଲେ –

*Every manuscript was faulty and the members were not aware of the methods whereby the learned in Italy and Germany had elicited a pure Greek text out of defective manuscripts; just as a judge frames a decree out of conflicting evidence.*

ତେଣୁ ପ୍ରାଚୀନ ଗ୍ରନ୍ଥଗୁଡ଼ିକୁ ସୁବିଧାରେ ଅନୁଶୀଳନ କରିବାପାଇଁ ସେ ଯେଉଁ କୌଶଳ ଅବଲମ୍ବନ କରିଥିଲେ ସେ ସଂପର୍କରେ ସେ ଜଣାଇଛନ୍ତି –

*Before studying a poem I had it copied in a clear hand on English paper, numbering the verses to facilitate reference. The manuscripts were full of errors. My learned assistants adjusted them by guess as they went along; but having read of the process used by Lambinus, Erasmus, Heinsius, Cassnbon, Kennicott and other restories of learning, I followed their example so as to elicit an authentic text.*

ଏପରିଭାବେ ମୂଳ ପାଣ୍ଡୁଲିପିଗୁଡ଼ିକରୁ ଯଥାସମ୍ଭବ ସଂସ୍କାରିତ ପ୍ରତିଲିପି ସବୁ ପ୍ରସ୍ତୁତ କଲାପରେ ସେ ନିଜେ ବସି ସେଗୁଡ଼ିକୁ ସମ୍ପାଦନା କରିବାପାଇଁ ଚେଷ୍ଟା କରୁଥିଲେ । ଗ୍ରୀକ୍ ଓ ଲେଟିନ୍ ଗ୍ରନ୍ଥଗୁଡ଼ିକର ସମ୍ପାଦନା ପ୍ରଣାଳୀ ସଂପର୍କରେ ଅବହିତ ଥିବା ଯୋଗୁଁ ତାଙ୍କ ଏ ପ୍ରଣାଳୀ ଥିଲା ରଚୟିତାମାନଙ୍କ ମୂଳପାଠ ନିକଟରେ ପହଞ୍ଚିବାପାଇଁ ସହାୟକ । ନିଜ ସଂପାଦନା ପ୍ରଣାଳୀ ସଂପର୍କରେ ସୂଚନା ଦେଇ ସେ ଜଣାଇଛନ୍ତି –

*I first had a copy made from any manuscript of tolerable accuracy, the alternate pages being left blank, and the verses duly numbered; then the volume was bound. I collected twelve or fifteen other manuscripts (few of them complete) lent me by various natives. A clerk sat with the newly written copy ready : and before him were two, each having charge of five or six manuscripts, the oldest I could discover. Three professors sat by, masters of Grammar, Prosody, both Sanskrit*

*and Telugu; but the others knew only their mother-tongue. Each assistant in turn read a stanza which thus was recited ten or twelve times : the scribe recorded every deviation, the Pandits formed their judgements on each line and then one of them taking the blotted copy, selected the pure text, and dictated it to a reader. (Some Account of the literary life of C.P. Brown, London, 1866).*

ଏହି ପଦ୍ଧତି ଅନୁସରଣ କରି ବ୍ରାଉନ୍ ସାହେବ ତେଲୁଗୁ ମହାଭାରତ, ଭାଗବତ, ବସୁ ଚରିତ୍ର, ମନୁ ଚରିତ୍ର, ବିଜୟ ବିଳାସ, ତାରା ଶଶାଙ୍କ ବିଜୟ, କବି କର୍ଣ୍ଣ ରସାୟନ, ସାରଙ୍ଗଧର ଚରିତ୍ର, ଦଶାବତାର ଚରିତ୍ର, ହରିଶ୍ଚନ୍ଦ୍ର, ନଳଚକ୍ରବର୍ତ୍ତୀ କଥା ପ୍ରଭୃତି ବହୁ ଗ୍ରନ୍ଥର ଶୁଦ୍ଧ ସଂସ୍କରଣ ପ୍ରକାଶନରେ ସହାୟତା କରିଛନ୍ତି । ଉଲ୍ଲେଖଯୋଗ୍ୟ, ଅଧିକାଂଶ ପ୍ରକାଶନରେ ସେ ନିଜ ନାମ ଅପେକ୍ଷା ଟୀକା ରଚନା କରିଥିବା ବ୍ୟାଖ୍ୟାତାମାନଙ୍କ ନାମ ଦେବାରେ କୁଣ୍ଠା ପ୍ରକାଶ କରିନାହାନ୍ତି । ଏ ପର୍ଯ୍ୟନ୍ତ ବ୍ରାଉନ୍‌ଙ୍କ ପାଠ ହିଁ ଅଧିକ ପ୍ରାମାଣିକ ବୋଲି ଗୃହୀତ (ଦୁର୍ଭାଗ୍ୟର ବିଷୟ ପ୍ରାଚୀନ ଗ୍ରନ୍ଥ ସଂପାଦନା ବେଳେ ଓଡ଼ିଶାର କୌଣସି ଗବେଷକ ଏହି ପଦ୍ଧତି ଅନୁସରଣ କରିଥିବା ଦେଖାଯାଏ ନାହିଁ) ।

ଗ୍ରନ୍ଥ ସଂପାଦନା ବ୍ୟତୀତ ବ୍ରାଉନ୍ ସାହେବ ପ୍ରସିଦ୍ଧ କବି ବେମନାଙ୍କ ପଦ୍ୟଗୁଡ଼ିକୁ ସଂଗ୍ରହ, ସଂସ୍କାର ଏବଂ ସଂପାଦନା କରି ସେଗୁଡ଼ିକର ଇଂରେଜୀ ଅନୁବାଦ କରିଛନ୍ତି । ତେଲୁଗୁ ସାହିତ୍ୟର ରତ୍ନାବଳୀକୁ ବିଶ୍ୱଦରବାରରେ ପରିଚିତ କରାଇବା ନିମିତ୍ତ ଏହା ହିଁ ଥିଲା ପ୍ରଥମ ସାର୍ଥକ ପ୍ରୟାସ (୧୮୨୯) ।

ତେଲୁଗୁ ଭାଷା ଓ ସାହିତ୍ୟ ପାଇଁ ଚାର୍ଲସ୍ ଫିଲିପ୍ ବ୍ରାଉନଙ୍କ ଅନ୍ୟ ଗୁରୁତ୍ୱପୂର୍ଣ୍ଣ ଦାନ ହେଲା, ତେଲୁଗୁ ଭାଷାର ବ୍ୟାକରଣ (୧୮୪୦), ତେଲୁଗୁ ଓ ସଂସ୍କୃତ ଛନ୍ଦ ବିଚାର (୧୮୨୭), ତେଲୁଗୁ-ଇଂଲିଶ୍ ଅଭିଧାନ (୧୮୫୨), ମିଶ୍ର ଭାଷା ନିଘଣ୍ଟୁ (୧୮୫୪) ଏବଂ ତେଲୁଗୁମାନଙ୍କର ଭାଷା ଓ ସାହିତ୍ୟ (୧୮୩୯) । ପ୍ରାଚୀନ ପଦ୍ଧତି ପରିବର୍ତ୍ତେ ଆଧୁନିକ ପ୍ରଣାଳୀରେ ତେଲୁଗୁ ପରି ଏକ ଦ୍ରାବିଡ଼ ଭାଷାର କ୍ଲିଷ୍ଟ ବ୍ୟାକରଣ ନିୟମାବଳୀକୁ ସେ ସରଳ ଓ ସୁବୋଧ ଆଧୁନିକ ଶୈଳୀରେ ଉପସ୍ଥାପନ କରିଛନ୍ତି, କଥିତ ଭାଷାରୁ ଉଦାହରଣ ସଂଗ୍ରହ କରିବାପାଇଁ ଯତ୍ପରୋନାସ୍ତି ଚେଷ୍ଟା କରିଛନ୍ତି । ତେଲୁଗୁ-ଇଂରେଜୀ ଅଭିଧାନ ପ୍ରସ୍ତୁତିରେ ପ୍ରଖ୍ୟାତ ଅଭିଧାନ ପ୍ରଣେତା ଡକ୍ଟର ଜନ୍‌ସନ୍ ଥିଲେ ତାଙ୍କ ଆଦର୍ଶ । ପୁରାତନ କାବ୍ୟ ପୁରାଣ, ଆଧୁନିକ ସାହିତ୍ୟ ଏବଂ ସାଧାରଣ

ଲୋକମୁଖରୁ ଏଥିପାଇଁ ଶବ୍ଦ ସଂଗ୍ରହ କରାଯାଇଛି; ଶବ୍ଦଗୁଡ଼ିକର ଇଂରେଜୀ ଓ ତେଲୁଗୁ ପ୍ରତିଶବ୍ଦ ଦେବା ସହିତ ଆବଶ୍ୟକସ୍ଥଳେ ଟିପ୍‌ପଣୀ ପ୍ରଦାନ କରାଯାଇଛି, ଭିନ୍ନ ଭିନ୍ନ ଅର୍ଥରେ ପ୍ରଯୁକ୍ତ ଶବ୍ଦଗୁଡ଼ିକର ପ୍ରୟୋଗ ବିଧି ଜ୍ଞାପନ କରିବାପାଇଁ ପ୍ରାଚୀନ ଓ ଆଧୁନିକ ଗ୍ରନ୍ଥମାନଙ୍କରୁ ପଦ-ବାକ୍ୟମାନ ଉଦ୍ଧାର କରାଯାଇଛି । ବୈଦେଶିକ ଶବ୍ଦଗୁଡ଼ିକର ଅର୍ଥ ଅର୍ଥାନ୍ତର ଦର୍ଶାଇବା ତାଙ୍କ ମିଶ୍ରିତ ନିଘଣ୍ଟୁର ଲକ୍ଷ୍ୟ । ତେଲୁଗୁ ଛନ୍ଦ ଓ ତେଲୁଗୁ କବି ଜୀବନୀ ସଂପର୍କରେ ବ୍ରାଉନ୍‌ଙ୍କ ଆଲୋଚନା ହିଁ ଅନ୍ୟମାନଙ୍କପାଇଁ ଥିଲା ପଥପ୍ରଦର୍ଶକ । ଉଦାହରଣ ସହିତ ଶବ୍ଦାର୍ଥ ଓ ଶବ୍ଦତତ୍ତ୍ୱ ସମ୍ବଳିତ ଏବଂ ବର୍ଣ୍ଣାନୁକ୍ରମରେ ସଜ୍ଜିତ ତେଲୁଗୁ-ଇଂରାଜୀ ଅଭିଧାନ ବା ତେଲୁଗୁ ନିଘଣ୍ଟୁ ଏ ପର୍ଯ୍ୟନ୍ତ ତେଲୁଗୁ ଭାଷାରେ ଅନତିକ୍ରମଣୀୟ ହୋଇ ରହିଛି କହିଲେ ଅତ୍ୟୁକ୍ତି ହେବନାହିଁ । ବ୍ରାଉନ୍ ଭାରତ ଛାଡ଼ିବା ପୂର୍ବରୁ ତେଲୁଗୁମାନଙ୍କପାଇଁ ନିମ୍ନଲିଖିତ ଗ୍ରନ୍ଥଗୁଡ଼ିକ ପ୍ରସ୍ତୁତ କରିଥିଲେ । ଏଥିରୁ ଅନେକ ତାଙ୍କ ନିଜଦ୍ୱାରା ହିଁ ପ୍ରକାଶିତ । ଏଥିପାଇଁ ସେ ଆର୍ଥିକ କ୍ଷତି ସହ୍ୟ କରିଥିଲେ ସୁଦ୍ଧା ଭାରତ ଛାଡ଼ିଲା ବେଳକୁ ଅଶେଷ ସନ୍ତୋଷ ଲାଭ କରିଛନ୍ତି । ତାଙ୍କ ନିଜ ଭାଷାରେ –

> *My books may prove valuable to some publishers, but I was never a penny the richer for any of them, and by some less the sum I expensed, but I looked for this result and was satisfied.*

**ବ୍ରାଉନ୍‌ଙ୍କ ଦ୍ୱାରା ସମ୍ପାଦିତ ଓ ପ୍ରକାଶିତ ପୁସ୍ତକାବଳୀ :**

Prosody of the Telugu and Sanscrit languges explained – Madras, 1827.

The Verses of Vemana – Madras, 1829.

A familiar anlysis of Sanscrit prosody – London, 1837.

A new Telugu version fo the Gospel according to St. Luke – Madras, 1838.

A grammar of the Telugu language – Madras, 1840; 1857.

Memories of Hyder and Tippoo (Translated from Marathi) – Madras 1849.

Cyclic tables of Hindu and Mahomedan chronology, regarding the history of the Telugu and Kannadi countries – Madras, 1850.

An Ephemeris (1751-1850), Madras, 1850.

The Telugu Reader, being a series of letters, private and on business policy and revenue matters, with an English translation; notes explaining the grammar and a little lexicon, Madras, 1852.

English translations of the exercises and documents printed in the Telugu Reader, Madras, 1852.

Analysis of the words in the first chapter of the Telugu Reader, Madras, 1852.

A little lexicon – Madras, 1852.

A Catalogue of irregular verbs in the English language – Madras, 1852.

The Telugu – English dictionary – Madras, 1852; 1903.

The English – Telugu dictionary – Madras, 1852; 1895.

The Zillah dictionary – Madras, 1852.

Vakyavaly – Madras, 1852.

Three Treatises on Mirasi rights (Edited) – Madras, 1852.

Dialogues in Telugu and English (Second edition) – Madras, 1853. (The same in Tamil, Kannada and Hindustani).

The wars of the Rajas (Telugu original, with English translation) – Madras, 1858.

Disputations on village business (Telugu originals, with English translation) – Madras, 1855.

Popular Telugu tales – Madras, 1855 – (Telugu original, with English translation).

A Titular memory – London, 1861.

Carnatic chronology – London, 1863.

Sanscrit prosody and numerical symbols explained - London, 1869.

Articles, Notices etc :–

On the proportions of statues – The Asiatic Journal, London, Nov. 1828. (Page - 596).

Essay on the language and literature of the Telugus – The Madras Journal of Literature and Scienc (Vol - X) Madras, July-Oct, 1839. (Pages 43-59, 360-367).

Essay on the Creed, Customs and Literature of the Jangams. (Vol. XI), Madras, 1840. (Also The Journal of the Royal Asiatic Society. Vol - V.N.S. 141-146). London, 1871.

Notices of some Roman Catholic books existing in the Telugu language (Vol. XII P. 5) Madras, 1840.

On Malabar, Coromandel Quilon. (The Journal of the Royal Asiatic Soceity – N.S. Vol. V, 1871 – P 147-148.

On the Numerals of Balaam's name. ( Page - 732) The Christian Observer, London, 1847 (December).

Notices of Books and Authors mentioned in the Preface to Telugu – English Dictionary – Madras, 1852.

Translation of a Maharatta Document Account of the Tribes of Maharatta Brahmans. No. 851 of the Mackenzie Collection.

In Sanscrit – The Book of Psalms and that Book of Proverbs in metre. (Reprinted in Telugu character, from originals) Published in Bengali in the Nagari Script.

ବୀମସ୍, ରେଭେନ୍‌ସା, ସଟନ୍, ଲେସି, କେରି ପ୍ରଭୃତିଙ୍କପରି ମିଶନାରୀ ଓ ବ୍ରିଟିଶ ପ୍ରଶାସକମାନେ ଊନବିଂଶ ଶତାବ୍ଦୀରେ ଓଡ଼ିଆ ଭାଷା ଓ ସାହିତ୍ୟପାଇଁ କମ୍ କାର୍ଯ୍ୟ କରିନାହାନ୍ତି କିନ୍ତୁ ଓଡ଼ିଶା ସି.ପି. ବ୍ରାଉନ୍‌ଙ୍କପରି ମିଶନାରୀ-ପ୍ରତିବଦ୍ଧତାସଂପନ୍ନ ଜଣେ ପ୍ରଶାସକଙ୍କୁ ପାଇଥିଲେ ଓଡ଼ିଆ ଭାଷା ଓ ସାହିତ୍ୟ ଆହୁରି ଯଥେଷ୍ଟ ଉପକୃତ ହୋଇଥାନ୍ତା । ପ୍ରତ୍ୟକ୍ଷ ସଂସ୍ପର୍ଶରେ ଆସି ନ ଥିଲେ ସୁଦ୍ଧା ବ୍ରାଉନ୍‌ଙ୍କ ମାନସିକତା ଏବଂ କାର୍ଯ୍ୟପନ୍ଥାକୁ ନିଜ ସାମର୍ଥ୍ୟ ଅନୁଯାୟୀ ଅନୁସରଣ କରିବା ନିମିତ୍ତ ପଣ୍ଡିତ ଗୋପୀନାଥ ନନ୍ଦଶର୍ମା ଯେଉଁ ଉଦ୍ୟମ କରିଛନ୍ତି ତାହା ନିଶ୍ଚିତଭାବେ ବିସ୍ମୟକର ।

- ୬ -

୧୮୮୪ ମସିହାରେ ଚାର୍ଲସ୍ ଫିଲିପ୍ ବ୍ରାଉନ୍‌ଙ୍କ ଲଣ୍ଡନଠାରେ ଦେହାନ୍ତ ହୁଏ । ତାଙ୍କ ମହାପ୍ରୟାଣରେ ତେଲୁଗୁ ସାହିତ୍ୟିକମାନେ ମର୍ମାହତ । ବ୍ରାଉନ୍‌ଙ୍କ କାର୍ଯ୍ୟକଳାପ ଓ ଅନୁକରଣୀୟ ସାହିତ୍ୟ ସାଧନା ସ୍ମୃତିସଭାମାନଙ୍କରେ ବହୁ ଭାବରେ ଚର୍ଚ୍ଚିତ ହେବା

ସ୍ୱାଭାବିକ । ପାରଳାଖେମୁଣ୍ଡିର ତେଲୁଗୁ ବିଦ୍ୱାନମାନେ ମଧ୍ୟ ତାଙ୍କର ଗୁଣଗାନ କରିଥିବେ । ସାହିତ୍ୟ କ୍ଷେତ୍ରରେ ପ୍ରବେଶ କରିବାପାଇଁ ଗୋପୀନାଥ ଯେତେବେଳେ ମାନସିକ ଭାବେ ପ୍ରସ୍ତୁତ ହେଉଥିଲେ ସେତେବେଳେ ବ୍ରାଉନ୍ ସାହେବଙ୍କ ପ୍ରଶସ୍ତି ତାଙ୍କ ମନରେ ନିଶ୍ଚିତଭାବେ ରେଖାପାତ କରିଥିବ । ତାଙ୍କ ଗବେଷଣା ପଦ୍ଧତି ସଂପର୍କରେ ଅଧିକ ଜାଣିବାପାଇଁ ଯୁବପ୍ରତିଭାଟିର ମନରେ ଆଗ୍ରହ ସୃଷ୍ଟି ହୋଇଥିବା ଅସମ୍ଭବ ନୁହେଁ । ଉଭୟଙ୍କ ଗବେଷଣା ଓ ସଂପାଦନା ପ୍ରଣାଳୀକୁ ଅନୁଧ୍ୟାନ କଲେ ଆମ ସମ୍ଭାବନାର ଯଥାର୍ଥତା ଉପଲବ୍ଧି କରିହେବ ।

କାରୟିତ୍ରୀ ପ୍ରତିଭାର ତାଡ଼ନାରେ ସେ ପ୍ରଥମେ କାବ୍ୟ, କବିତା ଓ ନାଟକ ରଚନାରେ ହାତ ଦେଇଥିଲେ । ଏଥିପାଇଁ ତାଙ୍କ ସମ୍ମୁଖରେ ଥିଲା ଏକ ବଳିଷ୍ଠ ପରଂପରା । କିନ୍ତୁ ଭାବୟିତ୍ରୀ ପ୍ରତିଭାର ଉଜ୍ଜୀବନ ନିମିତ୍ତ ଉଦ୍ୟମ ଆରମ୍ଭ କଲାବେଳେ ବ୍ରାଉନ୍ ସାହେବଙ୍କ ବିଜ୍ଞାନସମ୍ମତ ଗବେଷଣା ପଦ୍ଧତିକୁ ସେ ଆଦର୍ଶ ରୂପେ ଗ୍ରହଣ କରିଛନ୍ତି । ପ୍ରାଚୀନ ସାହିତ୍ୟର ଯଥାର୍ଥ ଅବବୋଧପାଇଁ ସେ ନିଜ ପିତୃପୁରୁଷ ସଂଗୃହୀତ, ରାଜଗ୍ରନ୍ଥାଗାର ଏବଂ ମଠମନ୍ଦିରମାନଙ୍କରେ ଥିବା ତାଳପତ୍ର ପୋଥିଗୁଡ଼ିକର କାଗଜ ପ୍ରତିଲିପି ପ୍ରସ୍ତୁତ କରିବା ଆରମ୍ଭ କରିଛନ୍ତି । ତାଙ୍କ ପ୍ରସ୍ତୁତ ବୈଦେହୀଶ ବିଳାସ ଓ ଲାବଣ୍ୟବତୀ କାବ୍ୟର ଲୋକନାଥ ଦାସ ଟୀକା, କେଶବ ରଥଙ୍କ ଅନଙ୍ଗ ରଙ୍ଗିଣୀ କାବ୍ୟ, ବଲ୍ଲଭ ନାରାୟଣ ମହାପାତ୍ରଙ୍କ ବିଷ୍ଣୁ ପୁରାଣ ପରି କେତେକ ପ୍ରତିଲିପି ମାନ୍ଦ୍ରାଜ ପ୍ରାଚ୍ୟ-ଗ୍ରନ୍ଥାଗାରରୁ ସଂଗୃହୀତ ହୋଇ ଓଡ଼ିଶା ରାଜ୍ୟ ସଂଗ୍ରହାଳୟରେ ସଂରକ୍ଷିତ । ପୁନଃ ପଠନବେଳେ 'ଆଦର୍ଶ'ରେ ଥିବା ପ୍ରମାଦଗୁଡ଼ିକୁ ସେ ନାଲି କାଳିରେ ସଂଶୋଧନ ମଧ୍ୟ କରିଛନ୍ତି । ଏଥିରୁ ତାଙ୍କର ହୃଦ୍‌ବୋଧ ହୋଇଛି 'ପୁରାଣ ମିତ୍ୟେବ ନ ସାଧୁ ସର୍ବମ୍' । ପଣ୍ଡିତଂମନ୍ୟ, ମାୟିକ, ଅଳୀକ ବିଦ୍‌ବତ୍ତା ପ୍ରଚୋଦିତ, ବୈଦଗ୍ଧ୍ୟ ଗର୍ବିତ କବିଂ ମନ୍ୟମାନ ଅନୁଲେଖକମାନଙ୍କ ଅବିଚାରିତ ଦୌରାତ୍ମ୍ୟ ସଂପର୍କରେ ସେ ସଚେତନ ହୋଇପାରିଛନ୍ତି । ଓଡ଼ିଆ ଭାଷା ଓ ସାହିତ୍ୟରେ ଗବେଷଣା କରିବାକୁ ହେଲେ ଯେ ଅନ୍ୟ ବହୁଭାଷା ଶିକ୍ଷା କରିବା ଆବଶ୍ୟକ ଏହା ଉପଲବ୍‌ଧି କରି ସେ ବ୍ରାଉନ୍‌ଙ୍କ ପରି ପାଲି, ପ୍ରାକୃତ, ସଂସ୍କୃତ, ହିନ୍ଦୀ, ବଙ୍ଗଳା, ତେଲୁଗୁ ଇତ୍ୟାଦି ଭାଷାରେ ବ୍ୟୁତ୍ପନ୍ନ ହେବାପାଇଁ ଉଦ୍ୟମ କରିଛନ୍ତି । ପ୍ରାଚୀନ ଗ୍ରନ୍ଥାବଳୀ, ଆଧୁନିକ ପତ୍ରପତ୍ରିକା ପଢ଼ିଲାବେଳେ ଏବଂ ସାଧାରଣ ଲୋକଙ୍କ ସହିତ କଥାବାର୍ତ୍ତା କଲାବେଳେ ସେ ଅଭିଧାନ ଓ ବ୍ୟାକରଣପାଇଁ ଉପାଦାନ ସଂଗ୍ରହ କରିଛନ୍ତି । ପ୍ରାଚୀନ ସାହିତ୍ୟ ଅଧ୍ୟୟନବେଳେ ଓଡ଼ିଆ ଛନ୍ଦର ଯେଉଁ ବିଚିତ୍ର ରୂପ ତାଙ୍କ ଆଖିରେ ଧରା ଦେଇଛି ତାକୁ ପ୍ରାଞ୍ଜଳରୂପେ ପାଠକ ଓ ସମାଲୋଚକମାନଙ୍କୁ ଜଣାଇ ଦେବାପାଇଁ ସଂସ୍କୃତ ଓ ପ୍ରାକୃତର ଛନ୍ଦ ଗ୍ରନ୍ଥମାନ ଅଧ୍ୟୟନ କରିଛନ୍ତି ଏବଂ ଗାୟକମାନଙ୍କଠାରୁ ଶୁଣିଲାବେଳେ ଯତିପାତର ନିୟମ ନିର୍ଦ୍ଧାରଣ କରିବାପାଇଁ ପ୍ରୟାସ କରିଛନ୍ତି । ପ୍ରାଚୀନ ଗ୍ରନ୍ଥଗୁଡ଼ିକର

ତୁଳନାତ୍ମକ ବିଚାର ନିମିତ୍ତ ସେ ବିଭିନ୍ନ ଭାଷାର ରାମାୟଣ, ମହାଭାରତ, ଭାଗବତ ପ୍ରଭୃତି ସଂଗ୍ରହ କରି ତନ୍ନତନ୍ନ ଅଧ୍ୟୟନ କରିଛନ୍ତି । ସଂସ୍କୃତ ପୁରାଣଗୁଡ଼ିକର ଗୋଟିଏ ସଂସ୍କରଣ ଉପରେ ନିର୍ଭର ନ କରି ସମକାଳରେ ପ୍ରକାଶିତ ବିଭିନ୍ନ ସଟୀକ ସଂସ୍କରଣର ସାହାଯ୍ୟ ନେଇଛନ୍ତି । ଓଡ଼ିଆ ଅଭିଧାନ, ଓଡ଼ିଆ ବ୍ୟାକରଣ, ଓଡ଼ିଆ ସାହିତ୍ୟର ଇତିହାସ ଏବଂ ଓଡ଼ିଆ ଛନ୍ଦଶାସ୍ତ୍ର ଲେଖିବାପାଇଁ ସେ ଥିଲେ ବଦ୍ଧପରିକର । କିନ୍ତୁ ବ୍ରାଉନ ସାହେବଙ୍କ ପରି ତାଙ୍କ ନିକଟରେ ପ୍ରଶାସନିକ କ୍ଷମତା ନ ଥିଲା, ସାହାଯ୍ୟ କରିବାପାଇଁ ସରକାରୀ କର୍ମଚାରୀ ନଥିଲେ, ନିଜ ଶ୍ରମକୁ ଲାଘବ କରିବାପାଇଁ ଦରମା ଦେଇ ପଣ୍ଡିତ ନିଯୁକ୍ତି କରିବା ନିମିତ୍ତ ଏତେ ଆର୍ଥିକ ସମ୍ବଳ ନଥିଲା, ତଥାପି ପଣ୍ଡିତ ମହାଶୟଙ୍କ ମନୋବଳ ଥିଲା ଅତ୍ୟନ୍ତ ଦୃଢ଼ । ପାଣ୍ଡୁଲିପି ନକଲଠାରୁ ଆରମ୍ଭ କରି ପ୍ରକାଶନ ପାଇଁ 'ସଫେଇ' ପାଣ୍ଡୁଲିପି ପ୍ରସ୍ତୁତ ପର୍ଯ୍ୟନ୍ତ ସବୁ କାର୍ଯ୍ୟ ସେ ନିଜେ ହିଁ କରିଛନ୍ତି । ସମକାଳରେ ବ୍ରାଉନ୍‌ଙ୍କ ପରି ତାଙ୍କୁ ମଧ୍ୟ କମ୍ ସମାଲୋଚନାର ଶରବ୍ୟ ହେବାକୁ ପଡ଼ିନାହିଁ, ତଥାପି ମାତୃଭୂମି ଓ ମାତୃଭାଷାର ସେବାରେ ସେ ନିଜ ଜୀବନକୁ ଉତ୍ସର୍ଗ କରିଦେଇଛନ୍ତି । ସବୁ ପ୍ରତିକୂଳତାକୁ ଅତିକ୍ରମ କରିଛନ୍ତି । ଗୋପବନ୍ଧୁଙ୍କ ଭାଷାରେ "ନାମରେ ପ୍ରୟାସ ନାହିଁ, ଅର୍ଥରେ ପିପାସା ନାହିଁ, ନିନ୍ଦା ସ୍ତୁତି ପ୍ରତି ଭ୍ରୂକ୍ଷେପ ନାହିଁ । ଅନନ୍ୟ ଚିତ୍ତରେ କେବଳ ସାହିତ୍ୟ ନିମନ୍ତେ ସାହିତ୍ୟର ଅନୁଶୀଳନ ନନ୍ଦ ମହାଶୟଙ୍କ ବ୍ରତ", ଓଡ଼ିଆ ଭାଷା ଓ ସାହିତ୍ୟର ଗୌରବ ପ୍ରତିଷ୍ଠା ତାଙ୍କର ଏକମାତ୍ର ଲକ୍ଷ୍ୟ । ଯେଉଁ ଲକ୍ଷ୍ୟ ସିଦ୍ଧି ପାଇଁ ସେ ବିଧି-ପ୍ରେରିତ, ସେ ଲକ୍ଷ୍ୟରେ ଉପନୀତ ହେବାପାଇଁ ତାଙ୍କର ଅବିଶ୍ରାନ୍ତ ଏକମୁଖୀ ସାଧନାର ପଟାନ୍ତର ନାହିଁ ।

- ୭ -

୫୫ ବର୍ଷ ବୟସରେ ଦେହତ୍ୟାଗ କରିଥିବା ପଣ୍ଡିତ ଗୋପୀନାଥ ନନ୍ଦଶର୍ମାଙ୍କ ସାରସ୍ୱତ ଜୀବନ ମାତ୍ର ୩୪ ବର୍ଷ । ଗଭୀର ଅନୁସନ୍ଧିତ୍ସା, କ୍ଲାନ୍ତିହୀନ ଅଧ୍ୟବସାୟ, ଅସାଧାରଣ ଧୈର୍ଯ୍ୟ, ଅପୂର୍ବ ସ୍ମରଣ ଶକ୍ତି, ଅଗାଧ ପାଣ୍ଡିତ୍ୟ ଏବଂ ଗୃହସ୍ଥାଶ୍ରମରେ ସନ୍ନ୍ୟାସୀର ଜୀବନଚର୍ଯ୍ୟା ବଳରେ ଓଡ଼ିଆ ସାହିତ୍ୟର ବିଭିନ୍ନ ଉପାଦାନକୁ ସେ ଫିଟାଇ ଲୋକଙ୍କ ଆଗରେ ପକାଇ ଦେଇଛନ୍ତି । କିନ୍ତୁ ପରିତାପର ବିଷୟ, ବର୍ତ୍ତମାନ ଗବେଷଣା ପାଇଁ ଆର୍ଥିକ ଅନୁଦାନର ଅଭାବ ନାହିଁ, ଉପାଦାନ ସଂଗ୍ରହ ପାଇଁ ଯାନ୍ତ୍ରିକ ଉପକରଣର ଅଭାବ ନାହିଁ, ମହାବିଦ୍ୟାଳୟ ଓ ବିଶ୍ୱବିଦ୍ୟାଳୟରେ ସାହିତ୍ୟ ଅଧ୍ୟାପନା କରୁଥିବା ଅଧ୍ୟାପକ, ପ୍ରାଧ୍ୟାପକ ଓ ପ୍ରଫେସରଙ୍କ ଅଭାବ ନାହିଁ, ଗବେଷଣାକୁ ଜାତୀୟ କାର୍ଯ୍ୟରେ ବିନିଯୋଗ କରିବାପାଇଁ ଅବିଚାରିତ ଭାବେ ପିଏଚ୍.ଡ଼ି. ଓ ଡି.ଲିଟ୍ ଉପାଧି ବିତରଣ କରିବାରେ ବିଶ୍ୱବିଦ୍ୟାଳୟମାନଙ୍କର କୁଣ୍ଠା ନାହିଁ, ପିତା, ମାତା, ଶ୍ୱଶୁର, ମାତୁଳ, ସ୍ତ୍ରୀ, ପୁତ୍ର ସମେତ ଆତ୍ମପ୍ରଶସ୍ତି ଗାନରେ ଉପାଧିଧାରୀ ଗବେଷକମାନଙ୍କ ଆତ୍ମତୃପ୍ତିର ସୀମା

ନାହିଁ, ତଥାପି ନନ୍ଦେ ଯେଉଁ ଉପାଦାନଗୁଡ଼ିକୁ ଛାଡ଼ି ଯାଇଥିଲେ, ସେ ସବୁକୁ ସଂଗ୍ରହ କରିବା ତ ଦୂରର କଥା, ତାଙ୍କ ସଂଗୃହୀତ ଉପାଦାନ ଆଧାରରେ ଅଧିକ କିଛି କରିବା ଏ ପର୍ଯ୍ୟନ୍ତ ସମ୍ଭବ ହୋଇପାରି ନାହିଁ । ଗୋପୀନାଥ ନନ୍ଦେ ବହୁ ଦିଗରୁ ଓଡ଼ିଆ ସାହିତ୍ୟକୁ କିପରି ଋଦ୍ଧିମନ୍ତ କରିଥିଲେ ତାର ପରିଚୟ ଦେବାପାଇଁ ଏଠାରେ ତାଙ୍କ ରଚନାଗୁଡ଼ିକର ଏକ ତାଲିକା ପ୍ରଦାନ କରାଯାଉଛି । ସେ ସମୟରେ ପ୍ରକାଶ ପାଉଥିବା ପତ୍ରପତ୍ରିକାର ବହୁ ସଂଖ୍ୟା ଆମ ଦୃଷ୍ଟିକୁ ଆସି ନଥିବା ଯୋଗୁଁ ଏ ତାଲିକା ବାହାରେ ତାଙ୍କର ଯେ ଆଉ କିଛି ରଚନା ନ ଥାଇପାରେ, ଏହା କହିବାର ଦୁଃସାହସ ଆମର ନାହିଁ । ପରବର୍ତ୍ତୀ ସମୟରେ ପାଠକ, ସମାଲୋଚକ, ଗବେଷକମାନେ ଏହାର ପରିପୂର୍ଣ୍ଣତା ଆଣିପାରିବେ ବୋଲି ଆମର ବିଶ୍ୱାସ ।

ପଦ୍ୟାବଳୀ : ୧୯୦୭ ମସିହାରେ ପାରଳାଖେମୁଣ୍ଡି ଗଜପତି ପ୍ରେସ୍‌ରେ ମୁଦ୍ରିତ । ପୁସ୍ତିକାଟି ଶ୍ରୀଯୁକ୍ତ ଗୁମାଦୁର୍ଗାଧିପ ଶ୍ରୀ ସୂର୍ଯ୍ୟନାରାୟଣ ବିଷୟୀଙ୍କୁ ଉତ୍ସର୍ଗ କରାଯାଇଛି । ଭୂମିକାରୁ ଜଣାଯାଏ ଯେ ଏଥିରେ ସନ୍ନିବେଶିତ ତିନୋଟି ପଦ୍ୟ ୧୮୯୧ କିମ୍ବା ତା ପୂର୍ବର ରଚନା ।

(କ) ଚନ୍ଦ୍ରୋଦୟ – ଏହାକୁ ଲେଖକଙ୍କ ପ୍ରଥମ ରଚନାରୂପେ ଗ୍ରହଣ କରାଯାଇପାରେ । ଏହାର ରଚନା ସମୟ ୧୮୯୧ ପୂର୍ବବର୍ତ୍ତୀ ।

(ଖ) କର୍ମବିପାକ – ଏହାକୁ ଲେଖକଙ୍କ ଦ୍ୱିତୀୟ ରଚନା ରୂପେ ଗ୍ରହଣ କରାଯାଇପାରେ । ଏହା ମଧ୍ଧ ୧୮୯୧ ପୂର୍ବରୁ ରଚିତ ।

(ଗ) ବିରହ ଗୀତିକା – ୧୮୯୧ ।

ରଥୋତ୍ସବ : ୧୮୯୧ ପୂର୍ବବର୍ତ୍ତୀ (ପଦ୍ୟାବଳୀର ଭୂମିକା) । ଏହା ପ୍ରକାଶ ପାଇପାରି ନାହିଁ ।

ରାଧାମାଧବ ବିଳାସ : ୧୮୯୧ ପୂର୍ବବର୍ତ୍ତୀ ରଚନା । ଅପ୍ରକାଶିତ । (ପଦ୍ୟାବଳୀର ଭୂମିକା)

ପୀୟୂଷଧାରା : ୧୯୧୪ ମସିହାରେ ଉତ୍କଳ ସାହିତ୍ୟ ପ୍ରେସ୍ କଟକରୁ ମୁଦ୍ରିତ ହୋଇ ପ୍ରକାଶିତ । କିନ୍ତୁ ଏହାର ରଚନା ସମୟ ୧୮୯୪ ବୋଲି ଗ୍ରନ୍ଥର ଭୂମିକାରୁ ଜଣାଯାଏ । ଭଞ୍ଜୀୟ ଶୈଳୀରେ ରଚିତ ଦ୍ୱାଦଶ ଛାନ୍ଦବିଶିଷ୍ଟ ଏହି କାବ୍ୟଟି ପାରଳାଖେମୁଣ୍ଡିର ସ୍ୱନାମଧନ୍ୟ ରାଜା କୃଷ୍ଣଚନ୍ଦ୍ର ଗଜପତି ନାରାୟଣ ଦେବଙ୍କ ନାମରେ ଉତ୍ସର୍ଗିତ ।

ମେଘଦୂତ : ଖ୍ରୀ: ୧୯୦୭ରେ ଉତ୍କଳ ସାହିତ୍ୟ ପ୍ରେସ୍, କଟକରୁ ମୁଦ୍ରିତ ହୋଇ ଏହା ପୁସ୍ତକାକାରରେ ପ୍ରକାଶ ପାଇଥିଲା । 'ଭୂମିକା'ରେ ଲେଖକ ଏହାକୁ ୧୮୯୮ ମସିହାରେ ଅନୁବାଦ କରିଥିବା ସ୍ୱୀକାର କରିଛନ୍ତି । ଏହାର କେତେକ ଅଂଶ (ଆରମ୍ଭରୁ ଉତ୍ତର ମେଘର ପ ୨୩ ଦ ପର୍ଯ୍ୟନ୍ତ) 'ସମ୍ବଲପୁର ହିତୈଷିଣୀ' ପତ୍ରିକାର ଭା ୧୬।୩୮ ସଂ (ତା ୩।୬।୧୯୦୫) ଠାରୁ ଭା ୧୬।୫୧ ସଂ (ତା ୨।୯।୧୯୦୫) ମଧ୍ୟରେ ଧାରାବାହିକ ଭାବେ ପ୍ରକାଶ ପାଇଥିଲା ।

ବିହ୍ଲଣୀୟ କାବ୍ୟ : ଖ୍ରୀ: ୧୯୧୫ରେ ଉତ୍କଳ ସାହିତ୍ୟ ପ୍ରେସ୍‌ରେ ମୁଦ୍ରିତ ହୋଇ ପ୍ରକାଶିତ । ଏହାର ରଚନା ସମୟ ଖ୍ରୀ: ୧୯୦୦ ବୋଲି ବିଜ୍ଞାପନରେ ଉଲ୍ଲେଖ ଅଛି । ପୁସ୍ତକଟିକୁ ଧରାକୋଟ ରାଜା ମଦନମୋହନ ସିଂହଙ୍କୁ ଉତ୍ସର୍ଗ କରାଯାଇଛି ।

ମୁକୁନ୍ଦାନନ୍ଦ ଭାଣ : ୧୯୦୦ ମସିହାରେ  ଲିଖିତ କିନ୍ତୁ ଅପ୍ରକାଶିତ ।

ଜାନକୀ ପରିଣୟ : ଖ୍ରୀ: ୧୯୧୫ରେ ବିଶ୍ୱନାଥ କରଙ୍କ ଉତ୍କଳ ସାହିତ୍ୟ ପ୍ରେସ୍‌ରେ ମୁଦ୍ରିତ ହୋଇ ନିଜେ ଲେଖକଙ୍କ ଦ୍ୱାରା ପ୍ରକାଶିତ । କିନ୍ତୁ ଏହାର ରଚନା ସମୟ ଖ୍ରୀ: ୧୯୦୦ ଥିବା ଲେଖକ ଗ୍ରନ୍ଥଟିର ଭୂମିକାରେ ସ୍ୱୀକାର କରିଛନ୍ତି । ଗ୍ରନ୍ଥଟି ପାରଳାଖେମୁଣ୍ଡିର ମହାରାଜା କୃଷ୍ଣଚନ୍ଦ୍ର ଗଜପତି ନାରାୟଣ ଦେବଙ୍କୁ ଉତ୍ସର୍ଗ କରାଯାଇଛି ।

ଉଦ୍ଧବ ଦୂତ : ଖ୍ରୀ: ୧୯୦୭ରେ ପ୍ରକାଶିତ । ଗ୍ରନ୍ଥ ଶେଷରେ ଏହାର ରଚନା ସମୟ ଖ୍ରୀ: ୧୯୦୬ (ଅବ୍ଧ୍ୟକ୍ଷି-ନାଗ-ମହୀ ଅର୍ଥାତ୍ ୧୮୨୭ ଶକାବ୍ଦ) ବୋଲି ଉଲ୍ଲେଖ ଥିଲେ ସୁଦ୍ଧା ମୁଖବନ୍ଧରୁ ଜଣାଯାଏ 'ଜାନକୀ ପରିଣୟ' ନାଟକ ଅନୁବାଦ ପରେ ପରେ ଏହାର ଅନୁବାଦ କାର୍ଯ୍ୟ ସଂପନ୍ନ ହୋଇଥିଲା । ଏଥିରେ ଉଲ୍ଲେଖ ଅଛି, ମତ୍‌କର୍ତ୍ତୃକ ଅନୁବାଦିତ 'ଜାନକୀ ପରିଣୟ' ନାଟକ ଖଣ୍ଡିକର ପାଣ୍ଡୁଲିପି ପଢ଼ି ମୋହର ସୁହୃଦ ବନ୍ଧୁ ଅତ୍ରତ୍ୟ ଶ୍ରୀ ଶ୍ରୀ ଶ୍ରୀ ମହାରାଜାଙ୍କ ପୁରୋହିତ ପଣ୍ଡିତ ଶ୍ରୀ ମଧୁସୂଦନ ରାଜଗୁରୁ ମହାପାତ୍ର ମହାଶୟ ପରିତୁଷ୍ଟ ହୋଇ ଏହି ଉଦ୍ଧବ ଦୂତର ଉତ୍କଳାନୁବାଦ ସଂସ୍କୃତ ଛନ୍ଦରେ ଲେଖିବାପାଇଁ ମୋତେ ସାଦରେ ଅନୁରୋଧ କରିଥିଲେ । ବନ୍ଧୁଙ୍କ ଅନୁରୋଧ ଓ ଚରିତର ପବିତ୍ରତାରେ ହୃଦୟ ଆକୃଷ୍ଟ ହେବାରୁ ତାର କେତେକ ଦିନ ପରେ ଅନୁବାଦ ଆରମ୍ଭ କଲି ।'

ଏ ଦୃଷ୍ଟିରୁ 'ଉଦ୍ଧବ ଦୂତ'ର ରଚନା ସମୟ ୧୯୦୧ ମସିହା ରୂପେ ଗ୍ରହଣ କରାଯାଇପାରେ । ଗ୍ରନ୍ଥଟି ବୃହଦ୍‌ଦୁର୍ଗାଧିଶ୍ୱର ଶ୍ରୀମାନ୍ ମହାରାଜ ଶ୍ରୀ ଶ୍ରୀ ଶ୍ରୀ କିଶୋର ଚନ୍ଦ୍ର ସିଂହଦେବ ମହୋଦୟଙ୍କ ନାମରେ ଉତ୍ସର୍ଗ କରାଯାଇଛି ।

ସୀତା ବନବାସ ନାଟକ : ୧୯୦୭ ମସିହାରେ ଏହା କଟକ ଅରୁଣୋଦୟ ପ୍ରେସ୍‌ରୁ ଏନ୍.ଏନ୍. ସାହୁଙ୍କ ଦ୍ୱାରା ମୁଦ୍ରିତ ହୋଇ ପ୍ରକାଶିତ । ୧୯୦୧ ମସିହାରେ ଏହାର ରଚନା ଶେଷ ହୋଇଥିବା ଗ୍ରନ୍ଥର ଭୂମିକାରେ ସୂଚିତ । ନାଟକଟିକୁ ଲେଖକ ବଡ଼ଖେମଣ୍ଡିର ରାଜା ଶ୍ରୀ ଶ୍ରୀ ଶ୍ରୀ କୃପାମୟ ଅନଙ୍ଗଭୀମ କେଶରୀଦେବଙ୍କ କରକମଳରେ ଅର୍ପଣ କରିଛନ୍ତି ।

ବିକ୍ରମୋର୍ବଶୀୟ ନାଟକ : ୧୯୦୧ ମସିହାରେ ରଚିତ ଏହି ନାଟକଟି କଟକର ଅରୁଣୋଦୟ ଗ୍ରନ୍ଥାଳୟରେ ମୁଦ୍ରିତ ହୋଇ ୧୯୦୮ ମସିହାରେ ପ୍ରକାଶିତ । ଏହି ତ୍ରୋଟକାଖ୍ୟ ନାଟକଟିକୁ ଲେଖକ ମଞ୍ଜୁଷା ଯୁବରାଜ ଶ୍ରୀ ଶ୍ରୀନିବାସ ଦେବଙ୍କୁ ଉତ୍ସର୍ଗ କରିଥିଲେ ।

ରାମାଶ୍ୱମେଧ ନାଟକ : 'ସୀତା ବନବାସ' ପରେ ପରେ ଏହାକୁ ରଚନା କରାଯାଇଥିବା ବିଷୟ ଲେଖକଙ୍କଦ୍ୱାରା ସୂଚିତ କରାଯାଇଥିବା ଯୋଗୁଁ ଏହାର ରଚନା ସମୟ ଖ୍ରୀ: ୧୯୦୨ ବୋଲି ଗ୍ରହଣ କରାଯାଇପାରେ । ୧୯୧୩ ମସିହାରେ ଏହା ଉତ୍କଳ ସାହିତ୍ୟ ପ୍ରେସ୍‌ରେ ମୁଦ୍ରିତ ହୋଇ ପ୍ରକାଶ ପାଇଥିଲା । ନାଟକଟିକୁ ଲେଖକ ପାରଳାଖେମୁଣ୍ଡିର କୃଷ୍ଣଚନ୍ଦ୍ର ଗଜପତି ନାରାୟଣ ଦେବଙ୍କ କରକମଳରେ ସମର୍ପଣ କରିଥିଲେ ।

ଶବ୍ଦତତ୍ତ୍ୱବୋଧ ଅଭିଧାନ : ଏହାର ସଂକଳନ କାର୍ଯ୍ୟ ୧୮୯୭ ମସିହାରୁ ଆରମ୍ଭ ହୋଇ ୧୯୦୩ ମସିହାରେ ଶେଷ ହୋଇଥିବା ଧରାକୋଟର ତତ୍କାଳୀନ ରାଜା ଶ୍ରୀ ମଦନମୋହନ ସିଂହଦେବଙ୍କ ଲିଖିତ ପ୍ରଥମ ସଂସ୍କରଣର ଭୂମିକା (ତା ୩୦/୧/୧୯୧୫)ରୁ ଜଣାଯାଏ । ଅଭିଧାନଟି ବହୁ ବାଧାବିଘ୍ନ ଅତିକ୍ରମ କରି ଖ୍ରୀ: ୧୯୧୬ରେ ପ୍ରକାଶିତ । 'ଉତ୍କଳ ସାହିତ୍ୟ' ପତ୍ରିକାର ଭା ୧୯/୪ ସଂଖ୍ୟାରେ (ଜୁଲାଇ, ୧୯୧୫) ଏହାର ମୁଦ୍ରଣ କାର୍ଯ୍ୟ ଶୀଘ୍ର ଆରମ୍ଭ ହେଉଥିବା ବିଷୟରେ ସୂଚନା ଦିଆଯାଇଛି ଏବଂ ସେହି ଭାଗର ୧୦ମ ସଂଖ୍ୟାରେ (ଜାନୁୟାରୀ, ୧୯୧୬) ଏହାର ମୁଦ୍ରଣ ଶେଷ ଓ ୧୧ଶ ସଂଖ୍ୟାରେ (ଫେବୃୟାରୀ, ୧୯୧୬) ଏହା ପ୍ରକାଶିତ ହୋଇଥିବା ଘୋଷଣା କରାଯାଇଛି ।

ଦ୍ରୌପଦୀବସ୍ତ୍ରହରଣ ନାଟକ : ୧୯୦୫ ମସିହାରେ ପ୍ରଣୀତ ଏହି ନାଟକଟି ପାରଳାଖେମୁଣ୍ଡି ଗଜପତି ପ୍ରେସ୍‌ରେ ମୁଦ୍ରିତ ହୋଇ ଖ୍ରୀ: ୧୯୦୮ରେ ପ୍ରକାଶ ପାଇଥିଲା । ଚିକିଟିର ନାଟ୍ୟପ୍ରେମୀ ଶ୍ରୀ ଶ୍ରୀ ରାଧାମୋହନ ରାଜେନ୍ଦ୍ର ଦେବଙ୍କୁ ଏହି ନାଟକାଟି ସମର୍ପଣ କରାଯାଇଛି ।

ଗଣନିୟମ କବିତା (ପ୍ରବନ୍ଧ) : ଉତ୍କଳ ସାହିତ୍ୟ ଭା ୯।୭ ସଂ
(କାର୍ତ୍ତିକ, ୧୩୧୩ = ଅକ୍ଟୋବର, ୧୯୦୫)

ଜାନକୀ ପରିଣୟ ନାଟକ (ପ୍ରବନ୍ଧ) : ଉତ୍କଳ ସାହିତ୍ୟ ଭା ୯/୯୧୦ ସଂ
(ପୌଷ ଓ ମାଘ, ୧୩୧୩ = ଡିସେମ୍ବର ୧୯୦୫; ଜାନୁୟାରୀ ୧୯୦୬)

ଓଡ଼ିଆ ତଦ୍ଧିତ : ଉତ୍କଳ ସାହିତ୍ୟ ଭା ୯/୧୧-୧୨ ସଂ
(ଫାଲଗୁନ, ଚୈତ୍ର ୧୩୧୩ = ଫେବୃୟାରୀ, ମାର୍ଚ୍ଚ, ୧୯୦୬)

ଓଡ଼ିଆ କୃଦନ୍ତ : ଉତ୍କଳ ସାହିତ୍ୟ ଭା ୧୦/୩-୪ ଓ ୫
(ଆଷାଢ଼-ଶ୍ରାବଣ ଓ ଭାଦ୍ର ୧୩୧୩ = ଜୁନ୍, ଜୁଲାଇ ଓ ଅଗଷ୍ଟ, ୧୯୦୬)

ଓଡ଼ିଆ କୃଦନ୍ତରେ ଅସମାପିକା କ୍ରିୟା : ଉତ୍କଳ ସାହିତ୍ୟ ଭା ୧୦/୬-୭ ସଂ
(ଆଶ୍ୱିନ-କାର୍ତ୍ତିକ, ୧୩୧୪ = ସେପ୍ଟେମ୍ବର-ଅକ୍ଟୋବର, ୧୯୦୬)

ଓଡ଼ିଆ ସମାସ : ଉତ୍କଳ ସାହିତ୍ୟ ଭା ୧୦/୮, ୯-୧୦, (ମାର୍ଗଶିର, ପୌଷ, ମାଘ, ୧୩୧୪ = ନଭେମ୍ବର, ଡିସେମ୍ବର ୧୯୦୬, ଜାନୁୟାରୀ ୧୯୦୭)

ଓଡ଼ିଆ ଧାତୁତତ୍ତ୍ୱ ବିଚାର : ମୁକୁର ଭା ୧/୮, ମାର୍ଗଶିର ୧୩୧୪ = ନଭେମ୍ବର ୧୯୦୭ରୁ ଆରମ୍ଭ ହୋଇ ଭା ୪।୧୧-୨୨ (ଫାଲଗୁନ-ଚୈତ୍ର, ୧୩୧୭ = ଫେବୃୟାରୀ-ମାର୍ଚ୍ଚ, ୧୯୧୦) ପର୍ଯ୍ୟନ୍ତ ଧାରାବାହିକ ଭାବେ ପ୍ରକାଶିତ ।

ଓଡ଼ିଆ ଲିଙ୍ଗାନୁଶାସନ : ଉତ୍କଳ ସାହିତ୍ୟ ଭା ୧୦/୧୦-୧୨ ସଂ
(ଫାଲଗୁନ, ଚୈତ୍ର, ୧୩୧୪ = ଫେବୃୟାରୀ, ମାର୍ଚ୍ଚ, ୧୯୦୭)

ଓଡ଼ିଆ ବଚନ ନିର୍ଣ୍ଣୟ : ଉତ୍କଳ ସାହିତ୍ୟ ଭା ୧୧/୧-୨ ସଂ
(ବୈଶାଖ-ଜ୍ୟେଷ୍ଠ, ୧୩୧୪ = ଏପ୍ରିଲ, ମେ ୧୯୦୭)

ଓଡ଼ିଆ ଶବ୍ଦ ବିଭକ୍ତି ପ୍ରତ୍ୟୟ : ଉତ୍କଳ ସାହିତ୍ୟ ଭା ୧୧/୩-୪, ୫-୬, ୮-୯, ୧୦ ସଂ (ଆଷାଢ଼-ଶ୍ରାବଣ , ୧୩୧୪, ଭାଦ୍ର-ଆଶ୍ୱିନ, ମାର୍ଗଶିର-ପୌଷ, ମାଘ, ୧୩୧୫ = ଜୁନ୍, ଜୁଲାଇ, ଅଗଷ୍ଟ-ସେପ୍ଟେମ୍ବର, ନଭେମ୍ବର, ଡିସେମ୍ବର, ୧୯୦୭; ଜାନୁୟାରୀ ୧୯୦୮) ।

ଓଡ଼ିଆ ସର୍ବନାମ : ଉତ୍କଳ ସାହିତ୍ୟ ଭା ୧୧/୧୧-୧୨ ସଂ (ଫାଲଗୁନ-ଚୈତ୍ର ୧୩୧୫ ଫେବୃୟାରୀ-ମାର୍ଚ୍ଚ, ୧୯୦୮) ଭା ୧୨/୧, ୨ ସଂ (ବୈଶାଖ, ଜ୍ୟେଷ୍ଠ ୧୩୧୫ = ଏପ୍ରିଲ୍, ମେ, ୧୯୦୮) ।

ଓଡ଼ିଆରେ ଯୁଷ୍ମଦ୍ ଅସ୍ମଦ୍ ପ୍ରକ୍ରିୟା : ଉତ୍କଳ ସାହିତ୍ୟ ଭା ୧୨/୩-୪, (ଆଷାଢ଼ ଶ୍ରାବଣ, ୧୩୧୫ = ଜୁନ୍-ଜୁଲାଇ, ୧୯୦୮) ।

ଓଡ଼ିଆ ବିଭକ୍ତ୍ୟର୍ଥ ଓ କାରକ : ଉତ୍କଳ ସାହିତ୍ୟ ଭା ୧୨/୫-୬, ୭-୮, ୯-୧୦ (ଭାଦ୍ର-ଆଶ୍ୱିନ, କାର୍ତ୍ତିକ-ମାର୍ଗଶିର, ପୌଷ-ମାଘ, ୧୩୧୬ = ଅଗଷ୍ଟ-

ସେପ୍ଟେମ୍ବର, ଅକ୍ଟୋବର-ନଭେମ୍ବର, ଡିସେମ୍ବର ୧୯୦୮ ଓ ଜାନୁୟାରୀ ୧୯୦୯)

ଓଡ଼ିଆ ଅବ୍ୟୟ ପ୍ରକରଣ : ଉତ୍କଳ ସାହିତ୍ୟ ଭା ୧୨/ ୧୧-୧୨, ଭା ୧୩/୧-୨, ୩-୪-୫ (ଫାଲଗୁନ-ଚୈତ୍ର, ବୈଶାଖ-ଜ୍ୟେଷ୍ଠ-ଆଷାଢ଼-ଶ୍ରାବଣ-ଭାଦ୍ରବ, ୧୩୧୬ = ଫେବୃୟାରୀ-ମାର୍ଚ୍ଚ, ଏପ୍ରିଲ-ମେ-ଜୁନ୍-ଜୁଲାଇ-ଅଗଷ୍ଟ, ୧୯୦୯) ।

ସାରଳା ମହାଭାରତର ସମାଲୋଚନା (ଶ୍ରୀ ଭାରତଦର୍ପଣ) : ଉତ୍କଳ ସାହିତ୍ୟ ଭା ୧୫/୧-୨, ୩, ୪-୫, ୬-୭, ୮-୯-୧୦, ୧୧-୧୨, ଭା ୧୬/୧-୨, ୩-୪, ୫-୬, ୭-୮, ୧୧-୧୨, ଭା ୧୭/୧-୨, ୩-୪, ୫, ୯-୧୦, ୧୧, ୧୨, ଭା ୧୮/୧, ୨, ୩, ୪-୫, ୬, ୭, ୮, ୯, ୧୧, ୧୨; ଭା ୧୯/୧, ୨-୩, ୪, (ବୈଶାଖ, ଜ୍ୟେଷ୍ଠ, ୧୩୧୮ = ଏପ୍ରିଲ-ମେ, ୧୯୧୧ ଠାରୁ ଶ୍ରାବଣ, ୧୩୨୨ = ଜୁଲାଇ ୧୯୧୫ ପର୍ଯ୍ୟନ୍ତ ୩୦ଟି ସଂଖ୍ୟାରେ ପ୍ରକାଶିତ) ।

ଏହି ପ୍ରବନ୍ଧଗୁଡ଼ିକ ପଣ୍ଡିତ ଗୋପୀନାଥ ନନ୍ଦଶର୍ମାଙ୍କ ଦେହାନ୍ତ ପରେ ଅନୁଜ ବଳଭଦ୍ର ନନ୍ଦଶର୍ମାଙ୍କଦ୍ୱାରା ସଂକଳିତ ହୋଇ ୧୯୨୮ ମସିହାରେ 'ଶ୍ରୀ ଭାରତ ଦର୍ପଣ' ନାମରେ ପ୍ରକାଶିତ ହୋଇଥିଲା । କିନ୍ତୁ ଏହାର ରଚନା ୧୯୦୯ ଜୁନ୍ ମାସ ବେଳକୁ ଶେଷ ହୋଇସାରିଥିବା ପଣ୍ଡିତ ମହାଶୟ ପ୍ରଦାନ କରିଥିବା ପାଟଦୀକାରୁ ଜଣାଯାଏ । ସେ ଲେଖିଛନ୍ତି, 'ବିଗତ ବର୍ଷ ଜୁନ୍ ମାସରେ ଉତ୍କଳ ସାହିତ୍ୟ ପତ୍ରିକାର ସମ୍ପାଦକ ପଣ୍ଡିତବର ଶ୍ରୀ ବିଶ୍ୱନାଥ କର ମହୋଦୟଙ୍କୁ ଏହି ପ୍ରବନ୍ଧର ସମସ୍ତ କାଗଜମାନ ଦେଖିବା ପାଇଁ ପ୍ରାର୍ଥନାପୂର୍ବକ ଦିଆଯାଇଥିଲା । ଶଂସିତ ମହାଶୟ କାଗଜଗୁଡ଼ିକ ଦେଖି ପ୍ରକାଶ କରିବା ପାଇଁ ଆଦେଶ କରିଥିଲେ; ମାତ୍ର ଶରୀରର ଅସ୍ୱାସ୍ଥ୍ୟ ଏବଂ ଅନ୍ୟାନ୍ୟ କାର୍ଯ୍ୟବଶତଃ ସମୁଚିତ ସମୟ ନ ପାଇ ଆଜିଯାଏ ପ୍ରକାଶ କରିପାରି ନଥିଲୁଁ ।

ଓଡ଼ିଆ ବର୍ଣ୍ଣ ଓ ସନ୍ଧି ନିର୍ଣ୍ଣୟ : ଉତ୍କଳ ସାହିତ୍ୟ ଭା ୧୩/୬-୭-୮, ୧୧-୧୨ ଓ ଭା ୧୪ । ୧-୨-୩ (ଆଶ୍ୱିନ-କାର୍ତ୍ତିକ-ମାର୍ଗଶିର, ଫାଲଗୁନ-ଚୈତ୍ର, ବୈଶାଖ-ଜ୍ୟେଷ୍ଠ-ଆଷାଢ଼, ୧୩୧୭ = ସେପ୍ଟେମ୍ବର-ଅକ୍ଟୋବର-ନଭେମ୍ବର, ୧୯୦୯, ଓ ଫେବୃୟାରୀ-ମାର୍ଚ୍ଚ, ଏପ୍ରିଲ-ମେ-ଜୁନ୍ ୧୯୧୦) ।

ତ୍ରୈଲଙ୍ଗ୍ୟ ଭୋଜ ଓ ତ୍ରୈଲଙ୍ଗ୍ୟ ସାହିତ୍ୟ (ପ୍ରବନ୍ଧ) : ଉତ୍କଳ ସାହିତ୍ୟ, ଭା ୧୪/୧-୨-୩ (ବୈଶାଖ-ଜ୍ୟେଷ୍ଠ-ଆଷାଢ଼, ୧୩୧୭ = ଏପ୍ରିଲ-ମେ-ଜୁନ୍, ୧୯୦୬) ।

ସତ୍ୟ (ପ୍ରବନ୍ଧ) : ମୁକୁର ଭା ୫/୧ (ବୈଶାଖ, ୧୩୧୭ = ଏପ୍ରିଲ୍ ୧୯୧୦) ।

ଲକ୍ଷ୍ମୀ ସମାଯୋଗ (ପ୍ରବନ୍ଧ) : ଉତ୍କଳ ସାହିତ୍ୟ ଭା ୧୪/୪-୫ (ଶ୍ରାବଣ-ଭାଦ୍ର, ୧୩୧୭ = ଜୁଲାଇ-ଅଗଷ୍ଟ, ୧୯୧୦) ।

ଓଡ଼ିଆରେ ବିଶେଷଣ ବିଧି : ଉତ୍କଳ ସାହିତ୍ୟ ଭା ୧୪/୬, ୧୧ ସଂ
(ଆଶ୍ୱିନ, ଫାଲଗୁନ, ୧୩୧୮ = ସେପ୍ଟେମ୍ବର, ୧୯୧୦; ଫେବୃୟାରୀ, ୧୯୧୧)

ମତ୍ସ୍ୟେନ୍ଦ୍ରନାଥ ଓ ଗୋରକ୍ଷନାଥ : ସମ୍ବଲପୁର ହିତୈଷିଣୀ ଭା ୨୪/୨୦ ଓ ଭା ୨୪/୨୨ ସଂ (କ୍ରୋଡ଼ପତ୍ର), ତା ୧୫-୩-୧୯୧୩ ଓ ତା ୨୨-୩-୧୯୧୩ ।

ମହାତ୍ମା ଜୀମୂତ ବାହନ : ସମ୍ବଲପୁର ହିତୈଷିଣୀ ଭା ୨୪/୪୬, ୪୭, ୪୮, ୪୯ (୧୩.୯.୧୯୧୩ରୁ ୪.୧୦.୧୯୧୩)

ଉତ୍ତର ରାଘବ ନାଟକ : ଖ୍ରୀ ୧୯୧୫ରେ ଏହା ବିଶ୍ୱନାଥ କରଙ୍କ ଦ୍ୱାରା ଉତ୍କଳ ସାହିତ୍ୟ ପ୍ରେସ୍‌ରେ ମୁଦ୍ରିତ ହୋଇ ପ୍ରକାଶ ପାଇଥିଲା । ନାଟକଟିର ଉତ୍ସର୍ଗ ପତ୍ରରୁ ଏହା ୧୯୧୪ ମସିହାରେ ରଚିତ ହୋଇଥିବା ଜଣାଯାଏ । ଏହ ପାରଳାଖେମୁଣ୍ଡିର ରାଣୀ ମହୋଦୟାଙ୍କ କରକମଳରେ ସମର୍ପିତ ।

ଗୋଟିଏ ନାଟକୀୟ ଗଳ୍ପ : ସମ୍ବଲପୁର ହିତୈଷିଣୀ ଭା ୨୮/୪୦, ୪୧, ୪୪, ୪୫, ୪୭, ୪୮ (୪.୮.୧୯୧୭, ୧୧.୮.୧୯୧୭, ୧.୯.୧୯୧୭, ୧୫-୯-୧୯୧୭; ୨୧.୯.୧୯୧୭, ୨୯.୯.୧୯୧୭) ।

ଓଡ଼ିଆ ଶବ୍ଦ ସନ୍ଦର୍ଭ : ସତ୍ୟବାଦୀ ଖ ୨/୮-୧୨ (କନ୍ୟା-ମକର = ସେପ୍ଟେମ୍ବର ୧୯୧୭-ଜାନୁୟାରୀ, ୧୯୧୮) ସଂଖ୍ୟାଠାରୁ ଆରମ୍ଭ ହୋଇ ଭା ୫/୧୧-୧୨ (କୁମ୍ଭ-ମୀନ, ୧୩୨୬ = ଫେବୃୟାରୀ-ମାର୍ଚ୍ଚ ୧୯୨୦) ପର୍ଯ୍ୟନ୍ତ ବିକ୍ଷିପ୍ତ ଭାବେ ପ୍ରକାଶିତ ।

ଶ୍ରୀମଦ୍ ଭାଗବତ ସମାଲୋଚନା : ସତ୍ୟବାଦୀ ଖ ୪/୬-୭ ସଂ, ୮-୧୨ ସଂ, ଖ ୫/୧-୨, ୩-୪, ୬-୭, ୧୧-୧୨, ଖ ୬/୩-୪-୫ (କନ୍ୟା, ତୁଳା, ବିଛାଠାରୁ ମୀନ-ମେଷ, ବୃଷ, ମିଥୁନ-କର୍କଟ, ୧୩୨୫; କନ୍ୟା-ତୁଳା, କୁମ୍ଭ-ମୀନ, ୧୩୨୬; କୁମ୍ଭ, ମୀନ, ମେଷ, ୧୩୨୮ = ସେପ୍ଟେମ୍ବର, ଅକ୍ଟୋବର, ନଭେମ୍ବର ୧୯୧୮-ମାର୍ଚ୍ଚ, ୧୯୧୯, ଏପ୍ରିଲ-ମେ, ଜୁନ୍-ଜୁଲାଇ, ସେପ୍ଟେମ୍ବର-ଅକ୍ଟୋବର ୧୯୧୯, ଫେବୃୟାରୀ, ମାର୍ଚ୍ଚ, ୧୯୧୯; ଫେବୃୟାରୀ, ମାର୍ଚ୍ଚ, ଏପ୍ରିଲ୍ ୧୯୨୧)

ଏହାର ଆରମ୍ଭରେ ଏକ ଉତ୍ସର୍ଗପତ୍ର ସଂଯୋଜିତ । ଏଥିରେ ଉଲ୍ଲେଖ ଅଛି, 'ଗଞ୍ଜାମ ଓଡ଼ିଆମାନଙ୍କ ପ୍ରତି ଆନ୍ତରିକ ସହାନୁଭୂତି ନିମନ୍ତେ ଏହି ପୁସ୍ତକ ଖଣ୍ଡିକ ଗଞ୍ଜାମ ଜିଲ୍ଲା କଲେକ୍ଟର ଶ୍ରୀମାନ ସି.ବି. କଟରାଲ ଏସ୍‌କ୍ୱେର ସି.ଆଇ.ଇ; ଆଇ.ସି.ଏସ୍. ମହୋଦୟଙ୍କ ନାମରେ ତାଙ୍କ ବିନୀତ ସେବକ ଓ ଗୁଣାନୁବାଦକ ଗ୍ରନ୍ଥକାରଦ୍ୱାରା ଉତ୍ସୃଷ୍ଟ ହେଲା ।' ଏଥିରୁ ଜଣାଯାଉଛି ଯେ ପଣ୍ଡିତ ମହାଶୟ ଶ୍ରୀମଦ୍ ଭାଗବତର ସମାଲୋଚନା

ଶେଷ କରି ପୁସ୍ତକାକାରରେ 'ସତ୍ୟବାଦୀ' ପତ୍ରିକାର ସମ୍ପାଦକଙ୍କ ନିକଟକୁ ପ୍ରେରଣ କରିଥିଲେ । ଏହାପରେ 'ଶ୍ରୀମଦ୍ ରାମାୟଣ ସମାଲୋଚନା' ପ୍ରକାଶ ପାଇଥିବାରୁ ଆଲୋଚ୍ୟ ପୁସ୍ତକଟି ସଂପୂର୍ଣ୍ଣରୂପେ ଲିଖିତ ହୋଇଥିବା ନିଶ୍ଚିତ ।

କୁମାର ବିଜୟ : ଶଶୀଭୂଷଣ ରଥଙ୍କଦ୍ୱାରା ସମ୍ପାଦିତ ପ୍ରଦୀପ ଭା ୧/୧୦ାରୁ ୧୨; ଭା ୨/୨, ୯, ୧୦, ୧୧ (ଆଶ୍ୱିନଠାରୁ ଭାଦ୍ରବ, ୧୩୨୫-୨୬; କାର୍ତ୍ତିକ, ଜ୍ୟେଷ୍ଠ, ଆଷାଢ଼, ଶ୍ରାବଣ, ୧୩୨୬ = ଅକ୍ଟୋବର, ୧୯୧୮ଠାରୁ ସେପ୍ଟେମ୍ବର ୧୯୧୯; ନଭେମ୍ବର ୧୯୧୯; ଜୁନ୍, ଜୁଲାଇ, ଅଗଷ୍ଟ ୧୯୨୦) ।

ବାଳ ରାମାୟଣ : ପ୍ରଦୀପ ଭା ୨/୧, ୩ (ଆଶ୍ୱିନ, ମାର୍ଗଶିର, ୧୩୨୬ = ଅକ୍ଟୋବର, ଡିସେମ୍ବର, ୧୯୧୯) ।

ରଘୁବଂଶ ବିଚାର : ପ୍ରଦୀପ ଭା ୨/୫, ୬, ୭, ୯, ୧୦ (ମାଘଠାରୁ ଚୈତ୍ର, ଜ୍ୟେଷ୍ଠ, ଆଷାଢ଼, ୧୩୨୬ = ଜାନୁୟାରୀଠାରୁ ମାର୍ଚ୍ଚ, ମେ, ଜୁନ୍, ୧୯୧୯) ।

ଶ୍ରୀମଦ୍ ରାମାୟଣ ସମାଲୋଚନା : ମୁକୁର ଭା ୧୮/୨, ୩, ୪, ୫, ୬, ୯-୧୦ (ବୈଶାଖ, ଜ୍ୟେଷ୍ଠ, ଆଷାଢ଼, ଶ୍ରାବଣ, ଭାଦ୍ର ୧୩୩୦ (ଏହାପରେ ବି ୧୩୩୦ରେ ଅଛି) ମାର୍ଗଶିର-ପୌଷ ୧୩୩୧ = ଏପ୍ରିଲ୍‌ଠାରୁ ଅଗଷ୍ଟ, ନଭେମ୍ବର-ଡିସେମ୍ବର ୧୯୨୩) ଏବଂ କୋଣାର୍କ ଭା ୧/୧, ୩ (ସେପ୍ଟେମ୍ବର, ୧୯୫୮, ମାର୍ଚ୍ଚ ୧୯୫୯) ଭା ୨/୩-୪ (୧୯୬୧) ।

ଉଭୟବୃତ୍ତ ରତ୍ନାକର (୧୯୧୯) (ଉଭୟ ବୃତ୍ତ ରତ୍ନାବଳୀ) : ଅପ୍ରକାଶିତ; ପ୍ରସ୍ତୁତ ରଚନାବଳୀର ଦ୍ୱିତୀୟ ଭାଗ ଦ୍ରଷ୍ଟବ୍ୟ ।



# ପଣ୍ଡିତ ଗୋପୀନାଥ ନନ୍ଦଶର୍ମାଙ୍କ
# ଓଡ଼ିଆ ସାହିତ୍ୟର ଇତିହାସ

*ବହୁବର୍ଷ ପୂର୍ବେ ପଣ୍ଡିତମଣ୍ଡଳୀ ସମାଳଂକୃତ ଉତ୍କଳ ସାହିତ୍ୟ ସମାଜ ଓଡ଼ିଆ ଭାଷା ଓ ସାହିତ୍ୟର ଶ୍ରୀବର୍ଦ୍ଧନାର୍ଥ ଖଣ୍ଡିଏ ବୃହତ୍ ଓଡ଼ିଆ ଅଭିଧାନ, ଓଡ଼ିଆର ସମ୍ପୂର୍ଣ୍ଣାଙ୍ଗ ବ୍ୟାକରଣ ଆଉ ସେହି ଭାଷା ଓ ସାହିତ୍ୟର ଇତିହାସ ପ୍ରଣୟନର ସଂକଳ୍ପ କରିଥିଲେ । ମୁଁ ମଧ ତାଦୃଶ ସଂକଳ୍ପନିଷ୍ଠ ହୋଇ ଉତ୍କଳ ସାହିତ୍ୟ ସମାଜର ଅନୁମୋଦିତ ଏହି ଅଭିଧାନ ଖଣ୍ଡିକର ସଂକଳନ କରି ଦେଇଅଛି । ସେହି ସଂକଳ୍ପର ଦ୍ୱିତୀୟ ବିଷୟ ଓଡ଼ିଆ ବ୍ୟାକରଣ । ସେଥିପାଇଁ ସୁଦ୍ଧା ମୁଁ ପ୍ରୋକ୍ତ ସମାଜର ସଂକଳ୍ପରେ ପ୍ରଣୋଦିତ ହୋଇଅଛି । ପ୍ରାୟ ଆଠ ବର୍ଷ ପର୍ଯ୍ୟନ୍ତ ପ୍ରଗାଢ଼ ପରିଶ୍ରମ ସହକାରେ ଓଡ଼ିଆ ଭାଷାର ସମଗ୍ର ତତ୍ତ୍ୱ ସମ୍ବଳିତ ଖଣ୍ଡିଏ ବୃହତ୍ ବ୍ୟାକରଣ କ୍ରମଶଃ ଲେଖି ଉତ୍କଳ ସାହିତ୍ୟ ପତ୍ରିକା ଓ ମୁକୁର ପତ୍ରିକାରେ ପ୍ରକାଶ କରିଅଛି । କିନ୍ତୁ ଏହି ବ୍ୟାକରଣର ଅବଶିଷ୍ଟ କ୍ରିୟାପ୍ରକରଣ ଓ ଶବ୍ଦତତ୍ତ୍ୱ ବିଚାର ମାତ୍ର ଉପକରଣ ସଂଗୃହୀତ କରି ସୁଦ୍ଧା ସମୟାଭାବରୁ ଲେଖିବାକୁ ପାରିନାହିଁ । ଆଉ ଅଳ୍ପ ସମୟରେ ଅବଶିଷ୍ଟତକ ଲେଖି ପ୍ରୋକ୍ତ ବ୍ୟାକରଣ ଗ୍ରନ୍ଥକୁ ସଂପୂର୍ଣ୍ଣ କରିବି । ପରନ୍ତୁ ଉତ୍କଳ ସାହିତ୍ୟ ସମାଜର ଆଉ ଗୋଟିଏ ଗୁରୁତର ଆଦେଶ ମସ୍ତକୋପରି ରହି ଘୂର୍ଣ୍ଣିତ କରୁଅଛି । ସେହି ଗୁରୁତର ଆଦେଶ ପାଳନସ୍ୱରୂପ ଅସାଧ୍ୟ ସାଧନରେ କି ଆଶା ଭରସା ଓ ଉତ୍ସାହ ଘେନି ବ୍ରତୀ ହେବି ? ସମୁଚିତ ଉତ୍ସାହ ଓ ସାହାଯ୍ୟ ବିନା ମୋର ତାଦୃଶ ଶକ୍ତି କାହିଁ ଯେ ଏଡ଼େ ବଡ଼ ମହତ୍ କାର୍ଯ୍ୟରେ ହସ୍ତକ୍ଷେପ କରିବି ? ଇତ୍ୟାକାରକ ଚିନ୍ତାରେ ମଗ୍ନ ରହିଥିଲି । ବର୍ତ୍ତମାନ କିଞ୍ଚିତ ଆଶ୍ୱସ୍ତ ହୋଇଅଛି । ପ୍ରତିଭାପୂଜକ ସାହିତ୍ୟବିନୋଦ ପାରଳାର ଅଭିନବ ମହାରାଜ ମହୋଦୟ ଏ ସମ୍ବନ୍ଧରେ ମଧ ଆଶା ପ୍ରଦାନ କରିଅଛନ୍ତି । ଏହି ଅଭିଧାନର କାର୍ଯ୍ୟ ସମାପନ ପରେ ଓଡ଼ିଆ ଭାଷା ଓ ସାହିତ୍ୟର ଇତିହାସ ଲେଖିବାରେ ମୁଁ ପ୍ରବୃତ୍ତ ହେବା ସମୟରେ ଅବଶ୍ୟ ସାହାଯ୍ୟ କରିପାରନ୍ତି । ଏଥିପାଇଁ ଶଂସିତ ମହାରାଜ*

*ମହୋଦୟଙ୍କୁ ଧନ୍ୟବାଦ ପ୍ରଦାନ କରୁଅଛି । (ଶବ୍ଦତତ୍ତ୍ୱବୋଧ ଅଭିଧାନ; ବିଜ୍ଞାପନ; ୧୯୧୬) ।*

ତା ୧୬.୧୨.୧୮୯୩ ମସିହାରେ କଟକ ନର୍ମାଲ ସ୍କୁଲର ଛାତ୍ରମାନଙ୍କୁ ଓଡ଼ିଆ ସାହିତ୍ୟ ପ୍ରତି ଆକୃଷ୍ଟ କରାଇବାପାଇଁ ପ୍ରଧାନଶିକ୍ଷକ ଭକ୍ତକବି ମଧୁସୂଦନ ରାଓ ଯେଉଁ ଆଲୋଚନା ସଭା ଗଠନ କରିଥିଲେ ତାହା ସମ୍ପ୍ରସାରିତ ହୋଇ ତା ୭.୫.୧୯୦୩ ମସିହାରେ ଉତ୍କଳ ସାହିତ୍ୟ ସମାଜକୁ ଜନ୍ମ ଦେଇଥିଲା । ଏହା ଥିଲା ସାହିତ୍ୟପ୍ରେମୀ ଓ ସାହିତ୍ୟିକମାନଙ୍କ ସମ୍ମେଳନ; ଲକ୍ଷ୍ୟ ଥିଲା, ପୁସ୍ତକାଳୟ ଓ ପାଠାଗାର ସ୍ଥାପନ, ନବପ୍ରକାଶିତ ପୁସ୍ତକମାନଙ୍କର ନିରପେକ୍ଷ ସମାଲୋଚନା, ଓଡ଼ିଆ ସାହିତ୍ୟର ଖଣ୍ଡେ ପୂର୍ଣ୍ଣାଙ୍ଗ ଇତିହାସ ସଂକଳନ, ବିଶୁଦ୍ଧ ଓଡ଼ିଆ ଶବ୍ଦକୋଷ ସଂକଳନ, ପ୍ରାଚୀନ ପୁସ୍ତକ ସଂଗ୍ରହ, ଉତ୍କଳର ପ୍ରାଚୀନ ଗ୍ରନ୍ଥ ଏବଂ ନୂତନ ଉପାଦେୟ ପୁସ୍ତକ ପ୍ରକାଶନ ଇତ୍ୟାଦି (ଉତ୍କଳ ସାହିତ୍ୟ, ଭା- ୮/୧ ସଂ) । ପ୍ରାଚୀନ ପୁସ୍ତକ ସଂଗ୍ରହ ନିମିତ୍ତ ଶ୍ରୀଯୁକ୍ତ କୃଷ୍ଣପ୍ରସାଦ ଚୌଧୁରୀଙ୍କ ସମ୍ପାଦକତ୍ୱ ଏବଂ ଶ୍ରୀଯୁକ୍ତ ପୁରୁଷୋତ୍ତମ ତର୍କାଳଙ୍କର ଓ ମଧୁସୂଦନ ଦାଶ ବି.ଏ.ଙ୍କ ସଦସ୍ୟତାରେ ଗୋଟିଏ କମିଟି ଗଠିତ ହୋଇଥିଲା । ଏହାଦ୍ୱାରା ଉତ୍କଳ ସାହିତ୍ୟର ପୂର୍ଣ୍ଣାଙ୍ଗ ଇତିହାସ ସଂକଳନ ସହଜ ହେବ ବୋଲି 'ସମାଜ' ଆଶା ପୋଷଣ କରୁଥିଲେ । କିନ୍ତୁ ୧୯୦୪ ଡିସେମ୍ବର ମାସ ଶେଷସୁଦ୍ଧା ଗୋଟିଏ ବର୍ଷ ମଧରେ ସମାଜ ସଂଗ୍ରହ କରିଥିଲେ ମାତ୍ର ଆଠଖଣ୍ଡି ଓଡ଼ିଆ ପୋଥି । ଜଣେ ଉପଯୁକ୍ତ ବ୍ୟକ୍ତିଙ୍କଦ୍ୱାରା ରଘୁନାଥ ବିଳାସ ଓ ଜଗନ୍ନାଥ ଚରିତ୍ରାମୃତର କାଗଜ ପାଣ୍ଡୁଲିପି ପ୍ରସ୍ତୁତ ହୋଇ ଭକ୍ତିରସାମୃତର ପ୍ରତିଲିପି ପ୍ରସ୍ତୁତି କାର୍ଯ୍ୟ ଆରମ୍ଭ ହୋଇଥିଲା (ଉତ୍କଳ ସାହିତ୍ୟ ଭା ୮/୧୦-୧୧ ସଂ) । ଏ ସମୟରେ ଓଡ଼ିଆ ଭାଷାର ଏକ ବିଶୁଦ୍ଧ ବ୍ୟାକରଣ ଲେଖିବାପାଇଁ ମଧ ସମାଜର କର୍ମକର୍ତ୍ତାମାନେ ଚିନ୍ତା କରିଥିଲେ । କିନ୍ତୁ ଶହେ ବର୍ଷରୁ ଉର୍ଦ୍ଧ୍ୱ ସମୟ ଅତୀତ ହୋଇସାରିଥିଲେ ସୁଦ୍ଧା ସମାଜର କୌଣସି ଯୋଜନା ଏ ପର୍ଯ୍ୟନ୍ତ କାର୍ଯ୍ୟକାରୀ ହୋଇପାରି ନାହିଁ ।

'ଉତ୍କଳ ସାହିତ୍ୟ ସମାଜ' ପ୍ରତିଷ୍ଠାର କିଛି ବର୍ଷ ପୂର୍ବରୁ ଅର୍ଥାତ୍ ଊନବିଂଶ ଶତାବ୍ଦୀର ଶେଷ ଦଶକରୁ ପାରଳାଖେମୁଣ୍ଡିର ପ୍ରାଜ୍ଞପୁରୁଷମାନେ ଏ ତ୍ରିବିଧ କାର୍ଯ୍ୟ ହାତକୁ ନେଇସାରିଥିଲେ । ପାରଳାଖେମୁଣ୍ଡି ତ ଓଡ଼ିଆ ସାହିତ୍ୟର ଇତିହାସ ରଚନାର ପଥପ୍ରଦର୍ଶକ । ଶ୍ୟାମସୁନ୍ଦର ରାଜଗୁରୁ, ଗୋପୀନାଥ ନନ୍ଦଶର୍ମା, ଅପର୍ଣ୍ଣା ପଣ୍ଡା, ଏପରିକି ପଣ୍ଡିତ ସୂର୍ଯ୍ୟନାରାୟଣ ଦାସ ସମସ୍ତେ ତ ପାରଳାଖେମୁଣ୍ଡିର । ତାରିଣୀ ଚରଣ ରଥ ମଧ ପାରଳାଠାରୁ ଦୂରର ନୁହନ୍ତି । ବୀମ୍‌ସ, ହଣ୍ଟର, କୃଷ୍ଣପ୍ରସାଦ ଚୌଧୁରୀ ପ୍ରମୁଖ ଓଡ଼ିଆ ସାହିତ୍ୟର ଇତିହାସ ରଚନାପାଇଁ କବି ତାଲିକାଟିଏମାନ ପ୍ରସ୍ତୁତ କରିଥିଲେ । ଏମାନଙ୍କ ମଧରୁ କେହି କେହି ଲେଖକ କେବଳ ସଂସ୍କୃତଗ୍ରନ୍ଥ ରଚନା କରିଥିବାବେଳେ ଅନ୍ୟ

କେତେକଙ୍କ ଲେଖାବଳୀ ଆଦୌ ସାହିତ୍ୟ ପଦବାଚ୍ୟ ନୁହେଁ । ତଥାପି ଗୋଟିଏ ସାହିତ୍ୟର ପୂର୍ଣ୍ଣାଙ୍ଗ ଇତିହାସ ପ୍ରଣୟନପାଇଁ ସେ ଭାଷାରେ ଲେଖାଯାଇଥିବା ସମସ୍ତ ରଚନାର ସଂଗ୍ରହ, ତା' ମଧ୍ୟରୁ ସାହିତ୍ୟିକ ରଚନାଗୁଡ଼ିକର ନିର୍ବାଚନ ଏବଂ ସେଗୁଡ଼ିକର ଯଥାର୍ଥ ମୂଲ୍ୟାୟନ ଯେ ଅପରିହାର୍ଯ୍ୟ ଏହା ଜନ ବୀମ୍ସ ଉପଲବ୍ଧି କରିଥିଲେ ।

> *What we want is, first to find out what books exist in the various languages; secondly, to have them read with a view to finding out which are worth preserving and printing; and thirdly to get scholars to edit such as many to worth the trouble (Indigenous literature of Orissa; Indian Antiquery, Vol. I).*

ବିଭିନ୍ନ ନବ୍ୟ ଭାରତୀୟ ଆର୍ଯ୍ୟ ଭାଷାର ଆଲୋଚନା କରିବାବେଳେ ଓଡ଼ିଆ ଭାଷାର ସ୍ୱାତନ୍ତ୍ର୍ୟ ପ୍ରତିଷ୍ଠାପାଇଁ ପ୍ରଥମ ପଦକ୍ଷେପ ସ୍ୱରୂପ ଏପରି ଏକ ତାଲିକା ପ୍ରସ୍ତୁତିର ଆବଶ୍ୟକତା ଉପଲବ୍ଧି କରାଯାଇଥିଲା । ସହଯୋଗୀମାନଙ୍କ ସହାୟତାରେ ସେ ଯେ କେବଳ ବୟାଅଶୀ ଖଣ୍ଡ ପ୍ରାଚୀନ ଗ୍ରନ୍ଥ ପ୍ରତି ଓଡ଼ିଆ ଓ ଅଣଓଡ଼ିଆ ପାଠକମାନଙ୍କ ଦୃଷ୍ଟି ଆକର୍ଷଣ କରିଥିଲେ, ତା' ନୁହେଁ, ସେଗୁଡ଼ିକୁ ବିଭିନ୍ନ ଭାଗରେ ବିଭକ୍ତ କରି ଓଡ଼ିଆ ସାହିତ୍ୟର ରୂପ ଓ ଗୁଣାତ୍ମକ ବୈଚିତ୍ର୍ୟ ସଂପର୍କରେ ମଧ୍ୟ ସଚେତନ କରାଇଥିଲେ, ଯଥା– ମହାକାବ୍ୟ (An Epic Poem), କଥା (A Tale), କାବ୍ୟ (Poem), ଧାର୍ମିକ କାବ୍ୟ (Religious Poem), ଆଳଙ୍କାରିକ କାବ୍ୟ (Alleterative Poem), ଶୃଙ୍ଗାରୀ କାବ୍ୟ (Erotic Poem), ରାମ କାବ୍ୟ (Story of Rama), କୃଷ୍ଣକାବ୍ୟ (Poem on Krishna) । ବୀମ୍ସଙ୍କ ପ୍ରବନ୍ଧ "Notes on the Rasakallola, an ancient Oriya Poem (Indian Antiquery", Vol. I, Pss 215 ଓ 292.) ପାଶ୍ଚାତ୍ୟ ସମାଲୋଚନା ପଦ୍ଧତିରେ ଓଡ଼ିଆ ସାହିତ୍ୟ ଆଲୋଚନାର ପ୍ରଥମ ନିଦର୍ଶନ । ପ୍ରବନ୍ଧଟିରେ ତାଙ୍କ ଆଲୋଚନାର ଯେଉଁସବୁ ଆଭିମୁଖ୍ୟ ପ୍ରକଶ ପାଇଛି ତାହା ପରବର୍ତ୍ତୀ ଓଡ଼ିଆ ସାହିତ୍ୟର ଇତିହାସ ପ୍ରଣେତାମାନଙ୍କୁ ଏପର୍ଯ୍ୟନ୍ତ ଦିଗ୍‌ଦର୍ଶନ ଦେଇ ଚାଲିଛି । ସେଗୁଡ଼ିକ ହେଲା, (କ) ରସକଲ୍ଲୋଳର ଭାଷିକ ବିଶେଷତ୍ୱ, (ଖ) ଅଶ୍ଳୀଳତା, (ଗ) ରସକଲ୍ଲୋଳ ରଚୟିତା ଦୀନକୃଷ୍ଣଙ୍କ ସମୟ ଓ ଜୀବନୀ, (ଘ) କାବ୍ୟର ପଦସଂଖ୍ୟା, (ଙ) ଛନ୍ଦ ସୌନ୍ଦର୍ଯ୍ୟ ଓ ଯତିପାତ ନିୟମ, (ଚ) କାବ୍ୟର ବିଷୟବସ୍ତୁ, (ଛ) ବଙ୍ଗଳା ଭାଷାଠାରୁ ଏହାର ଭାଷାରେ ଥିବା ସ୍ୱାତନ୍ତ୍ର୍ୟର ସୂଚନା ଏବଂ (ଜ) ବ୍ୟାକରଣ । ଉଲ୍ଲେଖଯୋଗ୍ୟ ଯେ, ବୀମ୍ସ ନିଜେ ଜଣେ ବିଶିଷ୍ଟ ଭାଷାତତ୍ତ୍ୱବିଦ୍ ଏବଂ ଓଡ଼ିଆ ଭାଷା ବିଲୋପ ଚକ୍ରାନ୍ତର

ବିଦଗ୍ଧ ବିରୋଧୀ ଥିବାଯୋଗୁଁ ସେ ଭାଷା ଓ ବ୍ୟାକରଣ ଆଲୋଚନା ଉପରେ ବିଶେଷ ଗୁରୁତ୍ୱ ଆରୋପ କରିଛନ୍ତି । ତାଙ୍କ ଆଲୋଚନାକୁ ପୁରୋଗାମୀ କରାଇବା ପାଇଁ ବୀମସ୍ ଓଡ଼ିଶା ମାଟିର ଯେଉଁ ଗବେଷକଟିକୁ ଖୋଜୁଥିଲେ ଦୀର୍ଘଦିନଧରି ସେପରି ଗବେଷକଟିଏ ସୁଲଭ ହୋଇପାରି ନଥିଲା । ଉଗ୍ର ଜାତୀୟତାବୋଧ, ବ୍ରାହ୍ମ ଧର୍ମର ପ୍ରବଳ ପ୍ରବାହ, ଓଡ଼ିଶା ଶିକ୍ଷା ବିଭାଗର ତତ୍କାଳୀନ ସର୍ବମୟ କର୍ତ୍ତା ରାଧାନାଥ ରାୟଙ୍କ ପ୍ରତି ଅସୂୟାଭାବ ଏବଂ ବଙ୍ଗବିରୋଧୀ ମାନସିକତାଦ୍ୱାରା ସାହିତ୍ୟ ଆଲୋଚନା ଭିନ୍ନ ମାର୍ଗରେ ପରିଚାଳିତ ହେଉଥିଲା । 'ଉତ୍କଳ ମଧୁପ' ବୀମ୍‌ସଙ୍କୁ ଅନୁସରଣ କରି ଲାବଣ୍ୟବତୀ ଓ କୋଟି ବ୍ରହ୍ମାଣ୍ଡ ସୁନ୍ଦରୀକୁ ଆଲୋଚନାପାଇଁ ଗ୍ରହଣ କରିଥିଲେ । କିନ୍ତୁ ତାହା ଅଶ୍ଳୀଳତା ନିକଟରେ ହିଁ ଅଟକିଗଲା । ପୁଣି ଲାଲା ରାମନାରାୟଣ ରାୟ ବୈଦେହୀଶ ବିଳାସକୁ ଆଲୋଚନା ନିମିତ୍ତ ଗ୍ରହଣ କରିଥିଲେ; ତାହା ମଧ ଇନ୍ଦ୍ରଧନୁ-ବିଜୁଳିଙ୍କ ଅଶୋଭନୀୟ ବାକ୍‌ବିତଣ୍ଡା ଏବଂ ପରିଶେଷରେ ବ୍ୟକ୍ତିଗତ କୁତ୍ସା ମଧ୍ୟରେ ଦିଗ୍‌ଭ୍ରଷ୍ଟ ହୋଇପଡ଼ିଲା । ଇଂରେଜୀ ଓ ଓଡ଼ିଆ ସାହିତ୍ୟରେ ଗଭୀର ପ୍ରବେଶ ଥିବା ଇନ୍ଦ୍ରଧନୁ ଗୋଷ୍ଠୀର କର୍ଣ୍ଣଧାର ଗୋଲକଧନ୍ଦା ଓରଫ୍ ଗୋପାଳ ବଲ୍ଲଭ ଦାସ ଓଡ଼ିଆ ସାହିତ୍ୟର ସୁନ୍ଦର ଇତିହାସଟିଏ ଲେଖିଥାଇ ପାରନ୍ତେ, କିନ୍ତୁ ସେ ମଧ ପ୍ରତିପକ୍ଷମାନଙ୍କୁ ପ୍ରଶ୍ନ ପଚାରିବା ମଧ୍ୟରେ ନିଜ ମନୋଭାବକୁ ବ୍ୟକ୍ତକରି ସନ୍ତୁଷ୍ଟ ହୋଇ ପଡ଼ିଲେ । ଅବଶ୍ୟ ତାଙ୍କ ପ୍ରଶ୍ନବାଣଗୁଡ଼ିକ ବ୍ୟର୍ଥ ଯାଇ ନଥିଲା । ପ୍ରାଚୀନ କବିମାନଙ୍କ ସଂପର୍କରେ ଆରମ୍ଭ ହୋଇଥିଲା ଅନୁସନ୍ଧାନ ଓ ଆଲୋଚନା । 'ଉତ୍କଳ ପ୍ରଭା'ର ତୃତୀୟ ଭାଗରେ 'ପ୍ରାଚୀନ କବିମାନଙ୍କ ବୃତ୍ତାନ୍ତ' ଶିରୋନାମାରେ ଗୋବିନ୍ଦ ଚନ୍ଦ୍ର ମହାପାତ୍ର ଉପେନ୍ଦ୍ର ଭଞ୍ଜ, ଦୀନକୃଷ୍ଣ, ଅଭିମନ୍ୟୁ, ବିଶ୍ୱନାଥ ଖୁଣ୍ଟିଆ, କୃଷ୍ଣ ସିଂହ, ଜଗନ୍ନାଥ ଦାସ, ଲୋକନାଥ ବିଦ୍ୟାଧର ପ୍ରଭୃତିଙ୍କ ସଂକ୍ଷିପ୍ତ ଜୀବନୀ ଦେବାପାଇଁ ଉଦ୍ୟମ କରିଥିଲେ । କିନ୍ତୁ ଏ ଦିଗରେ ମନମୋହନ ଚକ୍ରବର୍ତ୍ତୀଙ୍କ Notes On The Language and Literature of Orissa (Journals of the Asiatic Society of Bengal, Vol. LXVII, 1898) ହିଁ ପ୍ରଥମ ସାର୍ଥକ ପଦକ୍ଷେପ ।

କଟକ ନର୍ମାଲ୍ ସ୍କୁଲର ସୁପରିନ୍‌ଟେଣ୍ଡେଣ୍ଟ ଦ୍ୱାରକାନାଥ ଚକ୍ରବର୍ତ୍ତୀଙ୍କ ପୁତ୍ର ମନମୋହନ ଚକ୍ରବର୍ତ୍ତୀ ଓଡ଼ିଶାରେ ରହି, ଓଡ଼ିଶାର ସ୍କୁଲ ଓ କଲେଜରେ ଅଧ୍ୟୟନ କରି ଏବଂ ଚାକିରି କାଳର କିଛି ସମୟ ଓଡ଼ିଶାରେ କଟାଇଥିବାଯୋଗୁଁ ଓଡ଼ିଶାର ସାହିତ୍ୟ, ସଂସ୍କୃତି ଓ ଇତିହାସ ସହିତ ନିବିଡ଼ ଭାବେ ପରିଚିତ ଥିଲେ । ତାଙ୍କ ଦୃଷ୍ଟିରେ ଥିଲା ବୀମସ୍ ସାହେବଙ୍କ 'ରସକଲ୍ଲୋଳ' ପ୍ରବନ୍ଧ ଏବଂ ଇଣ୍ଡିଆନ୍ ଏଣ୍ଟିକ୍ୱେରି, ଜର୍ଣ୍ଣାଲ୍ ଅଫ୍ ଏସିଆଟିକ୍ ସୋସାଇଟି ଅଫ୍ ବେଙ୍ଗଲ ଇତ୍ୟାଦି ପତ୍ରିକାରେ ପ୍ରକାଶ ପାଉଥିବା ସଂସ୍କୃତ

ଓ ଆଞ୍ଚଳିକ ଭାଷାର କବି ଓ କାବ୍ୟ ସଂପର୍କୀୟ ଆଲୋଚନା । ବନ୍ଧୁ, ସହପାଠୀ, ସହକର୍ମୀ ଏବଂ ସମ୍ପାଦକମାନଙ୍କ ସହାୟତାରେ ସେ ପ୍ରକାଶିତ ପୁସ୍ତକ ଏବଂ ଅପ୍ରକାଶିତ ତାଳପତ୍ର ପାଣ୍ଡୁଲିପି ସଂଗ୍ରହ କରିଛନ୍ତି । କବିମାନଙ୍କ ଜୀବନୀ ସଂଗ୍ରହରେ ମଧ୍ୟ ଏମାନେ ତାଙ୍କୁ କମ୍ ସାହାଯ୍ୟ କରି ନାହାନ୍ତି । ପ୍ରବନ୍ଧଟି ଅନୁଧ୍ୟାନ କଲେ ଚକ୍ରବର୍ତ୍ତୀ ମହାଶୟଙ୍କ ଅଧ୍ୟୟନ ପରିସରର ବିସ୍ତୃତି, ଗଭୀର ଅନ୍ତର୍ଦ୍ଦୃଷ୍ଟି, ସାହିତ୍ୟିକ ରସବୋଧ, ପାଶ୍ଚାତ୍ୟ ବୈଜ୍ଞାନିକ ସମାଲୋଚନା ପଦ୍ଧତିର ଅନୁସରଣ ସଂପର୍କରେ ଧାରଣା କରିହୁଏ । ତାଙ୍କ ସମାଲୋଚନାର ଆଭିମୁଖ୍ୟ ଥିଲା (କ) ଆଲୋଚିତ ଗ୍ରନ୍ଥରେ ଥିବା ତଥ୍ୟ କିମ୍ବା ଏହାର ଅଭାବରେ କିମ୍ବଦନ୍ତୀ, ଜନଶ୍ରୁତି, କାବ୍ୟାନ୍ତର୍ନିହିତ ପ୍ରମାଣ ଏବଂ ଦାୟାଦମାନଙ୍କଠାରୁ ସଂଗୃହୀତ ତଥ୍ୟ ଉପରେ ଭିତ୍ତିକରି କବିମାନଙ୍କ କାଳ ନିରୂପଣ (ଖ) ଅନ୍ତର୍ନିହିତ କିମ୍ବା ଆହୃତ ତଥ୍ୟ ଭିତ୍ତିରେ କବିମାନଙ୍କ ଜୀବନୀ ଆକଳନ (ଗ) କବିକୃତି ତଥା ଜନଶ୍ରୁତି ଆଧାରରେ ଜଣେ ଜଣେ କବିଙ୍କ ସାମଗ୍ରିକ ରଚନାବଳୀ ସଂପର୍କରେ ସୂଚନା (ଘ) କାବ୍ୟ ବିଷୟବସ୍ତୁର ସଂକ୍ଷିପ୍ତ ପରିଚୟ (ଙ) ଉଦ୍ଧୃତି ମାଧ୍ୟମରେ କବିଙ୍କ ରଚନାଶୈଳୀ, ପ୍ରତିଭା ତଥା କାବ୍ୟିକ ସୌନ୍ଦର୍ଯ୍ୟ ସଂପର୍କରେ ସ୍ଥୂଳ ଧାରଣା (ଚ) କବିଙ୍କ ଶବ୍ଦ ସଂଯୋଜନା ଚାତୁରୀ (ଛ) କାବ୍ୟର ଭାବ ବା ରସ (ଜ) କାବ୍ୟରେ ପ୍ରଯୁକ୍ତ ଛନ୍ଦ (ଝ) କାବ୍ୟ ବିଷୟବସ୍ତୁର ସଜ୍ଜୀକରଣ କୌଶଳ (ଞ) କାବ୍ୟରେ ଅଶ୍ଳୀଳତା ଏବଂ (ଟ) କାବ୍ୟ ସୃଷ୍ଟିର ପୃଷ୍ଠଭୂମି । ପ୍ରବନ୍ଧଟି କ୍ଷୁଦ୍ର ହେଲେ ସୁଦ୍ଧା ଏହା ହିଁ ଓଡ଼ିଆ ସାହିତ୍ୟର ଇତିହାସ ପ୍ରଣୟନର ପ୍ରଥମ ସାର୍ଥକ ନିଦର୍ଶନ ।

ମନମୋହନ ଚକ୍ରବର୍ତ୍ତୀ ଗୟାଠାରେ ନିଜର ପ୍ରବନ୍ଧ ପ୍ରସ୍ତୁତ କଲାବେଳେ ଦକ୍ଷିଣରେ ଶ୍ୟାମସୁନ୍ଦର ରାଜଗୁରୁ ଏବଂ ଗୋପୀନାଥ ନନ୍ଦ ଏଥିପାଇଁ ପ୍ରସ୍ତୁତି ଆରମ୍ଭ କରିଦେଇଥାନ୍ତି । ଚକ୍ରବର୍ତ୍ତୀ ଦେଖିଥିବା ଇଂରେଜୀ ପତ୍ରିକାଗୁଡ଼ିକ ରାଜଗୁରୁଙ୍କର ମଧ୍ୟ ଦୃଷ୍ଟିରେ ପଡ଼ିଥିବା ଅସମ୍ଭବ ନୁହେଁ । ସେତେବେଳେ ଜର୍ଣ୍ଣାଲ ଅଫ୍ ଏସିଆଟିକ୍ ସୋସାଇଟିର ଅତିରିକ୍ତ ଭାବେ 'ମାଡ୍ରାସ ଜର୍ଣ୍ଣାଲ୍ ଅଫ୍ ଲିଟେରେଚର ଆଣ୍ଡ୍ ସାଇନ୍‌ସ' ଇଂରେଜୀ ଭାଷାରେ 'ମାଡ୍ରାସ ଲିଟରେରୀ ସୋସାଇଟି' ପକ୍ଷରୁ ତ୍ରୟମାସିକ ଭାବେ ପ୍ରକାଶ ପାଉଥିଲା । ଏଥିରେ ତାମିଲ୍, ତେଲୁଗୁ ଓ କନଡ଼ା ଇତ୍ୟାଦି ଦାକ୍ଷିଣାତ୍ୟ ଭାଷାର ସାହିତ୍ୟ, କବି ଓ ରଚନାବଳୀ ସଂପର୍କରେ ଯେଉଁ ପ୍ରବନ୍ଧମାନ ପ୍ରକାଶିତ ହେଉଥିଲା, ତାହା ରାଜମହେନ୍ଦ୍ରୀ ମହାବିଦ୍ୟାଳୟରୁ ବି.ଏ. ପାସ୍ କରିଥିବା ଜଣେ ଯୁବ ସାହିତ୍ୟପ୍ରେମୀଙ୍କ ଦୃଷ୍ଟି ଅନ୍ତରାଳରେ କଦାପି ରହି ନଥିବ । ଚକ୍ରବର୍ତ୍ତୀଙ୍କ ପ୍ରବନ୍ଧ ପ୍ରସ୍ତୁତିବେଳେ ଯେପରି ଦିନେଶ ଚନ୍ଦ୍ର ସେନଙ୍କ 'ବଙ୍ଗଭାଷା ଓ ସାହିତ୍ୟ' ପ୍ରକାଶ ପାଇଥିଲା, ସେହିପରି ସେହି ବର୍ଷ ହିଁ ପି. ଗୋପାଳ ରାଓ ନାଇଡୁ ତେଲୁଗୁ ସାହିତ୍ୟର ଇତିହାସ 'ଆନ୍ଧ୍ରଭାଷା ଚରିତ୍ର ସଂଗ୍ରହମୁ' ଲେଖି

ପ୍ରକାଶ କରିଥିଲେ । ଏହା ପୂର୍ବରୁ କାଣ୍ଡୁକୁରି ବୀରେଶଲିଙ୍ଗମ୍ ପାନ୍ତୁଲୁଙ୍କ ଆନ୍ଧ୍ର ମହାଭାରତ ରଚୟିତା ନନ୍ନୟାଙ୍କଠାରୁ ଊନବିଂଶ ଶତାବ୍ଦୀର ଗୋପୀନାଥନ୍ ଭେଙ୍କଟ କବିଙ୍କ ପର୍ଯ୍ୟନ୍ତ ବହୁ ଲେଖକଙ୍କ ଜୀବନୀ ସମ୍ବଳିତ 'ଆନ୍ଧ୍ର କବୁଲା ଚରିତ୍ରମୁ' (1887) ପ୍ରକାଶ ପାଇଥିଲା । ସେହି ସମୟର ତେଲୁଗୁ ସାହିତ୍ୟର ଇତିହାସ ସଂପର୍କୀୟ ଅନ୍ୟତମ ଗ୍ରନ୍ଥ ହେଉଛି ଚିନ୍ନାୟା ଭେଙ୍କଟରଙ୍ଗ କବିଙ୍କ 'ପୂର୍ବ କବୁଲା ଚରିତ୍ରମୁ' (1888) । ଅନ୍ୟତ୍ର ଉଲ୍ଲେଖ ଅଛି ଚାର୍ଲସ୍ ଫିଲିପ୍ ବ୍ରାଉନ୍ ଥିଲେ ଏମାନଙ୍କର ମାର୍ଗଦର୍ଶକ । ସେ ଜନ୍‌ସନ୍‌ଙ୍କ 'ଲାଇଭ୍ସ ଅଫ୍ ପୋଏଟ୍‌ସ୍'ର ଅନୁସରଣ କରିଥିବାଯୋଗୁଁ ଦୀର୍ଘଦିନ ଧରି ତାହାହିଁ ତେଲୁଗୁ ଆଲୋଚକମାନଙ୍କ ଥିଲା ଆଦର୍ଶ । ତେଲୁଗୁ ସାହିତ୍ୟର ଆଲୋଚନାବେଳେ ବ୍ରାଉନ୍ ସମକାଳୀନ ଦୁଇଟି ପାଶ୍ଚାତ୍ୟ ସମାଲୋଚନା ପଦ୍ଧତିଦ୍ୱାରା ଥିଲେ ପରିଚାଳିତ – ପାଠଭିତ୍ତିକ ସମାଲୋଚନା ବା ଟେକ୍ସଚୁଏଲ୍ କ୍ରିଟିସିଜମ୍ ଏବଂ ତୁଳନାତ୍ମକ ସମାଲୋଚନା । ତାଙ୍କୁ ତେଲୁଗୁ ସାହିତ୍ୟରେ ଏ ଉଭୟ ପଦ୍ଧତିର ଆଦ୍ୟ ପ୍ରବର୍ତ୍ତକ ଭାବେ ଗ୍ରହଣ କରାଯାଏ । ତାଙ୍କଦ୍ୱାରା ପ୍ରେରିତ ହୋଇ ଟି. ଦକ୍ଷିଣମୂର୍ତ୍ତି, ଭେନ୍ନେଟି ରାମଚନ୍ଦ୍ର ରାଓ, କାଶିଭଟ୍ଟଲା ବ୍ରହ୍ମୈୟାଶାସ୍ତ୍ରୀ ଏକକ କବିଙ୍କ ସଂପର୍କରେ ଯଥାକ୍ରମେ ରଚନା କରିଥିଲେ 'ପିଙ୍ଗାଳି ସୂରାନା' (1892), 'ମନୁ-ବସୁ ଚରିତ୍ର ରଚନା ବିମର୍ଶନମୁ' ଏବଂ 'ବସୁ-ମନୁ ପ୍ରକାଶିକା' । ଏହି ପ୍ରବନ୍ଧ କାବ୍ୟଗୁଡ଼ିକ ତତ୍କାଳରେ ସ୍କୁଲ ଓ କଲେଜର ତେଲୁଗୁ ପାଠ୍ୟକ୍ରମର ଅନ୍ତର୍ଭୁକ୍ତ ଥିବାଯୋଗୁଁ ପାରଳାଖେମୁଣ୍ଡିର ତେଲୁଗୁ ଅଧ୍ୟାପକ ଓ ବିଦ୍ୱାନ ପଣ୍ଡିତମାନଙ୍କଦ୍ୱାରା ନିଶ୍ଚିତଭାବେ ସଂଗୃହୀତ ହୋଇଥିବ । ତେଲୁଗୁ ଭାଷା ମାଧ୍ୟମରେ ଶିକ୍ଷା ଗ୍ରହଣ କରିଥିବା ଶ୍ୟାମସୁନ୍ଦର ରାଜଗୁରୁ ଓ ପଣ୍ଡିତ ଗୋପୀନାଥ ନନ୍ଦ ଏ ସମସ୍ତ ଆଲୋଚନାଦ୍ୱାରା ପ୍ରଭାବିତ ହୋଇଥିବା ଅଧିକ ବିଶ୍ୱାସଯୋଗ୍ୟ ।

ପ୍ରାଚୀନ ଗ୍ରନ୍ଥଗୁଡ଼ିକର ଶୁଦ୍ଧପାଠ ପ୍ରସ୍ତୁତି ସଂପର୍କରେ ନନ୍ଦ ମହୋଦୟଙ୍କ ମନ୍ତବ୍ୟ 'ଆମ୍ଭମାନଙ୍କର ପଡ଼ୋଶୀ ଭାଇମାନଙ୍କର ମାତୃସାହିତ୍ୟ ପ୍ରପଞ୍ଚରେ ତଦ୍‌ତଦ୍ ଭାଷାଗତ ପୁରାଣମାନ ଯେପରି ନିର୍ଦ୍ଦୋଷତା ଓ ସମୁଜ୍ଜ୍ୱଳତାରେ ପ୍ରକାଶମାନ ଆମ୍ଭମାନଙ୍କର ଅଖିଳ ପୁରାଣରତ୍ନରାଜି ଅଧୁନା ସ୍ୱାଭାବିକ ସୌନ୍ଦର୍ଯ୍ୟ ଓ ନିର୍ଦ୍ଦୋଷତାର ସହିତ ସେପରି ପ୍ରକାଶମାନ ରହିପାରିଅଛି କି ?' ଏ ସମ୍ପର୍କରେ ପ୍ରଣିଧାନଯୋଗ୍ୟ ।

ଶ୍ୟାମସୁନ୍ଦରଙ୍କ ସାହିତ୍ୟିକ କୃତିତ୍ୱ ସବୁକୁ ଅନୁଧ୍ୟାନ କଲେ ସ୍ପଷ୍ଟ ପ୍ରତୀୟମାନ ହୁଏ ଯେ ଚାର୍ଲସ୍ ଫିଲିପ୍ ବ୍ରାଉନ୍ ତେଲୁଗୁ ଭାଷା, ସାହିତ୍ୟ ଓ ସଂସ୍କୃତିକୁ ପୁନରୁଜ୍ଜୀବିତ କରି ଲୋକଲୋଚନକୁ ଆଣିବାପାଇଁ ଯେପରି ପ୍ରୟାସ କରିଥିଲେ ରାଜଗୁରୁ ମଧ ଅନୁରୂପ କାର୍ଯ୍ୟ ସଂପାଦନା ନିମିତ୍ତ ଥିଲେ ସଂକଳ୍ପବଦ୍ଧ । ତେଣୁ ସେ ଓଡ଼ିଆ ଭାଷାର ବ୍ୟାକରଣ, ଛନ୍ଦ, ଲୋକସାହିତ୍ୟ, କବିଜୀବନୀ ମାଧ୍ୟମରେ ଓଡ଼ିଆ ସାହିତ୍ୟର ଇତିହାସ ପ୍ରଣୟନ

ଦିଗରେ ଉଦ୍ୟମ ଆରମ୍ଭ କରିଥିଲେ । କିନ୍ତୁ ଭାରତ ଜାତୀୟ କଂଗ୍ରେସ କାର୍ଯ୍ୟକ୍ରମର ପରିପ୍ରଚାର, ପତ୍ରିକା ସଂପାଦନ, ପାରଳାଖେମୁଣ୍ଡି ପୌରପାଳିକାର ଅଧ୍ୟକ୍ଷତା, ଓଡ଼ିଆ ଭାଷାଭାଷୀ ଅଞ୍ଚଳର ଏକତ୍ରୀକରଣ ଉଦ୍ୟମ ଓ ଉତ୍କଳ ସମ୍ମିଳନୀର ସକ୍ରିୟ ସଦସ୍ୟତା ଏବଂ ସର୍ବୋପରି ଶିଷ୍ୟ-ବନ୍ଧୁ-ପୃଷ୍ଠପୋଷକ ଚନ୍ଦ୍ର ମହାରାଜା ପଦ୍ମନାଭ ନାରାୟଣ ଦେବଙ୍କ ସ୍ୱାସ୍ଥ୍ୟହାନି ଓ ଦେହାବସାନ ତାଙ୍କୁ ଏ ଦିଗରେ ଅଧିକ ଅଗ୍ରସର କରାଇ ପାରି ନଥିଲା । ଶାମସୁନ୍ଦରଙ୍କ ଏସବୁ ଅସମାପ୍ତ କାର୍ଯ୍ୟକୁ ଆଗେଇ ନେବାପାଇଁ ଅଣ୍ଟା ଭିଡ଼ିଥିଲେ ଗୋପୀନାଥ ନନ୍ଦେ । ଏଥିପାଇଁ ତାଙ୍କୁ କମ୍ ଅଧ୍ୟୟନ ଓ ଅଧ୍ୟବସାୟ କରିବାକୁ ପଡ଼ିନାହିଁ । ଅନ୍ୟର ସଂକଳ୍ପକୁ ସ୍ୱେଚ୍ଛାକ୍ରମେ ଆଦେଶଭାବେ ଗ୍ରହଣ କରିନେବାର ଉଦାରତା ଗୋପୀନାଥଙ୍କ ବ୍ୟକ୍ତିତ୍ୱର ଏକ ଅନନ୍ୟସାଧାରଣ ଦିଗ । ତା' ନ ହୋଇଥିଲେ, ଯେଉଁ ଉତ୍କଳ ସାହିତ୍ୟ ସମାଜ ଦୀର୍ଘ ୧୨ ବର୍ଷ ଧରି ତାଙ୍କ ଅଭିଧାନକୁ ପ୍ରକାଶ ନ କରି ପକାଇ ରଖିଥିଲେ ଏବଂ ପ୍ରକାଶନ ପରେ ତା'ର କୁତ୍ସାରଟନା କରିବା ପାଇଁ ଶତମୁଖ  ହୋଇ ଉଠିଥିଲେ, ସେହି ସମାଜର ଭାଷା ଓ ସାହିତ୍ୟର ଇତିହାସ ପ୍ରଣୟନର ସଂକଳ୍ପକୁ ଆଦେଶ ବୋଲି ଗ୍ରହଣ କରି ଲେଖି ନଥାନ୍ତେ "ଉତ୍କଳ ସାହିତ୍ୟ ସମାଜର ଆଉ ଗୋଟିଏ ଗୁରୁତର ଆଦେଶ ମସ୍ତୋକପରି ରହି ଘୂର୍ଣ୍ଣିତ କରୁଅଛି x x ଏହି ଅଭିଧାନର କାର୍ଯ୍ୟ ସମ୍ପାଦନ ପରେ ଓଡ଼ିଆ ଭାଷା ଓ ସାହିତ୍ୟର ଇତିହାସ ଲେଖିବାରେ ମୁଁ ପ୍ରବୃତ୍ତ" ହେବି । ଅବଶ୍ୟ 'ଶବ୍ଦତତ୍ତ୍ୱବୋଧ ଅଭିଧାନ' ସଂପର୍କୀୟ ବାକ୍‌ବିତଣ୍ଡାକୁ ଅନୁଶୀଳନ କଲେ ଏହା ନନ୍ଦ ପଣ୍ଡିତଙ୍କ ଗଭୀର କ୍ଷୋଭର ପରୋକ୍ଷ ପରିପ୍ରକାଶ ବୋଲି ମନେହୁଏ ।

୧୯୧୬ ବେଳକୁ ପଣ୍ଡିତ ଗୋପୀନାଥ ନନ୍ଦ ଓଡ଼ିଆ ସାହିତ୍ୟର ଇତିହାସ ରଚନାରେ ପ୍ରବୃତ୍ତ ହେବେ ବୋଲି ଯେଉଁ ସୂଚନା ଦେଇଛନ୍ତି, ତା'ର ବହୁ ପୂର୍ବରୁ ସେ ଏ କାର୍ଯ୍ୟ ଆରମ୍ଭ କରିସାରିଥିଲେ । ୧୯୧୫  ବେଳକୁ ସାରଳା ମହାଭାରତର ସମାଲୋଚନା ସଂପୂର୍ଣ୍ଣତଃ 'ଉତ୍କଳ ସାହିତ୍ୟ' ପତ୍ରିକାରେ ପ୍ରକାଶିତ ହୋଇ ସାରିଥିଲା । 'ତ୍ରୈଲଙ୍ଗ୍ୟ ଭୋଜ ଓ ତ୍ରୈଲଙ୍ଗ୍ୟ ସାହିତ୍ୟ' ଏବଂ 'ମତ୍ସ୍ୟେନ୍ଦ୍ରନାଥ ଓ ଗୋରଖନାଥ' ପ୍ରବନ୍ଧ ମଧ୍ୟ ଏହା ପୂର୍ବର ରଚନା । ୧୯୧୮ ବେଳକୁ ଶ୍ରୀମଦ୍ ଭାଗବତ ସମାଲୋଚନା 'ସତ୍ୟବାଦୀ' ପତ୍ରିକାରେ ପ୍ରକାଶିତ ହେବା ଆରମ୍ଭ ହୋଇ ସାରିଥିବା ଦୃଷ୍ଟିରୁ ୧୯୧୬ ବେଳକୁ ସେ ଏହା ପ୍ରସ୍ତୁତ କରୁଥିବା ବିଶ୍ୱାସଯୋଗ୍ୟ ।

ଏଠାରେ ଉଲ୍ଲେଖଯୋଗ୍ୟ ଯେ ୧୯୧୦ ମସିହାରୁ ପଣ୍ଡିତ ନନ୍ଦ ପ୍ରଥମେ ପାରଳାଖେମୁଣ୍ଡି କଲେଜରେ ଦ୍ୱିତୀୟ ପଣ୍ଡିତ ଏବଂ ପରେ ହେଡ୍ ପଣ୍ଡିତ ରୂପେ ଅଧ୍ୟାପନା କରିବା ଆରମ୍ଭ କଲେ । ଜଣେ ନିଷ୍ଠାପର ଅଧ୍ୟାପକଭାବେ ସେ କିପରି ନିଜକୁ ପ୍ରସ୍ତୁତ କରୁଥିଲେ, ତାହା ତାଙ୍କ 'ରଘୁବଂଶ ବିଚାର' ପ୍ରବନ୍ଧରୁ ଜାଣିହୁଏ । ସେତେବେଳେ

ମାଟ୍ରିକୁଲେସନ୍‌ଠାରୁ ବି.ଏ. ଡିଗ୍ରୀ ପର୍ଯ୍ୟନ୍ତ ସଂସ୍କୃତ ଓ ଓଡ଼ିଆ ପାଠ୍ୟକ୍ରମରେ ଥିବା ପୁସ୍ତକଗୁଡ଼ିକୁ ବିଭିନ୍ନ ଦୃଷ୍ଟିକୋଣରୁ ଅଧ୍ୟୟନ ଓ ଅଧ୍ୟାପନା କରିବା ସହିତ ସଂସ୍କୃତ ସାହିତ୍ୟ ପରି ଓଡ଼ିଆ ସାହିତ୍ୟର ଏକ ପୂର୍ଣ୍ଣାଙ୍ଗ ଇତିହାସର ଅଭାବ ସେ ନିଶ୍ଚୟ ଅନୁଭବ କରିଥିବେ । ଅନୁସନ୍ଧିତ୍ସୁମାନଙ୍କପାଇଁ ଏଠାରେ ୧୯୧୭ ମସିହାର ଓଡ଼ିଆ ପାଠ୍ୟକ୍ରମରେ ଥିବା ପୁସ୍ତକଗୁଡ଼ିକର ଏକ ତାଲିକା ପ୍ରଦାନ କରାଗଲା –

## ମାଟ୍ରିକୁଲେସନ୍ ପରୀକ୍ଷା (୧୯୧୭)

୧. କୃଷ୍ଣା କୁମାରୀ – ନନ୍ଦକିଶୋର ବଳ
୨. ପ୍ରଣୟାଙ୍କୁର (କବିତା କଲ୍ଲୋଳ) – ଗଙ୍ଗାଧର ମେହେର
୩. ଇଟାଲୀୟ ଯୁବା – ରାଧାନାଥ ରାୟ

## ଇଣ୍ଟରମିଡ଼ିଏଟ୍ ପରୀକ୍ଷା (୧୯୧୭)

୧. ସାଳିନ୍ଦୀ – ଚିନ୍ତାମଣି ମହାନ୍ତି
୨. ରସକଲ୍ଲୋଳ – ଦୀନକୃଷ୍ଣ ଦାସ (୧ରୁ ୫)
୩. ବିକ୍ରମୋର୍ବଶୀୟ ନାଟକ – ଗୋପୀନାଥ ନନ୍ଦଶର୍ମା
୪. ପ୍ରବନ୍ଧମାଳା – ରାୟବାହାଦୁର ମଧୁସୂଦନ ରାଓ
୫. ବିବିଧ ପ୍ରବନ୍ଧ – ବିଶ୍ୱନାଥ କର
୬. ଲଛମା – ଫକୀରମୋହନ ସେନାପତି
୭. ନୈଷଧ କାବ୍ୟ – କାଶୀନାଥ ଦାସ (୧ରୁ ୩)
୮. ତୁଳସୀ ସ୍ତବକ – ରାଧାନାଥ ରାୟ
୯. ପରିମଳା ସହଗମନ – ରାଧାମୋହନ ରାଜେନ୍ଦ୍ରଦେବ

## ବି.ଏ. ପରୀକ୍ଷା (୧୯୧୭)

୧. ମେଘଦୂତ – ରାଧାନାଥ ରାୟ
୨. ବିଦଗ୍ଧ ଚିନ୍ତାମଣି – ଅଭିମନ୍ୟୁ ସାମନ୍ତସିଂହାର (୧୧ରୁ ୧୭)
୩. ସୀତା ବିବାହ ନାଟକ – କାମପାଳ ମିଶ୍ର
୪. ପ୍ରଭାତ – ଚନ୍ଦ୍ରଶେଖର ନନ୍ଦ
୫. ଉଦ୍ଧବ ଦୂତ – ଗୋପୀନାଥ ନନ୍ଦ ଶର୍ମା
୬. ବିଦଗ୍ଧ ମାଧବ ନାଟକ – ଟିକିଟି ରାଜା
୭. ମାମୁଁ – ଫକୀରମୋହନ ସେନାପତି

୮. ମହାଭାରତ ବନପର୍ବ (ପୃଷ୍ଠା ୧ରୁ ୯୯) – ସାରଳା ଦାସ

୯. ଶ୍ରୀମଦ୍ ଭାଗବତ ସପ୍ତମ ସ୍କନ୍ଦ – ଜଗନ୍ନାଥ ଦାସ

୧୦. ବୈଦେହୀଶ ବିଳାସ – ଉପେନ୍ଦ୍ର ଭଞ୍ଜ (୧ରୁ ୮ ଛାନ୍ଦ)

୧୧. ବିବାସିନୀ – ରାମଶଙ୍କର ରାୟ

୧୨. ପ୍ରକୃତି ରହସ୍ୟ – ରାଧାମୋହନ ରାଜେନ୍ଦ୍ର ଦେବ

୧୩. ଓଡ଼ିଶା ଇତିହାସ (ଦେଶୀୟ ଓ ମୁସଲମାନ ଶାସନ) – ଡବ୍ଲ୍ୟୁ.ଡବ୍ଲ୍ୟୁ. ହଣ୍ଟର୍

ସେହିପରି ଗୋଟିଏ ବର୍ଷର ସଂସ୍କୃତ ପାଠ୍ୟକ୍ରମରେ ରହିଥିଲା –

୧. ପ୍ରବୋଧ ଚନ୍ଦ୍ରୋଦୟ – କୃଷ୍ଣ ମିଶ୍ର

୨. ମହାଭାରତ ଶାନ୍ତିପର୍ବ (୧୭୭-୧୮୨ ଅଧ୍ୟାୟ) –

୩. ଋଗ୍‌ବେଦ (ମଣ୍ଡଳ ୧, ୧୬-୨୧)

୪. ରାଜତରଙ୍ଗିଣୀ (VIII) – କହ୍ଲଣ (୪୭୪-୧୩୫୦)

୫. ରଘୁବଂଶ – କାଳିଦାସ (ଚତୁର୍ଥ ଓ ଷଷ୍ଠ ସର୍ଗ)

୬. ଐତରୀୟ ବ୍ରାହ୍ମଣ (VIII ପଞ୍ଚିକା)

୭. କଠୋପନିଷଦ (I-III ବଲ୍ଲୀ)

୮. ଗୌତମ ଧର୍ମସୂତ୍ର (ପ୍ରସନ୍ନ I)

୯. ଅଭିଜ୍ଞାନ ଶାକୁନ୍ତଳମ୍ – କାଳିଦାସ

୧୦. କାଦମ୍ବରୀ – ବାଣ (ଶୁକନାସୋପଦେଶଠାରୁ ଅଚ୍ଛୋଦ ବର୍ଣ୍ଣନ)

୧୧. ମହାଭାଷ୍ୟ – ପତଞ୍ଜଳି (I-I)

୧୨. ଭାରତ ଇତିହାସ (ଆଦିମ ଯୁଗରୁ ବର୍ତ୍ତମାନ ପର୍ଯ୍ୟନ୍ତ)

ମନୋରଞ୍ଜନ, ଜ୍ଞାନାହରଣ ଏବଂ ଆଲୋଚନାପାଇଁ ଅଧ୍ୟୟନଠାରୁ ଅଧ୍ୟାପନା ପାଇଁ ପଠନ ମଧ୍ୟରେ ପାର୍ଥକ୍ୟ ଯେକୌଣସି ଅଧ୍ୟାପକ ଅନୁଭବ କରୁଥିବେ । ଅଧ୍ୟାପକ ଯେତେ ନିଷ୍ଠାବାନ୍ ହେବେ ତାଙ୍କ ଅଧ୍ୟୟନର ପରିସର ସେତେ ଗଭୀର ଓ ପ୍ରସାରିତ ହେବ । ପଣ୍ଡିତ ନନ୍ଦ ଥିଲେ ଜଣେ ନିଷ୍ଠାପର ସାହିତ୍ୟ ଅଧ୍ୟାପକ । ଶିକ୍ଷାର୍ଥୀମାନଙ୍କୁ ପାଠ୍ୟ ବିଷୟରେ ଶିକ୍ଷାଦାନ କରି ପରୀକ୍ଷାପାଇଁ ପ୍ରସ୍ତୁତ କରିବା ତାଙ୍କର ଏକମାତ୍ର ଉଦ୍ଦେଶ୍ୟ ନଥିଲା; ସେମାନଙ୍କ ମନରେ ସାହିତ୍ୟପାଠପ୍ରତି ଆଗ୍ରହ ସୃଷ୍ଟି କରିବାପାଇଁ ଅଧ୍ୟାପନା ବେଳେ ସେ ବିଭିନ୍ନ କୌଶଳ ଅବଲମ୍ବନ କରୁଥିଲେ । (ଗୋପୀନାଥ ନନ୍ଦଙ୍କ କ୍ଲାସ୍ ନୋଟ୍ – ସୁଦର୍ଶନ ଆଚାର୍ଯ୍ୟ) ଏ ଅବସରରେ କବି ଜୀବନୀ, କବି ସମୟ, କବି କୃତି, କବି ପ୍ରତିଭା,

କାବ୍ୟ ଶୈଳୀ ଇତ୍ୟାଦି ସଂପର୍କରେ ସେ ଯେଉଁ ସବୁ ସମସ୍ୟାର ସମ୍ମୁଖୀନ ହେଉଥିଲେ, ତାହା ତାଙ୍କ ମନରେ ସାହିତ୍ୟର ଇତିହାସ ରଚନାପାଇଁ ପ୍ରେରଣା ସୃଷ୍ଟି କରିଥିଲା । ଅଭିଧାନ ସଂକଳନ ଏବଂ ଭାଷାତତ୍ତ୍ୱ ଆଲୋଚନା ସକାଶେ ସେ ପ୍ରାଚୀନ ଓ ଆଧୁନିକ ଓଡ଼ିଆ ସାହିତ୍ୟକୁ ତନ୍ନତନ୍ନ ଅନୁଶୀଳନ କରିଥିଲେ । ଓଡ଼ିଆ କ୍ରିୟା ସଂପର୍କୀୟ ତାଙ୍କ ଟିପାରୁ ହିଁ ଏହାର ସୂଚନା ମିଳେ । ଏହି ଅଧ୍ୟୟନ, ଅନୁଶୀଳନ ଓ ଅନୁଚିନ୍ତନରୁ ଆରମ୍ଭ ହୋଇଥିଲା ପଣ୍ଡିତ ମହାଶୟଙ୍କ ଓଡ଼ିଆ ସାହିତ୍ୟର ଇତିହାସ ସଂକଳନ ।

-୨-

ଓଡ଼ିଆ ସାହିତ୍ୟର ଇତିହାସ ପ୍ରଣୟନପାଇଁ ଗୋପୀନାଥଙ୍କ ଉଦ୍ୟମ ନେପଥ୍ୟରେ ଥିଲା ଶାମସୁନ୍ଦର ରାଜଗୁରୁଙ୍କ କବି ଓ କବି-ସୃଷ୍ଟି ସଂପର୍କୀୟ ଆଲୋଚନାତ୍ମକ ପ୍ରବନ୍ଧାବଳୀ ଏବଂ ସି.ପି. ବ୍ରାଉନ୍ ଓ ତେଲୁଗୁ ସମାଲୋଚକମାନଙ୍କ ତେଲୁଗୁ ସାହିତ୍ୟର ଇତିହାସର ଆଦର୍ଶ । ନିଜ ପ୍ରକଳ୍ପକୁ ରୂପ ଦେବାପାଇଁ ସେ ପୂର୍ବରୁ ଅଧ୍ୟୟନ କରିଥିବା ସାରଳା ଦାସଙ୍କ ମହାଭାରତଠାରୁ ନିଜ ପର୍ଯ୍ୟନ୍ତ ଉପଲବ୍ଧ ମୁଦ୍ରିତ ଓ ତାଳପତ୍ର ପୁସ୍ତକ ସବୁକୁ ଜଣେ ସମାଲୋଚକ ଓ ଗବେଷକ ଦୃଷ୍ଟିରୁ ପୁଣି ଥରେ ଅଧ୍ୟୟନ କରିବା ଆରମ୍ଭ କରିଥିଲେ । ପୂର୍ବରୁ ସଂସ୍କୃତ, ପ୍ରାକୃତ, ତେଲୁଗୁ ସାହିତ୍ୟର କାବ୍ୟ, ନାଟକ, ପୁରାଣ, ଶାସ୍ତ୍ର ଇତ୍ୟାଦିରେ ତ ପ୍ରବେଶ ଥିଲା । ଭାରତତତ୍ତ୍ୱବିଦ୍ ମହାମହୋପାଧ୍ୟାୟ ହରପ୍ରସାଦ ଶାସ୍ତ୍ରୀଙ୍କଦ୍ୱାରା ନେପାଳ ରାଜଗ୍ରନ୍ଥାଗାରରୁ ସଦ୍ୟ ଆବିଷ୍କୃତ ଚର୍ଯ୍ୟାଗୀତିକାଗୁଡ଼ିକ ତାଙ୍କ ଦୃଷ୍ଟିକୁ ଆସି ନଥିବା ସ୍ୱାଭାବିକ । ବୀମ୍ସ, ହଣ୍ଟର ପ୍ରଭୃତିଙ୍କ ତାଲିକାରେ ଦିଆଯାଇଥିବା କବିମାନଙ୍କ ଆନୁମାନିକ ସମୟର ସତ୍ୟତା ସଂପର୍କରେ ସେ ତଥାପି ଥିଲେ ସନ୍ଦିହାନ । କେଶବ କୋଇଲି, ଗୋପ ବୋଲି ଇତ୍ୟାଦିକୁ ସାରଳା ପୂର୍ବଯୁଗର ବୋଲି ଭାଷା ଓ ଶୈଳୀ ଦୃଷ୍ଟିରୁ ସେ ଗ୍ରହଣ କରିବାପାଇଁ କୁଣ୍ଠିତ । ଉତ୍କଳ ସାହିତ୍ୟ ସମାଜରେ ମଧୁସୂଦନ ଦାଶ ବି.ଏ. ଓଡ଼ିଆ ଭାଷା ଓ ସାହିତ୍ୟ ସଂପର୍କରେ ସେତେବେଳେ ଯେଉଁ ପ୍ରବନ୍ଧ ଉପସ୍ଥାପନ କରିଥିଲେ ସେଥିରେ ମଧ ସେ କେଶବ କୋଇଲିକୁ ସାରଳା ପୂର୍ବବର୍ତ୍ତୀ ରଚନା ବୋଲି ଦ୍ୱିଧାହୀନ ଭାବେ ଗ୍ରହଣ କରିପାରି ନଥିଲେ (ଉତ୍କଳ ସାହିତ୍ୟ ଭା ୭/୬ ସଂ) । ତେଣୁ ଗୋପୀନାଥ ସାରଳା ଦାସଙ୍କୁ ହିଁ 'ଓଡ଼ିଆର ସର୍ବପ୍ରଥମ ଉତ୍କଳ ଗ୍ରନ୍ଥକର୍ତ୍ତା ବା ମହାକବି' ଏବଂ ସାରଳା ମହାଭାରତକୁ 'ଓଡ଼ିଆ ଭାଷା ରାଜ୍ୟର ସର୍ବପ୍ରଥମ ଓ ଅତି ପ୍ରାଚୀନ ଗ୍ରନ୍ଥ' ରୂପେ ଗ୍ରହଣ କରିଛନ୍ତି ।

ଗୋପୀନାଥ ନନ୍ଦଙ୍କ ଆଲୋଚନାଗୁଡ଼ିକୁ ଅନୁଶୀଳନ କଲେ ଜଣାଯାଏ ଓଡ଼ିଆ ସାହିତ୍ୟର ଇତିହାସକୁ ସେ ଚାରୋଟି ଯୁଗରେ ବିଭାଜନ କରିଥିଲେ, ଯଥା – କ) ଆଦିମ ଯୁଗ, ଖ) ପୌରାଣିକ ଯୁଗ, ଗ) କାବ୍ୟ ଯୁଗ ଏବଂ ଘ) ଆଧୁନିକ ଯୁଗ ।

ସାରଳା ଦାସଙ୍କ ସମୟକୁ ସେ ସ୍ପଷ୍ଟ ଭାବେ ଉଲ୍ଲେଖ କରି ନଥିଲେ ସୁଦ୍ଧା ଆଦିମ ଯୁଗ ରୂପେ ନାମିତ କରିଛନ୍ତି । କାରଣ ଏ ସମୟକୁ ଓଡ଼ିଆ ସାହିତ୍ୟର ଶୈଶବ କାଳ ରୂପେ ଗ୍ରହଣ କରି ସେ ବଳରାମ ଓ ଜଗନ୍ନାଥଙ୍କ ସମୟକୁ ଶୈଶବୋତ୍ତର କାଳ ବୋଲି ଉଲ୍ଲେଖ କରିଥିବା ଦେଖାଯାଏ । ଏ ଯୁଗର ସର୍ବଶ୍ରେଷ୍ଠ ରଚନା ସାରଳା ଦାସଙ୍କ ମହାଭାରତ । ସାରଳା ଦାସଙ୍କ ଅନ୍ୟାନ୍ୟ ରଚନା ସେ ଅନୁଶୀଳନ କରିନାହାନ୍ତି; ପରେ ସେ ସବୁକୁ ଅଧ୍ୟୟନ କରି କବିଙ୍କ ଜୀବନୀ ସଂପର୍କରେ ଅଧିକ ଆଲୋଚନାର ପ୍ରତିଶ୍ରୁତି ଶ୍ରୀ ଭାରତ ଦର୍ପଣ ଗ୍ରନ୍ଥରେ ଦେଖିବାକୁ ମିଳେ । ସାରଳା ମହାଭାରତ ଅଧ୍ୟୟନ ବେଳେ ସେ ସେଥିରେ ଗୋରକ୍ଷନାଥ ଓ ମତ୍ସ୍ୟେନ୍ଦ୍ରନାଥଙ୍କ ଉଲ୍ଲେଖ ଦେଖି ଏମାନଙ୍କୁ ସାରଳାଙ୍କ ପୂର୍ବବର୍ତ୍ତୀ ଭାବେ ଗ୍ରହଣ କରିଛନ୍ତି । କିନ୍ତୁ ତାଙ୍କ ଆଲୋଚନା ଜୀବନାଲେଖ୍ୟ ମଧ୍ୟରେ ହିଁ ସୀମିତ । ଦ୍ୱିତୀୟ ଯୁଗକୁ ଗୋପୀନାଥ ପୌରାଣିକ ଯୁଗ ଭାବେ ନାମିତ କରିଛନ୍ତି । ଜଗନ୍ନାଥ ଦାସଙ୍କଠାରୁ ଉପେନ୍ଦ୍ର ଭଞ୍ଜଙ୍କ ପର୍ଯ୍ୟନ୍ତ ଏହାର ବ୍ୟାପ୍ତି । ତାଙ୍କପାଇଁ ଏହା 'ଉତ୍କଳ ସାହିତ୍ୟର ବୟଃସନ୍ଧି, ଅର୍ଥାତ୍ ବାଲ୍ୟ ଓ କୌମାର ସନ୍ଧିକାଳ', ଓଡ଼ିଆ ଭାଷା 'ଉଜ୍ଝିତ୍ ଶୈଶବା ଓ ସମୁନ୍ମୁଖକୌମାରା ପ୍ରାୟ କିଞ୍ଚିତ କିଞ୍ଚିତ ସୌନ୍ଦର୍ଯ୍ୟପିପାସୁ ।' ଏ ଯୁଗକୁ ମଧୁସୂଦନ ଦାସ ବୈଷ୍ଣବ ବା ଭକ୍ତିଯୁଗ ରୂପେ ନାମିତ କରିଥିଲେ ।

ଉପେନ୍ଦ୍ର ଭଞ୍ଜଙ୍କଠାରୁ ଓଡ଼ିଆ ସାହିତ୍ୟରେ କାବ୍ୟଯୁଗର ଆବିର୍ଭାବ । ଏହାକୁ ନନ୍ଦେ ଓଡ଼ିଆ ସାହିତ୍ୟର ଆଦ୍ୟ ଯୌବନକାଳ ରୂପେ ଗ୍ରହଣ କରିଛନ୍ତି । ଏଥିରେ ପ୍ରଣୟାନୁଚିନ୍ତାର ପ୍ରାବଲ୍ୟ ଦେଖି ମଧୁସୂଦନ ଦାସ ଏହାକୁ ପ୍ରେମଯୁଗ ବୋଲି ଅଭିହିତ କରିଛନ୍ତି । ତେଲୁଗୁ ସାହିତ୍ୟରେ ପୌରାଣିକ ଯୁଗର ପରବର୍ତ୍ତୀ ଯୁଗ ପ୍ରବନ୍ଧ ଯୁଗ ।

ତାଙ୍କ ନିଜ ସମୟକୁ ସେ 'ଉତ୍କଳ ସାହିତ୍ୟର ସମ୍ପୂର୍ଣ୍ଣ ଯୌବନ ସମୟ' ବୋଲି ଉଲ୍ଲେଖ କରିଛନ୍ତି ।

ଓଡ଼ିଆ ସାହିତ୍ୟର ପୂର୍ଣ୍ଣାଙ୍ଗ ଇତିହାସ ପ୍ରଣୟନପାଇଁ ଗୋପୀନାଥ ସାରଳା ମହାଭାରତରୁ ଆରମ୍ଭ କରିଥିଲେ ପ୍ରଥମ ଆଲୋଚନା । ଦୁର୍ଭାଗ୍ୟବଶତଃ, ନିରନ୍ତର ଅଧ୍ୟବସାୟ, ବିଭିନ୍ନ ସଂସ୍କୃତ ଶାସ୍ତ୍ର-ପୁରାଣ-ସାହିତ୍ୟ ପରିଶୀଳନ, ଅନ୍ୟାନ୍ୟ ଆଞ୍ଚଳିକ ଭାଷାର ମହାଭାରତ ଅନୁଶୀଳନ, ସାରଳାଙ୍କ ମୂଳପାଠର ନିକଟତର ହେବା ନିମିତ୍ତ 'ପୁରାଣ ପ୍ରକାଶିକା ସଂସ୍ଥା'ର ଛପାପୁସ୍ତକ ସହିତ ବହୁ ତାଳପତ୍ର ପ୍ରତିଲିପି ଆଲୋଡ଼ନ, ଘଟସ୍ଥଳଗୁଡ଼ିକର ସମାଧାନପାଇଁ ଗଭୀର ମନନ, ପୂର୍ବ ଆଲୋଚନାରେ ଥିବା ଭ୍ରାନ୍ତି ନିରସନ ଇତ୍ୟାଦିଦ୍ୱାରା ଅପୂର୍ବ ପ୍ରତିଭାଧର ଗୋପୀନାଥ ମହାଭାରତର ଯେଉଁ ପୁଙ୍ଖାନୁପୁଙ୍ଖ ଆଲୋଚନା ଆରମ୍ଭ କରିଥିଲେ ତାହା ପରିପୂର୍ଣ୍ଣ ରୂପେ ପାଠକମାନଙ୍କ ନିକଟରେ ପହଞ୍ଚି ପାରିଲା ନାହିଁ । କେତେକ ପାଠକ 'ଅକୁଣ୍ଠାପଠନୋତ୍କଣ୍ଠା ସହ ଶ୍ରମ ସହିଷ୍ଣୁତା ଅବଲମ୍ବନ

କରିବାରେ କାତର' ହେବା, 'ବିଷୟର ଗୁରୁତର ମହତ୍ତ୍ୱାକୁ ସମ୍ୟକ୍ ହୃଦୟଙ୍ଗମ କରି ନପାରି ଅଯଥା ବିଚାରରେ ପ୍ରବନ୍ଧକୁ ଅତିକାୟ ମନେକରି ଭୀତ ହୋଇ ପଡ଼ିବା', ଗ୍ରନ୍ଥ ମଧ୍ୟରେ ନାନା ବିଷୟର ଆବଶ୍ୟକତାଜନିତ ଭୂରି-ଭାଷଣ-ଭୂଷଣକୁ ଦୂଷଣ ପ୍ରାୟ ମନେ କରିବା ଏବଂ ଆଉ କେତେକ 'ମସର ପ୍ରକୃତି ଖଚର ମତି' ଏହି ପ୍ରବନ୍ଧ 'ବହୁମୂଲ୍ୟ' ସାହିତ୍ୟ ପତ୍ରିକାରେ ଦୀର୍ଘ କାଳ କାହିଁକି ନିବେସାଧିକାର ସ୍ଥାପନ କରିବ ବୋଲି ଶ୍ରୀମାନ ସମ୍ପାଦକଙ୍କ ପ୍ରତି ପ୍ରଖରାୟମାନ ହେବାରୁ' ସ୍ଥିତପ୍ରଜ୍ଞତା ସତ୍ତ୍ୱେ ପଣ୍ଡିତ ମହାଶୟ ବିଚଳିତ ହୋଇ ଆଲୋଚନାରେ ପୂର୍ଣ୍ଣଚ୍ଛେଦ ଟାଣିବାପାଇଁ ବସିଥିଲେ । ଗୁଣଗ୍ରହଣକୌତୁକ ପଣ୍ଡିତ ନୀଳକଣ୍ଠ ଦାସଙ୍କ ପ୍ରୋତ୍ସାହନ ନ ପାଇଥିଲେ ଆଲୋଚନାଟି ପୂର୍ଣ୍ଣାଙ୍ଗ ପ୍ରାପ୍ତ ହୋଇ ନ ଥାନ୍ତା । ତଥାପି ସଂସ୍କୃତ ଓ ସାରଳା ଉଭୟ ମହାଭାରତକୁ ଆମୂଳାନ୍ତ ଆଲୋଡ଼ନ ଓ ପରିଶୀଳନ କରି ସେ ଯେଉଁ 'ଯାବଦ୍ ପରିମିତ ଜ୍ଞାତବ୍ୟ ସାମଗ୍ରୀ ସମ୍ପାଦନ କରିପାରି ସଞ୍ଚିତ ରଖିଥିଲେ', ସେଥିରୁ ଅନେକ ଉଦ୍‌ବୃତ୍ତ ରହିଗଲା । ସଂକୀର୍ଣ୍ଣ ଭାଗରେ ସେଥିରୁ ସ୍ୱଳ୍ପ କେତେକ ବିଷୟ ମାତ୍ର ସୂଚିତ କରି ଆଲୋଚନାଟିକୁ ପରିସମାପ୍ତ କରିବା ନିମିତ୍ତ ସେ ବାଧ୍ୟ ହୋଇଥିଲେ । ଆଲୋଚନାଟି 'ଉତ୍କଳ ସାହିତ୍ୟ ପତ୍ରିକା'ର ଊନବିଂଶ ଭାଗ ଚତୁର୍ଥ ସଂଖ୍ୟାରେ ଶେଷ ହୋଇଥିଲା । ସମ୍ପାଦକ, ସମାଲୋଚକ ଏବଂ ପାଠକମାନେ ଆଶ୍ୱସ୍ତ ହୋଇଥିଲେ । ସମ୍ପାଦକ ବିଶ୍ୱନାଥ କର ପାଦଟୀକାରେ ଯେଉଁ ମନ୍ତବ୍ୟଟି ଦେଇଥିଲେ ତାହା ଏଠାରେ ଉଦ୍ଧାର କରାଯାଉଛି ।

*ପଣ୍ଡିତ ଗୋପୀନାଥ ନନ୍ଦଶର୍ମାଙ୍କ ସାରଳା ଭାରତ ସମାଲୋଚନା ଏହି ସଂଖ୍ୟାରେ ଶେଷ ହେଲା । ବୋଧହୁଏ, ଅନେକ ପାଠକ ଶାନ୍ତିମନ୍ତ୍ର ଉଚ୍ଚାରଣ କରିବେ । ଏହି ପ୍ରବନ୍ଧପାଇଁ କେବଳ ନନ୍ଦ ମହାଶୟ ନୁହେଁ, ଆମ୍ଭେମାନେ ମଧ୍ୟ ଅନେକଙ୍କର ବିରାଗଭାଜନ ହୋଇଅଛୁଁ । ଏହି ସୁଦୀର୍ଘ କାଳ ମଧ୍ୟରେ ଅନେକଙ୍କୁ ଅନେକ ପ୍ରକାର କୈଫିୟତ୍ ଦେବାକୁ ହୋଇଅଛି । ବଡ଼ କୌତୁକର କଥା ଏହି ଯେ, ବିରୁଦ୍ଧବାଦୀ ମଧ୍ୟରୁ ପ୍ରାୟ ଅଧିକାଂଶ ପ୍ରବନ୍ଧଟି ପଢ଼ିବାର ଶ୍ରମ ଓ ସହିଷ୍ଣୁତା ସ୍ୱୀକାର କରିନାହାନ୍ତି – ଅଥଚ ଠିକ କରି ରଖିଅଛନ୍ତି ଯେ, ଏହା ଅସାର ଓ ପ୍ରକାଶର ଅଯୋଗ୍ୟ ! ସେଦିନ ଜଣେ ଉଚ୍ଚଶିକ୍ଷିତ ବ୍ୟକ୍ତି କହିଲେ, ମୁଁ ସସମ୍ମାନରେ ନତମସ୍ତକରେ ସେ ପତ୍ର କେତୋଟି ଓଲଟାଇ ଯାଏଁ – ପାଠ କରିବା ଭଳି ଧୈର୍ଯ୍ୟ ମୋର ନାହିଁ ଓ ମୁଁ କେବେହେଲେ ସେଥିରୁ କିଛି ପାଠ କରିନାହିଁ । ଦୁର୍ଭାଗ୍ୟ ବୋଲ, ସୌଭାଗ୍ୟ ବୋଲ, ଆମ୍ଭମାନଙ୍କୁ ପ୍ରବନ୍ଧର ପ୍ରତ୍ୟେକ ଅଂଶ ଅନ୍ତତଃ ତିନିଥର ପଢ଼ିବାକୁ ହୋଇଅଛି ।*

*ଆମ୍ଭେମାନେ ଯେ ନନ୍ଦ ମହାଶୟଙ୍କ ସହିତ ସକଳ ବିଷୟରେ ଏକମତ ବା ତାଙ୍କର ରଚନା ପଦ୍ଧତିକୁ ସର୍ବାଂଶରେ ଅନୁମୋଦନ କରୁଁ, ତାହା ନୁହେଁ; ମାତ୍ର ତାଙ୍କର ଅସାଧାରଣ ଧୈର୍ଯ୍ୟ, ଶ୍ରମଶୀଳତା, ଅନୁସନ୍ଧିତ୍ସା ଓ ସୂକ୍ଷ୍ମଦୃଷ୍ଟି ଦେଖି ଅବାକ୍ ହୋଇଅଛୁଁ । ଏପରି ତଥ୍ୟପୂର୍ଣ୍ଣ ରଚନା ଉତ୍କଳରେ କେତୋଟି ପ୍ରକାଶିତ ହୋଇଅଛି, ଆମ୍ଭେମାନେ କହି ନପାରୁଁ । ବିରୁଦ୍ଧବାଦୀମାନଙ୍କ ମଧ୍ୟରୁ କେବଳ ସାରଳା ଭାରତଖଣ୍ଡି ଆଦ୍ୟନ୍ତ କେତେ ଜଣ ପାଠ କରିଅଛନ୍ତି, ଆମ୍ଭମାନଙ୍କୁ ଜଣାନାହିଁ । ପଢ଼ିବାର ଆବଶ୍ୟକତା ବା କଣ ? ଗୌରବ ବା ଆତ୍ମପ୍ରୀତି ପ୍ରଖ୍ୟାପନ ବେଳକୁ ସାରଳା ଦାସଙ୍କ ନାମଟା ଉଲ୍ଲେଖ କରିଦେଲେ ହେଲା ! ଅଥଚ ଯେଉଁ ନନ୍ଦ ମହାଶୟ ଏହି ପ୍ରକାଣ୍ଡ ଗ୍ରନ୍ଥକୁ ଛାପା ଓ ବିଭିନ୍ନ ତାଳପତ୍ର ଲେଖା ପୋଥି ମିଳାଇ ସୂକ୍ଷ୍ମ ଭାବରେ ଆଲୋଚନା କରିଅଛନ୍ତି ଏବଂ ମୂଳ ସଂସ୍କୃତ ଓ ହିନ୍ଦୀ, ବଙ୍ଗଳା, ତ୍ରୈଲଙ୍ଗ ଭାଷା ମହାଭାରତ ସଙ୍ଗେ ତୁଳନା କରି ଏହାର ଉତ୍କର୍ଷାପକର୍ଷ ନିର୍ଦ୍ଦେଶ କରିଅଛନ୍ତି, ତାଙ୍କୁ ଏମାନେ ଅକୁଣ୍ଠିତ ଚିତ୍ତରେ ଉପହାସରେ ଉଡ଼ାଇ ଦେବାକୁ ଉଦ୍ୟତ । କେହି କେହି ଅଜ୍ଞାତନାମା ଲେଖକମ୍ମନ୍ୟ ବ୍ୟକ୍ତି ମୁରବି ସାଜି ସମ୍ବାଦପତ୍ର ସାହାଯ୍ୟରେ ଲେଖକଙ୍କୁ ତଥା ସଂପାଦକଙ୍କୁ କେତେ ଗୁରୁଗମ୍ଭୀର ଉପଦେଶ ଦେଇ ପକାଇଲେଣି ! ଅହୋ ଧୃଷ୍ଟତା ଓ ବାଚାଳତା । ଆମ୍ଭମାନଙ୍କର ସାନ୍ତ୍ୱନା ଏତିକି, ନନ୍ଦ ମହାଶୟ କାହାରିଠାରୁ ପଣେ କାହାଣେ ପାଇବା ଆଶାରେ ବା ପ୍ରଶଂସା ଲାଳସାରେ ପ୍ରବନ୍ଧ ରଚନାର କଠୋର ଶ୍ରମ ସ୍ୱୀକାର କରି ନାହାନ୍ତି ବା ସଂପାଦକ ସେଥିରେ ଭାଗ ବସାଇବାର ଆଶା ପୋଷଣ କରି ପତ୍ରିକାରେ ସ୍ଥାନ ଦେଇନାହିଁ । ସୁତରାଂ ଉଭୟେ ଏ ଉପେକ୍ଷା ଓ ଅବଜ୍ଞା ବହନ କରିବାକୁ ସଂପୂର୍ଣ୍ଣ କ୍ଷମ । ନନ୍ଦ ମହାଶୟ ଯେ ଉତ୍କଳଖଣ୍ଡର ସାହିତ୍ୟ କ୍ଷେତ୍ରରେ ଜଣେ ନିଷ୍ଠାପର ସାଧକ, ତାଙ୍କର ମହାଭାରତ ସମାଲୋଚନା ତାହାର ଜ୍ୱଳନ୍ତ ସାକ୍ଷୀ ।*

ମହାଭାରତ ସମାଲୋଚନା ଯେ କେବଳ ଗୋପୁଚ୍ଛାକୃତି ହୋଇଗଲା ତାହା ନୁହେ, ନନ୍ଦେ କଟକର ପାଠକ ଓ ସମାଲୋଚକମାନଙ୍କ ଅସୂୟାର ପାତ୍ର ଓ ସମାଲୋଚନାର ଶରବ୍ୟ ହୋଇପଡ଼ିଲେ । ନିଜ ବିଚାର ବୁଦ୍ଧିରେ ନନ୍ଦେ ମଧୁସୂଦନ ଦାସ, ବି.ଏ.ଙ୍କ ଓଡ଼ିଆ ସାହିତ୍ୟର ଯୁଗ ବିଭାଗକୁ ଗ୍ରହଣ ନ କରି (ଭକ୍ତି ଯୁଗ ଓ ପ୍ରେମ ଯୁଗ) ତା' ପରିବର୍ତ୍ତେ ଆଦିମ, ପୌରାଣିକ, କାବ୍ୟ ଓ ଆଧୁନିକ ଯୁଗ ରୂପେ ବିଭକ୍ତ କରିଥିଲେ;

ଆଲୋଚନା ଅବସରରେ ପଣ୍ଡିତ ମୃତ୍ୟୁଞ୍ଜୟ ରଥଙ୍କ 'ଶାରଳା ଚରିତ'ର କେତେକ ମତକୁ ନମ୍ରତାର ସହିତ ଖଣ୍ଡନ କରିଥିଲେ । ସେହିପରି କେବଳ ଅନୁଲେଖକମାନଙ୍କୁ ନୁହନ୍ତି, ସେ ସମୟରେ ପଣ୍ଡିତ ଗୋବିନ୍ଦ ରଥ, ପଣ୍ଡିତ କପିଳେଶ୍ୱର ବିଦ୍ୟାଭୂଷଣ ପ୍ରଭୃତି ଯେଉଁମାନେ ପ୍ରାଚୀନ ପୁରାଣ ଓ କାବ୍ୟଗୁଡ଼ିକର ସଂଶୋଧିତ ସଂସ୍କରଣମାନ ପ୍ରକାଶ କରିଥିଲେ ସେମାନଙ୍କୁ ଅତ୍ୟନ୍ତ କଟୁ ଭାଷାରେ ଏକ ପ୍ରକାର ଭର୍ତ୍ସନା କରିଥିଲେ । ଫଳରେ ସେମାନଙ୍କ ପ୍ରତିକ୍ରିୟା 'ଶବ୍ଦତତ୍ତ୍ୱବୋଧ ଅଭିଧାନ' ପ୍ରକାଶ ପରେ ପ୍ରତ୍ୟକ୍ଷଭାବେ ଦେଖିବାକୁ ମିଳେ ।

ଅବଶ୍ୟ ଆଲୋଚନାଟି ପାଠକମାନଙ୍କ ବିରାଗଭାଜନ ହେବାପାଇଁ ନନ୍ଦ ମହାଶୟଙ୍କ ଗଦ୍ୟଶୈଳୀ ଥିଲା ପ୍ରଧାନ କାରଣ । ତେଲୁଗୁ ପଣ୍ଡିତମାନଙ୍କ ସଂସ୍କୃତାନୁଗ ଗଦ୍ୟଶୈଳୀ ଯେ ଓଡ଼ିଆ ଭାଷାରେ ମଧ ସମ୍ଭବପର ଏହା ଦର୍ଶାଇଦେବା ଥିଲା ପାରଳାଖେମୁଣ୍ଡିର ପଣ୍ଡିତ ମହାଶୟଙ୍କ ଅନ୍ୟତମ ଲକ୍ଷ୍ୟ । ବାଣଭଟ୍ଟଙ୍କ କାଦମ୍ବରୀକୁ ନିଠେଇ ପଢ଼ିଥିବା ଗୋପୀନାଥଙ୍କ ମାନସିକତାରେ ସେହି ଗଦ୍ୟଶୈଳୀ ପ୍ରତି ମଧ ଥିଲା ଦୁର୍ବଳତା । ଏଥିପାଇଁ ସେ ଆନୁପ୍ରାସିକ ଭାଷାଦ୍ୱାରା ରଚନାକୁ କାବ୍ୟିକ ସୌନ୍ଦର୍ଯ୍ୟରେ ବିଭୂଷଣ କରିବା ସକାଶେ ପ୍ରୟାସ କରୁଥିଲେ । ଯେପରି

*ଭୂପାଳ ସଂକାଶ ଗୋପାଳବେଦେଶ ସହଦେବ ବହୁଲୋକମଞ୍ଜନା ବିନ୍ଧ୍ୟମାଳସଦନା କୃତକଦନା ଦୁର୍ଦ୍ଦମନା ପୃଥୁନା ନାମ୍ନୀ ଗାଭୀକୁ ସ୍ୱୀୟଭ କରିବା, ପ୍ରୋକ୍ତ ନୈଚିକୀ ଅନୀଚ ଭାଷାରେ ତାହାଙ୍କ ସହ ସମ୍ଭାଷ କରିବା, ସେ ପୁଣି ଦେବଗବୀ କପିଳାଙ୍କ ସନ୍ତାନ ଥିବାରୁ ପୂର୍ବେ ସ୍ୱକୀୟ ଦେବୀ ସତ୍ତାରେ ପାନୀୟ ପାନଲୀଳାବହେଳାରେ ଜଳଧିକି ନିର୍ଜଳ କରିଥିଲେ ବୋଲି ସମୟରେ ସେନ୍ଦ୍ର ବୃନ୍ଦାରକବୃନ୍ଦଙ୍କ ସବନ୍ଦନ ପ୍ରାର୍ଥନାରେ ତଦୀୟ ମାତା ନିଜର ଅମିତ କ୍ଷୀରବୈଭବରେ କ୍ଷୀରୋଦାଦି ଉଦଧିସନ୍ଦୋହକୁ ପୁନଃ ପୂର୍ଣ୍ଣୀକୃତ କରିଥିବା, ପ୍ରଭୃତି ଅନେକ ତଦୁପାଙ୍ଗଭୂତ ପ୍ରସଙ୍ଗକୁ କାରଣ ନିର୍ଦ୍ଦେଶପୂର୍ବକ ଲେଖି ଅଛନ୍ତି ।*

ସେହିପରି ସାର୍ଥକ ବିଶେଷଣ ପ୍ରୟୋଗ ଦ୍ୱାରା ଗୋଟିଏ ଗୋଟିଏ ଚରିତ୍ର, ସ୍ଥାନ କିମ୍ବା ପଦାର୍ଥର ବୈଶିଷ୍ଟ୍ୟ ପ୍ରତିପାଦନ କରିବାର ମୋହରୁ ପଣ୍ଡିତ ମହାଶୟ ରଚନାକୁ ଦୀର୍ଘୀଭୂତ କରିଛନ୍ତି । ବିଶେଷଣଗୁଡ଼ିକ ଅସ୍ଥାନ ପ୍ରଯୁକ୍ତ ନ ହେଲେ ସୁଦ୍ଧା ଅନେକ ସମୟରେ ଆଧୁନିକ ପାଠକପାଇଁ ଅନାବଶ୍ୟକ ମନେ ହୋଇଥାଏ, ଯଥା – ଦାନଶୌଣ୍ଡ ଖଣ୍ଡଳକର୍ଣ୍ଣ, ଶର୍ମୋର୍ମୀକିର୍ମୀରିତ ଧର୍ମକର୍ମା ପାଣ୍ଡବ, ସ୍ୱନନ୍ଦନାଦରଣୀୟ ନନ୍ଦନୋପମ ଖାଣ୍ଡବ, ନିର୍ଦ୍ଧାପରପରାକ୍ରମଶାଳୀ ଦ୍ୱାପର ବୀରାଗ୍ରଗଣ୍ୟ ଅର୍ଜ୍ଜୁନ, ପରିଣାମ-

ବିଷାୟିତ-ଆପାତ-ରମଣୀୟ-ବାକ୍ୟ ବିଶାରଦ, ମୃଷାଭାଷଣ ଚାତୁରୀଧୂରୀଣ ଶକୁନି, ସଂଗ୍ରାମମହୋତ୍ସବପ୍ରମୋଦନିର୍ଭର ସହଦେବ ଇତ୍ୟାଦି । ଏଠାରେ ଉଲ୍ଲେଖଯୋଗ୍ୟ ଯେ, କେବଳ ଗୋପୀନାଥ ନନ୍ଦଶର୍ମା ନୁହନ୍ତି ଗଞ୍ଜାମର ପଣ୍ଡିତମାନଙ୍କର ଭାଷା ସେତେବେଳେ ଏ ପ୍ରକାର ସଂସ୍କୃତ ଶବ୍ଦ ବହୁଳ ଏବଂ ପାଣ୍ଡିତ୍ୟପୂର୍ଣ୍ଣ ହିଁ ଥିଲା । ପଣ୍ଡିତ ଗଦାଧର ବିଦ୍ୟାଭୂଷଣ, ପଣ୍ଡିତ ସଦାଶିବ ବିଦ୍ୟାଭୂଷଣ, ପଣ୍ଡିତ କୁଳମଣି ଦାସ ପ୍ରଭୃତିଙ୍କ ପ୍ରବନ୍ଧରେ ଏ ପ୍ରକାର ଗଦ୍ୟଶୈଳୀ ଦୁର୍ଲକ୍ଷ୍ୟ ନୁହେଁ ।

ନିଜ ସମାଲୋଚନା ଗ୍ରନ୍ଥଗୁଡ଼ିକର ଉପକ୍ରମଣିକା ଓ ଉପସଂହାରରେ ପଣ୍ଡିତ ମହାଶୟ ତାଙ୍କ ପାଠକମାନଙ୍କ ପ୍ରତି ଯେତେ ତିକ୍ତ ମନ୍ତବ୍ୟ ପ୍ରକାଶ କରିଥାଆନ୍ତୁ ନା କାହିଁକି, ସେ ଭାଗବତ ଓ ରାମାୟଣ ସମାଲୋଚନା ବେଳକୁ ଏ ସଂପର୍କରେ ସଚେତନ ହୋଇ ପଡ଼ିଛନ୍ତି; ଫଳରେ ସେଗୁଡ଼ିକ ଅଧିକ ସରଳ ଓ ସୁଖପାଠ୍ୟ ହୋଇପାରିଛି ।

ମହାଭାରତ ସମାଲୋଚନା ପରେ ଗୋପୀନାଥ ନନ୍ଦ ଜଗନ୍ନାଥ ଦାସଙ୍କ ଶ୍ରୀମଦ୍ ଭାଗବତର ଆଲୋଚନା ଆରମ୍ଭ କରିଥିଲେ । ଏହାର ଉପକ୍ରମଣିକାରେ ରାମାୟଣ ସମାଲୋଚନାର କୌଣସି ସୂଚନା ନଥିବାଯୋଗୁଁ ଭାଗବତ ଆଲୋଚନାକୁ ହିଁ ତାଙ୍କର ଦ୍ୱିତୀୟ ପ୍ରୟାସ ବୋଲି ଗ୍ରହଣ କରାଯିବ । ଏହାର କିଛି ଅଂଶ ମାତ୍ର ଗୋପବନ୍ଧୁ ଦାସ ସମ୍ପାଦିତ 'ସତ୍ୟବାଦୀ' ପତ୍ରିକାରେ ପ୍ରକାଶ ପାଇଥିଲା, କିନ୍ତୁ ପ୍ରକାଶିତ ଉତ୍ସର୍ଗ ପତ୍ରଟିକୁ ଦେଖିଲେ ମନେହୁଏ ପଣ୍ଡିତ ମହାଶୟ ଆଲୋଚନାଟିକୁ ସଂପୂର୍ଣ୍ଣ କରି ସମଗ୍ର ପାଣ୍ଡୁଲିପିଟିକୁ ସମ୍ପାଦକଙ୍କ ହସ୍ତରେ ଅର୍ପଣ କରିଦେଇଥିଲେ । ୧୯୨୧ ମସିହା ବେଳକୁ ଗୋପବନ୍ଧୁ ଓ ତାଙ୍କ ସହଯୋଗୀ ସତ୍ୟବାଦୀ-ସାଧକମାନେ ରାଜନୀତି କ୍ଷେତ୍ରକୁ ଅବତୀର୍ଣ୍ଣ ହୋଇ ଆସିବା ଫଳରେ ପତ୍ରିକାଟି ବନ୍ଦ ହୋଇ ଯାଇଥିଲା । ବର୍ତ୍ତମାନ ପଣ୍ଡିତ ମହାଶୟଙ୍କ ଅଗାଧ ପରିଶ୍ରମର ଫଳର ସତ୍ତା ମଧ ଖୋଜି ପାଇବା ସମ୍ଭବପର ହୋଇପାରୁ ନାହିଁ । ଭାଗବତ ଅଷ୍ଟାଦଶ ମହାପୁରାଣ ମଧ୍ୟରୁ କେବଳ ଅନ୍ୟତମ ନୁହେ, ଗୌଡ଼ୀୟ ବୈଷ୍ଣବ ଧର୍ମାବଲମ୍ବୀ ନନ୍ଦଙ୍କପାଇଁ ଏହା ହେଉଛି ପବିତ୍ର ଧର୍ମଗ୍ରନ୍ଥ । ଏଥିପାଇଁ ସେ ଯେଉଁ ପରିଶ୍ରମ କରିଥିଲେ ତାର ସ୍ୱରୂପ ଉପଲବ୍ଧ ଅଂଶରୁ ଜାଣିହେବ ।

'ଜଗନ୍ନାଥ ଦାସଙ୍କ ଭାଗବତ ମୂଳରୂପର ଆଉ ଗୋଟିଏ ଅବିକଳ ପ୍ରତିକୃତି ମାତ୍ର; କିନ୍ତୁ ସାରଳା ଦାସଙ୍କ ମହାଭାରତଟି ଅନେକ ଅଂଶରେ ମୂଳଗ୍ରନ୍ଥର କ୍ରମରୁ ବହୁ ଦୂରରେ ଅବସ୍ଥିତ । x x x କିନ୍ତୁ ବଳରାମ ଦାସଙ୍କ ରାମାୟଣର ଲେଖାର ପରିପାଟୀ ପ୍ରୋକ୍ତ ଉଭୟ କ୍ରମର ମଧ୍ୟବର୍ତ୍ତୀ ଅଟେ ।' ଏ ଦୃଷ୍ଟିରୁ ପୂର୍ବୋକ୍ତ ଉଭୟ ଗ୍ରନ୍ଥ ପରେ ସେ ବଳରାମ ଦାସଙ୍କ ରାମାୟଣ ଆଲୋଚନାରେ ପ୍ରବୃତ୍ତ ହୋଇଛନ୍ତି । କିନ୍ତୁ ଅକାଳ ବିୟୋଗ ଯୋଗୁଁ ଏହା ପୂର୍ଣ୍ଣତା ପ୍ରାପ୍ତ ହୋଇ ନଥିଲା । ସଂପାଦକ ବ୍ରଜସୁନ୍ଦର ଦାସ ଏହାକୁ ମୁକୁର

ପତ୍ରିକାରେ ଧାରାବାହିକ ଭାବେ ପ୍ରକାଶ କରୁଥିଲେ । ୧୯୨୩ ମସିହା ମୁକୁରର ଅଷ୍ଟାଦଶ ଭାଗ ପର୍ଯ୍ୟନ୍ତ ଏହା ପ୍ରକାଶ ପାଇଛି, ପରେ ଏହା ଆଉ ପ୍ରକାଶ ପାଇଥିଲା କି ନାହିଁ ଜାଣିବା ସମ୍ଭବ ହେଉ ନାହିଁ । ୧୯୨୪ ମସିହାର ପ୍ରାରମ୍ଭରେ ନନ୍ଦ ପଣ୍ଡିତେ ଇହଧାମ ତ୍ୟାଗ କରନ୍ତି । ତା'ପରଠାରୁ ମୁକୁର ପତ୍ରିକାରେ ଏହାର ପ୍ରକାଶନ ଦେଖିବାକୁ ମିଳୁ ନଥିବାରୁ ଆଲୋଚନାଟି ପୂର୍ଣ୍ଣାଙ୍ଗପ୍ରାପ୍ତ ହୋଇଥିଲା ବୋଲି ମନେହୁଏ ନାହିଁ । ଅଧ୍ୟାପକ ଗୌରୀ କୁମାର ବ୍ରହ୍ମା ନିଜ ପିଯୁଷାଙ୍କ ଘରୁ ସାଉଣ୍ଟି ଆଣିଥିବା ପାଣ୍ଡୁଲିପିଗୁଡ଼ିକର ଛିନ୍ନପୃଷ୍ଠାରେ ସେ ରାମାୟଣ ଆଲୋଚନାର ବିଷୟ ଓ ବୈଷମ୍ୟ କାଣ୍ଡ ଏବଂ ସମୟ ସନ୍ନିଧାନ କାଣ୍ଡ ମାତ୍ର ଶେଷ କରିଥିବା ଦେଖାଯାଏ ।

ରାମାୟଣର ଆଲୋଚନା ବେଳେ ସେ ପୌରାଣିକ ଯୁଗରୁ କାବ୍ୟଯୁଗକୁ ଆସିବା ନିମିତ୍ତ ପ୍ରସ୍ତୁତ ହେଉଥିବା ମନେହୁଏ । ପୂର୍ବ ତିନୋଟି ଗ୍ରନ୍ଥନିମିତ୍ତ ସେ ଯେପରି ବିଭିନ୍ନ ଆଞ୍ଚଳିକ ଭାଷାରେ ଅନୂଦିତ ଗ୍ରନ୍ଥଗୁଡ଼ିକ ପରିଶୀଳନ କରୁଥିଲେ, ସେହିପରି କାବ୍ୟଯୁଗ ପାଇଁ ମଧ୍ୟ ସେ ଅନ୍ୟାନ୍ୟ ଭାଷାର କାବ୍ୟଯୁଗର ପ୍ରବୃତ୍ତି ସଂପର୍କରେ ଅଧ୍ୟୟନ କରୁଥିବା ତାଙ୍କ 'ତ୍ରୈଲଙ୍ଗ୍ୟଭୋଜ ଓ ତ୍ରୈଲଙ୍ଗ ସାହିତ୍ୟ' ପ୍ରବନ୍ଧରୁ ଜଣାଯାଏ । ରାମାୟଣ ଆଲୋଚନା ଅବସରରେ ସେ କେତେକ ନିର୍ଦ୍ଦିଷ୍ଟ କ୍ଷେତ୍ରରେ ବୈଦେହୀଶ ବିଳାସ ସହିତ ଦାଣ୍ଡୀରାମାୟଣର ତୁଳନାତ୍ମକ ବିଚାର କରିଛନ୍ତି ।

ଏଥିରୁ ମନେହୁଏ, ଗୋଟିଏ ଗୋଟିଏ ଗ୍ରନ୍ଥର ସ୍ୱତନ୍ତ୍ର ଆଲୋଚନା ମାଧ୍ୟମରେ ଓଡ଼ିଆ ଭାଷା ଓ ସାହିତ୍ୟର କ୍ରମବିକାଶ ଓ କ୍ରମ ବିବର୍ତ୍ତନ ଦର୍ଶାଇବା ଥିଲା ପଣ୍ଡିତ ନନ୍ଦଙ୍କ ଲକ୍ଷ୍ୟ ।

- ୩ -

ଆଲୋଚ୍ୟ ତିନୋଟି ବିଶାଳ ଗ୍ରନ୍ଥକୁ ଆଲୋଚନା କଲାବେଳେ ପଣ୍ଡିତ ଗୋପୀନାଥ ଏକ ନିର୍ଦ୍ଦିଷ୍ଟ ଆଲୋଚନା ପଦ୍ଧତି ଅବଲମ୍ବନ କରିଛନ୍ତି । ତାଙ୍କ ପ୍ରତ୍ୟେକଟି ଆଲୋଚନା ଚାରୋଟି ବିଭାଗରେ ବିଭାଜିତ । (କ) ବିଷୟ ଓ ବୈଷମ୍ୟ ବା ବିଷୟ ସନ୍ନିଧାନ, (ଖ) ଭାଷା ଓ ସାହିତ୍ୟ ବିଚାର ବା ଭାଷା ସନ୍ନିଧାନ, (ଗ) କବି ପରିଚୟ ବା କବି ସନ୍ନିଧାନ ଏବଂ (ଘ) ଅନ୍ୟାନ୍ୟ । ଭାଗବତର ବିଭିନ୍ନ ଟୀକା (ଶ୍ରୀଧରୀୟ, ବୀର ରାଘବୀୟ ଏବଂ ବିଜୟଧ୍ୱଜୀୟ), ସଂସ୍କରଣ, ହସ୍ତଲିଖିତ ପାଣ୍ଡୁଲିପିରେ ଥିବା ପାଠ – ପାଠାନ୍ତର ମଧ୍ୟରେ ଏକ ସମାଧାନ ଆଣିବାପାଇଁ ସେ ଏହାର ବିଷୟ ସନ୍ନିଧାନ ସ୍କନ୍ଧଟିକୁ ଦୁଇ ଭାଗରେ ବିଭକ୍ତ କରିଛନ୍ତି, ଯଥା – ଅଧ୍ୟାୟ ବିମର୍ଷ ଓ ବିଷୟ ବିମର୍ଶ । ସେହିପରି ମୂଳ ଓ ଅନୂଦିତ ଗ୍ରନ୍ଥ ଅଧ୍ୟୟନ ଅବସରରେ ସେ କେତେକ ସ୍ଥଳରେ ସମୟ ଓ ଘଟଣାକ୍ରମକୁ ନେଇ ଦ୍ୱନ୍ଦ୍ୱରେ ପଡ଼ିଛନ୍ତି, ଯେପ୍ରରି ମହାଭାରତ ଯୁଦ୍ଧର ସମୟ । ବିଭିନ୍ନ ରାମାୟଣ

(ଅଧ୍ୟାତ୍ମ, ଅଗସ୍ତ୍ୟ, ଆନନ୍ଦ, ଅଦ୍‌ଭୁତ ଇତ୍ୟାଦି), ବିଭିନ୍ନ ରାମାୟଣୀ ଟୀକା (ଗୋବିନ୍ଦ-ରାଜୀୟ, ମହେଶ୍ୱର ଦୀକ୍ଷିତ ଇତ୍ୟାଦି), ଆଞ୍ଚଳିକ ରାମାୟଣ (ବଙ୍ଗଳା କୃତ୍ତିବାସ, ତେଲୁଗୁ ଭାସ୍କର, ହିନ୍ଦୀ ତୁଳସୀ ଦାସ), ସଂସ୍କୃତ କାବ୍ୟ ନାଟକ (ଉତ୍ତର ରାମ ଚରିତ, ଅନର୍ଘ ରାଘବ, ରଘୁବଂଶ ଇତ୍ୟାଦି) ମଧ୍ୟରେ ଥିବା ଅନୁରୂପ କେତେଗୁଡ଼ିଏ ସମସ୍ୟା, ଯଥା – ଭରତ ଓ ଲକ୍ଷ୍ମଣଙ୍କ ଜ୍ୟେଷ୍ଠ-କନିଷ୍ଠତ୍ୱ, ସୀତାଙ୍କ ବିବାହ ବୟସ, ଦଶରଥଙ୍କ ଅନ୍ତ୍ୟେଷ୍ଟି, ବନବାସ କାଳରେ ବିଭିନ୍ନ ସ୍ଥାନରେ ଅବସ୍ଥାନ ଇତ୍ୟାଦି ତାଙ୍କ ଦୃଷ୍ଟିକୁ ଆସିଥିଲା । ଏଗୁଡ଼ିକର ସୁସମାଧାନପାଇଁ ରାମାୟଣ ସମାଲୋଚନାରେ ସେ ସମୟ ସନ୍ନିଧାନ ନାମରେ ଏକ ସ୍ୱତନ୍ତ୍ର କାଣ୍ଡ ଯୋଗ କରିଛନ୍ତି ।

ତିନୋଟି ଗ୍ରନ୍ଥର ଆଲୋଚନାରେ ପଣ୍ଡିତ ନନ୍ଦଶର୍ମା ବିଷୟ ଓ ବୈଷମ୍ୟ ଉପରେ ଅଧିକ ଗୁରୁତ୍ୱ ଆରୋପ କରିଥିବା ଦେଖାଯାଏ । ସାରଳା ଓ ବଳରାମ ମୂଳ ସଂସ୍କୃତ ଗ୍ରନ୍ଥଠାରୁ ଦୂରେଇ ଯାଇଥିବାବେଳେ ଜଗନ୍ନାଥ ଦାସ ମଧ ପରବର୍ତ୍ତୀ ଭାଗବତ ଅନୁବାଦକ (ଦୀନବନ୍ଧୁ ଖାଡ଼ଙ୍ଗା, କୃଷ୍ଣ ଚରଣ ପଟ୍ଟନାୟକ, ପରିକ୍ଷିତ ଦାସ, ରାଘବାନନ୍ଦ ଦାସ ପ୍ରମୁଖ)ଙ୍କ ପରି ଭାଗବତର ଶ୍ଳୋକାନୁବାଦ କରିନାହାନ୍ତି । ଓଡ଼ିଆ କବିମାନଙ୍କର ଏହି ମୌଳିକତା ମୂଳଗ୍ରନ୍ଥର ଭାବସମ୍ପଦ ସମ୍ପର୍କରେ ଅବହିତ ହେବାପାଇଁ ପ୍ରତିବନ୍ଧକ ସୃଷ୍ଟି କରୁଥିବା ଯୋଗୁଁ ଦୂଷଣୀୟ ମନେ ହୋଇପାରେ । କିନ୍ତୁ, ଏଗୁଡ଼ିକ ହିଁ ଓଡ଼ିଆ ସାହିତ୍ୟର ଅକ୍ଷୟ ଜାତୀୟ ସଂପଦ । ଏହି କବିମାନେ କାହିଁକି ଓ କିପରି ମୂଳଗ୍ରନ୍ଥର ପରିବର୍ତ୍ତନ, ପରିବର୍ଦ୍ଧନ, ପରିକର୍ତ୍ତନ କରି ଅଭିନବ ରୂପରେ କଥାବସ୍ତୁକୁ ଉପସ୍ଥାପନ କରିବାପାଇଁ ପ୍ରୟାସ କରିଛନ୍ତି, ତାହା ଦେଖି ଦେଖାଇଦେବା ଥିଲା ପଣ୍ଡିତ ମହାଶୟଙ୍କ ପ୍ରଧାନ ଆଭିମୁଖ୍ୟ । ଏହାକୁ ଏକ ଜାତୀୟ କର୍ତ୍ତବ୍ୟ ରୂପେ ଗ୍ରହଣ କରି ସେ ଉଭୟ ସଂସ୍କୃତ ଓ ଓଡ଼ିଆ ଗ୍ରନ୍ଥର ନିରନ୍ତର ଅଖଣ୍ଡ ପାଠ ଓ ବିଷୟାଦି ପରିଶୀଳନ ସହିତ 'ମହାପ୍ରାଜ୍ଞ୍ୟ' 'ଅବିନେଶ୍ୱର ସ୍ମୃତିମାନ୍‌', 'ବହୁ ପୁରାଣ କଥାଭିଜ୍ଞ ଅନଳ୍ପ ପ୍ରାଜ୍ଞ', 'ମତିମତ୍ତମ କଳ୍ପନାପ୍ରିୟ', 'ବହୁ ଐତିହାସ-ସନ୍ନିଧାନ ବେତ୍ତା' କବିମାନଙ୍କ ଅପୂର୍ବ ପ୍ରତିଭାର ଆକଳନ ନିମନ୍ତେ 'ତଦର୍ଥୋପବୃଂହକ ଅନ୍ୟାନ୍ୟ ସଂସ୍କୃତ ଗ୍ରନ୍ଥ ଏବଂ ତଦୀୟ ନିୟାମକତା ଓ ପ୍ରାମାଣିକତାର ପ୍ରତିପାଦକ ଅନ୍ୟାନ୍ୟ ପୌରାଣିକ' ଓ ସାହିତ୍ୟ ଗ୍ରନ୍ଥମାନ ପରିଶୀଳନ କରିଛନ୍ତି । ଏ ଅଧ୍ୟବସାୟ ଅନନ୍ୟସାଧାରଣ ଓ ବିସ୍ମୟକର । ମହାଭାରତ ସମାଲୋଚନା କନିଷ୍ଠ ଭ୍ରାତାଙ୍କ ଦ୍ୱାରା 'ଶ୍ରୀ ଭାରତ ଦର୍ପଣ' ରୂପେ ପ୍ରକାଶ ପାଇଥିଲା ବୋଲି ଏ ପର୍ଯ୍ୟନ୍ତ ଆଲୋଚକମାନେ ତାରି ଉପରେ ଭିତ୍ତି କରି ସାରଳା ଦାସଙ୍କ ମହତ୍ତ୍ୱ ପ୍ରତିପାଦନ କରିଚାଲିଛନ୍ତି; ଆଲୋଚନାଟି ତଥାପି ଅନତିକ୍ରମଣୀୟ ହୋଇ ରହିଛି । ରାମାୟଣ ସମାଲୋଚନାର ଏହି କାଣ୍ଡଟି (ବିଷୟ ସନ୍ନିଧାନ) ଲୋକଲୋଚନକୁ ଆସି

ନଥିଲା ବୋଲି ବଳରାମ ଦାସଙ୍କ ସଂପର୍କରେ ବହୁ ଆଲୋଚନା ଏବଂ ଦାଣ୍ଡି ରାମାୟଣର ବିଭିନ୍ନ ସଂସ୍କରଣ ପ୍ରକାଶ ପାଇଥିଲେ ସୁଦ୍ଧା ମୂଳ ସଂସ୍କୃତ ବା ଦାଣ୍ଡୀ ରାମାୟଣର ବିସ୍ତୃତ ତୁଳନାତ୍ମକ ଆଲୋଚନା ସମ୍ଭବ ହୋଇପାରି ନାହିଁ । ଜଗନ୍ନାଥଦାସଙ୍କ ଭାଗବତ ସଂପର୍କରେ ମଧ୍ୟ ସେହି ଏକାକଥା । ପରିଶିଷ୍ଟରେ ପ୍ରଦତ୍ତ ଶ୍ରୀମଦ୍ ରାମାୟଣ ସମାଲୋଚନା ସଂପର୍କରେ ଗୋପୀନାଥଙ୍କ ଟିପାଖାତାଟିକୁ ଅନୁଧ୍ୟାନ କଲେ ଶ୍ରୀମଦ୍ ଭାଗବତ ସମାଲୋଚନା ଉପକ୍ରମଣିକାରେ ତାଙ୍କ ପ୍ରତିଜ୍ଞା 'ଏହି ସମାଲୋଚନା ସକାଶେ ବ୍ୟାସକୃତ ଏବଂ ଜଗନ୍ନାଥ ଦାସାନୁବାଦିତ ଭାଗବତ ଗ୍ରନ୍ଥଦ୍ୱୟର ଅଖଣ୍ଡ ପାଠ ଓ ବିଷୟାଦି ପରିଶୀଳନରେ ଅପିଚ ବକ୍ଷ୍ୟମାଣ ବିଷୟମାନଙ୍କର ଆନୁସଙ୍ଗିକ କଥା ସବୁ ସପ୍ରମାଣ କରିବା ପାଇଁ ଆବଶ୍ୟକ ସ୍ଥଳେ ଅନ୍ୟାନ୍ୟ ଗ୍ରନ୍ଥ ଓ ପୁରାଣମାନଙ୍କ ବିଚାରରେ ଯଥାର୍ଥତାର ପ୍ରତିପାଦନ କରିବାରେ କିଛି ମାତ୍ର ତ୍ରୁଟି କରିବୁ ନାହିଁର ସତ୍ୟତା ଉପଲବ୍ଧି କରିହେବ ।

ଗୋପୀନାଥ ଥିଲେ ଜଣେ ଭାଷା ଓ ଛନ୍ଦ ଶାସ୍ତ୍ରବିତ୍ । ତେଣୁ ତାଙ୍କ ଆଲୋଚନା ମଧ୍ୟରେ ଏ ଉଭୟ ସଂପର୍କରେ ବିଶେଷ ବିବରଣୀ ରହିବା ସ୍ୱାଭାବିକ । ସାରଳା ଦାସଙ୍କ ମହାଭାରତର ଭାଷାତାତ୍ତ୍ୱିକ ଓ ଛନ୍ଦ ଶାସ୍ତ୍ରୀୟ ଆଲୋଚନା ସେ କରିଛନ୍ତି । ଅନ୍ୟ ଦୁଇଟିରେ ମଧ୍ୟ ଏ ପ୍ରକାର ଆଲୋଚନା କରି ଓଡ଼ିଆ ଭାଷାର ଇତିହାସ ରଚନାପାଇଁ ସେ ମାର୍ଗ ନିର୍ଦ୍ଦେଶ କରିଥାଆନ୍ତେ । କିନ୍ତୁ ଏସବୁ ଦେଖିବା ସୌଭାଗ୍ୟ ଆମର ନାହିଁ । ପଣ୍ଡିତ ମହାଶୟଙ୍କ ଆଲୋଚନା ପ୍ରଣାଳୀର ବିସ୍ତୃତ ପରିଚୟ ଦେବା ଏହି ସୀମିତ ମୁଖବନ୍ଧ ମଧ୍ୟରେ ସମ୍ଭବ ନୁହେଁ । ଅନ୍ୟତ୍ର ଏ ସଂପର୍କରେ ଆଲୋଚନା କରିବାର ଅଭିଳାଷ ରହିଲା । ଏଠାରେ, କିନ୍ତୁ, ତାଙ୍କ ଆଲୋଚନା ଗ୍ରନ୍ଥଗୁଡ଼ିକର ଉପକ୍ରମଣିକାରେ ଥିବା ଦୁଇଟି ଗୁରୁତ୍ୱପୂର୍ଣ୍ଣ ବିଷୟ ସଂପର୍କରେ ସୂଚନା ଦେବା ଆବଶ୍ୟକ ମନେକରୁ ।

- ୪ -

ଅଭିଧାନ ନିମିତ୍ତ ନିରୋଳା ଓଡ଼ିଆ ଶବ୍ଦ ସଂଗ୍ରହ ଏବଂ ସାରଳା ମହାଭାରତର ଆଲୋଚନା ପାଇଁ ଯେତେବେଳେ ପୁରାଣ ପ୍ରକାଶକ କଂପାନୀ ଦ୍ୱାରା ପ୍ରକାଶିତ ମହାଭାରତର ଛାପାପୁସ୍ତକକୁ ଜଣେ ସମାଲୋଚକର ଦୃଷ୍ଟିକୁ ଧରି ପଢ଼ିବା ପାଇଁ ଆରମ୍ଭ କରିଛନ୍ତି, ସେତେବେଳେ ତାଙ୍କର ମନେହୋଇଛି କବି ଗ୍ରନ୍ଥଟିରେ *ଯେଉଁ ନିସର୍ଗରମଣୀୟତା ପଦଲାଳିତ୍ୟ, ପଦ ସନ୍ନିଧାନ ନୈପୁଣ୍ୟ ପ୍ରଭୃତିର ସନ୍ନିବେଶ କରିଥିଲେ ସମ୍ପ୍ରତି ସ୍ଥାନେ ସ୍ଥାନେ ତାହାର ଆଭା ମାତ୍ର, କବିତାର ଜନ୍ମକାଳୀନ ସେହି ମନୋହର ଛବି ବହୁ ସ୍ଥଳରେ ଲୁପ୍ତ ହୋଇ ଯାଇଅଛି । ଅନେକ ସ୍ଥଳରେ ଆଦର୍ଶସିଦ୍ଧ ରମଣୀୟ ଛବି କଦର୍ଯ୍ୟ ହୋଇ ପଡ଼ିଅଛି । ସାରଳା ଦାସଙ୍କ କବିତାରେ ଆମ୍ଭେମାନେ ବର୍ତ୍ତମାନ ଯେତେ ଯେତେ ଦୋଷ*

*ଦେଖି ପାରିଅଛୁଁ, ସେ ସବୁଯାକ କବିଙ୍କର ନୁହେଁ । କବିଙ୍କ ଲେଖା ଆଧୁନିକ ଦୃଷ୍ଟିରେ ନିର୍ଦ୍ଦୋଷ ନୁହେଁ ସତ, ମାତ୍ର ତତ୍ ପରବର୍ତ୍ତୀ ଅଜ୍ଞ ଲେଖକମାନଙ୍କ ଦୋଷଜାଳରେ ବହୁ ପରିମାଣରେ ଦୂଷିତ ହୋଇ ଯାଇଅଛି ।' x x 'ଗ୍ରନ୍ଥଟିର କବିଦତ୍ତ ଆକୃତି କେତେଠାରେ ଅନୁଲେଖକଙ୍କ ଦ୍ୱାରା ବିଲୁପ୍ତ ହୋଇଯାଇଅଛି, କେତେକଠାରେ ଅନ୍ୟାନ୍ୟ ମତଦୁର୍ବିଧଙ୍କ ମତିମାନ୍ଦ୍ୟ-କାଳିମାରେ ବିଲିପ୍ତ ହୋଇ ପଡ଼ିଅଛି, କେତେ ସ୍ଥଳ ବା ଅପାର୍ଥ ହୋଇ ଯାଇଅଛି, ଆଉ କେତେକ ସ୍ଥଳ ଅନର୍ଥବିକୃତି ଲିପିମାଳାରେ ଦୁର୍ଭାର ହୋଇ ପଡ଼ିଅଛି ।*

ଫଳରେ ସେ 'ପୁରାଣମିତ୍ୟେବ ନ ସାଧୁ ସର୍ବମ୍' ଭାବି ଛାପା ପୁସ୍ତକ ସହିତ ତାଳପତ୍ର ପୋଥିକୁ ଆଶ୍ରୟ କରିବାପାଇଁ ଚେଷ୍ଟା କରିଛନ୍ତି । କିନ୍ତୁ ଅନୁଲେଖକମାନଙ୍କ ଦୌରାତ୍ମ୍ୟରୁ କୌଣସି ଦୁଇଟି ପୋଥିର ପାଠ ସମାନଥିବା ଦେଖିବାକୁ ମିଳିନାହିଁ । ଭାଗବତ ଓ ରାମାୟଣ ଆଲୋଚନାବେଳେ ମଧ୍ୟ ସେ ଏ ପ୍ରକାର ପ୍ରତିବନ୍ଧକର ସମ୍ମୁଖୀନ ହୋଇଛନ୍ତି । ତାଙ୍କ ସମ୍ମୁଖରେ ଥିଲା ଗୋବିନ୍ଦ ରଥଙ୍କ ସମ୍ପାଦିତ ଦାଣ୍ଡୀ ରାମାୟଣ (୧୯୧୪) ଏବଂ ପଣ୍ଡିତ କପିଳେଶ୍ୱର ବିଦ୍ୟାଭୂଷଣଙ୍କଦ୍ୱାରା ସଂଶୋଧିତ ହୋଇ ପ୍ରକାଶ ପାଇଥିବା ଭାଗବତର 'ପରିବର୍ତ୍ତିତ ଓ ପରିବର୍ଦ୍ଧିତ ସଂସ୍କରଣ' (୧୮୯୯) । ଏ ଉଭୟର ପାଠ ମଧ୍ୟ ତାଙ୍କୁ ସନ୍ତୁଷ୍ଟ କରିପାରି ନାହିଁ । ଏଥିପାଇଁ ତାଙ୍କର ପ୍ରଥମ ଶରବ୍ୟ ହୋଇଛନ୍ତି ଓଡ଼ିଶାର 'ଦୁରଭିମାନଦୁର୍ଗ୍ରହାବିଷ୍ଟ ଅଶିଷ୍ଟାହଂକାର ଗ୍ରନ୍ଥିଳହୃଦୟ', 'ମାତୃ ସାହିତ୍ୟରେ ଅନଭିଜ୍ଞ କେବଳ ସଂସ୍କୃତିଆ ଶୁଆପାଠିଆ ପଣ୍ଡିତ' ମଣ୍ଡଳୀ । ସେମାନଙ୍କ 'ଦୁର୍ମତିତ୍ୱ' ଓ 'ଦୁଷ୍ଟଚେଷ୍ଟା' ଯୋଗୁଁ ପ୍ରାଚୀନ ଗ୍ରନ୍ଥଗୁଡ଼ିକର ଶୁଦ୍ଧ ଓ ଅବିକଳ ପ୍ରତିଲିପି ସୃଷ୍ଟି ହୋଇପାରିନାହିଁ । ଗ୍ରନ୍ଥଗୁଡ଼ିକର ଅନୁଲେଖନ କ୍ରିୟା କେବଳ ଅଜ୍ଞ, ପଣ୍ଡିତଂମନ୍ୟମାନ, ଲିପିବୃତ୍ୟନୁଜୀବୀ କାକାକ୍ଷରିକମାନଙ୍କଦ୍ୱାରା ସାଧିତ ହେବାପାଇଁ ବାଧ ହୋଇଛି । ସେମାନେ ନିଜର ବୁଦ୍ଧି ବିଚାରରେ ଅନ୍ୱୟ, ଅର୍ଥ ସଂଗତି, ମୂଳପାଠ ଇତ୍ୟାଦି ବିଚାରକୁ ନ ନେଇ ପରିକର୍ତ୍ତନ ଓ ପରିବର୍ତ୍ତନଦ୍ୱାରା ମୂଳ ରଚନାଗୁଡ଼ିକୁ 'ମତିମାନ୍ଦ୍ୟ କାଳିମା'ରେ ବିଲେପିତ କରିଦେଇଅଛନ୍ତି । ଏହାପରେ ଆସିଛନ୍ତି ପ୍ରକାଶକ ।

> *ସେମାନେ ଦୁଇ ଚାରି ତାଳପତ୍ର ପୁସ୍ତକ ଧରି ମୁଦ୍ରଣ ଆରମ୍ଭ କରିଥିଲେ ସୁଦ୍ଧା, ମୂଳ ଗ୍ରନ୍ଥ ଆଡ଼େ ଦୃଷ୍ଟି ଦେଇନାହାନ୍ତି କିମ୍ବା ଆପାତତଃ କବିଙ୍କ ଲେଖାରେ ପାଠ କିପରି ଥିଲା, ବର୍ତ୍ତମାନ କୀଦୃଶ ହୋଇଯାଇଅଛି, ତାହା ସୁଦ୍ଧା ସମ୍ୟକ୍ ବିଚାର କରିନାହାନ୍ତି; କରିଛନ୍ତି କେବଳ ଏତିକି ଯେ ଦୁଇ ଚାରି ତାଳପତ୍ର ପୁସ୍ତକ ମିଳାଇ ନିଜର ପାଣ୍ଡିତ୍ୟ-ବିଭବରୁ କିଛି ବ୍ୟୟ କରି ଯେକୌଣସି ପ୍ରକାରେ ଅକ୍ଷର ମିଳାଇ ଦେଇ ମୁଦ୍ରଣ ସମାଧାରେ କୃତକୃତ୍ୟ ହୋଇଯାଇ ଅଛନ୍ତି ।*

ଗୋପୀନାଥ ଥିଲେ ଉଗ୍ର ଜାତୀୟବାଦୀ ଏବଂ ସ୍ୱାଭିମାନୀ ଓଡ଼ିଆ ସାହିତ୍ୟସାଧକ । ଜାତୀୟ ସାହିତ୍ୟର ଏହି ବିକୃତୀକରଣ ତାଙ୍କର ସହ୍ୟ ହୋଇନାହିଁ । ଏଥିପାଇଁ ସେ ସଂସ୍କୃତ ପଣ୍ଡିତ, ଅନୁଲେଖକ ଏବଂ ପ୍ରକାଶକମାନଙ୍କ ପ୍ରତି ଏପରି କଟୁତିକ୍ତ ମନ୍ତବ୍ୟମାନ ପ୍ରଦାନ କରିଯାଇଛନ୍ତି । ଏହା ଅସୂୟା ପ୍ରଣୋଦିତ ନୁହେଁ, କିନ୍ତୁ ଗଭୀର କ୍ଷୋଭର ଉଦ୍‌କ୍ଷେପଣ ମାତ୍ର । ଏହି ତିନୋଟି ବିଶାଳ ଗ୍ରନ୍ଥର ଶୁଦ୍ଧ ସଂସ୍କରଣ ଏକାକୀ ପ୍ରସ୍ତୁତ କରିବା ତାଙ୍କ ପକ୍ଷରେ ସମ୍ଭବ ନଥିଲା । ସି.ପି. ବ୍ରାଉନ୍‌ଙ୍କ ପରି ତାଙ୍କ ପାଖରେ ନଥିଲା ଆର୍ଥିକ ସମ୍ବଳ, ନଥିଲେ ବେତନଗ୍ରାହୀ ପଣ୍ଡିତମଣ୍ଡଳୀ । କିନ୍ତୁ ପରବର୍ତ୍ତୀ ସମୟରେ ଉପେନ୍ଦ୍ର ଭଞ୍ଜଙ୍କ ସାହିତ୍ୟକୁ ଅନୁରୂପଭାବେ ଆଲୋଚନା କରିବାପାଇଁ ସେ ଲୋକନାଥ ଦାସଙ୍କ ଟୀକା ସହିତ ଲାବଣ୍ୟବତୀ, ବୈଦେହୀଶ ବିଳାସ ଓ ଅନ୍ୟାନ୍ୟ ମଧ୍ୟଯୁଗୀୟ କାବ୍ୟର ଅନୁଲିପି ପ୍ରସ୍ତୁତି ପ୍ରକ୍ରିୟା ଆରମ୍ଭ କରିଦେଇଥିଲେ ।

ଅଯଥା ଅନ୍ୟମାନଙ୍କ ଦୋଷ ଦୁର୍ବଳତା ଦର୍ଶାଇବା ପଣ୍ଡିତ ନନ୍ଦଙ୍କ ସ୍ୱଭାବ ନଥିଲା । ବିନା ପ୍ରମାଣରେ ସେ କୌଣସି ଭ୍ରାନ୍ତ ମନ୍ତବ୍ୟ ଦେବାରେ ବିଶ୍ୱାସୀ ନଥିଲେ । ମହାଭାରତ ଆଲୋଚନା ବେଳେ ପାଠ ପରିବର୍ତ୍ତନର ବହୁ ଉଦାହରଣ ସେ ଉଦ୍ଧାର କରିଛନ୍ତି । ସ୍ଥାନେ ସ୍ଥାନେ କବିକୃତ ଦୋଷ ଦୁର୍ବଳତା ମଧ୍ୟ କ୍ଷମଣୀୟ ହୋଇନାହିଁ । ପ୍ରାଚୀନ ଗ୍ରନ୍ଥଗୁଡ଼ିକର ପରିବର୍ତ୍ତିତ, ପରିବର୍ଦ୍ଧିତ ଏବଂ ପରିମାର୍ଜିତ ସଂସ୍କରଣ ପ୍ରକାଶନର ସେ ଥିଲେ ଘୋର ବିରୋଧୀ । ଏହାଦ୍ୱାରା କେବଳ ପାଠବିକୃତି ଘଟେ ନାହିଁ ବରଂ କବି ପ୍ରତିଭାର ଏକ ବିକଳ ରୂପ ପାଠକମାନଙ୍କ ସମ୍ମୁଖକୁ ଆସିଥାଏ; ସାର୍ଥକ ସମାଲୋଚନା ମଧ୍ୟ ସମ୍ଭବ ହୋଇପାରେ ନାହିଁ । ଗ୍ରନ୍ଥ ସଂପାଦକ ଓ ପ୍ରକାଶକମାନଙ୍କୁ ଏ ଦିଗରେ ସଚେତନ କରାଇବାପାଇଁ ରାମାୟଣ ଓ ଭାଗବତ ଆଲୋଚନା ଅବସରରେ ସେ ପାଠବିକୃତିର କାରଣ ଏବଂ ସେ ସବୁର ନିରାକରଣ ଉପାୟ ନିର୍ଦ୍ଦେଶ କରି ଯାଇଛନ୍ତି । ସ୍ଥାଳୀପୁଲାକ ନ୍ୟାୟରେ କିଛି ଉଦାହରଣ ମଧ୍ୟ ଉଦ୍ଧାର କରିଛନ୍ତି । ଏ ଦିଗରେ ପଣ୍ଡିତ ନନ୍ଦଶର୍ମାଙ୍କୁ ଓଡ଼ିଶାରେ ପାଠ-ସମ୍ପାଦନାର ଆଦି ଦିଗ୍‌ଦର୍ଶକ ବୋଲି କହିବାକୁ ହେବ ।

କିନ୍ତୁ ଦୁର୍ଭାଗ୍ୟର ବିଷୟ ତାଙ୍କ ପ୍ରଦର୍ଶିତ କୌଶଳ ଅବଲମ୍ବନ କରି କୌଣସି ସଂପାଦକ ଏପର୍ଯ୍ୟନ୍ତ ଆମକୁ ଆଲୋଚ୍ୟ ତିନୋଟି ଗ୍ରନ୍ଥର ମୂଳପାଠର ନିକଟବର୍ତ୍ତୀ କରାଇପାରି ନାହାନ୍ତି । ଏପରିକି ସେ ନିଦର୍ଶନ ସ୍ୱରୂପ ଉଦ୍ଧାର କରିଥିବା ପଂକ୍ତିସବୁ ମଧ୍ୟ 'ଶୁଦ୍ଧ ଓ ପ୍ରାମାଣିକ ସଂସ୍କରଣ' ଗୁଡ଼ିକରେ ଗୃହୀତ ହୋଇ ନାହିଁ ।

ଭାଗବତ ଆଲୋଚନା ବେଳେ ପଣ୍ଡିତ ମହାଶୟ ଜଗନ୍ନାଥ ଦାସଙ୍କ ଅନୁବାଦ କୌଶଳ ସଂପର୍କରେ ଯେଉଁ ସୂଚନା ଦେଇଛନ୍ତି ତାହା ବୋଧହୁଏ ଅନୁବାଦ କଳା ସଂପର୍କୀୟ ପ୍ରଥମ ଆଲୋଚନା ।

ସାଂପ୍ରତିକ ଦୃଷ୍ଟିରେ ଗୋପୀନାଥ ନନ୍ଦଶର୍ମାଙ୍କ ଏହି ତିନୋଟି ଗ୍ରନ୍ଥର ସ୍ୱତନ୍ତ୍ର ଆଲୋଚନାକୁ ଓଡ଼ିଆ ସାହିତ୍ୟର ଇତିହାସ ରୂପେ ଗ୍ରହଣ କରିବା ସମୀଚୀନ ମନେ ହୋଇ ନପାରେ । କିନ୍ତୁ ଯେଉଁ ସମୟରେ ସାହିତ୍ୟର ଇତିହାସ କହିଲେ କେବଳ କବିମାନଙ୍କର ଏକ ତାଲିକା କିମ୍ବା ଲେଖକଙ୍କ ସଂକ୍ଷିପ୍ତ ପରିଚିତି ବୋଲି ବିବେଚନା କରାଯାଉଥିଲା, ସେ ସମୟରେ ପଣ୍ଡିତ ମହାଶୟ ତିନୋଟି ଜାତୀୟ ସାରସ୍ୱତ ସଂପଦର ଯେଉଁ ପୁଙ୍ଖାନୁପୁଙ୍ଖ ଆଲୋଚନା ପ୍ରସ୍ତୁତ କରିଛନ୍ତି, ତାହା ନିଶ୍ଚିତ ଭାବେ ଓଡ଼ିଆ ସାହିତ୍ୟ ଇତିହାସ ରଚନାପାଇଁ ପ୍ରଥମ ଶୁଭ ସଂକେତ ଓ ପରବର୍ତ୍ତୀ ସମୀକ୍ଷକଙ୍କପାଇଁ ମାର୍ଗଦର୍ଶକ । ପଣ୍ଡିତ ମହାଶୟଙ୍କ ମାର୍ଗ ଓ ନିର୍ଦ୍ଦେଶ ପ୍ରତି ବିଶ୍ୱସ୍ତ ରହିଲେ ଓଡ଼ିଆ ସାହିତ୍ୟର ସଂକ୍ଷିପ୍ତ ଓ ଖଣ୍ଡିତ ଇତିହାସକୁ ଅଭ୍ରାନ୍ତ ଓ ପୂର୍ଣ୍ଣାଙ୍ଗ ରୂପ ଦେଇହେବ ବୋଲି ବିଶ୍ୱାସ । ଏହା ସହିତ ପ୍ରାଚୀନ ସାହିତ୍ୟଗ୍ରନ୍ଥଗୁଡ଼ିକର ମୂଳପାଠ ନିକଟରେ ପହଞ୍ଚିବା ମଧ୍ୟ ସମ୍ଭବ ହେବ ।

**ସୁଦର୍ଶନ ଆଚାର୍ଯ୍ୟ**



# ମତ୍ସ୍ୟେନ୍ଦ୍ରନାଥ ଓ ଗୋରଖନାଥ

ମତ୍ସ୍ୟେନ୍ଦ୍ରନାଥ ଓ ଗୋରକ୍ଷନାଥଙ୍କ ଆବିର୍ଭାବକ୍ରମ ଅପ୍ରାକୃତିକ ହେଲେ ହେଁ କେବଳ ନିରୂପମ ନୁହେଁ । ଏତଦୀୟ ଉପମେୟ ସ୍ୱରୂପ ଗୋଟିଏ ଘଟନା ଭାଗବତାଦିଗ୍ରନ୍ଥରେ ବର୍ଣ୍ଣିତ ଅଛି । ଯେପରି ମୀନକେତନ ପ୍ରଦ୍ୟୁମ୍ନ ମତ୍ସ୍ୟଗର୍ଭ-ସଂଭୂତ, ମତ୍ସ୍ୟେନ୍ଦ୍ରନାଥ ମଧ୍ୟ ସେହିପରି । ଏହାଙ୍କ ଅବତାର ସମ୍ବନ୍ଧେ ଅନେକ ସ୍ଥଳେ ଲେଖାଅଛି, ଏକଦା କ୍ଷୀର ସମୁଦ୍ରୋପକଣ୍ଠରେ ପାର୍ବତୀଜାନି କୈଳାସନାଥ ମହାଦେବ ସୋତ୍କଣ୍ଠ ଚିତ୍ତରେ ତାରକନାମ-ଭଜନ ପୂର୍ବକ ପ୍ରିୟାସହ ବିହାର କରୁଅଛନ୍ତି । ତଦା ଭଗବଦ୍ ଭକ୍ତିରେ ସମୁଦ୍‌ବୁଦ୍ଧ ତନୁରୁହୀକୃତଶରୀରା ଭବାନୀଦେବୀ ତାରକ ନାମର ମାହାତ୍ମ୍ୟ ଜିଜ୍ଞାସାରେ ଶିବାଧାର ଶିବଙ୍କୁ ପ୍ରେମବିକସ୍ୱର- ସ୍ୱରରେ ବିନୟ-ପୁରଃସର ଏହା ପ୍ରାର୍ଥନାକଲେ, ନାଥ ସନ୍ତତ ଭବକ୍ରୀଡିତ ଜଗନ୍ମଙ୍ଗଳାୟତନ ସନାତନ ତାରକବ୍ରହ୍ମ ନାମର ମହିମାର ଶୁଶ୍ରୁଷା ମୋର ବଳବତୀ ହୋଇଅଛି । ଆପଣ ସାନୁକ୍ରୋଶ ମନରେ ଥରେ ପ୍ରକାଶ କରନ୍ତୁ । ମହାଦେବ କରୁଣାମୃତାର୍ଦ୍ର ମାନସରେ କହିଲେ, ପ୍ରିୟେ ! ତାରକବ୍ରହ୍ମ ମହିମାର ଇୟତ୍ତା ତ ନାହିଁ । ସେହି ଅପ୍ରମେୟ ଶାସ୍ୱତ ନାମର ମାହାତ୍ମ୍ୟ ବ୍ରହ୍ମାଦି ବୃନ୍ଦାରକବୃନ୍ଦର ବଚନାତୀତ । ତାରକବ୍ରହ୍ମ ଶ୍ରୀରାମଚନ୍ଦ୍ରଙ୍କ ଅବତାର ଦୃଷ୍କୃତ ତାପାପନୋଦନ ଓ ସାଧୁ ସଂମୋଦନ-ପୂର୍ବକ ଧର୍ମ୍ମର ସଂସ୍ଥାପନ ନିମିତ୍ତକ । ଏହି ଅବତାରରେ ସମଧିକ କଲ୍ୟାଣଗୁଣଗଣ ସମୁଜ୍ଜୃମ୍ଭିତ ହୋଇଅଛି, ଭଗବାନ ଶ୍ରୀ ରାମଚନ୍ଦ୍ରଙ୍କର ଅକମ୍ପାନୁକମ୍ପା ପ୍ରଭାବରେ ସମଗ୍ର କୋଶଳର ସ୍ଥାବରଜଙ୍ଗମାତ୍ମକ ପ୍ରାଣିନିଚୟ ମୁକ୍ତିସାମ୍ରାଜ୍ୟପ୍ରାପ୍ତ ହୋଇଅଛନ୍ତି । ଏହି ମହାତ୍ମାଙ୍କ କର୍ତ୍ତୃକ ବର୍ଣ୍ଣାଶ୍ରମ ଧର୍ମ୍ମ ନିର୍ବ୍ବିକାରରେ ସୁରକ୍ଷିତ ହୋଇଥିଲା । ଯେଉଁ ମହାତ୍ମାମାନେ ସେହି ଶ୍ରୀରାମଚନ୍ଦ୍ରଙ୍କର ଦିବ୍ୟ ମଙ୍ଗଳ ଜଗତ୍ପାବକ ନାମାବଳୀର ଜଂଜପୂକ ସେହିମାନଙ୍କର କେବଳ ଭଗବଦ୍‌ଭକ୍ତି କରାମଳକପ୍ରାୟ, ଏହା ବାଲ୍ମୀକି, ନାରଦ ମହର୍ଷିଗଣ ସମ୍ୟକ୍ ବିଦିତ ଅଛନ୍ତି । ଭଗବାନ୍ ଆଦିଦେବ ଅଯୋଧ୍ୟା ନଗରୀରେ ନିଜର ନିତ୍ୟ ବିଭୂତି-ସମ୍ପନ୍ନ ରାମରୂପରେ ସଂପୂର୍ଣ୍ଣତଃ ଐଶ୍ୱରୀକ – ସାନ୍ନିଧ ସଂସ୍ଥାପନପୂର୍ବକ ତାରକ ମନ୍ତ୍ରୋପାସକମାନଙ୍କର ଧ୍ୟାନଗମ୍ୟ ରହି ନରବାନରନିକରଙ୍କୁ ଭୁକ୍ତି ମୁକ୍ତି ପ୍ରଦାନ କରନ୍ତି । ଶ୍ରୀରାମଚନ୍ଦ୍ରଙ୍କର ତଥାଚ ତଦୀୟ ନାମାବଳୀର ବୈଭବ ରାମତପନୀୟ ଉପନିଷଦ୍‌ଭାଗରେ ସବିସ୍ତର ବିବୃତ ଅଛି । ବ୍ରହ୍ମାଦି ସୁରଗଣପ୍ରାର୍ଥିତ ରାମଚନ୍ଦ୍ର ଏତଦ୍ ବୈବସ୍ୱତମନ୍ୱନ୍ତରରେ ଦଶରଥଙ୍କ ପୁତ୍ର ରୂପେ ଅବତୀର୍ଣ୍ଣ ହୋଇ ସ୍ୱକୀୟ ଶରଣାଗତ-ରକ୍ଷଣୋଦ୍ୟତତତ୍ତ୍ୱ ବିସ୍ତୃତ କରିଅଛନ୍ତି । ସେହି ଭକ୍ତବତ୍ସଳବାଚକ ଏକମାତ୍ର ଶ୍ରୀ ତାରକ ନାମର ଜାପକଗଣ ସହସ୍ରନାମ

ପଠନର ଅକ୍ଷୁଣ୍ଣ ଫଳଭୋଗୀ । ସୃଷ୍ଟ୍ୟାଦିରୁ ଶ୍ରୀରାମଚରିତ ସ୍ତୋମ ସତ୍ୟ ପ୍ରଭୃତି ନିଖିଳ ଲୋକରେ ଶ୍ରଦ୍ଧା-ଭକ୍ତି-ସମନ୍ୱୟରେ ପରିଗୀତ ହୁଏ ।

ବିଷ୍ଣୁଲୋକରେ ବିଶ୍ୱକ୍ସେନ ଶ୍ରୀ ମହାବିଷ୍ଣୁଙ୍କୁ, ସତ୍ୟ ଲୋକରେ ମାର୍କଣ୍ଡେୟ ମହର୍ଷି ହିରଣ୍ୟଗର୍ଭଙ୍କୁ, କୈଳାସରେ ନନ୍ଦିକେଶ୍ୱର ଶଙ୍କରଙ୍କୁ, ଶତକୋଟି ପରିମିତ ରାମାୟଣ ଗ୍ରନ୍ଥ ଶୁଣାଉଅଛନ୍ତି; ଅପିଚ ସୂର୍ଯ୍ୟଲୋକରେ ଚଣୀଶ ବଶିଷ୍ଠାଦି ମହର୍ଷିମାନେ, ଧ୍ରୁବଙ୍କ ସନ୍ନିଧିରେ ଦେବତାମାନେ ପଞ୍ଚଶତ୍ କୋଟି ପରିମିତ ରାମାୟଣ ଅହରହ ପଠନ କରନ୍ତି । ଗୋଲକରେ କଳ୍ପବୃକ୍ଷ ଆଦିର ଅଧିଦେବତାମାନେ ଦଶକୋଟି ପ୍ରବିସ୍ତର ରାମାୟଣ ଗାନ କରନ୍ତି ବୋଲି ତଥାଚ ଐନ୍ଦ୍ରଲୋକରେ ବାଲଖିଲ୍ୟାଦି ମହର୍ଷିମାନେ କୋଟି ବିସ୍ତୃତ ରାମାୟଣ ଏବଂ ଗନ୍ଧର୍ବ, ଯକ୍ଷ, କିନ୍ନରାଗ୍ନି ଲୋକାଦିରେ ଜଗତ୍‌ପର୍ଯ୍ୟଟକ ବୃନ୍ଦାରକବୃନ୍ଦ ପରିଗୀତ-ଗାଥ ମହର୍ଷି ନାରଦ ଅନ୍ୟୂନ କୋଟି ପରିମିତ ରାମାୟଣକୁ, ନିରଳସ ଧୀଷଣାରେ ଅଧ୍ୟୟନ କରନ୍ତି ବୋଲି ବ୍ରହ୍ମାଣ୍ଡ ଆଦି ପୁରାଣମାନଙ୍କରେ ଉକ୍ତ ଅଛି । ନାରଦଙ୍କ ଉପଦେଶ ଓ ବ୍ରହ୍ମାଙ୍କ ଅନୁଗ୍ରହପ୍ରାପ୍ତ ବାଲ୍ମୀକି ମହର୍ଷି ଏହି ମାନବଲୋକରେ ପ୍ରୋକ୍ତ ରାମାୟଣ ଗ୍ରନ୍ଥକୁ ସମାସତଃ ଚତୁର୍ବିଂଶତି ସାହସ୍ରିକ କରି ରଚନା କରିଅଛନ୍ତି । ସେହି ଜଗଦୀଶ ଶ୍ରୀରାମଭଦ୍ରଙ୍କର ତାରକ ମନ୍ତ୍ର ସମୁପାସନାରୁ କେବଳ ଇନ୍ଦ୍ରାଦି ତ୍ରିଦଶବୃନ୍ଦ ସ୍ୱ ସ୍ୱ ପଦରେ ଅଧିଷ୍ଠିତ ରହିଅଛନ୍ତି । ଏତାଦୃଶ ତାରକ ମହାମନ୍ତ୍ରର ଉପଦେଶ ସମଗ୍ର କଲ୍ୟାଣ ଗୁଣଗଣାତ୍ମକ ଲକ୍ଷ୍ମୀନାଥଙ୍କ ପ୍ରସାଦରୁ ମୁଁ ପ୍ରାପ୍ତ ହୋଇଅଛି । ସମ୍ପ୍ରତି ତ୍ୱଦୀୟ ଶ୍ରଦ୍ଧା ଓ ଭକ୍ତିର ପରାକାଷ୍ଠା ଦେଖି ପରିତୁଷ୍ଟ ହୃଦୟରେ ତୁମ୍ଭଙ୍କୁ ଏହା ଉପଦେଶ ଦେଉଅଛୁ । ଅବହିତ ଚିତ୍ତରେ ଗ୍ରହଣ କର ।

ମହାଦେବ ଭବାନୀଙ୍କୁ ତାରକ ବ୍ରହ୍ମର ଏତାଦୃଶ ମହିମାଗାନ ପୁରଃସର ଉପଦେଶ ଦେବା ସମୟେ ସାଗର ଗର୍ଭ-ବର୍ତ୍ତିନୀ ପ୍ରାକ୍ତନ ସଦ୍‌ବାସନା-ପରିପୂତା ଗୋଟିଏ ଅନ୍ତଃସତ୍ତ୍ୱା ମତ୍ସିକା ସେହି ଦମ୍ପତି ପ୍ରତି ସପ୍ରେମ ଓ ସତୃଷ୍ଣନୟନରେ ନିଶ୍ଚଳ ଭାବେ ଅବଲୋକନ କରୁଥିଲା । ପୁରା ପରମଭାଗବତୋତ୍ତମ ପ୍ରହ୍ଲାଦ ଯାଦୃଶୀ ଶକ୍ତି ପ୍ରଭାବରେ ଅତିରିକ୍ତ କାଳ ମାତୃଗର୍ଭସ୍ଥ ରହି ସୁଦ୍ଧା ନାରଦୀୟ ଉପଦେଶ ହୃଦୟଙ୍ଗମ କରିପାରିଥିଲେ, ତଦ୍‌ବତ୍ ଏହି ମତ୍ସ୍ୟଗର୍ଭାନ୍ତବର୍ତ୍ତୀ ଶିବାଂଶଭୂତ ଜୀବ ଶିବଙ୍କ ଉପଦେଶ ପ୍ରାପ୍ତି ବଳରେ ସଂସାରତାରକ ତାରକମନ୍ତ୍ର ଧ୍ୟାନରେ ବହୁକାଳ ମତ୍ସ୍ୟ ଗର୍ଭରେ ରହି ଅନନ୍ୟ-ସାମାନ୍ୟ ସହଜଜ୍ଞାନସହ ମାନବରୂପରେ ଅବତୀର୍ଣ୍ଣ ହେଲେ, ଭଗବଦ୍ ପ୍ରେରଣାନୁପାତରେ, ଲୋକୋଜ୍ଜୀବନାର୍ଥ କ୍ରମଶଃ ସଦ୍‌ଗୁଣ ଭରିତ ଭାରତବର୍ଷରେ ଉପନୀତ ହେଲେ । ଏହି ମହୋଦୟ ମତ୍ସ୍ୟଗର୍ଭ-ସମ୍ଭୂତ ବୋଲି ମତ୍ସ୍ୟେନ୍ଦ୍ରନାଥ ନାମରେ ଅଭିହିତ ଥିଲେ । ତଦୀୟ ଶରୀର ପ୍ରଥମତଃ ମତ୍ସ୍ୟଗନ୍ଧରେ ଉଦ୍ଭିନ୍ନ ଥିବାରୁ ଜନସମାଜରେ ଅପ୍ରକଟ ରହି ଆପଣାକୁ (ସ୍ୱଦୃଶ୍ୟ) ଅସ୍ପୃଶ୍ୟ ବୋଲି କହୁଥିଲେ । ସୁତରାଂ ସାକ୍ଷାତ୍ ଦେବ ଦେବ ମହାଦେବଙ୍କ

ଅଂଶରେ ଅବତୀର୍ଣ୍ଣ ମତ୍ସ୍ୟେନ୍ଦ୍ରନାଥ ସ୍ୱାମୀ ଅଖଣ୍ଡଜ୍ଞାନବୈରାଗ୍ୟରେ ପରିପୂର୍ଣ୍ଣଗରିଷ୍ଠ-ଯୋଗାଭ୍ୟାସନିଷ୍ଠ ହୋଇ ଯୋଗୀବୃନ୍ଦ ବରିଷ୍ଠ ରୂପେ ବିଶ୍ରୁତ, ସେ ମହୋଦୟ ଅନବରତ ବ୍ରହ୍ମବିଦ୍ୟା ପରାୟଣତ୍ୱ ଓ ସମ୍ପନ୍ନ ବୈରାଗ୍ୟତ୍ୱରୁ ପାର୍ଥିବ ନଶ୍ୱରଭୋଗ୍ୟ ବସ୍ତୁଜାଲରେ ସର୍ବଥା ଅବିତୃଷ୍ଣ, ମୋହମାୟାବିତନ୍ତସନ୍ତାନରେ ଅସଂଦାନିତ, ନିର୍ଦ୍ୱନ୍ଦ ଓ ଅକୁତୋଭୟ ଥାଇ ବ୍ରହ୍ମଶ୍ରୀରେ ଦେଦୀପ୍ୟମାନ ଦିଶନ୍ତି, ନିରପେକ୍ଷ ଭାବରୁ କଦାଚ ରାଗଦ୍ୱେଷାଦିରେ କଳୁଷିତ ନୁହନ୍ତି । ସମଲୋଷ୍ଟ୍ରାଶ୍ମକାଞ୍ଚନତ୍ୱରୁ କଦାଚିଦ୍ ପ୍ରଲୋଭନର ପ୍ରତାରଣାରେ ପ୍ରତାରିତ ହୁଅନ୍ତି ନାହିଁ । ଦମ୍ଭ-ଦମ୍ଭୋଳିର ଦୁର୍ବାର ସର୍ବଂକଷତ୍ୱ, ଅହଙ୍କାର ଓ ନିକାରବିକାରମାନ ଏତଦୀୟ ସାନ୍ନିଧରେ ବିଲୟପ୍ରାପ୍ତ ହୁଅନ୍ତି ।

ତାହାଙ୍କର ଏହିସବୁ ଅମାନୁଷିକଭାବ ଦେଖି ତଦାନିନ୍ତନ ସାଧୁ ସମାଜରେ ତାହାଙ୍କ ପ୍ରତି ଅତି ମହତ୍ତ୍ୱସୂଚକ ଦୈବଭାବର ଆଶଙ୍କା ସମୁଦିତ ହେଲା । ଏ ମହାଭାଗ କଲ୍ୟାଣଗୁଣାକର ତ୍ରିଗୁଣାତୀତ ଶୁଦ୍ଧସ୍ୱରୂପ ପରଂବ୍ରହ୍ମଙ୍କ ଅବତାର ? କିମ୍ବା ସ୍ୱୀକୃତ-ବିଗ୍ରହ ତାରକବ୍ରହ୍ମମନ୍ତ୍ରର ଅବତାର ? ଏହି ଭାବନାରେ ସମଗ୍ର ଲୋକ ତାହାଙ୍କୁ ସମାଦୃତ କଲେ । ସେ ନିଜେ ତ୍ରିତାପରୁ ବହିର୍ଭୂତ ଅନବିଦ୍ୟାସ୍ପର୍ଶ୍ୟ ହୋଇ ବିରାଜମାନ ରହିଲେ । ‘‘ଆତ୍ମନେବ ସହାୟେନ ସୁଖାର୍ଥଂ ବିଚରେଦିହ’’ ଏହି ଯୌଗିକ ନିୟମାନୁବର୍ତ୍ତୀ ହୋଇ ଭଗବଲ୍ଲୀଳାନୁଶୀଳନ ପ୍ରଣୋଦିତାନ୍ତଃକରଣରେ ନିରନ୍ତର ତୀର୍ଥଯାତ୍ରା କ୍ରମେ ବହୁତୀର୍ଥ ନିଷେବଣ ପୂର୍ବକ ଦିବ୍ୟକ୍ଷେତ୍ରମାନଙ୍କରେ ଐଶ୍ୱରୀକ-ସମ୍ପୂର୍ଣ୍ଣ ସାନିଧ୍ୟାକୃଷ୍ଟ ଦିବ୍ୟମଙ୍ଗଳ ଭଗବଦ୍ରୂପମାନ ସଂଦର୍ଶନ କରି ଅମନ୍ଦାନନ୍ଦସନ୍ଦୋହର ଅନୁଭବରେ ସାନ୍ଦ୍ରୀଭୂତ ହୋଇ ଅନିକେତ ସ୍ୱରୂପ ‘‘ଭୈକ୍ଷେଣ ବର୍ତ୍ତୟେନ୍ନିତ୍ୟମ୍’’ ଏହି ନିୟମାନୁସାରେ ଭିକ୍ଷାନ୍ନରେ କାଳ ଅତିବାହିତ କରୁଥିଲେ ।

ଏ ତ ହେଲା ମତ୍ସ୍ୟେନ୍ଦ୍ରନାଥଙ୍କର ଅବତରଣର ସଂକ୍ଷିପ୍ତ ପ୍ରକ୍ରିୟା । ଇତଃପର ଅଯୋନିସମ୍ଭୂତ ଗୋରକ୍ଷକଙ୍କର ସମ୍ଭବ ବିବରଣ ଶୁଣି ମନେକରିବେ ଏହା ଅତି ବିସ୍ମୟାବହ । ଏକଦା କୁତ୍ରଚିଦ୍ କୌଣସି ଏକ ବଣିକଗୃହରେ ସ୍ୱାମୀ ମତ୍ସ୍ୟେନ୍ଦ୍ରନାଥ ଭିକ୍ଷାର୍ଥ ପ୍ରବିଷ୍ଟ ହୋଇଅଛନ୍ତି । ସକୃଦ୍ ପ୍ରାର୍ଥନାମାତ୍ରେ ସେହି ବଣିକଙ୍କ ସୁଧର୍ମିଣୀ ସହଧର୍ମିଣୀଙ୍କୁ ଆସନ୍ନ ଦ୍ୱାରରେ ପ୍ରଦାନାର୍ଥ ଅନ୍ନପାତ୍ର ହସ୍ତେ ଦେଖି ଏକାନ୍ତ ମଧୁର ସ୍ୱରରେ ପ୍ରକାଶ କଲେ କି ମାତଃ ! ମୁଁ ଅସ୍ପର୍ଶ୍ୟ ଅଟେ, ଦୂରତଃ ଅବସ୍ଥାନ କର, ତେତେବେଳେ ଭସ୍ମୋଦ୍ଧୂଳିତକାୟ କାଷାୟାମ୍ବର ସୁତେଜସ୍ୱୀ ମତ୍ସ୍ୟେନ୍ଦ୍ରନାଥଙ୍କୁ ବଣିକ ରମଣୀ ସମ୍ପୂର୍ଣ୍ଣତଃ ପ୍ରତ୍ୟକ୍ଷ କରି ବୁଝିପାରିଲେ ଯେ ନିଶ୍ଚେ ଏ ଜଣେ ମହାତ୍ମା ହେବେ । ବିନୟ ପୁରଃସର ପ୍ରଶ୍ନ କଲେ, ହେ ସାଧୁପ୍ରବର ! ଆପଣ କିଏ ? କେଉଁଠାରୁ ଅବା ଆସି ଏହି ନିନ୍ଦିତ ନିକେତନରେ ଉପଗତ ହେଲେ ? ଆମ୍ଭେମାନେ ଅହର୍ନିଶ ଅନାର୍ଯ୍ୟ - କାର୍ଯ୍ୟ- କଦର୍ଯ୍ୟ- ଐଶ୍ୱର୍ଯ୍ୟର ମଦମତ୍ତତାରେ ମାତିଥାଉଁ, ‘‘ଆପଣଙ୍କ ପରି ଗୁଣବଦ୍‌ସନ୍ନିଧି କେବଳ ଆମ୍ଭମାନଙ୍କର ସନ୍ନିଧି’’ ଏହି ବିବେକ ସର୍ବଦା ହୃଦୟରେ ଜାଗରୁକ ରହେ ନାହିଁ । ସାଂସାରିକ ଉପଦ୍ରବରେ

ଉପଦ୍ରୁତ ମୋହନିଦ୍ରିତ ମାନବଗଣଙ୍କୁ ନିରୂପଦ୍ରବକରଣାର୍ଥ ଭବାଦୃଶ ମହାଜନମାନେ ଭାଗ୍ୟାଭୋଗ୍ୟାବଶତଃ ସମୟେ ସମୟେ ଆସି ଉପଗତ ହୁଅନ୍ତି ।

ଏସବୁ ଶୁଣି କରୁଣାପୂର - ପରିପୂରିତହୃଦୟ ମତ୍ସ୍ୟେନ୍ଦ୍ରନାଥ କହିଲେ, ମାତଃ ! ମୁଁ ଜଣେ ଅକିଞ୍ଚନ ଅନିକେତନ ତୀର୍ଥଯାତ୍ରୀ, ତେତେବେଳେ ଯୋଗୀଶ୍ୱରଙ୍କ ସାନ୍ନିଧ ପ୍ରଭାବରୁ ନୈଗମଭାବିନୀଙ୍କ ମନ ନୈଗମ ଜ୍ଞାନତୁଲ୍ୟ ସୁପ୍ରସନ୍ନ ଓ ପବିତ୍ର ହେଲା, କରୁଣା ସ୍ୱରରେ ତାହାଙ୍କୁ ସ୍ୱକୀୟ ନିସନ୍ତାନତ୍ୱ-ଜନିତ ଦୁଃଖ ନିବେଦନ କଲେ । ପ୍ରଭୋ ! ଆମ୍ଭମାନଙ୍କର ବହୁଜନ୍ମ ସଞ୍ଚିତ- ପୁଣ୍ୟ ନିଚୟର ପରିଣାମ ଫଳୋଦୟରୁ ମହାମହିମାମହତ୍ ଆପଣଙ୍କୁ ନେତ୍ର-ଗୋଚର କରିପାରିଅଛୁଁ, ଆମର ଅମିତ ସମ୍ପତ୍ତି ଥିଲେ ସୁଦ୍ଧା ସନ୍ତାନ ଅଭାବରୁ ଗୃହଟି ଚନ୍ଦ୍ରିକାଶୂନ୍ୟ ଅମାରଜନୀ ପ୍ରାୟ ଦୁଃଖଦ ହୋଇପଡ଼ିଅଛି । ଆପଣ ଅସ୍ମାଦୃଶମାନଙ୍କର ସନ୍ତାନଦ୍ରୁମ ସଦୃଶ୍ୟ, ମୋର ସନ୍ତାନ ପ୍ରାପ୍ତି ସକାଶେ ଅନୁଗ୍ରହ କରନ୍ତୁ, ଦୟାବତାର ମତ୍ସ୍ୟେନ୍ଦ୍ରନାଥ ନିଃସନ୍ତାନ ଦୁଃଖରେ ଅନାଥପ୍ରାୟ ବିପ୍ଳବ୍ୟ ବଣିଗଙ୍ଗନାଙ୍କ ପ୍ରାର୍ଥନାରେ ସମ୍ପୂର୍ଣ୍ଣ ସଦୟ ହୋଇ ତାହାଙ୍କୁ ଅପତ୍ୟ-ବିଭୂତି-ପ୍ରଦାୟକ ବିଭୂତି ପ୍ରଦାନ କରି କହିଲେ କି ହେ ପୁରନ୍ଧ୍ରି ! ବିଶ୍ୱସ୍ତ ମନରେ ଏହା ଉଦରସାତ୍‌କର, ବିଷ୍ଣୁ ସଦୃଶ ପୁତ୍ର ପାଇପାରିବ । ଏହା କହି ସେ ସେହିଠାରୁ ଯଦୃଚ୍ଛାକ୍ରମେ ପ୍ରସ୍ଥାନ କଲେ ।

ଉକ୍ତ ରମଣୀମଣି ଯୋଗୀପ୍ରଦତ୍ତ ଅମୋଘ ବିଭୂତି ତତ୍‌କ୍ଷଣାତ୍ ଗର୍ଭସ୍ଥ ନକରି ଆତ୍ମୀୟ ସଖୀଜନଙ୍କୁ ତାହାର ଆମୂଳାନ୍ତ ବୃତ୍ତାନ୍ତ ଜଣାଇବସିଲେ । ସେମାନେ ସ୍ତ୍ରୀସୁଲଭ ଅଜ୍ଞାନଭାବ ବଶତଃ ଗୌରବତ୍ୟାଗପୂର୍ବକ କହିଲେ କି ''ରେ ସଖି ! ସନ୍ୟାସୀମାନେ କୂଳପାଳିକାର ବିଶ୍ୱାସର ପାତ୍ର ନୁହନ୍ତି, ସେମାନେ ସମୟେ ଏଭଳି ମନ୍ତ୍ରଧୂଳିରେ କୋମଳ ସ୍ୱଭାବ ସ୍ତ୍ରୀଲୋକଙ୍କୁ ବଶ୍ୟ କରନ୍ତି'' ଇତ୍ୟାକାରକ ଦୁର୍ମନ୍ତ୍ରଣାରେ ସହଚରୀଗଣ ତାହାଙ୍କ ବିଶ୍ୱସ୍ତ ହୃଦୟକୁ ଦୂଷିତ କରିଦେଲେ ''ଦୁର୍ଜନ ଦୂଷିତ ମନସଃ ସୁଜନେଷ୍ୱପି ନାସ୍ତି ବିଶ୍ୱାସଃ'' ଏହି ନ୍ୟାୟରେ ସଖୀଙ୍କର ଦୂଷିତ ମନ୍ତ୍ରଶ୍ରବଣରୁ ବାମଲୋଚନା ପ୍ରୋକ୍ତ ସ୍ୱୀକୃତ ଅବ୍ୟର୍ଥ ଧୂଳିପାଳିକୁ ସ୍ତୂପୀକୃତ ପାଂଶୁରାଶିରେ ସଭୟେ ନିକ୍ଷିପ୍ତ କରିଦେଲେ । ଅଶିଷ୍ଟ ଲୋକଙ୍କ ପୈଶୁନ୍ୟରେ ବିମୁଗ୍ଧ ହୋଇ ମହତ୍‌ଜନମାନଙ୍କର ମହତ୍ତା ଅଳୀକ କି ନିର୍ବ୍ୟଳିକ, ତାହାର ବିବେକ କରିପାରିଲେନାହିଁ, ଅତଏବ କୋବିଦବୃନ୍ଦ କହନ୍ତି, ''ମୁଗ୍ଧେଷୁ କଃ ସତ୍ୟମୃଷା ବିବେକଃ ।''

ତଦବଧି ଦ୍ୱାଦଶବର୍ଷ ଅତୀତହେଲା । ଆଉଥରେ ମତ୍ସ୍ୟେନ୍ଦ୍ରନାଥ ବହୁତୀର୍ଥ ଭ୍ରମଣାନ୍ତର ପ୍ରୋକ୍ତ ବଣିଗଙ୍ଗନାଧ୍ୟୁଷିତ ଦେଶରେ ଆସି ଉପସ୍ଥିତ ହେଲେ, ପ୍ରାକ୍ ପରିଚିତ ବଣିକ ଗୃହକୁ ଯାଇ ଭିକ୍ଷାପ୍ରାର୍ଥନା କଲେ । ବଣିକ ରମଣୀ ପୂର୍ବବତ୍ ଆସି ଅନ୍ନପ୍ରଦାନରେ ଉଦ୍ୟତ ଅଛନ୍ତି, ପୂଣ୍ୟ-ଗାଥ ମତ୍ସ୍ୟେନ୍ଦ୍ରନାଥ କହିଲେ, ହେ ସତୀପ୍ରବର ! ମଦ୍ଦତ୍ତ ବିଭୂତି ପ୍ରସାଦରୁ ଜନ୍ମିତ ତୁମ୍ଭର ପୁତ୍ରପ୍ରତି ମୁଁ ଦିଦୃକ୍ଷୁ ଅଛି । ପ୍ରଥମତଃ ଅବିଳମ୍ବେ ତାହାକୁ ଆନୟନ କର । ସତ୍ୟକହିଲେ ତପସ୍ୱୀପ୍ରବର କ୍ରୋଧ ହେବେ କିମ୍ବା ଶାପଦେବେ, ଭାବିନୀ

ଏହା ଭାବି ନୀରବ ରହିଲେ । ସେ କହିଲେ ହେ ବନିତେ ! ଭୟରେ ଅନ୍ୟଥା କହ ନାହିଁ, ପୁତ୍ର-ପ୍ରଦାୟକ ବିଭୂତି କଣ କରିଅଛ ? ସତ୍ୟ କହ । ସେତେବେଳେ ସେହି ସସାଧ୍ୱସହୃଦୟା ଯୁବତୀ ପ୍ରକାଶ କଲେ, କ୍ଷମା କରନ୍ତୁ, ଅବିବେକିତାରୁ ତାହା ଗର୍ଭସ୍ଥ ନକରି ପାଂଶୁପାଳିରେ ଢାଳି ଦେଇଅଛି । ବଣିକବନିତାଙ୍କ ସତ୍ୟ-ପୂତ ବଚନରେ ଯୋଗୀଶ୍ୱର ରୁଷ୍ଟ ନହୋଇ ପ୍ରତ୍ୟୁତ ତୁଷ୍ଟମନରେ କହିଲେ, ତୁମ୍ଭର ବୁଦ୍ଧିଦୁର୍ବିଧତାକୃତ ଅପରାଧ କ୍ଷମା କଲୁଁ । ଗତ କଥାରେ ଶୋଚନା କର୍ତ୍ତବ୍ୟ ନୁହେଁ । ଯାହାହେଉ ମଦତ୍ତ ଅକ୍ଷଯ୍ୟ ବିଭୂତି କେଉଁଠାରେ ନିକ୍ଷିପ୍ତ କରିଅଛ ? ଦେଖାଅ । ତତ୍‌ପରେ ଅସାର୍ଥବିଭୂତି ସାର୍ଥବାହଲଳନା ନିତ୍ୟ ନିକ୍ଷିପ୍ତ ରାଶୀକୃତ ପାଂଶୁସ୍ତୂପ ଦେଖାଇଦେବାରୁ ଅମୋଘବାକ୍ୟ ଯୋଗୀପ୍ରବର ମତ୍ସ୍ୟେନ୍ଦ୍ରନାଥ ଦଣ୍ଡାୟମାନ ରହି ''ହେ ଅପ୍ରାକୃତସ୍ପୃଶ୍ୟ ! ଆସ, ଏଣେ ଆସ'' ଏପରି ଅସକୃତ୍ ଆହ୍ୱାନ କରି ତଦୁଦ୍‌ଗମନରେ ପ୍ରତୀକ୍ଷମାଣ ହେଲେ । ତଦା ସ୍ତୂପଭେଦ ପୂର୍ବକ ଏହି ଗଭୀରନାଦ ଶ୍ରୁତିଗୋଚର ହେଲା । ''ଭୋ ଗୁରୁଦେବ ! ଭବଦୀୟ ଆଦେଶ ମତେ ମୁଁ ବହିରୁଦ୍‌ଗମନାର୍ଥ ଉଦ୍ୟତ ଅଛି'' । ତତ୍ ପ୍ରତିବଚନରେ ପରିତୁଷ୍ଟ ହୃଷ୍ଟପୁଷ୍ଟ ମତ୍ସ୍ୟେନ୍ଦ୍ରନାଥ ସହସା ସେହି ଗ୍ରାମରୁ ସମାନୀତ ଲୋକଙ୍କଦ୍ୱାରା ନିର୍ଦ୍ଦିଷ୍ଟ ପାଂଶୁରାଶିକୁ ଉଚ୍ଛାରିତ କରାଇବାରୁ ତନ୍ମଧ୍ୟରୁ ଦ୍ୱାଦଶବର୍ଷବୟସ୍କ ଦିବ୍ୟତେଜୋବିଶିଷ୍ଟ ସର୍ବସୁଲକ୍ଷଣୋପେତ ହର୍ଷପର୍ଯ୍ୟାକୁଳେକ୍ଷଣ କାମକମନୀୟ ଗୋଟିଏ ତରୁଣ ବାଳକ ଭଗବନ୍ନାମ କୀର୍ତ୍ତନପୁରଃସର ଆବିର୍ଭୂତ ହେଲେ । ସମସ୍ତେ ଦେଖିଲେ, ଅଲୌକିକ ଗୁଣସମ୍ପନ୍ନ ବାଳକଟି ଯୋଗାସନାସୀନ ହୋଇ ଅଛନ୍ତି । ଏହି ସାଶ୍ଚର୍ଯ୍ୟଚର୍ଯ୍ୟାରେ ସବୃଦ୍ଧବାଳଦାସୀକ ଜନସମାଜ ନିତାନ୍ତ ବିସ୍ମୟମାନ-ମାନସ ହେଲେ । ମତ୍ସ୍ୟେନ୍ଦ୍ରନାଥ ଦ୍ରୁତଗତିରେ ସେହି ପ୍ରତ୍ୟଗ୍ର ପୁରୁଷଙ୍କ ମସ୍ତକରେ ହସ୍ତ ନ୍ୟସ୍ତ କରି ''ସାବଧାନ ହୁଅ'' ଇହା ଜଣାଇଦେଲେ, ନବାବିର୍ଭୂତ ପୁରୁଷ ତାହାଙ୍କ ଚରଣ ତଳେ ସାଷ୍ଟାଙ୍ଗ ପ୍ରଣାମ କଲେ, ତଦାନୀଂ ଯୋଗୀପ୍ରବର ପ୍ରୋକ୍ତ ବାଳକଙ୍କୁ ଆଶୀର୍ବଚନ ସଂଚୟସତ୍‌କାରରେ ଆତ୍ମୀୟ ମନେକଲେ । ସେହି ବାଳକଟି ଦ୍ୱାଦଶବର୍ଷକାଳ ଗୋଦେବୀ ଅର୍ଥାତ୍ ଭୂଦେବୀଙ୍କ ଗର୍ଭରେ ସୁରକ୍ଷିତ ରହିଥିଲେ ବୋଲି ଗୋରକ୍ଷିତ ବା ଗୋରକ୍ଷ ନାମରେ ତଦୀୟ ନାମକରଣ କଲାପରେ ତାହାଙ୍କ ହସ୍ତ ଧରି ସେହିଠାରୁ ପ୍ରସ୍ଥାନୋଦ୍ୟତ ହେଲେ ।

ବଣିକବନିତା ଏହି ଅତି ଅଦ୍ଭୁତ ଘଟନାର ଆଲୋକନାନ୍ତର ଆପଣାର ପୂର୍ବକୃତ ଅବିବେକ-ପ୍ରଣୋଦିତ କାର୍ଯ୍ୟରେ ''ଦୁର୍ମନ୍ତ୍ରଣାବିକ୍ଲବାବୁଦ୍ଧି ସର୍ବାର୍ଥ ନାଶିନୀ'' ବୋଲି ଭାବି ଅମିତ ଅନୁତାପରେ ଦଗ୍ଧୀଭୂତ ହେବାକୁ ଲାଗିଲେ । ସ୍ୱପତିଙ୍କ ସମୀପରେ ପରିଦୂୟମାନ-ମାନସରେ ଆମୂଳମସ୍ତ ସମସ୍ତ କଥା ନିବେଦିଲେ, ଦିଷ୍ଟବଳରୁ ସିନା ଇଷ୍ଟପ୍ରାପ୍ତ ହୁଏ, ତାହାର ଅଭାବରୁ ହସ୍ତପ୍ରାପ୍ତ ଅମୃତୋପମ ଫଳକୁ ଦୂରନିକ୍ଷିପ୍ତ କରିଦେଇ ଏପରି ଦୁଃସହ୍ୟ ଶୋକରେ ନିମଗ୍ନ ହେଲୁଁ । ହାୟ !! ଏବେ କି କରିବୁ ? ''ଦୈବଂ ହି

ଦୁରତିକ୍ରମଂ'' ଦୈବର ଘଟନାତ ଦୁରତିକ୍ରମଣୀୟ ଏହା ଭାବି ପ୍ରଣାମପ୍ରବଣ ବିଭ୍ରଷ୍ଟାପତ୍ୟ-ସମ୍ପତ୍ତି-ଦମ୍ପତି ବିଗତ-ମତ୍ସର ମତ୍ସ୍ୟେନ୍ଦ୍ରନାଥଙ୍କ ଚରଣତଳେ ଭୂଶାୟୀ ପଡ଼ିଲେ । ଭୋ ସ୍ୱାମିନ୍ ! ଭବଦୀୟ ନିର୍ମୋଘାନୁଗ୍ରହରେ ବିଶ୍ୱାସ ନରଖି ଦୁର୍ଜନମାନଙ୍କର ଆପାତମଧୁର ପରିଣାମ-ବିଷାୟିତ ବଚନରେ ଭୁଲିଯାଇ ଦୁର୍ଲ୍ଲଭ ସନ୍ତାନକଳ୍ପ ସନ୍ତାନମାଣିକ୍ୟ ହରାଇ ଅଛୁ । ପ୍ରଭୋ ! ସୁହୃତ୍‌ଚିହ୍ନ ଅମିତ୍ର ବ୍ୟକ୍ତିମାନଙ୍କର ଗୁପ୍ତାକାର ଆଶୀବିଷ-ବିଷପ୍ରଖ୍ୟ ଉପଦେଶମାନ ଆମ୍ଭର ଅମୃତାୟମାନ ଭାଗଧେୟକୁ ବିଷରେ ପରିଣତ କରିଦେଇଅଛି । ଆମ୍ଭ ସଦୃଶ ମନ୍ଦଭାଗ୍ୟ ଅନ୍ୟ କେହି ନାହିଁ । ଅନନ୍ୟ ଗତିକତ୍ୱରୁ ତ୍ୱଦେକ ସାପକ୍ଷେକତାରେ ଜଣାଉଅଛୁଁ, ଏହି ଦୀନଜନର ଅପରାଧ କ୍ଷମାକରି ଦୟା କରନ୍ତୁ । ଇତ୍ୟାକାର ବହୁ ସାନୁନୟ ବିନୟ ବଚନମାନ ବାଷ୍ପାୟମାଣନୟନ ଉଷ୍ମାୟମାଣ ହୃଦୟରେ ନିବେଦନ କଲେ । ତେତେବେଳେ ପ୍ରାଳେୟାଚଳ ଶୀତଳ-ମନସ୍କ ପରୋପକୃତି-କୃତି ମତ୍ସ୍ୟେନ୍ଦ୍ରନାଥ ମହୋଦୟ କୋମଳତର ବଚନରେ କହିଲେ, ଭୟ କରନାହିଁ । ଅପାର କରୁଣାମୟ ଭଗବାନଙ୍କ କୃପାରୁ ତୁମ୍ଭେ ଅବିଳମ୍ବେ ସୁପୁତ୍ର ପ୍ରାପ୍ତ ହେବ । ଏତାଦୃଶ କତିପୟ ମାକ୍ଷିକାକ୍ଷେପକ-ସୁମଧୁର ଆଶ୍ୱାସ ବଚନରେ ବଣିକ ଦମ୍ପତିଙ୍କୁ ସମାଶ୍ୱାସିତ କରି ସୁଶିଷ୍ୟ ଗୋରକ୍ଷଙ୍କ ସହିତ ସେଠାରୁ ଯଥେଚ୍ଛାକ୍ରମେ ଗମନ କଲେ ।

ସମୟେ ଗୋରକ୍ଷିତ ସ୍ୱଗୁରୁ ମତ୍ସ୍ୟେନ୍ଦ୍ରନାଥଙ୍କ ଛାମୁରେ ନତମସ୍ତକରେ ପ୍ରାର୍ଥନା କଲେକି ଭୋସ୍ୱାମୀ ! ଆପଣଙ୍କର ଏହି କିଙ୍କର ଦୁସ୍ତରଭବାର୍ଣ୍ଣବରେ ପତିତ ହୋଇଅଛି । ସଦୟେ ତାରକ ମନ୍ତ୍ରର ଉପଦେଶ ଦିଅନ୍ତୁ । ମତ୍ସ୍ୟେନ୍ଦ୍ରନାଥ କହିଲେ, ବତ୍ସ ! କେତେକାଳ ଅପେକ୍ଷା କର, ତ୍ୱଦୀୟ ଶରୀରସହ ବୁଦ୍ଧି ପରିଣତ ହେବ, ତେତେବେଳେ ମହାପ୍ରଭାବ ତାରକମନ୍ତ୍ରର ସମୁଚିତ ଅଧିକାରୀ ହେବ । ଗୋରକ୍ଷ ପ୍ରାର୍ଥିତାର୍ଥର ଅପ୍ରଦାନରୁ ମଧ ଗୁରୁଙ୍କ ବଚନରେ କୌଣସି ପ୍ରକାର ଅସନ୍ତୁଷ୍ଟ ନହୋଇ ଗୁରୁଙ୍କ ଆଦେଶ ଶିରୋଧାର୍ଯ୍ୟମଣି ତାହାଙ୍କ ଅନୁଗାମୀ ହେଲେ । ଉଭୟେ ଯାଉଁ ଯାଉଁ ବିଶ୍ରାମାର୍ଥ ଏକ ଗ୍ରାମର ଅଭ୍ୟର୍ଣ୍ଣ ପ୍ରଦେଶରେ ଉପବିଷ୍ଟ ହେଲେ । ମତ୍ସ୍ୟେନ୍ଦ୍ର କହିଲେ, ବତ୍ସ ! ଗୋରକ୍ଷ ! ଆମ୍ଭମାନଙ୍କର ଶରୀର ପୋଷଣାର୍ଥକ୍ରମ ଏହି । ''ଗ୍ରାମାପନ୍ନଂ ସମାହରେତ୍'' ଗ୍ରାମରୁ ଭିକ୍ଷାନ୍ନ ଗ୍ରହଣ କରିବାକୁ ହେବ । ଅତଏବ ଯାଅ ଏହି ଗ୍ରାମରେ ଭିକ୍ଷା ମାଗଣକର । ଗୋରକ୍ଷ ଗୁରୁଦେବଙ୍କ ଆଦେଶାନୁମତେ ପରିତୁଷ୍ଟ-ମାନସରେ ଗ୍ରାମରେ ପ୍ରବିଷ୍ଟ ହେଲେ । ଗୃହେ ଗୃହେ ଭିକ୍ଷାର୍ଥନ କରି କ୍ରମଶଃ ଏକ ବ୍ରାହ୍ମଣଙ୍କ ଗୃହରେ ଉପନୀତ ହେଲେ । ଦୈବାତ୍ ସେହିଦିନ ତାହାଙ୍କର ଉତ୍ସବର ଦିବସ । ନାନା ପ୍ରକାର ଭକ୍ଷ୍ୟ ପେୟାଦିର ପ୍ରାଚୁର୍ଯ୍ୟ ଘଟିଅଛି । ବହିର୍ଦ୍ୱାରରେ ଯତି ଆକୃତି ମନ୍ତ୍ରହୂତ ହୁତାଶନ ପ୍ରାୟ ଦେଦୀପ୍ୟମାନ ଜଣେ ମହାତ୍ମାଙ୍କୁ ଭିକ୍ଷାର୍ଥୀ ଦେଖି ଗୃହର ଘରଣୀ ସବ୍‌ହୁବିଧ ବ୍ୟଞ୍ଜନାନ୍ନ ଓ ପିଷ୍ଟପାୟସାଦି ଆଣିଦେଲେ । ଗୋରକ୍ଷିତ ସେସବୁ ନେଇ ଗୁରୁଙ୍କ କତିରେ ସମର୍ପଣ କଲେ । ଗୁରୁଦେବ ଭଗବଦର୍ପଣ ପରେ

ଭୋଜନ କଲେ । ପରିଶେଷରେ ଗୋରକ୍ଷକଙ୍କୁ କହିଲେ, ଆଜ ତୁମ୍ଭର ଆନୀତ ଭିକ୍ଷା ଅତି ସୁଭୋଗ୍ୟ; କାଲି ମଧ୍ଯ ତୁମ୍ଭଙ୍କୁ ଏଭଳି ଭିକ୍ଷା ଆଣିବାକୁ ହେବ । ତେତେବେଳେ ଗୋରକ୍ଷ "ଆପଣଙ୍କର ଯାହା ଆଦେଶ ତାହା ହିଁ ମୋର ଅନୁଷ୍ଠେୟ" ଏହା ନିବେଦନ କରି ଭୁକ୍ତଶେଷ ଗ୍ରହଣ କଲେ । ପରଦିନ ପ୍ରତ୍ୟୁଷରୁ ଆହ୍ନିକ ସମାପନାନନ୍ତର ଆଚାର୍ଯ୍ୟାଦେଶ ପାଳନାର୍ଥ ପୂର୍ବ ଶଂସିତ ବ୍ରାହ୍ମଣ ସଦନରେ ପହୁଞ୍ଚିଲେ । ଦେଖିଲେ ଯେ ଗୃହାଧିକାରିଣୀ ଏକାକିନୀ ଦ୍ୱାରଦେଶରେ ଦଣ୍ଡାୟମାନା ଅଛନ୍ତି । ତାହାଙ୍କୁ ଭିକ୍ଷାର୍ଥ ଅର୍ଥନା କଲେ, ମାତ ! ଗତକାଲି ତୁମ୍ଭର ପ୍ରଦତ୍ତ ସୁପକ୍ୱ ସୁମିଷ୍ଟ ଭକ୍ଷ୍ୟ ଭୋଜ୍ୟାଦିରେ ଅସ୍ମଦୀୟ ଗୁରୁଦେବ ପରିତୁଷ୍ଟ ହୋଇ ପ୍ରଶଂସା ସହିତ ଆଦେଶ କରି ଅଛନ୍ତି । ଆଜ ମଧ୍ଯ ତାଦୃଶ ଦିବ୍ୟ ଆହାର୍ଯ୍ୟ ପଦାର୍ଥମାନ ସଦୟେ ଦେବାକୁ ହେବ । ବ୍ରାହ୍ମଣୀ ଭକ୍ତି ନମ୍ର ହୃଦୟରେ କହିଲେ, "ଗତକାଲି ଭୂଦେବମାନଙ୍କର ସନ୍ତର୍ପଣ ନିମିତ୍ତକ ଉତ୍ସବାରମ୍ଭରେ ଘୃତପକ୍ୱପିଷ୍ଟକାଦି କରିଥିଲୁଁ, ସୌଭାଗ୍ୟକ୍ରମରେ ଆପଣ ଆସି ଉପସ୍ଥିତ ହେବାରୁ ସେସବୁ ପ୍ରଦାନ କରିପାରିଥିଲି । ଆଜି ତାଦୃଶ ସୁଭୋଜ୍ୟ ପଦାର୍ଥ ନାହିଁ, ଯାହା ଅଛି ତାହା ସମର୍ପଣ କରିବି ।"

ଗୁରୁଶୁଶ୍ରୂଷା-ପ୍ରଣୋଦିତାନ୍ତଃକରଣ ଗୋରକ୍ଷ, ଗୁରୁଙ୍କ ଅଭୀଷ୍ଟ ପୂରଣାର୍ଥେ ଉନ୍ମନସ୍କତାରେ କହିଲେ, "ମାତ ! ମୁଁ ଯେପରି ନିରପେକ୍ଷ ସେପରି ସମଲୋଷ୍ଟ୍ରକାଞ୍ଚନ, ମୋର ଭକ୍ଷ୍ୟପେୟାଦିରେ ଉତ୍ତମାନୁତ୍ତମ ବିଚାର ନାହିଁ । ସୁଖ ଦୁଃଖର ଅପେକ୍ଷା ଓ ଉପେକ୍ଷା ନାହିଁ, ତଥାପି ଗୁରୁଦେବଙ୍କ ଅଭିଳାଷ ମେଣ୍ଟାଇବାପାଇଁ ଅଳି କରୁଅଛି । ପ୍ରାର୍ଥିତ ଦାନରେ ଗୁରୁ ସପର୍ଯ୍ୟାମୂଳକ ଇଚ୍ଛା ଫଳବତୀ କର ।" ବ୍ରାହ୍ମଣୀ କହିଲେ, "ହେ ବଟୁକ ! ବର୍ତ୍ତମାନ ତ ସେସବୁ କିଛି ନାହିଁ । କିପରି ଅବା ଦେଇପାରିବି ? ଭିକ୍ଷୁକମାନେ ଗୃହସ୍ଥ ପ୍ରତି ଏଭଳି ନିର୍ବନ୍ଧ କରିବା ତ ଉଚିତ ନୁହେଁ । ଯାହା ହିଁ ଦିଆଯାଏ ତାହା ନେବା ଉଚିତ ।" ଫେର୍ ଗୋରକ୍ଷିତ କହିଲେ, "ସାଧ୍ୱି ! ମୁଁ ଆତ୍ମତୋଷଣ ପରିପୋଷଣାର୍ଥ ପ୍ରାର୍ଥନା କରେ ନାହିଁ । ଆଚାର୍ଯ୍ୟାଦେଶ ଅଲଂଘନୀୟ ମନେକରି ତତ୍‌ପ୍ରିଣନାର୍ଥ ବାରମ୍ବାର ଜଣାଉଅଛି । ମୋତେ ଦୋଷ ଦିଅ ନାହିଁ । ତୁମ୍ଭେ ଅବଶ୍ୟ ପ୍ରାର୍ଥିତ ପ୍ରଦାନ କରିପାରିବ ବୋଲି ମୋର ସମ୍ପୂର୍ଣ୍ଣ ବିଶ୍ୱାସ । ଅଥଚ ପ୍ରାର୍ଥିତାର୍ଥ ସିଦ୍ଧିବିନା ମୁଁ ଏଠାରୁ ଯାଇ ନ ପାରେ ।" ଏହା କହି ସେଠାରେ ବସି ରହିଲେ ।

କେତେବେଳେ ସେହି ସୁବ୍ରାହ୍ମଣୀ ବୋଇଲେ କି, "ହେ ଦ୍ୱିଜବର୍ଯ୍ୟ । ଏତାଦୃଶ ନିର୍ବନ୍ଧ କର ନାହିଁ । ମୋର ଧର୍ମାଚରଣରେ ପ୍ରତ୍ୟବାୟ ଘଟାଅ ନାହିଁ । ମୋର ଧର୍ମ୍ମ ଚିକୀର୍ଷାରେ ଅଧର୍ମ ଆସି ଭୟଙ୍କର ବେଶରେ ଉପସ୍ଥିତ ହେଉଅଛି । ବୋଧହୁଏ ମୋର କୌଣସି ଭୀଷଣ ଅପରାଧ ସମୁତ୍ପାଦନାର୍ଥ ତୁମ୍ଭେ ଆସିଅଛ । ସତ୍ୟତଃ ଭିକ୍ଷାର୍ଥ ନୁହେଁ, ସଜ୍ଜନଙ୍କ ପକ୍ଷେ ଅନର୍ଥ କଳହ କରା ଅନୁଚିତ", ଇହା କହି ବ୍ରାହ୍ମଣୀ ରୋଷ କଷାୟିତ କଟାକ୍ଷରେ ଚାହିଁଲେ । ତାହାଙ୍କର ରୁକ୍ଷ ଭାଷଣ ଶୁଣି ଗୋରକ୍ଷିତ ନିରାଶାଜର୍ଜରିତ ହୃଦୟରେ

କିପରି ଗୁରୁଦେବଙ୍କ ଆଦେଶ ସାଧିତ ହେବ, ଭାବି, ଶୁଷ୍କକଣ୍ଠରେ କହିଲେ, ''ହେ ବିପ୍ରବଧୂ ! ମୁ ତ ଅକିଂଚନ, ପ୍ରାର୍ଥିତର ବିନିମୟରେ ଦେବାପାଇଁ ମୋର ଆଉ କିଛି ନାହିଁ । ଗୁରୁଙ୍କ ଆଦେଶ ପାଳନରେ ଦୀର୍ଘସୂତ୍ରୀ ହୋଇ ଆତ୍ମାକୁ ସାପରାଧ କରିଅଛି । ଏହି ଅପରାଧ-ଲଜ୍ଜିତ ଚକ୍ଷୁରେ ଗୁରୁଦେବଙ୍କୁ କିପରି ଦର୍ଶନ କରିବି । ଅତଏବ ମୋର ଚକ୍ଷୁଧାରଣ ଶଲ୍ୟଧାରଣ ପ୍ରାୟ ଅସହ୍ୟ ହୋଇ ପଡ଼ିଅଛି । ଯଦିଚ ଇଚ୍ଛା କର ସେହି ଚକ୍ଷୁ ପ୍ରତିଶୋଧ ଦେବି, ଦୟା ପୂର୍ବକ ପ୍ରାର୍ଥିତ ପ୍ରଦାନ କର ।

ସେହି ଅବନିସୁର – ବନିତା ଯତିଙ୍କ ବ୍ୟାକୁଳର କଥା ଦୁର୍ଜ୍ଞାନତଃ କୌତୁକାବହ ମନେକରି ସ୍ତ୍ରୀସୁଲଭ ଅବିବେକିତା ବଶରୁ ତଦୀୟ ଦୃଢ଼ନିଶ୍ଚୟତା ଗୁରୁଭକ୍ତିର ପ୍ରଗାଢ଼ନିଷ୍ଠତା ଉପଲବ୍ଧି କରି ନ ପାରି ସସ୍ମିତେ କହିଲେ କି, ''ହେଉ ତେବେ ତାହାହେଲେ ସୁଭକ୍ଷମାନ ପାଇପାରିବ ।'' ଯୋଗିପ୍ରବର ତତ୍‌କ୍ଷଣାତ୍ ବିକଶିତ କମଳାଭ-ଚାରୁ ଚକ୍ଷୁ ଦ୍ୱୟରୁ ଏକ ଉତ୍ପାଟିତ କରି ସମ୍ମୁଖରେ ନିହିତ କଲେ । ତେତେବେଳେ ଏକାନ୍ତ ଭୟବିହ୍ୱଳ ସୁନୀତି ସୁଦତୀ ବ୍ରହ୍ମଯୁବତୀ ସହସା ଧାଇଁଯାଇ ଯତୀଙ୍କ ଅନ୍ୟ ଚକ୍ଷୁ ଉତ୍ପାଟନୋଦ୍ୟତ ହସ୍ତକୁ ଆକର୍ଷି ଧଇଲେ । ହାୟ ହାୟ !! ଦୁହିଁଙ୍କର ଏକି ବିପରୀତ ଘଟନା !! ଏହା ଯଦି ରାଜପୁରୁଷମାନଙ୍କ ନେତ୍ର ଗୋଚର ହୁଏ, ମୁଁ ଅବଶ୍ୟ କଠୋର ଭାବରେ ଦଣ୍ଡିତ ହେବି ଯେ ! ସମ୍ପ୍ରତି ଆତ୍ମାକୁ ଘୋର କଳୁଷିତ କଲି ଯେ !! କି ଉପାୟ କରିବି ? ଇତ୍ୟାକାର ସ୍ୱାଧିକ୍ଷେପ ଓ ସାଧ୍ୱସରେ ଅସ୍ଥିର ହୋଇ ବହିର୍ଦ୍ୱାର ରୁଦ୍ଧ କରି ଯୋଗୀଶ୍ୱର ନେତ୍ରଗଳିତ ଅବିଶ୍ରାନ୍ତ ରକ୍ତଧାରକୁ ନିଜ ଚେଳାଞ୍ଚଳରେ ପୋଛି ବସିଲେ । ବିପଦରୁ ଉଦ୍ଧାର ପ୍ରାପ୍ତିରେ ନିରୂପାୟ ହୋଇ ଶୋକରେ ନିମଗ୍ନ ହେଲେ । ଉରସ୍ତାଡ଼ନ ପୂର୍ବକ ବିଳାପ କରିବାକୁ ଲାଗିଲେ । ଗୋରକ୍ଷିତ ଟିକିଏ ଆଶ୍ୱସ୍ତ ହେଲାପରେ କହିଲେ, ହେ ସୁଭାଗ୍ୟଶାଳିନି ! ଭୀତିଗ୍ରସ୍ତ ହୁଅ ନାହିଁ । ଏଥିପାଇଁ ଅନ୍ୟ ପ୍ରକାର ଚିନ୍ତା କର ନାହିଁ । ଶୀଘ୍ର ମଦୀୟ ବାଞ୍ଛିତ ଭକ୍ଷମାନ ଆଣିଦିଅ । ଗୋରକ୍ଷଙ୍କ ଏତାଦୃଶ ବିଶ୍ୱାସନୀୟ ଆଶ୍ୱାସ ବଚନମାନଙ୍କରେ ବ୍ରାହ୍ମଣୀ କିଞ୍ଚିତ୍ ଆଶ୍ୱସ୍ତ ହୋଇ ଅବିଳମ୍ବେ ଯଥେଷ୍ଟ ସୁଭକ୍ଷ୍ୟପେୟାଦି ସୁସମ୍ପନ୍ନ କରି ତାହାଙ୍କୁ ସମର୍ପଣ କଲେ ।

ଗୋରକ୍ଷ ବ୍ରାହ୍ମଣୀଙ୍କୁ ଶାନ୍ତି ସ୍ୱସ୍ତି ପ୍ରଦାନରେ ଆଶ୍ୱସ୍ତ କଲାପରେ ତଦତ୍ତ ସୁଭକ୍ଷ୍ୟ ପେୟାଦି ଧରି ଗୁରୁଙ୍କ ଦିଦୃକ୍ଷାରେ ଉଠିଲେ । ବିଳମ୍ବବଶତଃ ଏହି କୃତାପରାଧ ବିକ୍ଷତାକ୍ଷି ଗୁରୁଦେବ ନ ଦେଖନ୍ତୁ ମନେ କରି ସମାଚ୍ଛାଦିତ ନେତ୍ରରେ ଗୁରୁଙ୍କ ନିକଟରେ ପ୍ରବିଷ୍ଟ ହେଲେ । ''ପ୍ରଭୁ ଗୁରୁଦେବ ! ମଦୀୟ ଦୀର୍ଘସୂତ୍ରତା ଅପରାଧ କ୍ଷମାକରନ୍ତୁ, ଭବଦୀୟ ବାଞ୍ଛିତ ଏହି ଯାଚିତ୍‌କ ବସ୍ତୁତକ ଗ୍ରହଣ କରନ୍ତୁ'', ଇହାକହି ଅନ୍ତିକରେ ସବୁ ନିହିତ କଲେ । ତଦା ମତ୍ସ୍ୟେନ୍ଦ୍ରନାଥ ବାତ୍ସଲ୍ୟାତିଶୟରୁ ଆପାଦମସ୍ତକ ପ୍ରତି ପ୍ରତୀକରେ ଦୃଷ୍ଟି ନିକ୍ଷେପି ପଚାରିଲେ, ବତ୍ସ ! ତ୍ୱଦୀୟ ସୁରମ୍ୟ ବିଶାଳ ନେତ୍ରର ଏକଣ ? ଉପାଧି ଗୁରୁଙ୍କ

ଛାମୁରେ ମିଥ୍ୟାର ପ୍ରଳାପ ଅକରଣୀୟ ମନେ କରି ସେ ନିଜର ଚକ୍ଷିତ ବୃତ୍ତାନ୍ତ ଆମୂଳାନ୍ତ ଯଥାର୍ଥ ଜଣାଇଲେ । ମତ୍ସ୍ୟେନ୍ଦ୍ରନାଥ ସେସବୁ ଶୁଣି ଅପିଚ ଭବିଷ୍ୟମାଣ ଅପାୟର ନିରାମୟ ଉପାୟ ଜ୍ଞାନବଳରୁ ସ୍ଥିର କରି ବିସ୍ମୟ-ସ୍ନେହର ବଦନରେ ପ୍ରକାଶ କଲେ, "ବତ୍ସ ! ଭଲ କଲ, ଯତ୍‌କିଞ୍ଚିତ୍ ଆହାର୍ଯ୍ୟ ପଦାର୍ଥ ପାଇଁ ନେତ୍ର ଗୋଟିଏ ପ୍ରତିଶୋଧ ଦେଇଅଛ, ଅହୋ !! ତୁ ରେ କେଡ଼େ ନିରପେକ୍ଷତା ଯେ, ସ୍ୱ ଶରୀରେ ମଧ କେତେ ନିରଭିମାନିତା ଯେ । ଗୁରୁ ସନ୍ତର୍ପଣରେ ଉଦ୍ଦାଲକଙ୍କ (୧) ଅପେକ୍ଷା ତୁମର କେଡ଼େ କଠୋର ନିଷ୍ଠତା ଯେ !! ତେବେ ମୁଁ କହୁଅଛି ମୋତେ ଗୋଟିଏ ନେତ୍ର ଦିଅ ତ ।" "ଏ ତ ମହାଭାଗ୍ୟର କଥା", ଇହା କହି ଗୋରକ୍ଷ ଅନ୍ୟ ନେତ୍ରଟିକୁ ଉତ୍‌ପାଟିତ କରି ଗୁରୁଙ୍କ ପଦାବ୍ଜରେ ସମର୍ପଣ କଲେ । ତଦା ମତ୍ସେନ୍ଦ୍ରନାଥ ଗୋରକ୍ଷକଙ୍କ ପ୍ରଗାଢ଼ ଅଟଳ ଗୁରୁଭକ୍ତିରେ ଏକାନ୍ତ ସନ୍ତୁଷ୍ଟ ହୋଇ ଆପଣାର ସର୍ବାର୍ଥସିଦ୍ଧିସାଧକ ହସ୍ତଦ୍ୱୟରେ ବ୍ରହ୍ମ ମଣ୍ଡଳରୁ ଅମୋଘ ମନ୍ତ୍ରିତ ଜଳନେଇ ଗୋରକ୍ଷକଙ୍କ ବିକ୍ଷତାକ୍ଷିଦ୍ୱୟ ପ୍ରୋକ୍ଷିତ କଲେ । ତତ୍‌କ୍ଷଣାତ୍ ଗୋରକ୍ଷ ପୂର୍ବାପେକ୍ଷା ପବିତ୍ର ସୁନେତ୍ର ହେଲେ ।

ଏହିପରି ସେ ଗୁରୁଶିଷ୍ୟଙ୍କର କେତେକ କାଳ ଅତୀତ ହେଲା । ଦିନେ ମତ୍ସ୍ୟେନ୍ଦ୍ର ସ୍ୱାମୀ କହିଲେ, ବତ୍ସ ! ଗୋରକ୍ଷ ! ତୁମେ ସର୍ବଥା ସତ୍ତୁମ ଶିଷ୍ୟ, ତ୍ୱାଦୃଶ ଶିଷ୍ୟ ଏଲୋକରେ ଦୁର୍ଲଭ, ତୁମେ ବର୍ତ୍ତମାନ ତାରକମନ୍ତ୍ର ଗ୍ରହଣ କର ।" ଇହା କହି ପ୍ରୋକ୍ତ ମନ୍ତ୍ରର ଉପଦେଶ ପୂର୍ବକ ଆଦେଶ କଲେକି ବତ୍ସ ଯୋଗିମାନେ ବହୁ ନିୟମରେ ଆବଦ୍ଧ, ତୁମକୁ ସେହି ନିୟମଗୁଡ଼ିକ ପାଳିବାକୁ ହେବ । ଭୋଗିଜନ ପ୍ରାତଃ କାଳରୁ ଭୁକ୍ତ-ସ୍ରକ୍‌କୁ ତ୍ୟାଗ କଲା ପରି ନିଃଶେଷତଃ କ୍ରୋଧଦ୍ୱେଷାଦି ତ୍ୟାଗ କରିବାକୁ ହେବ । ସ୍ଥୈର୍ଯ୍ୟ, ଧୈର୍ଯ୍ୟ, ମନଃ ଶୌଚ, ଆର୍ଜ୍ଜବ, ଅନୃଶଂସ ପ୍ରଭୃତି ଗୁଣମାନ ଆଚରିବାକୁଁ ହେବ । ସର୍ବାଗ୍ରେ କଷ୍ଟ ସହିଷ୍ଣୁତା, ମନର ଏକାଗ୍ରତା, ଭଗବତ୍ ପ୍ରତି ଏକନିଷ୍ଠତା, ଭୋଗବାସନା ପରିହାର, ଯାନାରୋହଣ ବିସର୍ଜନ, ନବଦ୍ୱାରରେ ବାୟୁ ନିରୋଧ, ସଂଯତ ବାୟୁର କ୍ରମୋତ୍ସର୍ଗ, ଯାଚିତ ଭିକ୍ଷାନ୍ନ, ଲୋକ ବସତି ରହିତ-ବୃକ୍ଷମୂଳ ସେବନ, ନିର୍ଲବଣ ଭୋଜନ, ସ୍ତ୍ରୀ ମାତ୍ରକେ ମାତୃଚିନ୍ତା, ପୁରୁଷମାତ୍ରକେ ପିତୃଚିନ୍ତା ଇତ୍ୟାଦି ପ୍ରତି ଖୁବ୍ ତୀକ୍ଷ୍ଣ ଦୃଷ୍ଟି ରଖିବାକୁ ହେବ ।

ଯେଉଁ ସର୍ବାର୍ଥ ସାଧକମନ୍ତ୍ରକୁ ପୁରା ଭଗବାନ ବିଷ୍ଣୁ ମହାଦେବଙ୍କୁ ଉପଦେଶତଃ ପ୍ରଦାନ କରିଥିଲେ ମତ୍ସିକା ଗର୍ଭରେ ରହି ମତ୍ସ୍ୟେନ୍ଦ୍ରନାଥ ଯାହା ଶିବଙ୍କ ମୁଖରୁ ପ୍ରାପ୍ତ ହୋଇଥିଲେ, ଗୋରକ୍ଷ ସେହି ତାରକ ମହାମନ୍ତ୍ର ଏବଂ ନିରପାୟ ଉପାୟମାନ ସହ ନାନା ପ୍ରକାର ମନ୍ତ୍ରନିବହ ଓ ସାଙ୍ଗୋପାଙ୍ଗୋ ଯୋଗକ୍ରମ ଗୁରୁଙ୍କଠାରୁ ସଂପ୍ରାପ୍ତ ହୋଇଥିଲେ ।

---

(୧) ଉଦ୍ଦାଳକଙ୍କ ଚରିତ ମହାଭାରତ ଆଦିପର୍ବରେ ବର୍ଣ୍ଣିତ ।

ଏ ମହାତ୍ମା ତଦୀୟ ଗୁରୁଦେବଙ୍କ ପରି "ଯୋଗିନାଂତୁ ତପସାଖିଳ ସଂଶି" ଏତତ୍‌କ୍ରମରେ ଯୌଗିକ ତପସ୍ୟା ବଳରୁ (୨) ସମଗ୍ର ସିଦ୍ଧିରେ ବଦରାୟମାଣ କରିପାରି ଥିଲେ । ସ୍ୱୟଂ ନିରୀହ ଥାଇ ସୁଦ୍ଧା ଆବଶ୍ୟକମତେ ଆଶ୍ରିତଙ୍କୁ ଅଖଣ୍ଡ ବୈଭବରେ ବିଳସାଇ ପାରୁଥିଲେ । ଯେପରି ଅଣିମା ସିଦ୍ଧିର ସମ୍ପନ୍ନ-ସାଧନତ୍ୱରୁ କାର୍ଯ୍ୟକାଳେ ଅଣୁସ୍ୱରୂପ ହୋଇପାରନ୍ତି, ସେପରି ମହିମା ସିଦ୍ଧିବଳରୁ ଅତି ମହତ୍ ରୂପ ହେବା ସୁଦ୍ଧା ତଦୀୟ ଇଚ୍ଛାଧୀନ ଥିଲା । ପ୍ରୟୋଜନାନୁସାରେ ଗରିମା ସିଦ୍ଧିବଳରେ ଗୁରୁତର ହେଲା ପରି ସମୟେ ଲଘିମା ସିଦ୍ଧି ବଳରେ ଲଘିଷ୍ଠ ହୋଇ ଜଳରାଶୀର ଉପରି ସମାସ୍ତୃତ କୃଷ୍ଣାଜିନରେ ଉପବିଷ୍ଟ ହୋଇ ବାୟୁ ବେଗରେ ଅଭୀଷ୍ଟ ଅଗମ୍ୟ ସ୍ଥାନମାନଙ୍କୁ ମଧ ଯାଇପାରୁଥିଲେ । ଜଳ ମଧରେ ଅକ୍ଲେଦ୍ୟ ରହିପାରୁଥିଲେ, ପ୍ରାପ୍ତି ଓ ପ୍ରକାମ୍ୟ ସିଦ୍ଧିଦ୍ୱାରା ଇଚ୍ଛାର ଅପରିହାରତ୍ୱରେ ସ୍ୱର୍ଗାଦି ଲୋକସ୍ଥ ପଦାର୍ଥ ନିଚୟକୁ ଏପରିକି ଚନ୍ଦ୍ରଲୋକରୁ ଚନ୍ଦ୍ରଙ୍କୁ ସୁଦ୍ଧା ଅବିଳମ୍ବେ ସ୍ୱୀୟ କରସ୍ଥ କରିପାରୁଥିଲେ । ଏହାଙ୍କର ଇଶିତ୍ୱ ସିଦ୍ଧି ପ୍ରଭାବରୁ ସମାବିଷ୍ଟ ବୃକ୍ଷଲତାଦି ସ୍ଥାବରପ୍ରକର ମଧ ଆଜ୍ଞାପାଳନରେ କାର୍ଯ୍ୟକାରୀ ହେଉଥିଲେ, ଏବଂ ବଶିତ୍ୱ ସିଦ୍ଧିର ବଶବର୍ତ୍ତିନୀ ହୋଇ ଭୂଦେବୀ ସୁଦ୍ଧା ନିମଜ୍ଜନ ଓ ଉନ୍ମଜ୍ଜନାର୍ଥ ତାହାଙ୍କୁ ବିବର ପ୍ରଦାନ କରୁଥିଲେ । ଯେ ଯୋଗୀଶ୍ୱର ସିଦ୍ଧ ପାଦୁକ – ମନ୍ତ୍ର ବଳରେ ଯଥେଚ୍ଛାକ୍ରମେ ସମଗ୍ର ଭୂମଣ୍ଡଳରେ ଭ୍ରମଣ କରିପାରୁଥିବାରୁ ଏହି ଉଦଧିମେଖଳା ଧରଣୀ ତଦୀୟ ସ୍ୱୈର ସଞ୍ଚାରଭୂମି ହୋଇପଡ଼ିଥିଲା । ଏହାଙ୍କର ଏପରି ଶକ୍ତି ଥିଲା ଯେ ବିହଙ୍ଗମପ୍ରାୟ ନଭୋମଣ୍ଡଳରେ ଅନାୟାସେ ଉଡ୍ଡୀନ ହୋଇ ସ୍ୱର୍ଗାଦି ସ୍ଥାନମାନଙ୍କରେ ସଂଚାର କରିପାରୁଥିଲେ । ସମନ୍ତ ସିଦ୍ଧାଞ୍ଜନ ଯୋଗେ ଅମାରଜମାର ପ୍ରଧ୍ୱାତଧ୍ୱାନ୍ତ ମଧରେ ଶତଯୋଜନ ପର୍ଯ୍ୟନ୍ତ ସମସ୍ତ ଦୃଷ୍ଟିଗୋଚର କରିପାରୁଥିଲେ । ଅନ୍ନପୂର୍ଣ୍ଣା ମନ୍ତ୍ର ବଳରେ ଏକମାତ୍ର ସିଦ୍ଧାନ୍ନ ଭାଣ୍ଡରେ ବହୁ ଲକ୍ଷ ଲୋକଙ୍କୁ ପରିତୃପ୍ତ କରି ସୁଦ୍ଧା ତାହାକୁ ଅତୁଟ ରଖିପାରୁଥିଲେ । ବଜ୍ରକଞ୍ଚ ମନ୍ତ୍ରବଳରେ ଖଡ଼୍‌ଗାଦି ପ୍ରହାରରେ ମଧ ଅଛେଦ୍ୟ ଶରୀର ଓ ବଜ୍ରାଙ୍ଗ ହୋଇରହିଥିଲେ । କୁହୁକ ମନ୍ତ୍ର ବଳରେ ସର୍ବତ୍ର ବିହାର କରି ସୁଦ୍ଧା ଅଦୃଶ୍ୟ ରହିପାରୁଥିଲେ । ତାହାଙ୍କର ଅନବଦ୍ୟା ତିରସ୍କରିଣୀ ବିଦ୍ୟା ସର୍ବଥା ଅନୁପମେୟ ଥିଲା । ସେ ନିଜେ ନିଷ୍କିଞ୍ଚନ ରହି ସୁଦ୍ଧା ଇଚ୍ଛା ସତ୍ତ୍ୱେ ହସ୍ତ ସ୍ପର୍ଶମାତ୍ରେ ପ୍ରସ୍ତରାଦିକୁ ସ୍ୱର୍ଣ୍ଣରତ୍ନରେ ପରିଣତ କରିପାରୁ ଥିଲେ । ମୃତସଂଜୀବନୀ ମନ୍ତ୍ର ବଳରେ କେତେକ କାଳପାଇଁ ମୃତକୁ ଜୀବିତ କରିବାର ଶକ୍ତି ପାଇଥିଲେ । ଇତ୍ୟାକାରକ ବହୁବିଧ ମନ୍ତ୍ର ଓ ଯୋଗ ସାଧନରେ ବଳୀୟାନ ଗୋରକ୍ଷକଙ୍କର କୌଣସି କଥା ଅସାଧ ନ ଥିଲା ।

ଯୋଗୈଶ୍ୱର୍ଯ୍ୟର କ୍ରମ ଶରୀରତଃ ଅନୁଭୂତ ନ ଥିଲେ ସୁଦ୍ଧା ତାହା ଯେଉଁମାନଙ୍କର ଜ୍ଞାନର ବିହିତ ଥାଏ, ସେମାନେ ଅବଶ୍ୟ ଏସବୁକୁ ଯୌଗିକ ସିଦ୍ଧି ପରିପାଟୀକୁ ସତ୍ୟଭୂତ ମନେ କରିବେ; ସନ୍ଦେହ ନାହିଁ, ମାତ୍ର ଯେଉଁମାନେ ତଦ୍‌ଜ୍ଞାନରେ ଏକାବେଳକେ ପରିଶୂନ୍ୟ

(୨) ଅଷ୍ଟତଃ ସିଦ୍ଧି– ଅଣିମା ମହିମା ଚୈବ ଗରିମା ଲଘିମା ତଥା । ପ୍ରାପ୍ତିଃ ପ୍ରାକାମ୍ୟ ମିଶିତ୍ୱଂ ବଶିତ୍ୱଂ ଚାଷ୍ଟ ସିଦ୍ଧୟଃ ।

ସେମାନଙ୍କ ପକ୍ଷେ ଏଥିରୁ ଅନେକ କଥା କପୋଳକଳ୍ପିତ ବା ଅଳୀକ ପ୍ରାୟ ଉପଲବ୍ଧ ହୋଇପାରେ । ଅନେକ ଜାଣି ଅଛନ୍ତି ଏତାଦୃଶ ଯୋଗୈଶ୍ୱର୍ଯ୍ୟର ଘଟନାର କଥାମାନ ଶବ୍ଦପ୍ରମାଣତଃ ପୁରାଣମାନଙ୍କରେ ଅନେକତ୍ର ଚରିତନିବନ୍ଧନପୂର୍ବକ ବର୍ଣ୍ଣିତ ଅଛି । ଯୌଗିକ ଜ୍ଞାନଶୂନ୍ୟ ବ୍ୟକ୍ତିମାନେ ଏଭଳି ପୌରାଣିକ ସନ୍ନିଧାନଗୁଡ଼ିକୁ ସୁଦ୍ଧା ଅବିଶ୍ୱସନୀୟ ମନେ କରିଥାନ୍ତି । ଯୋଗସିଦ୍ଧିର ମହଦ୍‌ଭୂତ କ୍ରମ ଅବଗତ କରିପାରିଲେ ଏହି ଭ୍ରାନ୍ତି ବିଦୂରିତ ହୁଏ ।

ଯୋଗୀଶ୍ୱର ମତ୍ସ୍ୟେନ୍ଦ୍ରନାଥ କିମ୍ବା ଗୋରକ୍ଷ ନାଥଙ୍କର ଅବତାର ସମୟ ନିର୍ଦ୍ଦେଶକରା ବଡ଼ କଠିନ । ଏହାର କୌଣସି ପ୍ରକାର ତୃପ୍ତିକର ପ୍ରମାଣ କୁତ୍ରାପି ପରିଦୃଷ୍ଟ ନ ଥିବାରୁ ଏ ମହାତ୍ମା ଦ୍ୱୟ ପୌରାଣିକ ଯୁଗରୁ ଅବତୀର୍ଣ୍ଣ, ଇହା ଠିକ୍ ନିର୍ଦ୍ଧାରିତ କରାଯାଇ ନ ପାରେ । ପ୍ରାଚୀନ ବଙ୍ଗାଧିପତି ଗୋବିନ୍ଦ ଚନ୍ଦ୍ରଙ୍କ ସହିତ ଯତୀନ୍ଦ୍ର ଗୋରକ୍ଷନାଥଙ୍କର ଔପଦେଶିକ ସମ୍ବନ୍ଧ ଥିବାର ଅନେକତ୍ର ପ୍ରମାଣିତ ହୁଏ । ଯଶୋବନ୍ତ ଦାସ ସ୍ୱଲିଖିତ ଯତିଦୀକ୍ଷା ମୂଳକ ଗୋବିନ୍ଦଚନ୍ଦ୍ରାଭିଧ ପୁରାଣ ଓଡ଼ିଆ ପଦ୍ୟ ଗ୍ରନ୍ଥରେ ମତ୍ସ୍ୟେନ୍ଦ୍ର ଓ ଗୋରକ୍ଷ ସ୍ୱାମୀଙ୍କର ସମଧିକ ପ୍ରାଚୀନତ୍ୱ ସ୍ୱୀକାର କରି ଲେଖନ୍ତି କି, ଏ ଦୁହେଁ ତ୍ରେତାଯୁଗରେ ଶ୍ରୀରାମ ଚନ୍ଦ୍ରଙ୍କର ସମର କୌଶଳର ଦିଦୃକ୍ଷାରେ ସିଦ୍ଧମାନଙ୍କସହ ସମାଗତ ହୋଇଥିଲେ । ଯଶୋବନ୍ତ ଦାସ ମହାଶୟ ଏହାର ପ୍ରମାଣ କାହିଁରୁ ପାଇ ଅଛନ୍ତି କିମ୍ବା ଇହା ତାହାଙ୍କର ମନଗଢ଼ା, କହି ନ ପାରୁଁ । ଆମ୍ଭମାନଙ୍କର ଅସକୃଦ୍ ପରିଦୃଷ୍ଟ ଭାରତ ରାମାୟଣ ଭାଗବତାଦିରେ ତଥାଚ ବହୁ ଅଭ୍ୟସ୍ତ ପାଦ୍ମ, କୌର୍ମ, ବୈଷ୍ଣବ ପ୍ରଭୃତି ପୁରାଣମାନଙ୍କରେ ଏକଥା ଦେଖାଯାଉ ନ ଥିବାରୁ ଯଶୋବନ୍ତଙ୍କର ଏହି ମତରେ ପ୍ରୋକ୍ତ ଯୋଗିଦ୍ୱୟଙ୍କ ଆବିର୍ଭାବ ସମୟ ତ୍ରେତାଯୁଗକୁ ଉଠାଇନେବାକୁ ମନ ମାନେ ନାହିଁ । ତଥାପି ଆଉ ପୁରାଣ ବା କଳ୍ପ ଶାସ୍ତ୍ରରେ ଏହାର ପ୍ରମାଣ ନାହିଁ ବୋଲି କହିବାକୁ ଏକାବେଳକେ ସାହାସ ବଳେ ନାହିଁ । ପରନ୍ତୁ ଏ ମହାଶୟ ପ୍ରୋକ୍ତ ଗୋବିନ୍ଦ ଚନ୍ଦ୍ର ପୁସ୍ତକର ଅବତରଣିକାରେ ଲେଖିଅଛନ୍ତି ଯେ "ସ୍ୱର୍ଲୋକବାସୀ କେହି ଗାନ୍ଧର୍ବ ଜଣେ ତାପଶେନ୍ଦ୍ର ଦୁର୍ବାସାଙ୍କୁ ଗୋବିନ୍ଦଚନ୍ଦ୍ରଙ୍କ ଚରିତ୍ର ଜିଜ୍ଞାସା କଲାରୁ ସେ ତାହାଙ୍କୁ ସମୁଦାୟ କଥାନକଟି କହିଅଛନ୍ତି ।" ସାଧାରଣତଃ ଲୋକେ ଯେଉଁ ଯେଉଁ ଆଖ୍ୟାନ ଶ୍ରବଣ କରନ୍ତି ତାହା ଯଦି ଆର୍ଷ ସମ୍ବାଦାତ୍ମକ ହୋଇଥାଏ ତେବେ ବିଶ୍ୱାସତଃ ପୌରାଣିକ ଚରିତର ଅନ୍ତର୍ଭୁକ୍ତ କରିଥାନ୍ତି । ଅତଏବ ଗୋରକ୍ଷ ଶାସିତ ଗୋବିନ୍ଦଚନ୍ଦ୍ରଙ୍କ ଚରିତ ସନ୍ନିଧାନ ସ୍ୱର୍ଗବାସୀ ଗନ୍ଧର୍ବ ଓ ଦୁର୍ବାସାଙ୍କ ସମ୍ବାଦରେ ସମ୍ପର୍ଣ୍ଣ ହୋଇଥିବାରୁ ଏହି ଆଖ୍ୟାନର ଘଟନାଟି ଅତି ପ୍ରାଚୀନ ବୋଲି କହିବା ଅନୁପପନ୍ନ ନୁହେଁ । ସୁତରାଂ ମତ୍ସ୍ୟେନ୍ଦ୍ର ଓ ଗୋରକ୍ଷନାଥଙ୍କ କଥାତ ତାହାର ଉପରିଷ୍ଟେୟ । ତଥାଚ ଆସେତୁକୈଳାଶ ଲୋକେ ଏ ଦୁହିଁଙ୍କ ଚରିତାବଳୀକୁ ପୌରାଣିକ ଗାଥା ପ୍ରାୟ ମନେ କରନ୍ତି, ଅପିଚ ଏହାଙ୍କ ଘଟଣାବଳୀ ସୁଦ୍ଧା ତଦ୍‌ବଦ୍ ଅପ୍ରାକୃତ ଓ ଅମାନୁଷିକ । ଏ ସମ୍ବନ୍ଧେ ଆମ୍ଭମାନଙ୍କର ସର୍ବପ୍ରଥମ ମହାକବି ଉତ୍କଳବ୍ୟାସ ଶ୍ରୀମାନ୍ ସାରଳା ଦାସ ମହୋଦୟ ସ୍ୱକୀୟ ମହାଭାରତ ଗ୍ରନ୍ଥରେ ସଭାପର୍ବସ୍ଥ ରାଜସୂୟ ଯାଗ ସଂକ୍ରାନ୍ତ ରାଜନ୍ୟାଦି ଆମନ୍ତ୍ରଣ ପ୍ରକ୍ରିୟାରେ ପୌରାଣିକ ଗାଥା ସହ ଗୋରକ୍ଷନାଥଙ୍କ

ଚରିତକୁ ମିଳାଇ ଅଛନ୍ତି । ସେ କହନ୍ତି ନକୁଳ ଗୋରକ୍ଷଙ୍କୁ ରାଜସୂୟ ସତ୍ରରେ ଯୋଗଦେବା ପାଇଁ ଭକ୍ତି ପୂରଃସର ନିମନ୍ତ୍ରଣ କରିଥିଲେ । ଇହା ମୂଳ ମହାଭାରତରେ ଅନୂଦିତ ସତ୍ୟ, ତଥାପି ଅନୁମିତ ହୁଏ ସାରଳା ଦାସଙ୍କର ଏହି ଚରିତ ସନ୍ନିଧାନଟି କୌଣସି ଐତିହାସିକ ଘଟଣାର ଅନୂଦିତ ହୋଇଥିବ । ଯଦିଚ ଏଥିରେ ଆସ୍ଥା ହୁଏ ତେବେ କହିବାକୁ ହେବ ଯେ, ମତ୍ସ୍ୟେନ୍ଦ୍ରନାଥ କିମ୍ବା ଗୋରକ୍ଷନାଥ ଆଜକୁ ପ୍ରାୟ ଚାରି ସହସ୍ର ବର୍ଷ ପୂର୍ବେ ଅବତୀର୍ଣ୍ଣ ହୋଇଥିଲେ । ପରିଶେଷରେ ଏ ସମସ୍ତଙ୍କର ବିଚାରପୂର୍ବକ ଇହା ହିଁ କୁହାଯାଇପାରେ ଯେ ମତ୍ସ୍ୟେନ୍ଦ୍ର ଓ ଗୋରକ୍ଷଙ୍କ ଆବିର୍ଭାବ ପୌରାଣିକ ଯୁଗର ନ ହେଲେ ସୁଦ୍ଧା ତାହାର ଅନତିଦୂରବର୍ତ୍ତୀ ସମୟରେ ଆର୍ଯ୍ୟାବର୍ତ୍ତରେ ସମ୍ଭବିଥିଲା, ଏଥିରେ ସନ୍ଦେହ ନାହିଁ । ଅଦ୍ୟାପି ଭାରତର ପୂର୍ବୋତ୍ତର ପ୍ରଦେଶରେ ପୂର୍ବ ପ୍ରଚଳିତ ନାମରେ ଅଭିହିତ ଗୋରକ୍ଷପୁର ନାମକ ସ୍ଥାନ ଏହାଙ୍କ ଉତ୍ପତି କିମ୍ବା ସମାଧିର ସ୍ଥାନ ଥିଲା ।

ମତ୍ସ୍ୟେନ୍ଦ୍ରନାଥ ଓ ଗୋରକ୍ଷନାଥ ଯୋଗ ସାଧନ କ୍ରମର ଆସନ, ପ୍ରାଣ ସଂରୋଧ, ପ୍ରତ୍ୟାହାର, ଧାରଣା, ଧ୍ୟାନ ଓ ସମାଧିରେ ଲବ୍ଧ-ପ୍ରତିଷ୍ଠ ପ୍ରଧାନ ସିଦ୍ଧପୁରୁଷ ତଥାଚ ହଠଯୋଗ ବିଦ୍ୟାରେ ପ୍ରାପ୍ତାଖିଳୈଶ୍ୱର୍ଯ୍ୟ ଆଉ ଶିବୋପାସନାରେ ପ୍ରାପ୍ତାମରତ୍ୱ ଓ ନିର୍ଜର ଅଟନ୍ତି । ଏ ଦୁହେଁ ଆଦିନାଥ ଚୌରଙ୍ଗୀ ବିରୁପାକ୍ଷ ପ୍ରଭୃତି ଯୋଗିପ୍ରବରମାନଙ୍କର ସମସାମୟିକ ଓ ତୁଲ୍ୟ ଗୌରବ । (୩) ଏ ସମସ୍ତେ ଚତୁଷଷ୍ଠି ସିଦ୍ଧରେ ପରିଗଣିତ । ବୋଧହୁଏ ମତ୍ସ୍ୟେନ୍ଦ୍ରନାଥ ପ୍ରଭୃତିଙ୍କ ପରେ ଗୋରକ୍ଷନାଥ ଅନେକତ୍ର ଯୌଗିକ ମତ ପ୍ରଚାର କରିଥିଲେ । ଏହାଙ୍କ ରଚିତ ଗୋରକ୍ଷ ସଂହିତା ନାମରେ ପ୍ରଥିତ ଖଣ୍ଡିଏ ଯୋଗ ପଦ୍ଧତି ଗ୍ରନ୍ଥ ଥିବାର ଦେଖାଯାଏ । ଏଥିରେ ଯୋଗ ସାଧନାର କ୍ରମସବୁ ଉକ୍ତ ଅଛି । ସମଧିକ ଶିବୋପାସକ ଯୋଗିମାନେ (୪) ଗୁରୁ ଗୋରକ୍ଷନାଥଙ୍କୁ ଧର୍ମଯାଜକ ଓ ଶିବଙ୍କ ଅବତାର ବୋଲି ବିଶ୍ୱାସ କରି ତଦୀୟ ହଠଯୋଗ ଅଭ୍ୟାସ କରନ୍ତି । ଗୋରକ୍ଷ ସ୍ୱାମୀ କେବଳ ଯୋଗ ସମ୍ବନ୍ଧରେ ନୁହେଁ ବେଦ ବେଦାଙ୍ଗ ପ୍ରଭୃତି ଶାସ୍ତ୍ରସମୁଚ୍ଚୟରେ ସୁଦ୍ଧା ପ୍ରବୀଣ ଥିଲେ । ଏ ମହାତ୍ମାଙ୍କ ରଚିତ ବାର୍ତ୍ତାନ୍ତିକ ସିଦ୍ଧାନ୍ତ ପଦ୍ଧତି ନାମରେ ମଧ ଖଣ୍ଡିଏ ଗ୍ରନ୍ଥ ଦେଖାଯାଏ । ଏଇଟି ବହୁ ପଟଳରେ ବିଭକ୍ତ । ଏଥିରେ ଗ୍ରହ ନକ୍ଷତ୍ରାଦିର ଆଶାଦି ନିର୍ଣ୍ଣୟ ମୁହୂର୍ତ୍ତାଦିର ନିର୍ଣ୍ଣୟ ପ୍ରଭୃତି ଅନେକ କଥା ସିଦ୍ଧାନ୍ତିତ ହୋଇଅଛି । ଏହିଟି ଜ୍ୟୋତିର୍ବିଦ୍ୟୋପଜୀବୀମାନଙ୍କର ଏକାନ୍ତ ଆଶ୍ରୟ । (୫)



(୩) ଶ୍ରୀ ଆଦିନାଥ ମତ୍ସ୍ୟେନ୍ଦ୍ର ଶାବରାନନ୍ଦ ଭୈରବାଃ, ଚୌରଙ୍ଗୀ ମୀନ ଗୋରକ୍ଷ ବିରୁପାକ୍ଷ ବିଳେଶୟାଃ ଇତ୍ୟାଦି ଇତି ହଠଯୋଗ ପ୍ରଦୀପିକା ।

(୪) ଅନେକେ ଗୋରକ୍ଷ ମତାବଲମ୍ବୀ ଯୋଗିମାନଙ୍କୁ କଣଫଟ୍ ନାମ ଧାରକ ଯୋଗୀ କହନ୍ତି ।

(୫) ଅଭିଜ୍ଞ ପାଠକେ ! ପ୍ରବନ୍ଧ ବାହୁଲ୍ୟ ଭୟରୁ ଏତଦୀୟ ଅତିରିକ୍ତ ଗବେଷଣାରୁ କ୍ଷାନ୍ତ ହୋଇ ଏତିକିରେ ପ୍ରବନ୍ଧ ଶେଷ କଲୁଁ ।

# SREE BHARATA DARPAN

BY

**Gopinath Nanda Sarma**

# ଶ୍ରୀ ଭାରତ ଦର୍ପଣ

ଶବ୍ଦତତ୍ତ୍ୱବୋଧ ଅଭିଧାନ, ଓଡ଼ିଆ ଭାଷାତତ୍ତ୍ୱ, ଜାନକୀପରିଣୟ

ନାଟକ ପ୍ରଭୃତି ବହୁବିଧ ଗ୍ରନ୍ଥର ପ୍ରଣେତା

৺ ପଣ୍ଡିତ ଶ୍ରୀ ଗୋପୀନାଥ ନନ୍ଦଶର୍ମ୍ମା କର୍ତ୍ତୃକ

ପ୍ରଣୀତ ।

ଶ୍ରୀ ବଳଭଦ୍ର ନନ୍ଦଶର୍ମ୍ମାଙ୍କ ଦ୍ୱାରା

ପ୍ରକାଶିତ ।

ପ୍ରଥମ ସଂସ୍କରଣ ।

**Printed by V. Kar**

THE UTKAL SAHITYA PRESS,

**CUTTACK**

**1928.**

*Price Rs. 1-8-0*    ମୂଲ୍ୟ ୧ ୲ ମାତ୍ର ।

ଡକା ବଖାର ପ୍ରତ୍ୟେକ ଖଣ୍ଡକୁ ୧ / ୯

# ଶ୍ରୀ ଭାରତ ଦର୍ପଣ

ଜ୍ଞାନ-ଧନ ସୁଧୀଗଣ ! ପ୍ରଥମତଃ ଶାସ୍ତ୍ରକର୍ତ୍ତା ଭଗବାନ୍ ଶ୍ରୀକୃଷ୍ଣ ଦ୍ୱୈପାୟନଙ୍କଠାରେ ପ୍ରଣତ ହୋଇ ଧୈର୍ଯ୍ୟ ଓ ସାହସ ଅବଲମ୍ବନ ପୂର୍ବକ ଦୁରଧିଗମ୍ୟ ସାରଳାଦାସଙ୍କ କୃତ ମହାଭାରତର ସମାଲୋଚନା ସଂକ୍ରାନ୍ତ ବୃହତ୍କାୟ ପ୍ରବନ୍ଧଟି ଆପଣମାନଙ୍କ ସମ୍ମୁଖରେ ଉପସ୍ଥାପିତ କରିବାକୁ ଉଦ୍ୟତ ହେଲୁଁ । *ଏହାର ଆମୂଳାନ୍ତ ପାଠରେ ଆପଣମାନଙ୍କ ଦୀର୍ଘଦର୍ଶିତାରେ ଯାହା କି ଅବଶ୍ୟମ୍ଭାବୀ ଦୀର୍ଘସୂତ୍ରତାର ସମାଯୋଗ ଘଟିବ, ସେଥିନିମିତ୍ତ ବିରକ୍ତ ନ ହୋଇ ଶ୍ରମସହିଷ୍ଣୁତା ପୂର୍ବକ ଗୁଣଦୋଷ ବିବେଚନାରେ ପ୍ରବୃତ୍ତ ହୋଇ ସ୍ୱାଭିମତ ପ୍ରକାଶ କରିବେ ବୋଲି ସବିନୟ ପ୍ରାର୍ଥନା କରୁଁ । ଏହାର ସମଗ୍ର ପାଠ ଓ ଗୁଣାଗୁଣ ଅବଗାହନରେ ଆପଣମାନଙ୍କର ଭବିଷ୍ୟମାଣ ଯତ୍କିଂଚିତ୍ ଦୀର୍ଘସୂତ୍ରତାକୁ ସେପରି ନିଷ୍ପ୍ରୟୋଜନ ବୋଲି ମନେ କରନ୍ତୁ ନାହିଁ । ଅପାର ପାରାବାରକଳ୍ପ ଅନନ୍ତଗୁଣ ସାଧାରଣ-କଳ୍ପନାତୀତ ମହାଭାରତର ବିଷୟାଦିର ଅବବୋଧରେ ଚିରକ୍ରିୟତା କାହାରି ପକ୍ଷେ ଅସମ୍ଭବ ନୁହେ । ତଥାପି ପ୍ରୟୋଜନରହିତ ନିରର୍ଥକ ବା ଅନାବଶ୍ୟକ ଇତସ୍ତତଃ ବିକ୍ଷିପ୍ତ ବିଲାତ୍ ଆନୀତ ଅସଂଗତ ବାକ୍ୟମାନଙ୍କରେ ଅତି ପଲ୍ଲବିତ କରିବାକୁ ଆମ୍ଭେମାନେ ସର୍ବଥା ଅନିଚ୍ଛୁକ । ''ମିତଂ ଚ ସାରଂ ଚ ବଚୋହି ବାଗ୍ମିତା'' କବି ପଣ୍ଡିତପ୍ରବର ନୈଷଧପ୍ରଣେତା ଶ୍ରୀହର୍ଷଙ୍କର ଏହି ଅମିତ-ମୂଲ୍ୟ ବାକ୍ୟାର୍ଥରେ ପ୍ରଣୋଦିତାନ୍ତଃକରଣ ହୋଇ ଯଥାସମ୍ଭବ ସଂକ୍ଷିପ୍ତ ଭାବରେ କେବଳ ଜ୍ଞାତବ୍ୟ ଓ ପ୍ରକୃଷ୍ଟ ପ୍ରୟୋଜନୀୟ ବିଷୟମାନ ଲେଖିବୁଁ ।

କେବଳ ସାରଳା ଦାସଙ୍କର କାହିଁକି, ଯେ କୌଣସି ଦେଶୀୟ ଭାଷାରେ ଲିଖିତ ମହାଭାରତ କିମ୍ବା ଅନ୍ୟ ଗ୍ରନ୍ଥର ସମ୍ପୂର୍ଣ୍ଣ ସମାଲୋଚନା କରିବାକୁ ହେଲେ, ସମଗ୍ର ମୂଳ ଗ୍ରନ୍ଥଟି ନ ପଢ଼ିଲେ ଅପିଚ ଉଭୟତ୍ର ବର୍ଣ୍ଣିତ ପ୍ରତ୍ୟେକ ପ୍ରଧାନ ଘଟନାମାନଙ୍କୁ ମିଳାଇ ନ ଦେଖିଲେ, ମୌଳିକ ଚରିତ୍ର-ସନ୍ନିଧାନସତ୍ତାର ଯଥାଯଥ ଅସ୍ତିତ୍ୱ କିମ୍ବା ଅଭାବ ଏବଂ

---

* ବିଗତ ବର୍ଷ ଜୁନ ମାସରେ ଉତ୍କଳ ସାହିତ୍ୟ ପତ୍ରିକାର ସଂପାଦକ ପଣ୍ଡିତବର ଶ୍ରୀ ବିଶ୍ୱନାଥ କର ମହୋଦୟଙ୍କୁ ଏହି ପ୍ରବନ୍ଧର ସମଗ୍ର କାଗଜମାନ ଦେଖିବା ପାଇଁ ପ୍ରାର୍ଥନାପୂର୍ବକ ଦିଆ ଯାଇଥିଲା । ଶଂସିତ ମହାଶୟ କାଗଜଗୁଡ଼ିକ ଦେଖି ପ୍ରକାଶ କରିବା ପାଇଁ ଆଦେଶ କରିଥିଲେ; ମାତ୍ର ଶରୀରର ଅସ୍ୱାସ୍ଥ୍ୟ ଏବଂ ଅନ୍ୟାନ୍ୟ କାର୍ଯ୍ୟବଶତଃ ସମୁଚିତ ସମୟ ନ ପାଇ ଆଜିଯାଏ ପ୍ରକାଶ କରି ପାରି ନ ଥିଲୁଁ ।

କାଳ୍ପନିକ ବୈଷମ୍ୟ ଚିତ୍ରଣର ସଦ୍ଭାବ, ବସ୍ତୁର ସଂଗତି ଓ ଅସଂଗତି, ସଂଲଗ୍ନତା ଓ ଅସଂଲଗ୍ନତା ପ୍ରଭୃତି ପ୍ରଧାନ ପ୍ରଧାନ ବିଷୟଗୁଡ଼ିକ ଜଣାଯାଏ ନାହିଁ ବୋଲି ଯଥାର୍ଥ୍ୟ ସ୍ଥିରୀକରଣାର୍ଥ ପ୍ରଥମତଃ ମୂଳଗ୍ରନ୍ଥକୁ ଜ୍ଞାନର ସମ୍ମୁଖରେ ଆଦର୍ଶ କରି ରଖିବାକୁ ହୁଏ; ଅଥଚ ସମାଲୋଚ୍ୟ ଗ୍ରନ୍ଥଟିର ଆମୂଳାନ୍ତ ନିର୍ବିଶେଷ ଭାବରେ ସମ୍ୟକ୍ ପଠନ ଓ ମନନ କରିବାକୁ ହୁଏ । ଅତଏବ ଆମ୍ଭେମାନେ ସମଗ୍ର ସାରଳା ଭାରତର ସମାଲୋଚନାର ଲିଖନେଚ୍ଛୁ ହୋଇ ମୂଳ ଓ ତଦନୁକୃତ ଏହି ମହାଭାରତର ଅଖଣ୍ଡ ପାଠରେ ସାରଭୂତ ଯାହା ଯାହା ଅବଗତିପୂର୍ବକ ସ୍ଥିର କରିଅଛୁଁ, ତଦନୁକ୍ରମେ ଉଦ୍ଦେଶ୍ୟ ସାଧନାରେ ପ୍ରବୃତ୍ତ ହେଉଅଛୁଁ । ଏ ସ୍ଥଳରେ ପ୍ରକାଶ କରିବା ଉଚିତ ଯେ ଲିଖତବ୍ୟ ସମାଲୋଚନା ପ୍ରବନ୍ଧଟିକି ଅଙ୍ଗ ପ୍ରତ୍ୟଙ୍ଗବିଶିଷ୍ଟ ଚାରିଗୋଟି ପ୍ରଧାନ ବିଭାଗରେ ବିଭକ୍ତ କରୁଅଛୁଁ । ଯଥା– (୧) ବିଷୟ ଓ ବୈଷମ୍ୟ ଅର୍ଥାତ୍ ବିଷୟର ସାଦୃଶ୍ୟ ଓ ବୈଷମ୍ୟ, (୨) ଭାଷା ଓ ସାହିତ୍ୟ, (୩) କବି ପରିଚୟ, (୪) ଉପସଂହାର ।

ସମାଲୋଚନାରେ ପ୍ରବୃତ୍ତ ହେବା ପୂର୍ବରୁ ପାଠକମାନଙ୍କ ନିକଟରେ ବ୍ୟକ୍ତ କରିବା ଉଚିତ ଯେ, ମହାନୁଭାବ ମହାପ୍ରାଜ୍ଞ ସ୍ମୃତିମାନ୍ ସାରଳା ଦେବୀଙ୍କର ବରପୁତ୍ର ଶ୍ରୀ ସାରଳାଦାସ କବି ଏହି ତ୍ରିଗୁଣାତ୍ମକ (ପ୍ରସାଦ-ଓଜ-ମାଧୁର୍ଯ୍ୟଗୁଣ-ବିଶିଷ୍ଟ) ଉତ୍କଳର ଆଦିମ କବିତାରେ ଯେଉଁ ନିସର୍ଗରମଣୀୟତା, ପଦଲାଳିତ୍ୟ, ପଦସଂବିଧାନନୈପୁଣ୍ୟ ପ୍ରଭୃତିର ସନ୍ନିବେଶ କରିଥିଲେ, ସଂପ୍ରତି ସ୍ଥାନେ ସ୍ଥାନେ ତାହାର ଆଭାସ ମାତ୍ର ରହିଅଛି, କବିତାର ଜନ୍ମକାଳୀନ ସେହି ମନୋହର ଛବି ବହୁ ସ୍ଥଳରେ ପ୍ରାୟ ଲୁପ୍ତ ହୋଇ ଯାଇଅଛି । ଅନେକ ସ୍ଥଳରେ ତଦୀୟ ଆଜନ୍ମସିଦ୍ଧ ରମଣୀୟ ଛବି କଦର୍ଯ୍ୟ ହୋଇ ପଡ଼ିଅଛି । ସାରଳାଦାସଙ୍କ କବିତାରେ ଆମ୍ଭେମାନେ ବର୍ତ୍ତମାନ ଯେତେ ଯେତେ ଦୋଷ, ଦେଖି ପାରୁଅଛୁଁ, ସେ ସବୁଯାକ କବିଙ୍କର ନୁହେଁ । କବିଙ୍କ ଲେଖା ଆଧୁନିକ ଦୃଷ୍ଟିରେ ନିର୍ଦ୍ଦୋଷ ନୁହେ ସତ୍ୟ, ମାତ୍ର ତତ୍ପରବର୍ତ୍ତୀ ଅଜ୍ଞ ଲେଖକମାନଙ୍କ ଦୋଷଜାଳରେ ବହୁ ପରିମାଣରେ ଦୂଷିତ ହୋଇ ଯାଇଅଛି । ଅତଏବ ଲୋକର ଦୁଃସ୍ଥାନସ୍ଥିତି ହେତୁରୁ ବହୁ ଦୋଷସଂକୁଳ ହେବାକୁ ହୁଏ । ଏହି ପୁରାଣ ଗ୍ରନ୍ଥଟି ପ୍ରାୟ ପାଞ୍ଚଶତ ବର୍ଷ ପୂର୍ବେ ଲିଖିତ ହୋଇ ତଦବଧି ମର୍କଟ ହସ୍ତରେ ଶାଳଗ୍ରାମ ତୁଲ୍ୟ ବିଶେଷତଃ ଅନଭିଜ୍ଞ ଓ ଅବିଦ୍ୟମାନଙ୍କର ହସ୍ତାମଳକ ପ୍ରାୟ ହୋଇ ଆସିଅଛି । କାରଣ ଯେତେବେଳେ ମହାଭାରତର ଉତ୍ପତ୍ତି, ସେହି ସମୟରେ ଉତ୍କଳ ଦେଶରେ ସଂସ୍କୃତ ଭାଷାର ଚର୍ଚ୍ଚା ସମଧିକ ଥିଲା । ପ୍ରାୟ ସମସ୍ତ ଉଚ୍ଚ ଶ୍ରେଣୀର ଲୋକେ ସଂସ୍କୃତକୁ କେବଳ ସାଦର ଦୃଷ୍ଟିରେ ଦେଖୁଥିଲେ । ତେତେବେଳେ ପ୍ରାକୃତ ଭାଷାମାନଙ୍କର ପ୍ରାବଲ୍ୟରୁ ସଂଭୂତ ଓଡ଼ିଆ ଭାଷାର ଶୈଶବାବସ୍ଥା, ଏହାର ସମାଦର ତେତେଦୂର ପ୍ରସାରିତ ହୋଇ ନ ଥିଲା, କେବଳ ନିମ୍ନ ଶ୍ରେଣୀରେ ମାତ୍ର ଏହାର ସ୍ଥାନ

ନିର୍ଦ୍ଦିଷ୍ଟ ଥିବାର ପ୍ରମାଣ ଇତିହାସ ପ୍ରଭୃତିରୁ ଜଣାଯାଏ । ଆପଣମାନେ ଅବଶ୍ୟ ଜାଣିଥିବେ, ବରଂ ତ କେହି କେହି ଅନୁଭବ କରିଥିବେ, ଅଦ୍ୟାପି କେତେକ ମାତୃସାହିତ୍ୟରେ ଅନଭିଜ୍ଞ କେବଳ ସଂସ୍କୃତିଆ ସୁଆପାଠିଆ ପଣ୍ଡିତ ଦେଶୀୟ ଭାଷା କବିତାକୁ ଘୃଣାଚକ୍ଷୁରେ ଦେଖନ୍ତି । ଯଦି ତଦୀୟ ସମକକ୍ଷ କୌଣସି ପଣ୍ଡିତଙ୍କୁ ଓଡ଼ିଆ ପୁସ୍ତକ ଖଣ୍ଡିଏ ପଢୁଥିବାର ଦେଖନ୍ତି, ତେବେ ବିରକ୍ତି ସହ କହନ୍ତି, ‘‘ଭାଷାଗୁଡ଼ାଏ କଣ ପଢୁଚ ହେ !’’ ଏ ସବୁ ସେମାନଙ୍କର ଦୁର୍ମତିତ୍ୱର ପରିଚାୟକ, ସେମାନେ କିଛିହିଁ ବିଚାର ଓ ବିବେକ କରନ୍ତି ନାହିଁ । ଯେ କୌଣସି ଭାଷା ହେଉ, କାବ୍ୟର ବିଷୟାର୍ଥ ସଂବିଧାନାଦିର କ୍ରମ, ବର୍ଣ୍ଣନା ଓ କଳ୍ପନାର ଚାତୁର୍ଯ୍ୟ ଓ ଚମତ୍କାରିତାଦିକୁ ଅବଶ୍ୟ ଆଦରପୂର୍ବକ ଗ୍ରହଣ କରିବାକୁ ହେବ । * ଏହି ସୁବିଚାରର ଅଭାବରୁ କେତେକ ମାତୃସାହିତ୍ୟ-ଜ୍ଞାନଶୂନ୍ୟ ସଂସ୍କୃତ ପଣ୍ଡିତ ମାତୃଭାଷାରେ ଅନାସ୍ଥା ପ୍ରକାଶ କରନ୍ତି । ଇଦାନୀଂତନ ପ୍ରତ୍ୟକ୍ଷୀଭୂତ ଦୁଷ୍ଟଗ୍ରହାବିଷ୍ଟ କେତେକ ପଣ୍ଡିତଙ୍କ ତୁଳନାରେ ବିଶ୍ୱାସ କରିବାକୁ ହୁଏ ଯେ, ପଞ୍ଚଶତ ବର୍ଷ ପୂର୍ବେ ଏ ଭଳି ପଣ୍ଡିତମାନେ ସାରଳା ଭାରତକୁ ପଢ଼ିବା ଦୂରେ ଥାଉ, ପ୍ରତ୍ୟୁତ ସ୍ପର୍ଶ କରୁନଥିବେ । ଅତଏବ କୋମଳ ସ୍ୱଭାବବିଶିଷ୍ଟ ଏହି ସୁନ୍ଦର କବିତାଟି ଅଜ୍ଞଙ୍କ ଓ ଅଜ୍ଞମାନଙ୍କର ହସ୍ତାଧୀନ ହେଲା । ଅଜ୍ଞଙ୍କ ଲିଖିତ ପୁସ୍ତକକୁ ଆଦର୍ଶ କରି ଅଜ୍ଞ ଲୋକେ କ୍ରମେ ଲେଖାକୁ ବହୁଦୋଷସଂକୁଳ ଓ ବିକଳାଙ୍ଗ କରି ପକାଇଲେ ।

ବହୁକାଳ ପରେ ଆଜକୁ ପ୍ରାୟ ପଞ୍ଚଦଶ ବର୍ଷ ପୂର୍ବେ ପୁରାଣ-ପ୍ରକାଶକ କମ୍ପାନୀ ଗଠିତ ହୋଇ ଏହି ଭାରତ ଗ୍ରନ୍ଥକୁ ମୁଦ୍ରିତ କରିବା ଚେଷ୍ଟାରେ ଅନେକ ସ୍ଥଳରେ ଭିନ୍ନାକୃତିରେ ପରିଣତ କରି ଦେଇଛନ୍ତି । ଦିଅଁ ଗଢୁ ଗଢୁ ମାଙ୍କଡ଼ ହେଲା ପରି କେତେକ ସ୍ଥଳ ହୋଇ ଯାଇଅଛି । ପରିଶୋଧନଦ୍ୱାରା ବହୁ ସ୍ଥଳ କବିଦତ୍ତ ସ୍ୱାଭାବିକ ସୌନ୍ଦର୍ଯ୍ୟରୁ ବଞ୍ଚିତ ହୋଇ ବହୁ ଦୂରରେ ନିକ୍ଷିପ୍ତ ହୋଇଅଛି । ପୁଣି ଆହୁରି ଅନେକ ସ୍ଥଳ ଅସାବଧାନତାଜନିତ ଦୋଷରେ ଦୂଷିତ ହୋଇଅଛି । ଏ ସମ୍ବନ୍ଧରେ କେତେକ ପ୍ରତ୍ୟକ୍ଷ ପ୍ରମାଣ ନ ଦେଖାଇଲେ ଅନେକଙ୍କର ବିଶ୍ୱାସ ହେବା ତେଣେ ଥାଉ, ବିରକ୍ତି ଓ ରୋଷ ଜନ୍ମିପାରେ । ଅତଏବ ତାହାର ପ୍ରମାଣସ୍ୱରୂପ ଅନତିବିସ୍ତୃତ କେତେକ ସ୍ଥଳ ମାତ୍ର ଉଦ୍ଧୃତ କରୁଅଛୁଁ –

---

* ଅତଏବ ମହାକବି ଶ୍ରୀ ରାଜଶେଖର କର୍ପୂରମଞ୍ଜରୀ ସଟ୍ଟକରେ କହିଅଛନ୍ତି –

ଅର୍ଥନିବେଶା ସ୍ତଏବ ଶବ୍ଦା ସ୍ତଏବ ପରିଣମନ୍ତୋଽପି
ଉକ୍ତିବିଶେଷଃ କାବ୍ୟଂ ଭାଷା ଯା ଭବତି ସା ଭବତୁ ।
ପୁରୁଷାଃ ସଂସ୍କୃତବନ୍ଧାଃ ପ୍ରାକୃତବନ୍ଧୋଽପି ଭବତି ସୁକୁମାରଃ
ପୁରୁଷମହିଳାନାଂ ଯାବଦିହାନ୍ତରଂ ତାବଦ୍ ତେଷୁ ।

ଏ ସବୁ ପ୍ରାକୃତ ପଂକ୍ତିମାନଙ୍କର ଛାୟା ।

(୧) ଏଣେ ଭିଆଇଲେ ସେହି ଗ୍ରାମକେ ସୀମାଏ । – ଆଦିପର୍ବ ।

ଏ ସ୍ଥଳକୁ ଛାପା ପୁସ୍ତକରେ ଅସାବଧାନତା ଯୋଗୁଁ ଏପରି ବିକୃତ କରି ଅଛନ୍ତି–

ଏଣେ ଭିଆଇଲେ ସେହି ଗ୍ରାମ କେଶୀମାୟେ । ଆ.ପ. ୫ ପୃଷ୍ଠା ।

(୨) ମା ଗୋ ଗତ ଆଗତ ସମସ୍ତ ବୁଦ୍ଧି କହ,
ରାଜ୍ୟଭ୍ରଷ୍ଟ ହେଲା କଥା ଲାଗିଲା ସନ୍ଦେହ । ଆ.ପ.

ଏହାକୁ ଛାପାରେ ଅନ୍ୱୟାର୍ଥଶୂନ୍ୟ କରି ପକାଇଅଛନ୍ତି –

ମା ଗୋ ଲଜ୍ୟାମାନ ଭଗ୍ନ ଛାଡ଼ିଣ ସମେହ
ସତ୍ୟଭଗ୍ନ ହେବାଲାଗି ଲାଗଇ ସନ୍ଦେହ । ଆ.ପ. ୨୯ ପୃଷ୍ଠା ।

(୩) ସହଦେବ ବୋଇଲେ ଦେବ ଉତ୍ତରକୋଶଳେ
ଜ୍ଞାନପୁର ନଗ୍ର ବୋଲି ଗଙ୍ଗା ନଦୀକୂଳେ । ଆ.ପ.

ଏହାକୁ ଛାପାରେ "ଗୋଦାବରୀ କୂଳେ" ବୋଲି ସମନ୍ୱିତ କରିଅଛନ୍ତି । ତାହାହେଲେ ଉତ୍ତର କୋଶଳରେ ଗୋଦାବରୀ କାହୁଁ ଆସିବ ?

(୪) ପୂର୍ବାପର ସଂଗତିସନ୍ଦର୍ଭ ବିଚାରଶୂନ୍ୟତା ବଶରୁ କେତେକ ସ୍ଥଳର ଭାବ ଦ୍ୱିଧା କରିଦେଇଅଛନ୍ତି । ଏହାର ପ୍ରମାଣସ୍ୱରୂପ ଗୋଟିଏ ସ୍ଥଳମାତ୍ର ପ୍ରଦର୍ଶାଉ ଅଛୁଁ । ଆଦିପର୍ବ ୪୦ ପୃଷ୍ଠାରେ ଧୃତରାଷ୍ଟ୍ରଙ୍କର ଜନ୍ମ ରାଶି କୃତ୍ତିକାମେଷ ଲେଖି, ୪୬ ପୃଷ୍ଠାରେ କୃତ୍ତିକାବୃଷ ବୋଲି ପ୍ରକାଶ କରିଅଛନ୍ତି ।

ଅଗସ୍ତି ବୋଇଲେ ତାର କୃତ୍ତିକାମେଷ ରାଶି । ୪୦ ପୃଷ୍ଠା ।

ଧୃତରାଷ୍ଟ୍ରର ଅଟେ କୃତ୍ତିକାବୃଷ ରାଶି । ୪୬ ପୃଷ୍ଠା ।

(୫) ସଭାପର୍ବରେ ନକୁଳ ଦିଗ୍‌ବିଜୟ ସମୟରେ ମତ୍ସ୍ୟେନ୍ଦ୍ରନାଥଙ୍କ ପୁତ୍ର ଗୋରୋଖନାଥ ଯୋଗୀଙ୍କୁ ଦେଖିବା ସ୍ଥଳରେ ତାଳପତ୍ର.ପୁସ୍ତକରେ ଲେଖାଅଛି କି –

ଦର୍ଶନ କଲା ଯେ ମତ୍ସ୍ୟେନ୍ଦ୍ରନାଥ ସୁତ,
ଭେଟିଲା ପରମଯୋଗୀ ଗୋରେଖ ଅବଧୂତ ।

ଏହା ଛାପା ପୁସ୍ତକରେ ଅର୍ଥଶୂନ୍ୟ ହୋଇ ରହିଅଛି –

ବସନ ପାଇଲେ ସେହୁ ମହାଇନ୍ଦ୍ର ପୋତା,
ଭେଟିଲେ ମହାଯୋଗୀ ଗୋଲେକ ଅବଧୂତା ।

ସଭାପର୍ବ – ୨୪୩ ପୃଷ୍ଠା ।

(୬)  ଆପଣେ ସହଦେବ କୋଠି କାଟିଲେ ଖଡ଼ି ଘେନି,
ବୈଜୟନ୍ତୀ ମାଳା କଲେ ଛକ ତିନି ।
ଏ ପଶା କପଟ ବୋଲି ଲିହିଲା କିରୀଟୀ,
ଦେଖି ଦ୍ରୁହସିତ ଯେ ହୋଇଲେ ଯୁଧିଷ୍ଠି । ସ. ପ.

ଏହାକୁ ଛାପାରେ ଲେଖିଅଛନ୍ତି କି –

ବୈଜୟନ୍ତୀ ମାୟା କଲା କଛେ କଛ ତିନି,
ଏ ପଶା କପଟ ବୋଲି ଲେଖେ ଖିରପୁଟି । ସ.ପ. – ୪୪୪ ପୃଷ୍ଠା ।

(୭)  ମାନବ ଅବତାରରେ ତହିଁ ଖେଳନ୍ତି ଦେବ କାଶୀ,
ସେ ପଶୁପତି ରାଜ୍ୟେ ଅର୍ଜୁନ ଯାଇ ପଶି ।
ଅର୍ଜୁନର ପଶନ୍ତେ ଗଣନାୟକମାନେ
କରେ ତ୍ରିଶୂଳ ବୁଲାଇ ଓଗାଳିଲେ ଅର୍ଜୁନ ସନ୍ନିଧାନେ ।
କାହିଁରରେ ତୁମ୍ଭେ ବୋଲି ଉର୍ଦ୍ଧ୍ୱମୁଖେ ଡାକି
ସିଂହନାଦ ଶବଦେ ବଜାନ୍ତି ଘୋର ଡାକି ।
ଆରେ ରେ ମାନବ ଜନ୍ମ ହୋଇ କାହିଁକି ଭରସୁ,
କାଳସର୍ପେ ଖେଳୁଥାଲି ମରଣେ କିପାଁ ପଶୁ ।

ଇତ୍ୟାଦି ପଦ୍ୟଗୁଡ଼ିକ ଛାପାରେ ଭିନ୍ନାକାର ଓ ଭିନ୍ନଭାବବିଶିଷ୍ଟ କରିଦେଇଅଛନ୍ତି । ସଭାପର୍ବ ୨୦୨ ପୃଷ୍ଠା ଦେଖନ୍ତୁ ।

(୮)  କୀଚକ ଶତେ ଭାଇର ଭାରା ମୁଁ ନ ସହି – ସଭାପର୍ବ

ଏହି ପଦ୍ୟାର୍ଦ୍ଧକୁ ଛାପାରେ ନିର୍ଦ୍ଦିଷ୍ଟାକ୍ଷରବିଶିଷ୍ଟ କରିବାକୁ ଯାଇ ଲେଖିଅଛନ୍ତି କି –

କୀଚକ ଶତେ ଭାର ମୁଁ ନ ପାରିଲି ସହି । ସଭାପର୍ବ ୪୪୫ ପୃଷ୍ଠା ।

(୯)  ଆମ୍ଭେ ମହାବୃଷ୍ଟି କଲୁ ଯେତେବେଳେ
ତୋଟାଯାକ ଶର ପୀଡ଼ା କଲା ଗଗନମଣ୍ଡଳେ ।

ମଧ୍ୟପର୍ବରେ ଉକ୍ତ ଖାଣ୍ଡବଦାହର କଥା ତାଳପତ୍ର ପୁସ୍ତକରେ ଏହିପରି ଲେଖାଅଛି । ମାତ୍ର ଛାପାକାରମାନେ ଉଭୟ ଚରଣରେ ତୁଲ୍ୟସଂଖ୍ୟକ ଅକ୍ଷର ରଖିବାକୁ ଯାଇ ଲେଖିଅଛନ୍ତି କି –

ମହାଘୋର ବୃଷ୍ଟି କଲୁଁ ଯେତେ ଯେତେବେଳେ,
ତୋଟାଯାକ ଶରପୀଡ଼ା କଲା ଖମଣ୍ଡଳେ । ମଧ୍ୟପର୍ବ – ୩୨ ପୃଷ୍ଠା ।

ଖମଣ୍ଡଳେ = ଆକାଶମଣ୍ଡଳେ ।

ସାରଳାଦାସ କବି ଖ, କ୍ଷ୍ମା, ଜ୍ୟା ଇତ୍ୟାଦି ଅତିକ୍ଲିଷ୍ଟାର୍ଥ ଏକାକ୍ଷର ଶବ୍ଦମାନଙ୍କର ପ୍ରୟୋଗ କରିନାହାନ୍ତି । ଏପରି ଶବ୍ଦଗୁଡ଼ିକ ଛାପାରେ କେବଳ ସଂଯୋଗ କରାଯାଇଅଛି ।

(୧୦) କନ୍ୟ ମାସ ଶୁକ୍ଳପକ୍ଷ ପୌର୍ଣ୍ଣମୀର ଦିନ,
ଲିଆ ନଟିକାଳ ଏକବେଳେ କରଇ ଭୋଜନ – ଭୀଷ୍ମପର୍ବ ।

ଏ ପଦ୍ୟଟିକ ସମାନାକ୍ଷରବିଶିଷ୍ଟ କରିବା ପାଇଁ ଛାପାରେ ପରିବର୍ତ୍ତିତ କରିଅଛନ୍ତି କି –

କନ୍ୟ ମାସ ଶୁକ୍ଳପକ୍ଷ ପୌର୍ଣ୍ଣମୀର ଦିନ
ଲିଆଟିଏ ରାଜା ବସି କରଇ ଭୋଜନ । ଭୀ.ପ. ୯୫ ପୃଷ୍ଠା ।

ଏପରି ବହୁ ସ୍ଥଳରେ କବିପ୍ରଯୁକ୍ତ ବାକ୍ୟାର୍ଥ-ପ୍ରତିପତ୍ତି ଭିନ୍ନ ଓ ବିକୃତ ହୋଇଥିଲେ ହେଁ ସମାକ୍ଷରତା ନିମନ୍ତେ ପରିବର୍ତ୍ତନକୁ ଆବଶ୍ୟକ ମଣିଅଛନ୍ତି ।

ଏହିପରି ବହୁ ସ୍ଥଳରେ ଯାହ ତାଳପତ୍ର ପୁସ୍ତକରେ ନାହିଁ, ଏପରି କେତେକ ଦୋଷରେ ଛାପାର କେତେକ ଅଂଶ ଦୂଷିତ ହୋଇଯାଇଅଛି । ପ୍ରଥମତଃ ଅନେକ ଅନଭିଜ୍ଞଙ୍କ ଲେଖାରେ କ୍ରମଶଃ ବହୁ ସ୍ଥଳରେ ଦୋଷଯୁକ୍ତ ହୋଇ ଆସିଲା; ତାହା ପରେ ପୁଣି ଛାପା ତ୍ରୁଟି । ଏହି କାରଣମାନଙ୍କରୁ କବିଙ୍କ ବାକ୍ୟର ମୌଳିକତା ଓ ସ୍ୱାଭାବିକ ବା ଅକୃତ୍ରିମ ରମଣୀୟତା ଅନେକତ୍ର ଆଉ ଦେଖାଯାଉନାହିଁ । ପୁଣି ଅନେକ ସ୍ଥଳରେ ଛାପା ଓ ତାଳପତ୍ର ପୁସ୍ତକର ଲେଖାରେ ବହୁ ପ୍ରଭେଦ ପରିଦୃଶ୍ୟମାନ ହେଉଅଛି । ଯେକୌଣସି ପର୍ବ ଫିଟାଇ ଦେଖନ୍ତୁ, ଏହାର ସତ୍ୟତା ସଂପୂର୍ଣ୍ଣରୂପେ ଉପଲବ୍ଧି କରିପାରିବେ । କବିଙ୍କର ସୁମଧୁର ଲଳିତପଦବିଶିଷ୍ଟ ଏହି ମହାଉପଖ୍ୟାନ* ବା ମହାକାବ୍ୟ ଖଣ୍ଡିକ ପ୍ରଥମରୁ ମୂର୍ଖଙ୍କ ହାତରେ ପଡ଼ିଥିବାରୁ ମହତ୍ତ୍ୱ ଓ ଗୌରବ ମଧ ହରାଇଅଛି ଏବଂଚ ଛାପା ପୁସ୍ତକରେ ଏପରି

---

* ମହାଭାରତ ଏକ ପ୍ରକାର ମହାକାବ୍ୟ – ପ୍ରମାଣ ଯଥା–

ଇଦଂ ମହାକାବ୍ୟ ମୃଷେର୍ମହାତ୍ମନଃ
ପଠନ୍ନୃଣାଂ ପୂଜ୍ୟତମୋ ଭବେନ୍ନରଃ ।
ପ୍ରକୃଷ୍ଟମାୟୁଃ ସମବାପ୍ୟ ଦୁର୍ଲଭଂ ।
ଇଭେଚ ସର୍ବଜ୍ଞଫଳଂ ଚ କେଶବଂ ।

ଇତି ଖିଳହରିବଂଶ ଭବିଷ୍ୟପର୍ବ ୫ ଅ. ୫ ଶ୍ଳୋକ ।

ଏତତ୍‌କ୍ରମେ ଏହି ମହାମହିମ ଗ୍ରନ୍ଥକୁ ଧର୍ମତତ୍ତ୍ୱଜ୍ଞମାନେ ଧର୍ମଶାସ୍ତ୍ର ବୋଲି, ଅଧ୍ୟାତ୍ମଜ୍ଞାନକୋବିଦମାନେ ବେଦାନ୍ତ ବୋଲି, ନୀତିବିଚକ୍ଷଣମାନେ ନୀତିଶାସ୍ତ୍ର ବୋଲି, କବିବୃଷଭମାନେ ମହାକାବ୍ୟ ବୋଲି ଲାକ୍ଷଣିକମାନେ ସର୍ବଲକ୍ଷଣ ବା ଲକ୍ଷଣଶାସ୍ତ୍ର ବୋଲି, ଐତିହାସିକମାନେ ଇତିହାସ ବୋଲି, ପରମ

କେତେକ ସ୍ଥଳ ଦେଖାଯାଏ ଯେ, ସେଗୁଡ଼ିକ ଛାପାକାରଙ୍କ ପ୍ରଦତ୍ତ ବଙ୍ଗାଦି ବିକୃତ ହୋଇ ଯାଉଅଛି† । ଯଥା –

(୧) ଦିନସାରା ବୃକ୍ଷଭକ୍ଷ ବୁଲାନ୍ତି ଉପବାସେ,
ଗିରି ଅରଣ୍ୟରେ ପଶି କ୍ଷେପନ୍ତି ଆକାଶେ । ଆ.ପା. ୪୪ ପୃଷ୍ଠା

ଦିନସାରା ରାତିସାରା ବା ସାରାରାତି ଏହି ପରପଦ କେବଳ ଏହି ମହାଭାରତରେ କାହିଁକି, ଅନ୍ୟ କୌଣସି ପ୍ରାଚୀନ ଓଡ଼ିଆ ପୁସ୍ତକରେ ମଧ୍ୟ ଦେଖାଯାଏ ନାହିଁ । "ଦିନଯାକ ବୃକ୍ଷଭକ୍ଷ ବୁଲାନ୍ତି ଉପବାସେ ।" ଦିନଯାକ ରାତିଯାକ – ଏପରି ସ୍ଥଳମାନଙ୍କରେ ବଙ୍ଗଭାଷାନୁକରଣରେ ଦିନସାରା ରାତିସାରା କରିଅଛନ୍ତି ।

(୨) କୁନ୍ତୀ ପଚାରିଲେ ଆଲୋ ଶବରୁଣି ।
ପାଣ୍ଡୁ ମାଦ୍ରୀଙ୍କର କହ ତଥ୍ୟବାଣୀ ।। ଆ.ପ.

ଏ ସ୍ଥଳରେ ଛାପାରେ ହୋଇଅଛି –

"ପାଣ୍ଡୁ ମାଦ୍ରୀଙ୍କର କହନି ଗୋ ଶୁଭବାଣୀ ।" ଆ.ପ. ୧୦୨ ପୃଷ୍ଠା ।

ଏପରି ଅନେକ ସ୍ଥଳରେ ଛାପାରେ କହନି (କହ), ଖାଆନି (ଖାଅ), ବହନି (ବହ) ଇତ୍ୟାଦି କ୍ରିୟା ଦେଇଅଛନ୍ତି । ଓଡ଼ିଆରେ ଏପରି କ୍ରିୟା ହୁଏ ନାହିଁ, ଅଥଚ ତାଳପତ୍ର ପୁସ୍ତକମାନଙ୍କରେ ମଧ୍ୟ ଦେଖାଯାଏ ନାହିଁ, ଇତ୍ୟାଦି ।

ସାରଳାଦାସ କବି କେତେକ ସ୍ଥଳରେ ମିତ୍ରାକ୍ଷର ମିଳନ ସକାଶେ କିଂଚିତ୍ ଅସମଞ୍ଜସ ହେଉଥିଲେ ସୁଦ୍ଧା ଆଶୁକବିତା ଲେଖାର ଆବଶ୍ୟକତାନୁସାରେ ଶବ୍ଦମାନଙ୍କର ଅନ୍ତ୍ୟସ୍ୱରର ଲୋପ ଓ ପରିବର୍ତ୍ତନ କରିଦେଇଅଛନ୍ତି ସତ୍ୟ, କିନ୍ତୁ ସେସବୁ ଛଡ଼ା ଆହୁରି ବହୁ ସ୍ଥଳରେ ଲେଖା ଓ ଛାପାରେ ନିର୍ନିୟମ ଭାବରେ ଇଚ୍ଛାନୁମତେ ଶବ୍ଦମାନଙ୍କୁ ବିକୃତ କରିପକାଇଅଛନ୍ତି । ବିଶେଷତଃ ସଭାପର୍ବରେ ନକୁଳଙ୍କର ଦକ୍ଷିଣ ଦିଗ୍‌ବିଜୟ ପ୍ରସଙ୍ଗରେ ତାଳପତ୍ର ଓ ଛାପା ପୁସ୍ତକ ମଧ୍ୟରେ ବହୁ ପ୍ରଭେଦ ଲକ୍ଷିତ ହୁଏ । ପୁଣି ତାଳପତ୍ର ପୁସ୍ତକରେ

---

ପୌରାଣିକମାନେ ପୁରାଣସମୁଚ୍ଚୟ ବୋଲି ମଧ୍ୟ କହନ୍ତି । ଅତଏବ ଏହି ବେଦାର୍ଥୋପବୃଂହକ ମହାଗ୍ରନ୍ଥରେ ସମଗ୍ର ଧର୍ମ ଓ ନୀତି ପ୍ରଭୃତି ଉକ୍ତ ହୋଇଅଛି ବୋଲି ଆଦିପର୍ବ ୬୨ ଅଧ୍ୟାୟରେ ପ୍ରକାଶ କରିଅଛନ୍ତି କି ଏଥିରେ ଯାହା ଯାହା ପାଇବେ, ଅନ୍ୟ ଶାସ୍ତ୍ରମାନଙ୍କରେ ତାହାହିଁ କେବଳ ପାଇବେ; ଅଥଚ ଏଥିରେ ଯାହା ନାହିଁ, କୁତ୍ରାପି ତାହା ଦେଖାଯିବ ନାହିଁ ।

ଧର୍ମେଚାର୍ଥେ ଚ କାମେ ଚ ମୋକ୍ଷେ ଚ ଭରତର୍ଷଭ ।
ଯଦିହାସ୍ତି ତଦନ୍ୟତ୍ର ଯନ୍ନେହାସ୍ତି ନ ତଦ୍ କ୍ୱଚିତ୍ ।

† ବିଶେଷତଃ ଆଦିପର୍ବ କର୍ଣ୍ଣ ନୃପତିଙ୍କ ଜନ୍ମସ୍ଥଳ ଦେଖନ୍ତୁ ।

ଲିଖିତ ଅନେକଗୁଡ଼ିଏ ପାଠ ଛାପା ପୁସ୍ତକରେ ଆଦୌ ଦେଖିବାକୁ ମିଳେ ନାହିଁ । ଉପର୍ଯ୍ୟୁକ୍ତ କାରଣ ମାନଙ୍କରୁ ତାଳପତ୍ର ପୁସ୍ତକ ନଦେଖି ପ୍ରମାଣ ଦର୍ଶାଇବା ସ୍ଥଳମାନଙ୍କରେ ଛାପା ପୁସ୍ତକରୁ ବାକ୍ୟ ଉଦ୍ଧାର କଲେ କବିଙ୍କର ପ୍ରକୃତ ପ୍ରୟୋଗକ୍ରମ ଯଥାର୍ଥତଃ ଜଣାଯିବ ନାହିଁ । ଅଥଚ ସେଥିରେ ବିଶ୍ୱାସର ପ୍ରବୃତ୍ତି ସୁଦ୍ଧା ହେବ ନାହିଁ । ମାତ୍ର ସ୍ଥୂଳ ବିଷୟାବବୋଧ ସମ୍ବନ୍ଧରେ ଛାପା ପୁସ୍ତକ ପାଠରେ ତାଦୃଶ କୌଣସି ଆପତ୍ତି ନାହିଁ । ପାଠକେ ! ଛାପା ପୁସ୍ତକମାନଙ୍କରେ ପୁସ୍ତକ ମୁଦ୍ରଣକାଳୀନ ପରିଶୋଧନ ପ୍ରଣାଳୀଦ୍ୱାରା କବିଙ୍କର ପଦସଂଘଟନାକ୍ରମ ପ୍ରଭୃତି ବହୁ ସ୍ଥଳରେ ଲୁପ୍ତ ଓ ଅଯଥାଯଥ ହୋଇଅଛି ସତ୍ୟ, ତଥାପି ଅନେକ ସ୍ଥଳରେ ତାଳପତ୍ର ପୁସ୍ତକ ପାଠ ସମୟରେ ଛାପା ପୁସ୍ତକ ଉପକାରଜନକ ମଧ ହେଉଅଛି; କାରଣ ତାଳପତ୍ର ପୁସ୍ତକର କେତେକ ସ୍ଥଳ ଅଜ୍ଞଲୋକଙ୍କ ଲେଖାରେ ଏପରି ବିକୃତ ଓ ଅର୍ଥଶୂନ୍ୟ ହୋଇପଡ଼ିଅଛି ଯେ, ସେ ସ୍ଥଳମାନଙ୍କରେ ଛାପା ପୁସ୍ତକ ବିନା ଅର୍ଥାବଗତି ସମ୍ଭବି ପାରେ ନାହିଁ । ଅନଭିଜ୍ଞ ଆଦର୍ଶ ଲେଖକମାନଙ୍କର ଅଜ୍ଞତା କାଳିମାରେ ଦୂଷିତ କେତେକ ଅର୍ଥଶୂନ୍ୟ ସ୍ଥଳରେ ଛାପାରେ ଛାପାକାରଙ୍କ ଦ୍ୱାରା ପଦବିନ୍ୟାସ ଭିନ୍ନ ପ୍ରକାର ହେଉ ପଛକେ ବହୁ ପୁସ୍ତକାବଲୋକନ ଓ ବିଚାରବଶରୁ ଅର୍ଥତଃ ପରିଶୋଧିତ ହୋଇଅଛି । ଅତଏବ ତାଳପତ୍ର ଏବଂ ଛାପା ପୁସ୍ତକମାନ ଦେଖି ପ୍ରମାଣ ବାକ୍ୟମାନ ତାଳପତ୍ର ପୁସ୍ତକରୁ ଉଦ୍ଧୃତ କରିବାକୁ ହେବ । ଯେଉଁ ସ୍ଥଳମାନଙ୍କରେ ପ୍ରମାଣବାକ୍ୟ ଛାପା ଓ ତାଳପତ୍ରରେ ସମାନ ଦେଖାଯାଏ, ସେପରି କେତେକ ସ୍ଥଳରେ ଛାପା ପୁସ୍ତକରୁ ମଧ ପୃଷ୍ଠାଙ୍କ ସହ ବାକ୍ୟ ଉଲ୍ଲେଖ କରାଯାଇପାରେ ।



## ବିଷୟ ଓ ତଦୀୟ ବୈଷମ୍ୟ

ଏହି ପ୍ରକରଣଟି ଲିଖିତବ୍ୟ ପ୍ରବନ୍ଧର ପ୍ରାୟ ଅର୍ଦ୍ଧାଧିକ ଭାଗ ହେବ । ଏଥିରେ ମୂଳ ଓ ସାରଳାଦାସଙ୍କ ଭାରତରେ ପ୍ରତିପାଦିତ ବିଷୟନିଚୟର ସୂଚନା ଆଉ ସମାଲୋଚ୍ୟ ଭାରତରେ ଯାହା ଯାହା ପରିତ୍ୟକ୍ତ, ପ୍ରକ୍ଷିପ୍ତ, ସଂକ୍ଷିପ୍ତ, ଅନ୍ୟତ୍ର ନିକ୍ଷିପ୍ତ ଏବଂ ଅଯଥା ବିସ୍ତୃତ ଓ ଅନ୍ୟାଥାକୃତ ହୋଇଅଛି, ତାହାର ସ୍ଫୁଟୀକରଣପୂର୍ବକ ସମାଲୋଚ୍ୟ ବିଷୟଗୁଡ଼ିକର ସମାଲୋଚନା କରାଯିବ । ଏତଦ୍ୱାରା ଯେପରି ଉଭୟ ଭାରତ ଗ୍ରନ୍ଥର ଯାବତୀୟ ବିଷୟମାନଙ୍କର ସ୍ଥୂଳତଃ ଅବଗତି ପାଠକମାନଙ୍କ ପକ୍ଷେ ସୁଗମ ହେବ, ପାଠକବୃନ୍ଦ ଦୁରଧିଗମ୍ୟ ମହାଭାରତ ଦ୍ୱୟର ଅଖଣ୍ଡ ପାଠର ଫଳ ଅଳ୍ପାୟାସରେ ପ୍ରାପ୍ତ ହେବେ, ତାଦୃଶ ଯତ୍ନ ଓ ନିରଳସ ଗବେଷଣ ସହକାରେ ଆମ୍ଭେମାନେ ମନୋନୀତ ସିଦ୍ଧିସାଧନରେ ଅଗ୍ରସର ହେଉଅଛୁ । ପ୍ରକରଣର ପ୍ରାରମ୍ଭରେ କହି ରଖିବା ଉଚିତ ଯେ,

ଏହି କବି ମୂଳ ଗ୍ରନ୍ଥର ଅନୁବାଦ କରିନାହାନ୍ତି କିମ୍ବା ଅବିକଳାନୁକରଣରେ ଲେଖି ନାହାନ୍ତି । ମୂଳ ଗ୍ରନ୍ଥର ପ୍ରଗାଢ଼ ଶୁଶ୍ରୂଷାରେ ଏକାନ୍ତ ଅନୁରକ୍ତ ଥାଇ ସମଗ୍ର ଭାରତର ସ୍ଥୂଳ ସ୍ଥୂଳ ବିଷୟ ଓ ଆମୂଳାନ୍ତ ଘଟନାଂଶମାନ ମାତ୍ର ସ୍ୱୀୟ ଅବ୍ୟାହତ ସ୍ମୃତିକୋଷରେ ପ୍ରଦୀପ୍ତ ରଖି ଅସାମାନ୍ୟ କଳ୍ପନାଶକ୍ତି ଓ ବିଷୟ ସଂବିଧାନପ୍ରବୀଣତାର ବଳରେ ବଳୀୟାନ ହୋଇ ଅଙ୍ଗୀକରଣ, ବିସ୍ମୃତିକରଣ ଅନୁକ୍ତପ୍ରକ୍ଷେପ ଓ ଉକ୍ତନିକ୍ଷେପାଦି କ୍ରମରେ ଏହି ପ୍ରକାଣ୍ଡ ଗ୍ରନ୍ଥକୁ ଲେଖିଯାଇଅଛନ୍ତି । ଏଥିରେ ଯେ କିଛି ଚରିତର ଅସାମଞ୍ଜସ୍ୟ, ଅସଂଲଗ୍ନତା, ଅସଙ୍ଗତି ପ୍ରଭୃତି ଦୋଷ ନାହିଁ, ତାହା ଆମ୍ଭେମାନେ କହୁନାହୁଁ । ସେସବୁ ସମଧିକ ମାତ୍ରାରେ ଅଧିକାର ସ୍ଥାପନ କରିଅଛି; ତଥାପି ମୋଟରେ କହିଲେ ଏହି ମହାକବିଙ୍କର ପ୍ରଜ୍ଞା ଅସାଧାରଣ ପ୍ରଶଂସାର୍ହ, ଏହା ଅଭିଜ୍ଞମାତ୍ରେ ଅସନ୍ଦିଗ୍ଧ ଚିତ୍ତରେ ସ୍ୱୀକାର କରିବାକୁ କୁଣ୍ଠିତ ହେବେ ନାହିଁ ।

ତ୍ରୈକାଳିକ ତତ୍ତ୍ୱଦର୍ଶୀ ସର୍ବଜ୍ଞ ମହର୍ଷି ବେଦବ୍ୟାସ ଶ୍ରୀମନ୍ମହାଭାରତ ଗ୍ରନ୍ଥରେ ବିସ୍ତରତଃ ବେଦାର୍ଥରହସ୍ୟନିଚୟ, ଇତିହାସପୁରାଣ ସମୁଦାୟର ସାରଭୂତ ଅଂଶମାନ, ଜରାମରଣଭୟବ୍ୟାଧିଭାବାଭାବନିଚୟ, ନାନାବିଧ ଧର୍ମମାନଙ୍କର ସ୍ୱରୂପ, ବିବିଧାଶ୍ରମଲକ୍ଷଣମାନ, ଚାତୁର୍ବର୍ଣ୍ଣ୍ୟବିଧାନ, ଅପୋବ୍ରହ୍ମଚାର୍ଯ୍ୟାଦିସ୍ୱରୂପ, ଭୂଗୋଳଖଗୋଳନିର୍ଣ୍ଣୟ, ପାଶୁପତାଦି ଜ୍ଞାନାଜ୍ଞାନକ୍ରମ, ଦିବ୍ୟମାନୁଷ ଜନ୍ମବିଭାଗ, ପୁଣ୍ୟତୀର୍ଥ ଓ ଦେଶମାନଙ୍କର ମାହାତ୍ମ୍ୟ, ଯୁଦ୍ଧଚାତୁର୍ଯ୍ୟ, ଲୋକଯାତ୍ରାକ୍ରମ, ପରତତ୍ତ୍ୱସ୍ୱରୂପ, ଶ୍ରୀ ବାସୁଦେବମାହାତ୍ମ୍ୟ, ପାର୍ବତୀ ପ୍ରଭୃତି ନାନା ଦେବତାମାନଙ୍କର ମହିମା, କାର୍ତ୍ତିକେୟାଦି ସମ୍ଭବ, ଗୋବ୍ରାହ୍ମଣ ପ୍ରଭାବ, ରାଜନୀତିସ୍ୱରୂପ, ରାଜର୍ଷିମାନଙ୍କର ଚରିତ୍ର, ମହର୍ଷିମାନଙ୍କର ମହତ୍ତ୍ୱ, ସତ୍ୟନିଷ୍ଠା, ଦାନନିଷ୍ଠା, ପ୍ରଭୃତି ଧର୍ମୈକପ୍ରାଣିତ ବିଷୟମାନ ଏବଂ ବହୁବିଧ ସଦ୍‌କଥାଜାଳ ତତ୍ର ତତ୍ର ସନ୍ଦର୍ଭାନୁଗୁଣ୍ୟରେ ଉପପାଦିତ କରିଅଛନ୍ତି । ପୁଣି ସର୍ବୋପନିଷତ୍ସାରଭୂତ ଶ୍ରୀଭଗବଦଗୀତା ଓ ସନତ୍ସୁଜାତୀୟଗୀତାକୁ ସନ୍ନିବେଶିତ କରି ଅଛନ୍ତି । କିନ୍ତୁ ସାରଳାଦାସଙ୍କ ମହାଭାରତରେ ଏ ସବୁ ଯଥାଯଥରୂପେ ଅକ୍ଷୁର୍ଣ୍ଣ ନାହିଁ, ଅପିଚ ମୂଳର ତତ୍ତ୍ୱଜ୍ଞାନପ୍ରତିପାଦକ ବିଷୟମାନ ଆଦୌ ନାହିଁ କହିଲେ ଚଳେ । ଯାହା କିଛି ଅଛି ତାହା ଅତି ଅଳ୍ପ ସ୍ଥାନେ ସ୍ଥାନେ ଲେଖାଅଛି, ତହିଁରୁ କେତେକ କବିଙ୍କ ମନୋଧର୍ମାନୁସାରେ କିମ୍ବା ଅନୁଭୂତି ଅନୁସାରେ ଲିଖିତ । ଆଉ କେତେକ ମୂଳ ଗ୍ରନ୍ଥର ଶୁଶ୍ରୂଷା ବଳରେ ଗୃହୀତ ହୋଇ ଅଂଶତଃ ସନ୍ନିବେଶିତ ହୋଇଅଛି । ସାରଳାଦାସଙ୍କ ଲିଖିତ ଜ୍ଞାନବିଷୟକ ବା ତତ୍ତ୍ୱବିଷୟକ ଏହି ଅଂଶମାନ ନେଇ ମୂଳଗତ ଧର୍ମାଦି ବିଷୟ ସହ ସିଦ୍ଧାନ୍ତ କରିବସିଲେ ଚଳିବ ନାହିଁ, ଏହି ଗଳ୍ପଜଳ୍ପକଳ୍ପତରୁ କବିଙ୍କର ଅନଳ୍ପପ୍ରସର କେତେକ ଗଳ୍ପ ଓ ଚରିତମାନଙ୍କର ଆମୂଳାନ୍ତ ଘଟନାକ୍ରମକୁ ଧରି ମୌଳିକ ଚରିତର

ଯଥାର୍ଥ୍ୟ ସଂଗେ ତୁଳନାର୍ଥ ମୀମାଂସା କରିବସିଲେ ମୀମାଂସକଙ୍କ ଶ୍ରମ ପଣ୍ଡ ହେବ । ଅତଏବ ସାରଳା ଭାରତର ପାଠ ସମୟରେ ବହୁସ୍ଥଳରେ ମୂଳପ୍ରତି ଦୃଷ୍ଟି ନ ଦେଲେ କେବଳ ହୃଦୟ ମାନିବ, ମାତ୍ର ସାରଳାଦାସ କବି ଯୁଦ୍ଧଚାତୁର୍ଯ୍ୟ ପ୍ରଭୃତି କେତେକ ବିଷୟକୁ ମୂଳଗ୍ରନ୍ଥରୁ କିଛି ଭିନ୍ନ ପ୍ରକାର କଲେ ଯୁଦ୍ଧା ବିସ୍ତୃତ ଓ ସୁନ୍ଦରଭାବରେ ତୃପ୍ତିଜନକ କରି ଲେଖିଅଛନ୍ତି । ବର୍ଣ୍ଣନାଦି ସ୍ଥଳମାନଙ୍କରେ ବହୁ କୃତିତ୍ୱ ଦେଖାଇଅଛନ୍ତି । ଏସବୁ ତଦୀୟ ମହତୀ ବୁଦ୍ଧିସିଦ୍ଧିର ପରିଚାୟକ ।

ମହାପ୍ରାଜ୍ଞ ସାରଳାଦାସ କବି ମୂଳଗ୍ରନ୍ଥଗତ ଅନୁକ୍ରମଣିକାଧ୍ୟାୟର ଚରିତକୁ ଗ୍ରନ୍ଥାଦ୍ୟରେ ସୁସଂଗତ ଓ ସୁଗମଭାବରେ ଅତି ସଂକ୍ଷିପ୍ତ କରିଦେଇଅଛନ୍ତି । ଏହି ସ୍ଥଳରେ ସଞ୍ଜୟ ଓ ଧୃତରାଷ୍ଟ୍ରଙ୍କ ସମ୍ବାଦାତ୍ମକ ଧୃତରାଷ୍ଟ୍ରଙ୍କ ପଶ୍ଚାତ୍ତାପ ଓ ଆତ୍ମଗ୍ଳାନି ଘଟନାକୁ ପୁନଃ ସ୍ଥାନାନ୍ତରେ ବକ୍ଷ୍ୟମାଣ ଭାବି ଉଠାଇ ଦେଇଅଛନ୍ତି । ପୁଣି ପ୍ରଥମତଃ ପୌଷ୍ୟ ପୌଲୋମ ଆସ୍ତିକ ଅଂଶାବତରଣାଦି ଉପପର୍ବମାନଙ୍କର ପ୍ରାୟ ଅଶୀତି ଅଧ୍ୟାୟ ପାଠର କଥା ପରିତ୍ୟାଗ କରି କୁରୁବଂଶୋତ୍ପତ୍ତିଠାରୁ କେବଳ ଗ୍ରନ୍ଥ ଆରମ୍ଭ କରିଅଛନ୍ତି । ଏଥିର କାରଣ ଅନୁମିତ ହୁଏ କି, ଏସବୁର ସଂକ୍ଷିପ୍ତ ଅଂଶମାନ ପଶ୍ଚାତ୍ ପ୍ରସ୍ତାବକ୍ରମେ କୁହାଯିବ ବୋଲି ଭାବିଥିବେ । ସେ ଯାହାହେଉ, ତତ୍ରତ୍ୟ ଜରତ୍କାରୁ ପ୍ରଭୃତିଙ୍କ ଚରିତ ସାରଳା ଭାରତରେ ଦେଖାଯାଏ ନାହିଁ ।

ଗଙ୍ଗାଙ୍କର ମାନବକଳତ୍ରତ୍ୱ ପରିଗ୍ରହ ସ୍ଥଳରେ କହିଅଛନ୍ତି କି, ଏକଦା ଜାହ୍ନବୀଙ୍କର ମାନବ ପିତା ନିର୍ଘାତ ମାହେଶ୍ୱରଭକ୍ତିପ୍ରବଣହୃଦୟ ତଦୀୟ ବେଶଧାରୀ ମହାରାଜ ଶାନ୍ତନୁଙ୍କୁ ମହାଦେବ ଜ୍ଞାନ କରି ସ୍ୱସୁତା ଗଙ୍ଗାଦେବୀଙ୍କୁ ପ୍ରଦାନ କଲେ । ବୈବାହିକ ଦାନ ପରେ ନିଜ ପରିଣେତାଙ୍କୁ ଶାନ୍ତନୁ ବୋଲି ଚିହ୍ନିପାରି ଗଙ୍ଗାଦେବୀ ତଦୀୟ ଦାରତ୍ୱରେ ଅନିଚ୍ଛା ପ୍ରକାଶ କଲାରୁ ନିର୍ଘାତ ନିଜର ସତ୍ୟଭଂଗସଂକ୍ରାନ୍ତ ଆପତ୍ତି ଦେଖାଇ ଶାନ୍ତନଙ୍କ ପତ୍ନୀ ହେବାପାଇଁ ଗଙ୍ଗାଙ୍କୁ ଅନୁରୋଧ କଲେ । ଗଙ୍ଗା ତେତେବେଳେ ସ୍ୱକୀୟ ଯାବତୀୟ ଭବିଷ୍ୟମାଣ ଦୋଷ ଅଗ୍ରାହ୍ୟ କରିବାପାଇଁ ଶାନ୍ତନୁଙ୍କୁ ପ୍ରତିଶ୍ରୁତି ଏବଂ ସତ୍ୟପାଶରେ ଆବଦ୍ଧ ରଖି ତାହାଙ୍କର ଭାର୍ଯ୍ୟା ହେଲେ, ଇତ୍ୟାଦି । କିନ୍ତୁ ମୂଳରେ ଲେଖାଅଛି, ମହାତ୍ମା ପ୍ରତୀପ ମହାରାଜ ଦିନେ ଗଙ୍ଗାଙ୍କ ଅଭିମୁଖରେ ଜପାନୁଷ୍ଠାନ ନିଷ୍ଠାପର ଅଛନ୍ତି, ଇତ୍ୟବସରରେ ଦିବ୍ୟବେଶା, ସମଲଂକୃତା ଗଙ୍ଗାଦେବୀ ତଦୀୟ ଦକ୍ଷିଣୋରୁ ପ୍ରଦେଶରେ ଉପବେଶନପୂର୍ବକ ରିରଂସାରେ ଉପବୁଭୁକ୍ଷୁ ହେଲେ । ରାଜା ତତ୍‌ପ୍ରତି ଅନିଚ୍ଛୁକ ହୋଇ ତାହାଙ୍କୁ ନିଜ ପୁତ୍ରର କଳତ୍ରକରଣାର୍ଥ ସ୍ୱୀକାର କଲେ । ତେତେବେଳେ ଗଙ୍ଗା କହିଲେ, ''ଆପଣ ସତ୍ୟ କରନ୍ତୁ ଯେ ଆପଣଙ୍କ ପୁତ୍ର ମୋହର ବାକ୍ୟ କୁତ୍ରାପି ଅନ୍ୟଥା କରିବେ ନାହିଁ, ମୁଁ ଯାହା କହିବି, ତାହାହିଁ ଅଭ୍ୟୁପଗମ କରିବେ ।'' ରାଜା ସେଥିରେ ସ୍ୱୀକୃତ

ହୋଇ ସ୍ୱପୁତ୍ର ଶାନ୍ତନୁଙ୍କୁ (ଯାହାଙ୍କ ଅନ୍ୟ ନାମ ଅଭିଷବ) ସମସ୍ତ ବୁଝାଇଲେ । ଗଙ୍ଗାଦେବୀ ନିଜ ଇଚ୍ଛାମତେ ଶାନ୍ତନୁଙ୍କର ଭାର୍ଯ୍ୟା ହୋଇ ରହସ୍ୟ କାରଣବଶ୍ୟତଃ ପ୍ରସବମାତ୍ରେ କ୍ରମେ କ୍ରମେ ସାତଗୋଟି ସନ୍ତାନ ନାଶ କଲେ, ଇତ୍ୟାଦି ।

ଶାନ୍ତନୁ ଓ ଗଙ୍ଗାଙ୍କର ଦାମ୍ପତ୍ୟ ସମ୍ବନ୍ଧରେ ଅବଶ୍ୟ ପବିତ୍ରତା ଶ୍ରେୟୋବିଧାୟକତା ପ୍ରଭୃତି କଲ୍ୟାଣ ଗୁଣାବଳୀର ସମାବେଶ ଅଛି ବୋଲି ଲୋକରେ ବୈଦିକ ପରିଣୟ ପ୍ରଣାଳୀରେ ସେହି ପ୍ରୟତାମ୍ ଦମ୍ପତିଙ୍କ ନାମୋଚ୍ଚାରଣରେ ପରିଣୀତାକୁ ପରିପୂତା କରନ୍ତି । ମାତ୍ର କେଜାଣି କାହିଁକି ସାରଳାଦାସ କବି ଶାନ୍ତନୁଙ୍କ ପ୍ରତି ଗଙ୍ଗାଙ୍କର ପତ୍ନୀଭାବ ବଡ଼ କଦର୍ଯ୍ୟ ଥିବାର ଲେଖିଅଛନ୍ତି । * ସେ ଏ ସ୍ଥଳରେ କଳତ୍ରଭାବ ଯେଡ଼େ କଳୁଷିତ ଓ କୁତ୍ସିତ କରିଅଛନ୍ତି, ତାହା ମୂଳରେ କୁତ୍ରାପି ତ ନାହିଁ; ପ୍ରତ୍ୟୁତ ଲୋକରେ ନୀଚ ପରିବାରରେ ମଧ୍ୟ ଥିବାର ଦେଖାଯାଏ ନାହିଁ । ଯେଉଁ ସୁଖସ୍ୱରୂପିଣୀ ପତ୍ନୀଙ୍କି ଲୋକରେ ମହାକବିମାନେ "ଇୟଂ ଗେହେ ଲକ୍ଷ୍ମୀରିୟମମୃତବର୍ତ୍ତିର୍ନୟନୟୋଃ" ଇତ୍ୟାଦିରୂପେ ସୁଖନିଦାନୀଭୂତ କରି ବର୍ଣ୍ଣନା କରନ୍ତି, ତାହାଙ୍କ ପ୍ରତି ଏହି କବିଙ୍କର ଏପରି ବିରସଭାବ ଜନ୍ମିବାରେ କୌଣସି ଗୂଢ଼ କାରଣ ଥିବାର ଅନୁମିତ ହୁଏ । ପୁନଶ୍ଚ ଗାଙ୍ଗେୟ ଭୀଷ୍ମଙ୍କ ଜନ୍ମକ୍ରମକୁ ମଧ୍ୟ ପ୍ରଧ୍ୱାୟମାନ ଧ୍ୱାନ୍ତରେ ନିମଗ୍ନ କଦଧ୍ୱଗ ପଥିକ ପ୍ରାୟ ଅବାଟରେ ପକାଇ ଅଛନ୍ତି । ବିଚିତ୍ର ଚିତ୍ରପିତୁଳାର ମନୋହର ସୌନ୍ଦର୍ଯରେ ଶାନ୍ତନୁ ସ୍ଖଳିତେନ୍ଦ୍ରିୟ ହେଲାରୁ ପ୍ରତ୍ୟୁତରେତରୁ ଚିତ୍ରାଙ୍ଗଦ ଓ ବିଚିତ୍ରବୀର୍ଯ୍ୟ ଅଯୋନିସଂଭୂତରୂପେ ଉତ୍ପନ୍ନ ହେଲା ପରେ ଭୀଷ୍ମ ଜନ୍ମ ହେଲେ ବୋଲି କେତେଗୁଡ଼ାଏ କାଳ୍ପନିକ କଥା ସହ ଲେଖିଅଛନ୍ତି; କିନ୍ତୁ ଶାସ୍ତ୍ରମତେ ଭୀଷ୍ମ ନିଜେ ପିତାଙ୍କ ସହ ସତ୍ୟବତୀଙ୍କର ବିବାହ ସଂଘଟନ କଲାପରେ ସମୟରେ ତାହାଙ୍କ ଗର୍ଭରୁ ଚିତ୍ରାଙ୍ଗଦ ଓ ବିଚିତ୍ରବୀର୍ଯ୍ୟ ଜନ୍ମିଥିଲେ । ଏତାଦୃଶକ୍ରମରେ ତ ଏହି ଚରିତର ଆହୁରି ଅନେକ ଭାଗରେ ବୈଷମ୍ୟ ଘଟିଅଛି । ମାତ୍ର ସ୍ଥୂଳତଃ ଦେଖିଲେ ସେଗୁଡ଼ିକରେ ମୌଳିକ ଆଂଶିକସତ୍ତା ଲୁକ୍କାୟିତରୂପେ ବିଦ୍ୟମାନ ଅଛି ।

(୨) ମୂଳରେ ବିଚିତ୍ରବୀର୍ଯ୍ୟଙ୍କ ବିବାହ ସ୍ଥଳରେ ଉକ୍ତ ଅଛି, ଖଡ଼୍‌ଗପ୍ରଭାଶ୍ୟାମଳିକତାଂସପୀଠ ମହାଧନୁର୍ଦ୍ଧର ଭୀଷ୍ମ ସ୍ୱୟମ୍ବର ସ୍ଥଳରେ ମହାପରାକ୍ରମ ରାଜନ୍ୟବର୍ଗଙ୍କୁ ବୈଜୟିକ କର୍ମରେ ପରାସ୍ତ କରି, ବଳପୂର୍ବକ ଆନୀତ ଅମ୍ବା, ଅମ୍ବିକା ଓ ଅମ୍ବାଳିକାନାମ୍ନୀ କନ୍ୟାତ୍ରୟଙ୍କୁ ତଦନୁଜଙ୍କ ସହ ବିବାହ ଦେଲା ସମୟରେ ଅମ୍ବା କହିଲେ କି, ମୁଁ ପ୍ରଥମତଃ ଶାଲ୍ୱପତିଙ୍କି ମାନସରେ ବରିଅଛି, ଆପଣ ଧର୍ମାନୁରୋଧରୁ ମୋତେ ତଦୀୟ ହସ୍ତରେ ପ୍ରଦାନ କରନ୍ତୁ । ଭୀଷ୍ମ ତାହା ଉଚିତ ଭାବି ଅମ୍ବାଙ୍କୁ ତ୍ୟାଗ କରି ଅନ୍ୟ କନ୍ୟାଦ୍ୱୟଙ୍କୁ ବିଚିତ୍ରବୀର୍ଯ୍ୟଙ୍କୁ ପ୍ରଦାନ କଲେ, ଇତ୍ୟାଦି । କିନ୍ତୁ ଅମ୍ବାଙ୍କର

* ଛାପା ପୁସ୍ତକରେ ଆ.ପ. ୧୨ ପୃଷ୍ଠାଠାରୁ ୧୪ ପୃଷ୍ଠା ଯାଏ ଦେଖନ୍ତୁ ।

ପ୍ରୋକ୍ତ ଚରିତ୍ରରେ ସଂଲଗ୍ନ ଭବିଷ୍ୟମାଣ ବୃତ୍ତାନ୍ତଗୁଡ଼ିକ ଏ ସ୍ଥଳରେ ଉକ୍ତ ନ ହୋଇ ଉଦ୍‌ଯୋଗପର୍ବରେ ପ୍ରାସଙ୍ଗିକ କ୍ରମରେ ୧୭୨ ଅଧ୍ୟାୟଠାରୁ ଆରମ୍ଭ କରି ୧୯୭ ଅଧ୍ୟାୟ ଶେଷଯାଏ ଅମ୍ବୋପାଖ୍ୟାନ ନାମରେ ଉକ୍ତ ଅଛି । ଅବିନଶ୍ୱର ସ୍ମୃତିମାନ୍ ସାରଳାଦାସ ମହୋଦୟ ପାଠକ ଓ ଶ୍ରୋତୃବର୍ଗଙ୍କର ବହୁ ଦୂରତ୍ୱରୁ ଦୁର୍ବିଜ୍ଞେୟ ଚରିତର ଉପଲବ୍ଧି ସୁଗମ ହେବ ବୋଲି ଅନ୍ୟତ୍ର ବହୁ ବିପ୍ରକୃଷ୍ଟ ସ୍ଥାନରେ ନିହିତ କଥାଗୁଡ଼ାକୁ ମନସ୍ଥ କରି ପ୍ରାକରଣିକ ସନ୍ଦର୍ଭାନୁସାରେ, ''ଭୀଷ୍ମ ପ୍ରଥମତଃ ଗ୍ରହଣ କରିଥିଲେ ବୋଲି ଅନ୍ୟ କେହି ରାଜା ସସାଧ୍ୱସଦୃଦୟରେ ଅମ୍ବାଙ୍କୁ ଗ୍ରହଣ ନ କରିବା, ସେ ବହୁ କ୍ଳେଶସାଧ୍ୟ ତପସ୍ୟାଚରଣ ପରେ ପର୍ଶୁରାମଙ୍କ ଶରଣ ନେବା; ପର୍ଶୁରାମ ଅମ୍ବାଙ୍କ ଦୁଃଖରେ ରୋଷବ୍ୟାକୁଳିତେନ୍ଦ୍ରିୟ ଓ କ୍ରୋଧବିଲୋଡ଼ିତାଙ୍ଗ ହୋଇ ତଦନୁରୋଧବଶତଃ ଭୀଷ୍ମଙ୍କ ସଂଗେ ତ୍ରୟୋବିଂଶତି ଦିବସ* କରାଳକରାଳ ସଂଗ୍ରାମ କରି ପରିଶେଷରେ କ୍ଷାନ୍ତ ହେଲାରୁ ଭୀଷ୍ମ ବୈଜୟନ୍ତୀ ମାଳା ପ୍ରାପ୍ତହେବା, କ୍ରମେ ଅତିକ୍ରାନ୍ତବୟସ୍କା ଅମ୍ବାଦେବୀ ଭୀଷ୍ମନିଧନୋଦ୍ଦେଶରେ ଦେହତ୍ୟାଗପୂର୍ବକ ଶିଖଣ୍ଡୀ ହେବା'' ପ୍ରଭୃତି ଷଡ଼୍‌ବିଂଶତି ଅଧ୍ୟାୟବ୍ୟାପୀ କଥା ଏ ସ୍ଥଳରେ ଯୋଗ କରିଅଛନ୍ତି । † ଏହି ଦୂରବିନ୍ୟସ୍ତ କଥାର ଯଥାସ୍ଥାନ ସଂଯୋଗ କବିଙ୍କର ଅବଶ୍ୟ ବୈଦୁଷ୍ୟପରିଚାୟକ ଏବଂ ପାଠକ ଓ ଶ୍ରୋତୃଗଣଙ୍କ ପକ୍ଷେ ବିଷୟାବବୋଧାର୍ଥ ଯେପରି ସୁଗମ ସେପରି ସଂଗତ ମଧ୍ୟ ଅଟେ । ପରନ୍ତୁ ଏହି ପ୍ରକରଣର ପରିଶେଷରେ କହିଅଛନ୍ତି କି, ଧୃତରାଷ୍ଟ୍ରଙ୍କ ଜନ୍ମମାତ୍ରେ ଅମ୍ବିକା ମୃତା ହେଲେ । ''ପୁତ୍ରକୁ ପ୍ରସବି ଯେ ଅମ୍ବିକା ନାଶ ଗଲା ।'' ମାତ୍ର ତାହା ଯଥାର୍ଥ ନୁହେ । ବ୍ୟାସଙ୍କ ମତରେ ସେ ବହୁ ବର୍ଷ ଜୀବିତ ରହି କେତେକ କାଳ ପରେ ସତ୍ୟବତୀଙ୍କ ସହ ବାନପ୍ରସ୍ଥ ଆଚରିଥିଲେ ।

(୩) ଉତ୍କଳ ଭାରତ କବି ଧୃତରାଷ୍ଟ୍ରଙ୍କର ବିବାହ ସ୍ଥଳରେ ଲେଖିଅଛନ୍ତି, ତନ୍ନିମିତ୍ତ ଯେଉଁ କନ୍ୟାଟିକି ନିର୍ଣ୍ଣୀତ କରନ୍ତି ଏବଂ ଗାନ୍ଧରୀଙ୍କ ସକାଶେ ଯେଉଁ ବରକୁ ସ୍ଥିର କରନ୍ତି, ତଦୁଭୟେ ଅକାଳରେ କାଳକବଳରେ ପତିତ ହୁଅନ୍ତି । ଏତାଦୃଶ ଅଷ୍ଟୋତ୍ତରଶତ ଘଟନା ଅତୀତ ହେଲା ପରେ ପ୍ରଥମତଃ ଗାନ୍ଧରୀଙ୍କର ଶାଖୋଟକ (ସାହାଡ଼ା) ବୃକ୍ଷସହ ବିବାହ

---

* ଏବଂ ରାଜନ୍ନାହାରୋବବୃତ ତତଃ ପୁନଃ ବିମର୍ଦ୍ଦୋଽଭୂତ୍ ସୁଘୋରଂ ।
ଜଗ୍ମୁଂ କଲ୍ୟଂ ବିଂଶତିର୍ବୈଦିନାନି ତଥୈବ ଚାନ୍ୟାନି ଦିନାନି ତ୍ରୀଣି ।

ଉଦ୍‌ଯୋଗପର୍ବ – ୧୮୩ ଅ. ୩୦ ଶ୍ଳୋ.

† ମୂଳ ଆଦିପର୍ବରେ କର୍ଣ୍ଣଙ୍କର ଆମୂଳାନ୍ତ ଜନ୍ମବୃତ୍ତାନ୍ତ ଉକ୍ତ ନାହିଁ । ବନପର୍ବର ଶେଷଭାଗରେ ୩୦୨ ଅଧ୍ୟାୟ ଠାରୁ ୩୦୮ ଅଧ୍ୟାୟ ପର୍ଯ୍ୟନ୍ତ ପ୍ରଶ୍ନାନୁକ୍ରମରେ ଉକ୍ତ ଅଛି ଏବଂ ପ୍ରସଙ୍ଗକ୍ରମରେ ଉଦ୍‌ଯୋଗପର୍ବରେ ମଧ୍ୟ ଉକ୍ତ ଅଛି । ସାରଳାଦାସ କବି ଅମ୍ବାଙ୍କ ଚରିତ ପରି କର୍ଣ୍ଣ ଚରିତକୁ ମଧ୍ୟ ଆଦିପର୍ବରେ ପ୍ରାସଙ୍ଗିକ କ୍ରମରେ ଯଥାସ୍ଥାନରେ ସୁସଂଲଗ୍ନତାର ଅବିରୋଧରେ ଲେଖିଅଛନ୍ତି । କିନ୍ତୁ ଚରିତ୍ରଚିତ୍ରଣକ୍ରମ ମୂଳ ଅପେକ୍ଷା କିଞ୍ଚିତ୍ ଭିନ୍ନ ।

ବଢ଼ାଇ ତତଃପର ତାହାର ଅବ୍ୟବହିତ କାଳରେ ଧୃତରାଷ୍ଟ୍ରଙ୍କୁ ପ୍ରଦାନ କଲେ । * କବି ଏ ସ୍ଥଳରେ ବହୁବିଧ ଦେଶ ଓ ରାଜା ଏବଂ କନ୍ୟାମାନଙ୍କର କାଳ୍ପନିକ ବିବିଧ ନାମ ଧାମ ସହିତ ପ୍ରୋକ୍ତ ବିଷୟକୁ ବହୁ ବିସ୍ତୃତ କରିଅଛନ୍ତି ଏବଂ ଏହି ଦୁର୍ଘଟନାର କାରଣସ୍ୱରୂପ କହିଅଛନ୍ତି –

"ଅଗସ୍ତି ବୋଇଲେ ତାର କୃତ୍ତିକା ମେଷ ରାଶି,
ଅପିଚ ବ୍ରହ୍ମ ଅସୁର ଏମନ୍ତ କନ୍ୟା ନାଶି ।"

ଅପିଚ ମହାବ୍ରହ୍ମଣ୍ୟ ବ୍ୟାସଙ୍କ ଔରସରେ ଏତାଦୃଶ୍ୟ ବ୍ରହ୍ମରାକ୍ଷସ ଉତ୍ପତ୍ତିର କାରଣ ଜିଜ୍ଞାସାରେ କହନ୍ତି ଯେ –

"କୃତ୍ତିକା ଯୋଗରେ ମୁନି ପଶିଲେ ଶୃଙ୍ଗାରେ,
ରୋହିଣୀ ବେଳରେ ବୀର୍ଯ୍ୟ ଛାଡ଼ିଲେ ବିମ୍ବରେ ।"

ଆ. ପା. ୪୦ ପୃଷ୍ଠା

ଅତଏବ ଉତ୍ପନ୍ନ ସନ୍ତାନ ବ୍ରହ୍ମରାକ୍ଷସ ହେଲା । ଏ ସବୁ ମୂଳ ଗ୍ରନ୍ଥରେ ନାହିଁ । ସୁତରାଂ ଗାନ୍ଧାରୀ ଓ ଧୃତରାଷ୍ଟ୍ରଙ୍କ ପ୍ରତି ଏତାଦୃଶ୍ୟ କୁତ୍ସିତାଭିପ୍ରାୟର ପ୍ରକାଶ ମୂଳ ମହାଭାରତରେ କୁତ୍ରାପି ଦେଖାଯାଏ ନାହିଁ । ପ୍ରତ୍ୟୁତ ଗାନ୍ଧାରୀ ମହାସୌଭାଗ୍ୟବତୀ ଓ ପୁଣ୍ୟବତୀ ବୋଲି ବହୁ ସ୍ଥଳରେ ପ୍ରମାଣମାନ ବିଦ୍ୟମାନ ଅଛି । ଧୃତରାଷ୍ଟ୍ରଙ୍କର ସମ୍ବନ୍ଧରେ ସୁଦ୍ଧା ସେହିପରି । ଏହି ପ୍ରକରଣର ଆନୁଷଙ୍ଗିକରୂପେ ଶାଖୋଟକ ବୃକ୍ଷର ପ୍ରାଧାନ୍ୟ – ପ୍ରଦ୍ୟୋତନାର୍ଥ ଲେଖିଅଛନ୍ତି କି, ଦିନେ ଭଗବାନ୍ ମହାଦେବ ସ୍ୱବାହନ ବୃଷଭୋପରି ଆରୂଢ଼ ହୋଇ ଭ୍ରମଣାର୍ଥ ଯାଇଅଛନ୍ତି । ଏଣେ ପାର୍ବତୀ ସମସ୍ତ ଭକ୍ଷ୍ୟପେୟାଦି ସିଦ୍ଧ କରି ପତିଙ୍କ ଆଗମନ ଅପେକ୍ଷାରେ ଚତୁର୍ଦ୍ଦଶ ଘଟିକା ପର୍ଯ୍ୟନ୍ତ ବସି ବହୁ ବିଳମ୍ବ ଯୋଗୁଁ ଅସହିଷ୍ଣୁତାରେ ନିଜେ ପ୍ରଥମତଃ ସମସ୍ତ ଭକ୍ଷ୍ୟପେୟାଦିର ଭୋଜନରେ ବସିଲେ । ଇତ୍ୟବସରରେ ଶୈବ ଡମ୍ବରୁନାଦ ଶ୍ରୁତିଗୋଚର ହେଲାରୁ ତାବତୀୟ ଆନୀତ ଖାଦ୍ୟପଦାର୍ଥ ବୃଷଭ କଣ୍ଠିକାରେ ନିକ୍ଷେପ କଲେ । ବୃଷଭ ମାର୍ଗ ମଧ୍ୟରେ ଶାଖୋଟକ ବୃକ୍ଷର ଅଭିନନ୍ଦନ କରିଥିବାରୁ ସେ ସବୁ ସେ ପାଇଲେ । ଇତ୍ୟାଦି । (୪୫ ପୃ) ଭବାନୀଙ୍କର ଚରିତ୍ରଚିତ୍ରଣରେ ଏହା ନିତାନ୍ତ ଗର୍ହିତ ବୋଧହୁଏ । ଏହିପରି ଅନେକ ସ୍ଥଳରେ ଅନେକଗୁଡ଼ିଏ ଅମୌଳିକ ଅସଂଗତ କଳ୍ପିତ କଥା ଯେ କୌଣସି ହେତୁ ଦେଖାଇ ପୂର୍ବାପର କଥାମାନଙ୍କର ମଧ୍ୟେ ମଧ୍ୟେ ଯୋଗ କରିଅଛନ୍ତି ।†

---

* ଅଗସ୍ତି ବୋଇଲେ ହେ ବୈବସ୍ୱତ ନୃପତି ।
ଏହିପରି ଶଏ ଆଠ କନ୍ୟା ବିନଶ୍ୟତି । ଆଦିପର୍ବ ।

† ଭବାନୀଚରିତ୍ର ଗର୍ହଣାସୂଚକ ଏହି ଘଟନାକୁ ମଧ୍ୟପର୍ବର ଏକ ସ୍ଥାନରେ ସୁଦ୍ଧା ଲେଖି ପକାଇ ଅଛନ୍ତି ।

ମୂଳରେ ଉକ୍ତ ଅଛି, ଶତପୁତ୍ରାର୍ଥିନୀ ଗାନ୍ଧାରୀ ବ୍ୟାସଙ୍କ ବରପ୍ରସାଦରୁ ଦୁଇ ବର୍ଷ ଗର୍ଭଧାରଣ ପରେ ବହୁ ପ୍ରରୋହଯୁକ୍ତ ଗୋଟିଏ ମାଂସପିଣ୍ଡ ପ୍ରସବ କଲେ । ସର୍ବଶକ୍ତିସଂପନ୍ନ ବ୍ୟାସଦେବ ତାହାକୁ ବିଭାଗପୂର୍ବକ ଘୃତ କୁମ୍ଭମାନଙ୍କରେ ନିହିତ କରାଇବାରୁ ତହିଁରୁ କ୍ରମଶଃ ଦିନେ ଦିନେ ଶତ୍ରପୁତ୍ର ଓ ଏକ ସ୍ତ୍ରୀ ସନ୍ତାନ ହେଲେ । ମାତ୍ର ସାରଳାଦାସ କହନ୍ତି, ଗାନ୍ଧାରୀ ବ୍ୟାସଦତ୍ତ ଶତଗୋଟି ଯାଗାନ୍ନ ଗର୍ଭରେ ବହନ କରିନପାରି ବମନ କରିଦେଲେ । ବ୍ୟାସ ସେହି ଅନ୍ନଗୁଡ଼ିକ ଏକତ୍ରିତ ରଖି ମନ୍ତ୍ରୋଦକ ସେଚନ କଲାରୁ ଶତଗୋଟି ପୁତ୍ର ହେଲେ । ଏଥିରେ ଏତିକି ମାତ୍ର ମୌଳିକ ସତ୍ୟ ରଖିଅଛନ୍ତି ଯେ ଗାନ୍ଧାରୀଙ୍କ, ବ୍ୟର୍ଥୀକୃତପିଣ୍ଡସତ୍ୱ ବ୍ୟାସଦେବଙ୍କଦ୍ୱାରା ଅମୋଘୀକୃତ ହେଲା । ଆହୁରି ସେହି ବ୍ୟାସପ୍ରସାଦଜନିତ ଶତପୁତ୍ରମାନଙ୍କର ନାମକରଣକୁ ଆଦ୍ୟରେ ଦୁ ବର୍ଣ୍ଣ ଯୋଗରେ କେବଳ କରିଅଛନ୍ତି । ୧ ମାତ୍ର ସଂସ୍କୃତରେ ତଭିନ୍ନ ଅନ୍ୟାନ୍ୟ ନାମମାନ ମଧ ଦତ୍ତ ହୋଇଅଛି । ୨ ପରନ୍ତୁ ପୂର୍ବାପର ଉକ୍ତିର ବିରୋଧ ଏହି ଯେ, ମୂଳଗ୍ରନ୍ଥରେ ଏକ ସମୟରେ ଯଥାକ୍ରମେ ମାଂସପିଣ୍ଡରୁ ଦୁର୍ଯ୍ୟୋଧନାଦି ଶତଭ୍ରାତା ଓ ଦୁଃଶୀଳା ଜନ୍ମିବା ଉକ୍ତ ଅଛି, ତଦନୁରୂପେ ପ୍ରଥମେ ଶତପୁତ୍ର ଜନ୍ମିବା କହି ୩ ପରେ ଦୁର୍ବାସାଙ୍କ ପ୍ରସାଦରୁ ଦୁର୍ଦ୍ଧକ୍ଷ ଓ ଦୁଃଶୀଳା ଜନ୍ମ ହେଲେ ବୋଲି କହି ଅଛନ୍ତି । ୪

(୪) ମୂଳରେ ଉକ୍ତ ଅଛି, ବସୁଦେବଙ୍କ ପିତା ଶୂରନାମଧେୟ ଯଦୁବଂଶୀୟ ଏକ ରାଜା ଥିଲେ । ତାହାଙ୍କ ଔରସରେ ପୃଥା ଜନ୍ମିଥିଲେ । ଶୂର ସ୍ୱକୀୟ ପିତୃସ୍ୱସ୍ରୀୟ ପୁତ୍ରହୀନ କୁନ୍ତଭୋଜ ରାଜାଙ୍କୁ ପୂର୍ବକୃତ ପ୍ରତିଜ୍ଞାନୁସାରେ ପୃଥାଙ୍କୁ ପାଳନାର୍ଥେ ପ୍ରଦାନ କଲେ । ଅତଏବ ତାହାଙ୍କ ନାମ କୁନ୍ତୀ ହେଲା, ଇତ୍ୟାଦି । କିନ୍ତୁ ଅତ୍ରତ୍ୟ ବ୍ୟାସଦତ୍ତ ନାମଧାମାଦିକି ଦାସ ଠିକ୍ ନ ଦେଇ ପରିବର୍ତ୍ତିତ କରିଅଛନ୍ତି ଏବଂ ଅଗ୍ନିକା ଋଷିଙ୍କ ସମ୍ବନ୍ଧରେ ବହୁତ ଅବାନ୍ତର କଥାଗୁଡ଼ିଏ ଲେଖିଅଛନ୍ତି । ସେ ସବୁ ମୂଳଗ୍ରନ୍ଥରେ ନାହିଁ; କିନ୍ତୁ ଅନୁମିତ ହୁଏ, କବି ଏତଦ୍‌ଚରିତାଭ୍ୟନ୍ତରରେ ବିଶ୍ୱାମିତ୍ରଙ୍କ ମତ ଉଲ୍ଲେଖ କରିଥିବାରୁ ତଦ୍‌କୃତ କୌଣସି ପୁରାଣ ବା ଇତିହାସରୁ ଅନୁକରଣ କରି ପ୍ରୋକ୍ତ ଅଗ୍ନିକା ଋଷି ବୃତ୍ତାନ୍ତ ପ୍ରକ୍ଷିପ୍ତ କରିଥିବେ ପରା ? ମୂଳରେ ଅନୁକ୍ତ ଏଭଳି କେତେକ ଚରିତାବତରଣ ସ୍ଥଳରେ କବି ପୌରାଣିକ କଥାରେ ବହୁଶ୍ରୁତ ଥିଲେ ବୋଲି ବିଶ୍ୱାସ ବଦ୍ଧମୂଳ ହୋଇଥିବାରୁ

---

୧ ଦୁ ଅକ୍ଷର ଦିଅ ଯେ ସବୁଙ୍କରି ନାମ । ଆ: ପ: ୭୭ ପୃଷ୍ଠା ।

୨ ଆଦିପର୍ବ ୧୧୭ ସପ୍ତଦଶୋତ୍ତରଶତତମାଧ୍ୟାୟ ଦେଖନ୍ତୁ ।

୩ ବ୍ୟାସ ବୋଇଲେ ଯେ ଦୁର୍ବସାଙ୍କ ମହାମନ୍ତ୍ରେ ।
ଶତେ ପୁତ୍ର ହୋଇଲେ ଯେ ରାଜାର ଯୁଗତେ ॥୭୭ ପୃ:

୪ ୯୫ ପୃଷ୍ଠା ଦେଖନ୍ତୁ ।

ହଠାତ୍ ତଦ୍‌ପ୍ରତି ହୃଦୟ ଅବିଶ୍ୱସ୍ତ ହୁଏ ନାହିଁ, ଏହା କବିଙ୍କର କଳ୍ପିତ ନହେ୍‌ ପୁରାଣେତରରୁ ସମାନୀତ, ଏହା ଭାବି ସଂଦିଗ୍‌ଧ ହେବାକୁ ହୁଏ । ପୁଣି ଏପରି କେତେକ ସ୍ଥଳରେ କବି ନିଜେ ତଦାଶ୍ରୟୀଭୂତ ପୁରାଣାନ୍ତରର ନାମ ମଧ କୀର୍ତ୍ତନ କରିଅଛନ୍ତି । ଅତଏବ ବିଶ୍ୱାସ କାରିବାକୁ ହୁଏ କି, ବହୁ ପୌରାଣିକ ଚରିତବେତ୍ତା ସାରଳାଦାସ ଜନସାଧାରଣରେ ବହୁ ଅଭ୍ୟସ୍ତ ଭାଗବତ ରାମାୟଣାଦିରୁ କଥା ଉନ୍ନୟନ କରିବା ଅତି ସହଜ; ପରନ୍ତୁ ପ୍ରସ୍ତାବାନୁପାତ ଚରିତମାନଙ୍କ ମଧରେ ସର୍ବସାଧାରଣରେ ଅନଧୀତ ଜୈମିନି, ବିଶ୍ୱାମିତ୍ର, ଶିବ ପୁରାଣ, ଅଗସ୍ତି ପୁରାଣ ପ୍ରଭୃତିର ମତ ଓ ନାମ ଦେଇଥିବାରୁ ତଦ୍ ତଦ୍ ପୁରାଣ ଇତିହାସମାନଙ୍କରୁ ମଧ କେତେକ ଚରିତ ଆନୟନ କରିଥିବେ । * ଅଥଚ ଭୀମସେନ ଶୈଶବାବସ୍ଥାରୁ ତଦ୍‌ପ୍ରତି ସାନୁକ୍ରୋଶ ବୈଶ୍ୱାନରଙ୍କ ପ୍ରସାଦରୁ ଗୌରୀ, ଶୌରି ଓ ନଳ ପାକର ସିଦ୍ଧିକି ପ୍ରାପ୍ତ ହୋଇଥିବା କଥା କେତେକ ଚରିତରେ ଅନୁପ୍ରାଣିତ କରି ଲେଖି ଅଛନ୍ତି; ମାତ୍ର ମୂଳରେ ଏହା ସ୍ପଷ୍ଟତଃ ପ୍ରୋକ୍ତ ନାମ ନାମିତରୂପେ ଦେଖାଯାଏ ନାହିଁ । ତଥାପି ଭୀମ ପାକକ୍ରିୟାଧୂରୀଣ ଥିଲେ ବୋଲି ବିଶ୍ୱାସ ହୁଏ କି, କବି ଏ କଥା କୌଣସି ପୁରାଣ ବା ଉପଖ୍ୟାନରୁ ଉଦ୍ଧୃତ କରିଥିବେ । କେବଳ ଏତିକିମାତ୍ର ନୁହେ, ଯାହା ଯେଉଁଠି କହିବା ଯୁକ୍ତିଯୁକ୍ତ ଓ ପ୍ରସ୍ତାବାନୁମୋଦିତ ବୋଧ କରିଅଛନ୍ତି, ସେପରି ଅନେକଗୁଡ଼ିଏ ମୂଳରେ ଅନୁକ୍ତ ଅନ୍ୟାନ୍ୟ ପୁରାଣରେ ଉକ୍ତ ଚରିତମାନଙ୍କୁ ମଧେ ମଧେ ଯୋଗ କରି ଅଛନ୍ତି । କିନ୍ତୁ ମାଦ୍ରୀବତୀ ବା ମାଦ୍ରଦେବୀ କୁନ୍ତୀଙ୍କ ଜପମାଳା ଗ୍ରହଣରେ ପୁତ୍ରୋତ୍ପତ୍ତିର ଉପାୟ ବିଧାନ କଲା ସ୍ଥଳରେ ପ୍ରଥମତଃ ତଦୀୟ ଜପମାଳାନୁଧ୍ୟାନରେ ସମାଗତ ଶ୍ରୀମନ୍ନାରାୟଣ ତାହାଙ୍କୁ ମାତୃସ୍ୱରୂପା ଭାବିବା, ମନ୍ତ୍ରାଦେଶ ଲଙ୍ଘନଜନିତ ଦୁଶ୍ଚିନ୍ତାକୁଳ ହୃଦୟରେ ମାଦ୍ରୀ ଦୁର୍ବାସାଙ୍କୁ ସ୍ମରିବା, ଦୁର୍ବାସାଙ୍କ ନିର୍ଦ୍ଦେଶରେ ନାରାୟଣ (କୃଷ୍ଣ) ଅର୍ଜୁନଙ୍କ ସମଭିବ୍ୟାହାରରେ ଯମୁନୋପକଣ୍ଠରେ ଅକୁଣ୍ଠିତ ମନରେ ବିହାର କରିବା, ଇତ୍ୟବସରରେ ବ୍ୟାସ ସେଠାରେ ସମାଗତ ହେଲାରୁ ତାହାଙ୍କୁ ନାରାୟଣ ସ୍ୱକୀୟ ଆଉ ଅର୍ଜୁନଙ୍କର ବହୁ ଜନ୍ମାନ୍ତରୀଣ ବ୍ୟବସ୍ଥା ଏବଂ ଉଭୟଙ୍କର ଏକାତ୍ମତା ଜଣାଇବା ପରେ ଅର୍ଜୁନ ବ୍ୟାସଙ୍କ ଉପଦେଶମତେ

---

* ଭୀଷ୍ମ ବୋଇଲେ ପିତା କହିଲ ଅକାରଣେ ।
ମୁହିଁ ଆଗେ ଶୁଣିଲି ଯେ ଅଗସ୍ତି ପୁରାଣେ ।। ଆଦିପର୍ବ ।।

(୧) ଏ ସ୍ଥଳରେ ଅଗସ୍ତି ପୁରାଣର ନାମ ମୂଳରେ ଭୀଷ୍ମୋକ୍ତିରେ ନାହିଁ ।

(୨) ବନପର୍ବର ପରିଶେଷରେ ତ୍ରିପୁରାସୁରର ବରପ୍ରାପ୍ତି ପ୍ରଭୃତି କଥା କହି ତଦନନ୍ତର ଏହା ଶିବପୁରାଣର କଥା ବୋଲି କବି ନିଜେ କହିଅଛନ୍ତି ।
ଶିବପୁରାଣର କଥା ଏହାଟି ନିୟତେ ।
ମୁହିଁ ଏକା ବଖାଣିଲି ସଂସାରର ହିତେ ।। ବ: ପ: ୩୨୪ ପୃଷ୍ଠା । ଇତ୍ୟାଦି ।

ବିଶ୍ୱରୂପ ଦିଦୃକ୍ଷାରେ ପ୍ରାର୍ଥୀ ହେଲାରୁ ନାରାୟଣ ବୈଶ୍ୱରୂପିକ ବିଭୂତି ପ୍ରଦର୍ଶାଇବା ଇତ୍ୟାଦି ବହୁବିଧ କଥା ସଂଗତିବହିଷ୍କୃତରୂପେ ଜଟିଳ କରି ଲେଖି ଅଛନ୍ତି । ଏସବୁ ପ୍ରାସଙ୍ଗିକ ମଧ ହୋଇନାହିଁ । କବି କାହିଁକି ଏସବୁ ହୃଦୟଙ୍ଗମ କରିଥିଲେ ଜଣାଯାଉ ନାହିଁ । ଅପିଚ ମାଦ୍ରୀ ଓ ମାଦ୍ରେୟ ପାଣ୍ଡବଦ୍ୱୟଙ୍କ କଥାରେ ମୂଳରେ ଉକ୍ତ ଅଛି, ଅଶ୍ୱିନୀକୁମାରଙ୍କ ଔରସରେ ମାଦ୍ରୀଙ୍କ ଗର୍ଭରୁ ଯମଜ ନକୁଳ ଓ ସହଦେବ ଜନ୍ମିଥିଲେ । କେତେକ ସମୟ ପରେ ପାଣ୍ଡୁ ନିର୍ଜିତଶୂଳଭୃଦ୍ ପ୍ରଭୃତିକୁ ଏକାତପତ୍ରିତବିଶ୍ୱ ପୁଷ୍ପସାୟକଙ୍କ ଅମୋଘାକ୍ରମଣରେ ଆକ୍ରମିତ ହୋଇ ମାଦ୍ରୀଙ୍କୁ ହଠାତ୍ ରମଣ କଲାରୁ ପଞ୍ଚତ୍ୱ ପ୍ରାପ୍ତ ହେଲେ, ମାଦ୍ରୀ ମଧ ତଦନୁଗାମିନୀ ହେଲେ । ମାତ୍ର ସାରଳାଦାସ କହିଅଛନ୍ତି, ଅଶ୍ୱିନୀକୁମାରଙ୍କ ଔରସରେ ନକୁଳଙ୍କ ଉତ୍ପତ୍ତିର କେତେକ କାଳ ପରେ କୁନ୍ତୀଦେବୀ ଅଶ୍ୱାରୋହୀ ଯୁଧିଷ୍ଠିରାଦି ପୁତ୍ରଚତୁଷ୍ଟୟଙ୍କୁ ସଂଗେ ଧରି ହସ୍ତିନାକୁ ଯାଇଅଛନ୍ତି । ମାଦ୍ରୀ ପାଣ୍ଡୁଙ୍କ ସହ ଶତଶୃଙ୍ଗାଚଳରେ ଅଛନ୍ତି । ଏକ ଦିନ ନିଶା ସମୟରେ ଶଯ୍ୟାସଖୀ ମାଦ୍ରୀ ଜପମାଳା ହସ୍ତରେ ପାଣ୍ଡୁଙ୍କୁ ସ୍ମରଣ କରିବାରୁ ସେ ଆସି ସମ୍ଭୋଗରେ ରତ ହେଲେ । ଅକାଳକାଣ୍ଡ ନିର୍ଘାତରେ ଉଭୟଙ୍କ ମୃତ୍ୟୁ ହେଲା । ମୃତ୍ୟୁର ଅବ୍ୟବହିତ ପୂର୍ବେ ଏବଂ ସମ୍ଭୋଗର ଅବ୍ୟବହିତ ପରେ ଏକ ପୁତ୍ର ସନ୍ତାନ ପ୍ରସୂତ ହେଲେ । ତାଙ୍କର ନାମ ସହଦେବ । ସଦ୍ୟଜାତ ଶିଶୁ କ୍ଷୀରାଭାବରୁ ମୃତ ହେଲାରୁ ସୂର୍ଯ୍ୟଙ୍କ ଆଦେଶରେ ଆଶ୍ୱିନେୟ ଆସି ସ୍ୱୀୟ ଆତ୍ମାକୁ ମୃତ କଳେବରରେ ନିହିତ କରି ଜୀବନ୍ୟାସରେ ପୁନରୁଜ୍ଜୀବିତ କଲେ, ଇତ୍ୟାଦି । ଏଥିରେ ମୌଳିକ ଯଥାର୍ଥ ଘଟନାର ଅସାଦୃଶ୍ୟ ସହ ଅପ୍ରାକୃତତ୍ୱ ଓ ଅଦ୍ଭୁତତ୍ୱ ଅପିଚ ମଧେ ମଧେ ଅସଙ୍ଗତି ମଧ ସ୍ପଷ୍ଟ ପ୍ରତୀୟମାନ ହୁଏ ।

(୫) ଦ୍ରୋଣଙ୍କର ପ୍ରାଥମିକ ଅବସ୍ଥାର ବିଚିତ୍ର ବୈଷମ୍ୟ ସଂଗେ ସଂଗେ କେତେକ ବିଷୟକୁ ସାରଳାଦାସ କବି ମୂଳ ଅପେକ୍ଷା ବିଭିନ୍ନ ପରିପାଟିରେ ଲେଖି ଅଛନ୍ତି; ମୂଳରେ ଉକ୍ତ ହେତୁଭୂତ କେତେକ ବିବରଣକୁ ନେଇ ସୁବିସ୍ତୃତ କରିଅଛନ୍ତି । ମୂଳରେ "କୃପ ଅଶ୍ୱଥାମା ଚିରଜୀବୀ" ଏତାବନ୍ମାତ୍ର ପ୍ରକାଶ ପାଏ । ଏହି ବୀଜଭୂତ ଅଂଶରୁ କୃପ ଓ ଅଶ୍ୱତ୍ଥାମା ଅନନ୍ତ-ଆୟାସ-ତପସ୍ୟାରେ ଅମରତ୍ୱ ପ୍ରାପ୍ତ ହେବା ବିଷୟ ସବିସ୍ତର କରି ଅଛନ୍ତି । "କୌରବ ଓ ପାଣ୍ଡବମାନେ ନାନା ପ୍ରକାର ଖେଳ ଖେଳନ୍ତି" ଏହି କଥାକୁ ନେଇ ଝିମିଟି ଖେଳରେ ବହୁପ୍ରସରଣ ସନ୍ଦର୍ଭ ଉଠାଇ ଅଛନ୍ତି । ସୁତରାଂ ତାହାହିଁ ସମଗ୍ର ଉତ୍କଳରେ "ଝିମିଟି ଖେଳରୁ ମହାଭାରତ" ଇତ୍ୟାକାର ପ୍ରବଚନ ରୂପେ ଆବାଳବୃଦ୍ଧ ସମସ୍ତଙ୍କ ହୃଦୟରେ ବଦ୍ଧମୂଳ ରହିଯାଇଅଛି । ସ୍ୱୟମ୍ବର ସ୍ଥଳରେ କର୍ଣ୍ଣ ସମଗ୍ର ରାଜନ୍ୟବର୍ଗଙ୍କୁ ପରାସ୍ତ ଓ ନିହତୌଜ କରି ସମାନୀତା ଭାନୁମତୀଙ୍କି ଦୁର୍ଯ୍ୟୋଧନଙ୍କୁ

ପ୍ରଦାନ କରିବା ବୃତ୍ତାନ୍ତ ମୂଳରେ ନାହିଁ ସତ୍ୟ, କିନ୍ତୁ ଏହି କବି ପୁରାଣାନ୍ତରକୁ ଅନୁସରି ଏହା ପ୍ରସ୍ତାବାନୁମୋଦିତ କରିଅଛନ୍ତି । * ଅପିଚ ଦୁର୍ଯ୍ୟୋଧନ ଗୋଲକପୁତ୍ର ଶକର କାରଣ ଗାନ୍ଧାରୀଙ୍କ ମୁଖରୁ ଅବଗତ ହୋଇପାରି ରୋଷାମର୍ଷପୂରୀତ ହୃଦୟରେ ଗାନ୍ଧାରସେନ ନୃପତିଙ୍କି ସବଂଶରେ ଜୀବଗ୍ରାହରୂପେ କାରାରୁଦ୍ଧ କରି ବିନାଶିବା ପ୍ରଭୃତି ଯେଉଁ ଅନେକଗୁଡ଼ାଏ କଥା ସେ ଅତି ବିସ୍ତୃତ କରି ଲେଖିଅଛନ୍ତି, ମୂଳ ଅଷ୍ଟାଦଶ ପର୍ବ ମଧ୍ୟରେ କୁତ୍ରାପି ତାହା ଦେଖାଯାଏ ନାହିଁ, ପ୍ରତ୍ୟୁତ ତଦ୍ବଂଶୀୟ ଅଂସଖ୍ୟ ବୀରବୃନ୍ଦ ତଦ୍‌ପରକାଳୀନ ଯୁଦ୍ଧରେ ଦୁର୍ଯ୍ୟୋଧନଙ୍କ ପକ୍ଷରେ ଯୋଗ ଦେଇଥିବା ଦେଖାଯାଏ । ଇତିମଧ୍ୟରେ ଦିନେ ଦୁର୍ଯ୍ୟୋଧନ ନ୍ୟଗ୍ରୋଧବୀଜକୁ ସ୍ୱପ୍ରସାଦଜଳରେ ଉଦ୍‌ପ୍ଲାବିତ ଦେଖି ହସିଲାରୁ ସେହି ଆକସ୍ମିକ ହାସର ନିଗୂଢ଼ କାରଣ ଜଣେ ଦାସୀ କାରାନିବାସୀ ଶକୁନିଙ୍କ ମୁଖରୁ ଅବଗତ ହୋଇ ଦୁର୍ଯ୍ୟୋଧନଙ୍କୁ ଜଣାଇବାରୁ ସେ ଶକୁନିଙ୍କି ମହାବୁଦ୍ଧିମାନ୍ ମନେ କରି ମୁକ୍ତିପ୍ରଦାନପୂର୍ବକ ସମ୍ମାନପୁରଃସର ଦୟା କରିବା ଇତ୍ୟାଦି କଥା ବୃଥା କଳ୍ପନାପ୍ରସୂତ ଓ ଏକାନ୍ତ ଅସଙ୍ଗତ ବୋଧହୁଏ ।

(୬) ପାଣ୍ଡବ ଓ କୌରାବାଦିଙ୍କର ଧାନୁର୍ବେଦିକ ଶିକ୍ଷା ସମୟରେ ଦୁର୍ବାରମାନ ଦୁର୍ଯ୍ୟୋଧନ ଭୀମଙ୍କୁ ମହାବଳ ଜାଣି ଦ୍ୱେଷାସୂୟାବିଷ୍ଟ ହୃଦୟରେ ଜିଘାଂସାପରବଶ ହୋଇ କପଟ କୌଶଳରେ ଗଙ୍ଗାତୀରସ୍ଥ ପ୍ରମାଣକୋଟି ନାମକ ସ୍ଥଳରେ † ଜଳାର୍ଦ୍ଧପ୍ରବିଷ୍ଟ ଏକ କ୍ରୀଡ଼ାଗାର କରାଇ ସେଠାରେ କ୍ରୀଡ଼ାର୍ଥ ପାଣ୍ଡବଗଣ ଓ ଅନ୍ୟାନ୍ୟ [illegible] ହେଲେ । କୌଶଳକ୍ରମେ ଭୀମସେନକୁ ବିଷମୂର୍ଚ୍ଛିତଜ୍ଞାନ ଓ ହତଚେଷ୍ଟ କରି ଗଙ୍ଗାରେ ନିକ୍ଷେପ କରିଦେଲେ । ଭୀମ ସଚେତ ହେଲା ପରେ ନାଗସମାଜକୁ ନୀତ ହୋଇ ସତ୍କାର ପାଇଲେ, ଇତ୍ୟାଦି କ୍ରମରେ ମୂଳରେ ଉକ୍ତ ଅଛି । ସାରଳା କବି ପ୍ରମାଣକୋଟିର କଥା ନ କହି ସୁବିସ୍ତୃତ ଭାବରେ ଲେଖିଅଛନ୍ତି କି, ଅନ୍ୟୋଽନ୍ୟ ମନୋମାଳିନ୍ୟବଶତଃ ପାଣ୍ଡବମାନେ ବାରୁଣାବତ ଗଲା ପରେ ଦିନେ ଅର୍ଜୁନଙ୍କଦ୍ୱାରା ନିହତ ଗଣ୍ଡକ ମୃଗଟିଏ ଯୁଧିଷ୍ଠିର ଭୀମଙ୍କ ହସ୍ତରେ ଧୃତରାଷ୍ଟ୍ରଙ୍କଠାକୁ ପ୍ରେରଣ କଲେ, ପବନୋଦ୍ଧତ ସାଗରୋର୍ମିପ୍ରାୟ ସର୍ବଦା ପାଣ୍ଡବବିକ୍ରମ ଭୟରେ ବିଚଳିତ ହୃଦୟ କଳୁଷିତାନ୍ତଃକରଣ ଦୁର୍ଯ୍ୟୋଧନ ବାହ୍ୟରେ ସୌଭ୍ରାତ୍ର ପ୍ରଦର୍ଶନାର୍ଥ ଭୀମକର୍ମା ଭୀମଙ୍କ ସହିତ ଏକତ୍ର ଭୋଜନରେ ବସି ତାହାଙ୍କୁ ବିଷ ପ୍ରଦାନ କରାଇଲେ । ଭୀମସେନ ପ୍ରତ୍ୟଗ୍ରହଳାହଳର ପ୍ରତାପରେ ନିଶ୍ଚେଷ୍ଟ

---

* ମୂଳ ଭୀଷ୍ମ ପର୍ବରେ ଏହାର ସୂଚନା ମାତ୍ର ଅଛି । ସଦୃଶଃ ଫାଲ୍‌ଗୁନେନାସି କୃଷ୍ଣେନ ଚ ମହାତ୍ମନା ।
କର୍ଣ୍ଣ ! କାଶିପୁରଂ ଗତ୍ୱା ତ୍ୱୟୈକେନ ଧନୁଷ୍ମତା । କନ୍ୟାର୍ଥେ କୁରୁରାଜସ୍ୟ ରାଜନୋମୃଦିତା ଯୁଧି ।
ଭୀ: ପ: ୧୨୪ ଅଧ୍ୟାୟ ୧୬ ଶ୍ଳୋକ । କର୍ଣ୍ଣଙ୍କ ପ୍ରତି ଭୀଷ୍ମଙ୍କ ଉକ୍ତି ।

† ଉଦକକ୍ରୀଡ଼ନଂ ନାମ କାରୟାମାସ ଭାରତ ।
ପ୍ରମାଣକୋଟ୍ୟାଂ ତଂ ଦେଶଂ ସ୍ଥଳଂ କିଞ୍ଚିଦୁପେତ୍ୟହ ।। ଆ: ପ: ୧୨ ଅଧ୍ୟାୟ ।।

ହୋଇଗଲାରୁ ତାହାଙ୍କୁ ଯମୁନାରେ ନିକ୍ଷେପ କଲେ । ଭୀମ କ୍ରମେ ନାଗଲୋକରେ ଉପସ୍ଥିତ ହେଲାରୁ ନାଗରାଜ ନିଜ କନ୍ୟା ବେଲ୍ଲାବଲ୍ଲୀଙ୍କର ପାଣିଗ୍ରହଣ କରାଇଲେ । † ଭୀମ ନବପରିଣୀତା ବେଲ୍ଲାବଲ୍ଲୀଙ୍କ ପ୍ରୀତିରେ ବିମୁଗ୍ଧ ଓ ବିସ୍ମୃତଭ୍ରାତୃବାତ୍ସଲ୍ୟ ହୋଇ ପାତାଳରେ ବହୁଦିନ ରହିଗଲେ । * ଇତ୍ୟବସରରେ ପାଣ୍ଡବାସୁର ସମସ୍ତ କୌରବଙ୍କୁ ଆହବରେ ହତାହତ କଲେ । ଧର୍ମାବତାର ଯୁଧିଷ୍ଠିର କୌରବମାନଙ୍କ ରକ୍ଷଣାର୍ଥ ଭୀମଙ୍କୁ ସ୍ମରଣ କଲେ । ଭୀମ ଅବିଳମ୍ବେ ପାତାଳରୁ ଆଗତ ହୋଇ ପାଣ୍ଡବାସୁରକୁ ନିହତ କଲେ, ଇତ୍ୟାଦି । ପୁଣି ଏ ସ୍ଥଳରେ ବ୍ୟୁତ୍ପତ୍ତି ପ୍ରକାଶ କରିଅଛନ୍ତି କି, ପାଣ୍ଡବାସୁରକୁ ନାଶିବାରୁ ଏମାନଙ୍କର ପାଣ୍ଡବ ନାମ ହେଲା । "ପାଣ୍ଡବାସୁରକୁ ଯହୁଁ ପାଣ୍ଡବେ ବଧିଲେ, ତେଣୁ ସେ ପାଣ୍ଡବ ନାମ ପାଞ୍ଚହେଁ ବହିଲେ ।" ଆ:ପ: † ଭୀମଙ୍କର ବେଲ୍ଲାବଲ୍ଲୀ ସହ ପରିଣୟ ବିବରଣ ଆଉ ପାଣ୍ଡବାସୁର କଥା ମୂଳରେ ଆଦୌ ନାହିଁ; ପରନ୍ତୁ ବ୍ୟୁତ୍ପତ୍ତିବୈଚିତ୍ର୍ୟ ଦେଖିଲେ ଅସଙ୍ଗତ ମଧ୍ୟ ଜଣାଯାଏ ।

(୭) ବ୍ୟାସ କହିଅଛନ୍ତି କି, ବିଦୁରଙ୍କର ଜଣେ ବିଶ୍ୱସ୍ତ ଖନକ ଜତୁଗୃହରୁ ଗଙ୍ଗୋପକଣ୍ଠ ପର୍ଯ୍ୟନ୍ତ ଗୋଟିଏ ସୁପ୍ରଶସ୍ତ ବିଳ କରି ତାହାର ମୃତ୍ତିକାନିଚୟକୁ ପରିଖା-ପରିଷ୍କାରବ୍ୟପଦେଶରେ ଉତ୍କ୍ଷିପ୍ତ କରାଇଲେ । ସୁଡ଼ଙ୍ଗ – ସୁଡ଼ଙ୍ଗ ନିଷ୍ପତ୍ତିର ଅପେକ୍ଷାରେ ପାଣ୍ଡବମାନେ ଜତୁଗୃହରେ ୧ ଏକ ବର୍ଷ ମାତ୍ର ଅବସ୍ଥିତ ଥିଲେ, ଇତ୍ୟାଦି । କିନ୍ତୁ ସାରଳାଦାସ କବି ଏ ବିଷୟକୁ ଅତି ବିସ୍ତୃତ କରିବାକୁ ଯାଇ ଲେଖିଅଛନ୍ତି ଯେ, ବିଦୁର ଏକଦା ତମସାବଗୁଣ୍ଠିତ ନିଶା ସମୟରେ ଭ୍ରମଣ କରୁଁ କରୁଁ ଗୋଟିଏ ଚୌରକୁ ଦେଖିଲେ । ବିଦୁରଙ୍କ ପ୍ରଶ୍ନରେ ସେ ଆତ୍ମପରିଚୟ ଦେଲା ଯେ ୨ ବୃନ୍ଦା ଦୂତୀର ଗର୍ଭରୁ ଶ୍ରୀକୃଷ୍ଣଙ୍କ ୩ ଔରସରେ ଜନ୍ମଗ୍ରହଣ କରି ସେ ପୂର୍ବେ ଯମୁନାତୀରରୁ ଶ୍ରୀରାଧାଙ୍କ ମନ୍ଦିର ପର୍ଯ୍ୟନ୍ତ ବିଳ କରିଥିଲା, ଇତ୍ୟାଦି । ବିଦୁର ଚୌରର ପରିଚୟ ପାଇ ତାହାକୁ ବିବର ଖନନରେ ନିଯୁକ୍ତ

---

† ଅମୃତ ଯୋଗାଡ଼ ତହୁଁ ଅନନ୍ତ ଭିଏଇଲା ।
ବେଲ୍ଲାବଲ୍ଲୀକି ଭୀମସେନକୁ ବିଭା କଲା ।। ଆ: ପ:

* ବ୍ୟାସଙ୍କ ମତେ ଭୀମସେନ ହତଚେତନ ହୋଇ ପାତାଳରେ ଅଷ୍ଟଦିବସ ମାତ୍ର ଥିଲେ । ଉନତ୍ରିଂଶୋତ୍ତରଶତତମାଧ୍ୟାୟ ଦ୍ୱାବିଂଶତି ଶ୍ଳୋକ ଦେଖନ୍ତୁ ।

† ଛାପାରେ ଆ:ପ: ୧୭୭ ପୃ: ଦେଖନ୍ତୁ ।

୧ ତାଂସ୍ତୁ ଦୃଷ୍ଟ୍ୱା ସୁମନସଃ ପରିସମ୍ବତ୍ସରୋଷିତାନ୍ – ଆଦିପର୍ବ, ୧୪୦ ଅ:

୨ ସେ ଯାହା ଯାହା କହିଅଛି, ସେ ସବୁ ଲେଖିଲେ ଗୋଟିଏ ସାଧାରଣ ସ୍ୱତନ୍ତ୍ର ପୁସ୍ତକ ହେବ ।

୩ ଏ ସ୍ଥଳରେ ଭଗବାନ୍ ଶ୍ରୀକୃଷ୍ଣଙ୍କ ଚରିତ୍ରଚିତ୍ରଣ ବଡ଼ କଦାକାର କରିଅଛନ୍ତି । ଏହା ତାହାଙ୍କର ତାତ୍କାଳିକ କପୋଳକଳ୍ପିତ କିମ୍ବା ଆବାଲ୍ୟଦୁଃସମାଜସଙ୍ଗପ୍ରାପ୍ତ ଦୁର୍ବୀକର ଫଳ, ତାହା କିଛି ନିର୍ଣ୍ଣୟ କରି ନ ପାରୁଁ ।

କଲେ । ବିଳାରମ୍ଭର ଅବ୍ୟବହିତ ପରେ ହସ୍ତିନାଗତ ଶ୍ରୀକୃଷ୍ଣଙ୍କୁ ବିଦୁର ଏ ସବୁ କଥା କହନ୍ତେ ସେ ସ୍ୱକୀୟ ଦୋର୍ଦ୍ୱୟରୁ ଛାୟା ମାୟା ନାମକ ବୀରଦ୍ୱୟଙ୍କୁ ସୃଷ୍ଟି କରି ଉତ୍‌ଖାତ ମୃତ୍ତିକାକୂଟର ଭକ୍ଷଣାର୍ଥ ପ୍ରେରଣ କଲେ, ଇତ୍ୟାଦି । ବିବର ଖନକଙ୍କ ପରି ଜାତୁଷ ଗୃହନିର୍ମାତା ମଧ୍ୟ ସାରଳାଦାସଙ୍କ ମତରେ ଅପରିଚିତ ଓ ନବାଗତ ବ୍ୟକ୍ତି ଥିଲେ । ସତ୍ୟତଃ ଦୁର୍ଯ୍ୟୋଧନ ଆତ୍ମୀୟ ସଚିବ ପୁରୋଚନଙ୍କ କର୍ତ୍ତୃକ ଜାତୁଷ ଗୃହ ନିର୍ମାଣ କରାଇଥିଲେ । ଏ କହନ୍ତି କି, ଅଜ୍ଞାତକୁଳଶୀଳ ଅରଣ୍ୟରେ ବଂଭ୍ରମ୍ୟମାଣ ୪ (ପୁରୋଚନ ନାମକ) ଏକ ବ୍ରାହ୍ମଣଦ୍ୱାରା ଜତୁଗୃହ ନିର୍ମାଣ କରାଇଲେ ୫ ଏବଂ ଏକାଦଶ ବା ଦ୍ୱାଦଶ ବର୍ଷଯାଏ ଆରବ୍‌ଧ ବିବର କାର୍ଯ୍ୟ ଲାଗିଥିବାରୁ ପାଣ୍ଡବମାନେ ତାବତ୍ ପର୍ଯ୍ୟନ୍ତ ଜତୁଗୃହରେ ରହିଲେ । ୬ ପାଣ୍ଡବମାନେ ଜତୁଗୃହରୁ ବହିର୍ଗତ ହୋଇ ଗଙ୍ଗାନଦୀକି ତରିବା ସମୟରେ କୁମ୍ଭୀରରୂପୀ ଅସୁର ପ୍ରତିରୋଧ କଲାରୁ ଯୁଧିଷ୍ଠିରାଦି ଐକମତ୍ୟରେ ଭୀମଙ୍କୁ ଦୈତ୍ୟର ଆହାର୍ଯ୍ୟରୂପେ ଗଙ୍ଗାସ୍ରୋତରେ ନିକ୍ଷେପ କଲେ । ଭୀମ ତାଙ୍କୁ ନିହତ କଲେ, ଇତ୍ୟାଦି । ପରେ ସେହି କୁମ୍ଭୀର ବକ ଦୈତ୍ୟର ଭ୍ରାତା ବୋଲି ମଧ୍ୟ କହିଅଛନ୍ତି । ତାହାହେଲେ କିର୍ମୀର ଦୈତ୍ୟ ବକ ଦୈତ୍ୟର ଭ୍ରାତା, କୁମ୍ଭୀର ନୁହେ । ଏହାକୁ ବନରେ ଅନ୍ୟ ସମୟରେ ଭୀମ କେବଳ ନାଶ କରିବେ, ଏ କଥା ମୂଳରେ ବନପର୍ବରେ ଉକ୍ତ ଅଛି । ମାତ୍ର ଗଙ୍ଗାତିତୀର୍ଷୁ ପାଣ୍ଡବମାନଙ୍କର ଗଙ୍ଗୋତ୍ତରଣକାଳରେ କୁମ୍ଭୀର କଥା ମୂଳରେ ଆଦୌ ନାହିଁ । କିର୍ମୀରର ନାମକୁ ଠିକ୍ ମନେ ରଖିନପାରି ଭ୍ରାନ୍ତିବଶରୁ କୁମ୍ଭୀର କରି ଏହି କାଳ୍ପନିକ କଥା ସହ ଲେଖିଅଛନ୍ତି । ୭ ପୁଣି ଜତୁଗୃହରେ ମୃତ ବ୍ୟକ୍ତିପଞ୍ଚକର (ପୁରଞ୍ଜନ ବିନା) ପୂର୍ବଜନ୍ମବୃତ୍ତାନ୍ତ ଓ ତଦାନୀନ୍ତନ ଜନ୍ମର କାରଣ ସହ ବହୁତଗୁଡ଼ାଏ କଥା ଲେଖିଅଛନ୍ତି । ତଦୀୟ ସଂକ୍ଷିପ୍ତ ସ୍ଥୂଳ ପରିଚୟ ଏହି ଯେ, ବଶିଷ୍ଠଧେନୁ ସକାଶେ ବିଶ୍ୱାମିତ୍ର ବହୁ ଯୁଦ୍ଧ କରି ପରାସ୍ତ ହେଲା ପରେ କଠୋର ତପସ୍ୟାଲବ୍ଧ ଅଷ୍ଟବସୁଙ୍କ କର୍ତ୍ତୃକ ପ୍ରୋକ୍ତ ଧେନୁର

---

୪ ସ ପୁରୋଚନମେକାନ୍ତମାନୀୟ ଭାରତର୍ଷଭ । ଗୃହିତ୍ୱା ଦକ୍ଷିଣେ ପାଣୌ ସଚିବଂ ବାକ୍ୟମବ୍ରବୀତ୍ – ଇତ୍ୟାଦି – ଆ: ପ: ୧୪୬ ଅ: ୨ ଶ୍ଳୋ:

୫ କର୍ଣ୍ଣ ପଚାରିଲା ତୁମ୍ଭେ କାହାର ପଣ୍ଡାଏ ।
ବନେ ବୁଲୁଅଛୁ ତ ବନବାସୀ ପରାୟେ ।। ଇତ୍ୟାଦି ।। ଆ:ପ: ୧୬୫ ପୃ:

୬ ଗୁପତେ ବିମ୍ବର ଖୋଳାଇଲା ଟସେକର,
ଏଗାର ବରଷେ ତାହା ହୋଇଲା ତିଆର ।
ଦ୍ୱାଦଶ ବରଷେ ମୋତେ ବହୁ ଧନ ଦେଇ
ବିଦୁର ଆଜ୍ଞାରେ ମୁଁ ବିମ୍ବରେକ ଭିଆଇ । ଆ:ପ: ୧୮୯ ପୃ:

୭ ଅହଂ ବକସ୍ୟ ବୈଭ୍ରାତା କିର୍ମୀର ଇତି ବିଶ୍ରୁତଃ ।
ବନେଽସ୍ମିନ୍ କାମ୍ୟକେ ଶୂନ୍ୟେ ନିବସାମି ଗତଜ୍ୱରଃ । ବନପର୍ବ । ୧୧ ଅ:

ଆନୟନ ସମୟରେ ବସୁଗଣ ବଶୀନ୍ଦ୍ର ବଶିଷ୍ଠଙ୍କଦ୍ୱାରା ଅଭିଶପ୍ତ ହେଲେ । ସେଥିରୁ ଜଣେ ପୁରଞ୍ଜନ । ପ୍ରଥମତଃ ପାଞ୍ଚଜଣ ଶାନ୍ତନବରୂପେ ଜନ୍ମି ଗଙ୍ଗାଙ୍କଦ୍ୱାରା ମୃତ ହୋଇଥିଲେ । ସଂପ୍ରତି ଶବରସନ୍ତାନରୂପେ ଅନ୍ଧୀଭୂତ ହୋଇ ବନରେ ରହିଥିଲେ, ଇତ୍ୟାଦି । ଏ ସବୁ ମୂଳରେ ନାହିଁ, ତଥାପି ନିତାନ୍ତ ଅଳୀକ ନୁହେ ବୋଲି ଅନୁମେୟ । ଭୀଷ୍ମାଦିଙ୍କ ପୂର୍ବଦେହ ଅଷ୍ଟବସୁଙ୍କ କଥା ମୂଳ ମହାଭାରତରେ ଅନ୍ୟତ୍ର ଭିନ୍ନପ୍ରକାରତଃ ଉକ୍ତ ଅଛି । ଏହ କବି ତାହାର ଯଥାତଥ୍ୟ ଲେଖି ନ ପାରିଲେ ସୁଦ୍ଧା ତଦନୁକରଣ କରି ଅନ୍ୟତ୍ର ଲଗାଇ ଅଛନ୍ତି । ତଥାଚ ଜତୁଗୃହ ଘଟନା ପରେ ଅମୌଳିକ ଆକସ୍ମିକ ପ୍ରକ୍ଷେପରୂପେ ଲେଖିଅଛନ୍ତି କି, ଶ୍ରୀକୃଷ୍ଣ ଓ ବଳରାମଙ୍କର ଅନୁପସ୍ଥିତି ସମୟ ଦେଖି ଶତଧନୁ ଅନାଧୃଷ୍ଟ ଓ କୃତବର୍ମା ଶକ୍ରାଜିତଙ୍କୁ ନିହତ କରି ସ୍ୟମନ୍ତକମଣି ଘେନିଗଲେ, ଇତ୍ୟାଦି । ମାତ୍ର ଏହା ଭାଗବତୋକ୍ତ ଚରିତ, ମୂଳ ଭାରତରେ ଅନୁକ୍ତ ଥିବାରୁ ସେ ନିଜେ ସ୍ୱୀକାରପୂର୍ବକ କହିଅଛନ୍ତି ଯେ, ଏହି ବିଷୟଟିକି ଏ ସ୍ଥଳରେ ପ୍ରସ୍ତାବାନୁସାରେ ମାତ୍ର ଲେଖିଲୁଁ । * ଏହାପରେ ଘୋର ବିପସମାକୁଳ କାଳକକ୍ଷ ଜତୁଗୃହରୁ ଦୈବବଳରେ ସମୁତ୍ତୀର୍ଣ୍ଣ ପାଣ୍ଡବମାନେ ବନରେ ଯାଉଅଛନ୍ତି, ଏମନ୍ତ ସମୟରେ ମାତାଙ୍କଦ୍ୱାରା ସମାଦିଷ୍ଟ ଭୀମ ଜଳାହରଣାର୍ଥ ଗଲେ । ଜଳପାତ୍ର ହସ୍ତରେ ପ୍ରତ୍ୟାବୃତ୍ତ ହୋଇ ଦେଖିଲେ ଯେ, ଏମାନେ ନିତାନ୍ତ କ୍ଲାନ୍ତିବଶରୁ ଭୂତଳରେ ଶୟନ କରିଅଛନ୍ତି । ଏହା ଦେଖି ପୂର୍ବ ଦୁଃଖ ସ୍ମରଣାନୁପାତ ଅନୁଶୋଚନାସଂତପ୍ତ ମନରେ ଜାଗରଣ ପର୍ଯ୍ୟନ୍ତ ଅପେକ୍ଷା କରି ବସିଲେ । କିନ୍ତୁ ସାରଳାଦାସ କହନ୍ତି, ଭୀମ ଯୁଧିଷ୍ଠିରାଦେଶରେ ଜଳାର୍ଥ ପ୍ରସ୍ଥାନ କରି ନଦୀତୀରସ୍ଥ ମଧୁବନରୁ ଫଳାଦି ଭୋଜନପୂର୍ବକ ସେଠାରେ ସୁଖସୁପ୍ତ ହେଲେ । ତଦା କୁମ୍ଭୀର ଦୈତ୍ୟର ଭ୍ରାତା ସେ ବନର ଅଧିକାରୀ କିନ୍ନର ଦୈତ୍ୟ ରୋଷକଷାୟିତ ନେତ୍ରରେ ଭୀମ ସହ ଯୁଦ୍ଧ କଲା । ଭୀମ ତାକୁ ବଧ କରି ଜଳ ଓ ଫଳଭାର ଧରି ଆସିଲେ, ଇତ୍ୟାଦି । ମୂଳରେ କୁମ୍ଭୀର ଓ କିନ୍ନର ଦୈତ୍ୟର କଥା ନାହିଁ ଏବଂ ମୂଳଗ୍ରନ୍ଥୋକ୍ତ ଯୁଧିଷ୍ଠିରାଦିଙ୍କର ତାତ୍କାଳିକ ଦୁରବସ୍ଥା ଦର୍ଶନଜନିତ ଭୀମଙ୍କ ଅନୁଶୋଚନା ସାରଳାଦାସଙ୍କ ଭାରତରେ ଏ ସ୍ଥଳରେ ନାହିଁ; ମାତ୍ର ମୂଳରେ ଅନୁକ୍ତ ଆହୁରି ଅନେକଗୁଡ଼ିଏ କଥା ଲେଖାଅଛି । ନଦୀ ଓ ପର୍ବତମାନଙ୍କର ନାମ କଳ୍ପନା ବଳରେ ସୃଷ୍ଟି ହୋଇଅଛି । ପରନ୍ତୁ ତାହାର କେତେକ ଦିନ ପରେ ପୂର୍ବବଦ୍ ଯୁଧିଷ୍ଠିରାଦି ପ୍ରସୁପ୍ତ ଥିବାର ଦେଖି ଭୀମଙ୍କର ପୂର୍ବୋକ୍ତ ପ୍ରକାର ଅନୁଶୋଚନା ଲେଖିଅଛନ୍ତି । ଯାହାହେଉ ସମୟ ଓ ସ୍ଥାନର ବୈଷମ୍ୟ ରଖି ସୁଦ୍ଧା ମୂଳ ଗ୍ରନ୍ଥର ଏହି ଘଟନାଟି ଦେଇଅଛନ୍ତି । ସାରଳାଦାସ କବି ମୂଳ ଶୁଶ୍ରୂଷାଜନିତ ଜ୍ଞାନବଳରେ

---

* ବଦନ୍ତି ଅଗସ୍ତି ଶୁଣ ମନୁ ନରନାଥ
ପ୍ରସ୍ତାବବାକ୍ୟେ କହିଲି ଶ୍ରୀମହାଭାରତ । ଆ: ପ:

କେତେବେଳେ ସତ୍ୟମୂଳକ ଋଜୁମାର୍ଗରେ ଯାଇ ଯାଇ ମଧ୍ୟେ ମଧ୍ୟେ ଭ୍ରାନ୍ତଧାରଣାବଶତଃ ଏତାଦୃଶ ବିମାର୍ଗରେ ମଧ୍ୟ ଚାଲିଯାଇଅଛନ୍ତି । ଅପିଚ ହିଡ଼ମ୍ବାସୁରବଧ ସ୍ଥଳରେ କଳ୍ପିତ ନାମାଦି ସହ ତଦୀୟ ଭଗିନୀ ହିଡ଼ମ୍ବା ମୁଖରେ ତାହାର ପୂର୍ବବଂଶାନୁକ୍ରମାଦି ଅନେକ ଅମୂଳକ ୧ କାଳ୍ପନିକ କଥା ପ୍ରକାଶ କଲାପରେ କହିଅଛନ୍ତି କି, ଭୀମସେନ ହିଡ଼ମ୍ବନାଶପୂର୍ବକ ହିଡ଼ମ୍ବାଙ୍କି ବିବାହ ହେଲା ଉତ୍ତାରୁ ପାଣ୍ଡବମାନେ ସେହି ସ୍ଥଳରେ ସାତ ବର୍ଷ ଅବସ୍ଥାନ କଲେ ୨ । କିନ୍ତୁ ମୂଳରେ ଉକ୍ତ ଅଛି, ହିଡ଼ମ୍ବ ନାଶର ଅବ୍ୟବହିତ ପରେ ହିଡ଼ମ୍ବା ସହିତ ସମସ୍ତେ ସେଠାରୁ ପ୍ରସ୍ଥାନ କଲେ । ପରେ ହୈଡ଼ମ୍ବେୟ ଘଟୋତ୍କଚ ଜନ୍ମିଲେ ୩ । ପାଠକେ ! ଦେଖନ୍ତୁ ଯେ, ପ୍ରଥମତଃ ପାଣ୍ଡବମାନେ ଜତୁଗୃହରୁ ନିର୍ଗତ ହେବା ସମୟରେ ସାରଳାଦାସଙ୍କ ମତରେ ବିଦୁର କହିଥିଲେ କି –

''ଯେମନ୍ତେ ବାବୁରେ ନ ଜାଣନ୍ତି ଆନ ଜଣେ ।
ବରଷେ ତେର ଦିନ ଯାଅ ଗହନ ବନେ ।।'' ଆ: ପ: ୧୯୦ ପୃ:

ଆଦୌ ବର୍ଷେ ତେର ଦିନ ସ୍ଥିର କରି ଏ ସ୍ଥଳରେ ସାତ ବର୍ଷ କହିବା ଅସଂଗତ । କିନ୍ତୁ ଏହାକୁ କବି ନିଜେ ପ୍ରମାଦବଶତଃ ଲେଖିଯାଇଅଛନ୍ତି, ଅଥବା ଦୁର୍ମେଧ ଲେଖକଙ୍କ ଅତ୍ୟାଚାରରୁ ଏହା ଘଟିଅଛି, ତାହା ସ୍ଥିର କରିବାକୁ କୌଣସି ଉପାୟ ନାହିଁ ।

(୮) ଅତଃପର ଦ୍ରୁପଦରାଜ ସ୍ୱତପସ୍ୟାରେ ସନ୍ତୁଷ୍ଟ ଆଶୁତୋଷ ଶିବଙ୍କ ଠାରୁ ସଂପ୍ରାପ୍ତବର ହୋଇ ପୁତ୍ରେଷ୍ଟି ଯାଗ କଲାରୁ ଶିଖଣ୍ଡୀ, ଧୃଷ୍ଟଦ୍ୟୁମ୍ନ ଓ ଦ୍ରୌପଦୀ ଦେବୀ ଯଜ୍ଞରୁ ସମୁତ୍ପନ୍ନ ହେବା, ସିନ୍ଧୁ ସୌବୀରରାଜ ଜୟଦ୍ରଥ ଦୁଃଶୀଳାଙ୍କୁ ବିବାହ ହେବା ଏବଂ ଶିଖଣ୍ଡୀ ମଧୁମତୀ କନ୍ୟାକୁ ବିବାହ ହେଲା ପରେ ସେହି କନ୍ୟା ଶିଖଣ୍ଡୀଙ୍କୁ କ୍ଲୀବ ଜାଣି ଆତ୍ମହତ୍ୟା ସ୍ଥିର କରିବା, ମଧୁମତୀଙ୍କ ପିତା ଶିଖଣ୍ଡୀ ଜିଘାଂସାରେ ଅଭିଯାନ କରିବା, ଭୟବିହ୍ୱଳା ଦ୍ରୁପଦରାଣୀ ଶିଖଣ୍ଡୀ ସହ ଗନ୍ଧମାର୍ଦନକୁ ପଳାୟନ କରିବା, ତତ୍ରତ୍ୟ

---

୧ ମୂଳ ଗ୍ରନ୍ଥର ସ୍ଥାନାନ୍ତରରେ ଲେଖାଅଛି, ହିଡ଼ମ୍ବ, ବକ ଓ କିର୍ମୀର ଦୈତ୍ୟର ସଖା ଥିଲା ।

ଅନେନ ହି ମମଭ୍ରାତା ବକୋ ବିନିହତଃ ପ୍ରିୟଃ ।
ବେତ୍ରକୀୟ ବନେ ରାଜନ୍ ବ୍ରାହ୍ମଣ ଛଦ୍ମରୂପିଣା ।
ହିଡ଼ମ୍ବଶ୍ଚ ସଖା ମହ୍ୟଂ ଦୟିତୋ ବନଗୋଚରଃ ।
ହତୋ ଦୁରାତ୍ମନାନେନ ସ୍ୱସା ଚାସ୍ୟ ହୃତା ପୁରା । ବନପର୍ବ ୧୧ ଅ:

୨ ଜଉତୁକ ପାଇଲେ ହିଡ଼ମ୍ବିକ ବନସ୍ତ ।
ମହାସୁଖେ ରହିଲେ ସାତ ବର୍ଷ ପର୍ଯ୍ୟନ୍ତ ।।

୩ ମୂଳର ଚତୁଃପଞ୍ଚାଶଦଧିକଶତତମାଧ୍ୟାୟ ଚତୁସ୍ତ୍ରିଂଶ ଓ ପଞ୍ଚତ୍ରିଂଶ ଶ୍ଳୋକ ଏବଂ ତତ୍ପର ଅଧ୍ୟାୟ ଦେଖନ୍ତୁ ।

ତୁଳାକର୍ଣ୍ଣ (ସ୍ଥୂଣାକର୍ଣ୍ଣ) ନାମକ ୧ ଗନ୍ଧର୍ବଙ୍କଠାରୁ ଶିଖଣ୍ଡୀ ବିନିମୟକ୍ରମରେ ପୁଂସ୍ତ୍ୱ ପାଇବା ଏବଂ ଧୃଷ୍ଟଦ୍ୟୁମ୍ନଙ୍କ ବିବାହ ଇତ୍ୟାଦି କଥା ୨୨୬ ପୃଷ୍ଠାଠାରୁ ୨୪୦ ପୃଷ୍ଠା ଯାଏ ଲେଖି ଅଛନ୍ତି । ଏସବୁ ମୂଳ ଗ୍ରନ୍ଥରେ ଏ ସ୍ଥଳରେ ନାହିଁ ସତ୍ୟ, କିନ୍ତୁ ଆଦିପର୍ବାନ୍ତର୍ଗତ ଚୈତ୍ରରଥ ପର୍ବରେ ୧୬୭ ଅଧ୍ୟାୟରେ ଧୃଷ୍ଟଦ୍ୟୁମ୍ନ ଓ ଦ୍ରୌପଦୀଙ୍କ ସମ୍ଭୂତି ବିଷୟ ଉକ୍ତ ଅଛି । ଜୟଦ୍ରଥଙ୍କ ବୈବାହିକ ପ୍ରକ୍ରିୟା ଆମୂଳାନ୍ତ ଉକ୍ତ ନ ଥିଲେ ସୁଦ୍ଧା ବୀଜଭୂତରୂପେ ସୂଚିତ ହୋଇଅଛି । ଶିଖଣ୍ଡୀଙ୍କ ଯାବତୀୟ କଥା ତ ଉଦ୍‌ଯୋଗ ପର୍ବର ଅମ୍ବୋପାଖ୍ୟାନରେ ଉକ୍ତ ଥିବାର କହିଅଛୁଁ, ମତିମାନ୍ ସାରଳାଦାସ କବି ମୂଳରେ ବହୁ ବ୍ୟବଧାନାନ୍ତରିତ ଦୂରରେ ନିହିତ ଚରିତମାନ ସମ୍ୟକ୍ ମନନ କରି ପୂର୍ବାପର ଚରିତର ସନ୍ଦର୍ଭାନୁମତେ ଯେଉଁ ସ୍ଥାନରେ ଯାହା କହିଲେ ପାଠକ ଓ ଶ୍ରୋତୃଗଣଙ୍କର ଉପଲବ୍ଧି ସୁଗମ ହେବ ଅପିଚ କଥା ସଂଗତ ହୋଇ ଏକତ୍ର ରହିବ, ସେପରି ସୁବିଚାରରେ ସ୍ଥାନେ ସ୍ଥାନେ ସ୍ୱକୀୟ କଳ୍ପନାରେ ବିସ୍ତୃତ କରି ଲେଖିଅଛନ୍ତି । ଏହା ସାଧାରଣ ବୁଦ୍ଧି ବିଚାରର କାର୍ଯ୍ୟ ନୁହେ ।

(୯) ଦୁଃସହଦୁଃଖଧୂମିତହୃଦୟ ପ୍ରଚ୍ଛନ୍ନବେଶ ସତ୍ୟସନ୍ଧ ପାଣ୍ଡବମାନେ ଏକଚକ୍ରା ପୁରକୁ ପ୍ରସ୍ଥାନ କରିବା ପୂର୍ବରୁ ଓଡ଼ାଦି ଶିବପୁରକୁ ଯାଇଥିଲେ ବୋଲି ତଦ୍‌ସଂକ୍ରାନ୍ତ କଳ୍ପିତ ନାମଧାମାଦି ସହ ମୂଳରେ ଅନୁକ୍ତ ଅନେକଗୁଡ଼ିଏ କଥା ମିଶାଇ ଅଛନ୍ତି । ୨ ପୁଣି କହିଅଛନ୍ତି କି, ସେହି ଓଡ଼ାଦି ଶିବପୁରରେ କୁନ୍ତୀ ଦ୍ୱିତୀୟ ଭୀମସେନଙ୍କୁ ରଖି ୩ ଭ୍ରାତୃତ୍ରୟସହାୟ ଧାର୍ମିକବର ଯୁଧିଷ୍ଠିର ଗୌତମୀ ତୀର୍ଥକୁ ଗଲେ । ୪ ଇତ୍ୟବସରରେ ପ୍ରୋକ୍ତ ନଗରରେ ଚଣ୍ଡପ୍ରକୃତିକ ଚଣ୍ଡାଳ ଓ ବ୍ରାହ୍ମଣମାନଙ୍କର ଅସୂୟାଜନିତ କଳହକଲ୍ଲୋଳ କୋଳାହଳପୁରଃସର ଯୁଦ୍ଧସଂମର୍ଦ୍ଦ ଉପସ୍ଥିତ ହେଲା । ଅତିମାନୁଷ ଭୀମ

---

୧ ଏଠାରେ ପାଠକଙ୍କୁ ଚିହ୍ନାଇ ଦେବା ଉଚିତ ଯେ, ଶିଖଣ୍ଡୀ ଯାହାଙ୍କଠାରୁ ପୁଂସ୍ତ୍ୱ ପ୍ରାପ୍ତ ହେଲେ, ତାହାଙ୍କ ନାମ ସ୍ଥୂଣାକର୍ଣ୍ଣ ବୋଲି ମୂଳରେ ଲେଖା ଅଛି । ସାରଳାଦାସଙ୍କ ଭାରତରେ ତୁଳାକର୍ଣ୍ଣ ହୋଇଅଛି । ବୋଧହୁଏ, ଆଦର୍ଶ ଲେଖକ ସ୍ଥୂଣାକୁ ତୁଳା କରି ଦେଇଅଛନ୍ତି, କବି ଏପରି ଲେଖି ନ ଥିବେ ।

୨ କୁତୂହଳେ ଭିକ୍ଷାପାତ୍ର ଘେନି ନିଜ କରେ ।
ନଗ୍ର ପରିମଳ ଯେ ଓଡ଼ାଦି ଶିବପୁରେ ।।

୩ ଭୀମଙ୍କୁ ତିଆରି ପାଣ୍ଡୁରାଜାର ତନୟେ ।
ଚଳନ୍ତି ଚାରି ଭାଇ ଗୌତମୀ ତୀର୍ଥଯାଏ ।। ଛାଃ ୨୪୬ ପୃ:

୪ ମୂଳରେ ଉକ୍ତ ଏକଚକ୍ରାପୁରରେ ମାତାଙ୍କଠାରେ ଭୀମଙ୍କୁ ରଖି ଯୁଧିଷ୍ଠିରାଦି ଚତୁଷ୍ଟୟ ଭିକ୍ଷାର୍ଥ ଯିବା କଥା ବୋଧହୁଏ ଏ କବି ଠିକ୍ ମନେ ରଖି ନ ପାରି ଗୌତମୀ ଯାତ୍ରା କଥା କଳ୍ପନା କରିଦେଇ ଅଛନ୍ତି ।

ବ୍ରାହ୍ମଣମାନଙ୍କ ପ୍ରତି ନିଷ୍ଠୁରକମ୍ପାନୁକମ୍ପା ପ୍ରକାଶପୂର୍ବକ ବୈଶ୍ୱାନରକଳ୍ପ କ୍ରୋଧପ୍ରଜ୍ୱଳିତ ହୋଇ ଦୈତ୍ୟସ୍ୱଭାବ ସମଗ୍ର ଚଣ୍ଡାଳମାନଙ୍କୁ ନିହତ କରି ଦ୍ୱିଜବର୍ଯ୍ୟବର୍ଗ ପ୍ରଦତ୍ତ କାଳବର ନାମକ ଉପାଧି ପ୍ରାପ୍ତିପୂର୍ବକ ସେଠାରେ ରାଜାରୂପେ ଅଭିଷିକ୍ତ ହେଲେ । ୧ ପାଞ୍ଚମାସ ୨ ପରେ ଯୁଧିଷ୍ଠିର ଅର୍ଜୁନାଦି ସହ ପ୍ରତ୍ୟାବୃତ୍ତ ହେଲେ । ଦେଖିଲେ ଯେ, ରାଜୈଶ୍ୱର୍ଯ୍ୟାପନୋଦିତସୁଜ୍ଞାନବୈଭବ ଭୀମସେନ ମାତା କୁନ୍ତୀଦେବୀଙ୍କି ଏକାକିନୀ କରିଦେଇଅଛନ୍ତି । ତଦବଗମନରେ ନିତାନ୍ତ ଦୁଃଖିତ ହୋଇ ଭ୍ରାତୃବୈହୃଦ୍ୟଶଙ୍କାକଳଙ୍କକର୍ବୁରିତ ହୃଦୟରେ ମାତାଙ୍କୁ ସଙ୍ଗରେ ଧରି ଭୀମଙ୍କ ଦିଦୃକ୍ଷାରେ ଗଲେ । ରାଜୈଶ୍ୱର୍ଯ୍ୟବିମୋହିତ ଭୀମ ଯୁଧିଷ୍ଠିରଙ୍କୁ ଦେଖା ଦେଲେ ନାହିଁ । ଅର୍ଜୁନାଦି ସହ ଯୁଧିଷ୍ଠିର ''ସର୍ବଂକଷା ଭଗବତୀ ଭବିତବ୍ୟତୈବ'' ଏହା ଭାବି ଅମିତ ଦୁଃଖରେ ପୁନର୍ବାର ବନକୁ ଯାଉଅଛନ୍ତି, ମାର୍ଗ ମଧ୍ୟରେ କାଳବର ନାମଧାରୀ ଭୀମନୃପତିଙ୍କ ପୁରୋହିତ ସୁମନ୍ତଙ୍କୁ ଦେଖିଲେ; ନୃପସମ୍ପତ୍ତିମୋମୁହ୍ୟମାନ ଭୀମଙ୍କ ନିଷ୍ଠୁରାଚରଣ ତାହାଙ୍କୁ ଜଣାଇଲେ । ସେ ଯାଇ ଭୀମଙ୍କୁ ଭର୍ତ୍ସନା କଲେ । ତେତେବେଳେ ସୁଗୂଢ଼ଜ୍ଞାନବୈଭବ ଭୀମସେନ କହିଲେ କି, 'ମୁଁ ପ୍ରଥମେ ହସ୍ତିନାରାଷ୍ଟ୍ରରୁ ଧାର୍ତ୍ତରାଷ୍ଟ୍ରମାନଙ୍କୁ କାର୍ତ୍ତାନ୍ତରାଷ୍ଟ୍ରରେ ନିହିତ କରି ଆସିବି, ପରେ ଯୁଧିଷ୍ଠିରଙ୍କ ପାଦବନ୍ଦନାର୍ଥ ଯିବି ।' ସେ ସମୟରେ ସୁମନ୍ତ କହିଲେ, ବର୍ତ୍ତମାନ କୌରବମାନେ ହସ୍ତିନାରେ ନାହାନ୍ତି, ଦ୍ରୌପଦୀଙ୍କ ସ୍ୱୟମ୍ବରୋପଲକ୍ଷରେ ଦ୍ରୁପଦ ରାଜ୍ୟକୁ ଯାଇଅଛନ୍ତି । ଭୀମ ଏ ସବୁ ଶୁଣି ସ୍ୱବାହୁପରାକ୍ରମୋପାର୍ଜ୍ଜିତ ପ୍ରୋକ୍ତ ରାଜ୍ୟଟି ବିଷ୍ଣୁକର ପଣ୍ଡାଙ୍କୁ ପ୍ରଦାନ କରି ଯୁଧିଷ୍ଠିରଙ୍କଠାକୁ ପ୍ରସ୍ଥାନ କଲେ, ଇତ୍ୟାଦି ।

ଏଥିରୁ ଅନେକ କଥା ମୂଳ ଭାରତରେ ନାହିଁ, କିନ୍ତୁ ହିଡ଼ମ୍ବ ଦୈତ୍ୟନାଶ ପରେ ବ୍ୟାସଦେବ ଆସି ପାଣ୍ଡବମାନଙ୍କୁ ଏକଚକ୍ରାପୁରରେ ରଖାଇଲେ । ସେଠାରେ କେତେକ ଦିନ ପରେ ଭୀମ ଗୁପ୍ତଭାବରେ ଭକ୍ଷ୍ୟପେୟାଦି ଧରି ଯାଇ ନରଖାଦକ ବକାସୁରକୁ ନିହତ କରି ଅନ୍ୟାନ୍ୟ ନଗରବାସୀମାନଙ୍କ ଅଜ୍ଞାତସାରରେ ପ୍ରତ୍ୟାବୃତ୍ତ ହେଲେ ବୋଲି ଉକ୍ତ ଅଛି । ସାରଳାଦାସ କବି ମଧ୍ୟ ବକକୁ ଗୁପ୍ତଭାବରେ ନାଶିବାର ଲେଖିଅଛନ୍ତି । ୩ ମାତ୍ର ତତଃପର ସମସ୍ତଙ୍କ ପ୍ରତ୍ୟକ୍ଷରେ ଭୀମ ବକାସୁରଠାକୁ ପ୍ରସ୍ଥାନ କରିବା,

---

୧ ସେ ଦିନରୁ ଭୀମ ନାମ ହେଲା କାଳବର ଛା: ୨୪୯ ପୃ:

୨ ଯୁଧିଷ୍ଠି ବୋଇଲେ ଆମ୍ଭେ ଗଲୁ ପାଞ୍ଚ ମାସ ।
ଏ ପାଞ୍ଚ ମାସେ ଭ୍ୟାଇଲା ଏସନେ ଭବିଷ୍ୟ ।।୨୫୦ ପୃ:

୩ ଯୁଧିଷ୍ଠିର କହିଲେ କର୍ଣ୍ଣେ ଗୁପତରେ ମାର । ଆ: ପ:

ଭୀମଙ୍କୁ ବିପଜ୍ଜନକ କାର୍ଯ୍ୟରେ ନିଯୋଗିବାରୁ ନଗରବାସୀମାନେ ୧ କୁନ୍ତୀଙ୍କି ନିନ୍ଦା କରିବା, ଅଥଚ ଯେଉଁ ରାତ୍ରିରେ ଭୀମ ବକାସୁରକୁ ଗତାସୁ କଲେ, ସେହି ରାତ୍ରିରେ ୨ କେବଳ ପାଣ୍ଡବମାନେ ଅଲକ୍ଷିତ ଭାବରେ ଅରଣ୍ୟମାର୍ଗରେ ପଳାୟନ କରିବା ଇତ୍ୟାଦି ବିଷୟକୁ ପୂର୍ବାପର ସମ୍ବନ୍ଧଶୂନ୍ୟ କରି କିଂଚିତ୍ ଅସଂଗତ ଭାବରେ ଲେଖିଅଛନ୍ତି ।

ଏକଚକ୍ରାପୁରରୁ ବହିର୍ଗତ ପାଣ୍ଡବମାନେ ଦ୍ରୁପଦ ରାଜ୍ୟ ଆଡ଼କୁ ପ୍ରସ୍ଥାନ କଲା ସମୟରେ ସୋମାଶ୍ରୟଣ ନାମକ ଗଙ୍ଗାତୀରବର୍ତ୍ତୀ ତୀର୍ଥରେ ଅର୍ଜୁନ ଅଙ୍ଗାରପର୍ଣ୍ଣ ନାମକ ଗନ୍ଧର୍ବଙ୍କୁ ଯୁଦ୍ଧରେ ପରାସ୍ତ କଲା ପରେ ପ୍ରୋକ୍ତ ଗନ୍ଧର୍ବ ନିଜର ଗାନ୍ଧର୍ବୀ ମାୟାବିଦ୍ୟା ଓ ଗନ୍ଧର୍ବଭୂମିଜାତ ଅଖର୍ବବେଗ ଅର୍ବକୁ ଗ୍ରହଣ କରିବାକୁ ଅର୍ଜୁନଙ୍କୁ ବୋଲିବାରୁ ସେ ତହିଁରେ ଅସ୍ୱୀକୃତ ହୋଇ ବିନିମୟ ରୀତିରେ ସ୍ୱକୀୟ ଆଗ୍ନେୟାସ୍ତ୍ର ପ୍ରଦାନପୂର୍ବକ କେବଳ ଗାନ୍ଧର୍ବାସ୍ତ୍ର ମାତ୍ର ଗ୍ରହଣ କରିବା, ପାଣ୍ଡବୀୟ ପୂର୍ବବଂଶଧର ସମ୍ବରଣ ନାମକ ରାଜା ସୂର୍ଯ୍ୟସୁତା ତପତୀଙ୍କର ପାଣିଗ୍ରାହୀ ଥିବାରୁ ପାଣ୍ଡବମାନେ ତାପତ୍ୟ ଅଟନ୍ତି ବୋଲି ସେହି ଐତିହାସିକ ବିବରଣକୁ ଗନ୍ଧର୍ବ ମୁଖରେ ସମଗ୍ରରୂପେ ପ୍ରକାଶ କରିବା, ବିଶ୍ୱାମିତ୍ର ବଶିଷ୍ଠକାମଧେନୁ ପ୍ରାପ୍ତି ଆଶାରେ ଯାବତୀୟ କ୍ଷାତ୍ରପ୍ରଭାବ ପ୍ରକାଶ କରି ସୁଦ୍ଧା ସର୍ବଂକଷ ଦୁର୍ଦମ୍ୟ ଦୁର୍ନିବାର ବ୍ରାହ୍ମପ୍ରଭାବରେ ପରାସ୍ତ ହୋଇ ରାଜ୍ୟତ୍ୟାଗପୂର୍ବକ କଠୋର ତପସ୍ୟା ବଳରେ ବ୍ରହ୍ମତ୍ୱ ପାଇବା, ବଶିଷ୍ଠ ପୁତ୍ର ଶକ୍ତି କଲ୍ମାଷପାଦ ରାଜାଙ୍କୁ ଅଭିଶାପରେ ରାକ୍ଷସ କରିବା, ଉକ୍ତ ପିଶିତାଶନ ରାକ୍ଷସୀଭୂତ ରାଜା ବିଶ୍ୱାମିତ୍ରଙ୍କ ମନ୍ତ୍ରଣାରେ ବଶୀଶ ବଶିଷ୍ଠଙ୍କ ଶକ୍ତି ପ୍ରଭୃତି ଶତ ପୁତ୍ରମାନଙ୍କୁ ରାକ୍ଷସତ୍ୱରୁ ମୁକ୍ତ କରିବା ପ୍ରଭୃତି କଥା ଏବଂ ଭୃଗୁବଂଶୀୟ ଚରିତ, ପରାଶର ମୁନି ରାକ୍ଷସବିଧ୍ୱଂସ ସତ୍ର କରିବା ବିଷୟ ଏବଂ ପାଣ୍ଡବମାନେ ଧୌମ୍ୟଙ୍କୁ ପୁରୋହିତରୂପେ ସ୍ୱୀକାର କରିବା ପ୍ରଭୃତି ବିଷୟମାନ ଚୈତ୍ରରଥ ନାମକ ଉପପର୍ବରେ ୧୬୫ ଅଧ୍ୟାୟ ପ୍ରାରମ୍ଭରୁ ୧୮୩ ଅଧ୍ୟାୟ ଶେଷଯାଏ ମୂଳରେ ପ୍ରତିପାଦିତ ଅଛି । ସାରଳାଦାସ କବି ଏ ସବୁ ସ୍ଥଳରେ ସଂପୂର୍ଣ୍ଣତଃ ଲେଖିନାହାନ୍ତି ସତ୍ୟ, ମାତ୍ର କେତେଗୁଡ଼ିକ ବିଷୟକୁ ଅନ୍ୟାନ୍ୟ ସ୍ଥଳରେ ଅସ୍ଥାନସ୍ଥିତ ହେଲେ ସୁଦ୍ଧା ସଂଗତ ସନ୍ଦର୍ଭାନୁଗୁଣରେ ଯୋଗ କରିଦେଇ ଅଛନ୍ତି; ଅଥଚ ଏ ସ୍ଥଳରେ ଅଙ୍ଗାରପର୍ଣ୍ଣଙ୍କୁ ୩ ପରାସ୍ତ କରି ଅର୍ଜୁନ ଏକମାତ୍ର ଶର

---

୧ ବ୍ୟାସଙ୍କ ମତରେ ଭୀମଙ୍କର ଏହି ପ୍ରୟାଣ ଏକତ୍ରନିବାସୀ ବ୍ରାହ୍ମଣ ପରିବାର ବିନା ନଗରର ଅନ୍ୟ କେହି ଜାଣି ପାରି ନାହାନ୍ତି ।

୨ ମାତ୍ର ମୂଳରେ ଆହୁରି କେତେକ ଦିନ ପାଣ୍ଡବମାନେ ସେହି ବ୍ରାହ୍ମଣଙ୍କ ଗୃହରେ ବାସ କରିଥିବାର ଉକ୍ତ ଅଛି ।

୩ ଅଙ୍ଗାରପର୍ଣ୍ଣ ପଦକୁ ଅଙ୍ଗାରପନ୍ନଗ କରିଦେଇଅଛନ୍ତି ।

ପାଇବା ଆଉ ତପତୀଙ୍କି ସମ୍ବରଣ ନୃପତି ବିବାହ ହେବାର ବୃତ୍ତାନ୍ତ ଅତି ସଂକ୍ଷେପରେ ଲେଖିଅଛନ୍ତି । ୧

(୧୦) ମୂଳରେ ଉକ୍ତ ଅଛି କି, ଦ୍ରୁପଦ ରାଜା ଆପଣାର ସଂପ୍ରାପ୍ତବୟସ୍କ ଦୁହିତା ଦ୍ରୌପଦୀଙ୍କର ସ୍ୱୟମ୍ବରରେ ଗୋଟିଏ ସୁଦୃଢ଼ ଧନୁ ଏବଂ ଆକାଶନିହିତ କୃତ୍ରିମ ଯନ୍ତ୍ରୋପରି ଗୋଟିଏ ଚଳ ଲକ୍ଷ୍ୟ ପ୍ରସ୍ତୁତ କରାଇଥିଲେ । ସାରଳାଦାସ କବି "ବୈହାୟସ କୃତ୍ରିମ ଯନ୍ତ୍ର" ମୂଳରେ ଏହି କଥାଟିକି ମାତ୍ର ନେଇ ସ୍ୱକୀୟ କଳ୍ପନାଶକ୍ତିର ବଳରେ ଲକ୍ଷ୍ୟଟିକି ସଂଗତରୂପେ ଭିନ୍ନ ପ୍ରକାର କରିଅଛନ୍ତି । ୨

ସାରଳାଦାସ ମହାଶୟ ମୂଳ ମହାଭାରତର ପ୍ରଗାଢ଼ ଶୁଶ୍ରୂଷାଦ୍ୱାରା ଘଟନାମାନଙ୍କର ସ୍ଥୂଳ ସଂବିଧାନାଂଶମାନ ଅବିସ୍ମୃତ ପ୍ରତିପତ୍ତିରେ ସ୍ୱକୀୟ ସ୍ମୃତିକୋଷରେ ରଖି ଅସାମାନ୍ୟ କଳ୍ପନାଶକ୍ତିଦ୍ୱାରା କେତେକ ଭିନ୍ନ ପ୍ରକାର କରିଥିଲେହେଁ, ଅନେକ ସ୍ଥଳରେ ଅତି ସୂକ୍ଷ୍ମାଂଶ ଘଟନାମାନଙ୍କୁ ମଧ୍ୟ ଯଥାଯଥ ଲେଖିଅଛନ୍ତି । ଦ୍ରୌପଦୀ – ସ୍ୱୟମ୍ବରୋତ୍ସବଦିଦୃକ୍ଷୁ

---

୧ ସମ୍ବରଣ ନୃପତି ଏହି ନାମକୁ ଶମ୍ବୂରାଣ ନୃପତି କରି ଲେଖିଅଛନ୍ତି ।

୨ ରାଧାଚକ୍ର ବୋଲିଣ ସେ ସହସ୍ରେକ ଧାର ।
ଅନୁବ୍ରତେ ବୁଲେ କୁରାଳଚକ୍ର ଆକାର ।।
ତହିଁ ପରେ ବସାଇଲେ ନେଇ ଏକ ମତ୍ସ୍ୟ ।
ତଳେ ଧନୁ ଏକ ପକାଇଲେ ନବ ଲକ୍ଷ ।।
ତାହେ ଉପର୍ଗ ସୁବର୍ଣ୍ଣ ପଟା ଏକ କଣ୍ଡା ।
ତହିଁ ତଳେ ରଖାଇଲେ ତୀର୍ଥ ଜଳ ଗୋଟା ।। ଆ.ପ. ୧୬୬ ପୃ:

ଏବଂ

ରାଧାଚକ୍ର ବୁଲଇ ସେ ସହସ୍ରେକ ଧାର ।
କନକ ମତ୍ସ୍ୟ ଅଛଇ ତହିଁର ଉପର ।।
କୁରାଳଚକ୍ର ପ୍ରାୟେ ବୁଲଇ ଅନୁବ୍ରତେ ।
ତଳେ ଧନୁଏ ଅଛି ଲକ୍ଷେବଳ ଯୁକତେ ।।
ରାଧାଚକ୍ର ବୁଲୁଅଛି ଶତେ ତାଳ ଉଚ୍ଚେ ।
ତାହେ ଉଚ୍ଚରେ ପଟାଏ ଅଛି ଯେ ସୁସଜ୍ଜେ ।।
ଲକ୍ଷେବଳ ଧନୁ ଧରି ସେ ପଟାରେ ଉଠି ।
ତହିଁ ତଳେ ଅଛି ତୀର୍ଥ ଜଳଘଟ ଗୋଟି ।।
ତହିଁ ଦୃଷ୍ଟି ଦେଇ ଉପରକୁ କରି ମୁଷ୍ଟି ।
ଚକ୍ର ଭେଦି ମାଛ ବାମ ଚକ୍ଷୁ ଯିବ ଫୁଟି ।।
ଏହେନେକ ସ୍ୱରୂପେ ଯେହୁଁ ଲାଖ ବିନ୍ଧିବ ।
ଏ ମୋହର ଦୁହିତା ଦ୍ରୌପଦୀକି ବିଭା ହେବ ।। ଆ.ପ. ୨୬୮ ପୃ:

ଦ୍ରୁପଦରାଜ୍ୟସମାଗତ ଅଜ୍ଞାତରୂପ ପାଣ୍ଡବମାନେ ୧ ଏକ କୁମ୍ଭକାର ଶାଳରେ ବାସ କରିଥିଲେ ବୋଲି ମୂଳରେ ଲେଖା ଅଛି । ସାରଳାଦାସ ମହୋଦୟ ମଧ୍ୟ ଠିକ୍ ତାହାହିଁ ସମ୍ପାଦିତ କରିଅଛନ୍ତି । ୨ ମୂଳରେ ଉକ୍ତ ଅଛି କି ଦ୍ରୌପଦୀ ସ୍ୱୟମ୍ବର ସମାଜ ଦୈନନ୍ଦିନ କ୍ରମଶଃ ପରିସମୃଦ୍ଧ ହୁଅନ୍ତେ ଷୋଳଦିନ ଯାଏ ମହୋତ୍ସବ ହେଲା । ଷୋଡ଼ଶ ଦିବସରେ ସୋତ୍ତରଚ୍ଛେଦା ଦ୍ରୌପଦୀ ସଭାକୁ ଆନୀତା ହେଲେ । ୩ ସମାଲୋଚ୍ୟ ଭାରତପ୍ରଣେତା ମଧ୍ୟ ଶୁଶ୍ରୂଷିତ ସୂକ୍ଷ୍ମାଂଶକୁ ଖୁବ୍ ମନନ କରି ଠିକ୍ ସମୟ ନିର୍ଦ୍ଦେଶ କରି ଅଛନ୍ତି । ୪ ମାତ୍ର ମୂଳ ଭାରତରେ ପତିମ୍ବରା ଦ୍ରୌପଦୀଙ୍କି ଧୃଷ୍ଟଦ୍ୟୁମ୍ନ ସମବେତ ରାଜାମାନଙ୍କର ପ୍ରାୟଶଃ ନାମପରିଚୟମାତ୍ର ଅବିସ୍ତର ରୂପେ ଦେଇଅଛନ୍ତି । ଏ ସ୍ଥଳରେ ଆଦିମ ଉତ୍କଳ-ଭାରତକର୍ତ୍ତା ମୌଳିକ ଯଥାର୍ଥ ନାମମାନ ନ କହି କାଳ୍ପନିକ ନାମଧାମାଦି ସହିତ ଅତି ବିସ୍ତୃତରୂପେ କେଶିନୀନାମ୍ନୀ (ମୁଦ୍ରସୁଲୀ) ସହଚରୀ ମୁଖରେ କୁହାଇ ଅଛନ୍ତି । ଲକ୍ଷ୍ୟଭେଦୋଦ୍ୟମ ସ୍ଥଳରେ ମଧ୍ୟ ମୂଳ ଅପେକ୍ଷା ଏତାଦୃଶ୍ୟକ୍ରମରେ ଅତିପଲ୍ଲବିତ କରି ଅଛନ୍ତି । ମୂଳରେ ଉକ୍ତ ଅଛି ଯେ, ଦ୍ରୌପଦୀଲିପ୍ସୁ ରାଜନ୍ୟବର୍ଗରୁ ଅମିତପରାକ୍ରମ କର୍ଣ୍ଣ ମାତ୍ର ସଂସ୍ଥାପିତ ଧନୁକୁ ସହସା ଉତ୍ତୋଳନ କରି ଲକ୍ଷ୍ୟଭେଦରେ ସମୁଦ୍ୟତ ହେଲେ । ଇତ୍ୟବସରେ ଦ୍ରୌପଦୀ କହିଲେ କି ସୂତପୁତ୍ର ଲକ୍ଷ୍ୟଭେଦ କଲେ ସୁଦ୍ଧା ଆମ୍ଭେ ବରିବୁ  ନାହିଁ । କର୍ଣ୍ଣ ତାହା ଶୁଣି ରୋଷାମର୍ଷପରୀତାନ୍ତଃକରଣରେ ଆକର୍ଣ୍ଣାକୃଷ୍ଟ ଧନୁ ନିକ୍ଷେପପୂର୍ବକ ବାହାରି ଆସି ସୋତ୍ତରଚ୍ଛଦ ସୌବର୍ଣ୍ଣାସନରେ ଉପବେଶନ କଲେ । ୫ କିନ୍ତୁ ସମାଲୋଚନୀୟ

---

୧ ତେ ତୁ ଦୃଷ୍ଟ୍ୱା ପୁରଂ ତଚ୍ଚ ସ୍କନ୍ଧାବାରଂ ଚ ପାଣ୍ଡବାଃ
କୁମ୍ଭକାରସ୍ୟ ଶାଳାୟାଂ ନିବାସଂ ଚକ୍ରିରେ ତଦା । ଆ. ପ. ୧୮୭ ଅ:

୨ ନଗ୍ର ବାହାରେ ବାହାରେ ଗଲେ ରାତ୍ରକାଳେ
ଶୁଭବେଳେ ପ୍ରବେଶିଲେ କୁରାଳଶାଳେ । ଆ. ପ. ୨୭୫ ପୃ:

୩ ବର୍ତ୍ତମାନେ ସମାଜେ ତୁ ରମଣୀୟେଽହ୍ନି ଷୋଡ଼ଶେ ।
ଆପ୍ଲୁତାଙ୍ଗୀ ସୁବସନା ସର୍ବାଭରଣଭୂଷିତା ।।
ମାଲାଂ ଚ ସମୁପାଦାୟ କାଞ୍ଚନୀଂ ସମଲଂକୃତାଂ ।
ଅବତୀର୍ଣ୍ଣା ତତୋରଙ୍ଗ ଦ୍ରୌପଦୀ ଭରତର୍ଷଭ ।। ଆ. ପ. ୧୮୭ ଅ:

୪ ଅନେକ ଉତ୍ସବ ହୁଏ ଦ୍ରୁପଦ ଭୁବନେ ।
ରାଜା ସର୍ବେ ପ୍ରବେଶିଲେ ପଞ୍ଚଦଶ ଦିନେ ।। ୨୭୭ ପୃ:

ଷୋହଳ ଦିନ ପର୍ଯ୍ୟନ୍ତ ହୋଇଲା ସ୍ୱୟମ୍ବର ।
ସମସ୍ତ ରାଜା ପରାସ୍ତ ହୋଇଲେ ଲାଖର ।। ୩୮୫ ପୃ:

୫ ଦୃଷ୍ଟ୍ୱା ତୁ ତଂ ଦ୍ରୌପଦୀବାକ୍ୟମୁଚ୍ଚୈର୍ଜଗାଦ ନାହଂ ବରୟାମି ସୂତଂ ।
ସାମର୍ଷହାସଂ ପ୍ରସମୀକ୍ଷ୍ୟ ସୂର୍ଯ୍ୟଂ ତତ୍ୟାଜ କର୍ଣ୍ଣଃ ସ୍ଫୁରିତଂ ଧନୁସ୍ତଦ୍ ।
ଆ. ପ. ୧୯୦ ଅ:

ମହାଭାରତରେ କର୍ଣ୍ଣ ନିଶ୍ଚୟ ଲକ୍ଷ୍ୟଭେଦ କରି ପାରିବେ, ଏହା ଜାଣିପାରି ଶ୍ରୀକୃଷ୍ଣ ସପତ୍ନାପ୍ରିୟଦର୍ଶନ ସୁହୃଦ୍‌ପ୍ରିୟଦର୍ଶନ ଅକୁଣ୍ଠସତ୍ତ୍ୱ ସୁଦର୍ଶନାଭିଧ ସ୍ୱଚକ୍ରକୁ ଆମ୍ରେଡ଼ମାନଙ୍କର ଅଦୃଶ୍ୟଭାବରେ ଲକ୍ଷ୍ୟର ଅନ୍ତରାଳରେ ରଖିଲେ, କର୍ଣ୍ଣନିକ୍ଷିପ୍ତ ଶର ଚକ୍ରରେ ଆହତ ହୋଇ ନିପତିତ ହେଲା, ଇତ୍ୟାଦି ଉକ୍ତ ଅଛି । ଏ ସବୁ କଳ୍ପନାରେ ଅନ୍ୟଥା ହେଲେହେଁ ମୌଳିକସତ୍ତାନୁପ୍ରାଣିତ ହେବାରୁ ଅସଂଗତ ବା ଅଯୌକ୍ତିକ ହୋଇନାହିଁ । ପୁଣି ମୂଳ ଗ୍ରନ୍ଥରେ ଷଡ଼୍‌ବିଂଶତି ଶ୍ଳୋକାତ୍ମକ ଏକ ଅଧ୍ୟାୟରେ ମାତ୍ର ଅର୍ଜ୍ଜୁନଙ୍କର ଲାଖବିନ୍ଧା ଶେଷ ହୋଇଅଛି । ମାତ୍ର ସାରଳାଦାସ କବି ଏ ସ୍ଥଳରେ ଯାହା ଯାହା (ମୂଳରେ ଅନୁକ୍ତ ହେଲେହେଁ) କହିଲେ ପାଠକ ଓ ଶ୍ରୋତୃବର୍ଗଙ୍କର ଶୁଶ୍ରୂଷା ଉତ୍ତରୋତ୍ତର ବଳବତୀ ଓ ସୁଖକର ହେବ, ସେ ସବୁ ଟିକିଏ ବିସ୍ତୃତ କରିଅଛନ୍ତି । ତାହାହିଁ ଅଦ୍ୟାବଧି ଉତ୍କଳରେ ସାଧାରଣ ସମାଜରେ ଅବିସ୍ମୃତାଭ୍ୟସ୍ତ ହୋଇ ରହିଅଛି । ପୁଣି ପ୍ରଥମବାର ଲକ୍ଷ୍ୟଭେଦରେ ଦୁରର୍ଥଦନ୍ତୁରବଚନ-କଣ୍ଟାଶତଗ୍ରନ୍ଥିଳହୃଦୟ ଦୁଷ୍ଟ ପ୍ରକୃତିକ ରାଜାମାନେ ଅହମିକାକଲ୍ଲୋଳକୋଳାହଳରେ ବୃଥା ଅଳୀକତାର ଉଦ୍‌ଘୋଷ କରିବାରୁ ଅର୍ଜ୍ଜୁନ ଦ୍ୱିତୀୟବାର ଲକ୍ଷ୍ୟଭେଦପୂର୍ବକ ରାଧାଚକ୍ରକୁ ଭୂପୃଷ୍ଠଶାୟୀ କରିବା କହିଅଛନ୍ତି । ଏହା ଅମୌଳିକ ନୁହେ । ଲକ୍ଷ୍ୟଭେଦାନନ୍ତର ଯେତେବେଳେ ରାଜାମାନେ ଯୁଯୁତ୍ସାରେ ଗୋଳମାଳ ଆରମ୍ଭ କଲେ, ତେତେବେଳେ ଯୁଧିଷ୍ଠିର ଯମଜ ଭ୍ରାତାଦ୍ୱୟଙ୍କ ସମଭିବ୍ୟାହାରରେ ବସାଗୃହକୁ ପ୍ରସ୍ଥାନ କଲେ । ସ୍ୱାୟମ୍ବରିକ ରଙ୍ଗରେ ଭୀମକର୍ମା ବୃକୋଦର ଓ ବାସବପ୍ରତିମ ଅର୍ଜ୍ଜୁନ ମାତ୍ର ରହିଥିଲେ ବୋଲି ମୂଳରେ ଲେଖାଅଛି । ୧ ମାତ୍ର ସାରଳାଦାସେ ଯୁଧିଷ୍ଠିରାଦି ସଭା ମଧ୍ୟରେ ଥିବା, ନକୁଳ ଓ ସହଦେବ ମଧ୍ୟ କ୍ରୁଦ୍ଧ ଓ ସନ୍ନଦ୍ଧ ହୋଇ ଯୁଦ୍ଧ କରିବା କହି ମୂଳରେ ଅନୁପପାଦିତ କେତେକ କଥା ଯୋଗପୂର୍ବକ ଯୁଦ୍ଧକୁ ମୂଳ ଅପେକ୍ଷା ଖୁବ୍ ବିସ୍ତୃତ ଓ ଭିନ୍ନ ପ୍ରକାର କରିଅଛନ୍ତି । ପୁଣି ଅତଃପର ପାଣ୍ଡବମାନଙ୍କ ସମ୍ବନ୍ଧରେ କେତେକ ଅମୌଳିକ କଥାର ଉଦ୍ଭାବନା କରିଅଛନ୍ତି । ସାରଳାଦାସ ମହାଶୟଙ୍କ କୃତ ଭାରତର ଘଟନାମାନ ଏକୈକଶଃ ପର୍ଯ୍ୟାୟକ୍ରମରେ ଦେଖି ଯାଉଥିଲେ ମୂଳର ଅନୁଗତସାମ୍ୟ ଓ ବୈଷମ୍ୟବଶତଃ ତପନାପନେୟତିମିରକ୍ରମରେ ତଦୀୟ ସ୍ମୃତିଶକ୍ତି ଓ ପ୍ରଜ୍ଞାର କ୍ଷଣିକ ଆବିର୍ଭାବ ଓ ତିରୋଭାବ ହେବାର ଅନୁମିତ ହୁଏ । ତଦୀୟ ଭକ୍ତିଲବ୍ଧ ଦେବୀବର ପ୍ରସାଦରୁ ମତି ଓ ପ୍ରଜ୍ଞାର ଆବିର୍ଭାବ ହେବାର ତ ସହଜ କଥା, କିନ୍ତୁ ତାହାର ତିରୋଭାବର କାରଣ ଦୁର୍ବିଜ୍ଞେୟ । ମାତ୍ର ଏତିକି କୁହାଯାଇପାରେ ଯେ, ପ୍ରୋକ୍ତ ମହାଶୟ ଦେବୀଙ୍କ,

୧ ତସ୍ମିଂସ୍ତୁ ଶବ୍ଦେ ମହତି ପ୍ରବୃଦ୍ଧେ ଯୁଧିଷ୍ଠିରୋ ଧର୍ମଭୃତାଂ ବରିଷ୍ଠଃ ।
ଆବାସମେବୋପଜଗାମ ଶୀଘ୍ରଂ ସାର୍ଦ୍ଧଂ ଯମାଭ୍ୟାଂ ପୁରୁଷୋତ୍ତମାଭ୍ୟାଂ ॥
ଆ. ପ. ୧୦ ଅ:

ଭକ୍ତିରେ ତନ୍ମନସ୍କ ତଦ୍‌ବିଚେଷ୍ଟ ଓ ଉନ୍ମତ୍ତପ୍ରାୟ ହୋଇ ପୂର୍ବଶ୍ରୁତ ଯାହା କିଛି ଯେତେବେଳେ ଯେପରି ମନେ ପଡ଼ିଲା, ତାହାହିଁ ଲେଖି ଯାଇଥିବେ । ତାହା ନ ହେଲେ ସ୍ଥାନେ ସ୍ଥାନେ ଠିକ୍ ଋଜୁମାର୍ଗରେ ଚାଲିଯାଇ ସ୍ଥାନେ ସ୍ଥାନେ ପ୍ରକୃତରୁ ବହୁ ବିପ୍ରକୃଷ୍ଟରେ ଜଟିଳ ଓ କୁଟିଳ ଅବାଟକୁ କାହିଁକି ଭେଟନ୍ତେ ? ପ୍ରିୟ ପାଠକେ ! ସେ ଯାହାହେଉ, ଅତଃପର ଦେଖନ୍ତୁ । ଲକ୍ଷ୍ୟଭେଦ ପରେ ଦ୍ରୌପଦୀଙ୍କି ପୁଷ୍ପମାଲ୍ୟ ପ୍ରଦାନାର୍ଥ ସମୁଦ୍ୟତା ଦେଖି ଅର୍ଜୁନ ପିତୃକଳ୍ପ ଜ୍ୟେଷ୍ଠ ଯୁଧିଷ୍ଠିରଙ୍କ ଆଦେଶ ହେବାଯାଏ ଅପେକ୍ଷା କରିବାକୁ ହେବ ବୋଲି କହିଥିବାର ଲେଖି ଅଛନ୍ତି । ମୂଳ ଗ୍ରନ୍ଥର ସାର ମର୍ମ ମଧ୍ୟ ଏହିପରି । ତହିଁରେ ସୁଦ୍ଧା ଏ ସ୍ଥଳରେ ମାଳା ଦେବାର ଉକ୍ତ ହୋଇନାହିଁ । (୧) ଅତଃପର ଲେଖାଅଛି, କୁନ୍ତୀଦେବୀ କୁଟୀରାଭ୍ୟନ୍ତରରେ ଥିଲେ । ସହାନୁଜ ଭୀମ କହିଲେ କି, ଅଦ୍ୟ ଏହି ଭିକ୍ଷାପ୍ରାପ୍ତ ହୋଇଅଛୁଁ । ତଦ୍‌ଶ୍ରବଣରେ ମାତା ଏଣିକି ନ ଚାହିଁ ସେହିଠାରୁ ଆଦେଶ ଦେଲେ କି ଯାହା ପାଇଅଛ, ସମସ୍ତେ ଏକତ୍ର ଭୋଜନ କର ଅର୍ଥାତ୍ ଭୋଗ କର । (୨) ଆମ୍ଭମାନଙ୍କର ଆଦିମ ମହାକବି ମଧ୍ୟ ଠିକ୍ ଏହାର ଅବିକଳ ଅଭିପ୍ରାୟ ନେଇ କହିଅଛନ୍ତି, ମାତ୍ର ଭିକ୍ଷା ପରିବର୍ତ୍ତରେ ଅପୂର୍ବ ଫଳ ବୋଲିଅଛନ୍ତି । (୩) କିନ୍ତୁ ଦ୍ରୌପଦୀ ପ୍ରାପ୍ତିସ୍ଥଳରେ ଲେଖିଅଛନ୍ତି କି –

ଭୀମ ଯେ ବିଚାରେ ଅର୍ଜୁନ ଲାଖ ବିନ୍ଧିଲା,
ଦୁଷ୍ଟ ରାଜା ଘେନି ଦୁର୍ଯ୍ୟୋଧନ ଦ୍ୱନ୍ଦ୍ୱ କଲା ।
ମୁଁ ଯେବେ ସଂଗ୍ରାମ ନ କରି ହୁଅନ୍ତି ତୁନି,
ଅର୍ଜୁନ କେଉଁପରି ଆଣନ୍ତା ଯାଜ୍ଞସେନୀ ।
ମୋହର ସେହୁ କନ୍ୟା ଯେ ହୋଇବ ଯୁକତେ,
ଅର୍ଜୁନ ଏ କଥା ବା ଭାଙ୍ଗିବ କେମନ୍ତେ ।
ଯୁକତେ ଯେବେ ମୋତେ ନ ଦେବ ଏ କୁମାରୀ,
ବଳତ୍କାର କରି ମୁଁ ଅବଶ୍ୟ ନେବି ହରି ।

---

(୧) ବିଦ୍ଧଂ ତୁ ଲକ୍ଷ୍ୟଂ ପ୍ରସମୀକ୍ଷ୍ୟ କୃଷ୍ଣା ପାର୍ଥଂ ଚ ଶକ୍ରପ୍ରତିମଂନିରୀକ୍ଷ୍ୟ ।
ଆଦାୟ ଶୁକ୍ଳାମ୍ବରମାଲ୍ୟଦାମ ଜଗାଦ କୁନ୍ତୀସୁତମୁତ୍ସ୍ମୟନ୍ତୀ –
ସ ତାମୁପାଦାୟ ବିଜିତ୍ୟ ରଙ୍ଗେ ଦ୍ୱିଜାତିଭିସ୍ତୈରଭିପୂଜ୍ୟମାନଃ ।
– ଇତ୍ୟାଦି ।

(୨) କୁଟୀଗତା ସା ତ୍ୱନବେକ୍ଷ୍ୟ ପୁତ୍ରୌ ପ୍ରୋବାଚ ଭୁଂକ୍ତେତି ସମେତ୍ୟ ସର୍ବେ ।

(୩) ମାତା ବୋଇଲେ ଯେବେ ଅପୂର୍ବ ଫଳଗୋଟି ।
ପାଞ୍ଚ ଭାଇଯାକ ତୁମ୍ଭେ ଭୁଞ୍ଜ ବାବୁ ବାଣ୍ଟି ।।

ଏ ଚାରିହେଁ ମୋତେ ସଂଗ୍ରାମେ ନୁହନ୍ତି ସରି,
ପାଞ୍ଚାଳୀକି ଘେନି ପଛେ ରହିବି ହିଡ଼ମ୍ବୀକି ପୁରୀ । ଇତ୍ୟାଦି ।

କେବଳ ଦ୍ରୌପଦୀଙ୍କି ପାଇବାପାଇଁ ମହାପ୍ରାଜ୍ଞ ଧର୍ମପ୍ରାଣ ପ୍ରଗାଢ଼ ସୌଭ୍ରାତ୍ର ଭୀମଙ୍କର ଭ୍ରାତୃମାନଙ୍କ ପ୍ରତି ଏପରି ଅସୂୟା ଓ କଠୋର ଅକରୁଣା ଜନ୍ମିବାର ବିତଥ କଥାଗୁଡ଼ାଏ ଲେଖି ପାଣ୍ଡବଙ୍କ ପରିପୂତ ହୃଦୟକୁ ତୁଚ୍ଛକୁସାହି ଇତରଜନ ତୁଲ୍ୟ କଳୁଷୀକୃତ କରିଅଛନ୍ତି । କେବଳ ଏ ସ୍ଥଳରେ ନୁହେ, ପ୍ରସଙ୍ଗାନୁପାତବଶତଃ କହୁଅଛୁଁ, ସାରଳାଦାସ ଅନେକ ସ୍ଥଳରେ ବହୁ ବିଷୟରେ ଭୀମସେନଙ୍କୁ ମନ୍ଦବୁଦ୍ଧି ଦୁର୍ନୀତିପରାୟଣ କରି ଦୁର୍ଭାବନାରେ କଦର୍ଯ୍ୟ କରିଅଛନ୍ତି । ଭୀମଙ୍କ ପ୍ରତି ଏପରି ଦୁର୍ଭାବନାର ଆଭାସ ସୁଦ୍ଧା ମୂଳ ଗ୍ରନ୍ଥରେ ନାହିଁ । କି ପ୍ରମାଣ ପାଇ ଅବା ଭୀମଙ୍କ ପ୍ରକୃତି ଚିତ୍ରଣ ଅନେକ ସ୍ଥଳରେ ଦୁର୍ମତିବିଲକ୍ଷଣ ଓ ବାଳସ୍ୱଭାବସଂପନ୍ନ କରିଦେଇଅଛନ୍ତି, ବୁଝାଯାଉ ନାହିଁ । ଏହାର ଗୋଟିଏ ମାତ୍ର ଉଦାହରଣ ଦେଖନ୍ତୁ । (୧) ବନବାସୀ ପାଣ୍ଡବମାନେ ଗଣ୍ଡକୀତୀରୋପକଣ୍ଠ ବନରେ ବିହାର କରୁଥିବା ସମୟରେ ଶ୍ରୀକୃଷ୍ଣ ଦ୍ୱାରକାରୁ ସମାଗତ ହେଲେ । ଦେଖିଲେ ଯେ ଭୀମସେନ ଶାଳଗ୍ରାମଗୁଡ଼ିକ ଗୋଡ଼ରେ ଗଡ଼ାଇ ଗଡ଼ାଇ ଖେଳୁ ଅଛନ୍ତି । 'ଏସବୁ ଦେବ ସ୍ୱରୂପ' ଏପରି କାହିଁକି କରୁଅଛ ? ଶ୍ରୀକୃଷ୍ଣ ଏହା କହିବାରୁ ଭୀମ ଉତ୍ତର ଦେଲେ କି, ଏଗୁଡ଼ାକତ ପଥର । ଏଥିରେ ଗୋଡ଼ ଘସିଲେ ଗୋଡ଼ର ମଳି ଛାଡ଼ିଯାଏ; ଇତ୍ୟାଦି । ଭୀମଙ୍କର ଏପରି ଅଜ୍ଞସ୍ୱଭାବୋଚିତ ଆଚରଣର ଆଭାସ ମଧ୍ୟ ମୂଳରେ କୁତ୍ରାପି ନାହିଁ । ସାରଳାଦାସ କବିଙ୍କର ମୂଳଚରିତରେ ଅସାବଧାନତାର ଫଳ ବୋଲିବାକୁ ହେବ । ପୁଣି ଏ ସ୍ଥଳରେ ପତିପ୍ରାଣା ପ୍ରାତଃସ୍ମରଣୀୟା ସତୀପ୍ରବରା ଦ୍ରୌପଦୀଙ୍କର ପତିମାନଙ୍କ ପ୍ରତି ଯେପରି ସୁପବିତ୍ର ସ୍ୱଭାବ, ତାହା ସୁଦ୍ଧା ଟିକିଏ କଳୁଷିତ କରିଦେଇ ଅଛନ୍ତି ।

ଦ୍ରୌପଦୀ ବିକଳ ଯେ ପାଉଁଶ ଶଯ୍ୟା ଦେଖି,
ହେ ଦଇବ ମୋ କପାଳେ ଏହା ଥିଲୁ ଲେଖି ।
ପାଞ୍ଚାଳ ରାଜାର ମୁଁ ଅଟଇ ଦୁଲଣୀ,
ଭୋ ଦଇବ ଏବେ ମୋତେ ଏହା କଲୁ ଆଣି ।
ରାଜାର କୁମାରୀ ହୋଇ ଏହ୍ନେ କର୍ମ ମୋର,
ଭିକାରୀ ବ୍ରାହ୍ମଣଙ୍କୁ ପାଇଲି ମୁହିଁ ବର ।

ଇତ୍ୟାକାର ଅନେକଗୁଡ଼ିଏ ସତୀଧର୍ମବିରୁଦ୍ଧ କଥା ଲେଖିଅଛନ୍ତି । ଏ ସବୁ ପତିବ୍ରତା ପକ୍ଷେ ଏକାନ୍ତ କଳୁଷକାରକ । ଏଥିରୁ ପାଣ୍ଡବମାନେ ଦରିଦ୍ର ବୋଲି ଦ୍ରୌପଦୀଙ୍କର

---

୧ ଛାପା ପୁସ୍ତକରେ ୧୩ ପୃଷ୍ଠାଟି ପଢ଼ନ୍ତୁ ।

ଅସୂୟା ଜଣାଯାଉଅଛି । ବୀରପତ୍ନୀ ସୁଜ୍ଞାନବତୀ ଦ୍ରୌପଦୀ ବୀରମାନଙ୍କ ପ୍ରଭାବର ମହାମୂଲ୍ୟତା ଜାଣନ୍ତି । ଅତଏବ ବ୍ୟାସଙ୍କ ଗ୍ରନ୍ଥରେ ଏତାଦୃଶ ଅପବିତ୍ର ଭାବନାର ଆଭାସ ସୁଦ୍ଧା ନାହିଁ । ପରିତୁଷ୍ଟ ହୃଷ୍ଟ ହୃଦୟରେ ସେ ପାଣ୍ଡବମାନଙ୍କୁ ଅନୁଗମନ କରିଥିବାର ଉକ୍ତ ଅଛି । ୧ ବ୍ୟାସଙ୍କ ମତରେ କ୍ରମଶଃ ଦିନେ ଦିନେ ଯୁଧିଷ୍ଠିରାଦି ବୀରମାନେ ବୀରକନ୍ୟା ଦ୍ରୌପଦୀଙ୍କର ପାଣିଗ୍ରହଣ କରିଥିଲେ, ୨ କିନ୍ତୁ ସାରଳାଦାସ କହନ୍ତି, ପାଞ୍ଚଜଣ ଅଙ୍ଗୁଳି ଧରି ଏକ ମୁହୂର୍ତ୍ତରେ ବିବାହ କଲେ । ୩ ଏହାପରେ ଦ୍ରୁପଦରାଜ୍ୟସ୍ଥ ପାଣ୍ଡବମାନଙ୍କ ସମ୍ବନ୍ଧରେ ଧୃତରାଷ୍ଟ୍ରଙ୍କ ସହ କର୍ଣ୍ଣ ଦୁର୍ଯ୍ୟୋଧନାଦିଙ୍କର ଯେଉଁ ଦୁର୍ମନ୍ତ୍ରଣା ଚଳିଥିଲା ଏବଂ ଭୀଷ୍ମ ବିଦୁରାଦି ଯେଉଁ ସୁମନ୍ତ୍ରଣା କରିଥିଲେ ଅପିଚ ଦୁର୍ଯ୍ୟୋଧନଙ୍କୁ ଜଣାଇଥିଲେ, ଏ ସବୁ ସାରଳାଦାସଙ୍କ ଭାରତରେ ଲେଖା ନାହିଁ । କିନ୍ତୁ ଦ୍ରୌପଦୀଙ୍କ ବିବାହ କଥନ ପ୍ରସ୍ତାବରେ ଲେଖାଅଛି କି, ସୃଷ୍ଟ୍ୟାଦ୍ୟରେ ଅନାଦି ସରସ୍ୱତୀଙ୍କ କଟାକ୍ଷରୁ କେତୁକାନାମ୍ନୀ ଦେବୀ ଆବିର୍ଭୂତ ହୋଇ ତଦୀୟ ଉପଦେଶରେ ବ୍ରହ୍ମାଙ୍କ ପ୍ରତି ଜିଘାସୁ ହେଲେ । ବ୍ରହ୍ମା ଭୟବିଚ୍ୟୁତଧୃତିରେ ଶରଣାପନ୍ନ ହେଲାରୁ ନାରାୟଣ କେତୁକାଙ୍କୁ ଆଦେଶ ଦେଲେ ଯେ, ଦ୍ୱାପର ଯୁଗରେ ତୁମ୍ଭ ଯୋଗୁଁ ଏ ନିହତ ହେବେ, ସଂପ୍ରତି ନାଶ କର ନାହିଁ । ଦ୍ୱାପରରେ ବ୍ରହ୍ମା ଦୁଃଶାସନ ଓ କେତୁକା ଦ୍ରୌପଦୀ ହେଲେ; ଇତ୍ୟାଦି । ଏ ସବୁ ମୂଳ ଗ୍ରନ୍ଥରେ ନାହିଁ । ମୂଳ ବୈବାହିକ ଉପପର୍ବରେ ଉକ୍ତ ଅଛି – ମହାଦେବଙ୍କ ରୋଷରୁ ବିଶ୍ୱଭୁକ୍, ଭୂତଧାମା, ଶିବି, ଶାନ୍ତି ଓ ତେଜସ୍ୱୀ ନାମରେ ଇନ୍ଦ୍ରପଞ୍ଚକ ପାଣ୍ଡବରୂପେ ଅବତୀର୍ଣ୍ଣ ହେଲେ । ପୁଣି ଦ୍ରୌପଦୀ ପୂର୍ବଜନ୍ମରେ ଆଶୁତୋଷ ମହାଦେବଙ୍କୁ "ପତି ଦିଅ" (ପତିଂଦେହି) ଏହି ବାକ୍ୟରେ ପଞ୍ଚବାର ପ୍ରାର୍ଥନା କଲାରୁ ଈଶ୍ୱର ତାହାଙ୍କୁ ପଞ୍ଚପତିତ୍ୱବର ପ୍ରଦାନ କରିଥିଲେ । ଅତଏବ ଯାଜ୍ଞସେନୀ ପାଣ୍ଡବମାନଙ୍କର ପତ୍ନୀ ହେଲେ; ଇତ୍ୟାଦି । ଏ ସ୍ଥଳରେ ସାରଳାଦାସ ମହାଶୟ ଭିନ୍ନ ଭିନ୍ନ କଥା ଓ କାରଣମାନଙ୍କରେ ଚରିତକୁ ଅନ୍ୟଥା କରିଅଛନ୍ତି । ସୁତରାଂ ପ୍ରକରଣଟିକୁ ବଡ଼ ଜଟିଳ ମଧ୍ୟ କରିଦେଇଅଛନ୍ତି । ତାହାର ଲୁପ୍ତ ମର୍ମାଂଶ ଏହି ଯେ, ଇନ୍ଦ୍ରଙ୍କର ଇନ୍ଦ୍ରତ୍ୱ ଯିବା, ବୃତ୍ର ବ୍ରାହ୍ମଣ ଇନ୍ଦ୍ର ହେବା, ପୁଣି ଇନ୍ଦ୍ର ବୃତ୍ରକୁ ସଂହାରପୂର୍ବକ ସ୍ୱପଦ ପ୍ରାପ୍ତହେବା, ପରେ କ୍ରୋଧାନ୍ଧୀଭୂତ ତ୍ୱଷ୍ଟା ଋଷି

---

୧ ଅଶେତ ଭୂମୌ ସହ ପାଣ୍ଡୁପୁତ୍ରୈଃପାଦୋପଧାନୀଚ କୃତାକୁଶେଷୁ ।
ନ ତତ୍ର ଦୁଃଖଂ ମନସାପି ତସ୍ୟାଃ ନ ଚାବମେନେ କୁରୁପୁଙ୍ଗବାଂସ୍ତାନ ।
ଆ.ପ. ୧୯୪ ଅ:

୨ କ୍ରମେଣ ଚାନେନ ନରାଧିପାତ୍ମଜା ବରସ୍ତ୍ରିୟସ୍ତେ ଜଗୃହୁସ୍ତଦା କରଂ
ଅହନ୍ୟହନ୍ୟୁତ୍ତମବେଶଧାରିଣୋ ମହାରଥାଃ କୌରବବଂଶବର୍ଦ୍ଧନାଃ ।

୩ କନ୍ୟାର ପାଞ୍ଚ ଆଙ୍ଗୁଷ୍ଠୀ ପାଞ୍ଚବର ହସ୍ତେ ।
ମନ୍ତ୍ରକୁ ସଂଯୋଗ କଲେ ଧୌମ୍ୟ ପୁରୋହିତେ । ଇତ୍ୟାଦି ଆ.ପ. ୧୩୫ ପୃ:

ଇନ୍ଦ୍ରଙ୍କୁ ବିନାଶ କରି ଶଚୀଦେବୀ ବିଳାପରେ (ପତିଂଦେହି) ବୋଲି ପଞ୍ଚବାର ପ୍ରାର୍ଥନା କଲାରୁ ପାର୍ବତୀ ଓ ପାର୍ବତୀଶ ପ୍ରସନ୍ନ ହୋଇ ପଞ୍ଚପତି ପ୍ରାପ୍ତିର ବର ଦେବା, ଇନ୍ଦ୍ରଙ୍କ ପଞ୍ଚଆତ୍ମା ପଞ୍ଚପାଣ୍ଡବରୂପେ ଆବିର୍ଭୂତ ହେବା, ଶଚୀ ଦ୍ରୌପଦୀ ହେବା; ଇତ୍ୟାଦି । ୧

(୧୧) ଯେ କୌଣସି ଗ୍ରନ୍ଥକୁ ଅନୁସରି ଅନ୍ୟ ଭାଷାରେ ତାଦୃଶ ଗ୍ରନ୍ଥ ଲେଖିବାକୁ ଗଲେ ଘଟନାମାନଙ୍କର ଯଥାଯଥତ୍ୱ ଉଲ୍ଲେଖ କରିବା ତ ପ୍ରକୃତ କଥା । ଏ ସମ୍ବନ୍ଧରେ ବିଶେଷ କହିବା କିମ୍ବା ଉଦାହରଣ ଦର୍ଶାଇବା ଅନାବଶ୍ୟକ; କିନ୍ତୁ ଏତିକି ମାତ୍ର ପ୍ରକାଶ କରିବା ଉଚିତ ଯେ, ସାରଳାଦାସ କବି ମହୋଦୟ କେତେକ ଘଟନାମାନଙ୍କୁ ଯଥାଯଥ ଲେଖି ସୁଦ୍ଧା ତଦୀୟ ଅଙ୍ଗପ୍ରତ୍ୟଙ୍ଗ ସ୍ୱରୂପ ବିଷୟାଂଶଗୁଡ଼ିକୁ ବୈଷମ୍ୟରେ ନ ପକାଇ ଛାଡ଼ି ନାହାନ୍ତି । ନିଜ କଳ୍ପନା ବଳରେ କେଉଁଠି ଭିନ୍ନ ରୂପ, କେଉଁଠି ବିପରୀତ ରୂପ, କେଉଁଠି ଅତିଶୟୋକ୍ତି ରୂପରେ ଚରିତ ଚିତ୍ରଣ କରିଅଛନ୍ତି । ଏପରି ସ୍ଥଳମାନଙ୍କରେ ମୂଳ ସଂଗେ ପାଠ ମିଳୁନାହିଁ ସତ୍ୟ, ମାତ୍ର କବିଙ୍କର ଅସାମାନ୍ୟ ରଚନା ଶକ୍ତି ଓ କଳ୍ପନା ଶକ୍ତିରେ ପ୍ରତିଭାତ କବିତାର ଆର୍ଭଟୀ ହୃଦୟକୁ ବିସ୍ମିତ ଓ ଆନନ୍ଦରେ ଶଂସିତ କରି ଦେଉଅଛି, ଏଥିରେ କୌଣସି ପ୍ରକାର ସନ୍ଦେହ ନାହିଁ । କେତେକ ସ୍ଥଳରେ କବିଙ୍କ ହୃଦୟ ଆଶୁକବିତାଧୋରଣୀରେ ପଡ଼ି ରଚନାର ଆବେଗରୁ ପୂର୍ବାପର ବିରୋଧ ପ୍ରତି ସାବଧାନ ରହିପାରି ନ ଥିବା ଜଣାଯାଏ । ଏଥିର ସଂକ୍ଷିପ୍ତ ପ୍ରମାଣ ସ୍ୱରୂପ ଏ ସ୍ଥଳର ସାମୁଦାୟିକ ବିଚାରରେ ଅନ୍ୟାନ୍ୟ ପର୍ବର କେତେକ ବିଷୟର ମୀମାଂସା କରୁଅଛୁଁ । ଉଦ୍‌ଯୋଗ ପର୍ବର ପ୍ରାରମ୍ଭରେ କହିଅଛନ୍ତି କି, ପାଣ୍ଡବମାନେ ଅଜ୍ଞାତବାସ ପରେ ବିରାଟଦେଶ ତ୍ୟାଗପୂର୍ବକ ଇନ୍ଦ୍ରପ୍ରସ୍ଥରେ (କିବା ବାରୁଣାବନ୍ତରେ) ରହିଲେ । ପାଣ୍ଡବମାନଙ୍କର ତଦାନୀନ୍ତନ ଅନୁଯାତ୍ରୀ କେତେଜଣ ଆସି ଅଛନ୍ତି ବୋଲି ଧୃତରାଷ୍ଟ୍ର ଜିଜ୍ଞାସା କଲାରୁ ଦୂତର ବିଜ୍ଞାପିତବାକ୍ୟରେ ବିରାଟଦୁହିତା ଉତ୍ତରା ଆସିଥିବାର ଉକ୍ତ ଅଛି । ୨ ତଦନନ୍ତର କେତେକ ଦିନ ପରେ ପାଣ୍ଡବୀୟ ପଞ୍ଚଗ୍ରାମ ପ୍ରାର୍ଥନାରେ ଦୁର୍ଯ୍ୟୋଧନ ଅସମ୍ମତ ହେଲାରୁ କୃଷ୍ଣାଦେଶମତେ ସେହିଠାରେ କର୍ତ୍ତବ୍ୟ ସ୍ଥିର କରୁଅଛନ୍ତି । ଇତ୍ୟବସରେ "ଉତ୍ତରା

---

୧ ଏ ସବୁ କେବଳ ଅଳୀକ ନୁହେ । ସ୍ଥାନାନ୍ତରୀଣ ମୌଳିକ ଚରିତମାନଙ୍କର ଅନୁକରଣରେ ଲିଖିତ । ତ୍ୱଷ୍ଟାଙ୍କ ପ୍ରଭାବରେ ବୃତ୍ର ଇନ୍ଦ୍ର ହେବା ପ୍ରଭୃତି କେତେକ କଥା ମୂଳ ଉଦ୍‌ଯୋଗ ପର୍ବରେ ଯୁଧିଷ୍ଠିରଙ୍କୁ ଶଲ୍ୟ କହିଥିବାର ଉକ୍ତ ଅଛି ।

୨ ପାଣ୍ଡବେ ପାଞ୍ଚ କୁମାର ଅଭିମନ୍ୟୁ ।
ସଙ୍ଗରେ ଅଛନ୍ତି ପାଞ୍ଚାଳ କୁମାରୀ ବାଳୁତସୃନ୍ତୁ ।।
ଦ୍ରୌପଦୀ ସୁଭଦ୍ରା ଆବର ଉତ୍ତରା ବାଳୀ ।
ଏତେକ ଦେଖିଲୁ ଦେବ ଆଉ ନାହିଁ ଅଗୁଳି ।।
ଛାପାରେ ମଧ୍ୟ ଏହିପରି ଅଛି । ଉ. ପ. ୬ ପୃଷ୍ଠା ଦେଖନ୍ତୁ ।

ରଜୋବତୀ ହେଲେ'' ଏହି ବାର୍ତ୍ତା ଆସିବାରୁ ଅଭିମନ୍ୟୁଙ୍କ ବନ୍ଧାପନା ନିମନ୍ତେ ପାଣ୍ଡବମାନେ ଶ୍ରୀକୃଷ୍ଣାଦି ସହ ବିରାଟ ଦେଶକୁ ପୁନଃ ପ୍ରସ୍ଥାନ କଲେ ବୋଲି ଲେଖିଅଛନ୍ତି । ପ୍ରଥମତଃ ଉତ୍ତରା ଦେବୀ ଇନ୍ଦ୍ରପ୍ରସ୍ଥରେ ପାଣ୍ଡବମାନଙ୍କ ସହ ବାସ କରୁଥିବା ଲେଖି ତତଃପର ବିରାଟ ଦେଶରେ ଥିଲେ ଏବଂ ପରେ ରଜୋବତୀ ହେଲେ ଇତ୍ୟାଦି ଲେଖିବା ପୂର୍ବାପର ବିରୋଧ । ତଥାପି ଉତ୍ତରା ଇତଃପୂର୍ବେ ଇନ୍ଦ୍ରପ୍ରସ୍ଥରୁ ବିରାଟ ଦେଶକୁ ପ୍ରତ୍ୟାବୃତ୍ତ ହେଲେ ବୋଲି ମଧ୍ୟ କୁତ୍ରାପି ସୂଚିତ କରି ନାହାନ୍ତି । ପୁଣି ଏହି ଉଦ୍‌ଯୋଗ ପର୍ବରେ ଏକ ସ୍ଥାନରେ ପ୍ରକାଶ କରିଅଛନ୍ତି କି, ପାଣ୍ଡବମାନେ ବିରାଟ ଦେଶରୁ ଶ୍ରୀକୃଷ୍ଣଙ୍କୁ ଦୌତ୍ୟକର୍ମରେ ଦୁର୍ଯ୍ୟୋଧନଙ୍କଠାକୁ ପଠାଇଲେ । ହସ୍ତିନାଗତ କୃଷ୍ଣ ପ୍ରଥମତଃ କୁନ୍ତୀଦେବୀଙ୍କି ଦର୍ଶନ କରିବା ସମୟରେ କହିଲେ କି, ପାଣ୍ଡବମାନେ ବିରାଟ ରାଜ୍ୟରେ ଅଭିଷକ୍ତ ହୋଇ ଆସି ବାରୁଣାବନ୍ତରେ ଅଛନ୍ତି । ୧ ତଥାପି କବି ଇତିମଧ୍ୟରେ ବିରାଟ ରାଜ୍ୟରୁ ବାରୁଣାବନ୍ତକୁ ଆସିବାର ସୂଚନା ମଧ୍ୟ ଦେଇ ନାହାନ୍ତି । ସାରଳାଦାସଙ୍କ ପ୍ରାଥମିକ ମତରେ ଏବଂ ମୂଳ ଗ୍ରନ୍ଥ ଅନୁସାରେ ଏ ସମୟକୁ (କୃଷ୍ଣଙ୍କର ଦୌତ୍ୟ ସ୍ୱୀକାର ସମୟ) ୨ ପାଣ୍ଡବମାନେ ବିରାଟ ରାଜ୍ୟରେ ଅର୍ଥାତ୍ ତଦୀୟ ଉପପ୍ଲବଗଡ଼ରେ ଥିଲେ । ଏଠାରେ ପୁଣି ବାରୁଣାବନ୍ତରେ ଥିଲେ ବୋଲିବା ପୂର୍ବାପର ବିରୋଧ ।

ତ୍ରୈକାଳିକ ବୃତ୍ତବେତ୍ତା ଲୋକୋତ୍ତରମତିସତ୍ତମ ପୁରାଣ ଋଷିମାନେ ସତ୍ୟଭୂତ କଳ୍ପନା ଶକ୍ତିଦ୍ୱାରା ସମ୍ଭାବିତ ପ୍ରସ୍ତାବର ଉଦାହରଣ ସ୍ୱରୂପ ଅନଳୀକ ଚରିତମାନ ଯେପରି ମଧ୍ୟେ ମଧ୍ୟେ ଦେଇଅଛନ୍ତି, ସାରଳାଦାସ କବି ମଧ୍ୟ ତଦନୁକରଣରେ ବହୁ ସ୍ଥଳରେ ଅନେକ ବିଷୟର ଉଦ୍ଭାବନ ଏବଂ ମନଗଢ଼ା ଚରିତଗୁଡ଼ିକରେ ପ୍ରସ୍ତାବିତ ବିଷୟମାନଙ୍କର ସମର୍ଥନ କରିଅଛନ୍ତି । ବିରାଟମହିଷୀ ଶ୍ରୀକୃଷ୍ଣାଙ୍କଠାରେ ୩ ସର୍ବଜ୍ଞତା ଜାତିସ୍ମରତା ଓ ବହୁଶାସ୍ତ୍ରାଭିଜ୍ଞତା ଆରୋପଣ କରି, ସେ ପୂର୍ବେ ମେନକାଙ୍କ ଗର୍ଭରୁ ଜନ୍ମି ଶ୍ୱେତରାଜାଙ୍କ ଭାର୍ଯ୍ୟା ହୋଇଥିବା, ସେହି ଦମ୍ପତି ବର୍ତ୍ତମାନ ବିରାଟ ଓ ଶ୍ରୀକୃଷ୍ଣା ହେବା,

---

୧ ବିରାଟ ରାଜ୍ୟରେ ପୋଏ ଅଭିଷେକ ସାରି ।
ଏବେ ବାରୁଣାବନ୍ତେ ଅଛନ୍ତି ବିଜେ କରି ।।
ଛାପାରେ ମଧ୍ୟ ଏହିପରି ଅଛି । ଉ. ପ. ୪୧ ପୃଷ୍ଠା ଦେଖନ୍ତୁ ।

୨ ମାତ୍ର ଶ୍ରୀକୃଷ୍ଣଙ୍କର ଦୌତ୍ୟନିର୍ବାହ ବିଷୟ ମୂଳ ଗ୍ରନ୍ଥରେ ଯୁଦ୍ଧାର୍ଥ ସହାୟ ରାଜାମାନଙ୍କର ନିମନ୍ତ୍ରଣାଦି କଥା ହେଲା ପରେ ଉକ୍ତ ଅଛି ।

୩ ବିରାଟମହିଷୀଙ୍କର ବ୍ୟାସଦତ୍ତ ନାମ କାହିଁକି ତଦୀୟ ପିତୃଦତ୍ତ ନାମ ସୁଦେଷ୍ଣା । ସେହି ନାମକୁ ସାରଳାଦାସ କବି ସର୍ବତ୍ର ଶ୍ରୀକୃଷ୍ଣା କରିଅଛନ୍ତି । ମାତ୍ର ଛାପାକାର ଦାସଦତ୍ତ ନାମ ନ ଦେଇ ବ୍ୟାସଦତ୍ତ ନାମରେ ଅଙ୍କିତ କରିଅଛନ୍ତି । ଆମ୍ଭେ ଏ ସ୍ଥଳରେ ସର୍ବତ୍ର ତାଳପତ୍ର ପୁସ୍ତକରେ ଥିବା ନାମ ଲେଖିଲୁଁ ।

ଅତଃପର କଳିଯୁଗରେ ଇନ୍ଦ୍ରଦ୍ୟୁମ୍ନ ଓ ଗୁଣ୍ଡିଚାବତୀ ହେବା, ଶ୍ରୀକୃଷ୍ଣା ଶ୍ରୀକୃଷ୍ଣଙ୍କ ପ୍ରଶ୍ନରେ ଭାବୀ ମହାଭାରତ ଯୁଦ୍ଧର ଯାବତୀୟ ବିବରଣ କହିବା, ଭବିଷ୍ୟମାଣ ପରୀକ୍ଷିତଙ୍କୁ ପୁନରୁଜ୍ଜୀବିତ କରଣାର୍ଥ ଶ୍ରୀକୃଷ୍ଣଙ୍କୁ ମୃତସଞ୍ଜୀବନୀ ବିଦ୍ୟା ପ୍ରଦାନ କରିବା ଇତ୍ୟାଦି ବହୁତଗୁଡ଼ାଏ କଥାର ଉଦ୍ଭାବନା କରିଅଛନ୍ତି । ଏତାଦୃଶ ଉଦ୍ଭାବନା ଓ କଳ୍ପନାମାନଙ୍କରେ ଯେ ଅସଙ୍ଗତି ନାହିଁ, ତାହା ନୁହେ । ଅନେକ ସ୍ଥଳରେ କଥା ଅସଙ୍ଗତ ଜଣାଯାଉଅଛି । ଉଦ୍‌ଯୋଗ ପର୍ବର ଶେଷରେ ଗୋଟିଏ ଆକସ୍ମିକ ଅହେତୁକ ଚରିତର ଅବତାରଣା କରି ଅଛନ୍ତି । କଥାଗୁଡ଼ିକ ମଧ ସଙ୍ଗତ ହୋଇନାହିଁ । କଥାଟି ଏହି – ବ୍ରହ୍ମା ବେଦ ପୁସ୍ତକଟି ତୀରରେ ଥୋଇଦେଇ ଚନ୍ଦ୍ରଭାଗା ତୀର୍ଥରେ ସ୍ନାନ କରୁଥିଲେ । ସହସା ଶଙ୍ଖାସୁର ବେଦକୁ ଚୋରାଇ ଘେନିଗଲା । କେତେକ କାଳ ପରେ ନାରାୟଣ ମତ୍ସ୍ୟାବତାରରେ ତାକୁ ବିନାଶି ବେଦକୁ ଆଣିଦେଲେ । ଏ ସ୍ଥଳରେ ପୁଣି ପ୍ରଶ୍ନ ଉଠିଲା ଯେ ବେଦର ଅଭାବରେ ଏତେ କାଳ କିପରି କାର୍ଯ୍ୟ ଚଳିଲା ? ଏହାର ଉତ୍ତର ସ୍ୱରୂପ ବ୍ରହ୍ମାଙ୍କର ତାତ୍କାଳିକ ଅବସ୍ଥାମତେ ପୁନରପି ବେଦସୃଷ୍ଟି କଥା ଲେଖି ଅଛନ୍ତି କି –

ହେଠବଦନ ହୋଇ ଯେ ଭୂମିରେ ଅଙ୍ଗୁଷ୍ଠି ଠୁକନ୍ତେ ।
ପ୍ରଥମେ ଋକ୍‌ବେଦ ହୋଇଲା ସମ୍ଭୂତେ ।।
ବ୍ୟାକୁଳ ହୋଇ ଯହୁଁ କାନ୍ଦନ୍ତେ ବେଦବର ।
ତହୁଁ ସେ ଅଥର୍ବ ବେଦ ହୋଇଲା ବାହାର ।।
ଦର୍ଦ୍ଦୁର ବଚନ ପ୍ରାୟେ ଯହୁଁ ବ୍ରହ୍ମା ଶୋକ କଲା ।
ତହୁଁ ଯଦୁ (ଯଜୁ) ର୍ବେଦ ଜାତ ସେ ହୋଇଲା ।।
ଶଂଖାମୀନର ଯହୁଁ ହୋଇଲାକ ଶାନ୍ତି ।
ତହୁଁ ସାମ ବେଦ ହୋଇଲା ଉତ୍ପତ୍ତି ।।
ଚାରି ବେଦ ବ୍ରହ୍ମା ପୁସ୍ତକେ ଲେଖଇ ।
ଋକବେଦ ଦେଲେ ବଶିଷ୍ଠ ମୁନିକଇ ।*

୧ ବନ ପର୍ବରେ ପ୍ରକାଶ କରି ଅଛନ୍ତି କି, ଦିନେ ଭ୍ରାତୃଚତୁଷ୍ଟୟସହାୟ ଧର୍ମପାଶବଦ୍ଧ ଯୁଧିଷ୍ଠିର ବନ ଭ୍ରମଣରେ ଶ୍ରାନ୍ତ ହୋଇ ଗୋଟିଏ ଶାଖା-ପ୍ରଶାଖା-ସମୃଦ୍ଧ ବିଶାଳ ବଟବୃକ୍ଷ ମୂଳରେ ଉପବେଶନ କଲେ । କିନ୍ତୁ ଭୀମସେନ ଏକାକୀ ଏକ ଶାଖୋଟକ ତଳେ ବସି ତତ୍ରତ୍ୟ ପତ୍ରପୁଷ୍ପନିଚୟକୁ ମସ୍ତକରେ ଭୂଷଣ ପ୍ରାୟ ଗ୍ରହଣ କଲେ । ତଦବଲୋକନରେ ଯୁଧିଷ୍ଠିର ପ୍ରଶ୍ନ କଲାରୁ ଭୀମ କହିଲେ କି, ସାହାଡ଼ା ବୃକ୍ଷ ଓ ତଦୀୟ ପ୍ରସବଚୟ

* ଛାପା ପୁସ୍ତକରେ ମଧ ପ୍ରାୟ ଏହିପରି ଅଛି । ୧୪୯ ପୃଷ୍ଠା ଦେଖନ୍ତୁ ।

୧ ଛାପା ପୁସ୍ତକରେ ୩୬୨—୩୬୩ ପୃଷ୍ଠା ଦେଖନ୍ତୁ ।

ଉଦର୍କସୁଖଦାୟକ । ଅଥଚ ଏ ସ୍ଥଳରେ ପ୍ରସ୍ତାବିତ ବିଷୟର ନିଦର୍ଶନସ୍ୱରୂପ ପୂର୍ବୋକ୍ତ ମହାଦେବ ଓ ବୃଷଭଙ୍କର ଗାଥାକୁ ଆମ୍ରେଡ଼ିତ କରିଅଛନ୍ତି ।

ଅତଃପର ସଭାପର୍ବୋକ୍ତ ଯାଗ ସମୟରେ କହନ୍ତି କି ଭୋଜନୋଚ୍ଛିଷ୍ଟ ପତ୍ରନିଚୟକୁ ପବନୋନ୍ନୀତ ଦେଖି ଯୁଧିଷ୍ଠିର ଶ୍ରୀକୃଷ୍ଣଙ୍କୁ ନିବେଦନ କଲେ ଯେ, ଆମ୍ଭମାନଙ୍କର ପିତା ପବନ ଉଚ୍ଛିଷ୍ଟବାହକ ହେବା ଅନୁଚିତ । ୧ ଏତଦ୍ୱାରା ଆମ୍ଭମାନଙ୍କର ଧର୍ମହାନି ହୁଏ । ଏହାଶୁଣି ସହଦେବ କହିଲେ କି, ବଦରିକାଶ୍ରମରେ ମେରୁଶୃଙ୍ଗାଭିଧ ଋଷି ଅଛନ୍ତି । ସେ ଅନଳ ନୟନରେ ଚାହିଁଦେଲେ ଏ ସବୁ ଦଗ୍ଧୀଭୂତ ହେବ । ଅତଏବ ତାହାଙ୍କୁ ଅଣାଇବାକୁ ହେବ । ତେତେବେଳେ ଯୁଧିଷ୍ଠିରାଦେଶରେ ସେହି ଋଷି ଭୀମଙ୍କଦ୍ୱାରା ଆମନ୍ତ୍ରିତ ଓ ଆନୀତ ହୋଇ ପ୍ରୋକ୍ତ କାର୍ଯ୍ୟ ନିର୍ବାହ କଲେ । ୨

ସେହିପରି କହି ଅଛନ୍ତି, ବିରାଟରାଜ ରାଜସୂୟ ଦର୍ଶନେଚ୍ଛାରେ ଆସି ବହୁ ଦିନଯାଏ ଯୁଧିଷ୍ଠିରଙ୍କୁ ଦର୍ଶନ କରିପାରିନଥିଲେ । ଦିନେ ଭୀମ ଶ୍ରୀକୃଷ୍ଣଙ୍କ ନିର୍ଦ୍ଦେଶାନୁସାରେ ବିରଟାଧିପଙ୍କୁ ଗଳଥା ମାରି ନେଇ ଯୁଧିଷ୍ଠିରଙ୍କର ଦର୍ଶନପ୍ରାପ୍ତ କରାଇଲେ । ଏଥିର କାରଣ ବିରାଟେଶ ଯେପରି ଭାବୀ ସମୟରେ ଚିହ୍ନି ପାରିବାକୁ ବର୍ତ୍ତମାନ ସମ୍ୟକ୍ ଦେଖି ନ ପାରିବେ । ଏକ ଆଡ଼େ ଭୀମଙ୍କର ଅଶନିକଳ୍ପ ଗଳଥା, ଅନ୍ୟ ଆଡ଼େ ଶ୍ରୀକୃଷ୍ଣଙ୍କର ଚକ୍ରାବରଣ । ଅତଏବ ବିରାଟ ନୃପତି ଯୁଧିଷ୍ଠିରଙ୍କୁ ସମ୍ୟକ୍ ଦୃଷ୍ଟିଗୋଚର କରିପାରିଲେ ନାହିଁ । ତଥାପି ତାହାଙ୍କୁ ସେଠାରେ ସ୍ଥାନ ନ ଦେଇ ବାହ୍ୟ ସଭାରେ ବସାଇଲେ; ଇତ୍ୟାଦି ବିଷୟଗୁଡ଼ିକରୁ କେତେକ ଅଳୀକ ପ୍ରଳାପ କେତେକ ଅବା ଭ୍ରାନ୍ତ ଧାରଣାର ବିପ୍ରଳାପ ବୋଧହୁଏ । ଏତାଦୃଶ କେତେକ କଥାମାନଙ୍କରୁ ଏହି କବିଙ୍କର ୮ିତଥକଥାଧୌରେୟତ୍ୱ ପ୍ରତିପନ୍ନ ହୁଏ । [୩]

(୧୨) ମୂଳରେ କଥିତ ଅଛି, ଦ୍ରୌପଦୀଙ୍କ ବିବାହ ପରେ ଅପବାଦଭୀତ ଦୂୟମାନମନା ଧୃତରାଷ୍ଟ୍ରଙ୍କ ଆଦେଶାନୁକ୍ରମେ ଦ୍ରୁପଦ ରାଜ୍ୟରୁ ସମାଦରେ ସମାନୀତ ପ୍ରାପ୍ତାର୍ଦ୍ଧରାଜ୍ୟ [୪] ଭାନୁଭାସ୍ୱରଦର୍ଶନ ସାନୁଯାତ୍ର ପାଣ୍ଡବମାନେ ''ଗତଂ ତୁ ନାନୁଶୋଚନ୍ତି ସନ୍ତଃ'' ଏହା ଭାବି ଖାଣ୍ଡବପ୍ରସ୍ଥରେ ସୁଖରେ ବାସ କଲେ । କିନ୍ତୁ ଶାରଳାଦାସ ପ୍ରଥମତଃ

---

୧ ଯୁଧିଷ୍ଠି ବୋଇଲେ ହେ ହରି ପବନ ମୋ ପିତା ।
ସେହି ସେ ହୋଇଛନ୍ତି ଉଚ୍ଛିଷ୍ଟ ପୋଛନ୍ତା ।। ଇତ୍ୟାଦି ।।

୨ ସ.ପ. ଛାପା ପୁସ୍ତକରେ ୩୦ଟି ପୃଷ୍ଠାର ପ୍ରାରମ୍ଭରୁ ଦେଖନ୍ତୁ ।

[୩] ଏତାଦୃଶ କେତେକ ପ୍ରକରଣରେ କଳ୍ପିତ ଚରିତମାନଙ୍କର ଅନୋନ୍ୟ ଅସଂଲଗ୍ନତା ଦୋଷ ମଧ୍ୟ ପ୍ରକାଶ ପାଏ । ବନପର୍ବ ୧୬୨—୧୮୬ ପୃ: ଓ ୨୩୮—୨୪୪ ପୃଷ୍ଠା ପର୍ଯ୍ୟନ୍ତ ଦେଖନ୍ତୁ ।

[୪] ଅର୍ଦ୍ଧରାଜ୍ୟସ୍ୟ ସଂପ୍ରାପ୍ୟ ଖାଣ୍ଡବପ୍ରସ୍ଥମାବିଶନ୍ — ଇତ୍ୟାଦି । ଆ.ପ. ୨୦ ଅ:

ହସ୍ତିନାନ୍ତିକସ୍ଥ କୁସୁମନଦୀ ତୀରରେ ରହିବା କହି ଅନ୍ୟତ୍ର ଅର୍ଥାତ୍ ମଧ୍ୟ ପର୍ବରେ ତଦିତର ସ୍ଥାନରେ ରହିବାର କହିଅଛନ୍ତି । ଏଥିରୁ ପୂର୍ବାପର କଥାମାନଙ୍କର ପାରସ୍ପରିକ ସଂଲଗ୍ନତାର ହାନି ସ୍ପଷ୍ଟ ହେଉଅଛି । [୧] ଦ୍ରୌପଦୀ ଉପଯମ ପରେ ପାଣ୍ଡବମାନଙ୍କର ହସ୍ତିନାଗମନାବଧିକ ଚରିତମାନଙ୍କରେ ମାତ୍ର ଆଦିପର୍ବକୁ ସମାପ୍ତ କରି, ଅବଶିଷ୍ଟ ଚରିତଗୁଡ଼ିକରେ ପୃଥଗ୍‌ଭୂତ (୨) ମଧ୍ୟପର୍ବ ଅଭିହିତ କରିଅଛନ୍ତି । ମୂଳରେ ମଧ୍ୟପର୍ବ ବୋଲି ଗୋଟିଏ ପର୍ବ ନାହିଁ । ମଧ୍ୟପର୍ବର ପ୍ରାରମ୍ଭରେ ବିବାହର କିଞ୍ଚିତ୍ ବ୍ୟବହିତ ସମୟ ପରେ ଯାଜ୍ଞସେନୀଙ୍କର ପ୍ରାଥମିକ ରଜୋଦର୍ଶନବିଷୟକ ପ୍ରକରଣଟି ଯେ କୌଣସିମତେ ଜ୍ୟୋତିଃଶାସ୍ତ୍ରାନୁମୋଦିତ ଦୋଷାଦୋଷ ପ୍ରଦର୍ଶନପୂର୍ବକ ବିସ୍ତର କରି ଲେଖିଅଛନ୍ତି । ଇତଃପୂର୍ବରୁ ବୀରକନ୍ୟା ଦ୍ରୌପଦୀ ଦୃଷ୍ଟରଜା ଥିବାରୁ ଏ ସବୁ ମୂଳରେ ଉକ୍ତ ନାହିଁ । ଏତାଦୃଶ ଅନେକଗୁଡ଼ିଏ କାଳ୍ପନିକ ଆଉ ଅନ୍ୟତ୍ରୋକ୍ତ କଥାମାନଙ୍କ ସାହାଯ୍ୟରେ ମୂଳର ଅବଶିଷ୍ଟ ଅତ୍ୟଳ୍ପପରିମିତ (ପ୍ରାୟ ୨୮ ପୃଷ୍ଠା ମାତ୍ର) ପାଠରୁ କେତେକ ଛାଡ଼ିଦେଇ ସୁଦ୍ଧା ମଧ୍ୟପର୍ବ ନାମରେ ଗୋଟିଏ ବୃହତ୍ ପର୍ବ କରିଅଛନ୍ତି । ଇତିମଧ୍ୟରେ କେତେକ ଚରିତକୁ ବ୍ୟତ୍ୟୟକ୍ରମେ ଲେଖିଅଛନ୍ତି ।

ଅନନ୍ତର ମୂଳରେ ଲେଖାଅଛି, ସ୍ୱକୀୟ ଗୋଧନାପହାରୀ ଚୋରମାନଙ୍କ ଦଣ୍ଡନାର୍ଥ ଜଣେ ବ୍ରାହ୍ମଣ ରାଜଦ୍ୱାରରେ କରୁଣ ସ୍ୱରରେ ରୋଦନ କଲେ । ଧର୍ମପାଶସଂଯତାତ୍ମା ସମାଦୃତ-ବୀରାନୁଷ୍ଠାନ ଅର୍ଜୁନ ପରିଣାମ ଫଳ ଯାହାହେଉ, ''ରାଜଧର୍ମ ଅବଶ୍ୟ ପାଳନୀୟ'' ମନେ କରି ଆୟୁଧଗ୍ରହଣାର୍ଥ ଯୁଧିଷ୍ଠିର ଓ ଦ୍ରୌପଦୀଙ୍କର ଏକାନ୍ତ ବିହାରସଦନୀଭୂତ ଆୟୁଧାଗାରରେ ପ୍ରବିଷ୍ଟ ହେଲେ । ଅତଏବ ପୂର୍ବକୃତ ନିୟମାନୁମୋଦିତ ଦ୍ୱାଦଶ ବର୍ଷ ବନବାସ ତାହାଙ୍କୁ ସ୍ୱୀକାର କରିବାକୁ ହେଲା । କିନ୍ତୁ ସାରଳାଦାସ ମହାଶୟ କହନ୍ତି କି, ବ୍ରାହ୍ମଣରୂପୀ ଅଗ୍ନିଦେବ ଯୁଧିଷ୍ଠିରଙ୍କୁ ତତ୍କ୍ଷଣାତ୍ ଡାକି ଆଣିବା ପାଇଁ ଶାପଭୀତି ପ୍ରଦର୍ଶନପୂର୍ବକ ଅନୁରୋଧ କଲାରୁ ଅର୍ଜୁନ ଶାପସାଧ୍ୱସବିକ୍ଳବତାରେ ଅଗତ୍ୟା ଯୁଧିଷ୍ଠିରଙ୍କ କ୍ରୀଡ଼ା ମନ୍ଦିରରେ ପ୍ରବିଷ୍ଟ ହେଲେ । ପୁଣି ତଦୀୟ ଦ୍ୱାରଦେଶରେ ସଂକେତସ୍ୱରୂପ ସ୍ଥାପିତ ପାଦରକ୍ଷକକୁ ବୈଶ୍ୱାନର ଶ୍ୱାନକର୍ତ୍ତୃକ ଅପହୃତ କରାଇ ଥିବାରୁ ଯୁଧିଷ୍ଠିର କୁକୁରକୁ ଅଭିଶପ୍ତ କଲେ; ଇତ୍ୟାଦି । ଅତଃପର ବନବାସକରଣର କିଞ୍ଚିତ୍ ପରେ ବାସବୋପମ ସୁସାହସ

---

[୧] ହସ୍ତିନା ରାଜଭବନ ପଶ୍ଚିମ ପାଶରେ ।
ରହିଲେ ପାଣ୍ଡବେ କୁସୁମ ନଦୀ ପାଖରେ ।। ୫୭୮ ପୃ:
ଶୁଣ ସାବଧାନେ ମନୁବଂଶର ନୃପତି ।
ବାରୁଣାବନ୍ତେ ରହିଲେ ପାଣ୍ଡବ ସନ୍ତତି ।। ମଧ୍ୟପର୍ବ ପ୍ରାରମ୍ଭରେ ।

(୨) କହନ୍ତି ଅଗସ୍ତି ବୈବସ୍ୱତ ମନୁ ଶ୍ରୋତା ।
ଅଷ୍ଟାଦଶ ପର୍ବେ ମଧ୍ୟ ପର୍ବର ଏ କଥା ।। ମ.ପ. ୧ ପୃ:

ବାସବି ମହାଦେବଙ୍କୁ ନିରସ୍ତ କରି ତଦୀୟ ପାଶୁପତାସ୍ତ୍ର ଏବଂ ପରାକ୍ରମପରିତୁଷ୍ଟା ଭବାନୀଙ୍କର ଅକ୍ଷୟ ତୂଣ ପ୍ରାପ୍ତ ହେବାର ଲେଖିଅଛନ୍ତି । ଏହା ମୂଳ ଗ୍ରନ୍ଥର ଏହି ସ୍ଥାନର ପାଠ ନୁହେ । ଏହା ତ ବନପର୍ବର କଥା । ଏତାଦୃଶ ଆହୁରି କେତେଗୁଡ଼ିଏ ବିଷୟକୁ ସାରଳାଦାସ ଲେଖି ପକାଇଅଛନ୍ତି । ପୁଣି ଏଥି ମଧରେ ଆଉ ଗୋଟିଏ କଥା ମଦ୍ଦୃଷ୍ଟ ତାଳପତ୍ର ପୁସ୍ତକଦ୍ୱୟରେ ନାହିଁ । ମାତ୍ର ଛାପା ପୁସ୍ତକରେ ଅଛି । ଏହା ସାରଳାଦାସ ଲେଖି ଅଛନ୍ତି କିମ୍ବା ଅନ୍ୟ କେଉଁ ଲେଖକଂମ୍ମନ୍ୟମାନଙ୍କର ପ୍ରକ୍ଷେପ, ତାହା ଠିକ୍ ଜଣାଯାଉ ନାହିଁ । କଥାଟା ଏହି – ଶ୍ରୀକୃଷ୍ଣ ମାୟାସମୁଜ୍ଜୃମ୍ଭଣପୂର୍ବକ ନବକୁଞ୍ଜର ରୂପ ଅର୍ଥାତ୍ ନବଗୋଟି ଜନ୍ତୁର ଆକୃତିବିଶିଷ୍ଟ ବିସ୍ମୟଜନକ ରୂପ ଦେଖାଇବା, ପରେ ଅର୍ଜୁନଙ୍କ ସ୍ତୁତିରେ ସେ ନିଜ ଦିବ୍ୟରୂପ ଦେଖାଇବା, ସେହି ଦିନ ଚୈତ୍ର କୃଷ୍ଣ ତ୍ରୟୋଦଶୀ ହୋଇଥିଲା ବୋଲି ଅର୍ଜୁନ ସ୍ୱକୀୟ ଅତିମାନୁଷ ଶସ୍ତ୍ର ପ୍ରଭାବରେ ପୁଣ୍ୟସଲିଳା ଗଙ୍ଗାଙ୍କୁ ସେଠାକୁ ଆନୟନ କରିବା ପ୍ରଭୃତି ବିଷୟମାନ ବିସ୍ତୃତଭାବରେ ଲେଖାଅଛି ।

ଇତଃପର ମୂଳରେ କଥିତ ଅଛି କି, ବନବାସୀ ସ୍ମିତପୂର୍ବାଭିଭାଷୀ ସଂପ୍ରାପ୍ତସଂପୂର୍ଣ୍ଣ-ଯୌବନ କାମକମନୀୟ ଅର୍ଜୁନ ଦିନେ ଗଙ୍ଗାଦ୍ୱାରରେ ସ୍ନାନ କରୁଅଛନ୍ତି, ଇତ୍ୟବସରରେ ନାଗରାଜ କୌରବ୍ୟନନ୍ଦିନୀ ଉଲୁପୀ ତଦ୍ଦର୍ଶନରେ ମନ୍ମଥାଶୁଗସଂଦଗ୍ଧହୃଦୟା ହୋଇ କଥଂଚିଦ୍ ଅର୍ଜୁନଙ୍କୁ ନାଗଲୋକଙ୍କୁ ଘେନି ଗଲେ । ଅର୍ଜୁନ ନାଗକାମିନୀ ସ୍ନେହାନୁରୋଧରେ ଅଧୋଭୁବନରେ [୧] ଏକ ରାତ୍ର ମାତ୍ର ଅବସ୍ଥାନ କଲେ; ଇତ୍ୟାଦି । ଏ ସ୍ଥଳରେ ସାରଳାଦାସ ମହୋଦୟ ଅର୍ଜୁନଙ୍କର ପ୍ରୋକ୍ତ କାଦ୍ରବେୟପୁର ପ୍ରବେଶ ଏବଂ ତଦୀୟ ସମଧ୍ୟୁଷିତ ତୀର୍ଥମାନଙ୍କ କଥା ସବୁ ତ୍ୟାଗ କରିଅଛନ୍ତି । ଅତଃପର ବ୍ୟାସଙ୍କ ମତରେ ତୀର୍ଥ ଭ୍ରମଣାନନ୍ତର ମଣିପୁରରାଜ ଚିତ୍ରବାହନଙ୍କଠାରେ ଉପଗତ ଅର୍ଜୁନ ତଦୀୟ ଦୁହିତା ନେତ୍ରମନଃକମନୀୟା ବିଚିତ୍ରାଙ୍ଗଦାଭୂଷିତା ଚିତ୍ରାଙ୍ଗଦାଙ୍କ ପାଣିଗ୍ରହଣପୂର୍ବକ ତିନିବର୍ଷ ସେଠାରେ ଅବସ୍ଥାନ କରି (ସ ତଥେତି ପ୍ରତିଜ୍ଞାୟ ତାଂ କନ୍ୟାଂ ପ୍ରତିଗୃହ୍ୟ ଚ । ଉବାସ ନଗରେ ତସ୍ମିନ୍ ତିସ୍ରଃ କୁନ୍ତୀସୁତଃ ସମାଃ – ଆ.ପ. ୨୧୭ ଅ:) ଚୈତ୍ରବାହନେୟାଙ୍କ ଗର୍ଭରୁ ଆତ୍ମସଦୃଶ ସନ୍ତାନ ଉତ୍ପାଦନ ପରେ ପୁନରପି ଦେଶାଟନାର୍ଥ ପ୍ରସ୍ଥାନ କରିଥିଲେ । ସାରଳାଦାସ ଏହି ପ୍ରକରଣକୁ ଏ ସ୍ଥଳରେ ନ କହି ବିତଥକଳ୍ପନାଜାଲରେ ଇତସ୍ତତଃ ବିକ୍ଷେପପୂର୍ବକ ଭିନ୍ନାକାର କରି ଖାଣ୍ଡବଦାହ ପ୍ରଭୃତି ମୂଳ ଆଦିପର୍ବର ସମସ୍ତ କଥା

[୧] ଅପକୃଷ୍ଟୋ ମହାବାହୁର୍ନାଗରାଜସ୍ୟ କନ୍ୟୟା ।
ଅନ୍ତର୍ଜଳେ ମହାରାଜ ଉଲୁପ୍ୟା କାମବାଣୟା । x x x x
ସ ନାଗଭବନେ ରାତ୍ରିଂ ତାମୁଷିତ୍ୱା ପ୍ରତାପବାନ୍ ।
ଉଦିତେଽଭ୍ୟୁଦଥିତଃ ସୂର୍ଯ୍ୟେ କୌରବ୍ୟସ୍ୟ ନିବେଶନାଦ୍ ।
ଆ.ପ. ୨୧୬ ଅ:

କଥନ ପରିସମାପ୍ତ ହେଲା ପରେ ଏକ ସ୍ଥାନରେ ଲେଖିଅଛନ୍ତି କି, ସମୃଦ୍ଧ ଧୈର୍ଯ୍ୟ ଅନନ୍ତବୀର୍ଯ୍ୟ ହର୍ଯ୍ୟକ୍ଷସଂହନନ ବୀରବୀର୍ଯ୍ୟ ଅର୍ଜୁନ ଏକାମ୍ରବନରେ ଅବସ୍ଥାନ କରୁଥିବା ସମୟରେ ଏକଦା ଯଶୋବନ୍ତ ଦେଶର ନୃପତି ଚିତ୍ରାଙ୍କୁରଙ୍କ ପୁତ୍ର ଚିତ୍ରଧ୍ୱଜ ସୈନ୍ୟସାମନ୍ତ ସମଭିବ୍ୟାହାରରେ ମୃଗୟାର୍ଥ ଯାଇ ଗହନରେ ପଥଭ୍ରାନ୍ତବଶରୁ ସଂଭ୍ରମ୍ୟମାଣ ହୋଇ ସ୍ୱଚ୍ଛସଲିଳ ସକଚ୍ଛପଖେଳ ଅଳିକୁଳସମାକୁଳସରୋଜ ଅଲୀନମୀନବିହଙ୍ଗମ ଏକ ସରୋବରର ଉପକଣ୍ଠରେ ପ୍ରବିଷ୍ଟ ହେଲେ । ସେହି ଜଳାଶୟ ତୀରରେ ପରମହଂସ ଦେଶାଧିପ ବୈରାଷ୍ଟ୍ରଙ୍କ ତନୟା ରତିପ୍ରତିମରୂପା ସମୁଜ୍ଝିତଶୈଶବା କନ୍ୟାଙ୍କୁ ଦେଖି କାମମୋହିତ ହୃଦୟରେ ନିଜ ଅଶ୍ୱପୃଷ୍ଠରେ ବସାଇ ନିଜ ଗୃହାଭିମୁଖରେ ପ୍ରସ୍ଥାନ କଲେ । ତତ୍ସମ୍ବାଦ ଶ୍ରବଣରେ କନ୍ୟାପିତା ଚତୁରଙ୍ଗ ବଳସହ ଅଭିଯାନ କଲାରୁ ଚକ୍ରଧ୍ୱଜ ସ୍ୱଗଣହୀନ ଶ୍ୱଗଣାଭିବୃତ ମୃଗତୁଲ୍ୟ ଭୀତ ଓ ତ୍ରସ୍ତ ହୋଇ ପଳାୟନ ପୂର୍ବକ ଅର୍ଜୁନଙ୍କଠାରେ ଶରଣପ୍ରାର୍ଥୀ ହେଲେ । ଅର୍ଜୁନ ପ୍ରଥମତଃ ସ୍ୱୀୟ ଆଦେଶଲଙ୍ଘନଜନିତ ରୋଷରେ ବୈରାଷ୍ଟ୍ରଙ୍କୁ ବନ୍ଧନ କରି ତଦୀୟ ବୈନୟିକ-ବୁଦ୍ଧି ପ୍ରସିଦ୍ଧସିଦ୍ଧି ମନ୍ତ୍ରୀଙ୍କ ସାନୁନୟ ପ୍ରାର୍ଥନାରେ ପରେ ମୁକ୍ତ କଲେ ଏବଂ ପ୍ରୋକ୍ତ କନ୍ୟାଙ୍କୁ ଚିତ୍ରଧ୍ୱଜଙ୍କୁ ପ୍ରଦାନ କରାଇଲେ । ତତଃପର ବୈରାଷ୍ଟ୍ର ନୃପତି ଆପଣାର ସଂପ୍ରାପ୍ତବୟସ୍କା ଲମ୍ପିତା ଓ ଚିତ୍ରପଦାନାମ୍ନୀ ଦୁହିତାଦ୍ୱୟଙ୍କୁ ଅର୍ଜୁନଙ୍କୁ ପ୍ରଦାନପୂର୍ବକ ବହୁ ଅନୁନୟ ବିନୟରେ ସ୍ୱରାଜ୍ୟକୁ ନେଇ ସସମାରୋହରେ ବିବାହ ବନ୍ଧାଇଲେ । [୧] ଅର୍ଜୁନ ସେଠାରେ ଦୁଇ ମାସ ଅବସ୍ଥାନ କରି ଲମ୍ପିତା କନ୍ୟା ଅନ୍ତଃସତ୍ୱା ହେଲା ପରେ ପୁନଶ୍ଚ ବନବାସାର୍ଥ ସେଠାରୁ ପ୍ରସ୍ଥାନ କଲେ । ସମୟରେ ଲମ୍ପିତାଙ୍କ ଗର୍ଭରୁ ବବ୍ରୁ (ବଭ୍ରୁ) ବାହନ ନାମକ [୨] ପୁତ୍ର ଜନ୍ମିଥିଲେ । [୩] ଇତଃପର ଅର୍ଜୁନ ଅଗସ୍ତ୍ୟ, ସୌଭଦ୍ର, ପୌଲୋମ, କାରନ୍ଧମ ଓ ଭରଦ୍ୱାଜ ତୀର୍ଥରେ ଶାପବଶତଃ କୁମ୍ଭୀରୀଭୂତ ପାଞ୍ଚ ଅପ୍ସରାଙ୍କୁ ଦୁର୍ଗତିରୁ ମୁକ୍ତ କରି ପୁନରପି ମଣିପୁରପତ୍ତନକୁ ପ୍ରତ୍ୟାଗତ ହେଲେ । ତତ୍ରତ୍ୟ ନିଜ ଭାବିନୀ ଅଦୃଷ୍ଟପୂର୍ବବ୍ୟସନା ଚିତ୍ରାଙ୍ଗଦାଙ୍କୁ ସ୍ୱବିରହବିକ୍ଳବା ଦେଖି ଶୁଭୋଦର୍କ ବଚନରେ ସାନ୍ତ୍ୱନା ଦେଲେ । ତଦୀୟ ପୁତ୍ର ବଭ୍ରୁବାହନଙ୍କୁ ଦେଖି ଗୋକର୍ଣ୍ଣ ପ୍ରଭୃତି ତୀର୍ଥ ଦର୍ଶନାର୍ଥ ପୁନଃ ପ୍ରସ୍ଥାନ କଲେ ବୋଲି ମୂଳରେ ଲେଖା ଅଛି । ମାତ୍ର ସାରଳାଦାସ କବି ଏ ସବୁ ଲେଖି ନାହାନ୍ତି; କାରଣ ପୂର୍ବୋକ୍ତ କାଳ୍ପନିକ ଚରିତରେ ଏହାର ଆଂଶିକ ବିବରଣ ଭିନ୍ନ ପ୍ରକାର ଅନ୍ତର୍ନିହିତ ହୋଇଯାଇଅଛି ।

---

[୧] ଷାଠିଏ ଦିନ ତହିଁ ରହିଲା ଫାଲଗୁନି । ମ. ପ. ୭୮ ପୃ:

[୨] ସ୍ୱଭାବେ ବୃଷ ରାଶିରେ ଜନମ ହୋଇଲା ।
ବବ୍ରୁବାହାନ ଯେ ନାମଟି ସେ ହୋଇଲା ।। ମ. ପ. ୮୦ ପୃ:

[୩] ବ୍ୟାସଙ୍କ ମତେ ଚିତ୍ରାଙ୍ଗଦାଙ୍କ ଗର୍ଭରୁ ଅର୍ଜୁନଙ୍କ ଔରସରେ ଜାତ ସନ୍ତାନଙ୍କ ନାମ ବଭ୍ରୁବାହନ । ଏହି ନାମକୁ ଏ ବବ୍ରୁବାହନ କରିଅଛନ୍ତି ।

ପୌରନ୍ଦର ଖାଣ୍ଡବର ଦାହଚରିତ ତୀର୍ଣ୍ଣପ୍ରତିଜ୍ଞ ଅର୍ଜୁନଙ୍କର ଦ୍ୱାଦଶ ବର୍ଷ ବନବାସ ପରେ ଆଦିପର୍ବର ସର୍ବଶେଷରେ ଘଟିଥିବାର ମୂଳରେ ଉକ୍ତ ଅଛି । ମାତ୍ର ସାରଳାଦାସ ମହାଶୟ ବାସବି ବନବାସର ଅତ୍ୟଳ୍ପ କାଳରେ ସମ୍ଭବି ଥିବାର କହି ତଦନନ୍ତର ଅନେକ ଅମୌଳିକ କଥା ଆଉ ସୁଭଦ୍ରା ବିବାହାଦି ଲେଖିଅଛନ୍ତି । ତଥାଚ ଚରିତମାନଙ୍କର ସାମ୍ୟ ମଧ୍ୟ ରକ୍ଷା କରିପାରି ନାହାନ୍ତି । ବ୍ୟାସଦେବ କହିଅଛନ୍ତି କି, ବିଶ୍ରୁତପୌରୁଷ ଅର୍ଜ୍ଜୁନ ଖାଣ୍ଡବଦାହାର୍ଥ କୃତୋଦ୍ୟମ ହେବା ସମୟରେ ତଦୀୟ ପ୍ରାର୍ଥନାନୁସାରେ ଅଗ୍ନିଦେବ ବରୁଣଙ୍କ ଠାରୁ ମାତ୍ର ଗାଣ୍ଡୀବ ଧନୁ, କପିଧ୍ୱଜ ରଥ ଓ ଚକ୍ର ପ୍ରଭୃତି କେତେକ ଅସ୍ତ୍ର ଆଣି ଦେଇଥିଲେ । ଦାସ କବି ଏହି ଅସ୍ତ୍ରାହରଣ ବିଷୟକୁ ବିସ୍ତର କରି ଲେଖିବାକୁ ଯାଇ ବିବିଧ କଳ୍ପିତ ନାମଜାଲରେ ସମସ୍ତ ଦେବତାପ୍ରଦତ୍ତ ଅସ୍ତ୍ରଶସ୍ତ୍ରସନ୍ଦୋହର ଉଲ୍ଲେଖ କରି ଅଛନ୍ତି । ନନ୍ଦନସହୋଦର ସମଗ୍ର ଖାଣ୍ଡବର ଦଗ୍ଧୀକରଣ ବ୍ୟାପାର କୃଷ୍ଣ ଓ ଅର୍ଜ୍ଜୁନ [୧] ପଞ୍ଚଦଶ ଦିନରେ ନିଷନ୍ନ କରିଥିଲେ । ସେହି ଜ୍ୱାଳାଜାଳକରାଳ ସର୍ବତୋମୁଖ ଅନଳୋତ୍ପାତରୁ ତଦ୍‌ବନସ୍ଥ ଛଅ ପ୍ରାଣୀ ମାତ୍ର ଉଦ୍ଧାର ପାଇଥିଲେ । କିନ୍ତୁ ସାରଳାଦାସ ପ୍ରୋକ୍ତ କାର୍ଯ୍ୟକୁ [୨] ଦିନତ୍ରୟସାଧ କରି ତତ୍ରତ୍ୟ ସମଧିକ ପ୍ରାଣିଗଣର ଉଦ୍ଧାର କଳ୍ପନା କରିଅଛନ୍ତି; ତଥାଚ ଚରିତକୁ ଇତସ୍ତତଃ ବିକ୍ଷେପପୂର୍ବକ ବିସ୍ତର କରିଅଛନ୍ତି ।

---

[୧] ତଦ୍‌ବନଂ ପାବକୋ ଧୀମାନ୍ ଦିନାଦି ଦଶପଞ୍ଚ ଚ ।
ଦଦାହ କୃଷ୍ଣପାର୍ଥାଭ୍ୟାଂ ରକ୍ଷିତଃ ପାକଶାସନାତ୍ ॥
ତସ୍ମିନ୍ ବନେ ଦହ୍ୟମାନେ ଷଡ଼ଗ୍ନିର୍ନ ଦଦାହ ଚ ।
ଅଶ୍ୱସେନଂ ମୟଂ ଚୈବ ଚତୁରଃ ଶାର୍ଙ୍ଗକାଂସ୍ତଥା ॥
ଆ: ପ: ୨୩୦ ଅ:

[୨] ସହସ୍ରେ ନବ ଯୋଜନ ସେ ଖାଣ୍ଡବ ବନ ।
ତିନି ଦିନ ତିନି ରାତ୍ରେ ହୋଇଲା ଦହନ ॥
ଖାଣ୍ଡବ ବନ ଯେବେଟି ଦହନ ହୋଇଲା ।
ସେଠାରୁ ଶୋଷେକ କାଳସର୍ପ ପଳାଇଲା ॥
ତାରାକ୍ଷୀ ପକ୍ଷୀ ବୋଲି ଯେ ଚଢ଼ାଇ ଗୋଟିଏ ।
ଗର୍ଭାବାସେ ଅର୍ଜ୍ଜୁନ ଶରଣ ସମ୍ଭାଏ ॥
ତାରାକ୍ଷୀ ପକ୍ଷୀ ଯେ ଚାରିଗୋଟି ପୁତ୍ର ଘେନି ।
ସେହି ରକ୍ଷା ହେଲା ତାକୁ ନ ଦହିଲା ଅଗ୍ନି ॥ ମ: ପ: ୩୯ ପୃ:
ଅଗ୍ନିରେ ଶରଣ ଗଲା ଯେ ଚକ୍ର ଚଢ଼ାଇ ।
ସେ ପ୍ରାଣ ପାଇଲା ଅଗ୍ନିଙ୍କର ପାଶେ ଥାଇ ॥
ତାମ୍ରଚୂଡ଼ ବୋଲିଣ ଯେ ଚଢ଼ାଇ ଗୋଟିଏ ।
ଶ୍ରୀରାମ ମୁକୁଟ ଦେଖି ଛାଡ଼େ ଧନଞ୍ଜୟେ ॥

ପରେ କହନ୍ତି କି ଇନ୍ଦ୍ର ସମୟରେ ଅତୁଳୋପମା ତିଳୋତ୍ତମାଙ୍କୁ କାର୍ଯ୍ୟାନ୍ତରରେ ବୃଦ୍ଧଶ୍ରବାନାମକ ଗନ୍ଧର୍ବଙ୍କଠାକୁ ପ୍ରେରଣ କରିଥିଲେ, ଗନ୍ଧର୍ବ ତିଳୋତ୍ତମାଙ୍କ ପ୍ରତି କାମାସକ୍ତ ହୋଇ ଜିହୀର୍ଷୁ ହେବାରୁ ବାସବପ୍ରାର୍ଥନୀୟା ମହନୀୟା ତିଳୋତ୍ତମା ଅସ୍ୱୀକାରପୂର୍ବକ ପଳାୟନୋନ୍ମୁଖୀ ହେଲେ । ତେତେବେଳେ ଗନ୍ଧର୍ବ ଶାପ ଦେଲେ କି ''ତୁମ୍ଭେ ତାରାକ୍ଷୀ ପକ୍ଷୀ ହୁଅ ।'' ତଦ୍‌ଶ୍ରବଣରେ ଇନ୍ଦ୍ର କ୍ରୁଦ୍ଧ ହୋଇ ବୃଦ୍ଧଶ୍ରବା ଗନ୍ଧର୍ବଙ୍କୁ ନୀଳକଣ୍ଠ ପକ୍ଷୀ ହେବାକୁ ଶାପ ଦେଲେ; ଇତ୍ୟାଦି । * ଅନନ୍ତର ଶତମନ୍ୟୁ ଅମିତମନ୍ୟୁକ୍ରାନ୍ତ ହୃଦୟରେ ସ୍ୱନନ୍ଦନାଦରଣୀୟ ନନ୍ଦନୋପମ ଖାଣ୍ଡବ ବନର ଦୁର୍ଗତିକାରଣ ବୃହସ୍ପତିଙ୍କୁ ଜିଜ୍ଞାସା କଲାରୁ ସେ ସମଗ୍ର ଜ୍ୟୋତିଃଶାସ୍ତ୍ର ଅନ୍ୱେଷଣ କରି ସୁଦ୍ଧା କାରଣ ବୁଝିପାରିଲେ ନାହିଁ । ଅତଃପର ଇନ୍ଦ୍ରସଦନାଗତ ଅର୍ଜୁନଙ୍କୁ ସଂଗେ ନେଇ ବ୍ରହ୍ମେନ୍ଦ୍ରାଦି ଦେବବୃନ୍ଦ ପ୍ରୋକ୍ତ କାରଣ ଜିଜ୍ଞାସାରେ ଭବାନୀଙ୍କଠାକୁ ଗଲେ, ପାର୍ବତୀ ସୁଦ୍ଧା ତଦୁତ୍ତରଦାନରେ ଅସମର୍ଥା ହେଲାରୁ ସମବେତ ତ୍ରିଦଶଗଣ ମହାଦେବଙ୍କଠାକୁ ପ୍ରସ୍ଥାନ କଲେ । ଦେବଦେବ ମହାଦେବ ଅର୍ଜୁନଙ୍କୁ ଦେଖି ଇତଃପୂର୍ବେ ସଂଭୂତ ସ୍ୱକୀୟ ଗଣ୍ଡକ (ଗଣ୍ଡା) ନିଧନସଂକ୍ରାନ୍ତ ଯୁଦ୍ଧ କଥାମାନ କହିଲା ପରେ ଖାଣ୍ଡବଦାହର କାରଣ ପ୍ରକାଶ କଲେ ଯେ, ପୂର୍ବେ ଚନ୍ଦ୍ର ଉତ୍ତରଭାଦ୍ର ସଂଯୋଗାନନ୍ତର ରେବତୀଙ୍କ ଗୃହକୁ ଯିବା ସମୟରେ ଖାଣ୍ଡବ ନିର୍ମାଣର ମୁହୂର୍ତ୍ତ ନିର୍ଦ୍ଧାରିତ ହୋଇଥିବାରୁ ବର୍ତ୍ତମାନ ସେ ଦଗ୍ଧ ହେଲା । ଅମୋଘଦର୍ଶନ ଆଶୁତୋଷ ମହେଶ ଏହା କହିଲା ପରେ ମନ୍ତ୍ରିତ ଜଳସେଚନରେ ଖାଣ୍ଡବକୁ ପୁନର୍ବାର ନବୀକୃତ କରାଇଲେ । ପାଠକେ !

---

ବିଷ୍ଣୁ ବୃକ୍ଷ ବୋଲି ଯେ ଓଶସ୍ତ ରକ୍ଷାଗଲା ।
ଅଗ୍ନି ଦେବତା ତାହାକୁ ଭାବେଣ ଛାଡ଼ିଲା ।।
ପାଳଧୁଆ ଗଛକୁ ରଖିଲେ ବୈଶ୍ୱାନରେ ।
ନୀଳକଣ୍ଠ ରକ୍ଷାଗଲା ରୁଦ୍ରଙ୍କ ଚିହ୍ନରେ ।।
ପୁଷ୍ପଙ୍କ ମଧ୍ୟେ ଯେ ବକୁଳ ରକ୍ଷା ଗଲା ।
ଭୋଜି କୁସୁମ ତାହାକୁ ଆଦିତ୍ୟ ରଖିଲା ।।
ବିଷ୍ଣୁ ପ୍ରସାଦ ଓଶସ୍ତ ଯେ ପରମେଶ୍ୱର ।
ବକୁଳ ଭୋଜି ରଖିଲେ ପୁଷ୍ପମାନୁସାର ।।
ଖୋଷେକ ସର୍ପ ତାରାକ୍ଷୀ ପକ୍ଷୀ ତାମ୍ରଚୂଡ଼ ।
ଚକ୍ର ଚଢ଼ାଇ ରହିଲା ସେ ଯେ ଅଗ୍ନି ଆଡ଼ ।।
ସାରଙ୍ଗ ପକ୍ଷୀ ଶରଣ ଗଲା ଅଗ୍ନିଙ୍କର ।
ଏତେ ରହିଲେ ଖାଣ୍ଡବ ବନ ଦହନର ।। ମ: ପ: ୪୩ ପୃ:

* ବୃଦ୍ଧଶ୍ରବା ହୋଇବ ଯେ ନୀଳକଣ୍ଠ ପକ୍ଷୀ ।
ତୋର ନାମ ହୋଇବ ପକ୍ଷୀ ଯେ ତାରାକ୍ଷୀ । ମ: ପ: ୪୫ ପୃ:
ଏ ସ୍ଥଳରେ ବୃଦ୍ଧଶ୍ରବା ଶବ୍ଦର ଅର୍ଥ ଗନ୍ଧର୍ବ ବିଶେଷ ।

ଏ ସବୁ ଏବଂ ତତ୍‍ସଂଲଗ୍ନ ଶୋଷକ କାଳସର୍ପର କେତେକ କଥା ବୋଧହୁଏ କଳ୍ପନାପ୍ରବୀଣ ସାରଳାଦାସଙ୍କ କାଳ୍ପନିକ ଶକ୍ତିପ୍ରସୂତ କୃତ୍ରିମ ଘଟନା ମାତ୍ର ।

(୧୫) † ଏହା ପରେ ମାତ୍ସର୍ଯ୍ୟକର୍ବୁରିତହୃଦୟ ଶତଧନ୍ୱ ଭାସ୍କରପ୍ରଦତ୍ତ ମଣିଭାସ୍ୱର ଶକ୍ରାଜିତଙ୍କୁ ନିହତ କରି ଶ୍ରୀକୃଷ୍ଣଙ୍କ ଭୟରେ କ୍ରମଶଃ ଅକ୍ରୂରକର୍ମା ଅକ୍ରୂର, ଉଦ୍ଧବ, ଯୁଧିଷ୍ଠିର ଏବଂ କୃତକେଶରୀ ରାଜା ଆଉ ବିଷ୍ଣୁକେଶରୀ ନଗରର ନୃପତି ବିଷ୍ଣୁକର ଦାସଙ୍କଠାରେ ଶରଣ ପ୍ରାର୍ଥନାପୂର୍ବକ ବିଫଳକାମ ହେଲା ପରେ ସେହି ଉପ୍ରଥମନୋରଥ ଅନାଥପ୍ରାୟ ହୋଇ ଅର୍ଜୁନଙ୍କୁ ଶରଣ କରି ପ୍ରାଣଭିକ୍ଷା କରିବା, ସୂଚୀଭେଦ୍ୟ ପ୍ରଗାଢ଼ ମେଦୁରତିମିରକରାଳ ରାତ୍ରିକାଳରେ ଅନବମସତ୍ୱ କିରାତବେଶଧାରୀ ଅର୍ଜୁନ ତଦ୍‍ବନରେ କୃତସଂକଳ୍ପ ହେବା, ଅର୍ଜୁନ ଓ ଶ୍ରୀକୃଷ୍ଣ ଉଭୟେ ଅପ୍ରତିପନ୍ନ ପରିଚୟତ୍ୱରୁ ଘୋରତର ସଂପ୍ରହାରରେ ମାତିବା ଇତ୍ୟାଦି ଅନେକଗୁଡ଼ାଏ କଥା ସାରଳାଦାସ କବି ଲେଖି ଥିବାର ଦେଖାଯାଏ । କିନ୍ତୁ ତତ୍ରତ୍ୟ କେତେକ କଥା ଯାହା ଯାହା କି ଛାପା ପୁସ୍ତକରେ ଦେଖାଯାଏ, ତାହା ତାଳପତ୍ର ପୁସ୍ତକରେ ଦେଖିବାକୁ ପାଇଲୁଁ ନାହିଁ । ଯାହାହେଉ ବୈରଭରପୀଡ଼ିତ ଆଧିସୋଧାଧିରୂଢ଼ ଶତଧନ୍ୱଙ୍କ ବିଷୟ ଯେ କୌଣସି ପ୍ରକାରେ ଉଭୟତ୍ର ଲେଖାଅଛି । [୧] ଏଥିର ମୌଳିକ ଚରିତାଂଶକୁ ଦାସ କବି ମହୋଦୟ ବ୍ୟାସୋକ୍ତ ଶ୍ରୀମଦ୍‍ଭାଗବତ ଗ୍ରନ୍ଥରୁ ନେଇ ନିଜ କଳ୍ପନା ଜଳ୍ପନା ସହକାରେ ଅତି ବିସ୍ତର କରି ଅଛନ୍ତି । [୨] ଏହା ଭାରତ ଅଷ୍ଟାଦଶ ପର୍ବଗତ ଚରିତ ନ ହେଲେ ସୁଦ୍ଧା କବି ପୂର୍ବାପର ଚରିତମାନଙ୍କର ସମସାମୟିକତ୍ୱ ବିଚାରରେ ଅନ୍ୟ ଗ୍ରନ୍ଥକୁ ଅନୁକରଣ କରି ଅନ୍ୟାନ୍ୟ ବିଷୟ ମିଳାଇ ପାରନ୍ତି; ଏହା ତଦନୁରୂପ ହୋଇପାରେ । କିନ୍ତୁ ଏ ବିଷୟକୁ ଇତଃପୂର୍ବେ ଜତୁଗୃହ ଘଟନା ପରେ ମଧ ଦେବା ଅସଙ୍ଗତ । ପୁନଶ୍ଚ ଏ ସ୍ଥଳରେ ବ୍ୟକ୍ତ କରିଦେବା ଉଚିତ ଯେ, ସାରଳାଦାସ କବି ଯେପରି ଅନ୍ୟାନ୍ୟ ସ୍ଥଳମାନଙ୍କରେ କାହିଁକି, ପ୍ରାୟ ସର୍ବତ୍ର ବୋଇଲେ ଚଳେ, ମୂଳଗତ ନାମ ତ୍ୟାଗ କରି ସ୍ୱକୀୟ କପୋଳକଳ୍ପିତ ନାମମାନଙ୍କୁ ଦେଇ ଚରିତମାନଙ୍କର ଉଲ୍ଲେଖ କରିଅଛନ୍ତି, ଅନାଦିନିର୍ଦ୍ଦିଷ୍ଟ ଅପରିବର୍ତ୍ତନୀୟ ସମୁଦ୍ର ପ୍ରଭୃତିର ନାମମାନ ସୁଦ୍ଧା ସେହିପରି ସ୍ଥାନେ ସ୍ଥାନେ କଳ୍ପନାରେ ପକାଇ ବିସ୍ମୟକର

---

† ଏହି ବିଷୟଟିକି ପ୍ରଥମତଃ ଅନତିପ୍ରସର ଭାବରେ ଜତୁଗୃହ ଘଟନାର ଅବ୍ୟବହିତ ପରେ ମଧ କହି ଅଛନ୍ତି । ତାହାହିଁ ଏସ୍ଥଳରେ ଅପେକ୍ଷାକୃତ ଟିକିଏ ବିସ୍ତୃତରୂପେ ଆମ୍ରେଡ଼ିତ କରିଅଛନ୍ତି ।

[୧] ଛାପା ପୁସ୍ତକ ମଧପର୍ବ ୮୦ ପୃଷ୍ଠାରୁ ଆରମ୍ଭ କରି ୯୦ ପୃଷ୍ଠାଯାଏ ଦେଖନ୍ତୁ ।

[୨] ଶ୍ରୀମଦ୍‍ଭାଗବତ, ଦଶମସ୍କନ୍ଧ, ୬୧ ଅଧ୍ୟାୟରେ ଶତଧନ୍ୱ ଶକ୍ରାଜିତଙ୍କୁ ନାଶ କରି ମଣି ନେବାର ଉକ୍ତ ଅଛି ।

ବିଲକ୍ଷଣ କରିଦେଇ ଅଛନ୍ତି । (୧) ଅନନ୍ତର ଶାକ୍ରାଜିତିକ ମଣିହରଣ ଚରିତ ପରେ ଛାପା ପୁସ୍ତକରେ ୧୦୧ ପୃଷ୍ଠାରୁ ପ୍ରାରମ୍ଭ କରି ୧୧୨ ପୃଷ୍ଠା ଯାଏ ମହାଭାରତରେ ଅନୁକ୍ତ ଅନଙ୍ଗବଳ କଜ୍ଜାସୁରାଭିଧ ଦୈତ୍ୟ ଶ୍ରୀକୃଷ୍ଣ ଓ ମହାଦେବଙ୍କୁ ସମରାୟରେ ପରାସ୍ତ ଆଉ ବ୍ରାହ୍ମଣଙ୍କୁ ପ୍ରାଣାୟାମ ପରି ତଦଧୀନ ଆଶୀବିଷକଳ୍ପ ଆଶୁଗଜାଳାହତରେ ନିରୁଚ୍ଛ୍ୱାସ କରି ପକାଇବା, ତଦ୍ୱାରା ପ୍ରଥମତଃ ପରାଜିତ କର୍ଣ୍ଣଙ୍କୁ କୃଷ୍ଣ ଓ ମହାଦେବ "ଜିତେନ୍ଦ୍ରିୟ ଆଧିରେ କ୍ଷୁଭିତ ନ ହେଲା ପ୍ରାୟ ମହାବୀର ରଣରେ ନିରୁତ୍ସାହ ହୁଅନ୍ତି ନାହିଁ" ଏହି ନୀତି ଅନୁସରଣପୂର୍ବକ ନିରପାୟ ଉପାୟ କଳ୍ପନାରେ ନିଜ ଶରୀରରୁ ବିଚ୍ଛେଦିତ ଅମୋଘୀକୃତ ଅଙ୍ଗୁଷ୍ଠୀକୁ ଶରୀଭୂତ ରୂପରେ ପ୍ରଦାନ କରିବାରୁ ସେ (କର୍ଣ୍ଣ) ତତ୍ସହାୟ ହୋଇ କଜ୍ଜାସୁରକୁ ନିହତ କରି ପାରିବା ଇତ୍ୟାଦି କଥା ବିସ୍ତୃତ ଭାବରେ ଉକ୍ତ ଅଛି । ତଥାଚ ପ୍ରୋକ୍ତ କଜ୍ଜାସୁରର ପୁତ୍ର କୁମ୍ଭକ ଦୈତ୍ୟର କଥା ତଦନୁରୂପେ ୧୧୨ ପୃଷ୍ଠା ପ୍ରାରମ୍ଭରୁ ୧୨୨ ପୃଷ୍ଠା ଯାଏ ଛାପା ପୁସ୍ତକରେ ଲେଖା ଅଛି । କିନ୍ତୁ ମତ୍ପଠିତ ତାଳପତ୍ର ପୁସ୍ତକଦ୍ୱୟରେ ଦେଖାନାହିଁ, ମାତ୍ର ଅନ୍ୟାନ୍ୟ ପୁସ୍ତକମାନଙ୍କରେ ଥାଇପାରେ । ତଥାପି ଏହା ସବୁ ଶ୍ରୀମାନ୍ ସାରଳାଦାସ କବି ଲେଖିଅଛନ୍ତି, ଅଥଚ ଅପରାପର ସମଧିକ ତାଳପତ୍ର ପୁସ୍ତକମାନଙ୍କରେ ମଧ୍ୟ ଥାଇପାରେ; ଏଥିରେ ସଂପୂର୍ଣ୍ଣ ବିଶ୍ୱାସ ଜନ୍ମୁ ନାହିଁ, କାରଣ ଏହି ଯେ

"ଷୋଡ଼ଶ ଯୋଜନ ଲମ୍ବିତ ଅଟଇ ଏ ଗିରି ।
ଦ୍ୱାଦଶ ଯୋଜନ ପୋତା ଉତ୍ସର୍ଗ ଯେ ଚାରି ।।
ବାସୁଦେବ ବୋଇଲେ ଶୁଣିମା ହଳହସ୍ତେ ।
ଏ ପର୍ବତେ ସତ୍ୟଯୁଗେ ଯାଗ କଲା ଋଇବ୍ରତେ ।।"

ଇତ୍ୟାଦି ରୂପେ ଏହାର ପରବର୍ତ୍ତୀ ଶ୍ରୀକୃଷ୍ଣଙ୍କ ଅନୁଷ୍ଠିତ ଯାଗବିଷୟକ ପାଠ ତାଳପତ୍ର ପୁସ୍ତକରେ ସୁଶୃଙ୍ଖଳତଃ ସମାନ ଚାଲିଯାଇଅଛି; ମାତ୍ର ଛାପା ପୁସ୍ତକରେ ଉପରିଦତ୍ତ

(୧) ଜମ୍ବୁ ସମ୍ଭାଷଣ ବୋଲି ଏକ ସମ୍ବତ୍ସରେ ।
ଦୁର୍ଯ୍ୟୋଧନ ରାଜା ପଞ୍ଚତିରିଶି ଅଙ୍କରେ ।।
ଦୁର୍ଯ୍ୟୋଧନ ରାଜାର ପଞ୍ଚତିରିଶି ଅଙ୍କ ଶ୍ରାହି ।
ଜାମ୍ବୁସୁତ ନାମ ସେ ସମ୍ବତ୍ସର ହୋଇ ।।

ତାଳପତ୍ର ପୁସ୍ତକରେ ଏପରି ଅଛି ।

କକଡ଼ା ମାସର କୃଷ୍ଣ ଦ୍ୱିତୀୟାରେ ଭେଟି ।
ପୂର୍ବଭାଦ୍ର ନକ୍ଷତ୍ର ସେ ବବ କରଣଟି ।।
ସେ ଦିନ ଦ୍ୱାରକା ସଭାଏ ବିଜେ ଜଗନ୍ନାଥେ – ଇତ୍ୟାଦି, ମଧ୍ୟପର୍ବ ୯୧ ପୃ:

ବର୍ଷ, ବ୍ରହ୍ମା, ଇନ୍ଦ୍ର, ଚନ୍ଦ୍ର ପ୍ରଭୃତିଙ୍କର ଏପରି ବିଲକ୍ଷଣ କଳ୍ପିତ ନାମମାନ ଅନେକ ସ୍ଥଳରେ ଦେଇ ଅଛନ୍ତି ।

ପ୍ରଥମ ପଦ୍ୟଟି (ମଧ୍ୟପର୍ବ) ୧୦୧ ପୃଷ୍ଠାରେ ଲେଖା ଅଛି, ପରନ୍ତୁ ଦ୍ୱିତୀୟ ପଦ୍ୟଟି (କିମ୍ବା ତାହାର ତୁଲ୍ୟାର୍ଥ ପଦ୍ୟଟି) ୧୨୩ ପଷାରେ ଲେଖା ଅଛି । ଶଂସିତ ପଦ୍ୟଦ୍ୱୟ ମଧ୍ୟରେ କଚ୍ଛାସୁର ଆଉ ତତ୍‌ପୁତ୍ର କୁମ୍ଭ ଦୈତ୍ୟର ବୃତ୍ତାନ୍ତ ଅନ୍ତରାଳଭୂତ ଅବାନ୍ତର ଚରିତ ପ୍ରାୟ ପ୍ରକ୍ଷିପ୍ତ ହୋଇଅଛି । ଏଥିରୁ ଏହାକି ଅନୁମିତ ହୁଏ ନାହିଁ ଯେ, ଅନ୍ୟ କେହି ଲେଖକଂମନ୍ୟ ସାରଳାଦାସଙ୍କ ଲେଖାରେ ଏହା ମିଶାଇ ଦେଇଅଛନ୍ତି ?

କଚ୍ଛାସୁର କଥା ପୁରାଣାନ୍ତରୀଣ ଶୈବମାହାତ୍ମ୍ୟ ପ୍ରଖ୍ୟାପନ ସ୍ଥଳରେ ଯେ କୌଣସି ପ୍ରକାରେ ଉକ୍ତ ଥିବାର ଶୁଣାଅଛି, ମାତ୍ର କୁମ୍ଭ ବା କୁମ୍ଭକ ଦୈତ୍ୟର କଥା ପୁରାଣାନ୍ତରରେ କେଉଁଠି ଅଛି କି ନାହିଁ ତାହାର ପ୍ରମାଣ କିଛି ଦେଇ ନ ପାରୁଁ । ପରନ୍ତୁ ଖିଳହରିବଂଶୀୟ ବିଷ୍ଣୁପର୍ବର ତ୍ର୍ୟଶୀତିତମାଧ୍ୟାୟରୁ ପ୍ରାରମ୍ଭ କରି ପଞ୍ଚାଶୀତିତମାଧ୍ୟାୟ ପର୍ଯ୍ୟନ୍ତ ବ୍ୟାପୀ ଚରିତରେ ଉକ୍ତ ଅଛି କି, ଷଟ୍‌ପୁରନାମକ (୧) ଗୁହାବସତିର ନିବାସୀ ନିକୁମ୍ଭ ନାମକ ଦୈତ୍ୟକୁ ନିହତ କରିଥିଲେ । ମାତ୍ର ଏହି ନିକୁମ୍ଭଦୈତ୍ୟବଧୋପାଖ୍ୟାନକ୍ରମରୁ କୁମ୍ଭକଦୈତ୍ୟ ଚରିତପ୍ରଣାଳୀ ଭିନ୍ନ ପ୍ରକାର ହୋଇଅଛି । ତେବେ କିପରି ସ୍ପଷ୍ଟତଃ କୁହାଯାଇ ପାରିବ ଯେ, ହରିବଂଶୋକ୍ତ ଏହି ଚରିତକୁ ଅନୁସରି ସାରଳାଦାସ କିମ୍ବା ତତ୍‌ପରବର୍ତ୍ତୀ ସାବହିଥିଅ ଭାରତର ଲେଖକଂମନ୍ୟ କେହି କୁମ୍ଭକ ଦୈତ୍ୟର ଚରିତ ଚିତ୍ରି ଅଛନ୍ତି । ଅପିଚ ଆଉ ଗୋଟିଏ ତାଦୃଶ ନୈକୁମ୍ଭିକ ଚରିତ ପ୍ରୋକ୍ତ ବିଷ୍ଣୁ ପର୍ବରେ ଉଦିତ ଅଛି । ତଦୀୟାନୁକରଣରେ କଳ୍ପିତ କୌମ୍ଭକୀୟ ବୃତ୍ତାନ୍ତ ଗଠିତ ହୋଇଥାଇପାରେ କି ନାହିଁ, ପୌରାଣିକମାନେ ମୀମାଂସା କରିପାରିବେ । ଚରିତଟିର ସଂକ୍ଷୁପ୍ତ ସାରାଂଶ ଏହି ଯେ, ସମୟରେ ପଶ୍ଚାଦ୍ ସମାସାଦିତବାହିନୀକ ଶ୍ରୀକୃଷ୍ଣ ସମଗ୍ର ଯାଦବୀୟ ସୁହୃଦ୍ ଅନୁଚରପରିକରଙ୍କ ସହ ସମୁଦ୍ରକ୍ରୀଡ଼ାରେ ରତ ଥିଲେ । ଇତ୍ୟବସରରେ ଯାଦବ ବିଶେଷ ଭାନୁଙ୍କ ପୁତ୍ରୀ ଭାନୁମତୀଙ୍କି ନିକୁମ୍ଭନାମକ ଦୈତ୍ୟ ହଠାତ୍ ଅପହରଣ କଲା । ତଦବଗମନରେ ରୋଷାମର୍ଷପରୀତ ଶ୍ରୀକୃଷ୍ଣ କ୍ରୂରକର୍ମା ନିକୁମ୍ଭକୁ ବିନାଶ କରି ଅପହୃତା ଭାନୁମତୀଙ୍କି ମାଦ୍ରେୟ ସହଦେବଙ୍କ ସହ ବିବାହିତ କରାଇଲେ । ସେ ସବୁ ଯାହାହେଉ, ପ୍ରୋକ୍ତ ଦୈତ୍ୟଦ୍ୱୟଙ୍କ ବୃତ୍ତାନ୍ତ ବୈୟାସିକ ସନ୍ଦର୍ଭ ପରିପାଟୀରେ ଏଠାରେ ଅନୁକ୍ତ ବୋଲି ମଣ୍ଡୁକମଞ୍ଜୁଷିକାକୁଲ୍ୟା ମୁକ୍ତାଶକ୍ତି-ବିଶୁଦ୍ଧ-ସିଦ୍ଧତଟିନୀ ସହ ତୁଲ୍ୟାଦରପାତ୍ର ନ ହେଲା ପରି ଅନ୍ୟାନ୍ୟ ଭାରତୀୟ ଶୌର୍ଯ୍ୟପ୍ରଖ୍ୟାପକ ଚରିତ ସହ ସମସମାଦୃତ ହୋଇ ନ ପାରେ ।

ଅତଃପର ସାଗ୍ରଜ ଶ୍ରୀକୃଷ୍ଣ ରୈବତାଭିଧ ଭୂଧରୋପତ୍ୟକାରେ ଅନଲ୍ପ-ଦିବସାବସାନ-ଯାଗାନୁଷ୍ଠାନ କଲା ସମୟରେ ଗୋସିଂହ (୨) ନାମକ ଦୈତ୍ୟ

---

(୧) ଗୁହାଂ ଷଟ୍‌ପୁରସଂଜ୍ଞିତାଂ — ହରିବଂଶ ବିଷ୍ଣୁପର୍ବ ୮୪ ଅ. ୨୬ ଶ୍ଳୋକ ।
(୨) ଗୋଶୃଙ୍ଗକୁ ଗୋସିଂହ କରି ଅଛନ୍ତି । ଗୋଶୃଙ୍ଗଶବ୍ଦ ତାଭବିକକ୍ରମରେ ଗୋଶିଙ୍ଗ ହେବାର ଥିଲା ।

ଆକ୍ରମଣପୂର୍ବକ ସାନୁଜ ବଳରାମଙ୍କୁ ହତାହତ କରି ସତ୍ୟଭାମାଙ୍କୁ ଧରି ପଳାୟନ କରୁଥିଲା । ଇତ୍ୟବସରରେ ଦୈବାଦବଗତବୃତ୍ତାନ୍ତ ଦିଗନ୍ତବିଶ୍ରାନ୍ତମହତ୍ତ୍ୱ ବନବାସପ୍ରବୃତ୍ତ କୌନ୍ତେୟ ଅର୍ଜୁନ ମଣିଭଦ୍ରା ପର୍ବତରୁ ହଠାତ୍ ଉପଗତ ହୋଇ ଗୋସିଂହଙ୍କୁ ବିନିହିତ କଲେ, ଇତ୍ୟାଦି ବିଷୟକ କଥାମାନ ବିସ୍ତୃତ ଭାବରେ ବର୍ଣ୍ଣିତ ଅଛି । ଏହା ମୂଳ ଭାରତରେ ଅପ୍ରତିପାଦିତ ସତ୍ୟ, କିନ୍ତୁ ବହୁପୁରାଣକଥାଭିଜ୍ଞ ଅନନ୍ତପ୍ରଜ୍ଞ ସାରଳାଦାସ ଶ୍ରୀମଦ୍‌ଭାଗବତରୁ ଏହା ଗ୍ରହଣ କରିଅଛନ୍ତି ।

(୧୬) ମୂଳ ଗ୍ରନ୍ଥରେ ସୁଭଦ୍ରାହରଣ ସମ୍ବନ୍ଧରେ ଉକ୍ତ ଅଛି ଯେ, ଅର୍ଜୁନ ତତ୍ସ୍ୱୀକୃତ ବନବାସର ଚରମ ଭାଗରେ ଶ୍ରୀକୃଷ୍ଣଙ୍କ ଆମନ୍ତ୍ରଣରେ ରୈବତ ପର୍ବତରେ ସମାଗତ ଥିଲେ । ଦିନେ ସୁଭଦ୍ରାଙ୍ଗୀ ସୁଭଦ୍ରାଙ୍କ ପ୍ରତି ଅର୍ଜୁନଙ୍କୁ ପ୍ରେମାସକ୍ତ ଜାଣି କୃଷ୍ଣ କହିଲେ କି, "ହେ ପ୍ରିୟସଖା ଅର୍ଜୁନ, ତୁମ୍ଭେ ତ ସଂପୂର୍ଣ୍ଣ ଯୋଗ୍ୟପାତ୍ର, ଯଦି ତୁମ୍ଭର ଇଚ୍ଛାହୁଏ, ଆଉ ସ୍ୱୟମ୍ବର କାହିଁକି ? ଅସ୍ମଦୀୟ ଭଗିନୀକି ବଳପୂର୍ବକ ନେଇ ବିବାହ କରିପାର ।" (୧) ତେତେବେଳେ ଅର୍ଜୁନ କୃଷ୍ଣଙ୍କ ସମାଦେଶମତେ ତତ୍ସମ୍ବନ୍ଧରେ ଦୂତଦ୍ୱାରା ପିତୃକଳ୍ପ ଯୁଧିଷ୍ଠିରଙ୍କ ଅନୁମତି ନେଇ ବଳାଦାନୀତ ସୁଭଦ୍ରାଙ୍କ ସହ ରଥରେ ପ୍ରସ୍ଥାନ କଲେ । (୨) ପରେ ବଳରାମପୁରଃସର ବୃଷ୍ୟନ୍ଧକ ପ୍ରଭୃତି ବଂଶୀୟ ମହାବଳ ପରାକ୍ରାନ୍ତ ବୀରମାନେ ଯୁଦ୍ଧାର୍ଥ ଉଦ୍ୟତ ହେଲେ । କିନ୍ତୁ ପରିଶେଷରେ ଶ୍ରୀକୃଷ୍ଣଙ୍କ ନ୍ୟାୟାନୁମୋଦିତ ବାକ୍ୟରେ ଶାନ୍ତ ଓ ସ୍ୱୀକୃତ ହୋଇ ତଦୁଭୟଙ୍କର ବୈବାହିକ ଉତ୍ସବ ବଢ଼ାଇଲେ । ସଂପ୍ରୀତମନା ଅର୍ଜୁନ ସେଠାରେ (ଦ୍ୱାରକାରେ) ଏକବର୍ଷ ଅବସ୍ଥାନ କରି ବନବାସର ଅବଶିଷ୍ଟାବଶିଷ୍ଟ ସମୟକୁ ପୁଷ୍କର ତୀର୍ଥରେ ଅତିବାହିତ କଲାପରେ ଇନ୍ଦ୍ରପ୍ରସ୍ଥକୁ ପ୍ରସ୍ଥାନ କଲେ । (୩) ତତଃପର ଖାଣ୍ଡବ ଦହନରେ କୃତକୃତ୍ୟ ହେଲେ । କିନ୍ତୁ ଏ ସ୍ଥଳରେ ସାରଳାଦାସ କବି ପ୍ରଥମତଃ ସୁଭଦ୍ରାଙ୍କୁ କାମପାଶବପାଶିତହୃଦୟା ପ୍ରଚୁରାନୁରାଗୋଦୟା କରି କହିଅଛନ୍ତି କି ଶ୍ରୀକୃଷ୍ଣଙ୍କଦ୍ୱାରା ସମାଦିଷ୍ଟା ସତ୍ୟଭାମା ସୁଭଦ୍ରାଙ୍କୁ ସଙ୍ଗରେ ନେଇ ଅର୍ଜୁନଙ୍କ ନିଦ୍ରାସଦନରେ

---

(୧) ସତ୍ୱମର୍ଜୁନ କଲ୍ୟାଣୀଂ ପ୍ରସହ୍ୟ ଭଗିନୀଂ ମମ ।
ହରସ୍ୱୟମ୍ବରେ ହ୍ୟସ୍ୟାଃ କୋବୈ ବେଦ ଚିକୀର୍ଷିତଂ ।। ଆ. ପ. ୨୨୧ ଅ:

(୨) ତତଃ ସଃ ପୁରୁଷବ୍ୟାଘ୍ରସ୍ତାମାଦାୟ ଶୁଚିସ୍ମିତାଂ ।
ରଥେନ କାଞ୍ଚନାଙ୍ଗେନ ପ୍ରୟଯୌ ସ୍ୱପୁରଂ ପ୍ରତି ।। ଆ. ପ. ୨୨୨ ଅ:

(୩) ଉଷିତ୍ୱା ତତ୍ର କୌନ୍ତେୟଃ ସମ୍ବତ୍ସରପରାଃ କ୍ଷପାଃ,
ବିହୃତ୍ୟ ଚ ଯଥାକାମଂ ପୂଜିତୋ ବୃଷ୍ଣିନନ୍ଦନୈଃ ।
ପୁଷ୍କରେ ତୁ ତତଃ ଶେଷଂ କାଳଂ ବର୍ତ୍ତିତବାନ୍ ପ୍ରଭୁଃ
ପୂର୍ଣ୍ଣେ ତୁ ଦ୍ୱାଦଶେ ବର୍ଷେ ଖାଣ୍ଡବପ୍ରସ୍ଥମାଗତଃ । ଆ.ପ. ୨୨୩ ଅ:

ପ୍ରବିଷ୍ଟ ହେଲେ । ମାତ୍ର ଅର୍ଜୁନ ଅଭେଦ୍ୟକବାଟସଂରୁଦ୍ଧଭବନ ପ୍ରକୋଷ୍ଠରେ ନିଗୂଢ଼ ଥିବାରୁ ବିଫଳକାମା ହୋଇ ନିରାନନ୍ଦା ନନନ୍ଦାସହ ପ୍ରତ୍ୟାବୃତ୍ତ ହେଲେ । ଏହିପରି ଦୁଇ ଦିନ ଅତୀତ ହେଲା । ତତ୍‌ପରଦିନ ବଳରାମ ଦୁର୍ଯ୍ୟୋଧନଙ୍କୁ ସୁଭଦ୍ରାଙ୍କୁ ପ୍ରଦାନ କରିବେ, ଏହା ସ୍ଥିର ଜାଣି କୃଷ୍ଣ ସତ୍ୟଭାମାଙ୍କୁ କହିଲେ, ସ୍ନୁଷା ପଦ୍ମନଙ୍କ ଭାର୍ଯ୍ୟା ମାୟାବତୀ ବଶୀକରଣ ବିଦ୍ୟାରେ ପାରଦର୍ଶିତା ଲାଭ କରିଅଛନ୍ତି, ତଦୀୟ ମତିସାଚିବ୍ୟ ଗ୍ରହଣ କର । ପରେ ସତ୍ୟଭାମାଙ୍କ ବଚନକ୍ରମରେ ମାୟାବତୀ ସୁଭଦ୍ରାଙ୍କୁ କତିପୟ ଅମୋଘ ବଶୀକରଣ ମନ୍ତ୍ର ଶିଖାଇଲେ । ସୁଭଦ୍ରା ଯଥାଖ୍ୟାତ ପଥକୁ ଅନୁସରଣ କଲେ । ତନ୍ମନ୍ତ୍ରବଳରେ ଅର୍ଜୁନଙ୍କର ବଜ୍ରାର୍ଗଳକବାଟ-ରୁଦ୍ଧଦ୍ୱାର ଉନ୍ମୁକ୍ତ ହେଲା । ବିଶ୍ରୁତପୌରୁଷ ଅଟଳଧୈର୍ଯ୍ୟ ଅର୍ଜୁନ ମୃଷ୍ଟହାଟକବର୍ଣ୍ଣିନୀ ପ୍ରଥମାନୁରାଗିଣୀ ସ୍ମିତପୂର୍ବାଭିଭାଷିଣୀ କୃଷ୍ଣଭଗିନୀଙ୍କି ଦେଖି ବଶ୍ୟ ହେଲେ । (୧) ଏହିପରି ଗୁପ୍ତ ମିଳନରେ କେତେକ ଦିନ ଅତିବାହିତ ହେଲା । ଏକଦା ବଳରାମ ଏହା ଜାଣିପାରି ବହୁ ଯାଦବୀ ସେନାସହ ଅର୍ଜୁନଙ୍କ ସଙ୍ଗେ ଯୁଦ୍ଧ କଲେ, ମାତ୍ର ପରିଶେଷରେ ଅର୍ଜୁନ ଜୟ ଲାଭ କଲେ, (୨) ଇତ୍ୟାକାର ସୁଭଦ୍ରାହରଣ ଚରିତଟିକି ପୁରାଣାନ୍ତରଗତ କିମ୍ବା ଆଖ୍ୟାନାନ୍ତରଗତ ତତ୍ପ୍ରତ୍ୟଙ୍ଗୀଭୂତ ଉପକଥାର ସଂମିଳନପୂର୍ବକ ଅନ୍ୟୂନ ପଞ୍ଚାଶତ୍ ପୃଷ୍ଠାବ୍ୟାପୀ ପାଠ ଲେଖି ଯାଇଅଛନ୍ତି । (୩) ପରନ୍ତୁ ଏହି ପ୍ରକରଣର ପ୍ରାରମ୍ଭ ପୂର୍ବେ ହଠାତ୍ ସମୁପସ୍ଥାପିତ ବୈଷୟିକସଙ୍ଗତିସମ୍ପନ୍ନତାରହିତ ଗୋଟିଏ ଘଟନାର ଅବତାରଣା କରିଅଛନ୍ତି । ଘଟନାଟି ଏହି – ଦିନେ ଶ୍ରୀକୃଷ୍ଣ ଅର୍ଜୁନଙ୍କ ସହ ଭୋଜନରେ ବସି ଅଛନ୍ତି । ଲକ୍ଷ୍ମୀରୂପା ରୁକ୍ମିଣୀ ପରିବେଷଣ କରୁଅଛନ୍ତି । ସେତେବେଳେ ଶ୍ରୀକୃଷ୍ଣ ବିଶ୍ୱେଶ୍ୱରଙ୍କୁ ଚଳୁପ୍ରଦାନ କଲାରୁ ରୁକ୍ମିଣୀ କୁପିତା ଓ ରୋଷଯୁକ୍ତା ହୋଇ କହିଲେ, "ହେ ନାଥ ! ଆପଣ ତ ଜଗପ୍ରତି ଏବଂ ମୁଁ ଭବଦୀୟ ମହିଷୀ ଜଗତର ଅନ୍ନଦାତ୍ରୀ, ଆପଣଙ୍କୁ ବଳି ଆଉ କିଏ ମହାନ୍ ଅଛନ୍ତି ଯେ, ତାହାଙ୍କୁ ଚଳୁ ଦେଉଅଛନ୍ତି ? ଇତ୍ୟାଦି । ତତଃପର ଶ୍ରୀକୃଷ୍ଣ ରୁକ୍ମିଣୀଙ୍କର ଅଭିମାନ-ଅବଧୀରିତ ଏବଂ ପାର୍ବତୀଙ୍କର ଗୌରବ ପରିବର୍ଦ୍ଧିତ କରିବାପାଇଁ ରୁକ୍ମିଣୀଙ୍କସହ କୈଳାସକୁ ପ୍ରସ୍ଥାନ କଲେ । ଶ୍ରୀକୃଷ୍ଣ ମହାଦେବଙ୍କୁ ପ୍ରଣାମ କଲାରୁ ବିମନାୟମାନା ରୁକ୍ମିଣୀ ଅସହ୍ୟ ଅଭିମାନରେ ରହିଲେ । ସେଠାରେ ସମାଗତା ପାର୍ବତୀଙ୍କି ଅସୂୟାବଶରୁ ପଚାରିଲେ କି, ଏହିଠାରେ ତୁମ୍ଭେ ଜଣେ ଭିକ୍ଷାଶିଙ୍କି ଦେଖିଅଛ କି ? ପାର୍ବତୀ ଆତ୍ମଛଳନା

---

(୧) ଏ ସ୍ଥଳରେ ଶୃଙ୍ଗାର ବର୍ଣ୍ଣନ ଅତିମାତ୍ର କରି ଅଛନ୍ତି ।

(୨) ଏ ସ୍ଥଳରେ ଯୁଦ୍ଧ ବର୍ଣ୍ଣନାଟିକି ଉତ୍ତେଜନା ବାକ୍ୟ ପ୍ରକୃତିରେ ବିସ୍ତୃତରୂପେ ବଡ଼ ସୁନ୍ଦର କରି ଲେଖି ଅଛନ୍ତି ।

(୩) ବଙ୍ଗଳା ଭାରତରେ ମଧ ଏ ସମ୍ବନ୍ଧରେ ସତ୍ୟଭାମାଙ୍କର ସାହାଯ୍ୟ, ଦୁର୍ଯ୍ୟୋଧନଙ୍କର ବର ବେଶରେ ସମାଗମନ ପ୍ରଭୃତି କଥା ଲେଖାଅଛି ।

ଅବଗତି କରିପାରି କହିଲେ, ଯଦି ଭିକ୍ଷାଣିଙ୍କି ଲୋଡ଼ ତେବେ ବଳିଦ୍ୱାରକୁ ଯାଅ । ଲକ୍ଷ୍ମୀ ବା ରୁକ୍ମିଣୀ ପଚାରିଲେ, ବାଟରେ ଜଣେ ନାଟୁଆକୁ ଦେଖିଲ କି ? ପାର୍ବତୀ କହିଲେ, ବୃନ୍ଦାବନକୁ ଯାଅ, ନାଟୁଆ ପିଲାକୁ ଦେଖି ପାରିବ । ଏପରି ବହୁ ଛଳନା ପରେ ପାର୍ବତୀ କଥାଚାତୁର୍ଯ୍ୟରେ ଜୟିନୀ ହେଲେ, ରୁକ୍ମିଣୀ ବିତଥୀକୃତାଭିମାନା ହୋଇ ତାହାଙ୍କୁ ପ୍ରଣାମ କଲେ, ଇତ୍ୟାଦି । ଅଥଚ ସୁଭଦ୍ରା ବିବାହ ଚରିତ ପରେ ମୂଳ ଗ୍ରନ୍ଥରେ ଅନୁକ୍ତ ଏବଂ ମଦ୍ଦୃଷ୍ଟ ତାଳପତ୍ର ପୁସ୍ତକଦ୍ୱୟରେ ଅଦୃଷ୍ଟ ଗୋଟିଏ ଚରିତ ଛାପା ପୁସ୍ତକର ୧୯୫ ପୃଷ୍ଠାରୁ ପ୍ରାରମ୍ଭ କରି ୨୫୧ ପୃଷ୍ଠା ପର୍ଯ୍ୟନ୍ତ ସବିସ୍ତର ଭାବରେ ଲେଖାଅଛି ଯେ, ନାରଦଙ୍କ ଉପଦେଶମତେ ଧର୍ମପ୍ରାଣ ଯୁଧିଷ୍ଠିର ଧର୍ମଯଜ୍ଞ ନାମକ ଯାଗରେ ଦୀକ୍ଷିତ ହେଲେ । ଅତୁଳବିକ୍ରମ ନକୁଳ ନାଗରାଜ ବାସୁକିଙ୍କୁ ନିମନ୍ତ୍ରି ଆଣିବା ପାଇଁ ପାତାଳରେ ଉପଗତ ହୋଇ ସ୍ୱକୀୟ କୁନ୍ତକୋଟିରେ ଧରଣୀ ଧାରଣ କଲେ । ଇତ୍ୟାଦି । [୧] ଏପରି ମୂଳରେ ଅନୁକ୍ତ ଏବଂ ସୂତ୍ରସ୍ୱରୂପ ସୁଦ୍ଧା ଅସୂଚିତ ସମଧିକ ତାଳପତ୍ର ପୁସ୍ତକମାନଙ୍କରେ ଅପରିଦୃଷ୍ଟ ଚରିତଗୁଡ଼ିକୁ ସାରଳାଦାସଙ୍କ ପରବର୍ତ୍ତୀ ଲେଖକଂମନ୍ୟମାନଙ୍କର କପୋଳକଳ୍ପିତ କହିବା ଅନୁଚିତ ନୁହେ ବୋଲି ଅନୁମିତ ।

(୧୭) ଇତଃପର ଲେଖାଅଛି କି ଭାଗୀରଥୀତୀରସ୍ଥ ନୀଳୋତ୍ପଳାଭିଧ ଭୂଧରର ଉପତ୍ୟକାରେ ବିରାଜିତ ବିରାଜେଶ୍ୱର ନାମକ ସ୍ୱୟଂଭୂ ଶମ୍ଭୁଦେବଙ୍କୁ କୁନ୍ତୀ ଓ ଗାନ୍ଧାରୀ ଦେବୀ ଉଭୟେ ଉଭୟଙ୍କ ଅଲକ୍ଷିତରେ ଭିନ୍ନ ଭିନ୍ନ ସମୟରେ ପୂଜା କରୁଥାନ୍ତି । ଏକଦା ଉଭୟେ ଯୁଗପତ୍ ପୂଜାର୍ଥ ଉପଗତ ହେଲେ । ଅହମହମିକାବଶତଃ "ଏ ତ ମଦୀୟ ପୂଜିତ ଦେବତା, ଏହାଙ୍କ ପୂଜନରେ ତୁମ୍ଭର ଅଧିକାର ନାହିଁ," ଏହା କହି ଉଚ୍ଚାବଚପୂର୍ବକ କଳହାରମ୍ଭ କଲାରୁ ମହାଦେବ କହିଲେ, ଆଗାମୀ ପ୍ରତ୍ୟୁଷରେ ଯେ ସହସ୍ର ସଂଖ୍ୟକ ସୌବର୍ଣ୍ଣ ଚମ୍ପକକୁସୁମ ପ୍ରଦାନରେ ମୋତେ ପୂଜା କରି ପାରିବେ, ମୁଁ ତାହାଙ୍କର କେବଳ ହେବି । ତଦ୍‌ଶ୍ରବଣରେ ଗାନ୍ଧାରୀ ଓ କୁନ୍ତୀଦେବୀ ସ୍ୱ ସ୍ୱ ଭବନକୁ ପ୍ରସ୍ଥାନ କଲେ । ଗାନ୍ଧାରୀ ଚାରୁଚାମୀକରଚମ୍ପକପ୍ରସୂନମାନ ତୟାର କରାଇବାପାଇଁ ପୁତ୍ରଙ୍କୁ ଆଦେଶ କଲେ । ଅର୍ଜୁନ କୁନ୍ତୀଙ୍କ ମୁଖରୁ ଏ ସବୁ ଶୁଣି କହିଲେ, ମାତଃ ! ତୁମ୍ଭେ କଲ୍ୟ ବ୍ରାହ୍ମ ମୁହୂର୍ତ୍ତରେ ଯାଇ

---

[୧] ଏତେ କହିଣ ନକୁଳ କୁନ୍ତ କରେ ଧରି ।
ଦକ୍ଷିଣ ପାଦ ଆଗକୁ ଦେଲେ ଧୀର କରି ।।
ଆପଣା ପାଦ ବୃଦ୍ଧ ଅଙ୍ଗୁଷ୍ଠୀ ଉପରେ ।
କୁନ୍ତନେଇ ଧୀରେ କରି ଥୋଇଲେ ତଥିରେ ।।
ମୁନ ସଳକ୍ଷି ବୋଇଲେ ଶୁଣ ମହାରାଣ ।
ମୁନ ଉପରେ ପୃଥିବୀ ଥୁଅ ଏହିକ୍ଷଣ ।। ମ.ପ. ୨୧୦ ପୃ:

ଦେବାଳୟରେ ଉପସ୍ଥିତ ଥାଅ, ମୁଁ ସୁବର୍ଣ୍ଣ ଚମ୍ପକମାନ ନିଯୋଗାଇ ଦେବି । ଅର୍ଜ୍ଜୁନ ଏହା କହି ଲୋକାତିରେକ ପରାକ୍ରମରେ କୁବେରଭବନ ପ୍ରତି ସର୍ବସମାଧାୟକ ଅବ୍ୟାହତପ୍ରସର ସର୍ବଗାମୀ ଅମୋଘ ଶରକୁ ପ୍ରୟୋଗ କଲେ । କୁବେର ଭୀତମନରେ ପ୍ରୋକ୍ତ ଶିବସଦନରେ ଅପରିମିତ ରମଣୀୟ ସୁସୌଷ୍ଠବ କନକଚମ୍ପକପ୍ରସୂନ ବର୍ଷଣ କଲେ । ପରେ ଗାନ୍ଧାରୀ ଯାଇ ଦେଖିଲେ ଯେ ସ୍ତୂପୀକୃତ ସୁବର୍ଣ୍ଣଚମ୍ପକରାଶିର ସମାଚ୍ଛାଦନରେ ଦେବାଳୟ ଲକ୍ଷିତ ହେଉନାହିଁ, ଲଜ୍ଜାବନତ ମୁଖରେ ବାହୁଡ଼ି ବାହାରି ଆସିଲେ । ଇତ୍ୟାଦି । ଏ ସବୁ ମୂଳ ଭାରତରେ ନାହିଁ, କିନ୍ତୁ ବିଶ୍ୱାସ ହୁଏ, କବି ଅନ୍ୟ ପୁରାଣାନୁକରଣରେ ଲେଖିଥିବେ ।

ତଦନନ୍ତର ନାରଦଙ୍କ ଉପଦେଶମତେ କାଯାକ୍ଷୀ ନାମକ ବ୍ରତ କରଣରେ କୃତସଂକଳ୍ପା ଦେବକୀଦେବୀ ଆଜ୍ଞାନୁବର୍ତ୍ତୀ ଅର୍ଜ୍ଜୁନଙ୍କୁ ସୁଗନ୍ଧିକା ପୁଷ୍ପ ଆହରଣାର୍ଥେ ପ୍ରେରଣ କରିବା ଚରିତରେ ଅର୍ଜ୍ଜୁନ ବାଟରେ ତ୍ରେତାବୀର ଦିବାକରାକାରନିଭ ହନୁମାନଙ୍କୁ ଭେଟିଲେ । ହନୁମାନ୍ ସ୍ୱକୀୟ ପୁରାତନ ପରାକ୍ରମଜନିତ କାର୍ଯ୍ୟମାନ ପ୍ରଖ୍ୟାପନ କଲାରୁ ନିର୍ଦ୍ଦ୍ୱାପରପରାକ୍ରମଶାଳୀ ଦ୍ୱାପରବୀରାଗ୍ରଗଣ୍ୟ ଅର୍ଜ୍ଜୁନ ଶରଜାଳରେ ସେତୁ ବାନ୍ଧିବା, ହନୁମାନଙ୍କର ମହାପର୍ବତାତିରିକ୍ତ ମହାଭାରରୁ ରକ୍ଷା କରିବାକୁ ଶ୍ରୀକୃଷ୍ଣ ପ୍ରୋକ୍ତ ଶରସେତୁର ଅଧଃପ୍ରଦେଶରେ ମତ୍ସ୍ୟାକୃତିରେ ଆଧାର ହୋଇ ରହିବା, ତେତେବେଳେ ତର୍କନିଶ୍ଚିତ-ତତ୍ତ୍ୱାର୍ଥ ଆଞ୍ଜନେୟ ବାସବିଙ୍କପ୍ରତି ଶ୍ରୀକୃଷ୍ଣଙ୍କର ସ୍ୱଜନାତିରିକ୍ତ ଦୟା ଜାଣି ପ୍ରୋଦ୍‌ଭୂତପୁଲକଚ୍ଛବିରେ ପ୍ରଣାମପ୍ରବଣ ପାର୍ଥଙ୍କୁ ସସ୍ନେହ ଆଲିଙ୍ଗନ କରି ସଂହତଗ୍ରୀବ ସୁଗ୍ରୀବ ଓ ଜାମ୍ବବଙ୍କଠାକୁ ନେବା, ସେଠାରେ ଅଞ୍ଜନାଦେବୀ, ବାଳୀ ଓ ସୁଗ୍ରୀବଙ୍କର ପୂର୍ବଜନ୍ମ କଥା, ଶିବଙ୍କର ବ୍ରହ୍ମହତ୍ୟା ବିଷୟ ଏବଂ କୌମ୍ଭକର୍ଣ୍ଣିକ ବୃତ୍ତାନ୍ତ ପ୍ରଭୃତି ଅନେକଗୁଡ଼ିଏ ବିଷୟକୁ ବିସ୍ତୃତରୂପେ ଲେଖି ଅଛନ୍ତି । ଏ ସବୁ ବ୍ୟାସୋକ୍ତ ମହାଭାରତରେ କୁହାଯାଇ ନାହିଁ, ମାତ୍ର ସୁଗନ୍ଧିକାହରଣ କଥାଟି ଭାଗବତାଦିରେ ଅନ୍ୟଥା ଉକ୍ତ ଅଛି । ସାରଳାଦାସ କବି ଏହି ଚରିତର ସ୍ଥୂଳ ମୌଳିକ ଅଂଶ ନେଇ ଅନ୍ୟାନ୍ୟ ପୁରାଣେତିହାସୋକ୍ତ କଥାମାନଙ୍କ ସଂଯୋଗରେ ଅଥଚ ସ୍ୱକୀୟ କାଳ୍ପନିକପରିପାଟୀର ଅନୁପ୍ରାଣନରେ ଲେଖିଯାଇଅଛନ୍ତି । [୧] ଅତଃପର ମାନଘନହୃଦୟ ଦୁର୍ଯ୍ୟୋଧନଙ୍କ ତନୟା ଚନ୍ଦ୍ରାବତୀଙ୍କ ସ୍ୱୟମ୍ବରାଡ଼ମ୍ବର ସମୟରେ କଳହାଶନ ନାରଦଙ୍କ ପ୍ରୋତ୍ସାହରେ ସମୁତ୍ସାହିତ ଶାମ୍ବକୁମାର ତାହାଙ୍କୁ ଅପହରି ନେବା ଏବଂ ବହୁ ଯୁଦ୍ଧ ହେଲା ପରେ ଶାମ୍ବ ଓ ଚନ୍ଦ୍ରବତୀଙ୍କ ବୈବାହିକ ସମ୍ବନ୍ଧ ଘଟିବା ପ୍ରଭୃତି କଥା ଲେଖିଅଛନ୍ତି । ଏହା ଭାରତମୂଳକ ଚରିତ ନୁହେ । ପରନ୍ତୁ

---

[୧] ଏହି ବହୁପ୍ରଶାଖ ଚରିତଟି ଛାପା ପୁସ୍ତକରେ ୨୩୦—୨୪୦ ପୃ: ପର୍ଯ୍ୟନ୍ତ ଲେଖାଅଛି; ମାତ୍ର ତାଳପତ୍ର ପୁସ୍ତକରେ ଚନ୍ଦ୍ରାବତୀ ହରଣ କଥା ପରେ ଏହି ସୁଗନ୍ଧିକା ହରଣ କଥା ଲେଖାଅଛି ।

ପୁରାଣେତର ଆଶ୍ରୟରେ ଲିଖିତ ହୋଇ ସୁଦ୍ଧା ନିତାନ୍ତ ଅଭ୍ରାନ୍ତ ନୁହେ । ତଥାପି ଏହି କିଞ୍ଚିଦ୍ ପ୍ରାମାଦିକ ଐତିହାସିକ ସଂବିଧାନ ସମଗ୍ର ଉତ୍କଳରେ ଅଭ୍ରାନ୍ତରୂପେ ସମାଦୃତ ହୋଇଅଛି । ଏହି ଚରିତରେ ଅନ୍ୟ କିଛି ବିଶେଷ ପ୍ରାମାଦିକ ନୁହେ, ନାମ କେବଳ ପ୍ରମାଦତଃ ଅନ୍ୟଥା ହୋଇଅଛି । ଦୁର୍ଯ୍ୟୋଧନଙ୍କ ତନୟାଙ୍କ ନାମ ଚନ୍ଦ୍ରାବତୀ ନୁହେ । ତଦୀୟ ପୁତ୍ରଙ୍କ ନାମ ଲକ୍ଷ୍ମଣ ଆଉ ପୁତ୍ରୀଙ୍କ ନାମ ଲକ୍ଷ୍ମଣା ଥିଲା । ଜାମ୍ବବତେୟ ଶାମ୍ବ ଓ ଦୌର୍ଯ୍ୟୋଧନୀ ଲକ୍ଷ୍ମଣା ସଂକ୍ରାନ୍ତ ପ୍ରୋକ୍ତ ବୃତ୍ତାନ୍ତ ଶ୍ରୀମଦ୍‌ଭାଗବତରେ ଉକ୍ତ ଅଛି । [୧] ମାତ୍ର ଜାମ୍ବବତୀସୁତ ଶାମ୍ବ ଚନ୍ଦ୍ରବତୀନାମ୍ନୀ ଅନ୍ୟ କନ୍ୟାକୁ ସୁଦ୍ଧା ବିବାହ କରିଥିଲେ । ସେହି ଚନ୍ଦ୍ରବତୀ ବା ଚନ୍ଦ୍ରାବତୀ ବଜ୍ରନାଭ ଦୈତ୍ୟର ଭଗିନୀ ଥିଲେ । ଏହି କଥା ଖିଳହରିବଂଶର ବିଷ୍ଣୁ ପର୍ବରେ ଉକ୍ତ ଅଛି । ସାରଳାଦାସ କବି ମହୋଦୟ ଯଦିଚ ଭାଗବତ ଗ୍ରନ୍ଥକୁ ଅନୁସରି ଲେଖିଅଛନ୍ତି, ତେବେ ନାମମାତ୍ର ପ୍ରାମାଦିକ, ତାହା ନ ହେଲେ ଚରିତସଂବିଧାନରେ ବହୁସ୍ଥଳ ଭ୍ରାନ୍ତିମୂଳକ ହୋଇ ପଡ଼ିବ ।

ଆମ୍ଭମାନଙ୍କର ଆଦିମ ମହାକବି ଅଥଚ ଉତ୍କଳବ୍ୟାସ ଶ୍ରୀ ସାରଳାଦାସ ମହୋଦୟ ବ୍ୟାସୋକ୍ତ ମହାଭାରତରେ ଅନୁଦିତ କଥାକୁ ଯେପରି ଭାଗବତ ଗ୍ରନ୍ଥାନୁକରଣରେ ଅନୂଦିତ କରିଅଛନ୍ତି, ସେହିପରି ବଙ୍ଗ ଭାରତକର୍ତ୍ତା ଶ୍ରୀ କାଶୀରାମ ଦାସ ମହାଶୟ ମଧ୍ୟ ପ୍ରୋକ୍ତ ଲକ୍ଷ୍ମଣା ହରଣ ପ୍ରଭୃତି କେତେକ ଚରିତ ଲେଖି ଅଛନ୍ତି । [୨] ସାରଳାଦାସ କବି ଚନ୍ଦ୍ରାବତୀ କନ୍ୟା ବିବାହର ଆନୁଷଙ୍ଗିକରୂପେ ଲେଖିଅଛନ୍ତି କି –

"ତାହାର ନ ଥିଲେ ନୁହଇ ଯେ ବିଭା,
ଏ କଟକମା କଥା ମୁନି ହେ ସଂଚପି କହିବା ।"

ଏହି ପ୍ରଶ୍ନ ହେଲାରୁ ଅଗସ୍ତି କହିଲେ, ପୁରା ନାରାୟଣଙ୍କ ସହ ସରସ୍ୱତୀଙ୍କର ବିବାହ ନିର୍ଦ୍ଧାରିତ ହୋଇଥିଲା । ତେତେବେଳେ ବ୍ରହ୍ମାଙ୍କର ବରପୁତ୍ର କଟକମାସୁର ଆସି ଉପଦ୍ରବ ଘଟାଇଲା । ସରସ୍ୱତୀ ବ୍ରହ୍ମାଙ୍କ ତନୟା ଏବଂ କଟକମାସୁର ବରପୁତ୍ର, ଅତଏବ କଟକମା ନାରାୟଣଙ୍କର ଶାଳକ ହେଲା ବୋଲି ଉପାୟ ବଳରେ ତାହାକୁ ଆସନର ଅଧୋଦେଶରେ ମାଡ଼ି ବସି ନାରାୟଣ ସରସ୍ୱତୀଙ୍କର ପାଣିଗ୍ରହଣ କଲେ । [୩] ଇତ୍ୟାକାରରେ ସ୍ୱକୀୟ

---

[୧] ଜାମ୍ବବତୀସୁତ ଶାମ୍ବ ଦୁର୍ଯ୍ୟୋଧନ ସୁତା ଲକ୍ଷ୍ମଣାଙ୍କୁ ହରିବା ବୃତ୍ତାନ୍ତ ଶ୍ରୀମଦ୍‌ଭାଗବତ ଦଶମ ସ୍କନ୍ଧ ୬୩ ଅଧ୍ୟାୟରେ ଦେଖନ୍ତୁ ।

[୨] କାଶୀରାମଦାସଙ୍କ ବଙ୍ଗଳା ମହାଭାରତରେ ସୁଭଦ୍ରାଙ୍କ ବିବାହ ପ୍ରସ୍ତାବରେ ପ୍ରଶ୍ନାନୁକ୍ରମରେ ଲକ୍ଷ୍ମଣା ଓ ଶାମ୍ବ କୁମାରଙ୍କ ବୃତ୍ତାନ୍ତ ଉକ୍ତ ଅଛି । ୧୬୪ ପୃଷ୍ଠା ଦେଖନ୍ତୁ ।

[୩] ଦ୍ୱିଜାତୀତର ସମାଜରେ କେହି କେହି (ଏ ଅଞ୍ଚଳରେ) ତନ୍ନାମନାମିତ କରି ପାଳବିଣ୍ଡା ଉପରେ ବସନ୍ତି ।

ପ୍ରସ୍ତାବାନୁଗୁଣକ ଅନେକଗୁଡ଼ିଏ କଥା ଲେଖି ଅଛନ୍ତି । [୧] ଏହା ମୂଳରେ ନାହିଁ, ଅନ୍ୟାନ୍ୟ ପୁରାଣରେ ଥିବାର ବିଶ୍ୱାସକୁ ପାଉନାହିଁ । କବି ତତ୍କାଳିକ ଲୋକବ୍ୟବହାରାନୁସାରେ କଳ୍ପନା କରିଥିବେ, ନଚେତ୍ କବିଙ୍କର କଳ୍ପିତ ଲେଖାକୁ ଧରି ଲୋକରେ ସାଧାରଣ ସମାଜରେ ବ୍ୟବହାର ଚଳି ଆସୁଥିବ । ଅତଏବ ସାରଳାଦାସ କବି ସମଗ୍ର ଉତ୍କଳରେ ସାଧାରଣ ସମାଜରେ ପ୍ରଧାନ ପ୍ରବର୍ତ୍ତକ କହିଲେ ଚଳେ । ଏହା ଉତ୍ତାରୁ ମୂଳରେ ଅପ୍ରତିପାଦିତ ଉଷାଙ୍କ ବିବାହ କଥା [୨] ଶ୍ରୀମଦ୍‌ଭାଗବତ କିମ୍ବା [୩] ହରିବଂଶର ଚରିତକୁ ଆଶ୍ରୟ କରି ଅପେକ୍ଷାକୃତ ବିସ୍ତୃତ ଯୁଦ୍ଧାଦିସହ ଲେଖିଅଛନ୍ତି । [୪] ପୁନଶ୍ଚ ଏ ସ୍ଥଳରେ ଆଉ ଗୋଟିଏ ଅମୌଳିକ ଚରିତ ଛାପା ପୁସ୍ତକରେ (୩୦୪–୩୨୭ ପୃ:) ଦେଖାଯାଏ । ଅସ୍ମଦ୍ଦୃଷ୍ଟ ତାଳପତ୍ର ପୁସ୍ତକରେ ଦେଖିବାକୁ ପାଇନାହୁଁ; ଯଦି ଛାପା ପୁସ୍ତକରେ ଅଙ୍କିତ ଅଛି, ତେବେ ଅନ୍ୟାନ୍ୟ ତାଳପତ୍ର ପୁସ୍ତକମାନଙ୍କରେ ଅବଶ୍ୟ ଲିଖିତ ଥିବ, ମାତ୍ର ଏହା ଛାପାକାରଙ୍କର ପ୍ରକ୍ଷିପ୍ତ ନୁହେ । ବୋଧହୁଏ ଏତାଦୃଶ ଚରିତମାନ କବିଙ୍କର କଳ୍ପିତ ହୋଇ ନ ଥିବ, ତତ୍ପରବର୍ତ୍ତୀ ମାୟିକ ଲେଖକଙ୍କର ଅଳୀକକଳ୍ପନା ପ୍ରସୂତ ହୋଇଥିବାରୁ ସମଗ୍ର ତାଳପତ୍ର ପୁସ୍ତକମାନଙ୍କରେ ଲେଖା ହୋଇପାରି ନାହିଁ । ଅତ୍ରତ୍ୟ ଚରିତଟି ଏହି – ଏକଦା ଦୁର୍ଯ୍ୟୋଧନ ରାଜା ଦୁଃଶାସନାଦିଭ୍ରାତୃବର୍ଗ ଭୀଷ୍ମପ୍ରମୁଖ ମହାରଥିବୃନ୍ଦ ଆଉ ଚତୁରଙ୍ଗ ବଳର ସମଭିବ୍ୟାହାରରେ କୁତ୍ରଚିତ୍ ଯାଉଅଛନ୍ତି । ମଧ୍ୟମାର୍ଗରେ କୁଣ୍ଡଳୀ ନାମକ [୫] ଦୈତ୍ୟ ଆସି ଆକ୍ରମଣ କଲା । ଦୁଃଶାସନାଦି ରାଜପୁତ୍ର ଏବଂ ସୈନ୍ୟବର୍ଗଙ୍କୁ ନିହତ କରି ଭୀଷ୍ମାଦିଙ୍କି ମୃତକଳ୍ପ ପାତିତ କଲା । ପରିଶେଷରେ ଦୁର୍ଯ୍ୟୋଧନ ମଲ୍ଲଯୁଦ୍ଧରେ ମୃତକଳ୍ପ ହୋଇ ପଡ଼ିଲେ । ତଦା ତଦୀୟ ସେନାନୀ ଏକାକୀ ସାଶ୍ରୁନୟନରେ ନଗରାଭିମୁଖରେ ଯାଉଅଛନ୍ତି, ବାଟରେ ନକୁଳ ସମସ୍ତ ବୃତ୍ତାନ୍ତ ଅବଗତ ହୋଇ ଅସୁର ସହ ଦ୍ୱନ୍ଦ୍ୱଯୁଦ୍ଧ କଲେ । ଭୀମାଦିଚତୁର୍ଥ ଯୁଧିଷ୍ଠିର ପ୍ରୋକ୍ତ ସେନାପତିଙ୍କ ମୁଖରୁ ପ୍ରତିପନ୍ନାର୍ଥ ହୋଇ ସେଠାରେ ଉପଗତ ହୋଇ ଦେଖିଲେ, ସମସ୍ତେ ନିହତ ହୋଇ ପଡ଼ିଅଛନ୍ତି ।

---

[୧] ଚାରିଯୁଗେ କନ୍ୟା ପ୍ରଦାନର କାଳେ
ପିତା ମାଡ଼ି ବସିବ ଦୁହିତା ଥିବ କୋଳେ ॥
ପ. ୨୮୩–୨୮୭ ପୃଷ୍ଠା ପର୍ଯ୍ୟନ୍ତ ଦେଖନ୍ତୁ ।

[୨] ଶ୍ରୀମଦ୍ଭାଗବତ ଦଶମସ୍କନ୍ଧରେ ୬୬ ଓ ୬୭ ଅଧ୍ୟାୟରେ ଉଷା ବିବାହ ଦେଖିବେ ।

[୩] ହରିବଂଶର ବିଷ୍ଣୁ ପର୍ବରେ ୧୨୮ ଅଧ୍ୟାୟରେ ବାଣସୁତା ଉଷାଙ୍କୁ ଅନିରୁଦ୍ଧ ବିବାହ ହେବା କଥା ଦେଖି ପାରିବେ ।

[୪] ଛାପା ମଧ୍ୟପର୍ବର ୨୯୦–୩୦୩ ପୃଷ୍ଠା ପର୍ଯ୍ୟନ୍ତ ଦେଖନ୍ତୁ ।

[୫] କୁଣ୍ଡଳୀ ବୋଲି କରି ଦୈତ୍ୟ ମହାବୀର ।
କୁଳାବଳୀ ପାଟଣାରେ ଅଟେ ତାର ଘର ॥ ମ.ପ. ୩୦୪ ପୃ:

ନକୁଳ ମାତ୍ର ଦ୍ୱନ୍ଦ ଯୁଦ୍ଧରେ ମାତି ଅଛନ୍ତି । ଯୁଧିଷ୍ଠିର ସହଦେବଙ୍କୁ ସେହି ଦୁର୍ଦମ୍ୟ ଦାନବ ସମ୍ବନ୍ଧରେ ଜିଜ୍ଞାସା କଲାରୁ ସେ ତଦୀୟ ପୂର୍ବ ବୃତ୍ତାନ୍ତ, ବରପ୍ରାପ୍ତି, ତଥା ମୃତ୍ୟୁଭେଦ ବିବରଣ ଜଣାଇଲେ । ନକୁଳ ତଦ୍‌ଶ୍ରବଣରେ ଅସୁରକୁ ନିହତ କଲେ । ଅର୍ଜୁନ ମୃତସଂଜୀବନୀ ବିଭୂତି ପ୍ରୟୋଗରେ ସମସ୍ତଙ୍କୁ ଉଜ୍ଜୀବିତ କଲେ । ଇତ୍ୟାଦି ।

ଏହି ଚରିତାବସାନରେ ବରୁଣ ରାଜାଙ୍କ ଔରସରେ ତଦୀୟ ଜାୟା ଜଳବତୀଙ୍କ ଗର୍ଭରୁ ଜାତ, ଜନ୍ମକାଳୀନ ଗଣ୍ଡଦୋଷରୁ ମାତୃସହ ଗହନାରଣ୍ୟରେ ପରିତ୍ୟକ୍ତ ନୀଳେନ୍ଦୀନାମ୍ନୀ କନ୍ୟାକୁ ସଦାର ଦୟୋଦର ମହେଶ ହୃତସର୍ବଦୋଷା କରି କାର୍ତ୍ତିକେୟଙ୍କ ପାଣିଗ୍ରହଣାର୍ଥ ସ୍ଥିର କରିବା ସମୟରେ ନାରଦ ଋଷି ପ୍ରୋକ୍ତ କନ୍ୟାଙ୍କ ନିରୁପମଲାବଣ୍ୟାତିଶୟ ପ୍ରକଥନରେ ବଳରାମଙ୍କ ପୁତ୍ର ଆନନ୍ଦାନନ୍ଦକୁ ଗୁପ୍ତଭାବରେ ସେହି କନ୍ୟାଙ୍କ ସଙ୍ଗେ ମିଳାଇବା, କାର୍ତ୍ତିକେୟ ବିବାହର ଆୟୋଜନ ସମୟରେ ଆନନ୍ଦାନନ୍ଦ ନୀଳେନ୍ଦୀ କନ୍ୟାଙ୍କୁ ଧରିନେବା, ତତ୍ସମ୍ବାଦ ଶ୍ରବଣରେ ଶିବଗଣସହ ଶିଖିଧ୍ୱଜ ପାର୍ବତେୟ ଆସି ରାମାତ୍ମଜଙ୍କୁ ମୃତକଳ୍ପ କରି ପକାଇବା, ତତଃପର ସାଗ୍ରଜ ଶ୍ରୀକୃଷ୍ଣ ସେଠାରେ ସମୁପଗତ ହୋଇ ଘୋର ଯୁଦ୍ଧ କରିବା, ପରିଶେଷରେ ବ୍ରହ୍ମାଦି ବୃନ୍ଦାରକବୃନ୍ଦ ଆସି ଉଭୟ ପକ୍ଷକୁ ଶାନ୍ତ କରି ନୀଳେନ୍ଦୀ ଓ ଆନନ୍ଦାନନ୍ଦଙ୍କର ଶୁଭପରିଣୟ କରାଇବା ପ୍ରଭୃତିକ ଚରିତଟି ଛାପା ପୁସ୍ତକରେ ବିସ୍ତୃତ ହୋଇଅଛି । [୧] ପରନ୍ତୁ ପ୍ରୋକ୍ତ ଚରିତଟି ତାଳପତ୍ର ପୁସ୍ତକରେ ତଦଙ୍ଗଭୂତ ଆଉ କେତେଗୁଡ଼ିଏ ଉପକଥା ସହ ଅତି ବିସ୍ତୃତ ଭାବରେ ଲେଖାଅଛି । ସୁତରାଂ ଉଭୟତ୍ର [୨] କେତେକ ଅଂଶର ବହୁ ପ୍ରଭେଦତା ଏବଂ କେତେକ ଅଂଶର ବୈପରୀତ୍ୟ ସୁଦ୍ଧା ଲକ୍ଷିତ ହୁଏ । ଏହି ଚରିତଟି ତାଳପତ୍ର ପୁସ୍ତକ ଅପେକ୍ଷା ଛାପା ପୁସ୍ତକରେ ଏକାନ୍ତ ଭିନ୍ନାକାର ଓ ଭିନ୍ନ ପ୍ରକାର ହୋଇଅଛି । ମଦ୍‌ଦୃଷ୍ଟ ତାଳପତ୍ର ପୁସ୍ତକଦ୍ୱୟରେ ଏହି ଚରିତ ପ୍ରାନ୍ତରେ ମଧ୍ୟପର୍ବ ସଂପୂର୍ଣ୍ଣ; ଛାପା ପୁସ୍ତକରେ ଆହୁରି କେତେକ କଥା ଲେଖାଅଛି । ନୀଳେନ୍ଦୀହରଣ ବୃତ୍ତାନ୍ତଟି କବି କାହିଁରୁ ନେଇ ଅଛନ୍ତି, କିଛି ଜଣାଯାଉ ନାହିଁ । ମାତ୍ର ଅନୁମାନତଃ ଜୈମିନି ଭାରତ ଏଠାରେ ଆଦର୍ଶ ସ୍ଥାନୀୟ ହୋଇଥାଇ ପାରେ । ଏହା ଅନେକଙ୍କ ହୃଦୟରେ ଅଭ୍ୟସ୍ତ ରହିଅଛି ।

ନୀଳେନ୍ଦୀହରଣ ପ୍ରକରଣର ଅବ୍ୟବହିତ ପରେ ଲେଖାଅଛି, [୩] ପ୍ରାଗୁକ୍ତ କୁଣ୍ଡଳୀ ଅସୁରର ପୁତ୍ର ପିତୃନିଧନଗୁରୁଶୋକଭାରାକ୍ରାନ୍ତ କୋଦାଳ ଅସୁର ହସ୍ତିନା ପ୍ରତି ଅଭିଯାନ କରି ଦୁର୍ଯ୍ୟୋଧନାଦି ଭ୍ରାତୃଗଣ ଓ ମହାରଥ ଭୀଷ୍ମ ପ୍ରମୁଖଙ୍କୁ ନିହତ କଲେ । କର୍ଣ୍ଣ ସହଜ

[୧] ୩୨୮—୩୫୭ ପୃଷ୍ଠା ଦେଖନ୍ତୁ ।

[୨] ଛାପା ପୁସ୍ତକରେ ଏବଂ ତାଳପତ୍ର ପୁସ୍ତକରେ ।

[୩] ମ. ୩୫୭—୩୭୦ ପୃଷ୍ଠାଯାଏ ଦେଖନ୍ତୁ ।

ଅମୃତକୁଣ୍ଡଳନିସୃତ ଅମୃତଧାରାରେ ପୁନରୁଜ୍ଜୀବିତ ହୋଇ ଅସୁରକର୍ତ୍ତୃକ ଦ୍ୱିତୀୟବାର ସୁଦ୍ଧା ଯୁଦ୍ଧରେ ପରାସ୍ତ ହୋଇ ସସାଧ୍ୱସରେ ପଳାୟନ କରୁଅଛନ୍ତି, ଇତ୍ୟବସରେ ଦୈବାତ୍ ଦ୍ୱାରକାଗତ ପାଣ୍ଡବମାନେ ସେଠାରେ ଉପସ୍ଥିତ ହେଲେ । ଅନନ୍ତର ସଂଗ୍ରାମମହୋତ୍ସବପ୍ରମୋଦନିର୍ଭର ସହଦେବ କୋଦାଳକୁ ନିଧନ କଲେ । ଇତ୍ୟାଦି । [୧] ଅତଃପର ଉକ୍ତ ଅଛି – କଦାଚିତ୍ ଦ୍ୱାରକାଗତ ନାରଦ ଶାମ୍ବସନାଥା ଚନ୍ଦ୍ରାବତୀଙ୍କି ନନ୍ଦନକାନନଜାତ ନରଦୁର୍ଲଭ ପୁଷ୍ପ ଗୋଟିଏ ଦେଇ ଜିଜ୍ଞାସାକ୍ରମେ ଚୈତ୍ର ମଙ୍ଗଳବାର ବ୍ରତର ବିବରଣ କହିଲେ । ଚନ୍ଦ୍ରାବତୀ ଶାମ୍ବଙ୍କୁ ପ୍ରାର୍ଥନା କଲେ କି, ଏହି ସ୍ୱର୍ଗୀୟ ପୁଷ୍ପ ଆଣିଦେଲେ ଚୈତ୍ର ମଙ୍ଗଳବାର କରିବି । ଶାମ୍ବ ଦେବପୁଷ୍ପ ଆହରଣାର୍ଥ ସ୍ୱର୍ଗକୁ ଯାତ୍ରା କଲେ । ନନ୍ଦନରୁ ପୁଷ୍ପ ତୋଳୁଅଛନ୍ତି, ଦେଖିଲେ ଯେ, ପୁରୋଭାଗରେ ଗୋଟିଏ ପରମା ସୁନ୍ଦରୀ କନ୍ୟା । ସେହି ସୁରତସେନ ଗନ୍ଧର୍ବଙ୍କ ସୁତା ଶୋଭାବତୀ ନବଯୌବନୋଦ୍‌ଗତ ଲାବଣ୍ୟପୂର୍ଣ୍ଣ ଶାମ୍ବଙ୍କୁ ଦେଖି ବିମୋହିତା ହେଲେ । ଶାମ୍ବ ମଧ୍ୟ ଗାନ୍ଧର୍ବିକାର ଦିବ୍ୟସୌନ୍ଦର୍ଯ୍ୟରେ ଆକୃଷ୍ଟ ହେଲେ । ଅନ୍ୟୋଽନ୍ୟ ପରିଚୟଦାନରେ ମଧୁସଂପୃକ୍ତ କ୍ଷୀର ତୁଲ୍ୟ ସମ୍ବନ୍ଧ ଘଟିବା ଭାବି କନ୍ୟା ଶାମ୍ବଙ୍କୁ ବରମାଲ୍ୟ ପ୍ରଦାନ କଲେ । ଶାମ୍ବ କନ୍ୟାସହ ରଥରେ ପ୍ରସ୍ଥାନ କରୁଅଛନ୍ତି, ଇତ୍ୟବସରେ ଅବଗତ-ଅବଗନ୍ତବ୍ୟ ଚିତ୍ରସେନ ପ୍ରଭୃତି ଆକ୍ରମଣ କଲେ । ଶାମ୍ବ ଅନେକଙ୍କୁ ନିହତ କରି ସୁଦ୍ଧା ପରିଶେଷରେ ବନ୍ଧ ହୋଇ ଇନ୍ଦ୍ରଙ୍କ ନିକଟକୁ ନୀତ ହେଲେ । ନାରଦଙ୍କ ମୁଖରୁ ପ୍ରାପ୍ତସମ୍ବାଦ ସାଗ୍ରଜ ଶ୍ରୀକୃଷ୍ଣ ଅସଂଖ୍ୟ ପାଣ୍ଡବୀ କୌରବୀ ଓ ଯାଦବୀ ବାହିନୀରେ ପରିବୃତ ହୋଇ ସ୍ୱର୍ଗାକ୍ରମଣ କଲେ; ସେନ୍ଦ୍ର ଦେବଗଣଙ୍କ ସଂଗେ କରାଳ ସଂଗ୍ରାମ କରି ପରିଶେଷରେ ଜୟଲକ୍ଷ୍ମୀ ପ୍ରାପ୍ତ ହେଲେ । [୨] ଇତ୍ୟାଦି । ଅନୁମାନତଃ ବେ ଏହୁଏ ସାରଳାଦାସ କବି ମହୋଦୟ [୩] ହରିବଂଶ ବିଷ୍ଣୁ ପର୍ବରେ ଏବଂ ଶ୍ରୀମଦ୍‌ଭାଗବତ ଦଶମସ୍କନ୍ଧରେ [୪] ଉକ୍ତ ପାରିଜାତହରଣ ସନ୍ଦର୍ଭକୁ ଅନୁସରି ଶୋଭାବତୀ ହରଣ ପ୍ରକରଣର ଅବତାରଣା କରିଥିବେ ଅଥବା ଅନ୍ୟ କେହି ଲେଖି ମିଳାଇ ଥିବେ । ଅନନ୍ତର କୈଳାସର ଉତ୍ତରବର୍ତ୍ତୀ ଅଳମ୍ବୁଷନଗରାଧିପ ମହିଷାସୁର ବଂଶଜାତ ଚୂଡ଼ାସୁର ମୃତ୍ୟୁପରେ ତଦୀୟ ପୁତ୍ର ପୂଡ଼ାସୁର କାର୍ତ୍ତିକେୟଙ୍କ ବର ପ୍ରସାଦରୁ ଅନେକ ବୀରମାନଙ୍କର ଗୁରୁସମରକଣ୍ଡୂ

---

[୧] ମ. ୩୭୧–୪୦୩ ପୃଷ୍ଠାଯାଏ ଦେଖନ୍ତୁ ।

[୨] ଏ ସ୍ଥଳରେ କେବଳ ଯୁଦ୍ଧ ନୁହେ, ପ୍ରାୟତଃ ପ୍ରତ୍ୟେକ ଅଂଶ ବିସ୍ତୃତ ଭାବରେ ବର୍ଣ୍ଣିତ ଅଛି ।

[୩] ହରିବଂଶର ବିଷ୍ଣୁ ପର୍ବରେ ନାରକାସୁର ନାଶ ପ୍ରକରଣର ଅବ୍ୟବହିତ ପରେ ପାରିଜାତହରଣ ବୃତ୍ତାନ୍ତ ଉକ୍ତ ଅଛି । ଅତଃପର ଉମା ବ୍ରତ ପ୍ରଭୃତି କେତେକ ସ୍ତ୍ରୀ ବ୍ରତର କ୍ରମ ମଧ୍ୟ ଉକ୍ତ ଅଛି ।

[୪] ଶ୍ରୀମଦ୍‌ଭାଗବତ ଦଶମସ୍କନ୍ଧ ୬୪ ଅଧ୍ୟାୟରେ ଲେଖାଅଛି ।

ନିବାରଣ କଲା ପରେ ଦିଗ୍‌ବିଜୟ ବିଜିଗୀଷୁ ହୋଇ [୧] ଇନ୍ଦ୍ରଙ୍କଦ୍ୱାରା ପଞ୍ଚତ୍ୱ ପ୍ରାପ୍ତ ହେବା ପ୍ରଭୃତି କଥା, ଅଥଚ [୨] ତତ୍‌ପୁତ୍ର ମୂଢ଼ାସୁରର କଥା ଉକ୍ତ ଅଛି କି [୩] ପୂଢ଼ାସୁରର ପୁତ୍ର ମଢ଼ାସୁର ଦେବତାମାନଙ୍କୁ ବହୁ କଷ୍ଟପୀଡ଼ିତ କଲାପରେ ଇନ୍ଦ୍ରାନୀତ ନକୁଳଙ୍କଦ୍ୱାରା ନିହତ ହେଲା ।

ପରମ୍ପରାଗତ ଢକାରାନ୍ତରେ ନାମିତ ଅସୁରଙ୍କ କଥା ପ୍ରକଥନାନନ୍ତର ଉକ୍ତ ଅଛି ଯେ [୪] ଶ୍ରୀକୃଷ୍ଣଙ୍କ ତନୟ ପ୍ରଦ୍ୟୁମ୍ନ ନାରଦଙ୍କ ମନ୍ତ୍ରଣାରେ କୃତଶେଖର-ରାଜକନ୍ୟା ସୁରେଖାଙ୍କୁ ଆହରଣ କରି ନେବା ସମୟରେ କନ୍ୟାଭ୍ରାତା ନୀଳଧର ପ୍ରଭୃତି ପ୍ରଦ୍ୟୁମ୍ନଙ୍କୁ ବାନ୍ଧିନେଲେ । ପ୍ରାପ୍ତସମ୍ବାଦ ସାନୁଜ ବଳରାମ ଆସି ଉପସ୍ଥିତ ହେବାରୁ ରାଜା କୃତଶେଖର ବହୁ ଅନୁନୟ ବିନୟ ସହକାରେ ପ୍ରଦ୍ୟୁମ୍ନ ଓ ସୁରେଖାଙ୍କୁ ଦମ୍ପତିସ୍ୱରୂପ ସମର୍ପଣ କଲେ । ଇତ୍ୟାଦି । ବୋଧହୁଏ ଏଗୁଡ଼ିକ ଜଳ୍ପକଳ୍ପତରୁ କଳ୍ପନାପ୍ରସୂତ ଫଳ, ପରନ୍ତୁ ଆମ୍ଭର ପରିଦୃଷ୍ଟ ଦୁଇଖଣ୍ଡି ତାଳପତ୍ର ପୁସ୍ତକରେ ଏ କଥାଗୁଡ଼ିକର ଆଭାସ ସୁଦ୍ଧା ଦେଖାଯାଇ ନ ଥିବାରୁ ମନେକରୁଁ, ଅନ୍ୟ କବିଂମନ୍ୟମାନ ମହାତ୍ମାମାନେ ନିଜ ମୃଷା-କଳ୍ପନା-ବିଚିତ୍ରତାକୁ ସାରଳାଦାସଙ୍କ କଳ୍ପନାରେ ମିଶାଇ ଦେଇଥିବେ । ତଥାପି ଲେଖା ଓ ଭାଷାରେ ତାଦୃଶ କିଛି ପ୍ରଭେଦ ରହି ନ ଥିବାରୁ ସାରଳାଦାସ କବି ଯେ ନିଶ୍ଚେ ଏ ସବୁ ଲେଖି ନାହାନ୍ତି, ଏହା ସତ୍ୟ ବୋଲି କହି ନ ପାରୁଁ । ଯାହାହେଉ ମୂଳ ଗ୍ରନ୍ଥରେ କିମ୍ବା ଅନ୍ୟ ପୁରାଣରେ ଅନୁକ୍ତ ବିଷୟର ବୃଥା କଳ୍ପନାରେ ମୃଷାକଳ୍ପନା ମିଶିବା ଅସମ୍ଭବ ନୁହେ । ତଥାପି ଏହି ଆଶୁଗାମିନୀ ବାକ୍‌ଧୋରଣୀର ରଚୟିତାଙ୍କ ଅସାମାନ୍ୟ ନିରଳସଧୀଶକ୍ତି ଯେ ସଂପୂର୍ଣ୍ଣ ସ୍ତୋତବ୍ୟ, ଏଥିରେ କିଛି ମାତ୍ର ସନ୍ଦେହ ନାହିଁ । ସାରଳାଦାସ କବିଙ୍କର କଳ୍ପନାଶକ୍ତିର ଚୂଡ଼ାନ୍ତ ମହିମା ଏତଦପେକ୍ଷା ସଭାପର୍ବରେ ବିଦ୍ୟମାନ । ଭୀମାଦି ଚତୁଷ୍ଟୟ ଚତୁର୍ଦ୍ଦିଗରୁ ଯାଗାର୍ଥ ନିମନ୍ତ୍ରିତ ରାଜାମାନଙ୍କୁ ଆଣିଲେ । ଏତିକି କଥାମାତ୍ର ମୂଳରୁ ସ୍ଥୂଳ ସାରାଂଶ ନେଇ ନାମଧାମାଦି କଳ୍ପନାରେ ସଙ୍ଗତଭାବରେ ଅନେକଗୁଡ଼ିଏ ପାଠ ଅନର୍ଗଳ ଲେଖି ଯାଇ ଅଛନ୍ତି ।

---

[୧] ଛାପାରେ ୪୦୪–୪୩୨ ପୃଷ୍ଠାରେ ଦେଖନ୍ତୁ ।

[୨] ଛାପାରେ ୪୩୩–୪୬୬ ପୃଷ୍ଠା ପର୍ଯ୍ୟନ୍ତ ଦେଖନ୍ତୁ ।

[୩] ବାପ ନାମ ହୋଇଲାକ ଜାଣ ରୂଢ଼ାସୁର ।
ତାର ପୁତ୍ର ନାମ ହେଲା ପୂଢ଼ା ଯେ ଅସୁର ।।
ନାତି ନାମ ସେହି ଅନୁକ୍ରମରେ ହୋଇଲା ।
ଏହିପରି ନାମ କାହିଁ ଦେଖାତ ନ ଥିଲା ।। ମ.ପ. ୪୩୨ ପୃ:

[୪] ଛାପାରେ ୪୬୬–୫୦୦ ପୃଷ୍ଠାଯାଏ ପଢ଼ିଯାନ୍ତୁ ।

[୧] ଛାପା ପୁସ୍ତକରେ ମଧ୍ୟପର୍ବର ଶେଷ ଭାଗରେ ରାମକୃଷ୍ଣ ଦୁହେଁ ଶାନ୍ତିପର୍ଣ୍ଣିଙ୍କ ଗୃହରେ ବିଦ୍ୟାଶିକ୍ଷା କରିବା, ଶାନ୍ତିପର୍ଣ୍ଣିଙ୍କ ପୂର୍ବ ଜନ୍ମବୃତ୍ତାନ୍ତ, ଗୁରୁସମାଦିଷ୍ଟ ରାମକୃଷ୍ଣ ଭ୍ରାତୃଦ୍ୱୟ କାଷ୍ଠାନୟନାର୍ଥ ଅରଣ୍ୟକୁ ଯିବା, ଗୁରୁଦକ୍ଷିଣା ସ୍ୱରୂପ ମୃତ ପୁତ୍ରମାନଙ୍କୁ ଆଣିଦେବା ଇତ୍ୟାଦି ବିଷୟକ ଚରିତ ଉକ୍ତ ଅଛି । ଏଥି ମଧ୍ୟରେ କେତେକ କାଳ୍ପନିକ ଥିଲେ ସୁଦ୍ଧା ଶ୍ରୀମଦ୍ଭାଗବତୋକ୍ତ [୨] ଚରିତ୍ରର ମୌଳିକତା ବିଦ୍ୟମାନ ଅଛି ।

ଅଭିଜ୍ଞ ପାଠକେ ! ପୂର୍ବ ପ୍ରକାଶିତ ଅଂଶମାନଙ୍କରେ ମୂଳ ଆଦିପର୍ବର ଅନନୁମତ ବିଷୟମାନଙ୍କର କେବଳ ବୈଷମ୍ୟାଦି ବିଚାର ଶେଷ ହୋଇଅଛି । ବର୍ତ୍ତମାନ ତଦନୁଚ୍ଚ ସଭାପର୍ବର କାର୍ଯ୍ୟଗୁଡ଼ିକ ବିଚାର୍ଯ୍ୟ । କିନ୍ତୁ ଇତଃପୂର୍ବେ ଆଦି ଓ ସଭାପର୍ବର ମଧ୍ୟସ୍ଥ ଶ୍ରୀ ସାରଳାଦାସ କବିଙ୍କ ନିର୍ଦ୍ଧାରିତ ମଧ୍ୟପର୍ବ ନାମକ ଗୋଟିଏ ଅମୌଳିକ ପର୍ବର ନାମୋଦ୍‌ଘୋଷ କରାଯାଇଅଛି । ତେବେ ତଦୀୟ ମତରେ ଶ୍ରୀ ମହାଭାରତ ଗ୍ରନ୍ଥାଗମ ଊନବିଂଶ (*) ବିଶାଳ ଶାଳାବିଶିଷ୍ଟ କି ? ଏହି ଆଶଙ୍କା ଅତ୍ରତ୍ୟ ପାଠାରମ୍ଭରୁ ଉଦ୍‌ଥାପିତ ହୋଇପାରେ । ଅତଏବ ଏ ସ୍ଥଳରେ ଆପାତତଃ ସାମବାୟିକ ବିଚାରରେ ଉଭୟ ଭାରତୀୟ ପର୍ବାନୁକ୍ରମଣିକା ବିଷୟର ସୂଚନା ସୂଚିତ କରି ତତ୍ପର କରଣୀୟରେ ତତ୍ପର ହେବୁଁ । ଦାସ କବି ମହୋଦୟ ମୌଳିକ ଗଣନୀୟ ଅଷ୍ଟାଦଶ ସଂଖ୍ୟାକୁ ଅତିକ୍ରମ କିମ୍ବା ବ୍ୟତିକ୍ରମ ନ କରି ସୁଦ୍ଧା ଅନୁକ୍ରମକୁ କିଞ୍ଚିତ୍ ଅକ୍ରମାପନ୍ନ କରିଅଛନ୍ତି । ତଦୀୟ ମହାଭାରତରେ ବହୁ ସ୍ଥଳରେ ଯେପରି ବିଷୟମାନଙ୍କର ପର୍ବବିଭାଗରେ ମଧ୍ୟ ସେପରି ଆଂଶିକ ବୈଷମ୍ୟ ଘଟିଅଛି । ମୂଳଗତ ଅଷ୍ଟାଦଶପର୍ବୀୟ ନାମକ୍ରମକୁ ଏ ମହାତ୍ମା ଏକାନ୍ତ ଅକ୍ଷୁର୍ଣ୍ଣ ରଖି

[୧] ଛାପାରେ ୫୦୧–୫୧୬ ପୃଷ୍ଠାଯାଏ ଦେଖନ୍ତୁ ।

[୨] କୃଷ୍ଣ ବଳରାମ ଅବନ୍ତୀନଗରବାସୀ ଶାନ୍ତିପର୍ଣ୍ଣିଙ୍କ ଗୃହରେ ବିଦ୍ୟା ପ· ତଦୀୟ ମୃତ ପୁତ୍ରମାନଙ୍କୁ ଆଣିଦେବା ବୃତ୍ତାନ୍ତ ଦଶମସ୍କନ୍ଧ ଊନପଞ୍ଚାଶତ୍ ଅଧ୍ୟାୟରେ ଲେଖାଅଛି ।

ଆମ୍ଭମାନଙ୍କର ସାରଳାଦାସ ମହୋଦୟ ଯେପରି ମୂଳ ମହାଭାରତରେ ଅନୁକ୍ତ କଥାମାନ ପୁରାଣାନ୍ତରାନୁସରଣରେ ଲେଖିଅଛନ୍ତି, ବଙ୍ଗଭାରତ ଆଦିପର୍ବରେ ସୁଦ୍ଧା ତଦନୁରୂପ ଅନେକଗୁଡ଼ିଏ ପ୍ରକରଣ ଦେଖାଯାଏ । ଯଥା–

୧. ଦ୍ରୌପଦୀ ସ୍ୱୟମ୍ବର ସ୍ଥଳରେ ଭାନୁମତି ସ୍ୱୟମ୍ବର । ୧୧୮ ପୃଷ୍ଠା ।

୨. ସତ୍ୟଭାମାଙ୍କ ସକାଶେ ପାରିଜାତହରଣର ସମଗ୍ର ବୃତ୍ତାନ୍ତ ।
୧୫୩–୧୫୯ ପୃଷ୍ଠା ।

୩. ସତ୍ୟଭାମା ଶ୍ରୀକୃଷ୍ଣଙ୍କୁ ନାରଦଙ୍କୁ ଦାନ ଦେବା ପରେ ତତ୍ପରିମାଣ ଧନ ପ୍ରଦାନ କରିବା ବୃତ୍ତାନ୍ତ । ୧୬୦ ପୃଷ୍ଠା ।

୪. ଦୁର୍ଯ୍ୟୋଧନସୁତା ଲକ୍ଷ୍ମଣାଙ୍କ ସ୍ୱୟମ୍ବର ଏବଂ ଶାମ୍ବକୁମାର ତାହାକୁ ଅପହରି ନେବା ବୃତ୍ତାନ୍ତ । ୧୬୪ ପୃଷ୍ଠା ।

(*) ଶାଳା–ସ୍କନ୍ଧ ଶାଖା ବା ପ୍ରଧାନ ଶାଖା ।

ନାହାନ୍ତି । ଆଦିପର୍ବର କତିପୟ ପରିଶିଷ୍ଟ କଥାମାନଙ୍କରେ ଇତସ୍ତତଃ ସମାନୀତ ବହୁବିଧ କଥାର ସଂମିଶ୍ରଣରେ ଆଦି ଓ ସଭାପର୍ବ ମଧ୍ୟରେ ମାଧ୍ୟମିକ ମଧ୍ୟପର୍ବ ନାମ କଳ୍ପିତ କରି ଅଛନ୍ତି । ଏହି କଳ୍ପନାଟି ମୂଳାନୁସରଣରେ ଅଳୀକ ହେଲେ ସୁଦ୍ଧା ନିତାନ୍ତ ଯୁକ୍ତିବିରହିତ ମନେହୁଏ ନାହିଁ । ମତିମାନ୍ ବୈଷମ୍ୟକଳ୍ପନାପ୍ରିୟ ସାରଳାଦାସ ମହାଶୟ ମନେ କରିଥିବେ, "ଦେବସତ୍ୱ ପାଣ୍ଡବମାନଙ୍କର ପ୍ରାଥମିକ ଐଶ୍ୱର୍ଯ୍ୟାଭୋଗର ଭୋଗ ସମୟ ସଭାବସାନରେ ଅବସନ୍ନ ହୋଇଅଛି । ତସମୁଦାୟ-କାଳୀନ ଚରିତମାନ ଆଦି ଓ ସଭାପର୍ବରେ ଦୁଇ ଭାଗରେ ବିଭକ୍ତ ହୋଇଅଛି । ମଦୀୟ ସମାରଚୟିଷ୍ୟମାଣ ଭାରତରେ ପ୍ରୋକ୍ତ ସମୟକୁ ଭାଗତ୍ରୟରେ ବିଭକ୍ତ କରି ଆଦି ପରେ ମଧ୍ୟ ନାମକ ପର୍ବର ଆବିର୍ଭାବ କରିବୁଁ ।" ବ୍ୟାସମୁନି ମହାଭାଗ ତତ୍ର ତତ୍ର ବର୍ଣ୍ଣିତ ଚରିତମାନଙ୍କର ଆଭ୍ୟୁଦୟିକ ଗୁଣାନୁକ୍ରମରେ ଆଦି ସଭାଦି ପର୍ବମାନଙ୍କର ନାମକରଣ କରିଅଛନ୍ତି; ମାତ୍ର ଦାସ ମୁନିଙ୍କର ଏହି ନାମକରଣ ପାଣ୍ଡବୀୟ ଅଦୂରୋଦରବିତ୍ର୍ୟତୈଶ୍ୱର୍ଯ୍ୟ ସମୟର ଗୁଣାନୁସରଣରେ ହୋଇଅଛି ବୋଲି ଅନୁମିତ ହୁଏ ।

## ମୂଳଗତ ପର୍ବମାନଙ୍କର ଅନୁକ୍ରମଣିକା –

| | |
|---|---|
| ୧ । ଆଦିପର୍ବ | ୧୦ । ସୌପ୍ତିକପର୍ବ |
| ୨ । ସଭାପର୍ବ | ୧୧ । ସ୍ତ୍ରୀପର୍ବ |
| ୩ । ବନପର୍ବ | ୧୨ । ଶାନ୍ତିପର୍ବ |
| ୪ । ବିରାଟପର୍ବ | ୧୩ । ଆନୁଶସାନିକପର୍ବ |
| ୫ । ଉଦ୍‌ଯୋଗପର୍ବ | ୧୪ । ଆଶ୍ରମବାସିକପର୍ବ |
| ୬ । ଭୀଷ୍ମପର୍ବ | ୧୫ । ମହାପ୍ରାସ୍ଥାନିକପର୍ବ |
| ୭ । ଦ୍ରୋଣପର୍ବ | ୧୬ । ଅଶ୍ୱମେଧପର୍ବ |
| ୮ । କର୍ଣ୍ଣପର୍ବ | ୧୭ । ମୌଷଳପର୍ବ |
| ୯ । ଶଲ୍ୟପର୍ବ | ୧୮ । ସ୍ୱର୍ଗାରୋହଣପର୍ବ |

## ସାରଳା ମହାଭାରତର ପୂର୍ବାନୁକ୍ରମଣିକା –

| | |
|---|---|
| ୧ । ଆଦିପର୍ବ | ୫ । ବିରାଟପର୍ବ |
| ୨ । ମଧ୍ୟପର୍ବ | ୬ । ଉଦ୍‌ଯୋଗପର୍ବ |
| ୩ । ସଭାପର୍ବ | ୭ । ଭୀଷ୍ମପର୍ବ |
| ୪ । ବନପର୍ବ | ୮ । ଦ୍ରୋଣପର୍ବ |

| | | | |
|---|---|---|---|
| ୯ । | କର୍ଣ୍ଣପର୍ବ | ୧୪ । | ଶାନ୍ତିପର୍ବ |
| ୧୦ । | ଶଲ୍ୟପର୍ବ | ୧୫ । | ଆଶ୍ରମିକପର୍ବ |
| ୧୧ । | ଗଦାପର୍ବ | ୧୬ । | ଅଶ୍ୱମେଧପର୍ବ |
| ୧୨ । | କାଇଁଶିକା ବା ଐଷିକପର୍ବ | ୧୭ । | ମୂଷଳୀ ବା ହରିବଂଶପର୍ବ |
| ୧୩ । | ନାରୀପର୍ବ | ୧୮ । | ସ୍ୱର୍ଗାରୋହଣପର୍ବ |

ଏହି କବି ଅଷ୍ଟାଦଶ ପର୍ବ ଗଣନାରେ ଗଦାପର୍ବ ବୋଲି ଯାହା ଗୋଟିଏ ପ୍ରଧାନ ପର୍ବ କରିଅଛନ୍ତି ତାହା ମୂଳ ଗ୍ରନ୍ଥର ଅନୁରୂପ ନୁହେ । ମୂଳରେ ଶଲ୍ୟପର୍ବର ପରିଶେଷଭାଗରେ ହ୍ରଦପ୍ରବେଶନାମକ ଉପପର୍ବରେ ୩୨ ଅଧ୍ୟାୟରୁ ଆରମ୍ଭ କରି ୬୫ ଅଧ୍ୟାୟ ଶେଷ କିମ୍ୱା ଶଲ୍ୟପର୍ବ ପରିସମାପ୍ତି ଯାଏଁ ଗଦାପର୍ବ ବୋଲି ଗୋଟିଏ ଉପପର୍ବ ଅଭିହିତ ଅଛି । ଏହି ନାମକୁ ନେଇ ଦାସ କବି ମହୋଦୟ ଅବୟବାବୟବିର ଅଭେଦ ବିଚାରରେ ତଦୀୟ ତ୍ୟକ୍ଷ୍ୟମାଣ ପର୍ବର ଅଭାବଜନିତ କ୍ଷତିର ପୂରଣାର୍ଥ ଏହାକୁ ଏକ ସ୍ୱତନ୍ତ୍ର ପର୍ବରୂପେ ନିର୍ଦ୍ଦିଷ୍ଟ କରିଦେଇଅଛନ୍ତି । ତଥାଚ ମୂଳଗତ ସୌପ୍ତିକ ପର୍ବର ନାମ ନ ଦେଇ ତତ୍ର ପ୍ରତିପାଦିତ କତିପୟ ବିଷୟ ବର୍ଣ୍ଣନାରେ ମାତ୍ର କାଇଁଶିକା ବା ଐଷିକ ପର୍ବ ନାମରେ ଏକ ପ୍ରଧାନ ପର୍ବ ସମାଖ୍ୟାତ କରିଅଛନ୍ତି । ମୂଳ ଗ୍ରନ୍ଥରେ ଐଷିକ ପର୍ବ ସୌପ୍ତିକ ପର୍ବର ଏକ ଅଙ୍ଗସ୍ୱରୂପ ଅଟେ । ତତଃପର ଶରତଳ୍ପଶାୟୀ ଅନଳ୍ପସତ୍ୱ ବିଦିତସର୍ବତତ୍ତ୍ୱ ଭୀଷ୍ମଙ୍କ ନିକଟରେ ସମାଗତ ଶ୍ରୀକୃଷ୍ଣାଦିସମେତ ଧର୍ମପିପାସୁ ଯୁଧିଷ୍ଠିରଙ୍କ ପ୍ରଶ୍ନରେ ତଦ୍‌ପିତାମହ ମୁଖୋଦିତ ପ୍ରଜାପାଳନ, ବ୍ରାହ୍ମଣ ଭକ୍ତି ଓ ଅନ୍ନଦାନ ବିଷୟକ ଧର୍ମୋପଦେଶକୁ ଅତିମିତପ୍ରସରରେ ପ୍ରାୟ ଅଢ଼ାଇ ପତ୍ରରେ (ଛାପାରେ ଦୁଇ ପୃଷ୍ଠା) ପରିସମାପ୍ତ କରି ଲେଖିଅଛନ୍ତି । ଭୀଷ୍ମଙ୍କର ବହୁବିଧ ଧର୍ମମୂଳକ ସଦୁପଦେଶମୟ ଅମୃତାୟମାନ ମୂଳ ଶାନ୍ତିପର୍ବଟି ୩୬୫ ଅଧ୍ୟାୟମାନଙ୍କରେ ଆଦିପର୍ବ ଓ ବନପର୍ବ ଅପେକ୍ଷା ବୃହତ୍ତର ଅଟେ । ତତ୍ସମୁଦାୟ ସାରଳାଦାସ କହିପାରି ନାହାନ୍ତି । ତଦୀୟ ବିଷୟାବତରଣିକା ସ୍ୱରୂପ ପ୍ରାୟ ଦୁଇ ପତ୍ର ପାଠମାତ୍ର ଲେଖିଅଛନ୍ତି । ଏହାପରେ ୧୬୮ ଅଧ୍ୟାୟରେ ନିବଦ୍ଧ ଶାନ୍ତିସହୋଦର ଅନୁଶାସନ ପର୍ବର ବିଷୟମାନ ଲେଖିବା ତେଣେ ଥାଉ, ନାମ ପର୍ଯ୍ୟନ୍ତ ବିଲୋପ କରିଦେଇ ଅଛନ୍ତି । ତଥାଚ ମହାପ୍ରାସ୍ଥାନିକ ପର୍ବର ନାମ ନ ଦେଇ ତତ୍ର ସମୁଦିତ କଥା ସାରାଂଶକୁ ସ୍ୱର୍ଗାରୋହଣ ପର୍ବରେ ଭୁକ୍ତ କରିଅଛନ୍ତି । ପରନ୍ତୁ ତାଳପତ୍ର ପୁସ୍ତକରେ ମୂଷଳୀ ପର୍ବର ନାମ ମଧ୍ୟ ଠିକ୍ ନିର୍ଦ୍ଧାରିତ ନାହିଁ । କିନ୍ତୁ ତତ୍ର କୁତ୍ରଚିଦ୍ ତତ୍‌ପରିବର୍ତ୍ତରେ ହରିବଂଶ ପର୍ବ ନାମର ଉଲ୍ଲେଖ ଦେଖାଯାଇଅଛି । ସାରଳା ମହାଭାରତର ବିଶେଷତଃ ଉତ୍ତରାର୍ଦ୍ଧ ଅର୍ଥାତ୍ ଗଦାପର୍ବ ପ୍ରାରମ୍ଭରୁ ସ୍ୱର୍ଗାରୋହଣ ପର୍ବ ପର୍ଯ୍ୟନ୍ତ ଛାପା ଆଉ ତାଳପତ୍ର ପୁସ୍ତକରେ ପ୍ରାରମ୍ଭ ଓ ପରିସମାପ୍ତି (ପର୍ବ ପ୍ରାରମ୍ଭ ଓ ଶେଷ କଥା) ଏକପ୍ରକାର ରହିନାହିଁ ।

ଏହା ଆଦର୍ଶ ଲେଖକମାନଙ୍କର ବୁଦ୍ଧିଦୁର୍ବିଧତାର ବିଷମ ଚାତୁର୍ଯ୍ୟର ଫଳ । ଏଥିପାଇଁ କବି ଦାୟୀ ନୁହନ୍ତି । ଏହାର ପ୍ରତ୍ୟକ୍ଷ ପ୍ରମାଣ ପାଠକେ କ୍ରମଶଃ ପାଇପାରିବେ । ସଂପ୍ରତି ସଭାପ୍ରମୁଖପର୍ବଗତ ବିଷୟବୈଷମ୍ୟ ବିଚାର କରାଯାଉ ।

ପ୍ରିୟ ପାଠକଗଣ ! ସାରଳା ମହାଭାରତର ସମଗ୍ର ପର୍ବମାନଙ୍କର ପ୍ରତ୍ୟେକ ଘଟନାକୁ ମୂଳସହିତ ମିଳାଇବାକୁ ଉଭୟ ସମଗ୍ର ଭାରତ ପାଠକରି ଦେଖିଅଛୁଁ, ସମଧିକ ସ୍ଥଳରେ ବିଷୟବୈଷମ୍ୟ ଘଟିଅଛି । ସେହି ସେହି ସ୍ଥାନମାନ ମଧ ଉଲ୍ଲେଖ କରି ରଖିଅଛୁଁ । ମୂଳ ସଂଗେ ତାହାର ଯେଉଁ ଯେଉଁ ଅଂଶ ମିଳୁନାହିଁ, ବା ଏକପ୍ରଖ୍ୟ ହେଉନାହିଁ, ମୂଳାନୁକ୍ତ ଯାହା ଯାହା ଅତିରିକ୍ତ ଲେଖା ଅଛି, ଅଥଚ ଯାହା ଯାହା କାଳ୍ପନିକ ଓ ଅନ୍ୟ ପୁରାଣରୁ ଆନୀତ, ସେ ସବୁ ମଧ ନିର୍ଦ୍ଦେଶପୂର୍ବକ ରଖିଅଛୁଁ; କିନ୍ତୁ ଦେଖିଲୁ ଯେ, ତତ୍ସମୁଦାୟର ବିବରଣ ଇତଃପୂର୍ବେ ପ୍ରକାଶିତ ଅଂଶର ଅନୁକ୍ରମରେ ପ୍ରତ୍ୟେକ ଚରିତ ସଂବିଧାନର ପ୍ରାତ୍ୟଙ୍ଗିକ ପରିଚୟ ପ୍ରଦାନପୂର୍ବକ ଲେଖିଗଲେ ଉଭୟ ଭାରତାଦର୍ଶସ୍ୱରୂପ ବୃହଦାକାର ଆଉ ଗୋଟିଏ ସ୍ୱତନ୍ତ୍ର ବାଳଭାରତ ହୋଇପଡ଼ିବ । ପରନ୍ତୁ କେତେକ ବିଷୟର ପରିଚୟ ନିତାନ୍ତ ତ୍ୟାଗ କଲେ ଲେଖକକୁ ପ୍ରତିଜ୍ଞାନୁମୋଦିତ କର୍ତ୍ତବ୍ୟରୁ ବିଚ୍ଛେଦପୂର୍ବକ ପ୍ରକୃତ ସତ୍ୟକୁ ଲୁକ୍କାୟିତ ରଖିବାକୁ ହେବ; ପୁଣି ପାଠକ ସମାଜରେ ନିଗୂଢ଼ ପ୍ରତାରକ ହେବାକୁ ପଡ଼ିବ । ଅତଏବ "ତାଂ ଚାପ୍ୟେତାଂ ମାତରଂ ମଙ୍ଗଳାନାଂ, ଧେନୁଂ ଧୀରାଃ ସନୃତାଂ ତାରମାହୁଃ" ଏହି ମହନୀୟ ପ୍ରବଚନରେ ପ୍ରଣୋଦିତାନ୍ତଃକରଣ ହୋଇ ବିଚ୍ଛିନ୍ନସଂଶୟ ସତ୍ୟଭୂତ କଥାର ଉପଲବ୍ଧି ସକାଶେ ପ୍ରତ୍ୟେକ ବିଷୟର ଦିଗ୍‌ଦର୍ଶନ ସ୍ୱରୂପ ଲେଖାରେ ପ୍ରବୃତ୍ତ ହେଉଅଛୁଁ ।

ମୂଳ ସଭାପର୍ବର ପ୍ରାରମ୍ଭରେ ମହାମାୟ ମୟଦାନବ ଅର୍ଜୁନଙ୍କର ପୂର୍ବୋପକାର-ମୂଳକ ଉପଚିକୀର୍ଷାରେ ପାଣ୍ଡବମାନଙ୍କପାଇଁ ଯାହା କି ଅଭୂତପୂର୍ବ ଓ ଅଦ୍ୱିତୀୟ ତାଦୃଶ ଲୋକୋତ୍ତର ସତ୍ତ୍ୱନୁଷ୍ୟମନଃ-ପ୍ରତିମ ସୁପ୍ରସନ୍ନ ରତ୍ନମୟ ସଭାକୁ ଚତୁର୍ଦ୍ଦଶ ମାସରେ ନିର୍ମାଣ କରିଥିଲେ । (୧) ଏହି ବିଷୟକୁ ସାରଳାଦାସ କବି ସଭାପର୍ବସ୍ଥ ନ କରି ତତ୍‌ପୂର୍ବବର୍ତ୍ତୀ ପର୍ବରେ କିଂଚିଦ୍ ବ୍ୟତିକ୍ରମତାସହ ନିହିତ କରିଅଛନ୍ତି । ତତଃପର ସମୁଦିତ ଲୋକପାଳ ସଭାଖ୍ୟାନାଭିଧ ଉପପର୍ବର (ପଞ୍ଚମାଧ୍ୟାୟ ପ୍ରାରମ୍ଭରୁ ଦ୍ୱାଦଶାଧ୍ୟାୟ ପର୍ଯ୍ୟନ୍ତ) ବହୁରାଜନୀତିଗର୍ଭକ ନାରଦମୁଖ-ନିଃସୃତ ଅମୃତାୟିତ "ଅଷ୍ଟାଧ୍ୟାୟର" କଥାଗୁଡ଼ିକ ପରିତ୍ୟାଗ କରିଅଛନ୍ତି । ତଦନନ୍ତର ଜରାସନ୍ଧବଧ ବିଧାନରେ ଚାରି ଉଣା ଲକ୍ଷେ ରାଜା

---

(୧) ଇଦୃଶୀଂ ତାଂ ସଭାଂ କୃତ୍ୱା ମାସୈଃ ପରିଚତୁର୍ଦ୍ଦଶୈଃ ।
ନିଷ୍ଠିତାଂ ଧର୍ମରାଜାୟ ମୟୋ ରାଜନ୍ ନ୍ୟବେଦୟେତ୍ ।
ସ. ପ. ୩ ଅ. ୩୮ ଶ୍ଲୋକ ।

କାରାଗାରରେ ଉପଗ୍ରହୀଭୂତ ଥିବା, ଶ୍ରୀକୃଷ୍ଣସହାୟ ଭୀମାଦି ମାଗଧଚତୁର୍ଦ୍ୱାରସ୍ଥ ଜାରାସନ୍ଧ ପ୍ରଭୃତିଙ୍କର ଉଲ୍ଲଂଘନପୂର୍ବକ ବିଶାଳ ଶାଲ୍ମଳୀଶାଖ ବିଚ୍ଛେଦନ କରିବା ଇତ୍ୟାଦିରେ କେତେକ ଅମୂଳକ କଥାମାନ ବୈଲକ୍ଷଣ୍ୟ ସହକାରରେ ଲେଖିଅଛନ୍ତି । ଅତ୍ର ପାରାଶର୍ଯ୍ୟ ମତରେ ଶ୍ରୀକୃଷ୍ଣ-ସନାଥ ଭୀମପ୍ରମୁଖ ଅମନ୍ଦସୁନ୍ଦରକନ୍ଦର ଗୋରଥାଭିଧ ଭୂଧରର ଚୈତ୍ୟକ ଶୃଙ୍ଗ ଭଙ୍ଗପୂର୍ବକ ଜରାସନ୍ଧ ନଗରୀରେ ପ୍ରବେଶ କରିବା ପାଇଁ ପ୍ରଥମତଃ ତତ୍ରସ୍ଥ ବଜ୍ରସାର ବାର୍ଷୁକଜଳଦ-ଗମ୍ଭୀରସ୍ୱନ ଭେରୀତ୍ରୟକୁ ମାତ୍ର ଧ୍ୱସ୍ତ କରିଥିଲେ । ତେତେବେଳେ ଦୃଢ଼ସନ୍ଧ ଜରାସନ୍ଧଙ୍କ କର୍ତ୍ତୃକ ଷଡ଼ଶୀତି ରାଜା ମାତ୍ର ବନ୍ଦୀଭୂତ ଥିଲେ । ଆଉ ଚତୁର୍ଦ୍ଦଶ ରାଜା ସ୍ୱତନ୍ତ୍ର ଥିଲେ । (୧) ପୁନଶ୍ଚ ଏହି କବି ମହୋଦୟ ସ୍ୱମତ ସମର୍ଥନାର୍ଥ ନିର୍ଜ୍ଜୀବ ଭେରୀ ଓ ଶାଲ୍ମଳୀ ବୃକ୍ଷର ମାନୁଷକ୍ରିୟାକରଣତ୍ୱରେ ତଥାଚ ଦ୍ୱାସ୍ଥ ଗର୍ଦ୍ଦଭ ସମ୍ବନ୍ଧରେ ପ୍ରଶ୍ନ ଓ ସମାଧାନପୂର୍ବକ ତିନିଗୋଟି କାଳ୍ପନିକ ଚରିତ ଅବତାରିତ କରିଅଛନ୍ତି । (୨) ସର୍ବତ୍ର ଭୀମସେନ ପ୍ରଥମାହବରେ ହତୌଜ ହୁଅନ୍ତି ବୋଲି ଏହାଙ୍କ ହୃଦୟରେ ସଂପୂର୍ଣ୍ଣ ବିଶ୍ୱାସ ବଦ୍ଧମୂଳ ହୋଇ ରହିଥିବାରୁ ଏଠାରେ ପ୍ରୋକ୍ତ ବିଶ୍ୱାସର ପ୍ରଚୋଦନାରେ କହିଅଛନ୍ତି କି, ଭୀମ ସ୍ୱୀୟ ନିସର୍ଗସୁଲଭ ବିସ୍ମରଣଶୀଳତାବଶରୁ ବାର୍ହଦ୍ରଥ ଜରାସନ୍ଧ ବିନାଶର ଭେଦ ବିସ୍ମରଣରେ କିଂକର୍ତ୍ତବ୍ୟବିମୂଢ଼ ଓ ଅଦୃଷ୍ଟୋପାୟ ହେବାରୁ ଶ୍ରୀକୃଷ୍ଣ ଖଣ୍ଡିଏ ବସ୍ତ୍ରକୁ ଦ୍ୱିଫାଳ କରି ଶତ୍ରୁବଧର ଉପାୟ ଦର୍ଶାଇ ଦେଲେ । ତେତେବେଳେ ଭୀମକର୍ମା ଭୀମସେନ ବୀରଗାମିନୀ ଜୟଲକ୍ଷ୍ମୀକି ପ୍ରାପ୍ତ ହେଲେ । ଶ୍ରୀ ସାରଳାଦାସଙ୍କ ପରି କାଶୀରାମଦାସ

---

(୧) ଷଡ଼ଶୀତିଃ ସମାନୀତାଃ ଶେଷା ରାଜଂଚତୁର୍ଦ୍ଦଶ ।
ଜରାସନ୍ଧେନ ରାଜାନଃ ତତଃ କ୍ରୂରଃ ପ୍ରବର୍ତ୍ତ୍ୟତେ ।
ସ. ପ. ୧୫ ଅ. ୨୫ ଶ୍ଳୋକ ।

(୨) ଆମ୍ଭମାନଙ୍କ ଆଦିମ ଭାରତକର୍ତ୍ତା ଅଳୀକକଳ୍ପିତ ହେଉ କିମ୍ବା ନିର୍ବ୍ୟଳୀକ ହେଉ ଯେପରି ଶାଲ୍ମଳୀର କଥା ଅବତାରଣା କରିଅଛନ୍ତି, ସେପରି ବଙ୍ଗ ଭାରତକର୍ତ୍ତା କାଶୀରାମ ମଧ୍ୟ ଅତ୍ର ତତ୍ରସ୍ଥ ମହାନାଗ ନିବାରଣାର୍ଥ କୃଷ୍ଣାଦିଷ୍ଟ ଗରୁଡ଼ଙ୍କର ସମାବେଶନରୂପକ ଅମୌଳିକ କଥାର ଅବତାରଣ କରିଅଛନ୍ତି ।

ଏଇରୂପ ବିଚାର କରେନ ତିନିଜନ,
ଦ୍ୱାର ତ୍ୟଜି କରିଲେନ ଗିରି ଆରୋହଣ ।
ନାଗେର କାରଣ ଦେବ ଖଗପତି-ପତି,
ଖଗପତି ସ୍ମରଣ କରେନ ଶୀଘ୍ରଗତି ।
ଆଇଲ ଭୁଜଙ୍ଗରିପୁ କୃଷ୍ଣେର ସ୍ମରଣେ,
ଏ ତିନିଭୁବନ କମ୍ପେ ଯାହାର ଗର୍ଜ୍ଜନେ ।
ଭୟତେ ଭୁଜଙ୍ଗ ଦୁଇ ପ୍ରବେଶ ପାତାଲେ,
କୃଷ୍ଣେର ମେଲାଣି ମାଗି ଖଗପତି ଚଲେ । ସ. ପ. ୧୮୯ ପୃଷ୍ଠା ।

ମହାଶୟ ମଧ ଏ ସ୍ଥଳରେ ଏତାଦୃଶ ସ୍ମାରକରୂପେ ଗୋଟିଏ କଥା କହିଅଛନ୍ତି । [୧] ଏଥିରୁ ଅନୁମିତ ହୁଏ ଯେ ଏହାର ଅନୁକରଣୀୟ କୌଣସି ପ୍ରକାର କଥା ଅନ୍ୟ ପୁରାଣାଦିରେ ନିଗଦିତ ଥାଇପାରେ । କିନ୍ତୁ ଏ ସ୍ଥଳରେ ଶ୍ରୀକୃଷ୍ଣଙ୍କର ହସ୍ତିନାରୁ ଦ୍ୱାରକା ପ୍ରୟାଣ ସମୟରେ ମଧ୍ୟମାର୍ଗରେ ଶବର ବ୍ୟାଧାଦିଙ୍କୁ ମାଂସ କାଷ୍ଠାଦି ଆନୟନାର୍ଥ, କୁବେରଙ୍କୁ ପ୍ରଚୁର ରତ୍ନାଦି ପ୍ରଦାନାର୍ଥ, ମୟଙ୍କୁ ସଭାସମ୍ପସ୍ଥାପନାର୍ଥ ସମାଦେଶକରଣ ପ୍ରଭୃତି ଅନେକଗୁଡ଼ିଏ ମୂଳାନୁକ୍ତ କଥାର ସବିସ୍ତର ପ୍ରସରଣ ଅନାବଶ୍ୟକ ବୋଧହୁଏ ।

ଅତଃପର ଦିଗ୍‌ବିଜୟୋପପର୍ବ ପ୍ରାରମ୍ଭରେ ଉକ୍ତ ଅଛି କି ଯୁଧିଷ୍ଠିରାଦିଷ୍ଟ ପବିତ୍ର-ସୌଭ୍ରାତ-ଚାରିତ୍ର-ଭୂଷିତ ଭୀମ ପ୍ରମୁଖ ଭ୍ରାତୃଚତୁଷ୍ଟୟ ଯଥାକ୍ରମେ ପ୍ରାଚୀ ଉଦୀଚୀ ପ୍ରତୀଚୀ ଓ ଅବାଚୀ ଦିଗକୁ ଜୈତ୍ରଯାତ୍ରା କଲେ । [୨] ସାରଳାଦାସ କବି ଏହି ସୁଶୃଙ୍ଖଳିତ ଦିଗ୍‌ବିଭାଗ କ୍ରମକୁ ସ୍ମୃତିକୋଷରେ ଠିକ୍ ପର୍ଯ୍ୟାୟକ୍ରମରେ ଯଥାଯଥ ରଖି ନ ପାରି କିଂଚିତ୍ ଭିନ୍ନକ୍ରମ କରିଦେଇଅଛନ୍ତି [୩] ବିଶେଷତଃ ଏହାଙ୍କ ବର୍ଣ୍ଣିତ ଭୀମାଦି ଦିଗ୍‌ବିଜୟକ୍ରମ ମୂଳଠାରୁ ବହୁ ଦୂରରେ ପ୍ରତିଷ୍ଠିତ । ଏତତ୍‌ପ୍ରକରଣରେ "ଭୀମାଦିମାନେ ରାଜନ୍ୟବୃନ୍ଦଙ୍କୁ ନିମନ୍ତ୍ରିତ ଓ ଅଧୀନ କରିବାକୁ ଯାଇ ଦୁର୍ବୃତ୍ତ କିମ୍ବା ଅବଜ୍ଞାକାରୀ ରାଜାମାନଙ୍କୁ ପରାଭୂତ କିମ୍ବା ନିହତ କରି ସ୍ୱର୍ଣ୍ଣରତ୍ନାଦି ଆଣିଥିଲେ" ଏତିକିମାତ୍ର କଥାର ପ୍ରକୃତତ୍ୱ ବା ମୌଳିକସତ୍ତା ସାରଳାଭାରତଦ୍ୱାରା ପ୍ରତିପାଦିତ ହୋଇ ପାରିବ । ଅନ୍ୟାନ୍ୟ ବିଷୟ ଓ ବର୍ଣ୍ଣନାଗୁଡ଼ିକ ଆଉ ନାମଧାମାଦି ସମସ୍ତ ଉତ୍କଳ କବିଙ୍କ କପୋଳକଳ୍ପିତ । ତଥାପି ଏ ସବୁ ତଦୀୟ ମହତୀ ଶକ୍ତିର ସୂଚକ ଓ ପ୍ରଜ୍ଞାପରିଚାୟକ । ମୂଳରେ ପଞ୍ଚବିଂଶାଧ୍ୟାୟ ପ୍ରାରମ୍ଭରୁ ଦ୍ୱାତ୍ରିଂଶ

---

[୧] ବୃକୋଦରେ ଦେଖାଇଯା ଦିଲେନ ଶ୍ରୀନାଥ ।
ଦୁଇକରେ ଧରି ଚିରିଲେନ ବେଣାପାତ ॥ ଇତ୍ୟାଦି । ସ.ପ. ୧୯୨ ପୃଷ୍ଠା ଦେଖ ।

[୨] ସସୈନ୍ୟାଃ ପ୍ରଯଯୁଃ ସର୍ବେ ଧର୍ମରାଜେନ ପୂଜିତାଃ ।
ଦିଶଂ ଧନପତେରିଷ୍ଟା ମଜୟଦ୍ ପାକଶାସନିଃ ।
ଭୀମସେନସ୍ତଥା ପ୍ରାଚୀଂ ସହଦେବସ୍ତୁ ଦକ୍ଷିଣାଂ ।
ପ୍ରତୀଚୀଂ ନକୁଲୋ ରାଜନ୍ ଦିଶଂ ବ୍ୟଜୟଦାସ୍ତ୍ରବିଦ୍ । ସ.ପ. ୨୫ ଅ: ୯, ୧୦ ଶ୍ଳୋକ ।

[୩] କ. ଆପଣେ ଶାଢ଼ୀ ଯେ ଦେଲେ ବାୟୁ ନନ୍ଦନକୁ ।
ତୁମ୍ଭେ ଦିଗେବିଜେ କର ପଶ୍ଚିମ ଦିଗକୁ ॥
ଖ. ଯୁଧିଷ୍ଠିଙ୍କ ସନ୍ନିଧରେ ବିଜେ ନନ୍ଦବାଳ ।
ସନ୍ନିଧକୁ ହକାରିଲେ କୁମାର ନକୁଳ ॥
ବୋଇଲେ ତୁ ଏବେ ଯାଅ ଦକ୍ଷିଣ ଯେ ଦିଗ ।
ଏକୋନ ଅୟୁତ ରାଜା ଘେନି ଆସ ବେଗ ॥
ଗ. ଚଳଇ ଯେ ସହଦେବ ପ୍ରଭୁଙ୍କ ବଚନେ
ନିମନ୍ତ୍ରିଣ ଆଣିବାକୁ ପୂର୍ବ ରାଜାଗଣେ ॥ ଛାପା ପୁସ୍ତକ ୫୪ ପୃଷ୍ଠା ଦେଖନ୍ତୁ ।

ଶେଷ ପର୍ଯ୍ୟନ୍ତ ୨୧୮ ଶ୍ଲୋକରେ ମାତ୍ର ଦିଗ୍‌ବିଜୟ ପର୍ବ ସମାପ୍ତ । ଏହାକୁ ସାରଳାଦାସ କବି ନାନାବିଧ ଅବାନ୍ତର କଥାମାନଙ୍କରେ ସୁବିସ୍ତୃତ କରିଅଛନ୍ତି । ତଥାପି ରଚନାପ୍ରଣାଳୀ ମୂଳାନୁମତ ଯାଥାତଥ୍ୟରେ ରହିତ ହେଲେ ସୁଦ୍ଧା ସ୍ୱକବିତ୍ୱଦ୍ୟୋତକ । କଳ୍ପନାଗୁଡ଼ିକ ସୁଦ୍ଧା ମହତ୍ତ୍ୱବ୍ୟଞ୍ଜକ ଓ ବହୁ ଶକ୍ତିସାପେକ୍ଷ । ମାତ୍ର ଅତ୍ର ଉକ୍ତ ନକୁଳଙ୍କ ଦିଗ୍‌ବିଜୟ ସନ୍ଦର୍ଭରେ ତାଳପତ୍ରସ୍ଥ ଅନେକଗୁଡ଼ିଏ ପାଠ (ସ୍ଥାନେ ସ୍ଥାନେ) ଛାପାରେ ନାହିଁ ।[୧]

ଅତଃପର ଅଧ୍ୟାୟତ୍ରୟ (୩୩-୩୫) ବା ଏକଶତ ଶ୍ଲୋକରେ ନିରସୂଚ ରାଜସୂୟ ପର୍ବ, ଅଧ୍ୟାୟ ଚତୁଷ୍ଟୟ (୩୬ – ୩୯) ବା ଏକାଦଶାଧିକଶତଶ୍ଲୋକରେ ଅର୍ଘାହରଣପର୍ବ ଅଧ୍ୟାୟଷଟ୍‌କ (୪୦– ୪୫) ବା ବିଂଶୋତ୍ତର ଦ୍ୱିଶତ ଶ୍ଲୋକରେ ଶିଶୁପାଳବଧପର୍ବ ଧାରାବାହିକ ରୂପେ ନିଗଦିତ ଅଛି । ଏହି ମିତପ୍ରସର ପ୍ରକରଣ-ତ୍ରିତୟକୁ ଉତ୍କଳ ମହାଭାରତକର୍ତ୍ତା ସେହି ସେହି ସ୍ଥାନରେ ଅନ୍ୟାନ୍ୟ ପ୍ରକାର କଥା ଓ ଉପକଥାମାନଙ୍କୁ ଆନୁଷଙ୍ଗିକ ରଖି ଅତି ବିସ୍ତୃତ କରିଅଛନ୍ତି । ରାଜସୂୟପର୍ବ ପାଠରେ ଯାଜ୍ଞିକାଧିକାର ନିଯୋଗ ପରିପାଟି କିଞ୍ଚିତ ଭିନ୍ନପ୍ରକାର ହେଲେ ସୁଦ୍ଧା କାର୍ଯ୍ୟାନୁଗୁଣ ବ୍ୟକ୍ତିମାନଙ୍କୁ ନିଯୋଗି ଅଛନ୍ତି । ଏଥି ମଧ୍ୟରେ କୁତ୍ରଚିତ୍ ସଙ୍ଗତିସନ୍ଦର୍ଭର ସାମଞ୍ଜସ୍ୟ ଲଗାଇ, ଅପିଚ କୁତ୍ରଚିତ୍ ଭ୍ରାନ୍ତି ବା ପ୍ରମାଦବଶତଃ ନାନା କଥା କହିଅଛନ୍ତି ।

(୧) ଯଯାତିପୁତ୍ର ଯାଯାତିକ ଦୁହେଁ ପିତୃଶାପବିମୋଚନାର୍ଥ କାଳିଞ୍ଜନ ଓ କାଳଧ୍ୱଂସ ନାମରେ ସଭାର ଦ୍ୱାସ୍ଥ ଓ ଡଗରସ୍ୱରୂପେ ଆସିଥିବା,

(୨) ପାଣ୍ଡବମାନଙ୍କର ଭବିଷ୍ୟମାଣ ଅଜ୍ଞାତବାସର ସ୍ମରଣରେ ଯୁଧିଷ୍ଠିର ବିରାଟରାଜଙ୍କୁ ପ୍ରତ୍ୟକ୍ଷତଃ ସମ୍ୟକ୍ ଦର୍ଶନ ନ ଦେବା [୨] ଏବଂ ପଞ୍ଚଦିବସାବସାନରେ ବିକ୍ରମୈକରସ ଭୀମସେନ ଅନୁକୂଳ ଗଳହସ୍ତିକା ପ୍ରହାରରେ ତାହାଙ୍କୁ ଧର୍ମରାଜଙ୍କ ଅଭିମୁଖରେ ଅତ୍ୟଳ୍ପକ୍ଷଣ ମାତ୍ର ଉପସ୍ଥିତ ରଖିବା,

(୩) ବିରାଟ ନୃପତିଙ୍କି ନିମନ୍ତ୍ରଣପୂର୍ବକ ସଙ୍ଗେ ଆଣି ନାହାନ୍ତି ବୋଲି ଶ୍ରୀକୃଷ୍ଣ ରୋଷାମର୍ଷପରୀତ ହୃଦୟରେ ଲଲାଟତଟନିକଟ ଘଟିତବିକଟ ଭ୍ରୂକୁଟି ହୋଇ ଆକସ୍ମିକ ସଂରମ୍ଭାରମ୍ଭରେ ଭୀମଙ୍କ ମସ୍ତକ ଛେଦନାର୍ଥ [୩] ଚକ୍ରହସ୍ତ ହେବାରୁ ଭୀମ ଭୀତ ହୋଇ ଅବନତଧୃତିରେ ପଶ୍ଚାତ୍‌ପଦ ହେବା,

---

[୧] ମୂଳ ଦିଗ୍‌ବିଜୟ ପର୍ବରେ ଯେପରି ଅର୍ଜୁନାଦିକୃତ ତତ୍ ତତ୍ ଦିଗସ୍ଥ ରାଜାମାନଙ୍କ ପ୍ରତି ନିମନ୍ତ୍ରଣ କ୍ରିୟା ମଧ୍ୟ ଏକାବେଳକେ ଉକ୍ତ ଅଛି । ଓଡ଼ିଆ ଭାରତରେ ମଧ୍ୟ ତଦନୁରୂପ; କିନ୍ତୁ ବଙ୍ଗ କାଶୀରାମଦାସଙ୍କ ଭାରତରେ ଦିଗ୍‌ବିଜୟ ପରେ ନିମନ୍ତ୍ରଣ ପ୍ରକ୍ରିୟା ଅନ୍ୟତ୍ର ପୃଥକ୍ ଗଠିତ ।

[୨] ଛାପାରେ ୨୯୭ ଏବଂ ୩୩୨ ପୃଷ୍ଠା ପରେ ଦେଖନ୍ତୁ ।

[୩] ଶ୍ରୀକରେ ଚକ୍ର ଧଇଲେ ଦେବ ଶିରୀବଞ୍ଚି ।
ଭୟ ପାଇ ଭୀମସେନ ପଛେ ଗଲା ଘୁଞ୍ଚି ।।

ସ.ପ. ଛାପା ପୁସ୍ତକରେ ୨୯୮ ପୃଷ୍ଠା ଦେଖନ୍ତୁ ।

(୪) ଉଚ୍ଛିଷ୍ଟ ପତ୍ରାଦିର ଭସ୍ମୀକରଣାର୍ଥ ମେରୁଶୃଙ୍ଗ ଋଷିଙ୍କ ଆନୟାନାଦି ଚରିତ,[୧]

(୫) ହିଡ଼ିମ୍ବିକା ଓ ଦ୍ରୌପଦୀ ଦେବୀଙ୍କର ପରସ୍ପର ସାପତ୍ନିକ ଅସୂୟାଜନିତ ଭର୍ତ୍ସନା ଓ ଶାପଦାନ ବୃତ୍ତାନ୍ତ,[୨]

(୬) ଘଟୋତ୍କଚଙ୍କ ଦ୍ୱାରା ଲଙ୍କେଶ ବିଭୀଷଣଙ୍କୁ ଆମନ୍ତ୍ରି ଅଣାଇବା ଏବଂ ତଦୀୟ ସତ୍କାରକରଣାର୍ଥ ଲାଙ୍ଗୁଳାଗ୍ରବିନ୍ୟସ୍ତ-କପିସନ୍ଦୋହ ହନୁମାନ୍ ଶ୍ରୀକୃଷ୍ଣଙ୍କ ସ୍ମରଣମାତ୍ରେ ଉପସ୍ଥିତ ହେବା,

(୭) ତଥାଚ ପ୍ରସ୍ତାବିକମତେ ଯୁଗନ୍ୟାସ ରାଜାଙ୍କ ଚରିତ, [୩]

(୮) ଧୃଷ୍ଟଦ୍ୟୁମ୍ନଙ୍କ ପ୍ରତି ଯୁଧିଷ୍ଠିରଙ୍କ ନମସ୍କାରରେ ଶ୍ରୀକୃଷ୍ଣ ସାସୂୟ ଓ ଅହଙ୍କାରସଂକ୍ଲନମନା ହେବାରୁ ବ୍ୟାସଦେବ ଧାର୍ଷ୍ଟଦ୍ୟୁମ୍ନେୟ ମହତ୍ତ୍ୱସୂଚକ ଜନ୍ମବୃତ୍ତାନ୍ତରେ ତାହାଙ୍କୁ ପ୍ରୀତ କରିବା,[୪]

(୯) ମାର୍ଗଣପ୍ରାର୍ଥିତ ଦାନ ବିନା ଅମୋଘଦଯୋଗ ଯାଗର ଫଳ ବ୍ୟର୍ଥୀକରଣାର୍ଥ ଦୂରାଗ୍ରହଗ୍ରାହଗ୍ରହାବିଷ୍ଟ ବିନଷ୍ଟସତ୍ୱ-ପ୍ରକୃତିକ ଦୁଷ୍ଟଚେଷ୍ଟ ଦୁର୍ଯ୍ୟୋଧନାଦିଙ୍କ ମନ୍ତ୍ରଣାରେ ଶିଶୁପାଳ  ଶତରଥ ସ୍ୱର୍ଣ୍ଣ ମାଗିବା ସ୍ଥଳରେ ଭଣ୍ଡାର ରିକ୍ତ ପଡ଼ିଅଛି ବୋଲି ଭାଣ୍ଡାଗାରିକ ଦୁର୍ଯ୍ୟୋଧନ ଜଣାଇବା,

(୧୦) ତଦ୍‌ପରେ ବିଗଳଦ୍‌ସର୍ବାନର୍ଗଳଦ୍‌ଦୁଷ୍କୃତିନିଗଳ ଧର୍ମାବତାର ଅମୋଘବାକ୍ ଯୁଧିଷ୍ଠିରଙ୍କ ଆଦେଶରେ ସମାଦିଷ୍ଟ ଦୁର୍ଯ୍ୟୋଧନଙ୍କ ହସ୍ତସ୍ପର୍ଶମାତ୍ରେ ଲୌହପ୍ରସ୍ତରାଦି ସ୍ୱର୍ଣ୍ଣରତ୍ନାଦିରେ ପରିଣତ ହେବା,[୫]

(୧୧) ଗୋସିଂହ ଦୈତ୍ୟାପତ୍ୟ ଜେନାବଳୀ ନାମକ ନଗରର ଅଧୀଶ୍ୱର ଜୟସିଂହ ଦୈତ୍ୟ ଯାଜ୍ଞିକ ନିମନ୍ତ୍ରଣରାହିତ୍ୟ-ସଂପ୍ରବୃଦ୍ଧ-କ୍ରୋଧାନ୍ଧତାରେ ଯୁଦ୍ଧାର୍ଥ ଆସି ଫାଲ୍‌ଗୁନିଙ୍କ ଦ୍ୱାରା ନିହତ ହେବା ଏବଂ ତତ୍ରାଗତ ମାର୍କଣ୍ଡେୟଙ୍କ [୬] ପ୍ରଶ୍ନରେ ମହର୍ଷି ଦ୍ୱୈପାୟନ ଗୋସିଂହେୟ ଜନ୍ମବିବରଣାଦି କହିବା ବୃତ୍ତାନ୍ତମାନ ପଲ୍ଲବିତ କରିଅଛନ୍ତି । ଏ ସବୁ ମୂଳ ମହାଭାରତରେ କଥିତ ନାହିଁ ସତ୍ୟ, ମାତ୍ର ଏତାବତୀୟ ଘଟନାମାନଙ୍କରୁ କେତେକ ଅନ୍ୟାନ୍ୟ ପୁରାଣାଦିରେ ସମୁଦିତ ବୋଲି ପ୍ରତୀତି ଜନ୍ମେ ।

ମସ୍ୟାଧିପଙ୍କ ସମ୍ବନ୍ଧରେ ଏଠାରେ ସାଦୃଶବିସ୍ମୟବ୍ୟଞ୍ଜକ କିମ୍ବା ଅବିମୃଷ୍ୟକାରିତାସୂଚକ ବ୍ୟାପାରମାନ ଉକ୍ତ ଅଛି, କାଶୀରାମଦାସଙ୍କ ବଙ୍ଗ ଭାରତରେ ସୁଦ୍ଧା ଏତଦ୍‌ପ୍ରକରଣରେ ସ୍ଥାନେ ସ୍ଥାନେ ତଦ୍ରୂପ ଘଟନା ବର୍ଣ୍ଣିତ ଥିବାର ଦେଖାଯାଏ । ସମାଲୋଚ୍ୟ ଭାରତରେ ଯୁଧିଷ୍ଠିର ଦେବ କିମ୍ବା ତତ୍ରତ୍ୟ ସାମାଜିକମାନଙ୍କ ମତରେ

[୧] ସ.ପ. ଛାପାରେ ୩୦୩ — ୩୦୫ ପୃଷ୍ଠା ଦେଖନ୍ତୁ ।
[୨] ସ.ପ. ଛାପା ପୁସ୍ତକରେ ୩୧୧ — ୩୧୨ ପୃଷ୍ଠା ଦେଖନ୍ତୁ ।
[୩] ସ.ପ. ଛାପାରେ ୩୨୯ — ୩୩୨ ପୃଷ୍ଠା ଦେଖନ୍ତୁ ।
[୪] ସ.ପ. ଛାପାରେ ୩୩୫ — ୩୩୬ ପୃଷ୍ଠା ଦେଖନ୍ତୁ ।
[୫] ଛାପା ସଭାପର୍ବ ୩୩୮ — ୩୩୯ ପୃଷ୍ଠା ଦେଖନ୍ତୁ ।
[୬] ସଭାପର୍ବ ଛାପା ପୁସ୍ତକରେ ୩୩୯— ୩୪୨ ପୃଷ୍ଠା ଦେଖନ୍ତୁ ।

ମତ୍ସ୍ୟାଧିପ ବିରାଟଙ୍କୁ ପଞ୍ଚଦିବସାବଧି ଅପେକ୍ଷକ ରୂପେ ଦ୍ୱାରସ୍ଥ କରି ସମ୍ୟକ୍ ଦର୍ଶନ ନ ଦେବା, ସମଞ୍ଜସ ହେଉ କିମ୍ବା ଅସମଞ୍ଜସ ହେଉ କୌଣସି ପ୍ରକାର ଏକ କାରଣ ଉକ୍ତ ହୋଇଅଛି; କିନ୍ତୁ ବଙ୍ଗ ଭାରତରେ ମତ୍ସ୍ୟାଧିପ ପ୍ରଭୃତି ରାଜାମାନେ ରାଜଦର୍ଶନାପେକ୍ଷାରେ ମାସାବଧିକ ଓ ସାମାଧିକ କାଳ ଦ୍ୱାରସ୍ଥ ହୋଇ ରହିଥିବା ଅହେତୁକ ଭାବରେ ଲେଖାଅଛି ।[୧] ସେ ଉଦଧିବଳୟିତା ସମଗ୍ର ଧରଣୀର ଚକ୍ରବର୍ତ୍ତୀ ତ୍ରିଭୁବନାକ୍ଷୁଣ୍ଣ ପ୍ରଭାବ ହେଲେ ସୁଦ୍ଧା ଜଣେ ନିମନ୍ତ୍ରିତ ରାଜାଙ୍କୁ ଗଳହସ୍ତପ୍ରହାର ସର୍ବଥା ଅନୁଚିତ; ମାତ୍ର କବି ପାଣ୍ଡବୀୟ ଅଖଣ୍ଡଳାତିରିକ୍ତ ଅଖଣ୍ଡୈଶ୍ୱର୍ଯ୍ୟର ସର୍ବଂକଷତ୍ୱ ଓ ନିରଙ୍କୁଶତ୍ୱ ପ୍ରଦ୍ୟୋତନାର୍ଥ ସମ୍ପୂର୍ଣ୍ଣାତିଶୟୋକ୍ତିରେ ଅନୁପ୍ରାଣିତ କରି ଏହିପରି ଲେଖିଥିବାର ଅନୁମିତ ହୁଏ । ଏତାଦୃଶ କାହିଁକି, ଏହା ଅପେକ୍ଷା ବହୁପ୍ରଗୁଣିତ ଭୀମକୃତ ଭୀକର-ଔଦ୍ଧତ୍ୟ ବଙ୍ଗଳା ଭାରତରେ ମଧ୍ୟ ସତ୍ରଗତି ଧର୍ମରାଜଙ୍କ ପବିତ୍ର ଦର୍ଶନ ପ୍ରସ୍ତାବରେ ଲେଖା ଅଛି ।[୨] ହିଡ଼ମ୍ବା ଓ

---

[୧] ୧. ଅଗଣିତ ସୈନ୍ୟ ଯାହା ଧନେ ନାହିଁ ଅନ୍ତ ।
ରାଜ୍ୟକର ଲୟେଆଛେ ମାସେକ ପର୍ଯ୍ୟନ୍ତ ।।

ଇତ୍ୟାଦି, ବଙ୍ଗଭାରତ, ସ.ପ. ୨୦୯ ପୃଷ୍ଠା ।

୨. ବ୍ରହ୍ମାର ପ୍ରପୌତ୍ର ଦେବ ଅନେକ ଏସେଛେ ।
ଦୁଇ ତିନି ମାସ ଦ୍ୱାରେ ରହିୟା ଗିୟାଛେ ।।

ଇତ୍ୟାଦି, ବ.ଭା.ସ.ପ. ୨୦୯ ପୃଷ୍ଠା ।

[୨] ୧. ତାର ସଙ୍ଗେ ଗେଲ ଜନକତ ନୃପବର ।
ଦେଖିୟା ବଡ଼ଇ କ୍ରୁଦ୍ଧ ହୈଲ ବୃକୋଦର ।।
ମାତୃଲେ ରାଖିୟା ଆର ଅନ୍ୟ ରାଜଗଣେ ।
ଟେକା ମାରି ବାହିର କରିଲ ତତକ୍ଷଣେ ।।

ବ.ଭା.ସ.ପ. ୨୦୯ ପୃଷ୍ଠା ।

୨. ରାଜ-ଆଜ୍ଞା ପାଇୟା ଛାଡ଼ିଲ ଦ୍ରୁପଦେରେ ।
ତାର ସଙ୍ଗେ ରାଜା କତ ପଶିଲ ଭିତରେ ।।
ସେହି ହେତୁ ପିତା ମୋରେ କରିଲେନ କ୍ରୋଧ ।
ଶ୍ୱଶୁରେର କିଛୁ ନା ରାଖିଲ ଉପରୋଧ ।।
ବାହିର କରିୟା ସେ ଦିଲେନ ରାଜଗଣେ ।
ଦ୍ୱାରିଗଣେ ବହୁ କ୍ରୋଧ କରିଲେନ ମନେ ।।

ବ.ଭା.ସ.ପ. ୨୦୯ ପୃଷ୍ଠା ।

୩. ଆଉ ଏକ ସ୍ଥାନରେ ଲେଖାଅଛି କି, କେତେକ ରାଜା ଦର୍ଶନାତୁରତାରେ ପ୍ରବେଶିବାରୁ ଭୀମଙ୍କ ଆଦେଶରେ ବନ୍ଦିଘରେ ବଦ୍ଧ ହେଲେ ।
ବିଭୀଷଣ ଲଇୟା ଗେଲେନ ଗଦାଧର ।
କତଦୂରେ ଦେଖିଲେନ ଭୀମ ଅନୁଚର ।।
ଚାରିଗୋଟା ନୃପତିରେ କରିୟା ବନ୍ଧନ ।
କେଶ ଧରି ଲଇୟା ଯାଇଛେ ଚାରିଜନ ।

ଇତ୍ୟାଦି, ସ.ପ.୨୧୦ ପୃଷ୍ଠା

ଦ୍ରୌପଦୀ ଦେବୀଙ୍କର ଅନ୍ୟୋଽନ୍ୟସାପତ୍ନ୍ୟହେତୁକ ଅତି ମାଂସଳ ଆମ୍ଯୌନତ୍ୟା-ଭିମାନସମ୍ଭୂତ ନିରର୍ଥକ ରୁକ୍ଷାକ୍ଷରସଂକଳିତ ଭର୍ତ୍ସନା ଓ ଶାପଦାନ ବୃତ୍ତାନ୍ତ ମଧ୍ୟ ବଙ୍ଗୀୟ କାଶୀରାମ ମହାଭାରତରେ ପ୍ରତିପାଦିତ ଅଛି । * ସାରଳାଦାସ ମହୋଦୟଏକଜାତୀୟତା ବା ସମଚେଷ୍ଟତାର ବିଚାରରେ ଏଠାରେ ବିଭୀଷଣାୟନ କାର୍ଯ୍ୟକୁ ହୈଡ଼ମ୍ବେୟ ଘଟୋତ୍କଚଙ୍କ କର୍ତ୍ତୃକ ଟିକିଏ ବିସ୍ତୃତ ଭାବରେ ଉପପାଦିତ କରିଅଛନ୍ତି; ମାତ୍ର ମୂଳ ଗ୍ରନ୍ଥରେ ଯାମ୍ୟବିଜୟୀ ସହଦେବ ମରୁକଚ୍ଛ ଦେଶରେ ଉପନୀତ ହୋଇ ପୌଲସ୍ତ୍ୟ ବିଭୀଷଣଙ୍କଠାକୁ ବହୁଶତ ଦୂତ ପ୍ରେରଣ କରିଥିବା ଏବଂ ତଦା ଲଙ୍କାଧିନାଥ ବହୁବିଧ ରତ୍ନାଦିସଂଚୟ ଉପାୟନକୁ ସାଦରେ ଉପସ୍ଥାପିତ କରାଇବା ବିଷୟ ସଂକ୍ଷିପ୍ତତଃ ଉକ୍ତ ଅଛି । † ଏହି ମୂଳ ବିଷୟକୁ ବଙ୍ଗୀୟ କାଶୀରାମଦାସ ମହାଶୟ ପାର୍ଥଙ୍କଦ୍ୱାରା ପରିସାଧିତ ଏବଂ ସାରଳା ଦାସଙ୍କ ପରି ନାନା କଥାର ମେଳକ କରିଅଛନ୍ତି । ଏ ଲେଖନ୍ତି କି, ଅଭୀଷଣକର୍ମା ବିଭୀଷଣ ଆସି ସଭାର ଦକ୍ଷିଣ ଦ୍ୱାରରେ ଅବତରିଲେ । [୧] ଶ୍ରୀକୃଷ୍ଣ ଆସି ତଦଭିନନ୍ଦନ କଲେ । ବୈଶ୍ରବଣ ତଦୀୟ ପାଦବନ୍ଦନପୂର୍ବକ ରତ୍ନାଦି ଉପାୟନ ପ୍ରଦାନ କଲା ପରେ ସ୍ୱାମୀ

---

* (କ) ଯଥାୟ ଦ୍ରୌପଦୀ ଭଦ୍ରା ରତ୍ନସିଂହାସନେ ।
ହିଡ଼ମ୍ବା ବସିଲ ଗିୟା ତାର ମଧ୍ୟସ୍ଥାନେ ॥
ଅହଙ୍କାରେ ଦ୍ରୌପଦୀରେ ସମ୍ଭାଷ ନା କୈଲ ।
ଦେଖିୟା ପାର୍ଷତୀ ଦେବୀ ଅନ୍ତରେ କୁପିଲ ॥

ବ.ଭା.ସ.ପ. ୨୦୬ ପୃଷ୍ଠା ।

ପାର୍ଷତୀ = ପୃଷତ୍‌ଙ୍କର ତନୟା ଦ୍ରୌପଦୀ ।
ପୃଷତ୍ = ଦ୍ରୁପଦଙ୍କର ଅନ୍ୟତମ ନାମ ॥

(ଖ) କର୍ଣେର ଏକଘ୍ନୀ ଅସ୍ତ୍ର ବଜ୍ରେର ସମାନ ।
ତାର ଘାତେ ତୋର ପୁତ୍ର ତ୍ୟଜିବେ ପରାଣ ॥
ପୁତ୍ରେର ଶୁନିୟା ଶାପ ହିଡ଼ମ୍ବା କୁପିଲ ।
କ୍ରୁଦ୍ଧା ହୟେ ହିଡ଼ମ୍ବା କୃଷ୍ଣାରେ ଶାପ ଦିଲ ॥
ନିର୍ଦ୍ଦୋଷେ ଆମାର ପୁତ୍ରେ ଦିଲେ ତୁମି ଶାପ ।
ତୁମିଓ ପୁତ୍ରେର ଶୋକେ ପାବେ ବଡ଼ ତାପ ॥
ଯୁଦ୍ଧ କରି ମରେ କ୍ଷତ୍ରି ଯାୟ ସ୍ୱର୍ଗବାସ ।
ବିନା ଯୁଦ୍ଧେ ତୋର ପଞ୍ଚପୁତ୍ର ହବେ ନାଶ ॥

ସ.ପ. ୨୦୭ ପୃଷ୍ଠା ।

† ମୂଳ ସଭାପର୍ବ ଏକତ୍ରିଂଶାଧ୍ୟାୟ ଦ୍ୱିସପ୍ତତି ଶ୍ଲୋକାରମ୍ଭରୁ ଦେଖନ୍ତୁ ।

[୧] ଦକ୍ଷିଣ ଦ୍ୱାରେତେ ଉତରିଲେ ବିଭୀଷଣ ।
ମିଶାମିଶି ହଇଲ ରାକ୍ଷସ ନରଗଣ ॥ସ.ପ.୨୦୭ ପୃଷ୍ଠା ।

ଧର୍ମରାଜଙ୍କ ଦର୍ଶନାର୍ଥ ଶ୍ରୀକୃଷ୍ଣ ସମାହ୍ୱାନ କଲାରୁ ସେବ୍ୟସେବାହେବାକଯୁକ୍ତ[*] ବିଭୀଷଣ କହିଲେ, ପ୍ରଭୋ ! ଆପଣ ତ ଜଙ୍ଗମସ୍ଥାବରାତ୍ମକ ଜଗନ୍ମଣ୍ଡଳର ଏକମାତ୍ର ସ୍ୱାମୀ ଅଟନ୍ତି; ଭବଦୀୟ ପାଦଦର୍ଶନ ଅହର୍ନିଶାର ପ୍ରାଚୀସନ୍ଧ୍ୟାସ୍ୱରୂପ ତମସ୍ତୋମ ବିଧ୍ୱଂସକ ଆଉ ଜନନପଦବୀଜଘାତର୍ ତାପତ୍ରୟନିବର୍ତ୍ତକ; ସଂପ୍ରତି ଭବଦୀୟ ନିଷ୍ପ୍ରତ୍ୟୂହବିଜୃମ୍ଭମାଣ କରୁଣାରୁ ମୁଁ ସାଧିତାଖିଳମନୋରଥ ହୋଇଅଛି । ଅନ୍ୟ କାହାରି ଦର୍ଶନର ଆଉ ଅପେକ୍ଷା ନାହିଁ । ତପୁରେ ଶ୍ରୀକୃଷ୍ଣ ନାନା ପ୍ରକାର ବୁଝାଇବାରୁ ସେ ଅଗତ୍ୟା ଯୁଧିଷ୍ଠିରଙ୍କଠାକୁ ଯିବାର ସମ୍ମତି କଲେ, ମାତ୍ର ତତ୍‌ପ୍ରଣାମରେ ଅନିଚ୍ଛୁକ ଥିଲେ ।[୧] ଶ୍ରୀକୃଷ୍ଣ ବିଭୀଷଣଙ୍କୁ ସମଭିବ୍ୟାହାରରେ ନେଇ ଦକ୍ଷିଣପୂର୍ବାଦିକ୍ରମରେ ଦ୍ୱାରଚତୁଷ୍ଟୟରେ ତତ୍ର ତତ୍ର ଅଧିକାର-ପ୍ରତିଷ୍ଠିତ ସାତ୍ୟକି, ଘଟୋତ୍କଚ, ଅନିରୁଦ୍ଧ ଓ ଦୁର୍ଯ୍ୟୋଧନଙ୍କଦ୍ୱାରା ବିଭୀଷଣଙ୍କ ଅନ୍ତଃ ପ୍ରବେଶାର୍ଥ ନିବାରିତ ହେଲେ ।[୨] ପରେ ଯେ କୌଣସି ଉପାୟରେ ଭିତରେ ପ୍ରବିଷ୍ଟ ହେଲେ । ତତ୍ର ବିଘଟନ-ସଂଘଟନାଘଟନପଟୁ ସତ୍ୟସଂକଳ୍ପ ବିଶ୍ୱାତ୍ମା ବିଶ୍ୱମ୍ଭର ସ୍ୱୀୟ ବିଶ୍ୱରୂପ ପ୍ରକାଶ କଲାରୁ ନିଖିଳ ଲୋକେ ମୂର୍ଚ୍ଛିତ ହୋଇ ପଡ଼ିଲେ । ଏହି କୌଶଳର ଅବସରରେ ଯୁଧିଷ୍ଠିରଙ୍କ ପ୍ରତି ବିଭୀଷଣଙ୍କର ଦଣ୍ଡପ୍ରଣାମ ସାଧିତ ହେଲା । ଇତ୍ୟାଦି ।

ଏତ ଗଲା ରାଜସୂୟପର୍ବ ପାଠରେ ମୂଳାନୁକ୍ତ ବିଷୟମାନଙ୍କର ପଲ୍ଲବନ-କ୍ରିୟା । ତା ପରେ ଅର୍ଘାହରଣ ପର୍ବର ପାଠରେ ଋଷିଶୃଙ୍ଗ-ଋଷ୍ୟଶୃଙ୍ଗଙ୍କ ସମାଗମନରେ ପ୍ରାସ୍ତାବିକମତେ ତଦୀୟ ଜନ୍ମବିବରଣ[୩] ଆଉ ବାସୁକୀ ନିମନ୍ତ୍ରଣାର୍ଥ ପାତାଳୋପବିଷ୍ଟ[୪] ଅର୍ଜୁନ ଧନୁଃକୋଟିରେ ଧରାଧାରଣ ପୂର୍ବକ ନାଗରାଜଙ୍କୁ ସତ୍ରକ୍ଷେତ୍ରକୁ ପ୍ରେରଣ କରିଥିବା କଥା ସାରଳା ଦାସ ମହୋଦୟ ଅତିରିକ୍ତ ଲେଖି ଅଛନ୍ତି । ଏସବୁ ମୂଳରେ ଅନୁକ୍ତ ମାତ୍ର ଏପରି ବଙ୍ଗ ଭାରତକର୍ତ୍ତା କାଶୀରାମ ଦାସ ମହାଶୟ ମଧ୍ୟ ଗିରିଗରୀୟସ୍ ସତ୍ତ୍ୱଶାଳୀ

---

[*] ହେବାକ = ପ୍ରୀତି । ଏହି ଶବ୍ଦଟି ଅପ୍ରଥିତ ହେଲେ ସୁଦ୍ଧା ପଦସଂଘଟନାର୍ଥ ଅତି ସୁନ୍ଦର ।

[୧] ଯଥା ଭଇୟା ଯବେ ସଂହତି ପାଇବ ।
କଦାଚିତ ଅନ୍ୟଜନେ ମାନ୍ୟ ନା କରିବ ।।ସ.ପ.୨୦୮ ପୃଷ୍ଠା ।

[୨] ବିଭୀଷଣ ଧର୍ମରାଜ ଦର୍ଶନାର୍ଥ ସ୍ୱୟଂ ଦ୍ୱାରାନୁଦ୍ୱାର ପ୍ରତିଧାବିତ ହେବାର କଥା ସାରଳାଦାସ ମଧ୍ୟ ଲେଖିଅଛନ୍ତି ।

[୩] ସ.ପ. ୩୪୬ — ୩୪୭ ପୃଷ୍ଠାରେ ଆର୍ଷ୍ୟଶୃଙ୍ଗିକ କଥା ଦେଖନ୍ତୁ ।

[୪] ହିମବନ୍ତ ଗିରି ନିକଟେ ଉଦ୍ୟାନ ଗିରି ତଟେ ।
ତହିଁର ସନ୍ନିଧେ ଅଛି ପାତାଳକୁ ବାଟେ ।।
ଏ ବାଟେ ଅର୍ଜୁନ ପାତାଳକୁ ଗଲେ । ଛାପାରେ ୩୪୮ ପୃଷ୍ଠା ଦେଖନ୍ତୁ ।

ଗାଣ୍ଡୀବକୋଦଣ୍ଡପଣ୍ଡିତ ଅଖଣ୍ଡ ଧୈର୍ଯ୍ୟରେ ସପ୍ତଦିନାବଧି ଭୂଭାର ବହନ କରିଥିବା କଥା ଲେଖିଅଛନ୍ତି ।[୧]

ମୂଳରେ ଲେଖା ଅଛି, ପ୍ରଜ୍ଞା ଜ୍ଞାନ ପ୍ରଭୃତିରେ ସମୃଦ୍ଧ ବୟୋବୃଦ୍ଧ ଭୀଷ୍ମଦେବ ପବିତ୍ର ସତ୍ରରେ ଶ୍ରୀକୃଷ୍ଣଙ୍କୁ ସର୍ବାଗ୍ରେ ଅର୍ଘ ପ୍ରଦାନ କରିବାକୁ ସମ୍ମତି ପ୍ରଦାନ ପୂର୍ବକ ବୃଥାହଂକାର-ଗ୍ରନ୍ଥିଳହୃଦୟ ଶିଶୁପାଳକୁ ତୁଚ୍ଛ କୁସାର୍ହ ମଣିବାରୁ ଦୁର୍ଦମ୍ୟ ଦୁଷ୍ଟପ୍ରକୃତି ଦମଘୋଷ କ୍ରୋଧବିଲୋଡ଼ିତାଙ୍ଗ ହୋଇ ଭୀଷ୍ମଙ୍କୁ ପାପାଚାରୀ ହଂସ ସହ ତୁଳନା ପୂର୍ବକ ଭର୍ତ୍ସନା କରିଥିଲେ । [୨] ସାରଳାଦାସ କବି ଏହି ସନ୍ଦର୍ଭରେ ମୌଳିକ ଦୃଷ୍ଟାନ୍ତ ନ ଦେଇ ତତ୍ତୁଲ୍ୟଭାବଦ୍ୟୋତକ ବରଦାୟକ ନାମକ ବ୍ରାହ୍ମଣଙ୍କ କଥା ଲେଖିଅଛନ୍ତି । [୩] ଏଥିରୁ ଅନୁମିତ ହୁଏ, ମତିମତ୍ତମ କଳ୍ପନାପ୍ରିୟ ସାରଳାଦାସ କବି ମହୋଦୟ ଏତାଦୃଶ କେତେକ ସ୍ଥଳମାନଙ୍କରେ ଜ୍ଞାନପୂର୍ବକ ସ୍ୱେଚ୍ଛାପ୍ରଚୋଦନରେ ମୌଳିକ ଚରିତ ଓ ନାମଧାମାଦି ତ୍ୟାଗ କରି ଆତ୍ମୀୟ ବିଷୟ ସଂଘଟନୈପୁଣ୍ୟବତ୍ତାର ପ୍ରକାଶନାର୍ଥ କାଳ୍ପନିକ ଚରିତାଦିର ସଂଯୋଗ କରିଅଛନ୍ତି ।

---

[୧] ଭୀମଙ୍କ ପ୍ରତି ଶ୍ରୀକୃଷ୍ଣ

(କ) ଅନ୍ୟ କ୍ରମେ ନହେ ଏଇ ରାଜସୂୟ ସତ୍ର ।
ଏକଲକ୍ଷ ରାଜା ଆସି ହୟେଛେ ଏକତ୍ର ।।
× × × ×
ପାତାଳେ ରହିଲ ଗିୟା ପାର୍ଥ ଧନୁର୍ଦ୍ଧର ।
ଦ୍ୱନ୍ଦ୍ୱ କରିବାରେ ତୁମି ସର୍ବେ ଏକେଶ୍ୱର ।। ସ.ପ. ୨୧୦ ପୃଷ୍ଠା ।

(ଖ) ଯଜ୍ଞସ୍ଥାନେ ନାଗରାଜ ଆଇଲ ସାତଦିନ ।
ସପ୍ତଦିନ ହୈଲ ସଖା ଅନ୍ନ ଜଲ-ହୀନ ।।
ବୁଝିୟା ବୁଝିୟା ନାଗ କୈଲ ଅବିଚାର ।
ସଖାର ଉପରେ ଦିଲ ଧରଣୀର ଭାର ।। ସ.ପ. ୨୧୫ ପୃଷ୍ଠା ।

[୨] ସମୁଦ୍ରୋପକଣ୍ଠରେ ଗୋଟିଏ ଜରାଜୀର୍ଣ୍ଣ ହଂସ ଅନ୍ୟାନ୍ୟ ପକ୍ଷୀମାନଙ୍କୁ ଧର୍ମୋପଦେଶ ଦେଇ ବାସ କରିଥାଏ । ମାତ୍ର ସେହି ପକ୍ଷିମାନଙ୍କ ଅଜ୍ଞାତସାରରେ ପ୍ରତ୍ୟହ ତଦୀୟ ଡିମ୍ବଗୁଡ଼ିକୁ କବଳିତ କରି ଦେଉଥାଏ । ଏକଦା ଏକ ପ୍ରାଜ୍ଞ ପକ୍ଷୀ ଏହା ପ୍ରତ୍ୟକ୍ଷ କଲାରୁ ସମସ୍ତ ପକ୍ଷୀ ମିଶି ହଂସକୁ ନିହତ କଲେ । ଏହା ହିଁ ତତ୍‌କଥାର ସ୍ଥୂଳାଂଶ ।

[୩] ପୁରା ନିଷ୍କୁଟ୍ରୁମ୍ ବରଦାୟକ ନାମକ ଏକ ବୃଦ୍ଧ ବ୍ରାହ୍ମଣ ନାନାବିଧ ଦାନ ପ୍ରତିଗ୍ରହ କରି କୁତ୍ରଚିତ୍ ବାସ କରୁଥିଲେ । ସମୟରେ ପ୍ରୋକ୍ତ ବ୍ରାହ୍ମଣ ଅନ୍ୟ ସ୍ଥାନକୁ ପ୍ରସ୍ଥାନ କଲେ । ତତ୍ରତ୍ୟ ଲୋକେ ନବାଗତ ବ୍ରାହ୍ମଣଙ୍କର ନୈଷ୍ଠିକ ବେଶ ଦେଖି ଆଦରପୂର୍ବକ ସତ୍କାର କରୁଥାନ୍ତି । ମାତ୍ର ସେହି ଛଦ୍ମବେଶୀ ବ୍ରାହ୍ମଣଟି "ମୁଁ ଅନ୍ନ ଭୋଜନ କରେ ନାହିଁ" ବୋଲି ସମସ୍ତଙ୍କୁ କହି ନିଶା ସମୟରେ ପାକଶାଳାରୁ ଅନ୍ନବ୍ୟଞ୍ଜନାଦି ଚୌର୍ଯ୍ୟବୃତ୍ତିରେ ଯଥେଷ୍ଟ ଭୋଜନ କରୁଥାନ୍ତି । ଦିନେ ତାହାଙ୍କର ଏହି କପଟକୌଶଳ ସୁପକାରଙ୍କର ପ୍ରତ୍ୟକ୍ଷୀଭୂତ ହେବାରୁ ସେ ଲୋକଙ୍କ କର୍ତ୍ତୃକ ତାଡ଼ିତ ଓ ନିର୍ବାସିତ ହେଲେ । ଏହା ହିଁ ତତ୍‌କଥାର ସ୍ଥୂଳାଂଶ ।

ଯଥାକ୍ରମରେ ଦମଘୋଷ ଶିଶୁପାଳବଧ ଓ ଯାଜ୍ଞିକ ପରିଶିଷ୍ଟ କ୍ରିୟାମାନ ସମ୍ପନ୍ନ ହେଲାରୁ ସମବେତ ରାଜନ୍ୟବୃନ୍ଦ ସ୍ନେହାକ୍ରାନ୍ତ ହୃଦୟରେ ହୁତାଗ୍ନିହୋତ୍ର, ଚାରିତ୍ରବତ୍ସଳ, ଅଖଣ୍ଡାଖଣ୍ଡଳୈଶ୍ୱର୍ଯ୍ୟସମ୍ପନ୍ନ ଯୁଧିଷ୍ଠିରଙ୍କର ବନ୍ଦନା କରି ତଦୀୟ ଆଦେଶମତେ ସ୍ୱ ସ୍ୱ ସ୍ଥାନକୁ ପ୍ରସ୍ଥାନ କଲେ । ଶକୁନିସହାୟ ଦୁର୍ଯ୍ୟୋଧନ ମାତ୍ର ସେହି ଅଦୃଷ୍ଟପୂର୍ବ ଲୋକାତୀତରମଣୀୟ ମହାସଭାରେ କିଛିତକାଳ ଅବସ୍ଥାନ କଲେ । ସାରଳାଦାସ କବି ମହୋଦୟ ଏ ସ୍ଥଳରେ ଦୁର୍ଯ୍ୟୋଧନଙ୍କର ମୂଢ଼ତା ଓ ଉନ୍ମତ୍ତତା-ଜନିତ ବିଷୟାନଭିଜ୍ଞତା ପ୍ରକାଶନାର୍ଥ ମୂଳରେ କିଛିତ ବ୍ୟବଧାନ ପରେ ପ୍ରାସ୍ତାବିକ ମତରେ ସଭାପର୍ବ ସପ୍ତଚତ୍ୱାରିଂଶାଧ୍ୟାୟରେ ଉକ୍ତ ଘଟନାମାନଙ୍କୁ ଏଠାରେ ଲେଖିଅଛନ୍ତି । ଏପରି ଲେଖିବାରେ ବିଷୟମାନଙ୍କର ଅନ୍ୟୋଽନ୍ୟସଂଲଗ୍ନତା ଓ ସଂଗତିସନ୍ଦର୍ଭତା ମଧ୍ୟ ସମୀଚୀନ ହୋଇଅଛି । କିନ୍ତୁ ବ୍ରହ୍ମାଙ୍କ ମସ୍ତକୋତ୍ପାଟନରୁ ମହାଦେବ ବ୍ରହ୍ମଘ୍ନ-ଦୋଷରେ ଲିପ୍ତ ହେବା ପ୍ରଭୃତି କଥା, [୧] ଅଥଚ ବାସବେୟ ଅର୍ଜୁନ ବିଷ୍ଣୁଙ୍କ ରକ୍ତ, ଶିବଙ୍କ ମାଂସ, ବ୍ରହ୍ମାଙ୍କ ମସ୍ତକ ଓ ଇନ୍ଦ୍ରଙ୍କ ତେଜରେ ଗଠିତ ବୋଲି ସିଦ୍ଧାନ୍ତ କଲା ପରେ ଯାଗ-ପ୍ରତ୍ୟାବୃତ୍ତ ବାସୁକିଙ୍କ ସମ୍ମତିକ୍ରମେ ଅର୍ଜୁନ ତଦୀୟ ତନୁଜା ସନ୍ଧ୍ୟାବାଳୀଙ୍କର ପାଣି ଗ୍ରହଣ ପୂର୍ବକ ପୁନଶ୍ଚ[୨] ପାତାଳରେ ମାସତ୍ରୟ ଅବସ୍ଥାନ କରିଥିବା କଥାକୁ ପୂର୍ବ ଗଳ୍ପର ଆନୁଷଙ୍ଗିକ ରୂପେ ଅତ୍ର ଲେଖିଅଛନ୍ତି । ଏହି ସନ୍ଦର୍ଭତ୍ରୟ ମୂଳ ଗ୍ରନ୍ଥରେ ଉକ୍ତ ନାହିଁ । କବି ସ୍ୱୀୟ କପୋଳକଳ୍ପନାରେ ଲେଖିଅଛନ୍ତି କିମ୍ବା ଅନ୍ୟ ଗ୍ରନ୍ଥାନୁକରଣରେ ଲେଖିଅଛନ୍ତି, ତାହା ହଠାତ୍ କହିଦେଇ ନ ପାରୁଁ । ମାତ୍ର ଅର୍ଜୁନ ନାଗକନ୍ୟା ଉଲୁପୀଙ୍କି ମାତ୍ର ଗ୍ରହଣ କରିଥିବାର ପ୍ରମାଣ ମୂଳରେ ବରାବର ଦେଖାଯାଉଅଛି ।

ଇତଃପର ଦ୍ୟୂତପର୍ବରେ ଅଧ୍ୟାୟ ଚତୁଷ୍ଟୟରେ [୩] ପାଣ୍ଡବୀୟ ଲୋକୋତ୍ତର ଐଶ୍ୱର୍ଯ୍ୟ ବର୍ଣ୍ଣନା ଯାହା କି ଦୁରହଙ୍କାରଗ୍ରାହଗ୍ରହପୀଡ଼ିତମାନସ ଅପରିମିତ ଦୁଶ୍ଚିନ୍ତାଜନିତ ଦୁରିତଭରିତହୃଦୟ ଦୁର୍ଯ୍ୟୋଧନଙ୍କ ମୁଖରେ ପର୍ଯ୍ୟାୟକ୍ରମରେ ବର୍ଣ୍ଣିତ ଅଛି, ସେ ସବୁ ସାରଳାଦାସ କବି ଏ ସ୍ଥଳରେ ଲେଖି ନ ଥିଲେ ସୁଦ୍ଧା ଅନ୍ୟାନ୍ୟ ସ୍ଥଳମାନଙ୍କରେ ପ୍ରସଙ୍ଗତଃ ଲେଖିଦେଇ ଅଛନ୍ତି । ଦ୍ୟୂତପର୍ବଟି ମୂଳରେ ଯେପରି ଭାବରେ ବିସ୍ତୃତ, ସାରଳାଦାସ କବି ସେପରି କରି ନାହାନ୍ତି ସତ୍ୟ, ପରନ୍ତୁ ପ୍ରକ୍ଷିପ୍ତ କଥାମାନଙ୍କୁ ପ୍ରସାରିତ କରି ସୁଦ୍ଧା ମୌଳିକ ସାରାଂଶକୁ ଯଥାଯଥ କରିଅଛନ୍ତି । ମାତ୍ର ପ୍ରାଥମିକ ଦ୍ୟୂତକ୍ରୀଡ଼ା ସମୟରେ କଲ୍ୟାଣଚାରିତ୍ର ଅଜାତଶତ୍ରୁ ଯୁଧିଷ୍ଠିର ଏକାକୀ ହସ୍ତିନାକୁ ଯିବା,

[୧] ଛାପାରେ ସଭାପର୍ବ । ୩୬୯ — ୩୭୦ ପୃଷ୍ଠା ଦେଖନ୍ତୁ ।

[୨] ନାଗୁଣୀର ସହିତେ କ୍ରୀଡ଼ାରସଚିତ୍ତେ ।
ପାତାଳେ ରହିଲା ତିନି ମାସ ପର୍ଯ୍ୟନ୍ତେ ।।ସ. ପ. ୩୭୭ ପୃଷ୍ଠା ।

[୩] ୫୦, ୫୧, ୫୨, ୫୩ ଅଧ୍ୟାୟମାନଙ୍କରେ ।

ନିରବଧିପୁରୁଷାର୍ଥଲମ୍ପନପ୍ରବଣ ଭୀମାଦି ଭ୍ରାତୃ ଚତୁଷ୍ଟୟ ଦ୍ୱାରକାରେ ଅବସ୍ଥିତ ଥିବା, ଆଉ ଦ୍ରୌପଦୀ ଦେବୀ ବାରୁଣାବନ୍ତରେ ମାତ୍ର ରହିଥିବାର କହିଅଛନ୍ତି ।[୧] ଏହା ମୌଳିକ ସମବେତତ୍ୱକ୍ରମରୁ ଭିନ୍ନ । ଅଥଚ ସିଂହାଧ୍ୟୁଷିତକନ୍ଦରକୁ ଇନ୍ଦୁର ଧର୍ଷଣ କଲା ନ୍ୟାୟ କାଳାକୃଷ୍ଟ-ବାଛ ରାଜବାଲ୍ଲଭ୍ୟ-ପ୍ରଗଲ୍‌ଭ ଅଶାସନୀୟ ଦୁଃଶାସନ ଦ୍ରୌପଦୀ ଦେବୀଙ୍କର ବସ୍ତ୍ରହରଣ କରୁଥିବା ସ୍ଥଳରେ ଦୁଇଗୋଟି ତଦ୍‌ତଦ୍ ହେତୁବାଦ ଚରିତକୁ ସଙ୍ଗତିକ୍ରମେ ପ୍ରକ୍ଷିପ୍ତ କରି ଅଛନ୍ତି । ଚରିତଦ୍ୱୟର ସାରକ୍ଷୁପ୍ତାଂଶ ଏହି – ପୂର୍ବଜନ୍ମରେ ଦ୍ରୌପଦୀ କେତୁକା ରୂପରେ ସୁଦୀର୍ଘ ନାମକ ବ୍ରହ୍ମାଙ୍କ ଜିଘାଂସୁ ହେବା ସମୟରେ ତତ୍ରାଗତ ଭଗବାନ ନାରାୟଣ କେତୁକାଙ୍କୁ ନିବାରଣପୂର୍ବକ କହିଲେ କି, ଏହି ବ୍ରହ୍ମା ଦ୍ୱାପରରେ ଶରୀରାନ୍ତରରେ ତ୍ୱଦୀୟ କେଶାକର୍ଷଣ କରିବେ, ତେତେବେଳେ ତୁମ୍ଭେ ଏହାଙ୍କ ମୃତ୍ୟୁର କାରଣ ହେବ । ଦ୍ୱିତୀୟତଃ ଶନୈଶ୍ଚରଙ୍କ ବୈବାହିକ ଉତ୍ସବରେ ଭଗବାନ୍ ସୂର୍ଯ୍ୟଦେବ ଦ୍ରୌପଦୀଙ୍କର ଦ୍ୱିତୀୟାବତାରଭୂତା ଏକାବଳୀ ନାମ୍ନୀ ପାର୍ବତୀଙ୍କଠାରୁ ପଞ୍ଚପଞ୍ଚାଶକୋଟି ଉତ୍ତାଂଶୁକ ମାଗିନେଇ ଦ୍ୱାପରେ କୌରବସଭା ତଳେ ପ୍ରତ୍ୟର୍ପଣ କରିବାର ସ୍ୱୀକାର କରିଥିଲେ । ଇତି ।[୨]

ଅତଃପର ସଭାପର୍ବର ପରିଶେଷ ଅନୁଦ୍ୟୂତପର୍ବରେ ଉକ୍ତ ଅଛି, ଯେତେବେଳେ ପ୍ରଥମ ଦ୍ୟୂତକ୍ରୀଡ଼ାରେ ହୃତସର୍ବସ୍ୱ ପାଣ୍ଡବମାନେ ପ୍ରଜ୍ଞାଦୃଷ୍ଟି ଧୃତରାଷ୍ଟ୍ରଙ୍କ ପ୍ରସାଦରୁ ପୂର୍ବବତ୍ ସଂପ୍ରାପ୍ତ-ସଂପୂର୍ଣ୍ଣାଧିକାର ହୋଇ ଇନ୍ଦ୍ରପ୍ରସ୍ଥକୁ ପ୍ରସ୍ଥାନ କରୁଥିଲେ, ତାହାର ଅନତିବ୍ୟବହିତ ସମୟରେ ଧୃତରାଷ୍ଟ୍ର କର୍ଣ୍ଣଶକୁନି ପ୍ରମୁଖଙ୍କ କୂଟନୀତିରେ ମୋହିତ ହୋଇ ଅର୍ଦ୍ଧପଥରୁ ପାଣ୍ଡବମାନଙ୍କୁ ପ୍ରତ୍ୟାବୃତ୍ତ କରାଇଥିଲେ । ମାତ୍ର ସାରଳାଦାସଙ୍କ ମତରେ ପ୍ରଥମ ଦ୍ୟୂତ ପରେ ନିର୍ଦ୍ଧୂତାଖିଳକିଲ୍‌ବିଷ ପାଣ୍ଡବମାନେ ପୁନଶ୍ଚ ପ୍ରାପ୍ତୈଶ୍ୱର୍ଯ୍ୟ ହୋଇ ଅନେକ ସମୟ ବାରୁଣାବନ୍ତରେ ଯାପିତ କରିଥିଲେ ।(୩) ଏଥି ମଧ୍ୟରେ ଅର୍ଜୁନଙ୍କ ପତ୍ନୀ ନାଗକନ୍ୟା

---

[୧] * * * * ଚାରି ଭାଇ ପ୍ରବେଶିଲେ ଏସନ ସମୟେ ।।
ବାରୁଣାବନ୍ତେ ଦେଖିଲେ ନାହାନ୍ତି ଯୁଧିଷ୍ଠି ।
ନ ଦେଖି ବିକଳ ହେଲେ ଭାଇ ଚାରିଗୋଟି ।।
ଅର୍ଜୁନର ଅଗ୍ରତରେ ଦ୍ରୌପଦୀ ବୋଇଲେ ।
ହସ୍ତିନା ରାଜ୍ୟକୁ ଯୁଧିଷ୍ଠିର ଦେବ ଗଲେ ।।
ସ.ପ. ଛାପାରେ ୩୮୭ ପୃଷ୍ଠା ଦେଖନ୍ତୁ ।
ତା ପରେ ସମସ୍ତେ ସେଠାକୁ ପ୍ରସ୍ଥାନ କରି ଅଛନ୍ତି ।

[୨] ସ.ପ. ୪୦୭ ପୃଷ୍ଠାରୁ ଆରମ୍ଭ କରି ଦେଖନ୍ତୁ ।

(୩) ବର ପାଇ ଦ୍ରୌପଦୀ ପାଣ୍ଡବଙ୍କୁ ଘେନି ।
ବାରୁଣାବନ୍ତେ ଯାଇ ପ୍ରବେଶ ଯାଜ୍ଞସେନୀ ।। ଇତ୍ୟାଦି ।
ସ.ପ. ୪୧୦ ପୃଷ୍ଠା ପ୍ରାରମ୍ଭରୁ ଦେଖନ୍ତୁ ।

ସନ୍ଧ୍ୟାବାଳୀଙ୍କ ଗର୍ଭଜାତ ଆର୍ଜୁନି ନାଗାର୍ଜୁନ ସଂପ୍ରାପ୍ତବୟସ୍କ ହେଲା ପରେ ତକ୍ଷକପୁତ୍ର ବାତାବଳିଙ୍କ ପ୍ରଦତ୍ତ ଜାରଜାତାପବାଦରେ ସଂକ୍ଲିନ୍ନମନା ଓ ପିତୃଦିଦୃକ୍ଷୁ ହୋଇ କାଶୀରେ ତପସ୍ୟା କରିବା, ସେ ପୁଣି ଆଶୁତୋଷ କୈଳାସନାଥଙ୍କ ଦ୍ୱାରା ଔରସ ପୁତ୍ରବତ୍ ଅନୁଗୃହୀତ ହୋଇ ବହୁବିଧ ଶସ୍ତ୍ରାସ୍ତ୍ରଗ୍ରାମରେ ପାରଦର୍ଶୀ ହେବା, ଗଣ୍ଡକ ମୃଗୟାର୍ଥ ସମାଗତ ସ୍ୱପିତା ଅର୍ଜୁନଙ୍କୁ ସେହି ସଂଗ୍ରାମ ମହୋତ୍ସବପ୍ରମୋଦନିର୍ଭର ନାଗାର୍ଜୁନ କ୍ଷତ୍ରଧର୍ମକାର୍କଶ୍ୟରୁ ବିକରାଳ ଯୁଦ୍ଧରେ ନିହତ କରିବା, ସେହି ଦୁଃସମ୍ବାଦ-ଦୁଃଖିତ ଇନ୍ଦ୍ରାଦି ବୃନ୍ଦାରକବୃନ୍ଦ ଓ ଶ୍ରୀକୃଷ୍ଣ ତତ୍ର ଉପଗତ ହୋଇ ନାଗାର୍ଜୁନପକ୍ଷକ ମହାଦେବଙ୍କ ସହ ଘୋରାହବ କରିବା, ପରିଶେଷରେ ଅର୍ଜୁନ ପୁନରୁଜ୍ଜୀବିତ ହେବା ପ୍ରଭୃତି କଥାମାନଙ୍କୁ ପ୍ରକ୍ଷିପ୍ତ ରୂପେ ଅତି ବିସ୍ତୃତ ଭାବରେ ଲେଖିଅଛନ୍ତି । ଆର୍ଜୁନି ନାଗାର୍ଜୁନଙ୍କ କଥା କେଉଁ ପୁରାଣରେ ଅବା ଇତିହାସରେ ଉକ୍ତ ଅଛି, ଠିକ୍ କହି ନ ପାରୁଁ । କିନ୍ତୁ ପ୍ରୋକ୍ତ ବୃତ୍ତାନ୍ତ ବହୁ ପୁରାଣଶୁଶ୍ରୂଷକ ଶ୍ରୀମାନ୍ ସାରଳାଦାସଙ୍କ ପ୍ରସାଦରୁ ଉତ୍କଳରେ ଆବାଳବୃଦ୍ଧ ବିଦିତ ଅଛନ୍ତି ।(୧)

ଶ୍ରୀମାନ୍ ସାରଳାଦାସଙ୍କ ମହାଭାରତର ବନପର୍ବୀୟ * ଚରିତ୍ରମାନଙ୍କର ଅନୁକ୍ରମ ମୌକ୍ତିକପଟ୍ଟପରିପାଟି ଅପେକ୍ଷା ନିତାନ୍ତ ଭିନ୍ନ ପ୍ରକାର । ପରନ୍ତୁ ଘୋର ଗହନାରଣ୍ୟକାନ୍ତାରବର୍ତ୍ମବର୍ତ୍ତୀ ପଥିକ ଶନୈଃ ଶନୈଃ ପଥଭ୍ରାନ୍ତ ହେଲା ପ୍ରାୟ ସୁଚିନ୍ତନପୁରଃସରଣ-କର୍ତ୍ତବ୍ୟାବଧାରଣବିରହରୁ ଏ ମହାଶୟ ଏହି ପର୍ବରେ ଅନେକତ୍ର ଭ୍ରାନ୍ତ ଧାରଣାରେ ପଡ଼ି ଅମାର୍ଗରେ ଚାଲିଯାଇ ଇଚ୍ଛାନୁମତରେ କେତେ କଥା କହିଯାଇଅଛନ୍ତି । ଏଥିରେ ପୁଣି ଅଲେଖ ଲେଖକ ଓ ଛାପାକାରଙ୍କର ସମୁଚ୍ଛୃଙ୍ଖଳା ବ୍ୟାପାର ସୁଦ୍ଧା ଅନନ୍ତାଧିପତ୍ୟ ସ୍ଥାପନ କରିଅଛି ।

ସତ୍ୟପାଶାବପାଶିତ ଅପାନୃତକଥ ପୁଣ୍ୟଗାଥ ପାର୍ଥିଂ ]ବୀର ପାଣ୍ଡବମାନେ କିତବଦ୍ୟୁତରେ ହୃତସର୍ବସ୍ୱ ହୋଇ ବନକୁ ପ୍ରସ୍ଥାନ କଲେ, ଇତ୍ୟାକାର କଥାଗୁଡ଼ିକ ଆପାତତଃ ବନପର୍ବର ଆଦିମ ବର୍ଣ୍ଣନୀୟ ବିଷୟ । ଏହି ପ୍ରକ୍ରିୟାଟି ଛାପା ପୁସ୍ତକରେ ପ୍ରଥମତଃ ସଭାପର୍ବର ପରିଶେଷରେ ବୃଥାଭାବବିସ୍ତାରରେ ଉକ୍ତ ଥାଇ ତତ୍ପର ବନପର୍ବ ପ୍ରାରମ୍ଭରେ ପ୍ରାୟଶଃ ଅଷ୍ଟପୃଷ୍ଠାବଧିକ ଆମ୍ରେଡିତ ହୋଇଅଛି । ସତ୍ୟୋପବଂହିତ ସୁବିହିତବଚନ ବନବାସଦୁଃଖକର୍ଷିତ ପାଣ୍ଡବଗଣଙ୍କୁ ନିଜର ଅନାର୍ଯ୍ୟକାର୍ଯ୍ୟ-ସମ୍ପାଦିତ ଅଖେଣ୍ଡୈଶ୍ୱର୍ଯ୍ୟର

---

(୧) ଛାପା ପୁସ୍ତକରେ ୪୧୦-୪୪୪ ପୃଷ୍ଠା ପର୍ଯ୍ୟନ୍ତ ଦେଖନ୍ତୁ ।

* ଏହି କବି ମହୋଦୟ ପର୍ବାନୁଗଣନାରେ ମଧ୍ୟପର୍ବକୁ ଦ୍ୱିତୀୟ ସ୍ଥାନୀୟ କରିଥିବାରୁ ଆରଣ୍ୟକ ପର୍ବକୁ ଚତୁର୍ଥ କରି ଲେଖିଅଛନ୍ତି ।

ସଭାପର୍ବ ଅନ୍ତେ ଆରଣ୍ୟକପର୍ବ କଥା । ଚତୁର୍ଥ ଖଣ୍ଡର ଶୁଣିମା ବାରତା ॥

ଏହାକୁ ଛାପାକାର ମହାଶୟ ପରିବର୍ତ୍ତନ କରି ''ତୃତୀୟ ଖଣ୍ଡର ତୁହି ଶୁଣ ହୋ ବାରତା'' ଏପରି କରିଦେଇ ଅଛନ୍ତି । ବ.ପ. ୧୫ ପୃଷ୍ଠା ।

ପ୍ରଦର୍ଶନରେ ବିମନସ୍କ କରାଇବାପାଇଁ ଫଳମୂଳଛାୟାବିମୂଷିତପ୍ରବାସକନ୍ଦନ ତାତ୍କାଳିକ ପାଣ୍ଡବୀୟ ସଦନୀଭୂତ ବନକୁ ଦୁର୍ଯ୍ୟୋଧନଙ୍କ ସମାଗମନ, ସୁଧାନ୍ଧଃପତିନିଦେଶରେ ତତ୍ରାଗତ କ୍ରୋଧାନ୍ଧ ବିଚିତ୍ର-ସେନ ଚିତ୍ରସେନ ଗନ୍ଧର୍ବ ବୁଭୁକ୍ଷିତତରକ୍ଷୁ ପ୍ରାୟ ଦୌର୍ଯ୍ୟୋଧନିକ-ଚମୂ-ଚମୂରୁସମୂହକୁ ବିଧ୍ୱସ୍ତ କରି ଆୟୋଧନଗତ ଦୁର୍ଯ୍ୟୋଧନଙ୍କୁ ବନ୍ଧନନିବଦ୍ଧ କରିବା ପ୍ରଭୃତିକ ଚରିତ ସନ୍ନିଧାନଟି ଛାପା ପୁସ୍ତକରେ ବନପର୍ବର ଆଦିମ ପ୍ରସ୍ତାବରେ ଏବଂ ତାଳପତ୍ର ପୁସ୍ତକରେ ସଭାପର୍ବାବସାନରେ ଲେଖାଅଛି । ଉଭୟଥା ଏହା ଅସମୀଚୀନ । ସଭାର ଅନ୍ତିମ ହେଉ କିମ୍ବା ବନର ଆଦିମ ହେଉ, ଏହା ଅଯଥା ସ୍ଥାନସନ୍ନିବେଶ ଦୋଷ ଓ ଅକାଳିକପ୍ରଖ୍ୟାପନାପବାଦରୁ ମୁକ୍ତ ହୋଇ ନ ପାରେ । ଏତସମ୍ବନ୍ଧରେ କବି କେବଳ ପ୍ରଥମତଃ ଭ୍ରାନ୍ତ ପଥର ପଥିକ ହୋଇ ଅଛନ୍ତି ବୋଲିବାକୁ ହେବ । କାରଣ କୁମତିମତ୍ତମ ଦୁର୍ଯ୍ୟୋଧନଙ୍କର ଚୈତ୍ରସେନିକ ପରାଭବାନୁଭବଶ୍ରୁତବୃନ୍ଦ ସତ୍ୟପ୍ରତିଶ୍ରବ ପାଣ୍ଡୁପୁତ୍ରମାନଙ୍କର ବନବାସ ସମାପ୍ତିର ଆସନ୍ନକାଳରେ ଅର୍ଥାତ୍ ବନବାସର ପ୍ରାୟଶଃ ଏକାଦଶ ବର୍ଷରେ ଘଟିଥିବା ପାରାଶରୀୟ ସତ୍ୟଭୂତମତସିଦ୍ଧ । † ଦାସ କବି ମହୋଦୟ ବ୍ୟାସୋକ୍ତ ପୂର୍ବାପର ଚରିତମାନଙ୍କର ସାମୟିକ ଅନୁକ୍ରମଣିକାକୁ ଠିକ୍ ମନସ୍ଥ କରି ନ ପାରି ଏପରି ଦୁଃସ୍ଥାନଶୋଚ୍ୟା-ଦଶାରେ ପକାଇ ଦେଇଅଛନ୍ତି ।

ମୂଳରେ ପ୍ରଥମତଃ ପାଣ୍ଡବମାନେ ବନଯାତ୍ରାର ପ୍ରଥମାବସଥ ରମ୍ୟ କାମ୍ୟକବନସ୍ଥ ଥିବା ସମୟରେ କ୍ରୌର୍ଯ୍ୟଭାର-ଭାସୁର ବକାସୁରର ସହୋଦର * ଅମାପ-ପାପ କିର୍ମୀର ଦୈତ୍ୟର ବଧୋପାଖ୍ୟାନ ଏବଂ ସାଧୁଶଲ୍ୟ ଶାଲ୍ୱ ଦୈତ୍ୟବଧ କିମ୍ବା ସୌଭବଧର ଉପାଖ୍ୟାନ ଉକ୍ତ ଅଛି । ଉତ୍କଳ ଭାରତର କବି ଏ ସ୍ଥଳରେ ଏତଦୁଭୟ ଉପାଖ୍ୟାନକୁ ତ୍ୟାଗ କରି ଅଛନ୍ତି । ସୌଭନିଧନୋପାଖ୍ୟାନ ବିସର୍ଜନର କାରଣ କୁହାଯାଇ ନ ପାରେ; ମାତ୍ର ଅତ୍ରତ୍ୟ କିର୍ମୀରର ଆହବିକ ପ୍ରମାପଣ ଚିତ୍ରଣରୁ ଭ୍ରାନ୍ତିମୂଳକ ବା ଅଭ୍ରାନ୍ତ ହେଉ, କବି ଜ୍ଞାନ ପୂର୍ବକ ବିରତ ହୋଇଥିବେ, ଏହା ହିଁ ଅନୁମେୟ । କାରଣ ଇତଃପୂର୍ବେ ଆଦିପର୍ବରେ ଏହି ନାମକୁ ଭ୍ରାନ୍ତସ୍ମୃତିମୂଳକ ପରିଣାମରେ ପକାଇ କୁମ୍ଭୀରରେ ପରିଣତ କରି ପକାଇ ଅଛନ୍ତି ।

ଅତଃପର ଦ୍ୱେଷ୍ୟବିଧ୍ୱଂସନଦୃଢ଼ବଦ୍ଧକକ୍ଷ ବୀରର୍ଷଭ ଭୀମାଦିସନାଥ ବିଗତକଳ୍ମଷ ବୀତମତ୍ସର ସଜାନି ସାନୁଚର ଯୁଧିଷ୍ଠିର ପ୍ରଥମେ କିୟଦ୍‌କାଳ ନିମନ୍ତେ ପୁଣ୍ୟ-କାମ୍ୟ

---

† ବନପର୍ବ ୨୩୮ ଅଷ୍ଟାତ୍ରିଂଶୋତ୍ତରଦ୍ୱିଶତାଧ୍ୟାୟ ପ୍ରାରମ୍ଭରୁ ଦେଖନ୍ତୁ ।

* ଅପିଚ ଭାରତାନୁକାରୀ ଅନନ୍ତ ଭଟ୍ଟଙ୍କ କୃତ ଭାରତ ଚମ୍ପୂରେ ମଧ ଏହିପରି ଅଛି—
ଅହଂ ବକସ୍ୟ ବୈଭ୍ରାତା କିର୍ମୀର ଇତି ବିଶ୍ରୁତଃ ।
ବନେଽସ୍ମିନ୍ କାମ୍ୟକେ ଶୂନ୍ୟେ ନିବସାମି ଗତଜ୍ୱରଃ ।। ବ.ପ. ୩୪ ଅ:

କାମ୍ୟକବନ ତ୍ୟାଗ କରି ବାଚଂଯମିକସୁଖାଦ୍ୱୈତ ଦ୍ୱୈତବନରେ ନିବାସ କରିଥିଲେ । † ମାତ୍ର ସାରଳା ଦାସ ମହୋଦୟ ଏଠାରେ କେବଳ କାହିଁକି କୁତ୍ରାପି ଦ୍ୱୈତବନର ନାମ ଆଦୌ ଗ୍ରହଣ କରି ନାହାନ୍ତି । [୧] ପରନ୍ତୁ ସେମାନେ କାମ୍ୟକବନରୁ [୨] ଗୟାକ୍ଷେତ୍ରକୁ ଯାତ୍ରା କଲେ ବୋଲି ଅପିଚ ତଦବଧି ନିରବଧିକାଧିପୀଡ଼ିତା ଅଜ୍ଞାତପୂର୍ବବ୍ୟସନା ମାତା କୁନ୍ତୀ ଦେବୀ ସମଭିବ୍ୟାହାରରେ ଥିଲେ ବୋଲି ଲେଖିଅଛନ୍ତି । ମାତ୍ର ଦୁରୋଦର ନିର୍ବାସିତ ପାଣ୍ଡବମାନଙ୍କର ବନବାସରେ କୁନ୍ତୀଙ୍କ ସହ ସମବସ୍ଥାନ ଏକାନ୍ତ ଅମୂଳକ । ସଭାର୍ଯ୍ୟ ପୁତ୍ରମାନଙ୍କ ବନପ୍ରୟାଣ ସମୟରୁ ଗ୍ରୀଷ୍ମରେ ସଲିଳସଂକ୍ଷୟରୁ ଔଦକସତ୍ତ୍ୱ ପରି ପ୍ରପୀଡ଼ିତା ଉପରକ୍ତାଦିତ୍ୟ ଓ ନିସ୍ତୋୟତଟାକ ପ୍ରାୟ ଶ୍ରୀବିହୀନା ପୃଥାଦେବୀ ଅଜ୍ଞାନାଦ୍ଭିଦ୍ଭିଦୁର ବିଦୁରଙ୍କ ଗୃହରେ ଅବସ୍ଥାନ କରୁଥିଲେ ।*

ଅପିଚ ଦାସ କବିଙ୍କ ପ୍ରଦର୍ଶିତମତେ ପାଣ୍ଡବମାନେ ଗୟାବସ୍ଥିତ ଥିବା ସମୟରେ ପାରଶ୍ୱଧିକଲଲାମ ସମଧିକସତ୍ତ୍ୱ ପର୍ଶୁରାମଙ୍କର ସ୍ୱଜନନୀ-ଶିରଶ୍ଛେଦନ ବୃତ୍ତାନ୍ତ ଉକ୍ତ ଅଛି । ଏହା ମୂଳରେ ଅପ୍ରତିପାଦିତ ସତ୍ୟ, ମାତ୍ର ଅତ୍ରତ୍ୟ ବ୍ୟାସମୁନି ମତର ଅଦୂରଦର୍ଶିତା ଯୋଗୁ ଏବଂ ଚରିତ ପ୍ରଖ୍ୟାପନପଟୁତା ବଳରୁ ଶୂଦ୍ରମୁନି କବି ଏ ସ୍ଥଳରେ ଯେ କୌଣସି ପ୍ରକାରେ କଥାସନ୍ଦର୍ଭ ଲଗାଇ ଲେଖି ପକାଇ ଅଛନ୍ତି ଏବଂ ସେମାନେ ତତଃପର ତ୍ରିଦିବସଂକାଶ-କାଶୀବାସୀ ହେଲେ ବୋଲି କହି, ଭର୍ତ୍ତୃପୁତ୍ରସମେତା ଭବାନୀ ନୀହାରଧାର-

---

† ତତସ୍ତେ ପ୍ରଯଯୁଃ ସର୍ବେ ପାଣ୍ଡବା ଧର୍ମଚାରିଣଃ ।
ବ୍ରାହ୍ମଣୈର୍ବହୁଭିଃସାର୍ଦ୍ଧଂ ପୁଣ୍ୟଂ ଦ୍ୱୈତବନଂ ସରଃ ॥

ବ.ପ. ୩୪ ଅ:

ପାଣ୍ଡବମାନଙ୍କର ବନବାସରେ ଦ୍ୱୈତବନ ପ୍ରତି ଏହା ପ୍ରଥମ ଯ ।

[୧] ଏ ମହୋଦୟ ସଂସ୍କୃତରେ ତାଦୃଶ ସାହିତ୍ୟଧୁରୀଣ ନ ଥିବେ ।
ତାହାହେଲେ ଭାରବିକାବ୍ୟର ସଦୃଶ ଶ୍ଳୋକଟିଏ ମନେ ପଡ଼ନ୍ତା ନାହିଁ କି ?

[୨] ଗୟାଶ୍ରାଦ୍ଧ କଲେ ପିତୃଲୋକଙ୍କୁ ଦେଖି ।
ଯୁଧିଷ୍ଠିର ପଚାରିଲେ ମାତା ଯେ କୁନ୍ତୀଙ୍କି ॥

ଛାପା ବ.ପ. ୨୮ ପୃଷ୍ଠା ।

* ଅତଏବ ବନପର୍ବ ପ୍ରାରମ୍ଭରେ ଯୁଧିଷ୍ଠିର କହିଅଛନ୍ତି କି-
ଭୀଷ୍ମଃ ପିତାମହୋ ରାଜା ବିଦୁରୋ ଜନନୀ ଚ ମେ । ୧ଅ:
ସୁହୃଜ୍ଜନଶ୍ଚ ପ୍ରାୟୋ ମେ ନଗରେ ନାଗସାହ୍ୱୟେ ॥ ବ.ପ. ୩୪ ଶ୍ଳୋକ ।

ତଦନୁମତ ଭାରତଚମ୍ପୂରେ ମଧ୍ୟ ଏହିପରି ଲେଖାଅଛି-
ଉଦ୍‌ଥାୟାଥ କ୍ଷିତୀନ୍ଦ୍ରଃ କ୍ଷଣମପିଧରଣୌ ସ୍ଥାତୁମସ୍ୟାମଯୁକ୍ତଂ
ପ୍ରତ୍ୟର୍ଥିସ୍ୱୀକୃତାୟାମିତି ସହ ସହଜୈଃ ସତ୍ୟସନ୍ଧଃ ସଜାନିଃ ।
ପାଣୌ କ୍ଷତ୍ତୁର୍ନିଧାୟ ପ୍ରସୁବମଚିତରାମନ୍ତରୁଭ୍ୟପ୍ୟମାନାଂ ॥ ଇତ୍ୟାଦି ।

ବିହାର ପରିହାରପୂର୍ବକ ବାରାଣସୀ-ବାସିନୀ ହେବାର ଚରିତକୁ ବର୍ଣ୍ଣିତ କରିଅଛନ୍ତି । ଏହି ସଂବିଧାନ ମୌଳିକ ବିଧାନରୁ ଭିନ୍ନ ହେଲେ ସୁଦ୍ଧା ବୋଧହୁଏ ଅଳୀକ ନୁହେଁ । ଏଠାରେ ଚରିତ ଚିତ୍ରଣରେ ମଧ କବି ପୁରାଣାନ୍ତରାନୁସରଣକୁ ଶରଣ କରିଥିବେ । ଅପିଚ ତଦାନୀଂ କାଶୀନିବାସୀ ବାସବି ଅର୍ଜୁନଙ୍କୁ ବାସବ ତଦୀୟାଗ୍ରଜାବରଜାନୁମତିରେ ନିବାତକବଚାଦି ବଧାର୍ଥ ମାତଳିଙ୍କଦ୍ୱାରା ସ୍ୱର୍ଗକୁ ଆନୀତ କରିବା, ପାର୍ଥ ସେଠାରେ ପିତୃନିର୍ଦ୍ଦିଷ୍ଟ କାର୍ଯ୍ୟ ନିର୍ବାହ ପରେ ଆପଣା ପ୍ରତି ରିରଂସୁ ଉର୍ବଶୀଙ୍କ ପ୍ରଦତ୍ତ ଏକବର୍ଷାଧିକ ବର୍ଷବରତ୍ୱର ଶାପ ପାଇବା ପ୍ରଭୃତି ଦୂରବର୍ତ୍ତିତ ଘଟନାଗୁଡ଼ିକ ଲେଖିଅଛନ୍ତି; କିନ୍ତୁ ଏହା ତତ୍ ତତ୍ ଘଟନା ସଂଘଟନର ସାମୟିକ ବିଚାରରେ ଔପୟିକ ନୁହେଁ ।

ମୂଳ ଗ୍ରନ୍ଥରେ ଲେଖାଅଛି, କାନ୍ତାରବର୍ମବର୍ତ୍ତୀ ଶାନ୍ତାକୃତି ପାଣ୍ଡବମାନେ କେତେକ ସମୟାପଗମରେ ବୈୟାସିକ ନିର୍ଦ୍ଦେଶମତେ ଦ୍ୱୈତବନରୁ ପୁନରପି ସେହି କିର୍ମୀରବଧାନ୍ୱିତ ଯତିବ୍ରାତ ସ୍ୱାଧ୍ୟାୟଘୋଷ-ମୁଖରିତ ସୁସରିତ କାମ୍ୟକ ବନକୁ ପ୍ରସ୍ଥାନ କଲେ ।* ସେଠାରେ ପ୍ରଥମାନକୀର୍ତ୍ତି ବିଶାଳଶାଳମୂର୍ତ୍ତି ଅର୍ଜୁନ ଭାବି-ସଂଗ୍ରାମରେ ଅଦୀନସତ୍ତ୍ୱ ନଦୀ-ସନ୍ତାନପ୍ରମୁଖାଭିମୁଖରେ ଜୟବୈଜୟନ୍ତୀର ପ୍ରାପ୍ତି ସକାଶେ "ଯଶଏବ ଜନ୍ମଫଳମାମୃତାଂ" ଭାବି ପୁରୁହୂତ ପ୍ରସାଦତଃ ଅସ୍ତ୍ରଶସ୍ତ୍ର ସଞ୍ଚୟ ପାଇବା ପାଇଁ ହୈମବତ ହୈମପ୍ରସ୍ଥକୁ ପ୍ରସ୍ଥାନ କରି ପୌରନ୍ଦର ସାକ୍ଷାତ୍କାର ପ୍ରାପ୍ତି ପରେ ତଦାଦେଶାନୁସାରେ ସେହି ଦର୍ବୀକର-ବରକନ୍ଦରା- ଖର୍ବକରଣପଟୁ ଉର୍ବୀଧରରେ ସର୍ବେଶ୍ୱର ମହାଦେବଙ୍କ ଦିଦୃକ୍ଷାରେ କଠୋର ତପସ୍ୟାନିଷ୍ଠ ହେଲେ । ଆଶୁତୋଷ ଭଗବାନ୍ ମହାଦେବ କୈରାତବେଶରେ ଘୋରଘୂତ୍କରଣଘୋଣ-ଘୋଣି-ପ୍ରଦର୍ଶନ ପୁରଃସର ଅନ୍ତର୍ଗୂଢ଼ାନୁକ୍ରୋଶ ହୃଦୟରେ ଅର୍ଜୁନଙ୍କ ସହ ବିକରାଳ ସଂଗ୍ରାମ କରଣାନନ୍ତର ଅବିରତମୁଖର-ଜ୍ୟାଲତିକ ପୌରୁହୂତିଙ୍କଠାରେ ପରାଜୟ ସ୍ୱୀକାର କରି ପାଶୁପତ, ବ୍ରହ୍ମଶିରା ପ୍ରଭୃତି ସମସ୍ତାସ୍ତ୍ରଗ୍ରାମ ପ୍ରଦାନ କଲେ । ସାଦରରେ କହିଲେ କି, ହେ ବୀରବର୍ଯ୍ୟ ଅର୍ଜୁନ ! ତୁମ୍ଭେ ମାମକ ବରପ୍ରସାଦରୁ ଜୈତ୍ରଯାତ୍ରାରେ ସର୍ବଥା ଭୀଷ୍ମଦ୍ରୋଣାଦିଙ୍କୁ ପରାଭୂତ କରିବାରେ ଅବ୍ୟର୍ଥସାମର୍ଥ୍ୟ ହେବ । ସଂପ୍ରତି ବାସ୍ତୋଷ୍ପତି ବସତିପ୍ରତି ପ୍ରସ୍ଥାନ କର । ତଦନନ୍ତର ହର-ତିରୋଧାନର ଅନତିବ୍ୟବହିତ କାଳରେ ପ୍ରାଗାଦିକ-କୁଭାଧିପ ଇନ୍ଦ୍ର ବରୁଣାଦି ସେଠାରେ ସମବେତ ହୋଇ ପାର୍ଥମନୋରଥ ସାର୍ଥକରଣାର୍ଥ ସ୍ୱସ୍ୱ ଅସ୍ତ୍ରଶସ୍ତ୍ରମାନ ପ୍ରଦାନ କଲେ । ସୁତରାଂ ସ୍ୱର୍ଗକୁ ଆସିବାପାଇଁ ନାକନାୟକ ନିମନ୍ତ୍ରଣ କଲେ । ତତଃପର ପୁରୁହୂତାହୂତ ମାତଳିସନାଥ ପାର୍ଥ ନିସର୍ଗସୁଖନିକେତ ସ୍ୱର୍ଗରେ ପ୍ରବେଶ କରି ପୁରନ୍ଦରକର୍ତ୍ତୃକ

---

* ସ ବ୍ୟାସବାକ୍ୟମୁଦିତୋ ବନାଦ୍ ଦ୍ୱୈତବନାତ୍ତତଃ ।
ଯଯୌ ସରସ୍ୱତୀକୂଳେ କାମ୍ୟକଂ ନାମ ତଦ୍ୱନଂ ।। ବ.ପ. ୩୬ ଅ:

ବହୁ ସତ୍କୃତ ହୋଇ ବହୁବିଧ ଅସ୍ତ୍ରଶସ୍ତ୍ର ଓ ଅନବଦ୍ୟା ଗାନ୍ଧର୍ବବିଦ୍ୟା ଶିକ୍ଷାପୂର୍ବକ [୧] ନିବାତକବଚମାନଙ୍କ ହୃଦ୍‌ବିଦାରଣରେ କୃତପ୍ରୟାଣ-ପ୍ରାଣ [୨] ପ୍ରବାତକବଚ କରିବା ପାଇଁ ଏବଂ କଳହାୟମାନ କାଳକେୟଚୟକୁ କାଳଗେୟାତିଥୀକରଣାର୍ଥ ତତ୍ର ବର୍ଷପଞ୍ଚକ ଅବସ୍ଥାନ କରିଥିଲେ । [୩] ଏତାବତ୍ ସମୟ ମଧ୍ୟରେ ଏକଦା ତଦୀୟ ମାତୃକଳ୍ପା ଅନଙ୍ଗମାନ୍ମଥବିକାରା ଉର୍ବଶୀଙ୍କଠାରୁ ଶୁଭୋଦର୍କନପୁଂଷକତ୍ୱ ପ୍ରାପ୍ତ ହୋଇଥିଲେ । ଇନ୍ଦ୍ରାଦିଷ୍ଟ ମହର୍ଷି ଲୋମଶ ଅର୍ଜୁନବିରହସଂତପ୍ତ ଯୁଧିଷ୍ଠିରଙ୍କଠାକୁ ଆସି ସମାଶ୍ୱାସନରେ ତୀର୍ଥ ଭ୍ରମଣାର୍ଥ ପ୍ରବର୍ତ୍ତାଇବାରୁ ପ୍ରୋକ୍ତ ପାଞ୍ଚବର୍ଷରେ ସାନୁଗସାନୁଜ ସାନୁଯାତ୍ରିକ ଧର୍ମରାଜଙ୍କର ସମଗ୍ର ତୀର୍ଥାଟନ ସମ୍ପନ୍ନ ହୋଇଥିଲା ।

ଇତ୍ୟାକାରକ ପ୍ରକୃତ ଘଟନାଗୁଡ଼ିକୁ ସାରଳାଦାସ କବି ମହୋଦୟ ଯଥାଯଥ ଲେଖି ନାହାନ୍ତି । କାରଣ ଇତିପୂର୍ବରୁ ଅତ୍ରତ୍ୟ ମହାଦେବଙ୍କ ସହ ଅର୍ଜୁନଙ୍କ ଆହବିକ ପ୍ରକ୍ରିୟାଦିକୁ ଆଦିପର୍ବରେ ଦୁଃସ୍ଥାନସ୍ଥିତ କରିଦେଇ ଥିବାରୁ ଏ ସ୍ଥଳରେ ଏତଦ୍‌ବିନା କଥାକୁ ଅନ୍ୟଥା ସମର୍ଥନ କରିଅଛନ୍ତି । ପୁନଶ୍ଚ କହିଅଛନ୍ତି କି ଏତାବତ୍ ପର୍ଯ୍ୟନ୍ତ ସୁଭଦ୍ରା ଓ କୁନ୍ତୀଦେବୀ ପାଣ୍ଡବମାନଙ୍କର ସମଭିବ୍ୟାହାରିଣୀ ଥିଲେ । ଏହିଠାରୁ ଶ୍ରୀକୃଷ୍ଣ ସ୍ୱାନୁଜାଙ୍କୁ ଦ୍ୱାରକାକୁ, ବିଦୁର ଭ୍ରାତୃଜାୟାଙ୍କୁ ହସ୍ତିନାକୁ ନେଲେ ।(୪) ଅଥଚ ପାଣ୍ଡବମାନେ କାଶୀକ୍ଷେତ୍ରର ଅନ୍ତର୍ଗତ ଅସ୍କନ୍ଦାଭିଧାବନରେ ଅବତରିବା ସମୟରେ ବଶୀଶ ବଶିଷ୍ଠଙ୍କ ଗାଭୀ ଅପହରଣର ଶାପରେ ଅନ୍ଧୀଭୂତ ଅନିଳବସୁଙ୍କୁ ଯୁଧିଷ୍ଠିର ଚକ୍ଷୁଦାନ କରିଥିଲେ ବୋଲି ମୂଳାନୁକ୍ତ ଏକ କଥାସନ୍ଦର୍ଭକୁ ଅବତାରିତ କରିଅଛନ୍ତି । ତତଃପର ପ୍ରୋକ୍ତ ଅସ୍କନ୍ଦବନରେ କେବଳ ଏକାକିନୀ ନିଖିଳ ଭୁବନାତିରିକ୍ତ-ଲାବଣ୍ୟ ସମ୍ପତ୍ତିଶାଳିନୀ ଯାଜ୍ଞସେନୀଙ୍କୁ ବଳାତ୍ ଜିଘୃକ୍ଷୁ ଦୁର୍ମେଧ ସିନ୍ଧୁ ସୌବୀରରାଜ ଜୟଦ୍ରଥ ଅପହରଣ କରି ଧୈର୍ଯ୍ୟଦତ୍ତ ହସ୍ତୋତ୍ସାହ ସମୁପବୃଂହିତସିଂହନାଦ ଭୀମଙ୍କ କର୍ତ୍ତୃକ ପଞ୍ଚଧା(୫) ଛିନ୍ନକେଶ ଓ ବହୁ ତାଡ଼ିତ ହୋଇ "ରାଜନ୍ୟାନାଂ ପରପରିଭବୋ ରାଜଯକ୍ଷ୍ମାହି କୀର୍ତ୍ତେଃ" ଏହା ଭାବି ପାଣ୍ଡବ ଭାବି-ଜିଗୀଷାରେ ତପୋନିଷ୍ଠ ହେବାର କଥା ଲେଖି ପକାଇ ଅଛନ୍ତି; କିନ୍ତୁ

---

[୧] ନିବାତକବଚ = ଅଭେଦ୍ୟକବଚ ।

[୨] ପ୍ରବାତକବଚ = ପ୍ରଭେଦ୍ୟକବଚ ।

[୩] ଗୃହୀତାସ୍ତ୍ରସ୍ତୁ କୌନ୍ତେୟୋ ଭ୍ରାତୃନ୍ ସସ୍ମାର ପାଣ୍ଡବଃ ।
ପୁରନ୍ଦରନିଯୋଗାଚ୍ଚ ପଞ୍ଚାବ୍ଦାନବସତ୍ ସୁଖୀ ।। ବ.ପ. ୪୪ଅ:୫ ଶ୍ଳୋକ ।

(୪) ବନପର୍ବ ଛାପା ପୁସ୍ତକରେ ୬୭ ପୃଷ୍ଠା ଦେଖନ୍ତୁ ।

(୫) ଦ୍ରୌପଦୀ ଚାବ୍ରବୀଦ୍ ଭୀମଂ ଅଭିପ୍ରେକ୍ଷ ଯୁଧିଷ୍ଠିରଂ ।
ଦାସୋଽୟଂ (ଅୟଂ = ଜୟଦ୍ରଥଃ) ମୁଚ୍ୟତାଂ ରାଜ୍ଞଃ ତ୍ୱୟା ପଞ୍ଚସଟଃ କୃତଃ ।
ବ.ପ. ୨୬୧ଅ. ୧୮ ଶ୍ଳୋକ ।

ଏହା ଯଥାସ୍ଥାନସନ୍ନିବେଶିତ ନୁହେଁ । ନିରନ୍ତର ଚିନ୍ତାବିକଳ୍ପକଳ୍ପନାକୁଳ-ହୃଦୟରେ ସାଧୁସଦୟ ଦୁଷ୍ଟାଧକ୍ଷବକ୍ଷଃସ୍ଥଳ-ଦଳନଦକ୍ଷ ନୃହର୍ଯ୍ୟକ୍ଷ ପାଣ୍ଡବ ମହୋଦୟମାନଙ୍କ ବନବାସ ଦ୍ୱାଦଶ ବର୍ଷର ଅତ୍ୟଳ୍ପାବଶିଷ୍ଟ କାଳରେ ଏବଂ ସୌତ୍ରାମଣି ଅର୍ଜ୍ଜୁନଙ୍କ ସହାବସ୍ଥାନ ସମୟରେ ଏହି ଘଟନାଟି ଘଟିଥିଲା । ଶ୍ରୀ ସାରଳାଦାସ କବି ପୌରାଣିକ ବହୁ ଧନ୍ଦାରେ ପଡ଼ି ଆକସ୍ମିକ ସ୍ମୃତିମାନ୍ଦ୍ୟରୁ ବହୁ ବିପ୍ରକୃଷ୍ଟ ଚରିତକୁ ନିକଟାକୃଷ୍ଟ କରି ଆଣି ପକାଇ ଅଛନ୍ତି । ଅନନ୍ତର ଯାଦବଦାୟାଦ ପାଣ୍ଡୁ ଦାୟାଦମାନେ ଅସ୍କନ୍ଦ ବନ ତ୍ୟାଗପୂର୍ବକ ଅନତିଦୂରବର୍ତ୍ତୀ ନନ୍ଦିକେଶ୍ୱର ବନରେ ଅବତୀର୍ଣ୍ଣ ହେଲେ; ଅପିଚ ତତ୍ରାବସ୍ଥାନ ସମୟରେ ମାତୃସଦନବର୍ତ୍ତିନୀ ସୁଭଦ୍ରା ଦେବୀଙ୍କର ଅଭିନବ ପୁତ୍ର ଅଭିମନ୍ୟୁଙ୍କ ଉତ୍ପତ୍ତି ବୃତ୍ତାନ୍ତ ଶୁଣିଥିଲେ ବୋଲି କହି ଅଛନ୍ତି । ଏହା ନିତାନ୍ତ ଅଳୀକ ଓ ଅସଙ୍ଗତ । ଅନ୍ଧପରମ୍ପରାନୁଗତ ଶ୍ରାବଣିକ ଜ୍ଞାନ ଯୋଗୁଁ କିମ୍ବା ଅମନ୍ଦ-ପ୍ରମାଦବଶତଃ ଏହି କବି ମହାଶୟ ଭ୍ରାନ୍ତ ଧାରଣାରେ ପଡ଼ି ଏପରି କହି ପକାଇ ଅଛନ୍ତି । ଏହି ବନବାସର ବହୁ ପୂର୍ବରୁ ଅଭିମନ୍ୟୁ ପ୍ରଭୃତି ସୌଭଦ୍ର ଓ ଦ୍ରୌପଦେୟ ପାଣ୍ଡବେୟମାନେ ଜନ୍ମଗ୍ରହଣ କରି ରାଜସୂୟ ଯାଗ ସମୟକୁ ସମୁଜ୍ଜ୍ୱଳିତ ଶୈଶବ ଥିଲେ । ଅତଏବ ସେହି ସବନ-ସମାପ୍ତି ପରେ ରାଜାମାନେ ଯେତେବେଳେ ଯୁଧିଷ୍ଠିରଙ୍କଠାରୁ ବିଦାୟ ଗ୍ରହଣପୂର୍ବକ ସ୍ୱ ସ୍ୱ ନଗରାଭିମୁଖରେ ପ୍ରତିପ୍ରସ୍ଥାନ କରିଥିଲେ, ତେତେବେଳେ କତିପୟ ରାଜାଙ୍କୁ ସମ୍ମାନପୂର୍ବକ ଅନୁଗମନ କରିବା ପ୍ରସଙ୍ଗରେ ସଭାପର୍ବୀୟ ପଞ୍ଚଚତ୍ୱାରିଂଶ ଅଧ୍ୟାୟରେ ଉକ୍ତ ଅଛି କି, ପାର୍ବତୀୟ ମହାରଥମାନଙ୍କ ସମ୍ମାନାର୍ଥ ଦ୍ରୌପଦୀ ଓ ସୁଭଦ୍ରାଙ୍କ ପୁତ୍ରମାନେ ଅନୁଗମନ କରିଥିଲେ । ଇତ୍ୟାଦି [୧]

ଏ ସ୍ଥଳରେ ସତ୍ୟାନୁସରଣରେ ଉପଲବ୍ଧ ହୁଏ ଯେ, ତେତେବେଳେ ଶସ୍ତ୍ରାର୍ଥ ସ୍ୱର୍ଗତ ଅର୍ଜ୍ଜୁନଙ୍କ ବିପ୍ରଯୋଗରେ ଏକାନ୍ତ ସନ୍ତପ୍ତ ସଭାର୍ଯ୍ୟ ଯୁଧିଷ୍ଠିରାଦି ଭ୍ରାତୃଚତୁଷ୍ଟୟ ପୂର୍ବୋକ୍ତ କାମ୍ୟକବନରେ ଅବସ୍ଥିତ ଥିଲେ । ଏଠାରେ ବୃହଦର୍ଥ ଋଷିପ୍ରବର ବୃହଦଶ୍ୱ ଯୁଧିଷ୍ଠିରଙ୍କୁ ତତ୍ସମଦୁଃଖୀ ନଳରାଜାଙ୍କ ଉପାଖ୍ୟାନ ପ୍ରଖ୍ୟାନ କରିବା, (୨) ସଦ୍‌ବୃତ୍ତି

---

[୧] ଦ୍ରୌପଦେୟାଃ ସସୌଭଦ୍ରାଃ ପାର୍ବତୀୟାନ୍ ମହାରଥାନ୍ ।
ଅନୁଗଚ୍ଛଂସ୍ତଥୈବାନ୍ୟାନ୍‌କ୍ଷତ୍ରିୟାନ୍ କ୍ଷତ୍ରିୟସର୍ଷଭାଃ । ଇତି ।

ଅପିଚ—

ଯେତେବେଳେ ଅଙ୍ଗୀକୃତଦୌତ୍ୟକର୍ମ ଶ୍ରୀକୃଷ୍ଣ ହସ୍ତିନାକୁ ଗଲେ ତେତେବେଳେ କୁନ୍ତୀଦେବୀ କୁଶଳ ପ୍ରଶ୍ନରେ କହିଅଛନ୍ତି କି

ପ୍ରିୟାନ୍ ପୁତ୍ରାନ୍ ପରିତ୍ୟଜ୍ୟ ପାଣ୍ଡବାନନ୍ୱରୁଦ୍ଧ୍ୟତେ,
ମହାଭିଜନସମ୍ପନ୍ନା ସର୍ବକାମୈଃ ସୁପୂଜିତା ।
ଈଶ୍ୱରୀ ସର୍ବକଲ୍ୟାଣୀ ଦ୍ରୌପଦୀ କଥମୁଚ୍ୟତ ॥

ଉ.ପ. ୮୯ ଅ: ୪୫, ୪୬ ଶ୍ଳୋକ ।

(୨) ଏକପଞ୍ଚାଶାଧ୍ୟାୟରୁ ଆରମ୍ଭ କରି ଏକୋନାଶୀତିତମ ଅଧ୍ୟାୟାନ୍ତଯାଏ ଦେଖନ୍ତୁ ।

ସନ୍ତୁଷ୍ଟ ସମାଗତ ଦେବର୍ଷିନାରଦ ତୀର୍ଥଭ୍ରମଣସତ୍‌ଫଳମାନ ଶ୍ରବଣ କରାଇବା (୧) ଏବଂ ରାଜପୁରୋଧା ସତ୍‌କର୍ମପ୍ରଚାରବେଧା ଗୀଷ୍ପତିମେଧା ଧୌମ୍ୟ ଋଷି ଅନେକଧା ତୀର୍ଥମାନଙ୍କ କଥାମାନ ଶୁଣାଇବା(୨) ତତ୍ପରେ ପ୍ରାକ୍‌ଶଂସିତ ଇନ୍ଦ୍ରାଦିଷ୍ଟ ତତ୍ରୋପଗତ ମହର୍ଷି ଲୋମଶ ତୀର୍ଥଯାତ୍ରାହେତୁକ ସୌତ୍ରାମଣ ସନ୍ଦେଶ ଜଣାଇବା ଉକ୍ତ ଅଛି । ଶ୍ରୀ ସାରଳାଦାସ କବି ଏହି ସନ୍ନିଧାନମାନଙ୍କରେ ନଳୋପାଖ୍ୟାନ ଛଡ଼ା ଅନ୍ୟ ସବୁ ସୁବୁଦ୍ଧିସାଧ ନ ଥିବାରୁ ଏକାବେଳକେ ତ୍ୟାଗ କରିଦେଇ ଅଛନ୍ତି । ଚରିତ ବଖାଣିବାରେ ସୁପଟୁ ଶ୍ରୀ ଶୁଦ୍ରମୁନି କବି ଅତ୍ରୋକ୍ତ ନଳୋପାଖ୍ୟାନର ବିବକ୍ଷୁ ହୋଇ ସୁଦ୍ଧା ମୂଳାନୁଗତ ସ୍ଥାନରେ ଯଥାସମୟରେ ପ୍ରକାଶ କରି ନାହାନ୍ତି । ସ୍ୱର୍ଗାଗତ ଅର୍ଜ୍ଜୁନଙ୍କ ସମାଗମ ପରେ ବହୁ ଅସଂନିକୃଷ୍ଟ ସ୍ଥାନରେ ଯେ କୌଣସି ପ୍ରକାରେ ସମାସତଃ ମାତ୍ର କହିଦେଇଅଛନ୍ତି । ତଥାଚ ଏ ସମୟରେ ଅର୍ଥାତ୍ ଯୁଧିଷ୍ଠିରାନ୍ତିକୋପନୀତ ବ୍ୟାସଦେବ ତାହାଙ୍କୁ ନଳୋପାଖ୍ୟାନ ପ୍ରଖ୍ୟାନ କଲା ସମୟରେ ପାଣ୍ଡବମାନେ ଦଣ୍ଡକାରଣ୍ୟସ୍ଥ ଥିଲେ ବୋଲି ମଧ ବ୍ୟକ୍ତ କରି ପକାଇ ଅଛନ୍ତି ।*

ଅତଃପର ମୂଳଗ୍ରନ୍ଥରେ ତ୍ରିନବତିତମାଧ୍ୟାୟ ପ୍ରାରମ୍ଭରୁ ଷଟ୍‌ପଞ୍ଚାଶୋତ୍ତରଶତତମାଧ୍ୟାୟ ଶେଷଯାଏ ସାନୁଚର ସାନୁଯାତ୍ରିକ ଯୁଧିଷ୍ଠିରାଦି ଭ୍ରାତୃଚତୁଷ୍ଟୟଙ୍କର† ତୀର୍ଥଭ୍ରମଣ ପ୍ରକରଣରେ ପ୍ରସ୍ତାବବଶତଃ ନିମ୍ନରେ ଶଂସିତ ଉପାଖ୍ୟାନ ଓ ଚରିତମାନ ଯଥାସ୍ଥାନରେ ଯଥାକ୍ରମେ ପ୍ରତିପାଦିତ ଅଛି ।

(୧) ଅଗସ୍ତ୍ୟାଶ୍ରମରେ ଅଗସ୍ତ୍ୟୁପାଖ୍ୟାନ ଅର୍ଥାତ୍ ବାତାପିସଂହାରମୂଳକ ଘଟନାମାନ ।

(୨) ଭୃଗୁତୀର୍ଥରେ ରାମଙ୍କ କର୍ତ୍ତୃକ ପରଶୁରାମତେଜୋନିରସନ ସମାଚାର ।

(୩) ତତ୍ପର ବୃତ୍ରବଧୋପାଖ୍ୟାନ ।

(୪) ଅଗସ୍ତିଙ୍କର ସମୁଦ୍ରଶୋଷଣ ଓ ବିନ୍ଧ୍ୟାଦ୍ରି-ଖର୍ବୀକରଣ ପ୍ରକ୍ରିୟା ।

(୫) ସଗରରାଜପୁତ୍ରମାନେ ଅଗସ୍ତ୍ୟଶୋଷିତ ସମୁଦ୍ରର କ୍ଷତିପୂରଣ କରିବା ପ୍ରଭୃତି କଥା ।

(୬) ତତ୍ପର ଗଙ୍ଗାବତରଣ ବୃତ୍ତାନ୍ତ ।

(୭) କୌଶିକୀ ନଦୀ ତୀର୍ଥରେ ଋଷ୍ୟଶୃଙ୍ଗ-ଉପାଖ୍ୟାନ ପ୍ରଖ୍ୟାନ ।

---

(୧) ୮୧ - ୮୫ ଅଧ୍ୟାୟମାନ ଦେଖନ୍ତୁ ।

(୨) ୮୫-୯୨ ଏହି ଅଧ୍ୟାୟମାନ ଦେଖନ୍ତୁ ।

* ଛାପା ପୁସ୍ତକରେ ୨୭୬-୨୯୮ ପୃଷ୍ଠା ଦେଖନ୍ତୁ ।

† ଏ ସମୟରେ ଅର୍ଜ୍ଜୁନ ସ୍ୱର୍ଗରେ ଥିଲେ ।

(୮) କାଳିଙ୍ଗ [୧] ମହେନ୍ଦ୍ରାଚଳରେ ଜାମଦଗ୍ନ୍ୟଙ୍କ ଉପାଖ୍ୟାନ ଅର୍ଥାତ୍ ସେ ଯେପରି ସମସ୍ତ କ୍ଷତ୍ରିୟମାନଙ୍କୁ ନିହତ କରିଥିଲେ ଇତ୍ୟାଦି ।

(୯) ଶର୍ଯାତି ନୃପତିଙ୍କ କନ୍ୟା ସୁକନ୍ୟାଙ୍କ ଉପାଖ୍ୟାନ[୨] ।

(୧୦) ଯୌବନାଶ୍ୱେୟ ମାନ୍ଧାତୃଙ୍କ ଉପାଖ୍ୟାନ ।

(୧୧) ସୋମକ ନୃପତିଙ୍କ ପୁତ୍ର ଜନ୍ତୁରାଜଙ୍କ ଉପାଖ୍ୟାନ ।

(୧୨) ଅନନ୍ୟସାମାନ୍ୟ ମାନ୍ୟତମ ବଦାନ୍ୟ ଉଶୀନର ନରପତିଙ୍କ ସମ୍ବନ୍ଧରେ ଶ୍ୟେନକପୋତୀୟ ଉପାଖ୍ୟାନ ।

(୧୩) ସମଙ୍ଗା ନଦୀତୀର୍ଥପ୍ରସଙ୍ଗତଃ କହୋଡ଼ଙ୍କ ପୁତ୍ର ଅଷ୍ଟାବକ୍ରଙ୍କ ଚରିତକଥନ ।

(୧୪) ତତଃପର ଭରଦ୍ୱାଜଙ୍କ ପୁତ୍ର ଯବକ୍ରୀତଙ୍କ ଉପାଖ୍ୟାନ [୩] ।

(୧୫) ଗନ୍ଧମାଦନଜିଗମିଷୁ [୪] ଯୁଧିଷ୍ଠିରାଦିଙ୍କୁ ତତ୍ରାନୟନାର୍ଥ ଭୈମ ଘଟୋତ୍କଚ ଗମନ ବୃତ୍ତାନ୍ତ ।

(୧୬) ସୁଚିତତର୍ଷାପାର୍ଷତୀଙ୍କର ହର୍ଷଣାର୍ଥ ପାର୍ଷଦଶ୍ରି ଭୀମସେନଙ୍କର ସୌଗନ୍ଧିକାହରଣ ଚରିତ [୫] ।

(୧୭) ବଦରିକାଶ୍ରମରେ ଜଟାସୁରବଧ ଚରିତ ।

(୧୮) ତଦନନ୍ତର ଆଷ୍ଟିଷେଣ ମହର୍ଷିଙ୍କର ଧର୍ମୋପଦେଶ କଥନ ।

(୧୯) ଯୁଧିଷ୍ଠିରାଦିଙ୍କର କୁବେର ଦର୍ଶନ ଏବଂ ମେରୁ ଦର୍ଶନ ।

(୨୦) ତତଃ ଗନ୍ଧମାଦନରେ ତ୍ରିଦିବନିବୃତ୍ତ ଅର୍ଜୁନଙ୍କ ସମାଗମ ।

ଅତଃପର ଅମନ୍ଦାମୋଦମେଦସ୍ୱୀ ନିବେଦ୍ୟମାନ-ସ୍ୱକ୍ରିୟାକଳାପ ସମାଗତ ଅର୍ଜୁନଙ୍କ ସହ ବୀରବରିଷ୍ଠ ଧର୍ମିଷ୍ଠଗରିଷ୍ଠ ସତ୍ୟନିଷ୍ଠ ଯୁଧିଷ୍ଠିରାଦି ଭ୍ରାତୃବୃନ୍ଦ ଗନ୍ଧମାଦନ ତ୍ୟାଗପୂର୍ବକ ପୂର୍ବାଧୁଷିତ ଦ୍ୱୈତବନରେ ଉପନୀତ ହେଲେ । ସେଠାରେ ଅଜଗରୀଭୂତ ନହୁଷଙ୍କ ମୁକ୍ତିପ୍ରଦାନ ପରେ କାମ୍ୟବନକୁ ଯାତ୍ରା କଲେ । କମନୀୟ କାମ୍ୟବନରେ ସସତ୍ୟଭାମ ଶ୍ରୀକୃଷ୍ଣ ସନାରଦ-ସନାତନ ମାର୍କଣ୍ଡେୟଙ୍କର ପାଣ୍ଡବସମାବେଶରେ ତତ୍ସ୍ଥିତ

---

[୧] ତତଃ ସମୁଦ୍ରତୀରେଣ ଜଗାମ ବସୁଧାଧିପଃ ।
ଭ୍ରାତୃଭିଃ ସହିତୋ ବୀରଃ କଳିଙ୍ଗାନ୍ ପ୍ରତି ଭାରତ ।।ବ.ପ. ୧୧୪ ଅ:

[୨] ୧୨୧ - ୧୨୫ ଅଧ୍ୟାୟମାନଙ୍କରେ ଉକ୍ତ ଅଛି ।

[୩] ୧୩୫ - ୧୩୮ ଅଧ୍ୟାୟମାନଙ୍କରେ ଉକ୍ତ ଅଛି ।

[୪] ପରିଗୃହ୍ୟ ଦ୍ୱିଜଶ୍ରେଷ୍ଠାନ୍ ଜ୍ୟେଷ୍ଠାଃ ସର୍ବଧନୁଷ୍ମତାଂ ।
ପାଞ୍ଚାଳୀ ସହିତା ରାଜନ୍ ପ୍ରଯଯୁର୍ଗନ୍ଧମାଦନଂ ।।୧୪୩ ଅ:

[୫] ୧୪୬ - ୧୫୬ ଅଧ୍ୟାୟମାନଙ୍କରେ ଉକ୍ତ ଅଛି ।

ମାର୍କଣ୍ଡେୟ ସମସ୍ୟାରେ[୨] ଯଥାକ୍ରମେ ବହୁବିଧ ଧର୍ମାଚରଣିକ କଥା ସହ ଇନ୍ଦ୍ରଦ୍ୟୁମ୍ନ-ଉପାଖ୍ୟାନ, ଧୁନ୍ଧୁମାର ଉପାଖ୍ୟାନ, ପତିବ୍ରତୋପାଖ୍ୟାନ ଏବଂ ସ୍କନ୍ଦୋପାଖ୍ୟାନ ନାମରେ ଉପାଖ୍ୟାନ ପଞ୍ଚକ ସମୁଦିତ ଅଛି । ପ୍ରୋକ୍ତ ସମସ୍ୟା ସମାପନର ଅବ୍ୟବହିତ ପରେ ପାତିବ୍ରତ୍ୟ ସଂକ୍ରାନ୍ତ ଦ୍ରୌପଦୀ-ସତ୍ୟଭାମା- ସମ୍ବାଦ-ସନ୍ଦର୍ଭର ଶେଷରେ ଶ୍ରୀକୃଷ୍ଣାଦି ସ୍ୱସ୍ୱ ସ୍ଥାନକୁ ପ୍ରସ୍ଥାନ କରିବା, ପାଣ୍ଡବମାନେ ପୁନଶ୍ଚ ଦ୍ୱୈତବନରେ ପ୍ରବିଷ୍ଟ ହେବା, ଅହଙ୍କାର ରକ୍ଷୋନିବାସବୃକ୍ଷ-ରୁକ୍ଷବକ୍ଷ ବିପକ୍ଷ ଦୁର୍ଯ୍ୟୋଧନଙ୍କର ପ୍ରାକ୍‌ସୂଚିତ ଘୋଷଯାତ୍ରା-ପ୍ରକରଣ, ଭୁବନୈକବୀରାଭିମାନୀ କର୍ଣ୍ଣଙ୍କର ଦିଗ୍‌ବିଜୟପ୍ରକରଣ[୩] ଏବଂ ଯୁଧିଷ୍ଠିରଙ୍କର ମୃଗସ୍ୱପ୍ନ-ବୃତ୍ତାନ୍ତ ଯଥାକ୍ରମେ ଲେଖାଅଛି । ଅନନ୍ତର କତିପୟ ଦିନାପଗମରେ ଧର୍ମ-ଧବଳଚରିତ୍ର ଧର୍ମରାଜଙ୍କର ଅନୁମତିମତେ ପାଣ୍ଡବମାନେ ପୁନଶ୍ଚ ତୃଣବିନ୍ଦୁସରସ୍ତଟସ୍ଥ କାମ୍ୟକବନକୁ ପ୍ରତ୍ୟାବୃତ୍ତ ହେଲେ । ସେମାନେ ସେତେବେଳେ କାମ୍ୟକସ୍ଥ ଥିବା ସମୟରେ ତତ୍ରାଗତ ବ୍ୟାସଦେବୋକ୍ତ ଦାନଧର୍ମାନୁପ୍ରାଣିତ ମୌଦ୍‌ଗଲଚରିତ ଦୁର୍ଯ୍ୟୋଧନପ୍ରେରିତ ଦୁର୍ବାସା ମୁନିଙ୍କର ପାଣ୍ଡବଙ୍କ ପ୍ରତି ଶ୍ରୀକୃଷ୍ଣଙ୍କର ଅପ୍ରତିମ ଦୟାମହତ୍ତ୍ୱ ଜ୍ଞାନ କରି ସସାଧ୍ୱସ ପଳାୟନ, କୌଣସି ଋଷିବର୍ଯ୍ୟଙ୍କର ଅରଣିରକ୍ଷଣାର୍ଥ ମୃଗାନୁଧାବୀ ଯୁଧିଷ୍ଠିରାଦିଙ୍କ ଅନୁପସ୍ଥିତିରେ ଏକାକିନୀ ଦ୍ରୌପଦୀଙ୍କର ନୈତିକବୃକ୍ଷତକ୍ଷକ ଜୟଦ୍ରଥକର୍ତ୍ତୃକ ଅପହରଣ ଓ ତତ୍‌ପରାଭୂତିକ୍ରମ ଲିଖିତ ଅଛି । ପୁଣି ତେତେବେଳେ ପାଞ୍ଚାଳୀଙ୍କି ସୈନ୍ଧବ ନେଲା ପରି ମୈଥିଳୀଙ୍କୁ ଭୁବନବିରାବଣ ରାବଣ ନେଇଥିଲେ ବୋଲି ମାର୍କଣ୍ଡେୟଙ୍କଦ୍ୱାରା ରାମଙ୍କ[୧] ଆଜନ୍ମାଭିଷେକ କଥା ଓ ଦ୍ରୌପଦୀ ପ୍ରତିମ ପତିବ୍ରତା ସାବିତ୍ରୀ ଥିଲେ ବୋଲି ସାବିତ୍ରୀ-ଉପାଖ୍ୟାନ ସମୁଦିତ ଅଛି । ରଜନୀକରକରାବଦାତକୀର୍ତ୍ତିସନ୍ତତି ପାଣ୍ଡୁସନ୍ତତିମାନଙ୍କର ବନବାସର ଦ୍ୱାଦଶ ବର୍ଷ ପ୍ରାୟ ଗତ ତ୍ରୟୋଦଶ ପ୍ରାରମ୍ଭ ହେବାରୁ ଇନ୍ଦ୍ରଦେବ କର୍ଣ୍ଣଙ୍କର କୁଣ୍ଡଳକବଚାହରଣାର୍ଥ ଉଦ୍ୟତ ହେବା[୨] ଏବଂ ପ୍ରାସଙ୍ଗିକ ସଙ୍ଗତିବଶତଃ କର୍ଣ୍ଣଜନ୍ମ ବୃତ୍ତାନ୍ତ[୩] ମଧ୍ୟ ଆନୁଷଙ୍ଗିକ ରହିଅଛି । ଅତଃପର ସେହି ତ୍ରିଭୁବନ

---

[୨] ୧୮୩-୨୩୧ ଅଧ୍ୟାୟମାନ ଦେଖନ୍ତୁ ।

[୩] ଗବ୍ୟୂତିମାତ୍ରେନ୍ୟବସଦ୍ ରାଜା ଦୁର୍ଯ୍ୟୋଧନସ୍ତଦା ।
ପ୍ରୟାତୋବାହନୈଃ ସର୍ବୈଃ ତତୋଦ୍ୱୈତବନଂ ସରଃ ॥

ବ.ପ. ୨୩୮ଅ: ୨୯ ଶ୍ଳୋକ ।

[୧] ୨୭୨ - ୨୯୧ ଅଧ୍ୟାୟମାନଙ୍କରେ ରାମାୟଣ କଥାମାନ ଲେଖାଅଛି ।
୨୯୨ - ୨୯୮ ଏପରି ଅଧ୍ୟାୟସପ୍ତକରେ ସାବିତ୍ରୀଙ୍କ କଥା ଲେଖାଅଛି ।

[୨] ଦ୍ୱାଦଶେ ସମତିକ୍ରାନ୍ତେ ବର୍ଷେ ପ୍ରାପ୍ତେ ତ୍ରୟୋଦଶେ ।
ପାଣ୍ଡୂନାଂ ହିତକୃଦ୍ ଶକ୍ରଃ କର୍ଣ୍ଣଂ ଭିକ୍ଷିତୁମୁଦ୍ୟତଃ ॥ ବ.ପ. ୨୯୯ ଅ: ୫ ଶ୍ଳୋକ ।

[୩] ୩୦୨ ୩୦୮ ଅଧ୍ୟାୟମାନଙ୍କରେ କର୍ଣ୍ଣଜନ୍ମ ବୃତ୍ତାନ୍ତ ପାଇବେ ।

ବିଶ୍ରୁତ ବୀରମାନଙ୍କର ବନବାସର ଅନ୍ତିମକାଳରେ କାମ୍ୟକବନରୁ ପୁନରପି ଦ୍ୱୈତବନ ପ୍ରତ୍ୟାଗମନ; [୪] ବନବାସ ଓ ବନପର୍ବର ସର୍ବଶେଷରେ ଧର୍ମବକବୃତ୍ତାନ୍ତ ଏବଂ ସେହି ବିପଶ୍ଚିତ୍ତମ ଅପଶ୍ଚିମଗତମତି ମହାୟନ ପାଣ୍ଡବମାନଙ୍କର ପଶ୍ଚିମହାୟନ-ସୂଚନାର୍ଥ ସୁବିଚାର ଲେଖାଅଛି ।

ଶ୍ରୀ ସାରଳାଦାସ କବି ଏହି ସବୁ ସନ୍ଦର୍ଭମାନଙ୍କ ମଧ୍ୟରୁ ସମଧିକ ତ୍ୟାଗ କରି ଯାହା କିଛି ଅଂଶତଃ କିମ୍ବା ପୂର୍ଣ୍ଣତଃ ଲେଖିଅଛନ୍ତି, ସେ ସବୁ ଅନେକତ୍ର ଅନ୍ୟୋଽନ୍ୟସଂଗତି ସଂଲଗ୍ନତାବିହୀନ ହୋଇ ଅଯଥାସ୍ଥାନବିନ୍ୟସ୍ତ ହୋଇଯାଇ ଅଛି । ଏହି କବି ମହୋଦୟ ପ୍ରଥମତଃ ପ୍ରଗାଢ଼ ଶୁଶ୍ରୂଷାବଳରେ ବଳୀୟାନ୍ ହୋଇ ସାଗରୋପମ ଅତି ଗହନ ମହାଭାରତର ଲେଖାରେ ସାହସପୁରଃସର ସଚେଷ୍ଟ ହୋଇ ଉଠିଲେ ସତ୍ୟ, କିନ୍ତୁ ଏହାଙ୍କର ଶୁଶ୍ରୂଷାବଳାନୁପ୍ରାଣିତ ସୁମତି ସର୍ବତ୍ର ଧାରାବାହିନୀ ଓ ସୁଶୃଙ୍ଖଳରୂପେ ଅକ୍ଷୁର୍ଣ୍ଣା ଓ ଉର୍ଜସ୍ୱଳା ରହିପାରି ନାହିଁ । ପୁଣି ତଦୀୟ ଗଭୀର ସ୍ମୃତିର ସମୁନ୍ମୀଳନ ଓ ସମୁଜ୍ଜୃମ୍ଭଣ ସମୟ ସମୟରେ ଯଥା ସ୍ଥାନରେ ଯଥା ପ୍ରକାରେ ହୋଇପାରି ନାହିଁ । ସେ ମହାତ୍ମା ଅନନ୍ୟସାମାନ୍ୟ ଶୁଶ୍ରୂଷାବଳରୁ ଯାହା ଆତ୍ମୀୟ ଅବ୍ୟାହତ ସ୍ମୃତିକୋଷରେ ରଖିଥିଲେ, ସେଥିମଧ୍ୟରୁ ଯାହା ଯେତେବେଳେ ସ୍ମରଣପଥାରୂଢ଼ ହେଲା, ତାହା ତେତେବେଳେ ଲେଖିଗଲେ । ଅତଏବ ଅନେକତ୍ର ଚରିତମାନଙ୍କର ଦୁଃସ୍ଥାନଶୋଚ୍ୟ ଦଶା ଘଟିଲା । ବନପର୍ବରେ ମୂଳରେ ଉକ୍ତ ପ୍ରାକ୍‌ପ୍ରଦର୍ଶିତ ପ୍ରକରଣମାନଙ୍କରୁ ସର୍ପରୂପୀ ନହୁଷଙ୍କ ମୁକ୍ତିଚରିତ, ଲୋମଶମୁନିସମାଗମ, ଧର୍ମବକ ବୃତ୍ତାନ୍ତ, ଦ୍ରୌପଦୀହରଣ ଚରିତର ଅଂଶଭୂତ ଚିନ୍ତାଶତଗ୍ରନ୍ଥିଳହୃଦୟ ପରାଭବ-ଲଜ୍ଜାକଜ୍ଜଳିତ ମୁଖ ଜୟଦ୍ରଥଙ୍କ ତପସ୍ୟା ଓ ବରପ୍ରାପ୍ତି ବିଷୟ, ମାର୍କଣ୍ଡେୟ ସମାଗମ, ମୁଦ୍‌ଗଳ ପଣ୍ଡାଙ୍କ ଚରିତ, ସଗରପୁତ୍ରମାନଙ୍କ କଥା ଓ ଗଙ୍ଗାବତରଣାଦି ବୃତ୍ତାନ୍ତ, ଋଷ୍ୟଶୃଙ୍ଗ ଜନ୍ମ ଓ ରାମଜନ୍ମାଦି ଚରିତ, ଦ୍ରୌପଦୀ-ସତ୍ୟଭାମା-ସମ୍ବାଦ, ନଳୋପାଖ୍ୟାନ ଏବଂ ଶ୍ୟେନ-କପୋତୀୟ ବୃତ୍ତାନ୍ତମାନ[୧] କେବଳ ମୂଳ ଅପେକ୍ଷା କିଞ୍ଚିଦ୍ ଭିନ୍ନ ପ୍ରକାର ହେଲେ

---

[୪] ପ୍ରତ୍ୟାଜଗ୍ମୁଃ ସରଥାଃ ସାନୁଯାତ୍ରାଃ ।
ସର୍ବୈଃସାର୍ଦ୍ଧଂ ସୂତପୌରୋଗବୈଶ୍ଚ ॥
ତତଃପୁଣ୍ୟଂଦ୍ୱୈତବନଂ ନୃବୀରାଃ ।
ନିସ୍ତୀର୍ଯ୍ୟୋଗ୍ରଂ ବନବାସଂ ସମଗ୍ରଂ ॥ ୩୦୯ ଅ: ୪୪ ଶ୍ଳୋକ ।
ଏବଂ ହୃତାୟାଂ କୃଷ୍ଣାୟାଂ ପ୍ରାପ୍ୟକ୍ଳେଶମନୁତ୍ତମଂ,
ବିହାୟ କାମ୍ୟକଂ ରାଜା ସହ ଭ୍ରାତୃଭିରଚ୍ୟୁତ ।
ପୁନର୍ଦ୍ୱୈତବନଂ ଗମ୍ୟଂ ଆଜଗାମ ଯୁଧିଷ୍ଠିରଃ ॥୩୧୦ ଅ: ୨ ଶ୍ଳୋକ ।

[୧] ଶ୍ୟେନ-କପୋତୀୟ ବୃତ୍ତାନ୍ତ ଛାପା ପୁସ୍ତକରେ ଏ ସ୍ଥଳରେ ଦେଖାଯାଏ ନାହିଁ; ମାତ୍ର ତାଳପତ୍ର ପୁସ୍ତକରେ ଏହିଠାରେ ଲେଖାଅଛି ।

ସୁଦ୍ଧା ସ୍ୱକୀୟ ସ୍ମରଣ ସମୟାନୁକ୍ରମରେ ଲେଖିଅଛନ୍ତି । ସାରଳା ଦାସ କବି କେବଳ ଏ ସ୍ଥଳରେ କାହିଁକି, ସର୍ବତ୍ର ମୂଳଗତ ଧର୍ମଶାସ୍ତ୍ରବିଷୟକ ଓ ତତ୍ତ୍ୱବିଷୟକ ଯାବତୀୟ ସମ୍ବାଦ ଓ ଉପଦେଶଗୁଡ଼ିକ ତ୍ୟାଗ କରିଅଛନ୍ତି କହିଲେ ଚଳେ । ପରନ୍ତୁ ସେସବୁ ଛଡ଼ା ଚରିତପ୍ରଖ୍ୟାପନପ୍ରବୀଣ ଥାଇ ମଧ ଏଠାରେ ସୁକନ୍ୟୋପାଖ୍ୟାନ, ମାନ୍ଧାତୃ ଉପାଖ୍ୟାନ, ଯବକ୍ରୀତୋପାଖ୍ୟାନ ପ୍ରଭୃତି ବିଂଶତ୍ୟଧିକ ଚାରିତ୍ରିକ ଘଟନାମାନଙ୍କୁ ସୁଦ୍ଧା ତ୍ୟାଗ କରିଦେଇ ଅଛନ୍ତି । ବର୍ଣ୍ଣନାବିସ୍ତୃତିପ୍ରିୟ ସାରଳାଦାସ କବି ମୂଳର ଏତେଗୁଡ଼ିଏ ବିଷୟ ତ୍ୟାଗ କଲେ ହେଁ; ପର୍ବଟି ଯେପରି ବିସ୍ତୃତ ହେବ ତାହାର ଯେ କୌଣସି ପ୍ରକାର ନିରୂପାୟ ଉପାୟ ମଧ ନ କରି ଛାଡ଼ି ନାହାନ୍ତି । ତଦିତର ପୁରାଣାଦିରେ ସମୁଦିତ ତଥାଚ କାଳ୍ପନିକ ନିମ୍ନରେ ଅଙ୍କିତ ଚରିତ-ସନ୍ନିଧାନମାନଙ୍କୁ ଏଥିରେ ପ୍ରକ୍ଷିପ୍ତ କରି ପର୍ବଟିକି ବଢ଼ାଇ ଦେଇ ଅଛନ୍ତି । ଯଥା—

(୧) ପାଣ୍ଡବମାନେ କୌତୁକବନରେ ଥିବା ସମୟରେ ହରିତାଳିକା ଚତୁର୍ଥୀର ଚନ୍ଦ୍ରଦର୍ଶନରେ ଲୋକେ ଇନ୍ଦ୍ରକୃତ ବ୍ରହ୍ମହତ୍ୟା ପାପରେ ଲିପ୍ତ ହେବା ବୃତ୍ତାନ୍ତ ।

(୨) ବ୍ରାହ୍ମଣନିର୍ବିଶେଷବେଶଧାରୀ ଶ୍ରୀକୃଷ୍ଣ କର୍ଣ୍ଣପୁତ୍ରଙ୍କର ମାଂସେପ୍‌ସୁ ହୋଇ ତାହାଙ୍କୁ ପୁନରୁଜ୍ଜୀବିତ କରିବାର ବୃତ୍ତାନ୍ତ ।

(୩) ପାଣ୍ଡବମାନଙ୍କର ଭାଗ୍ୟବର ବନରେ ଅବସ୍ଥିତି ସମୟରେ ଇନ୍ଦ୍ରଦେବ ନିବାତକବଚର ପୁତ୍ର ହିରଣ୍ୟକବଚର ବଧାର୍ଥ ଅର୍ଜୁନଙ୍କୁ ଦ୍ୱିତୀୟବାର ପୁନଶ୍ଚ ସ୍ୱର୍ଗକୁ ନେବାରୁ ଧୃତବ୍ରାହ୍ମଣବେଶ ହିରଣ୍ୟକବଚ ମାୟାରେ ଯୁଧିଷ୍ଠିରଙ୍କୁ ସ୍ଥାନାନ୍ତରିତ କରି ଅର୍ଜୁନ କର୍ତ୍ତୃକନିହତ ହେବା । [୧]

(୪) ଗୋଦାବରୀ ତୀର୍ଥ ପ୍ରସ୍ଥାନ ପ୍ରସଙ୍ଗରେ ନାଗକନ୍ୟା ବେଲାବଳୀ ଓ ଭୀମଙ୍କ ପୁତ୍ର ବଳିବେଲ୍ଲାଳଙ୍କର ବିଜୟ ବୃତ୍ତାନ୍ତ ।[୨]

(୫) ପାଣ୍ଡବମାନେ ଗୌତମାଶ୍ରମରେ ଥିବା ସମୟରେ ଅହଲ୍ୟା ଓ ଅଞ୍ଜନାଙ୍କର ଶାଖାପ୍ରଶାଖାଯୁକ୍ତ ବିସ୍ମୟବ୍ୟଞ୍ଜକ ବୃତ୍ତାନ୍ତ ।[୩]

(୬) ଶ୍ରୀଗିରି ପର୍ବତରେ ଥିବାସମୟରେ ମଲ୍ଲିକାର୍ଜ୍ଜୁନ ବୃତ୍ତାନ୍ତର ଆମ୍ରେଡନ ।[୧]

---

[୧] ସାରଳାଦାସ କବି ମୂଳଗ୍ରନ୍ଥୋକ୍ତ ଜଟାସୁର ଚରିତସଂବିଧାନକୁ ଠିକ୍ ସଂପୂର୍ଣ୍ଣତଃ ମନସ୍ଥ କରି ନ ପାରି ବୋଧହୁଏ ତଦନୁକରଣରେ ଯୁଧିଷ୍ଠିରଙ୍କର ସ୍ଥାନାନ୍ତର ସମୁନ୍ନୟନର ଏହି ବିଷୟଟି ଅନ୍ୟଥା ଏହିଠାରେ ଲଗାଇ ଅଛନ୍ତି । ପରନ୍ତୁ ମୂଳରେ ସ୍ଥାନାନ୍ତରେ ହିରଣ୍ୟକବଚର ନାମ ମଧ ଦେଖାଯାଏ ।

[୨] ବ.ପ.ଛା.ପ୍ର. ୧୨୬-୧୪୧ ପୃଷ୍ଠା ପର୍ଯ୍ୟନ୍ତ ଦେଖନ୍ତୁ ।

[୩] ୧୪୧-୧୫୨ ପୃଷ୍ଠା ପର୍ଯ୍ୟନ୍ତ ଲେଖାଅଛି ।

[୧] ଇତିପୂର୍ବେ ସଭାପର୍ବରେ ମଲ୍ଲିକାର୍ଜ୍ଜୁନଙ୍କ ବିଷୟରେ ଯାହା ଯାହା କହିଥିଲେ, ସେହିଗୁଡ଼ିକୁ କେବଳ ଏଠାରେ ଆମ୍ରେଡିତ କରିଅଛନ୍ତି ।

(୭) ମନୋହରବନରେ ଥିବା ସମୟରେ କାଶୀକ୍ଷେତ୍ର ବୃତ୍ତାନ୍ତ ।

(୮) କାଳଚିନଗରାଧିପତି ନିକୁମ୍ଭ ଦୈତ୍ୟର ପ୍ରିୟବତୀ ହାରାବତୀଙ୍କୁ ଅର୍ଜୁନ ସ୍ୱର୍ଗରେ ବିବାହ କରିବାର ଚରିତ ।

(୯) ଅକାଳରେ ସତ୍ୟଆମ୍ରର କଥା ।[୨]

(୧୦) ଗୋକର୍ଣ୍ଣ ତୀର୍ଥରେ ଥିବା ସମୟରେ ଜାମ୍ବବତୀଙ୍କ ପୁତ୍ରୀ ସଚଳା ଦେବୀଙ୍କ ହରଣ ବୃତ୍ତାନ୍ତ ।[୩]

(୧୧) ଏକାମ୍ରବନରେ ଥିବା ସମୟରେ ଭବାନୀ ଆଭୀରୀ ବେଶରେ (ଗୋପାଳୁଣୀ ବେଶରେ) ଅସୁରଦ୍ୱୟଙ୍କୁ ହନନ କରିବା ଚରିତ ।[୪]

(୧୨) ରାବଣର ପୂର୍ବପୁରୁଷାଦିର ବିବରଣ ।[୫]

(୧୩) ଅର୍କଦୈତ୍ୟ ଓ ଚନ୍ଦ୍ରଭାଗା ମହାତ୍ମ୍ୟ ।[୬]

(୧୪) ପାଣ୍ଡବମାନଙ୍କର ରାମେଶ୍ୱର ତୀର୍ଥ ସମବସ୍ଥାନରେ ବିଭୀଷଣ ରାମଙ୍କ ଶରଣ ନେବା ବୃତ୍ତାନ୍ତ ।

(୧୫) ପାଣ୍ଡବମାନେ ଯମନିକ ତୀର୍ଥରେ ଥିବା ସମୟରେ ଜରାଶବର ପ୍ରଭୃତିଙ୍କ ବୃତ୍ତାନ୍ତ । [୬]

(୧୬) ଇନ୍ଦ୍ରଦ୍ୟୁମ୍ନ ରାଜା ଶ୍ରୀ ଜଗନ୍ନାଥଙ୍କ ମୂର୍ତ୍ତି କରାଇବା ପ୍ରଭୃତି କଥା । [୭]

---

[୧] ୨୦୧-୨୦୮ ପୃଷ୍ଠା ପର୍ଯ୍ୟନ୍ତ ଦେଖନ୍ତୁ ।

ଏହି ବୃତ୍ତାନ୍ତଟି କଳ୍ପିତ ବୋଧହୁଏ ସତ୍ୟ, ମାତ୍ର ଏତାଦୃଶ ସତ୍ୟ ଆମ୍ରର କଥା କାଶୀରାମଦାସ ମହାଶୟ ମଧ ସ୍ୱକୃତ ବଙ୍ଗୀୟ ମହାଭାରତରେ ଏହି ସ୍ଥାନରେ କେବଳ ଲେଖିଅଛନ୍ତି । ସାରଳାଦାସଙ୍କ ମତରେ ସତ୍ୟ ଆମ୍ର ବୀଜାରୋପଣରେ କ୍ରମଶଃ ଫଳବାନ ହୋଇଅଛି । କାଶୀରାମଦାସଙ୍କ ସତ୍ୟଆମ୍ର ଶୂନ୍ୟେ ଶୂନ୍ୟେ ଶାଖାରେ ଲଗ୍ନ ହୋଇଅଛି – ଏତିକି ମାତ୍ର ପ୍ରଭେଦ । ବଙ୍ଗ ଭାରତ ବ.ପ. ୩୭୪-୩୭୭ ପୃଷ୍ଠାମାନ ଦେଖନ୍ତୁ । ଏଥିରୁ ଅନୁମିତ ହୁଏ ଯେ, ଏହା ଅମୂଳକ ହେଲେ ସୁଦ୍ଧା ଜନଶ୍ରୁତି ପ୍ରସିଦ୍ଧ ଥିବ ।

[୨] ୨୦୯ - ୨୩୭ ପୃଷ୍ଠାରେ ସଚଳା ହରଣ ଦେଖନ୍ତୁ ।

[୩] ୨୩୮ - ୨୪୧ ପୃଷ୍ଠାମାନଙ୍କରେ ଭବାନୀଙ୍କର ଗୋପାଳୁଣୀ ବେଶ ଚେଷ୍ଟା ଦେଖନ୍ତୁ ।

[୪] ୨୪୧ - ୨୪୪ ପୃଷ୍ଠାମାନ ଦେଖନ୍ତୁ ।

[୫] ୨୪୪ - ୨୪୭ ପୃଷ୍ଠାମାନ ଦେଖନ୍ତୁ ।

[୬] ସାରଳାଦାସ ମହୋଦୟ ଅନେକତ୍ର ଶ୍ରୀ ପୁରୁଷୋତ୍ତମକ୍ଷେତ୍ରକୁ ଯମନିକ ତୀର୍ଥ ବୋଲି ଲେଖିଅଛନ୍ତି ।

[୭] ମୂଳରେ ସମୁଦିତ ଇନ୍ଦ୍ରଦ୍ୟୁମ୍ନଙ୍କ ଚରିତ ସଂପୂର୍ଣ୍ଣ ଭିନ୍ନପ୍ରକାର । ଯଥା– ପାଣ୍ଡବମାନେ ମହର୍ଷି ମାର୍କଣ୍ଡେୟଙ୍କୁ "ଆପଣଙ୍କ ଅପେକ୍ଷା ଚିରଜାତତର କେହି ଅଛନ୍ତି କି ?" ଏହା ପଚାରିବାରୁ

(୧୭) ପାଣ୍ଡବମାନେ ଯେତେବେଳେ ରୈବତପର୍ବତସ୍ଥ ଥିଲେ, ତେତେବେଳେ ରେବତୀଙ୍କ ବୃତ୍ତାନ୍ତ ।[୧]

(୧୮) ଜଟାସୁରତନୟା କାଳଟୀକି ଭୀମସେନ ଗାନ୍ଧର୍ବ ବିବାହମତେ ଗ୍ରହଣ କରି ଶୃଙ୍ଗାରରେ ନିହତ କରିବା ।

(୧୯) ରେବାନଦୀ ତୀରରେ ରେବାଦୈତ୍ୟ ସହ ନକୁଳଙ୍କ ସୌହାର୍ଦସ୍ଥାନ ପ୍ରକ୍ରିୟା ।[୨]

(୨୦) ସତୀମହିମା ସମ୍ବନ୍ଧରେ ମାର୍କଣ୍ଡେୟୋକ୍ତ କୌଶିକ ନାମକ ବ୍ରାହ୍ମଣଙ୍କର ଉପାଖ୍ୟାନ ।[୩]

(୨୧) ଅସ୍କନ୍ଦବନରେ ଅଜ୍ଞାତବାସାର୍ଥ ମନ୍ତ୍ରଣାପ୍ରସ୍ତାବରେ ବଶିଷ୍ଠୋକ୍ତ ମେରୁଶୃଙ୍ଗ ଦୈତ୍ୟର କନ୍ୟା ତ୍ରିପୁରମୋହିନୀଙ୍କ ସହିତ ଶ୍ରୀକୃଷ୍ଣଙ୍କ ପୁତ୍ର ପ୍ରଦ୍ୟୁମ୍ନଙ୍କର ବିବାହବିଧି ଏବଂ ଅର୍ଜୁନଙ୍କଦ୍ୱାରା ମେରୁଶୃଙ୍ଗ ନିହତ ହେବା ଚରିତ ।

(୨୨) ପୁରାକାଳୀନ ଶ୍ୱେତ ରାଜା ବିରାଟରୂପେ ଜନ୍ମିଥିବା ପ୍ରଭୃତି କଥା ।

---

ସେ କହିଲେ କି ସ୍ୱର୍ଗବିଚ୍ୟୁତ ରାଜର୍ଷି ଇନ୍ଦ୍ରଦ୍ୟୁମ୍ନ ଅଛନ୍ତି । ତା ପରେ ମାର୍କଣ୍ଡେୟ ଓ ଇନ୍ଦ୍ରଦ୍ୟୁମ୍ନଙ୍କ ଥାଳାପରେ ''ଆପଣଙ୍କ ଅପେକ୍ଷା ଚିରଜୀବୀ କିଏ'' ବୋଲି ଇନ୍ଦ୍ରଦ୍ୟୁମ୍ନ ପ୍ରଶ୍ନ କଲାରୁ କ୍ରମଶଃ ପ୍ରାବାରକର୍ଣ୍ଣ ଉଲୁକ, ଇନ୍ଦ୍ରଦ୍ୟୁମ୍ନପୁରଃସ୍ଥ ନାଡ଼ିଜଂଘ ନାମକ ବକ ଓ ତତ୍ସରଃସ୍ଥ ଅପୂପାର ନାମକ କଚ୍ଛପର କଥା ଲେଖାଅଛି । ସେହି ସ୍ୱଚ୍ଛାତ୍ମା କଚ୍ଛପଟି ଇନ୍ଦ୍ରଦ୍ୟୁମ୍ନଙ୍କ ସମ୍ବନ୍ଧରେ କହିଲେ କି –

କିମହମେନଂ ନ ପ୍ରତ୍ୟଭିଜ୍ଞାସ୍ୟାମୀହ ହ୍ୟନେନ ସହସ୍ରକୃତ୍ୱଶ୍ଚିତିଷୁଯୂପା ଆହିତାଃ । ସରଶ୍ଚୈଦମସ୍ୟ ଦକ୍ଷଣାର୍ଦ୍ଧରାଭିର୍ଗୋଭିରତି କ୍ରମଣାଭିଃ କୃତଂ । ଅତ୍ର ଚାହଂ ପ୍ରତିବସାମିତି । ବ.ପ. ୧୯୮ ଅ:

ଏହି ଇନ୍ଦ୍ରଦ୍ୟୁମ୍ନଙ୍କୁ ମୁଁ କାହିଁକି ଜାଣି ପାରିବି ନାହିଁ ? ଏ ତ ଏହିଠାରେ ସହସ୍ର ସହସ୍ର ଯାଗ କରି ଯୂପମାନ ପ୍ରତିଷ୍ଠିତ କରିଅଛନ୍ତି । ଏହି ସରୋବରଟି ତ ଏହି ମହାତ୍ମାଙ୍କର ଦାନ ଜଳରେ ସମ୍ପୂର୍ଣ୍ଣ, ତଦବଧି ମୁଁ ଏଠାରେ ନିବାସ କରୁଅଛି । ଏମନ୍ତ ସମୟରେ ଦେବଲୋକରୁ ରଥ ଉପନୀତ ହେଲା । ତହିଁରେ ଇନ୍ଦ୍ରଦ୍ୟୁମ୍ନ ସ୍ୱର୍ଗକୁ ପ୍ରସ୍ଥାନ କଲେ ।

ତଥାପି ଏସବୁ ଦେଖି ଅନୁମାନ ହୁଏ, ଉତ୍କଳର ପ୍ରାଚୀନ ପୁରାଣୈକବେତ୍ତା ମତିମାନ୍ ସାରଳା ଦାସ ମହୋଦୟ ଏହାର ବିସ୍ତୃତ ଚରିତମାନ ପୁରାଣେତରମାନଙ୍କରୁ ପଢ଼ି କିମ୍ବା ଶୁଣି ତାହାର ଅନୁକରଣରେ ସ୍ୱଭାରତରେ ଇନ୍ଦ୍ରଦ୍ୟୁମ୍ନଙ୍କ ଚରିତକୁ ଲେଖିଥିବେ ।

[୧] ୨୯୯-୩୦୫ ପୃଷ୍ଠାମାନଙ୍କରେ ଉକ୍ତ ଅଛି ।

[୨] ୩୧୦- ୩୧୩ ପୃଷ୍ଠା ।

[୩] ୩୧୬-୩୨୦ ପୃଷ୍ଠା ।

(୨୩) ପାଣ୍ଡବମାନେ ସର୍ବସାଧାରଣଙ୍କ ଚକ୍ଷୁରେ ଅଜ୍ଞାତ ରହନ୍ତୁ ବୋଲି ଶ୍ରୀକୃଷ୍ଣ ଜଳଘୋଷ ମନ୍ତ୍ର ପ୍ରଦାନ କରିବା ।[୪]

(୨୪) ଅର୍ଜୁନଙ୍କ ଖଡ଼ି ରେଖାରେ ଦୁଇଗୋଟି ମହାନ୍ ଶିଂଶପା ବୃକ୍ଷ ଜନ୍ମିବା ପ୍ରଭୃତି କଥା ।

ଏହି ତାବତ୍ ବିଷୟଗୁଡ଼ିକ ଶ୍ରୀମାନ୍ ସାରଳା ଦାସ ମହୋଦୟଙ୍କର ବହୁ ପୁରାଣଶ୍ରୁତିଜନିତ ବଳରୁ ହେଉ କିମ୍ବା କେତେକ ତଦୀୟ ବିସ୍ମୟଜନକ ଅସାଧାରଣ କଳ୍ପନାନିପୁଣ ବୁଦ୍ଧିମତାର ବଳରୁ ହେଉ, ଅନ୍ୟୋନ୍ୟ ବୈଷୟିକସଂଲଗ୍ନତାର ସଦ୍‌ଭାବରେ ହେଉ କିମ୍ବା ଅସଦ୍‌ଭାବରେ ହେଉ, ଯେ କୌଣସି ପ୍ରକାରେ ସବୁଭାବିତ କାରଣ ସହ ଉକ୍ତ ହୋଇଅଛି । ଏଥିରେ ଶ୍ରୋତୃବର୍ଗଙ୍କର ସଂପୂର୍ଣ୍ଣ ଆସ୍ଥା ଅନାସ୍ଥା ସମ୍ବନ୍ଧରେ ଅଧିକ କଣ କୁହାଯାଇ ପାରେ ? ଯାହାର ହୃଦୟ ବିଶୁଦ୍ଧ ଜ୍ଞାନାଲୋକରେ ଆଲୋକିତ, ସେ କାହାରି ଭ୍ରାନ୍ତଧାରଣାରେ ପଡ଼େ ନାହିଁ, ସତ୍ୟ ଅସତ୍ୟାବୃତ ହେଲେ ସୁଦ୍ଧା ଅବଗତ ହୋଇପାରେ, ତଦୀୟ ହୃଦୟ ଯାହାକୁ ମାନେ, ତହିଁରେ ସେ ଆସ୍ଥାବାନ୍ ହୁଏ, ଅନ୍ୟର କଥାରେ ଭୁଲେ ନାହିଁ । ସର୍ବତ୍ର ସର୍ବଦା ପ୍ରକୃତତଃ ହୃଦୟର ବିଶ୍ୱାସ ହିଁ ମୂଳ । ''ଯାଦୃଶୀ ଭାବନା ଯତ୍ର ସିଦ୍ଧିର୍ଭବତି ତାଦୃଶୀ ।'' ଅଥଚ ମୂଢ଼ର ବିଶ୍ୱାସ ଅଭିଜ୍ଞର ବିଶ୍ୱାସର ତୁଲ୍ୟ ଫଳଦାୟକ । ଏହି ନୀତିର ପକ୍ଷପାତୀ ହେଲେ, ଏ ସମ୍ବନ୍ଧରେ ବିଶେଷ କହିବା

---

[୧] ଜଳଘୋଷ ବୋଲି ଏହି ମନ୍ତ୍ରର ଗୋଟିଏ ।
ପାଣ୍ଡବଙ୍କୁ ଶିଖାଇଲେ ପ୍ରସନ୍ନେ ସଦୟେ ।।
ଏହେ ଉପାସନେ ତୁମ୍ଭେ ଚିନ୍ତିବ ସବୁନ୍ତି ।
କେହି ବାରି ନ ପାରିବେ ତୁମ୍ଭ ବର୍ଣ୍ଣ ମୂର୍ତ୍ତି ।।
ପ୍ରତ୍ୟକ୍ଷେ ପରୀକ୍ଷା କରାଇଲେ ଜନାର୍ଦ୍ଦନ ।
ଯୁଧିଷ୍ଠିର ଦିଶିଲେ ଯେ ପାଣ୍ଡୁର ବରଣ ।।
ଭୀମସେନ ରୂପ ଯେ ଗଉରବର୍ଣ୍ଣ ଦିଶ ।
କିଂଶୁକ ପରାୟେ ତାର ଶରୀର ପ୍ରକାଶି ।।
ଅର୍ଜୁନର ଶରୀର ନୀଳ ଉତ୍ପଳର କାନ୍ତି ।
ନିଦାଘ ସୂର୍ଯ୍ୟ ଜାଣି ଦିଶିଲା ତାର ଜ୍ୟୋତି ।।
ନକୁଳ ଶରୀର ଯେ ଶୁଦ୍ଧ ସ୍ଫଟିକର ବର୍ଣ୍ଣ ।
ରସାଣପତ୍ର ଜାଣି ମାଦ୍ରୀର ନନ୍ଦନ ।।
ସହଦେବର ଶରୀର ସୁରଭିର ଭଳି ।
କନକରୁଚିର ଶରୀର ତାହାର ଝଳି ।।
ଝଳିଲା ସୁବର୍ଣ୍ଣ ପ୍ରାୟେ ଦ୍ରୌପଦୀର କାୟେ ।
ଶରୀର ବିକାଶିଲା ଗଉରବର୍ଣ୍ଣ ପ୍ରାୟେ ।।
ଦେଖ ହୋ ମହାତ୍ମା ନାରାୟଣ ମନ୍ତ୍ର ଗୋଟି ।
ଏକା ମନ୍ତ୍ରକେ ସବୁରି ବର୍ଣ୍ଣମାନ ଫାଟି ।। ବ.ପ. ୩୪୬ ପୃଷ୍ଠା

ଅନାବଶ୍ୟକ । ପରନ୍ତୁ ଏତିକି କହିଲେ ଯଥେଷ୍ଟ ହେବ ଯେ ଯେଉଁମାନେ ଭାରତ ପାଠରେ କେବଳ ଶ୍ରୀମତ୍ ବ୍ୟାସଦେବଙ୍କ ବଚନାନୁଗାମୀ, ସେମାନେ ଏ ସବୁରୁ ଅନେକାଂଶ ଅସତ୍ୟଭୂତ ମନେ କରି ପାରନ୍ତି, କିନ୍ତୁ ଯେଉଁମାନଙ୍କର ମୂଢ଼ ହେଉ ବା ଜ୍ଞାନଗୂଢ଼ ହେଉ ବିଶ୍ୱାସ ପ୍ରଗାଢ଼ ହେଲା, ସେମାନେ ଅବଶ୍ୟ ଏଥିରେ ଆସ୍ଥାପର ହେବେ, ସନ୍ଦେହ ନାହିଁ । କାରଣ ଏହା ଅମୂଳକ ହେଲେ ସୁଦ୍ଧା ମିଥ୍ୟାମୂଳକ ନୁହେ, ପୁରାଣେତିହାସାନ୍ତରର ଅନୁକରଣରେ ଲିଖିତ ମାତ୍ର । [୧]

ଅଭିଜ୍ଞ ପାଠକେ ! ଏହି ପ୍ରକରଣର ପରିଶେଷରେ ଏହା ବ୍ୟକ୍ତ କରି ରଖିବା ଉଚିତ ଯେ ଶ୍ରୀ ସାରଳା ଦାସ ମହୋଦୟ ପ୍ରମାଦବଶତଃ ଆର୍ଜୁନି ଅଭିମନ୍ୟୁଙ୍କ ଜନ୍ମ ପରି ଯୌଧିଷ୍ଠିରାଦି ଦ୍ରୌପଦେୟମାନଙ୍କ ଜନ୍ମ ମଧ୍ୟ ନିତାନ୍ତ ଅସଙ୍ଗତ କରି ଲେଖି ପକାଇ ଅଛନ୍ତି । ସେ କହନ୍ତି କି ବନବାସୀ ପାଣ୍ଡବମାନେ ଗଣ୍ଡକୀ ତୀରସ୍ଥ ବନରେ ଅବସ୍ଥିତ ଥିବା ସମୟରେ ଦ୍ରୌପଦୀ ଦେବୀ ବିଶ୍ୱଦେବାମାନଙ୍କ ଅଂଶରେ ପଞ୍ଚପାଣ୍ଡୁ ପୁତ୍ରମାନଙ୍କ ଔରସରେ ଗର୍ଭବତୀ ହେଲେ । କ୍ରମଶଃ ସେମାନେ ଗୌତମୀ ତୀର୍ଥସ୍ଥ ହେବା ସମୟରେ ଅନ୍ତଃସତ୍ତ୍ୱା ଦ୍ରୌପଦୀଙ୍କର ବୈଜନନ ମାସ ହେଲା । [୨] ତପ୍ତରେ ସେ ଯୁଧିଷ୍ଠିରାଦିଙ୍କ ଔରସରେ ଯଥାକ୍ରମେ ଜୟଦେବ, ବଳିସେନ, ପରମାନନ୍ଦ, ପ୍ରାକର୍ମକେଶରୀ ଓ ସୁନସେନ ନାମକ ପଞ୍ଚପୁତ୍ର ପ୍ରସବ କଲେ । ତଦାନୀଂ ପାଣ୍ଡବେୟ-ମାତାମହ ତୀର୍ଥଯାତ୍ରାର୍ଥ ସମାଗତ ଦ୍ରୁପଦରାଜ ତତ୍ରତ୍ୟ ଥିବାରୁ ଦୌହିତ୍ରମାନଙ୍କୁ ସ୍ୱଗୃହକୁ ଘେନିଗଲେ । ଇତ୍ୟାଦି ।

ସାରଳା ଦାସ କବି ଯେଉଁ ସମୟରେ ପାଣ୍ଡବେୟମାନଙ୍କର ପ୍ରସାଦମୂଳକ ଜନ୍ମକାଳ କଳ୍ପନା କରିଅଛନ୍ତି, ସେମାନେ ସେତେବେଳେ ସମୁଞ୍ଝିତଶୈଶବ ଓ ସଂପ୍ରାପ୍ତତାରୁଣ୍ୟ ଥିଲେ । ଅତଏବ ଅର୍ଜୁନଙ୍କ ତପସ୍ୟାର୍ଥ ପ୍ରସ୍ଥାନ ସମୟରେ ଅର୍ଥାତ୍ ବନବାସର ପ୍ରାରମ୍ଭରେ ପ୍ରସ୍ତାବବଶତଃ ମୂଳ ଗ୍ରନ୍ଥରେ ଉକ୍ତ ଅଛି କି ଇତଃପୂର୍ବରୁ ପାଣ୍ଡବେୟମାନେ ମହାରଥ ହୋଇ ଦେଦୀପ୍ୟମାନ ଅଛନ୍ତି । ଯଥା–

ପ୍ରତିବିନ୍ଧ୍ୟୋ ଯୁଧିଷ୍ଠିରାଦ୍ ସୁତସୋମୋ ବୃକୋଦରାତ୍ ।
ଅର୍ଜୁନାଦ୍ ଶ୍ରୁତକୀର୍ତ୍ତିସ୍ତୁ ଶତାନୀକସ୍ତୁ ନାକୁଳିଃ ।।
କନିଷ୍ଠାଦ୍ ଶ୍ରୁତକର୍ମା ଚ ସର୍ବେ ସତ୍ୟପରାକ୍ରମାଃ ।
ପ୍ରଦ୍ୟୁମ୍ନୋ ଯାଦୃଶଃ କୃଷ୍ଣ ! ତାଦୃଶାସ୍ତେ ମହାରଥାଃ ।।

ବ.ପ. ୧୨ ଅ: ୭୨,୭୩ ଶ୍ଳୋକ ।

---

[୧] ଶ୍ରୀ କାଶୀରାମ ଦାସ ମହାଶୟ ମଧ୍ୟ ସ୍ୱକୃତ ବଙ୍ଗଭାରତରେ ଏତାଦୃଶ ବହୁ ବିସ୍ତୃତ ଶ୍ରୀବତ୍ସରାଜଚରିତ ପ୍ରଭୃତି କେତେଗୁଡ଼ାଏ କଥାକୁ ପୁରାଣାନ୍ତକରଣରେ ବନପର୍ବରେ ଲେଖିଅଛନ୍ତି । ଏସବୁ ସୁଦ୍ଧା ଅମୂଳକ ହେଲେ ହେଁ ଅଳୀକ ନୁହେଁ ।

[୨] ଗଉତମ ତୀର୍ଥେ ହେଲେ ବହୁତ ମହର୍ଷି ।
ଦ୍ରୌପଦୀ ଦଶମାସ ହେଲେ ଗର୍ଭବାସୀ ।। ଛାପା ପୁସ୍ତକରେ ୧୫୧-୧୫୨ ପୃଷ୍ଠା ଦେଖନ୍ତୁ ।

ବିରାଟ ପର୍ବ ଛାପା ପୁସ୍ତକଗତ ପାଠାନୁସାରେ ଆରମ୍ଭତଃ ବୈବସ୍ୱତ ମନୁଙ୍କ ପ୍ରଶ୍ନର ଅନ୍ତର୍ଗତ ଗୋଟିଏ ବିଷୟ ଏହି ଯେ ଚୈତ୍ରସେନିକ ପରାଭବୋତ୍ତୀର୍ଣ୍ଣ କର୍ଣ୍ଣସଖା ଭୁରିମାନ ଦୁର୍ଯ୍ୟୋଧନ କିପରି ଅବା ଅପମାନ ସହ୍ୟ କରି ରହିଲେ । [୧] କିନ୍ତୁ ଅସ୍ଥାନୋତ୍ଥାପିତ ଏହି ଅକାଳିକ ପ୍ରଶ୍ନର ଉତ୍ତର ଏଠାରେ ପ୍ରଦତ୍ତ ହୋଇ ନାହିଁ ।

ଅନନ୍ତର ଅଜ୍ଞାତ-ବାସୋଦ୍ୟତ ପ୍ରଜ୍ଞାତାବଗନ୍ତବ୍ୟ ପାଣ୍ଡବମାନଙ୍କର ଆନୁଯାତ୍ରିକ ଋଷିଗଣ ଓ ଧୌମ୍ୟ ପୁରୋଧାଙ୍କର ପ୍ରତିନିବୃତ୍ତ୍ୟର୍ଥ ବିଦାୟ ପ୍ରଦାନପୂର୍ବକ କ୍ରୋଡ଼ୀକୃତକୋଟର-ଶମୀପାଦପରେ ଅସ୍ତ୍ରଶସ୍ତ୍ରମାନଙ୍କର ସଂସ୍ଥାପନ ସବିଧାନ ପ୍ରତିପାଦିତ ଅଛି, କିନ୍ତୁ ତାଳପତ୍ର ପୁସ୍ତକରେ ଏତଦ୍‌ବିଷୟଟି ବନପର୍ବର ସର୍ଗାବସାନରେ ନିଗଦିତ ଥିବାରୁ ବିରାଟପ୍ରତି ପ୍ରସ୍ଥାନକରଣ ପ୍ରାରମ୍ଭରୁ କେବଳ ପର୍ବ ଆରବ୍ଧ ହୋଇଅଛି । ଛାପା ପୁସ୍ତକରେ ଏ ତଦ୍‌ସଂକ୍ରାନ୍ତ ପ୍ରାୟଶଃ ଚତୁଃପୃଷ୍ଠାବଧିକ ଅଧିକ ପାଠ ପୁନରୁକ୍ତ ରହିଅଛି । ଶଂସିତ ଋଷିଗଣ ପ୍ରଭୃତିଙ୍କର ବିଦାୟ ଓ ଶମୀରେ ଅସ୍ତ୍ର-ବିନ୍ୟାସ ପ୍ରକ୍ରିୟା ମୌଳିକ ପରିପାଟୀରେ ବିରାଟପର୍ବସ୍ଥ ହେଲେ ସୁଦ୍ଧା ଓଡ଼ିଆ ଛାପା ପୁସ୍ତକରେ ଆବଶ୍ୟକତାର ଅଭାବରେ ଉଭୟତ୍ର (ବନ ଓ ବିରାଟ ପର୍ବରେ) ଉଲ୍ଲେଖ କରିବା ପୁନରୁକ୍ତି-ଦୋଷାବହ କେବଳ । ଗ୍ରନ୍ଥକର୍ତ୍ତା ଶ୍ରୀ ସାରଳା ଦାସ ମହୋଦୟ ଏପରି କରି ନ ଥିବେ । ଯଦିଚ ଅନ୍ୟାନ୍ୟ ତାଳପତ୍ର ପୁସ୍ତକମାନଙ୍କରେ ମଧ୍ୟ ପ୍ରୋକ୍ତ ବୃତ୍ତାନ୍ତ ଆମ୍ରେଡ଼ିତ ଥାଏ, ତେବେ ଅନୁଲେଖକମାନଙ୍କର ବୁଦ୍ଧି ଦୁର୍ବିଧତାମୂଳକ ପରିବର୍ଦ୍ଧନ ବୋଲି କହିବାକୁ ହେବ ।

ମୂଳ ଗ୍ରନ୍ଥରେ ସମୁଦିତ ଯୁଧିଷ୍ଠିରଙ୍କ ବନବାସର ଆପ୍ରାରମ୍ଭାନ୍ତ ଅନୁଗତ ସୂତ-ପୌରଗବପ୍ରମୁଖ [୨] ତଥାଚ ପାର୍ଷତୀସହଚାରିଣୀ ପରିଚାରିକାମାନଙ୍କର ଏତଦ୍‌ଭୂତ କଥା ଶ୍ରୀ ସାରଳାଦାସ କେବଳ ସ୍ମୃତିକୋଷସ୍ଥ କରିପାରି ନ ଥିବାରୁ ତତ୍ସମ୍ବନ୍ଧ ବୃତ୍ତାନ୍ତ କୁତ୍ରାପି ବ୍ୟକ୍ତ କରିପାରି ନାହାନ୍ତି । ପୁଣି ବିରାଟ ବିଷୟପ୍ରତି ଯୁଧିଷ୍ଠିରାଦିଙ୍କର ସମାଗମନାନୁକ୍ରମକୁ କିଞ୍ଚିଦ୍ ବ୍ୟତ୍ୟାସ କରିଦେଇ ଅଛନ୍ତି । ନିଜ ଧାମପିଧାନ ସୁବିଧାନ

---

[୧] ଦୁର୍ଯ୍ୟୋଧନ ଅପମାନ ସହିଲା କେମନ୍ତେ ।
ବନ୍ଧନରୁ ମୁକ୍ତ ହୋଇ କି ଭାବିଲା ଚିତ୍ତେ ॥
ଏଥିର ଚରିତ ମୋତେ କହ ମହାମୁନି — ବି.ପ. ଛାପା ୨ ପୃ: ।

[୨] ପୁରୋହିତୋଽୟମସ୍ମାକଂ ଅଗ୍ନିହୋତ୍ରାଣି ରକ୍ଷତୁ ।
ସୂତପୌରଗବୈଃ ସାର୍ଦ୍ଧଂ ଦ୍ରୁପଦସ୍ୟ ନିବେଶନେ ॥
ଇନ୍ଦ୍ରସେନମୁଖାଶ୍ଚେମେ ରଥାନାଦାୟ କେବଳାନ୍ ।
ଯାନ୍ତୁ ଦ୍ୱାରାବତୀଂ ଶୀଘ୍ରମିତି ମେ ବର୍ତ୍ତତେ ମତିଃ ॥
ଇମାଶ୍ଚ ନାର୍ଯୋ ଦ୍ରୌପଦ୍ୟାଃ ସର୍ବାଶ୍ଚ ପରିଚାରିକାଃ ।
ପାଞ୍ଚାଳାନେବ ଗଚ୍ଛନ୍ତୁ ସୂତପୌରଗବୈଃ ସହ ॥ ବି.ପ. ୪ ଅ: ।

ପାଣ୍ଡବମାନଙ୍କ ଜୟଜୟନ୍ତାଦି[୧] ଅନିତରଜ୍ଞାତ ନିଗୂଢ଼ାଭିଧାନଗୁଡ଼ିକୁ ଏକାବେଳକେ ଅନ୍ତର୍ଦ୍ଧାନ-ନିଧାନ କରି ପକାଇ ଅଛନ୍ତି । ପରନ୍ତୁ ଯେ କି ସର୍ବାବସ୍ଥାରେ ଉତ୍କର୍ଷାପକର୍ଷ-ସମଚିତ୍ତ, ଯାହାଙ୍କର ପୁଣି ପରମହଂସଭାବ ଅବିରତ ଦେଦୀପ୍ୟମାନ, ସେହି ବିଗତକଳ୍ମଷ ବୀତମତ୍ସର ଯୁଧିଷ୍ଠିରଦେବ କାଳ ବିପର୍ଯ୍ୟୟବଶରୁ କଙ୍କ ହେବା[୨] ଏବଂ ଦୁର୍ବାରଗର୍ବାପହ, ଦର୍ବୀକର ଭୀମସେନ ପ୍ରଦର୍ଶିତସୂଦଭାବରେ ପ୍ରବିଷ୍ଟ ହୋଇଥିବା କଥାକୁ ଠିକ୍ କହି ଅଛନ୍ତି । ମାତ୍ର ବୈଭସବ କୃତ୍ରିମ ବୃହନ୍ନଳା ନାମଟିକୁ ବୃହନ୍ନାରୀ ପଦରେ ପରିଣତ କରି ଅଛନ୍ତି [୩] ।

ତତ୍ପର ସ୍ୱୀକୃତାଶ୍ୱବାରକର୍ମ ନିଶାକରମନୋରମ କଣାକର ନକୁଳ ପ୍ରବେଶ ମାତ୍ରକେ ମୂଳରେ ଅନୁଦିତ କଣ୍ଟନ ଦୁର୍ନିବାର ଅଖର୍ବବେଗ ଅର୍ବକୁ ସବାରିରେ ପଞ୍ଚତ୍ୱସହଚାରୀ କରିବା, ସେ ପୁଣି ସେହି ନିଗ୍ରହରୂପ ଅନୁଗ୍ରହରୁ ପ୍ରାପ୍ତ ଦିବ୍ୟ ବିଗ୍ରହରେ ଆଗ୍ରହସହକାରେ ଦେବଗୃହ ପ୍ରାପ୍ତ ହେବାର ପ୍ରତିପାଦିତ କରି ତଦୀୟ ପୂର୍ବତନ ଜନ୍ମବୃତ୍ତାନ୍ତ ଲେଖି ଅଛନ୍ତି କି ପୁରା ଏକଦା ସ୍ୱର୍ଗୀୟ କ୍ଷେତ୍ରପାଳ ବାମଦେବ ସୂର୍ଯ୍ୟଙ୍କ ମନ୍ଦୁରାରୁ ଆନୀତ ବିନୀତ ତୁରଙ୍ଗକୁ ପ୍ରତ୍ୟର୍ପଣ ନ କଲାରୁ ସେ ଶାପ ଦେଲେ ଯେ ତୁମ୍ଭେ ଅଶ୍ୱାଧିକାରକରଣରୁ ଅଦ୍ୟାବଧି ଅଶ୍ୱ ହୋଇ ମଦୀୟ ଔରସଜାତ ନକୁଳଙ୍କ [୪] ହସ୍ତରୁ ମୁକ୍ତ ହେବ । ଇତ୍ୟାଦି । ପୁଣି ଭୂପାଳସଂକାଶ ଗୋପାଳବେଶ ସହଦେବ ବହୁଲୋକମଣ୍ଡନା ବିନ୍ଧ୍ୟମାଳସଦନା କୃତ କଦନା ଦୁର୍ଦ୍ଦମନା ପୃଥୁନାଃ ନାମ୍ନୀ ଗାଭୀକୁ ସ୍ୱାୟତ୍ତ କରିବା, ପ୍ରୋକ୍ତ ନୈଚିକୀ ଅନୀଚ ଭାଷାରେ ତାହାଙ୍କ ସହ ସମ୍ଭାଷ କରିବା, ସେ ପୁଣି ଦେବଗବୀ କପିଳାଙ୍କ ସନ୍ତାନ ଥିବାରୁ ପୂର୍ବେ ସ୍ୱକୀୟ ଦୈବୀ ସତ୍ତାରେ ପାନୀୟ ପାନଲୀଳାବହେଳାରେ ଜଳଧିକି ନିର୍ଜଳ କରିଥିଲେ ବୋଲି ସମୟରେ ସେନ୍ଦ୍ର ବୃନ୍ଦାରକବୃନ୍ଦଙ୍କ ସବନ୍ଦନ ପ୍ରାର୍ଥନାରେ ତଦୀୟ ମାତା ନିଜର ଅମିତ କ୍ଷୀରବୈଭବରେ କ୍ଷୀରୋଦାଦି ଉଦଧି ସନ୍ଦୋହକୁ ପୁନଃ ପୂର୍ଣ୍ଣୀକୃତ କରିଥିବା, [୫] ପ୍ରଭୃତି ଅନେକ ତଦୁପାଙ୍ଗଭୂତ ପ୍ରସଙ୍ଗକୁ କାରଣ ନିର୍ଦ୍ଦେଶପୂର୍ବକ

[୧] ଜୟୋଜୟନ୍ତୋ ବିଜୟୋ ଜୟସେନୋ ଜୟଦ୍ବଲଃ ।
ଇତି ଗୁହ୍ୟାନି ନାମାନି ତେଷାଂ ଚକ୍ରେ ଯୁଧିଷ୍ଠିରଃ ।। ୫ଅ: ।

[୨] ଟିପ୍ପଣୀରେ ପ୍ରକାଶ ରଖିବା ଉଚିତ ଯେ "କଙ୍କୋ ନାମ ଦ୍ୱିଜୋଭୂତ୍ୱା ମତାକ୍ଷଃ ପ୍ରିୟଦେବନଃ" । ମୂଳରୁ ଏହି ନାମକୁ ଶ୍ରୀମାନ୍ ସାରଳା ଦାସ ମହୋଦୟ ଯଥାଯଥ ଦେଇଅଛନ୍ତି, କିନ୍ତୁ ସର୍ବତ୍ର ଦେଖିଲୁଁ ଛାପାକାର ମହାଶୟ କଙ୍କକୁ କୁନ୍ତ ଓ କୋନ୍ତ କରି ପକାଇ ଅଛନ୍ତି ।

[୩] ପିନଦ୍ଧକମ୍ବୁଃ ପାଣିଭ୍ୟାଂ ତୃତୀୟାଂ ପ୍ରକୃତିଂ ଗତଃ ।
ବେଣୀକୃତଶିରା ରାଜନ୍ ନାମ୍ନା ଚୈବ ବୃହନ୍ନଳା ।।

[୪] ନକୁଳ ସୂର୍ଯ୍ୟଙ୍କ ଔରସଜାତ ବୋଲି ସାରଳାଦାସଙ୍କ ହୃଦୟରେ ପ୍ରାମାଦିକ ବିଶ୍ୱାସ ବଦ୍ଧମୂଳ ରହିଥିଲା ।

[୫] ଛାପା ପୁସ୍ତକରେ ୩୨-୩୪ ପୃଷ୍ଠା ପର୍ଯ୍ୟନ୍ତ ଦେଖନ୍ତୁ ।

ଲେଖିଅଛନ୍ତି ।[୧] ଏହା ତାହାଙ୍କର ବହୁ ପୁରାଣଶ୍ରୁତ କଥାର ଅନୁକୃତ-କଳ୍ପନାପ୍ରସୂତ କିମ୍ବା କୌଣସି ନିଗୂଢ଼ ପୌରାଣିକ ବିବରଣର ଅବିକଳାନୁକୃତ, ତାହା କିଛି ଠିକ୍ କୁହାଯାଇ ନ ପାରେ । ସେ ଯାହାହେଉ ପଛକେ ସନ୍ଦର୍ଭାରମ୍ଭଟି ନିତାନ୍ତ ଅସନ୍ଦର୍ଭ ହୋଇ ନାହିଁ ।

ଅତଃପର ମୂଳରେ ଭୀମପରାକ୍ରମ ସିଂହବିକ୍ରମ ଭୀମସେନଙ୍କର ମଲ୍ଲ ଓ ଶାର୍ଦ୍ଦୂଳାଦି ସହ ଯୁଦ୍ଧପ୍ରକ୍ରିୟା ସମାସତଃ ଓ ସୂତ୍ରତଃ ସମୁଦିତ ଅଛି ଯେ ପାଣ୍ଡବମାନଙ୍କର ବିରାଟଦେଶ ନିବସନର ତିନି ମାସ ପରେ [୨] ଶତ୍ରୁ – ବୃକୋଦରକଳ୍ପ ଦେବସତ୍ତ୍ୱ ବୃକୋଦର ମହାବଳ ସୁବିଖ୍ୟାତ ଜୀମୂତ ନାମକ ମହାମଲ୍ଲକୁ ଯୁଦ୍ଧରେ ନିହତ କଲା ପରି ଅନ୍ୟାନ୍ୟ ମଲ୍ଲମାନଙ୍କୁ ମଧ ଅକାଳକାଳକବଳରେ ପକାଇଲେ । ତଦା ତଦୀୟ ଅତିମାନୁଷ ପରାକ୍ରମପରିତୁଷ୍ଟ ରାଜା ଭୀମଙ୍କୁ ନିରୂପମ-ପୌରୁଷ ଦେଖି ସିଂହଶାର୍ଦ୍ଦୂଳାଦିର ପ୍ରତିଭଟ କରି କୌତୁକାହବବିଳାସ ମେଣ୍ଟାଉଥିଲେ ।[୩] ମାତ୍ର ସେଠାରେ ଅଳ୍ପପ୍ରସର ମଲ୍ଲାହବର ବର୍ଣ୍ଣନା ଉକ୍ତ ଥିଲେ ସୁଦ୍ଧା ଶାର୍ଦ୍ଦୂଳାଦିର ସାମ୍ପରାୟିକ ବ୍ୟାପାର ବର୍ଣ୍ଣିତ ନ ଥାଇ କେବଳ ସୂଚିତ ମାତ୍ର ହୋଇଅଛି ।

କିନ୍ତୁ ବିସ୍ତୃତିପ୍ରିୟ ସାରଳାଦାସ କବି ମଲ୍ଲାହବ ସନ୍ଦର୍ଭକୁ ପଲ୍ଲବିତ କଲା ପ୍ରାୟ ମୂଳରେ ସୂଚିତ ବ୍ୟାଘ୍ରଯୁଦ୍ଧର ସୂତ୍ର ସ୍ୱରୂପ ପ୍ରମାଣକୁ ଆଦର୍ଶ କରି ତନ୍ମୂଳକ ବହୁତ ଗୁଡ଼ିଏ ସାଙ୍ଗୋପାଙ୍ଗ କଥା ସମୟବ୍ୟତ୍ୟୟ କ୍ରମରେ ଲେଖି ଅଛନ୍ତି । ସେ କହିଅଛନ୍ତି କି ପାଣ୍ଡବଗଣ ବିରାଟ ଦେଶରେ ଧନୁ ମାସକୁ ଆଦି କରି ଷଟ୍ ମାସ ଅବସ୍ଥିତି କରଣାନ୍ତର ସପ୍ତମ ମିଥୁନ ମାସରେ ଜରା ନାମକ ଶବର ମହାବଳ ଶାର୍ଦ୍ଦୂଳ ସହ ସମାଗତ ହେଲା [୪] । ଅନୀଚବଳ କୀଚକାଦି ଶାର୍ଦ୍ଦୂଳାହବଶଙ୍କୋଦ୍ଧତିରେ ଷଦ୍ଧୋତ୍‌ଥିତ କୀଚକ ପ୍ରାୟ କେବଳ ଗର୍ଜନୋଦ୍ଧତ ରହି ତାହା ସହିତ ପ୍ରତିଭଟ ହେବାକୁ ନ ପାରିବାରୁ ପ୍ରମତ୍ତ

---

[୧] ନକୁଳଙ୍କର ଅଶ୍ୱ ପରୀକ୍ଷା ସ୍ଥଳରେ ମୂଳାନୁକ୍ତ ବହୁତଗୁଡ଼ିଏ ଅଶ୍ୱରୋଗ ବିବରଣର ଦେଶୀୟ ନାମ ଏବଂ ସହଦେବଙ୍କର ଗୋ ପରୀକ୍ଷା ସ୍ଥଳରେ ଗୋ ରୋଗ ବିବରଣର ଦେଶୀୟ ନାମଗୁଡ଼ିଏ ଦେଇ ଅଛନ୍ତି ।

[୨] ଅଥ ମାସେ ଚତୁର୍ଥେ ତୁ ବ୍ରହ୍ମଣଃ ସୁମହୋତ୍ସବଃ ।
ଅସୀତ୍ ସମୃଦ୍ଧୋ ମତ୍ସ୍ୟେଷୁ ପୁରୁଷାଣାଂ ସୁସମ୍ମତଃ ॥
ତତ୍ର ମଲ୍ଲାଃ ସମାପେତୁଃ ଦିଗ୍‌ଭ୍ୟୋ ରାଜନ୍ ସହସ୍ରଶଃ । ବି.ପ. ୧୩ ଅ: ୧୪ ଶ୍ଳୋକ ।
ଏହି ଅଧ୍ୟାୟରେ ଭୀମଙ୍କର ଅଶସ୍ତ୍ରଯୁଦ୍ଧ ବର୍ଣ୍ଣିତ ଅଛି ।

[୩] ଯଦାସ୍ୟ ତୁଲ୍ୟଃ ପୁରୁଷୋ ନ କଶ୍ଚିତ୍ ତତ୍ର ବିଦ୍ୟତେ ।
ତତୋବ୍ୟାଘ୍ରୈଶ୍ଚ ସିଂହୈଶ୍ଚ ଦ୍ୱିରଦୈଶ୍ଚାପ୍ୟଯୋଧୟତ୍ ॥ ଏତିକି ମାତ୍ର ସୂଚିତ ହୋଇଅଛି ।

[୪] ଏହି ଶବରର ବୃତ୍ତାନ୍ତ ୩୦-୪୦ ପୃଷ୍ଠାଯାଏ ଦେଖନ୍ତୁ । ପୁରା ତ୍ରେତା ଯୁଗରେ ଅଙ୍ଗଦଙ୍କର ପିତୃନାଶଜନିତ ମାନସିକ ବିଦ୍ୱେଷ ଥିବାର ଜାଣି ରାମଚନ୍ଦ୍ର ତଦୀୟ ହସ୍ତରେ ଦ୍ୱାପରରେ ଅଦ୍ୱାପରେ ସ୍ୱୀୟ ପ୍ରାଣ ଦେବାପାଇଁ ତାହାଙ୍କୁ ଜରାଶବର ରୂପେ ଜନ୍ମ ହେବାକୁ ବର ପ୍ରଦାନ

ଅମିତବଳବନ୍ତ ଦନ୍ତାବଳକୁ ପ୍ରତିଦ୍ୱନ୍ଦ୍ୱୀ କଲେ । ହସ୍ତୀ ନିହତ ହେଲାରୁ ତଦ୍ଦେହନିର୍ଗତ ପୁରୁଷ ଜଣେ ଧର୍ମାବତାର ଯୁଧିଷ୍ଠିରଙ୍କ ଦର୍ଶନରେ ସ୍ୱର୍ଗବାସୀ ହେଲେ; ତପ୍ରେ ଯୁଧିଷ୍ଠିରାଦିଷ୍ଟ ଭୀମଙ୍କ ଦ୍ୱାରା ବିନଷ୍ଟ ଶାର୍ଦ୍ଦୂଳର ଅବୟବାବିର୍ଭୂତ ଦିବ୍ୟ ପୁରୁଷ ବିମାନରେ ସ୍ୱର୍ଗଲୋକକୁ ପ୍ରସ୍ଥାନ କଲେ ।

ଏଠାରେ ଶାର୍ଦ୍ଦୂଳବିନିର୍ଗତ ଦିବ୍ୟ ପୁରୁଷଙ୍କ ପ୍ରାକ୍ତନ କର୍ମବିପାକ ସମ୍ବନ୍ଧରେ ପ୍ରଶ୍ନ ଉତ୍‌ଥାପିତ ହେଲାରୁ ଇତଃପୂର୍ବେ ଦ୍ରୌପଦୀ ପରିଣୟ ପ୍ରକରଣରେ ନିଗଦିତ ଇନ୍ଦ୍ର ଓ ତ୍ୱଷ୍ଟା ଋଷିଙ୍କ ବିବାଦମୂଳକ କଥା-ପ୍ରଥାଟିକୁ କିଞ୍ଚିତ୍ ଭିନ୍ନ କ୍ରମରେ ଅସଂଲଗ୍ନତାପୂର୍ବକ କହି ଥିବାର ଲେଖାଅଛି [୧] । ମାତ୍ର ଏସବୁ ଉପସ୍ଥାପିତ ପ୍ରଶ୍ନର ସମୁଚିତ ଉତ୍ତର ହୋଇ ନାହିଁ । ଏଠାରେ ବୋଧହୁଏ କବି ଅବିଶ୍ରାନ୍ତ ରଚନା ପ୍ରବାହର ଆବେଗ ବା ଆବର୍ତ୍ତରେ ପଡ଼ି ପ୍ରମାଦତଃ ଏହିପରି କହି ପକାଇଅଛନ୍ତି । ଅତଏବ ପ୍ରୋକ୍ତ ଅସଂଲଗ୍ନ ଚରିତକୁ ଉଭୟତଃ ସମ୍ବନ୍ଧ ରହିତ କରି ତ୍ରିଶଙ୍କୁ ଅବସ୍ଥାନ ନ୍ୟାୟ ମଧ୍ୟରେ ରଖି ଦେବାକୁ ବାଧ ହୋଇ ଅଛନ୍ତି । ପ୍ରତ୍ୟୁତ୍ପନ୍ନମତି ଶ୍ରୀ ସାରଳାଦାସ ମହାଶୟ ପ୍ରାକ୍ ଇଚ୍ଛିତ କଥାକୁ ଅସଙ୍ଗତମଣି ପ୍ରୋକ୍ତ ଗଜଶାର୍ଦ୍ଦୂଳବିଷୟକ ପ୍ରଶ୍ନର ପୁନରୁତ୍‌ଥାନ କରାଇ ସଙ୍ଗତ ଉତ୍ତର

---

କରିଥିବା, ସେହି ଜରାଶବର ବର୍ତ୍ତମାନ ଶାର୍ଦ୍ଦୂଳ ଆଣିଥିବା କଥାକୁ ପୁରାଣାନ୍ତରାନୁକରଣରେ ଏଠାରେ ଲେଖି ଅଛନ୍ତି ।

[୧] ପ୍ରୋକ୍ତ ଚରିତର ସଂକ୍ଷିପ୍ତାଂଶ ଏହି — କଦାଚିତ୍ ସ୍ୱର୍ଗପ୍ରାପ୍ତ ସ୍ଥୂଳ ନାମକ ଋଷିକୁ ଇନ୍ଦ୍ର କୌଣସି କାରଣବଶତଃ ଆସନ ପ୍ରଦାନ କଲେ ନାହିଁ ବୋଲି ଋଷିବର୍ଯ୍ୟ କ୍ରୁଦ୍ଧ ହୋଇ ବାସବାଧିଷ୍ଠିତ ସ୍ଥାନ ପ୍ରାପ୍ତି ସକାଶେ ତପସ୍ୟାରେ ରତ ହେଲେ । ତଦବଗମନରେ ଭୀତ ଦେବରାଜ ତପଃସିଦ୍ଧି ଭଙ୍ଗାର୍ଥେ ସ୍ୱକୀୟ ସୂତ ଓ ମନ୍ତ୍ରିଙ୍କି ନିଦେଶିବାରୁ ସେ ଦୁହେଁ ଋଷିଙ୍କ ଦେହରେ ଆବେଶରେ ରହି ତାହାଙ୍କୁ କାମାସକ୍ତ କରାଇଲେ । ସ୍ଥୂଳ ଋଷି ମୃଗୀ ସୁରତରେ ରତ ହେଲେ । ସେତେବେଳେ ମୃଗୀ ଗର୍ଭରୁ ତ୍ୱଷ୍ଟାସଂଭୂତି ଘଟିଲା । ସ୍ଥୂଳର୍ଷି ସ୍ୱପୁତ୍ର ତ୍ୱଷ୍ଟାଙ୍କୁ ସ୍ୱପ୍ରତି ସ୍ୱର୍ପତିଙ୍କ ଦୁର୍ବୃତ୍ତି ସବୁ ଜଣାଇ ତପଃପ୍ରଭାବରେ ଐନ୍ଦ୍ରପଦବୀ ଗ୍ରହଣାର୍ଥ ଆଦେଶିଲେ । ''ତ୍ୱଷ୍ଟାକୁ ଚାହିଁ ବୋଲେ ସ୍ଥୂଳ ମହାଋଷି । ତୁ ଯାଇ ସ୍ୱର୍ଗରେ ବସି ଇନ୍ଦ୍ର ହୁଅସି ।'' ସୁତରାଂ ତ୍ୱଷ୍ଟା ତାହା ଇଷ୍ଟ ମଣିଲେ ନାହିଁ । ମାତ୍ର ତତ୍‌ପୁତ୍ର ଭୃତ ମହର୍ଷି ଇନ୍ଦ୍ରତ୍ୱ ପ୍ରାପ୍ତି ସକାଶେ କୈଳାସରେ ତପୋନିଷ୍ଠ ରହି ସର୍ପଦଷ୍ଟ ହେଲେ । ଆଶ୍ରିତବତ୍ସଳ ଭଗବାନ ମହାଦେବ ନାରଦଙ୍କ ମୁଖରେ ବ୍ରହ୍ମାଙ୍କୁ ଜଣାଇଲେ କି ଏହି ଭୃତ ଋଷିଙ୍କି ପ୍ରାଣଦାନପୂର୍ବକ ଇନ୍ଦ୍ର ପଦବୀରେ ପ୍ରତିଷ୍ଠିତ କର । ବ୍ରହ୍ମା ତଦାଦେଶ କାର୍ଯ୍ୟରେ ପରିଣତ କଲେ । ''ଅଗସ୍ତ୍ୟ ବୋଇଲେ ଶୁଣ ହୋ ନୃପତି । ଇନ୍ଦ୍ରପଦେ ବସିଲେ ସ୍ଥୂଳ ଋଷିଙ୍କ ନାତି ।'' (ବି.ପ. ୫୦ ପୃଷ୍ଠା) କିନ୍ତୁ ଇନ୍ଦ୍ର ଭୃତ ଋଷିକୁ ବଜ୍ରରେ ନିହତ କଲେ । ଇନ୍ଦ୍ର ନିର୍ମୂଳନାର୍ଥ ପ୍ରଧାବିତ ତ୍ୱଷ୍ଟାଙ୍କ ଅମୋଘକାଳାଗ୍ନିକଳ୍ପ ବ୍ରହ୍ମକ୍ରୋଧ ଭୟରେ ଇନ୍ଦ୍ର ସ୍ୱକୀୟ ପଞ୍ଚାଙ୍ଗୀକୃତ ଆତ୍ମାକୁ ଧର୍ମାଦି ଦେବଗଣଙ୍କଠାରେ ନିହିତ କରି ବ୍ରହ୍ମବଧ-ଦୂଷିତ ପାପାତ୍ମା ସହିତ ତ୍ୱଷ୍ଟାଙ୍କ ଶାପରେ

ପ୍ରଦାନ କରିଅଛନ୍ତି ଯେ [୧] ଏକଦା ପ୍ରସୁପ୍ତ ସ୍ଥୂଳ ଋଷିଙ୍କ ଦେହରେ ଇନ୍ଦ୍ରଙ୍କ ପୁତ୍ର ଦୁହେଁ ସୂକ୍ଷ୍ମ ଶରୀରତଃ ପ୍ରବିଷ୍ଟ ହୋଇ ଋଷିଙ୍କ କାମୋନ୍ନତ ବାତୁଳ ପ୍ରାୟ କଲାରୁ ସେ ଅନୁକ୍ଷଣ ହରିଣୀ ସୁରତକ୍ଷଣରେ ବ୍ୟାପୃତ ହେଲେ । ସମୟରେ ସୁପ୍ତ ସ୍ଥୂଳ ଋଷିଙ୍କ ଦେହରୁ ବିନିର୍ଗତ, ଭୟରେ ପଳାୟିତ ଶଂସିତ ବାସବେୟ ଦ୍ୱୟଙ୍କୁ ସେ ଦେଖି ଗଜ ଓ ବ୍ୟାଘ୍ର ହୁଅ ବୋଲି ଅଭିଶାପ ଦେଲେ । ଇତ୍ୟାଦି ।

ଏହା ଅମୂଳକ ହେଲେ ହେଁ ସଙ୍ଗତିସାଙ୍ଗତ୍ୟରୁ ବହିଷ୍କୃତ ନୁହେଁ । ତଦପି ଏତାଦୃଶ ତାତ୍କାଳିକସଙ୍ଗତିସମ୍ପନ୍ନ ଅବିଳମ୍ବ ଉତ୍ତର ପ୍ରଦାନରେ ସମର୍ଥ ପ୍ରତ୍ୟୁତ୍ପନ୍ନମତି ସାରଳାଦାସ ମହୋଦୟ ପ୍ରାକ୍ ପ୍ରକାଶିତ ଇନ୍ଦ୍ରତ୍ୱଷ୍ଟାଙ୍କ ବିଦ୍ରୋହମୂଳକ କଥାକୁ ଏ ସ୍ଥଳରେ ଲେଖି ନ ଥିବେ; ଅନ୍ୟ କେହି ପୂର୍ବଶ୍ରୁତି ବଳରେ ପ୍ରକ୍ଷିପ୍ତ କରି ଦେଇଥିବେ; ଏହି ଆଶଙ୍କାର ଅବକାଶ ନାହିଁ । କାରଣ କବି ନିଜେ ଆବେଗରେ ପଡ଼ି ଚିର ଅଭ୍ୟସ୍ତ ଅତ୍ର ଅସଂଲଗ୍ନ କଥାକୁ ହଠାତ୍ ପ୍ରମାଦତଃ କହିଦେଇ ତଦ୍ଦୋଷରୁ ନିର୍ମୁକ୍ତ ହେବାକୁ ସାବଧାନ ରହିବାର ପ୍ରମାଣ ସେହି ସ୍ଥଳରେ ମିଳୁଅଛି । କଥାଟି ଏ ସ୍ଥଳରେ ଅସଂଲଗ୍ନ ହୋଇଗଲା ବୋଲି କବି ଆପେ ଭାରତଚରିତର ଦୁରଧିଗମ୍ୟତ୍ୱ ଓ ଅଗାଧତ୍ୱ ପ୍ରକାଶ କରି ପ୍ରୋକ୍ତ ସଙ୍ଗତ ଉତ୍ତର ପ୍ରଦାନାର୍ଥ ଶ୍ରୀ ସାରଳାଦେବୀଙ୍କୁ ସବିନୟ ସ୍ତୁତି ଓ ପ୍ରାର୍ଥନା କରି ଅଛନ୍ତି । ଏଥିରୁ ଏହା ମଧ୍ୟ ଉପଲବ୍‌ଧ ହୁଏ ଯେ ଏ କବି ମହୋଦୟ କଳ୍ପନା କିମ୍ବା ଦେବୀଦତ୍ତ ଜ୍ଞାନବୈଭବରେ ଲେଖି ଲେଖି ଯାଇ ଯେ ସ୍ଥଳରେ ଅଗାଧ ବା ଜଟିଳ କିମ୍ବା ଅସଙ୍ଗତ ମଣନ୍ତି, ସେଠାରେ ସର୍ବାଭୀଷ୍ଟପ୍ରଦାୟିନୀ ଶ୍ରୀ ସାରଳା ଦେବୀଙ୍କର ସ୍ତୁତି କରି ଭକ୍ତି-ପ୍ରବଣ ହୃଦୟରେ ଅନ୍ୟ କଳ୍ପନା ବା ବିଚାରପୂର୍ବକ କଥାକୁ ସଙ୍ଗତ ଓ ସଂପୂର୍ଣ୍ଣ କରି ନିଅନ୍ତି ।

ଅଭିଜ୍ଞ ପାଠକେ ! ଯଦିଚ ଏହା ହିଁ ସ୍ଥିର ହେଲା ତେବେ ଏତଦ୍ଦ୍ୱାରା ପକ୍ଷେ ଏହି ମହାକବିଙ୍କର ଅନନ୍ୟ ସାମାନ୍ୟ ଶକ୍ତିମତ୍ତାର ଜାଜ୍ୱଲ୍ୟମାନ ପ୍ରମାଣ ମଧ୍ୟ ମିଳିଲା ନାହିଁକି ? କବି ଯଦି ରଚନା ବେଗରେ ପଡ଼ି ନାମାଦି ସାଦୃଶ୍ୟରୁ ହଠାତ୍ ପୂର୍ବାଭ୍ୟସ୍ତ କଥାଟାକୁ ଅସ୍ଥାନରେ ଅସଙ୍ଗତି କ୍ରମରେ ଲେଖି ପକାଇଲେ, ତଦୁପରସ୍ତାତ୍ ସମ୍ୟକ୍ ଅବଗତ ହୋଇ ସୁଦ୍ଧା ସେଟାକୁ ଗ୍ରନ୍ଥ ମଧ୍ୟରୁ ଉଠାଇ ଦେଇ ନାହାନ୍ତି କାହିଁକି ? ପରନ୍ତୁ ଉଠାଇ ଦେବା ତ

---

ଦଗ୍‌ଧ ହେଲେ । ପରେ ସମୟାନୁକ୍ରମରେ ଧର୍ମାଦି ଅଧିଷ୍ଠିତ ଓ ସ୍ୱଧୃତ ଇନ୍ଦ୍ରଙ୍କ ପଞ୍ଚାତ୍ମାରୁ ପଞ୍ଚପାଣ୍ଡବମାନେ ଉତ୍ପନ୍ନ ହେଲେ ।

[୧] ବୈବସ୍ୱତମନୁ ଅଗସ୍ତିଙ୍କୁ ପଚାରିଲେ ।
ସେ ଗଜ ବ୍ୟାଘ୍ର ଦୁହେଁ କେମନ୍ତ ହୋଇଲେ ।।
ଏ ସ୍ଥଳରେ ଛାପାକାର ଛାପା ପୁସ୍ତକରେ ଭୁଲ୍ କରି ଅଛନ୍ତି ।

ବି.ପ. ୫୧ ପୃଷ୍ଠା ଦେଖନ୍ତୁ ।

ତାଦୃଶ ଶ୍ରମସାପେକ୍ଷ ନୁହେଁ । କିଞ୍ଚିତ୍ ସମୟ ଓ ଲେଖନୀର ବିଶ୍ରାମ ମାତ୍ର ଆବଶ୍ୟକ । ତେବେ ଏହା ହିଁ ସ୍ୱୀକାର କରିବାକୁ ହେବ ଯେ ଏହାଙ୍କ ଲେଖାରେ ଲେଖନୀର ସେପରି ବିଶ୍ରାମ ଘଟି ନାହିଁ । ବିଚାର କରନ୍ତୁ, ଇଦାନୀନ୍ତନ ଅନେକ ଲେଖକ କେତେ ଆଡୁ କେତେ ପ୍ରକାର ପ୍ରାଚୀନ ଲେଖକ ବା କବିମାନଙ୍କର ଏକତ୍ରୀକୃତ ସ୍ୱପ୍ରଦର୍ଶିତ ଶାବ୍ଦିକ ଐତିହାସିକ ଆଳଂକାରିକ ପ୍ରଭୃତି ସୁସିଦ୍ଧ ସୁସଂସ୍କୃତ ମାଲ ମସଲା ନେଇ କବିତା ବା ରଚନାର ପାକରେ ପ୍ରବେଶ କରିଥାନ୍ତି । କେତେ ପ୍ରକାର ସୌକାର୍ଯ୍ୟ ଓ ସାହାଯ୍ୟ ପାଇଥାନ୍ତି । କେତେଗୁଡ଼ାଏ ଅନୁକରଣୀୟ ଘଟନାକୁ ଆକ୍ଷିସମକ୍ଷରେ ଆଦର୍ଶ କରି ରଖିଥାନ୍ତି । ତଥାପି ଲେଖା ଅନେକତ୍ର ନିୟମିତ ମାର୍ଗରୁ ପ୍ରାସ୍ଖଳିତ ହୋଇ ପଡ଼େ ତ ? ତେତେବେଳେ କେତେଥର ଅବା ଆବୃତ୍ତି କରି ପାଠର ଯୋଗ ବିଯୋଗ କରି ନ ଥାନ୍ତି ? ସୁବିଚାର କରିନେଲାବେଳେ ପ୍ରାୟ ଚାରି ପୃଷ୍ଠା ପାଠରୁ କେତେ ଅସଙ୍ଗତ କଥାକୁ ଉଠାଇ ଦେଇଥାନ୍ତି । ଏସବୁ କରି ସୁଦ୍ଧା ଆଧୁନିକ ଅନେକ ଲେଖକଙ୍କ ଲେଖା ଦୋଷସଂକୁଳ । ଉତ୍କଳର ସର୍ବପ୍ରଥମ କବି, ଔତ୍କଳୀୟ ଶାଶ୍ୱତ ସାରସ୍ୱତ କୀର୍ତ୍ତିର ଆଦିମ ସୃଷ୍ଟିକର୍ତ୍ତା, ଅନନ୍ୟ ପ୍ରୟୋଗାପେକ୍ଷୀ, ଅନନ୍ୟସହାୟ ଆଦର୍ଶହୀନ ଶ୍ରୀମାନ୍ ସାରଳାଦାସ ମହୋଦୟ ଏ ସବୁର ବିପରୀତ ଗୁଣବିଶିଷ୍ଟ ଥିଲେ । ତାହାଙ୍କର ମତି ଓ ଲେଖନୀର ଗତି କଦାପି ପଶ୍ଚାଦ୍ ପ୍ରତିନିବୃତ୍ତ ହେଉ ନ ଥିଲା । ନିଶିତ ସୂଚ୍ୟଗ୍ର ଲୌହ-ଶଳାକା ହସ୍ତରେ କର୍କଶ ପିଚ୍ଛିଳ ତାଳପତ୍ରରେ ଅବିଶ୍ରାନ୍ତ ବାରିଧାରା ତୁଲ୍ୟ ପ୍ରଖର ବେଗରେ ସେ ଲେଖିଯାଉଥିଲେ । ରଚନା ବେଳେ ପଦବିନ୍ୟାସର ପୁନଃ ପରିବର୍ତ୍ତନରେ ସୁଦ୍ଧା ଲେଖନୀକୁ ବିଶ୍ରାମ ଦେଇ ନ ଥିଲେ । ହୃଦୟରୁ ଅକୁଣ୍ଠୋଚ୍ଛ୍ୱାସରେ ଯାହା ନିର୍ଗତ ହେଉଥିଲା, ତାହା ହିଁ ପତ୍ରସ୍ଥ କରି ଦେଉଥିଲେ । ଏଥିରେ କୌଣସି ପ୍ରକାର ବିଚିକିତ୍ସାର ଅବସର ନାହିଁ, ଏହା ସଂପୂର୍ଣ୍ଣ ବିଶ୍ୱାସନୀୟ ।

ଅତଃପର ରାଜବଲ୍ଲଭ ବଲ୍ଲଭରୂପୀ ଭୀମସେନ ମଲ୍ଲତଲ୍ଲଜଙ୍କ ସହ ବାହୁଯୁଦ୍ଧ କରିବା, ଅପିଚ ଜମ୍ବୁଦ୍ୱୀପୈକଶୂର ଖଗବର କେଶରୀ ଉପାଧିଭୂଷିତ ମଲ୍ଲକୁ ନିହତ କରିବାରୁ ତଦ୍ଦେହାବିର୍ଭୂତ ଅଦ୍ଭୁତ ଦିବ୍ୟପୁରୁଷ ସ୍ୱର୍ଗର ଆତିଥ୍ୟ ଗ୍ରହଣ କରିବା, ପୁଣି ତଦୀୟ ପୂର୍ବ ଦେହ ଓ ଶାପବୃତ୍ତାନ୍ତ ଲେଖି ଅଛନ୍ତି । ଏହି ଅଭିଶାପିକାଦି ବୃତ୍ତାନ୍ତମାନ କଳ୍ପନାନୁପ୍ରାଣିତ ବା ମନଗଢ଼ା ପରି ବୋଧହୁଏ । ତତ୍ପର ଭୀମଙ୍କର ଗୌରୀ ଶୌରୀ ଓ ନଳ ନାମରେ ଅଭିହିତ ସୁବିହିତ ତ୍ରିବିଧ ପାକକ୍ରିୟା-ସୁପକ୍ୱ ଭକ୍ଷ୍ୟ-ଭୋଜ୍ୟାଦିର ଅମିତ ଭୋଜନରେ ପରିକ୍ଲିଷ୍ଟ ବିରାଟରାଜଙ୍କୁ ଯୁଧିଷ୍ଠିରଙ୍କର ଆଗସ୍ତିକ ମନ୍ତ୍ରର ପ୍ରଦାନକ୍ରିୟାବୈଚିତ୍ର୍ୟ ଏବଂ ତତ୍ସମର୍ଥନାର୍ଥ ଇତଃପୂର୍ବେ ବନପର୍ବରେ ଅଗସ୍ତିକର୍ତ୍ତୃକ ବିନାଶିତ ବ୍ରହ୍ମଘ୍ନ ଆତାପି ଓ ବାତାପିଙ୍କ ଚରିତକୁ କହିଥିବାର ଉକ୍ତ ଅଛି । ବୋଧହୁଏ ଏହା ଦାସ ମହୋଦୟଙ୍କର କଳ୍ପିତ ସନ୍ଦର୍ଭ ।

ଅତଃପର କୀଚକବଧ ପ୍ରକରଣ ପ୍ରାରମ୍ଭରେ ସମୟ ନିର୍ଦ୍ଦେଶ କରି ଅଛନ୍ତି କି ପାଣ୍ଡବମାନେ ଧନୁ ମାସାବସାନରେ [୧] ଅର୍ଥାତ୍ ମାଘ ପ୍ରାରମ୍ଭରେ ବିରାଟ ରାଜ୍ୟରେ ପ୍ରବିଷ୍ଟ ହୋଇଥିଲେ । କ୍ରମଶଃ ସମାଗତ ବସନ୍ତରେ ଯୁଧିଷ୍ଠିରାଦେଶମତେ ବାସନ୍ତିକ ନାବକେଳି ମହୋତ୍ସବ ସମାରବ୍ଧ ହେଲା । ଏହି ଉତ୍ସବ ସମୟରେ କେବଳ କୀଚକ ନିର୍ଯ୍ୟାସ ସଂଘଟିତ ହୋଇଅଛି । ତାହାହେଲେ ଏହାଙ୍କ ମତରେ ପାଣ୍ଡବମାନଙ୍କର ବିରାଟରାଜ୍ୟ ପ୍ରବେଶର ଚତୁର୍ଥ ମାସରେ କୀଚକର ଅତ୍ୟାହିତଚେଷ୍ଟା ଘଟିଥିବାର ପ୍ରତିପନ୍ନ ହେଉଅଛି । ପରନ୍ତୁ ଏହି ମହୋଦୟ କେବଳ ଇତଃପୂର୍ବେ ଭୀମଙ୍କର ବ୍ୟାଘ୍ରାଦି ସହ ଯୁଦ୍ଧନିର୍ଦ୍ଦେଶସ୍ଥଳରେ କହିଅଛନ୍ତି, ପାଣ୍ଡବମାନେ ବିରାଟ ରାଜ୍ୟରେ ଧନୁ ମାସରୁ ଆରମ୍ଭ କରି ଛମାସ ଅବସ୍ଥାନ କଲାପରେ ଭୈମବୈୟାଘ୍ରସଂମର୍ଦ ଘଟିଥିଲା । ଉଭୟତ୍ର ନିର୍ଦ୍ଦିଷ୍ଟ ସାମୟିକ ବିବରଣକୁ ବିଚାର କଲେ ଏବଂ ତତ୍ପୂରସ୍ତାଦ୍ ପ୍ରକାଶିତ ସମୟମାନଙ୍କୁ ଦେଖିନେଲେ ଏ ମହାଶୟ ପ୍ରମାଦବଶତଃ ପୂର୍ବାପର ବିଚାରରାହିତ୍ୟରୁ ସମୟ ନିର୍ଦ୍ଦେଶକୁ ଏପରି ବୈଷମ୍ୟରେ ପକାଇ ଥିବାର ସ୍ପଷ୍ଟ ଜଣାଯାଏ । କିନ୍ତୁ ସତ୍ୟତଃ ଦ୍ରୌପଦୀଙ୍କର ଆସେଚନକ ରୂପ ସନ୍ଦର୍ଶନରେ ମୋମୁହ୍ୟମାନ କୀଚକର ଦୁର୍ବାର ଦୁର୍ବ୍ୟାପାର ଘଟନା ପାଣ୍ଡବୀୟ ଅଜ୍ଞାତବାସର ପ୍ରାୟଶଃ ଏକାଦଶ ମାସରେ ସଂଘଟିତ ହୋଇଥିଲା । [୨]

ତଦନନ୍ତର ପଞ୍ଚେଷୁବିଶିଖବଞ୍ଚିତ-ବିବେକ ନୀଚକର୍ମା କୀଚକର ଗୃହପ୍ରତି ଦ୍ରୌପଦୀଦେବୀଙ୍କୁ ସୁଦେଷ୍ଣାଙ୍କର ବ୍ୟାଜମୂଳକ ପ୍ରେରଣାନୁକ୍ରମକୁ ମୂଳଗ୍ରନ୍ଥତଃ ଅନ୍ୟଥା ହେଲେ ସୁଦ୍ଧା ଏ କବି ମହୋଦୟ ଠିକ୍ ନୀତିସଙ୍ଗତ କରି ଅଛନ୍ତି । କୃଷ୍ଣାଙ୍କୁ ବରାବର କୀଚକଠାକୁ ପ୍ରେରିବା ନ କରି ତତ୍ପତ୍ନୀ ସୁରଭିକା ପ୍ରତି [୩] ପତ୍ରବାହିକା ରୂପେ ପଠାଇ ଥିବାର ବର୍ଣ୍ଣି ଅଛନ୍ତି ଏବଂ ଦ୍ରୌପଦୀଙ୍କ ପ୍ରାର୍ଥନାରେ ସୂର୍ଯ୍ୟପ୍ରେରିତ ଅଦୃଶ୍ୟ ରାକ୍ଷସ ପରିବର୍ତ୍ତରେ ଛାୟା ମାୟା ନାମରେ ଦେବଦୂତଦ୍ୱୟଙ୍କର ଆବିର୍ଭାବ କରାଇ ଅଛନ୍ତି । [୪] ମାତ୍ର କୀଚକାନୀଚଭୟାତୁରା ଦ୍ରୌପଦୀ ପ୍ରଚ୍ଛନ୍ନଭାବରେ ଯୁଧିଷ୍ଠିରାଦିଙ୍କୁ କୀଚକର କଥା

---

[୧] ଅଗସ୍ତି ବୋଇଲେ ପାଣ୍ଡବ ଥିଲେ ଯେ ଗୁପତେ ।
ଅଜ୍ଞାତବାସେ ପଶିଲେ ଧନୁ ମାସ ଅନ୍ତେ ।। ବ. ପ. ୬୬ ପୃଷ୍ଠା ।

[୨] ବସମାନେଷୁ ପାର୍ଥେଷୁ ମତ୍ସସ୍ୟ ନଗରେ ତଦା ।
ମହାରଥେଷୁ ଛନ୍ନେଷୁ ମାସା ଦଶ ସମାଯଯୁଃ ।।
ତସ୍ମିନ୍ ବର୍ଷେ ଗତପ୍ରାୟେ କୀଚକସ୍ତୁ ମହାବଳଃ ।
ସେନାପତିର୍ବିରାଟସ୍ୟ ଦଦର୍ଶ ଦ୍ରୁପଦାତ୍ମଜାଂ ।। ୧୪ ଅ. ୧-୪ ଶ୍ଳୋକ ।

[୩] କୀଚକର ନାରୀ ନାମ ଅଟେ ସୁରଭିକା ।
ତାହାର ଗୋଚରେ ଲେଖାଗୋଟି ନେଇ ଦେଖା ।।

[୪] ଛାୟା ମାୟା ଦୁହିଁଙ୍କି ସେ ଦେବ ହକାରି ।
ଆଜ୍ଞା ଦେଲେ ସୈରିନ୍ଧ୍ରୀକି ରଖ ଯା ଆବୋରି ।। ୭୮ ପୃଷ୍ଠା ।

ଜଣାଇଥିବା ପ୍ରସ୍ତାବରେ ସେ ସମୟକୁ ଅଜ୍ଞାତବାସର ଅବଶିଷ୍ଟ ସାର୍ଦ୍ଧ ଦ୍ୱିମାସ ଥିବାର ପ୍ରମାଦତଃ କହି ଅଛନ୍ତି; କିନ୍ତୁ ସେତେବେଳେ ସାର୍ଦ୍ଧୈକମାସ ମାତ୍ର ଅବଶିଷ୍ଟ ଥିଲା । ଅତଏବ କର୍ମବିପାକତଃ ପୃଥୁଶରାବକୁତୋପଧାନ ମହାନସଭୂଶୟାନ ଭୀମସେନ ଦ୍ରୌପଦୀଙ୍କୁ "ଦେବି ! ସୁଗଭାଣ୍ଡମଣ୍ଡିତା ଦ୍ୱିଜାତି-ମନ୍ତ୍ରପୂତା ଯଜ୍ଞମଧ୍ୟସ୍ଥା ବେଦୀକୁ କି ଚଣ୍ଡାଳ ସ୍ପର୍ଶ କରିପାରେ ? ଦୁଃଖ ସମ୍ବରଣ କର । ସାର୍ଦ୍ଧୈକମାସ ପରେ ତୁମ୍ଭେ ତ ମହାରାଜ୍ଞୀ ହେବ, ବର୍ତ୍ତମାନ ହୃଦୟ ସ୍ଥିର କର" ଇତ୍ୟାଦି ବାକ୍ୟରେ ସାନ୍ତ୍ୱନା କରିଥିଲେ ।[୧] ଯାହାହେଉ ଶ୍ରୀମାନ୍ ସାରଳାଦାସ ମହୋଦୟ କୀଚକବଧ-ସଂବିଧାନର ଅନ୍ୟାନ୍ୟ କଥାମାନଙ୍କରେ ନିତାନ୍ତ ବୈଷମ୍ୟ ବା ବିରୂପତାର ଚିତ୍ରଣ କରି ନାହାନ୍ତି ସତ୍ୟ, ମାତ୍ର କୀଚକକୁ ତଦୀୟ ସଂହାରୋଦୋର୍କ ଅଳୀକ ପ୍ରେମସଂକେତ ଜଣାଇବାପାଇଁ ଦ୍ରୌପଦୀ ଦେବୀ ନିଜେ ଗନ୍ଧମାଲ୍ୟାଦି ହସ୍ତରେ ସେହି ପାପିଷ୍ଠ ବରିଷର ଦ୍ୱାରସ୍ଥ ହୋଇଥିଲେ ବୋଲି ଲେଖିବା ସୁବିଚାର ନୁହେଁ । ପ୍ରକୃତତଃ ଦେବୀ ସମାଗତ ଚେଟୀ ବା ଦାସୀର ମୁଖରେ ଏହା ନିର୍ବାହିତ କରିଥିଲେ । ଅପିଚ ବିରାଟ ନୃପତି ସ୍ୱଶାଳକ ଓ ସେନାନୀ କୀଚକକୁ ପରଦିବସ ସଭାକୁ ଆନୟନାର୍ଥ ସମାଦେଶିବାରୁ ଅନୁଚରବର୍ଗ କ୍ରମଶଃ ବହୁ ମାର୍ଗ ମାର୍ଗଣରେ ତାଣ୍ଡବମଣ୍ଡପରେ ପିଣ୍ଡୀଭୂତ କୀଚକର ମୃତପିଣ୍ଡକୁ ଦେଖିବା ପ୍ରଭୃତି କଥାକୁ ସମୟ ଓ ନିୟମର ବିପର୍ଯ୍ୟୟରେ ଲେଖି ଉପ-କୀଚକମାନଙ୍କ ନାମାବଳୀକୁ ପ୍ରାସକୀଚକ, ଧୀକୀଚକ, ବିଚେକ, ବାଚେକ, ବିଳଚେକ, ବହୁଚେକ, ବିଶ୍ୱଚେକ ଇତ୍ୟାକାରକୁ ବିଲକ୍ଷଣ ପରିଣାମରେ ପରିଣତ କରିବା ଯଥାର୍ଥତଃ ସମୁଚିତ ନୁହେଁ [୨] । କିନ୍ତୁ କବି ମହୋଦୟ ଅସୂୟାରେ ଏପରି ନାମରେ ନାମିତ କରିବାର ଅନୁମିତ ହୁଏ । ପାଠକେ ! ବ୍ୟାସଦେବଙ୍କ ମତରେ କୀଚକର ପ୍ରାଣମୋଚନ ସମୟକୁ ଅଜ୍ଞାତବାସର ତ୍ରୟୋଦଶ ଦିବସ ମାତ୍ର ଅବଶିଷ୍ଟ ଥିବାର ପ୍ରମାଣ ମିଳୁଅଛି । ଯେତେବେଳେ ଦ୍ରୌପଦୀ

---

[୧] ସା ଦୀର୍ଘଂ କ୍ଷମକାଳଂ ତ୍ୱଂ ମାସମର୍ଦ୍ଧଂଚସମ୍ମିତଂ (ମାସମର୍ଦ୍ଧସମନ୍ୱିତଂ)
ପୂର୍ଣ୍ଣେ ତ୍ରୟୋଦଶେ ବର୍ଷେ ରାଜ୍ଞଃ ରାଜ୍ଞୀ ଭବିଷ୍ୟସି ।
ଶ୍ରୀ କୃଷ୍ଣ ସିଂହ ମଧ୍ୟ ଏହି ସାର୍ଦ୍ଧୈକମାସକୁ ନିର୍ଦ୍ଧାରିତ କରି ଅଛନ୍ତି ।

ଯଥା—

ବାକି ତିନି ପକ୍ଷ କାଳ ସିନା ଅଛି,
ଗଲେ ତ ଆମ୍ଭେ ଦେବା ଦୁଃଖକୁ ମୁରୁଛି । ବି.ପ. ୨୫ ପୃଷ୍ଠା ।

ସାରଳାଦାସ ଅଧିକତଃ ସମୟକୁ ବୈଷମ୍ୟରେ ପକାଇଥିଲା ପରି କାଶୀରାମଦାସ ମଧ୍ୟ ନିଜ ବଙ୍ଗ ଭାରତରେ ନ୍ୟୂନତଃ ବୈଷମ୍ୟରେ ନିହିତ କରି ଅଛନ୍ତି । ସେ କହନ୍ତି କି ଏ ସମୟକୁ ଅଜ୍ଞାତବାସର ଏକ ମାସ ମାତ୍ର ଅବଶିଷ୍ଟ ଥିଲା । ବ. ଭା. ୩୯୬ ପୃଷ୍ଠା ଦେଖନ୍ତୁ ।

[୨] ଛାପା ପୁସ୍ତକରେ ୧୦୦ ପୃଷ୍ଠା ଦେଖନ୍ତୁ ।

ଦେବୀଙ୍କ ସକାଶାତ୍ ବିତ୍ରସ୍ତ ବିରାଟ ନୃପତି ସ୍ୱରାଜ୍ୟରେ ତଦୀୟ ସମବସ୍ଥାନର ଅସ୍ୱୀକାର ପ୍ରକାଶ କରିଥିଲେ, ତେତେବେଳେ ଶ୍ରୀକୃଷ୍ଣା ସୁଦେଷ୍ଣାଙ୍କୁ ଆଶ୍ୱାସବିଶ୍ୱାସ ପ୍ରଦାନରେ ଆଉ ତ୍ରୟୋଦଶ ଦିବସ ମାତ୍ର ରହିବା ପାଇଁ ଜଣାଇ ଅଛନ୍ତି ।[୧] ଅତଏବ କହିବାକୁ ହେବ ଯେ କୀଚକର ଏହି ନୀଚ ନାଟକାଭିନୟାବସାନ ଏକମାସାଧିକ ହୋଇଥିଲା ।

ଅତଃପର ଗୋଗ୍ରହପ୍ରକରଣ ପ୍ରାରମ୍ଭରେ ସାରଳାଦାସ କହନ୍ତି କି ପ୍ରଥମତଃ ସ୍ୱନିର୍ଗୁଣକଥାନିର୍ବାହଗର୍ବାହବପ୍ରମତ୍ତ ଦୁର୍ଯ୍ୟୋଧନଙ୍କ ସମ୍ମତିକ୍ରମେ ତ୍ରିଗର୍ତ୍ତ ରାଜା ସୁଶର୍ମା ବିରାଟଗୋଗ୍ରହଣାର୍ଥ ମାର୍ଗଶୀର୍ଷ କୃଷ୍ଣ ପଞ୍ଚମୀ ସୋମବାରରେ ବିରାଟରାଜ୍ୟ ପ୍ରତି ଅଭିଯାନ କଲେ । ଇତଃପୂର୍ବେ କୀଚକବଧ ସମୟକୁ ବୃଷ ମାସ କହି ଏବଂ ତଦା ଅଜ୍ଞାତବାସର ମାସଦ୍ୱୟ ଅବଶିଷ୍ଟ ନିର୍ଦ୍ଧାରିତ କରି ତ୍ରିଗର୍ତ୍ତରାଜଙ୍କ ଗୋଗ୍ରହ ଅତ୍ୟାଚାର ମାର୍ଗଶୀର୍ଷ ବୋଲି କହିବା ସଂପୂର୍ଣ୍ଣ ଅସଙ୍ଗତ । ପ୍ରତ୍ୟେକ ଘଟନାରେ ମାସ ତିଥି ବାରାଦିର ନିର୍ଦ୍ଧାରଣ କରିବା ଦାସ ମହାଶୟଙ୍କର ସ୍ୱଭାବସିଦ୍ଧ ଥିବାରୁ ସତ୍ୟାସତ୍ୟ ପ୍ରତି କିମ୍ବା ପୂର୍ବାପର ପ୍ରତିପାଦିତ ଓ ପ୍ରତିପାଦନୀୟ କଥା ପ୍ରତି ବିଚାର ନ ରଖି ବାକ୍‌ଧୋରଣୀର ଆବେଗରେ ପଡ଼ି ଚରିତ ବ୍ୟାଖ୍ୟାନର ଉଦ୍‌ବେଗରେ ଉଦ୍‌ବିଗ୍ନ ହୋଇ ଅବିଶ୍ରାନ୍ତ ବାକ୍‌ବୈଖରୀର ପ୍ରବାହକୁ ସଂଯତ ରଖି ନ ପାରି ଯେ କୌଣସି ପ୍ରକାରେ ମାସୟିକ ନିର୍ଦ୍ଧାରଣମାନ କରି ଆସିଅଛନ୍ତି । କିନ୍ତୁ ଏ ସ୍ଥଳରେ ମାସର କଥା ଯାହାହେଉ ପକ୍ଷନିର୍ଦ୍ଧାରଣଟି ମାତ୍ର ଘୁଣାକ୍ଷର ନ୍ୟାୟ ଯଥାର୍ଥ ହୋଇ ଯାଇଅଛି । କାରଣ ମୂଳଗ୍ରନ୍ଥରେ କୃଷ୍ଣପକ୍ଷ ଅଷ୍ଟମୀରେ ସୁଶର୍ମାଙ୍କ ସମ୍ଭାବିତ ଏତତ୍‌ସମ୍ବନ୍ଧ ଆଭିଯାନିକ ପ୍ରମାଣ ମିଳୁଅଛି । [୨]

ତା ପରେ ଯୁଦ୍ଧସନ୍ନଦ୍ଧ ଅରୁଦ୍ଧବେଗ ସୁଶର୍ମାଙ୍କ ସହ ଭୀମାଦିସନାଥ ବିରାଟରାଟଙ୍କ ଆହବିକ ଘଟନାକୁ ଏକତଃ ଯଥାପ୍ରକାର କରି ସୁଦ୍ଧା ଅନ୍ୟତଃ ଭୀମଙ୍କର ସୁନୀତିବିରୁଦ୍ଧ-ଔଦ୍ଧତ୍ୟସମର୍ଥନରୁ କ୍ଷାନ୍ତ ହୋଇ ନାହାନ୍ତି । ସେ କହନ୍ତି କି ବିରାଟବନ୍ଧନରେ କ୍ରୋଧାନ୍ଧୀଭୂତ ଭୀମସେନ ଧାଇଁ ଯାଇ ସୁଶର୍ମାଙ୍କ ପରି ବିରାଟଙ୍କୁ ମଧ କେଶାକୃଷ୍ଟ ଓ ଆପାଦସ୍ପୃଷ୍ଟଭୂମିକ କରି ଯୁଧିଷ୍ଠିରଙ୍କ ଛାମୁରେ ଉପସ୍ଥାପିତ କଲେ ।[୩] ଅପିଚ ଏହାପରେ ଲେଖି ଅଛନ୍ତି କି ପରାଭବପରିତ୍ରସ୍ତ ସୁଶର୍ମା ଭଗ୍ନବଳସହ ବିରାଟଦେଶରୁ ହସ୍ତିନାରେ ପ୍ରବିଷ୍ଟ ହେଲା

---

[୧] ତ୍ରୟୋଦଶାହମାତ୍ରଂ ତୁ ରାଜା କ୍ଷାମ୍ୟତୁ ଭାବିନି,
କୃତକୃତ୍ୟା ଭବିଷ୍ୟନ୍ତି ଗନ୍ଧର୍ବାସ୍ତେ ନ ସଂଶୟଃ ।

[୨] ଆଦାତୁଂ ଗାଃ ସୁଶର୍ମାଥ କୃଷ୍ଣପକ୍ଷସ୍ୟ ସପ୍ତମୀଂ ।
ଅପରେ ଦିବସେ ସର୍ବେ ରାଜନ୍ ସଂଭୂୟ କୌରବାଃ ।
ଅଷ୍ଟମ୍ୟନ୍ତେ ନିଗୃହ୍ଣନ୍ତୁ ଗୋକୁଳାନି ସହସ୍ରଶଃ । ବି.ପ. ୩୦ ଅଧ୍ୟାୟ ।

[୩] ଡାହାଣେ ତ୍ରିଗର୍ତ୍ତ ବାମେ ବିରାଟର ବାଳ,
ଅନ୍ତରୀକ୍ଷେ ନିଏ ପାଦ ନ ଲାଗଇ ତଳ । ୧୧୮ ପୃଷ୍ଠା ।

ପରେ [୧] ତଦ୍ଦୁଃଖ-ଦୁଃଖିତ ଦୁର୍ଯ୍ୟୋଧନ ଭୀଷ୍ମାଦି ସହ ବିରାଟବଳରେ ବିରାଟ ଆକ୍ରମଣାର୍ଥ ଯାତ୍ରା କଲେ, ଇତ୍ୟାଦି । ଏହା ତାହାଙ୍କର ପ୍ରାମାଦିକ । ସୁଶର୍ମାଙ୍କ ଅଭିଯାନର ପର ଦିବସ କେବଳ ଦୁର୍ଯ୍ୟୋଧନାଦି ବିରାଟରାଜ୍ୟ ପ୍ରତି ଯୁଦ୍ଧଯାତ୍ରା କରିଥିଲେ । ଅତଏବ କୌରବମାନେ ଉତ୍ତରଗୋଗ୍ରହରେ ବ୍ୟାପୃତ ହେବା ସମୟରେ ଭୀମାଦିସନାଥ ବିରାଟରାଜ ତେଣେ ସୁଶର୍ମାଙ୍କ ପ୍ରତୀକାରରେ ତତ୍ପର ଥିଲେ । ବୈରାଟିକମାନଙ୍କ ମଧ୍ୟରୁ ଉତ୍ତର କେବଳ ରାଜଭବନରେ ଉପସ୍ଥିତ ଥିଲେ । ଏହି ସନ୍ଦର୍ଭକୁ ସାରଳାଦାସ ମହୋଦୟ ଠିକ୍ ମନେ ରଖି ନ ପାରି ଉତ୍ତରଗୋଗ୍ରହ ସମୟରେ ବିରାଟଙ୍କର ପ୍ରାସାଦରେ ଅନବସ୍ଥିତି ଦର୍ଶାଇବା ପାଇଁ କହନ୍ତି କି ବିରାଟ ନୃପତି ସୁଶର୍ମାଙ୍କୁ ପରାସ୍ତ କରି ପାଣ୍ଡବମାନଙ୍କ ସହିତ ସ୍ୱଭବନରେ ପ୍ରବେଶିବାର କେତେକ ଦିବସ ପରେ କଳ୍ପିତ ଦେଶର ରାଜା ବୀରବାହୁ (ଯାହାଙ୍କ ପିତା କୀଚକକର୍ତ୍ତୃକ ନିହତ ହୋଇଥିଲେ) ବୈର-ନିର୍ଯ୍ୟାତନାର୍ଥ ବିରାଟ ଆକ୍ରମଣ କଲାରୁ ବିରାଟ ତେଣେ ଯୁଦ୍ଧରେ ଭୀମାଦିଙ୍କସହ ବ୍ୟାପୃତ ରହିଲେ । ଅତ୍ରତ୍ୟ ଦାସଙ୍କ କଳ୍ପିତ ଦେଶର ନାମ ''କଳ୍ପିତ'' ପ୍ରଦତ୍ତ ହୋଇଥିବାରୁ ତଦୀୟ ଅନଳ୍ପ-କଳ୍ପନାଶିଳ୍ପଧୂରୀଣତା ମଧ୍ୟ ସ୍ପଷ୍ଟତଃ ଜଣାପଡ଼ିଯାଉଅଛି ।

ଇତଃ ପାପମନ୍ତ୍ରିତ ଅମର୍ଯ୍ୟାଦ ଦୁର୍ଯ୍ୟୋଧନଙ୍କର ଗୋଧନାକ୍ରମଣ ସ୍ଥଳରେ ଅନେକଗୁଡ଼ିଏ ବିଚିତ୍ର କଳ୍ପନାପ୍ରସୂତ କଥାମାନ ଲେଖିଅଛନ୍ତି କି ସହଦେବଙ୍କ ସ୍ତୁତିରେ ସନ୍ତୁଷ୍ଟା ଖୁରଶୃଙ୍ଗାୟୁଧା ପୃଥ୍ୱୀନା ଗାଭୀ ଗୋସୈନ୍ୟସହ କୌରବଚତୁରଙ୍ଗ ସୈନ୍ୟକୁ ପରାସ୍ତ ଓ ପରିତ୍ରସ୍ତ କଲେ ।[୨] ପ୍ରସାଦତଃ ଶ୍ରୀକୃଷ୍ଣଙ୍କ ପ୍ରଦତ୍ତ ତଦୀୟ ଭୁଜଦ୍ୱୟରେ ସହଦେବ ପ୍ରତ୍ୟକ୍ଷତଃ ଚତୁର୍ଭୁଜ ହୋଇ ଐଶ୍ୱରିକ ସତ୍ତ୍ୱରେ କୁରୁସୈନ୍ୟକୁ ଅସ୍ତବ୍ୟସ୍ତ କଲେ ।[୩] ଗୋହତ୍ୟା ଭୟରେ କୌରବବୀରମାନେ ପଶୁପୀଡ଼ିତ ହୋଇ ସୁଦ୍ଧା ଗୋସୈନ୍ୟ ବିନାଶରୁ ନିବୃତ୍ତ ହେଲେ[୪] ଇତ୍ୟାଦି ।

ଅତଃପର ଗୋଧନାପହରଣ ସମ୍ବାଦରେ ପ୍ରକୁପିତ ପ୍ରାକ୍-ଅପ୍ରଳପିତ-ବୀରସମ୍ବାଦ ଯୋଧପ୍ରବୀର ଉତ୍ତରଙ୍କର ଯୁଦ୍ଧାର୍ଥେ ସନ୍ନାହ ପ୍ରକ୍ରିୟାରେ ଅର୍ଜ୍ଜୁନ ତଦୀୟ ସାରଥ୍ୟ ସାଧନାର୍ଥ ସହଦେବଙ୍କ ବାକ୍ୟରେ ସମ୍ମତି ପ୍ରକାଶ କରିଥିଲେ ବୋଲି ଲେଖିଅଛନ୍ତି । କିନ୍ତୁ ସତ୍ୟତଃ

---

[୧] ଭଗ୍ନବଳ ଘେନି ତ୍ରିଗର୍ତ୍ତେଶ୍ୱର ଆସି ।
ଧନୁ ଶୁକ୍ଳ ତ୍ରୟୋଦଶୀ ହସ୍ତିନାରେ ପଶି । ଇତ୍ୟାଦି । ୧୨୦ ପୃଷ୍ଠା ।

[୨] ଛାପାରେ ୧୨୮, ୧୨୯ ପୃଷ୍ଠା ଦେଖନ୍ତୁ ।

[୩] ଛାପା ପୁସ୍ତକରେ ୧୩୧ ପୃଷ୍ଠା ଦେଖନ୍ତୁ ।

[୪] ଏ ସ୍ଥଳରେ ଗୋହତ୍ୟା ଅତି ଦୁସ୍ତର ପାପ, ଏହା ସ୍ଥିର କରିବା ପାଇଁ ପୌରାଣିକ ଗାଥାକାର କହୁଅଛନ୍ତି କି ଏକଦା ମହାଦେବ ଗଙ୍ଗାତୀରରେ କୁଶବୀଟିକା ଥୋଇ ସ୍ନାନ କରୁଥିଲେ, ଇତ୍ୟବସରରେ ସୁରଭୀଙ୍କ ନନ୍ଦିନୀ ନନ୍ଦିନୀ ଆସି କୁଶମୁଷ୍ଟିକି କବଳିତ କରିଦେବା ଦେଖି ମହାଦେବ ପ୍ରହାର କଲାରୁ ନନ୍ଦିନୀଙ୍କ ମସ୍ତକ ଛିନ୍ନ ହୋଇ ତଦୀୟ ହସ୍ତରେ ବଜ୍ରଲେପ ତୁଲ୍ୟ ଲଗ୍ନ ହୋଇ ରହିଗଲା, ଇତ୍ୟାଦି ।

ସନ୍ତତ ପରାକ୍ରମୋତ୍ସାହ-ବିବୃଦ୍ଧମାନସ ପ୍ରୁଷ୍ଟଦୃଷ୍ଟାଶିଷ୍ଟରାଜନ୍ୟବୃନ୍ଦ ଅର୍ଜୁନ ଭକ୍ତିମତୀ ଅନ୍ତେବାସିନୀ ଉତ୍ତରାଙ୍କ ଅନୁରୋଧରେ ଉତ୍ତରଙ୍କର ସାରଥି ହୋଇଥିଲେ । ସେ ଯାହାହେଉ ଏ ସ୍ଥଳରେ ସହଦେବଙ୍କ ମୁଖରେ ଯାହା ଅଜ୍ଞାତବାସର ଦିନତ୍ରୟ[୧] ମାତ୍ର ଅବଶିଷ୍ଟ ଥିବାର ପ୍ରକାଶ କରି ଅଛନ୍ତି, ତାହା ମୂଳ ସହିତ ପ୍ରାୟ ଏକପ୍ରଖ୍ୟ ହୋଇଅଛି ।

ତଦନନ୍ତର ଉତ୍ତର ମହାସାଗରୋପମ ଭୀକର ଦୁର୍ବିଗ୍ରାହ୍ୟ କୌରବ ସୈନ୍ୟ ଦର୍ଶନରେ ସଂଜାତରୋମହର୍ଷଣ ଅତିମାତ୍ର ତ୍ରସ୍ତ ବୈରାଟିକ ଉତ୍ତରଙ୍କର ପଳାୟନ ସମୟରେ ଅର୍ଜୁନ ଶତ୍ରୁନିହତ ଶୁକ୍ରନାମକ ରାଜାଙ୍କ ପୁତ୍ର ଚତୁଷ୍ଟୟଙ୍କ ବୀରତ୍ୱକାହାଣୀ କହି ଉତ୍ତରଙ୍କୁ ଟିକିଏ ସତେଜ କରାଇ ଥିବାର ଯାହା ଲେଖି ଅଛନ୍ତି, ତାହା ଅମୌଳିକ ହେଲେ ହେଁ ଅସଙ୍ଗତ ହୋଇନାହିଁ ।[୨] ତତଃପର ସୋତ୍ତର ଅର୍ଜୁନ ଶମୀ ସମୀପସ୍ଥ ହେବା ସ୍ଥଳରେ କହନ୍ତି କି, କୁନ୍ତୀଦେବୀ ପ୍ରଭୃତି ପ୍ରୋକ୍ତ ଶମୀ ସ୍ୱରୂପରେ ଅବସ୍ଥିତ ଥିଲେ ।[୩] ବୋଧହୁଏ ସାରଳାଦାସ ମହାଶୟ କୌଣସି ପ୍ରକାର ଆଶୟାର୍ଥରେ ଏହା ପ୍ରକାଶ କରିଥିବେ । ତତ୍ପର ଶରାହରଣାର୍ଥତତ୍ପର ଉତ୍ତର ବୃକ୍ଷକ୍ରୋଡ଼ହସ୍ତ ହେଲାରୁ ତତ୍ରତ୍ୟ କାଳବିଳେଶୟ ଦଂଶିବା, ଭୁଜଙ୍ଗବିଷଭଙ୍ଗଜାଙ୍ଗଲିକପ୍ରାୟ ଅର୍ଜୁନ ନିର୍ମୋଘ ମନ୍ତ୍ରବଳରେ ତାହାଙ୍କୁ ନିର୍ବିଷ କରିବା, ପ୍ରୋକ୍ତ କରାଳକାଳଭୁଜଙ୍ଗ ବୈରନିର୍ଯାତନାର୍ଥ କର୍ଣ୍ଣଙ୍କୁ ଆଶ୍ରୟ କରି ପ୍ରାକ୍‌ପ୍ରବୃତ୍ତ ଖାଣ୍ଡବଦାହରେ ଅର୍ଜୁନ ତଦୀୟ ବଂଶଧରମାନଙ୍କୁ ନିହତ କରିଥିଲେ ବୋଲି ଇଦାନୀଂ ତଦ୍ଦଶନାର୍ଥ ଶମୀକ୍ରୋଟରରେ ଲୁକ୍‌କାୟିତ ରହି ଦୈବଗତ୍ୟା ଅର୍ଜୁନ କ୍ରୋଟରରେ ହସ୍ତ ନ ଦେବାରୁ ବୈରାଟିକଙ୍କୁ ଦଂଶନ କରିଥିବା ପ୍ରଭୃତି କଥା ଜଣାଇଲା ପରେ ଅର୍ଜୁନ ଏକ୍ଷଣି ଯୁଦ୍ଧାର୍ଥ ଆସିବେ, ତୁମ୍ଭେ ମୋତେ ଶର ରୂପେ ତତ୍‌ପ୍ରତି ପ୍ରେରଣ କର, ମୁଁ ତାଙ୍କୁ ନିହତ କରିବି, ଇତ୍ୟାଦି କ୍ରମେ ପ୍ରାର୍ଥନା କରିବା, କର୍ଣ୍ଣ ଭାବୀ ଜୟାଶାରେ ସ୍ୱୀକୃତ ହେବା ପ୍ରଭୃତି କଥା ଲେଖିଅଛନ୍ତି । ବୋଧହୁଏ ଶ୍ରୀ ସାରଳା ଦାସ କବି ଏ ସବୁ ଏ ସ୍ଥଳରେ କହିବା ପାଇଁ ଅନ୍ୟ ପୌରାଣିକ ସନ୍ଦର୍ଭକୁ ଆଶ୍ରୟ କରି ଅଛନ୍ତି ।

---

[୧] କରପତ୍ର ଯୋଡ଼ି ସହଦେବ ଯେ ବୋଇଲା ।
ତିନିଶ ସତାବନ ଦିନ ଶେଷ ହୋଇଲା ॥
ଆଉ ତିନିଗୋଟି ଦିନ ଅଛଇ ଲେଖତେ ।
କିଛିହିଁ ଦୋଷ ନୋହିବ ଆମ୍ଭଙ୍କୁ ଜାଣତେ ॥

[୨] ୧୪୪ ପୃଷ୍ଠା ଦେଖନ୍ତୁ ।

[୩] ପାଣ୍ଡୁକୋଇନ୍ତା ଅଟନ୍ତି ସେ ବୃକ୍ଷର ମୂଳ ।
ଭୀମ ମାଦ୍ରୀ ସୁତେ ହୋଇଛନ୍ତି ଚାରି ଡାଳ ॥
ଉପର ଶାଖା ଅଟନ୍ତି ଧରମ ଯୁଧିଷ୍ଠି ।
ପାଞ୍ଚାଳୀଦେବୀ ଅଟଇ ତହିଁ ପୁଷ୍ପ ଗୋଟି ॥ ୧୪୬ ପୃଷ୍ଠା ।

ଅନନ୍ତର ପାର୍ଥପ୍ରବୀର ପାଣ୍ଡବୀୟ-ଶସ୍ତ୍ରମାନଙ୍କର ପରିଚୟ ପ୍ରଦାନ କରିଥିବା ସ୍ଥଳରେ ଉତ୍ତରଙ୍କ ପ୍ରଶ୍ନକ୍ରମରେ ସେ ଯେତେବେଳେ ଆପଣାର ତ୍ରିଭୁବନ-ସ୍ମରଣୀୟ ଦଶ ନାମର ବିବରଣ କହିଥିଲେ, ସାରଳାଦାସ ମଧ ତଦନୁରୂପ କହିଯାଇଅଛନ୍ତି । କିନ୍ତୁ (୧୫୫ ପୃଷ୍ଠାରେ) ଦେଖିବେ, ତାହାର କିଞ୍ଚିତ୍ ମାତ୍ର ବ୍ୟତ୍ୟୟ ହୋଇଯାଇଅଛି । ଏଥିରେ ଅନୁକ୍ତ ପାର୍ଥନାମ ପ୍ରଦତ୍ତ ହୋଇ ଶାସ୍ତ୍ରସମୁଦିତ(୧) ଜିଷ୍ଣୁ ଓ ବିଜୟ ନାମ ବର୍ଜିତ ଦେଖାଯାଉଅଛି ।(୨) ଅନୁମାନ କରିବାକୁ ହୁଏ, ଏହା ପରବର୍ତ୍ତୀ ଲେଖକମାନଙ୍କର ମତିଦୌର୍ବଲ୍ୟର ବିଷମ ଫଳ ହୋଇଥିବ ।

ଶମୀ ସମୀପରେ ଉତ୍ତରଙ୍କ ପ୍ରଶ୍ନରେ ଅର୍ଜୁନ ତତ୍ର ଶମୀସ୍ଥ ବିରାବକ କବନ୍ଧ ଓ ଗନ୍ଧର୍ବମାନଙ୍କ ପ୍ରାକ୍ତନ ବୃତ୍ତାନ୍ତ, ଶମୀଦ୍ୱୟର ହରିହରାତ୍ମକଶକ୍ତିପ୍ରସୂତତ୍ୱ ଇତ୍ୟାଦି କେତେକ ଅମୂଳକ ଇତିହାସ ପ୍ରକାଶ କରି ଥିବାର ଲେଖିଅଛନ୍ତି । ଇତ୍ୟବସରେ ଇନ୍ଦ୍ରାଦିଷ୍ଟ ସୁଦିଷ୍ଟ ମାତଳି କିରୀଟାଦି ଭୂଷଣମାନ ଓ ଦେବଦତ୍ତ ଶଙ୍ଖ ଆଦି ଉପସ୍ଥାପିତ କରିବା ଏବଂ ତତ୍‌ଶଙ୍ଖପ୍ରାପ୍ତିର ଐତିହାସିକ ଘଟନା ଏବଂ ଶ୍ରୀକୃଷ୍ଣପ୍ରଣୋଦିତ ଦାରୁକ ନନ୍ଦିଘୋଷ ରଥ ସମର୍ପଣ କରିଥିବା କଥା ଲେଖାଅଛି ।[୩] ଏତାବଦ୍ ବିଷୟଗୁଡ଼ିକ ମୂଳାନୁମତ ନୁହେ । ମୂଳ ଗ୍ରନ୍ଥରେ ଉକ୍ତ ଅଛି, ଅର୍ଜୁନ ତୃତୀୟାପ୍ରକୃତିଚ୍ଛାଦକ ସ୍ତ୍ରୀବେଶ ତ୍ୟାଗ ପୂର୍ବକ ସୁବିଶ୍ୱାସ-ପ୍ରୟତ ହୃଦୟରେ ବୈଶ୍ୱାନରଙ୍କୁ ଧ୍ୟାନ କଲାରୁ ପ୍ରାକ୍ ତଦ୍ଦତ୍ତ ଦିବ୍ୟରଥ ବ୍ୟୋମରୁ ଭୂମିରେ ଅବତୀର୍ଣ୍ଣ ହେଲା ।[୪] ପରେ ଅର୍ଜୁନ କୌରବସୈନ୍ୟସାଗରରେ

---

(୧) ଅର୍ଜୁନଃ ଫାଲ୍‌ଗୁନୋ ଜିଷ୍ଣୁଃ କିରୀଟି ଶ୍ୱେତବାହନଃ ।
ବୀଭତ୍ସୁର୍ବିଜୟଃ କୃଷ୍ଣଃ ସବ୍ୟସାଚୀ ଧନଞ୍ଜୟଃ ।।

(୨) ପାଠକେ, ଏ ସ୍ଥଳରେ ପ୍ରକାଶ କରିଦେବା ଉଚିତ ଯେ— ଇତଃପୂର୍ବେ ଆଦିପର୍ବ ପାଠରେ ପ୍ରକାଶିତ ମତିମାନ୍ ଶ୍ରୀ ସାରଳାଦାସଙ୍କ ପ୍ରଦର୍ଶିତ ହସ୍ତିନାସ୍ଥ ଯୋଗେଶ୍ୱର ମହାଦେବଙ୍କ ପୂଜାରେ କୁନ୍ତୀ ଓ ଗାନ୍ଧାରୀଙ୍କର ବିବାଦମୂଳକ ଚରିତଟିକୁ ଅତ୍ରତ୍ୟ ଅର୍ଜୁନଙ୍କ ଦଶନାମ ବ୍ୟୁତ୍ପତ୍ତି ପ୍ରକାଶନରେ ବଙ୍ଗଭାରତକର୍ତ୍ତା କାଶୀରାମଦାସ ମହାଶୟ ଠିକ୍ ଅବିକଳ ଲେଖିଅଛନ୍ତି । ପରନ୍ତୁ ସେ କହନ୍ତି କି ତଦବଧି ଅର୍ଜୁନ ଧନଞ୍ଜୟ ନାମରେ ଅଭିହିତ ହେଲେ । ଯଥା—

ଆମାରେ ସନ୍ତୁଷ୍ଟ ହୟେ ବଲେନ ବଚନ ।
ଧନପତି ଜିନି ତୁମି କରିଲେ ପୂଜନ ।।
ଆଜି ହୈତେ ନାମ ତବ ହୈଲ ଧନଞ୍ଜୟ ।
ଧନଞ୍ଜୟ ନାମେର ଜାନହ ଏ ଆଶୟ ।। ବି.ପ. ୪୧୨ ପୃଷ୍ଠା ।

କିନ୍ତୁ ଏହା ମୌଳିକ ମତର ଅନୁମତ ନୁହେ । ବ୍ୟାସଙ୍କ ମତରେ ଧନଞ୍ଜୟ ନାମର ବ୍ୟୁତ୍ପତ୍ତି ଅନ୍ୟଥା ଉକ୍ତ ଅଛି । ଯଥା—

ସର୍ବାନ୍ ଜନପଦାନ୍ ଜିତ୍ୱା ବିତ୍ତମାଦାୟ କେବଳଂ ।
ମଧ୍ୟେ ଧନସ୍ୟ ତିଷ୍ଠାମି ତେନାହୁର୍ମାଂ ଧନଞ୍ଜୟଂ ।। ବି.ପ.

[୩] ୧୫୭ - ୧୬୨ ପୃଷ୍ଠା ଦେଖନ୍ତୁ ।

[୪] ସ୍ୱାଦ୍ ପପାତ ରଥଂ ତୂର୍ଣ୍ଣଂ ଦିବ୍ୟରୂପଂ ମନୋହରଂ ।

ସଧୈର୍ଯ୍ୟରେ ପ୍ରବିଷ୍ଟ ହେଲେ । ମୂଳରେ ଯେପରି ଅର୍ଜ୍ଜୁନଙ୍କର ସମାଗମନାବଗମନରେ କୃପ ଭୀଷ୍ମ ଦ୍ରୋଣାଦି ତଦୀୟ ଭୁବନୈକବୀରତ୍ୱ ପ୍ରକାଶପୂର୍ବକ ଯୁଦ୍ଧସନ୍ନାହରୁ ବିରତ ହେବାପାଇଁ ଦୁର୍ଯ୍ୟୋଧନଙ୍କୁ "ମହତସ୍ତରସା ବିଲଂଘୟନ୍ ନିଜ ଦୋଷେଣ କୁଧୀର୍ବିନଶ୍ୟତି" ଇତ୍ୟାକାରକ ସଦୁପଦେଶମାନ ଦେଇଥିଲେ, ସାରଳାଦାସଙ୍କ ଭାରତରେ ସେପରି ନୁହେଁ । କିନ୍ତୁ ଯୁଦ୍ଧପ୍ରକ୍ରିୟାଟିର ପ୍ରସର ମୂଳ ଅପେକ୍ଷା କିଛି ଊଣା ନୁହେଁ ।[୧] ସାରଳାଦାସଙ୍କ ଭାରତରେ ଅର୍ଜ୍ଜୁନ ରଣାଙ୍ଗଣରେ ପ୍ରବେଶ କରିବା ମାତ୍ରେ ଆତ୍ମପରିଚୟ ଦେଇ ଥିବାର ଉକ୍ତ ଅଛି । ମାତ୍ର ମୂଳମତେ ଯେତେବେଳେ ଅଦ୍ୱିତୀୟ ଧନୁର୍ଦ୍ଧର ପିତାମହ ଭୀଷ୍ମଦେବଙ୍କୁ ସୁଦ୍ଧା ପଳାୟମାନ ଦେଖି ଦୁର୍ଯ୍ୟୋଧନ ସ୍ୱୟଂ ଯୁଯୁତ୍ସାରେ ପ୍ରୋତ୍ସାହିତ ହୋଇ ପ୍ରଧାବିତ ହେଲେ, ତେତେବେଳେ ଅର୍ଜ୍ଜୁନ ଆତ୍ମପରିଚୟ ପ୍ରଦାନରେ ତାହାଙ୍କୁ ଅଧିକ୍ଷେପ କରି ଅଛନ୍ତି ।[୨] ଅମିତ କୌରବବଳ ଯୁଗପଦ୍ ମୋହନାସ୍ତ୍ରରେ ମୋହିତ ହେଲାରୁ ଶ୍ରୀ ସାରଳାଦାସ ଯେପରି ସୌବଳ ଶକୁନିଙ୍କି ଗର୍ଦ୍ଦଭପୃଷ୍ଠଶାୟୀ ଦୁର୍ଯ୍ୟୋଧନଙ୍କୁ ଚଣ୍ଡାଳପାଦନ୍ୟସ୍ତ-ମସ୍ତକ କରିବା ପ୍ରଭୃତି ଅର୍ଜ୍ଜୁନଙ୍କର ଅନୀତି-ପ୍ରଚୋଦିତ ବିଚ୍ଛିରୀକରଣର କାର୍ଯ୍ୟମାନ ଦେଖାଇ ଅଛନ୍ତି, ତାହା ସଂପୂର୍ଣ୍ଣତଃ ମୂଳାନୁମୋଦିତ ନୁହେଁ । ମୂଳରେ ଏତିକିମାତ୍ର ବିକୃତୀକରଣ ଉକ୍ତ ଅଛି ଯେ, ଅର୍ଜ୍ଜୁନ "ନଚାତିକୋପଃ ସ୍ୱଜନେ ବିଧେୟ" ଏହା ଭାବି ଉତ୍ତରାଦେଶପାଳନାର୍ଥ ଉତ୍ତରଙ୍କକର୍ତ୍ତୃକ ଭୀଷ୍ମାଦିଙ୍କର ଓ ମାନାଧିକ ଆୟୁଧିକମାନଙ୍କ ବସ୍ତ୍ରାଳଂକାର ହରଣ ପୂର୍ବକ ଦୁର୍ଯ୍ୟୋଧନଙ୍କର ମୁକୁଟମାତ୍ର ଛେଦନ କରାଇଥିଲେ ।

ତତ୍ପର ସାରଳାଦାସ ମହାଶୟ ସ୍ୱାଭାବିକ-ସ୍ମୃୟାପସ୍ମାର-ବିସ୍ମାରିତ-ବିବେକ ବିରାଟଙ୍କ କର୍ତ୍ତୃକ ଅକ୍ଷଶଳାକାରେ ଯୁଧିଷ୍ଠିର ବିକ୍ଷତମସ୍ତକ ହେବାର କାରଣଭୂତ ପ୍ରାକ୍ତନଦୁଷ୍କର୍ମଫଳସୂଚକ ସ୍ୱରୂପ ଲେଖିଅଛନ୍ତି କି, ଏକଦା ଶୈଶବରେ ଯୁଧିଷ୍ଠିର ଏକ କର୍କଶ କର୍କର ପାଷାଣରେ ମଣ୍ଡୁକକୁ ପୃଷ୍ଠରେ ଘାତ କରି ନିହତ କରି ଥିବାରୁ ଯମରାଜ ଏତାଦୃଶ ଶାପ ଦେଇଥିଲେ ।[୩] ଅପିଚ ଏହି ପ୍ରକରଣର ଅବସାନରେ ଅଜ୍ଞାତବାସର

---

[୧] କେହି କେହି ଶ୍ରମକାତର ଅସମଗ୍ରଦର୍ଶୀ କହନ୍ତି, କୌରବକର୍ତ୍ତୃକ ଗୋହରଣ ଏବଂ ଯୁଦ୍ଧାଦିର ବୃତ୍ତାନ୍ତ ମୂଳ ତୁଳନାରେ ଅତି ସଂକ୍ଷିପ୍ତ କରିଅଛନ୍ତି । ଦେଖନ୍ତୁ, କୌରବକର୍ତ୍ତୃକ ଗୋହରଣପ୍ରକ୍ରିୟା ୧୨୫ ପୃଷ୍ଠାରୁ ୧୮୬ ପୃଷ୍ଠା ପର୍ଯ୍ୟନ୍ତ ବିସ୍ତୃତ ଅଛି । ଏଥି ମଧ୍ୟରେ ବୀରମାନଙ୍କର ଅର୍ଜ୍ଜୁନଙ୍କ ସହ ଶରଖେଳା ୧୭୧ ପୃଷ୍ଠାରୁ ୧୮୬ ପୃଷ୍ଠାଯାଏ ଯଥା ପ୍ରକାର ପ୍ରସାରିତ ହୋଇଅଛି ।

[୨] ଯୁଧିଷ୍ଠିରସ୍ୟାସ୍ମି ନିଦେଶକାରୀ ପାର୍ଥସ୍ତୃତୀୟୋ ଯୁଧି ସଂସ୍ଥିତୋଽସ୍ମି ।
ତଦର୍ଥମାବୃତ୍ୟ ମୁଖଂ ପ୍ରୟଚ୍ଛ ନରେନ୍ଦ୍ରବୃତ୍ତଂ ସର ଧାର୍ତ୍ତରାଷ୍ଟ୍ର ॥ ୬୫ ଅଧ୍ୟାୟ ।

[୩] ଯମ ବୋଲେ ବିନାଦୋଷେ ହତ୍ୟାକଲା ଯେତି ।
ତା ମସ୍ତକେ ପଡୁ ମତ୍ସ୍ୟରାଜ ପଶାକାଠି । ବି.ପ. ୧୯୦ ପୃଷ୍ଠା ।

ଦିବସତ୍ରୟ ମାତ୍ର ଅବଶିଷ୍ଟ ଥିବାର ମଧ ପ୍ରକାଶ କରି ଅଛନ୍ତି ।[୧] ଏହା ମୌଳିକ ମତର ଅନୁମତ ହୋଇଅଛି । ମୂଳରେ ବିରାଟଭୂପ କୌରବବିଜେତା ମହାପୁରୁଷ କେଉଁଠି ଅଛନ୍ତି ବୋଲି ଜିଜ୍ଞାସା କରନ୍ତେ ଉତ୍ତର ଉତ୍ତର କରିଅଛନ୍ତି ଯେ, ସେହି ଦେବପୁରୁଷ କାଲି ବା ତତ୍ପର ଦିବସରେ ଅବଶ୍ୟ ଦେଖାଦେବେ ।[୨] ଏଥିଦ୍ୱାରା ମଧ ଦିନତ୍ରୟ ଅବଶିଷ୍ଟ ଥିବାର ପ୍ରତୀୟମାନ ହେଉଅଛି ।

ମୂଳ ବିରାଟ ପର୍ବର ସର୍ବାବସାନ ବୈବାହିକ ଉପପର୍ବର [୩] ପ୍ରାରମ୍ଭରୁ ଲେଖାଅଛି କି, କୌରବବାହିନୀ ବିଜୟ କିମ୍ବା ଉତ୍ତରଗୋଗ୍ରହର ତୃତୀୟ ଦିବସରେ ଦେବସତ୍ତ୍ୱ ସିଂହସଂହନନ-କୃତମନ୍ତ୍ରଣ ଏକ-ନିଶ୍ଚୟ-କାର୍ଯ୍ୟ ପାଣ୍ଡବମାନେ କୃତସ୍ନାନ-ସ୍ୱସ୍ତ୍ୟୟନ ଓ ସମଳଂକୃତିରେ ମନ୍ତ୍ରହୁତ ହୁତାଶନକଳ୍ପ ତେଜଃପ୍ରଜ୍ୱଳିତ ହୋଇ ସାନୁଚରପାର୍ଷଦ ବିରାଟ ଭୂପଙ୍କୁ ବିସ୍ମିତସ୍ତିମିତ-ତାରକେକ୍ଷଣ ଓ ଚିତ୍ରୀୟମାଣଚେତା କରି ତଦୀୟ ସିଂହାସନୋପରି ସମାସୀନ ଓ ଅଭିଷିକ୍ତ ହେଲେ । [୪] କିନ୍ତୁ ଏ ସ୍ଥଳରେ ବୈଷମ୍ୟପ୍ରିୟ ସାରଳା ଦାସ ମହୋଦୟ ଅତ୍ରତ୍ୟ ଯୌଧିଷ୍ଠିରାଭିଷେକକ୍ରମକୁ କେତେକ ଅତିରିକ୍ତ କଥାରେ ଆଶ୍ଚର୍ଯ୍ୟଚର୍ଯ୍ୟ କରି ବର୍ଣ୍ଣି ଅଛନ୍ତି । ସେ କହନ୍ତି କି, ପ୍ରଥମତଃ ସହଦେବଙ୍କ ମନ୍ତ୍ରଣାରେ ସଭାର୍ଯ୍ୟ ଯୁଧିଷ୍ଠିରାଦିମାନେ ନିଶା ସମୟରେ ପୂର୍ବୋକ୍ତ ସର୍ବଶର୍ମକର୍ମାଭ୍ୟୁଦୟିକ ଶମୀ ସମୀପରେ ଉପଗତ ହେଲେ । ଦୈବଗତ୍ୟା ବ୍ୟାସ, ବିଶ୍ୱାମିତ୍ର, ଧୌମ୍ୟ ପ୍ରଭୃତି ଋଷିମାନେ ଓ ଯଦୁବଂଶୀୟମାନେ ତତ୍ର ସଂପ୍ରାପ୍ତ ହେଲେ । ପୁଣି ଇନ୍ଦ୍ରଙ୍କ ସମାଦେଶରେ ବିଶ୍ୱକର୍ମା ସୁଧର୍ମା ସଭାକୁ ସମୁପସ୍ଥାପିତ କଲେ । ତଦା ଯୁଧିଷ୍ଠିରଦେବ ଦେବଗଣଙ୍କୁ ଧରି ମହାସମାରୋହରେ ସତୂର୍ଯ୍ୟରବ-ବ୍ରହ୍ମଘୋଷପୁରଃସର ଆପୂର୍ଯ୍ୟମାଣ ବହୁଳକାହାଳକୋଳାହଳରେ ଅଭିଷିକ୍ତ ହେଲେ । ଅଭିଷେକ ପରେ ସମାଗତ ସମବେତ ଦେବବୃନ୍ଦ ଓ ବନ୍ଧୁବର୍ଗ ଯେଝା ସ୍ଥାନକୁ ପ୍ରସ୍ଥାନ କଲାରୁ ସାନୁଜ ସଭାର୍ଯ୍ୟ ଯୁଧିଷ୍ଠିର ପୂର୍ବବତ୍ ବିରାଟ ନଗରସ୍ଥ ହୋଇ ବୈରାଟିକ ସିଂହାସନରେ ସମାସୀନ ହେଲେ । [୫]

[୧] ଏ ଗୁପତ ତିନି ଦିନ ହେବୁ ତୁହି ତୁନି —୧୯୧ ପୃଷ୍ଠା ।

[୨] ଅବର୍ଦ୍ଧାନଂ ଗତସ୍ତତ୍ର ଦେବପୁତ୍ରୋ ମହାବଳଃ ।
ସ ତୁ ଶ୍ୱୋବାପରଶ୍ୱୋବା ମନ୍ୟେ ପ୍ରାଦୁର୍ଭବିଷ୍ୟତି ॥ ୬୯ ଅ:

[୩] ୬୯ – ୭୨ ଅଧ୍ୟାୟମାନ ଦେଖନ୍ତୁ ।

[୪] ତତସ୍ତୃତୀୟେ ଦିବସେ ଭ୍ରାତରଃ ପଞ୍ଚପାଣ୍ଡବାଃ,
ସ୍ନାତାଃ ଶୁକ୍ଳାମ୍ବରଧରାଃ ସମୟେ ଚରିତବ୍ରତାଃ ।
ବିରାଟସ୍ୟ ସଭାଂ ଗତ୍ୱା ଭୂମିପାଳାସନେଷ୍ୱଥ,
ନିଷେଦୁଃ ପାବକପ୍ରଖ୍ୟାଃ ସର୍ବେଧିଷ୍ଣେଷ୍ୱିବାଗ୍ନୟଃ ॥ ୭୦ ଅ:

[୫] ୧୯୫-୨୦୩ ପୃଷ୍ଠା ଦେଖନ୍ତୁ । ଏହି ଅଭିଷେକର ବିଧାନ ସବିସ୍ତର ବର୍ଣ୍ଣିତ ଅଛି । ଅପିଚ ଏହାପରେ ଦେଖିବେ ଅଭିମନ୍ୟୁ ଓ ଉତ୍ତରାଙ୍କ ପରିଣୟ କ୍ରମକୁ ସୁଦ୍ଧା କିଞ୍ଚିତ୍ ବିଭିନ୍ନତାରେ ନିହିତ କରିଅଛନ୍ତି ।

ପାଠକେ, ବିରାଟଦେଶରେ ନିର୍ବାହିତ ଯୁଧିଷ୍ଠିରଙ୍କ ଅଭିଷେକ ସମୟକୁ ମାସାଦି ନିର୍ଦ୍ଧାରଣରେ ଶ୍ରୀ ସାରଳା ଦାସ ମକର ଶୁକ୍ଳ ଚତୁର୍ଥୀ ବୋଲି କହି ଅଛନ୍ତି ।[୧] ଏହା ସଂପୂର୍ଣ୍ଣ ଭ୍ରାନ୍ତିସଂକୁଳ । ପରନ୍ତୁ ଶ୍ରୀମାନ୍ ରାଜା କୃଷ୍ଣସିଂହଙ୍କ ଭାରତରେ ଆଷାଢ଼ ପୂର୍ଣ୍ଣିମା ବୋଲି ସମୟ ଯାହା ନିର୍ଦ୍ଧାରିତ ହୋଇଅଛି, ତାହା ଯଥାର୍ଥ ବୋଧହୁଏ ।[୨] କାଶୀରାମଦାସ ବଙ୍ଗ ଭାରତରେ ମଧ ତାହା ହିଁ କହି ଅଛନ୍ତି ।[୩] କିନ୍ତୁ ମଦ୍ଦୃଷ୍ଟ ମୁଦ୍ରିତ ମୂଳଗ୍ରନ୍ଥରେ ଏପରି ଉକ୍ତ ଥିବାର ଦେଖାଯାଇ ନାହିଁ । ତଥାପି ପ୍ରତୀତ ହୁଏ, ଅନ୍ୟାନ୍ୟ ପୁସ୍ତକମାନଙ୍କରେ ଥାଇପାରେ । କାରଣ ପ୍ରୋକ୍ତ ସମୟ ନିର୍ଦ୍ଦେଶକୁ ଧରି ତଦ୍‌ପରସ୍ତାଦ୍ ପ୍ରବର୍ତ୍ତିତ କେତେକ ଘଟଣାମାନଙ୍କର ସାମୟିକ ବିବରଣର ପ୍ରମାଣମାନଙ୍କୁ ମିଳାଇ ନେଲେ ସୁସଙ୍ଗତ ହୋଇଅଛି । ଅପିଚ କେତେକ ସଂସ୍କୃତ ପୁସ୍ତକମାନଙ୍କରେ ମଧ ପାଠର ନ୍ୟୂନାଧିକତା ହୋଇଥାଏ । ପାଠକେ ତତ୍ ତତ୍ ପ୍ରମାଣମାନ ଯଥାସ୍ଥାନରେ କ୍ରମଶଃ ଯଥାସମ୍ଭବ ପାଇ ପାରିବେ । ବର୍ତ୍ତମାନ ଦୁଇଗୋଟି କଥାରେ ଏ ବିଷୟକୁ ସୁସିଦ୍ଧାନ୍ତ କରି ଏହି ପ୍ରକରଣର ସମାପ୍ତି କରିବୁଁ ।

ଅଷ୍ଟଦଶଦିବସାବସାନ ମହାଭାରତ ଯୁଦ୍ଧ ସମ୍ଭବତଃ ହିମାତ୍ୟୟ ଓ ଶିଶିରାରମ୍ଭରେ ସମାରବ୍ଧ ହୋଇଥିଲା । ସେ ଯୁଦ୍ଧର ତ୍ରୟୋଦଶ ଦିବସରେ ସୌଭଦ୍ର ଅଭିମନ୍ୟୁ ପଞ୍ଚତ୍ୱପ୍ରାପ୍ତ ହୋଇଥିଲେ । ତେତେବେଳେ ପ୍ରାପ୍ତପଞ୍ଚତ୍ୱ ପତିଙ୍କ ଶୋକରେ ସମଭିସଂତପ୍ତା ବୈରାଟୀ ଉତ୍ତରା ତଦୀୟ ବିଳାପରେ ଛଅମାସ ମାତ୍ର ଅଭିମନ୍ୟୁଙ୍କ ସହାବସ୍ଥାନ ପାଇଥିବାର ଏବଂ ସପ୍ତମରେ ସେ ନିହତ ହୋଇଥିବାର ବ୍ୟକ୍ତ କରି ଅଛନ୍ତି ।[୪] ଏଥିରୁ ସ୍ପଷ୍ଟ ପ୍ରତିପନ୍ନ ହେଉଅଛି ଯେ, ବିରାଟ ଦେଶରେ ସମ୍ପନ୍ନ ଯୁଧିଷ୍ଠିରଙ୍କ ଅଭିଷେକର ଅର୍ଥାତ୍ ଅଜ୍ଞାତବାସ ସମାପ୍ତିର ପ୍ରାୟ ଛଅ ମାସରେ ଭାରତଆହବିକପ୍ରଳୟ ଘଟିଥିଲା ଏବଂ ପ୍ରୋକ୍ତ ଆଭିଷେକିକୋତ୍ସବ ଆଷାଢ଼ ପୂର୍ଣ୍ଣିମାରେ ସୁସାଧିତ ହୋଇଥିଲା ।

ତତଃପର ବହୁରାଜନ୍ୟଯୋଗ ଉଦ୍‌ଯୋଗପର୍ବର ନାମକରଣ ବନବାସ ଦୁଃଖକର୍ଷିତ ପାଣ୍ଡବମାନଙ୍କର ନ୍ୟାୟାନୁମୋଦିତ ଅର୍ଦ୍ଧରାଜ୍ୟପ୍ରାପ୍ତି ହେତୁକ ସମୁଦ୍‌ଯୋଗକରଣରେ ହୋଇଅଛି । ଏଠାରେ ଆପାତତଃ ସଞ୍ଜୟଯାନାଭିଧ ଉପପର୍ବର ପ୍ରାରମ୍ଭରୁ ଅଭିମନ୍ୟୁଙ୍କ ବିବାହର ଅବ୍ୟବହିତ ପରେ ବିରାଟରାଟଙ୍କ ବିରାଟ ସଭାରେ ସନ୍ତତ ପାଣ୍ଡବସମୃଦ୍ଧିସଦ୍ଦୃଷ୍ଟ

---

[୧] ଛାପାରେ ୧୯୪ ପୃଷ୍ଠା ଦେଖନ୍ତୁ ।

[୨] କୃଷ୍ଣସିଂହ ଭାରତ ବିରାଟପର୍ବର (ଛାପାରେ) ୮୪ ପୃଷ୍ଠା ଦେଖନ୍ତୁ ।

[୩] କାଶୀରାମ ମହାଭାରତର ୪୩୫ ପୃଷ୍ଠା ଦେଖନ୍ତୁ ।

[୪] ସୌଭଦ୍ର ବିହରନ୍ କାଳେ ସରେଥାଃ ସୁକୃତାନି ମେ ।
ଏତାବାନିହ ସଂବାସୋ ବିହିତସ୍ତେ ମୟା ସହ ।
ଷଟ୍‌ମାସାନ୍ ସପ୍ତମେ ମାସି ତ୍ୱଂ ବୀର ନିଧନଂ ଗତଃ । ବି.ପ. ୨୦ ଅ, ୨୮ ଶ୍ଳୋକ ।

ଶ୍ରୀକୃଷ୍ଣ ପ୍ରଭୃତି ନିରୁପଦ୍ରବମତିସମ୍ପଦ ଦ୍ରୁପଦାଦିଙ୍କ ସହିତ ''ମନ୍ତ୍ରମୂଳଂ ହି ବିଜୟଂ'' ଏହି ନୀତିର ସପକ୍ଷତାରେ ରାଜ୍ୟାର୍ଥ ବିଚାର ଓ ଯୁଦ୍ଧାର୍ଥ ସହାୟୀଭୂତ ପାର୍ଥିବମାନଙ୍କର ନିମନ୍ତ୍ରଣ ସ୍ଥିର କରିଅଛନ୍ତି । ତେତେବେଳେ ଶ୍ରୀକୃଷ୍ଣ ଦ୍ରୁପଦଙ୍କୁ କହିଲେ କି, ବର୍ତ୍ତମାନ ଆମ୍ଭେମାନେ ସ୍ୱସ୍ଥାନକୁ ପ୍ରସ୍ଥାନ କରୁଅଛୁଁ, ଆପଣ ସର୍ବାପେକ୍ଷା ବୟୋବୃଦ୍ଧ ଓ ନୀତିବୃଦ୍ଧ ଏବଂ ଦ୍ରୋଣ ଓ କୃପଙ୍କର ସଖା ଅଟନ୍ତି; ଅତଏବ ଆପଣ କେବଳ ତୁଲ୍ୟଶୀଳବୟୋବୃତ୍ତପ୍ରତିପନ୍ନପ୍ରୟୋଜନ ବିରାଟଙ୍କ ସହ ଏ କାର୍ଯ୍ୟ ସବୁ ନିଷ୍ପନ୍ନ କରିବେ । ଯେପରି ''ନିଶ୍ଚେଷ୍ଟାଃ କ୍ଷତ୍ରିୟା ମନ୍ଦାଃ'' ଏହି ଅପବାଦରେ ଦୂୟମାନମାନସ ନ ହେବୁଁ, ତାହା ହିଁ କରିବେ । ଏହା କହି ଶ୍ରୀକୃଷ୍ଣ ଦ୍ୱାରକାପ୍ରତି ନିବୃତ୍ତ ହେବାରୁ ବିରାଟାଦି ସାଂଗ୍ରାମିକ ବିଷୟର ଆୟୋଜନ କଲେ । ତଥାପି ପ୍ରଥମତଃ ଦ୍ରୁପଦରାଜ ନିଜ ପୁରୋହିତ ପ୍ରଭୁମନୋଽନୁଗ ଦେଶକାଳାର୍ଥ-ସଂବାଦୀ ବାମଦେବଙ୍କୁ ଉଭୟ କୁଳର ଶାନ୍ତିରକ୍ଷାର୍ଥ ଦୁର୍ଯ୍ୟୋଧନଙ୍କଠାକୁ ପ୍ରେରଣ କରିଥିଲେ ।(୧) ତତ୍ପରସ୍ତାତ୍ ରାଜାମାନଙ୍କଠାକୁ ନିମନ୍ତ୍ରଣାର୍ଥ ଦୂତ ପ୍ରେରଣ କରାଗଲା ।

କିନ୍ତୁ ଶ୍ରୀ ସାରଳାଦାସ ମହାଶୟ ରାଜାମାନଙ୍କର ଏହି ନିମନ୍ତ୍ରଣପ୍ରକ୍ରିୟାପର୍ବର ବହୁ କଥା ପରେ ଅର୍ଥାତ୍ ଯୁଦ୍ଧଭୂମି ପ୍ରତି ସୈନ୍ୟନିର୍ଯ୍ୟାଣ ଓ ଶିବିର ସନ୍ନିବେଶ ବିବରଣ ନିର୍ବାହପରେ ଲେଖିଅଛନ୍ତି । ଅପିଚ କହନ୍ତି କି, ପାଣ୍ଡବମାନେ ଅଭିମନ୍ୟୁଙ୍କ ବିବାହ ପରେ ଇନ୍ଦ୍ରପୁରସଂକାଶ ଇନ୍ଦ୍ରପ୍ରସ୍ଥରେ ଉପସ୍ଥିତ ହୋଇ ରାଜ୍ୟାର୍ଥ ଜୟୋଦୟୋଜ୍ଜ୍ୱଳସୁକୃତ ଯୁଧିଷ୍ଠିରଙ୍କ ଆଦେଶରେ ସ୍ୱୀୟ ପୁରୋହିତ ଉପାୟଚତୁଷ୍ଟୟାଭିଜ୍ଞ ଧୌମ୍ୟଙ୍କୁ ଧାର୍ତ୍ତରାଷ୍ଟ୍ର ପ୍ରତି ପ୍ରେରଣ କରିଥିଲେ (୨) ଏବଂ ଧୃତରାଷ୍ଟ୍ରପ୍ରେରିତ ଅଜ୍ଞାନଭିଦୁର ବିଦୁର ଯୁଧିଷ୍ଠିରଙ୍କୁ କେତେକ ଦିନପାଇଁ ସାଂଗ୍ରାମିକୋଦ୍ୟୋଗରୁ ନିବୃତ୍ତ ହେବା ସକାଶେ ଜଣାଇଥିଲେ । ଏ

---

(୧) ଦ୍ୱାରକାଂ ତୁ ଗତେ କୃଷ୍ଣେ ଯୁଧିଷ୍ଠିରପୁରୋଗମାଃ,
ଚକ୍ରୁଃ ସାଙ୍ଗ୍ରାମିକଂ ସର୍ବଂ ବିରାଟଶ୍ଚ ମହୀପତିଃ । ଉ.ପ. ୪ ଅ:

(୨) ଧାର୍ତ୍ତରାଷ୍ଟ୍ରି ଅଗ୍ରତେ କହିବି ଗୁରୁ ଯାଇ ।
ଇନ୍ଦ୍ରପ୍ରସ୍ଥ ରାଜ୍ୟ ମୋର ଛାଡ଼ୁ କୁରୁସାଇଁ ।। ଇତି ।।

କାଶୀରାମଦାସଙ୍କ ମହାଭାରତରେ ସୁଦ୍ଧା ପ୍ରଥମତଃ ବିରାଟ ଦେଶରୁ ଧୌମ୍ୟଙ୍କୁ ପଠାଇଥିବା କଥା ଉକ୍ତ ଅଛି ।

ଅଭିମନ୍ୟୁ ବିବାହ ଉତ୍ସବ ଦିନାନ୍ତରେ ।
ରଜନୀ ବଞ୍ଚିୟା ସୁଖେ ମହାସମାଦରେ ।।
ପ୍ରାତଃକାଲେ ବସିଲେନ ବିରାଟ ସଭାୟ ।
ଶତସୂର୍ଯ୍ୟ ଶତ ଚନ୍ଦ୍ର ଯେନ ଶୋଭା ପାୟ ।। (ବହୁ ବିଚାର ପରେ)

X X X

ଏଇ କଥା କହିଲ ସକଲ ରାଜାଗଣ ।
ତବେ ଧୌମ୍ୟ ବଲିଲେନ ଧର୍ମେର ନନ୍ଦନ ।।

ସମୟକୁ ଯୁଧିଷ୍ଠିରଙ୍କର ବୟଃପ୍ରମାଣ ପଞ୍ଚତ୍ରିଂଶ ବର୍ଷ ହୋଇ ଥିବାର ଏ ମହାଶୟ ସିଦ୍ଧାନ୍ତ କରିଅଛନ୍ତି, ମାତ୍ର ତାହା ସୁସଙ୍ଗତ ବୋଧହୁଏ ନାହିଁ । ଏହା ତାହାଙ୍କର ଆନୁମାନିକ ବିଚାରସିଦ୍ଧ କିମ୍ବା ଅନୁଲେଖକଙ୍କର ଅଳୀକ ବିଦ୍ୱତ୍ତାପ୍ରଚୋଦିତ ବୈଦଗ୍ଧ୍ୟର ନିର୍ଣ୍ଣୟ, ତାହା କିଛି ସ୍ଥିର କରାଯାଇ ନ ପାରେ । ତଥାଚ ଏହା ସୁଦ୍ଧା ତାଳପତ୍ର ପୁସ୍ତକ ଅପେକ୍ଷା ଛାପାରେ କିଛି ଭିନ୍ନ ପ୍ରକାର ହୋଇଅଛି ।(୧) ସେ ଯାହାହେଉ ମୂଳ ଗ୍ରନ୍ଥରେ ଏତାଦୃଶ ନିର୍ଦ୍ଧାରଣ ଦେଖାଯାଇ ନାହିଁ । କିନ୍ତୁ ଏଥିକି ଏତିକି ପ୍ରମାଣ ମିଳୁଅଛି ଯେ ଅର୍ଜ୍ଜୁନ ଯେତେବେଳେ ତ୍ରୟସ୍ତ୍ରିଂଶବର୍ଷବୟସ୍କ, ସେ ସମୟରେ ଖାଣ୍ଡବାଖଣ୍ଡବୈଭବ ଦଗ୍ଧ କରିଥିଲେ ।(୨) ତାହାହେଲେ ଦେଖନ୍ତୁ, ଖାଣ୍ଡବଦାହର କେତେକ ବର୍ଷ ପରେ

---

ହସ୍ତିନାନଗରେ ତୁମି ଯାଅ ଶୀଘ୍ର ଗତି ।
ପ୍ରୀତିବାକ୍ୟେ ବୁଝାଇୟା କୁରୁଗଣ ପ୍ରତି ।। ୪୪୨-୪୪୪ ପୃଷ୍ଠା ।।
କିନ୍ତୁ ସାରଳାଦାସ କବି ଯାହା ଇନ୍ଦ୍ରପ୍ରସ୍ଥରୁ ଦୂତ ପ୍ରେରଣ କହନ୍ତି, ତାହା ଅସଙ୍ଗତ ।

(୧) ଯୁଧିଷ୍ଠିର ବୋଇଲେ ମୋତେ ହୋଇଥିଲା ଏକାଦଶ ବର୍ଷ ।
ପାଣ୍ଡୁ ମହାରାଜା ହୋଇଲେ ପ୍ରାଣେ ନାଶ ।
ଅଣିଶ ବରଷରେ ମୋତେ ରୁହାଇଲେ ଜତୁଘରେ ।
ତହୁଁ ଉତୁରିଲି ପଞ୍ଚବିଂଶ ସମୟରେ ।।
ପଞ୍ଚବିଂଶ ବରଷରେ ହୋଇଲୁ ବନବାସୀ ।
ପାଞ୍ଚାଳୀକୁ ଆଣିଲୁ ମହାଲାଖ ନାଶି ।।
ତହିଁ ଉତ୍ତାରେ ଯେ ଅଇଲୁଁ ରାଜ୍ୟକୁ ।
ପୁଣ ପଶି ତ ନ ଦେଲେ ଆମ୍ଭକୁ ହସ୍ତିନାକୁ ।।
ସମୟେକ ରହିଲୁ ବାରୁଣା ନଗ୍ରରେ ।
କପଟପଶା ଖେଳାଇ ଘେନିଲା ରାଜ୍ୟଭାରେ ।।
ପୁଣ ଦ୍ୱାଦଶ ବରଷ ବୁଲିଲୁ ଘୋରବନ ।
ବରଷେ ତେର ଦିନ ଅଜ୍ଞାତବାସେଣ ।।
ଏବେ ସ୍ଥାନ ଖଣ୍ଡିଏ ନ ଦେଲା କୁରୁବଂଶି ।
ସଂସାର ଜନ ମୋତେ ନ ବୋଲିବେ ବାଛି ।।
ପୁରୋହିତେ ଆଉ କେତେ ଦୁଃଖ ସହିବୁ ସ୍ୱଭାବେ ।
ପଞ୍ଚତିରିଶ ବରଷ ହୋଇଲା ମୋତେ ଏବେ ।।

ଛପା ପୁସ୍ତକରେ ଉ.ପ. ୭ ପୃଷ୍ଠା ଦେଖନ୍ତୁ । କ୍ରମ ଭିନ୍ନ ହୋଇଅଛି ।

(୨) ଏକାନ୍ତବିଜୟସ୍ତ୍ୱେବ ଶ୍ରୂୟତେ ଫାଲ୍‌ଗୁନସ୍ୟ ଚ ।
ତ୍ରୟସ୍ତ୍ରିଂଶଦ୍ ସମାଃ ସୂତ ଖାଣ୍ଡବେଽଗ୍ନିମତର୍ପୟଦ୍ ।
ଜିଗାୟ ଚ ସୁରାନ୍ ସର୍ବାନ୍ ନାସ୍ୟବିଦ୍ମଃ ପରାଜୟଂ ।
ଯସ୍ୟ ଯନ୍ତା ହୃଷୀକେଶଃ ଶୀଳବୃତ୍ତସମୋଯୁଧି ।
ଉ.ପ. ୫୦ ଅଧ୍ୟାୟ ୧୦, ୧୧ ଶ୍ଳୋକ ।

ପାଣ୍ଡବମାନଙ୍କର ବନବାସ ଘଟିଥିଲା ? ତହିଁରେ ତ ସେମାନେ ତ୍ରୟୋଦଶ ବର୍ଷ ଅତିବାହିତ କରିଥିଲେ । ସେସବୁ ସମୟର ପରିମାଣ ଏକତ୍ର ସଙ୍କଳନ କରିନେଲେ, ରାଜ୍ୟାର୍ଥ ଉଦ୍‌ଯୋଗ ସମୟକୁ ଅର୍ଜୁନଙ୍କ ବୟଃପ୍ରମାଣ ଷଟ୍‌ଚତ୍ୱାରିଂଶଦ୍ ଅପେକ୍ଷା ଅତରିକ୍ତ ହେଉଅଛି । ତେତେବେଳେ ଯୁଧିଷ୍ଠିରଙ୍କର ବୟଃପରିମିତି ଅନୁମିତି ସାଧନରେ ପଞ୍ଚଚତ୍ୱାରିଂଶଦ୍ ବର୍ଷର ସନ୍ନିହିତ ବୋଧହୁଏ । ଅତଏବ ପୂର୍ବଶଂସିତ ଉତ୍କଳ ଭାରତର ସିଦ୍ଧାନ୍ତ ଅଧ୍ୱାନ୍ତ ବୋଲି କହାଯାଇ ନ ପାରେ ।

ଭବିଷ୍ୟମାଣ ମହାହବରେ ସାହାଯ୍ୟ କରଣାର୍ଥ ସ୍ୱାନୁକୂଳ ରାଜାମାନଙ୍କର ନିମନ୍ତ୍ରଣପ୍ରକ୍ରିୟାରେ କେବଳ ଅର୍ଥାତ୍ ସଞ୍ଜୟଯାନାଭିଧ ଉପପର୍ବ ପାଠରେ ଶ୍ରୀକୃଷ୍ଣଙ୍କ ନିମନ୍ତ୍ରଣ ସକାଶେ ଅର୍ଜୁନ ଓ ଦୁର୍ଯ୍ୟୋଧନଙ୍କର ଦ୍ୱାରକାପ୍ରୟାଣ ଉକ୍ତ ଅଛି । ମାତ୍ର ଏ ମହାଶୟ ଏହି ସନ୍ଦର୍ଭକୁ ଶ୍ରୀକୃଷ୍ଣଙ୍କ ଦୌତ୍ୟକର୍ମ ସମାପନ ପରେ ଘଟିଥିବାର କହି ଅଛନ୍ତି । ପରନ୍ତୁ ତତ୍ର ମୂଳାନୁକ୍ତ କେତେକ ଆନୁଷଙ୍ଗିକ ବୃତ୍ତ ମଧ ବିବୃତ କରିଅଛନ୍ତି । ଇତଃପୂର୍ବେ ପାଣ୍ଡବସୌହିତ୍ୟସାଧକ ଦୌତ୍ୟକର୍ମର ସାଧନାର୍ଥ ପ୍ରସ୍ଥିତ ଶ୍ରୀକୃଷ୍ଣ ଦୁର୍ମେଧ ଦୁର୍ଯ୍ୟୋଧନଙ୍କ ଅତ୍ୟାଚାରରେ ପରିକୁପିତ ହୋଇ ତାହାଙ୍କୁ ଅଲକ୍ଷ୍ମୀକ କରିଥିଲେ ବୋଲି ପୁନଶ୍ଚ ଦୁର୍ଯ୍ୟୋଧନ ସ୍ୱୀୟ ବହୁ ଅନୁନୟ ବିନୟରେ ଅପିଚ ରାମଙ୍କ ଆନୁକୂଲ୍ୟରେ ସଂପ୍ରତି ସଂପ୍ରୀତ କୃଷ୍ଣଙ୍କଠାରୁ ରାଜଲକ୍ଷ୍ମୀ ପୁନଃପ୍ରାପ୍ତ ହେବା, ରାମଙ୍କ ଆଦେଶରେ ସାତ୍ୟକି ତଦନୁଜଙ୍କୁ ସ୍ୱକୀୟ ଭବନକୁ ଆଣିବାକୁ ଯାଇ ତଦୀୟ ବିହାରଭବନରେ ଏକତ୍ରସୁପ୍ତ ସତ୍ୟଭାମାଙ୍କଦ୍ୱାରା ସମ୍ବାହିତପାଦ କୃଷ୍ଣ ଏବଂ ଅର୍ଜୁନଙ୍କୁ ଦେଖି ତଦୁଭୟଙ୍କର ଏକମୂର୍ତ୍ତିତ୍ୱ ପ୍ରକ୍ଷାପନ କରିବା, ବହୁ ବିଚାର ପରେ ଅଗ୍ରଜାଦେଶମତେ ଶ୍ରୀକୃଷ୍ଣ ଅର୍ଜୁନଙ୍କର କେବଳ ସାରଥ୍ୟସ୍ୱୀକାର ସ୍ଥଳରେ ଯଦି କୃଷ୍ଣ ଅସ୍ତ୍ର ଧୃତ ହୁଅନ୍ତି, ତେବେ ମୁଁ ଆସି ସମସ୍ତଙ୍କୁ ବିନିପାତ କରିବି ବୋଲି ରାମ ଧାର୍ତ୍ତରାଷ୍ଟ୍ରଙ୍କୁ ଆଶ୍ୱାସିତ କରିବା ପ୍ରଭୃତି ଘଟନା ମୂଳରେ ଅନୁକ୍ତ ଥିଲେ ସୁଦ୍ଧା ଏଗୁଡ଼ିକର ଆମୂଳମସ୍ତକ ସମସ୍ତ କଥା ଅଳୀକ ନୁହେଁ ।(୧)

---

(୧) ସ୍ୱାମୀ ଅର୍ଜୁନ ରଥେ ମୁଁ ହେବି ସାରଥି ।
ଉଭୟ କୁଳ ମଧ୍ୟସ୍ଥ ହେବି ହଳପତି ।।
ସଂଗ୍ରାମେ ଶସ୍ତ୍ର ମୁଁ ନ ଧରିବି ଦେବ ହଳି ।
ସତ୍ୟବାକ୍ୟ କହୁଛି କହିଲେ ବନମାଳୀ ।। ଉ.ପ. ୮୨ ପୃଷ୍ଠା ।
ବଳରାମ ବୋଇଲେ ମୋ ନିୟମ ଲଘିଂଲେ ।
ମୋତେ ସୁମରିବୁ କୃଷ୍ଣ ଅସ୍ତ୍ରକୁ ଧଇଲେ ।
ମୁହିଁ ଯାଇ ବିଜେ କରି ଭାରତ ଯୁଦ୍ଧରେ ।
ମାରିବଇଁ ପାଣ୍ଡବନ୍ତ କୃଷ୍ଣ ସହିତରେ ।। ଉ.ପ. ୮୪ ପୃଷ୍ଠା ।

ଅତଃପର ମୂଳଗ୍ରନ୍ଥରେ ଉକ୍ତ ଅଛି କି ସ୍ୱଦେଶବେଶାଭରଣପ୍ରିୟ ମହାରାଜ ଶଲ୍ୟ ପାଣ୍ଡବାନୁକୂଲ୍ୟରେ ସାହାଯ୍ୟକରଣାର୍ଥ ଆସୁଥିବାର ଜାଣିପାରି କୂଟନୀତି ଦୁର୍ଯ୍ୟୋଧନ ଉପାୟକୌଶଳରେ ତାହାଙ୍କୁ ଆପଣାର କଲେ । ଶଲ୍ୟ ଧୃତରାଷ୍ଟ୍ରସମ୍ଭବଦମ୍ଭସମ୍ଭୂତ ପରିଚର୍ଯ୍ୟା ସ୍ୱୀକାର କରି ସୁଦ୍ଧା ହୃତ୍ପୋଷିତ ଅକ୍ଷୁଣ୍ଣ ବାତ୍ସଲ୍ୟବଶତଃ ଉପପ୍ଲବ୍ୟବାସ୍ତବ୍ୟ ଯୁଧିଷ୍ଠିରଙ୍କଠାକୁ ଯାଇ ତଦୀୟ ପ୍ରାର୍ଥନାମତେ(୧) ଯୁଦ୍ଧସ୍ଥ ଅର୍ଜୁନଙ୍କର ଅଭୟ ପ୍ରଦାନରେ ସମ୍ମତ ହୋଇ ପୂର୍ବାନୁଭୂତ ଜଟାସୁର-କୀଚକ ପ୍ରଭୃତିଜନ୍ୟ ଦୁଃଖବିସ୍ମରଣାର୍ଥ ବହୁ ସାନ୍ତ୍ୱନା ଦେଇ ସମୟରେ ନିଶାଟନିଶାରଣବିଶାରଦ ଇନ୍ଦ୍ରଙ୍କର ମଧ ଏତାଦୃଶ ଘୋର କଷ୍ଟ ସମ୍ଭବିଥିଲା ବୋଲି ଇନ୍ଦ୍ର ଓ ବୃତ୍ରାସୁରଙ୍କର ଆହବିକ ଘଟନା ବିବୃତ କରିଥିଲେ ।(୨) ମାତ୍ର ସାରଳାଦାସ ମହୋଦୟ ଏସବୁ ଏବଂ ସଞ୍ଜୟଯାନ ପର୍ବର ଅନ୍ତିମଭାଗରେ ବର୍ଣ୍ଣିତ ଦ୍ରୁପଦରାଜପ୍ରେରିତ ସନ୍ଦେଶହରଙ୍କ ମୁଖରୁ ପାଣ୍ଡବୀୟସନ୍ଦେଶ ଶ୍ରବଣରେ ଧୃତାନୁତାପ ଧୃତରାଷ୍ଟ୍ର ପାଣ୍ଡବମାନଙ୍କଠାକୁ ଶାନ୍ତିରକ୍ଷାର୍ଥ(୩) ଗାବଲ୍‌ଗଣି ସଞ୍ଜୟଙ୍କୁ ପଠାଇଥିବା ଏବଂ ଧୃତରାଷ୍ଟ୍ର ସଞ୍ଜୟଙ୍କର ସମ୍ବାଦ ପ୍ରଭୃତି କଥାକୁ ଏ ସ୍ଥଳରେ ତ୍ୟାଗ କରି ଅଛନ୍ତି ।

ମୂଳଗ୍ରନ୍ଥରେ ସଞ୍ଜୟଯାନପର୍ବ ଓ ଭଗବଦ୍‌ଯାନପର୍ବର ସନ୍ଧି ବା ମଧ୍ୟରେ ପ୍ରଜାଗରପର୍ବ, ସନତ୍ସୁଜାତ ପର୍ବ ଆଉ ଯାନସନ୍ଧିନାମକ ଗୋଟିଏ ଅନଳ୍ପପ୍ରସର ଉପପର୍ବ ଉକ୍ତ ଅଛି ।

ସେଠାରେ ପ୍ରଜାଗର ଉପପର୍ବରେ ଅଜ୍ଞାନାଦ୍ରିଭିଦୁର ବିଦୁର ଓ ଶ୍ରୁତବୃଦ୍ଧ ସଞ୍ଜୟ ଧୃତରାଷ୍ଟ୍ରଙ୍କୁ ସଂପ୍ରାପ୍ତାଖିଳବିଦ୍ୟ ଧର୍ମରାଜଙ୍କର ସୁଗୁଣଗଣ ପ୍ରଖ୍ୟାପନପୂର୍ବକ ବ୍ୟସନନିବାସନାର୍ଥ ବହୁବିଧ ହିତବାକ୍ୟରେ ଉପଦେଶ ଦେବା, (୪) କେଶନୀ କନ୍ୟା ନିମିତ୍ତ ବିରୋଚନ ଓ ସୁଧନ୍ୱାଙ୍କର ପ୍ରବର୍ତ୍ତିତ ବାଦବିସମ୍ବାଦ ପ୍ରକାଶ କରିବା, (୫) ଅପିଚ ହଂସରୂପୀ ଆତ୍ରେୟ ମହର୍ଷି ଓ ସାଧ୍ୟନାମକ ଦେବତାମାନଙ୍କର ସମ୍ବାଦମୂଳକ ବହୁ ପ୍ରକାର ଧର୍ମୋପଦେଶ ଇତ୍ୟାଦି ନାନା କଥା ପ୍ରକାଶ କରି ଥିବାର ଉକ୍ତ ଅଛି ।(୬)

---

(୧) ତତ୍ର ପାର୍ଥୋଽର୍ଜୁନୋ ରାଜନ୍ ଯଦି ମତ୍ପ୍ରିୟମିଚ୍ଛସି ।
ତେଜୋବଧଶ୍ଚ ତେ କାର୍ଯ୍ୟଃ ସୌତେରସ୍ମଜ୍ଜୟାବହଃ ।
୭ ଅଧ୍ୟାୟ ୪୪ ଶ୍ଳୋକ । ଶଲ୍ୟ ପ୍ରତି ଯୁଧିଷ୍ଠିରଙ୍କ ବାକ୍ୟ ।

(୨) ଅଷ୍ଟମାଧ୍ୟାୟ ପ୍ରାରମ୍ଭରୁ ସପ୍ତଦଶାଧ୍ୟାୟ ଶେଷଯାଏ ଇନ୍ଦ୍ର ବୃତ୍ରାସୁର ଘଟଣା ଲେଖାଅଛି ।

(୩) ବୋଧହୁଏ ସାରଳାଦାସ ମହାଶୟ ସଞ୍ଜୟଯାନ କଥା ସବୁ ଠିକ୍ ମନେ ରଖି ନ ପାରି ଇତଃପୂର୍ବେ ଶଂସିତ ବିଦୁରଯାନ କଥା ବର୍ଣ୍ଣି ଅଛନ୍ତି ।

(୪) ୩୨ ଅଧ୍ୟାୟ ପ୍ରାରମ୍ଭରୁ ୩୩ ଅଧ୍ୟାୟ ଶେଷଯାଏ ଦେଖନ୍ତୁ ।

(୫) ୩୪ ଅଧ୍ୟାୟ ଦେଖନ୍ତୁ ।

(୬) ୩୫ ଅଧ୍ୟାୟ ପ୍ରାରମ୍ଭରୁ ୩୯ ଅଧ୍ୟାୟ ଶେଷଯାଏ ଦେଖନ୍ତୁ ।

ଏହା ପରେ ବିଦୁରଙ୍କ ସ୍ମରଣରେ ସମାଗତ ସନତ୍ସୁଜାତ ମହର୍ଷି ମୃତ୍ୟୁବିରହିତ ବ୍ରହ୍ମଜ୍ଞାନ ବିଷୟକ ଅଧ୍ୟାୟପଞ୍ଚକବ୍ୟାପୀ ସନତ୍ସୁଜାତ ଗୀତା ନାମକ ଗୋଟିଏ ଉପପର୍ବ ଅଭିହିତ କରି ଅଛନ୍ତି ।(୧)

ତା ପରେ ଯାନସନ୍ଧିପର୍ବର ପ୍ରାରମ୍ଭରୁ ସଞ୍ଜୟ କୁରୁସଭାରେ ଯୋତ୍ସ୍ୟମାନ ନମୁଚିସୂଦନସମାନମାନ ଅର୍ଜୁନାଦିଙ୍କର ଅଭିମତ କଥା ଜଣାଇବା, ଭୀଷ୍ମ ଓ ଦ୍ରୋଣ କୃଷ୍ଣାର୍ଜୁନଙ୍କର ଏକାତ୍ମତା(୨) ଓ ପାଣ୍ଡବମାନଙ୍କର ଅଲୌକିକ ପରାକ୍ରମତାର ବର୍ଣ୍ଣନାରେ କର୍ଣ୍ଣ-ଶକୁନି-ସନାଥ ଅବିବେକତା-ପ୍ରତିଦତ୍ତମତି ଦୁର୍ଯ୍ୟୋଧନଙ୍କୁ ଆକ୍ଷେପ କରିବା, ତଚ୍ଛ୍ରବଣରେ ଧୃତରାଷ୍ଟ୍ର ବହୁଚିନ୍ତିତ ହେବା, ଧୃତରାଷ୍ଟ୍ରଙ୍କ ଶୋଚନାରେ ଉତ୍ତେଜିତ ଆୟୁର ଅଗ୍ରଭୂମିର ଆରୁରୁକ୍ଷୁ ରୁକ୍ଷାକ୍ଷର-ଭାଷଣଦକ୍ଷ ଦୁର୍ଯ୍ୟୋଧନ ପାଣ୍ଡବଙ୍କୁ ଅବଶ୍ୟ ନିପାତ କରିବୁଁ ବୋଲି ବହୁ କଥା କହିବା, ଅବଗତଦେଶକାଳାବସ୍ଥିତିତତ୍ତ୍ୱ ଧୃତରାଷ୍ଟ୍ର କୁଳାକ୍ରୋଶକରଚାରିତ୍ର ଦୁର୍ଯ୍ୟୋଧନଙ୍କୁ ନାନା ପ୍ରକାର କଥାରେ ବୁଝାଇବା, ତଥାପି ଅବାଧ ହେବାରୁ ପରିଶେଷରେ ''ଭୀତୋ ଭୀମସ୍ୟ ସଂସ୍ପର୍ଶାଦ୍ ସ୍ମର୍ତ୍ତାସି ବଚନସ୍ୟ ମେ'' (ପଛେ ଭୀମର ସମ୍ମୁଖରେ ପଡ଼ିଲେ ମୋ କଥା ସ୍ମରଣ କରିବୁ) ଏହା କହି ବିରତ ହେବା, ଗାବଲ୍ଗଣିଙ୍କ ମୁଖରୁ ଯୁଦ୍ଧସନ୍ନଦ୍ଧ କୃଷ୍ଣାର୍ଜୁନଙ୍କର ସ୍ଥିରସିଦ୍ଧାନ୍ତ ଶ୍ରବଣକରି କର୍ଣ୍ଣ ଆତ୍ମୋନ୍ନତିବିକଥନ କଲାରୁ ଅଖର୍ବ ଗର୍ବସର୍ବଂକଷପୌରୁଷ ଭୀଷ୍ମ ତାହାଙ୍କୁ ଆକ୍ଷେପ କରିବା, ତଦାକ୍ଷେପନିକ୍ଷିପ୍ତହୃଦୟ କର୍ଣ୍ଣ ଭୀଷ୍ମଙ୍କ ଅସ୍ତିତ୍ୱଯାଏ ଶସ୍ତ୍ରତ୍ୟାଗ କରିବା, ତେତେବେଳେ ବିଦୁର ଶମଦମାଦି ସମ୍ବନ୍ଧରେ କେତେକ କହିଲା ପରେ ବୈତସଂକଳକ୍ଷୀଭୂତ ଶକୁନଦ୍ୱୟର ବିଗ୍ରହ କଥାକୁ ''ଏବଂ ଯେଜ୍ଞାତୟେଃର୍ଥେଷୁ ମିଥୋ ଗଚ୍ଛନ୍ତି ବିଗ୍ରହଂ । ତେଃମିତ୍ରବଶମାୟାନ୍ତି ଶକୁନାବିବ ବିଗ୍ରହାଦ୍ ।''(୩) ଇତ୍ୟାକାରେ ରୂପେ ପ୍ରକାଶ କରିବା ଏବଂ ଧୃତରାଷ୍ଟ୍ରଙ୍କ ସମକ୍ଷରେ ବ୍ୟାସାଦିଷ୍ଟ ସଞ୍ଜୟ ଶ୍ରୀକୃଷ୍ଣଙ୍କ ଭକ୍ତିପ୍ରାପ୍ତି ଓ ନାମାଳିର ବ୍ୟାଖ୍ୟାନ ପ୍ରଖ୍ୟାନ କରିଥିବା ବିଷୟମାନ ଯଥାକ୍ରମେ ଉକ୍ତ ଅଛି ।

---

(୧) ଚତ୍ୱାରିଂଶ ଅଧ୍ୟାୟ ପ୍ରାରମ୍ଭରୁ ପଞ୍ଚଚତ୍ୱାରିଂଶ ଅଧ୍ୟାୟ ଶେଷଯାଏ ଦେଖନ୍ତୁ ।

(୨) ଏଷ ନାରାୟଣଃ କୃଷ୍ଣଃ ଫାଲ୍ଗୁନଶ୍ଚ ନରଃ ସ୍ମୃତଃ ।
ନାରାୟଣୋ ନରଶ୍ଚୈବ ସତ୍ୱମେକଂ ଦ୍ୱିଧାକୃତଂ ।।
ଉ.ପ. ୪୮ ଅଧ୍ୟାୟ ୨୧ ଶ୍ଳୋକ ।

(୩) ଏହାର ସ୍ଥୂଳାଂଶ ଏହି – କୌଣସି ଏକ ଶାକୁନିକର ଜାଲନିପତିତ ପକ୍ଷିଦ୍ୱୟ ଜାଲ ସହିତ ଆକାଶରେ ଉଡଡୀନ ହେଉଅଛନ୍ତି । ଶାକୁନିକ ସେମାନଙ୍କୁ ଅନୁଧାବନ କରୁଅଛି । ମାର୍ଗ ମଧ୍ୟରେ କୌଣସି ଋଷି ପ୍ରଶ୍ନ କଲେ କି, ପକ୍ଷିଦ୍ୱୟ ଜାଲ ସହ ଆକାଶରେ ଧାବିତ ଥିଲେ ସୁଦ୍ଧା ତୁମେ ଯାହା ପଦବ୍ରଜରେ ତାଙ୍କୁ ଅନୁଧାବନ କରୁଅଛ, ଏ ବଡ଼ ବିଚିତ୍ର ବୋଧହୁଏ । ଶାକୁନିକ କହିଲା, ତଥାପି ଏ ଦୁହେଁ ଯେତେବେଳେ ଅନ୍ୟୋଃନ୍ୟବିବାଦ କରିବେ, ତେତେବେଳେ ଅବଶ୍ୟ ମୋ ହସ୍ତରେ ପଡ଼ିବେ । ପରିଶେଷରେ ତାହା ହିଁ ହେଲା ।

ପ୍ରୋକ୍ତ ଉପପର୍ବତ୍ରୟର କଥାମାନ ସାରଳାଦାସ ମହୋଦୟ ପ୍ରାୟଶଃ ଲେଖି ନାହାନ୍ତି କହିଲେ ଚଳେ । ଧର୍ମନୀତିମୂଳକ ପ୍ରଜାଗରପର୍ବ ଆଉ ଐଶ୍ୱରୀତତ୍ତ୍ୱବିଷୟକ ସନତ୍ସୁଜାତ ପର୍ବର ନାମ ପର୍ଯ୍ୟନ୍ତ ଏ ମହୋଦୟ ଆଦୌ ଗ୍ରହଣ କରି ନାହାନ୍ତି । ଯାନସନ୍ଧି ଉପପର୍ବାନ୍ତର୍ଗତ ଭୀଷ୍ମଦ୍ରୋଣାଦି-ସମ୍ବାଦାତ୍ମକ କେତେକ କଥାଂଶକୁ ମାତ୍ର ଯଥାସ୍ଥାନରେ ନ ହେଲେ ସୁଦ୍ଧା ସ୍ଥାନାନ୍ତରରେ ପ୍ରାସଙ୍ଗିକକ୍ରମେ କହିଦେଇ ଅଛନ୍ତି । ଏହି କବି ମହୋଦୟ ପ୍ରଜାଗରପର୍ବ ଓ ସନତ୍ସୁଜାତ ପର୍ବର ବିଷୟ ସ୍ୱୀୟ ଗ୍ରନ୍ଥରେ ଅନୁକ୍ତ ରଖିଥିଲା ପରି କାଶୀରାମଦାସକୃତ ବଙ୍ଗଭାରତରେ ସୁଦ୍ଧା ଅନୁକ୍ତ ଅଛି । ପ୍ରୋକ୍ତ ବଙ୍ଗ ଭାରତରେ ଯାନସନ୍ଧି ପର୍ବର କଥାମାନ ସୁଦ୍ଧା ଯଥାକ୍ରମରେ ବର୍ଣ୍ଣିତ ହୋଇ ନାହିଁ ।[୧] ମୂଳଗ୍ରନ୍ଥର କେବଳ ଅନୁକରଣଦ୍ୱାରା ଭାଷାନ୍ତରୀକୃତ ପୁରାଣମାନଙ୍କରେ ବହୁଶଃ ଏହି କ୍ରମ ଘଟିଥାଏ । ସେମାନେ ଚରିତ୍ରର ସ୍ଥୂଳାଂଶର ଅବଲମ୍ବନରେ କେବଳ ଲେଖିଯାଇଥିବାରୁ ବୋଧହୁଏ ଏପରି ହୋଇଥାଏ । ଏତାଦୃଶ ଲେଖାରେ ତତ୍ତ୍ୱ ଓ ବ୍ରହ୍ମଜ୍ଞାନ ବିଷୟମାନ ଲେଖିବାର ସୁସାଧ ହୋଇପାରେ ନାହିଁ । ପାଠକେ ! ପ୍ରସ୍ତାବାନୁବଶତଃ ପ୍ରକାଶ କରୁଅଛୁଁ, ତ୍ରୈଲଙ୍ଗରେ ଭାରତର ଅନୁବାଦ ପ୍ରାୟଶଃ ମୂଳଗ୍ରନ୍ଥର ତୁଲ୍ୟବିବୃତି । କେତେକ ସ୍ଥଳମାତ୍ର ସଂକ୍ଷିପ୍ତ କରାଯାଇ ଅଛି । ତଥାପି ତହିଁରେ ମଧ୍ୟ ଏତାଦୃଶ ଧର୍ମତତ୍ତ୍ୱ-ଜଟିଳ ବିଷୟମାନଙ୍କୁ କେଉଁଠି ଆମୂଳ-ସୂଚିତ, କେଉଁଠାରେ ବା ଦୁଇ ଚାରି ପଦ୍ୟରେ ଅତି ସଂକ୍ଷିପ୍ତ, କେଉଁଠାରେ କେବଳ ତ୍ୟକ୍ତ କରିଅଛନ୍ତି । ତ୍ରୈଲଙ୍ଗ-ସାହିତ୍ୟ-ବିଧାତାମାନେ ମଧ୍ୟ ମହାଭାରତର ଆନ୍ଧ୍ରୀକରଣରେ ଭଗବଦ୍‌ଗୀତା ଓ ସନତ୍ସୁଜାତୀୟ ଗୀତାକୁ ପ୍ରାୟ ତ୍ୟାଗ କରିଅଛନ୍ତି । ଶ୍ରୀ ଭଗବଦ୍‌ଗୀତାକୁ ସାରଳା ଦାସ କବି ଦୁଇ ଚାରି ଧାଡ଼ିରେ ଅତି ସଂକ୍ଷିପ୍ତ ବା ସୂଚିତ କରିଥିଲା ପରି ଉଭୟଭାଷା-ପାଣ୍ଡିତ୍ୟ-ଧୂରୀଣ ତିକ୍‌କନ ସୋମଯାଜୀ ନାମକ କବି ମଧ୍ୟ ଅଷ୍ଟାଦଶାଧ୍ୟାୟ ସୁବିସ୍ତୃତ ଭଗବଦ୍‌ଗୀତାକୁ ସ୍ୱକୃତ ତ୍ରୈଲଙ୍ଗ ଭାରତରେ ପାଞ୍ଚଛଅଗୋଟି ଗଦ୍ୟ ପଦ୍ୟରେ ମାତ୍ର ଅତି ସଂକ୍ଷିପ୍ତ କରି ଅଛନ୍ତି । ପରନ୍ତୁ ସନତ୍ସୁଜାତ ଗୀତାକୁ ଏକାବେଳକେ ତ୍ୟାଗ କରିଦେଇ ଅଛନ୍ତି ।

ଆମ୍ଭମାନଙ୍କର ମହାଭାରତକର୍ତ୍ତା ମହାଶୟ ଭଗବଦ୍‌ଯାନାଭିଧ ଉପପର୍ବର କଥା ପ୍ରାରମ୍ଭ ପୂର୍ବରୁ ଏବଂ ଧୌମ୍ୟଙ୍କର ଦୌତ୍ୟକ୍ରିୟା ନିଷ୍ପତ୍ତି ପ୍ରସଙ୍ଗ ପରେ ଶ୍ରୀକୃଷ୍ଣ ଓ ସୁଦେଷ୍ଣାଙ୍କର ସମ୍ବାଦମୂଳକ ଅନେକଗୁଡ଼ିଏ ଅମୌଳିକ କଥା ଲେଖିଅଛନ୍ତି । ପ୍ରମାଣାଭାବରୁ ସେ ସବୁ ଅଳୀକ କିମ୍ବା ନିର୍ବ୍ୟଳୀକ, ତାହା ଠିକ୍ କିଛି କହାଯାଇ ନ ପାରେ । ପରନ୍ତୁ ଆନୁମାନିକ ବିଚାରତଃ ବୋଧହୁଏ ସୁଦେଷ୍ଣାଙ୍କ ଦିବ୍ୟମନୀଷାଦ୍ୟୋତକ ଏହି ଚରିତ-ସଂଘିତିମାଳା ଖଣ୍ଡିକ କବିଙ୍କର ବୈଚିତ୍ର୍ୟମୟୀ ମହତୀ କଳ୍ପନାଶକ୍ତିର ମୁଖ୍ୟ ଆଲେଖ୍ୟପଟ୍ଟିକା

[୧] କାଶୀରାମଦାସଙ୍କ ବଙ୍ଗ ଭାରତ ଓ ସାରଳାଦାସଙ୍କ ଭାରତରେ ଉଦ୍‌ଯୋଗ ପର୍ବରେ ଏ ସମ୍ବନ୍ଧରେ ଅନେକ ସ୍ଥଳରେ ଚରିତ ସଂସ୍ଥାନର ସାଦୃଶ୍ୟ ଦେଖାଯାଏ ।

ହୋଇଥାଇପାରେ । ତାହାର ସଂକ୍ଷିପ୍ତ ବିବରଣ ନିମ୍ନରେ ପ୍ରଦତ୍ତ ହେଉଅଛି । ସୁଦେଷ୍ଣା ପୂର୍ବଜନ୍ମରେ ମେନକା ଆଉ ବିଶ୍ୱାମିତ୍ରଙ୍କର ସନ୍ତାନ ଥିଲେ । ସେ ପୁଣି ଗର୍ଭସ୍ଥ ଥିବା ସମୟରେ ବିଶ୍ୱାମିତ୍ର ଉଲ୍ଲୋଳ-କଲ୍ଲୋଳିତଭ୍ରୂବିଳାସିନୀ ଭାବିନୀ ମେନକାଙ୍କ ପ୍ରଶ୍ନରେ ସମସ୍ତ ସମନ୍ତ ଅସ୍ତ୍ରଶସ୍ତ୍ରପ୍ରୟୋଗପରିପାଟୀ କହିଥିବାରୁ ଶକୁନ୍ତଳା ତତ୍‌ସମସ୍ତ ଅବଗତ ଥିଲେ । କାଳକ୍ରମେ ପରଜନ୍ମରେ ଶକୁନ୍ତଳା କେବଳ ଶ୍ୱେତରାଜାଙ୍କ କଳତ୍ରରୂପେ ସମ୍ଭୂତ ହୋଇଥିଲେ । ବର୍ତ୍ତମାନ ଶ୍ୱେତରାଜ ଶତ୍ରୁପ୍ରେତରାଜଶ୍ୱେତ-ତାତ ବିରାଟ ଏବଂ ତାହାଙ୍କ ଭାର୍ଯ୍ୟା ସୁଦେଷ୍ଣାରୂପେ ଅବତୀର୍ଣ୍ଣ ହୋଇ ଅଛନ୍ତି । ବିଶ୍ୱାମିତ୍ରସଂପ୍ରାପ୍ତ ଧନୁର୍ବେଦବିଦ୍ୟା ଅନବଦ୍ୟା ଶକୁନ୍ତଳା ଏହି ଜନ୍ମରେ ନିଜର ପୁତ୍ର ଶ୍ୱେତଙ୍କୁ ଧନୁର୍ବେଦ ରହସ୍ୟମାନ ଶିଖାଇ ଅଛନ୍ତି । ସେ ପୁଣି କଳିଯୁଗରେ ଗୁଣ୍ଡିଚାବତୀ ଆଉ ବିରାଟରାଟ ଇନ୍ଦ୍ରଦ୍ୟୁମ୍ନ ହେବେ ।[୧] ଜାତିସ୍ମରତାଜନ୍ୟ ସର୍ବଜ୍ଞତା ବଳରେ ସୁଦେଷ୍ଣା ଏସବୁ କହିଲା ପରେ ଭାବୀ ଭାରତଯୁଦ୍ଧରେ କିଦୃଶ ଘଟନାମାନ ସମ୍ଭାବନୀୟ ବୋଲି ଶ୍ରୀକୃଷ୍ଣ ପ୍ରଶ୍ନ କଲାରୁ ସେ ପୁଣି ଭବିଷ୍ୟମାଣ ଯାବତୀୟ ସାଂଗ୍ରାମିକ ଘଟନା ଆମୂଳଚୂଡ଼ କହିଗଲେ । ଅଭିମନ୍ୟୁ ଆଉ ଆଭିମନ୍ୟବଙ୍କର ଭାବୀ ବିପଦ୍‌ପାତ ଶ୍ରବଣରେ ଅର୍ଜୁନ ପ୍ରମୁଖ ଦୁଃଖବ୍ୟାକୁଳିତେନ୍ଦ୍ରିୟ ହେବାରୁ ସୁଦେଷ୍ଣା ପାରିକ୍ଷିତ-ବିପଦ୍‌ପାତ-ପ୍ରତୀକାରାର୍ଥ ପୁରା ବିଶ୍ୱମିତ୍ର ବିଶ୍ୱାମିତ୍ରଙ୍କଠାରୁ ଲବ୍ଧ ନିଜର ଅନବଦ୍ୟା-ମୃତସଞ୍ଜୀବନୀ ବିଦ୍ୟାକୁ ଶ୍ରୀକୃଷ୍ଣଙ୍କୁ ପ୍ରଦାନ କଲେ । ଦ୍ରୌପଦେୟମାନଙ୍କର ଭବିଷ୍ୟଦ୍‌କାଳ ନିଧନ ଭାବି ଦ୍ରୁପଦସମ୍ଭବା ନିହତବତ୍ସା ଧେନୁ ତୁଲ୍ୟ ବିଦ୍ରୂୟମାନମନସ୍କା ଶୋକସମ୍ଭ୍ରାନ୍ତଶରୀରଭାବା ହୋଇ ପଡ଼ିବାରୁ ତଦ୍ଦୁଃଖାପନୋଦନାର୍ଥ ସେମାନଙ୍କର ପୌର୍ବଦେହିକ ବୃତ୍ତାନ୍ତ କହିଲେ ଯେ, ପୁରା ହରିଶ୍ଚନ୍ଦ୍ର ପୁତ୍ର ରୋହିତାକ୍ଷଙ୍କର ଅହେତୁକ ଦଣ୍ଡବିଧାନରେ ପଞ୍ଚବିଶ୍ୱେଦେବାମାନେ ବିଶ୍ୱାମିତ୍ରଙ୍କ ପ୍ରତି ଆକ୍ରୋଶ କରି ଥିବାରୁ ସେ ସେମାନଙ୍କୁ ଅଭିଶପ୍ତ କରିଥିଲେ କି ଇତଃପର ମାନବଜନ୍ମରେ ସପ୍ତବର୍ଷବୟସ୍କ ହେଲେ ତୁମ୍ଭମାନଙ୍କର ଶିରଚ୍ଛେଦ[୨] ହେବ । ବର୍ତ୍ତମାନ ପଞ୍ଚବିଶ୍ୱେଦେବାମାନେ ଦ୍ରୌପଦେୟପଞ୍ଚକ ରୂପେ ଅବତୀର୍ଣ୍ଣ ହୋଇ ଅଛନ୍ତି । ଇତ୍ୟାଦି ।

---

[୧] ବିରାଟ କଳିଯୁଗେ ଉପୁଜିବେ ଇନ୍ଦ୍ରଦ୍ୟୁମ୍ନ ହୋଇ ।
ଗୁଣ୍ଡିଚାରାଣୀ ନାମେ ଭାର୍ଯ୍ୟା ହେବି ମୁହିଁ ।।
ଛାପାରେ ୧୮ ପୃଷ୍ଠା ଦେଖନ୍ତୁ ।

[୨] ଅଶ୍ୱତ୍ଥାମା ତୁମ୍ଭଙ୍କୁରେ ଦେଉ ପରମାଦ ।
ସାତ ବରଷରେ ତୁମ୍ଭେ ହୁଅ ଶିରଚ୍ଛେଦ ।। ଉ.ପ.
ଏ ଯାହାହେଉ ଦ୍ରୌପଦେୟମାନଙ୍କର ବୟଃପରିମାଣ ସମ୍ବନ୍ଧରେ ସାରଳାଦାସ ସର୍ବତ୍ର ଭ୍ରାନ୍ତ ଧାରଣାରେ ପଡ଼ି ଅଛନ୍ତି ।

ଏହାପରେ ସୁଦେଷ୍ଣା ଶ୍ରୀକୃଷ୍ଣଙ୍କଦ୍ୱାରା ସମାଦିଷ୍ଟ କିରୀଟିଙ୍କର ସ୍ମରଣ ଓ ପ୍ରାର୍ଥନାରେ ଅମୋଘପ୍ରଜ୍ଞ ମଘବା ଦାନଶୌଣ୍ଡାଖଣ୍ଡଳ କର୍ଣ୍ଣଙ୍କଠାରୁ ବଜ୍ରକବଚାଦି[୧] ଆନୟନ କରି ତତ୍ର ଅର୍ଜୁନଙ୍କୁ ସମର୍ପିଥିବା ସନ୍ଦର୍ଭକୁ ସାଙ୍ଗୋପାଙ୍ଗକ୍ରମେ ମନୋହାରିଣୀ ଭାଷାରେ ବିତତୀକୃତ କରି ଅଛନ୍ତି । ଏହା ଇତଃପୂର୍ବେ ବନବାସାବସାନରେ ସମ୍ପାଦିତ ହୋଇଥିଲା । କବି ପୂର୍ବସଂସ୍ଥାନର ବିସ୍ମରଣବଶରୁ ପରା ପୁନଃ ଆମ୍ରେଡ଼ନ କରି ଅଛନ୍ତି । ଏହି ସମୁଦାୟର ପରିଶେଷରେ କହନ୍ତି କି ତଦୀୟ ଅଲୌକିକ ସର୍ବଜ୍ଞତାରେ ବିସ୍ମିତ ଇନ୍ଦ୍ରଙ୍କ ସମକ୍ଷରେ ସୁଦେଷ୍ଣା ଏ ସମସ୍ତ ନିବେଦନ କଲାପରେ ଶ୍ରୀକୃଷ୍ଣଙ୍କୁ ପ୍ରଣାମ କରି ନଶ୍ୱର ଶରୀର ତ୍ୟାଗ କଲାରୁ ଇନ୍ଦ୍ର ତାହାଙ୍କୁ ସ୍ୱର୍ଗକୁ ଘେନିଗଲେ । [୨]

ଅତଃପର ଭଗବଦ୍‌ଯାନ ପର୍ବ ପାଠରେ ସ୍ଥୂଳତଃ ଦେଖିନେଲେ ଏହାଙ୍କ ଭାରତରେ ତାଦୃଶ ପ୍ରଭେଦ ବା ବୈଷମ୍ୟ ଦେଖାଯାଏ ନାହିଁ । ମାତ୍ର ସ୍ୱୀକୃତଦୌତ୍ୟ ଦୈତ୍ୟାରିଙ୍କର ଇନ୍ଦ୍ରପ୍ରସ୍ଥ ପ୍ରତି ପ୍ରସ୍ଥାନର ସମୟ ମିଥୁନ ମାସର [୩] କୃଷ୍ଣପକ୍ଷ ବୋଲି ଦାସ ମହୋଦୟ ବୋଧହୁଏ ଭ୍ରାନ୍ତାନୁମାନବଶତଃ ନିର୍ଦ୍ଧାରିତ କରିଦେଇଅଛନ୍ତି । ତାହା ସମ୍ଭବତଃ କାର୍ତ୍ତିକର ଅନ୍ତିମ ଓ ମାର୍ଗଶୀର୍ଷର ଆଦିମ ଭାଗରେ ନିଷ୍ପନ୍ନ ହୋଇଥିଲା ।[୪] ଶ୍ରୀକୃଷ୍ଣ ଭୀଷ୍ମବିଦୁରାଦ୍ୟବସ୍ଥାନଗୌରବ କୌରବ ସଭାରେ ନିଷର୍ଣ୍ଣ ହୋଇ ଧୃତରାଷ୍ଟ୍ରଙ୍କୁ ଶର୍ମୋର୍ମିକିର୍ମୀରିତ-ଧର୍ମକର୍ମା ପାଣ୍ଡବମାନଙ୍କର ସନ୍ଦେଶ ଜଣାଇବା ସ୍ଥଳରେ ଶ୍ରୀକୃଷ୍ଣ ଓ ଅର୍ଜୁନଙ୍କର ନରନାରାୟଣତ୍ୱ ସୂଚନାର [୫] ଅବ୍ୟବହିତ ପରେ ପାଣ୍ଡବମାନଙ୍କ

---

[୧] ମସରାଜ୍ୟେ ପାଣ୍ଡବନ୍ତ ଭେଟିଲେ ସହସ୍ରଯୋନି ॥
ଅଭେଦ୍ୟକବଚମଣି ବଜ୍ର ଛଉଡ଼ ଅମୃତକୁଣ୍ଡଳ ।
ପାଣ୍ଡବ ଅଗ୍ରେ ନେଇ ଥୋଇଲେ ଆଖଣ୍ଡଳ ॥

[୨] ଇନ୍ଦ୍ର ବୋଇଲେ ତୁ ଗୋ କାହାର କୁଳବଧୂ ।
ଉଭୟ କୁଳମଣ୍ଡଣୀ ମହିମା ତୋର ସାଧୁ ॥
ଶୁଣି କେଶବ ପାଦେ ପ୍ରଣମିଣ ସତୀ ।
ନିଜ ପ୍ରାଣ ବିସର୍ଜନ କରିଲା ତତ୍‌କ୍ଷଣାନ୍ତି ॥
ସୁଦେଷ୍ଣାର ନିଜ ପ୍ରାଣ ଇନ୍ଦ୍ର ପୁଷ୍ପକେ ବସାଇ ।
ଅମର ବାରସ୍ୱତୀକି ବିଜୟେ ସୁରସାଇଁ ॥

[୩] ଛାପା ପୁସ୍ତକରେ ଉ.ପ. ୩୭ ପୃଷ୍ଠା ଦେଖନ୍ତୁ ।

[୪] ତତୋ ବ୍ୟପେତେ ତମସି ସୂର୍ଯ୍ୟେ ବିମଳ ଉଦ୍‌ଗତେ ।
ମୈତ୍ରେ ମୁହୂର୍ତ୍ତେ ସଂପ୍ରାପ୍ତେ ମୃଦ୍ୱର୍ଚ୍ଚିଷି ଦିବାକରେ ॥
କୌମୁଦେ ମାସି ରେବତ୍ୟାଂ ଶରଦନ୍ତେ ହିମାଗମେ ।
ସ୍ଫୀତଶସ୍ୟସୁଖେ କାଳେ ଇତ୍ୟାଦି । ଉ.ପ. ୮୨ ଅଃ ।

[୫] ନରନାରାୟଣୌ ଯୌ ତୌ ତାବେବାର୍ଜ୍ଜୁନ କେଶବୌ ।
ବିଦ୍ଧାନୀହି ମହାରାଜ ପ୍ରବରୌ ପୁରୁଷୋତ୍ତମୌ ॥ ଉ.ପ. ୯୫ ଅଃ ।

ଦିଗନ୍ତବିଶ୍ରାନ୍ତଯଶୋବୈଭବତ୍ୱ, ଦେବବିକ୍ରମତ୍ୱ ଓ ସର୍ବଥା ଅଜେୟତ୍ୱ ସମ୍ବନ୍ଧରେ କଣ୍ୱ ମହର୍ଷି ବିଷମ-ବିଷୋପମରୋଷଜ୍ୱାଜ୍ୱଲ୍ୟମାନମାନସ ଦୁଃଶାସନାଗ୍ରଜଙ୍କ ସମକ୍ଷରେ ମାତଳୀୟ ଉପାଖ୍ୟାନ ବା ତତ୍‌କନ୍ୟା ଗୁଣକେଶୀଙ୍କ ଉପାଖ୍ୟାନର ସମାଖ୍ୟାନ କରି ଅଛନ୍ତି ।[୧] ତା ପରେ ମହଜ୍ଜନମାନଙ୍କ ନିର୍ବନ୍ଧ ନ ମାନି ଅଭିମାନ ଓ କ୍ରୋଧର ପରବଶ ହେବା ନିତାନ୍ତ ଦୋଷାବହ, ଏତାଦୃଶ ଆଚରଣରୁ ଗାଲବ ପୁରା କାର୍ଯ୍ୟରେ ପରାଭୂତ ହୋଇଥିଲେ, ଯଯାତି ସ୍ୱର୍ଗରାଜ୍ୟରୁ ଭ୍ରଷ୍ଟ ହୋଇଥିଲେ ବୋଲି ଧର୍ମମର୍ମ-ନିର୍ଭେଦନ-ବିଶାରଦ ନାରଦ କ୍ରୋଧନ ଦୁର୍ଯ୍ୟୋଧନଙ୍କୁ ବିଶ୍ୱାମିତ୍ରଶିଷ୍ୟ ଗାଲବଙ୍କର ଗୋଟିଏ ବହୁମେଳକ୍ସ ଚରିତ ଆଉ ସ୍ୱସୁତା ମାଧବୀଙ୍କ ପୁଣ୍ୟବୈଭବରେ ଯଯାତିଙ୍କର ପୁନଃସ୍ୱର୍ଗ ପ୍ରାପ୍ତି-ବିଷୟକ ଇତିହାସ କହିଅଛନ୍ତି ।[୨] ଏତଦ୍‌ଚରିତ-ସଂବିଧାନ ବହୁକଥାନିବନ୍ଧନ ବନ୍ଧୁରତ୍ୱରୁ ବଡ଼ ଜଟିଳ ହୋଇଅଛି । ଏ ସବୁକୁ ସାରଳାଦାସ ମହାଶୟ ଲେଖିପାରି ନାହାନ୍ତି । କେବଳ ସାରଳାଦାସ କାହିଁକି ? ବଙ୍ଗ ଭାରତକର୍ତ୍ତା କାଶୀରାମଦାସ ସୁଦ୍ଧା ଏସବୁ କିଛି ହିଁ ଲେଖିପାରିନାହାନ୍ତି । ବୋଧହୁଏ ସାମ୍ପ୍ରଦାୟିକ ଧାରାବାହିକ ସାଧାରଣ ଚରିତ ସଂଚୟରେ ମାତ୍ର ନିର୍ଭର କରି ଯେଉଁମାନେ ଭାରତ ଲେଖିଅଛନ୍ତି, ସେମାନେ ଏତାଦୃଶ ବିଷୟ ସବୁ ତ୍ୟାଗ କରିଥିବେ । କିନ୍ତୁ ଶ୍ରୀମାନ୍ ସାରଳାଦାସ ମହାଶୟ କୃଷ୍ଣାର୍ଜୁନଙ୍କର ନରନାରାୟଣତ୍ୱ ପ୍ରଖ୍ୟାପନ ଏ ସ୍ଥଳରେ ନ ହେଲେ ସୁଦ୍ଧା ଅନ୍ୟାନ୍ୟ ବହୁ ସ୍ଥଳରେ କରିଅଛନ୍ତି ।

ମୂଳ ଗ୍ରନ୍ଥରେ ସଭାଜନ-ସଭାଜନ-ସୁଭାଜନ ଶ୍ରୀକୃଷ୍ଣ କୌରବ ସଭାରେ ସେହି ପରାପକୃତିକୃତୀ ନିକୃତିପ୍ରିୟ ଦୁର୍ମତି ଦୁର୍ଯ୍ୟୋଧନଙ୍କୁ ସ୍ୱୀୟ ବନ୍ଧନାର୍ଥୋଦ୍ୟତ ଜାଣି ନିଜର ପ୍ରଦ୍ୟୋତମାନ ଦିବ୍ୟମୂର୍ତ୍ତି ପ୍ରଦର୍ଶନରେ ଭୀତ ଓ ନିରସ୍ତ କରିବା ସ୍ଥଳରେ ଭଗବଦ୍ଦିବ୍ୟରୂପଦିଦୃକ୍ଷୁ ଧୃତରାଷ୍ଟ୍ରଙ୍କ ପ୍ରାର୍ଥନାନୁସାରେ କ୍ଷଣକ ପାଇଁ ତାହାଙ୍କୁ ଚକ୍ଷୁଦାନ କରିଥିବାର ଉକ୍ତ ଅଛି ।[୩] ସାରଳାଦାସ ମହାଶୟ ଏହି ଚାରିତିକସଂସ୍ଥାନକୁ ତ୍ୟାଗ କରି ତଦନୁକରଣରେ ଧୃତରାଷ୍ଟ୍ରଙ୍କ ସମକ୍ଷରେ ଶ୍ରୀ ଭଗବନ୍ମହିମା-ପ୍ରଖ୍ୟାପକ ବିଦୁରଙ୍କ ମୁଖରେ ପୁରା ଶ୍ରୀକୃଷ୍ଣ ଦ୍ୱାରକାସ୍ଥ କୌଣସି ଜାତ୍ୟନ୍ଧ ଦରିଦ୍ର ବ୍ରାହ୍ମଣଙ୍କୁ ନେତ୍ର ପ୍ରଦାନ କରିଥିବାର ସନ୍ଦର୍ଭଟିକି ପ୍ରକାଶ କରିଅଛନ୍ତି । [୪] ତତ୍ପରେ ଭୀଷ୍ମଙ୍କ ବଚନାନୁସାରେ ଦୁଇଖଣ୍ଡି ଗ୍ରାମ ଦେବାକୁ ଦୁର୍ଯ୍ୟୋଧନ ସମ୍ମତି ପ୍ରକାଶ କରିବା ସ୍ଥଳରେ ତଦନ୍ତରାୟକାରକ ପରିଣାମ-ବିଷାୟିତ-ଆପାତ-ରମଣୀୟ-ବାକ୍ୟବିଶାରଦ ଶକୁନିଙ୍କ ମୁଖରେ ମୂଳାନୁକ୍ତ ବଳିବାମନ-

[୧] ୯୬ - ୧୦୪ ଅଧ୍ୟାୟ ଯାଏ ଦେଖନ୍ତୁ ।

[୨] ୧୦୫ - ୧୨୨ ଅଧ୍ୟାୟ ଯାଏ ଦେଖନ୍ତୁ ।

[୩] ୧୩୦ ଅଧ୍ୟାୟ ଦେଖନ୍ତୁ ।

[୪] ୪୫ ପୃଷ୍ଠା ଦେଖନ୍ତୁ ।

ଚରିତ ବିବୃତ କରି ଅଛନ୍ତି । [୧] ତାହାର ଆନୁଷଙ୍ଗିକ ରୂପେ ବିଷ୍ଣୁ ଅପେକ୍ଷା ମହାଦେବଙ୍କର ପରମ ଦୟାଳୁତା ଓ ଆଶୁତୋଷତା, ସୁସାଧ ଓ ସମଧିକ ବୋଲି ଧୂଳି-ଖେଳାରତ ବାଳିକାମାନଙ୍କ ସମ୍ବନ୍ଧରେ ଗୋଟିଏ କାଳ୍ପନିକ କଥାର ଅବତାରଣା କରି ଅଛନ୍ତି ।[୨]

ଶ୍ରୀକୃଷ୍ଣଙ୍କ ଆଗମନ କାରଣର ଜିଜ୍ଞାସା-ମୂଳକ ଭାନୁମତୀ ଓ ଦୁର୍ଯ୍ୟୋଧନଙ୍କର ସମ୍ବାଦ ସ୍ଥଳରେ "ବହୁ ଲୋକଙ୍କ ମତର ଉଲ୍ଲଙ୍ଘନ ଭାବି-ବିପଜ୍ଜନକ" ଏ ସମ୍ବନ୍ଧରେ ଭାନୁମତୀଙ୍କ ଉପଦେଶରେ ଏକ କାହାଣୀ ବା କିମ୍ବଦନ୍ତୀସ୍ୱରୂପ ଅଦ୍ଭୁତବାବନାଭୂତର କଥା ପ୍ରକାଶ କରିଅଛନ୍ତି ।[୩] ପାଠକେ ବୁଝିନେବେ ଇତଃପୂର୍ବେ ପ୍ରକାଶିତ ମୂଳରେ ପ୍ରତିପାଦିତ ବହୁଲୋକଙ୍କ କଥାରେ କୃତାବଜ୍ଞ ଅଭିମାନ ଓ କ୍ରୋଧର ବଶବର୍ତ୍ତୀ ଗାନ୍ଧାରଙ୍କର ବହୁମେଳକ ଜଟିଳ ଚରିତକୁ ଅକ୍ଷୁଣ୍ଣ ଧାରାବାହିକ ଧାର୍ତ୍ତରାଷ୍ଟ୍ରଙ୍କର ଆକସ୍ମିକ ବିଲୋପରୁ ଲେଖିନପାରି ଏ ମହୋଦୟ ତଦୈକ-ଦେଶାନୁକରଣରେ ତନ୍ନୀତିପ୍ରତିପାଦକ ବାବନାଭୂତର ଚରିତକୁ ସଙ୍ଗତିସାଙ୍ଗତ୍ୟ ସହ ଲଗାଇଅଛନ୍ତି । ତତ୍ପର ଦିବସରେ ଅଭିମାନଧନ ଦୁର୍ଯ୍ୟୋଧନଙ୍କୁ ଭାନୁମତୀଙ୍କର ସ୍ୱପ୍ନ ବିବରଣ ବିଜ୍ଞାପନ ସ୍ଥଳରେ କହି ଅଛନ୍ତି କି, ଭାବୀ ସଂଗ୍ରାମରେ ଭୀଷ୍ମଦ୍ରୋଣାଦି ନିଧନ ପରେ ନୃସିଂହମୂର୍ତ୍ତି ଭୀମଙ୍କ[୪] କର୍ତ୍ତୃକ ସପୁନବତି ଧାର୍ତ୍ତରାଷ୍ଟ୍ର ନିହତ ହେବେ; ଇତ୍ୟାଦି । ବୋଧହୁଏ ସାରଳାଦାସ କବି ଏହି ନୈମିତ୍ତିକ ଘଟନାଟି ଅନ୍ୟ କୌଣସି ଗ୍ରନ୍ଥରୁ ଉନ୍ନୟନ କରିଅଛନ୍ତି । ଏହା ମୂଳରେ ଉକ୍ତ ନ ଥିଲେ ସୁଦ୍ଧା ଅସମ୍ଭାବିତ ନୁହେ । ଭଟ୍ଟନାରାୟଣଙ୍କ ବେଣୀସଂହାର ନାଟକରେ ସୁଦ୍ଧା ଏତାଦୃଶ ସ୍ୱପ୍ନବୃତ୍ତାନ୍ତ ବର୍ଣ୍ଣିତ ଅଛି ।[୫] ଅତଃପର ମୂଳ ଭାରତରେ ଭଗବଦ୍‌ଯାନପର୍ବର ଆସନ୍ନ ଅବସାନ ସ୍ଥାନରେ ଶ୍ରୀକୃଷ୍ଣ ଓ କୁନ୍ତୀ ଦେବୀଙ୍କ ସମ୍ବାଦରେ ସିନ୍ଧୁରାଜ-ନିର୍ଜିତ ସ୍ୱପୁତ୍ରକୁ

---

[୧] ଏ ସ୍ଥଳରେ ସାରଳାଦାସଙ୍କ ପରି ବଙ୍ଗ ଭାରତକର୍ତ୍ତା କାଶୀରାମଦାସ ମଧ୍ୟ ବଳିବାମନୋପାଖ୍ୟାନ ଲେଖିଅଛନ୍ତି । ଏଥିରୁ ଅନୁମିତ ହୁଏ କି, ଏହି ସଂବିଧାନଟି ଏ ଉଭୟଙ୍କର ଅନ୍ୟ କୌଣସି ପୁରାଣାଦିରୁ ଅନୁକୃତ ହୋଇଥିବ ।

[୨] ୬୦ - ୬୨ ପୃଷ୍ଠା ଦେଖନ୍ତୁ ।

[୩] ଦେଖିବେ ଏହା ବଡ଼ ବିସ୍ମୟୋତ୍ପାଦକ ।
ମାନଗୋବିନ୍ଦର ଆଗେ ଭାନୁମତୀ ବୋଲେ ।
କାଳେ ତା ହେବ ବହୁତ ବଚନ ମେଣ୍ଟିଲେ । ୬୬-୬୭ ପୃ: ।

[୪] ନରସିଂହ ମୂରତି ଯେ ଭୀମସେନ ଧରି ।
ତୁମ୍ଭ ଶତାଣୋଇ ଭାଇ ମାଇଲେ ସେ ଧରି ।। ଉ.ପ. ୭୬ ପୃଷ୍ଠା ।

[୫] ମମ ପୁନରକୁଶଳଦର୍ଶନଂ ପ୍ରତିଭାତି ସ୍ୱପ୍ନଦର୍ଶନଂ ସଖି ! ସ୍ମୃ.ତଂ, ଅଦ୍ୟ କିଳ ପ୍ରମଦବନେ ଆସୀନାୟା ମମ ଅଗ୍ରତଃ କେନାପ୍ୟତିଶୟିତଦିବ୍ୟରୂପେଣ ନକୁଳେନ ଅହିଶତଂ ବ୍ୟାପାଦିତଂ । ଇତ୍ୟାଦି । ବେ: ସଂ: ନା: ଦ୍ୱିତୀୟାଙ୍କ ।

ବୀରକନ୍ୟା ବିଦୁଲା ଯୁଦ୍ଧୋତ୍ସାହଉତ୍ତେଜନାର୍ଥ କଥିତ ଉପଦେଶମୂଳକ ଯେଉଁ ଇତିହାସ ଉକ୍ତ ଅଛି,[୧] ସାରଳାଦାସ ମହାଶୟ ତାହା ତ୍ୟାଗ କରି ଅଛନ୍ତି ଏବଂ କହନ୍ତି କି ଶ୍ରୀକୃଷ୍ଣ ହସ୍ତିନାର ଦୌତ୍ୟକାର୍ଯ୍ୟ ଶେଷ ପରେ ଦୁର୍ଯ୍ୟୋଧନଙ୍କ ରାଜଲକ୍ଷ୍ମୀ ସହ [୨] ଦ୍ୱାରକା ପ୍ରୟାଣ କରି ବ୍ୟାସଦେବଙ୍କ ଦ୍ୱାରା ଯୁଧିଷ୍ଠିରଙ୍କୁ ତତ୍ରଚଳିତ ବିଷୟମାନ ଜଣାଇ ଦେଇଥିଲେ ।[୩] କିନ୍ତୁ ଯଥାର୍ଥତଃ ଶ୍ରୀକୃଷ୍ଣ ଦୌତ୍ୟକୃତ୍ୟ ସମାପନ ପରେ ହସ୍ତିନାରୁ ବରାବର ଉପପ୍ଳବ୍ୟକୁ ଆସିଥିଲେ ।[୪]

ଅତଃପର ସୈନ୍ୟନିର୍ଯ୍ୟାଣାଭିଧ ଉପପର୍ବ ପ୍ରାରମ୍ଭରୁ ଯୁଧିଷ୍ଠିର ଓ ଦୁର୍ଯ୍ୟୋଧନ ସେନାବିଭାଗ ଓ ସେନାଧିକାରୀ ନିର୍ଦ୍ଧାରଣପୂର୍ବକ କୁରୁକ୍ଷେତ୍ର ଯାତ୍ରା କରି ଶିବିର ସନ୍ନିବେଶ କରିବା, ଆଉ ବଳରାମଙ୍କର ତୀର୍ଥଯାତ୍ରାକ୍ରମ ପ୍ରତିପାଦିତ ଅଛି । ସାରଳାଦାସ ମହାଶୟ ଏ ସ୍ଥଳରେ ରଣାଜିରରେ ଶିବିର ସନ୍ନିବେଶକରଣ ପୂର୍ବରୁ ଦୁର୍ଯ୍ୟୋଧନାଦେଶରେ ଯୁଦ୍ଧାର୍ଥ କୁରୁକ୍ଷେତ୍ର ପ୍ରତି ଅଭିଯାନ, ଯୁଧିଷ୍ଠିରଙ୍କୁ ଜଣାଇବା ନିମନ୍ତେ ଶକୁନିଙ୍କର ଇନ୍ଦ୍ରପ୍ରସ୍ଥ ପ୍ରତି ଆଗମନ କହି ତାହାଙ୍କ ମୁଖରେ ମନୁଷ୍ୟର ବାଲ୍ୟାଦି ଅବସ୍ଥାରେ କୃତ ଚେଷ୍ଟା ସମ୍ବନ୍ଧରେ ଅନେକ ଅବାନ୍ତର କଥା କୁହାଇଅଛନ୍ତି ।[୫] ତତ୍ପରେ ଶକୁନି ଶ୍ରୀକୃଷ୍ଣଙ୍କୁ ଭୂଭାରହରଣାର୍ଥ ଭାରତାହବର ଆବଶ୍ୟକତା, ପାଣ୍ଡବମାନଙ୍କର ଯୁଦ୍ଧାଙ୍ଗଣର ପୂର୍ବଭାଗରେ ଅବସ୍ଥିତିର ଉପଯୋଗିତା [୬] ପ୍ରଭୃତି ଜଣାଇଥିବାର ଲେଖିଅଛନ୍ତି । ଏହାପରେ ଶ୍ରୀକୃଷ୍ଣାଦିଷ୍ଟ କଳିସ୍ୱର୍ଣ୍ଣଯଷ୍ଟି ରୂପେ ରଣାଙ୍ଗଣରେ ଅବସ୍ଥାନ କରିବା କ୍ରମ କହି କୁରୁକ୍ଷେତ୍ରରେ ଉଭୟପକ୍ଷର ସେନାସନ୍ନିବେଶକ୍ରମକୁ ବିସ୍ତର ଓ ହୃଦ୍ୟତର କରି ଲେଖିଅଛନ୍ତି ।[୭] ଶିବିର ସନ୍ନିବେଶ ପରେ ଦିକ୍‌ନିର୍ଦ୍ଧାରଣାର୍ଥ କୁଣ୍ଡଳି ପର୍ବତରୁ ଆନୀତ

---

[୧] ୧୩୨ ଅଧ୍ୟାୟ ପ୍ରାରମ୍ଭରୁ ୧୩୫ ଅଧ୍ୟାୟ ଶେଷଯାଏ ଦେଖନ୍ତୁ ।

[୨] ଲକ୍ଷ୍ମୀଙ୍କି ସଙ୍ଗରେ ଘେନି ଦେବ ଜନାର୍ଦ୍ଦନେ ।
ଦ୍ୱାରକାପୁରକୁ ଗଲେ ଚହୁଁ ଅଭିମାନେ ।। ଇତ୍ୟାଦି ।। ୮୬ ପୃ: ।

[୩] ଯୁଦ୍ଧାର୍ଥ ନିମନ୍ତ୍ରିତ କୃଷ୍ଣ ଅର୍ଜୁନଙ୍କ ସହ ଆସିଲା ପରେ ପେର ସେ ନିଜେ ହସ୍ତିନାବୃତ୍ତାନ୍ତ ସବୁ ଯୁଧିଷ୍ଠିରଙ୍କୁ କହିଥିବାର ଲେଖିଅଛନ୍ତି ।

[୪] ମୂଳରେ ୧୪୬ ଅଧ୍ୟାୟ ଦେଖନ୍ତୁ ।

[୫] ଛାପା ୧୮୭ ପୃଷ୍ଠା ଦେଖନ୍ତୁ । - ଏ ସ୍ଥଳରେ ଦେବତାଙ୍କ ଦାରୁବିଗ୍ରହ - ଦାରକ ଆସୁରପ୍ରକୃତିକ ଓ ଦେବପ୍ରକୃତିକ ଦୁଇଗୋଟି ଅଳସୁଆ ଚଷାଙ୍କର ଇତିବୃତ୍ତମୂଳକ ଗୋଟିଏ କାଳ୍ପନିକ କିମ୍ବଦନ୍ତୀ ମଧ ଲେଖିଅଛନ୍ତି ।

[୬] ସଂସ୍କୃତରେ ମଧ ପାଣ୍ଡବୀୟ ସେନା ପୂର୍ବ ଭାଗରେ ରହିବା ଉକ୍ତ ଅଛି ।

[୭] ଏ ସ୍ଥଳରେ ଏ କବି ମହୋଦୟ ଯେଉଁ ସମୟ ନିର୍ଦ୍ଧାରିତ କରିଅଛନ୍ତି, ତାହା ମୌଳିକ ସମୟର ଅତି ବିପ୍ରକୃଷ୍ଟ ନୁହେ ।
ମାର୍ଗଶିର ଶୁକ୍ଳ ତ୍ରୟୋଦଶୀ ସୋମବାର ।

ଦାରୁରେ ନିର୍ମିତ ଶୁଭସ୍ତମ୍ଭର ସ୍ଥାପନ କରିଥିଲେ ବୋଲି ସେହି ବୃକ୍ଷ ସମ୍ବନ୍ଧରେ ବ୍ରହ୍ମାଦିଙ୍କର ସୃଷ୍ଟି ପ୍ରଳୟାଦି ବହୁ ପ୍ରସଙ୍ଗ ସଙ୍ଗରେ ଜଟିଳ ଦେବନାଶବୃକ୍ଷର ଇତିବୃତ୍ତକୁ ପୁରାଣାନ୍ତର ଆଶ୍ରୟ ବଳରେ ଲେଖି ଅଛନ୍ତି ।[୧]

ମୂଳ ମହାଭାରତରେ ଶିବିର ସନ୍ନିବେଶାଦି ପରେ ଦୁଃସାହସସମାଧ୍ୱସ-ହୃଦୟ ଦୁର୍ଯ୍ୟୋଧନ କପଟତଃ ଯୁଧିଷ୍ଠିରଙ୍କୁ ଯୁଦ୍ଧବିରତ କରାଇବାପାଇଁ ନ୍ୟାୟାଲୋକ-ଉଲୂକ ଉଲୂକନାମକ ଦୂତକୁ ପ୍ରେରଣ କରିଥିବା, ସେ ଯାଇ ନଶ୍ୱରବିଷୟଲାଗି ନୃଶଂସ କାର୍ଯ୍ୟରେ ତତ୍ପରତା ବୈଡ଼ାଳବ୍ରତର ପ୍ରଚ୍ଛନ୍ନ ପାପ ପରି ଅନୁଚିତ ବୋଲି ବିଡ଼ାଳ ବ୍ରତର ଇତିହାସ ପ୍ରକାଶ କରିଥିବାର, ଅପିଚ ଉଲୂକକୁ ଦୁର୍ଯ୍ୟୋଧନଙ୍କ ସକାଶେ ଯୁଦ୍ଧବଦ୍ଧାଦର ଶୌର୍ଯ୍ୟସମୁଦ୍‌ବୁଦ୍ଧ-ତନୂରୁହୀକୃତଶରୀର ଭୀମପ୍ରମୁଖ ବୀରବୃନ୍ଦ ନିଜ ନିଜ ଦୃଢ଼ କର୍ତ୍ତବ୍ୟତା ବୁଝାଇ ଦେଇଥିବାର ଉକ୍ତ ଅଛି । ବୋଧହୁଏ ସାରଳାଦାସ ମହାଶୟ ଏହି ଔଲୂକ-ଦୌତ୍ୟକୃତ୍ୟର ବିବରଣ ଠିକ୍ ମନସ୍ଥ ରଖିନପାରି ଇତଃପୂର୍ବେ ସୂଚିତ ଶାକୁନିକ ଦୌତ୍ୟସନ୍ଦର୍ଭର କଳ୍ପନା କରିଅଛନ୍ତି ।

ସମରକ୍ଷେତ୍ରରେ ଶିବିରସନ୍ନିବେଶ ପ୍ରଭୃତି ସମାଧାନ ପରେ ସହାୟଭୂତ ଭୁଜଦର୍ପକଣ୍ଡୁ-କରାଳ କ୍ଷିତିପାଳ-ପାଳିଙ୍କର ନିମନ୍ତ୍ରଣପ୍ରକ୍ରିୟା ଅଯଥା ସ୍ଥାନରେ ଅତିଶୟୋକ୍ତିକ୍ରମେ ଉଲ୍ଲେଖ କରିଅଛନ୍ତି ।[୨] ସେଠାରେ ମାଳବାଧିପତି କୃତବର୍ମାଙ୍କ ଅଶ୍ୱତ୍ଥାମା ନାମକ ହସ୍ତିର ପରିମାଣ ପ୍ରମାଣରେ ଶ୍ରୋତୃବର୍ଗଙ୍କର ବିସ୍ମୟାତିଶଯ୍ୟ ଜନ୍ମାଇ ତତ୍‌କ୍ଷଣାତ୍ ତାହା ବୁଝିପାରି ମାନବୀୟ, ସୌର ଓ ବ୍ରାହ୍ମ୍ୟ ପରିମାଣର ତାରତମ୍ୟାନୁମତ

---

ରୋହିଣୀ ନକ୍ଷତ୍ର ଭୋଗ ହୁଏ ସେ ଦିନର ।।
ବାଳବ ନାମେ କରଣ ଅତିଗଣ୍ଡ ଯୋଗ ।
ବିଛା ସଂକ୍ରାନ୍ତିକି ସତାଇଶ ଦିନ ଭୋଗ ।।
ସେଦିନ ଯେ କୌରବେ ଥାଟ ଘେନିଗଲେ ।
ବଢ଼ାଇ ସମ୍ଭବେ ଯାଇଁ ସମରେ ପଶିଲେ ।। ଇତ୍ୟାଦି । ୯୨ ପୃ: ।

କିନ୍ତୁ ଆଉ ଏକ ସ୍ଥାନରେ ଲେଖାଅଛି କି କୌରବ ଓ ପାଣ୍ଡବମାନେ କୁରୁକ୍ଷେତ୍ରରେ ଆଶ୍ୱିନ ଶୁକ୍ଳ ଦଶମୀ ବୁଧବାର ଦିନ ଯୁଦ୍ଧାର୍ଥ ସନ୍ନଦ୍ଧ ହେଲେ । ଏଥିରୁ କି ସ୍ପଷ୍ଟ ଜଣାଯାଏ ନାହିଁ ଯେ ଏତାଦୃଶ ସବୁକଥା ଶ୍ରୀ ସାରଳାଦାସଙ୍କର ଲେଖନୀପ୍ରସୂତ ନୁହେ ? ପରବର୍ତ୍ତୀ ଅନୁଲେଖକମାନେ ଏପରି କଦର୍ଯ୍ୟ କରିଦେଇଅଛନ୍ତି । ଛାପାରେ - ୧୨୧ ପୃଷ୍ଠା ଦେଖନ୍ତୁ ।

[୧] ୯୫ - ୧୦୦ ପୃଷ୍ଠା ଦେଖନ୍ତୁ ।

[୨] ୧୦୨ ପୃଷ୍ଠା ଆରମ୍ଭରୁ ୧୦୬ ପୃଷ୍ଠାଯାଏ ଦେଖନ୍ତୁ ।

ଉପାୟଦ୍ୱାରା ତାହାର ଅପନୋଦନ ସାଧନର ଚେଷ୍ଟା କରି ସୁଦ୍ଧା ଅଯଥାବାଦିତ୍ୱରୁ ସଂପୂର୍ଣ୍ଣ ମୁକ୍ତି ପାଇପାରି ନାହାନ୍ତି ।[୧]

ତଦନନ୍ତର ଦୌର୍ଯ୍ୟୋଧନିକ ବାହିନୀର ଅପରିମିତତ୍ୱ ଓ ଅଜେୟତ୍ୱ ଚିନ୍ତାରେ ସଂଦ୍ୱାନିତାନ୍ତଃକରଣ ଯୁଧିଷ୍ଠିରଙ୍କର ଚିନ୍ତାପନୋଦନାର୍ଥ ଭୀମଙ୍କ ଔରସରେ ନାଗକନ୍ୟା ବେଲ୍ଲାବଳୀଙ୍କ ଗର୍ଭଜାତ ମହାବୀର ବେଲ୍ଲାଳସେନଙ୍କର ଆଗମନାଦି ବୃତ୍ତାନ୍ତର ବିବୃତୀକରଣ, ଅନେକଧା ବୀର-ପରୀକ୍ଷାରେ ଶ୍ରୀକୃଷ୍ଣ ବେଲ୍ଲାଳସେନଙ୍କୁ ସର୍ବଥା ଅଜେୟ ଓ ସର୍ବସଂହାର ଶକ୍ତିସମ୍ପନ୍ନ ଜାଣିପାରି [୨] କୈତବ କୌଶଳରେ ତାହାଙ୍କୁ ସତ୍ୟ ପାଶରେ

---

[୧] ହସ୍ତି ବାରଯୁଣ ତାର ଘଣ୍ଟା ବାରଯୁଣ ।
ଏମନ୍ତ ଶୁଣି ଯୁଧିଷ୍ଠି ଆଶ୍ଚର୍ଯ୍ୟ ହୋଇଣ ॥
ସହଦେବଙ୍କର ଶ୍ରୀମୁଖକୁ ଅନାଇଲେ ।
ମୋ ଆଗରେ ମିଥ୍ୟା ତୁ ଯେ କହିଲୁ ବୋଇଲେ ॥
ସମର ଭୂମିରେ ଯେବେ ଥିବ ସେହି ହସ୍ତୀ ।
କେଉଁଠାରେ ରହିବେ ଯେ ସଇନ ପଦାତି ॥
ଅଛି ହସ୍ତି-କଣ୍ଠେ ପୁଣ ଘଣ୍ଟା ବାର ଯୁଣ ।
ଏ କଥାମାନ ମୋତେ ଲାଗଇ ଅଘଟଣ ॥
ଯୁଧିଷ୍ଠିଙ୍କ ବଚନେ କହନ୍ତି ସହଦେବ ।
ଅସମ୍ଭବ ମଣିଲ ଯେ ହସ୍ତିର ପ୍ରସ୍ତାବ ॥
ଏକମନେ ଏବେ ଶୁଣିବା ଦେବରାୟେ ।
ମାନବରେ ଦେବ ଯୁଣ ସାତ ଯୁଣ ହୁଏ ॥
ଦେବତାଙ୍କୁ ବ୍ରହ୍ମଯୁଣ ଅଟେ ପୁଣ ସାତେ ।
ଏକମନେ ବୁଝ ଏହା ହୋଇଲାକ କେତେ ॥
ମାନବ ଯୁଣରେ ଘଣ୍ଟା ଅଛି ହସ୍ତିଗଳା ।
ଦେବତା ଯୁଣରେ ପୁଣ ହସ୍ତୀ ଯେ ହୋଇଲା ॥
ବ୍ରହ୍ମଯୁଣେ ହୋଇଅଛି ଯେ ସମରଭୂମି ।
ସହଦେବ ବଚନେ ସନ୍ତୋଷ ଦେବ ସ୍ୱାମୀ ॥

ଛାପାରେ ୧୦୭ ପୃଷ୍ଠା ।

ଅଯଥୋକ୍ତି ହେଲେ ସୁଦ୍ଧା "ହସ୍ତୀ ବାରଯୁଣ ତାର ଘଣ୍ଟା ବାର ଯୁଣ" ଏକଥାଟି ପ୍ରବଚନ ରୂପେ ଭିନ୍ନାର୍ଥରେ ସମଗ୍ର ଉତ୍କଳରେ ପ୍ରଚଳିତ ଅଛି ।

[୨] ଅଠର ଦିବସ ଏଥେଁ ହୋଇବାକ ଯୁଦ୍ଧ ।
ଏ ତ ନିମିଷକେ ସବୁ କରିଦେବ ବଧ ॥
ଯୁଦ୍ଧ କଉତୁକମାନ ଦେଖି ତ ନୋହିବ ।
କ୍ଷଣକମାତ୍ରକେ ଏହୁ ସକଳ ନାଶିବ ॥ ୧୧୪ ପୃଷ୍ଠା

ବେଲ୍ଲାଳସେନଙ୍କ ଏହି ଇତିବୃତ୍ତ ୧୦୮-୧୧୪ ପୃଷ୍ଠାମାନଙ୍କରେ ଦେଖନ୍ତୁ ।

ଆବଦ୍ଧ ରଖି ଚକ୍ରରେ ଛିନ୍ନମସ୍ତକ କରିବା, ତଥାଚ ତତ୍‌ପ୍ରାର୍ଥନାରେ ସଂପ୍ରୀତ ହୋଇ ତତ୍‌ପ୍ରତି ପ୍ରତୀକପ୍ରତି କୃପାତୁଙ୍ଗ ଅପାଙ୍ଗ ବିକ୍ଷେପି ଦିବ୍ୟଚକ୍ଷୁ ପ୍ରଦାନପୂର୍ବକ ଯୁଦ୍ଧ ଶେଷଯାଏ ଶୁଭସ୍ତମ୍ଭୋପରି ଦର୍ଶକରୂପେ ନିହିତ କରିବା, ତତ୍‌ଶ୍ରବଣରେ ଭୀମ କ୍ରୋଧବଶତଃ କୃଷ୍ଣଜିଘାଂସାରେ ଗଦାହସ୍ତ ହେବା ପ୍ରଭୃତି କଥା ସାରଳାଦାସ ମହାଶୟ କେଉଁ ପୁରାଣକୁ ଅନୁକରି ଲେଖି ଅଛନ୍ତି, କିଛି ଜଣାଯାଏ ନାହିଁ ।

ଅତଃପର ଶ୍ରୀମାନ ସାରଳାଦାସ ଗୋଟିଏ କଦର୍ଯ୍ୟ ଚରିତର ଅବତାରଣା କରି ଅଛନ୍ତି । ଚରିତଟା ଆଉ କିଛି ନୁହେଁ । କଶ୍ଚିତ୍ ଦାରବିକ୍ରୟୀ ଅପବିତ୍ରନାମା ଭାରଦାର ଅପବିତ୍ର ଚେଷ୍ଟାପୂର୍ଣ୍ଣ କଳଙ୍କିତ ଜୀବନୀର ଏକାଂଶ ମାତ୍ର । ଯୁଧିଷ୍ଠିର ଭବିଷ୍ୟମାଣ ଘଟଣା ସମ୍ବନ୍ଧରେ ସହଦେବଙ୍କୁ ପ୍ରଶ୍ନ କଲାରୁ ସହଦେବ କହିଲେ କି ମୁଁ ସେ ସବୁ ଜଣାଇବା ପାଇଁ ଭୀତ ହୁଏ । କିନ୍ତୁ ବୈତରଣୀ ନଦୀ ତୀରସ୍ଥ ଧବଳ ପର୍ବତର ପଶ୍ଚିମ-ଭାଗବର୍ତ୍ତୀ ଯାଜପୁର ନଗରରେ ଗୋଟିଏ ପୁରୁଷ ଅଛି । ତାହାକୁ ଏଠାକୁ ଆଣିଲେ ସେ ସମସ୍ତ କହି ପାରିବ । ସହସା ଭୀମସେନ ଯାଇ ତାହାକୁ ଆଣିଲେ ।[୧] ସହଦେବଙ୍କ ଆଦେଶମତେ ନିଶାରେ ଯୁଦ୍ଧପ୍ରାଙ୍ଗଣ ସ୍ତମ୍ଭରେ ତାହାକୁ ବନ୍ଧ ରଖିଲେ । ନିଶୀଥରେ ଜାତିସ୍ମର ଶୃଗାଳ ଓ ଶୃଗାଳୀର ଆଳାପରୁ ଭାରତାହବୀୟ ଯାବତୀୟ କଥା ଶୁଣି ପ୍ରୋକ୍ତ ଭାରଦା ପରଦିନ ଯୁଧିଷ୍ଠିରଙ୍କୁ ନିବେଦନ କଲା । ନିବେଦନର ଅବ୍ୟବହିତ ପରେ ଦ୍ୱିଧାବିଦୀର୍ଣ୍ଣ ମସ୍ତକ ହୋଇ ମୃତ ହେଲା । ଇତ୍ୟାଦି ।[୨] ତଦନ୍ତର ବୈବସ୍ୱତମନୁଙ୍କ ପ୍ରଶ୍ନରେ ଭାରଦାର ପୂର୍ବଜନ୍ମ ବୃତ୍ତାନ୍ତରେ କୁବେରଶାପାଭିଶପ୍ତ ଜୟସେନ ଗନ୍ଧର୍ବ ଓ ମଦନିକାନାମ୍ନୀ ଅପ୍‌ସରା ଏହି କଳୁଷିତ ଚରିତ୍ର କଳତ୍ରରୂପେ ଜନ୍ମିଥିବାର ବିବରଣ ଲେଖା ଅଛି । ଶ୍ରୀମାନ୍ ସାରଳାଦାସ କବି ଅନାର୍ଯ୍ୟଙ୍କ ପାରଦାର୍ଯ୍ୟ-କଦର୍ଯ୍ୟ କାର୍ଯ୍ୟରେ ବିରକ୍ତ ହୋଇ ତଦାନୀନ୍ତନ କେତେକ କୁଚରିତ୍ର ଲୋକଙ୍କ ଚରିତ୍ରଚିତ୍ରଣାର୍ଥ ଇଚ୍ଛୁକ ହୋଇ କଳ୍ପନାବଳରେ ଏସବୁ ସନ୍ଦର୍ଭ ଲଗାଇ ଥିବେ ।

ପୁନଶ୍ଚ ତାହାପରେ ଯେଉଁ ଶୃଗାଳ ଓ ଶୃଗାଳୀର ଆଳାପରୁ ଭାରଦା ଭାବୀ ଭାରତ ଯୁଦ୍ଧର ସମ୍ଭାବନୀୟ ସମସ୍ତ ବିବରଣ ଜାଣି ପାରିଥିଲା, ସେ ଦୁହିଁଙ୍କର ପୂର୍ବଜନ୍ମର ବୃତ୍ତାନ୍ତ ଦେଇ ଅଛନ୍ତି । ଏହା ମୂଳରେ ଅନୁକ୍ତ । ଏ କବି ମହୋଦୟ କାହିଁରୁ ଏହା ପାଇ ଅଛନ୍ତି, ଠିକ୍ ନିର୍ଦ୍ଧାରିତ ହୋଇ ନ ପାରେ । ତତଃପର ପ୍ରୋକ୍ତ ଶୃଗାଳାଧ୍ୟୁଷିତ ପର୍ବତରେ ଲୁକ୍କାୟିତ ନିତାନ୍ତ ଚିନ୍ତାସନ୍ତତି ଦନ୍ତୁରିତାନ୍ତରଙ୍ଗ ଧୃତରାଷ୍ଟ୍ର ଭୂଭାରହାରହେତୁ ଭାବୀ

[୧] ଭାରଦାର ଅକରଣୀୟ ଦାରବିକ୍ରୟ କାର୍ଯ୍ୟମାନ ୧୧୫-୧୧୮ ପୃଷ୍ଠାଯାଏ ଲେଖା ଅଛି ।

[୨] କହିଲା ଆଦ୍ୟନ୍ତ କରି ଶୁଣିଲେ ଯୁଧିଷ୍ଠି ।
ଏହା କହି ତାହାର ମୂର୍ଦ୍ଧନା ଗଲା ଫାଟି ।।
ନିଜ ପ୍ରାଣ ବିସର୍ଜିଲା ଯୁଧିଷ୍ଠିଙ୍କ ଆଗେ ।
ଶ୍ରୀକୃଷ୍ଣ ମୁଖକୁ ଚାହିଁ ବସିଲା ସେ ସ୍ୱର୍ଗେ ।। ୧୨୩ ପୃଷ୍ଠା ।

ଭାରତ ଯୁଦ୍ଧର ଯାବତୀୟ କଥା ଶୁଣି ଆତ୍ମୌପୟିକୀ କ୍ରିୟାରେ ସନ୍ଧିକରଣାର୍ଥ ଯତ୍ନ କରି ମୃଷାଭାଷଣ-ଚାତୁରୀଧୁରୀଣ ଶକୁନିଙ୍କ ଦୁର୍ମନ୍ତ୍ରଣା-ଯନ୍ତ୍ରଣାରେ ହତୋଦ୍ୟମ ହେବା, ତା ପରେ କୃଷ୍ଣାଦିଷ୍ଟ ଭୀମଙ୍କ ନିମନ୍ତ୍ରଣରେ ଅନାଗତ କିଷ୍କିନ୍ଧ୍ୟାରଣ୍ୟନିବାସୀ ହନୁମାନଙ୍କୁ ଦେବଦତ୍ତ ଶଙ୍ଖଧ୍ୱନିରେ ସମାହୂତ କରିଥିବା ପ୍ରଭୃତି କଥାର ସନ୍ନିଧାନମାନ ଲେଖି ଅଛନ୍ତି । [୧] ଏସବୁ ମୂଳରେ ଅନୁକ୍ତ ସତ୍ୟ, ତଥାପି କେବଳ ଅଳୀକ ନୁହେଁ । ବହୁ ଐତିହାସ-ସନ୍ନିଧାନବେତ୍ତା ଶ୍ରୀ ସାରଳାଦାସ ମହୋଦୟ କୌଣସି ପୁରାଣ ବା ଇତିହାସ-ସମୁଚ୍ଚୟରୁ ମୌଳିକ ସାରାଂଶ ନେଇ କଳ୍ପନାନୁପ୍ରାଣିତ କରି ଅଛନ୍ତି ।

ଅତଃପର ସ୍ୱୀୟ ଅପତ୍ୟ ବୈକର୍ତ୍ତନିଙ୍କ ହେତୁରୁ ସମଧିକାଧିକା କୁନ୍ତୀଦେବୀ କର୍ଣ୍ଣଙ୍କୁ ସହୋଦର ପାଣ୍ଡବମାନଙ୍କ ପକ୍ଷପାତୀ ହେବାପାଇଁ ନାନା କଥାରେ ବୁଝାଇ କହିଲେ ସୁଦ୍ଧା ସେ ଅର୍ଜ୍ଜୁନ ପ୍ରତି ବଦ୍ଧାନୁବୈରତ୍ୱରୁ ସମ୍ମତ ନ ହେବାରୁ ଅର୍ଜ୍ଜୁନ ଛଡ଼ା ଅନ୍ୟ ପୁତ୍ରମାନଙ୍କ ନିଧନରେ ମୋର ପଞ୍ଚପୁତ୍ରତ୍ୱ ହାନି କର ନାହିଁ ବୋଲି କହିବା, କର୍ଣ୍ଣଙ୍କୁ ଅର୍ଜ୍ଜୁନ କିମ୍ବା ଅର୍ଜ୍ଜୁନଙ୍କୁ କର୍ଣ୍ଣ ନିହତ କଲେ ସୁଦ୍ଧା ନିଜେ ଅକ୍ଷୁଣ୍ଣ-ପଞ୍ଚପୁତ୍ରା ରହିବାର ସ୍ଥିର କରିବା [୨] ଏବଂ କର୍ଣ୍ଣଙ୍କ ଶରୀରାଭ୍ୟନ୍ତରସ୍ଥ [୩] ନୀଳବାଣ ଓ ଭୁଜବାଣ ନାମକ ଅମୋଘାସ୍ତ୍ରଦ୍ୱୟ ଆଣି କୁନ୍ତୀଦେବୀ ପାଣ୍ଡବଙ୍କୁ ସମର୍ପଣ କରିଥିବାର ଲେଖିଅଛନ୍ତି । ଏ ସମସ୍ତ ଅମୂଳକ ନୁହେ, କୁନ୍ତୀଦେବୀ ଓ କର୍ଣ୍ଣଙ୍କ ସମ୍ବାଦାତ୍ମକ ତାବତୀୟ ବିଷୟ ମୂଳଗ୍ରନ୍ଥର ଭଗବଦ୍‌ଯାନ ପର୍ବ ଶେଷରେ [୪] ଉକ୍ତ ଅଛି । ସାରଳାଦାସ ତାହା ଠିକ୍ ଲେଖି ଅଧିକତଃ ନୀଳବାଣ ଭୁଜବାଣର କଥା କେବଳ[୫] ପ୍ରକାଶ କରି ଅଛନ୍ତି । ଏହା ଏ କବିଙ୍କର

---

[୧] ୧୩୪-୧୩୯ ପୃଷ୍ଠା ଦେଖନ୍ତୁ ।
ଶଙ୍ଖ ଶବଦ ଯେ ତାକୁ ଶୁଭିଲା ଗହନେ ।
ହନୁ ଆସନ କମ୍ପିଲା କିଷ୍କିନ୍ଧା ନାମେ ବନେ ।।୧୩୯ ପୃଷ୍ଠା ।

[୨] କୁନ୍ତୀ ବୋଇଲେ ତୁ ତାକୁ ମାଇଲେ ସମରେ ।
ଯେ ପାଞ୍ଚ କୁମାର ମୋର ହୋଇଲା ସେଠାରେ ।।
ଅର୍ଜ୍ଜୁନ ଯେବେଟି ତୋତେ କରେ ପରମାଦେ ।
ଯେ ମୋହର ପାଞ୍ଚ ପୁତ୍ର ହୋଇଲାକ ହାଦେ ।। ୧୪୩ ପୃଷ୍ଠା ।
ମୂଳ ଗ୍ରନ୍ଥରେ ସୁଦ୍ଧା ଏପରି ଉକ୍ତ ଅଛି । ଏଥିରେ କର୍ଣ୍ଣ କହିଥିବା କଥା ସାରଳାଦାସ ଭାରତରେ କୁନ୍ତୀ କହି ଅଛନ୍ତି ।
ନ ତେ ଜାତୁ ବିନଶ୍ୟନ୍ତି ପୁତ୍ରାଃ ପଞ୍ଚ ଯଶସ୍ୱିନି ।
ନିରର୍ଜ୍ଜୁନା ସକର୍ଣ୍ଣା ବା ସାର୍ଜ୍ଜୁନା ବା ହତେ ମୟି ।। ଉ.ପ. ୧୪୫ ଅଧ୍ୟାୟ । ୨୩ ଶ୍ଳୋକ ।

[୩] କର୍ଣ୍ଣଙ୍କୁ ସତ୍ୟ କରାଇ ମାଗିଲେ ଯେ କୁନ୍ତୀ ।
ନୀଳବାଣ ଭୁଜବାଣ ଦେବୁ ତୁ ଦୁହିଁନ୍ତି ।। ଇତ୍ୟାଦି ।୧୪୪ ପୃଷ୍ଠା ।

[୪] ୧୪୩ ଅଧ୍ୟାୟ ପ୍ରାରମ୍ଭରୁ ୧୪୫ ଅଧ୍ୟାୟ ଶେଷଯାଏ ଦେଖନ୍ତୁ ।

[୫] ଏ ବିଷୟସଂସ୍ଥାନଟି ସ୍ୱକୀୟ ମଧ୍ୟପର୍ବରେ ମଧ୍ୟ ସବିସ୍ତର ବର୍ଣ୍ଣି ଅଛନ୍ତି ।

ଅନ୍ୟ ଇତିହାସ-ଶୁଶ୍ରୂଷାବଳରେ ପ୍ରତିପାଦିତ ହୋଇଥିବ । ପରନ୍ତୁ ଏ ମହୋଦୟ ପ୍ରୋକ୍ତ ବାଣଦ୍ୱୟର ଉତ୍ପତ୍ତି ସମ୍ବନ୍ଧରେ ସୁଦ୍ଧା ତଦ୍‌ସ୍ଥଳରେ କେବଳ କାରଣ ନିର୍ଦ୍ଦେଶପୂର୍ବକ ପୁରାବୃତ୍ତ ଲେଖି ଅଛନ୍ତି ।[୧]

ମୂଳ ଗ୍ରନ୍ଥର [୨] ରଥାତିରଥସଂଖ୍ୟାନନାମକ ଉପପର୍ବରେ ପ୍ରତିପାଦିତ ବିଷୟ ଅର୍ଥାତ୍ ବୀରମାନଙ୍କ ମଧ୍ୟରେ କିଏ ଅତିରଥ କିଏ ବା ଅର୍ଦ୍ଧରଥ କିଏ ବା ମହାରଥ– ଇତ୍ୟାକାରକ ପରାକ୍ରମନିର୍ଦ୍ଧାରଣକ୍ରମ ଆଉ ଭୀଷ୍ମ ଓ କର୍ଣ୍ଣଙ୍କର ଉଚ୍ଚାବଚ ଉଚ୍ଚବାଚର କ୍ରମ ଏ ସ୍ଥଳରେ ଲେଖି ନ ଥିଲେ ସୁଦ୍ଧା ସାମୟିକ ପ୍ରସଙ୍ଗାନୁବଶତଃ ଅନ୍ୟାନ୍ୟ ସ୍ଥଳମାନଙ୍କରେ ପ୍ରକାଶ କରିଦେଇ ଅଛନ୍ତି । ଉଦ୍‌ଯୋଗ ପର୍ବର ସର୍ବଶେଷରେ ଉକ୍ତ ଅମ୍ବୋପାଖ୍ୟାନ ଅର୍ଥାତ୍ ଅମ୍ବା ଦେବୀଙ୍କର ଯାବତୀୟ ଚରିତମାନ ମହାମତି ସାରଳାଦାସ ମହୋଦୟ ପ୍ରସଙ୍ଗସାଙ୍ଗତ୍ୟରେ ଆଦିପର୍ବରେ ଯଥାଯୋଗ୍ୟ ସ୍ଥାନରେ ଲେଖିଦେଇ ଥିବାରୁ ପୁନରପି ଏଠାରେ ପ୍ରକାଶ କରିବା ଅନାବଶ୍ୟକ ବୋଧ କରି ଅଛନ୍ତି ।

## ମହାଭାରତ ଯୁଦ୍ଧର ସମୟ ନିର୍ଣ୍ଣୟ

ଭୀଷ୍ମାଦି ଯୁଦ୍ଧପଞ୍ଚକ ପର୍ବମାନଙ୍କର ପାଠର ବିଚାର ପୂର୍ବରୁ ମହାଭାରତ ଯୁଦ୍ଧର ସାମୟିକ ନିର୍ଦ୍ଦେଶ ପ୍ରମାଣିତ କରିବା ଆବଶ୍ୟକ ବୋଧ କରୁଅଛୁଁ । ତତ୍ର ପ୍ରଥମତଃ ସେହି ଆହବିକ ପ୍ରଳୟ ଆଜକୁ କେତେବର୍ଷ ପୂର୍ବେ ସମ୍ଭବିଥିଲା, ଏହାର ପ୍ରମାଣ ନିର୍ଦ୍ଧାରିତ କରି ତା ପରେ ମାସାଦିର କଥା ଦେଖିବାକୁ ହେବ ।

ଏ ସମ୍ବନ୍ଧରେ ମୂଳ ମହାଭାରତରେ କିମ୍ବା ତଦନୂଦିତ କୌଣସି ଦେଶୀୟ ଭାରତରେ ମଧ୍ୟ ଠିକ୍ ନିର୍ଦ୍ଦିଷ୍ଟ ଅସଂଦିଗ୍‌ଧ-ଗଣନାନୁସିଦ୍ଧ ପ୍ରମାଣ କିଛି ଦେଖାଯାଉ ନାହିଁ ।✱ ଶ୍ରୀମଦ୍‌ଭାଗବତ ଓ ଶ୍ରୀବିଷ୍ଣୁ ପୁରାଣାଦିରେ ଯେଉଁ କେତେଗୋଟି ପ୍ରମାଣ ମିଳୁଅଛି,

---

[୧] ଛାପା ପୁସ୍ତକରେ ୧୪୪ - ୧୪୮ ପୃଷ୍ଠାମାନ ଦେଖନ୍ତୁ ।

[୨] ୧୬୪ ଅଧ୍ୟାୟ ପ୍ରାରମ୍ଭରୁ ୧୭୧ ଅଧ୍ୟାୟ ଶେଷଯାଏ ଦେଖନ୍ତୁ ।

✱ (୧) ଆରଭ୍ୟ ଭବତୋଜନ୍ମ ଯାବଦ୍ ନନ୍ଦାଭିଷେଚନଂ ।
ଏତଦ୍ ବର୍ଷସହସ୍ରଂ ତୁ ଶତଂ ପଞ୍ଚଦଶୋତ୍ତରଂ--
ଭାଗବତ, ୧୨ ସ୍କନ୍ଧ, ୨ ଅଧ୍ୟାୟ ।

(୨) ତେ ତ୍ୱଦୀୟେ ଦ୍ୱିଜାଃ କାଳେ ଚାଧୂନା ଚାଶ୍ରିତା ମଘାଃ--
ଭାଗବତ, ୧୨ ସ୍କନ୍ଧ, ୨ ଅଧ୍ୟାୟ ।

(୩) ଯଦା ମଘାଭ୍ୟୋ ଯାସ୍ୟନ୍ତି ପୂର୍ବାଷାଢ଼ାଂ ମହର୍ଷୟଃ ।
ତଦାନନ୍ଦାଦ୍ ପ୍ରଭୃତ୍ୟେଷ କଳିର୍ବୃଦ୍ଧିଂ ଗମିଷ୍ୟତି ॥
ଭାଗବତ, ୧୨ ସ୍କନ୍ଧ, ୨ ଅଧ୍ୟାୟ ।

ସେଗୁଡ଼ିକରେ ସ୍ପଷ୍ଟତଃ ଐକମତ୍ୟ ପ୍ରକାଶ ପାଉନାହିଁ । ଅଥବା ସେଗୁଡ଼ିକର ପ୍ରକୃତାର୍ଥତତ୍ତ୍ୱ ଆମ୍ଭମାନଙ୍କର ବୋଧଗମ୍ୟ ନୁହେ । ଏଥି ସକାଶେ ଅନେକେ ଏହି ବାକ୍ୟଗୁଡ଼ିକର ପଦପରିବର୍ତ୍ତନାଦି କରି ଅନେକ ପ୍ରକାର ମତ ପ୍ରକାଶ କରି ନିଅନ୍ତି । ଏ ସ୍ଥଳରେ ସେ ସବୁର ସାମଞ୍ଜସ୍ୟ ବିଚାର ପୂର୍ବକ ସିଦ୍ଧାନ୍ତ କରି ବସିଲେ ପ୍ରବନ୍ଧ ସୁଗମ ହେବା ଦୂରେ ଥାଉ ପ୍ରତ୍ୟୁତ ଜଟିଳ ହୋଇ ପଡ଼ିବ । ଆମ୍ଭେମାନେ ସମ୍ୟକ୍ ଦେଖିଅଛୁଁ, ଅନେକେ ବୁଦ୍ଧ ଚନ୍ଦ୍ରଗୁପ୍ତାଦିଙ୍କ ସମୟ ସହ ଏ ସବୁର ବିଚାର କରିବାକୁ ଯାଇ ଅନେକ ଅସଙ୍ଗତ କଥା ଲେଖିଯାଇ ଅଛନ୍ତି । ଏକର ମତକୁ ଅନ୍ୟର ମତ ସମାନ ହୁଏ ନାହିଁ । ମୂଳର ପ୍ରମାଣମାନଙ୍କୁ କେହି ପ୍ରକ୍ଷିପ୍ତ, କେହି ପରିବର୍ତ୍ତିତ, କେହି ପରିକର୍ତ୍ତିତ, କେହି ବା ଛିନ୍ନ, କେହି ବା ଭିନ୍ନ କରି ନିଜ ଅଭିମତାନୁସାରେ ଅନେକଧା ଆନୁମାନିକ ମତ ନିର୍ଦ୍ଦିଷ୍ଟ କରି ଅଛନ୍ତି । କାହାରି ମତରେ ଚତୁଃଶତ, କାହାରି ପଞ୍ଚଶତ, କାହାରି ମତରେ ପ୍ରାୟ ସହସ୍ର ବର୍ଷ ବ୍ୟବଧାନ ରହୁଅଛି । ଅତଏବ ପ୍ରତ୍ୟେକଙ୍କ ମତ ନେଇ ସୁବିସ୍ତର ସିଦ୍ଧାନ୍ତରେ ପ୍ରବନ୍ଧର କଳେବର ବୃଥା ବଢ଼ାଇବାର ଇଚ୍ଛା ବଳିଲା ନାହିଁ । କିନ୍ତୁ ରାଜତରଙ୍ଗିଣୀକାର ଶ୍ରୀମାନ୍ କହ୍ଲଣ କବିଙ୍କ ପ୍ରଦର୍ଶିତ ବହୁ ବିଚାରସମ୍ମତ ମତକୁ ଅନୁସରି ଭାରତ ଯୁଦ୍ଧର କାଳ-ପ୍ରମାଣ ସଂକ୍ଷେପତଃ ଦେଉଅଛୁଁ । ବିଶ୍ୱାସ କରୁଁ, ଅଭିଜ୍ଞ ପାଠକେ ଏଥିରେ ବିଶ୍ୱାସ କରିବେ ।

"ଆସନ୍ ମଘାସୁ ମୁନୟଃ ଶାସତି ପୃଥ୍ୱୀଂ ଯୁଧିଷ୍ଠିରେ ନୃପତୌ ।
ଷଟ୍‌ଦ୍ୱିକପଞ୍ଚଦ୍ୱିଯୁତଃ ଶକକାଳସ୍ତସ୍ୟ ରାଜ୍ୟସ୍ୟ ।"

---

(୪) ପ୍ରୟାସ୍ୟନ୍ତି ଯଦା ଚୈତେ ପୂର୍ବାଷାଢ଼ାଂ ମହର୍ଷୟଃ ।
ତଦାନନ୍ଦାଦ୍ ପ୍ରଭୃତ୍ୟେଷ କଳିର୍ବୃଦ୍ଧିଂ ଗମିଷ୍ୟତି--
ବି.ପୁ. ୪ ଅଂଶ, ୨୪ ଅଧ୍ୟାୟ ।

(୫) ତେ ତୁ ପାରୀକ୍ଷିତେ କାଳେ ମଘାସ୍ୱାସନ୍ ଦ୍ୱିଜୋତ୍ତମ ।
ତଦା ପ୍ରବୃତ୍ତଶ୍ଚ କଳିର୍ଦ୍ୱାଦଶାବ୍ଦଶତାତ୍ମକଃ ।।
ବି.ପୁ. ୪ ଅଂଶ, ୨୪ ଅଧ୍ୟାୟ ।

(୬) ତେନ ସପ୍ତର୍ଷୟୋ ଯୁକ୍ତାସ୍ତିଷ୍ଠନ୍ତ୍ୟବ୍ଦଶତଂ ନୃଣାଂ ।
ବି.ପୁ. ୪ ଅଂଶ, ୨୪ ଅଧ୍ୟାୟ ।

(୭) ଯାବତ୍ ପରୀକ୍ଷିତୋ ଜନ୍ମ ଯାବତ୍ ନନ୍ଦାଭିଷେଚନଂ ।
ଏତଦ୍ ବର୍ଷସହସ୍ରଂ ତୁ ଜ୍ଞେୟଂ ପଞ୍ଚାଶଦୁତ୍ତରଂ ।।
ବି.ପୁ. ୪ ଅଂଶ, ୨୪ ଅଧ୍ୟାୟ ।

(ଜ୍ଞେୟଂ ପଞ୍ଚଦଶୋତ୍ତରଂ)
(ଜ୍ଞେୟଂ ପଞ୍ଚଶତୋତ୍ତରଂ) ଇତ୍ୟାଦି ।

ଏ ମହୋଦୟ ବୃହତ୍ ସଂହିତାକାରଙ୍କର ଉଦ୍ଧୃତ ବୃଦ୍ଧ ଗର୍ଗଙ୍କ ଏହି ପ୍ରମାଣକୁ ଧରି ପ୍ରାଚୀନତମ ପ୍ରମାଣମାନଙ୍କର ବିଚାରପୂର୍ବକ ସିଦ୍ଧାନ୍ତ କରି ଅଛନ୍ତି କି କଳିଯୁଗର ୬୫୩ ବର୍ଷ ଗତ ହେଲା ପରେ କୁରୁପାଣ୍ଡବ ଯୁଦ୍ଧ ସଂଭୂତ ହୋଇଥିଲା ।[୧] ଅଥଚ ଯେଉଁମାନେ ଭାରତ ଯୁଦ୍ଧ କଳିରେ ହୋଇ ନାହିଁ, ଦ୍ୱାପରାନ୍ତରେ [୨] କେବଳ ସମ୍ଭବିଥିଲା ବୋଲି କହନ୍ତି, ସେମାନଙ୍କର ବର୍ଷ-ସଂଖ୍ୟାନ ମୃଷା ଅଟେ ବୋଲି ସ୍ୱନିର୍ଦ୍ଧାରିତ ବର୍ଷକୁ ବହୁ ପ୍ରମାଣରେ ପ୍ରମାଣିତ କରି ଅଛନ୍ତି ।[୩] ବର୍ଷ ନିର୍ଦ୍ଧାରଣରେ ସେ ମହାଶୟ କହନ୍ତି କି ବର୍ତ୍ତମାନ ଏହି ରାଜତରଙ୍ଗିଣୀର ରଚନା ସମୟକୁ ଶାଳିବାହନ ଶକର ୧୦୭୦ ବର୍ଷ ଗତ ହୋଇଅଛି ଏବଂ ଏତତ୍ ସମୟକୁ ଅର୍ଥାତ୍ ଶାଳିବାହନଙ୍କ ୧୦୭୦ ଶକାବ୍ଦକୁ କାଶ୍ମୀରାଧିପତି ତୃତୀୟ ଗୋନର୍ଦ୍ଧଙ୍କ (କିମ୍ବା ଗୋନନ୍ଦ) ସମୟଠାରୁ ୨୩୩୦ ବର୍ଷ ଗତ ହୋଇଥିଲା; ଅଥଚ ପାଣ୍ଡବଙ୍କ ସମସାମୟିକ ପ୍ରଥମ ଗୋନର୍ଦ୍ଦନଙ୍କଠାରୁ ତୃତୀୟ ଗୋନର୍ଦ୍ଧଙ୍କ ପର୍ଯ୍ୟନ୍ତ ୫୨ ଜଣ ରାଜାମାନଙ୍କର କାଳ ୧୨୬୬ ବର୍ଷ ଗତ ହୋଇଥିଲା । ତାହାହେଲେ ଦେଖନ୍ତୁ—

ପ୍ରଥମ ଗୋନର୍ଦ୍ଧନଙ୍କଠାରୁ ତୃତୀୟ ଗୋନର୍ଦ୍ଧଙ୍କ ପର୍ଯ୍ୟନ୍ତ — ୧୨୬୬
ତୃତୀୟ ଗୋନର୍ଦ୍ଧଙ୍କଠାରୁ ରାଜତରଙ୍ଗିଣୀର ରଚନା ସମୟ ପର୍ଯ୍ୟନ୍ତ — ୨୩୩୦
ଏ ହେଲା ରାଜତରଙ୍ଗିଣୀର ରଚନା ସମୟକୁ ଭାରତଯୁଦ୍ଧର ଗତକାଳ { ୩୫୯୬

ବର୍ତ୍ତମାନ ଖ୍ରୀଷ୍ଟାବ୍ଦ ୧୯୧୨ ବର୍ଷର ଅନୁପାତ ଶାଳିବାହନ ଶକର ୧୮୩୪ ବର୍ଷରୁ ପୂର୍ବୋକ୍ତ ରାଜତରଙ୍ଗିଣୀର ରଚନା ସମୟକୁ ପରିଭୁକ୍ତ କାଳ ୧୦୭୦ ବର୍ଷ ବିଯୁକ୍ତ କଲେ ରାଜତରଙ୍ଗିଣୀର ରଚନା କାଳ ହେଲା ୭୬୪ ବର୍ଷ ।

ରାଜତରଙ୍ଗିଣୀର ରଚନା କାଳକୁ ଭାରତ ଯୁଦ୍ଧର ଗତକାଳ ୩୫୯୬ ବର୍ଷରେ ବର୍ତ୍ତମାନ ସମୟକୁ ରାଜତରଙ୍ଗିଣୀର ରଚନାର ଗତକାଳ ୭୬୪ ବର୍ଷ ଯୁକ୍ତକଲେ ଭାରତ ଯୁଦ୍ଧର ଭୁକ୍ତକାଳ ହେଲା ୪୩୬୦ ବର୍ଷ ।

ବର୍ତ୍ତମାନ କଲ୍ୟବ୍ଦ ୫୦୧୩ ବର୍ଷରୁ ଭାରତ ଯୁଦ୍ଧର ପ୍ରୋକ୍ତ ଭୁକ୍ତକାଳ ୪୩୬୦ ବିଯୋଗିଲେ ଭାରତ ଯୁଦ୍ଧ ସମୟକୁ କଳିଯୁଗର ଭୋଗ-ସମୟ ସ୍ଥିରହେଲା ପୂର୍ବୋକ୍ତ ୬୫୩ ବର୍ଷ ।

---

[୧] ଶତେଷୁ ଷଟ୍‌ସୁ ସାର୍ଦ୍ଧେଷୁ ତ୍ର୍ୟଧିକେଷୁ ଚ ଭୂତଳେ ।
କଳେର୍ଗତେଷୁ ବର୍ଷାଣାଂ ଅଭୁବନ୍ କୁରୁପାଣ୍ଡବାଃ ॥
ଇତି । ରା.ତ.ପ୍ର.ତ. ୫୧ ଶ୍ଳୋକ ।

[୨] ଭାରତଂ ଦ୍ୱାପରାନ୍ତେଽଭୂଦ୍ ବାର୍ତ୍ତୟେତି ବିମୋହିତାଃ ।
କେଚିଦେତାଂ ମୃଷା ତେଷାଂ କାଳସଂଖ୍ୟାଂ ପ୍ରଚକ୍ରିରେ । ଇତି ।
ରା.ତ.ପ୍ର.ତ. ୪୯ ଶ୍ଳୋକ ।

[୩] ରା.ତ.ପ୍ର.ତ. ୫୦ ଶ୍ଳୋକ ପ୍ରାରମ୍ଭରୁ ଦେଖିଯାନ୍ତୁ ।

ଅତଏବ ଏହି ସିଦ୍ଧାନ୍ତ ଅନୁସାରେ ସ୍ଥିରତଃ କହିବାକୁ ହେବ ଯେ ମହାଭାରତ ଯୁଦ୍ଧ ଆଜକୁ ଅର୍ଥାତ୍ ୧୯୧୨ ଖ୍ରୀଷ୍ଟାବ୍ଦକୁ ୪୩୬୦ ବର୍ଷ ପୂର୍ବେ ଅର୍ଥାତ୍ ଖ୍ରୀଷ୍ଟପ୍ରତିଲୋମ ୨୪୪୮ ବର୍ଷରେ ସମ୍ଭବି ଥିଲା ।

ଅତଃପର ମହାଭାରତ ଯୁଦ୍ଧର ମାସାଦି ନିର୍ଦ୍ଧାରଣର ସତ୍ୟତା ଉପଲବ୍ଧି କରିବା ବଡ଼ କଠିନତର ହୋଇ ପଡ଼ିଅଛି । ଏ ସମ୍ବନ୍ଧରେ ଠିକ୍ ସୁଗମ ପ୍ରମାଣ ମୂଳ ଗ୍ରନ୍ଥରେ ଦେଖାଯାଉ ନାହିଁ । ପୁଣି ତଦନୁକୃତ ଅନ୍ୟାନ୍ୟ ଭାଷା-ଭାରତମାନଙ୍କରେ ପ୍ରତିପାଦିତ ପ୍ରମାଣମାନ ନିତାନ୍ତ ଅସଙ୍ଗତ ହୋଇ ପଡ଼ିଅଛି । ଅତଏବ ମୂଳ ଭାରତ ଓ ଅନ୍ୟାନ୍ୟ ଶାସ୍ତ୍ରମାନଙ୍କର ନାନା ଆଡୁ ନାନା ପ୍ରକାର ପ୍ରମାଣ ବାକ୍ୟମାନ ନେଇ ସିଦ୍ଧାନ୍ତରେ ଉପନୀତ ହେବାକୁ ହେବ ।

ସାରଳାଦାସ ମହାଶୟ ଇତଃପୂର୍ବେ ବିରାଟଦେଶସ୍ଥ ପାଣ୍ଡବମାନଙ୍କର ବୈରାଟିକ ରାଜସିଂହାସନରେ ଅଭିଷେକର ସମୟ ମକର ଶୁକ୍ଳ ଚତୁର୍ଥୀ ବୋଲି ଭ୍ରମବଶତଃ ନିର୍ଦ୍ଧାରିତ କରି ପୁଣି ମହାଭାରତ ଯୁଦ୍ଧର ଆରମ୍ଭ ମଧ ସେହି ତିଥିରେ ହୋଇଥିବାର ଲେଖି ଅଛନ୍ତି କିମ୍ବା ଅନୁଲେଖକମାନେ ଏପରି ଚିତ୍ରଣ କରିଦେଇ ଅଛନ୍ତି ।(୧) ଯାହାହେଉ ସାରଳା ମହାଭାରତରେ ଯୁଦ୍ଧାରମ୍ଭ ସମୟ ମକର ଶୁକ୍ଳ ଚତୁର୍ଥୀ ବୋଲି ଯାହା ପ୍ରତିପାଦିତ, ତାହା ସମ୍ପୂର୍ଣ୍ଣ ଭ୍ରାନ୍ତ ଓ ନିତାନ୍ତ ବିଚାରଶୂନ୍ୟ । ଏସବୁ ବିଚାର କରିନେଲେ ପାଣ୍ଡବମାନଙ୍କର ଯାବତୀୟ ଘଟନା ମୂଳକ ସାମୟିକ ବିବରଣରେ ସାରଳାଦାସଙ୍କ ଅଭିଜ୍ଞତା ଥିଲା, ଏହା ଆମ୍ଭେ ବିଶ୍ୱାସ କରି ନ ପାରୁଁ । ତାହା ନ ହେଲେ କି ଭୀଷ୍ମଙ୍କ ଶରଶଯ୍ୟାରେ ମାସାଧିକ କାଳ ଅବସ୍ଥାନ, ଉତ୍ତରାୟଣରେ ତନୁତ୍ୟାଗ ପ୍ରଭୃତି ବିଷୟମାନ ବିଚାର କରି ନ ଥାନ୍ତେ ?

ବଙ୍ଗ ଭାରତକର୍ତ୍ତା କାଶୀରାମଦାସ ଉଦ୍‌ଯୋଗପର୍ବରେ କହନ୍ତି କି ପାଣ୍ଡବମାନେ ପଞ୍ଚମୀ ତିଥିରେ (ଏ ସ୍ଥଳରେ ମାସ ଉକ୍ତ ନାହିଁ) କୁରୁକ୍ଷେତ୍ର ଯାତ୍ରାର୍ଥ ସମଗ୍ର ସୈନ୍ୟସହ ଉପପ୍ଲବ୍ୟରୁ ବାହାରି ଦିନତ୍ରୟରେ ଆସି ଯୁଦ୍ଧକ୍ଷେତ୍ରରେ ଉପଗତ ହେଲେ । (୨) ଅପିଚ

---

(୧) ମକର ଶୁକ୍ଳପକ୍ଷ ଚତୁର୍ଥୀ ବୁଧବାର ।
ରୋହିଣୀ ନକ୍ଷତ୍ର ଭୋଗ ଥିଲା ସେ ଦିନର ।।
ଭୀ.ପ. ୪ ପୃଷ୍ଠା ।

(୨) ସହଦେବ ବଲିଲେନ ଆଜ ଶୁଭକ୍ଷଣ ।
ପଞ୍ଚମୀ ଦିବସ ଆଜି ନକ୍ଷତ୍ର ଉତ୍ତମ ।।
ଆଜି ଯାତ୍ରା କରିବାରେ ହୟ ତ ଉଚିତ ।
ଆଜ୍ଞା କୈଲେ କରି ଯତ ସୈନ୍ୟ ସମାହିତ ।।
ଏତ ଶୁନି ଆଜ୍ଞା ଦେନ ଧର୍ମେର ନନ୍ଦନ ।
ସୈନ୍ୟ ସେନାପତି ଶୀଘ୍ର କରହ ସାଜନ ।।

ଦୁର୍ଯ୍ୟୋଧନ ପାଣ୍ଡବମାନଙ୍କର ସମରାଙ୍ଗଣରେ ଉପସ୍ଥିତିବାର୍ତ୍ତା ଚରମୁଖରୁ ଶୁଣି (୧) ଯାତ୍ରାର୍ଥ ସନ୍ନାହ କରିଥିଲେ ବୋଲି ମଧ କହିଛନ୍ତି । କିନ୍ତୁ ପୁଣି ଭୀଷ୍ମ ପର୍ବରେ ପ୍ରୋକ୍ତ ମାର୍ଗଶୀର୍ଷ କୃଷ୍ଣ ପଞ୍ଚମୀରେ କେବଳ କୌରବମାନେ ଯାତ୍ରା କରିଥିବାର ନିର୍ଦ୍ଦେଶ କରି ଅଛନ୍ତି । (୨) ଯଦିଚ କୁରୁକ୍ଷେତ୍ରରେ ପାଣ୍ଡବମାନଙ୍କର ସମୁପସ୍ଥିତି ବାର୍ତ୍ତା ଶ୍ରବଣ ପରେ ଦୁର୍ଯ୍ୟୋଧନ ଯାତ୍ରା କରିଥାନ୍ତି, ତାହାହେଲେ ନବମୀ ବା ଦଶମୀ ବୋଲି କହିବାର ଉଚିତ ଥିଲା । କାରଣ ପାଣ୍ଡବମାନେ ପ୍ରଥମତଃ ପ୍ରୋକ୍ତ ପଞ୍ଚମୀରେ ବାହାରି ତିନିଦିନ ପରେ କୁରୁକ୍ଷେତ୍ରରେ ସମୁପସ୍ଥିତ ହେବା ଇତଃପୂର୍ବେ ପ୍ରତିପାଦିତ ହୋଇଅଛି । ତଥାପି ସେ ସବୁ ଯାହାହେଉ ପ୍ରୋକ୍ତ ମାର୍ଗଶୀର୍ଷ କୃଷ୍ଣ ପଞ୍ଚମୀକୁ ଯୁଦ୍ଧର ପ୍ରାରମ୍ଭ ଦିବସ ବୋଲି ଗ୍ରହଣ କରାଯାଇ ନ ପାରେ । ପରନ୍ତୁ କାଶୀରାମଦାସ ମହାଶୟ ଏହି ତିଥିଟିକୁ କେବଳ ଯୁଦ୍ଧାରମ୍ଭର ଦିବସ ବୋଲି ଗ୍ରାହ୍ୟ କରିଅଛନ୍ତି ଏବଂ ଭୀଷ୍ମଦେବଙ୍କର ଶରଶଯ୍ୟାକରଣ ଓ ଶରୀରତ୍ୟାଗାଦିର ବ୍ୟବହିତ ସମୟମାନଙ୍କର ସୂକ୍ଷ୍ମ ବିଚାରପୂର୍ବକ ସିଦ୍ଧାନ୍ତ ନ କରି ଶାନ୍ତିପର୍ବ ପାଠ ଶେଷରେ ମାଘ ଶୁକ୍ଳ ଅଷ୍ଟମୀ ଦିବସରେ ଭୀଷ୍ମ ଶରୀର ତ୍ୟାଗ କରିଥିବାର ଲେଖିଅଛନ୍ତି ।(୩)

ଯଦି କାଶୀରାମଦାସଙ୍କ ମତରେ ମାର୍ଗଶୀର୍ଷ କୃଷ୍ଣ ପଞ୍ଚମୀ ଯୁଦ୍ଧର ପ୍ରଥମ ଦିବସ ହୁଏ, ତେବେ ଭୀଷ୍ମଙ୍କ ଯୁଦ୍ଧର ଅନ୍ତିମ ଦିବସ ସେହି ଚତୁର୍ଦ୍ଦଶୀ ଏବଂ ଦ୍ରୋଣଙ୍କ ଅନ୍ତିମ

---

ତିନି ଦିନେ ଆସି ପଥ ଶତେକ ଯୋଜନ ।
କୁରୁକ୍ଷେତ୍ରେ ଉତ୍ତରିଲ ପାଣ୍ଡୁ ପୁତ୍ରଗଣ ।। ଉଦ୍‌ଯୋଗପର୍ବ ।।

(୧) ଚର ଆସି ଦୁର୍ଯ୍ୟୋଧନେ କରେ ନିବେଦନ ।
କୁରୁକ୍ଷେତ୍ରେ ସାଜି ଆଇଲ ପାଣ୍ଡୁ ପୁତ୍ରଗଣ ।।
ଶୁନିୟା ନୃପତି ଆଜ୍ଞା ଦିଲ ଦୁଃଶାସନେ ।
ଶୀଘ୍ରଗତି ଡାକି ଆନ ସଭା ପରିଜନେ ।।
× × ×
ରାଜାରେ କହିଲ ତବେ ବୀର ଦୁଃଶାସନ ।
ତୃତୀୟ ପ୍ରହରେ ଯାତ୍ରା ଦିନ ଶୁଭକ୍ଷଣ ।।
ସାଜିବାରେ ଆଜ୍ଞା ଦିଲ ଯତ ସୈନ୍ୟଗଣ ।
ଜୟ ଧ୍ୱନି କରିଲେନ ସୈନ୍ୟ ହୃଷ୍ଟମନ ।। ଉଦ୍‌ଯୋଗପର୍ବ ।।

(୨) ମାର୍ଗଶୀର୍ଷ ମାସେ କୃଷ୍ଣା ପଞ୍ଚମୀ ଯେ ତିଥି ।
ମଘା ନାମେ ନକ୍ଷତ୍ରେ ସାଜିଲ ନରପତି ।।
ସାଜିଲ ସକଲ ସୈନ୍ୟ କୌରବ ପ୍ରଚଣ୍ଡ ।
କୁରୁକ୍ଷେତ୍ରେ ରହିଲ ଯୁଡ଼ିଆ ପୂର୍ବଦାଣ୍ଡ ।। ଭୀଷ୍ମପର୍ବ ।।

(୩) ମାଘ ମାସ ଶୁକ୍ଳାଷ୍ଟମୀ ତିଥି ଶୁଭଦିନେ ।
ତ୍ୟଜିଲେନ ଭୀଷ୍ମ ତନୁ ଚିନ୍ତି ନାରାୟଣେ ।। ଇତ୍ୟାଦି । ଶାନ୍ତିପର୍ବ ।

ଦିବସ ମାର୍ଗଶୀର୍ଷ  ଶୁକ୍ଳ ପଞ୍ଚମୀ ହେବ, ମାତ୍ର ଏହା ଯଥାର୍ଥ ନୁହେଁ । ଦ୍ରୋଣଙ୍କ ନିଧନ ସମୟକୁ ସତ୍ୟତଃ କୃଷ୍ଣ ଦ୍ୱାଦଶୀ ବା ତଦ୍‌ଗତ ତ୍ରୟୋଦଶୀ ହୋଇଥିଲା । ଅତଏବ ଦ୍ରୋଣପର୍ବର ୧୮୫ ଅଧ୍ୟାୟରେ ଉକ୍ତ ଅଛି କି, ଉଭୟ ସେନା ପ୍ରଗାଢ଼ତର ଅନ୍ଧକାର ମଧ୍ୟରେ ଯେ କୌଣସି ପ୍ରକାରେ ବହୁ ସମୟ ଯୁଦ୍ଧ କରି ଶ୍ରାନ୍ତ ହେବାରୁ ଯୁଦ୍ଧାଙ୍ଗଣରେ କେବଳ ନିଦ୍ରାଦେବୀଙ୍କ କ୍ରୋଡ଼ରେ ଆଶ୍ରୟ ନେଇଥିଲେ; ସମୟରେ ପୂର୍ବାଶାରେ ଚନ୍ଦ୍ର ଉଦିତ ହୋଇ ଆଲୋକ ପ୍ରଦାନ କଲାରୁ (୧) ତଦୀୟ ଅମୃତକିରଣରେ ଆଶ୍ୱସ୍ତ ବୀରଗଣ ପୁନଶ୍ଚ କ୍ଷଣକାଳ ଯୁଦ୍ଧଖେଳା କରିଥିଲେ । କିନ୍ତୁ ଚନ୍ଦ୍ରୋଦୟର ଅତ୍ୟଳ୍ପ କାଳପରେ ଅରୁଣ ଉଦିତ ହେବାରୁ ଉଭୟ ପକ୍ଷ ସ୍ୱ ସ୍ୱ ଶିବିରାଭିମୁଖରେ ପ୍ରସ୍ଥାନ କରିଥିଲେ । ଅତଏବ ସ୍ଥିର କରିବାକୁ ହେବ ଯେ ଦ୍ରୋଣଙ୍କର ପ୍ରୋକ୍ତ ରାତ୍ର ଯୁଦ୍ଧରେ ଶୁକ୍ଳ ପଞ୍ଚମୀ କିମ୍ବା ଶୁକ୍ଳ ପକ୍ଷର ଅନ୍ୟ ତିଥି ସର୍ବଥା ଅସମ୍ଭବ ।

ଏ ସମ୍ବନ୍ଧରେ ଆଉ କେତେଗୋଟି ଆନୁଷଙ୍ଗିକ ପ୍ରମାଣ ମଧ୍ୟ ମୂଳ ଗ୍ରନ୍ଥରୁ ମିଳୁଅଛି । ଭୀଷ୍ମଦେବ ଭାରତ ଯୁଦ୍ଧର ଏକାଦଶ ଦିବସରେ ଶରଶଯ୍ୟାଶାୟୀ ହୋଇ ଉତ୍ତରାୟଣ ପ୍ରାପ୍ତ୍ୟର୍ଥ ଅଷ୍ଟପଞ୍ଚାଶତ୍ ଦିବସ ଶରତଳ୍ପରେ ଅବସ୍ଥାନ କରିଥିଲେ ।(୨) କାଶୀରାମଦାସଙ୍କ ପ୍ରଦର୍ଶିତ ମତେ ମାର୍ଗଶୀର୍ଷ କୃଷ୍ଣ ପଞ୍ଚମୀରେ ଯୁଦ୍ଧାରମ୍ଭ ଏବଂ ମାଘ ଶୁକ୍ଳ ଅଷ୍ଟମୀରେ ଭୀଷ୍ମ ନିର୍ବାଣ ସ୍ଥିର କରିନେଲେ ତଦୀୟ ଶରତଳ୍ପାବସ୍ଥାନ ଦିବସ ପରିମାଣ ଅତିରେକତଃ ଏକୋନସପ୍ତତି କିମ୍ବା ସପ୍ତତି ହୋଇଯାଉଅଛି । ବ୍ୟାସଦେବଙ୍କ ନିର୍ଦ୍ଦିଷ୍ଟ ପ୍ରୋକ୍ତ ଅଷ୍ଟପଞ୍ଚାଶତ୍ ରାତ୍ରିର ପ୍ରମାଣରେ ଦୃଷ୍ଟିଦେଲେ ଏଥିରେ ପ୍ରତୀତି ଜନ୍ମେ ନାହିଁ । ଅପିଚ ପ୍ରୋକ୍ତ ଅଷ୍ଟପଞ୍ଚାଶତ୍ ଦିବସର ଦୃଢ଼ୀକରଣାର୍ଥ ଆଉ ଗୋଟିଏ ପ୍ରମାଣ ମଧ୍ୟ ମିଳୁଅଛି କି, ଅଷ୍ଟାଦଶଦିବସାବସାନ ଯୁଦ୍ଧ ନିଃଶେଷ ହେଲା ପ[illegible] ଯୁଧିଷ୍ଠିର ପଞ୍ଚାଶତ୍

---

(୧) [କ] ଜଘ୍ନୁଃଶୂରା ରଣେ ଶୂରାଂ ସ୍ତସ୍ମିନ୍ ତମସି ଦାରୁଣେ

ଦ୍ରୋଣପର୍ବ ୧୮୫ ଅଧ୍ୟାୟ ୨୩ ଶ୍ଳୋକ ।

[ଖ] ତେ କ୍ଷତ୍ରିୟାଃ କୁଣ୍ଡଳିନୋ ଯୁବାନଃ ପରସ୍ପରଂ ଶାୟକବିକ୍ଷତାଙ୍ଗାଃ ।
କୁମ୍ଭେଷୁ ଲୀନାଃ ସୁଷୁପୁର୍ଗଜାନାଂ କୁଚେଷୁ ଲଗ୍ନା ଇବ କାମିନୀନାଂ ॥
ତତଃ କୁମୁଦନାଥେନ କାମିନୀଗଣ୍ଡପାଣ୍ଡୁନା ।
ନେତ୍ରାନନ୍ଦେନ ଚନ୍ଦ୍ରେଣ ମାହେନ୍ଦ୍ରିଦିଗଲଙ୍କୃତା ॥

ଦ୍ରୋଣପର୍ବ ୧୮୫ ଅ: ୪୫।୪୬ ଶ୍ଳୋକ ।

ତତୋ ମୁହୂର୍ତ୍ତାଦ୍ ଭଗବାନ୍ ପୁରସ୍ତାଦ୍ ଶଶଲକ୍ଷଣଃ ।
ଋଶ୍ମିଜାଳଂ ମହଦ୍ ଚନ୍ଦ୍ରୋ ମନ୍ଦଂମନ୍ଦମିବାସୃଜଦ୍ ॥ ଇତ୍ୟାଦି ॥

(୨) ଅଷ୍ଟପଞ୍ଚାଶତଂ ରାତ୍ର୍ୟଃ ଶୟାନସ୍ୟାଦ୍ୟମେ ଗତାଃ ।
ଶରେଷୁ ନିଶିତାଗ୍ରେଷୁ ଯଥା ବର୍ଷଶତଂ ତଥା ।

ଆ.ପର୍ବ ୧୬୬ ଅଧ୍ୟାୟ ୨୭ ଶ୍ଳୋକ ।

ଦିବସ ମାତ୍ର ଗୃହରେ ରହି ଭୀଷ୍ମଙ୍କ ନିର୍ଯ୍ୟାଣ କାର୍ଯ୍ୟ ନିର୍ବାହାର୍ଥ ଆସିଥିଲେ ।(୧) ଅର୍ଥାତ୍ ଭୀଷ୍ମଙ୍କ ଯୁଦ୍ଧ ଶେଷ ପରେ ଯୁଦ୍ଧର ଅବଶିଷ୍ଟ କାଳ ଅଷ୍ଟଦିବସ ମାତ୍ର ଯୁଧିଷ୍ଠିର ଯୁଦ୍ଧକ୍ଷେତ୍ରରେ ଥିଲେ । ଅତଏବ ଭୀଷ୍ମଙ୍କ ଶରଶୟନ ଓ ନିର୍ଯ୍ୟାଣର ବ୍ୟବହିତ ସମୟ ଯେପରି ଅଷ୍ଟପଞ୍ଚାଶତ୍ ଦିବସ, ସେପରି ଯୁଧିଷ୍ଠିରଙ୍କ ଯୁଦ୍ଧକ୍ଷେତ୍ରରୁ ନିବୃତ୍ତି ଓ ଭୀଷ୍ମଙ୍କ ନିର୍ଯ୍ୟାଣ ଦର୍ଶନାର୍ଥ ଆଗମନର ବ୍ୟବହିତ ସମୟ ପଞ୍ଚାଶତ୍ ଦିବସ କେବଳ । ତଥାଚ ଏ ସ୍ଥଳରେ ଆଉ ଗୋଟିଏ ପ୍ରମାଣର କଥା ସୁଦ୍ଧା ବିଚାର୍ଯ୍ୟ । ଭୀଷ୍ମଦେବ ଶରତଳ୍ପଗତ ହେଲା ପରେ ଶ୍ରୀକୃଷ୍ଣ ପ୍ରସଙ୍ଗତଃ ଭୀଷ୍ମଙ୍କୁ କହି ଅଛନ୍ତି କି ଆପଣଙ୍କର ଆଉ ଷଟ୍‌ପଞ୍ଚାଶତ୍ ଦିବସ ମାତ୍ର ଆୟୁଃ ସମୟର ଅବଶିଷ୍ଟ ଅଛି । ତା ପରେ ଆପଣ ଦିବ୍ୟସ୍ଥାନ ପ୍ରାପ୍ତ ହେବେ ।(୨) ତେବେ ଏ ସ୍ଥଳରେ କେହି ଆଶଙ୍କା କରି ପାରନ୍ତି ଯେ ଇତଃପୂର୍ବେ ଶରତଳ୍ପଶୟନାବଧି ନିର୍ଯ୍ୟାଣଯାଏ ବ୍ୟବହିତ ସମୟ ଅଷ୍ଟପଞ୍ଚାଶତ୍ କହି ସମ୍ପ୍ରତି ଷଟ୍‌ପଞ୍ଚାଶତ ଦିବସ ବୋଲି କିପରି ଉକ୍ତ ହେଲା ? କିନ୍ତୁ ଏପରି ଆଶଙ୍କା ଅଭ୍ରାନ୍ତ ନୁହେଁ । କାରଣ ଏ ସ୍ଥଳରେ ଭୀଷ୍ମଙ୍କ ଶରତଳ୍ପପତନର ପ୍ରଥମ ଦିବସ ଓ ଅନ୍ତିମ ଦିବସ ଅର୍ଥାତ୍ ନିର୍ଯ୍ୟାଣୋତ୍ସବ ଦିବସ ଧାର୍ଯ୍ୟ ହୋଇ ନ ଥିବାରୁ ଆପଣଙ୍କର ସ୍ୱର୍ଗମନୋତ୍ସବ ହେବାପାଇଁ ମଧ୍ୟରେ ଛପନ ଦିନ ମାତ୍ର ବ୍ୟବଧାନ ଅଛି ବୋଲି ଶ୍ରୀକୃଷ୍ଣ ଜଣାଇଥିଲେ । ନଚେତ୍ ତଦୀୟ ଶରଶୟନର ଦ୍ୱିତୀୟ ବା ତୃତୀୟ ଦିବସରେ ଏପରି ପ୍ରକାଶ କରିଥିଲେ ବୋଲି କହିବାକୁ ହେବ । ଯେ କୌଣସି ପ୍ରକାରେ ହେଉ, ଭୀଷ୍ମଦେବଙ୍କର ଶରଶୟନ ଓ ନିର୍ଯ୍ୟାଣର ମଧ୍ୟଗତ ସମୟ ଅଠାବନ ଦିନରୁ ଅଧିକ ହୋଇ ନ ପାରେ । ଅତଏବ ମାର୍ଗଶିର କୃଷ୍ଣ ପଞ୍ଚମୀରେ ଯୁଦ୍ଧାରମ୍ଭ ବୋଲି କହିବା ଅସଙ୍ଗତ ।

ତେବେ ଆଉ କେଉଁ ତିଥିକି ଧରିଲେ ପ୍ରୋକ୍ତ ପ୍ରମାଣମାନଙ୍କ ସହ ମିଳନ ସଙ୍ଗତ ହେବ, ତାହା ବିଚାର କରିବା ଆବଶ୍ୟକ । ଭାରତସାବିତ୍ରୀ ନାମକ ଗୋଟିଏ ସଂଗ୍ରହ ପୁସ୍ତକରେ ଉକ୍ତ ଅଛି କି (୩) ହେମନ୍ତର ପ୍ରଥମ ମାସ ଅର୍ଥାତ୍ ମାର୍ଗଶୀର୍ଷ ଶୁକ୍ଳ ତ୍ରୟୋଦଶୀ

(୧) ଉଷିତ୍ୱା ଶର୍ବରୀଃ ଶ୍ରୀମାନ୍ ପଞ୍ଚାଶତ୍ ନଗରୋତ୍ତମେ ।
ସମୟଂ କୌରବାଗ୍ରସ୍ୟ ସସ୍ମାର ପୁରୁଷର୍ଷଭଃ ॥
ସନିର୍ଯଯୌ ଗଜପୁରାଦ୍ ଯାଜକୈଃ ପରିବାରିତଃ ।
ଦୃଷ୍ଟ୍ୱା ନିବୃତ୍ତମାଦିତ୍ୟଂ ପ୍ରବୃତ୍ତଂ ଚୋତ୍ତରାୟଣଂ ॥
ଆଦି.ପର୍ବ ୧୬୭ ଅଧ୍ୟାୟ, ୫୬ ଶ୍ଳୋକ ।

(୨) ପଞ୍ଚାଶତଂଷଟ୍ ଚ କୁରୁପ୍ରବୀର ଶେଷଂ ଦିନାନାଂ ତବଜୀବିତସ୍ୟ ।
ତତଃ ଶୁଭୈଃ କର୍ମଫଳୋଦୟୈସ୍ତ୍ୱଂ ସମେଷ୍ୟସେ ଭୀଷ୍ମ ବିମୁଚ୍ୟ ଦେହଂ ॥
ଶା.ପ. ୫୧ଅ: ୧୪ ଶ୍ଳୋକ ।

(୩) ହେମନ୍ତେ ପ୍ରଥମେ ମାସି ଶୁକ୍ଳପକ୍ଷ ତ୍ରୟୋଦଶୀ ।
ପ୍ରବୃତ୍ତଂ ଭାରତଂ ଯୁଦ୍ଧଂ ନକ୍ଷତ୍ରେ ଯମଦୈବତେ ॥
ଇତି ଭାରତସାବିତ୍ରୀ ।

ଦିନ ମହାଭାରତ ଯୁଦ୍ଧ ଆରବ୍ଧ ହୋଇଥିଲା । ଯଦି ଏଥିରେ ବିଶ୍ୱାସ ରଖିବାକୁ ହୁଏ, ତେବେ ପୂର୍ବୋକ୍ତ ବ୍ୟାସନିର୍ଦ୍ଦିଷ୍ଟ ଅଷ୍ଟପଞ୍ଚାଶତ୍ ଦିବସର ମିଳନ କିପରି ସଙ୍ଗତ ହେଉଅଛି, ଦେଖାଯାଉ । ମାର୍ଗଶୀର୍ଷ ଶୁକ୍ଳ ତ୍ରୟୋଦଶୀରେ ଯୁଦ୍ଧ ଆରବ୍ଧ ହୋଇଥିବାରୁ ଭୀଷ୍ମ ଦଶମ ଦିବସ ଅର୍ଥାତ୍ ପୌଷ କୃଷ୍ଣସପ୍ତମୀ ଦିନ ଶରତଳ୍ପଗତ ହେଲେ ।(୧) ଏହାଙ୍କ ଶରତଳ୍ପାବସ୍ଥାନର ଦିନସଂଖ୍ୟା ଅଷ୍ଟପଞ୍ଚାଶତ୍ ଦିବସ ଯୋଗକଲେ ତଦୀୟ ନିର୍ଯ୍ୟାଣ ଦିବସ ଫାଲ୍‌ଗୁନ କୃଷ୍ଣ ଚତୁର୍ଥୀ ଧାର୍ଯ୍ୟ ହେଉଅଛି । ଅପିଚ ମାର୍ଗଶୀର୍ଷ ଶୁକ୍ଳ ତ୍ରୟୋଦଶୀରେ ଯୁଦ୍ଧ ଆରବ୍ଧ ହୋଇ ପୌଷ ଅମାବାସ୍ୟା ଦିନ ଅବସନ୍ନ ହୋଇଥିବାରୁ ତତ୍ପରେ ଭୀଷ୍ମନିର୍ଯ୍ୟାଣ ପର୍ଯ୍ୟନ୍ତ ଯୁଧିଷ୍ଠିରଙ୍କ ନଗରାବସ୍ଥାନର ପଞ୍ଚାଶତ୍ ଦିବସ ଗଣନା ପୌଷ ଅମାବାସ୍ୟା ଠାରୁ ଫାଲଗୁନ୍ କୃଷ୍ଣ ଚତୁର୍ଥୀ ପର୍ଯ୍ୟନ୍ତ ଠିକ୍ ଧାର୍ଯ୍ୟ ହେଉଅଛି ଏବଂ ଶ୍ରୀକୃଷ୍ଣଙ୍କ ପ୍ରକାଶିତ ଭୀଷ୍ମଙ୍କ ଅବଶିଷ୍ଟ ଆୟୁଃ ପରିମାଣ ଷଟ୍‌ପଞ୍ଚାଶତ୍ ଦିବସ ମଧ ଏଥିରେ ପ୍ରମାଣିତ ହେଉଅଛି ।

କିନ୍ତୁ ସୂକ୍ଷ୍ମତଃ ବିଚାର ନ କରି ସ୍ଥୂଳ ବର୍ଚ୍ଚାରରେ କେବଳ ଆଶ୍ୱସ୍ତ ହୋଇଗଲେ ଏଥିରେ ଦୁଇଗୋଟି ମହତୀ ଆଶଙ୍କା ଜନ୍ମେ । ପ୍ରଥମଟି– ସର୍ବସାଧାରଣରେ ପ୍ରଚଳିତ ମାଘ ଶୁକ୍ଳ ଭୀଷ୍ମାଷ୍ଟମୀରେ ତଦୀୟ ନିର୍ଯ୍ୟାଣ ବିଶ୍ୱାସର ଉଲ୍ଲଘନ କିପରି ? ଦ୍ୱିତୀୟଟି– ଉତ୍ତରାୟଣ ସଂକ୍ରାନ୍ତି ବା ମକର ସଂକ୍ରାନ୍ତିର ପ୍ରାରମ୍ଭ ଫାଲଗୁନ ଶୁକ୍ଳ ଚତୁର୍ଥୀ ପର୍ଯ୍ୟନ୍ତ କିପରି ଚାଲିଗଲା ?

[୧] ମାଘେ ମାସି ଶିତାଷ୍ଟମ୍ୟାଂ ସଲିଳଂ ଭୀଷ୍ମବର୍ମଣେ ।
ଶ୍ରାଦ୍ଧଂ ଚ ଯେ ସଦା କୁର୍ଯ୍ୟୁଃ ତେ ସ୍ୟୁଃ ସନ୍ତତଭୋଗିନଃ ।।
[୨] ମାଘସ୍ୟ ଚାଷ୍ଟମୀଂ ଶୁକ୍ଳାଂ ଆରଭ୍ୟ ଦିନପଞ୍ଚକଂ ।
ତର୍ପୟେଦଥବାଷ୍ଟମ୍ୟାଂ ଭୀଷ୍ମଂ ଭାଗବତୋତ୍ତମଂ ।।

ଇତ୍ୟାଦି ସ୍ମୃତିସିଦ୍ଧ ବାକ୍ୟମାନଙ୍କଦ୍ୱାରା ମାଘ ଶୁକ୍ଳ ଅଷ୍ଟମୀ ପ୍ରାରମ୍ଭରୁ ଭୀଷ୍ମ ପଞ୍ଚକ ଓ ତହିଁରେ ତଦୁଦ୍ଦେଶ୍ୟରେ ତର୍ପଣ ଶ୍ରାଦ୍ଧାଦିର ଅବଶ୍ୟକର୍ତ୍ତବ୍ୟତ୍ୱ ପ୍ରତିପାଦିତ ହେଉଅଛି ସତ୍ୟ, କିନ୍ତୁ ଏଥିଦ୍ୱାରା ସେହି ଦିନ କେବଳ ଭୀଷ୍ମଙ୍କ ନିର୍ଯ୍ୟାଣ ହୋଇଥିଲା, ଏହା ପ୍ରମାଣିତ ନୁହେଁ । କାରଣ ମାଘ ଶୁକ୍ଳରେ ଯେପରି ଭୀଷ୍ମପଞ୍ଚକ ଧାର୍ଯ୍ୟ ହୋଇଅଛି, କାର୍ତ୍ତିକରେ ସୁଦ୍ଧା ସେହିପରି ।(୨) କାର୍ତ୍ତିକର ଭୀଷ୍ମପଞ୍ଚକରେ ତଦୀୟ ତର୍ପଣପୂଜାଦିର ଅବଶ୍ୟ କର୍ତ୍ତବ୍ୟତ୍ୱ ପ୍ରତିପାଦିତ ହୋଇଅଛି । ତେବେ ଏହି ଦିନ ମଧ ତାହାଙ୍କ ନିର୍ଯ୍ୟାଣର

---

(୧) ଫାଲ୍‌ଗୁନ୍ୟାଂ ନିହତୋ ଭୀଷ୍ମଃ କୃଷ୍ଣପକ୍ଷେ ତୁ ସପ୍ତମୀ - ଭା.ସା.
ଫାଲଗୁନ୍ୟାଂ - ଫାଲ୍‌ଗୁନୀ ନକ୍ଷତ୍ରରେ ।

(୨) କାର୍ତ୍ତିକରେ ଭୀଷ୍ମପଞ୍ଚକ ଯଥା- କର୍ତ୍ତବ୍ୟଂ କାର୍ତ୍ତିକେ ମାସି ଭବତା ଭୀଷ୍ମପଞ୍ଚକଂ ।
ପ୍ରବକ୍ଷାମି ମହାପୁଣ୍ୟଂ ବ୍ରତଂ ବିଧିମତାଂବର ।
ଭୀଷ୍ମେଣୈତଦ୍ ଯତଃ ପ୍ରାପ୍ତଂବ୍ରତଂ ପଞ୍ଚଦିନାତ୍ମକଂ ।
ସକାଶାଦ୍ ବାସୁଦେବସ୍ୟ ତେନୋକ୍ତଂ ଭୀଷ୍ମପଞ୍ଚକଂ । ଇତ୍ୟାଦି ।
ପଦ୍ମପୁରାଣ, ଉତ୍ତରଖଣ୍ଡ, ୧୨୪ ଅଧ୍ୟାୟ ଦେଖିବେ ।

ସମୟ ବୋଲି କେହି କେହି କହି ପାରନ୍ତି ? ତାହା କଦାଚ ସଙ୍ଗତ ନୁହେଁ । ଅତଏବ ଆମ୍ଭମାନଙ୍କର ବିଶ୍ୱାସ, ଶ୍ରୀକୃଷ୍ଣ ଭୀଷ୍ମଙ୍କ ସ୍ନେହ ବା ଭକ୍ତିର ଆତିଶଯ୍ୟରୁ ଏହି ଦିବ-ସମାନ ତଦୁଦ୍ଦେଶ୍ୟରେ କାର୍ଯ୍ୟ କରି ତାହାଙ୍କ ସଂପ୍ରୀତି ବଢ଼ାଇବା ପାଇଁ ଧାର୍ଯ୍ୟ କରି ଅଛନ୍ତି । ମାତ୍ର ଏହା ତାହାଙ୍କର ନିର୍ଯ୍ୟାଣର ଦିବସ ନୁହେଁ ।

ପ୍ରଥମ ଆଶଙ୍କାର ସମାଧାନ ସମ୍ୟକ୍ ବିଚାର କରିନେଲେ ଅବଶ୍ୟ ବିଶ୍ୱସନୀୟ ବୋଧହୁଏ । ତେବେ ଦ୍ୱିତୀୟ ଆଶଙ୍କାର ସମାଧାନ କଣ ? ଏହାର ଶୁଶ୍ରୂଷା ତାହାର ସଙ୍ଗେ ସଙ୍ଗେ ଛନ୍ତେ ।

ଆଗନ୍ତବ୍ୟଂ ଚ ଭବତା ସମୟେ ମମ ପାର୍ଥିବ ।
ବିନିବୃତ୍ତେ ଦିନକରେ ପ୍ରବୃତ୍ତେ ଚୋତ୍ତରାୟଣେ–
ଆନୁ-ପ. ୧୬୬ ଅଃ ୧୪ ଶ୍ଳୋକ ।

ନିବୃତ୍ତମାତ୍ରେତ୍ୱୟନେ ଉତ୍ତରେ ବୈ ଦିବାକରେ ।
ସମାବେଶୟଦାତ୍ମାନମାତ୍ମନ୍ୟେବ ସମାହିତଃ–
ଶା.ପ. ୪୭ ଅ: ୩ ଶ୍ଳୋକ ।

ଇତ୍ୟାଦି ବାକ୍ୟମାନଙ୍କରୁ ସ୍ପଷ୍ଟତଃ ଜଣାଯାଏ ଯେ, ଭୀଷ୍ମଦେବ ଉତ୍ତରାୟଣର ପ୍ରବେଶ ମାତ୍ରେ ଦେହତ୍ୟାଗ କରିଥିଲେ । ତେବେ ଉତ୍ତରାୟଣ ସଂକ୍ରାନ୍ତିର ପ୍ରବେଶ ସମଗ୍ର ମାଘ ଅତିକ୍ରମି ଫାଲ୍‌ଗୁନ କୃଷ୍ଣ ଚତୁର୍ଥୀ ପର୍ଯ୍ୟନ୍ତ କିପରି ଚାଲି ଯାଇଥିଲା ? ମେଷାଦି ସମସ୍ତ ସଂକ୍ରାନ୍ତିନିଚୟ ଜ୍ୟୋତିଃସିଦ୍ଧାନ୍ତଶାସ୍ତ୍ର ଅନୁସାରେ ସାୟନ ଓ ନିରୟନ (ସଂକ୍ରାନ୍ତି) ନାମରେ ଦ୍ୱିବିଧ ହୁଅନ୍ତି । ସର୍ବସାଧାରଣରେ ନିରୟନ ସଂକ୍ରାନ୍ତି ପ୍ରଚଳିତ । କିନ୍ତୁ ସିଦ୍ଧାନ୍ତବିଦ୍‌ମାନଙ୍କ ପକ୍ଷରେ ସାୟନ ସଂକ୍ରାନ୍ତି କେବଳ ପ୍ରତ୍ୟକ୍ଷଭୂତ । ଏହାକୁ କେବଳ ସେମାନେ ଠିକ୍ ମନେ କରନ୍ତି । ଅତଏବ କୌଣସି କୌଣସି ସିଦ୍ଧାନ୍ତଶାସ୍ତ୍ରମାନଙ୍କରେ ନିରୟନ ମକର ସଂକ୍ରାନ୍ତି ଅପେକ୍ଷା ସାୟନ ମକର ସଂକ୍ରାନ୍ତି ପବିତ୍ର ବୋଲି ଲେଖି ଅଛନ୍ତି । ଏଣୁ ବୋଧହୁଏ ପ୍ରଧାନ ଶ୍ରୁତବୃଦ୍ଧ ସକଳଶାସ୍ତ୍ରମର୍ମାଭିଜ୍ଞ ଭୀଷ୍ମଦେବ ଅୟନାଂଶରେ ସଂସ୍କୃତ ନ ହେଲେ ସଂକ୍ରାନ୍ତି ପରିଶୁଦ୍ଧ ନୁହେଁ ବୋଲି ଏହି ସାୟନ ମକର ସଂକ୍ରାନ୍ତିର ଅପେକ୍ଷାରେ ଫାଲ୍‌ଗୁନ ଯାଏ ରହିଥିବେ ।(୧)

ତଥାପି ଆଶଙ୍କା ହୋଇପାରେ ଯେ ସାୟନ ମକର ସଂକ୍ରାନ୍ତି ଗ୍ରାହ୍ୟ ହେଲେ ସୁଦ୍ଧା ଫାଲ୍‌ଗୁନ ମାସଯାଏ ତାହାର ପ୍ରାରମ୍ଭ ହୋଇ ନ ଥିଲା କି ? ତେବେ କହୁଁ, ଏଥିରେ

(୧) ସାୟନ ମକର ସଂକ୍ରାନ୍ତିର ପବିତ୍ରତ୍ୱ – ଯଥା –
ସଂସ୍କୃତୋଽର୍କୋଽୟନାଂଶୈର୍ଯଦ୍ ସଂସ୍କୃତୋଽର୍କସ୍ତୁ ତଦ୍‌ଭବେଦ୍ ।
ସଂସ୍କୃତାଦ୍ ମୃଗଗାଦର୍କାଦ୍ ପରା ମାସା ଉତ୍ତରାୟଣଂ ।
ସ୍ୟାଦ୍ ତଦ୍‌ବଦ୍ କର୍କଗାଦର୍କାଦ୍ ପରା ମାସା ଦକ୍ଷିଣାୟନଂ । ଇତ୍ୟାଦି । ସିଦ୍ଧାନ୍ତଶାସ୍ତ୍ର ।

ସେଭଳି ସନ୍ଦେହ ନାହିଁ । ସାୟନ ସଂକ୍ରାନ୍ତିମାନେ ଅୟନାଂଶର ହ୍ରାସ ଓ ବୃଦ୍ଧିର ପରିମାଣାନୁସାରେ ନିରୟନ ସଂକ୍ରାନ୍ତିର ସମୟ ଅପେକ୍ଷା ଢେର ପୂର୍ବେ ଓ ପରେ ହୋଇଥାନ୍ତି । ଏହା ସିଦ୍ଧାନ୍ତଶାସ୍ତ୍ରରେ ପ୍ରମାଣିତ ।(୧) ତେତେବେଳେ ଭଚକ୍ରର ପଶ୍ଚିମାବଲମ୍ବନ ହୋଇ ଥିବାରୁ ନିରୟନ ସଂକ୍ରାନ୍ତିର ପଶ୍ଚାତ୍ ବିପ୍ରକୃଷ୍ଟରେ ସାୟନ ମତେ ଉତ୍ତରାୟଣ ପ୍ରାରମ୍ଭ ହୋଇଥିଲା । ଦେଖନ୍ତୁ, ବର୍ତ୍ତମାନ କାଳରେ ଭଚକ୍ରର ପୂର୍ବାବଲମ୍ବନ ଯୋଗୁଁ ସାୟନସଂକ୍ରାନ୍ତି ନିରୟନସଂକ୍ରାନ୍ତି ପୂର୍ବରେ ହେଉଅଛି ।

ଏସବୁ ଦେଖିନେଲେ ଜଣାଯାଏ ଭୀଷ୍ମଦେବ ଅୟନାଂଶସଂସ୍କୃତ ରବିଙ୍କର ଉତ୍ତରାୟଣପ୍ରବେଶକାଳପ୍ରାପ୍ତି ସକାଶେ ଫାଲ୍‌ଗୁନଯାଏ ଶରତଳ୍ପରେ ଅବସ୍ଥିତ ଥିଲେ । ଠିକ୍ କହି ନ ପାରୁଁ, ଏପରି ବିଶ୍ୱାସରେ କିମ୍ବା ଅନ୍ୟାନ୍ୟ କୌଣସି ପ୍ରମାଣମାନ ପାଇ ହିନ୍ଦୀ ଭାରତକର୍ତ୍ତା ଚୌହାନ ସବଳ ସିଂହ ମହାଶୟ ଭୀଷ୍ମଙ୍କ ଦେହତ୍ୟାଗର ସମୟ ଫାଲ୍‌ଗୁନରେ ମନ୍ନିର୍ଦ୍ଧାରିତ ସମୟ ଅପେକ୍ଷା ଆହୁରି ଦୂରବର୍ତ୍ତୀ କରିଦେଇ ଅଛନ୍ତି ।(୨)

ଭୀଷ୍ମଙ୍କ ନିର୍ଯ୍ୟାଣ ସମ୍ବନ୍ଧରେ ନିର୍ଦ୍ଧାରିତ ପୌର୍ଣ୍ଣିମାନ୍ତ ମାସ ଗଣନାରେ ନିର୍ଣ୍ଣୀତ ଫାଲ୍‌ଗୁନ କୃଷ୍ଣ ଚତୁର୍ଥୀର ସଂପ୍ରତ୍ୟୟାର୍ଥ ଆଉ ଗୋଟିଏ ସରଳ ପ୍ରମାଣ ମିଳୁଅଛି । ଏହି ପ୍ରମାଣ ବାକ୍ୟଟିକୁ ସମ୍ୟକ୍ ବିଚାର କରିନେଲେ ପୂର୍ବୋକ୍ତ ସମୟ ଅସଙ୍ଗତ ବୋଧହୁଏ ନାହିଁ, ପ୍ରତ୍ୟୁତ ସମ୍ପୂର୍ଣ୍ଣ ବିଶ୍ୱାସ ଜନ୍ମେ । ଭୀଷ୍ମଦେବ ଅଷ୍ଟପଞ୍ଚାଶତ୍ ଦିବସ ଶରତଳ୍ପରେ ଶୟାନ ରହି ସାୟନକ୍ରମେ ଉତ୍ତରାୟଣ ପ୍ରବେଶ ମାତ୍ରେ କହି ଅଛନ୍ତି, 'ହେ ଯୁଧିଷ୍ଠିର, ବର୍ତ୍ତମାନ ସମାୟନୁକ୍ରମେ ମାଘମାସ । ଅତ୍ୟଳ୍ପ ଭୁକ୍ତ କୃଷ୍ଣ ପକ୍ଷର ତିନିଭାଗ (ବା ତୃତୀୟ ଭାଗ) ଅବଶିଷ୍ଟ ଥିବାରୁ ଏହିଟି ଶୁକ୍ଳପକ୍ଷ ପ୍ରାୟ ଧାର୍ଯ୍ୟ ।' ଇତ୍ୟାଦି ।

ମାଘୋଽୟଂ ସମନୁପ୍ରାପ୍ତୋ ମାସଃ ସୌମ୍ୟୋ ଯୁଧିଷ୍ଠିର ।
ତ୍ରିଭାଗଶେଷଃ ପକ୍ଷୋଽୟଂ ଶୁକ୍ଳୋ ଭବିତୁମର୍ହତି ॥

ଆନୁ. ପ. ୧୬୬ ଅ. ୨୮ ଶ୍ଳୋ: ।

ପୌର୍ଣ୍ଣିମାନ୍ତ ମାସଗଣନାରେ ନିର୍ଣ୍ଣିତ ଫାଲ୍‌ଗୁନ କୃଷ୍ଣ ଚତୁର୍ଥୀ ଅମାବାସ୍ୟାନ୍ତ ମାସଗଣନାରେ ମାଘ କୃଷ୍ଣ ଚତୁର୍ଥୀ କେବଳ ହୁଏ । ଶୁକ୍ଳାଦିମାସ ଓ କୃଷ୍ଣାଦିମାସରେ ଶୁକ୍ଳପକ୍ଷଟି ମାତ୍ର ଉଭୟ ମତରେ ମାସ ଗଣନାରେ ସମାନ ଧାର୍ଯ୍ୟ ହୋଇ କୃଷ୍ଣ ପକ୍ଷର ପ୍ରଭେଦ ରଖିଥାଏ । ଅତଏବ ପ୍ରୋକ୍ତ ଚତୁର୍ଥୀ ପୌର୍ଣ୍ଣିମାନ୍ତ ମାସଗଣନାନୁସାରେ ଫାଲ୍‌ଗୁନରେ ଅନ୍ତର୍ଭୁକ୍ତ ହେଲେ ସୁଦ୍ଧା ଚୈତ୍ର ଶୁକ୍ଳ ପ୍ରତିପଦ୍ ପ୍ରାରମ୍ଭରୁ ବର୍ଷାରମ୍ଭ ହେଉଥିବାରୁ ସେହି ଗଣନାନୁସାରେ ଶୁକ୍ଳାଦିମାସ କ୍ରମରେ ସେହି ତିଥିଟି ମାଘମାସରେ ଅନ୍ତର୍ଭୁକ୍ତ ବୋଲି 'ମାଘୋଽୟଂସମନୁପ୍ରାପ୍ତୋ' ଏହା କହି ଅଛନ୍ତି ଏବଂ ସେହି ଚତୁର୍ଥୀରେ

(୧) ଏହାର ଗଣନା କରି ଦେଖାଇବାକୁ ଗଲେ ପ୍ରବନ୍ଧ ଦୀର୍ଘ ହେବ ବୋଲି କ୍ଷାନ୍ତ ହେଲୁଁ ।
(୨) ଏହାଙ୍କ ଭାରତର ଶାନ୍ତିପର୍ବ ଅଷ୍ଟମାଧ୍ୟାୟ ପ୍ରାରମ୍ଭରୁ ଦେଖନ୍ତୁ, ଜାଣି ପାରିବେ ।

ଚନ୍ଦ୍ର ବଳୀୟାନ୍ ଥିବାରୁ ତାହାର ଶୁକ୍ଳତ୍ୱସତ୍ତା "ଶୁକ୍ଳୋ ଭବିତୁମର୍ହତି" ଏହିପରି ପ୍ରତିପାଦନ କରି ଅଛନ୍ତି ।

କିନ୍ତୁ ପାଠକେ ! ସମାହିତ ମନରେ ବୁଝିନେବେ, ଇତଃପୂର୍ବେ ବିରାଟପର୍ବ ପାଠାବସାନରେ ଭାରତ ଯୁଦ୍ଧର ସମୟ ନିର୍ଦ୍ଧାରଣର ସୂଚନାନୁକ୍ରମେ "ବ୍ରୂୟାଃ କର୍ଣ୍ଣ ଇତୋ ଗତ୍ୱା" ଇତ୍ୟାକାରକ ଭାରତୋକ୍ତ ପ୍ରମାଣରେ ପ୍ରମାଣିତ କରି ଶୀତକାଳର ସାମୁଦାୟିକ ବିଚାରରେ କହିଦେଇ ଅଛୁ କି ଭାରତ ଯୁଦ୍ଧ ହିମାତ୍ୟୟ ଓ ଶିଶିରାରମ୍ଭରେ ହୋଇଥିଲା । ମାତ୍ର ସେ ସ୍ଥଳରେ ସେପରି ନ କହି କେବଳ ଶୀତାରମ୍ଭରେ ହୋଇଥିଲା ବୋଲି କହିବାର ଥିଲା । [୧] ଟିପ୍‌ପଣୀରେ ଉଦ୍ଧୃତ ବାକ୍ୟରେ ଦେଖିନେବେ, ଅତ୍ରତ୍ୟ ଶିଶିର ଶବ୍ଦର ଅର୍ଥ ମାଘ ଫାଲ୍‌ଗୁନ ନେଲେ ଉତ୍ତରୋତ୍ତର ପ୍ରାକରଣିକ ସନ୍ଦର୍ଭର ଅସାମଞ୍ଜସ୍ୟ ଘଟୁଅଛି । ଅତଏବ ଶୀତକାଳ ଉଦ୍ଦେଶ୍ୟରେ କେବଳ ଏ ସ୍ଥଳରେ ଶିଶିର ଶବ୍ଦ ବ୍ୟବହୃତ ବୋଲିବାକୁ ହେବ । ଅପିଚ ପୂର୍ବଶଂସିତ ବାକ୍ୟାବଳୀ ମଧ୍ୟରେ ଯାହା କି ଶ୍ରୀକୃଷ୍ଣ "ସପ୍ତମାଚ୍ଚାପି ଦିବସାତ୍" ଇତ୍ୟାକାରକ ବାକ୍ୟରେ ଅଦ୍ୟାରଭ୍ୟ ସପ୍ତମ ଦିବସରେ ଅମାବାସ୍ୟା ହେବ, ସେଥିରେ ଯୁଦ୍ଧାରମ୍ଭ କରାଯାଉ ବୋଲି ଆଦେଶ କରି ଅଛନ୍ତି; ତଦନୁସାରେ ଯୁଦ୍ଧ ପ୍ରୟାଣର ଆୟୋଜନ ମାତ୍ର ହୋଇଥିଲା । କୌରବମାନଙ୍କର ଯୁଦ୍ଧକ୍ଷେତ୍ର ପ୍ରତି ଅନାଗମନ କିମ୍ବା ଅନ୍ୟ କୌଣସି କାରଣରୁ ସେହି ଦିନ ଯୁଦ୍ଧସଂମର୍ଦ୍ଦ ଘଟିଲା ନାହିଁ, ଏହା ବିଶ୍ୱାସ କରିବାକୁ ହେବ । ଅଥଚ ଏହାର ଆନୁକୂଲ୍ୟରେ ଏତାଦୃଶ ଆଉ ଗୋଟିଏ ପ୍ରମାଣ ମଧ୍ୟ ଦେଖନ୍ତୁ । କୌରବ ଓ ପାଣ୍ଡବମାନଙ୍କଦ୍ୱାରା ଯୁଦ୍ଧାର୍ଥ ରାମକୃଷ୍ଣ ଦୁହେଁ ନିମନ୍ତ୍ରିତ ହୋଇଥିଲେ । ଯୁଦ୍ଧରେ ଉପସ୍ଥିତ ରହିବା ଅନୁଚିତ ମନେ କରି ବଳରାମ ତୀର୍ଥଯାତ୍ରାର୍ଥ ପ୍ରସ୍ଥାନ କରିଥିଲେ । ଶ୍ରୀକୃଷ୍ଣ ମାତ୍ର ଏଣେ ଯୁଦ୍ଧସନ୍ନାହରେ ବ୍ୟାପୃତ ହେଲେ । ତେତେବେଳେ ସେ କହି ଅଛନ୍ତି କି ବର୍ତ୍ତମାନ ପୁଷ୍ୟା ନକ୍ଷତ୍ର ଅର୍ଥାତ୍ ମାର୍ଗଶୀର କୃଷ୍ଣ ପଞ୍ଚମୀ, ଅଦ୍ୟ ଦିବସରେ ଯୁଦ୍ଧାର୍ଥ ପ୍ରୟାଣ କର । କିନ୍ତୁ ଏଥିରେ ଯୁଦ୍ଧର ପ୍ରୟାଣ ଘଟି ନ ଥିଲା । ଶ୍ରୀକୃଷ୍ଣଙ୍କ ଉତ୍ତେଜନାପୂର୍ଣ୍ଣ କଥା ଶୁଣି ଶାନ୍ତପ୍ରକୃତି ଯୁଧିଷ୍ଠିର ଶାନ୍ତି ସକାଶେ ତାହାଙ୍କୁ ଦୂତ ଭାବରେ ହସ୍ତିନା ପ୍ରେରଣ

---

[୧] ବ୍ରୂୟାଃ କର୍ଣ୍ଣ ଇତୋ ଗତ୍ୱା ଦ୍ରୋଣଂ ଶାନ୍ତନବଂ କୃପଂ ।
ସୌମ୍ୟୋଽୟଂ ବର୍ତ୍ତତେ ମାସଃ ସୁପ୍ରାପ ଯବସେନ୍ଧନଃ ।।
ସର୍ବୌଷଧିବନସ୍ଫୀତଃ ଫଳବାନକ୍ଷମକ୍ଷିକଃ ।
ନିଷ୍ପଙ୍କୋ ରସବତ୍ତୋୟୋ ନାତ୍ୟୁଷ୍ଣଃ ଶିଶିରଃ ସୁଖଃ ।।
ସପ୍ତମାଚ୍ଚାପି ଦିବସାତ୍ ଅମାବାସ୍ୟା ଭବିଷ୍ୟତି ।
ସଂଗ୍ରାମୋ ଯୁଜ୍ୟତାଂ ତସ୍ୟାଂ ତାମାହୁଃ ଶକ୍ରଦେବତାଂ ।।
ଭା.ପ. ୧୪୧ ଅ: ୧୬-୧୯ ଶ୍ଳୋ: ।
[ ତ୍ରିଭାଗ-ତୃତୀୟ ଭାଗ-ଯଥା-ତ୍ରିଭାଗଶେଷାସୁନିଶାସୁ —
ଇତି କୁମାରସମ୍ଭବେ କାଳିଦାସଃ । ଏହାର ଟୀକା ଦେଖନ୍ତୁ । ]

କରିଥିଲେ । ବୋଧହୁଏ ଶ୍ରୀକୃଷ୍ଣ ଏହି ଦିନ କେବଳ ଉପପ୍ଳବ୍ୟରୁ ହସ୍ତିନା ପ୍ରୟାଣ କରିଥିଲେ । ଶ୍ରୀକୃଷ୍ଣଙ୍କ ହସ୍ତିନା ଯାତ୍ରାରେ ପ୍ରାୟ ଦୁଇ ଦିବସ ଅତୀତ ହୋଇଥିଲା । ସମ୍ଭବତଃ ଅଷ୍ଟମୀ ଦିନ ହସ୍ତିନାରୁ ପ୍ରତ୍ୟାବୃତ୍ତ ହେବା ସମୟରେ କର୍ଣ୍ଣଙ୍କୁ ସେ ପୂର୍ବୋକ୍ତ "ବ୍ରୂୟାଃ କର୍ଣ୍ଣ ଇତୋ ଗତ୍ୱା" ଇତ୍ୟାଦି ବାକ୍ୟରେ ଯୁଦ୍ଧସଂନାହାର୍ଥ ଆଦେଶ ଦେଇଥିଲେ । ଆହୁରି ଦେଖନ୍ତୁ ଯେ, ବଳରାମ ତୀର୍ଥଯାତ୍ରାରେ ଦ୍ୱିଚତ୍ୱାରିଂଶଦ୍ ଦିବସ ଅତିବାହିତ କରି ଯୁଦ୍ଧର ସର୍ବାବସାନ ଦୁର୍ଯ୍ୟୋଧନଙ୍କ ଜାନୁଭଙ୍ଗ ଦିବସରେ ଆସି କୁରୁକ୍ଷେତ୍ରରେ ଉପସ୍ଥିତ ହୋଇଥିଲେ । ସେ ମହୋଦୟ ପୁଷ୍ୟା ନକ୍ଷତ୍ରରେ ଅର୍ଥାତ୍ ମାର୍ଗଶୀର୍ଷ କୃଷ୍ଣ ପଞ୍ଚମୀରେ ଯାତ୍ରା କରି ଇତଃପୂର୍ବେ ସିଦ୍ଧାନ୍ତିତ ସର୍ବଶେଷ ଦିବସରେ ଶ୍ରବଣା ନକ୍ଷତ୍ର ଅର୍ଥାତ୍ ପୁଷ୍ୟ ଶୁକ୍ଳ ପ୍ରତିପଦା (ଯଦିଚ ତିଥିକ୍ଷୟ ହୋଇଥାଏ, ତେବେ ଦ୍ୱିତୀୟା) ଦିନ ପ୍ରତ୍ୟାବୃତ୍ତ ହୋଇଥିଲେ ।

ଅଭିଜ୍ଞ ପାଠକେ ! ବିଶ୍ୱାସ କରୁଁ, ଏସବୁ ସମ୍ୟକ୍ ବିଚାରପୂର୍ବକ ଦେଖିଲେ ଆପଣମାନଙ୍କର ସନ୍ଦେହ ତିରୋହିତ ହେବ । ମାର୍ଗଶୀର୍ଷ ଶୁକ୍ଳ ତ୍ରୟୋଦଶୀରେ ମହାଭାରତ ଯୁଦ୍ଧର ପ୍ରାରମ୍ଭ ଓ ପୌଷ ଅମାବାସ୍ୟାରେ ଅବସାନ ହୋଇଥିଲା ଏବଂ ଫାଲ୍‌ଗୁନ କୃଷ୍ଣ ଚତୁର୍ଥୀରେ ଭୀଷ୍ମଦେବଙ୍କ ନିର୍ଯ୍ୟାଣ ଘଟିଥିଲା ବୋଲି ଆପଣମାନେ ଅବଶ୍ୟ ବିଶ୍ୱସ୍ତ ହୃଦୟରେ ଗ୍ରହଣ କରିବେ । କିନ୍ତୁ ପରିଶେଷରେ ଅବଶିଷ୍ଟ ଆଉ ଗୋଟିଏ ସନ୍ଦେହାସ୍ପଦ କଥାର ସଂକ୍ଷିପ୍ତ ସମାଧାନ କରିଦେବା ଆବଶ୍ୟକ । ଇତଃପୂର୍ବେ ବିରାଟ ପର୍ବର ପାଠାବସାନରେ ପ୍ରମାଣ ପ୍ରଦର୍ଶନ ପୂର୍ବକ ପ୍ରକାଶ କରିଅଛୁଁ କି, ପାଣ୍ଡବମାନେ ଆଷାଢ଼ ପୂର୍ଣ୍ଣିମା ଦିନ ବିରାଟ ରାଜସିଂହାସନରେ ଅଭିଷିକ୍ତ ହେଲା ପରେ ବୈରାଟୀ ଉତ୍ତରା ଓ ଅଭିମନ୍ୟୁଙ୍କ ବିବାହ ସମ୍ପନ୍ନ ହୋଇଥିଲା । ଉତ୍ତରାଙ୍କ ପାଣିଗ୍ରହଣର ସପ୍ତମ ମାସରେ ଅଭିମନ୍ୟୁ ନିହତ ହୋଇଥିଲେ । ତେବେ ଯଦିଚ ଆଷାଢ଼ ପୂର୍ଣ୍ଣିମାର ଅବ୍ୟବହିତ ପରେ ଉତ୍ତରାଙ୍କ ବିବାହ ଏବଂ ପୌଷ କୃଷ୍ଣ ଏକାଦଶୀ ବା ଦ୍ୱାଦଶୀରେ ଅଭିମନ୍ୟୁଙ୍କ ନିଧନ ହୁଏ, ତେବେ ପୂର୍ବୋକ୍ତ ସେ ଉଭୟଙ୍କ ସହାବସ୍ଥାନର ସପ୍ରମାଣ ଷଟ୍‌ମାସ କିପରି ସାଧିତ ହେବ, ଏହି ଆଶଙ୍କା ଆସି ଉପସ୍ଥିତ ହୁଏ । ଏହାର ସମାଧାନ ଅନ୍ୟ ପ୍ରକାରରେ ହୋଇ ନ ପାରେ । ଶ୍ରାବଣାଦି ମାସ ଚତୁଷ୍ଟୟ ମଧ୍ୟରେ ଯେ କୌଣସି ଏକ ମାସରେ ଶାସ୍ତ୍ରସମ୍ମତ ଅଧିମାସ ତେବେ ହୋଇଥିଲା ବୋଲି କହିବାକୁ ହେବ । ତାହା ନ ହେଲେ ସର୍ବଜ୍ଞ ବ୍ୟାସଦେବଙ୍କ ମୁଖନିଃସୃତ ମହାଭାରତ ମଧ୍ୟଗତ ଅମୋଘ ବାକ୍ୟଗୁଡ଼ିକର ଅର୍ଥ ପ୍ରତିପତ୍ତି ଓ ଅନ୍ୟୋନ୍ୟସମନ୍ୱୟରେ ବାଧା ଘଟିବ । ଅତଏବ ସମ୍ପୂର୍ଣ୍ଣ ବିଶ୍ୱାସ ହୁଏ, ତଦା ବୈରାଟୀଙ୍କ ବିବାହ ଓ ଭାରତଯୁଦ୍ଧୋଦ୍‌ଯୋଗର ସମୟ ମଧ୍ୟରେ ଗୋଟିଏ ଅଧିମାସ ସମ୍ଭବିଥିଲା ।

ମହାଭାରତର କୁରୁକ୍ଷେତ୍ରରେ ସଂଘଟିତ ଭୁଜଦର୍ପ-କଣ୍ଡୁ-କରାଳ ମହାବୀର-ମାନଙ୍କର ଅଭିମୁଖୀନ ମହାଯୁଦ୍ଧ ବିଶେଷତଃ ଚାରିଗୋଟି ପର୍ବରେ ବର୍ଣ୍ଣିତ । ଏହି

ପର୍ବଚତୁଷ୍ଟୟର ନାମକରଣ ଦୌର୍ଯ୍ୟୋଧନିକ ସେନାପତିମାନଙ୍କ ନାମାନୁସାରେ ହୋଇଅଛି; କିନ୍ତୁ ଅନ୍ତିମ କୈତବଯୁଦ୍ଧର ପ୍ରକ୍ରିୟାରେ ସଂଯୁକ୍ତ ସୌପ୍ତିକ ପର୍ବର ନାମକରଣ ପାଣ୍ଡବୀୟ ବୀରମାନଙ୍କ ସୁପ୍ତାବସ୍ଥାସୂଚକ । ନିରପେକ୍ଷ ଭାବରେ ପରିସୂକ୍ଷ୍ମ ବିଚାର କରିନେଲେ ଏହି ଆହବିକ ପର୍ବମାନଙ୍କରେ ପୁନରୁକ୍ତି, ଅହେତୁ ବର୍ଣ୍ଣନାବାହୁଲ୍ୟ, ଅନୈସର୍ଗିକତା ବା ଅପ୍ରାକୃତିକତା, ଅତ୍ୟୁକ୍ତି ଓ ସ୍ଥାନେ ସ୍ଥାନେ ଅସଙ୍ଗତି ଦୋଷ ମଧ୍ୟ ଦେଖାଯାଏ ।

ମୂଳ ମହାଭାରତରେ ଭୀଷ୍ମପର୍ବର ପ୍ରାରମ୍ଭରୁ ସମାଗତ ବ୍ୟାସ ଦେବଙ୍କର ଅଯାଚିତ ଦିବ୍ୟଚକ୍ଷୁ ପ୍ରଦାନରେ ଧୃତରାଷ୍ଟ୍ର ଅନିଚ୍ଛୁକ ହୋଇ ତାହା ସଞ୍ଜୟଙ୍କୁ ଦେବାପାଇଁ ଜଣାଇବା, ତଦନନ୍ତର ବହୁବିଧ ଉତ୍ପାତ ଦର୍ଶନ ଏବଂ ଦୁଃଶକୁନ-ବର୍ଣ୍ଣନାରେ ଶକୁନୋପାଖ୍ୟାନ କଥିତ ହେଲା ପରେ ଚତୁର୍ଥାଧ୍ୟାୟଠାରୁ ଦଶମାଧ୍ୟାୟ ଶେଷ ପର୍ଯ୍ୟନ୍ତ ଜମ୍ବୁଖଣ୍ଡ ବିନିର୍ମାଣ ନାମକ ଉପପର୍ବରେ ଭୌମଗୁଣକଥନ, ସୁଦର୍ଶନଦ୍ୱୀପବିବରଣ, ଭୂମ୍ୟାଦିର ପରିମାଣ, ମାଲ୍ୟବନ୍ତପର୍ବତ-ବର୍ଣ୍ଣନ ଏବଂ ରମଣକ ହିରଣ୍ମୟ ଓ ଭାରତ-ବର୍ଷାଦିର ଯାବତୀୟ ବିବରଣ ଉକ୍ତ ଅଛି । ଅତଃପର ଭୂମିପର୍ବରେ ଶାକଦ୍ୱୀପ ଉତ୍ତରକୁରୁ ପ୍ରଭୃତିର ବର୍ଣ୍ଣନ, ସଞ୍ଜୟ ଧୃତରାଷ୍ଟ୍ରଙ୍କୁ ସାଂଗ୍ରାମିକ ବ୍ୟୂହ ବିବରଣ ପ୍ରଭୃତି ଜଣାଇବା ଏବଂ ଯୁଧିଷ୍ଠିର ଓ ଅର୍ଜୁନ, ଦୁର୍ଯ୍ୟୋଧନ ଓ ଦୁଃଶାସନାଦିଙ୍କର ଯୁଦ୍ଧସଂକ୍ରାନ୍ତ ସମ୍ବାଦ ଉକ୍ତ ଅଛି ।

ସାରଳାଦାସ ମହୋଦୟ ମୂଳାନୁପାତରେ ଏସବୁ ଏ ସ୍ଥଳରେ ଲେଖି ନାହାନ୍ତି ସତ୍ୟ, କିନ୍ତୁ ଏଥିରୁ ଅନେକ କଥା ଯାହା ଯାହା ଭାରତୀୟ ମୂଳ ଚରିତ ସଙ୍ଗେ ମିଶି ରହିଅଛି, ସେ ସବୁ ଅନ୍ୟ ସ୍ଥାନମାନଙ୍କରେ ପ୍ରାସଙ୍ଗିକ କ୍ରମରେ ପ୍ରକାଶ କରିଦେଇ ଅଛନ୍ତି । ପରନ୍ତୁ ଜମ୍ବୁଖଣ୍ଡ ବିନିର୍ମାଣାଦିର କଥା ଏବଂ ଶାକ-ଦ୍ୱୀପାଦିର ବିବରଣ ସେ ଏକାବେଳକେ ତ୍ୟାଗ କରିଦେଇ ଅଛନ୍ତି । ଭୀଷ୍ମ ପର୍ବର ସର୍ବପ୍ରଥମ ଜମ୍ବୁଖଣ୍ଡର ବିନିର୍ମାଣାଦି କଥା ଅନ୍ୟାନ୍ୟ ଯାବତୀୟ ଚରିତ୍ରରୁ ପୃଥଗ୍‌ଭୂତ ପରି ରହିଅଛି । ଏହା ସହିତ ପର୍ବାନ୍ତର୍ଗତ ଯୁଦ୍ଧବିବରଣର ତାଦୃଶ ସମ୍ବନ୍ଧ ଥିବାର ମଧ୍ୟ ଜଣାଯାଉ ନାହିଁ । ଅନୁମାନ ହୁଏ, ଏହି ହେତୁରୁ କେବଳ ସାରଳାଦାସ ମହାଶୟ ଏହାର କୌଣସି ପ୍ରକାର ବିବରଣ ଆଭାସତଃ ସୁଦ୍ଧା ନିଜ ଭାରତରେ ଦେଇ ନାହାନ୍ତି । କେବଳ ସାରଳାଦାସ କାହିଁକି, ବଙ୍ଗାଦି ଦେଶୀୟ ଭାରତକର୍ତ୍ତା କାଶୀରାମଦାସ ପ୍ରଭୃତି ସୁଦ୍ଧା ନିଜ ନିଜ ଭାରତରେ ଏସବୁ ଲେଖି ନାହାନ୍ତି । ସୁତରାଂ ସାରଳାଦାସ ମହାଶୟ ଶ୍ରୀକୃଷ୍ଣସମାଦେଶରେ ଯୁଦ୍ଧାର୍ଥ ସନ୍ନଦ୍ଧ ଅର୍ଜୁନ ସ୍ତୁତିପାଠରେ ଦୁର୍ଗାଙ୍କଠାରୁ ବରପ୍ରାପ୍ତ ହୋଇଥିବାର ସୁଦ୍ଧା ଯଥାସ୍ଥାନରେ ଯଥାଯଥ ଲେଖି ନାହାନ୍ତି ।[୧]

ବିସ୍ତୃତିପ୍ରିୟ କାଳ୍ପନିକ କଥାପ୍ରବୀଣ ସେହି ଦାସ କବି ମହୋଦୟ ଏସବୁ ପରିତ୍ୟାଗ କରି ଇତସ୍ତତଃ ସମାନୀତ, ସ୍ୱକଳ୍ପନାପ୍ରସୂତ, ସ୍ଥାନେ ସ୍ଥାନେ ଅସଙ୍ଗତିଯୁକ୍ତ ବହୁବିଧ

---

[୧] ମାତ୍ର ଅନ୍ୟ ସ୍ଥାନରେ ଅନ୍ୟ ମୁଖରେ ଦୁର୍ଗାଙ୍କର ଏହି ସ୍ତୁତିର ଭାବ ପ୍ରକାଶ କରି ଅଛନ୍ତି ।

ଅତିରିକ୍ତ ଚରିତ ଲେଖି ପର୍ବର କଳେବର ବଢ଼ାଇ ଅଛନ୍ତି । ସେ ଆମୂଳାନ୍ତ ବିବରଣ ଦେବା ଅନାବଶ୍ୟକ ମନେକରି କେବଳ ବିଷୟମାନଙ୍କର ଅବତରଣିକା ମାତ୍ର ପ୍ରକାଶ କରୁଅଛୁଁ । ଯଥା–

(୧) ଦୁର୍ଯ୍ୟୋଧନଙ୍କ କର୍ତ୍ତୃକ ଭୀଷ୍ମାଦିଙ୍କର ଖଡ଼୍‌ଗୋତ୍ତୋଳନରୂପକ ପରୀକ୍ଷା ।

(୨) ସୈନାପତ୍ୟାର୍ଥ ଭୀଷ୍ମଙ୍କ ସହ ଅଶ୍ୱତ୍ଥାମାଙ୍କ ବିବାଦ ।

(୩) ଭୂରିଶ୍ରବା ନାନା ତର୍କ ବିତର୍କ ପୂର୍ବକ ଶ୍ରୀକୃଷ୍ଣଙ୍କ ମହିମା ପ୍ରକଥନରେ ନୃସିଂହାବତାରର ଯାବତୀୟ କଥା କହିବା ।[୧]

(୪) ଭୂରିଶ୍ରବା ପ୍ରଭୃତିଙ୍କ ମୁଖରେ ଅର୍ଜ୍ଜୁନଙ୍କର ପ୍ରାକ୍ତନ ପରାକ୍ରମ କୀର୍ତ୍ତନ ।

(୫) ସେନାବିଭାଗତଃ ଦ୍ରୋଣ କର୍ଣ୍ଣାଦିଙ୍କୁ ସେନା ପ୍ରଦାନ କରିବା ପ୍ରଭୃତି କଥା ।[୨]

(୬) ଯୁଦ୍ଧର ଅନୁକୂଳ ସମୟରେ ଅସାମଞ୍ଜସ୍ୟ ସହ ଜ୍ୟୋତିଃଶାସ୍ତ୍ରୀୟ ନାନା ପ୍ରକାର କଥା ଏବଂ ପ୍ରଳୟ ଓ ସୃଷ୍ଟି ସର୍ଜ୍ଜନା ବିବରଣରେ ରାମକୃଷ୍ଣାବତାର ପ୍ରଭୃତିର ନାନା ପ୍ରକାର କଥା ।[୩]

(୭) ପାଣ୍ଡବମାନେ ବାରୁଣାବନ୍ତରୁ ପ୍ରସ୍ଥାନ କରି ସେନାପତି ଆଦି ନିର୍ଦ୍ଧାରଣ କରିବା ପ୍ରଭୃତିର ବିବରଣ ।[୪]

---

[୧] ଭୀଷ୍ମପର୍ବ ୭ ପୃଷ୍ଠାଠାରୁ ୧୩ ଯାଏ ଦେଖନ୍ତୁ ।

[୨] ଏସବୁ ଉଦ୍‌ଯୋଗ ପର୍ବରେ ସୁସମ୍ପନ୍ନ ହୋଇଅଛି । ଏ ସ୍ଥଳରେ ପୁନଃ ପ୍ରକଥନ ଅନାବଶ୍ୟକ ।

[୩] ଭୀ.ପ. ୧୭ ପୃଷ୍ଠା ଠାରୁ ୨୧ ପୃଷ୍ଠାଯାଏ ଦେଖନ୍ତୁ ।

[୪] ଏସବୁ ମଧ୍ୟ ଇତଃପୂର୍ବେ ଉଦ୍‌ଯୋଗ ପର୍ବରେ ସୁସମ୍ପନ୍ନ ହୋଇଅଛି । ସୁତରାଂ ଉପପ୍ଲବ୍ୟରୁ କେବଳ ପାଣ୍ଡବମାନେ ଏହି କାର୍ଯ୍ୟ ସାଧିତ କରିଥିଲେ । ଉପପ୍ଲବ୍ୟ କଥା କୁତ୍ରାପି ସାରଳାଦାସଙ୍କ ହୃଦୟକୁ ସ୍ପର୍ଶ କରି ନାହିଁ । ଉପପ୍ଲବ୍ୟରୁ ପାଣ୍ଡବମାନେ ଯୁଦ୍ଧାର୍ଥ ପ୍ରୟାଣ କରିଥିବାର ପ୍ରମାଣ-ଯଥା–

ଉପପ୍ଲବ୍ୟେ ତୁ ପାଞ୍ଚାଳୀ ଦ୍ରୌପଦୀ ସତ୍ୟବାଦିନୀ ।
ସହ ସ୍ତ୍ରୀଭିର୍ନିର୍ବବୃତେ ଦାସୀଦାସସମାବୃତା ।
କୃତ୍ୱା ମୂଳପ୍ରତୀକାରଂ ଗୁଲ୍ମୈଃ ସ୍ଥାବରଜଙ୍ଗମୈଃ ।
ସ୍କନ୍ଧାବାରେଣ ମହତା ପ୍ରୟଯୁଃ ପାଣ୍ଡୁନନ୍ଦନାଃ ।

ଉଦ୍‌ଯୋଗପର୍ବ ୧୫୦ ଅ:

ଏ ମହାଶୟ ଉଭୟ ପକ୍ଷର ଦିଗବସ୍ଥାନ ମଧ୍ୟ ବିପରୀତ କରି ଅଛନ୍ତି । ଯଥା–

ପୂର୍ବେ ପାଣ୍ଡବେ ପଶ୍ଚିମେ ମାନତକ୍ରବର୍ତ୍ତୀ ।
ପାଣ୍ଡବେ ଜୟନ୍ତା କୌରବେ ହସ୍ତିନା ସ୍ଥିତି ।। ଭୀ.ପ. ୩୧ ପୃ:

ମାତ୍ର ଏହା ଯଥାର୍ଥ ନୁହେଁ । ଯଥା

(୮) ହନୁମାନଙ୍କକର ଭାରା ସହନାର୍ଥ ପାଣ୍ଡବୀୟ ରଥର ପ୍ରତ୍ୟଙ୍ଗରେ ଦେବତାମାନେ ଅବସ୍ଥାନ କରିବା, ତଥାପି ରଥ ଭୂଗର୍ଭସ୍ଥ ହେବାରୁ ଭୀମସେନ ଉତ୍ତୋଳିବା ।[୧]

(୯) ପାଣ୍ଡବମାନଙ୍କର ଯୁଦ୍ଧ ପ୍ରୟାଣର ମଙ୍ଗଳାରୋପଣାଦିର କଥା ।[୨]

(୧୦) ମହାକାୟ ଆଞ୍ଜନେୟଙ୍କ ଭାରାଯୁକ୍ତ ରଥର ବହନାର୍ଥ ଶ୍ରୀକୃଷ୍ଣ ଜଳବୈକୁଣ୍ଠରୁ ଶଙ୍ଖ, ଗୋକ୍ଷୀରାଦି ଅଶ୍ୱଚତୁଷ୍ଟୟ ଅଣାଇବା ଏବଂ ସେମାନଙ୍କ ସୃଷ୍ଟି କ୍ରମ ।[୩]

(୧୧) ସାହାଯ୍ୟ ଦାନାର୍ଥ ସମାଗତ କଳିଙ୍ଗସେନ ନୃପତି ପ୍ରତି ଭୀମସେନଙ୍କ ଅତ୍ୟାଚାର କ୍ରମ ।

(୧୨) ଦୁର୍ଯ୍ୟୋଧନଙ୍କ ପ୍ରଶ୍ନରେ ଭୀଷ୍ମଦେବ ଦ୍ରୋଣାଦିଙ୍କର ମହାବୀରତ୍ୱ ପ୍ରକାଶ କରି କହିବା ।

(୧୩) ସାହାଯ୍ୟ ଦାନାର୍ଥ ତତ୍ର ଆଗତ କିରାତନୃପତିଙ୍କୁ ଶ୍ରୀକୃଷ୍ଣ କପଟରେ ନିହତ କରିବା ପ୍ରଭୃତି କଥା ।[୪]

ଅତଃପର ଭଗବଦ୍‌ଗୀତାଭିଧ ଉପପର୍ବର ଚତୁର୍ବିଂଶ ଅଧ୍ୟାୟ ହେଲା ପରେ ଭଗବଦ୍‌ଗୀତାର ପ୍ରାରମ୍ଭ । ଏଥିରେ ଯେ କୌଣସି ଗୁରୁତର କାର୍ଯ୍ୟର ସମାରମ୍ଭ ସମୟରେ

---

ପଶ୍ଚାନ୍ମୁଖାଃ କୁରବୋ ଧାର୍ତ୍ତରାଷ୍ଟ୍ରାଃ,
ସ୍ଥିତାଃ ପାର୍ଥାଃ ପ୍ରାଙ୍ମୁଖା ଯୋଧମାନାଃ ।
ଦୈତ୍ୟେନ୍ଦ୍ରସେନେବ ଚ କୌରବାଣାଂ,
ଦେବେନ୍ଦ୍ରସେନେବ ଚ ପାଣ୍ଡବାନାଂ । ଭୀ.ପ. ୨୦ ଅ:

[୧] ବିଶ୍ୱମୂର୍ତ୍ତି ନରସିଂହ ରୂପ ସେ ଧଇଲା ।
ଜାନୁ ପରେ ରଥ ଚକ ଟେକି ସେ ରଖିଲା ।। ଇତ୍ୟାଦି ।
ଭୀ.ପ. ୨୫ ପୃ: ।

[୨] ଏହା ମଧ୍ୟ ଉଦ୍‌ଯୋଗ ପର୍ବର ନିଷ୍ପନ୍ନ କଥା ।

[୩] ଶଙ୍ଖ ଗୋକ୍ଷୀର ଶ୍ୱେତ ଆବର କାମପାଳ ।
ଚାରି ଅଶ୍ୱ ମିଳିଲେ ଯେ ଆସି ତତକାଳ ।।ଭୀ.ପ. ୨୯ ପୃ:
କିନ୍ତୁ ଯଥାର୍ଥତଃ ଶ୍ରୀକୃଷ୍ଣଙ୍କର ଅଶ୍ୱଗୁଡ଼ିକର ନାମ ଏହା ନୁହେଁ । ଯଥା– ବଳାହକ ପ୍ରଭୃତି ସେମାନଙ୍କର ନାମ –
ବଳାହକଂ ମେଘପୁଷ୍ପଂ ଶୈବ୍ୟଂ ସୁଗ୍ରୀବମେବ ଚ ।
ଯୁକ୍ତାନ ବାଜିବରାନ୍ ଯତ୍ତଃ କବଚୀ ତିଷ୍ଠ ଦାରୁକ ।।
ଦ୍ରୋ.ପ. ୭୯ ଅ:

[୪] ନାରାୟଣ ଆଜ୍ଞାରେ କିରାତ ମୁଣ୍ଡଗଲା ।
ରାହୁ ତେଜ ପରାୟେ ଯେ ରଥରେ ଲାଗିଲା ।। ଭୀ.ପ. ୩୫ ପୃ:

ନିଜର ବିଶ୍ୱସ୍ତ ଦେବତାଙ୍କର ଆରାଧନା ପୂର୍ବକ କାର୍ଯ୍ୟରେ ପ୍ରବୃତ୍ତ ହେବା ଉଚିତ ବୋଲି ଶ୍ରୀକୃଷ୍ଣ-ସମାଦିଷ୍ଟ ବିଜିଗୀଷୁ ଅର୍ଜୁନ ସ୍ତୁତିପାଠରେ ଦୁର୍ଗାଙ୍କର ବରପ୍ରାପ୍ତ ହୋଇଥିଲେ । ଦାସ କବି ମହୋଦୟ ଏ ବିଷୟ ଏ ସ୍ଥଳରେ ନ ଲେଖି କିଞ୍ଚିତ୍ ବ୍ୟବଧାନରେ ଯୁଧିଷ୍ଠିରଙ୍କ ମୁଖରେ ଏହି ସ୍ତୋତ୍ରପାଠ ପ୍ରକାଶ କରିଅଛନ୍ତି, ତଥାପି ମୂଳ ସ୍ତୋତ୍ରଗତ ଭାବ ଓ କେତେକ ନାମ ମଧ୍ୟ ସାରଳାଦାସଙ୍କ କୃତ ସ୍ତୋତ୍ରରେ ବିଦ୍ୟମାନ ରହିଅଛି । ଏହା ପରେ ସଂପ୍ରାପ୍ତବର ଅର୍ଜୁନ ଯୁଦ୍ଧାର୍ଥ ରଥସ୍ଥ ହୋଇ ବନ୍ଧୁନାଶାର୍ଥ ବିଷଣ୍ଣ ହେବାରୁ ଶ୍ରୀକୃଷ୍ଣ ଭଗବଦ୍‌ଗୀତା ଯୋଗ କହିଥିଲେ । ତେଣେ ଯୁଧିଷ୍ଠିର ପାଦଚାରରେ ଭୀଷ୍ମ ପ୍ରମୁଖ ମହାରଥୀ ଗୁରୁଜନମାନଙ୍କଠାକୁ ଯାଇ ଯୁଦ୍ଧାର୍ଥ ଆଦେଶ ଗ୍ରହଣ କଲେ । କିନ୍ତୁ ସାରଳାଦାସ ମହାଶୟ ସାଧାରଣଙ୍କର ଅବୋଧ ଆଧ୍ୟାତ୍ମିକାଦିଜ୍ଞାନବହୁଳ ଭଗବଦ୍‌ଗୀତାକୁ ତ୍ୟାଗ କରି ଅଛନ୍ତି । "ଶ୍ରୀକୃଷ୍ଣ ଅର୍ଜୁନଙ୍କୁ ଭଗବଦ୍‌ଗୀତା କହିଲେ" ଏତିକିମାତ୍ର ସୂଚନା କରି ଅଛନ୍ତି । ତାଳପତ୍ର ପୁସ୍ତକରେ ଦେଖିବେ— ଦୁଇଗୋଟି ପଦ୍ୟରେ କେବଳ ପ୍ରସଙ୍ଗଟି ସୂଚିତ କରି କୌରବବାହିନୀ ପ୍ରତି ଯୁଧିଷ୍ଠିରଙ୍କର ପ୍ରୟାଣର କଥା ଲେଖି ଅଛନ୍ତି । କିନ୍ତୁ ଛାପା ପୁସ୍ତକରେ ଭଗବତ୍‌ଗୀତାର ସୂଚନା ଓ ଯୁଧିଷ୍ଠିରଙ୍କର ଶତ୍ରୁଚମୂ ପ୍ରତି ଗମନର ମଧ୍ୟରେ ରାଜା କୃଷ୍ଣସିଂହଙ୍କ କୃତ ଅବିକଳାନୁବାଦ ଗୀତା କିଞ୍ଚିତ୍ ପରିବର୍ତ୍ତନ ସହ ପ୍ରକ୍ଷିପ୍ତ ରହିଅଛି । ଗ୍ରନ୍ଥ ମଧ୍ୟରେ ଅନ୍ୟକୃତ ପାଠର ଏପରି ସାବହିତ୍‌ଥ ପ୍ରକ୍ଷେପ ସମାଲୋଚକମାନଙ୍କ ପକ୍ଷେ ବଡ଼ କଷ୍ଟକର ହୋଇପଡ଼େ । ଏହାର ସତ୍ୟାସତ୍ୟତା ଜାଣିବା ପାଇଁ ସେମାନଙ୍କର ବହୁ ବିଚାର, ସତର୍କତା ଓ ଗବେଷଣା ଆବଶ୍ୟକ ହୁଏ; ନତୁବା ଭ୍ରାନ୍ତ ଧାରଣାରେ ପଡ଼ି ଭ୍ରାନ୍ତ ମତ ପ୍ରକାଶ କରିବାକୁ ହୁଏ । ଅତଏବ ମୋର ପରମବନ୍ଧୁ ପଣ୍ଡିତ ମୃତ୍ୟୁଞ୍ଜୟ ରଥ ମହାଶୟ ସମ୍ୟକ୍ ବିଚାର କରି ନ ନେଇଁ ଶ୍ରୀଭଗବଦ୍‌ଗୀତା  ସାରଳାଦାସଙ୍କର ଅନୁବାଦ ବୋଲି ଅନେକ କଥା କହି ପକାଇ ଅଛନ୍ତି । ଏ ସମ୍ବନ୍ଧେ ରଥ ମହୋଦୟଙ୍କ ମତ ବିରଥ ହୋଇ ପଡ଼ିଅଛି ।

ସାରଳାଦାସଙ୍କ ପରି ବଙ୍ଗ ଭାରତକର୍ତ୍ତା କାଶୀରାମ ଦାସ, ହିନ୍ଦୀ ଭାରତ-କର୍ତ୍ତା ସବଳ ସିଂହ ଓ ତ୍ରୈଲଙ୍ଗ ଭାରତକର୍ତ୍ତା ତିକ୍କନା ସୋମଯାଜୀ ପ୍ରଭୃତି ମହୋଦୟମାନେ ମଧ୍ୟ ଭଗବଦ୍‌ଗୀତାର ଅନୁବାଦ ଲେଖିନାହାନ୍ତି । କେହି ବା ଏକ ପୃଷ୍ଠାରେ, କେହି ବା ଦୁଇ ପୃଷ୍ଠାରେ କେହି ବା ଦୁଇ ଚାରି ପଦ୍ୟରେ ବିଷୟଟିକୁ ସୂଚନାକ୍ରମରେ ବୁଝାଇ ଦେଇ ଅଛନ୍ତି । ତଥାପି ଏ ସମ୍ବନ୍ଧରେ ସାରଳାଦାସଙ୍କ ଲେଖା ନିତାନ୍ତ ଅଳ୍ପ । ଏ ମହାଶୟ ମୂଳଗ୍ରନ୍ଥ ପରି ଧର୍ମପ୍ରାଣ ଯୁଧିଷ୍ଠିରଙ୍କର ଶତ୍ରୁସେନା ପ୍ରତି ପ୍ରସ୍ଥାନ କହି ଅଛନ୍ତି ସତ୍ୟ, କିନ୍ତୁ ଭୀଷ୍ମାଦିଙ୍କସହ ଯୁଧିଷ୍ଠିରଙ୍କର କଥୋପକଥନାଦିକ୍ରମ ଓ ଅଭିପ୍ରାୟ ଭିନ୍ନ ପ୍ରକାର କରି କେତେକ ଅବାନ୍ତର କଥାରେ ବିସ୍ତୃତ କରିଅଛନ୍ତି ।

ଅତଃପର ଭୀଷ୍ମବଧ ଉପପର୍ବ । ଏଥିରେ ଯୁଦ୍ଧ ଆରବ୍‌ଧ ହୋଇଅଛି । ମୂଳଗ୍ରନ୍ଥ ସଦୃଶ ସାରଳାଦାସଙ୍କ ଭାରତରେ ମଧ୍ୟ ଦ୍ୱୈରଥ୍ୟଯୁଦ୍ଧ ବା ଦ୍ୱନ୍ଦ୍ୱଯୁଦ୍ଧ ସଂକୁଳଯୁଦ୍ଧ ପ୍ରଭୃତିର

ବର୍ଣ୍ଣନା ଯଥେଷ୍ଟ । ଅଥଚ ତାହାଙ୍କର ବର୍ଣ୍ଣନା ମୂଳ ଅପେକ୍ଷା ସ୍ୱତନ୍ତ୍ର କହିଲେ ଚଳେ । ଏହାର କିଛି ବିଶେଷ ପରିଚୟ ଅନ୍ୟ ପ୍ରକରଣରେ ଦେଖିବେ । ସାରଳାଦାସ ମହାଶୟ ନିଜର ଭୀଷ୍ମପର୍ବଟି କିପରି ଟିକିଏ ବୃହତ୍କାୟ ହେବ, ଏହି ବିଚାର କରି ଏ ସ୍ଥଳରେ ଯୁଦ୍ଧଦିଦୃକ୍ଷୁ ତାରାକ୍ଷି ପକ୍ଷୀ ସମ୍ବନ୍ଧରେ କଳ୍ପିତ ବିସ୍ମୟଜନକ ଚର୍ଯ୍ୟା ସହ ଶୁକ୍ରରାଜାଙ୍କର ବହୁ ଶାଖା-ପ୍ରଶାଖାଯୁକ୍ତ କଥାଗୁଡ଼ିଏ ଲେଖି ଅଛନ୍ତି ।

ପ୍ରଥମ ଦିବସର ଯୁଦ୍ଧରେ ଶଲ୍ୟଙ୍କଦ୍ୱାରା ବୈରାଟି ଉତ୍ତର ଏବଂ ଭୀଷ୍ମଙ୍କ ବ୍ରହ୍ମାସ୍ତ୍ରରେ ଉତ୍ତରାନୁଜ ଶ୍ୱେତ ନିହତ ହେବାରୁ ତତ୍‌ସହୋଦର ପରବଳାର୍ଦ୍ଦନ ଶଂଖ ଯୁଦ୍ଧାର୍ଥ ସନ୍ନଦ୍ଧ ହୋଇଥିଲେ । ମାତ୍ର ସାରଳାଦାସେ ପ୍ରଥମ ଦିନର ଯୁଦ୍ଧରେ କୌଣସି ମହାବୀର ନିହତ ହୋଇଥିବାର ପ୍ରକାଶ କରି ନାହାନ୍ତି । କିନ୍ତୁ ମୂଳରେ ଅନୁକ୍ତ ଶିଖଣ୍ଡିଙ୍କର ଅତି ଆଶ୍ଚର୍ଯ୍ୟଜନକ ଚର୍ଯ୍ୟା ପ୍ରକାଶ କରି ଅଛନ୍ତି କି ଶିଖଣ୍ଡି ମହାରାଜ ଶଲ୍ୟଙ୍କ ରଥକୁ କୁନ୍ତ-କୋଟୀରେ ଧରି ଚକ୍ରାକାରରେ ବୁଲାଇ ଉଦ୍ଧୃତ କରିଥିଲେ ।(୧)

ଦ୍ୱିତୀୟ ଦିବସ ଯୁଦ୍ଧର ସଂକ୍ଷିପ୍ତ ସାରଭୂତ କଥା ଏହି ଯେ ପ୍ରଥମଦିନ କୌରବମାନେ ଜୟଲାଭରେ ଉନ୍ମତ୍ତ ହେବାରୁ ଭୀଷ୍ମଙ୍କ ଅଲୌକିକ ପରାକ୍ରମରେ ଭୀତ ଯୁଧିଷ୍ଠିର ଯୁଦ୍ଧରୁ କ୍ଷାନ୍ତ ହେବା ପାଇଁ ଶ୍ରୀକୃଷ୍ଣଙ୍କୁ ନିଜର ଅଭିପ୍ରାୟ ନିବେଦନ କରିଥିଲେ । ଶ୍ରୀକୃଷ୍ଣ ତାହାଙ୍କୁ ସାନ୍ତ୍ୱନା ଦେଇ ଭୀଷ୍ମଙ୍କ ଔଦ୍ଧତ୍ୟ ପ୍ରଶମନାର୍ଥ ଶିଖଣ୍ଡିକୁ ସେନାପତି କଲେ । ଅର୍ଜ୍ଜୁନ କ୍ରୌଞ୍ଚାରୁଣବ୍ୟୂହ ନିର୍ମାଣ କଲେ ।(୨) ସୂର୍ଯ୍ୟୋଦୟ ସମୟରୁ ଭୀଷ୍ମ ଓ ଅର୍ଜ୍ଜୁନ ଦ୍ରୋଣ ଓ ଧୃଷ୍ଟଦ୍ୟୁମ୍ନ ପ୍ରଭୃତିଙ୍କ ଯୁଦ୍ଧ ପରେ ଭୀମସେନ ସସୈନ୍ୟ କଳିଙ୍ଗରାଜଙ୍କୁ ନିହତ କରିଥିଲେ । କିନ୍ତୁ ସାରଳାଦାସ ମହାଶୟ ଏହା ଅନ୍ୟଥା କରି ଅଛନ୍ତି । ସେ ଲେଖନ୍ତି, ଭୀମସେନ ଭୀମଯୁଦ୍ଧରେ ଅଶ୍ୱ ଓ ସୂତନିଧନରେ ସୋମଦତ୍ତଙ୍କୁ ପରାସ୍ତ କଲା ପରେ କୃପଙ୍କ ସାରଥି ଓ ରଥକୁ ବିଧ୍ୱସ୍ତ କରି ଘୋରତର ଯୁଦ୍ଧରେ ଅଳମ୍ବୁଷ ଓ ହଳାୟୁଧ ଦୈତ୍ୟକୁ ବିନିହତ କରିଥିଲେ ।(୩) ଭୂରିଶ୍ରବା ଦୁର୍ଦ୍ଧକ୍ଷଙ୍କୁ ଧୃତ ଓ ବଦ୍ଧ କରି ଘେନି ଯାଉଥିବା ସମୟରେ ଭୀମ ଶିଖଣ୍ଡିଙ୍କ ସହ ଧାଇଁଯାଇ ଗୁରୁ ଆଘାତରେ ଭୂରିଶ୍ରବାଙ୍କୁ ବିମୋହିତ କରି ପକାଇ

---

(୧) କୁନ୍ତମୁନେ ବୀର ଧରଇଲା ରଥ ତୋଳି ।
ଚକ୍ରାକୃତି କରି ଯେ ବୁଲାଏ ମହାବଳୀ ॥
ଦେଖିଣ ବିରସ ଯେ ଗାଲବର ସୁତ ।
ଶଲ୍ୟ ଓହରନ୍ତେ ଧାମଇ ସୋମଦତ୍ତ ॥ ଭୀ.ପ. ୧୦୧ ପୃଷ୍ଠା ।

(୨) ବ୍ୟୂହଃକ୍ରୌଞ୍ଚାରୁଣୋନାମ ସର୍ବଶତ୍ରୁ ନିବର୍ହଣଃ –
ଇତ୍ୟାଦି – ଭୀ.ପ. ୫୦ଅ: ୪୦ ଶ୍ଲୋକ ।

(୩) ଅଳମ୍ବୁଷ ହଳାୟୁଧ ଦୁହେଁ ହେଲେ ହତ ।
ଅନ୍ୟ ଦୁଇ ପୁତ୍ରେ ଭୀମେ ମାରନ୍ତି ଯେ କୃତ ॥ ଭୀ. ପ. ୧୦୮ ପୃ:
ମାତ୍ର ଏହା ଯଥାର୍ଥ ନୁହେଁ, ଅଳମ୍ବୁଷ ଦୈତ୍ୟ ଆହୁରି ଅନେକ ଦିନ ପର୍ଯ୍ୟନ୍ତ ଜୀବିତ ଥିଲେ ।

ଦୁର୍ଦ୍ଦକ୍ଷଙ୍କୁ ସଙ୍ଗେ ଘେନି ଆସିଲେ । ଭୀଷ୍ମ ପାଣ୍ଡବପକ୍ଷୀୟ ମନ୍ଦରଦେଶାଧିପ ଭୀମ ଚକ୍ରବର୍ତ୍ତିଙ୍କ ନିଧନ ସାଧନପୂର୍ବକ ଦଶ ସହସ୍ର ରଥିମାନଙ୍କୁ ନିହତ କଲାରୁ ଅର୍ଜୁନ ଶ୍ରୀକୃଷ୍ଣଙ୍କ ଛାମୁରେ ଚିନ୍ତିତ ହେଲେ । ଇତ୍ୟାଦି ।(୧)

ପ୍ରତ୍ୟହ ସୂର୍ଯ୍ୟୋଦୟରେ ଯୁଦ୍ଧାରମ୍ଭ ପ୍ରାୟଶଃ ସୂର୍ଯ୍ୟାସ୍ତ ସମୟରେ ଯୁଦ୍ଧ ବିରାମ ହେଲା ପରେ ବୀରମାନେ ସ୍ୱ ସ୍ୱ ଶିବିରରେ ଯୁଦ୍ଧ ସଂକ୍ରାନ୍ତ ସମ୍ବାଦ ପ୍ରଭୃତି ନାନା ପ୍ରକାର କଥା ଉତ୍‌ଥାପନ କରନ୍ତି । କିନ୍ତୁ ସାରଳାଦାସ କବି ଉଭୟ ପକ୍ଷ ପ୍ରତ୍ୟହ ଯୁଦ୍ଧ ଅନ୍ତେ ତତ୍ରତ୍ୟ ଶିବିରରେ ଅବସ୍ଥାନ କରୁଥିବା ନ କହି ଇନ୍ଦ୍ରପ୍ରସ୍ଥାଦିକୁ ପ୍ରସ୍ଥାନ କରୁଥିବାର ଲେଖି ଅଛନ୍ତି ।(୨) ଏ ସ୍ଥଳରେ ଭୀଷ୍ମଙ୍କ ପ୍ରଶ୍ନରେ ପୁରୋହିତଙ୍କ ମୁଖରେ ଜୀବହତ୍ୟା ଦୋଷ ନିବାରଣାର୍ଥ ତତ୍‌ପ୍ରତିକାର ରୂପକ ଅନ୍ନଦାନ ସମ୍ବନ୍ଧରେ ମୂଳଗ୍ରନ୍ଥରେ ଅନୁକ୍ତ ଶ୍ୱେତକଳ୍ପକ ରାଜାଙ୍କର ଗୋଟିଏ କଳ୍ପନାର ଚରିତ ମଧ୍ୟ ପ୍ରକାଶ କରିଅଛନ୍ତି ।(୩)

ତୃତୀୟ ଦିବସର ଯୁଦ୍ଧରେ ଭୀଷ୍ମ ଗାରୁଡ଼ବ୍ୟୂହ ଓ ଅର୍ଜୁନ ଅର୍ଦ୍ଧଚନ୍ଦ୍ର ବ୍ୟୂହ ନିର୍ମାଣ କଲାପରେ ଭୀମ ଓ ଘଟୋତ୍କଚ ବହୁ କୌରବ ସୈନ୍ୟ ବିନାଶିବା, ଭୀମସେନ ନିଶିତ ଶରାଘାତରେ ଦୁର୍ଯ୍ୟୋଧନଙ୍କୁ ଅଚେଷ୍ଟ କରିବାର ଦେଖି ଭୀଷ୍ମଦେବ ପ୍ରଥମତଃ ଦୁର୍ଯ୍ୟୋଧନଙ୍କୁ ଉଚ୍ଛୃଙ୍ଖଳତା ଓ ବୃଥାଭିମାନରେ ଅଜେୟ ଦେବବିକ୍ରମ ପାଣ୍ଡବମାନଙ୍କ ସହ ଯୁଦ୍ଧାରମ୍ଭ କଲେ ବୋଲି ଆକ୍ଷେପ କରି ପରେ ତଦୀୟ ଉତ୍ତେଜନାରେ ପାଣ୍ଡବବାହିନୀକୁ ସମ୍ପୂର୍ଣ୍ଣ ଅସ୍ତବ୍ୟସ୍ତ କରିବାରୁ ଶ୍ରୀକୃଷ୍ଣ ଚକ୍ରହସ୍ତରେ ତନ୍ନାଶାର୍ଥ ଧାବମାନ ହେବା, ଅର୍ଜୁନ ଶପଥଦାନପୂର୍ବକ ଶ୍ରୀକୃଷ୍ଣଙ୍କୁ ଅର୍ଦ୍ଧପଥରୁ ନିବର୍ତ୍ତାଇ ଆଣି କରାଳ ସମରରେ ବହୁ କୌରବବୀରଧ୍ୱଜିନୀ ବିନାଶ କରିବା ଉକ୍ତ ଅଛି ।(୪) ଅଷ୍ଟାଦଶ ଦିବସ ମଧ୍ୟରେ ତୃତୀୟ ଓ ନବମ ଦିନର ଯୁଦ୍ଧରେ ଏହା ହିଁ ବିଶେଷତ୍ୱ । ମହାଭାରତ ଯୁଦ୍ଧରେ ଅସ୍ତ୍ରଧାରଣ କରିବି ନାହିଁ ବୋଲି ଶ୍ରୀକୃଷ୍ଣ ପ୍ରତିଜ୍ଞା କରିଥିଲେ; କିନ୍ତୁ ତାହାଙ୍କୁ ଅଗତ୍ୟା ଅସ୍ତ୍ରଧାରଣ କରିବାକୁ ପଡ଼ିଥିଲା । ପ୍ରୟୋଗ ନ କଲେ ସୁଦ୍ଧା ଅସ୍ତ୍ର ଧାରଣ କରିଥିଲେ । ଶ୍ରୀକୃଷ୍ଣଙ୍କର ପ୍ରତିଜ୍ଞା ବ୍ୟତିରିକ୍ତ ପ୍ରୋକ୍ତ କାର୍ଯ୍ୟର କାରଣକୁ ଅନେକେ

---

(୧) ସାରଳାଦାସେ ପୂର୍ବ ଲିଖିତ ଯୁଧିଷ୍ଠିରଙ୍କ ଚିନ୍ତାର କଥା ଠିକ୍ ମନେ ରଖି ନ ପାରି ତାହା ଅର୍ଜୁନଙ୍କଠାରେ ଲଗାଇ ଅଛନ୍ତି ।

(୨) ବିଜୟ ଧର୍ମନନ୍ଦନ ଇନ୍ଦ୍ରପ୍ରସ୍ଥ ପୁରେ ।
ବିରସରେ ଚଳିଗଲେ ସବୁ ମହାବୀରେ ।। ଭୀ.ପ. ୧୧୧ ପୃଷ୍ଠା ।।
ରଣଭୂମି ଇନ୍ଦ୍ରପ୍ରସ୍ଥୁଁ ଦ୍ୱାଦଶ ଯେ ଯୁଣ ।
ତ୍ରିଦଣ୍ଡ ମଧ୍ୟେ ଆସି ମିଳିଲେ କୁରୁସୈନ୍ୟ ।। ୧୧୪ ପୃଷ୍ଠା ।।

(୩) ଭୀ.ପ. ୧୧୨ ପୃଷ୍ଠା ଦେଖନ୍ତୁ ଛାପା ପୁସ୍ତକରେ ।

(୪) ଭୀ.ପ. ୫୯ ଅଧ୍ୟାୟ ଦେଖନ୍ତୁ ।

ଅନେକ ପ୍ରକାର ମୀମାଂସିତ କରନ୍ତି । ନିଜର ପ୍ରତିଜ୍ଞାର ଭଙ୍ଗ ହେଉ ପଛକେ ଭକ୍ତର ପ୍ରତିଜ୍ଞା ରକ୍ଷା କରିବା ଗୁଣ ଶ୍ରୀକୃଷ୍ଣଙ୍କର ସୁପ୍ରସିଦ୍ଧ ଥିବାରୁ ଭୀଷ୍ମ ଯାହା କହିଥିଲେ, "ହେ କୃଷ୍ଣ ! ଆପଣଙ୍କୁ ମୁଁ ଯୁଦ୍ଧରେ ଅବଶ୍ୟ ଅସ୍ତ୍ରହସ୍ତ କରାଇବି," ତାହାହିଁ ଶ୍ରୀକୃଷ୍ଣ ରକ୍ଷା କରିଥିଲେ । ଏହା ଏକ ପକ୍ଷର ମତ । ଶ୍ରୀକୃଷ୍ଣଙ୍କୁ ଏହି ଯୁଦ୍ଧରେ ଅସ୍ତ୍ରହସ୍ତ କରାଇବା ପାଇଁ ଭୀଷ୍ମଙ୍କ ପ୍ରତିଜ୍ଞା ସ୍ପଷ୍ଟତଃ ମୂଳ ଗ୍ରନ୍ଥରେ ଉକ୍ତ ଥିବାର ଦେଖାଯାଉ ନ ଥିବାରୁ ଅନ୍ୟ ପକ୍ଷୀୟମାନେ କହନ୍ତି ଯେ, କି ପାଣ୍ଡବୀୟ କି କୌରବୀୟ ଉଭୟ ସେନା ମଧ୍ୟରେ ଅର୍ଜୁନଙ୍କ ଛଡ଼ା ଅନ୍ୟ କେହି ଭୀଷ୍ମଙ୍କ ସମକକ୍ଷ ନ ଥିଲେ । ମାତ୍ର ଅର୍ଜୁନ ଭୀଷ୍ମଙ୍କ ସହିତ ସ୍ୱଶକ୍ତିର ସମ୍ପୂର୍ଣ୍ଣ ପରାକାଷ୍ଠା ପ୍ରଦର୍ଶନ ପୂର୍ବକ ସମ୍ୟକ୍ ରୂପେ ଯୁଦ୍ଧ କରନ୍ତି ନାହିଁ; କାରଣ ଭୀଷ୍ମଦେବଙ୍କଠାରେ ତାହାଙ୍କର ଅନନ୍ୟସାମାନ୍ୟ ଭକ୍ତି ଥିଲା । ଭୀଷ୍ମ ସମ୍ବନ୍ଧତଃ ତାହାଙ୍କର ପିତାମହ; କେବଳ ପିତାମହ ଏହା ନୁହେ, ଆବାଲ୍ୟ ପିତୃହୀନ ପାଣ୍ଡବମାନଙ୍କର ଶୈଶବ ସମୟରେ ଭୀଷ୍ମ ପିତା ହୋଇଥିଲେ । ସମ୍ୟକ୍ ଜ୍ଞାନୋଦୟ ହେବାଯାଏ ପାଣ୍ଡବମାନେ ତାହାଙ୍କୁ ପିତା ବୋଲି କେବଳ ଜାଣିଥିଲେ । ସମ୍ପ୍ରତି ଭୀଷ୍ମ ଦୁର୍ଯ୍ୟୋଧନଙ୍କ ଅନୁରୋଧରେ ନିରପରାଧ ପାଣ୍ଡବମାନଙ୍କର କ୍ଷାତ୍ରଧର୍ମର କଠୋର ନିୟମାନୁସାରେ ଶତ୍ରୁରୂପେ ଅନିଷ୍ଟ ଘଟନାର୍ଥ ପ୍ରବୃତ୍ତ ହେଲେ ସୁଦ୍ଧା, ଧର୍ମତଃ ଭୀଷ୍ମ ଅଦ୍ୟ ସାଂଗ୍ରାମିକ କ୍ଷେତ୍ରରେ ଅର୍ଜୁନର ବଧ୍ୟ ହେଲେ ସୁଦ୍ଧା ସେ ପୂର୍ବ କଥା ସ୍ମରଣ କରି ଚିରାଭ୍ୟସ୍ତ ବିଶୁଦ୍ଧଭକ୍ତିବନ୍ଧନ ଛେଦନ କରି ନ ପାରି ଭୀଷ୍ମନିପାତାର୍ଥ ସୁସନ୍ନଦ୍ଧ ହୁଅନ୍ତି ନାହିଁ । ତାହାଙ୍କ ସହିତ ଯଥାସାଧ ମୃଦୁ ଯୁଦ୍ଧ କରୁଥାନ୍ତି । ଅତଏବ ଭୀଷ୍ମ ଅନାୟାସେ ପାଣ୍ଡବୀୟ ସେନାନିପାତରେ ନିରନ୍ତରାୟ ସମର୍ଥ ହୁଅନ୍ତି । ଏହା ଦେଖି ଶ୍ରୀକୃଷ୍ଣ ଅର୍ଜୁନଙ୍କର ସମୁତ୍ତେଜନାର୍ଥ ଅସ୍ତ୍ରହସ୍ତ ହେଲେ । ସେ ଯାହାହେଉ, ଏହି ସନ୍ଦର୍ଭଟିକୁ ସାରଳାଦାସେ ଯଥାର୍ଥତଃ ଯଥାସ୍ଥାନରେ ପ୍ରକାଶ କରି ନାହାନ୍ତି ।(୧) ସୁତରାଂ ଅନ୍ୟାନ୍ୟ ଯୁଦ୍ଧର କଥା ମଧ୍ୟ ଯଥାଯଥ ନ କହି ନିଜର ବୈଷମ୍ୟକାରିଣୀ ଇଚ୍ଛାମତେ ଲେଖିଯାଇଅଛନ୍ତି । ସେ କହନ୍ତି କି (୨) ତୃତୀୟ ଦିବସରେ ଶ୍ୱେତ ସେନାପତି ହେଲେ । (ମୂଳଗ୍ରନ୍ଥ ମତେ ଏ ସମୟକୁ ଶ୍ୱେତ ନିହତ ହୋଇଯାଇ ଅଛନ୍ତି ।) ଭୀଷ୍ମ ଓ ଅର୍ଜୁନ ଦ୍ରୋଣ ଓ ଶ୍ୱେତ ଓ ଶିଖଣ୍ଡି ଓ ଅଶ୍ୱତ୍ଥାମା ଇତ୍ୟାଦି କ୍ରମେ ଦ୍ୱୈରଥ୍ୟଯୁଦ୍ଧ ହେଲା ପରେ ଭୀମ ଜୟଦ୍ରଥକୁ ପରାସ୍ତ କଲେ, ଦୁର୍ଦ୍ଧର୍ଷ ଦୁକର୍ଣ୍ଣକୁ ନିହତ କଲେ, ଇତ୍ୟାଦି । ଅଥଚ ଏ ମହାଶୟ ଏହି

(୧) ଏ ସମ୍ବନ୍ଧରେ ବଙ୍ଗ ଭାରତକର୍ତ୍ତା କାଶୀରାମଦାସ ମଧ୍ୟ ସାରଳାଦାସଙ୍କ ସମକକ୍ଷ । ବ. ଭା. ୫୦୦ ପୃଷ୍ଠା ଦେଖନ୍ତୁ ।

(୨) ପରନ୍ତୁ ଛାପା ଓ ତାଳପତ୍ର ପୁସ୍ତକରେ ଯୁଦ୍ଧର ତୃତୀୟ ଓ ଚତୁର୍ଥ ଦିବସ ନିର୍ଦ୍ଧାରଣ ଜଟିଳ ଓ କେତେକ ଅସଙ୍ଗତ ହୋଇ ପଡ଼ିଅଛି । ଏହା ଅନୁଲେଖକମାନଙ୍କର ବୁଦ୍ଧି ଦୁର୍ବିଧତାର ଦୋଷ । ଏ ଗ୍ରନ୍ଥକର୍ତ୍ତାଙ୍କର ନୁହେଁ । ଭୀ.ପ. ୧୧୩ ପୃଷ୍ଠାଠାରୁ ଦେଖିଯାନ୍ତୁ ।

ଯୁଦ୍ଧାବସାନରେ ଭୀଷ୍ମଙ୍କ କର୍ତ୍ତୃକ ଧ୍ୱଜିମସ୍ତକ କାଉଁରି ଦେଶର ନୃପତି କାମଦେବ ରାଜାଙ୍କର କାଳ୍ପନିକ ପୂର୍ବଜନ୍ମ ବୃତ୍ତାନ୍ତମାନ ମଧ ପ୍ରକାଶ କରିଅଛନ୍ତି । (୧)

ଚତୁର୍ଥ ଦିବସ ଭୀଷ୍ମ ଓ ଅର୍ଜୁନ, ଭୀମ ଓ ଦୁର୍ଯ୍ୟୋଧନ, ସାତ୍ୟକି ଓ ଭୁରିଶ୍ରବାଙ୍କର ଦ୍ୱନ୍ଦ୍ୱଯୁଦ୍ଧ ପରେ ଧୃଷ୍ଟଦ୍ୟୁମ୍ନ ସାଂଯମନିକ ରାଜାଙ୍କ ପୁତ୍ରଙ୍କୁ ନିହତ କରିବା, ଭୀମ ଦୁର୍ଯ୍ୟୋଧନଙ୍କର ଜଳସନ୍ଧ ପ୍ରଭୃତି ଚତୁର୍ଦ୍ଦଶ ଭ୍ରାତୃମାନଙ୍କୁ ନିପାତ କରିବା, ଭୀଷ୍ମଙ୍କ ଆଦେଶରେ ସମସ୍ତ ସୁପ୍ରସିଦ୍ଧ ବୀରମାନେ ଏକତ୍ର ହୋଇ ଭୀମସେନଙ୍କୁ ଆକ୍ରମିବାରୁ ଭଗଦତ୍ତଙ୍କ ଯୁଦ୍ଧରେ ଭୀମ ମୋହିତ ହୋଇ ପଡ଼ିବା ଏବଂ ଘଟୋତ୍କଚଙ୍କର ମାୟିକ ଯୁଦ୍ଧ ପରିପାଟୀ ଉକ୍ତ ଅଛି । ଅଥଚ ଏହି ଯୁଦ୍ଧ ବର୍ଣ୍ଣନାବସାନରେ ବିଶ୍ୱୋପାଖ୍ୟାନରେ ଅର୍ଜ୍ଜୁନଙ୍କର ବିଷ୍ଣୁସତ୍ତା ଓ ନରନାରାୟଣକ୍ରମ ଉକ୍ତ ଅଛି ।(୨) କିନ୍ତୁ ସାରଳାଦାସ ଏହି ଦିବସରେ ସେନାପତି ଶ୍ୱେତ (ମୂଳଗ୍ରନ୍ଥ ମତେ ଏ ସମୟକୁ ଶ୍ୱେତ ଆଉ ଇହଲୋକରେ ନ ଥିଲେ) କୃପଙ୍କୁ ହତାହତ, ଅଶ୍ୱଥାମାଙ୍କୁ ପରାସ୍ତ ଓ ଦ୍ରୋଣଙ୍କୁ ନିତାନ୍ତ ପରାଭୂତ କରିବାର ଦେଖି ଦୁର୍ଯ୍ୟୋଧନ ନିଜ ବୀରମାନଙ୍କୁ ଆକ୍ଷେପ କରି ଦୁଃଖିତ ହେବାର କେବଳ ଲେଖି ଅଛନ୍ତି । ବିଶ୍ୱୋପାଖ୍ୟାନର କଥା ଏ ସ୍ଥଳରେ ଲେଖି ନାହାନ୍ତି ସତ୍ୟ, ମାତ୍ର ତାହାର ମୂଳ ସାରାଂଶ ଅନ୍ୟତ୍ର ଅନେକଥର ପ୍ରକାଶ କରିଅଛନ୍ତି ।

ପଞ୍ଚମ ଦିବସରେ ଭୀଷ୍ମ ମକରବ୍ୟୂହ ଗଠନପୂର୍ବକ ପ୍ରଥମତଃ ଭୀମଙ୍କ ସହ ସମରଖେଳା କରୁଁ କରୁଁ ଅର୍ଜ୍ଜୁନ ଆସି ଯୋଗ ଦେବାରୁ ଭୀଷ୍ମଙ୍କ ସହ ଦ୍ରୋଣ ଆସି ମିଶିଗଲେ । ତେତେବେଳେ ଭୀଷ୍ମଙ୍କ ସର୍ବତୋମୁଖ ପ୍ରଭାବ ପ୍ରଶମନାର୍ଥ ଶିଖଣ୍ଡି ଆସି ସନ୍ନିହିତ ହୋଇଗଲେ । ଏହି କ୍ରମରେ ବିକରାଳ ସଂଗ୍ରାମରେ ଅପେକ୍ଷାକୃତ ବହୁରଥୀ ଓ ମହାରଥୀ ଭୂଶାୟୀ ହୋଇ ପଡ଼ିଲେ । କିନ୍ତୁ ସେମାନଙ୍କର ନାମଧାମାଦି ଦିଆଯାଇ ନାହିଁ; କେବଳ ଯୁଯୁଧାନଙ୍କର ଦଶଗୋଟି ପୁତ୍ରମାନଙ୍କୁ ଭୁରିଶ୍ରବା ନିହତ କରିଥିବାର ନାମତଃ ଲେଖାଅଛି । ସାରଳାଦାସ ମଧ ନିହତ ବୀରମାନଙ୍କର ନାମ ଧାମ ଦେଇନାହାନ୍ତି, ସୁତରାଂ ବ୍ୟୂହର ନାମ ମଧ ଗ୍ରହଣ କରି ନାହାନ୍ତି । କେବଳ ବୈରାଟି ଶ୍ୱେତ ଭୀଷ୍ମକର୍ଣ୍ଣାଦିଙ୍କ ସହ ଅତିମାନୁଷ ଯୁଦ୍ଧ କରି ପରିଶେଷରେ ଦ୍ରୋଣଙ୍କ ବ୍ରହ୍ମାସ୍ତ୍ରରେ ମୃତ ହେବାର କହିଅଛନ୍ତି ।(୩)

---

(୧) ଭୀ.ପ. ଛାପା ୧୧୮ ପୃଷ୍ଠାଠାରୁ ୧୧୯ ପୃଷ୍ଠାଯାଏ ଦେଖନ୍ତୁ ।

(୨) ମୂଳଗ୍ରନ୍ଥ ଭୀଷ୍ମପର୍ବ ୬୫-୬୮ ଅଧ୍ୟାୟମାନ ଦେଖନ୍ତୁ ।

(୩) ମୂଳଗ୍ରନ୍ଥରେ ଦ୍ରୋଣପର୍ବରେ ପ୍ରତ୍ୟେକ ମହାରଥୀ ଓ ସେମାନଙ୍କର ସାରଥିମାନଙ୍କର ନାମ ବିଶେଷତଃ ଧ୍ୱଜାଦିର ପରିଚୟ ପ୍ରଦତ୍ତ ହୋଇଅଛି । ତଦନୁକରଣରେ ସାରଳାଦାସ ମହୋଦୟ ଏ ସ୍ଥଳରେ ନିଜ କପୋଳକଳ୍ପିତ ବ୍ୟକ୍ତିମାନଙ୍କୁ ତଦୀୟ ପୂର୍ବଜନ୍ମ ସୂଚନା ସହ ରଥୀମାନଙ୍କର ସାରଥି ରୂପେ ନିର୍ବାଚନ କରିଅଛନ୍ତି ।

ଭୀ.ପ. ୧୩୦-୧୩୧ ପୃଷ୍ଠା ଦେଖନ୍ତୁ ।

ଷଷ୍ଠ ଦିବସରେ ବିଶେଷତଃ ଭୀମଙ୍କ ଦ୍ୱାରା ଅସଂଖ୍ୟ ବୀର ନିହତ ହୋଇ ଥିଲେ, କିନ୍ତୁ ନାମତଃ ନକୁଳଙ୍କ ପୁତ୍ର ଶତାନିକ ଧାର୍ତ୍ତରାଷ୍ଟ୍ର, ଦୁଷର୍ଣ୍ଣଙ୍କୁ ନିହତ କରି ଥିବାର କେବଳ ଉକ୍ତ ଅଛି । କିନ୍ତୁ ସାରଳାଦାସ ଘଟୋତ୍କଚାଦିଙ୍କ ସଙ୍ଗେ(୧) ଅଳମ୍ବୁଷାଦିଙ୍କର ଯୁଦ୍ଧଖେଳା ଦେଖିଲା ପରେ ମୂଳୋକ୍ତ ଶ୍ରୀକୃଷ୍ଣଙ୍କର ଅସ୍ତ୍ରହସ୍ତତ୍ୱ ସ୍ମରଣ କରି ଅପକୃତ ବା ମୂଳାନୁକ୍ତ କଥାରେ ନିଜ କଳ୍ପନାର କୌତୁକାବହ ଖେଳା ପ୍ରଦର୍ଶନ କରିଅଛନ୍ତି । ତାହା ଅଯଥାର୍ଥ ହେଲେ ସୁଦ୍ଧା ଶ୍ରୋତୃବର୍ଗଙ୍କର ଉତ୍ତରୋତ୍ତର ଆକାଂକ୍ଷାଜନକ । କ୍ରମଶଃ ଅର୍ଜ୍ଜୁନଙ୍କ ଅମୋଘ ଶରଜାଳରେ ଭୀଷ୍ମ ଅବସନ୍ନ ଓ ବିମୁଖୀକୃତ ହୋଇ ନିଜର ଅବାରଣୀ ନାମ୍ନୀ ଶକ୍ତିକୁ ତୂଣରୁ ବାହାର କଲେ । ଏହି ଶକ୍ତିର କାରଣରେ ଅର୍ଜ୍ଜୁନ ଆପଣାର ଅସାମର୍ଥ୍ୟ ସୂଚନା କରିବାରୁ ଶ୍ରୀକୃଷ୍ଣ ଅପ୍ରତ୍ୟକ୍ଷ ଭାବରେ ଚକ୍ରରେ ସେହି ଶକ୍ତି ଛେଦନ କଲେ ।(୨)

ଏହା କେବଳ ଶ୍ରୀକୃଷ୍ଣଙ୍କର କୃତ୍ୟ ବୋଲି ଭୀଷ୍ମ ବିଚାରତଃ ସ୍ଥିର କରି ଯୁଦ୍ଧବିମୁଖତାରେ ରଥରୁ ଅବତୀର୍ଣ୍ଣ ହୋଇ ପଡ଼ିଲେ । ଦୁର୍ଯ୍ୟୋଧନ କାରଣ ଜିଜ୍ଞାସା କଲାରୁ କହିଲେ କି, ଶ୍ରୀକୃଷ୍ଣଙ୍କ ବିନା ମଦୀୟ ଏହି ଶକ୍ତିକୁ ନିବାରଣ କରିପାରିବେ, ଏପରି ଲୋକ କେହି ନାହାନ୍ତି । ଏଥିରେ ଇନ୍ଦ୍ରାଦି ସୁଦ୍ଧା ଅସମର୍ଥ । ସମ୍ପ୍ରତି ଶ୍ରୀକୃଷ୍ଣ ସଂଗ୍ରାମରେ ଅସ୍ତ୍ର ପ୍ରୟୋଗ କାର୍ଯ୍ୟରେ ଯୋଗଦେଇ ଶକ୍ତି ଛେଦନ କରିଅଛନ୍ତି, ତୁମ୍ଭେମାନେ ଆଉ ଯୁଦ୍ଧ କରିବାର ଭଲ ନୁହେ । ଇତ୍ୟାଦି । ତେତେବେଳେ ଦୁର୍ଯ୍ୟୋଧନ ନିରୁପାୟ ହୋଇ ତଦେକାନ୍ତଶରଣ ବଳରାମଙ୍କୁ ସ୍ମରଣ କଲେ । ବଳରାମ ଆସି ଉପଗତ ହେବାରୁ ତାହାଙ୍କୁ ଶ୍ରୀକୃଷ୍ଣଙ୍କର ଅତ୍ୟାଚାର ନିବେଦନ କଲେ । ବଳରାମ କ୍ରୋଧପରବଶତାରେ ପାଣ୍ଡବଙ୍କ ସହ ଯୁଦ୍ଧାର୍ଥ ଉଦ୍ୟତ ହେଲେ, ଭୀମାଦି ମଧ କ୍ରୁଦ୍ଧ ହୋଇ ଉଠିଲେ । ଶ୍ରୀକୃଷ୍ଣ ସମସ୍ତଙ୍କୁ ପ୍ରଶାନ୍ତ କରି ମୁଁ ଶସ୍ତ୍ର ଧରି ନାହିଁ ବୋଲି ରାମଙ୍କୁ ଜଣାଇଲେ । ବଳରାମ ଏଥିର ସତ୍ୟାସତ୍ୟତା ଜାଣିବା ପାଇଁ ଦ୍ରୋଣ ପ୍ରଭୃତିଙ୍କୁ ମନ୍ତବ୍ୟ ଜିଜ୍ଞାସା କଲାରୁ ସେମାନେ କହିଲେ କି, ଆମ୍ଭେ କେହି ଶ୍ରୀକୃଷ୍ଣଙ୍କୁ ଅସ୍ତ୍ରହସ୍ତ ଦେଖିନାହୁଁ । ତା ପରେ ରାମ ପ୍ରତ୍ୟକ୍ଷତା ସମ୍ବନ୍ଧରେ ଭୀଷ୍ମଙ୍କୁ ପ୍ରଶ୍ନ କଲେ । ସେ କହିଲେ, ମୁଁ ଦେଖିପାରି ନାହିଁ ସତ୍ୟ, କିନ୍ତୁ ଶ୍ରୀକୃଷ୍ଣଙ୍କ ବିନା ଅନ୍ୟ କେହି କୌଣସି ପ୍ରକାରେ ମୋର ଶକ୍ତି ଛେଦନ କରିପାରିବେ

---

(୧) ଇତଃପୂର୍ବେ ଦ୍ୱିତୀୟ ଦିନ ଯୁଦ୍ଧରେ ଅଳମ୍ବୁଷ ନିହତ ହୋଇଛନ୍ତି ବୋଲି ଲେଖାଅଛି । ପୁଣି ଏ ସ୍ଥଳରେ ଅଳମ୍ବୁଷ ଯୁଦ୍ଧ କରିବାର ଉଲ୍ଲିଖିତ ଦେଖାଯାଏ କିନ୍ତୁ ବିଶ୍ୱାସ ହୁଏ ନାହିଁ ଯେ, ସାରଳାଦାସ ଏପରି ଲେଖି ଅଛନ୍ତି, ଏହା ଅନୁଲେଖକମାନଙ୍କର ମତି ଦୌର୍ବଲ୍ୟର ବିଷମ ଫଳ ହୋଇଥିବ ।

(୨) ଅଦୃଶ୍ୟରେ ସୁଦର୍ଶନ କରି ଶୂନ୍ୟ ଗତି ।
ପଡ଼ିବାରୁ ଦହ୍ୟ ହେଲା ଭୀଷ୍ମଙ୍କ ଶକତି ।।

ଭୀ.ପ. ୧୩୮ ପୃଷ୍ଠା ଦେଖନ୍ତୁ ।

ନାହିଁ, ଏହା ନିଃସନ୍ଦେହ । ଅତଏବ ମୁଁ କହେଁ, ଶ୍ରୀକୃଷ୍ଣ କେବଳ ମୋର ଅମୋଘ ଶକ୍ତିକୁ ବିଚ୍ଛିନ୍ନ କରିଅଛନ୍ତି । ଏହା ଶୁଣି ବଳରାମ ନିତାନ୍ତ କ୍ରୁଦ୍ଧ ହେଲେ । ବୃଥା ଦୋଷାରୋପଣ କରୁଅଛ ବୋଲି ଭୀଷ୍ମଙ୍କ ପ୍ରତି ମୁଷଳପ୍ରହାରାର୍ଥ ଉଦ୍ୟତ ହେଲେ । ଇତ୍ୟାଦି ।(୧) ସପ୍ତମ ଦିବସରେ (୨) ଭୀଷ୍ମ ମଣ୍ଡଳବ୍ୟୂହ ନିର୍ମାଣ କରିଥିଲେ ସୁଦ୍ଧା ଅର୍ଜୁନ ଦୁର୍ଦମ୍ୟ ପ୍ରଭାବରେ କୌରବବାହିନୀକୁ ନିତାନ୍ତ କ୍ଷତବିକ୍ଷତ କଲାରୁ ଦୁର୍ଯ୍ୟୋଧନ ସ୍ୱପକ୍ଷୀୟ ରାଜାମାନଙ୍କୁ ଉତ୍ତେଜିତ କଲେ । ତଦୀୟ ଉତ୍ତେଜନାରେ ଅଳମ୍ବୁଷ ଓ ସାତ୍ୟକି ଦୁର୍ଯ୍ୟୋଧନ ଧୃଷ୍ଟଦ୍ୟୁମ୍ନ ଇତ୍ୟାଦି କ୍ରମରେ ଅନ୍ୟୋନ୍ୟ ପ୍ରତିଭଟ ଯୁଗ୍ମବୀରମାନଙ୍କର ଘୋର ଦ୍ୱନ୍ଦ୍ୱ ଯୁଦ୍ଧ ଘଟିଥିଲା । ସାରଳାଦାସ ଭଟପ୍ରତିଭଟମାନଙ୍କର ନାମ ନିର୍ଦ୍ଦେଶ ଅନ୍ୟଥା କରିଥିଲେ ସୁଦ୍ଧା ଦ୍ୱନ୍ଦ୍ୱଯୁଦ୍ଧ ପରିପାଟୀପ୍ରାୟ ସମାନ ଲେଖିଅଛନ୍ତି । କିନ୍ତୁ ମୂଳଗ୍ରନ୍ଥାନୁମତେ ଏହି ଦିବସ ଦ୍ରୋଣଙ୍କ ଦ୍ୱାରା ବିରାଟପୁତ୍ର ଶଙ୍ଖ ନିହତ ହୋଇଥିବାର ଏ ସ୍ଥଳରେ ଲେଖି ନାହାନ୍ତି । ମୂଳଗ୍ରନ୍ଥମତେ ନିର୍ଦ୍ଦିଷ୍ଟ ଦିବସରେ ବୀରମାନଙ୍କ ଯୁଦ୍ଧକ୍ରମର ଅନ୍ୟଥାକରଣ କେବଳ ସାରଳାଦାସଙ୍କ ଭାରତରେ ଦେଖାଯାଏ, ଏହା ନୁହେ । ବଙ୍ଗାଦି ଭାରତରେ ମଧ ଏହିପରି ସମଧିକ ସ୍ଥାନରେ ଦେଖାଯାଏ । ଯେଉଁମାନେ ମୂଳଗ୍ରନ୍ଥର ଅବିକଳାନୁକରଣରେ ଲେଖି ଅଛନ୍ତି, ସେମାନଙ୍କ ଭାରତରେ ମାତ୍ର ଏହା ମୂଳର ସମାନ ଥାଇପାରେ । ମାତ୍ର ଯେଉଁମାନେ ମୂଳଗ୍ରନ୍ଥର ସ୍ଥୂଳ କଥାକୁ ମାତ୍ର ଆଶ୍ରୟ କରି ଲେଖିଯାଇଅଛନ୍ତି, ସେ ସମସ୍ତେ ପ୍ରାୟ ଏହିଭଳି ଚିତ୍ରଣ କରିଥିବେ ସନ୍ଦେହ ନାହିଁ । ଧୃତ ବଙ୍ଗ ଭାରତକର୍ତ୍ତା ସାରଳାଦାସଙ୍କ ପରି କେତେକ ସ୍ଥଳରେ ନିହତ ବୀରମାନଙ୍କର ନିଧନ ସମ୍ବନ୍ଧ ନିର୍ଦ୍ଦେଶ ସୁଦ୍ଧା ଅନ୍ୟଥା କରିଅଛନ୍ତି । ଏହାର ପ୍ରମାଣସ୍ୱରୂପ ଗୋଟିଏ

---

(୧) ବଳରାମ ଯୁଦ୍ଧର ପ୍ରଥମ ଦିନଠାରୁ ତୀର୍ଥଯାତ୍ରା କରିଅଛନ୍ତି । ଏହାର ପ୍ରମାଣ ଇତଃପୂର୍ବେ ଦିଆଯାଇଅଛି । ସାରଳାଦାସ ମହାଶୟ ତାହା ଅବଗତି କରିପାରି ନାହାନ୍ତି । ଅତଏବ ଚରିତକୁ ଅକ୍ରମରେ ଚାଳିତ କରି ନେଇ ଅଛନ୍ତି । ତଥାଚ ପ୍ରକାଶ କରି ଅଛନ୍ତି କି, ବଳରାମ ଏହି କଳହ ପରେ ତୀର୍ଥଯାତ୍ରା କରିଥିଲେ । ଭୀଷ୍ମପର୍ବ ୧୮୭ ପୃଷ୍ଠା ଦେଖନ୍ତୁ ।

(୨) ଷଷ୍ଠ ଦିବସ ଯୁଦ୍ଧରେ ସାରଳାଦାସ ମହାଶୟ ଭୀଷ୍ମଙ୍କ ଶକ୍ତିନିବାରଣମୂଳକ ଯେପରି ଗୋଟିଏ ଅମୌଳିକ କଥାର ଉତ୍‌ଥାପନା କରି ଅଛନ୍ତି, ବଙ୍ଗ ଭାରତକର୍ତ୍ତା କାଶୀରାମଦାସ ମଧ ପ୍ରୋକ୍ତ ଦିବସରେ ପ୍ରୋକ୍ତ ଅସ୍ତ୍ରଶକ୍ତିର ପ୍ରଶମନାର୍ଥ ସେପରି ଗୋଟିଏ କଳ୍ପିତ କଥାର ଅବତାରଣା କରି ଅଛନ୍ତି । ସେ ଲେଖି ଅଛନ୍ତି କି, ଭୀଷ୍ମ ଗୋଟିଏ ଦୁର୍ନିବାର ଅସ୍ତ୍ର ପ୍ରୟୋଗ କଲାରୁ ସମସ୍ତେ ପ୍ରତିକାରରେ ଅସମର୍ଥ ହୋଇ ଭୀତ ହେଲେ । ଶ୍ରୀକୃଷ୍ଣଙ୍କ ଆଦେଶରେ ସମସ୍ତେ ଅସ୍ତ୍ରତ୍ୟାଗପୂର୍ବକ ଯୁଦ୍ଧବିମୁଖତାରେ ସମର ଆଡ଼େ ପୃଷ୍ଠ ଦେଇ ରହିଲେ । କିନ୍ତୁ ଭୀମ ଗଦାହସ୍ତରେ କ୍ରୋଧରେ ଉଠିଲେ । ଯୁଦ୍ଧରେ ନିଶ୍ଚେଷ୍ଟତା କେବଳ ପ୍ରୋକ୍ତ ଅମୋଘାସ୍ତ୍ରର ପ୍ରତିକାର, ଏହା ଭୀମ ମାନିଲେ ନାହିଁ । ତେତେବେଳେ ଶ୍ରୀକୃଷ୍ଣ ରଥରୁ ଡେଇଁପଡ଼ି ଭୀମଙ୍କୁ ଓଟାରି ନିଶ୍ଚେଷ୍ଟ କରି ରଖିଲେ । ଇତ୍ୟାଦି । ଭୀଷ୍ମପର୍ବ ୫୧୧-୫୧୨ ପୃଷ୍ଠା ଦେଖନ୍ତୁ ।

କଥା ମାତ୍ର ଉଲ୍ଲେଖ କରୁଅଛୁଁ । ମୂଳଗ୍ରନ୍ଥ ମତରେ ବିରାଟ ରାଜପୁତ୍ର ଶଙ୍ଖ ଯୁଦ୍ଧର ସପ୍ତମ ଦିବସରେ ନିହତ ହୋଇଥିଲେ ଏବଂ ତଦଗ୍ରଜ ଉତ୍ତର ପ୍ରଥମ ଦିବସରେ ନିହତ ହୋଇଥିଲେ; ମାତ୍ର ବଙ୍ଗ ଭାରତକର୍ତ୍ତା ଏ ଦୁହିଁଙ୍କୁ ଦ୍ୱିତୀୟ ଦିବସ ଯୁଦ୍ଧରେ ବିନିପାତ କରାଇଅଛନ୍ତି । (୧) ତଥାପି ସତ୍ୟର ଅନୁରୋଧରେ କହିବାକୁ ହେବ ଯେ, ମୂଳାନୁମତ ଯଥାତଥ୍ୟର ଅନ୍ୟଥାକରଣରେ ସାରଳାଦାସ ସର୍ବାପେକ୍ଷା ଧୂରୀଣ ଅଟନ୍ତି ।

ଏ ମହାଶୟଙ୍କ କୃତ ମହାଭାରତରେ ଅଷ୍ଟମ ଦିବସରେ ଯୁଦ୍ଧପ୍ରକ୍ରିୟା ସୁସ୍ପଷ୍ଟତଃ ପୃଥକ୍‌ଭୂତ ଦେଖାଯାଉନାହିଁ । ସପ୍ତମ ଦିବସର ଯୁଦ୍ଧର ବୃତ୍ତାନ୍ତରେ ଏହା ଅନ୍ତରିତ ହୋଇ ରହିଯାଇଅଛି । ବୋଧହୁଏ ଗ୍ରନ୍ଥକର୍ତ୍ତା ଏପରି ଲେଖିନଥିବେ । ଅନୁଲେଖକମାନଙ୍କର ମତିଦ୍ରୌର୍ବଲ୍ୟରୁ କ୍ରମଶଃ ଏପରି ହୋଇପଡ଼ିଅଛି । ସମ୍ୟକ୍ ବିଚାରପୂର୍ବକ ସେସବୁ ବିଶ୍ଳେଷ କରିନେଲେ ଭୀଷ୍ମଙ୍କ ଅଷ୍ଟମ ଦିବସ ଯୁଦ୍ଧରେ ସାରଳାଦାସଙ୍କ ପ୍ରକାଶିତ ଘଟଣା ଏହାହିଁ ଜଣାଯାଉଅଛି । ଭୀଷ୍ମାର୍ଜ୍ଜୁନଙ୍କ ଯୁଦ୍ଧର ସମକ୍ଷରେ ଭୀମଙ୍କ ଦ୍ୱାରା ଶକୁନି ଧୃତ ହେବା, ନକୁଳ ଶଲ୍ୟଙ୍କୁ ପରାସ୍ତ କରି ତଦୀୟ ମସ୍ତକଚ୍ଛେଦନରେ ଉଦ୍ୟତ ହେବା ଇତ୍ୟାଦି । କିନ୍ତୁ ମୂଳଗ୍ରନ୍ଥମତେ ଏହି ଦିବସର ଘଟନା ଭିନ୍ନ ପ୍ରକାର । ଅଷ୍ଟମ ଦିବସରେ ଭୀଷ୍ମ ସାଗରବ୍ୟୂହ ଓ ଧୃଷ୍ଟଦ୍ୟୁମ୍ନ ଶୃଙ୍ଗାଟକବ୍ୟୂହ ନିର୍ମାଣ କରିଥିଲେ । ଭୀମ ଦୁର୍ଯ୍ୟୋଧନଙ୍କର ଆଦିତ୍ୟକେତୁ, ସୁନାଭ, ଅପରାଜିତ, କୁଣ୍ଡଧାର, ବ୍ୟୂଢ଼ୋରସ୍କ, ଅନାଧୃଷ୍ଟି ପ୍ରଭୃତି କେତେକ ସହୋଦରଙ୍କୁ ନିହତ କରିବାରୁ ସେ ଭୀଷ୍ମଙ୍କ ସମୀପରେ ଶୋକ ପ୍ରକାଶ କରିଥିଲେ । ନାଗକନ୍ୟାଙ୍କ ଗର୍ଭରୁ ଅର୍ଜ୍ଜୁନଙ୍କ ଔରସରେ ଜାତ ଇରାବାନ୍ କୌରବଙ୍କ ସହ ବହୁ ଯୁଦ୍ଧ କଲା ପରେ ଶକୁନିଙ୍କ ଗଜ, ଗବାକ୍ଷ ପ୍ରଭୃତି ଭ୍ରାତୃପଞ୍ଚକଙ୍କୁ ନିହତ କରି ଆର୍ଷଶୃଙ୍ଗି ବା ଅଳମ୍ବୁଷଙ୍କ ସହିତ ଘୋରତର ମାୟିକ ଯୁଦ୍ଧ କରି ପରିଶେଷରେ ନିହତ ହୋଇଥିଲେ ।(୨) ଦ୍ରୋଣ ପାଣ୍ଡବଚମୂକୁ ଏବଂ ସଭୀମ ବା ସପିତୃକ ଘଟୋତ୍କଚ କୌରବବାହିନୀକୁ ଅସ୍ତବ୍ୟସ୍ତ କଲାରୁ କର୍ଣ୍ଣ ଦୁର୍ଯ୍ୟୋଧନାଦିଙ୍କର ଏବଂ ଅର୍ଜ୍ଜୁନ ଓ ଧୃଷ୍ଟଦ୍ୟୁମ୍ନଙ୍କର ବିଚାର ଘଟିଥିଲା ।

ନବମ ଦିବସ ଯୁଦ୍ଧାର୍ଥ ଭୀଷ୍ମ ସର୍ବତୋଭଦ୍ରବ୍ୟୂହ ଆଉ ପାଣ୍ଡବମାନେ ମହାବ୍ୟୂହ ନିର୍ମାଣ କରିଥିଲେ । ଅଭିମନ୍ୟୁ ସର୍ବାତିକ୍ରମଣପୂର୍ବକ ବ୍ୟୂହ ମଧ୍ୟରେ ପ୍ରବିଷ୍ଟ ହୋଇ ଅଳମ୍ବୁଷଙ୍କ ସହ ଯୁଦ୍ଧ କରିଥିଲେ । ଏଣେ ଶଲ୍ୟ ଯୁଧିଷ୍ଠିରାଦିଙ୍କର କରାଳ ସଂଗ୍ରାମ ଲାଗିଅଛି, ତେଣେ ମହାବୀର ଭୀଷ୍ମ ପାଣ୍ଡବୀୟ ବାହିନୀରେ କାଳାନ୍ତକକଳ୍ପ ହୋଇ ଚମୂସମୂହକୁ ପିପୀଲିକା ପ୍ରାୟ ଦଳନ କରୁଅଛନ୍ତି । ତାହା ଦେଖି ସୁଦ୍ଧା ଅର୍ଜ୍ଜୁନ

(୧) ବଙ୍ଗ ଭାରତ-ଭୀଷ୍ମପର୍ବ ୪୯୮-୪୯୯ ପୃଷ୍ଠା ଦେଖନ୍ତୁ ।

(୨) ମୂଳଗ୍ରନ୍ଥର ଏହି ସ୍ଥଳରେ ଇରାବାନ୍‌ଙ୍କ ଜନ୍ମବୃତ୍ତାନ୍ତାଦି କେତେକ ଚରିତ ମଧ୍ୟ ଉକ୍ତ ଅଛି । ଏହା ସାରଳାଦାସ ଲେଖିନାହାନ୍ତି ।

କଠୋରଭାବରେ ଯୁଦ୍ଧ କରୁ ନାହାନ୍ତି । ତଦୀୟ ଯୁଦ୍ଧର ମାର୍ଦ୍ଦବ ଏବଂ ଭୀଷ୍ମଙ୍କର ନିତାନ୍ତ ଅସହ୍ୟ ଯୁଦ୍ଧକଠୋରତା ଦେଖି ଶ୍ରୀକୃଷ୍ଣ ପୂର୍ବବତ୍ ରଥରୁ ଲମ୍ଫ ମାରି ଚକ୍ରହସ୍ତରେ ଭୀଷ୍ମ ନିପାତନାର୍ଥ ଧାବମାନ ହେଲେ; କିନ୍ତୁ ଅର୍ଜୁନ ପୂର୍ବକୃତ ପ୍ରତିଜ୍ଞା ନିବେଦନ କରି ତାହାଙ୍କୁ ପ୍ରତ୍ୟାବୃତ୍ତ କରାଇଥିଲେ । ମାତ୍ର ସାରଳାଦାସ ମହାଶୟ ଏହି ଦିବସର ଯୁଦ୍ଧରେ ପାଣ୍ଡବାନୀକ ମଧ୍ୟରୁ କେବଳ ଶିଖଣ୍ଡିଙ୍କର ପୌରୁଷ ଓ ବୀରତ୍ୱ ପ୍ରକାଶ କରିଅଛନ୍ତି ଏବଂ ଭୀଷ୍ମନାଶାର୍ଥ ଶ୍ରୀକୃଷ୍ଣଙ୍କର ଚକ୍ରହସ୍ତତା ସମ୍ବନ୍ଧରେ କହିଅଛନ୍ତି କି, ମହାବୀର ଭୀଷ୍ମ ହରିହରାତ୍ମକ ସର୍ବନାଶକ ନୀଳବାଣ ଓ ଭୁଜଙ୍ଗବାଣ ପ୍ରୟୋଗ କଲାରୁ ଅର୍ଜୁନାଦି ସମସ୍ତେ ଭୀତ ହୋଇ ପଡ଼ିଲେ । ତେତେବେଳେ ଶ୍ରୀକୃଷ୍ଣ ଅଗତ୍ୟା ପାଣ୍ଡବରକ୍ଷଣାର୍ଥ ଓ ଭୀଷ୍ମନାଶାର୍ଥ ଚକ୍ରହସ୍ତରେ ଧାଇଁଗଲେ ଇତ୍ୟାଦି । ଦିବସାବସାନରେ ଯୁଦ୍ଧ ନିବୃତ୍ତ ହେଲା ପରେ ଭୀଷ୍ମଙ୍କ ମରଣୋପାୟ ଜିଜ୍ଞାସାରେ ତାହାଙ୍କଠାକୁ ଯିବା ପାଇଁ ମନ୍ତ୍ରଣା ଏବଂ ନିଶା ସମୟରେ ନେଦିଷ୍ଠରେ ସମୁପବିଷ୍ଟ କୃଷ୍ଣ ଓ ପାଣ୍ଡବମାନଙ୍କୁ ଭୀଷ୍ମ ସାଦରସମ୍ଭାଷଣପୂର୍ବକ ନିଜର ମୃତ୍ୟୁଭେଦ କହିବା ପ୍ରଭୃତି ବିଷୟ ପ୍ରାୟଶଃ ମୂଳାନୁମତ ହୋଇଅଛି, କିନ୍ତୁ ଏଥି ମଧ୍ୟରେ ପାଣ୍ଡବମାନେ ଭୀଷ୍ମଙ୍କଠାକୁ ଯିବାର ପରିପାଟୀରେ ଯାହା କି ପାଣ୍ଡବେ ଦୁର୍ଯ୍ୟୋଧନଙ୍କର ମୁକୁଟ ମାଗି ଆଣିବା, ସେହି ମୁକୁଟ ଧାରଣରେ ଅର୍ଜୁନ ଦୁର୍ଯ୍ୟୋଧନଙ୍କ ପ୍ରାୟ ଦୃଶ୍ୟ ହେବା, ଭୀଷ୍ମ ଭ୍ରାନ୍ତିବଶତଃ ତାହାଙ୍କୁ ଦୁର୍ଯ୍ୟୋଧନ ଜ୍ଞାନ କରି ତଦୀୟ ପଶ୍ଚାଦବର୍ତ୍ତୀ ଶ୍ରୀକୃଷ୍ଣ ଓ ସହଦେବଙ୍କର ଯୁଗପଦ୍ ଆଚରିତ ଛିଙ୍କଧ୍ୱନିକୁ ଶୁଣିବା ମାତ୍ରେ ଚିରାୟୁଷତା ଓ ଶତ୍ରୁଞ୍ଜୟତାପ୍ରଦାୟକ ଆଶୀର୍ବାଦ ଦ୍ୱିବାର ଉଚ୍ଚାରଣ କରିବା ପ୍ରଭୃତି ବିଷୟମାନ ଲେଖି ଅଛନ୍ତି, ସେସବୁ ମୂଳଗ୍ରନ୍ଥରେ ଉକ୍ତ ନାହିଁ । ଅଥଚ ପୂର୍ବାପର ବିଚାର କରିନେଲେ ସେ ସବୁ କିଞ୍ଚିତ୍ ଅସଙ୍ଗତ ମଧ୍ୟ ଜଣାଯାଉଅଛି । ପରନ୍ତୁ ସାରଳାଦାସଙ୍କ ପରି ବଙ୍ଗ ଭାରତକର୍ତ୍ତା(୧) କାଶୀରାମଦାସ ମଧ୍ୟ ଛଳନାରେ ଅର୍ଜୁନଙ୍କର ଏହି ଦୌର୍ଯ୍ୟୋଧନିକ ମୁକୁଟାନୟନ ବ୍ୟାପାର ଭିନ୍ନ ସ୍ଥଳରେ ଭିନ୍ନ କ୍ରମରେ ଲେଖିଅଛନ୍ତି । ଦଶମ ଦିବସରେ ସୂର୍ଯ୍ୟୋଦୟରୁ ଯୁଦ୍ଧାରମ୍ଭ ହେଲା । ପାଣ୍ଡବପକ୍ଷୀୟମାନେ କୌରବ-ଗୌରବକୁ ଏକାବେଳକେ ଅସ୍ତମିତ କରିବାରେ ପ୍ରବୃତ୍ତ ହୋଇ ସାଗରୋପମ ବାହିନୀକୁ ଅସ୍ତବ୍ୟସ୍ତ ଓ ନିହତ କରିବାର ଦେଖି ଭୀଷ୍ମ ଆପଣାର ସର୍ବଶକ୍ତି ପ୍ରଦର୍ଶନରେ ଅସଂଖ୍ୟ ପାଞ୍ଚାଳ ବୀର ଓ ସେନାଙ୍କୁ ନିହତ କଲେ ଏବଂ ବିରାଟ ନୃପତିଙ୍କ ଭ୍ରାତା ଶତାନୀକଙ୍କୁ ଶମନଙ୍କର ଅତିଥିରୂପେ ପ୍ରେରଣ କଲେ । ସାରଳାଦାସ ମହାଶୟ ଏ ସ୍ଥଳରେ ଶତାନୀକଙ୍କ କଥା ଉଲ୍ଲେଖ କରିନାହାନ୍ତି । ଯୁଦ୍ଧଖେଳାଳିମାନଙ୍କ ନାମ ଅନ୍ୟଥା ପ୍ରଦାନ କରିଥିଲେ ସୁଦ୍ଧା ବହୁଯୁଦ୍ଧଖେଳା ପରେ ଶିଖଣ୍ଡିଙ୍କ ଦ୍ୱାରା ଭୀଷ୍ମଙ୍କର ହତୌଜସ୍କତା ପ୍ରକାଶ କରି ଅଛନ୍ତି

(୧) ବଙ୍ଗ ଭାରତ — ଭୀଷ୍ମପର୍ବ ସପ୍ତମ ଦିବସ ଯୁଦ୍ଧ ଶେଷରେ ୫୦୭ — ୫୦୮ ପୃଷ୍ଠା ଦେଖିବେ ।

ଏବଂ କହନ୍ତି କି, ଭୀଷ୍ମ ଭୈରବାସ୍ତ୍ର ପ୍ରୟୋଗ କଲାରୁ ବିଧ୍ୱଂସ ଭୟରେ ହନୁମାନ ଶ୍ରୀକୃଷ୍ଣପ୍ରଦତ୍ତ ବିଷ୍ଣୁତେଜସହକାରେ ବିଶ୍ୱମୂର୍ତ୍ତି ଧାରଣ କରି ଅର୍ଜ୍ଜୁନଙ୍କ ନନ୍ଦିଘୋଷ ରଥକୁ ଭୂଗର୍ଭରେ ଚାପି ରଖିଲେ । ଭୈରବାସ୍ତ୍ର ନିବୃତ୍ତ ହେବା ପରେ ପୁନଶ୍ଚ ପାତାଳୋଦରରୁ ତାହାକୁ ଉତ୍ତୋଳନ କଲେ । ଏହା ମୂଳଗ୍ରନ୍ଥରେ ଅନୁକ୍ତ, ସାରଳାଦାସ ତ୍ରେତାବୀର ହନୁମାନଙ୍କର ମହାବୀରତ୍ୱ ସୂଚନାର୍ଥ ଏହି କଥାଟ ଆବିଷ୍କାର କରିଅଛନ୍ତି ।(୧) ଅଥଚ ଭୀଷ୍ମଙ୍କ ପତନ ବିବରଣରେ କହିଅଛନ୍ତି ଯେ, ରଣାଙ୍ଗନରେ ଶିଖଣ୍ଡିଙ୍କୁ ଦେଖି ତଦୀୟ ଶରପ୍ରହାର ମାତ୍ରକେ ଆଜନ୍ମ ବ୍ରହ୍ମଚାରୀ ଭୀଷ୍ମଦେବ କାମରେ ବିହ୍ୱଳ ହୋଇ ପଡ଼ିଲେ, ତାହାଙ୍କର ଧାତୁ ସମଧିକତଃ ସ୍ଖଳିତ ହୋଇ ପଡ଼ିଲା (୨), ସର୍ବାଙ୍ଗ ଶିଥିଳ ହୋଇଗଲା, ସେ ଏକାନ୍ତ ବିମୋହିତ ହୋଇ ପଡ଼ିଲେ । କିନ୍ତୁ ଏହା ଯଥାର୍ଥ ନୁହେ । ଭୀଷ୍ମଦେବ ଶିଖଣ୍ଡିଙ୍କ ନପୁଂସକତ୍ୱ ଭାବନାରେ ପ୍ରତିଶର ନିକ୍ଷେପ ନ କରି ତତ୍‌ପ୍ରତି ନିଶ୍ଚେଷ୍ଟ ମାତ୍ର ରହୁଥିଲେ । ଅତଃପର ଭୀଷ୍ମଙ୍କର ଶରତଳ୍ପ ନିର୍ମାଣପ୍ରକ୍ରିୟା ଓ ଦିବ୍ୟ ଜଳପ୍ରଦାନକ୍ରମକୁ ଏ ମହାଶୟ ମୂଳ ଅପେକ୍ଷା ଅତି ସଂକ୍ଷିପ୍ତ କରି ଅଛନ୍ତି ଏବଂ ଶଯ୍ୟାନିର୍ମାଣ ସ୍ଥଳରେ କେତେକ ବିପରୀତ କଥା ମଧ୍ୟ ଲେଖି ଅଛନ୍ତି ।(୩) ଗଙ୍ଗାଙ୍କଦ୍ୱାରା ପ୍ରେଷିତ ଯୁଦ୍ଧାଙ୍ଗଣରେ ସମାଗତ ହଂସରୂପୀ ଋଷୀମାନଙ୍କର ପ୍ରସଙ୍ଗ ଏବଂ ଦେବତାମାନେ ପୁଷ୍ପବୃଷ୍ଟି ଓ ଦେବଦୁନ୍ଦୁଭିଧ୍ୱନି ସହ ଭୀଷ୍ମଙ୍କୁ ଯୁଦ୍ଧତ୍ୟାଗାର୍ଥ ଆଦେଶ କରିଥିବା ବିଷୟ ଦିଓଟି ତ୍ୟାଗ କରିଦେଇ ଅଛନ୍ତି । ଏ ମହାଶୟ ଆପାତତଃ ଭୀଷ୍ମଦେବଙ୍କର ନିର୍ଯ୍ୟାଣ ସମୟ ଠିକ୍ ନିର୍ଦ୍ଧାରଣ କରପାରି ନ ଥିବାରୁ ଏ ସ୍ଥଳରେ ସୁଦ୍ଧା ଲେଖି ଅଛନ୍ତି କି, ଭୀଷ୍ମଦେବ ଅଷ୍ଟାଦଶ ଦିବସାବସାନ ମହାଭାରତ ଯୁଦ୍ଧକୁ ସମ୍ପୂର୍ଣ୍ଣ ଦେଖିବାପାଇଁ ଇଚ୍ଛା କରି ଅବଶିଷ୍ଟ ଅଷ୍ଟଦିବସ ଯୁଦ୍ଧର ଦିଦୃକ୍ଷାରେ ଆଉ ଆଠଦିନ (୪) କେବଳ ଜୀବିତ ରହିବାପାଇଁ ଶରତଳ୍ପରେ ନିହିତ ହେଲେ । କିନ୍ତୁ ଏହି ଧାରଣା ଅଳୀକ ଅଟେ । ଆମ୍ଭେ ଇତଃପୂର୍ବେ ଏହାର ସୁନିଶ୍ଚିତ

(୧) କଣୟ ଗିରି ସମାନ ଯେଉଁ ନନ୍ଦିଘୋଷ,
ବିଶ୍ୱମୂର୍ତ୍ତି ଧରି ଚାପୁଁ ହେଲା ସେ ଅଦୃଶ୍ୟ ।
ପୁଣି ହନୁମନ୍ତ ଯହୁଁ ତାହାକୁ ତୋଳିଲା,
ପାତାଳରୁ ନନ୍ଦିଘୋଷ ରଥ ବାହାରିଲା । ଭୀ.ପ. ୧୬୨ ପୃଷ୍ଠା ।

(୨) ନବ ସହସ୍ର ବରଷ ଯେବଣ ଅଟଳବିନ୍ଦୁ,
ଶିଖଣ୍ଡି ଦର୍ଶନେ ସ୍ଖଳିତ ହେଲା ସିନ୍ଧୁ । ଇତ୍ୟାଦି ।
ଭୀଷ୍ମପର୍ବ ୧୬୨ - ୧୬୩ ପୃଷ୍ଠା ।

(୩) ଭୀଷ୍ମପର୍ବ ୧୬୪ ପୃଷ୍ଠା ଦେଖନ୍ତୁ ।

(୪) ଭୀଷ୍ମ ବୋଇଲେ ଅବା ମୁଁ ଛାଡ଼ନ୍ତି ଶରୀର,
ରହି ଅଠର ଦିବସ ଦେଖିବି ସମର । ଇତ୍ୟାଦି ।
ଭୀ.ପ. ୧୬୪ ପୃଷ୍ଠା ।

ସିଦ୍ଧାନ୍ତ ପ୍ରତିପାଦିତ କରିଅଛନ୍ତି ଦେଖିବେ । ଏ ମହାଶୟ ଭୀଷ୍ମପର୍ବର ସର୍ଗାବସାନରେ ଯାହା ଭୀଷ୍ମଦେବ ପାଣ୍ଡବମାନଙ୍କ ସହିତ ସନ୍ଧିସଂସ୍ଥାପନାର୍ଥ କୌରବପକ୍ଷୀୟମାନଙ୍କୁ ଉପଦେଶ ଦେଇଥିଲେ ଏବଂ ଭୀଷ୍ମ ଓ କର୍ଣ୍ଣଙ୍କର ମର୍ଯ୍ୟାଦାତ୍ମକ ବିଷୟ ଯଥାସ୍ଥାନର ବ୍ୟବଧାନ ଥିଲେ ସୁଦ୍ଧା ମୂଳାନୁମତ ପ୍ରକାଶ କରିଅଛନ୍ତି ।

ଭୀଷ୍ମଙ୍କ ନିଧନ ପରେ କୁରୁରାଜ ଦୁର୍ଯ୍ୟୋଧନ ପ୍ରିୟସଖା କର୍ଣ୍ଣଙ୍କ ପରାମର୍ଶରେ କ୍ଷତ୍ରବୃତ୍ତି-ପ୍ରବୃତ୍ତ ବ୍ରାହ୍ମଣପ୍ରବର ଦ୍ରୋଣଙ୍କୁ ସେନାପତ୍ୟରେ ଅଭିଷିକ୍ତ କରି ଯୁଧିଷ୍ଠିରଙ୍କୁ ଧରି ଆଣିଦେବାପାଇଁ ପ୍ରାର୍ଥନା କଲେ । ଅମୋଘପ୍ରଜ୍ଞ ଦ୍ରୋଣ କହିଲେ କି, ଅର୍ଜୁନଙ୍କ ସମୁପସ୍ଥିତିରେ ମୁଁ କାହିଁକି, ଇନ୍ଦ୍ର ସୁଦ୍ଧା ଯୁଧିଷ୍ଠିରଙ୍କୁ ଧର୍ଷଣ କରି ନ ପାରନ୍ତି; କିନ୍ତୁ ମୁଁ ପ୍ରତିଜ୍ଞା କରୁଅଛି, ମୋର ନାଶାର୍ଥସମ୍ଭୂତ କେବଳ ଧୃଷ୍ଟଦ୍ୟୁମ୍ନଙ୍କ ବିନା ସମଗ୍ର ପାଞ୍ଚାଳ ବୀରମାନଙ୍କୁ ବିନିପାତ କରି ପ୍ରତ୍ୟହ ଅନ୍ୟୂନ ଦଶ ସହସ୍ର ସୈନ୍ୟଙ୍କୁ ପ୍ରେତପତିଙ୍କର ଅତିଥି ରୂପେ ପ୍ରେରଣ କରିବି । ଏହା କହି ଯୁଦ୍ଧାର୍ଥ ପ୍ରୟାଣ କଲେ । ଏହାଙ୍କର ବିକରାଳ ରଣସଂମର୍ଦ୍ଦ ପାଞ୍ଚଦିନ ପର୍ଯ୍ୟନ୍ତ ହୋଇଥିଲା । ଏହି ଦ୍ରୋଣାଭିଷେକ ଉପପର୍ବରେ ଆପାତତଃ କର୍ଣ୍ଣଦୁର୍ଯ୍ୟୋଧନଙ୍କ ବିଚାର, ଦ୍ରୋଣାଭିଷେଚନ, ଦୁର୍ନିମିତ୍ତ ଦର୍ଶନ ପ୍ରଭୃତି କେତେକ ବିଷୟ ଉକ୍ତ ହେଲା ପରେ ଏକାଦଶାଧ୍ୟାୟରେ ସଞ୍ଜୟଙ୍କ ମୁଖରେ ଶ୍ରୀକୃଷ୍ଣଙ୍କ ବଳବୀର୍ଯ୍ୟ ଓ ମହିମା କୀର୍ତ୍ତନ ରୂପକ ଗୋଟିଏ ସନ୍ଦର୍ଭ ପ୍ରକାଶିତ ଅଛି । ଏସବୁ ଏହି ପର୍ବର ଉପକ୍ରମଣିକା ସ୍ୱରୂପ ଲେଖାଅଛି, ସାରଳା ଦାସ ମହାଶୟ ଏସବୁ ତ୍ୟାଗ କରି ଅଛନ୍ତି ।

ଅତଃପର ଦ୍ରୋଣାହବର ପ୍ରଥମ ଦିବସର ଯୁଦ୍ଧାରମ୍ଭ । ଅଦ୍ୟ ଦିବସରେ ସୌଭଦ୍ର ଅଭିମନ୍ୟୁ ଯୁଦ୍ଧଖେଳାରେ ଦୁର୍ଯ୍ୟୋଧନ ଜୟଦ୍ରଥାଦିଙ୍କୁ ପରାଭୂତ କରି ଶଲ୍ୟଙ୍କୁ ରଥରୁ ନିପତିତ କରିବା ଏବଂ ଶଲ୍ୟ ଓ ଭୀମଙ୍କର ଗଦାହବ ଆଉ ବୃଷସେନ ଓ ଦ୍ରୌପଦେୟମାନଙ୍କର ଆଭିମୁଖୀନ ଯୁଦ୍ଧ ମାତ୍ର ବର୍ଣ୍ଣିତ ଅଛି । ଦ୍ରୋଣ ବହୁ ପାଞ୍ଚାଳ ବରୁଥିନୀ ସହ ପାଞ୍ଚାଳ ରାଜପୁତ୍ର ବ୍ୟାଘ୍ରଦତ୍ତ ଓ ସିଂହସେନାଦିଙ୍କୁ ନିହତ କରି ପାରିଥିଲେ ସତ୍ୟ, କିନ୍ତୁ ଯୁଧିଷ୍ଠିରଙ୍କ ଜିଘୃକ୍ଷାରେ ଯତ୍ପରୋନାସ୍ତି ଚେଷ୍ଟା କରି ବିଫଳପ୍ରଯତ୍ନ ହୋଇଥିଲେ । ଦ୍ରୋଣଙ୍କ ପ୍ରାଥମିକ ଯୁଦ୍ଧର ଏହି ଘଟଣା ସବୁ ସୁଦ୍ଧା ସାରଳାଦାସଙ୍କ ମହାଭାରତରେ ଦେଖିବାକୁ ପାଇବେ ନାହିଁ । ଏ ମହାଶୟ ଦ୍ରୋଣାହବର ଦ୍ୱିତୀୟ ଦିବସର କଥାଶ୍ରୟରେ କେବଳ ଅତ୍ରତ୍ୟ ଯୁଦ୍ଧବ୍ୟାପାର ଆରମ୍ଭ କରି ଅଛନ୍ତି ।

ଦ୍ୱିତୀୟ ଦିବସ ଅର୍ଜୁନଙ୍କ ସହାବସ୍ଥାନରେ ଯୁଧିଷ୍ଠିର କଦାଚ ଧୃତ ହୋଇ ପାରିବେ ନାହିଁ ଭାବି ଦ୍ରୋଣଙ୍କ ମନ୍ତ୍ରଣାରେ ଅର୍ଜୁନଙ୍କୁ ଦୂରବର୍ତ୍ତୀ କରିବା ପାଇଁ ପ୍ରସ୍ଥଳାଧିପ ସଭ୍ରାତୃକ ସୁଶର୍ମା ଚତୁର୍ଦ୍ଦଶ ସହସ୍ର ତ୍ରିଗର୍ତ୍ତସେନା ଏବଂ ଶ୍ରୀକୃଷ୍ଣପ୍ରଦତ୍ତ ନାରାୟଣ ଗୋପାଳମାନଙ୍କ ସହିତ ଶପଥ କରଣ ପୂର୍ବକ ସଂଶପ୍ତକ ରୂପେ ସନ୍ନଦ୍ଧ ହୋଇ ଅର୍ଜୁନଙ୍କୁ ଯୁଦ୍ଧାର୍ଥ ଆହ୍ୱାନ କଲେ । ସେ ସେଠାରେ ଯୁଦ୍ଧରେ ପ୍ରବୃତ୍ତ ହେଲେ, ଏଣେ ଦ୍ରୋଣ ସୁପର୍ଣ୍ଣ ବ୍ୟୂହ ନିର୍ମାଣ

କଲାରୁ ଯୁଧିଷ୍ଠିର ମଣ୍ଡଳାର୍ଦ୍ଧ ବ୍ୟୂହ ନିର୍ମାଣ କଲେ । ଦ୍ରୋଣ ସଂକୁଳ ଯୁଦ୍ଧ ପରେ ଯୁଧିଷ୍ଠିରଙ୍କ ଜିଘୃକ୍ଷୁ ହୋଇ ଅଭିଦ୍ରବପୂର୍ବକ ଧୃଷ୍ଟଦ୍ୟୁମ୍ନଙ୍କ ଯୁଦ୍ଧରେ ରୁଦ୍ଧ ରହିଲେ, ତତ୍‌ପକ୍ଷୀୟ ବୃକ, ସତ୍ୟଜିତ୍ ପ୍ରଭୃତି ପାଞ୍ଚାଳରାଜପୁତ୍ରଙ୍କୁ, ଦୃଢ଼ସେନ, ବସୁଦାନ, କ୍ଷତ୍ରଦେବ ପ୍ରଭୃତି ମହାବୀରମାନଙ୍କୁ ନିହତ କରି ବିରାଟ ନୃପାତ୍ମଜ ଶତାନୀକଙ୍କର ଶିରଚ୍ଛେଦନ କଲେ । ପାଣ୍ଡବେୟ ନାକୁଳି (ନକୁଳଙ୍କ ପୁତ୍ର) ଶତାନୀକ, ଭୂତକର୍ମା ପ୍ରଭୃତି ଅଭୁତକର୍ମା ବୀରମାନଙ୍କୁ ଆହବିକ ସମ୍ବାଦଦାନାର୍ଥ ଯମରାଷ୍ଟ୍ରକୁ ପ୍ରେରଣ କରିଥିଲେ । ଏତାଦୃଶକ୍ରମରେ ଅନେକଙ୍କ ପଞ୍ଚତ୍ୱପ୍ରାପ୍ତି ପରେ ପ୍ରାଗ୍‌ଜ୍ୟୋତିଷାଧିପ ଇନ୍ଦ୍ରସଖ ଭଗଦତ୍ତ ଐରାବତକଳ୍ପ ହସ୍ତିରେ ସମାରୂଢ଼ ରହି ସମୀଚୀନ-ବଙ୍ଗ ଚୀନ ଓ କିରାତ ପ୍ରଭୃତି ନିଜର ଅସଂଖ୍ୟ ସେନା ସମଭିବ୍ୟାହାରରେ ଧରି ପାଣ୍ଡବ-ବାହିନୀକୁ ବିଦଳିତ ଓ ବିଦାର୍ଯ୍ୟମାଣ କରୁଥିବାର ଅର୍ଜୁନ ଜାଣିପାରି ଶୀଘ୍ର ଶୀଘ୍ର ଅମିତ ସଂଶପ୍ତକଙ୍କୁ ବିନାଶ କରି ସୁଶର୍ମାଙ୍କୁ ମୋହିତ କରିପକାଇ ସହସା ଏଣେ ପ୍ରତ୍ୟାବୃତ୍ତ ହେଲେ । ଆପାତତଃ ଭଗଦତ୍ତଙ୍କ ପ୍ରକାଣ୍ଡ ପ୍ରଚଣ୍ଡ ମହାବଳ ହସ୍ତିକୁ, ପରେ ଭଗଦତ୍ତଙ୍କୁ ଭୂଶାୟୀ କରି ପୁଣି ସଂଶପ୍ତକଙ୍କ ଆଡ଼େ ଧାବମାନ ହେଲେ । ସେଠାରେ ଶକୁନିଙ୍କ ସହୋଦର ବୃଷକ ଓ ଅଚଳଙ୍କ ସହିତ ଅସଂଖ୍ୟ ସଂଶପ୍ତକଗଣଙ୍କୁ ସଂହାରି ଯମରାଷ୍ଟ୍ର ବର୍ଦ୍ଧିତ କଲେ । ପାଣ୍ଡବାନୀକରେ ଅର୍ଜୁନଙ୍କ ଅନବସ୍ଥିତିରେ ଅଶ୍ୱତ୍ଥାମା ମହାବୀର ଅନିଳପ୍ରଖ୍ୟ ନୀଳ ରାଜାଙ୍କୁ ପଞ୍ଚତ୍ୱ ପ୍ରାପ୍ତ କରିଥିଲେ । ପରିଶେଷରେ ଦ୍ରୋଣ ଯୁଧିଷ୍ଠିରଙ୍କ ଗ୍ରହଣରେ ମୋଘସଂକଳ୍ପ ହୋଇପଡ଼ି ଦୁଃଖିତ ହେଲେ ।

ସାରଳାଦାସ ମହାଶୟ ଏ ସ୍ଥଳରେ ସଂପୂର୍ଣ୍ଣ ବୈଷମ୍ୟ ପ୍ରକାଶ କରି ଅଛନ୍ତି, କଳ୍ପନାର ବୈଚିତ୍ର୍ୟମୟୀ ଛବି ଚିତ୍ରଣ କରି ଅଛନ୍ତି, ମୂଳଚରିତ ପ୍ରତି କିଛି ମାତ୍ର ଅପେକ୍ଷା କରି ନାହାନ୍ତି । ମୂଳ ଗ୍ରନ୍ଥରେ ଦ୍ରୋଣାହବର ଦ୍ୱିତୀୟ ଦିବସରେ ଅର୍ଜୁନଙ୍କ ଦୂରାବସ୍ଥାନ ସକାଶେ ଯାହା କି ସଂଶପ୍ତକରଣର ଆବିର୍ଭାବ ଉକ୍ତ ଅଛି, ତାହାର କିଛି ସାଦୃଶ୍ୟ ମାତ୍ର ନେଇ ଏ ମହାଶୟ ସମ୍ପୂର୍ଣ୍ଣ ଭିନ୍ନ ପ୍ରକାର ଗୋଟିଏ ଅଦ୍ଭୁତ କଳ୍ପନା କରି ଅଛନ୍ତି । ଏ କହନ୍ତି, ଦ୍ରୋଣାଭିଷେକ ପରେ ପ୍ରଥମତଃ ଦୁର୍ଯ୍ୟୋଧନ ନୈରୃତଗିରିସ୍ଥ ମ୍ଳେଚ୍ଛ ରାଜା ମୟାସୁରଙ୍କଠାକୁ ଯାଇ ସାହାଯ୍ୟ ପ୍ରାର୍ଥନା କଲେ । ସେ ସନ୍ତୁଷ୍ଟ ପାଣ୍ଡବମାନଙ୍କ ନାଶାର୍ଥ କୃତପ୍ରତିଜ୍ଞ ହୋଇ ଘୋରାନ୍ଧକାରମୟ ବକ୍ରାକୃତି ମାୟାବିଚିତ୍ର ଜଳଧର ବ୍ୟୂହ ନିର୍ମାଣ କଲେ । ଏ ସ୍ଥଳରେ ସୂଚନତଃ ପ୍ରକାଶ କରିଦେବା ଉଚିତ ଯେ, ମୟାସୁର ପ୍ରଭୃତି ପାଣ୍ଡବମାନଙ୍କର ଶତ୍ରୁତାଚରଣ କରିବାର କାରଣ ଜିଜ୍ଞାସାରେ ସେମାନଙ୍କର ପୂର୍ବତନ ଚରିତମାନ ମଧ ଲେଖିଅଛନ୍ତି । ଏସବୁ ଏ ମହୋଦୟ କାହିଁରୁ ଆଣି ଅଛନ୍ତି, କିମ୍ବା ତଦୀୟ କପୋଳକଳ୍ପିତ, ଏହା ଠିକ୍ କହାଯାଇ ନ ପାରେ । ଅତଃପର ମୂଳରେ ଅନୁକ୍ତ ଶ୍ରୀକୃଷ୍ଣଙ୍କ ସ୍ୱପ୍ନବୃତ୍ତାନ୍ତ ଲେଖି ଅଛନ୍ତି । ତାହାର ସଂକ୍ଷିପ୍ତ ବିବରଣ ଏହି ଯେ– ଶ୍ରୀକୃଷ୍ଣ

ନିଜ ଭାଗିନେୟ ଅଭିମନ୍ୟୁଙ୍କ ସମ୍ବନ୍ଧୀୟ ନିଜର ସ୍ୱପ୍ନବୃତ୍ତାନ୍ତ ସହଦେବଙ୍କୁ ଜଣାଇଲେ ଯେ କେହି ଜଣେ ବାଳବୀର ବୈଷ୍ଣବ ଚକ୍ରରେ ମୋତେ ଏବଂ ବଳରାମଙ୍କୁ ବକ୍ଷଃସ୍ଥଳରେ ବିଦ୍ଧ କରି ଅଛନ୍ତି । ଏହା ଶୁଣି ସହଦେବ କହିଲେ, ପ୍ରଭୋ ! କାଲି ଅଭିମନ୍ୟୁଙ୍କର ବୟସ ଚୌଦ ବର୍ଷ ପୂର୍ଣ୍ଣ ହେବ । ଯଦିଚ କାଲି ତାଙ୍କୁ ସ୍ୱର୍ଗ ନ ପଠାନ୍ତି, ତାହାହେଲେ ଅବଶ୍ୟ ଅର୍ଜୁନ ସହ ଆପଣଙ୍କୁ ସେ ନିହତ କରିବେ । ତେତେବେଳେ ଶ୍ରୀକୃଷ୍ଣ ନିଜର ଓ ଅର୍ଜୁନଙ୍କର ଅନବସ୍ଥିତି ସମୟରେ ଦ୍ରୋଣଙ୍କଦ୍ୱାରା ଅଭିମନ୍ୟୁଙ୍କୁ ନିହତ କରାଇବାକୁ ଅଗତ୍ୟା ସ୍ୱୀକୃତ ହେଲେ ।

ଅତଃପର ଅର୍ଜୁନ ପ୍ରାତଃକୃତ୍ୟାଦି ସମାପନ ପରେ ମ୍ଲେଚ୍ଛାଧିପଙ୍କ ପ୍ରତି ଅଭିନିର୍ଯାଣ କରି ଜଳଧର ବ୍ୟୂହ ଭେଦପୂର୍ବକ ବିକରାଳ ଯୁଦ୍ଧରେ ପ୍ରବୃତ୍ତ ହେଲେ । ଏହି ମାୟିକ ବ୍ୟୂହର ଯୁଦ୍ଧଚର୍ଯ୍ୟା ଆଶ୍ଚର୍ଯ୍ୟଜନକ । ସେଠାରେ ଶ୍ରୀକୃଷ୍ଣ ପାତାଳଭୁବନରୁ କଙ୍କାଳୀ ଓ ବେତାଳୀ ନାମକ ଶରଦ୍ୱୟ ଆନୟନ କରି ଅର୍ଜୁନଙ୍କୁ ପ୍ରଦାନ କଲେ । ତଦବଲମ୍ବନରେ ଅର୍ଜୁନ ଦ୍ୱିଗୁଣିତୋତ୍ସାହସହକାରେ ଅସୁରଗଣ ବିନିପାତ କରୁଅଛନ୍ତି, ଏହି ସମୟରେ ପରିକୁପିତ ମୟାସୁର ମାୟାରେ ଅନ୍ତର୍ହିତ ରହି ଏକାକୀ ଅର୍ଜୁନଙ୍କୁ କାଳପାଶରେ ଆବଦ୍ଧ ରଖି ପାତାଳୋଦରକୁ ଘେନିଗଲେ । ଅର୍ଜୁନଙ୍କର ପ୍ରଧ୍ମାତମାନ ଦେବଦତ୍ତ ଶଙ୍ଖର ଧ୍ୱନିକୁ ଅନୁସରି ଶ୍ରୀକୃଷ୍ଣ ସଚକ୍ରଗଦାହସ୍ତରେ ତାଙ୍କ ରକ୍ଷଣାର୍ଥ ପଶ୍ଚାଦ୍‌ଧାବମାନ ହେଲେ । ପଥ ମଧ୍ୟରେ ଜଟାସୁର ନାମକ ମାୟାବୀ ଦୈତ୍ୟ ଭୟାଭିନୟ ପୂର୍ବକ "ଅର୍ଜୁନ ଏଥିରେ ନିପତିତ ଅଛନ୍ତି" ବୋଲି ଶ୍ରୀକୃଷ୍ଣଙ୍କୁ ଗୋଟିଏ ଜୀର୍ଣ୍ଣକୂପ ଦେଖାଇ ଦେଲା । ଶ୍ରୀକୃଷ୍ଣ ତାହା ଭିତରେ ସଂରୁଦ୍ଧ ରହି କିଂକର୍ତ୍ତବ୍ୟବିମୂଢ଼ ହୋଇ ପଡ଼ିଲେ । ଇତ୍ୟବସରରେ ତତ୍ରତ୍ୟ କାମାକ୍ଷୀ ଦେବୀ ବାସବି ଅର୍ଜୁନଙ୍କର କାଳପାଶ ବିଚ୍ଛିନ୍ନ କରିଦେଲେ । ତତ୍‌କ୍ଷଣାତ୍ ଇନ୍ଦ୍ରାଦିଷ୍ଟ ମାତଳି ରଥ ଆଣି ଉପସ୍ଥାପିତ କଲେ । ଇନ୍ଦ୍ରପ୍ରେରିତ ରଥପ୍ରାପ୍ତିର ଅବ୍ୟବହିତ ପରେ କଙ୍କାଳୀନାମ୍ନୀ ଦେବୀ ଶ୍ରୀକୃଷ୍ଣଙ୍କୁ ଜୀର୍ଣ୍ଣକୂପରୁ ଉନ୍ନୟନ କରି ଅର୍ଜୁନଙ୍କ ସମ୍ମୁଖରେ ଉପଗତ କରାଇଲେ । (ଇତ୍ୟାଦି)

ମୂଳ ଗ୍ରନ୍ଥରେ ଯାହା କି ଦ୍ୱିତୀୟ ଦିବସରେ ସଂଘଟିତ, ତାହା ସାରଳାଦାସଙ୍କ ମତରେ ଅନ୍ୟଥାକୃତ ଓ ପ୍ରଥମ ଦିବସଚର୍ଯ୍ୟାରୂପେ ବର୍ଣ୍ଣିତ ହୋଇଅଛି । ପୁଣି ତୃତୀୟ ଦିବସରେ ଅଭିମନ୍ୟୁବଧପର୍ବାନ୍ତର୍ଗତ କଥାମାନ ସୁଦ୍ଧା ଏଥିରେ ଅନ୍ତର୍ଭୁକ୍ତ ହୋଇଯାଇ ଅଛି । ସତ୍ୟତଃ ଦ୍ରୋଣାହବର ତୃତୀୟ ଦିବସରେ (ଅର୍ଥାତ୍ ଅଭିମନ୍ୟୁବଧ ଉପପର୍ବର ପ୍ରାରମ୍ଭରେ) ଦ୍ରୋଣ ଚକ୍ରବ୍ୟୂହ ନିର୍ମାଣ କଲାରୁ ଅମୋଘମନ୍ୟୁ ଅଭିମନ୍ୟୁ ତଦ୍ଭେଦନାର୍ଥ ଦୃଢ଼ପ୍ରତିଜ୍ଞ ହୋଇଥିଲେ । ଏକାକୀ ବାଳବୀର ଆର୍ଜୁନି ଅସଂଖ୍ୟ ବୀରବାହିନୀ ବିନିପାତନପୂର୍ବକ ଚକ୍ରବ୍ୟୂହ ଭେଦ କରି କ୍ରମଶଃ ବ୍ୟୂହ ମଧ୍ୟରେ ଯାଇ ଉପଗତ ହେଲେ । ତତ୍ରତ୍ୟ ଦୁର୍ଯ୍ୟୋଧନ ଜୟଦ୍ରଥାଦିଙ୍କୁ ଅଲୌକିକ ପରାକ୍ରମରେ ପରାସ୍ତ କରି ଦୌର୍ଯ୍ୟୋଧନି

ଲକ୍ଷ୍ମଣକୁମାର, ମଗଧରାଜ ପୁତ୍ର ଅଶ୍ୱକେତୁ ପ୍ରଭୃତି ଦୁର୍ଦ୍ଧର୍ଷ ବୀରମାନଙ୍କୁ ନିହତ କରି ବ୍ୟୂହରେ ଅଗ୍ରଗାମୀ ହୋଇଉଠିଲେ । ଏଣେ ଦୁର୍ଯ୍ୟୋଧନଙ୍କ ପୁତ୍ର ଲକ୍ଷ୍ମଣକୁମାରଙ୍କ ବିନାଶରେ ସମଗ୍ର କୌରବବାହିନୀ ଅଶ୍ରୁବାହିନୀ ହୋଇ ହାହାକାରରେ ଆକାଶ ବିଦୀର୍ଣ୍ଣ କରିବାକୁ ଲାଗିଲେ । ଏହା ଦେଖି ଦ୍ରୋଣ, ଦ୍ରୌଣି, କୃପ, କର୍ଣ୍ଣ, ବୃହଦ୍‌ବଳ ଓ କୃତବର୍ମା ଏହି ଷଟ୍‌ରଥୀମାନେ ଅମିତ ରୋଷଭରରେ ଏକାକୀ ବାଳବୀରଙ୍କୁ ଯୁଗପଦ୍ ଆକ୍ରମଣ କଲେ । ତଥାପି ଦେବବିକ୍ରମ ଆର୍ଜୁନି ରୁଧିରାର୍ଦ୍ରବସ୍ତ୍ର ଭ୍ରୁକୁଟିକୁଟିଳାନନ ଓ କୃତସିଂହନାଦ ହୋଇ ଅପ୍ରତିମ ବଳ ସହକାରେ ସେମାନଙ୍କୁ କିଞ୍ଚିତ୍ ପରାଙ୍ମୁଖ କରି ବ୍ୟୂହ ମଧ୍ୟରେ କିଛି କାଳ ବିରାଜମାନ ରହିଲେ । କିନ୍ତୁ ପରିଶେଷରେ ଅନ୍ୟାୟମତେ ଷଟ୍‌ରଥୀ ଏବଂ ଧାର୍ତ୍ତରାଷ୍ଟ୍ରମାନଙ୍କର ଅବିଶ୍ରାନ୍ତ ବାଣାଘାତରେ ଆହତ ଓ ନିହତ ହେଲେ । ତଦନନ୍ତର ଅଭିମନ୍ୟୁବଧରେ ଏକାନ୍ତ ଶୋକାତୁର ଯୁଧିଷ୍ଠିରଙ୍କ ସାନ୍ତ୍ୱନାର୍ଥ ତତ୍ରସମାଗତ ବ୍ୟାସଦେବ ପୁତ୍ରଶୋକାକୁଳ ପ୍ରାଚୀନ ଅକମ୍ପନ ରାଜାଙ୍କ ବୃତ୍ତାନ୍ତ ଏବଂ ସପ୍ତଦଶଗୋଟି ଅଧ୍ୟାୟରେ ସୁବିସ୍ତୃତ ଷୋଡ଼ଶରାଜିକ ନାମରେ ଅଭିହିତ ଶିବି, ଔଶୀନର, ଦିଲୀପ ପ୍ରଭୃତି ଲୋକାନ୍ତରବିଜୟ ସମର୍ଥ ରାଜାମାନଙ୍କର କାଳକବଳତ୍ୱ ପ୍ରତିପାଦିତ କରି ଯୁଧିଷ୍ଠିରଙ୍କୁ ସାନ୍ତ୍ୱନା କରିଥିବାର ଉକ୍ତ ଅଛି ।

ସାରଳାଦାସଙ୍କ ଭାରତରେ ଅଭିମନ୍ୟୁ ବଧ ସଂବିଧାନଟି ସମୟ ବୈଷମ୍ୟରେ ନିହିତ ହୋଇଥିଲେ ସୁଦ୍ଧା ବ୍ୟୂହଦ୍ୱାରର ଭେଦକ୍ରମଟି ମୂଳ ଗ୍ରନ୍ଥର ଅନୁମତ ବୋଲିବାକୁ ହେବ । କିନ୍ତୁ ଏ ମହାଶୟ ଶ୍ରୀକୃଷ୍ଣଙ୍କୁ ଅଭିମନ୍ୟୁ ନିଧନର ସୁଗମ ସଂଘଟକ କରି ଅଛନ୍ତି । ଅଭିମନ୍ୟୁ ଚକ୍ରବ୍ୟୂହ ଭେଦପୂର୍ବକ ଦ୍ରୋଣାଦିଙ୍କୁ ପରାସ୍ତ କରି ଅବଶ୍ୟ ବ୍ୟୂହ ଛିନ୍ନଭିନ୍ନ କରି ପାରିବେ । ଏ ସମୟରେ ଯଦି ଅର୍ଜୁନ ତାଙ୍କ ସହିତ ଯୋଗ ଦିଅନ୍ତି, ତେବେ ଅଭିମନ୍ୟୁ କୌଣସି ପ୍ରକାରେ ନିହତ ହୋଇ ପାରିବେ ନାହିଁ; ଏହା ଭାବି ଶ୍ରୀକୃଷ୍ଣ ସ୍ୱକୀୟ ଛାୟା ମାୟାର ପ୍ରଭାବ ବିସ୍ତାର କରି ମ୍ଳେଚ୍ଛବଳକୁ ବଢ଼ାଇ ଦିଅନ୍ତି, ଅର୍ଜୁନ କେତେ ବିନିପାତ କଲେ ସୁଦ୍ଧା ମ୍ଳେଚ୍ଛବଳ ନିଃଶେଷ ହୁଏ ନାହିଁ । ଅତଏବ ଅର୍ଜୁନ ଆଉ ଏଣେ ଯୋଗଦେଇ ପାରିଲେ ନାହିଁ । ଆହୁରି ମଧ୍ୟ କହନ୍ତି କି, ଏ ସମୟରେ ସ୍ୱର୍ଗରୁ ଇନ୍ଦ୍ରଙ୍କ ପ୍ରେଷିତ ବିହନ୍ତା ପୁରୁଷମାନେ ଅର୍ଥାତ୍ ଦେବଗଣବିଶେଷ ଚକ୍ରବ୍ୟୂହଭେତ୍ତା ଅଭିମନ୍ୟୁଙ୍କ ନିକଟରେ ଉପଗତ ହୋଇ ବହୁ ପ୍ରଶଂସାବାଦପୂର୍ବକ ତଦୀୟ ଶରଜାଲର ଅମୋଘତ୍ୱ ହରଣ କଲେ । ତଥାପି ଅଭିମନ୍ୟୁ ବ୍ୟୂହର ଦ୍ୱାଦଶ ଦ୍ୱାରରେ ଉପଗତ ହୋଇ ଅପ୍ରତିମ ଉତ୍ସାହସହକାରେ ବୈଜୟିକ କର୍ମରେ ପ୍ରବୃତ୍ତ ହେଲେ । କିନ୍ତୁ ଅବଶେଷରେ ଧର୍ମାଧର୍ମବିଚାରହୀନ ଦୁର୍ଯ୍ୟୋଧନଙ୍କ ଆଦେଶରେ ଏକୀଭୂତ ଦ୍ରୋଣାଦି ବୀରମାନଙ୍କ ସମାକ୍ରମଣ ଓ ସଂପ୍ରହାରରେ ନିହତ ହୋଇପଡ଼ିଲେ । ଯୁଧିଷ୍ଠିର ଏହି ଦୁର୍ଘଟଣାରେ

ନିତାନ୍ତ ଶୋକାତୁର ଓ ଅସ୍ଥିର ହୋଇ ସାତ୍ୟକିଙ୍କୁ ଅର୍ଜୁନଙ୍କଠାକୁ ପଠାଇଥିଲେ ବୋଲି ମୂଳାନୁକ୍ତ କଥା ଲେଖି ଅଛନ୍ତି, ମାତ୍ର ମୂଳଗ୍ରନ୍ଥରେ ବହୁ ଅଧ୍ୟାୟରେ ସୁବିସ୍ତୃତ ବ୍ୟାସୋକ୍ତ ସାନ୍ତ୍ୱନାମୂଳକ ଚରିତଗୁଡ଼ିକୁ ଲେଖି ନାହାନ୍ତି । ତଥାପି ପ୍ରୋକ୍ତ ଷୋଡ଼ଶ ସନ୍ଦର୍ଭକୁ ତ୍ୟାଗ କରିଥିବା ତାଦୃଶ ଦୋଷାବହ ନୁହେଁ । କାରଣ ସ୍ଥୂଳଚରିତର ଅନୁକରଣରେ ଯେଉଁମାନେ ଭାରତ ଲେଖିଅଛନ୍ତି, ସେମାନଙ୍କ ଲେଖାରେ ଏଗୁଡ଼ିକର ଉଲ୍ଲେଖ ତାଦୃଶ ଆବଶ୍ୟକ ନୁହେଁ । ଅତଏବ ବଙ୍ଗାଦି ଭାରତକର୍ତ୍ତା କାଶୀରାମଦାସ ପ୍ରଭୃତି ମଧ୍ୟ ଏହି ଷୋଡ଼ଶରାଜିକ ସନ୍ଦର୍ଭକୁ ତ୍ୟାଗ କରିଦେଇ ଅଛନ୍ତି ।

ଅତଃପର ମୂଳରେ ପ୍ରତିଜ୍ଞାଭିଧ ଉପପର୍ବର କଥା । ଅଭିମନ୍ୟୁଙ୍କ ନିଧନରେ ଦିନାବସାନ ହେବାରୁ ଉଭୟ ପକ୍ଷ ସ୍ୱସ୍ୱ ଶିବିରାଭିମୁଖରେ ପ୍ରସ୍ଥାନ କଲାପରେ ସକୃଷ୍ଣ ଅର୍ଜୁନ ନାରାୟଣୀ ସେନା ବିନାଶ କରି ଦିନାତ୍ୟୟରେ ଶିବିରରେ ଉପଗତ ହୋଇ ଶୁଣିଲେ ଯେ ପୁରା ମହାଦେବଙ୍କ ପ୍ରଦତ୍ତ ବରରେ ସମ୍ପ୍ରତି ଉଦ୍ଦୃପ୍ତ ଜୟଦ୍ରଥ ଭୀମାଦିଙ୍କୁ ନିବାରଣ କରି ରଖିବାରୁ ୬ଜଣ ରଥୀ ଅଭିମନ୍ୟୁଙ୍କୁ ଅନ୍ୟାୟ ଯୁଦ୍ଧରେ ନିହତ କରିଅଛନ୍ତି । ତେତେବେଳେ ପୁତ୍ର ଶୋକାତୁର ଅର୍ଜୁନ ଅଭିମନ୍ୟୁ ନିଧନର ପ୍ରଧାନ କାରଣଭୂତ ଜୟଦ୍ରଥଙ୍କୁ ''କାଲି ସୂର୍ଯ୍ୟାସ୍ତ ପୂର୍ବେ ଅବଶ୍ୟ ନିହତ କରିବି, ତାହା ନ କଲେ ଅଗ୍ନିରେ ନିଜ ଦେହ ପରିତ୍ୟାଗ କରିବି'' ଏହି ନିଦାରୁଣ ପ୍ରତିଜ୍ଞା କଲେ । ଅର୍ଜୁନଙ୍କର ପ୍ରୋକ୍ତ ପ୍ରତିଜ୍ଞା ସଫଳ କରିବା ଲାଗି ଶ୍ରୀକୃଷ୍ଣ ଚିନ୍ତିତ ହେଲେ ଏବଂ ସେହି ରାତ୍ରିରେ ନିଦ୍ରିତାବସ୍ଥାରେ ଅର୍ଜୁନଙ୍କ ପରିଦୃଷ୍ଟ ବିଚିତ୍ର ସ୍ୱପ୍ନଘଟନା ଗୋଟିଏ ମଧ୍ୟ ଏ ସ୍ଥଳରେ ଉକ୍ତ ଅଛି । ଶ୍ରୀକୃଷ୍ଣ ସ୍ୱପ୍ନରେ ଅର୍ଜୁନଙ୍କଠାକୁ ଆସିଲେ, ଦୁହେଁ ହିମାଚଳ ପ୍ରତି ପ୍ରସ୍ଥାନ କଲେ । ଅର୍ଜୁନ ମହାଦେବଙ୍କ ଉପାସନାରେ ଇତଃପୂର୍ବେ ବନବାସ ସମୟରେ ମହାଦେବଙ୍କଦ୍ୱାରା ବରସ୍ୱରୂପ ପ୍ରଦତ୍ତ ପାଶୁପତ ଅସ୍ତ୍ର ତାହାଙ୍କଠାରୁ ପ୍ରାପ୍ତ ହେଲେ । ଇତ୍ୟାଦି ।

ମୂଳରେ ଉକ୍ତ ପ୍ରତିଜ୍ଞାପର୍ବର ଚରିତ ସବୁ ସାରଳାଦାସଙ୍କ ଭାରତରେ ମଧ୍ୟ ଯଥାଯଥ ଲେଖା ଅଛି । ଅଧିକତଃ ଏ କହନ୍ତି କି, ଭୀମାଦି ଭ୍ରାତୃଚତୁଷ୍ଟୟ କପଟରେ ଅଭିମନ୍ୟୁଙ୍କୁ ନିହତ କରାଇ ଅଛନ୍ତି ବୋଲି ଶୋକରେ ଏକାନ୍ତ ଅଧୀର ଅର୍ଜୁନ ସେମାନଙ୍କ ମସ୍ତକ ଛେଦନାର୍ଥ ଉଦ୍ୟତ ହେଲେ । ଶ୍ରୀକୃଷ୍ଣ ତାହାଙ୍କୁ ନାନା କଥାରେ ସାନ୍ତ୍ୱନା କରି ''ବର୍ତ୍ତମାନ ଇନ୍ଦ୍ର ଅଭିମନ୍ୟୁଙ୍କୁ ଘେନିଯାଇ ଦୈତ୍ୟମାନଙ୍କ ସହ ଯୁଦ୍ଧ କରାଉ ଅଛନ୍ତି'' ବୋଲି କହି ଅର୍ଜୁନଙ୍କୁ ସ୍ୱର୍ଗକୁ ନେଲେ । ଅର୍ଜୁନ ପ୍ରତ୍ୟକ୍ଷତଃ ପୁତ୍ରକୁ ଦେଖିଲେ, କିନ୍ତୁ ଅଭିମନ୍ୟୁ ତେତେବେଳେ ଅର୍ଜୁନଙ୍କୁ ଚିହ୍ନି ପାରିଲେ ନାହିଁ । ଇତ୍ୟାଦି ।

ଅତଃପର ଜୟଦ୍ରଥବଧ ପର୍ବ । ଏହି ପର୍ବରେ ଦୁଇଗୋଟି ପ୍ରଧାନ ଘଟନା ।

ସୂର୍ଯ୍ୟାସ୍ତ ପୂର୍ବେ ସିନ୍ଧୁ ସୌବୀରରାଜ ଜୟଦ୍ରଥବଧ, ରାତ୍ରିରେ ବହୁ ଯୁଦ୍ଧ ପରେ ଘଟୋତ୍କଚବଧ । ସେହିଦିନ ପ୍ରାୟ ସମଗ୍ର ରାତ୍ରିରେ ମଧ୍ୟ ଯୁଦ୍ଧ ହୋଇଥିଲା । ଏହା

ଦ୍ରୋଣାହବର ଚତୁର୍ଥ ଦିବସର ବ୍ୟାପାର, ଅଦ୍ୟ ଦ୍ରୋଣ ସଚକ୍ର ସକଟବ୍ୟୂହ ନିର୍ମାଣ କଲେ । ଅର୍ଜୁନ ଜୟଦ୍ରଥବଧୋତ୍ସୁକତାରେ ଅନେକଙ୍କୁ ପରାଭୂତ ଓ ଅସଂଖ୍ୟ ବୀରଙ୍କୁ ବିଗତାସୁ କରି ବ୍ୟୂହାଭିମୁଖରେ ଅଗ୍ରସର ହେଲେ ।[୧] ଅତି ଭୟଙ୍କର ସଂକୁଳ ଯୁଦ୍ଧରେ ରଥାଶ୍ୱମାନେ ପରିଶ୍ରାନ୍ତ ହେବାରୁ ଅର୍ଜୁନ କୃଷ୍ଣଙ୍କ ପ୍ରାର୍ଥନାରେ ଅସ୍ତ୍ରମହିମାରେ ଭୂଭେଦପୂର୍ବକ ପଦ୍ମାଦିସଂକୁଳ ସରୋବରରୁ ଜଳ ଯୋଗାଇ ଦେଇଥିଲେ ଏବଂ ଯୁଦ୍ଧ ଦିଦୃକ୍ଷାରେ ତତ୍ରାଗତ ନାରଦଙ୍କ ଅବସ୍ଥାନପାଇଁ କେବଳ ଶରନିଚୟରେ ଗୃହ ନିର୍ମାଣ କରିଦେଇଥିଲେ ।[୨] ଅର୍ଜୁନ ବ୍ୟୂହ ମଧ୍ୟରେ ବହୁ ସମୟ ଯୁଦ୍ଧରେ ବ୍ୟାପୃତ ରହିଥିଲେ । ତେତେବେଳେ ଯୁଧିଷ୍ଠିରାଦିଷ୍ଟ ସାତ୍ୟକି ଓ ଭୀମ ଅର୍ଜୁନଙ୍କଠାକୁ ଯିବାକୁ ବାହାରିଲେ । ଏମାନଙ୍କର ଏହି ପ୍ରସ୍ଥାନକ୍ରମ ମୂଳଗ୍ରନ୍ଥରେ ଟିକିଏ ବିସ୍ତୃତ ଭାବରେ ବର୍ଣ୍ଣିତ ଅଛି । ଏମାନେ ପଥ ମଧ୍ୟରେ ବହୁ ବୀରବିନାଶରେ ଯମରାଷ୍ଟ୍ର ବର୍ଦ୍ଧିତ କରି ଅର୍ଜୁନଙ୍କଠାରେ ଉପସ୍ଥିତ ହୋଇଥିଲେ । ଏ ସ୍ଥଳରେ ମାର୍ଗରୋଧକ ଭୂରିଶ୍ରବା ସାତ୍ୟକିଙ୍କ ଗମନରେ ବହୁ ଅନ୍ତରାୟ ଘଟାଇଥିଲେ । ଅର୍ଜୁନ ତଦୀୟ ବାହୁଚ୍ଛେଦ କଲା ପରେ ସାତ୍ୟକି ମସ୍ତକ ଛେଦନ କରିଥିଲେ । ଅର୍ଜୁନ ମଧ୍ୟଂଦିନଗତ ସୂର୍ଯ୍ୟପ୍ରାୟ ଅମିତ ପ୍ରତାପରେ ଦ୍ରୋଣ ଦ୍ରୋଣି କୃପ ଶଲ୍ୟ ପ୍ରଭୃତି ମାର୍ଗରୋଧକଙ୍କୁ ପରାଭୂତ କରୁ କରୁ ସୂର୍ଯ୍ୟ ଅସ୍ତାଚଳଗମନୋନ୍ମୁଖ ହୋଇ ଆସିଲେ । ଅପରାହ୍ନ ସମୟରେ ଶ୍ରୀକୃଷ୍ଣ ଅର୍ଜୁନଙ୍କୁ ଚିନ୍ତିତ ଓ ଉଦ୍‌ବିଗ୍ନ ଆଉ ସୂର୍ଯ୍ୟଦେବଙ୍କୁ ଦ୍ରୁତଗତି ଦେଖି ଯୋଗମାୟାରେ ସୂର୍ଯ୍ୟମଣ୍ଡଳ ସମାଚ୍ଛନ୍ନ ରଖିଲେ । ବ୍ୟୂହର ନିଗୂଢ଼ କକ୍ଷରେ ସ୍ଥିତ ଜୟଦ୍ରଥ ସମ୍ପ୍ରତି ସୂର୍ଯ୍ୟ ଅସ୍ତଗତ ହେଲେ, ଅର୍ଜୁନ ଅଗ୍ନିରେ ପ୍ରବିଷ୍ଟ ହେବେ, ଏହି ଭ୍ରାନ୍ତ ବିଚାରରେ ଅନବହିତମନା ହୋଇ ଅର୍ଜୁନଙ୍କ ସମ୍ମୁଖୀନ ହେଲେ । ତଦା ଅର୍ଜୁନ ସହସା ତାଙ୍କୁ ନିହତ କଲେ । ଜୟଦ୍ରଥ ବିନିପାତର ଅବ୍ୟବହିତ ପରେ ଶ୍ରୀକୃଷ୍ଣ ସୂର୍ଯ୍ୟାବରଣକୁ ଦୂର କରିଦେଲେ ।

ଅପିଚ ଏ ସ୍ଥଳରେ ଆଉ ଗୋଟିଏ କଥା ମଧ୍ୟ ଉକ୍ତ ଅଛି । ଅର୍ଜୁନଙ୍କୁ ଜୟଦ୍ରଥ ବଧରେ ଉଦ୍‌ଯୁକ୍ତ ଦେଖି ଶ୍ରୀକୃଷ୍ଣ କହିଲେ, ଯେ ଏହାଙ୍କ ମସ୍ତକ କାଟି ଭୂପୃଷ୍ଠରେ ପତିତ କରିବେ, ତାହାଙ୍କ ଶିର ଶତଧା ଖଣ୍ଡବିଖଣ୍ଡ ହେଉ ବୋଲି ଜୟଦ୍ରଥଙ୍କ ପିତା ତପସ୍ୟାରେ ବର ପ୍ରାପ୍ତ ହୋଇ ଅଛନ୍ତି । ଅତଏବ ତୁମ୍ଭେ ଏହାଙ୍କ ଛିନ୍ନ ମସ୍ତକ ଭୂତଳରେ ନିକ୍ଷିପ୍ତ କର ନାହିଁ । ବାଣେ ବାଣେ ସଂଚାଳିତ କରି ତଦୀୟ ପିତାଙ୍କ କ୍ରୋଡ଼ରେ ପକାଇଦିଅ । ଅର୍ଜୁନ ସେହି ଛିନ୍ନ ମସ୍ତକକୁ ବାଣାଧାରରେ ନେଇ ସେହିପରି କଲେ । ସମନ୍ତପଞ୍ଚକରେ

---

[୧] ଏ ସ୍ଥଳରେ ଦ୍ରୋଣ ଦୁର୍ଯ୍ୟୋଧନଙ୍କୁ ଗୋଟିଏ ଅଭେଦ୍ୟ କବଚ ଦେଇ ଏହିଟି ବୃତ୍ରାସୁର ଯୁଦ୍ଧରେ ଇନ୍ଦ୍ର ପରିଧାନ କରିଥିଲେ ବୋଲି କହିଅଛନ୍ତି - ଏହି ବିଷୟଟି ସାରଳାଦାସଙ୍କ ଭାରତରେ ନାହିଁ ।

[୨] ଦ୍ରୋ.ପ. ୯୯ ଅ: ୫୫- ୫୯ ଶ୍ଳୋକ ପର୍ଯ୍ୟନ୍ତ ଦେଖନ୍ତୁ ।

ସନ୍ଧ୍ୟାବନ୍ଦନାଦିରୁ ଉତ୍‌ଥାନୋନ୍ମୁଖ ଜୟଦ୍ରଥଙ୍କ ପିତାଙ୍କ କୋଳରୁ ମସ୍ତକଟି ଭୂମିରେ ପଡ଼ିବାରୁ ତାହାଙ୍କ ମସ୍ତକ ମଧ ଖଣ୍ଡ ଖଣ୍ଡ ହୋଇ ପଡ଼ିଲା ।

ସାରଳାଦାସ ମହାଶୟ ଜୟଦ୍ରଥ ବଧ ସନ୍ନିଧାନରେ ତାଦୃଶ ବୈଷମ୍ୟ ନିହିତ କରି ନାହାନ୍ତି, କିନ୍ତୁ ମୂଳୋକ୍ତ ସଚକ୍ର ଶକଟବ୍ୟୂହକୁ ଏ ମହାଶୟ ସପଦ୍ମ ଶକଟବ୍ୟୂହ କରି ଲେଖି ଅଛନ୍ତି ।[୧] ଅପିଚ ଭାରତ ଯୁଦ୍ଧର ପ୍ରାରମ୍ଭରୁ ଏହି ସଂବିଧାନଟି ତ୍ରୟୋଦଶ ଦିନର ଘଟଣା ବୋଲି କହନ୍ତି ।[୨] ମାତ୍ର ତାହା ଯଥାର୍ଥ ନୁହେଁ । ଜୟଦ୍ରଥବଧ ବିଧାନଟି ଚତୁର୍ଦ୍ଦଶ ଦିବସର ବ୍ୟାପାର । ଅତଃପର ବୀରମାନଙ୍କର ଯୁଦ୍ଧଖେଳା ଏବଂ ଅର୍ଜ୍ଜୁନ ଶର ପ୍ରଭାବରେ ଅଶ୍ୱମାନଙ୍କୁ ଜଳ ଯୋଗାଇଥିବା ଚର୍ଯ୍ୟା ପ୍ରାୟଶଃ ମୂଳଗ୍ରନ୍ଥର ଅନୁମତ ହୋଇଅଛି । ଯୁଧିଷ୍ଠିରଙ୍କ ଆଦେଶରେ ଅର୍ଜ୍ଜୁନ ପ୍ରତି ସାତ୍ୟକି ଓ ଭୀମଙ୍କ ଯିବାର କ୍ରମ ଏବଂ ଭୂରିଶ୍ରବାଙ୍କ ବିନାଶକ୍ରମ ସୁଦ୍ଧା ସେହିପରି, ତଥାପି ମୂଳ ଅପେକ୍ଷା ଅତି ସଂକ୍ଷିପ୍ତ ହୋଇଅଛି । କିନ୍ତୁ ଧୃତରାଷ୍ଟ୍ର କତିପୟ ପୁତ୍ରଙ୍କୁ ସଙ୍ଗେ ଧରି ଜାମାତାଙ୍କ ରକ୍ଷାର୍ଥ ଥାଟକୁ ଆବୋରି ରହିଲେ ବୋଲି ଯାହା ଲେଖିଅଛନ୍ତି, [୩] ତାହା ବିଚାରତଃ ଅସମ୍ଭବ । ବୋଧହୁଏ, ଏହା କବିଙ୍କର ଲେଖା ନୁହେଁ, ଅନୁଲେଖକ କେହି ମଧ୍ୟରେ ଦୁଇ ପଦ ମିଶାଇ ଦେଇଥିବେ । ମାତ୍ର ଜୟଦ୍ରଥଙ୍କ ଛିନ୍ନ ମସ୍ତକ ତଦୀୟ ପିତାଙ୍କ ଯୋଗୁଁ ଭସ୍ମୀଭୂତ ହେବା କ୍ରମକୁ କିଞ୍ଚିତ୍ ଭିନ୍ନ ପ୍ରକାର କରି ସେ ସ୍ଥଳରେ ମୂଳାନୁକ୍ତ ତଦୀୟ ପିତା ସୁରଥ ଓ ତତ୍‌ପୂର୍ବପୁରୁଷମାନଙ୍କର ଶାଖାପ୍ରଶାଖାଯୁକ୍ତ କେତେକ ଚରିତ ଲେଖିଯାଇ ଅଛନ୍ତି ।[୪]

ମୂଳ ଗ୍ରନ୍ଥରେ ଦ୍ରୋଣାହବର ଚତୁର୍ଥ ଦିବସର ନୈଶ ଯୁଦ୍ଧ ବା ଘଟୋତ୍କଚବଧକ୍ରମର ପ୍ରାରମ୍ଭରୁ ଘଟୋତ୍କଚବଧ ପର୍ବ ପ୍ରାରବ୍ଧ ହୋଇଅଛି । ରାତ୍ରି ପ୍ରବେଶରେ ରୁଦ୍ରରୂପୀ ଭୀମସେନ ଏବଂ ମାୟାବୀ ଘଟୋତ୍କଚ କେତେକଙ୍କୁ ଭୂମିସାତ୍, କେତେକଙ୍କୁ ମୁଷ୍ଟି ଓ ପାଦପ୍ରହାରରେ ଧୂଳିସାତ୍, ଆଉ କେତେକଙ୍କୁ ଅସ୍ତ୍ରପ୍ରହାରତଃ ଯମସାତ୍ କଲେ ।[୫]

---

[୧] ଶକଟ ଆକାରେ ଦ୍ରୋଣ ବ୍ୟୂହେକ ରଚିଲା–
ଶକଟ ବ୍ୟୂହ ମଧ୍ୟରେ ପଦ୍ମ ବ୍ୟୂହେ କରି,
ନାଡ଼ ତାର ଆବୋରିଲେ ସେନା କୋଟି ଚାରି । ଦ୍ରୋ.ପ. ୭୩ ପୃ:

[୨] ଶୁଣ ରାଜା ବଦନ୍ତି ଅଗସ୍ତି ବ୍ରହ୍ମବେରା ।
ଭାରତ ଯୁଦ୍ଧ ଏ ତ୍ରୟୋଦଶ ଦିନ କଥା ।। ଦ୍ରୋ.ପ. ୭୪ ପୃ:

[୩] ଏତେ ପୁତ୍ରଙ୍କୁ ଘେନିଣ ରାଜା ଧୃତରାଷ୍ଟ୍ର ।
କୁଆଁରର ଛଳେ ଆସି ଆବୋରିଲେ ଥାଟ ।। ଦ୍ରୋ.ପ. ୧୦୭ ପୃ:

[୪] ଦ୍ରୋ.ପ. ୧୧୫ ପୃଷ୍ଠାଠାରୁ ୧୧୯ ପୃଷ୍ଠାଯାଏ ଦେଖନ୍ତୁ ।

[୫] ଏ ସ୍ଥଳରେ କର୍ଣ୍ଣ ଓ କୃପଙ୍କର ବୀରାଭିମାନିତା ସମ୍ବନ୍ଧ ବିବାଦରେ ଅଶ୍ୱତ୍‌ଥାମା କର୍ଣ୍ଣଙ୍କ ମସ୍ତକଚ୍ଛେଦନାର୍ଥ ଉଦ୍ୟତ ହୋଇଥିଲେ । ୧୫୮ - ୧୫୯ ଅଧ୍ୟାୟ ଦେଖନ୍ତୁ । ସାରଳାଦାସ ମହାଶୟ ମୂଳୋକ୍ତ ଏହି ଘଟଣାକୁ ଏ ସ୍ଥାନରେ ନ ହେଲେ ସୁଦ୍ଧା ଅନ୍ୟତ୍ର ପ୍ରସ୍ତାବବଶତଃ ଲେଖିଦେଇ ଅଛନ୍ତି ।

ଦ୍ରୋଣ ଅଶ୍ୱତ୍ଥାମାଦିମାନେ ମଧ ବିକରାଳ ଯୁଦ୍ଧରେ ବିପକ୍ଷ ପକ୍ଷକୁ ନିର୍ଦ୍ଦୟ ଭାବରେ କ୍ଷତବିକ୍ଷତାଙ୍ଗ କରି ପକାଇଲେ । ଉଭୟ ପକ୍ଷୀୟ ବହୁବୀରମାନଙ୍କ ଯୁଦ୍ଧ ପରେ ମହାବୀର ହୈଡ଼ମ୍ବ ଘଟୋତ୍କଚ କ୍ରମଶଃ କର୍ଣ୍ଣ ଓ ଜଟାସୁରଙ୍କ ପୁତ୍ର ଅଳମ୍ବୁଷଙ୍କ ସହ ଯୁଦ୍ଧଖେଳା କଲେ । ପରିଶେଷରେ ବକଭ୍ରାତା ଜଟାସୁରି ଅଳମ୍ବୁଷ ତୁରଙ୍ଗବଦନ ପିଶାଚ ସେନା ସହ ଘଟୋତ୍କଚଙ୍କଦ୍ୱାରା ନିହତ ହେଲେ ।[୧] ତେତେବେଳେ ଦୁର୍ଯ୍ୟୋଧନଙ୍କ ସମ୍ମତିକ୍ରମେ ବକାସୁର କିର୍ମୀର ପ୍ରଭୃତିଙ୍କ ବନ୍ଧୁ [୨] ଅଳାୟୁଧ ନାମକ ରାକ୍ଷସ ମଧ ପୂର୍ବବୈର ସ୍ମରଣରେ ଭୈମଙ୍କ ସହ ଭୀମ ଯୁଦ୍ଧ କରି ଶମନଭବନର ଅତିଥି ହୋଇଗଲେ । ପ୍ରତ୍ୟହ ଦିବାଭାଗରେ କେବଳ ଯୁଦ୍ଧ ହେଉଥିଲା, ଅଦ୍ୟ ରାତ୍ରିରେ ସୁଦ୍ଧା ପ୍ରଦୀପ ଜ୍ୱଳନପୂର୍ବକ ଯୁଦ୍ଧ କରିବାକୁ ପଡ଼ିଥିଲା । ରାତ୍ରିରେ ରାତ୍ରିଂଚର ରାକ୍ଷସମାନଙ୍କର ବଳ ସମଧିକ ଥିବାରୁ ଘଟୋତ୍କଚ ଏକାନ୍ତ ଦୁର୍ଦ୍ଦମ୍ୟ ହୋଇ ପାଣ୍ଡବସୈନ୍ୟ ଧ୍ୱଂସକାରୀ କର୍ଣ୍ଣଙ୍କୁ ଆକ୍ରମଣ କରି ଅଶେଷ କୌରବବଳ ବିନାଶ କଲେ । କେହି ତାହାଙ୍କର ଅଭିମୁଖୀନ ହୋଇ ପାରିଲେ ନାହିଁ, କେବଳ କର୍ଣ୍ଣ ମାତ୍ର ଠିଆ ହେବାକୁ ସାହାସୀ ହେଲେ । ପରିଶେଷରେ ସେ ମଧ ହୈଡ଼ମ୍ବ ପ୍ରତାପର ସହିଷ୍ଣୁ ହୋଇପାରିଲେ ନାହିଁ । ତାହାଙ୍କ ନିକଟରେ ଇନ୍ଦ୍ରପ୍ରଦତ୍ତ ଏକପୁରୁଷଘାତିନୀ ଅପ୍ରତିନିବୃତ୍ତା ଅମୋଘ ଶକ୍ତି ଥିଲା । ଏହାକୁ ସେ ଅର୍ଜୁନନାଶାର୍ଥ ଅତିଯତ୍ନରେ ରଖିଥିଲେ । ସମ୍ପ୍ରତି ନିତାନ୍ତ ବିପନ୍ନ ହୋଇପଡ଼ି ଅଗତ୍ୟା ଘଟୋତ୍କଚଙ୍କ ପ୍ରତି ସେହି ଶକ୍ତି ନିକ୍ଷେପ କଲେ । ଶୈଳୋପମ ଘଟୋତ୍କଚ ଶକ୍ତିପାତ ମାତ୍ରେ ନିପତିତ ଓ ବିଦଳିତ ହେଲେ । ଘଟୋତ୍କଚ ବଧ ସମ୍ବାଦ ଶୁଣି ପାଣ୍ଡବୀୟମାନେ ଶୋକକାତରତାରେ ବହୁ କ୍ରନ୍ଦନ କରିବାକୁ ଲାଗିଲେ, କିନ୍ତୁ ଶ୍ରୀକୃଷ୍ଣ ସଂତୋଷାତିଭରରେ ସିଂହନାଦ ଓ ବାହୁ ଆସ୍ଫୋଟନ କରି ତାଣ୍ଡବ ଆରମ୍ଭ କଲେ । ତଦା ଅର୍ଜୁନ ବିସ୍ମିତ ଓ ଚମତ୍କୃତ ହୋଇ ଜିଜ୍ଞାସା କଲେ, ହେ ଶ୍ରୀକୃଷ୍ଣ ! ଆପଣଙ୍କର ଏ କି ପ୍ରକାର କାଣ୍ଡ ? ଆମ୍ଭେମାନେ ଶୋକରେ ଅସ୍ଥିର ହେଉଅଛୁଁ, ଆପଣ ଆନନ୍ଦରେ ନାଚୁଅଛନ୍ତି କିପରି ? ଶ୍ରୀକୃଷ୍ଣ କହିଲେ, କର୍ଣ୍ଣ ତ୍ୱଦୀୟ ନିଧନ ସକାଶେ ଯେଉଁ ଅମୋଘ ଶକ୍ତି ରଖିଥିଲେ, ତାହା ଘଟୋତ୍କଚ ନାଶାର୍ଥ ପ୍ରୟୋଗ କରି ଅଛନ୍ତି । ଆଉ ତୁମ୍ଭର ଭୟ କାରଣ ନାହିଁ । କର୍ଣ୍ଣଙ୍କୁ ଅବଶ୍ୟ ନାଶ କରି ପାରିବ । ଇତ୍ୟାଦି ।

ସାରଳା ଦାସ ମହାଶୟ ଘଟୋତ୍କଚ ନିଧନ କ୍ରମକୁ ମୂଳାନୁମତ ଲେଖି ନାହାନ୍ତି, ଅପିଚ ଚତୁର୍ଥ ଓ ପଞ୍ଚମ ଦିବସର ଘଟଣାମାନଙ୍କୁ ପୃଥଗ୍‌ଭୂତ ନ ରଖି ସମୟର ପୂର୍ବାପର

---

[୧] ଅଳମ୍ବୁଷଙ୍କର ତୁରଙ୍ଗବଦନ ପିଶାଚ ସେନା ଥିଲେ ।
ଏ ଜଟାସୁରଙ୍କର ପୁତ୍ର ଥିଲେ । ଦ୍ରୋ.ପ. ୧୭୫ ଅଧ୍ୟାୟ ଦେଖନ୍ତୁ ।

[୨] ଅଳାୟୁଧଙ୍କ ପରିଚୟ ସାରଳାଦାସେ ଠିକ୍ ପାଇ ନ ପାରି ଏହାକୁ ହଳାୟୁଧ ନାମରେ ଇତଃପୂର୍ବେ ଅନ୍ୟତ୍ର ଅନ୍ୟ ପ୍ରକାର ଘଟନାରେ ନିହିତ କରାଇ ଅଛନ୍ତି । ଏ ଦୈତ୍ୟ ବକ ଦୈତ୍ୟର ଜ୍ଞାତି ଓ ହିଡ଼ମ୍ବାଦିର ସଖା ଥିଲେ । ଦ୍ରୋ.ପ. ୧୭୭ ଅଧ୍ୟାୟ ଦେଖନ୍ତୁ ।

ବିଚାରରାହିତ୍ୟରୁ ଏକତ୍ର ସଂମିଳିତ କରି ଯେ କୌଣସିମତେ ଲେଖିଦେଇ ଅଛନ୍ତି । ଏ ମହାଶୟ ଘଟୋତ୍କଚବଧ ପୂର୍ବେ ଦ୍ରୋଣଙ୍କଦ୍ୱାରା ଦ୍ରୁପଦଙ୍କୁ ନିହତ କରାଇ ଅଛନ୍ତି ଏବଂ ଅତିରିକ୍ତତଃ ଦ୍ରୋଣ ଓ ଦ୍ରୁପଦଙ୍କର ଆଦି ପର୍ବରେ ବର୍ଣ୍ଣିତ ମିତ୍ରତା ଘଟନାମୂଳକ ଚରିତକୁ ଏ ସ୍ଥଳରେ ପ୍ରସ୍ତାବବଶତଃ ଆମ୍ରେଡନ କରି ଅଛନ୍ତି ।[୧] ପ୍ରକୃତତଃ ଦ୍ରୁପଦରାଜ ଦ୍ରୋଣାହବର ପଞ୍ଚମ ଦିବସରେ ନିହତ ହୋଇଥିଲେ ।[୨] ଏ ମହାଶୟ ଘଟୋତ୍କଚବଧ ଉପାଖ୍ୟାନରେ କହନ୍ତି କି, କର୍ଣ୍ଣ ଅର୍ଜୁନଙ୍କ ପ୍ରତାପରେ ଅସ୍ତବ୍ୟସ୍ତ ହୋଇ ଯେତେବେଳେ ତାହାଙ୍କ ପ୍ରତି ଇନ୍ଦ୍ରଦତ୍ତ ଶକ୍ତି ଉତ୍ତୋଳନ କଲେ, ତେତେବେଳେ ଶ୍ରୀକୃଷ୍ଣ ଅର୍ଜୁନରକ୍ଷାର୍ଥ ଚକ୍ରାଗତ ଇନ୍ଦ୍ରଙ୍କ ଆଦେଶମତେ ନନ୍ଦିଘୋଷ ରଥକୁ ଅଦୃଶ୍ୟ ରଖିବାପାଇଁ ହନୁମାନଙ୍କୁ ପ୍ରବର୍ତ୍ତାଇଲେ ଏବଂ ପୁରା ଏହି ଆଘାତ ତାହାଙ୍କୁ କୌଣସି ପ୍ରକାରେ ବିପନ୍ନ କରିପାରି ନାହିଁ, ଏବେ ମଧ କିଛି ହାନି କରି ପାରିବ ନାହିଁ ବୋଲି ହନୁମାନଙ୍କ ଅବାଧତ୍ୱ ସ୍ଥିର କଲେ ।[୩] କର୍ଣ୍ଣଙ୍କୁ ଅର୍ଜୁନଙ୍କ ପ୍ରତି ଇନ୍ଦ୍ରଶକ୍ତି ପ୍ରହାରୋଦ୍ୟତ ଦେଖି କପଟତଃ ଘଟୋତ୍କଚଙ୍କୁ ପ୍ରବର୍ତ୍ତାଇଲେ କି, ଏହି ଦେଖ, ତୁମ୍ଭଙ୍କୁ ନାଶିବାପାଇଁ କର୍ଣ୍ଣ ଇନ୍ଦ୍ରଶକ୍ତି ପ୍ରହାରୁ ଅଛନ୍ତି, ତୁମ୍ଭେ ରଥ ପଛରେ ଲୁଚିଯାଅ । କୃଷ୍ଣ ଆଦେଶରେ ବିଶ୍ୱାସ ରଖି ଘଟୋତ୍କଚ ରଥର ପଶ୍ଚାଦ୍‌ବର୍ତ୍ତୀ ହେଲାରୁ କୃଷ୍ଣାଦିଷ୍ଟ ହନୁମାନ ରଥକୁ ଭୂଗର୍ଭରେ ଚାପିଦେଲେ, ତେତେବେଳେ କର୍ଣ୍ଣ ନିକ୍ଷିପ୍ତ ଶକ୍ତି ଘଟୋତ୍କଚଙ୍କୁ ବିଦଳିତ କଲା ।[୪]

ଅତଃପର ଦ୍ରୋଣବଧ ଉପପର୍ବର କଥା । ଚତୁର୍ଥ ଦିବସର ରାତ୍ରିଯୁଦ୍ଧ ପରଦିନ ସୂର୍ଯ୍ୟୋଦୟ ପ୍ରାରମ୍ଭ ପର୍ଯ୍ୟନ୍ତ ଲାଗିଥିଲା, ବୀରମାନେ ପ୍ରଭାତରେ ସନ୍ଧ୍ୟା ବନ୍ଦନାଦି କରି

---

[୧] ଦ୍ରୋ.ପ. ୧୨୫ – ୧୨୬ ପୃଷ୍ଠା ଦେଖନ୍ତୁ ।

ଏତାଦୃଶ ଆମ୍ରେଡନ ବଙ୍ଗ ଭାରତରେ ସୁଦ୍ଧା ସ୍ଥାନେ ସ୍ଥାନେ ଆନୁଷଙ୍ଗିକ ରୂପେ ଥିବାର ଦେଖାଯାଏ । ଯଥା– ଦ୍ରୋଣ ପର୍ବରେ ଜୟଦ୍ରଥଙ୍କର ପାଣ୍ଡବପରାଭବାର୍ଥ (ଆଦିପର୍ବରେ ଇତଃପୂର୍ବେ ବର୍ଣ୍ଣିତ) ପୂର୍ବକୃତ ତପସ୍ୟା ବୃତ୍ତାନ୍ତ । ବ. ଭା. ଦ୍ରୋ.ପ. ୬୩୮ ପୃଷ୍ଠା ଦେଖନ୍ତୁ । ପୁଣି କର୍ଣ୍ଣଙ୍କଠାରୁ ଇନ୍ଦ୍ରଙ୍କର କବଚ ଗ୍ରହଣ ବୃତ୍ତାନ୍ତ – ୬୭୧ ପୃଷ୍ଠା ଦେଖନ୍ତୁ ।

[୨] ଏ ଭଳି ଘଟଣା ବଙ୍ଗ ଭାରତରେ କାଶୀରାମଦାସ ମଧ ସ୍ଥାନେ ସ୍ଥାନେ ଲେଖି ଅଛନ୍ତି । ଗୋଟିଏ ନିଦର୍ଶନ ଦେଖନ୍ତୁ । ବ୍ୟାସଙ୍କ ମତେ ଭଗଦତ୍ତ ଦ୍ରୋଣାହବର ଦ୍ୱିତୀୟ ଦିନ ମୃତ ହୋଇଥିଲେ । କାଶୀରାମ ଦାସେ ତାହାଙ୍କୁ ପଞ୍ଚମ ଦିବସରେ ନିହତ ବୋଲି ଲେଖି ଅଛନ୍ତି ।

ବ.ଭା. ଦ୍ରୋ.ପ. ୧୭୫ ପୃଷ୍ଠା ଦେଖନ୍ତୁ ।

[୩] ଏ ସ୍ଥଳରେ ଅଞ୍ଜନା, ବାଳୀ, ସୁଗ୍ରୀବଙ୍କର ଜନ୍ମକ୍ରମ, ଅଞ୍ଜନା ଦୋଷଯୁକ୍ତା ହେବା କ୍ରମ, ଅଞ୍ଜନାଙ୍କ ଗର୍ଭରୁ ହନୁମାନ ଜନ୍ମି ସୂର୍ଯ୍ୟଙ୍କୁ ଆକ୍ରମିବା, ଇନ୍ଦ୍ର ତାଙ୍କୁ ବଜ୍ରଶକ୍ତି ପ୍ରହାରିବା ଇତ୍ୟାଦି କଥାଗୁଡ଼ିଏ ଲେଖିଅଛନ୍ତି । ଦ୍ରୋ.ପ. ୧୩୩-୧୩୬ ପୃଷ୍ଠା ଦେଖନ୍ତୁ ।

[୪] ହନୁମନ୍ତ ରଥକୁ ଚାପିଲା କୁତୂହଳେ ।

ପୁଣି ଯୁଦ୍ଧରେ ପ୍ରବୃତ୍ତ ହେଲେ । ପଞ୍ଚମ ଦିବସରେ ପଞ୍ଚାଶୀତି ବର୍ଷ ବୟସ୍କ[୧] ଦ୍ରୋଣ ଭୈରବ ରୂପ ଧାରଣପୂର୍ବକ ଷୋଡ଼ଶ ବର୍ଷ ବୟସ୍କ ତରୁଣ ପ୍ରାୟ ରଣାଙ୍ଗଣରେ ବିଚରଣ କରି ଦ୍ରୁପଦ ଓ ବିରାଟ ରାଜାଙ୍କୁ, କୈକେୟ ଚେଦି ପାଞ୍ଚାଳ ବୀରମାନଙ୍କୁ ଏବଂ ଅସଂଖ୍ୟ ବରୁଥିନୀକୁ ବିଧ୍ୱସ୍ତ କଲେ । ତେତେବେଳେ ଦ୍ରୋଣଙ୍କ କାଳାନ୍ତକ ମୂର୍ତ୍ତି ଦର୍ଶନରେ ସମସ୍ତେ ଭୀତ ହେଲେ । ଶ୍ରୀକୃଷ୍ଣଙ୍କ ଆଦେଶରେ ଭୀମସେନ ମାଳବେଶ୍ୱର ଇନ୍ଦ୍ରବର୍ମାଙ୍କ ଅଶ୍ୱତ୍ଥାମା ନାମକ ଗଜକୁ ନିହତ କରି ଦ୍ରୋଣି ଅଶ୍ୱତ୍ଥାମା ହତ ବୋଲି ଉଦ୍‌ଘୋଷ କଲେ । ଦ୍ରୋଣ ଅଶ୍ୱତ୍ଥାମାଙ୍କ ମରଣ ସମ୍ବାଦରେ କିଞ୍ଚିତ୍ ବିଷର୍ଣ୍ଣ ଓ ଶଙ୍କିତ ହୋଇ ସୁଦ୍ଧା ପୁତ୍ରଙ୍କର ଅସାଧାରଣ ବୀର୍ଯ୍ୟବତ୍ତାର ବିଶ୍ୱାସରେ ଧୈର୍ଯ୍ୟ ଧରି ଏକାବେଳକେ ତ୍ରିଂଶତ୍ ସହସ୍ର ସୈନ୍ୟ ସର୍ବତୋମୁଖୀ ବାଣଧାରାରେ ନାଶ କଲାରୁ ଅଗ୍ନିପୁରୋଗମ ବିଶ୍ୱାମିତ୍ର ଯମଦଗ୍ନି ଭରଦ୍ୱାଜ ପ୍ରଭୃତି ଋଷିମାନେ ଆସି ତାହାଙ୍କୁ ଯୁଦ୍ଧରୁ ନିବୃତ୍ତ ହେବାକୁ ଅନୁରୋଧ କଲେ । ତଦା ନିତାନ୍ତ ବିଷର୍ଣ୍ଣ ଦ୍ରୋଣ ଅଶ୍ୱତ୍ଥାମା ନିଧନର ସତ୍ୟତା ଉପଲବ୍‌ଧି ସକାଶେ ସତ୍ୟନିଷ୍ଠ ଯୁଧିଷ୍ଠିରଙ୍କୁ ଜିଜ୍ଞାସା କଲେ । ସେ ଗଜ ଶବ୍ଦଟିକୁ ଅବ୍ୟକ୍ତ ରଖି ଅଶ୍ୱତ୍ଥାମା ହତ ବୋଲି ଜଣାଇଦେଲେ ।[୨] ଦ୍ରୋଣାଚାର୍ଯ୍ୟ ଯୁଧିଷ୍ଠିରଙ୍କ କଥାରେ ବିଶ୍ୱାସ ରଖି ଅସ୍ତ୍ରଶସ୍ତ୍ର ତ୍ୟାଗପୂର୍ବକ ରଥୋପରି ଯୋଗାବଲମ୍ବନରେ ବିଷ୍ଣୁ ଧ୍ୟାନରେ ରତ ହେଲେ । ଏହି ଅବସରରେ ଧୃଷ୍ଟଦ୍ୟୁମ୍ନ ଦ୍ରୋଣଗୁରୁଙ୍କର ମସ୍ତକ ଛେଦନ କଲେ । ଧର୍ମାତ୍ମା ଯୁଧିଷ୍ଠିର ଏହି ଗୁରୁବଧ ପାପର ଭାଗୀ ହେଲେ । ଇତ୍ୟାଦି ।

ଶ୍ରୀମାନ୍ ସାରଳାଦାସଙ୍କ ଲେଖାରେ ଦ୍ରୋଣବଧ ସଂବିଧାନର ଅନ୍ୟାନ୍ୟ ଯୁଦ୍ଧବିବରଣ ଭିନ୍ନ ପ୍ରକାର ହୋଇଥିଲେ ସୁଦ୍ଧା କପଟ କୌଶଳରେ ଦ୍ରୋଣଙ୍କୁ ନାଶିବା କ୍ରମ ମୂଳାନୁମତ ଅଟେ । ଦ୍ରୋଣଙ୍କ ପ୍ରତି ସମାଗତ ସାଗ୍ନି ବିଶ୍ୱାମିତ୍ରାଦି ଋଷିମାନଙ୍କର ଯୁଦ୍ଧନିବୃତ୍ୟର୍ଥକ ଆଦେଶାଦି ଏ ମହାଶୟ ଲେଖି ନାହାନ୍ତି; ମାତ୍ର ସେହି ଶୀତ ରାତ୍ରିରେ ଅର୍ଜୁନ ସମସ୍ତଙ୍କୁ ଅଗ୍ନି ଯୋଗାଇ ଦେଇଥିଲେ ବୋଲି ଅତିରିକ୍ତ କଥା

---

ନନ୍ଦିଘୋଷ ରଥ ଯାଇ ପଶିଲା ପାତାଳେ ।।
ହିଡ଼ମ୍ବିକାର ନନ୍ଦନ ଥିଲା ରଥ ପଛେ ।
ସେ ଶସ୍ତ୍ର ପଡ଼ିଲା ଘଟୋତ୍କଚର ବକ୍ଷେ ।। ଦ୍ରୋ.ପ. ୧୪୧ ପୃଷ୍ଠା ।

ଏବଂ ଚ ଏ ସ୍ଥଳରେ ରାଜସୂୟଯାଗ ସମୟରେ ଘଟୋତ୍କଚ ଦ୍ରୌପଦୀଙ୍କଠାରୁ ଶାପ ପାଇଥିବାରୁ ଏପରି ବିପଦରେ ପଡ଼ିଲେ ବୋଲି କେତେଗୁଡ଼ିଏ କଥା ମଧ ଲେଖିଅଛନ୍ତି । ଦ୍ରୋ.ପ. ୧୪୧ - ୧୪୩ ପୃଷ୍ଠା ଦେଖନ୍ତୁ ।

[୧] ଆକର୍ଣ୍ଣପଳିତଃ ଶ୍ୟାମୋ ବୟସାଶୀତିପଞ୍ଚକଃ ।
ରଣେପର୍ଯ୍ୟଚରଦ୍ ଦ୍ରୋଣଃ ବୃଦ୍ଧଃ ଷୋଡ଼ଶବର୍ଷବତ୍ ।।
ଦ୍ରୋ.ପ. ୧୨୫ ଅଧ୍ୟାୟ ୩ ଶ୍ଳୋକ ।

[୨] ଅବ୍ୟକ୍ତମବ୍ରବୀଦ୍ ବାକ୍ୟଂ ହତଃ କୁଞ୍ଜର ଇତ୍ୟୁତ — ଦ୍ରୋ.ପ.

ଲେଖି ଅଛନ୍ତି[୧] ଏବଂ ଅଶ୍ୱତ୍ଥାମା ହସ୍ତୀ ଐରାବତବଂଶପ୍ରସୂତ ବୋଲି ଗୋଟିଏ ସଂକ୍ଷିପ୍ତ ଚରିତ[୨] ଆଉ ଧୃଷ୍ଟଦ୍ୟୁମ୍ନ ଦ୍ରୋଣଙ୍କ ମସ୍ତକ ଛେଦିବା ସ୍ଥଳରେ ପିତୃଶତ୍ରୁ ଅବଶ୍ୟ ହନ୍ତବ୍ୟ ବୋଲି ତ୍ରେତାଯୁଗର ଅଙ୍ଗଦ ପିତୃବୈର ସ୍ମରି ରାମଙ୍କୁ "ମୋ ହସ୍ତରେ ତୁମ୍ଭର ନିଧନ ହେବ" ଏହି ବର ମାଗିଥିବାର ସନ୍ଦର୍ଭଟି ଲେଖିଅଛନ୍ତି ।[୩]

ଅତଃପର ନାରାୟଣାସ୍ତ୍ରମୋକ୍ଷ ପର୍ବରେ ଅଶ୍ୱତ୍ଥାମା ପିତୃବଧରେ ଏକାନ୍ତ ଦୁଃଖିତ ହୋଇ ନାରାୟଣାସ୍ତ୍ର ପ୍ରୟୋଗ କରି ଥିବାର ଉକ୍ତ ଅଛି । ସେ ସମୟରେ ଏଣେ ପାଣ୍ଡବବାହିନୀରେ ବ୍ରାହ୍ମଣପ୍ରବର ଦ୍ରୋଣଙ୍କ ବଧଜନିତ ପାତକ ସମ୍ବନ୍ଧରେ ଧୃଷ୍ଟଦ୍ୟୁମ୍ନ ସାତ୍ୟକି ପ୍ରଭୃତିଙ୍କର କଳହ ଉତ୍ପନ୍ନ ହେଲା । ଶ୍ରୀକୃଷ୍ଣ କୌଣସି ପ୍ରକାରେ କଳହ ପ୍ରଶମିତ କରି ନାରାୟଣାସ୍ତ୍ରର ପ୍ରତିକାର ଚିନ୍ତା କଲେ । ଏହି ଅସ୍ତ୍ରର ଏପରି ସର୍ବଂକଷ ମହିମା ଯେ, ତଦ୍ୱାରା ସମଗ୍ର ପୃଥିବୀ ମଧ୍ୟ ବିନଷ୍ଟ ହୋଇପାରେ । ଦିବ୍ୟାସ୍ତ୍ରବିତ୍ ଅର୍ଜୁନ ମଧ୍ୟ ତତ୍‌ପ୍ରତିକାରରେ ଅସମର୍ଥ ପ୍ରାୟ ହେଲେ । ସମସ୍ତ ପାଣ୍ଡବ ସୈନ୍ୟ ଯୁଗପତ୍ ମୁମୂର୍ଷୁ ହୋଇ ପଡ଼ିଲେ, ତେତେବେଳେ ଶ୍ରୀକୃଷ୍ଣ ଦିବ୍ୟାସ୍ତ୍ର ପ୍ରତିକାରର ଉପାୟ କହିଲେ କି, ଯେଉଁମାନେ ସମରରେ ବିମୁଖ, ସେମାନଙ୍କୁ ଏ ଅସ୍ତ୍ର ସ୍ପର୍ଶ କରେ ନାହିଁ । ଅତଏବ ଏଥିରୁ ପରିତ୍ରାଣ ସକାଶେ ସମସ୍ତେ ଯୁଦ୍ଧରୁ କ୍ଷାନ୍ତ ହୁଅ । ସମଗ୍ର ପାଣ୍ଡବସେନା ଓ ସେନାପତିମାନେ କ୍ଷଣକପାଇଁ ଅସ୍ତ୍ରଶସ୍ତ୍ର ତ୍ୟାଗପୂର୍ବକ ଯୁଦ୍ଧବିମୁଖ ହୋଇ ରହିଲେ । ଅର୍ଜୁନ ମଧ୍ୟ ତାହା ହିଁ କରିଥିଲେ । କିନ୍ତୁ ଭୀମସେନ ଗୁରୁଗଦାହସ୍ତରେ ରଣାଙ୍ଗଣରେ ବିଚରଣ କରି ଅସ୍ତ୍ରାଗ୍ନି ମଧ୍ୟରେ ଜ୍ୱାଳାଜାଳ ପରି ପ୍ରକାଶମାନ ହେଲେ । ମାତ୍ର କ୍ରମଶଃ ନାରାୟଣାସ୍ତ୍ର ଶ୍ରୀକୃଷ୍ଣଙ୍କ ମାୟାମହିମା ଓ ଅର୍ଜୁନଙ୍କ ବାରୁଣାସ୍ତ୍ର ପ୍ରଭାବରୁ ପ୍ରଶମିତ ହୋଇଗଲା । ଅଶ୍ୱତ୍ଥାମା ବିରକ୍ତ ହୋଇ ବ୍ୟାସଦେବଙ୍କଠାକୁ ବାହାରିଗଲେ । ତାହାଙ୍କର ଅମୋଘାସ୍ତ୍ର ସବୁ ବ୍ୟର୍ଥ ହୋଇଗଲା କାହିଁକି ବୋଲି ପ୍ରଶ୍ନ କଲାରୁ ବ୍ୟାସଦେବ ପ୍ରଶ୍ନର ଉତ୍ତର ସ୍ୱରୂପ ଅର୍ଜୁନ ଓ ଶ୍ରୀକୃଷ୍ଣଙ୍କର ନରନାରାୟଣତ୍ୱ ପ୍ରକାଶ କଲେ ।

ଦ୍ରୋଣପର୍ବର ସର୍ବାବସାନରେ ସମସ୍ତଙ୍କ ପରୋକ୍ଷୀଭୂତ ଗୋଟିଏ ଆଧିଦୈବିକ ଘଟଣାର କଥା ଉକ୍ତ ଅଛି । ତାହା ଏହି – ଅର୍ଜୁନ ଆପଣାର ବିଜୟାବହ ଗୋଟିଏ ବିସ୍ମୟଜନକ ଦୃଶ୍ୟ ଦେଖି ଯଦୃଚ୍ଛାଗତ ବ୍ୟାସଦେବଙ୍କୁ ପଚାରିଥିଲେ କି, ମୁଁ ଯୁଦ୍ଧାଙ୍ଗଣରେ ଶସ୍ତ୍ରଜାଳରେ ଶତ୍ରୁମାନଙ୍କୁ ପ୍ରହତ କରୁଥିବା ସମୟରେ ମୋର ପୁରୋଭାଗରେ ଉଦ୍‌ଗୃହଶୂଳହସ୍ତ ପାବକପ୍ରଭ ଜାଜ୍ୱଲ୍ୟମାନ ଏକ ମହାପୁରୁଷଙ୍କୁ ଦେଖୁଥାଏଁ । ସେ ଯେଉଁ ଦିଗକୁ ଯାନ୍ତି, ମୋର ଶତ୍ରୁମାନେ ନିହତ ହୋଇ ପଡ଼ନ୍ତି । ସେହି ମହାପୁରୁଷଙ୍କଦ୍ୱାରା

[୧] ଦ୍ରୋ. ପ. ୧୪୭ ପୃଷ୍ଠା ଦେଖନ୍ତୁ ।

[୨] ଦ୍ରୋ. ପ. ୧୪୪ ପୃଷ୍ଠା ଦେଖନ୍ତୁ ।

[୩] ଦ୍ରୋ.ପ. ୧୫୨ ପୃଷ୍ଠା ଦେଖନ୍ତୁ ।

ନିହତ ଶତ୍ରୁମାନେ ମୋଦ୍ୱାରା ନିହତ ବୋଲି ଲୋକେ ଘୋଷଣା କରନ୍ତି । ଆପଣ କହନ୍ତୁ, ସେହି ମହାପୁରୁଷ କିଏ ? ବ୍ୟାସଦେବ କହିଲେ, ବତ୍ସ ! ସେହି ଦିବ୍ୟରୂପ ମହାପୁରୁଷଙ୍କୁ ମହାଦେବ ବୋଲି ବିଶ୍ୱାସ କର । ସେ ତୁମ୍ଭ ପ୍ରତି ସୁପ୍ରସନ୍ନ ହୋଇ ପୁରୋଭାଗରେ ରହିଥାନ୍ତି, ତାହାଙ୍କୁ ପ୍ରଣାମ କର । ତାହାଙ୍କୁ ସ୍ମରଣ କର । ଇତ୍ୟାଦି ।

ସାରଳାଦାସ ମହାଶୟ ଅଶ୍ୱତ୍ଥାମାଙ୍କର ଏହି ଦିବ୍ୟାସ୍ତ୍ର ପ୍ରୟୋଗର କଥା ଅତି ସଂକ୍ଷେପରେ ଭିନ୍ନ ପ୍ରକାର କରି ଅଛନ୍ତି । ଏହାପରେ ଅଶ୍ୱଥାମା ଆପଣାକୁ ସେନାପତିତ୍ୱରେ ଅଭିଷିକ୍ତ କରିବା ପାଇଁ ଦୁର୍ଯ୍ୟୋଧନଙ୍କୁ ଜଣାଇବା, ଦୁର୍ଯ୍ୟୋଧନ ତହିଁରେ ଅସମ୍ମତ ହେବାରୁ ପିତୃଶୋକାଭିସନ୍ତପ୍ତ ଦ୍ରୌଣି ବିରକ୍ତିରେ ଅସ୍ତ୍ରଶସ୍ତ୍ର ସବୁ ଦାନ କରିଦେବା ପାଇଁ ଗଙ୍ଗାକୂଳକୁ ପ୍ରସ୍ଥାନ କରିବା, ଶ୍ରୀକୃଷ୍ଣ କପଟତଃ ବ୍ରାହ୍ମଣବେଶରେ ତଦୀୟ ଅସ୍ତ୍ରଶସ୍ତ୍ର ସବୁ ପ୍ରତିଗ୍ରହ କରିବା ଇତ୍ୟାଦି କେତେକ ମୂଳାନୁକ୍ତ କଥା ଲେଖିଛନ୍ତି ।(୧)

ସାରଳାଦାସଙ୍କ ଭାରତରେ ଦ୍ରୋଣାହବରେ ପାଞ୍ଚ ଦିବସ ଯୁଦ୍ଧ ହୋଇଥିବାର ଦେଖାଯାଏ ନାହିଁ । ପ୍ରତ୍ୟେକତଃ ବିଶ୍ଳେଷ କରି ନେଲେ ଏହାର ସମଗ୍ର ଘଟନା ତିନି ଦିନରେ ନିଷ୍ପନ୍ନ ହେବାର ଦେଖାଯାଏ । କିନ୍ତୁ ଏହି ପର୍ବର ସର୍ବଶେଷରେ ଦ୍ରୋଣାହବ ପାଞ୍ଚଦିନରେ ଶେଷ ହୋଇଥିବା ଉଲ୍ଲିଖିତ ଅଛି ।(୨) ଏହି ପ୍ରମାଣକୁ ନେଇ ଅନୁମାନ କରାଯାଇ ପାରେ ଯେ, କବିଙ୍କ ଲିଖିତ ଦ୍ରୋଣାହବର ଏକାଦି ଦିବସର ଯୁଦ୍ଧ ନିର୍ଦ୍ଦେଶ କ୍ରମଶଃ ଅନୁଲେଖକମାନଙ୍କ ଲେଖାରେ ଅନ୍ୟଥାକୃତ ହୋଇ ଯାଇଥିବ । କିନ୍ତୁ ଏହି ଅନୁମାନରେ ବିଶ୍ୱାସ ହୁଏ ନାହିଁ । କାରଣ ମୂଳ ଗ୍ରନ୍ଥମତେ ଦ୍ରୋଣାହବର ଦ୍ୱିତୀୟ ଦିବସରେ ପ୍ରାରବ୍ଧ ସଂଶପ୍ତକ ଯୁଦ୍ଧକୁ ଅନୁକରଣ କରି ମାୟାବୀ ମୟାସୁରର ଜଳଧରବ୍ୟୂହ ଯୁଦ୍ଧଠାରୁ କେବଳ ଏ ମହାଶୟ ଦ୍ରୋଣପର୍ବ ଆରମ୍ଭ କରି ଅଛନ୍ତି । ପରନ୍ତୁ ନିମ୍ନସ୍ଥ ଟିପ୍‌ପଣୀ ପଦ୍ୟରେ ଯେଉଁ ବିଶିଷ୍ଟ ଘଟନାମାନଙ୍କର ଉଲ୍ଲେଖ ଅଛି, ବିଚାର କରିନେଲେ ତହିଁରେ ମଧ୍ୟ ଏକ ଦିବସ ବ୍ୟବଧାନ ରହିଯାଉଅଛି । ଅତଏବ

(୧) ରଣାଙ୍ଗନରେ ଅର୍ଜ୍ଜୁନଙ୍କ ପୁରୋଭାଗୀ ଦିବ୍ୟପୁରୁଷଙ୍କ କଥା ପ୍ରଭୃତି ସାରଳାଦାସେ ଲେଖି ନାହାନ୍ତି ।

(୨) ଭୀଷ୍ମ ଦଶ ଦିନ ଯୁଝି କଲେ ଶରଶଯ୍ୟା ।
ଦ୍ରୋଣ ପ୍ରଥମେ ନାଶିଲେ ନବ ସହସ୍ର ରାଜା ॥
ଦ୍ୱିତୀୟ ଦିବସେ ଯେ ପଡ଼ିଲା ଅଭିମନ୍ୟୁ ।
ତୃତୀୟ ଦିନେ ପଡ଼ିଲା ସିନ୍ଧୁରାଜ ସୁନୁ ॥
ଚତୁର୍ଥ ଦିନ ଯୁଦ୍ଧେ ଅନେକ ସୈନ୍ୟ ବଧ ।
ପଞ୍ଚମ ଦିବସରେ ଦ୍ରୋଣ ହେଲେ ଶିରଚ୍ଛେଦ ॥

ତାଳପତ୍ର ପୁସ୍ତକରେ ମଧ୍ୟ ଏହିପରି ଲେଖାଅଛି । ଯଥାର୍ଥତଃ ଅଭିମନ୍ୟୁ ତୃତୀୟ ଦିନ ଏବଂ ଜୟଦ୍ରଥ ଚତୁର୍ଥ ଦିନ ମୃତ ହୋଇଥିଲେ ।

କହିବାକୁ ହେବ ଯେ, ଗ୍ରନ୍ଥକର୍ତ୍ତା ଆଦୌ ଘଟନାମାନଙ୍କର କ୍ରମଶଃ ଦିନ ନିର୍ଦ୍ଦେଶ କରି ଲେଖି ନାହାନ୍ତି । ଦ୍ରୋଣପର୍ବର ଲିଖିତବ୍ୟ ବିଷୟଗୁଡ଼ିକ ହୃଦୟରେ ରଖି କେବଳ ପ୍ରଧାନ ଘଟନାଗୁଡ଼ିକର ପୂର୍ବାପରତ୍ୱ ମାତ୍ର ବିଚାର କରି ଲେଖିଯାଇ ଅଛନ୍ତି । ଲେଖା ଶେଷରେ ଦ୍ରୋଣ ଯୁଦ୍ଧର ପଞ୍ଚମ ଦିବସ କଥା ମନେ ପଡ଼ିବାରୁ ତାହା କୌଣସିମତେ ସୂଚନା କରିଦେଇ ଅଛନ୍ତି, ନଚେତ୍ କେହି ଅନୁଲେଖକ ପ୍ରକ୍ଷିପ୍ତ କରିଦେଇଅଛନ୍ତି ।

ଦ୍ରୋଣଙ୍କୁ ଶିରଚ୍ଛେଦନ ଦଣ୍ଡ କାହିଁକି ଭୋଗିବାକୁ ହେଲା ? ଏହି ପ୍ରଶ୍ନର ଉତ୍‌ଥାପନରେ ମହାପାପରେ କଳଙ୍କିତ ଗୋଟିଏ କଳ୍ପିତ କଥାରେ (୧) ମହାବ୍ରହ୍ମଣ୍ୟ ତପୋନିଷ୍ଠ ସଚ୍ଚରିତ୍ର ଦ୍ରୋଣଙ୍କୁ ମାତୃହରଣ ଦୋଷରେ କଳୁଷିତ କରି ଅଛନ୍ତି । ଯୁଦ୍ଧରେ ତାହାଙ୍କର ମସ୍ତକଛେଦନ ମାତୃହରଣ ଦୋଷର ପ୍ରାୟଶ୍ଚିତ ବୋଲି ନିର୍ଦ୍ଦେଶ କରି ଅଛନ୍ତି ।

ଦ୍ରୋଣଙ୍କ ନିଧନ ପରେ ଦୁର୍ଯ୍ୟୋଧନ ଏକମାତ୍ର କର୍ଣ୍ଣଙ୍କୁ କୌରବାନୀକ ସମୁଦ୍ରର କର୍ଣ୍ଣଧାର ମନେ କରି ପୂର୍ଣ୍ଣ ମନୋରଥ ହେବାର ଆଶା ପୋଷଣ କରିଥିଲେ । ଅତଏବ ମହାଭାରତ ଗ୍ରନ୍ଥରେ ମହାବୀର କର୍ଣ୍ଣଙ୍କର ପ୍ରଦ୍ୟୋତମାନ ଆହବିକ ଚର୍ଯ୍ୟାମାନ ସୁପ୍ରଧାନତଃ ବର୍ଣ୍ଣିତ ହୋଇଅଛି । ଆପାତତଃ କର୍ଣ୍ଣ ପର୍ବର ପ୍ରାରମ୍ଭରୁ ନଅଗୋଟି ଅଧ୍ୟାୟରେ କର୍ଣ୍ଣ ବିନିପାତର ସଂକ୍ଷିପ୍ତ ବିବରଣ ଲେଖାଅଛି । ଏଥି ମଧ୍ୟରେ ପଞ୍ଚମାଧ୍ୟାୟ ପ୍ରାରମ୍ଭରୁ ନବମାଧ୍ୟାୟ ଶେଷଯାଏ କର୍ଣ୍ଣାହବ ସମୟକୁ ଉଭୟ ବାହିନୀରୁ କିଏ କାହାଦ୍ୱାରା ମୃତ ହୋଇଯାଇ ଅଛନ୍ତି, ଅଥଚ କିଏ କିଏ ଜୀବିତ ଅଛନ୍ତି, ଏହାର ପ୍ରତ୍ୟକ୍ଷ ନିଦର୍ଶନ ସ୍ୱରୂପ ଗୋଟିଏ ବିବରଣପଚିକା ପ୍ରଦତ୍ତ ହୋଇଅଛି । ଏହି ବିବରଣୀରେ ଅଜ୍ଞାନଞ୍ଜୟ ସଞ୍ଜୟ ପୁତ୍ର-ଧୃତ-ରାଷ୍ଟ୍ର ଧୃତରାଷ୍ଟ୍ରଙ୍କୁ ସ୍ୱପକ୍ଷୀୟ ବୀରମାନଙ୍କର ଆନୁପୂର୍ବିକ ନିଧନକ୍ରମ ସ୍ପଷ୍ଟତଃ ଜଣାଇ ଦେଇ ଅଛନ୍ତି । ଏହି କ୍ରମ ସାରଳାଦାସ ମହାଶୟ ଦେଇପାରି ନାହାନ୍ତି । କେବଳ ସାରଳାଦାସ କାହିଁକି ବଙ୍ଗ, ତ୍ରୈଲଙ୍ଗ ପ୍ରଭୃତି ଭାରତକର୍ତ୍ତାମାନେ ସୁଦ୍ଧା ଏପରି କରି ଅଛନ୍ତି । ଏପରି କରିବା ସୁଦ୍ଧା ଅସ୍ୱାଭାବିକ ନୁହେଁ । ଯେଉଁମାନେ ଅବିକଳ

---

(୧) ସଞ୍ଜୟ ବୋଇଲେ ରାଜା ଶୁଣ ଧୃତରାଷ୍ଟ୍ର ।
ଦ୍ରୋଣଙ୍କୁ ଶାପ ଥିବାରୁ ହେଲେ ମୁଣ୍ଡକାଟ ।
× × ×
ଭରଦ୍ୱାଜ ବୋଇଲେ ତୁ ଛାଡ଼ ଋଷି ବେଶ ।
କ୍ଷତ୍ରିବୃତ୍ତି ଆଚରି ଭାରତ ଯୁଦ୍ଧେ ପଶ ।।
ଶିରଚ୍ଛେଦ ହୁଅ ତୁ ଭାରତ ଯୁଦ୍ଧେ ପଶି ।
ତେବେ ମାତୃହରଣ ହୋଇବ ତୋର ଧ୍ୱଂସି ।। ଇତ୍ୟାଦି ।

ଏ ବିଷୟ ତାଳପତ୍ର ପୁସ୍ତକରେ ଦ୍ରୋଣପର୍ବର ଅନ୍ତ୍ୟରେ, ଛାପା ପୁସ୍ତକରେ କର୍ଣ୍ଣ ପର୍ବର ପ୍ରାରମ୍ଭରେ ଲେଖା ଅଛି । ଏହା ନିତାନ୍ତ କଳ୍ପିତ ଅଥବା ଏହାର ଆଭାସ କାହିଁରେ ଅଛି, କହାଯାଇ ନ ପାରେ । ପରନ୍ତୁ କଥାଟା ନିତାନ୍ତ ଅସମ୍ଭବ ବୋଧହୁଏ ।

ଅନୁବାଦକରଣରେ ପ୍ରବୃତ୍ତ, ସେହିମାନେ କେବଳ ଏସବୁ ଲେଖି ପାରିବେ, ଅଥଚ ଲେଖିବାକୁ ବାଧ୍ୟ ।

ଅତଃପର କର୍ଣ୍ଣ ସେନାନୀପଦରେ ଅଭିଷିକ୍ତ ହୋଇ ଦିବସ ମାତ୍ର ଯୁଦ୍ଧ କରି ପାରିଥିଲେ ।(୧) କର୍ଣ୍ଣ ସମରାରମ୍ଭରେ ମକରବ୍ୟୂହ ନିର୍ମାଣ କଲାରୁ ଯୁଧିଷ୍ଠିରାଦେଶରେ ଅର୍ଜୁନ ଅର୍ଦ୍ଧଚନ୍ଦ୍ରବ୍ୟୂହ ନିର୍ମାଣ କଲେ । ଶତ୍ରୁ-ବିକର୍ତ୍ତନ- ପ୍ରବର୍ତ୍ତନ ବୈକର୍ତ୍ତନ ପ୍ରାଚୀନ-ଗର୍ଯ୍ୟଙ୍କ- ପର୍ଯ୍ୟଙ୍କରୁ ସମୁତ୍‌ଥିତ ଅମୋଘଦର୍ଶନ ବିକର୍ତ୍ତନଙ୍କୁ ପ୍ରଣାମ କରି ସଂଗ୍ରାମରେ ସମୁଦ୍ୟତ ହେଲେ । କତିପୟ ଶରକ୍ରୀଡ଼ାଭିନୟ ପରେ କୁଳୁତାଧିପ କ୍ଷେମମୂର୍ତ୍ତିଙ୍କୁ ଭୀମସତ୍ତ୍ୱ ଭୀମସେନ ନିହତ କଲାରୁ ଚଣ୍ଡଭାନୁପୁତ୍ର ପ୍ରଚଣ୍ଡବୀର କର୍ଣ୍ଣ କୁଣ୍ଡଳୀକୃତ-କୋଦଣ୍ଡ ହୋଇ ପାଣ୍ଡବାନୀକ ମଧ୍ୟରେ ପ୍ରକାଣ୍ଡ କାଣ୍ଡମାନଙ୍କର ଅଖଣ୍ଡ ତାଣ୍ଡବ ଆରମ୍ଭ କଲେ । ଏଣେ ଅମନ୍ଦଦ୍ୱନ୍ଦବିଗ୍ରହରେ ଭୀମ ଓ ସାତ୍ୟକିଙ୍କଦ୍ୱାରା କୈକେୟ ବିନ୍ଦାନୁବିନ୍ଦ ପ୍ରଭୃତି ନିହତ ହୋଇ ପଡ଼ୁଅଛନ୍ତି, ତେଣେ ଅବଶିଷ୍ଟ ସଂଶପ୍ତକମାନଙ୍କର ନିଃଶେଷକରଣରେ ଅର୍ଜୁନ ସକ୍ତ ହୋଇ ଅଛନ୍ତି, ଏ ସମୟରେ ଅଶ୍ୱତ୍‌ଥାମା ପାର୍ଥଙ୍କୁ ଯୁଦ୍ଧାର୍ଥ ଆହ୍ୱାନ କରି ପ୍ରଗାଢ଼ତଃ ଶରାଭିଭୂତ ଓ କ୍ଷୀଣ-ବାଣାସ୍ତ୍ର-ଯୋଗ ହୋଇ କର୍ଣ୍ଣାନୀକକୁ ପଳାୟନ କଲେ । ତେତେବେଳେ ଅର୍ଜୁନ ପାଣ୍ଡବବରୂଥିନୀରେ ବୀରପ୍ରାଣ-ପ୍ରମତ୍ତ ମାଗଧବୀର ଦଣ୍ଡଧାରଙ୍କୁ ଅକ୍ଷୁଣ୍ଣ-ପ୍ରତାପ ଜାଣି ତାହାଙ୍କୁ ଯମରାଷ୍ଟ୍ରକୁ ପ୍ରେରଣ କଲାରୁ ରୋଷ-କଷାୟିତନେତ୍ର ଦ୍ରୌଣି ଦ୍ରୁତଗତିରେ ପାଣ୍ଡବାନୀକରେ ସହସା ପ୍ରବେଶି ପାଣ୍ଡ୍ୟ ନୃପତିଙ୍କୁ ଗତାସୁ କଲେ । ଅନନ୍ତର ନକୁଳଙ୍କୁ ସଂକୁଳ-ଯୁଦ୍ଧରେ ହତାଶ୍ୱ ଓ ବିରଥ ଏବଂ ଗଳଲଗ୍ନ-ଧନୁର୍ଦଣ୍ଡଦ୍ୱାରା ଚକ୍ରାକାର ପରି ଘୂର୍ଣ୍ଣିତ କରିଥିବା ପ୍ରଭୃତି ବୀରଚର୍ଯ୍ୟାରେ କର୍ଣ୍ଣଙ୍କର ପାରାକ୍ରମିକ ଦୁର୍ଦ୍ଧର୍ଷତ୍ୱ ବର୍ଣ୍ଣିତ ଅଛି । ଏତାଦୃଶ୍ୟକ୍ରମରେ ଅପରାହ୍ନ ସମୟରେ ଧର୍ମରାଜଙ୍କ ସହିତ ଦୁର୍ଯ୍ୟୋଧନାଦିଙ୍କର ଅକଳନ ସଂକୁଳ ସଂଗ୍ରାମ ହୋଇଥିଲା । ପରିଶେଷରେ ଯୁଧିଷ୍ଠିର କର୍ଣ୍ଣଙ୍କ ଔଦ୍ଧତ୍ୟରେ ବିରଥ ହେଲେ ସୁଦ୍ଧା ଏହି ଦିବସ କୌରବବଳ ହତ-ପ୍ରହତ-ବିଧ୍ୱସ୍ତ-ଭଗ୍ନାୟୁଧବାହନ ହୋଇ ପଡ଼ିଥିଲେ ।

ସାରଳାଦାସ ମହାଶୟ କର୍ଣ୍ଣାହବର ସ୍ଥୂଳ ଘଟଣାମାନଙ୍କରେ ମୌଳିକ ସୌସାଦୃଶ୍ୟ ରଖି ସୁଦ୍ଧା ଏକାବେଳକେ ବୈଷମ୍ୟ ତ୍ୟାଗ କରି ନାହାନ୍ତି । ସୁତରାଂ କୁତ୍ରଚିତ୍ କେତେକ ଅତିରିକ୍ତ କଥାରେ ଅପେକ୍ଷାକୃତ ଅଧିକ ବୈଷମ୍ୟ ବଢ଼ାଇ ଅଛନ୍ତି । ଅଥଚ ଘଟଣାମାନଙ୍କର ଆନୁପୂର୍ବିକତା ସମଧିକତଃ ଭିନ୍ନ ପ୍ରକାର କରିଦେଇଅଛନ୍ତି । ମୂଳଗ୍ରନ୍ଥମତେ ଯାହା ଯାହା ଦ୍ୱିତୀୟ ଦିନର ବ୍ୟାପାର, ସେ ସବୁକୁ ପ୍ରଥମ ଦିନଚର୍ଯ୍ୟାରେ ଭୁକ୍ତ କରିଦେଇଅଛନ୍ତି । ଏ କହନ୍ତି କି, କର୍ଣ୍ଣ ସୈନ୍ୟାଧିପତ୍ୟରେ ଅଭିଷିକ୍ତ ହୋଇ ଆପାତତଃ ମହାବୀର ଶଲ୍ୟଙ୍କୁ ସାରଥି-କରଣାର୍ଥ ଦୁର୍ଯ୍ୟୋଧନଙ୍କୁ ପ୍ରାର୍ଥନା କଲେ । କିନ୍ତୁ ଯଥାର୍ଥତଃ ଏହା କର୍ଣ୍ଣାହବର

---

(୧) ତୟୋର୍ଦ୍ୱିଦିବସଂ ଯୁଦ୍ଧଂ କୁରୁପାଣ୍ଡବସେନୟୋଃ ।
କର୍ଣ୍ଣେ ସେନାପତୌ ରାଜନ୍ ବଭୂବାତୀବ ଦାରୁଣଂ ।। କର୍ଣ୍ଣ ପର୍ବ ।।

ଦ୍ୱିତୀୟ ଦିନର ବ୍ୟାପାର । ସେ ଯାହାହେଉ, ତଦୀୟ ପ୍ରାର୍ଥନାରେ ଦୁର୍ଯ୍ୟୋଧନ ଶତ୍ରୁ-ଶଲ୍ୟ ଶଲ୍ୟଙ୍କୁ କର୍ଣ୍ଣ-ସାରଥ୍ୟ ସ୍ୱୀକାରାର୍ଥ ନାନା କଥାରେ ସମ୍ମତ କରାଇବା, ତଦା ଶଲ୍ୟ କର୍ଣ୍ଣଙ୍କ ମୁଖରୁ ସ୍ୱାଭିମାନ ବିକତ୍‌ଥନପୂର୍ବକ ପାଣ୍ଡବଦୂଷଣ ଶୁଣି ଅର୍ଜୁନଙ୍କର ପୂର୍ବକୃତ ଅପ୍ରାକୃତ କାର୍ଯ୍ୟକଳାପ କୀର୍ତ୍ତନରେ ତାହାଙ୍କୁ ଭର୍ତ୍ସନା କରିବା ପ୍ରଭୃତି ବିଷୟମାନ ପ୍ରାୟଶଃ ମୂଳାନୁମତ; କିନ୍ତୁ ଏସବୁ ମୂଳଗ୍ରନ୍ଥ ଅପେକ୍ଷା ଅତି ସଂକ୍ଷିପ୍ତ ହୋଇଅଛି । ଏ ସ୍ଥଳରେ ଏ ମହାଶୟ କର୍ଣ୍ଣଙ୍କ ରଥରେ ସର୍ପଚିହ୍ନ ଥିବାର କାରଣ ଏବଂ ସେହି ସର୍ପର ପୂର୍ବବଂଶାନୁକୀର୍ତ୍ତନ-ପୂର୍ବକ ଗୋଟିଏ ଅତିରିକ୍ତ ଚରିତ ଲେଖି ଅଛନ୍ତି ।(୧) ମାତ୍ର ଏହା ଯଥାର୍ଥ ବୋଲି ତାଦୃଶ୍ୟ ବିଶ୍ୱାସ ଜନ୍ମେ ନାହିଁ । କାରଣ କର୍ଣ୍ଣଙ୍କ ରଥରେ ସର୍ପଚିହ୍ନ ଥିବାର ପ୍ରମାଣ କୁତ୍ରାପି ମିଳେ ନାହିଁ । ପ୍ରକୃତତଃ କର୍ଣ୍ଣଙ୍କର ହସ୍ତିକକ୍ଷାଧ୍ୱଜ ।(୨) ଏହାଙ୍କର ଧ୍ୱଜାଦି ବିବରଣରେ ମୂଳଗ୍ରନ୍ଥର ସ୍ଥାନେ ସ୍ଥାନେ ହସ୍ତିର ନାମାନ୍ତର ନାଗ ଶବ୍ଦ ଉକ୍ତ ଥିବାରୁ ବୋଧହୁଏ ସାରଳାଦାସ ମହାଶୟ ତାହା ଶୁଣି ନାଗ ଶବ୍ଦର ଅର୍ଥ କେବଳ ସର୍ପ ବୋଲି ବିଶ୍ୱାସ କରି ଏପରି ଚରିତର ଅବତାରଣା କରି ଅଛନ୍ତି । ଏହା ପରେ ଭୀମସେନ ନାରଦ ମୁଖରୁ ଅଦ୍ୟ ଶଲ୍ୟଙ୍କର କର୍ଣ୍ଣସାରଥିତ୍ୱ ପ୍ରଭୃତି ସମ୍ବାଦ ଶୁଣି 'ଆଜି ଦୁଃଶାସନ-ନିଧନରେ ତଦୀୟ ଚିରମୁକ୍ତ କେଶର ବନ୍ଧନ ନିଷ୍ପନ୍ନ ହେବ' ଏହା ପ୍ରକାଶ କରି ହୃଷ୍ଟଚିତ୍ତରେ ଦ୍ରୌପଦୀଙ୍କୁ ସମୟରେ ଯୁଦ୍ଧାଙ୍ଗଣରେ ପ୍ରବିଷ୍ଟ ହେବାପାଇଁ ଆଦେଶ ଦେଇଥିବାର ଲେଖି ଅଛନ୍ତି । ଏହି କ୍ରମଟି ମୂଳଗ୍ରନ୍ଥର ଏ ସ୍ଥଳରେ ସ୍ପଷ୍ଟତଃ ଅନୁକ୍ତ ଥିଲେ ସୁଦ୍ଧା ଅସଙ୍ଗତ ନୁହେ ।(୩) କାରଣ ଏହି କବି ମହୋଦୟ ଏହି ସଂବିଧାନକୁ ଦୁଃଶାସନଙ୍କ ପଞ୍ଚତ୍ୱର ଅବଶ୍ୟମ୍ଭାବିତ୍ୱରେ ଦୃଢ଼ପ୍ରତିଜ୍ଞ ଭୀମସେନଙ୍କ ପୂର୍ବକୃତ ପ୍ରତିଜ୍ଞାନୁସାରେ ମାତ୍ର ଲେଖିଯାଇ ଅଛନ୍ତି । ଅପିଚ ଯୁଦ୍ଧଖେଳା ପୂର୍ବରୁ ସମରାଙ୍ଗଣରେ ଅର୍ଜୁନ ଓ କର୍ଣ୍ଣ ନିଜ ନିଜ ସାରଥିଙ୍କୁ ତଦ୍‌ତଦ୍ ସୌହୃଦ୍ୟ ଓ ସାହସାଦିର ଜିଜ୍ଞାସାରେ 'ଦୈବାତ୍ ମୁଁ ନିହତ ହେଲେ ତୁମେ କଣ କରିବ ?' ଏହା ପ୍ରଶ୍ନ କରିଥିଲେ । ଏହାର ଉତ୍ତରକୁ ସାରଳାଦାସ ମହାଶୟ ବିଲକ୍ଷଣ ଓ ବିପରୀତ କ୍ରମରେ ନିହିତ କରି ଅଛନ୍ତି । ତତ୍ପରସ୍ତାତ୍ ଭୀମସେନଙ୍କର ଭୀମ ପରାକ୍ରମର ଅଲୌକିକତା ପ୍ରଦର୍ଶନାର୍ଥ ନିତାନ୍ତ ଆଶ୍ଚର୍ଯ୍ୟଜନକ ଚର୍ଯ୍ୟା ଗୋଟିକର ବର୍ଣ୍ଣନା କରି ତାହା

---

(୧) ଏହାର ସଂକ୍ଷିପ୍ତ କଥା ଏହି – ଖାଣ୍ଡବଦାହ ପରେ ଶୋଷକ କାଳସର୍ପ ଅର୍ଜୁନଙ୍କର ବୈରସାଧନାର୍ଥ ସମୁଦ୍ରରୁ ଅଭେଦକ ମଣି ଆଣି କର୍ଣ୍ଣଙ୍କୁ ଦେଲେ, ତାଙ୍କ ରଥରେ ଥାଇ ସମୟରେ ନନ୍ଦିଘୋଷ ରଥ ଗିଳିବି ବୋଲି କହିଲେ । ଅତଏବ କର୍ଣ୍ଣ ତାଙ୍କୁ ନିଜ ରଥର ଧ୍ୱଜରେ ରଖିଲେ । ଇତ୍ୟାଦି, ଛାପା କ.ପ. ୮ ପୃଷ୍ଠା ଦେଖନ୍ତୁ ।

(୨) ଦ୍ରୋ.ପ. ୧୦୫ ଅଧ୍ୟାୟ ଦେଖନ୍ତୁ ।

(୩) ଏହି କ୍ରମକୁ ମହାକବି ଭଟ୍ଟନାରାୟଣ ମଧ୍ୟ ସ୍ୱପ୍ରଣୀତ ବେଣୀସଂହାର ନାଟକରେ ବର୍ଣ୍ଣନ କରିଅଛନ୍ତି ।

ସଙ୍ଗେ ସଙ୍ଗେ ଶ୍ରୋତୃବର୍ଗ ଯେପରି ଅବିଶ୍ୱସ୍ତ ହୃଦୟରେ କୌଣସି କଥା କହି ନ ପାରନ୍ତି, ସେଥିପାଇଁ ଶପଥସ୍ୱରୂପକ କାରଣ ସହିତ ସମାଧାନରେ ନାନା କଥାର ଅବତାରଣା କରି ପକାଇ ଅଛନ୍ତି । ଏହାର ଅତି ସଂକ୍ଷିପ୍ତ ବିବରଣ ଏହି – ଭୀକର ଭୀମସେନ ବହୁ ଗଜାନୀକ ସମେତ ସଂଗ୍ରାମଚତ୍ୱର-ସତ୍ୱର କଳିଙ୍ଗ-ରାଜଙ୍କୁ ସମ୍ମୁଖୀନ ଦେଖି ତଦୀୟ ନବଲକ୍ଷହସ୍ତୀନିଚୟ ଅପଚୟାର୍ଥ ତୃଣ ପ୍ରାୟ ଗଗନରେ ଉଡ୍ଡୀୟମାନ କରିବା ପାଇଁ 'ମଦୀୟ ଗଦାଗ୍ରରେ ଅବସ୍ଥାନ କରନ୍ତୁ' ବୋଲି ଆବହମାନ ପବମାନଙ୍କୁ ପ୍ରାର୍ଥନା କଲେ । ତଦା ତଦୀୟ ଗଦାଗ୍ରରେ ସମବସ୍ଥିତ ପ୍ରବଳ ପବନଙ୍କ ଗୁରୁତର ଆଘାତରେ ସମଗ୍ର ପାଣ୍ଡବୀୟ ଓ କୌରବୀୟ ସୈନ୍ୟ-ସମବାୟ ଯୁଗପଦ୍ ଉଡ୍‌ଡୀନ ହୋଇ ଇନ୍ଦ୍ରପ୍ରସ୍ଥ ଓ ବାରୁଣାବନ୍ତରେ ନିପତିତ ହେଲେ । ଇତ୍ୟାଦି । ଏହାପରେ ଭୀମସେନଙ୍କର ନିଦାରୁଣ ମାରଣରେ ଦୁର୍ଯ୍ୟୋଧନଙ୍କର ସପ୍ତନବତି ଅନୁଜମାନେ ନିହତ ହେବା(୧) ଏବଂ ଏ ସ୍ଥଳରେ ପ୍ରଥମ ଦିବସ ଯୁଦ୍ଧର ଅବସାନ ହୋଇଥିବାର ଲେଖି ଅଛନ୍ତି । ଭୀମ ଅଦ୍ୟ ଦୁଃଶାସନ ନିଧନାର୍ଥ କୃତ ପ୍ରତିଜ୍ଞାର ସଫଳତା ଲାଭ କରି ନ ପାରି ଥିବାରୁ ସେହି ରାତ୍ର ଶିବିରକୁ ପ୍ରତ୍ୟାବୃତ୍ତ ନ ହୋଇ ରଣାଙ୍ଗଣରେ ରହିବାପାଇଁ ଶ୍ରୀକୃଷ୍ଣଙ୍କୁ ପ୍ରାର୍ଥନା କରିଥିବା, ଶ୍ରୀକୃଷ୍ଣ ଯୁକ୍ତିଯୁକ୍ତ ପ୍ରବୋଧ ଦେଇ ତାହାଙ୍କ ସହିତ ଶିବିରକୁ ପ୍ରତ୍ୟାବୃତ୍ତ ହୋଇଥିବାର ପ୍ରକାଶ କରି ଅଛନ୍ତି ।

ଅତଃପର ମୂଳଗ୍ରନ୍ଥରେ କର୍ଣ୍ଣାହବର ଦ୍ୱିତୀୟ ଦିନର ବ୍ୟାପାର । ପାଠକେ ! ଜାଣିଥିବେ, କର୍ଣ୍ଣବଧ ମହାଭାରତରେ ଏକ ସୁପ୍ରଧାନ ଘଟନା । କର୍ଣ୍ଣ ଅର୍ଜୁନଙ୍କ ପରି ସର୍ବତ୍ର ଅପ୍ରତିହତ-ପ୍ରଭାବ । ସେ ଅର୍ଜୁନଙ୍କ ଅପେକ୍ଷା ତାଦୃଶ ନ୍ୟୂନ ପରାକ୍ରମ ନୁହନ୍ତି । ସେ ଅର୍ଜୁନଙ୍କର ଉପଯୁକ୍ତ ପ୍ରତିଯୋଦ୍ଧା । ପୂର୍ବେ ଯୁଧିଷ୍ଠିରଙ୍କପାଇଁ ଭୀମାଦି ଭ୍ରାତୃଚତୁଷ୍ଟୟଙ୍କଦ୍ୱାରା ଯାଦୃଶ ଦିଗ୍‌ବିଜୟ କ୍ରିୟା ସାଧିତ ହୋଇଥିଲା, ଦୁର୍ଯ୍ୟୋଧନଙ୍କପାଇଁ ଏକାକୀ କର୍ଣ୍ଣଙ୍କଦ୍ୱାରା ତାହା ହିଁ ଘଟିଥିଲା । ଅର୍ଜୁନ ଦ୍ରୋଣଗୁରୁଙ୍କଠାରୁ ଶିକ୍ଷା ଲାଭ କରିଥିଲେ, କର୍ଣ୍ଣ ଦ୍ରୋଣ-ଗୁରୁ ପର୍ଶୁରାମଙ୍କଠାରୁ ମଧ ଶିକ୍ଷାପ୍ରାପ୍ତ ହୋଇଥିଲେ । ଅର୍ଜୁନଙ୍କର ଯେପରି ଦେବଦତ୍ତ ଗାଣ୍ଡୀବ ଧନୁ ଥିଲା, କର୍ଣ୍ଣ ତଦ୍‌ପେକ୍ଷା ଅନ୍ୟୂନସତ୍ତ୍ୱ [କାଳପୃଷ୍ଠ] ବିଜୟ ଧନୁ ପ୍ରାପ୍ତ ହୋଇଥିଲେ । ଅର୍ଜୁନ ଶ୍ରୀକୃଷ୍ଣଙ୍କୁ ସାରଥି ରୂପେ ପାଇଥିଲେ ବୋଲି କର୍ଣ୍ଣ ସମୟରେ ଦିବ୍ୟାସ୍ତ୍ରବିଶାରଦ ମହାବୀର ଶଲ୍ୟଙ୍କର ସାରଥ୍ୟ ଗ୍ରହଣ କରିଥିଲେ । ଅତଏବ ଅର୍ଜୁନଙ୍କୁ ଭୀଷ୍ମ ଓ ଦ୍ରୋଣଙ୍କ ବଧରେ କୃତପ୍ରଯତ୍ନ ଅପେକ୍ଷା ସମ୍ପ୍ରତି ଦୃଢ଼ତର ଯତ୍ନରେ ତତ୍ପର ହେବାକୁ ପଡ଼ିଲା । ଅଦ୍ୟ ଦିବସ କର୍ଣ୍ଣ ମଧ ଅର୍ଜୁନ ବିନାଶ ବିନା ଯୁଦ୍ଧରୁ ପ୍ରତ୍ୟାବୃତ୍ତ ହେବେ ନାହିଁ ବୋଲି ପ୍ରଗାଢ଼ପ୍ରତିଜ୍ଞ ହେଲେ ।

(୧) ଛାପା କର୍ଣ୍ଣ ପର୍ବ ୧୪ ପୃଷ୍ଠା ଦେଖନ୍ତୁ ।

ଯଥାର୍ଥତଃ ଭୀମସେନ କର୍ଣ୍ଣାହବରେ ଅପେକ୍ଷାକୃତ ବହୁ ଧାର୍ତ୍ତରାଷ୍ଟ୍ରମାନଙ୍କୁ ବିନାଶ କରିଥିଲେ ସତ୍ୟ, କିନ୍ତୁ ଅଦ୍ୟ ଦିବସରେ ନିହତ ଧାର୍ତ୍ତରାଷ୍ଟ୍ରମାନଙ୍କର ୯୭ ସଂଖ୍ୟା ଯଥାର୍ଥ ନୁହେଁ ।

ତେତେବେଳେ ମାତ୍ର କର୍ଣ୍ଣଙ୍କର ଇଚ୍ଛାମତେ ଦୁର୍ଯ୍ୟୋଧନ ଶଲ୍ୟଙ୍କୁ ତଦୀୟ ସାରଥିତ୍ୱ ସ୍ୱୀକାର କରାଇବାପାଇଁ ଅନେକଧା ସ୍ତୁତିକରି ବ୍ରହ୍ମା ଯେପରି ମହାଦେବଙ୍କର ସାରଥି ହୋଇଥିଲେ, ଆପଣ ବର୍ତ୍ତମାନ ସେପରି କର୍ଣ୍ଣଙ୍କର ସାରଥି ହୁଅନ୍ତୁ ବୋଲି ତ୍ରିପୁରାସୁର ଉପାଖ୍ୟାନ(୧) କହିଥିଲେ । ମାତ୍ର ଏହି ଔପାଖ୍ୟାନିକ ସନ୍ଦର୍ଭକୁ ସାରଳାଦାସ କବି ଲେଖିପାରି ନାହାନ୍ତି । ସ୍ୱୀକୃତ-ସାରଥ୍ୟ ଶଲ୍ୟ କର୍ଣ୍ଣଙ୍କ ବିକତ୍ଥନରେ ଅସନ୍ତୁଷ୍ଟ ହୋଇ ତାହାଙ୍କୁ ଭର୍ତ୍ସନା ପୂର୍ବକ ଧିକ୍କାର କରିଥିବାର କ୍ରମକୁ ମୂଳଗ୍ରନ୍ଥ ଅପେକ୍ଷା ଅତି ସଂକ୍ଷିପ୍ତ କରି ଅଛନ୍ତି । ଯେତେବେଳେ ପ୍ରକୁପିତ କର୍ଣ୍ଣ ଶଲ୍ୟଙ୍କର ସାରଥ୍ୟ ତ୍ୟାଗ କରିବାର ପ୍ରକାଶ କଲେ, ତେତେବେଳେ ଶଲ୍ୟ ତାହାଙ୍କୁ ଏକାନ୍ତ ନିର୍ବୋଧ ଭାବି ହଂସକାକୀୟ ଉପାଖ୍ୟାନରେ(୨) ତଦୀୟ ଦର୍ପର ଅସାରତ୍ୱ ବୁଝାଇ ଦେଇଥିଲେ । ଏହା ମଧ ଏ ମହାଶୟ ଲେଖିପାରି ନାହାନ୍ତି । ତଦା କର୍ଣ୍ଣ ନିଜର ଉତ୍କର୍ଷ ପ୍ରକାଶନାର୍ଥ ପର୍ଶୁରାମଙ୍କଠାରୁ ସେ ବିଦ୍ୟା ଶିକ୍ଷା କରିଥିବା, ସାସୂୟ ଇନ୍ଦ୍ର କପଟତଃ ତାହାଙ୍କ ଅପକାରରେ ପ୍ରବୃତ୍ତ ହେବା ପ୍ରଭୃତି କେତେକ କଥା ଜଳ୍ପନା କରିବାରୁ ଶଲ୍ୟ ମଧ କେତେକ କଥାରେ ତାହାଙ୍କ ପ୍ରଦର୍ଶିତ ଉତ୍କର୍ଷର ଅପକର୍ଷ ସାଧନ କରିଥିଲେ । ଏ ବିଷୟଗୁଡ଼ିକୁ ମଧ ସାରଳା ଭାରତରେ ଦେଖିବାକୁ ପାଇବେ ନାହିଁ ।

ଏହି ଯୁଦ୍ଧାରମ୍ଭରେ କର୍ଣ୍ଣ ଅର୍ଜ୍ଜୁନଙ୍କ ସହ ଯୁଯୁତ୍ସାରେ ଯାଇ ଭୀମଙ୍କଦ୍ୱାରା ପରାସ୍ତ ଓ କ୍ଷଣକ ପାଇଁ ବିମୋହିତ ହେଲାପରେ ଅର୍ଜ୍ଜୁନ ସଂଶପ୍ତକ ବଳରେ, ଭୀମ କୌରବବଳରେ ଏବଂ କର୍ଣ୍ଣ ପାଞ୍ଚାଳବଳରେ, କୀନାଶ ପ୍ରାୟ ବିନାଶକରଣରେ ପ୍ରବୃତ୍ତ ହେଲେ । ଅପରାହ୍ନର ସମାଗମରେ କୃତ-ସଂଶପ୍ତକ-ନିପାତ ଅର୍ଜ୍ଜୁନ ଯୁଧିଷ୍ଠିରଙ୍କ ଦର୍ଶନାର୍ଥ ଯାଉଅଛନ୍ତି, ଅର୍ଦ୍ଧ ପଥରେ ଭୀମ କହିଲେ, ଧର୍ମରାଜ କର୍ଣ୍ଣବାଣରେ ଗାଢ଼ ପୀଡ଼ିତ ଅଛନ୍ତି, ବଞ୍ଚିବେକି ନାହିଁ ସନ୍ଦେହ, ସେ ଶିବିରକୁ ଗଲେଣି । ଅର୍ଜ୍ଜୁନ ଏହା ଶୁଣି ଶୀଘ୍ର ଯୁଧିଷ୍ଠିରଙ୍କ ଛାମୁରେ ଉପଗତ ହେଲେ । ଯୁଧିଷ୍ଠିର କହିଲେ, ଭାଇ ଅର୍ଜ୍ଜୁନ ! ତୁମ୍ଭେ ଶୀଘ୍ର କର୍ଣ୍ଣ ବିନାଶରେ ମଦୀୟ ସନ୍ତାପ ଦୂର କର । ଜ୍ୟେଷ୍ଠଭ୍ରାତୃ – ପରାଭବରେ ପରିକୁପିତ ଅର୍ଜ୍ଜୁନ ଅଦ୍ୟୈବ ସବାନ୍ଧବ ସପରିବାର କର୍ଣ୍ଣଙ୍କୁ ନିହତ କରିବୁଁ ବୋଲି ଦୃଢ଼ ପ୍ରତିଜ୍ଞାବଦ୍ଧ ହେଲେ । କିନ୍ତୁ ନିୟତିର ଦ୍ୱାର ସର୍ବତ୍ର ସର୍ବଥା ଅବାରିତ । ତାହାର ସର୍ବଂକଷ ବଳରେ ଏଥି ମଧରେ ପୁଣି ଗୋଟାଏ ଦୁର୍ଘଟଣା ଆସି ଘଟିଲା । ଯୁଧିଷ୍ଠିର ଅର୍ଜ୍ଜୁନଙ୍କ ଉତ୍ତେଜନାର୍ଥ "ତୁମ୍ଭେ ଯଦି ଅଦ୍ୟ କର୍ଣ୍ଣଙ୍କୁ ନିହତ କରି ନ ପାର, ତେବେ ତୁମ୍ଭର ଗାଣ୍ଡୀବ ପ୍ରଭୃତିକୁ ଧିକ୍କାର" ଏହା ସହସା କହି ଦେବାରୁ ଅର୍ଜ୍ଜୁନ ଅଭୂତପୂର୍ବ କ୍ରୋଧରେ ତତ୍‌ପ୍ରତି ଜିଘାଂସୁ ହୋଇ

(୧) ଏହି ଉପାଖ୍ୟାନଟି ୩୩-୩୪ ଅଧ୍ୟାୟରେ ଦେଖନ୍ତୁ ।

(୨) କ.ପ. ୪୧ ଅଧ୍ୟାୟରେ ଦେଖନ୍ତୁ ।

ପଡ଼ିଲେ ।(୧) ପରେ ଶ୍ରୀକୃଷ୍ଣଙ୍କ ସାନ୍ତ୍ୱନାରେ କଥଞ୍ଚିତ୍ ପ୍ରଶାନ୍ତ ହୋଇ କର୍ଣ୍ଣବଧାର୍ଥ ଉଦ୍‌ଯୁକ୍ତ ହେଲେ ।

ତେଣେ ଭୀମସେନ କର୍ଣ୍ଣପୁତ୍ର ସୁଷେଣ ପ୍ରଭୃତିଙ୍କୁ ଗତାସୁ କରି ଦେବେନ୍ଦ୍ର ବିକ୍ରମରେ ଶତ୍ରୁପକ୍ଷ ଧ୍ୱସ୍ତ କରୁ ଅଛନ୍ତି, ଏ ସମୟରେ ଅର୍ଜୁନ ଆସି ଅଗଣିତ ବୀରମାନଙ୍କର ରକ୍ତ ମାଂସରେ ରଣାଙ୍ଗଣ କର୍ଦମିତ କରି କର୍ଣ୍ଣପ୍ରତି ପ୍ରସ୍ଥାନ କଲେ । କାଳଦଣ୍ଡଧର ଯମ ପ୍ରାୟ ଗଦାପାଣି ବୃକୋଦର ଏକ ଆଡ଼େ, ଅନ୍ୟ ଆଡ଼େ ଅର୍ଜୁନ ଇନ୍ଦ୍ରାତିରିକ୍ତ ଶକ୍ତିରେ ଶତ୍ରୁ ନିପାତ କରୁଥିବାର ଦେଖି କୌରବବାହିନୀ ପଳାୟମାନା ହେଲେ । ଇତ୍ୟବସରରେ ଭୀମ ଓ ଦୁଃଶାସନଙ୍କର ବିକରାଳ ଯୁଦ୍ଧ । ଭୀମ ପ୍ରଥମତଃ ଶ୍ରସ୍ତ-ତନୁ ହୋଇ ପଡ଼ିଲେ ସୁଦ୍ଧା ପରେ ମହାପରାକ୍ରମ ସହକାରେ ଶତ୍ରୁ ଶିରରେ ବଜ୍ରାଙ୍ଗ ଗଦା ପ୍ରହାର କରି ତାହାଙ୍କୁ ନିପତିତ ଓ ବିନିହତ କଲେ । ଅପିଚ ଦ୍ରୌପଦୀ ଦେବୀଙ୍କର କେଶ ଗ୍ରହଣାଦି ମନେ ପଡ଼ିବାରୁ କର୍ଣ୍ଣ-ଦୁର୍ଯ୍ୟୋଧନାଦିଙ୍କ ସମକ୍ଷରେ ଅସିଘାତ ପୂର୍ବକ ଦୌଃଶାସନିକ କଣ୍ଠର କୋଷ୍ଣ ରକ୍ତ ପାନକରି ଏକାନ୍ତ ରୋଷ-କଷାୟିତ-ନେତ୍ରରେ ଦୁର୍ଯ୍ୟୋଧନାଦିଙ୍କୁ ଆହ୍ୱାନ କଲେ ।(୨) ଏହି ଅତ୍ୟନ୍ତ ଭୟାନକ ଘଟନା ପରେ ଭୀମସେନ ଦୁଃଶାସନଙ୍କର ତଦବଧି ଅବଶିଷ୍ଟ ଦଶଗୋଟି ଭ୍ରାତୃମାନଙ୍କୁ ତାହାଙ୍କ ମହାପ୍ରସ୍ଥାନର ଅନୁଗାମୀ କରିଥିଲେ । ଯେ କି ପ୍ରଥମେ ମହାବଳ-ବକହନ୍ତା, ସେ ପୁଣି ଏପରି ଧାର୍ତରାଷ୍ଟ୍ରମାନଙ୍କ ନିଧନରେ ପ୍ରବୃତ୍ତ ଓ କୃତକୃତ୍ୟ ହେବା ଆଶ୍ଚର୍ଯ୍ୟଜନକ ନୁହେଁ ।

ଏହାପରେ ଯେତେବେଳେ ଅର୍ଜୁନ-ଗୋପପ୍ରବରଙ୍କ କର୍ତ୍ତୃକ ଅଖଣ୍ଡ-ମହିମ-କାଣ୍ଡ-ପ୍ରହାରରେ କୁରୁକ୍ଷେତ୍ରସଂଚରମାଣ ବୃଷସେନ ଯମଲୋକଗୋଷ୍ଠକୁ ନୀତ ହେଲେ, ତେତେବେଳେ କୌରବବାହିନୀରୁ ସମୁତ୍‌ଥିତ ହାହାକାର ଧ୍ୱନିରେ ଆକାଶ ବିଦୀର୍ଣ୍ଣ ହେବାକୁ ଲାଗିଲା । ଶ୍ରୀକୃଷ୍ଣଙ୍କ ଉତ୍ତେଜନାରେ ଉତ୍ତେଜିତ ଅର୍ଜୁନ ଅବିଧେୟ ରାଧେୟ କାୟରେ ସ୍ୱକୀୟ ନିର୍ବାଧ ବିବିଧ ବିଶିଖନିଚୟକୁ ଆଧେୟ କଲେ । ସେ ଉଭୟଙ୍କର ବିକରାଳତର ଦ୍ୱୈରଥ୍ୟ ସମରାୟ ଆରବ୍ଧ ହେଲା । ତଦ୍ଦର୍ଶନରେ ଦେବଗନ୍ଧର୍ବାଦି ନାଗଦାନବାଦି, ସମୁଦ୍ରପର୍ବତାଦି ସମଗ୍ର ସମାଜ ମଧ୍ୟରେ ଅର୍ଜୁନ ଓ କର୍ଣ୍ଣଙ୍କର ଲୋକୋତ୍ତର ପରାକ୍ରମକୁ ନେଇ ନିଜ ନିଜ ମତାନୁସାରେ ଭିନ୍ନପକ୍ଷତା ଜନ୍ମିଥିଲା । ବହୁ ଅମୋଘାସ୍ତ୍ର ଖେଳା ପରେ ଯେତେବେଳେ ବୈକର୍ତ୍ତନ ଅର୍ଜୁନବଧାର୍ଥ ପନ୍ନଗାସ୍ତ୍ର-ପାଣି ହେଲେ, ତେତେବେଳେ ସହସା ତଦୀୟ ଚିରନ୍ତନ ଏକାନ୍ତ ଅନୁରାଗରେ ଅନୁରାଗିଣୀ ଉର୍ବଶୀ ବରଣମାଲ୍ୟ ହସ୍ତରେ ସମୁତ୍ସୁକା ହୋଇ ରହିଲେ । ତଥାଚ ଅମର ଚକ୍ରବର୍ତ୍ତୀ ନିଜର ନନ୍ଦନ ଦ୍ରୟବନ୍ତାର ବିଭଙ୍ଗ

(୧) ଏହି ଘଟଣାର ଅନ୍ୟାନ୍ୟ ବିବରଣ କ.ପ. ୬୯, ୭୦ ଅଧାୟରେ ଦେଖନ୍ତୁ ।

(୨) ମୂଳ ଗ୍ରନ୍ଥରେ ଏହି ସ୍ଥଳରେ ଦୁଃଶାସନଙ୍କ ବାହୁ ଉପାଡ଼ିବା, ଦ୍ରୌପଦୀଙ୍କ କେଶ ବାନ୍ଧିବା ଉକ୍ତ ନାହିଁ ।

ମନେ କରି କଣ୍ଟକବନ ସହ ନନ୍ଦନଦ୍ୱିତୟବଡ଼ାକୁ ମାତ୍ର ସ୍ଥିରକଲେ । କିନ୍ତୁ ଶ୍ରୀକୃଷ୍ଣ ଅର୍ଜୁନଙ୍କୁ ସେହି ଦୁର୍ନିବାର ବିପତ୍ତିରୁ ଉଦ୍ଧାର କରିଥିଲେ । ଶ୍ରୀକୃଷ୍ଣ ଜାଣି ପାରିଲେ ଯେ ଅର୍ଜୁନ ଏହାର ନିବାରଣରେ ଅସମର୍ଥ । ଅତଏବ ପଦାଘାତରେ ତାହାଙ୍କ ରଥକୁ ଭୂଗର୍ଭରେ କିଞ୍ଚିତ୍ ବସାଇଦେଲେ । ଅଶ୍ୱଗଣ ଜାନୁପାତପୂର୍ବକ ପଡ଼ି ରହିଲେ । ଏହି ନିରପାୟ ଉପାୟରେ ଅର୍ଜୁନଙ୍କ ମସ୍ତକ ସର୍ପସାୟକ ଆଘାତରୁ ମୁକ୍ତ ହେଲା, କେବଳ କିରୀଟ ମାତ୍ର ବିଚ୍ଛିନ୍ନ ହେଲା ।(୧) ତତ୍ପରେ ସେ ଉଭୟଙ୍କର ଭୟଙ୍କର ଐନ୍ଦ୍ର ବାରୁଣ ରୌଦ୍ର ପ୍ରଭୃତି ଅମୋଘାସ୍ତ୍ରମାନଙ୍କର ଖେଳାର୍ଭଟି ଜାଜ୍ୱଲ୍ୟମାନ ହୋଇ ବୈମାନିକ ସୁରାସୁରକିନ୍ନରାଦିଙ୍କୁ ଚମକୃତ କରୁଅଛି; ଇତ୍ୟବସରରେ କର୍ଣ୍ଣଙ୍କ ରଥଚକ୍ର ଭୂଗର୍ଭରେ ମଗ୍ନ ହେଲା ।(୨) କର୍ଣ୍ଣଙ୍କ ପ୍ରାର୍ଥନାରେ ଅର୍ଜୁନ କିଛିକାଳ ଅପେକ୍ଷା କଲେ ସୁଦ୍ଧା ସେ ଭୂଗ୍ରସ୍ତ ଚକ୍ରକୁ ଉତ୍ତୋଳିତ କରିପାରିଲେ ନାହିଁ । ପରେ ଅପରାହ୍ନ ସମୟରେ ଅର୍ଜୁନ କର୍ଣ୍ଣଙ୍କୁ ପ୍ରେତଶଯ୍ୟାରେ ବିଶ୍ରାମ ଦେଲେ ।(୩) ପରିଶେଷରେ ଦୁର୍ଯ୍ୟୋଧନ ଅଳ୍ପାବଶିଷ୍ଟ ସଂଶପ୍ତକ ଏବଂ ଅଶ୍ୱତ୍ଥାମା ପ୍ରଭୃତିଙ୍କ ସାହାଯ୍ୟରେ ଯୁଦ୍ଧ କରି ନିତାନ୍ତ କ୍ଳାନ୍ତ ଓ ପରାସ୍ତ ହେବାରୁ ଏକାନ୍ତ ଦୁଃଖରେ ସମସ୍ତଙ୍କ ସହ ଶିବିରକୁ ପ୍ରସ୍ଥାନ କଲେ ।

ସାରଳାଦାସ ମହାଶୟ କର୍ଣ୍ଣାହବପ୍ରକ୍ରିୟାକୁ ତ୍ରିଦିନାତ୍ମକ କରି ତାହାର ତୃତୀୟ ଦିବସରେ କର୍ଣ୍ଣ-ନିଧନ ସାଧନ କରିଥିବାର ଜଣାଯାଏ ।(୪) ଏ ମହାଶୟ କେତେକ ଘଟଣା ମୂଳଗ୍ରନ୍ଥ ଅପେକ୍ଷା ସଂକ୍ଷିପ୍ତ ଓ କେତେକ ତ୍ୟାଗ କରି ସୁଦ୍ଧା ଅନେକତ୍ର ଅତିରିକ୍ତ କଥାଯୋଗରେ ବିସ୍ତୃତ କରି ଅଛନ୍ତି । କିନ୍ତୁ ସେଠାରେ ସକୃଷ୍ଣାର୍ଜୁନଙ୍କର ଯୁଧିଷ୍ଠିର ପ୍ରତି ସାନ୍ତ୍ୱନା, ଯୁଧିଷ୍ଠିରକୃତ ଗାଣ୍ଡୀବ ଧିକ୍କାର, ଅର୍ଜୁନଙ୍କର ଜ୍ୟେଷ୍ଠ ଭ୍ରାତୃ-ମସ୍ତକଛେଦନାର୍ଥ ଉଦ୍ୟମ ପ୍ରଭୃତି ବିଷୟଗୁଡ଼ିକ ମୂଳାନୁମତ କରି ଅଛନ୍ତି । ତତଃପର ଦୌଃଶାସନିକ ନିଧନକ୍ରମ ପ୍ରାୟଶଃ ମୂଳଗ୍ରନ୍ଥର ଅନୁମତ କରି ସୁଦ୍ଧା ସେଥିରେ ଅତିରିକ୍ତତଃ ଭୀମଙ୍କ ଜନ୍ମବିବରଣ ଏବଂ ଶତଶୃଙ୍ଗ ପର୍ବତଠାରୁ ପ୍ରାପ୍ତ ଶାପର ବୃତ୍ତାନ୍ତକୁ ସାଙ୍ଗୋପାଙ୍ଗ କରି ଲେଖିଯାଇ ଅଛନ୍ତି । ଅପିଚ ଦୁଃଶାସନଙ୍କ ବାହୁ ଉତ୍ପାଟନରୁ ନିଃସୃତ ରକ୍ତରେ ଦ୍ରୌପଦୀଙ୍କ ମୁକ୍ତ କେଶ ପ୍ରକ୍ଷାଳନ କରିଥିବାର ଲେଖି ଅଛନ୍ତି । ଏହା ମୂଳଗ୍ରନ୍ଥରେ ଏ ସ୍ଥଳରେ ସ୍ପଷ୍ଟତଃ

---

(୧) ସ ବୈ କିରୀଟଂ ବହୁରତ୍ନଭୂଷିତଂ ଜହାର ନାଗୋଽର୍ଜୁନ ମୂର୍ଦ୍ଧତୋବଳାତ୍ । କ.ପ. ୯୦ ଅଧ୍ୟାୟ ।

(୨) ମୃତ୍ୟୁ ସମୟରେ ରଥଚକ୍ର ଭୂଗ୍ରସ୍ତ ହେବ ବୋଲି କର୍ଣ୍ଣକୁ ଶାପ ଥିବା କଥା ମଧ୍ୟ ଏ ସ୍ଥଳରେ ବିବୃତ ଅଛି ।

(୩) ପାର୍ଥୋଽପରାହ୍ଣେ ଶିର ଉଚ୍ଚକର୍ତ୍ତ ବୈକର୍ତ୍ତନସ୍ୟାଥ ମହେନ୍ଦ୍ରସୂନୁଃ ।
କ.ପ. ୯୧ ଅଧ୍ୟାୟ ୫୧ ଶ୍ଳୋକ ।

(୪) ଛାପା କର୍ଣ୍ଣ ପର୍ବ ୧୪ ପୃଷ୍ଠା ଦେଖିବେ, କର୍ଣ୍ଣାହବର ପ୍ରଥମ ଦିବସ ଯୁଦ୍ଧ ଶେଷ ହୋଇଅଛି; ୩୮ ପୃଷ୍ଠା ଦେଖିବେ ଦ୍ୱିତୀୟ ଦିବସ ଯୁଦ୍ଧ ଶେଷ ହୋଇ ପରଦିନ ପାଇଁ ଅବଶିଷ୍ଟ ଥିବାର ଲେଖା ଅଛି ।

ବିବୃତ ନ ଥିଲେ ସୁଦ୍ଧା ଏ ମହାଶୟ ଐତିହାସିକ ପ୍ରମାଣ ବଳରେ ସୁସଙ୍ଗତ କରି ଲେଖିନେଇ ଅଛନ୍ତି । ବେଣୀସଂହାର ରଚୟିତା ଭଟ୍ଟନାରାୟଣଙ୍କ ମତ ମଧ୍ୟ ଏହା ଅନୁମୋଦନ କରୁଅଛି; ପରନ୍ତୁ କେଶ ପ୍ରକ୍ଷାଳନ ସମୟରେ କେଶପାଶରୁ ବିଗଳିତ ଶୋଣିତାସାରକୁ ଦ୍ରୌପଦୀ ମଧ୍ୟ ପାନ କରିଥିଲେ । ଦ୍ରୌପଦୀ ଲକ୍ଷ୍ମୀସ୍ୱରୂପା, କିପରି ରୁଧିର ପାନ କଲେ ? ଏହାର କାରଣ ଜିଜ୍ଞାସାରେ ଦ୍ରୌପଦୀଙ୍କର ପ୍ରାକ୍ତନ କେତୁକା ଭୈରବୀ ରୂପର ବିବରଣମାନ ଦେଇ ଯେ କୌଣସିମତେ ସମାଧାନ କରି ଅଛନ୍ତି । ଏ ମହାଶୟ ଏହା କାହିଁରୁ ଉନ୍ନୟନ କରି ଅଛନ୍ତି, କିଛି ଜଣାଯାଏ ନାହିଁ । ଅତଃପର ଯେପରି କି ମୂଳଗ୍ରନ୍ଥରେ କର୍ଣ୍ଣଙ୍କ ପରାକ୍ରମରେ ନକୁଳଙ୍କ ପରାଜୟ, ତାହା ଲେଖି ଦ୍ୱିତୀୟ ଦିବସ ଯୁଦ୍ଧର ଅବସାନ କରି ଅଛନ୍ତି । ଯଥାର୍ଥତଃ ସାରଳାଦାସେ ଏପରି ଲେଖି ଅଛନ୍ତି, କିମ୍ୱା ଅଭିଜ୍ଞ ଅନୁଲେଖକ କେହି ମଧ୍ୟରେ ଦୁଇ ଚାରି ପଦ ମିଶାଇ ଗ୍ରନ୍ଥକର୍ତ୍ତାଙ୍କ ନିର୍ଦ୍ଦିଷ୍ଟ ଦ୍ୱିତୀୟ ଦିନର ଚରମ ଘଟଣାମାନ ବିଶିଷ୍ଟ ରଖି ଏପରି କରି ଅଛନ୍ତି, ତାହା ଠିକ୍ କହାଯାଇ ନ ପାରେ । ଏହି ଦ୍ୱିତୀୟ ଦିବସ ଯୁଦ୍ଧର ଅନ୍ତିମ ପାଠରେ ପ୍ରଶ୍ନ ଅଛି କି, ଦୁଃଶାସନଙ୍କ ଉତ୍ପାଟିତ ଭୁଜକୁ ଯେଉଁ ଶେଣା ପକ୍ଷୀ ଘେନିଗଲା, ସେହିଟି ପୂର୍ବ ଜନ୍ମରେ କିଏ ? ଏହାର ଉତ୍ତର ସ୍ୱରୂପ ନହୁଷ ରାଜା ଓ ତାହାଙ୍କ ଦୁହିତା ଶୌରୀ ଦେବୀଙ୍କର ତିର୍ଯ୍ୟକ୍ ଯୋନିଗତ ବୃତ୍ତାନ୍ତମାନ ଲେଖିଅଛନ୍ତି ।(୧) କବି ମହୋଦୟ ଏହା କାହିଁରୁ ଉନ୍ନୀତ କରି ଏଥିରେ ଲଗାଇ ଅଛନ୍ତି, କିମ୍ୱା ତାହାଙ୍କ ମନଗଢ଼ା, ଠିକ୍ କହାଯାଇ ନ ପାରେ । ଏହି ପାଠର ଅବସାନରେ କେବଳ ତାଳପତ୍ର ପୁସ୍ତକମାନଙ୍କରେ ମାତ୍ର ଦେଖାଯାଏ କି, ଭୀମ ଓ ଦୁଃଶାସନ ପୂର୍ବ ଜନ୍ମରେ କଣ ଥିଲେ ? ଏହି ପ୍ରଶ୍ନର ଉତ୍ତରରେ ପୁରା ବିଶ୍ୱାବସୁଙ୍କ ଦୁହିତା କେତୁକାଙ୍କ ସମ୍ବନ୍ଧରେ ମଙ୍ଗଳ ଓ କେତୁ ଗ୍ରହଙ୍କର ବିବାଦ ବିସମ୍ବାଦ ହେବା,ପରେ ଉଭୟେ ତ୍ରେତାରେ ବାଳୀ ଓ ସୁଗ୍ରୀବ ହେବା ଏବଂ ଦ୍ୱାପରରେ ଭୀମ ଓ ଦୁଃଶାସନ ରୂପରେ ଜନ୍ମି ଥିବା ପ୍ରଭୃତି ବିଷୟମାନ ଉକ୍ତ ଅଛି । ଏଥି ମଧ୍ୟରେ ବହୁ ଅସଂଗତି ମଧ୍ୟ ଦେଖାଯାଏ । ଏହା କି କବି ନିଜେ ଲେଖି ଅଛନ୍ତି, ଅଥବା କେହି ଲେଖକଂମନ୍ୟ ନିଜର ଅସଙ୍ଗତ ଲେଖାକୁ ନେଇ ଏଥିରେ ଭର୍ତ୍ତି କରି ଅଛନ୍ତି, ଠିକ୍ ସମାଧା ଦିଆଯାଇ ନ ପାରେ । ଏହାପରେ ଆଉ ଗୋଟିଏ ଅତି ଜଟିଳ ଓ ବିସ୍ମୟାବହ କଥାର ସଂକ୍ଷିପ୍ତ ବିବରଣ ଏହି:– ଯେଉଁଦିନ ଦୁଃଶାସନ ବିନଷ୍ଟ ହେଲେ, ସେହି ରାତିରେ ଦ୍ରୌପଦୀ ଦେବୀ ରିରଂସାପରତାରେ ଭୀମସେନଙ୍କୁ ଡକାଇ ନେଇଥିବା, କ୍ରୀଡ଼ା ପରେ ଆଦ୍ୟାଶକ୍ତି ସ୍ୱରୂପା ଦ୍ରୌପଦୀ ଦେବୀ ଯୁଧିଷ୍ଠିରଙ୍କ ବିନା ସମସ୍ତ ପାଣ୍ଡବମାନଙ୍କୁ ଆଉ ସବଂଶ ଶ୍ରୀକୃଷ୍ଣଙ୍କୁ ମଧ୍ୟ ବିନାଶ କରିଦେବି ବୋଲି କହିବା ପ୍ରଭୃତି କଥାମାନ ଲେଖି ଅଛନ୍ତି ।

---

(୧) ଛାପା କ.ପ. ୩୯, ୪୦ ପୃଷ୍ଠା ଦେଖନ୍ତୁ ।

ତତଃପର ପରଦିନ ପ୍ରାତଃକାଳରୁ ଅର୍ଜୁନ ଓ କର୍ଣ୍ଣଙ୍କର ପୁନଶ୍ଚ ଯୁଦ୍ଧସନ୍ନାହ ହେଲା । ବହୁ ଯୁଦ୍ଧ ପରେ କବି କର୍ଣ୍ଣଙ୍କ ସର୍ପସାୟକ ପ୍ରୟୋଗ ଘଟନା ଦେଇ ଅଛନ୍ତି; କିନ୍ତୁ ଏହାଙ୍କ କ୍ରମ ମୂଳ ଭାରତ ଅପେକ୍ଷା କିଞ୍ଚିତ ଭିନ୍ନ ପ୍ରକାର । ଏହାପରେ କର୍ଣ୍ଣଙ୍କ ରଥ ଭୂଗର୍ଭସ୍ଥ ହେବାର ଘଟଣାରେ କହନ୍ତି, ପୂର୍ବୋକ୍ତ ସାୟକୀଭୂତ ଶୋଷକ ସର୍ପର ଅଭିଶାପରେ କର୍ଣ୍ଣ ଏପରି ବିପଦରେ ପଡ଼ିଥିଲେ । ମାତ୍ର ଏହା ସତ୍ୟ ବୋଧହୁଏ ନାହିଁ । ଯଥାର୍ଥତଃ ବ୍ରହ୍ମଶାପରୁ କେବଳ କର୍ଣ୍ଣଙ୍କ ରଥ ଭୂଗ୍ରସ୍ତ ହୋଇଥିଲା ।(୧) କଳ୍ପନାପ୍ରିୟ କବି ମହାଶୟ କିଞ୍ଚିତ କଳ୍ପନାର ଖେଳା ସକାଶେ ଏ ସ୍ଥଳରେ କହନ୍ତି କି, ଅର୍ଜୁନଙ୍କ ଶରରେ ବିନିପାତ ହେଲେ ସୁଦ୍ଧା କର୍ଣ୍ଣଙ୍କ ଶରୀରରୁ ମସ୍ତକ ବିଚ୍ଛିନ୍ନ ହେଲା ନାହିଁ । ତାହାଙ୍କର ସହଜ ଅମୃତ କୁଣ୍ଡଳ ଓ ବଜ୍ର ଛଉରି ଅର୍ଜୁନ କୌଶଳକ୍ରମରେ ଘେନି ଆସିଥିବାରୁ ତଦୀୟ ଜନକ ସୂର୍ଯ୍ୟଦେବ ହୃଦୟରେ ମର୍କତଲିଙ୍ଗ ସ୍ଥାପନ କରି ଅଛନ୍ତି, ସେହିଟି ଦଗ୍‌ଧ ହେଲେ କେବଳ କର୍ଣ୍ଣ ବିଚ୍ଛିନ୍ନ-ମସ୍ତକ ହେବେ । ଏହା ସହଦେବଙ୍କ ମୁଖରୁ ଶୁଣି ଅର୍ଜୁନ ପାଶୁପତାଦି ଅମୋଘ ବାଣୌଘରେ ତାହା ହିଁ କରି ମଧ୍ୟାହ୍ନ ସମୟରେ ପଞ୍ଚତ୍ୱ ପ୍ରାପ୍ତ କରାଇଲେ ।

ଅଭିଜ୍ଞ ପାଠକେ ! ଏ ସ୍ଥଳରେ ସାମ୍ପ୍ରଦାୟିକ ବିଚାରରେ ସଂକ୍ଷିପ୍ତ ମନ୍ତବ୍ୟ ଗୋଟିଏ ଦେଇ କର୍ଣ୍ଣ ପର୍ବ ପାଠର ଅବହାର କରିବୁଁ । ଏହି ଉଲ୍ଲିଖିତ କ୍ରମ ଅନୁସାରେ ଛାପା କର୍ଣ୍ଣ ପର୍ବର ଅବସାନ ସ୍ଥଳରେ ଲେଖାଅଛି, କର୍ଣ୍ଣ ଅଢ଼ାଇ ଦିବସ ଯୁଦ୍ଧ କରି ମଧ୍ୟାହ୍ନ ସମୟରେ ନିହତ ହେଲେ । ଦୁର୍ଯ୍ୟୋଧନାଦିଙ୍କ ବିଳାପରେ କ୍ରମଶଃ ସେହି ରାତ୍ରିର ଅର୍ଦ୍ଧଭାଗ ଅତୀତ ହେଲା । ଏହା ହେଲେ କର୍ଣ୍ଣାହବ ଅବସାନକୁ ଭାରତ ଯୁଦ୍ଧର ସଂକଳ୍ପିତ ଅଷ୍ଟାଦଶ ଦିବସ ଅବସନ୍ନ ହୋଇଗଲା । ଶଲ୍ୟ ଉନବିଂଶ ଦିବସରେ ଯୁଦ୍ଧ ଆରମ୍ଭ କରିଥିଲେ ? ଏହା କୌଣସିମତେ ସମ୍ଭବ ହୋଇ ନ ପାରେ । କିନ୍ତୁ ପାଠକେ ! ମଦ୍ଦୃଷ୍ଟ ତାଳପତ୍ର ପୁସ୍ତକମାନଙ୍କରେ ସ୍ଥାନେ ସ୍ଥାନେ କର୍ଣ୍ଣାହବର ତ୍ରିଦିନାତ୍ମକତାର ଅନୁକୂଳ ପଦ୍ୟ ଲେଖାଅଛି । ସତ୍ୟ, ମାତ୍ର ଏ ସ୍ଥଳରେ ଲେଖାଅଛି କି କର୍ଣ୍ଣ ଦୁଇ ଦିନ ମାତ୍ର ଯୁଦ୍ଧ କରି ଭାରତ ଯୁଦ୍ଧର ସପ୍ତଦଶ ଦିବସରେ ମୃତ ହୋଇଥିଲେ (୨) । ଏଥିରୁ କି ଜଣାଯାଏ ନାହିଁ, ଦୁର୍ମତି ଅନୁଲେଖକମାନେ ସାରଳା ମହାଭାରତର ନିର୍ଦ୍ଦୋଷ ସ୍ଥଳମାନଙ୍କୁ ମଧ ନିଜର ବୁଦ୍ଧି ଦୁର୍ବିଧତା-କାଳିମାରେ କଳୁଷିତ କରିଦେଇ ଅଛନ୍ତି ? ଏହି ଭାରତରେ

(୧) ଯେନ ବିସ୍ପର୍ଦ୍ଧସେ ନିତ୍ୟ ଯଦର୍ଥଂ ଘଟସେ ଭୃଶଂ ।
ଯୁଦ୍ଧତସ୍ତେନ ତେ ପାପ ! ଚକ୍ରଂ ଭୂମିର୍ଗ୍ରସିଷ୍ୟତି ॥ ଶା.ପ. ୨ ଅ: ୨୪ ଶ୍ଳୋ ॥

(୨) ଭୀଷ୍ମ ଦଶ ଦିନ ଯେ ଦ୍ରୋଣ ପଞ୍ଚଦିବସ ।
ଦୁଇ ଦିନେ କର୍ଣ୍ଣ ହେଲା ପ୍ରାଣେ ନାଶ ॥
ସତର ଦିନ ଆଜକୁ ହୋଇଲା ସଂପୂର୍ଣ୍ଣ ।
କୁମ୍ଭ ମାସ କୃଷ୍ଣପକ୍ଷ ଚତୁର୍ଥୀର ଦିନ ॥

ପରିଦୃଷ୍ଟ ଏତାଦୃଶ ଅନେକଗୁଡ଼ିଏ ଦୋଷ ସର୍ବସମକ୍ଷରେ ଆମ୍ଭେମାନେ ପ୍ରଦର୍ଶନ କରୁଅଛୁଁ, ସେଗୁଡ଼ିକ ତାହାର ଦୁଃସ୍ଥାନସ୍ଥିତି ହେତୁରୁ ଘଟିଅଛି ବୋଲି ବିଶ୍ୱାସ କରିବାକୁ ହେବ ।

ଅତଃପର ମୂଳଗ୍ରନ୍ଥରେ ଶଲ୍ୟ ପର୍ବ ତ୍ରିଧାବିଭକ୍ତ – ଶଲ୍ୟବଧ ପର୍ବ, ହ୍ରଦ ପ୍ରବେଶ ପର୍ବ ଓ ଗଦା ପର୍ବ । ପ୍ରଥମତଃ କର୍ଣ୍ଣବଧରେ ଏକାନ୍ତ ବିଷର୍ଣ୍ଣ ଓ ହତାଶ ଦୁର୍ଯ୍ୟୋଧନଙ୍କ ନିକଟରେ କୃପ ପାଣ୍ଡବମାନଙ୍କର ସର୍ବଥା ଅଜେୟତ୍ୱ ପ୍ରକାଶ କରି ସନ୍ଧିର ପ୍ରସ୍ତାବ କରିଥିଲେ । ଦୁର୍ଯ୍ୟୋଧନ ବହୁବିଧ ବିଚାରରେ କେବଳ ଯୁଦ୍ଧ କରିବାର ସ୍ଥିର କରି ଅଶ୍ୱତ୍ଥାମାଙ୍କ ମତ ନେଇ ଶତ୍ରୁ-ଶଲ୍ୟ ଶଲ୍ୟଙ୍କୁ ସେନାପତିତ୍ୱରେ ଅଭିଷିକ୍ତ କଲେ । ମଦ୍ରରାଜ ଶଲ୍ୟ ସର୍ବତୋଭଦ୍ର ବ୍ୟୂହ ନିର୍ମାଣ କରି ଯୁଦ୍ଧାର୍ଥ ସନ୍ନଦ୍ଧ ରହିଲେ । ତତ୍‌ପୂର୍ବ ଦିନରେ ଯୁଧିଷ୍ଠିର କର୍ଣ୍ଣପ୍ରଦତ୍ତ ଅମିତ ଅସହ୍ୟ ବାଧାଯୋଗୁ କ୍ଷତ୍ରିୟର ଘୋର କଳଙ୍କ କାପୁରୁଷତାର ଲକ୍ଷଣ ପ୍ରକାଶ କରି ଦେଇଥିଲେ ବୋଲି ଅଦ୍ୟ ଦିବସ ଶ୍ରୀକୃଷ୍ଣ ତାହାଙ୍କୁ ଶଲ୍ୟ ନିଧନରେ ନିଯୁକ୍ତ କଲେ । ଯୁଧିଷ୍ଠିର ଅମିତ ସାହସ ସହକାରେ ଦ୍ୱୈରଥ୍ୟ ଯୁଦ୍ଧରେ ମହାବୀର ଶଲ୍ୟଙ୍କୁ ଶକ୍ତିପ୍ରହାରରେ ବିନିପାତ କରିଥିଲେ ।

ସାରଳାଦାସ ମହାଶୟ ଏହି ବିଷୟାଂଶଟିକୁ ପ୍ରାୟଶଃ ମୂଳାନୁମତ କରି ଅଛନ୍ତି; ମାତ୍ର ଶଲ୍ୟଙ୍କ ନୈଧନିକ ଘଟନାରେ ନିଜ କଳ୍ପନାର ବିଲକ୍ଷଣ ବିଚିତ୍ରତା ନିହିତ ନ କରି ଛାଡ଼ି ନାହାନ୍ତି ଏବଂ ଶଲ୍ୟ ପର୍ବର ସର୍ବଶେଷରେ ନିହତ ଶକୁନିକୁ ଶଲ୍ୟଙ୍କ ଭାବୀ ନିଧନର ସମ୍ବାଦ ଦେବା ସକାଶେ ସର୍ବାଦୌ ପ୍ରେରଣ କରିଅଛନ୍ତି । ଏ କହନ୍ତି କି, ଶଲ୍ୟ ଯେତେବେଳେ ଧର୍ମରାଜ ଯୁଧିଷ୍ଠିରଙ୍କୁ କେଶଗ୍ରହଣପୂର୍ବକ ଚପେଟାଘାତ କଲେ, ତେତେବେଳେ ଆଦିତ୍ୟାଦି ଦେବତାନିକର କୋପାନଳରେ ଜ୍ୱାଜ୍ୱଲ୍ୟମାନ ହୋଇ ଚାହିଁ ଦେବାରୁ ଶଲ୍ୟ ଦଂଦହ୍ୟମାନ ହୋଇଗଲେ । ଅପିଚ ଶଲ୍ୟ ଏପରି ଦଗ୍ଧ ହେବାର କାରଣ ଜିଜ୍ଞାସାରେ ପୁରା ଭାର୍ଗବ ଋଷିଙ୍କ ଆଶ୍ରମରେ ଶସ୍ତ୍ରଶିକ୍ଷା ସମୟରେ ଅନୁଷ୍ଟୁପ୍ ଋଷିଙ୍କଠାରୁ ସେ ଶାପ ପାଇଥିବାର ପ୍ରାକ୍ତନ ବୃତ୍ତାନ୍ତାଦି ମଧ୍ୟ ବିବୃତ କରି ଅଛନ୍ତି ।(୧) ତା ପରେ ଆଉ ଏକ ଅସମ୍ଭବ କଳ୍ପନାର ବିଚିତ୍ର ଚିତ୍ରଣ କରି ଅଛନ୍ତି । ମୂଳଗ୍ରନ୍ଥରେ ଏ ସ୍ଥଳରେ ଅର୍ଜ୍ଜୁନଙ୍କ ସହ ଶଲ୍ୟଙ୍କ ଅନୁଜଗଣ ଓ କୃପାଦିଙ୍କର ପରାଭବ ଅନୁଭବମୂଳକ ଯୁଦ୍ଧର କ୍ରମ ବର୍ଣ୍ଣିତ ଥିବାରୁ ପରା ଏ କହନ୍ତି, କ୍ଷତ୍ରିବୃତ୍ତି-ପ୍ରବୃତ୍ତ ଅମୋଘ-ମନ୍ତ୍ର କୃପ ଅର୍ଜ୍ଜୁନଙ୍କ ସହ ତ୍ରିଯାମା ବିଗତ-ଦ୍ୱିଯାମା ହେବାଯାଏ ଘୋର ଯୁଦ୍ଧ କରିଥିଲେ । ପରେ ଶ୍ରୀକୃଷ୍ଣଙ୍କ ଉତ୍ତେଜନାରେ ଉତ୍ତେଜିତ ଅର୍ଜ୍ଜୁନଙ୍କର ଦେବପ୍ରଭାବ ନୀଳବାଣ ଓ ଭୁଜବାଣ ପ୍ରଥମତଃ କୃପଙ୍କୁ ଦ୍ୱିଖଣ୍ଡ କରି

(୧) ଶ.ପ. ୮ - ୯ ପୃଷ୍ଠା ଦେଖନ୍ତୁ ।

ନିଜର ଅଖଣ୍ଡମହିମବୈଭବରେ ପୁନଶ୍ଚ(୧) ଖଣ୍ଡଦ୍ୱୟକୁ ବିପରୀତ କ୍ରମରେ ସଂଯୋଗପୂର୍ବକ ମୃତସଞ୍ଜୀବନୀରେ ଅମୃତୀକରଣ କରିଦେଲେ । ଇତ୍ୟାକାରକ କେତେଗୁଡ଼ାଏ ମୂଳାନୁକ୍ତ ଅସ୍ୱାଭାବିକ କଥାମାନ ଲେଖି ମୂଳୋକ୍ତ ମ୍ଳେଛଗଣାଧିପ ଶାଲ୍ୱଙ୍କର ଏବଂ ଶକୁନି ପ୍ରଭୃତିଙ୍କର ଯୁଦ୍ଧକ୍ରମକୁ ତ୍ୟାଗ କରି ଅଛନ୍ତି । ଇତଃପୂର୍ବେ ଅଭିମନ୍ୟୁସାୟକରେ ଯମରାଷ୍ଟ୍ରଗତ ଦୌର୍ଯ୍ୟୋଧନି ଲକ୍ଷ୍ମଣକୁମାରଙ୍କ ମହାନିଦ୍ରାକୁ ବିଲକ୍ଷଣତା ସହକାରେ କାପୁରୁଷତାରେ କଳଙ୍କିତ କରି ଏଠାରେ ଅଯଥାସ୍ଥାନସନ୍ନିବେଶ କରିଅଛନ୍ତି । ମୂଳଗ୍ରନ୍ଥରେ ଶକୁନିଙ୍କ ଯୁଦ୍ଧ ସମୟରେ ଦୁର୍ଯ୍ୟୋଧନ ରଥାନୀକ ମଧ୍ୟରେ ଅଦୃଷ୍ଟ ହେବାରୁ ଅଶ୍ୱତ୍ଥାମାଦି ତାହାଙ୍କୁ ଅନ୍ୱେଷଣ କରିଥିବାର ଉକ୍ତ ଅଛି । ଅନୁମାନ ହୁଏ, ଏତଦନୁକରଣରେ ଉତ୍କଳବ୍ୟାସ ସାରଳାଦାସ ମହୋଦୟ ନିରାଶାଜର୍ଜରିତ ଦୁର୍ଯ୍ୟୋଧନ ଗଜର ଘନଘଣ୍ଟା ଭିତରେ ଆଚ୍ଛାଦିତ ଓ ଲୁକ୍‌କାୟିତ ରହି ସମାସନ୍ନ ନିଶାବସାନରେ ରକ୍ତନଦୀ ସନ୍ତରଣ କରିଥିବାର ସନ୍ଦର୍ଭ ଲେଖି ଅଛନ୍ତି । ଅଥବା ଏହି ସଂବିଧାନଟିକୁ ଅନ୍ୟ କେଉଁ ପୁରାଣରୁ ଉନ୍ନୟନ କରି ଅଛନ୍ତି, ତାହା ପ୍ରତିପନ୍ନ କରାଯାଇପାରେ ନାହିଁ । ଯାହାହେଉ ଏହାର କାଳ୍ପନିକ ଚିତ୍ରଣ ବଡ଼ ମନୋହର ଓ ଭାବଜନକ ହୋଇଅଛି । ଏହା ପରେ ମୂଳଗ୍ରନ୍ଥର ଅନନ୍ତପ୍ରସର ହ୍ରଦ ପ୍ରବେଶ ଉପପର୍ବରେ ନିଗଦିତ ବ୍ୟାସସରୋବର ପ୍ରତି ଦୁର୍ଯ୍ୟୋଧନଙ୍କ ପ୍ରାସ୍ଥାନିକ କ୍ରମକୁ ସୂଚିତ ମାତ୍ର କରି ଶଲ୍ୟପର୍ବ ପରିସମାପ୍ତ କରିଅଛନ୍ତି । ଅନନ୍ତର ମୂଳ ଶଲ୍ୟପର୍ବର ଅନ୍ୟତମ ଭାଗ ଗଦାପର୍ବ ନାମରେ ଏ ମହାଶୟ ଗୋଟିଏ ପ୍ରଧାନ ପର୍ବର ଅବତାରଣା କରନ୍ତି ।(୨)

ମୂଳ ଗଦାପର୍ବର ସଂକ୍ଷିପ୍ତ କଥା ଏହି – ଅଦ୍ୟଦିବସ ସମଗ୍ର କୌରବବାହିନୀ ବିନିପାତ ହୋଇଥିଲେ । କେବଳ ଯାଦବ ବୀର କୃତବର୍ମା, ବ୍ରାହ୍ମଣ କ୍ଷତ୍ରିୟ କୃପ ଓ ଅଶ୍ୱତ୍ଥାମା ଏବଂ ଦୁର୍ଯ୍ୟୋଧନ ମାତ୍ର ପ୍ରାଣଧାରଣ କରି ରହିଥିଲେ । ଦୁର୍ଯ୍ୟୋଧନ ମରଣ ଭୟରେ ପଳାୟନ କରି ବ୍ୟାସ-ହ୍ରଦରେ ଲୁକ୍‌କାୟିତ ରହିଲେ । ଧର୍ମପ୍ରାଣ ପାଣ୍ଡବମାନେ ବହୁ ଅନ୍ୱେଷଣରେ ତାହାଙ୍କୁ ଦେଖି ସୁଦ୍ଧା ଯୁଦ୍ଧ ବ୍ୟତିରେକେ ନିହତ କରିବାକୁ ଇଚ୍ଛୁକ ହେଲେ ନାହିଁ । ତେତେବେଳେ ଯୁଧିଷ୍ଠିର ତାହାଙ୍କୁ କହିଲେ କି, ଆୟୁଧହସ୍ତରେ ଆମ୍ଭ ଭ୍ରାତୃପଞ୍ଚକ ମଧ୍ୟରୁ ଯାହାକୁ ଇଚ୍ଛାକର, ତାହାଙ୍କ ସହିତ ରଣାଙ୍ଗଣରେ ଅବତୀର୍ଣ୍ଣ ହୁଅ । ଯଦି ଆମ୍ଭର ଯେ କୌଣସି ଭ୍ରାତାଙ୍କୁ ନିହତ କରି ପାର, ତେବେ ସମଗ୍ର ସାମ୍ରାଜ୍ୟ ଭୋଗ କରିବ । ତାହା ଶୁଣି ବଳଦୃପ୍ତ ଦୁର୍ଯ୍ୟୋଧନ ଭୀମଙ୍କ ସହିତ ଗଦାଯୁଦ୍ଧ କରିବାକୁ

(୧) ଶ.ପ. ୧୧-୧୩ ପୃଷ୍ଠା ଦେଖନ୍ତୁ । ଏ ସ୍ଥଳରେ ଛାପା ଓ ତାଳପତ୍ର ପୁସ୍ତକ ମଧ୍ୟରେ ସୁଦ୍ଧା ଅନୋନ୍ୟ ବହୁ ପ୍ରଭେଦ ଦେଖାଯାଏ ।

(୨) ସାରଳାଦାସଙ୍କ ପରି ବଙ୍ଗ ଭାରତକର୍ତ୍ତା କାଶୀରାମଦାସ ମଧ୍ୟ ଅଷ୍ଟାଦଶ ପର୍ବ ମଧ୍ୟରେ ଗଦା ପର୍ବକୁ ଗୋଟିଏ ସ୍ୱତନ୍ତ୍ର ପର୍ବ କରି ଅଛନ୍ତି ।

ଇଚ୍ଛା ପ୍ରକାଶ କଲେ । ଅଷ୍ଟାଦଶ ଦିବସ ଶେଷରେ ଦୁର୍ଯ୍ୟୋଧନ ଓ ଭୀମଙ୍କର ଗଦାହବ ପ୍ରବୃତ୍ତ ହେଲା । ପୂର୍ବେ ସଭା ପର୍ବରେ ଭୀମ ଯାହା ଦୁର୍ଯ୍ୟୋଧନଙ୍କ ଜାନୁଭଙ୍ଗାର୍ଥେ ପ୍ରତିଜ୍ଞା କରିଥିଲେ, ଅଦ୍ୟ ତାହା ସମ୍ପନ୍ନ କରିବେ, ଏଥି ସକାଶେ ଭୀମ ଉତ୍କଣ୍ଠିତ; ପରନ୍ତୁ ଭୀମସେନ ଯୁଦ୍ଧ-ସଂମର୍ଦ-ଜନିତ ପ୍ରକୋପବଶରୁ ପୂର୍ବ ପ୍ରତିଜ୍ଞା ତତ୍‌କ୍ଷଣାତ୍ ବିସ୍ମୃତ ହେଲେ । ଏହି ଘୋର ବିମର୍ଦରେ ସେହି ପ୍ରତିଜ୍ଞା ତାହାଙ୍କର ସ୍ମୃତିପଥରେ କଥଂଚିତ୍ ଆରୂଢ଼ ହେଲା ନାହିଁ, ହୃଦୟରେ କୋପାନ୍ତରାଳରେ ଅନ୍ତର୍ହିତ ରହିଲା । ତେତେବେଳେ ଗଦା ଯୁଦ୍ଧରେ ଜୀବିତାନପ୍ରେକ୍ଷ ଦୁର୍ଯ୍ୟୋଧନଙ୍କର ଯତ୍ନ ଓ ପଟୁତା ସମଧିକ ଦେଖି ଅର୍ଜୁନ ଭୀମଙ୍କ ଦୃଷ୍ଟି ସମ୍ମୁଖରେ ବାମଜାନୁରେ କରାଘାତ ପୂର୍ବକ ପ୍ରତିଜ୍ଞା ସ୍ମରଣାର୍ଥ ସଙ୍କେତ ଦେଖାଇ ଦେଲେ । ନାଭୀର ଅଧୋଭାଗରେ ଗଦାପ୍ରହାର ଅନୁଚିତ ହେଲେ ହେଁ, ଭୀମ ଅଗତ୍ୟା ଅନ୍ୟାୟତଃ ଦୁର୍ଯ୍ୟୋଧନଙ୍କ ଜାନୁଭଙ୍ଗ ନିଷ୍ପନ୍ନ କଲେ । ସେ ସମୟରେ ତୀର୍ଥ-ପ୍ରତ୍ୟାବୃତ୍ତ ବଳରାମ ମଧ ସେହିଠାରେ ଉପସ୍ଥିତ ଥିଲେ । ସେ ସ୍ୱକୀୟ ପ୍ରିୟଶିଷ୍ୟ ଦୁର୍ଯ୍ୟୋଧନଙ୍କ ପ୍ରତି ଏତାଦୃଶ ଅନ୍ୟାୟାଚରଣ ଦେଖି କୁପିତ ହେଲେ । ଶ୍ରୀକୃଷ୍ଣ ଯେ କୌଣସି ପ୍ରକାରେ ତାହାଙ୍କୁ ପ୍ରଶାନ୍ତ କରିବାକୁ ଲାଗିଲେ । ତଦନନ୍ତର ଯୁଦ୍ଧରେ ନିପାତିତ ଏକାନ୍ତ ମୁମୂର୍ଷୁ ଦୁର୍ଯ୍ୟୋଧନଙ୍କ ମସ୍ତକୋପରି ରୋଷପର୍ଯ୍ୟାକୁଳେକ୍ଷଣ ଭୀମ ଗଦାଘାତ କଲେ । ଦୁର୍ଯ୍ୟୋଧନ ସ୍ୱନିଧନର କାରଣଭୂତ ଶ୍ରୀକୃଷ୍ଣଙ୍କୁ ନାନା କଟୂକ୍ତି ପ୍ରକାଶ କଲେ । ଇତ୍ୟାଦି ।

ମୂଳଗ୍ରନ୍ଥର ଏହି ସ୍ଥୂଳ ବିଷୟଗୁଡ଼ିକୁ ସାରଳାଦାସେ ପ୍ରାୟଶଃ ମୂଳାନୁମତ କରି ଅଛନ୍ତି ସତ୍ୟ, ମାତ୍ର ଏଥି ମଧରେ ନାନା ପ୍ରକାର ଅମୌଳିକ ଓ କଳ୍ପିତ କଥା-ବୈଚିତ୍ର୍ୟର ସମାବେଶ ନ କରି ଛାଡ଼ି ନାହାନ୍ତି । ବରଂ କେତେକ କଳ୍ପିତ କଥାକୁ ବୈଷୟିକ ସଂଲଗ୍ନତାପୂର୍ବକ ଯୋଗ କରି ଅଛନ୍ତି । ପରନ୍ତୁ ମୂଳୋକ୍ତ ବହୁବିସ୍ତୃତ ସାରସ୍ୱତୋପାଖ୍ୟାନ ପ୍ରଭୃତି କେତେକ ଚରିତ ସଂସ୍ଥାନ ପରିତ୍ୟାଗ କରି ଅଛନ୍ତି ।(୧) ବ୍ୟାସସରୋବରରେ ପ୍ରସୁପ୍ତ ଦୁର୍ଯ୍ୟୋଧନ ଓ ଲକ୍ଷ୍ମୀଙ୍କର ସମ୍ବାଦ, ଦୁର୍ଯ୍ୟୋଧନ ବିନାଶର ବିକଳ୍ପରେ କୁପିତା କୁନ୍ତୀ ଦେବୀଙ୍କ ଭର୍ତ୍ସନା ଶୁଣି ଭୀମଙ୍କ ମାତୃଜିଘାଂସାଦିର କ୍ରମ, ବ୍ୟାସସରୋବର ପ୍ରସ୍ତାବରେ ମହାଦେବଙ୍କ ସମ୍ବନ୍ଧରେ କେତେକ ଅଶ୍ଳୀଳ କଥା, ଭୀମ ମହାଦେବଙ୍କଠାରୁ ସିଂହନାଦ ପାଇବା କ୍ରମର ସାଙ୍ଗୋପାଙ୍ଗୋ ବିବରଣ, ଦୁର୍ଯ୍ୟୋଧନ ସରୋଦରରୁ ବହିର୍ଗତ ହେବା ସମୟରେ ଭୀମଙ୍କ ପାଦରେ ଯୁଧିଷ୍ଠିରଙ୍କର ପ୍ରଣାମ କରଣର (!) ବହୁମେଳକ କଥାସନ୍ଦର୍ଭ, ଭୀମ ଓ ଦୁର୍ଯ୍ୟୋଧନଙ୍କ ଗଦା ଯୁଦ୍ଧରେ ଶ୍ରୀକୃଷ୍ଣଙ୍କ ମାୟା-ଭୀମ ନିର୍ମାଣାଦି ବିଷୟ ଏବଂ ଦୁର୍ଯ୍ୟୋଧନଙ୍କର ବିଲକ୍ଷଣ ମୃତ୍ୟୁଭେଦ କ୍ରମ, ରଣାଙ୍ଗଣର ସ୍ତମ୍ଭୋପରି ନିହିତ ବେଲ୍ଲାବଳୀଙ୍କର ଚରିତସଂସ୍ଥାନ ପ୍ରଭୃତି କଳ୍ପନା ବଳରେ ଚିତ୍ରିତ କରି ଅଛନ୍ତି ।

---

(୧) ମୂଳଗ୍ରନ୍ଥରେ ରାମଙ୍କ ତୀର୍ଥଯାତ୍ରାଦି ବିବରଣମୂଳକ ସାରସ୍ୱତୋପାଖ୍ୟାନ ୩୫-୫୪ ଅଧ୍ୟାୟଯାଏ ଉକ୍ତ ଅଛି ।

ଏହିଠାରେ ସାରଳାଦାସଙ୍କ ଗଦାପର୍ବର ଅବସାନ ହୋଇଅଛି; କିନ୍ତୁ ମୂଳ ଶଲ୍ୟପର୍ବର ଉପପର୍ବ ଗଦାପର୍ବର ଅନ୍ତିମ ଭାଗରେ ଲିଖିତ ଏବଂ ସାରଳାଦାସଙ୍କ ଭାରତରେ ଅନୁକ୍ତ ଆହୁରି କେତେକ ବିଷୟ ସୂଚନାତଃ ପାଠକଙ୍କୁ ବୁଝାଇ ଦେବା ଉଚିତ ମନେ କରୁଅଛୁଁ । ଦୁର୍ଯ୍ୟୋଧନଙ୍କୁ ପାଣ୍ଡବମାନେ ଅନ୍ୟାୟ ଯୁଦ୍ଧରେ ନିହତ କରିଥିବାରୁ ତପଃଶୀଳା ଗାନ୍ଧାରୀ ସେମାନଙ୍କୁ ଶାପ ଦେବେ କିମ୍ବା ଭସ୍ମସାତ୍ କରିବେ, ଏତାଦୃଶ ବିଚାରରେ ଏକାନ୍ତ ଭୀତ ଯୁଧିଷ୍ଠିର ଶ୍ରୀକୃଷ୍ଣଙ୍କୁ ଗାନ୍ଧାରୀଙ୍କ ଶାନ୍ତିକରଣାର୍ଥ ହସ୍ତିନା ପ୍ରସ୍ଥାନାର୍ଥେ ପ୍ରାର୍ଥନା କଲେ । ଶ୍ରୀକୃଷ୍ଣ ତଦାଦେଶରେ ଯାଇ ଗାନ୍ଧାରୀଙ୍କୁ ଯଥାମତ ସାନ୍ତ୍ୱନା କଲେ, ଅଥଚ ଏହା ଗୋଟିଏ ଆଶ୍ଚର୍ଯ୍ୟକର ଘଟଣା । ଏହି ଯୁଦ୍ଧାବସାନରେ ଯେତେବେଳେ ଶ୍ରୀକୃଷ୍ଣ ଅର୍ଜୁନଙ୍କ ରଥରୁ ଅବତୀର୍ଣ୍ଣ ହେଲେ, ତତ୍କ୍ଷଣାତ୍ ପ୍ରୋକ୍ତ ରଥଟି ଅଗ୍ନିସାତ୍ ହୋଇ ଯାଇଥିଲା । ଅର୍ଜୁନ ତାହାର କାରଣ ଜିଜ୍ଞାସା କଲାରୁ ଶ୍ରୀକୃଷ୍ଣ କହିଲେ କି, ଇତି ପୂର୍ବରୁ ବ୍ରହ୍ମାସ୍ତ୍ର ଭାବରେ ରଥରେ ଅଗ୍ନି ଅନ୍ତର୍ନିହିତ ହୋଇଥିଲା, କେବଳ ମୋର ଅଧିଷ୍ଠାନ ଯୋଗୁଁ ଏତେବେଳଯାଏ ଦଗ୍ଧ ନ ହୋଇ ରହିଥିଲା । ଇତ୍ୟାଦି ।

ଅତଃପର ସୌପ୍ତିକ ପର୍ବର ଏକାନ୍ତ ଭୟଙ୍କର ବ୍ୟାପାର । ଭଗ୍ନୋରୁ ମ୍ରିୟମାଣ ଦୁର୍ଯ୍ୟୋଧନ ଅବଶିଷ୍ଟ ପାଞ୍ଚାଳ ପ୍ରଭୃତିଙ୍କ ବିନାଶାର୍ଥ ଅଶ୍ୱତ୍ଥାମାଙ୍କୁ ସେନାପତିତ୍ୱରେ ଅଭିଷିକ୍ତ କରିଥିଲେ । ଦ୍ରୌଣାୟନି କୃପାଚାର୍ଯ୍ୟ ଓ କୃତବର୍ମାଙ୍କୁ କେବଳ ସହାୟ ପାଇଁ ବୈରନିର୍ଯ୍ୟାତନାର୍ଥ ଉଦ୍ୟତ ହେଲେ । କିନ୍ତୁ କି ଉପାୟରେ ପାଣ୍ଡବ ଓ ପାଞ୍ଚାଳମାନଙ୍କୁ ନିହତ କରି ପାରିବେ, ଏହା ସ୍ଥିର କରି ନ ପାରି ନିତାନ୍ତ ବିଷଣ୍ଣତାରେ ଏକ ବୃକ୍ଷମୂଳରେ ଚିନ୍ତାରେ ନିମଗ୍ନ ରହିଲେ । ତେତେବେଳେ ପ୍ରସୁପ୍ତ କାକମାନଙ୍କର ପ୍ରାଣାପହାରୀ କୌଶିକର ଚର୍ଯ୍ୟା ଦେଖି ତାହା ଉପଦେଶ ପ୍ରାୟ ହୃଦୟଙ୍ଗମ କରି ନିଦ୍ରାଭିଭୂତ ପାଣ୍ଡବୀୟ ଲୋକଙ୍କ ନିଧନରେ ଦୃଢ଼ସଂକଳ୍ପ ହେଲେ । ନିଶା ସମୟରେ କୃଷ୍ଣ ଓ ଅର୍ଜୁନଙ୍କ ଅନବସ୍ଥିତିରେ ଅକ୍ଷୁଣ୍ଣଧୈର୍ଯ୍ୟ ହୋଇ ଚୋର ପ୍ରାୟ ପାଣ୍ଡବୀୟ ଶିବିର ପ୍ରବେଶ ଇଚ୍ଛାରେ ଦ୍ୱାରଦେଶରେ ଉପସ୍ଥିତ ହୋଇ ଦେଖିଲେ ଯେ, ଚନ୍ଦ୍ରାର୍କସଦୃଶ୍ୟଦ୍ୟୁତି ନାଗଯଜ୍ଞୋପବୀତ ଜ୍ୱାଳାମାଳା-ସମାକୁଳାନନ ନାନାପ୍ରହରଣୋଦ୍ୟତ-ପୀନବାହୁ ପ୍ରଚଣ୍ଡ ଭୟାବହ ସହସ୍ରନେତ୍ର ଭୂତପତି ଦ୍ୱାରସ୍ଥ ରୂପେ ବିଦ୍ୟମାନ ରହିଅଛନ୍ତି । ପ୍ରଥମତଃ ରୋଷବଶରୁ ତତ୍ପ୍ରତି ଅସଂଖ୍ୟ ଶସ୍ତ୍ରାସ୍ତ୍ର ନିକ୍ଷେପ କରି ସୁଦ୍ଧା ପରିଶେଷରେ ନିରସ୍ତ ହୋଇପଡ଼ି ତତ୍କୃପାର ପ୍ରାର୍ଥୀ ହେଲେ । ତଦା ଅଶ୍ୱତ୍ଥାମା ବହୁ ସପର୍ଯ୍ୟାରେ ତାହାଙ୍କୁ ପ୍ରସନ୍ନ କରାଇ ଶିବିର ମଧ୍ୟରେ ପ୍ରବେଶ କଲେ । ସେ ପ୍ରଥମେ ସୁପ୍ତୋତ୍ଥିତ ନିଜ ପିତୃହନ୍ତା ଧୃଷ୍ଟଦ୍ୟୁମ୍ନକୁ ନିହତ କରିଥିଲେ । ତତ୍ପରେ ରଥସ୍ଥ ହୋଇ ନିଦ୍ରାଭିଭୂତ ଶିଖଣ୍ଡୀ ଦ୍ରୌପଦେୟପଞ୍ଚକ ଆଉ ସମଗ୍ର ପାଞ୍ଚାଳ ବୀର ଏବଂ ଅନ୍ୟାନ୍ୟ ସେନାପତି ବୀରମାନଙ୍କୁ ଯୁଦ୍ଧରେ ନିହତ କରି ପ୍ରତ୍ୟୁଷକାଳରେ

ଦୁର୍ଯ୍ୟୋଧନଙ୍କୁ ସମସ୍ତ ବୃତ୍ତାନ୍ତ ଜଣାଇଲେ । ତେତେବେଳେ ଦୁର୍ଯ୍ୟୋଧନ ସାନନ୍ଦରେ ପ୍ରାଣତ୍ୟାଗ କରିଥିଲେ ।

ସାରଳାଦାସ ମହାଶୟ ସୌପ୍ତିକ ପର୍ବର ନାମ ଗ୍ରହଣ ନ କରି ତାହାର ଉପପର୍ବ ଐଷିକର ଉତ୍କଳାର୍ଥରେ କାଈଁଶିକା ନାମରେ ଏକ ପ୍ରଧାନ ପର୍ବ ସମାଖ୍ୟାତ କରି ଅଛନ୍ତି ।(୧) ତତ୍ର ବର୍ଣ୍ଣିତ ଅଶ୍ୱତ୍ଥାମାଙ୍କର ପାଣ୍ଡବଶିବିରରେ ପ୍ରବେଶକ୍ରମକୁ ମୂଳ ଅପେକ୍ଷା ଅତି ସଂକ୍ଷିପ୍ତ ଓ ଭିନ୍ନ ପ୍ରକାର କରି ଅଛନ୍ତି । ସୁତରାଂ ଏ କହନ୍ତି କି, ଅଶ୍ୱତ୍ଥାମା ଶିବିରାଳୟର ଗନ୍ତବ୍ୟ ମାର୍ଗ ନ ପାଇ ଭିତ୍ତିଭେଦ ପୂର୍ବକ ଅନ୍ତଃପ୍ରବେଶ କରିଥିଲେ ।(୨) ଧୃଷ୍ଟଦ୍ୟୁମ୍ନ ପ୍ରଭୃତିଙ୍କ ବିନାଶ ସାଧନ କଲା ପରେ ସପ୍ତବର୍ଷ ବୟସ୍କ ଚନ୍ଦ୍ରକେଶରୀ ବୀରକେଶରୀ ଆଦି ନାମଧାରକ ପ୍ରସୁପ୍ତ ଦ୍ରୌପଦେୟମାନଙ୍କୁ ପାଣ୍ଡବପଞ୍ଚକ ଭ୍ରମରେ ନିହତ କରି ସେମାନଙ୍କ ଛିନ୍ନ ମସ୍ତକଗୁଡ଼ିକୁ ଭାରରେ ଧରି ଆସିଥିଲେ । ଇତ୍ୟାଦି । ଏ ବିଷୟଟି ସଂପୂର୍ଣ୍ଣ ଅମୂଳକ । ଏ ମହାଶୟ ପ୍ରଥମରୁ କେବଳ ଦ୍ରୌପଦେୟମାନଙ୍କ ସମ୍ବନ୍ଧରେ ସଂପୂର୍ଣ୍ଣ ଭ୍ରାନ୍ତ ଧାରଣାରେ ପଡ଼ି ସେମାନଙ୍କ ମହାବୀରତ୍ୱରେ ଏକାନ୍ତ ଅର୍ଭକତ୍ୱ ଆରୋପଣ କରି ଅଛନ୍ତି । ମୂଳଗ୍ରନ୍ଥରେ ଦ୍ରୌପଦେୟମାନେ ମାତୁଳଙ୍କ ନିଧନାବଲୋକନରେ ପ୍ରକୁପିତ ହୋଇ ଘୋର ସଂଗ୍ରାମକରଣାନନ୍ତର ପଞ୍ଚତ୍ୱପ୍ରାପ୍ତ ହୋଇ ଅଛନ୍ତି । ଏହାପରେ ଏ ମହାଶୟ ଅପ୍ରାପ୍ତ-ଯୌବନ ଦ୍ରୌପଦେୟମାନଙ୍କର ଆକାଳିକ ନିଧନର କାରଣଭୂତ ଶାଖା ପ୍ରଶାଖାଯୁକ୍ତ ଅମୌଳିକ ଚରିତାବଳୀକୁ ସେମାନଙ୍କ ପ୍ରାକ୍ତନଜନ୍ମଚର୍ଯ୍ୟାର ସୂଚକ ରୂପେ ସୁବିସ୍ତୃତତଃ ବିବୃତ କରି ଅଛନ୍ତି ।(୩) ଅନନ୍ତର ଦ୍ୱାରକାରୁ ପ୍ରତିନିବୃତ୍ତ ଶ୍ରୀକୃଷ୍ଣ ଅଶ୍ୱତଥାମାଙ୍କ କୃତ ଅତ୍ୟାହିତ ଘଟନା ସବୁ ଦେଖି ଯାଇ ଦ୍ୱାରକାରେ ପାଣ୍ଡବମାନଙ୍କୁ ଜଣାଇଥିବା ପ୍ରଭୃତିର ବିବରଣ, ତତଃପର କୃପ ଓ ଅଶ୍ୱତ୍ଥାମାଙ୍କ ନିକଟକୁ ସମାଗତ ଶ୍ରୀକୃଷ୍ଣ କପଟ ଉପାୟରେ ସେମାନଙ୍କ ଧନୁ ଓ ଶରନିଚୟ ପ୍ରୟାଗ ତୀର୍ଥରେ ନିକ୍ଷେପିତ କରାଇ ପୁନଶ୍ଚ ନିଜେ ସେଗୁଡ଼ିକୁ ସେ ଦୁହିଁଙ୍କ ଅଜ୍ଞାତସାରରେ ଆନୟନ କରି ଦ୍ୱାରକାସ୍ଥ ଦ୍ରୌପଦୀଙ୍କ ସମ୍ମୁଖରେ ପ୍ରଦର୍ଶନପୂର୍ବକ ମିଥ୍ୟା ପ୍ରବଚନରେ କୃପ ଓ ଅଶ୍ୱତ୍ଥାମାଙ୍କୁ ନିହତ କଲୁଁ ବୋଲି ଜଣାଇଥିବାର ବିବରଣ, ଶ୍ରୀକୃଷ୍ଣ ଦ୍ୱାରକାନିବାସୀ ନନ୍ଦ ବସୁଦେବ ପ୍ରଭୃତିଙ୍କୁ ଭାରତ ଯୁଦ୍ଧଯଜ୍ଞର ଯାବତୀୟ ଘଟନା ସଂକ୍ଷେପତଃ ନିବେଦନ କରିଥିବା ପ୍ରଭୃତି

---

(୧) ସାରଳାଦାସଙ୍କ ପରି ବଙ୍ଗ ଭାରତରଚୟିତା କାଶିରାମଦାସେ ସୌପ୍ତିକ ପର୍ବର ନାମ ତ୍ୟାଗ କରି ନ ଥିଲେ ସୁଦ୍ଧା ତାହାର ଅଙ୍ଗଭୂତ ଐଷିକ ପର୍ବକୁ ଗୋଟିଏ ପ୍ରଧାନ ପର୍ବ ରୂପେ ଅଭିହିତ କରିଦେଇ ଅଛନ୍ତି ।

(୨) ସେ ଭୈରବ ପ୍ରତିମାକୁ ଜିଣି ନ ପାରିଲା ।
କାନ୍ଥ ଭାଙ୍ଗି ଅଶ୍ୱତ୍ଥାମା ଭିତରେ ପଶିଲା । କାଈଁ. ପ. ୨ ପୃ:

(୩) କାଈଁ. ପ. ୪ - ୧୫ ପୃଷ୍ଠାମାନ ଦେଖନ୍ତୁ ।

ବିଷୟମାନ ଲେଖି ଅଛନ୍ତି । ଏ ମହାଶୟ ଏ ସ୍ଥଳରେ ଭ୍ରାନ୍ତିବଶତଃ ମୂଳଗ୍ରନ୍ଥରେ ଉକ୍ତ ଦ୍ରୌପଦୀ ଦେବୀଙ୍କ ଶାନ୍ତ୍ୟର୍ଥ ଅଶ୍ୱତ୍‌ଥାମାଙ୍କ ମସ୍ତକସ୍ଥ ସହଜ ମଣି ଆନୟନର ବିବରଣ ଠିକ୍ ରଖି ନ ପାରି କୃପ ଓ ଅଶ୍ୱତ୍‌ଥାମାଙ୍କ ଶର ଆନୟନର କ୍ରମକୁ ଇଚ୍ଛାମତେ କଳ୍ପନା କରି ଅଛନ୍ତି ଏବଂ ବ୍ୟାସୋକ୍ତ ଶ୍ରୀମଦ୍ ଭାଗବତରେ ଉକ୍ତ ଚରିତର ଏକଦେଶାନୁକରଣରେ ଅନ୍ୟ ଦିଓଟି ସନ୍ଦର୍ଭକୁ ଅଯଥାସ୍ଥାନରେ ଅନ୍ୟଥା କ୍ରମରେ ଲେଖିଯାଇ ଅଛନ୍ତି । ସୁତରାଂ ଏଥି ମଧ୍ୟରେ ଛାପା ଓ ତାଳପତ୍ର ପୁସ୍ତକମାନଙ୍କରେ ମଧ୍ୟ ଆଉ ଏକ ପ୍ରଭେଦ ରହିଅଛି । ତାଳପତ୍ର ପୁସ୍ତକରେ ଉପରଲିଖିତ ବିଷୟମାନ ଗଦାପର୍ବରେ ଏବଂ ତଦ୍‌ପରବର୍ତ୍ତୀ କଥାଗୁଡ଼ିକ କାଇଁଶିକା ପର୍ବରେ ନିହିତ କରାଯାଇଅଛି । ଯଦିଚ ସାରଳାଦାସ ମହାଶୟ ମୌଳିକ ସୌପ୍ତିକପର୍ବର ନାମ ଗ୍ରହଣ କରି ନାହାନ୍ତି, ଅପିଚ ତାହାର ଉପପର୍ବ ଐଷିକ ପର୍ବର ଘଟନାନୁସାରେ କାଇଁଶିକା ପର୍ବର ନାମକରଣ କରି ଅଛନ୍ତି, ତେବେ ପ୍ରଥମ ନିର୍ଦ୍ଦିଷ୍ଟ ବିଷୟଗୁଡ଼ିକ ଅର୍ଥାତ୍ ଐଷିକ ଘଟନାର ପ୍ରାକ୍‌ଘଟିତ ବିଷୟଗୁଡ଼ିକ ଗଦାପର୍ବରେ ଅନ୍ତର୍ଭୁକ୍ତ ହେବା କେବଳ ଯୁକ୍ତିସଙ୍ଗତ ବୋଧହୁଏ ।

ଅତଃପର ମୂଳଗ୍ରନ୍ଥରେ ସୌପ୍ତିକ ପର୍ବର ଅଙ୍ଗଭୂତ ଐଷିକ ଉପପର୍ବର ସଂକ୍ଷିପ୍ତ କଥା ଏହି – ଅଶ୍ୱତ୍‌ଥାମା ଚୌରବୃତ୍ତିରେ ଧୃଷ୍ଟଦ୍ୟୁମ୍ନାଦିଙ୍କୁ ନାଶ କରି ଅଛନ୍ତି ବୋଲି ପାଣ୍ଡବମାନଙ୍କଠାରୁ ଭୀତ ହୋଇ ବନରେ ଯାଇ ଲୁଚିଲେ । ତଦ୍‌ପରଦିନ ପୁତ୍ରପିତୃଭ୍ରାତୃବଧରେ ସଂଜ୍ଞାହୀନା ଦ୍ରୌପଦୀଙ୍କ ସାନ୍ତ୍ୱନାର୍ଥ ତଦୀୟ ଆଦେଶମତେ ସାନୁଗତ କୃଷ୍ଣାର୍ଜୁନ ଓ ଯୁଧିଷ୍ଠିରଙ୍କ ସହ ଭୀମସେନ ଅଶ୍ୱତ୍‌ଥାମାଙ୍କ ମସ୍ତକସ୍ଥ ସହଜ ମଣି ଆନୟନପାଇଁ ତାହାକୁ ଅନ୍ୱେଷଣ କରି ଧରିଲେ । ତେତେବେଳେ ଅଶ୍ୱତ୍‌ଥାମା ଆତ୍ମରକ୍ଷାର୍ଥ ଦିବ୍ୟାସ୍ତ୍ର ଈଷିକା ଶର(୧) ବା ବ୍ରହ୍ମଶିରା ନାମକ ଅସ୍ତ୍ରକୁ ପ୍ରୟୋଗ କଲେ । ଅର୍ଜୁନ ମଧ୍ୟ ତନ୍ନିବାରଣାର୍ଥ ବ୍ରହ୍ମଶିରାକୁ ପ୍ରତିପ୍ରୟୋଗ କଲେ, କିନ୍ତୁ ଉଭୟ ଶରର ଅସହ୍ୟ ଅମିତ ତେଜଃପଟଳରେ ବ୍ରହ୍ମାଣ୍ଡ ଦଗ୍ଧ ହେବାର ସମ୍ଭାବନା ଜାଣି ବ୍ୟାସାଦି ଋଷିବୃନ୍ଦ ଉଭୟଙ୍କୁ ସମୁଚିତ ସମାଧାନରେ ସମାହିତ କରିଦେଲେ । ମାତ୍ର ତେତେକରେ ପାଣ୍ଡବମାନେ ଦ୍ରୌଣିଙ୍କୁ ଛାଡ଼ିଲେ ନାହିଁ । ତଦୀୟ ମସ୍ତକସ୍ଥ ସହଜ ମଣିକୁ ଉଦ୍‌ଖାତ କରି ଘେନିଗଲେ । ଦ୍ରୌପଦୀଙ୍କ ଛାମୁରେ ତାହା ଉପହାର ଦେଇ ତାହାଙ୍କୁ ସାନ୍ତ୍ୱନା କଲେ । କିନ୍ତୁ ଅଶ୍ୱତ୍‌ଥାମାଙ୍କ ପ୍ରଣୋଦିତ ଅମୋଘ ବ୍ରହ୍ମଶିରାଅସ୍ତ୍ର ପାଣ୍ଡବମାନଙ୍କୁ ଆଉ କିଛି କରି ନ ପାରିଲେ ସୁଦ୍ଧା ଅଭିମନ୍ୟୁଦ୍ୱାରା ଉତ୍ତରାଙ୍କର ଗର୍ଭ ନଷ୍ଟ କରିଦେଲା ।

ସାରଳାଦାସ ମହୋଦୟ ଏହି କଥାଗୁଡ଼ିକୁ ଯଥାଯଥ କରି ଲେଖି ନାହାନ୍ତି । ଐଷିକ ପର୍ବର ପ୍ରଧାନ ହେତୁଭୂତ ଅଶ୍ୱତ୍‌ଥାମାଙ୍କ ସହଜମଣି ଆନୟନର ନାମ ପର୍ଯ୍ୟନ୍ତ

(୧) ଜଗ୍ରାହ ଚ ସ ଚେଷୀକାଂ ଦ୍ରୌଣିଃ ସବ୍ୟେନ ପ୍ରାଣିନା ।
ସୌ.ପ. ୧୩ ଅଧ୍ୟାୟ ୧୯ ଶ୍ଳୋକ ।

ତ୍ୟାଗ କରିଦେଇ ଅଛନ୍ତି । ଏ ସ୍ଥଳରେ ଏ କହନ୍ତି କି, ଅଶ୍ୱତ୍ଥାମା ''ଶ୍ରୀକୃଷ୍ଣ କୌଶଳକ୍ରମରେ ମଦୀୟ ଶରସଞ୍ଚୟ ଜଳସାତ୍ କରାଇ ଦେଇ ମୋତେ ପ୍ରତାରିତ ଓ ଅସ୍ତ୍ରଶସ୍ତ୍ରହୀନ କରି ଅଛନ୍ତି'' ଭାବି ଅମିତକ୍ରୋଧଭରରେ ଗୋଟିଏ କାଇଁଶ ଶରକୁ ବ୍ରହ୍ମାସ୍ତ୍ର ରୂପେ ସକୃଷ୍ଣପାଣ୍ଡବ ଓ ଯାଦବମାନଙ୍କ ବିନିପାତନାର୍ଥ ପ୍ରୟୋଗ କଲେ । ପ୍ରୋକ୍ତ ବ୍ରହ୍ମବିଶିଖଟି ଉଲ୍‌କାପାତପ୍ରାୟ ଦ୍ୱାରକାରେ ଉପଗତ ହେଲା । ଶ୍ରୀକୃଷ୍ଣ ତାହାର ଅମୋଘତ୍ୱ ଜାଣିପାରି ସହଦେବଙ୍କ ବିଚାରରେ ଉତ୍ତରାଗର୍ଭସ୍ଥ ସନ୍ତାନକୁ ତାହାର ବଳି ସ୍ୱରୂପ ନିର୍ଦ୍ଦିଷ୍ଟ କଲେ । ଶ୍ରୀକୃଷ୍ଣାଦେଶରେ ଦ୍ରୌଣାସ୍ତ୍ର ଉତ୍ତରାଙ୍କ ଗର୍ଭରେ ପଡ଼ିବାରୁ ସେ ମୃତ ସନ୍ତାନ ପ୍ରସବ କରି ପଞ୍ଚତ୍ୱପ୍ରାପ୍ତ ହେଲେ । ପରେ ଶ୍ରୀକୃଷ୍ଣ ସୁଭଦ୍ରା, ଦେବକୀ ପ୍ରଭୃତିଙ୍କ ଦୁଃସହ ଦୁଃଖ ଦେଖି ନ ପାରି ଦୟାର୍ଦ୍ର ହୃଦୟରେ ନିଜର ଅଘଟନ-ଘଟନା-କୁଶଳ-ଶକ୍ତିମତ୍ତାରେ ମୃତ ସନ୍ତାନକୁ ପୁନର୍ଜୀବିତ କଲେ । ଇତ୍ୟାଦି । ଅତ୍ରତ୍ୟ କେତେକ ଅତିରିକ୍ତ ଆନୁଷଙ୍ଗିକ ବିଷୟ ଦାସ ମହୋଦୟ ଶ୍ରୀମଦ୍‌ଭାଗବତ ବର୍ଣ୍ଣିତ ଚରିତର ଅନୁକରଣରେ ଲେଖି ଅଛନ୍ତି ସତ୍ୟ, କିନ୍ତୁ ଏହାଙ୍କ ବିଚାରରେ ଅନୁମୋଦିତ, ଯାହା କି ଶ୍ରୀକୃଷ୍ଣ ନିଜ ସ୍ନୁଷା ଉତ୍ତରାଙ୍କ ଗର୍ଭକୁ ଅଶ୍ୱତ୍‌ଥାମାପ୍ରେଷିତ ବ୍ରହ୍ମାସ୍ତ୍ରର ବଳିସ୍ୱରୂପ ନିର୍ଦ୍ଦିଷ୍ଟ କରିଥିବାର ଉକ୍ତ ଅଛି, ତାହା କେବଳ ଅସତ୍ୟ ଓ ଅସଙ୍ଗତ ବୋଧହୁଏ ।

ଅତଃପର ମୂଳଗ୍ରନ୍ଥରେ ସ୍ତ୍ରୀ ପର୍ବଟି(୧) ଜଳପ୍ରାଦାନିକ ସ୍ତ୍ରୀ ବିଳାପ ଓ ଶ୍ରାଦ୍ଧପର୍ବ ନାମରେ ତିନିଗୋଟି ଉପପର୍ବରେ ସଙ୍କଳିତ । ଏଥିରେ ଯୁଦ୍ଧ-ବିନିହତ-ଭର୍ତ୍ତୃକା ଓ ନିହତପୁତ୍ର-ଭ୍ରାତୃକା ସ୍ତ୍ରୀଗଣଙ୍କର ଅଶ୍ରୁତପୂର୍ବ ଘୋର ଭୟାବହ ଆର୍ତ୍ତନାଦର କୋଳାହଳ ଉଠିଥିଲା । ଧୃତରାଷ୍ଟ୍ର ସଞ୍ଜୟଙ୍କ ମୁଖରୁ ଦୁର୍ଯ୍ୟୋଧନାଦିଙ୍କ ନିଧନବାର୍ତ୍ତା ଶୁଣି ଶୋକାବେଗରେ ଅସ୍ଥିର ହେବାରୁ ବିଦୁର ଓ ବ୍ୟାସଦେବ ବିଶେଷତଃ ବିଦୁର ସଂସାରର ଅନିତ୍ୟତା ଓ ଭୂତବ୍ରାତର କାଳକବଳତାର ଅବଶ୍ୟମ୍ଭାବିତା ପ୍ରଭୃତି ବିଷୟରେ ନବଅଧ୍ୟାୟବ୍ୟାପୀ ବହୁ ଉପଦେଶାତ୍ମକ ସାନ୍ତ୍ୱନାରେ ଏକାନ୍ତ ଶୋକାକୁଳ ବୃଦ୍ଧ ରାଜାଙ୍କୁ ଶାନ୍ତ କରିଥିଲେ । ସେହି ଉପଦେଶଗୁଡ଼ିକ ସାରଳାଦାସଙ୍କ ଭାରତରେ କିଛି ହିଁ ନାହିଁ କହିଲେ ଚଳେ । ଏତାଦୃଶ ଉପଦେଶାତ୍ମକ, ଜ୍ଞାନବିଜ୍ଞାନାତ୍ମକ, ଧର୍ମାତ୍ମକ ଓ ନୀତିମୂଳକ ମୌଳିକ ସନ୍ନିଧାନମାନଙ୍କୁ ଏ ମହାଶୟ ହୁଏତ ଦିଗ୍‌ଦର୍ଶନକ୍ରମରେ ସୂଚନାମାତ୍ର କରି କିମ୍ବା ସଂପୂର୍ଣ୍ଣତଃ ତ୍ୟାଗ କରି ଆସୁ ଅଛନ୍ତି । ତେତେବେଳେ ଧୃତରାଷ୍ଟ୍ର ଗାନ୍ଧାରୀ ପ୍ରଭୃତିଙ୍କ ସହିତ ଯୁଦ୍ଧସ୍ଥାନସ୍ଥ ଶବାରଣ୍ୟ ପ୍ରସ୍ଥାନରେ ଉଦ୍ୟତ ଅଛନ୍ତି, ତଦ୍ଦର୍ଶନାର୍ଥ ସକୃଷ୍ଣ ପାଣ୍ଡବମାନେ ଯାଇ ଉପସ୍ଥିତ ହେଲେ । ତଦବସରରେ ମହାବୀର ଧୃତରାଷ୍ଟ୍ର ଗାଢ଼ାଲିଙ୍ଗନବ୍ୟପଦେଶରେ କୌରବାନ୍ତକ ଭୀମସେନଙ୍କୁ ବିଚୂର୍ଣ୍ଣ କରିବାର ଇଚ୍ଛା କରିଥିଲେ । କିନ୍ତୁ ଶ୍ରୀକୃଷ୍ଣ ଏ କଥା

(୧) ସାରଳାଦାସ ଭାରତର ତାଳପତ୍ର ପୁସ୍ତକମାନଙ୍କରେ ସ୍ତ୍ରୀପର୍ବ ପରିବର୍ତ୍ତରେ ଶୋକପର୍ବ ବୋଲି ଲେଖାଅଛି । ବୋଧହୁଏ ଏହି ନାମକରଣ ମୂଳୋକ୍ତ ସ୍ତ୍ରୀବିଳାପ ଉପପର୍ବର ଅନୁକୃତ ।

ଜାଣିପାରି ପ୍ରଥମତଃ ଗୋଟିଏ ଲୌହ ଭୀମଙ୍କୁ ନେଇ ଉପସ୍ଥାପିତ କରିଦେଲେ । ସେହିଟି ବୃଦ୍ଧ ବୀରଙ୍କ ପ୍ରଗାଢ଼ ଆଲିଙ୍ଗନ ବିମର୍ଦ୍ଦରେ ବିଭଗ୍ନ ହୋଇପଡ଼ିଲା ।

ଏହି ବିଷୟାଂଶଗୁଡ଼ିକୁ ସାରଳାଦାସ ମହାଶୟ ଯଥାଯଥ କରି ଲେଖି ଅଛନ୍ତି, କିନ୍ତୁ ଏଥି ମଧ୍ୟରେ ଯାହା କି ଦର୍ଶନ ସମୟରେ ଗାନ୍ଧାରୀ ଦେବୀଙ୍କ ଆବିବାହ-ନିବଦ୍ଧ ଅନ୍ଧପଟଳ ଫିଟାଇବାରୁ ତଦ୍‌ଦୃଷ୍ଟି ମାତ୍ରକରେ ଦୁର୍ଦ୍ଦକ୍ଷ (କିମ୍ବା ଯୁଯୁତ୍ସୁ) ଦଗ୍ଧ ହୋଇଥିବା ପ୍ରଭୃତି କଥା ଲେଖି ଅଛନ୍ତି, ତାହା ସତ୍ୟ ବୋଲି ବିଶ୍ୱାସ ଜନ୍ମେ ନାହିଁ । କାରଣ ଯୁଯୁତ୍ସୁ ବରାବର ପାଣ୍ଡବମାନଙ୍କ ମହାଯାତ୍ରା ପର୍ଯ୍ୟନ୍ତ ବିଦ୍ୟମାନ ଥିବାର ପ୍ରମାଣ ମୂଳଗ୍ରନ୍ଥରୁ ମିଳୁଅଛି । ପରନ୍ତୁ ବିଦୁର ଓ ଶ୍ରୀକୃଷ୍ଣ ଦୁହେଁ ପାଣ୍ଡବମାନଙ୍କ ପ୍ରତି ଦ୍ୱେଷଯୁକ୍ତ ଧୃତରାଷ୍ଟ୍ରଙ୍କର ସୌମନସ୍ୟ ଜନ୍ମାଇବାପାଇଁ କହିଥିଲେ ବୋଲି ଯାହା ଅତିରିକ୍ତତଃ ଲେଖିଅଛନ୍ତି, ସେଗୁଡ଼ିକ ସୁସଙ୍ଗତାସହ ପ୍ରାସ୍ତାବିକ ହୋଇଅଛି । ତଦ୍‌ପରେ ପାଣ୍ଡବମାନଙ୍କ ସହିତ ଧୃତରାଷ୍ଟ୍ର ଓ ଗାନ୍ଧାରୀ ପ୍ରଭୃତି ଯୁଦ୍ଧାଙ୍ଗଣରେ ମୃତ କଳେବରମାନ ଦେଖି ବହୁ ବିଳାପ କରିଥିଲେ । ତଦା ମହାସତୀ ଗାନ୍ଧାରୀଦେବୀ ଅମିତ ବିଳାପ କରୁ କରୁ ଏହି ଶାପ ଦେଲେ, ହେ କୃଷ୍ଣ ! ତୁମ୍ଭେ ଜାଣି ଜାଣି ଏ କାର୍ଯ୍ୟ କରାଇ ଅଛ, ଅତଏବ ଅଦ୍ୟାବଧି ଷଟତ୍ରିଂଶ ବର୍ଷ ପରେ ଜ୍ଞାତିପୁତ୍ରାଦିବିହୀନ ଓ ଅରଣ୍ୟସଞ୍ଚାରୀ ହୋଇ ଏକାନ୍ତ କୁତ୍ସିତ ଉପାୟରେ ନିହତ ହେବ(୧) । ସାରଳାଦାସଙ୍କ ଏହି ବିଷୟ ସନ୍ନିଧାନରେ ଶାପ ସମୟାଦିର କିଞ୍ଚିତ ପ୍ରଭେଦତା ଥିଲେ ସୁଦ୍ଧା ସାମୁଦାୟିକ ଭାବର ପ୍ରକାଶ ମୂଳଗ୍ରନ୍ଥର ଅନୁମତ ହୋଇଅଛି । ମାତ୍ର ମୂଳଗ୍ରନ୍ଥରେ ଯେପରି କି, ଧୌମ୍ୟଙ୍କଦ୍ୱାରା ଏକମାସ-ସାଧ(୨) ଶ୍ରାଦ୍ଧାଦି ପ୍ରେତ କ୍ରିୟାକରଣରେ ଯୁଧିଷ୍ଠିରଙ୍କ କୃତଶୌଚତାଦିର କ୍ରମ ଉକ୍ତି ଅଛି, ତାହା ସାରଳାଦାସ ମହାଶୟ ଅତ୍ର କିଛି ଲେଖି ନାହାନ୍ତି ।

ଅତଃପର ଶାନ୍ତିସପ୍ତକର ବିଷୟମାନ ବିଚାର କରାଯାଉ । ଆୟୋଧନିକ ସର୍ବ ବ୍ୟାପାରର ଅବସାନରେ ଜ୍ଞାତିବଧବିଷଣ୍ଣ ଯୁଧିଷ୍ଠିର ଅର୍ଜ୍ଜୁନଙ୍କୁ ବୋଇଲେ, ଅସଂଖ୍ୟ ଜ୍ଞାତି ଓ ସ୍ୱଜନ ବିନାଶ କରି ମୁଁ ବଡ଼ ଚିନ୍ତିତ ଅଛି, କୌଣସି ପ୍ରକାର ସୁଖ ମନେ କରୁ ନାହିଁ । ଭିକ୍ଷା ମାଗି ପଛେ ଜୀବନଯାପନ କରିବି, ଜ୍ଞାତିରକ୍ତ-ପରିପ୍ଲୁତ ଏହି ରାଜ୍ୟ ମୁଁ

---

(୧) ତ୍ୱମପ୍ୟୁପସ୍ଥିତେ ବର୍ଷେ ଷଟତ୍ରିଂଶେ ମଧୁସୂଦନ ।
ହତଜ୍ଞାତିର୍ହତାମାତ୍ୟୋ ହତପୁତ୍ରୋ ବନେଚରଃ ।
କୁତ୍ସିତେନାପ୍ୟୁପାୟେନ ନିଧନଂ ସମବାପ୍ସ୍ୟସି ।
ସ୍ତ୍ରୀ.ପ. ୨୫ ଅ: ୪୪ ଶ୍ଳୋକ ।

(୨) ପାଣ୍ଡବମାନେ ଶୌଚାର୍ଥ ବାହ୍ୟରେ ଏକ ମାସ ରହିଥିଲେ । ଯଥା
ତତ୍ର ତେ ସୁମହାତ୍ମାନୋ ନ୍ୟବସନ୍ ପାଣ୍ଡୁନନ୍ଦନାଃ ।
ଶୌଚଂ ନିବର୍ତ୍ତୟିଷ୍ୟନ୍ତୋ ମାସ ମାତ୍ରଂ ବହିଃପୁରାତ୍ ।
ଶା.ପ. ୧ମ ଅଧ୍ୟାୟ ।

ଇଚ୍ଛା କରୁ ନାହିଁ । ଏହା ଶୁଣି ଅର୍ଜ୍ଜୁନ ନେତ୍ର କିଞ୍ଚିତ୍ ଆରକ୍ତ କଲେ, ତଥାପି ଅତି ଅନୁନୟ ବିନୟରେ ନାନା ଐତିହାସିକ ପ୍ରମାଣ ସମେତ କଥାମାନ କହି ତଦୀୟ ମନର ସାନ୍ତ୍ୱନା କରିବାରେ ପ୍ରବୃତ୍ତ ହେଲେ । କିନ୍ତୁ ସେ ମାନିଲେ ନାହିଁ । ବହୁ ବାଦାନୁବାଦ ହେଲା ପରେ ଭୀମ, ନକୁଳ, ସହଦେବ ଓ ଦ୍ରୌପଦୀଦେବୀ ମଧ ତାଦୃଶ ଅନେକଧା ବୁଝାଇଲେ । କାହାରି କଥାରେ ଯୁଧିଷ୍ଠିର ଆଶ୍ୱସ୍ତ ହେଲେ ନାହିଁ । ତତ୍ର ସମାଗତ ନାରଦ ପ୍ରଭୃତି ଋଷିମାନେ ମଧ କହିଲେ, ତଥାପି ଯୁଧିଷ୍ଠିରଙ୍କ ହୃଦୟ ସ୍ଥିର ହେଲା ନାହିଁ । ପରିଶେଷରେ ଶ୍ରୀକୃଷ୍ଣଙ୍କ ବଚନରେ କିଞ୍ଚିତ୍ ଆଶ୍ୱସ୍ତ ହୋଇ ସମାରୋହ ସହକାରେ ହସ୍ତିନା ପ୍ରୟାଣ କଲେ ଏବଂ ସାମ୍ରାଜ୍ୟରେ ଅଭିଷିକ୍ତ ହେଲେ । ଏସବୁ ସଂକ୍ଷିପ୍ତ କଥାର ପ୍ରସରଣ ଶାନ୍ତିପର୍ବର ଆଦିମଭାଗରେ ପଞ୍ଚଚତ୍ୱାରିଂଶତ୍ ଅଧ୍ୟାୟଯାଏ ପ୍ରସରିଅଛି । ଏଥି ମଧରେ ବିଷୟ ସଂସ୍ଥାନକରୂପେ କର୍ଣ୍ଣଙ୍କ ଶାପାଦି ବିବରଣ, ଶଙ୍ଖଲିଖିତ ଉପାଖ୍ୟାନ, ସେନଜିତ୍ ଉପାଖ୍ୟାନ, ଷୋଡ଼ଶରାଜିକ ସନ୍ଦର୍ଭ, ନାରଦ ଓ ପର୍ବତ ଋଷିଙ୍କର ଘଟନାବଳୀ, ପ୍ରାୟଶ୍ଚିତ୍ତୋପାଖ୍ୟାନ ଏବଂ ଦୁର୍ଯ୍ୟୋଧନ ସଖା ଚାର୍ବାକ ରାକ୍ଷସର କୂଟଚର୍ଯ୍ୟା ପ୍ରଭୃତି ଅନ୍ତର୍ନିହିତ ହୋଇଅଛି । ସାରଳାଦାସଙ୍କ ଭାରତରେ ଅତ୍ରତ୍ୟ ସ୍ତ୍ରଜଚରିତ ଛଡ଼ା ଅନ୍ୟାନ୍ୟ ସବୁ ଯଥାବସ୍ଥିତିରେ ଦେଖିବାକୁ ପାଇବେ ନାହିଁ ।

ଉପ୍ରରସ୍ତାଦ୍ଲିଖିତ ବିଷୟମାନଙ୍କର ସଂକ୍ଷିପ୍ତ ସାର ଏହି – ଏଣେ କୁରୁଶ୍ରେଷ୍ଠ ଭୀଷ୍ମଦେବ ଶରଶଯ୍ୟାରେ ପଡ଼ି ଉତ୍ତରାୟଣ ଅପେକ୍ଷାରେ ପ୍ରାଣଧାରଣ କରିଅଛନ୍ତି । ସମୟ ସମୟରେ ଋଷିମାନେ ଆସି ଉପସ୍ଥିତ ହେଉଅଛନ୍ତି । ତଦା ଭୀଷ୍ମ ଶ୍ରୀକୃଷ୍ଣଙ୍କୁ ଦିଦୃକ୍ଷାପରତାରେ ଧ୍ୟାନପୂର୍ବକ ସ୍ମରଣ କଲେ । ଯୁଧିଷ୍ଠିରଙ୍କର ମଧ ପିତାମହ ଗାଙ୍ଗେୟ ଦିଦୃକ୍ଷା ଓ ତଦୀୟ ମୁଖନିଃସୃତ ଧର୍ମଶୁଶ୍ରୂଷା ବଳବତୀ ହୋଇ ଉଠିଲା । ଶ୍ରୀକୃଷ୍ଣ ତାହା ଜାଣିପାରି ପାଣ୍ଡବଗଣଙ୍କ ସହ ଭୀଷ୍ମଙ୍କ ସନ୍ନିଧିରେ ଉପଗତ ହେଲେ ।(୧) ଶ୍ରୀକୃଷ୍ଣ କହିଲେ, ହେ ଯୁଧିଷ୍ଠିର ! ଭୀଷ୍ମ ଯାବତୀୟ ଧର୍ମ ଜାଣନ୍ତି, ତାଙ୍କ ମୃତ୍ୟୁ ପରେ ତଦୀୟ ସମସ୍ତ ଜ୍ଞାନ ତାହାଙ୍କ ଅନୁଗମନ କରିବେ । ଅତଏବ ମୃତ୍ୟୁ ପୂର୍ବରୁ ତୁମ୍ଭେ ସମସ୍ତ ଧର୍ମ ଗ୍ରହଣ କରି ଜଗତରେ ପ୍ରଚାର କର । ଶ୍ରୀକୃଷ୍ଣଙ୍କ ଅନୁରୋଧ ଶୁଣି ଭୀଷ୍ମ ବୋଇଲେ, ହେ କୃଷ୍ଣ ! ମୁଁ ଏପରି ବିପନ୍ନ ଅବସ୍ଥାରେ ମ୍ରିୟମାଣ ହୋଇଅଛି, ମୋର ବୁଦ୍ଧିର ସ୍ଥିରତା ନାହିଁ, ଉଠିବାର ଶକ୍ତି ନାହିଁ, କଣ କହି ପାରିବି ? ସମସ୍ତ ଧର୍ମ ଆପଣଙ୍କର ଅଧୀନ, ଆପଣ ଉପଦେଶ ଦିଅନ୍ତୁ । ତେତେବେଳେ ଶ୍ରୀକୃଷ୍ଣ ଭୀଷ୍ମଙ୍କୁ କୃପାତୁଙ୍ଗ ଅପାଙ୍ଗରେ ଚାହିଁ ବୋଇଲେ, ଆପଣ ଏଥିପାଇଁ ଚିନ୍ତିତ ହୁଅନ୍ତୁ ନାହିଁ, ମୁଁ ବର ପ୍ରଦାନ କରୁଅଛି, ଏହି ସମସ୍ତ ବାଧା ବିଦୂରିତ ହେବ, ଦିବ୍ୟାଲୋକରେ ଜ୍ଞାନ ସମୁଜ୍ଜ୍ୱଳ ହେବ, କୌଣସିମତେ

---

(୧) ଯାଉଁ ଯାଉଁ ପଥ ମଧରେ ଶ୍ରୀକୃଷ୍ଣ ଯୁଧିଷ୍ଠିରଙ୍କ ଜିଜ୍ଞାସାକ୍ରମେ ପର୍ଶୁରାମଙ୍କ ଉପାଖ୍ୟାନ କହି ଅଛନ୍ତି ।

ବୁଦ୍ଧିର ବ୍ୟତିକ୍ରମ ହେବ ନାହିଁ; ଆପଣ ଦିବ୍ୟଚକ୍ଷୁପ୍ରାପ୍ତ ହୋଇ ଭୂତ ଭବିଷ୍ୟତ ଯାବତୀୟ ଘଟନା ଦେଖି ପାରିବେ । ଭୀଷ୍ମ ସେହିପରି ଶ୍ରୀକୃଷ୍ଣ କୃପାରୁ ପ୍ରଫୁଲ୍ଲଚିତ୍ତରେ ଯୁଧିଷ୍ଠିରଙ୍କୁ ଯଥାକ୍ରମେ ରାଜଧର୍ମ, ଆପଦ୍ଧର୍ମ ଓ ମୋକ୍ଷଧର୍ମର ତତ୍ତ୍ୱମାନଙ୍କରେ ସମଳଂକୃତ ବହୁ ଉପାଖ୍ୟାନସମ୍ବାଦ ସମ୍ମିଳିତ ବ୍ୟବସ୍ଥା ଶାସ୍ତ୍ରରୂପ ଶାନ୍ତି ଓ ଆନୁଶାସନିକ ପର୍ବକୁ ତିନି ଦିନରେ କହିଥିଲେ । ଯୁଧିଷ୍ଠିର ପ୍ରତ୍ୟହ ଭୀଷ୍ମଙ୍କଠାକୁ ପ୍ରସ୍ଥାନ କରିଥିଲେ । ଅତଏବ ଶାନ୍ତି ପର୍ବ ଓ ଆନୁଶାସନିକ ପର୍ବ ପାଠକୁ ମଧ ପ୍ରସ୍ଥାନତ୍ରୟ କହିବା ଅସଙ୍ଗତ ନୁହେଁ । ଧର୍ମସଂହିତା ସ୍ୱରୂପ ଏହି ପ୍ରସ୍ଥାନ ଦ୍ୱୟର ଆଦିଖଣ୍ଡ ଶାନ୍ତି ପର୍ବର ଉତ୍ତରଭାଗରେ ନାନାବିଧ ଧର୍ମନୀତି ପ୍ରଭୃତିର ଅନେକଗୁଡ଼ିଏ ଉପାଖ୍ୟାନ, ଗୀତା ଓ ସମ୍ବାଦମାନ ଏବଂ ମଧ୍ୟେ ମଧ୍ୟେ ନାରାୟଣ ଓ ମହାଦେବଙ୍କ ମହିମାଦି ଉକ୍ତ ଅଛି । ପାଠକମାନଙ୍କ ଅବଗତିର ସୌକର୍ଯ୍ୟାର୍ଥ ନିମ୍ନରେ ସେହି ଉପାଖ୍ୟାନାଦିର ଗୋଟିଏ ନାମ ବିବରଣପଞ୍ଜିକା ପ୍ରଦାନ କରୁଅଛୁଁ ।

୧ । ପର୍ଶୁରାମୋପାଖ୍ୟାନ ।
୨ । କୈକେୟୋପାଖ୍ୟାନ ।
୩ । ମୁଚୁକୁନ୍ଦୋପାଖ୍ୟାନ ।
୪ । କାଳବୃତ୍ତୀୟୋପାଖ୍ୟାନ ।
୫ । ଉତଥ୍ୟଗୀତା ।
୬ । ବାମଦେବଗୀତା ।
୭ । ଉଷ୍ଟ୍ରଗ୍ରୀବୋପାଖ୍ୟାନ ।
୮ । ଟିଟ୍ଟିଭୋପାଖ୍ୟାନ ।
୯ । ଋଷଭଗୀତା ।
୧୦ । ଶ୍ରାକୁଳୋପାଖ୍ୟାନ ।
୧୧ । ମାର୍ଜାର ମୂଷିକ ଉପାଖ୍ୟାନ ।
୧୨ । କଣିକୋପାଖ୍ୟାନ ।
୧୩ । ବିଶ୍ୱାମିତ୍ର ଉପାଖ୍ୟାନ ।
୧୪ । କପୋତ ଲୁବ୍ଧକ-ଉପାଖ୍ୟାନ ।
୧୫ । ଶୌନକ ଜନ୍ମେଜୟ ସମ୍ବାଦ ।
୧୬ । ଗୃଧ୍ର ଜମ୍ବୁକ ଉପାଖ୍ୟାନ ।
୧୭ । ପବନ ଶାଲ୍ମଳୀ ଉପାଖ୍ୟାନ ।
୧୮ । ଲୋଭ ଉପାଖ୍ୟାନ ।
୧୯ । ଷଟ୍‌ଜ ଗୀତା ।
୨୦ । କୃତଘ୍ନୋପାଖ୍ୟାନ ।
୨୧ । ପିଙ୍ଗଳ ଗୀତା ।
୨୨ । ପିତାପୁତ୍ର ସମ୍ବାଦ ।
୨୩ । ଶମ୍ପାକ ଗୀତା ।
୨୪ । ମଙ୍କି ଗୀତା ।
୨୫ । ବୋଧ ଗୀତା ।
୨୬ । ପ୍ରହ୍ଲାଦ ଅଜଗର ସମ୍ବାଦ ।
୨୭ । ଶୃଗାଳ କାଶ୍ୟପ ସମ୍ବାଦ ।
୨୮ । ଭୃଗୁ ଭରଦ୍ୱାଜ ସମ୍ବାଦ ।
୨୯ । ଜାପକୋପାଖ୍ୟାନ ।
୩୦ । ମନୁ ବୃହସ୍ପତି ସମ୍ବାଦ ।
୩୧ । ମୃତ୍ୟୁ ପ୍ରଜାପତି ସମ୍ବାଦ ।
୩୨ । ତୁଳାଧାର ଜାଜଳି ସମ୍ବାଦ ।
୩୩ । ବିଚଖ୍ନୁ ଗୀତା ।
୩୪ । ଚିରକାରିକୋପାଖ୍ୟାନ ।
୩୫ । ହାରିତ ଗୀତା ।
୩୬ । ବୃତ୍ରଗୀତା ।
୩୭ । ପରାଶର ଗୀତା ।
୩୮ । ହଂସ ଗୀତା ।
୩୯ । ବଶିଷ୍ଠ କରାଳଜନକ ସମ୍ବାଦ ।
୪୦ । ଯାଜ୍ଞ୍ୟବଲ୍କ୍ୟ ଜନକ ସମ୍ବାଦ ।
୪୧ । ପଞ୍ଚଶିଖ ଜନକ ସମ୍ବାଦ ।
୪୨ । ସୁଲଭା ଜନକ ସମ୍ବାଦ ।
୪୩ । ଶୁକୋପାଖ୍ୟାନ ।
୪୪ । ଉଞ୍ଛବୃତ୍ତି ଉପାଖ୍ୟାନ । ଇତ୍ୟାଦି ।

ସାରଳାଦାସଙ୍କ ଭାରତାର୍ଣ୍ଣବରେ ଏହି ରତ୍ନଗୁଡ଼ିକରୁ କିଛି ହିଁ ପାଇ ପାରିବେ ନାହିଁ । ଧର୍ମଜ୍ଞାନ ଓ ତତ୍ତ୍ୱବିଷୟକ ନିଗୂଢ଼ ସଂବିଧାନମାନ ତ୍ୟାଗ କରି ଉପାଖ୍ୟାନ ବା ଚରିତାବଳୀକୁ ଲେଖିନେବା ଏହାଙ୍କର ସ୍ୱାଭାବିକ; ତଥାପି ଅତ୍ରତ୍ୟ ଉପାଖ୍ୟାନଗୁଡ଼ିକରୁ ମଧ ଏ ମହାଶୟ କିଛି ହିଁ ଲେଖିପାରି ନାହାନ୍ତି । ଏହି ମହତ୍ ଅଭାବରୁ ଏହାର ପାଠକବର୍ଗ ବହୁବିଧ ଧର୍ମତତ୍ତ୍ୱଜ୍ଞାନ ବିଷୟକ ଇତିହାସ ଉପଲବ୍‌ଧିରୁ ଏକାନ୍ତ ବଞ୍ଚିତ ହେଉଅଛନ୍ତି । ଏ କବି ମହୋଦୟ ଶ୍ରୀକୃଷ୍ଣଙ୍କ ଆଦେଶରେ ଯୁଧିଷ୍ଠିର ଧର୍ମପ୍ରଶ୍ନ କଲାରୁ ଭୀଷ୍ମଦେବ ପ୍ରଜାପାଳନ, ବ୍ରାହ୍ମଣଭକ୍ତି ଓ ଅନ୍ନଦାନର ମାହାତ୍ମ୍ୟ ସମ୍ବନ୍ଧରେ ସୂଚନାକ୍ରମତଃ ଉପଦେଶ ଦେଇଥିଲେ ବୋଲି ନିଜର ଅନୁଭୂତିମତେ ଦୁଇ ପତ୍ର ପାଠ ମାତ୍ର ଲେଖି ଅଛନ୍ତି । ତା ପରେ ଭୀଷ୍ମଙ୍କ ପ୍ରାଣତ୍ୟାଗ କହି ତାହାଙ୍କୁ ଅପୋଡ଼ା ଭୂମିରେ ପୋଡ଼ିବା ଇଚ୍ଛାରେ ମହୋଦଧିତୀରସ୍ଥ ନୀଳଗିରିର ସନ୍ନିହିତ ସ୍ଥାନରେ ଦଗ୍‌ଧ କଲେ ବୋଲି କହି ଅଛନ୍ତି । ଏହାପରେ ଦୁର୍ଯ୍ୟୋଧନାଦିଙ୍କ ଶବ ଦହନ ଓ ପ୍ରେତକାର୍ଯ୍ୟର ସାଧନ କରି ଯୁଧିଷ୍ଠିର ରାଜ୍ୟରେ ଅଭିଷିକ୍ତ ହେଲେ ବୋଲି ସମୟ-ବୈଷମ୍ୟରେ ସୂଚନାମାତ୍ର କରି ଅଛନ୍ତି । ଅନନ୍ତର ଏକ ଦିନ ମହର୍ଷି ଆଶୁରୋଷ ଦୁର୍ବାସା ବ୍ରହ୍ମାଙ୍କ ଆଦେଶରେ ଶ୍ରୀକୃଷ୍ଣଙ୍କ ଦିଦୃକ୍ଷାରେ ଦ୍ୱାରକା ଯିବା, ତତ୍ର ଶ୍ରୀକୃଷ୍ଣଙ୍କୁ ଦ୍ୱାତ୍ରିଂଶଦ୍ ପଟ୍ଟମହିଷୀମାନଙ୍କ ସହ ବହୁ ରୂପରେ ଯୁଗପତ୍ କ୍ରୀଡ଼ାରତ ଦେଖି ଚମତ୍କୃତ ହେବା, କ୍ରୀଡ଼ାମନ୍ଦିରର ଦ୍ୱାସ୍ଥ ରୂପେ ବିଦ୍ୟମାନ ଶାମ୍ବ କୁମାର ଋଷିଙ୍କ ଭୟରେ ଅଗତ୍ୟା କ୍ରୀଡ଼ାନିଳୟରେ ପ୍ରବେଶ କରି ଶାପଗ୍ରସ୍ତ ହେବା, ଶାମ୍ବ କୋଣାର୍କ ଚନ୍ଦ୍ରଭାଗା ତୀର୍ଥରେ ସ୍ନାନ ଓ ତପସ୍ୟା କରି ଶାପରୁ ମୁକ୍ତ ହେବା ପ୍ରଭୃତି କଥାମାନ ଲେଖିଅଛନ୍ତି । ଏସବୁ ମୂଳଗ୍ରନ୍ଥରେ କୁତ୍ରାପି ଉକ୍ତ ନାହିଁ । ବୋଧହୁଏ କବି ମହୋଦୟ ଏହି ପର୍ବଟିକୁ ବଢ଼ାଇବା ପାଇଁ ଏହା ପୁରାଣାନ୍ତରରୁ ଉନ୍ନୟନ କରି କିଞ୍ଚିତ୍ କଳ୍ପନା ସହ ଏ ସ୍ଥଳରେ ଯୋଗ କରି ଅଛନ୍ତି । ପରନ୍ତୁ ଏ ସ୍ଥଳରେ ଛାପା ଓ ତାଳପତ୍ର ପୁସ୍ତକରେ ମଧ ବିଷୟ ସନ୍ନିବେଶ ସମାନ ନୁହେଁ । ତାଳପତ୍ରରେ ଲିଖିତ ଶାନ୍ତିପର୍ବର ଅନ୍ତିମ କେତେକ କଥା ଛାପାରେ ଆଶ୍ରମିକ ପର୍ବରେ ଲେଖାଅଛି । ସୁତରାଂ ତାଳପତ୍ରରେ ଆଶ୍ରମିକ ପର୍ବର ନାମ ଲେଖା ଦେଖାଯାଏ ନାହିଁ । ପ୍ରାକ୍‌ସୂଚିତ ଶାମ୍ବ କୁମାରଙ୍କ ଘଟନା ପ୍ରଭୃତିର ଅବସାନରେ "ଶାନ୍ତିପର୍ବ ସଂପୂର୍ଣ୍ଣ" ବୋଲି କେବଳ ଲେଖାଅଛି । ସୁତରାଂ ଏହା ସୁଦ୍ଧା ଆଶ୍ରମିକ ପର୍ବର ସ୍ଥାନ ନୁହେ । ଅଶ୍ୱମେଧ ପର୍ବ ପରେ ଆଶ୍ରମବାସିକ ପର୍ବର ସଂସ୍ଥାନ ହେବା ଉଚିତ । ଏପରି ବିକୃତୀକରଣ କ୍ରମଶଃ ଅନୁଲେଖକମାନଙ୍କ ଦ୍ୱାରା ଘଟିଅଛି ବୋଲିବାକୁ ହେବ ।

ବ୍ୟାସଦେବ ଶାନ୍ତିପର୍ବାନନ୍ତର ତଦନୁଜ ଅଷ୍ଟଷଷ୍ଟ୍ୟଧିକ ଶତାଧ୍ୟାୟାତ୍ମକ ଆନୁଶାସନିକ ପର୍ବକୁ ବହୁବିଧ ଧର୍ମ ଓ ନୀତିମାନଙ୍କର ସମୁଜ୍ଜ୍ୱଳ ବ୍ୟବସ୍ଥାମାନଙ୍କରେ ସୁସମ୍ପନ୍ନ ରୂପେ ପ୍ରକାଶ କରିଅଛନ୍ତି । ତତ୍ର ମୃତ୍ୟୁ-ଗୌତମୀ ସମ୍ବାଦ, କାଳ-ଲୁବ୍‌ଧକ

ପନ୍ନଗ ସମ୍ବାଦ, ବାନର ଶୃଗାଳ ସମ୍ବାଦ ଓ ଶୂଦ୍ରମୁନି ସମ୍ବାଦ ଏବଂ ସୁଦର୍ଶନ ଉପାଖ୍ୟାନ, ବିଶ୍ୱାମିତ୍ର ଉପାଖ୍ୟାନ, କର୍ମଫଳିକୋପାଖ୍ୟାନ, ଭଙ୍ଗାସ୍ୱନୋପାଖ୍ୟାନ, ମେଘବାହନ ଉପାଖ୍ୟାନ, ବିପୁଳୋପାଖ୍ୟାନ, ଚ୍ୟବନୋପାଖ୍ୟାନ, ତାରକବଧୋପାଖ୍ୟାନ, ଆୟୁଷ୍ୟୋପାଖ୍ୟାନ ଓ କୀଟୋପାଖ୍ୟାନ, ତଥାଚ ଦୈବ ରହସ୍ୟ, ଲୋମଶ ରହସ୍ୟ, ଚିତ୍ରଗୁପ୍ତ ରହସ୍ୟ, ପ୍ରମଥ ରହସ୍ୟ, ଦିଗ୍‌ଗଜ ରହସ୍ୟ ଓ ମହାଦେବ ରହସ୍ୟ ନାମରେ ଧର୍ମଧବଳ ସନ୍ଦର୍ଭମାନ ନାନା ପ୍ରକାର ଧର୍ମ ଓ ନୀତିର ନିରାମୟ ଅକ୍ଷୁଣ୍ଣ ଆଲୋକରେ ସମାଲୋକିତ ହୋଇଅଛି । ସାରଳାଦାସ ମହାଶୟ ଏଥିରୁ କଣିକାଏ ସୁଦ୍ଧା ପ୍ରକାଶ କରିପାରି ନାହାନ୍ତି । ଏତଦନ୍ତର୍ଗତ ଯତ୍‌କିଞ୍ଚିତ୍ କଥାନକ ହେଲେ ସୁଦ୍ଧା ପ୍ରକାଶ କରିବେ କଣ ? ଆନୁଶାସନିକ ପର୍ବର ନାମ ପର୍ଯ୍ୟନ୍ତ କୁତ୍ରାପି ଦେଇ ନାହାନ୍ତି । ଏ ମହାଶୟ ଯେତେବେଳେ ନିର୍ବାଣୋନ୍ମୁଖ ଭୀଷ୍ମଦେବଙ୍କ ମୁଖନିଃସୃତ ସର୍ବତୋମୁଖ ସୁବିସ୍ତୃତ ସୁଧର୍ମନୀତିରତ୍ନପୂର୍ଣ୍ଣ ଉପଦେଶାର୍ଣ୍ଣବକୁ ଏକମାତ୍ର ଗଣ୍ଡୁଷୀକରଣରେ ବିଚିତ୍ର ଅଗସ୍ତ୍ୟ ପ୍ରାୟ ପ୍ରବୃତ୍ତ, ତେତେବେଳେ ଆଉ ଆନୁଶାସନିକ ପର୍ବର ନାମ ଦେବାର କୌଣସି ଆବଶ୍ୟକତା ନାହିଁ । ହିନ୍ଦୀ ବଙ୍ଗାଦି ଭାରତକର୍ତ୍ତା ସବଳ ସିଂହ, କାଶୀରାମ ପ୍ରଭୃତି ମଧ ଆନୁଶାସନିକ ପର୍ବକୁ ପୃଥକ୍ ଗ୍ରହଣ କରି ନାହାନ୍ତି । ଶାନ୍ତି ଓ ଆନୁଶାସନିକ ପର୍ବରେ ପ୍ରତିପାଦିତ ଧର୍ମୋପଦେଶ ନିଚୟରୁ କେତେକର ମାତ୍ର ଅନୁକରଣ କରି ସଂକ୍ଷିପ୍ତତଃ ଏକତ୍ର କେବଳ ଶାନ୍ତିପର୍ବ ନାମରେ ପ୍ରକାଶ କରି ଅଛନ୍ତି ସତ୍ୟ, ମାତ୍ର ସେହି ସଂକ୍ଷିପ୍ତୀକରଣ ସାରଳାଦାସଙ୍କ ପରି ଏକାନ୍ତ ଅଭାବପୂର୍ଣ୍ଣ ନୁହେଁ ।

ଅତଃପର ମୂଳଗ୍ରନ୍ଥରେ ଅଶ୍ୱମେଧ ପର୍ବଟି ଦ୍ୟୁତ୍ତରନବତି ଅଧ୍ୟାୟରେ ଏବଂ ଆଶ୍ୱମେଧିକ ଅନୁଗୀତା ପ୍ରଭୃତି ଉପପର୍ବମାନଙ୍କରେ ଯୁକ୍ତ ଅଟେ । ଏଠାରେ ଆପାତତଃ ଉକ୍ତ ଅଛି କି, ଭୀଷ୍ମଙ୍କ ନିର୍ଯ୍ୟାଣ ପରେ ପ୍ରଗାଢ଼ ଦୁଃଖିତ ଧର୍ମପ୍ରାଣ ଯୁଧିଷ୍ଠିର ପାର୍ଥିବ ସୁଖଦୁଃଖାଦିରେ ଅହଂଭାବ ପ୍ରକାଶପୂର୍ବକ ପୁନଶ୍ଚ କ୍ରନ୍ଦନ ଆରମ୍ଭ କଲେ । ଏହି ନିଖିଳ ସାମ୍ରାଜ୍ୟର ତ୍ୟାଗପୂର୍ବକ ପୁନରପି ବନକୁ ପ୍ରସ୍ଥାନ କରିବି ବୋଲି ବହୁ ଦୁଃଖ ପ୍ରକାଶ କଲେ । ତେତେବେଳେ ଧୃତରାଷ୍ଟ୍ରାଦି ବିଶେଷତଃ ଶ୍ରୀକୃଷ୍ଣ ତାହାଙ୍କୁ ଅନ୍ତଃଶତ୍ରୁବିନାଶ ସାଧକ ଜ୍ଞାନଦାନାର୍ଥ କାମଗୀତନାମକ ଅନନ୍ତ ନୀତି ଓ ଜ୍ଞାନପୂର୍ଣ୍ଣ ଗାଥା ଉପଦେଶ ଦେଲେ ଏବଂ ସର୍ବପାପାପନୋଦନ ଯଜ୍ଞର ଅନୁଷ୍ଠାନରେ ପ୍ରବର୍ତ୍ତାଇଲେ । ଏ ସ୍ଥଳରେ ବହୁ ସମ୍ପତ୍ତିସାଧ ଯଜ୍ଞକରଣରେ କୃତାଭିଳାଷ ଯୁଧିଷ୍ଠିରଙ୍କ ପ୍ରଶ୍ନରେ ତଦାଗତ ବ୍ୟାସଙ୍କ ପ୍ରତିପାଦିତ ପ୍ରାଚୀନ ମରୁତ ରାଜାଙ୍କର ଯାଗବିବରଣ ଉକ୍ତ ହୋଇଅଛି ।

ତେତେବେଳେ ଅର୍ଜୁନ ଶ୍ରୀକୃଷ୍ଣଙ୍କୁ ବୋଇଲେ, ହେ କୃଷ୍ଣ ! ଆପଣ ଯୁଦ୍ଧ ସମୟରେ ମୋତେ ଯେତେ ଉପଦେଶ ଦେଇଥିଲେ, ସେସବୁ ମନେ ରଖିପାରି ନାହିଁ, ପୁଣି ଦୟାପୂର୍ବକ କହନ୍ତୁ । ସେକ୍ଷଣି ଶ୍ରୀକୃଷ୍ଣ ତାହାଙ୍କୁ ଭଗବଦ୍‌ଗୀତା ଧର୍ମରେ କିଞ୍ଚିତ୍‌ମାତ୍ର ଅନୁପ୍ରାଣିତ

ଇତିହାସସମନ୍ୱିତ ଅନୁଗୀତା ନାମକ ଧର୍ମଗାଥା କହିଥିଲେ । ଅନୁଗୀତାରେ ଭଗବଦ୍‌ଗୀତା-ଭାବର ତାଦୃଶ ସୌସାଦୃଶ୍ୟ ନାହିଁ । ଏହାର ଏକଭାଗ ବ୍ରହ୍ମଗୀତା ନାମରେ ମଧ୍ୟ ଅଭିହିତ । ଅର୍ଜୁନଙ୍କୁ ଅନୁଗୀତା ଉପଦେଶ ଦେଲା ପରେ ଶ୍ରୀକୃଷ୍ଣ ଯୁଧିଷ୍ଠିରାଦିଙ୍କଠାରୁ ବିଦାୟ ନେଇ ସୁଭଦ୍ରାଙ୍କ ସହ ଦ୍ୱାରକା ପ୍ରୟାଣ କଲେ । ପଥ ମଧ୍ୟରେ ଉତଙ୍କ ଋଷିଙ୍କ ସହିତ ସାକ୍ଷାତ୍ ଘଟିଲା । କେତେକ କଥା ପରେ କୃଷ୍ଣ ତାହାଙ୍କୁ ନିଜର ବିଶ୍ୱରୂପ ପ୍ରଦର୍ଶନପୂର୍ବକ ବର ପ୍ରଦାନ କଲେ । ତପ୍ରରେ ଦ୍ୱାରକାରେ ବସୁଦେବ ପ୍ରଭୃତିଙ୍କ ଜିଜ୍ଞାସାରେ ସମଗ୍ର ଭାରତାହବର ଆମୂଳାନ୍ତ ଯାବତୀୟ ଘଟନାର ସ୍ଥୂଳ ବିବରଣ ନିବେଦନ କଲେ । ଏଥିରୁ ସ୍ପଷ୍ଟ ଜଣାଯାଏ, ନିମନ୍ତ୍ରଣରେ ଯୁଦ୍ଧାର୍ଥ ଆଗତ ଶ୍ରୀକୃଷ୍ଣ ସମଗ୍ର ଯୁଦ୍ଧବ୍ୟାପାର ଏବଂ ଯୁଧିଷ୍ଠିରଙ୍କ ଅଭିଷେକାଦି ସମ୍ପାଦନ ପରେ କେବଳ ଦ୍ୱାରକାକୁ ପ୍ରତ୍ୟାବୃତ୍ତ ହୋଇଥିଲେ ।

ତେଣେ ଯୁଧିଷ୍ଠିର ସମୟରେ ହିମାଳୟରେ ମରୁତ୍ତନିକ୍ଷିପ୍ତ ଧନରାଶିକୁ ଯଥାବିଧାନରେ ଆନୟନ କଲେ । କେତେକ ଦିନ ପରେ ଯୌଧିଷ୍ଠିର ଅଶ୍ୱମେଧ ଯାଗର ସମୟ ସମାସନ୍ନ ହେବାରୁ ଶ୍ରୀକୃଷ୍ଣ ନିମନ୍ତ୍ରଣ ପାଇ ରାମ ପ୍ରଭୃତି ପରିବାର ଓ ପରିଚରବର୍ଗଙ୍କୁ ସଙ୍ଗେ ଧରି ହସ୍ତିନାରେ ପ୍ରବିଷ୍ଟ ହେଲେ । ଏଥିମଧ୍ୟରେ ଯାଦବୀୟ ଓ ପାଣ୍ଡବୀୟ ପରିବାରବର୍ଗଙ୍କର ଏକତ୍ର ଅବସ୍ଥିତି ସମୟରେ(୧) ଉତ୍ତରାଙ୍କ ଗର୍ଭରୁ ବ୍ରହ୍ମାସ୍ତ୍ରନିପୀଡ଼ିତ ଶବାକୃତି ଆଭିମନ୍ୟବ ଧରଣୀପୃଷ୍ଠରେ ପତିତ ହେଲେ । କୁନ୍ତୀ ପ୍ରଭୃତିଙ୍କ ପ୍ରାର୍ଥନାରେ ଶ୍ରୀକୃଷ୍ଣ ତାହାଙ୍କୁ ପୁନରୁଜ୍ଜୀବିତ କରି ପରିକ୍ଷୀୟମାଣ କୁଳର ରକ୍ଷକ ଭାବି ପରିକ୍ଷିତ୍ ନାମ ଦେଲେ ।(୨) ଏପରି ସମାନନ୍ଦ କୋଳାହଳରେ ବ୍ୟାସଦେବ ଯୁଧିଷ୍ଠିରଙ୍କୁ ଚୈତ୍ରପୂର୍ଣ୍ଣିମା ଦିନ (୩) ଅଶ୍ୱମେଧସୂତ୍ରରେ ଦୀକ୍ଷିତ କରାଇଲେ । ଏଠାରେ ପୃଥିବୀ ସଞ୍ଚରିଷ୍ୟମାଣ ଯାଗାଶ୍ୱରକ୍ଷଣାର୍ଥ କୃତପ୍ରସ୍ଥାନ ଅର୍ଜୁନଙ୍କର ଦିଗ୍‌ବିଜୟକ୍ରମଟି ପଞ୍ଚଦଶାଧ୍ୟୟବ୍ୟାପୀ ବହୁ କଥାରେ ସମ୍ମିଳିତ ହୋଇଅଛି । ଏଥିମଧ୍ୟରେ ନାଗକନ୍ୟା ଉଲପୀଙ୍କ ମୋହିନୀମାୟାବଳରେ ଚିତ୍ରାଙ୍ଗଦା ପୁତ୍ର ବଭ୍ରୁବାହନଙ୍କ କର୍ତ୍ତୃକ ଅର୍ଜୁନଙ୍କ ନିଧନ ଘଟନାଟି ବଡ଼ ବିସ୍ମୟଜନକ ଓ କୌତୁକାବହ । ଯଥାକ୍ରମରେ ଅନଳ୍ପସମ୍ଭାର ସମାରୋହ ସଂପୂର୍ଣ୍ଣ ଅଶ୍ୱମେଧ ଯାଗ ସମାପ୍ତ ହେଲା । ଯାଗର ସର୍ବାବସାନରେ ପୁଣି ମନୁଷ୍ୟଭାଷୀ ଏକ ଦିବ୍ୟ ନକୁଳର ଅନେକବିଧ ଇତିହାସ ସମେତ ଆଶ୍ଚର୍ଯ୍ୟଜନକ କଥାନକ ଉକ୍ତ

(୧) ବସସୁବୃଷ୍ଣିବୀରେଷୁ ତତ୍ରାଥ ଜନମେଜୟ ।
ଜଜ୍ଞୋତବ ପିତା ରାଜନ୍ ଇତ୍ୟାଦି । ଅ.ପ. ୬୬ ଅଧ୍ୟାୟ ।

(୨) ପରିକ୍ଷୀଣେ କୁଳେ ଯସ୍ମାଦ୍ ଜାତୋଽୟମଭିମନ୍ୟୁଜଃ ।
ପରିକ୍ଷିଦିତି ନାମାସ୍ୟ ଭବତ୍ୱିତ୍ୟବ୍ରବୀତ୍ତଦା । ଅ.ପ. ୭୦ ଅଧ୍ୟାୟ ।

(୩) ଚୈତ୍ର୍ୟାଂହି ପୌର୍ଣ୍ଣମାସ୍ୟାଂ ତୁ ତବ ଦୀକ୍ଷା ଭବିଷ୍ୟତି ।
ସମ୍ଭାରାଃ ସଂଭ୍ରିୟତାଂ ଚ ଯଜ୍ଞାର୍ଥଂ ପୁରୁଷର୍ଷଭ । ଅ.ପ. ୭୧ ଅଧ୍ୟାୟ ।

ହୋଇଅଛି । ଏସବୁ ସୁସମ୍ପନ୍ନ ହେଲା ପରେ ଶ୍ରୀକୃଷ୍ଣ ଯୁଧିଷ୍ଠିରଙ୍କୁ ଆଦେଶ ମାଗି ଦ୍ୱାରକା ପ୍ରତି ପ୍ରସ୍ଥାନ କରିଥିଲେ । ଅଦ୍ୟାବଧି ଆଉ ଶ୍ରୀକୃଷ୍ଣଙ୍କ ସହିତ ପାଣ୍ଡବମାନଙ୍କ ସାକ୍ଷାତକାର ବା ସହାବସ୍ଥାନ ଘଟିଥିବାର ପ୍ରମାଣ ମୂଳଗ୍ରନ୍ଥରେ ଦେଖାଯାଏ ନାହିଁ ।

ସାରଳାଦାସଙ୍କ ମହାଭାରତରେ ଶାନ୍ତିପର୍ବଠାରୁ ପୂର୍ବାବସ୍ଥାନ ଓ ବିଷୟ ସଂସ୍ଥାପନ ଯଥାଯଥ ଦେଖାଯାଏ ନାହିଁ । ଏଥିମଧ୍ୟରେ ତାଳପତ୍ର ଓ ଛାପା ପୁସ୍ତକମାନଙ୍କରେ ବିଷୟାବସ୍ଥିତି ଓ ପର୍ବ ନିର୍ଦ୍ଦେଶରେ ପ୍ରଭେଦ ଦେଖାଯାଏ । ବୋଧହୁଏ ଏତାଦୃଶ ବିପର୍ଯ୍ୟୟୀକରଣ କ୍ରମେ କ୍ରମେ ସମଧିକତଃ ଅନୁଲେଖକମାନଙ୍କ ଦ୍ୱାରା ଘଟିଅଛି ।(୨) ତାଳପତ୍ର ପୁସ୍ତକ ଆମୂଳାନ୍ତ ଦେଖିନେଲେ ଆଶ୍ରମିକ ବା ଆଶ୍ରମବାସିକ ପର୍ବର ନାମୋଲ୍ଲେଖ ଦେଖାଯାଏ ନାହିଁ । ଅଧିକତଃ ଆଉ ଗୋଟିଏ ସ୍ତ୍ରୀପର୍ବର ନାମ ଦେଖାଯାଏ ।(୧) ମୂଳଗ୍ରନ୍ଥରେ ପ୍ରସ୍ଥାନତ୍ରୟ ପାଠ ବା ଶାନ୍ତି ଓ ଆନୁଶାସନିକ ପର୍ବ ପରେ ଯେପରି ଅଶ୍ୱମେଧ ପର୍ବ ଉକ୍ତ ଅଛି, ଏଥିରେ ସେପରି ନୁହେଁ । ଶାନ୍ତି ର୍ପବ ଓ ଅଶ୍ୱମେଧ ପର୍ବର ବ୍ୟବଧାନରେ ଅନ୍ୟାନ୍ୟ ପର୍ବର ଅନେକଗୁଡ଼ିଏ କଥା ନିହିତ ହୋଇଅଛି । ଅତଏବ ମୌଳିକ ପର୍ବ ପର୍ଯ୍ୟାୟାନୁସାରେ ବିଷୟ ବିଚାର କରାଯାଉଅଛି । ଏ ମହାଶୟ ଅଶ୍ୱମେଧ ପର୍ବରେ ପ୍ରଥମତଃ ଶ୍ରୀକୃଷ୍ଣଙ୍କ କୃତ ଅଶ୍ୱମେଧ ଯାଗର କଥା କହି ଅଛନ୍ତି । ଏ ମହାଶୟ ଏହି ଅତିରିକ୍ତ ସନ୍ଦର୍ଭର କେତେକ ଅଂଶ କାଳ୍ପନିକ ବଳରେ ଆଉ କେତେକ ଅଂଶ ଅନ୍ୟ ପୁରାଣୋକ୍ତ ଚରିତର ଅନୁକରଣରେ ଚିତ୍ରଣ କରି ଅଛନ୍ତି । ଏ କହନ୍ତି କି, ବଳରାମଙ୍କ ଆଦେଶମତେ ଶ୍ରୀକୃଷ୍ଣ ବହୁ ପ୍ରାଣିବଧ-ପାପୋପଶାନ୍ତ୍ୟର୍ଥ ଅଶ୍ୱମେଧ ଯାଗର ଅନୁଷ୍ଠାନ କଲେ । ପାଣ୍ଡବମାନେ ସପରିବାରରେ ନିମନ୍ତ୍ରିତ ହୋଇ ସେଠାରେ ଉପଗତ ହେଲେ । ଶ୍ରୀକୃଷ୍ଣ ଯାଗଶାଳାର ଦ୍ୱାରରକ୍ଷକ ରୂପେ ଅର୍ଜ୍ଜୁନଙ୍କୁ ନିଯୁକ୍ତ କଲେ ।

ଏ ସମୟରେ ଗୋଟିଏ ଦୁର୍ଘଟଣା ଆସି ଉପଗତ ହେଲା । ଇତଃପୂର୍ବରୁ ତତ୍ରତ୍ୟ ବସୁକଣ୍ଠକ ନାମକ କୌଣସି ଏକ ବ୍ରାହ୍ମଣଙ୍କର ସଦ୍ୟପ୍ରସୂତ ଛଅଗୋଟି ପୁତ୍ରସନ୍ତାନ ସୂତିକାଗାରରୁ କେହି ଅପହରଣ କରି ଅଛନ୍ତି । ପୁନଶ୍ଚ ସଂପ୍ରତି ପ୍ରସବ ସମୟ ଉପଗତ ହେବାରୁ ସେ ଆସି ସନ୍ତାନରକ୍ଷାର୍ଥେ ପ୍ରାର୍ଥନା କଲେ । ଅର୍ଜ୍ଜୁନ ସେଥିପାଇଁ କୃତପ୍ରତିଜ୍ଞ ହେଲେ, ମାତ୍ର ପ୍ରତିଜ୍ଞାପାଳନରେ ଅସମର୍ଥ ହୋଇ ପଡ଼ିବାରୁ ଦୁଃଖ ଓ ଅପବାଦ ଭୟରେ ଅଗ୍ନିପ୍ରବେଶାର୍ଥ ଉଦ୍ୟୁକ୍ତ ଅଛନ୍ତି; ଏମନ୍ତ ସମୟରେ ଶ୍ରୀକୃଷ୍ଣ ଏହି ସମ୍ବାଦ ଶ୍ରବଣରେ ବିସ୍ମିତ ଓ ଚମତ୍କୃତ ହୋଇ ଅର୍ଜ୍ଜୁନଙ୍କ ପ୍ରତିଜ୍ଞାସାଧନପୂର୍ବକ ପ୍ରାଣରକ୍ଷା ସଙ୍ଗେ ଦୈବାପହୃତ ବ୍ରାହ୍ମଣ ସନ୍ତାନମାନଙ୍କ ଆନୟନାର୍ଥ ଅର୍ଜ୍ଜୁନଙ୍କ ସହ ପାତାଳବୈକୁଣ୍ଠରେ ପ୍ରବିଷ୍ଟ ହେଲେ । ସେଠାରେ ସ୍ଥାପିତ ଇତଃପୂର୍ବରୁ କ୍ରମଶଃ ବର୍ଷକୁ ବର୍ଷ ଅପହୃତ ସାତଗୋଟି ବ୍ରାହ୍ମଣ

---

(୧) ଇତଃପୂର୍ବେ ସ୍ତ୍ରୀ ପର୍ବକୁ ଶୋକପର୍ବ ନାମରେ ଅଭିହିତ କରି ଥିବାରୁ ଏ ସ୍ଥଳରେ ସ୍ତ୍ରୀ ପର୍ବ ନିର୍ଦ୍ଦେଶ କରିଥିବେ ବୋଲି ଅନୁମିତ ହୁଏ ।

ସନ୍ତାନମାନଙ୍କୁ ଆଣି ପ୍ରୋକ୍ତ ବ୍ରାହ୍ମଣଙ୍କୁ ପ୍ରଦାନ କଲେ ।(୧)କିନ୍ତୁ ଏଥି ମଧ୍ୟରେ ନାରଦଙ୍କ ପ୍ରରୋଚନାରେ ଶୋଣପୁରର କଦମ୍ବାସୁର ଅଭିନିର୍ଯ୍ୟାଣ କରି ଯାଗଶାଳାରେ ଘୋର ଅତ୍ୟାଚାର ଆରମ୍ଭ କଲା; ରାମଙ୍କୁ ପରାସ୍ତ ଓ ବନ୍ଧନ କରି ଘେନିଗଲା । ପାତାଳବୈକୁଣ୍ଠରୁ ପ୍ରତ୍ୟାବୃତ୍ତ ସାର୍ଜୁନ ଶ୍ରୀକୃଷ୍ଣ ସହସା ଅସୁରକୁ ଅବରୋଧ କରି ସୁଦ୍ଧା ପରାସ୍ତ ହୋଇ ପଡ଼ିଲେ । ମାତ୍ର ପରିଶେଷରେ ବଳରାମ ସେହି କଦମ୍ବାସୁରକୁ ନିହତ କଲେ । ଶ୍ରୀକୃଷ୍ଣ ଯାଗକର୍ମ ସାଧନରେ ପ୍ରବୃତ୍ତ ହୋଇ ପରିସମାପ୍ତ କଲେ ।

ସାରଳାଦାସେ ଯେପରି ଅଶ୍ୱମେଧ ପର୍ବରେ ଅନ୍ୟାନ୍ୟ ପୌରାଣିକ ବା ଐତିହାସିକ କଥାଗୁଡ଼ିକ ଆଣି ଭର୍ତ୍ତି କରି ଅଛନ୍ତି, ଦେଖିବେ ବଙ୍ଗ ଭାରତକର୍ତ୍ତା କାଶୀରାମଦାସ ମଧ୍ୟ ସେହି ପରି ପୁରାଣେତର କଥାଗୁଡ଼ିଏ ଆଣି ସଙ୍ଗତିସନ୍ଦର୍ଭ ଲଗାଇ ଯୋଗ କରିଦେଇ ଅଛନ୍ତି । ଏ ସ୍ଥଳରେ ଓଡ଼ିଆ ଭାରତରେ ଅତିରିକ୍ତ କଥାଗୁଡ଼ିକ ଏକତ୍ର ଧାରାବାହିକ ସନ୍ନିହିତ ଅଛି । ବଙ୍ଗ ଭାରତରେ ପ୍ରାସଙ୍ଗିକ କ୍ରମରେ ସ୍ଥାନେ ସ୍ଥାନେ ପ୍ରକ୍ଷିପ୍ତ ହୋଇଅଛି । ଏପରି ଅନେକଗୁଡ଼ିଏ ପ୍ରକ୍ଷିପ୍ତ ହେବାର କାରଣ, ବୋଧହୁଏ କେବଳ ପର୍ବର ସୁବିସ୍ତୃତ ବଢ଼ାଇବା ପାଇଁ । ମୌଳିକ କଥାଗୁଡ଼ିକୁ ଯଥାଯଥ ପ୍ରସରଣରେ ସୁବିସ୍ତୃତ କରି ନ ପାରି କିମ୍ବା ମୂଳର ଅନେକଗୁଡ଼ିଏ ଉପାଙ୍ଗଭୂତ କଥା ତ୍ୟାଗ କରିଦେଇ ଲେଖିଗଲେ ପାଠବିସ୍ତୃତି ଚିକୀର୍ଷାରେ ଏପରି ଅବାନ୍ତର ଚରିତମାନଙ୍କର ଆଶ୍ରୟ ନେବାକୁ ହୁଏ ।

ସାରଳାଦାସଙ୍କ ଅଶ୍ୱମେଧ ପର୍ବରେ ମୂଳଗ୍ରନ୍ଥରେ ଉକ୍ତ ଯୁଧିଷ୍ଠିରଙ୍କର ଭୀଷ୍ମାଭାବରୁ ବ୍ୟାକୁଳତା ଓ ପାର୍ଥିବ ସୁଖରେ ନିର୍ବେଦବତ୍ତାର କ୍ରମ, ଅନନ୍ତ ଇତିହାସସମନ୍ୱିତ ଅନୁଗୀତା ପ୍ରଭୃତି ପାଠମାନ, ଉତଙ୍କ-ଉପାଖ୍ୟାନ ଏବଂ ବସୁଦେବାଦି ପ୍ରତି ଭାରତାହବର ସ୍ଥୂଳ ବିବରଣର ବିବୃତୀକରଣ ଉକ୍ତ ହୋଇ ନାହିଁ; କିନ୍ତୁ ଶେଷୋକ୍ତ ସନ୍ଦର୍ଭକୁ ଏ ମହାଶୟ ଐଷିକ ପର୍ବାବସରରେ ଅସ୍ଥାନରେ ସଙ୍ଗତିସାଙ୍ଗତ୍ୟ ଲଗାଇ କହିଦେଇ ଅଛନ୍ତି । ଯୁଧିଷ୍ଠିରଙ୍କ ଯାଗାରମ୍ଭରେ କହନ୍ତି କି, ବଶିଷ୍ଠ ଶ୍ୱେତ ରାଜାଙ୍କ ଯାଗର ବୃତ୍ତାନ୍ତ କୀର୍ତ୍ତନ କରି ତୁଙ୍ଗଭଦ୍ରାନଦୀତୀରବର୍ତ୍ତୀ କାଞ୍ଚୀନଗରସ୍ଥ ବୈଡୁର୍ଯ୍ୟ ପର୍ବତରେ ମରୁତ୍ତ ରାଜାଙ୍କ ନିକ୍ଷିପ୍ତ ଧନରାଶି ଆଣିବାକୁ ଆଦେଶ ଦେଲେ ।(୨) ଯୁଧିଷ୍ଠିର ବଶିଷ୍ଠାଦେଶକରଣରେ ପ୍ରବୃତ୍ତ ହେଲେ । ଏ ସ୍ଥଳରେ ପୁରା ମରୁତ୍ତ ରାଜାଙ୍କପାଇଁ ବୃହସ୍ପତିପୁତ୍ର କଚ ନିଧିରକ୍ଷକ ମଣିଭଦ୍ର ଅସୁରକୁ ପ୍ରାଣପଣରେ ପ୍ରସନ୍ନ କରାଇ ସ୍ୱରାଷ୍ଟ୍ର ଦେଶସ୍ଥ ହିରଣ୍ୟଗର୍ଭ ପର୍ବତରୁ ଧନରାଶି ଆନୟନ କରିଥିବା, କଚଙ୍କୁ ମଣିଭଦ୍ର ଅସୁର ନିହତ କଲା ବୋଲି ନାରଦ ବୃହସ୍ପତିଙ୍କୁ

(୧) ଏହି ଘଟନାର ଆମୂଳାନ୍ତ ଚରିତ ଶ୍ରୀମଦ୍ଭାଗବତ ଦଶମ ସ୍କନ୍ଧ ପଞ୍ଚନବତି ଅଧ୍ୟାୟରେ ଉକ୍ତ ଅଛି ।

(୨) କାଞ୍ଚୀନଗ୍ରେ ଯାଇଁ ହୋଇଲେ ପ୍ରବେଶ,
ବହଇ ତୁଙ୍ଗଭଦ୍ରା ସେ ନଗ୍ରର ପାଶ । ଅଶ୍ୱ.ପର୍ବ ।

କହିବାରୁ ସେ ଆସି କ୍ରୋଧବଶତଃ ମରୁତ୍ତଙ୍କ ଯାଗ ଭଙ୍ଗ କରିଥିବା, ମରୁତ୍ତ ରାଜା ଯାଗାର୍ଥ ଆନୀତ ବିତ୍ତରାଶି ପ୍ରୋକ୍ତ ପର୍ବତରେ ନିକ୍ଷିପ୍ତ କରି ଦେଇଥିବା ପ୍ରଭୃତି କଥା ବର୍ଣ୍ଣିତ ଅଛି । ଏ କବି ମହୋଦୟ ଯଥାର୍ଥ ମରୁତ୍ତ ସମ୍ପାଦିତ ଧନରାଶିର ଏହି ଅତିରିକ୍ତ ଆନୁଷଙ୍ଗିକ ଗାଥାକୁ କାହିଁରୁ ଆଣି, କିମ୍ବା କଳ୍ପନା କରି ଏ ସ୍ଥଳରେ ନିହିତ କରି ଅଛନ୍ତି, ତାହା ସହସା ଠିକ୍ ନିର୍ଦ୍ଧାରଣ କରାଯାଇ ନ ପାରେ । ଏଥିରେ ପୌରାଣିକ ଓ କାଳ୍ପନିକ ଉଭୟ ସତ୍ତା ଥିବାର ଜଣାଯାଉଅଛି, ଏହେତୁ ଏହା ନିତାନ୍ତ ଅମୌଳିକ ବା କାଳ୍ପନିକ ବୋଧହୁଏ  ନାହିଁ । ମୂଳଗ୍ରନ୍ଥରେ ଯେପରି କି ନିଧିନିକ୍ଷିପ୍ତ ସମ୍ପତ୍ତି ଆନୟନକ୍ରମ ବର୍ଣ୍ଣିତ ଅଛି, ଅନୁମାନ ହୁଏ ଏ ମହାଶୟ ତାହା ଆଦ୍ୟୋପାନ୍ତ ଘଟନାକ୍ରମ ଠିକ୍ ମନେ ରଖି ନ ପାରି, କେବଳ ତାହା ମରୁତ୍ତର ରାଜାଙ୍କର ଧନ, ଯୁଧିଷ୍ଠିର ଋଷିମାନଙ୍କ ପ୍ରବର୍ତ୍ତନାରେ ପ୍ରାପ୍ତ ହୋଇଥିଲେ, ଏତିକି ମାତ୍ର ମନେ ରଖି ଏପରି କ୍ରମରେ ଲେଖି ଅଛନ୍ତି । ଅତଃପର ଯାଗାଶ୍ୱରକ୍ଷଣରେ ପ୍ରବୃତ୍ତ ଅର୍ଜ୍ଜୁନଙ୍କ ଦିଗ୍‌ବିଜୟକ୍ରମକୁ ମୂଳ ଅପେକ୍ଷା ସଂକ୍ଷିପ୍ତ ଓ ଭିନ୍ନ ପ୍ରକାର କରି ଅଛନ୍ତି । ବ୍ୟାସଙ୍କ ଆଦେଶକ୍ରମରେ ଏହି ଅଶ୍ୱଟି ଅଶ୍ୱିନୀକୁମାରଙ୍କଠାରୁ ପାଇଥିବାର ଲେଖି ଅଛନ୍ତି ।(୧) ଯାଗର ସମୟ ବ୍ୟାସନିର୍ଦ୍ଦିଷ୍ଟ ଚୈତ୍ର ତ୍ୟାଗ କରି ମକର ମାସରେ ହୋଇଥିଲା ବୋଲି କହିଅଛନ୍ତି ।(୨) ସଭାପର୍ବାନ୍ତର୍ଗତ ଏତାଦୃଶ ବିଜୟ ସ୍ଥଳରେ ଯେପରି ନିଜର କାଳ୍ପନିକ ନାମଧାମାଦିରେ ଦେଶଦେଶାଧିପତି ପ୍ରଭୃତି ନିର୍ଦ୍ଦେଶ କରି ଅଛନ୍ତି, ଏ ସ୍ଥଳରେ ମଧ୍ୟ ସେହିପରି, ଅଥଚ ମୌଳିକ କ୍ରମକୁ ସୁଦ୍ଧା ବୈଷମ୍ୟରେ ନିହିତ କରିଅଛନ୍ତି । ଏହି ସନ୍ଦର୍ଭରେ ମୌଳିକ ଚରିତ ମଧ୍ୟରୁ ବଭ୍ରୁବାହନଙ୍କ ସହିତ ଅର୍ଜ୍ଜୁନଙ୍କର ଯୁଦ୍ଧାଦି ଘଟନାମାତ୍ର ପ୍ରାୟଶଃ ଯଥାଯଥ କରି ଅଛନ୍ତି । ଏହି ପର୍ବର ଅବସାନରେ ଯୁଧିଷ୍ଠିରଙ୍କ ଯଜ୍ଞଧର୍ଷକ ଶୋଣପୁରାଧିପତି ବାଣାସୁରର ପୁତ୍ର ମୃଢ଼ାସୁରର ଯୁଦ୍ଧସଂମର୍ଦ୍ଦମୂଳକ ଅନଙ୍ଗପ୍ରସର ଗୋଟିଏ କାଳ୍ପନିକ ସାଙ୍ଗୋପାଙ୍ଗ ଚରିତ ଲେଖି ପର୍ବଟିକୁ ସଂପୂର୍ଣ୍ଣ କରି ଅଛନ୍ତି । ତାତ୍କାଳିକ ପରିକ୍ଷିତ୍ ଜନ୍ମ ଘଟନାକୁ ଏ ସ୍ଥାନରେ ନ କହି ଅନ୍ୟତ୍ର ପ୍ରକାଶ କରି ଅଛନ୍ତି । ମୂଳଗ୍ରନ୍ଥରେ ବର୍ଣ୍ଣିତ ଅଦ୍ଭୁତ ନକୁଳଙ୍କ ସେତିହାସ ବୃତ୍ତାନ୍ତର ନାମ ପର୍ଯ୍ୟନ୍ତ ତ୍ୟାଗ କରିଦେଇ ଅଛନ୍ତି ।(୩)

---

(୧) ବ୍ୟାସ ବୋଇଲେ ବାବୁ ନ ପଡ଼ିବ ଅରିଷ୍ଟି
ଅଶ୍ୱିନୀକୁମାରଙ୍କୁ ମାଗ କୁବଳୟା ଅଶ୍ୱ ଗୋଟି । ଅ.ପ. ।

ଏ ସ୍ଥଳରେ ବଙ୍ଗ ଭାରତକର୍ତ୍ତା ଯୁବନାଶ୍ୱ ରାଜାଙ୍କ ଅଶ୍ୱ ଆଣିଥିବାର କହିଅଛନ୍ତି ।

(୨) ମକର ମାସ ମଧ୍ୟେ ହୋଇବ ଆହୂତି
ଯାଥା ଯା ବୋଲି ଆଜ୍ଞା ଦେଲେ ମହାଦ୍ୟୁତି । ଅ.ପ. ।

(୩) ବଙ୍ଗ ଭାରତକର୍ତ୍ତା କାଶୀରାମ ମଧ୍ୟ ଏ ସ୍ଥଳରେ ପରିକ୍ଷିତଙ୍କ ଜନ୍ମ ବିବରଣ ଦେଇ ନାହାନ୍ତି ଏବଂ ମୂଳଗ୍ରନ୍ଥୋକ୍ତ ଅଦ୍ଭୁତ ନକୁଳଙ୍କ ବୃତ୍ତାନ୍ତର ନାମ ପର୍ଯ୍ୟନ୍ତ ତ୍ୟାଗ କରିଦେଇ ଅଛନ୍ତି ।

(୪) ଚକ୍ଷୁଷ୍ମେନାଭ୍ୟନୁଜ୍ଞାତା ବର୍ଷାଣି ଦଶପଞ୍ଚ ଚ । ଆ.ବା.ପ. ୧ ଅଧ୍ୟାୟ ।

ଅତଃପର ଆଶ୍ରମବାସିକ ପର୍ବଟି ଊନଚତ୍ୱାରିଂଶ ଗୋଟି ଅଧ୍ୟାୟ ଏବଂ ଆଶ୍ରମବାସ, ପୁତ୍ରଦର୍ଶନ ଓ ନାରଦାଗମନ ନାମକ ତିନିଗୋଟି ଉପପର୍ବରେ ଯୁତ ଅଟେ । ସମସ୍ତ ବାଧାବିଘ୍ନରୁ ସମୁତ୍ତୀର୍ଣ୍ଣ ସଂପ୍ରାପ୍ତ ସାମ୍ରାଜ୍ୟ ପାଣ୍ଡବମାନଙ୍କର ନିରାମୟ ଗୃହାଶ୍ରମବାସ ଏବଂ ବୃଦ୍ଧରାଜ ଧୃତରାଷ୍ଟ୍ର ପ୍ରଭୃତିଙ୍କର ବାନପ୍ରସ୍ଥାଶ୍ରମନିବାସ ଏଥିରେ ବର୍ଣ୍ଣିତ ବୋଲି ଏହି ପର୍ବର ନାମ ଆଶ୍ରମବାସିକ ହୋଇଅଛି । ସୌଭ୍ରାତ୍ରଭୂଷିତ ଯୁଧିଷ୍ଠିର ରାଜ୍ୟାଶ୍ରମରେ ଭ୍ରାତୃକଳତ୍ରାଦି ସହ ସୁଖସମ୍ଭୋଗରେ ରହି ଜ୍ୟେଷ୍ଠପିତା ଧୃତରାଷ୍ଟ୍ରଙ୍କ ଆଦେଶକ୍ରମରେ ପ୍ରଜାନିର୍ବିଶେଷ ପ୍ରଜାମାନଙ୍କ ପାଳନରେ ତତ୍ପର ହେଲେ । ଅନବରତ ଧୃତରାଷ୍ଟ୍ରଙ୍କ ଶୁଶ୍ରୂଷା-ବ୍ରତରେ ବ୍ରତୀ ହେଲେ । ଦ୍ରୌପଦୀ ପ୍ରଭୃତି ମଧ ଗାନ୍ଧାରୀ ଦେବୀଙ୍କ ସେବାରେ ସନ୍ତତ ଅନୁରକ୍ତ ରହିଲେ । ଏପରି ପଞ୍ଚଦଶ ବର୍ଷ ଅତୀତ ହେଲା ।( ୧ ) ଯୁଧିଷ୍ଠିରାଦି ଭ୍ରାତୃଚତୁଷ୍ଟୟ ଓ ଦ୍ରୌପଦୀ ପ୍ରଭୃତି ଦେବୀମାନେ ବୃଦ୍ଧରାଜା ଓ ରାଣୀଙ୍କର ଆଦେଶ ସମାଶ୍ରୟରେ ଏବଂ ସେବାସମାହିତ ହୃଦୟରେ କାର୍ଯ୍ୟ କରୁଥିଲେ ସୁଦ୍ଧା ସମୟ ସମୟରେ ଭୀମସେନ ପୂର୍ବ ଦୁଃଖ ସ୍ମରଣରେ ଦୁର୍ମନାୟମାନ ହୋଇ ଯେଉଁ ଶଲ୍ୟଭୂତ କଟୂତର ବାକ୍ୟମାନ ପ୍ରକାଶ କରନ୍ତି, ତାହା ଶୁଣି ବୃଦ୍ଧ ଦମ୍ପତି ଏକାନ୍ତ ବିଷଣ୍ଣ ଓ ବିଗଳିତ ହୃଦୟ ହୋଇପଡ଼ନ୍ତି । ଜ୍ୟେଷ୍ଠତାତ ଓ ମାତାଙ୍କର ଭୀମଙ୍କ ପରୁଷତର ବାକ୍ୟରୁ ସଂଜାତ ଏତାଦୃଶ ମାନସିକ ଦୁରବସ୍ଥା ଯୁଧିଷ୍ଠିରାଦି ଅବଗତ ନ ଥିଲେ । ସେ ଦୁହେଁ ସୁଦ୍ଧା ତାହାଙ୍କ ନିକଟରେ ଭୀମଙ୍କର କର୍କର-କର୍କଶତା ପ୍ରକାଶ କରନ୍ତି ନାହିଁ । ଯୁଧିଷ୍ଠିରାଦିଙ୍କର ଅନନ୍ୟ ସାଧାରଣ ସମାଦର ଓ ଭକ୍ତିରେ ଯେ କୌଣସି ପ୍ରକାରେ ପଞ୍ଚଦଶ ବର୍ଷ ଯାପିତ କଲେ । ତେଣିକି ଆଉ ଭୀମଙ୍କ ବାଗ୍‌ବାଣ ଅସହ୍ୟ ବାଧା ସହି ନ ପାରି ବାନପ୍ରସ୍ଥାର୍ଥ ବନକୁ ପ୍ରସ୍ଥାନ କରିବା ପାଇଁ ଯୁଧିଷ୍ଠିରଙ୍କୁ ଜଣାଇଲେ । ସେଥିରେ ଯୁଧିଷ୍ଠିର ଯତ୍‌ପରୋନାସ୍ତି ଦୁଃଖିତ ହେଲେ । ଆପଣ ବନକୁ ଗଲେ ମୋର ରାଜ୍ୟ ପ୍ରଭୃତିରେ କୌଣସି ପ୍ରୟୋଜନ ନାହିଁ, ଆପଣ ମୋର ସର୍ବସ୍ୱ, ଆପଣ ଯଦି ଅନ୍ୟ ଭାବନା କରନ୍ତି, ତେବେ ଆପଣଙ୍କ ଔରସ ପୁତ୍ର ଯୁଯୁତ୍ସୁ ରାଜା ହୁଅନ୍ତୁ ମୁଁ ବନକୁ ଯିବି, ଏପରି ତାହାଙ୍କୁ ନିବେଦନ କଲେ । ଧୃତରାଷ୍ଟ୍ର କହିଲେ, ବତ୍ସ ! ମୋର ସେ ଭାବନା ନାହିଁ, ମୁଁ ନିତାନ୍ତ ବୃଦ୍ଧ ହେଲିଣି, ଆମ୍ଭମାନଙ୍କର କୁଳପ୍ରଥା ମଧ ଏହି ପ୍ରକାର, ଅନୁମତି ଦିଅ, ବାନପ୍ରସ୍ଥରେ ରହିବି, ସଞ୍ଜୟ ଓ ବିଦୁରଙ୍କୁ ସଙ୍ଗରେ ନେବି । ତଦା ତତ୍ରାଗତ ବ୍ୟାସଦେବ ଧୃତରାଷ୍ଟ୍ରଙ୍କ ଅଭିଳାଷକୁ ଅନୁମୋଦନ କଲାରୁ ଯୁଧିଷ୍ଠିର ମଧ ସମ୍ମତ ହେଲେ । ଧୃତରାଷ୍ଟ୍ର ଭୀମଙ୍କ ଅନିଚ୍ଛାସତ୍ତ୍ୱେ ଯୁଧିଷ୍ଠିରଙ୍କର ଅକ୍ଷୟ ବିତ୍ତକୋଷରୁ ଅଶେଷ ଧନ ଅଣାଇ ଭୀଷ୍ମାଦି ଓ ଦୁର୍ଯ୍ୟୋଧନାଦିଙ୍କର ଶ୍ରାଦ୍ଧକର୍ମମାନ

---

( ୧ ) ତତଃ ପଞ୍ଚଦଶେ ବର୍ଷେ ସମତୀତେ ନରାଧିପ ।
ରାଜା ନିର୍ବେଦମାପେଦେ ଭୀମବାଗ୍‌ବାଣପୀଡ଼ିତଃ ॥
ଆ. ବା.ପ. ୩ ଅଧ୍ୟାୟ ।

କରି ଅସଂଖ୍ୟ ମହତ୍ ଦାନମାନ ପ୍ରଦାନ କଲେ । ଏହି ବିଧାନ କାର୍ତ୍ତିକରେ ଘଟିଥିବାର ଉକ୍ତ ଅଛି ।(୧) ତାର ପରଦିନ ଧୃତରାଷ୍ଟ୍ର ବିଦୁର ଓ ସଞ୍ଜୟଙ୍କୁ ସଙ୍ଗେ ଧରି ବନପ୍ରସ୍ଥାନରେ ଉଦ୍ୟତ ହେଲେ । ଗାନ୍ଧାରୀ ସହିତ କୁନ୍ତୀଦେବୀ ବାହାରିଗଲେ । ଯୁଧିଷ୍ଠିରାଦି ଏବଂ ପୌରସ୍ତ୍ରୀବର୍ଗ ଅନେକ ବୁଝାଇଲେ, କୁନ୍ତୀ କାହାରି କଥା ମାନିଲେ ନାହିଁ, ଗାନ୍ଧାରୀ ଦେବୀଙ୍କ ଅନୁଗମନ କଲେ ।(୨) ସେମାନେ ଯାଇ ଋଷିଜନସମାକୁଳ ଭାଗୀରଥୀ କୂଳରେ କୁଟୀର ନିର୍ମାଣ କରି ତପସ୍ୟାରେ ରତ ହେଲେ । ଧୃତରାଷ୍ଟ୍ରଙ୍କ ଦିଦୃକ୍ଷାରେ ନାରଦ, ପର୍ବତ, ଦେବଳ, ସଶିଷ୍ୟଗଣ ବ୍ୟାସ ଓ ରାଜର୍ଷି ଶତଯୂପ ସେହିଠାରେ ଉପଗତ ହେଲେ । କୁନ୍ତୀଦେବୀ ସମସ୍ତଙ୍କର ଆତିଥ୍ୟ ସପର୍ଯ୍ୟା କଲେ । ସେମାନଙ୍କ ସହିତ ବହୁବିଧ ସତ୍‌କଥାଳାପରେ ନାରଦ ବିଦୁରାଦିଙ୍କର ଭବିତବ୍ୟ ଗତି ପ୍ରକାଶପୂର୍ବକ ଧୃତରାଷ୍ଟ୍ରଙ୍କର ଆଉ ତିନିବର୍ଷ ମାତ୍ର ଆୟୁଃ ସମୟ ଥିବାର ଇନ୍ଦ୍ରଙ୍କ ମୁଖରୁ ଶୁଣିଅଛୁଁ ବୋଲି କହିଲେ ।(୩)

କେତେକ ସମୟ ପରେ ଧୃତରାଷ୍ଟ୍ର ଗାନ୍ଧାରୀ ପ୍ରଭୃତିଙ୍କ ବିରହରୁ ନିତାନ୍ତ କ୍ଳାନ୍ତମନା ଯୁଧିଷ୍ଠିର ତଦ୍ଦର୍ଶନପିପାସାରେ ଭ୍ରାତୃମାନଙ୍କସହ ବନକୁ ପ୍ରସ୍ଥାନ କଲେ । ଯଥାସ୍ଥାନରେ ଗୁରୁବର୍ଗଙ୍କୁ ଦର୍ଶନ କଲେ । ଏ ସ୍ଥଳରେ ଏକାନ୍ତ ଯୋଗାସନାସୀନ ବିଦୁର ପ୍ରାଣରୋଧପୂର୍ବକ ଧର୍ମରାଜଙ୍କ ଶରୀରରେ ଲୀନ ହେବା(୪) ଏବଂ ସେ ନିଜେ ଧର୍ମଦେବ, ମାଣ୍ଡବ୍ୟ-ଶାପରୁ ବିଦୁର ରୂପେ ଜନ୍ମିଥିବା ଉକ୍ତ ଅଛି । ତା ପରେ ପୁତ୍ର ଦର୍ଶନ ଉପପର୍ବର କଥା ପ୍ରାରମ୍ଭ ହୋଇଅଛି । ପାଣ୍ଡବମାନେ ଲଘୁ-ସୈନିକ ଓ ସପରିବାର ହୋଇ ଜ୍ୟେଷ୍ଠ ପିତାଙ୍କ ନିକଟରେ ବନରେ ଏକ ମାସ ନିବାସ କରିଥିଲେ ।(୫) ସମୟରେ ବ୍ୟାସାଦି ଋଷିମାନଙ୍କ ସହ ମିଳନ ହେଲା । ତେତେବେଳେ ସର୍ବଶକ୍ତିସମ୍ପନ୍ନ ବ୍ୟାସଦେବ ପାଣ୍ଡବୀୟ ଓ

---

(୧) ମନଶ୍ଚକ୍ରେ ମହାଦାନେ କାର୍ତ୍ତିକ୍ୟାଂ ଜନମେଜୟ ।

ଆ.ବା.ପ. ୧୩ ଅଧ୍ୟାୟ ।

(୨) ତତଃ ଶବ୍ଦୋମହାନେବ ସର୍ବେଷାମଭବତ୍ତଦା ।
ଅନ୍ତଃପୁରାଣାଂ ରୁଦତାଂ ଦୃଷ୍ଟ୍ୱାକୁନ୍ତୀଂ ତଥାଗତାଂ ।।

ଆ.ବା.ପ. ୧୮ ଅଧ୍ୟାୟ ।

(୩) ତତ୍ରାହମିଦମଶ୍ରୌଷଂ ଶକ୍ରସ୍ୟ ବଦତଃ ସ୍ୱୟଂ ।
ବର୍ଷାଣି ତ୍ରୀଣି ଶିଷ୍ଟାନି ରାଜ୍ଞୋଽସ୍ୟ ପରମାୟୁଷଃ ।।

ଆ.ବା.ପ. ୨୦ ଅଧ୍ୟାୟ ।

(୪) ସ ଯୋଗବଳମସ୍ଥାୟ ବିବେଶ ନୃପତେସ୍ତନୁଂ ।
ବିଦୁରୋ ଧର୍ମରାଜସ୍ୟ ତେଜସା ପ୍ରଜ୍ୱଳନ୍ନିବ ।।

ଆ.ବା.ପ. ୨୬ ଅଧ୍ୟାୟ ।

(୫) ମାସମେକଂ ବିଜହ୍ରୁସ୍ତେ ସସୈନ୍ୟାନ୍ତଃପୁରାବନେ ।

ଆ.ବା.ପ. ୨୯ ଅଧ୍ୟାୟ ।

କୌରବୀୟ ସ୍ତ୍ରୀବର୍ଗଙ୍କର ଯୁଦ୍ଧମୃତ ପୁତ୍ରଭ୍ରାତୃଭର୍ତ୍ତୃଦର୍ଶନମୂଳକ ଅଭିଳାଷ-ପୂରଣାର୍ଥ ପ୍ରତିଶ୍ରୁତ ଓ କୃତପ୍ରତିଜ୍ଞ ହେଲେ । ତଦା ତଦାଦେଶରେ ସମସ୍ତେ ଭାଗୀରଥୀତୀରରେ ସାୟଂସନ୍ଧ୍ୟା ବନ୍ଦନାଦିରେ ଶୁଚିମନ୍ତ ହୋଇ ବସିଲେ । ବ୍ୟାସଦେବ ଗଙ୍ଗାଙ୍କ ଭିତରେ ପଶି ଏକ ଏକତଃ ନାମୋଚ୍ଚାରଣପୂର୍ବକ ଆହ୍ୱାନ କଲେ । ତଦୀୟ ଅମୋଘ ମନ୍ତ୍ରଣାରେ ଭୀଷ୍ମ ଦ୍ରୋଣ ବିରାଟ ଦ୍ରୁପଦ ପ୍ରଭୃତି ମଧ୍ୟ ସସୈନ୍ୟ ସପୁତ୍ରାଦି ହୋଇ ଜଳଭେଦପୂର୍ବକ ବହିର୍ଗତ ହେଲେ । ସମସ୍ତେ ପ୍ରତ୍ୟକ୍ଷ କରି ଅମିତ ତୋଷ ଲାଭ କଲେ । ଧୃତରାଷ୍ଟ୍ର ମଧ୍ୟ ବ୍ୟାସଙ୍କ କୃପାରୁ କ୍ଷଣକପାଇଁ ଦିବ୍ୟଚକ୍ଷୁ ପାଇ ସମସ୍ତଙ୍କୁ ଅବଲୋକନ କଲେ । ସେମାନେ ସ୍ୱର୍ଗାଗତ ପ୍ରିୟଜନଙ୍କ ସହିତ ସେହି ରାତ୍ରରେ ସହବାସ ଓ ଆଳାପ ସହ କ୍ରୀଡ଼ା କଲେ ।(୧) ପ୍ରଭାତ ଆସନ୍ନ ହେଲାରୁ ଦିବ୍ୟଲୋକମାନେ ଇନ୍ଦ୍ରାଦିଲୋକକୁ ପ୍ରସ୍ଥାନ କଲେ । ଏ ସ୍ଥଳରେ ବ୍ୟାସଦେବ ପତିଲୋକ-ଇଚ୍ଛୁକା ସ୍ତ୍ରୀମାନଙ୍କୁ ଜାହ୍ନବୀ-ଅବଗାହନରେ ଦିବ୍ୟ କଳେବର ପ୍ରଦାନପୂର୍ବକ ପତିମାନଙ୍କ ସଙ୍ଗେ ମିଳିତ କରିଥିବାର ମଧ୍ୟ ଉକ୍ତ ଅଛି । ତା ପରେ ଯୁଧିଷ୍ଠିର ଧୃତରାଷ୍ଟ୍ରଙ୍କ ସହ କେତେକ ଦିନ ଅବସ୍ଥାନ କରି ମାସ ପରିସମାପ୍ତିରେ ହସ୍ତିନାକୁ ପ୍ରତ୍ୟାବୃତ୍ତ ହେବା ପ୍ରଭୃତି କଥା ବର୍ଣ୍ଣିତ ଅଛି । ଏସବୁ ଧୃତରାଷ୍ଟ୍ରଙ୍କର ବାନପ୍ରସ୍ଥ ଧର୍ମ ଗ୍ରହଣର ଏକ ବର୍ଷ ମଧ୍ୟରେ ଘଟିଥିଲା । ଅନନ୍ତର ଦୁଇ ବର୍ଷ ପରେ ଯୁଧିଷ୍ଠିର ନାରଦଙ୍କ ମୁଖରୁ ଶୁଣି ପାରିଲେ ଯେ ସଞ୍ଜୟ ହିମାଳୟକୁ ବାହାରିଗଲେ, ଧୃତରାଷ୍ଟ୍ର ଗାନ୍ଧାରୀ ଓ କୁନ୍ତୀ ଦେବୀ ବନାଗ୍ନିରେ ଦଗ୍ଧ ହୋଇ ଦିବ୍ୟଗତି ପ୍ରାପ୍ତ ହୋଇଅଛନ୍ତି । ତେତେବେଳେ ରାଜା ଭ୍ରାତୃବର୍ଗ ଓ ସ୍ତ୍ରୀବର୍ଗ ସହ ଗଙ୍ଗାତୀରରେ ଉପଗତ ହୋଇ ଶ୍ରାଦ୍ଧାଦି କ୍ରିୟା ସମାପନ କଲେ । ଏପରି ଧୃତରାଷ୍ଟ୍ର ପୁତ୍ରମାନଙ୍କ ନିଧନ ପରେ ଅଷ୍ଟାଦଶ ବର୍ଷ ମାତ୍ର ଜୀବିତ ଥିଲେ ।(୨)

ସାରଳାଦାସଙ୍କ ଭାରତର ତାଳପତ୍ର ପୁସ୍ତକମାନଙ୍କରେ ଆଶ୍ରମବାସିକ ପର୍ବର ନାମ ଦେଖାଯାଏ ନାହିଁ । ଏହି ପାଠମାନ ଛାପା ପୁସ୍ତକରେ ତନ୍ନାମରେ ନାମିତ ହେଲେ ସୁଦ୍ଧା ବ୍ୟତ୍ୟୟ କ୍ରମରେ ଅଶ୍ୱମେଧ ପର୍ବର ପୂର୍ବେ କେବଳ ନିହିତ ହୋଇ ଅନ୍ୟାନ୍ୟ ପର୍ବର ଘଟନାମାନଙ୍କରେ ମଧ୍ୟ ମିଶ୍ରିତ ଅଛି । ଏହି ବିଭାଗରେ ତାଳପତ୍ର ପୁସ୍ତକମାନଙ୍କରେ ପର୍ବ ବିଭାଜନର ବିଲକ୍ଷଣତା ମଧ୍ୟ ଦେଖାଯାଏ । ଏଥିରେ ଆପାତତଃ ଯାଦବ ବଂଶ ବିଘାତକ ମୁଷଳୋତ୍ପତ୍ତି ବିବକ୍ଷାରେ ଅଷ୍ଟାବକ୍ର ଋଷିଙ୍କଠାରୁ କପଟ-ଗର୍ଭିଣୀ ସ୍ତ୍ରୀବେଶ

(୧) ପୁତ୍ରେଷ୍ଟ ପୁରୁଷବ୍ୟାଘ୍ରଃ କୁରବୋଽନ୍ୟେଚ ପାର୍ଥିବାଃ ।
ତାଂ ରାତ୍ରିମଖିଳାମେବଂ ବିହୃତ୍ୟ ପ୍ରୀତମାନସାଃ ।। ଆ.ବା.ପ.

(୨) ଏବଂ ବର୍ଷାଣ୍ୟତୀତାନି ଧୃତରାଷ୍ଟ୍ରସ୍ୟ ଧୀମତଃ ।
ବନବାସେ ତଥା ତ୍ରୀଣି ନଗରେ ଦଶପଞ୍ଚ ଚ ।।
ଆ.ବା.ପ. ୩୯ ଅଧ୍ୟାୟ ।

ପ୍ରଦର୍ଶକ ଯାଦବମାନେ ସର୍ବନାଶମୂଳକ ଶାପ ପାଇଥିବାର ବିବରଣ ଉକ୍ତ ହୋଇଅଛି । ଏହି ସମ୍ବାଦ ଶ୍ରବଣରେ ବିସ୍ମିତ ଓ ଚିନ୍ତିତ ଶ୍ରୀକୃଷ୍ଣ ଶାପପ୍ରସୂତ ଲୌହମୂଷଳର ବିଚୂର୍ଣ୍ଣନାର୍ଥ ଭୀମଙ୍କୁ ଆଦେଶିବା, ଭୀମ ସେପରି କରି ଅବଶିଷ୍ଟ କ୍ଷୁଦ୍ର ଖଣ୍ଡ ସମୁଦ୍ରରେ ନିକ୍ଷେପିବା, ଶ୍ରୀକୃଷ୍ଣ ଗାନ୍ଧାରୀ ଶାପର ସମୟ ପ୍ରାପ୍ତହେବା, ଯଦୁବଂଶ ନାଶ ଅବଶ୍ୟମ୍ଭାବୀ ବୋଲି ଭାବନା କରିବା, ସମୁଦ୍ର ନିକ୍ଷିପ୍ତ ମୂଷଳ-ଶକଳଟି (ଶଲାକା) ଯେଉଁ ମତ୍ସ୍ୟଗର୍ଭରେ ପତିତ ଥିଲା, ତାହାକୁ କୌଣସି କୈବର୍ତ୍ତ ନେଇ ନିଜ ମିତ୍ର ଜରା ଶବରକୁ ଦେବା, ଜରା ମତ୍ସ୍ୟଗର୍ଭରୁ ପ୍ରୋକ୍ତ ଲୌହ ପାଇ ଶର ନିର୍ମାଣ କରିବା ପ୍ରଭୃତି କଥା ପ୍ରତିପାଦିତ ଅଛି । ଏସବୁ ମୌଷଳ ପର୍ବର କଥାଂଶ ଅଦ୍ୟାବଧି ବହୁ ବର୍ଷ ପରେ କୌଣସି ପ୍ରକାରେ ଘଟିଥିଲା । ଏ ସ୍ଥଳରେ ଜରାର ନାମୋଦ୍‌ଥାପନରେ ସାଧାରଣ ଶବର ଜଣେ କୃଷ୍ଣଙ୍କୁ ନିହତ କରି ପାରିବ ବୋଲି ଯୁଧିଷ୍ଠିରଙ୍କ ଜିଜ୍ଞାସା ହେବାରୁ ପୁରାତ୍ରେତାରେ ସେ ବାଳିଙ୍କ ପୁତ୍ର ଅଙ୍ଗଦ ଥିବା, ତଦୀୟ ଉପକାରିତାରେ ସଂପ୍ରୀତ ରାମ ତଦ୍‌ପ୍ରାର୍ଥନାନୁମତେ ଦ୍ୱାପରରେ ତାହାଙ୍କ ହସ୍ତରେ ମୃତ ହେବାକୁ ବର ପ୍ରଦାନ କରିଥିବା ପ୍ରଭୃତି କାରଣିକ କଥାମାନ ମଧ ଲେଖା ଅଛି । ଏ ପର୍ଯ୍ୟନ୍ତ କଥାନକରେ ତାଳପତ୍ର ପୁସ୍ତକରେ ଗୋଟିଏ ରାମ ସ୍ତୁତିରେ ଶାନ୍ତିପର୍ବ ଅବସନ୍ନ ହୋଇଅଛି ଏବଂ ତା ପରେ ମୂଷଳ ପର୍ବର ନାମୋଲ୍ଲେଖ କେବଳ ପ୍ରଥମ ପତ୍ରରେ ଦେଖାଯାଉ ଅଛି, ମାତ୍ର ଛାପା ପୁସ୍ତକରେ ଉପରି ସୂଚିତ ପାଠତକ ଆଶ୍ରମିକ ପର୍ବର ଆଦିମ ଛ ପୃଷ୍ଠାରେ ରହିଅଛି ଏବଂ ତା ପରେ ତାହାର ଅନ୍ୟ କଥାମାନ ଲେଖାଅଛି ।

ଅନନ୍ତର ପ୍ରତିପାଦିତ କଥାଗୁଡ଼ିକ ମୂଳ ଆଶ୍ରମବାସିକ ପର୍ବର ପ୍ରାୟଶଃ ଅନୁମତ- ଭୀମଙ୍କ ବିନା ଯୁଧିଷ୍ଠିରାଦିମାନେ ଧୃତରାଷ୍ଟ୍ରଙ୍କ ଶୁଶ୍ରୁଷାରେ ବ୍ୟବହାର ଚଳାଇବା, ବନଗମନୋନ୍ମୁଖ ଧୃତରାଷ୍ଟ୍ରଙ୍କ କୃତ ଶ୍ରାଦ୍ଧାଦିର କ୍ରମ ଧୃତରାଷ୍ଟ୍ରଙ୍କ ବନପ୍ରୟାଣର କେତେକ ମାସ ପରେ ଯୁଧିଷ୍ଠିର ସ୍ତ୍ରୀବର୍ଗସହ ତାହାଙ୍କଠାକୁ ଯିବା ପ୍ରଭୃତିର ସ୍ଥୂଳ ବିବରଣମାନ ଏ ମହାଶୟ ମୂଳାନୁସରଣରେ ପ୍ରାୟଶଃ ଯଥାତଥା ଲେଖି ଅଛନ୍ତି । ମୂଳଗ୍ରନ୍ଥରେ ଯେପରି ବୃଦ୍ଧ ରାଜାଙ୍କର ବାନପ୍ରସ୍ଥ ପ୍ରୟାଣ କାର୍ତ୍ତିକରେ ସମ୍ଭବି ଥିବାର ଲେଖା ଅଛି, ତାହା ମଧ ଏ ମହାଶୟ ଠିକ୍ ପ୍ରକାଶ କରିଅଛନ୍ତି ।(୧) ଏହି ଅବଧି ତାଳପତ୍ର ପୁସ୍ତକରେ ପୂର୍ବବର୍ତ୍ତୀ ପର୍ବର (ମୂଷଳ ପର୍ବର) (୨) ପରିସମାପ୍ତି ଏବଂ ପରବର୍ତ୍ତୀ ପାଠରେ ସ୍ତ୍ରୀ ପର୍ବ ନାମ

---

(୧) କାର୍ତ୍ତିକ ଶୁକ୍ଳପକ୍ଷ ଅଟେ ଭୃଗୁବାର XXX ବାନପ୍ରସ୍ଥେ ପଶିଲେ ଅମ୍ବିକାର ବଳା । ଆଶ୍ର.ପ. ୧୫ ପୃଷ୍ଠା ।

(୨) ଏହି ପର୍ବର ଆଦ୍ୟ ପତ୍ରରେ ମାତ୍ର ମୂଷଳ ପର୍ବ ବୋଲି ନାମ ଲେଖା ଅଛି, ପାଠ ମଧରେ ଅନ୍ୟତ୍ର କେଉଁଠି ହେଲେ ସକୃଦପି ମୂଷଳ ପର୍ବ କିମ୍ବା ଆଶ୍ରମିକ ପର୍ବର ନାମ ପ୍ରଦତ୍ତ ହୋଇ ନାହିଁ ।

ଦିଆଯାଇଅଛି । (୧) କିନ୍ତୁ ଛାପା ପୁସ୍ତକରେ ଏସବୁ ଆଶ୍ରମବାସିକ ପର୍ବର ଅନ୍ତର୍ଭୁକ୍ତ । ଏଥିରେ ବ୍ୟାସଦେବ କରୁଣାବଶତଃ ଦୁଃଖିତା ସ୍ତ୍ରୀବର୍ଗଙ୍କୁ ଯୁଦ୍ଧମୃତ ପ୍ରିୟଜନମାନଙ୍କ ସହ ମିଳାଇ ଥିବାର କ୍ରମ ଏବଂ ସ୍ୱର୍ଗୀୟ ପୁରୁଷମାନେ ଦିବ୍ୟ ଦେହ ପ୍ରାପ୍ତ ହେବା ଏବଂ ନିଜ ନିଜ ସ୍ତ୍ରୀମାନଙ୍କୁ ଧରି ସ୍ୱର୍ଗକୁ ପ୍ରତ୍ୟାବୃତ୍ତ ହେବା କ୍ରମକୁ ଉତ୍କଳ ଭାରତ ରଚୟିତା ମୂଳାନୁକୃତ କରି ଅଛନ୍ତି । ମାତ୍ର ବିଦୁରଙ୍କ ମୁକ୍ତିପ୍ରାପ୍ତିର ସମୟକୁ ଏବଂ ଧୃତରାଷ୍ଟ୍ରଙ୍କର ଯୁଧିଷ୍ଠିରଙ୍କ ନିକଟରେ ଓ ବନରେ ଅବସ୍ଥାନର ସମୟ ପରିମାଣକୁ ଠିକ୍ ହୃଦୟଙ୍ଗମ କରି ପାରି ନାହାନ୍ତି । ଏ ସ୍ଥଳରେ ତାଳପତ୍ରରେ ''ସ୍ତ୍ରୀ ପର୍ବ ସଂପୂର୍ଣ୍ଣ'' ବୋଲି ଲେଖା ଅଛି, ମାତ୍ର ଛାପାରେ ଆଶ୍ରମିକ ପର୍ବ ସଂପୂର୍ଣ୍ଣ ।

ମୌଷଳ ପର୍ବ ଆଠଗୋଟି ଅଧ୍ୟାୟରେ ସମାପ୍ତ । ଅତ୍ର ବର୍ଣ୍ଣିତ ବିଷୟମାନ ଯୁଦ୍ଧ ପରେ ସଂପ୍ରାପ୍ତ ରାଜସିଂହାସନ ଯୁଧିଷ୍ଠିରଙ୍କ ରାଜତ୍ୱର ଷଟ୍‌ତ୍ରିଂଶ ବର୍ଷର ସମାସନ୍ନ କାଳରେ ଘଟିଥିଲା ।(୨) ଯଦୁବଂଶ ନାଶ ଏବଂ କୃଷ୍ଣ ଓ ବଳରାମଙ୍କ ଦେହତ୍ୟାଗ ଏହାର ପ୍ରଧାନ ଘଟନା । ଯେତେବେଳେ ଗାନ୍ଧାରୀଙ୍କ ଶାପର ଷଟ୍‌ତ୍ରିଂଶ ବର୍ଷ ଅତୀତ ହେଲା, ତେବେ ଯାଦବମାନେ ନିତାନ୍ତ ଔଦ୍ଧତ୍ୟପୂର୍ଣ୍ଣ ଓ ଅନ୍ୟାୟପରାୟଣ ହେଲେ । ଏକଦା ବିଶ୍ୱାମିତ୍ର, କଣ୍ୱ ଓ ନାରଦ ଏହି ଋଷିତ୍ରୟ ଦ୍ୱାରକାରେ ଉପଗତ ହୁଅନ୍ତେ, ଅବିନୀତ ଯାଦବମାନେ ଶାମ୍ବକୁ ଗର୍ଭବତୀ ସ୍ତ୍ରୀ ବେଶ କରି, ''ଏହାଙ୍କର କି ସନ୍ତାନ ହେବ'' ବୋଲି ଋଷିମାନଙ୍କୁ ପଚାରିଲେ । ସେମାନେ ଏମାନଙ୍କର ପରିହାସ ବଚନ ଜାଣିପାରି ଶାପ ଦେଲେ । ଋଷିମାନେ କହିଲେ, ଏଥିରୁ ମୁଷଳର ଉତ୍ପତ୍ତି ହେବ । ତଦ୍ଦ୍ୱାରା କୃଷ୍ଣ ଓ ବଳରାମ ଭିନ୍ନ ସମସ୍ତ ଯାଦବ ଧ୍ୱଂସପ୍ରାପ୍ତ ହେବେ । ଶ୍ରୀକୃଷ୍ଣ ମଧ ଏହା ଶୁଣି ଶାପନିବାରଣର କୌଣସି ଉପାୟ କରି ନ ଥିଲେ । ଶାମ୍ବ ସ୍ତ୍ରୀ ହୁଅନ୍ତୁ ବା ନ ହୁଅନ୍ତୁ, ସମୟରେ ଲୌହ ମୁଷଳ ପ୍ରସବ କଲେ । ତେତେବେଳେ ଯାଦବ ନୃପତି ଉଗ୍ରସେନଙ୍କ ଆଦେଶରେ ପ୍ରୋକ୍ତ ମୁଷଳ ଚୂର୍ଣ୍ଣୀକୃତ ଏବଂ ସମୁଦ୍ରରେ ନିକ୍ଷିପ୍ତ କରାଗଲା । ତଦବଧି କାଳ କରାଳ ରୂପରେ ପ୍ରତ୍ୟେକଙ୍କ ଗୃହରେ ଦେଖାଦେଲା । ବୀରମାନେ ଅସ୍ତ୍ରଶସ୍ତ୍ର ପ୍ରୟୋଗରେ ତାକୁ କିଛି ହିଁ କରି ପାରିଲେ ନାହିଁ । ବହୁ ଦୁର୍ନିମିତ୍ତମାନ ଘଟିଲା । ଶ୍ରୀକୃଷ୍ଣ ଏସବୁ ଦେଖି ବିଚାର କଲେ, ପୁତ୍ରଶୋକାର୍ତ୍ତା ଗାନ୍ଧାରୀଙ୍କ ଶାପ ଅବଶ୍ୟ ନିକଟରେ ଘଟିବ । ତୀର୍ଥଯାତ୍ରା ବ୍ୟପଦେଶରେ ସମସ୍ତ ଯାଦବ ପ୍ରଭାସ ତୀର୍ଥକୁ ଯିବାର ସେ ଆଦେଶ ଦେଲେ । ସମସ୍ତେ ତତ୍ର ଉତ୍ସବାରମ୍ଭରେ ସୁରାପାନ କରି ଉନ୍ମତ୍ତ ହୋଇ ଉଠିଲେ ।

---

(୧) ଇତଃପୂର୍ବେ ସ୍ତ୍ରୀ ପର୍ବକୁ ଶୋକପର୍ବ ନାମରେ ଅଭିହିତ କରି ଥିବାରୁ ଏ ସ୍ଥଳରେ ସ୍ତ୍ରୀମାନଙ୍କର ମୃତ ପୁତ୍ର ଭର୍ତ୍ତା ପ୍ରଭୃତିଙ୍କ ଦର୍ଶନମୂଳକ ଚରିତ ସଂସ୍ଥାନକୁ ସ୍ତ୍ରୀ ପର୍ବରେ ଅଭିହିତ କରିଥିବେ ।

(୨) ଷଟ୍‌ତ୍ରିଂଶେତ୍ୱଥ ସଂପ୍ରାପ୍ତେ ବର୍ଷେକୌରବନନ୍ଦନଃ ।
ଦଦର୍ଶ ବିପରୀତାନି ନିମିତ୍ତାନି ଯୁଧିଷ୍ଠିରଃ । ମୌ.ପ. ୧ ଅ:

ପରସ୍ପର କଳହ ଆରବ୍ଧ ହେଲା । ପ୍ରଥମତଃ ସାତ୍ୟକି କୃତବର୍ମାଙ୍କ ଶିରଚ୍ଛେଦ କଲାରୁ ତାହାଙ୍କ ପ୍ରତି ବୃଷ୍ଣି ଭୋଜ ଅନ୍ଧକ ପ୍ରଭୃତି ନାନା ଶାଖାର ଯାଦବମାନେ ଉତ୍ତେଜିତ ହେଲେ । ଘୋରତମ ବିମର୍ଦ୍ଦ ଘଟିଲା । ଇତଃପୂର୍ବେ ଚୂର୍ଣ୍ଣୀକୃତ ସମୁଦ୍ରନିକ୍ଷିପ୍ତ ମୁଷଳଚୂର୍ଣ୍ଣରୁ ସଂଜାତ ଏରକା ବା ଶରଗଛ ସବୁ ମୂଷଳରେ ପରିଣତ ହେଲା । ତଦ୍ଦ୍ୱାରା ଯାଦବମାନେ ଅନ୍ୟୋନ୍ୟ ଆଘାତ କରି ବିନଷ୍ଟ ହେଲେ । ସାରଳାଦାସେ ଏତାବତ୍ ପର୍ଯ୍ୟନ୍ତ ଚରିତ ସଂବିଧାନକୁ କିଞ୍ଚିତ୍‌ମାତ୍ର ବୈଷମ୍ୟରେ ଅନୁପ୍ରାଣିତ କରି ଇତଃପୂର୍ବେ ଶାନ୍ତିପର୍ବାବସାନରେ କିମ୍ବା ଆଶ୍ରମବାସିକର ପ୍ରାରମ୍ଭରେ ଏକାନ୍ତ ଅଯଥା ସ୍ଥାନ ଓ ସମୟରେ ଚିତ୍ରଣ କରିଦେଇ ଅଛନ୍ତି ।

ଶ୍ରୀକୃଷ୍ଣ ଯାଦବପ୍ରଳୟ ଦେଖି ନିଜ ସାରଥି ଦାରୁକଙ୍କୁ ଆଦେଶ ଦେଲେ, ତୁମ୍ଭେ ଶୀଘ୍ର ହସ୍ତିନାକୁ ଯାଅ, ଅର୍ଜୁନଙ୍କୁ ଡାକି ଆଣ, ସେ ଯାଦବମାନଙ୍କ କୁଳସ୍ତ୍ରୀମାନଙ୍କୁ ଦ୍ୱାରକାରୁ ହସ୍ତିନାକୁ ନିଅନ୍ତୁ, ତା' ପରେ ଶ୍ରୀକୃଷ୍ଣ ଦ୍ୱାରକା ଯାଇ ଅର୍ଜୁନାଗମନ ପର୍ଯ୍ୟନ୍ତ ସ୍ତ୍ରୀଗଣରକ୍ଷାର୍ଥ ବସୁଦେବଙ୍କୁ ନିଯୁକ୍ତ କରି ଆସି ଦେଖିଲେ ଯେ, ବଳରାମ ସମୁଦ୍ର ତୀରରେ ଯୋଗାସନରେ ଆସୀନ ରହି ଅଛନ୍ତି, ତାହାଙ୍କ ମୁଖରୁ ସହସ୍ର-ମସ୍ତକ ଶେଷନାଗ ବାହାରି ସମୁଦ୍ର ଭିତରେ ପ୍ରବେଶ କଲେ । ବଳରାମଙ୍କ ଶରୀର ପ୍ରାଣଶୂନ୍ୟ ହେଲା । ତେତେବେଳେ ଶ୍ରୀକୃଷ୍ଣ ମର୍ତ୍ତ୍ୟତ୍ୟାଗ ବାସନାରେ ଯୋଗରେ ଆସୀନ ହୋଇ ଭୂପୃଷ୍ଠରେ ଶୟନ କଲେ । ଜରା ନାମକ ଶବର ମୃଗ ଭ୍ରାନ୍ତରେ ତାହାଙ୍କ ପାଦକୁ ଶରବିଦ୍ଧ କଲା । ପରେ ସେ ଜାଣିପାରି ଦୁଃଖିତ ହେବାରୁ ଶ୍ରୀକୃଷ୍ଣ ତାହାଙ୍କୁ ସାନ୍ତ୍ୱନା ଦେଇ ଜଗଦ୍‌ଭାସକ ତେଜଃପଟଳରୂପେ ସ୍ୱର୍ଗାରୋହଣ କଲେ । ଅର୍ଜୁନ ଆସି ଦ୍ୱାରକାରେ ଶ୍ରୀକୃଷ୍ଣାଦି ଓ ବସୁଦେବାଦିଙ୍କ ଔର୍ଦ୍ଧ୍ୱଦେହିକ କ୍ରିୟା ପ୍ରଭୃତି ସାଧନାର୍ଥ ଷଟ୍‌ଦିବସ ଅବସ୍ଥାନ କରିଥିଲେ । ସପ୍ତମ ଦିବସରେ ଯାଦବକୁଳସ୍ତ୍ରୀମାନଙ୍କୁ ଧରି ହସ୍ତିନାପ୍ରୟାଣ କରୁଅଛନ୍ତି, ମାର୍ଗ ମଧ୍ୟରେ ଦସ୍ୟୁଗଣ (୧) ଯଷ୍ଟି ହସ୍ତରେ ତାହାଙ୍କୁ ଆକ୍ରମଣ କଲେ । ଯେ କି ଭୀଷ୍ମ ପ୍ରଭୃତିଙ୍କୁ ନିହତ କରି ପାରିଥିଲେ, ସମସ୍ତ ପୃଥ୍ୱୀ ଜୟ କରି ସ୍ୱର୍ଲୋକରେ ସୁଦ୍ଧା ନିଜର ପ୍ରତାପ ପ୍ରକାଶ କରି ପାରିଥିଲେ, ସେ ବର୍ତ୍ତମାନ ବର୍ବରମାନଙ୍କ ଲଗୁଡ଼ ପ୍ରହାରରେ ପରାସ୍ତ ହୋଇ ପଡ଼ିଲେ । ଗାଣ୍ଡୀବରେ ଆଉ ଶର ସନ୍ଧାନ କରିପାରିଲେ ନାହିଁ । ହାୟ ହାୟ ! କାଳର ସର୍ବଂକଷ ବିପରିଣାମ ! ହାୟ ହାୟ ! ନିୟତିର ଦୁର୍ନିବାର ମହିମା ! ଶ୍ରୀକୃଷ୍ଣ ମହିଷୀ ରୁକ୍ମିଣୀ, ସତ୍ୟଭାମା, ହୈମବତୀ, ଜାମ୍ବବତୀ ପ୍ରଭୃତିଙ୍କ ରକ୍ଷାରେ ଅର୍ଜୁନ କଥଞ୍ଚିତ୍ ସମର୍ଥ ହୋଇ ପାରିଥିଲେ,

---

(୧) ଏ ଦସ୍ୟୁମାନେ ଏକ ପ୍ରକାର ମ୍ଲେଚ୍ଛବୀର
ଏମାନଙ୍କ ବୀରତ୍ୱାଦି ଦ୍ରୋଣ ପର୍ବରେ ଉକ୍ତ ଅଛି । ଯଥା—
ଦସ୍ୟୁନାଂ ସଶିରସ୍ତ୍ରାଣୈଃ ଶିରୋଭିଃ ଲୂନମୂର୍ଦ୍ଧଜୈଃ
ଦୀର୍ଘକୂର୍ଚ୍ଚୈଃ ମହୀକୀର୍ଣ୍ଣା ବିବର୍ହୈରଣ୍ଡଜୈରିବ । ୧୧୯ ଅଃ

ମାତ୍ର ଅନ୍ୟାନ୍ୟ ସ୍ତ୍ରୀମାନଙ୍କୁ ଦସ୍ୟୁମାନେ ହରଣ କରି ନେଲେ । ଅର୍ଜୁନ ବ୍ୟାସଙ୍କ ଆଶ୍ରମରେ ପ୍ରବେଶି ସମସ୍ତ ଘଟଣା ନିବେଦନ କଲେ । ବିପରୀତ ସମୟରେ ତେଜ ବିପରୀତ ହୋଇପଡ଼େ, ଇତ୍ୟାଦି ଉପଦେଶରେ ବ୍ୟାସ ଅର୍ଜୁନଙ୍କୁ ସାନ୍ତ୍ୱନା ଦେଇ ପ୍ରକୃତିସ୍ଥ କଲେ । ଅର୍ଜୁନ ହସ୍ତିନାରେ ପ୍ରବିଷ୍ଟ ହୋଇ ଯୁଧିଷ୍ଠିରଙ୍କୁ ଯାବତୀୟ ଦୁର୍ଘଟନା ଜଣାଇଲେ ।

ଅତଃପର ସାରଳାଦାସଙ୍କ ଭାରତରେ ମୁଷଳୀ ପର୍ବ ବା ହରିବଂଶ ପର୍ବ । କିନ୍ତୁ ତାଳପତ୍ର ପୁସ୍ତକରେ ଅତ୍ର ମୁଷଳୀ ପର୍ବ ବା ହରିବଂଶ ପର୍ବର ନାମ ଲେଖା ନାହିଁ । ଏସବୁ ସ୍ୱର୍ଗାରୋହଣ ପର୍ବରେ ଅନ୍ତର୍ଭୁକ୍ତ ହୋଇଅଛି । ସୁତରାଂ ଏହାର ପ୍ରାରମ୍ଭରେ ଅର୍ଥାତ୍ ଅଶ୍ୱମେଧ ପର୍ବର ଅବସାନରେ ମନୁଙ୍କ ପ୍ରଶ୍ନରେ ଉକ୍ତ ଅଛି କି, କୃଷ୍ଣ ଓ ଅର୍ଜୁନ (ବ୍ରାହ୍ମଣଙ୍କ ଅପହୃତ ପୁତ୍ରମାନଙ୍କୁ ଆଣିବା ପ୍ରସ୍ତାବରେ) ପାତାଳ ବୈକୁଣ୍ଠରୁ ମହାବିଷ୍ଣୁଙ୍କର ଆଦେଶ ପାଇ ଅସିଲା ପରେ କଣ କଲେ ? ଏହାର ଉତ୍ତରରେ ପୁରାଣବକ୍ତା ମୁନି କହିଲେ କି, ତା ପରେ ଶ୍ରୀକୃଷ୍ଣ ''କିପରି ଯାଦବ ବଂଶ ନାଶରେ ଶୀଘ୍ର ମୁଁ ସମସ୍ତଙ୍କୁ ତ୍ୟାଗ କରି ନିଜ ସ୍ଥାନକୁ ବାହାରିଯିବି'' ଏହି ଚିନ୍ତା କଲେ । ଏଥିରୁ ସ୍ପଷ୍ଟ ବୋଧହୁଏ, ଏହାଙ୍କ ଭାରତରେ ଅଶ୍ୱମେଧ ପର୍ବ ଯେପରି ଆଶ୍ରମିକ ପର୍ବ ପରେ ଲେଖାଅଛି, ତାହା ଅନୁଲେଖକମାନଙ୍କର କିମ୍ବା ପ୍ରକାଶକମାନଙ୍କର ବ୍ୟତ୍ୟୟୀକରଣ ନୁହେ । ଗ୍ରନ୍ଥକର୍ତ୍ତା କେବଳ ଏପରି ବିଲୋମ କରି ଦେଇ ଅଛନ୍ତି । ଚରିତ୍ର ପ୍ରବାହର ଏକାନ୍ତ ଗହନତାରୁ ପୂର୍ବାପର ସମୟ ନିର୍ଦ୍ଧାରଣ ବିଚାରରାହିତ୍ୟ କେବଳ ଏହାର କାରଣ । ମୁଷଳୀ ପର୍ବର ଆଦିମଭୂତ ମୁଷଳୋତ୍ପତ୍ତିର କେତେକ ପାଠ ଯାହା କି ଶାନ୍ତିପର୍ବାବସାନରେ କିମ୍ବା ଆଶ୍ରମବାସିକ ପର୍ବାରମ୍ଭରେ ଦେଖାଯାଏ, ତାହା ସୁଦ୍ଧା ଭବିଷ୍ୟତ୍ ସୂଚନା କ୍ରମରେ ନିଜେ ଆସ୍ଥାନରେ ଲେଖିଦେଇ ଅଛନ୍ତି ବୋଲି ମଧ୍ୟ ବିଶ୍ୱାସ ହୁଏ । ଏହି ମୁଷଳୀ ପର୍ବ ବା ହରିବଂଶ ପର୍ବରେ ଏ ମହାଶୟ ଅନେକଗୁଡ଼ିଏ ମୂଳରେ ଅନୁକ୍ତ କଥାମାନଙ୍କର ଅବତାରଣା କରିଅଛନ୍ତି । ଉଦ୍ଧବଙ୍କ ପ୍ରତି ଶ୍ରୀକୃଷ୍ଣଙ୍କ ଜ୍ଞାନୋପଦେଶରେ ଗାଲମାଧବ ରାଜା ଶ୍ରୀକୃଷ୍ଣଙ୍କ ମୃତ କଳେବର ନେଇ ଯମନିକ ତୀର୍ଥସ୍ଥ ନୀଳଭୂଧର କନ୍ଦରରେ ରଖିଥିବାର ଲେଖାଅଛି । ମୂଳଗ୍ରନ୍ଥରେ ଏ ସମୟରେ ପ୍ରତ୍ୟେକ ଗୃହରେ ଯାହା କାଳର କରାଳ ରୂପ ଦର୍ଶନ ଉକ୍ତ ଅଛି, ତଦନୁକରଣରେ ଏ କବି ମହାଶୟ ଦ୍ୱାରକାରେ ବିଚିତ୍ର କୋକୁଆ ଭୟର ଆବିର୍ଭାବ କରାଇ ଅଛନ୍ତି । ପ୍ରଭାସ ତୀର୍ଥଯାତ୍ରାର କଥା ଉଲ୍ଲେଖ ନ କରି ଯମୁନା ତୀରରେ ସମସ୍ତ ଯାଦବ କାଦମ୍ବରୀରେ ମତ୍ତ ହୋଇ ଶସ୍ତ୍ରାସ୍ତ୍ର ଓ ନିକ୍ଷିପ୍ତ ମୁଷଳୀ ଚୂର୍ଣ୍ଣରୁ ଜାତ ଏରକାର ଆଘାତ ପ୍ରତିଘାତରେ ବିନିପାତ ହେବାର କହନ୍ତି । କୃତନିର୍ଯ୍ୟାଣ-ସନ୍ନାହ ରାମଙ୍କର ସମୁଦ୍ର ପ୍ରବେଶକୁ ସୁଦ୍ଧା କିଞ୍ଚିତ ଭିନ୍ନ ପ୍ରକାର କରିଅଛନ୍ତି । ଯମୁନା ତୀରରେ ଦୋଳାୟିତ ଶିଆଳି-ଲତାରେ ପ୍ରସୁପ୍ତ ଶ୍ରୀକୃଷ୍ଣ ଜରାଶବର ଶରରେ ଆହତ ହୋଇ ତାହାଙ୍କୁ ଅର୍ଜୁନାନାୟନାର୍ଥେ ହସ୍ତିନା ପଠାଇ ଥିଲେ ବୋଲି ଲେଖି ଅଛନ୍ତି । ଏପରି ଅବସ୍ଥାରେ ''ଶ୍ରୀକୃଷ୍ଣଙ୍କୁ ଆଉ

ସ୍ପର୍ଶ କର ନାହିଁ'' ବୋଲି ଯୁଧିଷ୍ଠିର ଅର୍ଜୁନଙ୍କୁ କେତେକ ଉପଦେଶ ଦେବା ଏବଂ ଶ୍ରୀକୃଷ୍ଣ ''ମୋତେ ଏବେ ଥରେ ମାତ୍ର ସ୍ପର୍ଶ କର'' ବୋଲି ଅର୍ଜୁନଙ୍କୁ ବହୁ ଉପରୋଧ କରିଥିବା ସନ୍ଦର୍ଭର ଉଦ୍ଭାବନା କରି ଅଛନ୍ତି । କୃଷ୍ଣଙ୍କ ନିର୍ଯ୍ୟାଣ ପରେ ଜରାଶବର ଓ ଅର୍ଜୁନଙ୍କର ସଶରପ୍ରହାର ବିବାଦ, କୃଷ୍ଣକଳେବର ଦହନାର୍ଥ କାଷ୍ଠାନୟନ ପ୍ରସଙ୍ଗରେ ଜରାଶବରଙ୍କ ଦ୍ୱାରା ପୂଜିତ ଅଗରବୃକ୍ଷ ମୂଳସ୍ଥ ଶବରନାରାୟଣ ବା ଶବରମାଧବଙ୍କର ବହୁଶାଖା ଚରିତ ଏବଂ ନୀଳଗିରିରେ କୃଷ୍ଣକଳେବରର ଭବିଷ୍ୟମାଣ ପୂଜା ସମ୍ବନ୍ଧରେ ଆକାଶବାଣୀ ଶୁଣି ଅର୍ଜୁନ ତାହା ସମୁଦ୍ରରେ ନିକ୍ଷେପିବା କଥିତ ଅଛି । (୧)

ଅତଃପର ଦ୍ୱାରକାରେ ଅର୍ଜୁନଙ୍କ କୃତ୍ୟ ବିବରଣରେ ମୂଳଗ୍ରନ୍ଥ ଅପେକ୍ଷା ଏଥିରେ ଅନେକ ପ୍ରଭେଦ ଦେଖାଯାଏ । ସୁତରାଂ ତାଳପତ୍ର ଓ ଛାପା ପୁସ୍ତକରେ ଅତ୍ରତ୍ୟ କେତେକ ଚରିତ ବିସଦୃଶ ହୋଇ ପଡ଼ିଅଛି । (୨) ମୂଳଗ୍ରନ୍ଥରେ ଉକ୍ତ ଅଛି କି ଅର୍ଜୁନ ସ୍ତ୍ରୀମାନଙ୍କୁ ଏବଂ ଏକମାତ୍ର ଅବଶିଷ୍ଟ ଯାଦବାଙ୍କୁର ବଜ୍ରଙ୍କୁ ସଂଗେ ଧରି ହସ୍ତିନାକୁ ଗଲେ, ବଜ୍ରଙ୍କୁ ଇନ୍ଦ୍ରପ୍ରସ୍ଥରେ ରାଜା କଲେ । କିନ୍ତୁ ଏହି ଭାରତରେ ସମସ୍ତ ସ୍ତ୍ରୀଗଣ ଦ୍ୱାରକାରେ କେବଳ ଅଗ୍ନି ପ୍ରବେଶ କରିଥିବା, ବଜ୍ରଙ୍କୁ ଦ୍ୱାରକା ନିକଟସ୍ଥ ବାଲୁଙ୍କା ନଦୀ ତୀର ଦେଶରେ ରାଜା କରି ଏକାକୀ ଅର୍ଜୁନ ହସ୍ତିନାକୁ ପ୍ରତ୍ୟାବୃତ୍ତ ହୋଇଥିବା ଉକ୍ତ ଅଛି । ଏହି ପର୍ବର ଚରମ ଭାଗରେ ଜରାଶବର ଶ୍ରୀକୃଷ୍ଣଙ୍କ ଆଦେଶରେ ତଦୀୟ ଶବମୂର୍ତ୍ତି ଆଣି ପୂଜା କରୁଥିବାର କ୍ରମ, ପରେ ମାଳମାଧବ ରାଜା ଜରାଶବରଙ୍କଠାରୁ ସେହି ମୂର୍ତ୍ତି ପାଇବାର କ୍ରମ, ଇନ୍ଦ୍ରଦ୍ୟୁମ୍ନ ନୀଳାଚଳରେ ପ୍ରାସାଦାଦି ନିର୍ମାଣ କରାଇଥିବାର ବିବରଣ, ମାର୍କଣ୍ଡେୟ ଋଷିଙ୍କ ସମ୍ବନ୍ଧରେ ନାନା କଥାର ପ୍ରସ୍ତାବ ଏବଂ ଜରାଶବର ଓ ଇନ୍ଦ୍ରଦ୍ୟୁମ୍ନଙ୍କ ସମ୍ବାଦରେ ଦାରୁବ୍ରହ୍ମମୂର୍ତ୍ତି ନିର୍ମାଣ ପ୍ରଭୃତି ନାନା ପ୍ରକାର କଥାମାନଙ୍କର ି ତୀକରଣ ହୋଇଅଛି । ଏସବୁ ଚରିତଗୁଡ଼ିକୁ ଉତ୍କଳର ଆଦିମହାକବି ମହୋଦୟ ଅନ୍ୟାନ୍ୟ ପୁରାଣେତିହାସମାନଙ୍କରୁ ଉତ୍ତୋଳିତ କରି ପ୍ରାସିଙ୍ଗିକ କ୍ରମରେ ଅତ୍ର ନିହିତ କରିଦେଇ ଅଛନ୍ତି । (୩)

---

(୧) ତୁ କିପାଁ ବିମୁଖ ହେଉଅଛୁ ସବ୍ୟସାଚି ।
ଅଗ୍ନି ଦେବତା ନ ପାରଇ ଭକ୍ଷି ॥
ଏ ପିଣ୍ଡ ବିଜେ କରିବେ ନୀଳଗିରି ପର୍ବତେ ।
ପୂଜା ପାଇବେ ବଡ଼ ଦିନ ପର୍ଯ୍ୟନ୍ତେ ॥
ମୁଷ. ପ. ୨୧ ପୃ:

(୨) ମୁ. ପ. ୨୨ ପୃ: ଦେଖି ବିଚାର କରନ୍ତୁ ।

(୩) ଏ ସ୍ଥଳରେ ଶ୍ରୀ ଜଗନ୍ନାଥଙ୍କ ପୂଜକ ପଣ୍ଡା ଓ ଦଇତାମାନଙ୍କର ପୂର୍ବ ବଂଶର କଥାମାନ ଲେଖି ଅଛନ୍ତି । ଏଥିରୁ ଏମାନଙ୍କ ପ୍ରତି କବିଙ୍କର ପ୍ରଗାଢ଼ ଭକ୍ତି ସୂଚିତ ହୁଏ ।

ଅତଃପର ମହାଭାରତ ଗ୍ରନ୍ଥର ସର୍ବାବସାନ ମହାପ୍ରାସ୍ଥାନିକ ଓ ସ୍ୱର୍ଗାରୋହଣ ପର୍ବର କଥା ମୂଳଗ୍ରନ୍ଥରେ ମହାପ୍ରାସ୍ଥାନିକ ତିନି ଗୋଟି ଏବଂ ସ୍ୱର୍ଗାରୋହଣ ପର୍ବ ଛଅ ଗୋଟି ଅଧ୍ୟାୟରେ ବର୍ଣ୍ଣିତ । କିନ୍ତୁ ଉତ୍କଳ ଭାରତର ଆଦିମକର୍ତ୍ତା ପ୍ରୋକ୍ତ ଉଭୟ ପର୍ବର ଏକ ଧାରାବାହିକ ଚରିତଗୁଡ଼ିକୁ ଏକାଧାରରେ ନିହିତ କରି ଏକମାତ୍ର ସ୍ୱର୍ଗାରୋହଣ ପର୍ବ ନାମରେ ସମାଖ୍ୟାତ କରି ଅଛନ୍ତି । ହିନ୍ଦୀ ବଙ୍ଗାଦି ଭାରତରେ ସୁଦ୍ଧା ଏହି କ୍ରମ ଦେଖାଯାଏ । ମୂଳ ମହାପ୍ରାସ୍ଥାନିକର ପ୍ରାରମ୍ଭରେ ଉକ୍ତ ଅଛି, ଯୁଧିଷ୍ଠିର ବୃଷ୍ଣିବଂଶର ମୌଷଳାହବରେ ସର୍ବନାଶ ସମ୍ବାଦ ଶୁଣି ଭ୍ରାତୃମାନଙ୍କ ସହ ଏକ ବିଚାରନିଶ୍ଚୟ ହୋଇ ମହାପ୍ରସ୍ଥାନରେ ମତି ବଳାଇଲେ । ଯୁଯୁତ୍ସୁଙ୍କ ତତ୍ତ୍ୱାବଧାନରେ ପରୀକ୍ଷିତଙ୍କୁ ରାଜ୍ୟରେ ଅଭିଷିକ୍ତ କଲେ । ଶ୍ରାଦ୍ଧାଦି ବିଧାନ ଓ ବ୍ୟାସ କୃପାଦିଙ୍କ ପୂଜା ସାଧନ ପରେ ଦ୍ରୌପଦୀସହ ପାଣ୍ଡବପଞ୍ଚକ ବଲ୍‌କଳ ଧାରଣପୂର୍ବକ ଗଜପୁରରୁ ବହିର୍ଗତ ହେଲେ । ଅନୁଗତ ସାଧୁଭାବ ଗୋଟିଏ କୁକ୍‌କୁର ସୁଦ୍ଧା ତାହାଙ୍କର ଅନୁଗମନ କଲା । (୧) ତେତେବେଳେ ପତିବିଯୋଗବିଧୁରା ଅର୍ଜୁନଙ୍କ ଅନ୍ୟଦାରା ଭୁଜଗାତ୍ମଜା ଉଲୂପୀ ଗଙ୍ଗାରେ ପ୍ରବେଶ କଲେ ଏବଂ ଚିତ୍ରାଙ୍ଗଦା କଥଞ୍ଚିତ୍ ଶୋକ ସମ୍ବରଣ କରି ମଣିପୁରକୁ ପ୍ରସ୍ଥାନ କଲେ । ପାଣ୍ଡବମାନେ କ୍ରମଶଃ ପୃଥିବୀ ପ୍ରଦକ୍ଷିଣ କରି ହିମାଳୟରେ ଉପଗତ ହେଲେ । ଏଥି ମଧ୍ୟରେ ଅଗ୍ନିଙ୍କ ଆଦେଶମତେ ଅର୍ଜୁନ ଦିବ୍ୟ ଧନୁ ଗାଣ୍ଡୀବକୁ ସମୁଦ୍ରରେ ନିକ୍ଷେପ କରିଥିଲେ । ଅଭ୍ରଂକଷ ତୁହିନାଚଳର ଆରୋହଣରେ ଦ୍ରୌପଦୀ, ସହଦେବ, ନକୁଳ, ଅର୍ଜୁନ ଓ ଭୀମସେନ ପର୍ଯ୍ୟାୟକ୍ରମେ ଧନଞ୍ଜୟପକ୍ଷପାତିତା, ଅନନ୍ୟସଦୃଶ ପ୍ରଜ୍ଞାଭିମାନିତା ଅନନ୍ୟସଦୃଶ ରୂପାଭିମାନିତା, ଅନନ୍ୟସଦୃଶ୍ୟ ଶୂରାଭିମାନିତା ଓ ବିକତ୍ଥନ ଦୋଷରୁ ଅର୍ଦ୍ଧ ମାର୍ଗରେ ନିପତିତ ହେବାରୁ ଯୁଧିଷ୍ଠିର ମାତ୍ର ଊର୍ଦ୍ଧ୍ୱକୁ ଉଠିଗଲେ । ପଶ୍ଚାତ୍ ବିପଶ୍ଚିନ୍ନତି ଭକ୍ତ ଶ୍ୱାନଟି ମଧ୍ୟ ଚାଲିଅଛି । ତଦା ତତ୍ରାଗତ ଇନ୍ଦ୍ର ଯୁଧିଷ୍ଠିରଙ୍କୁ ସ୍ୱର୍ଗମନାର୍ଥ ଆହ୍ୱାନ କଲେ । ଏ ସ୍ଥଳରେ ନିପତିତ ଭୀମାଦି ଭ୍ରାତୃଗଣ ଓ ଦ୍ରୌପଦୀ ଏବଂ ଅନୁଗତ ଶ୍ୱାନ ସମ୍ବନ୍ଧରେ ଯୁଧିଷ୍ଠିର ଇନ୍ଦ୍ରଙ୍କ ସହ ମତାମତ ପ୍ରକାଶପୂର୍ବକ ଇନ୍ଦ୍ରପୁରୀକୁ ପ୍ରସ୍ଥାନ କରିଥିବାର କ୍ରମ ବର୍ଣ୍ଣିତ ଅଛି । ଅନନ୍ତର ସ୍ୱର୍ଗାରୋହଣରେ ଯୁଧିଷ୍ଠିର ତତ୍ରତ୍ୟ ଦୁର୍ଯ୍ୟୋଧନଙ୍କର ସୁଶ୍ରୀକ ଅବସ୍ଥାନ ଦେଖି ଅନ୍ୟାନ୍ୟ ଭ୍ରାତୃ ପ୍ରଭୃତିଙ୍କର ଅବସ୍ଥାନ ସ୍ଥାନ ଦିଦୃକ୍ଷା କରିବା, ଦେବଦୂତ ସହ ପ୍ରସ୍ଥାନକ ଯୁଧିଷ୍ଠିରଙ୍କର ପଥ ମଧ୍ୟରେ ନରକ ଦର୍ଶନାଦିର ବିବରଣ, ପରିଶେଷରେ ଇନ୍ଦ୍ରାଦି ଦେବଗଣ ପରଦୁଃଖୀସହିଷ୍ଣୁ ନାରକୀୟବ୍ୟସନ-ବିନାଶନ-ପ୍ରଭବିଷ୍ଣୁ ଓ ସ୍ୱାର୍ଥମୂଳକ ସୁଖେଚ୍ଛାନିରାକରିଷ୍ଣୁ ଯୁଧିଷ୍ଠିରଙ୍କ ନିକଟକୁ ଆସି ତାହାଙ୍କୁ ସମାଧାନ ପ୍ରଦାନପୂର୍ବକ ଦିବ୍ୟସ୍ଥାନକୁ ଘେନିଯିବା ପ୍ରଭୃତି କଥାମାନ ବର୍ଣ୍ଣିତ ହୋଇଅଛି ।

---

(୧) ଭ୍ରାତରଃ ପଞ୍ଚ କୃଷ୍ଣା ଚ ଷଷ୍ଠୀ ଶ୍ୱା ଚୈବ ସପ୍ତମଃ ।
ଆତ୍ମନା ସପ୍ତମୋ ରାଜା ନିର୍ଯ୍ୟଯୌଗଜସାହ୍ୱୟାତ୍ ॥ ପ୍ର. ପ. ୧ଅ:

ସାରଳାଦାସ ମହାଶୟଙ୍କ ଭାରତରେ ଏ ସ୍ଥଳରେ ''ଶ୍ରୀକୃଷ୍ଣଙ୍କ ଅପ୍ରକଟ ବା ନିର୍ଯ୍ୟାଣ ପରେ କଣ ହେଲା'' ବୋଲି ମନୁ ପ୍ରଶ୍ନ କଲାରୁ ''ଅଗସ୍ତ୍ୟ ବୋଇଲେ ସାବଧାନେ ଶୁଣ । ଯୁଧିଷ୍ଠିରଙ୍କର ତୋତେ କହିବା ସ୍ୱର୍ଗାରୋହଣ ।'' ଏହା ଲେଖା ଅଛି । ତାଳପତ୍ର ପୁସ୍ତକରେ ଏହିଠାରେ ପର୍ବାବସାନ ଓ ପର୍ବାରମ୍ଭ ହୋଇନାହିଁ । ଏକାଧାରରେ ପୂର୍ବୋକ୍ତ ପାଠସହ ଏହି ପାଠ ଚାଲିଅଛି । ମାତ୍ର ଛାପା ପୁସ୍ତକରେ ଏହିଠାରୁ କେବଳ ସ୍ୱର୍ଗାରୋହଣ ପର୍ବର ଆରମ୍ଭ ହୋଇଅଛି । ଏଥିରେ ପୁଣି ଅନେକଗୁଡ଼ିଏ ଅସମ୍ଭବ ଅସଙ୍ଗତ କଳ୍ପିତ କଥାମାନ ଲେଖା ଯାଇଅଛି । ଏଗୁଡ଼ିକର ଅବସ୍ଥିତିର ସ୍ଥାନ ସୁଦ୍ଧା ଉଭୟତ୍ର (ତାଳପତ୍ର ଓ ଛାପାରେ) ସମାନ ନୁହେ । ଅତଏବ ପ୍ରଥମତଃ ବିଶ୍ୱାସ ହୁଏ, ଏ ସବୁ ଗ୍ରନ୍ଥକର୍ତ୍ତା ଲେଖି ନ ଥିବେ, ଅନ୍ୟାନ୍ୟ ଅସଙ୍ଗତପ୍ରଳାପୀ କେତେକ କାଳ ପରେ ଏହି ପ୍ରଳାପ ପ୍ରକ୍ଷିପ୍ତ କରିଥିବେ । କିନ୍ତୁ କ୍ରମଶଃ ଯୁଧିଷ୍ଠିରଙ୍କ ସ୍ୱର୍ଗାରୋହଣ ପର୍ଯ୍ୟନ୍ତ ପାଠକୁ ଦେଖି ନେଲେ ଅନେକତ୍ର ସେହି ଅସଙ୍ଗତ କାହାଣୀର ଏକଦେଶିକ ବିବରଣ ପ୍ରମାଣସ୍ୱରୂପ ଦେଖା ଯାଇଥାଏ । ତେତେବେଳେ ବିଶ୍ୱାସ ହୁଏ, ଗ୍ରନ୍ଥକର୍ତ୍ତା କେବଳ ଏହି ବିଚିତ୍ର ଚିତ୍ରଣର ଚିତ୍ରକାର । ଏହି ପର୍ବର ପ୍ରାରମ୍ଭରେ ଗୋଟିଏ ଅଳୀକ ଓ ଅସଂଗତ କଥା ଏହି – ଧର୍ମପୁର ବା ଯାଜନ ନଗରୀର ନିବାସୀ ହରି ସାହୁଙ୍କର ପଞ୍ଚଦଶ ବର୍ଷ ବୟସ୍କା ରଙ୍ଗୋବତୀ ସିଂହାଣୀନାମ୍ନୀ କନ୍ୟାର ଅପମୃତ୍ୟୁ ହରଣାର୍ଥ ଯୁଧିଷ୍ଠିର ବ୍ୟାସାଦିଙ୍କ ସମକ୍ଷରେ ତଦୀୟ ପାଣିଗ୍ରହଣ କରି ତତ୍ର ପଞ୍ଚସପ୍ତତି ବର୍ଷ ନିବାସ କରିଥିଲେ । ଏହାପରେ ଯୁଧିଷ୍ଠିର-ବିବାହିତା ପ୍ରୋକ୍ତ ବୈଶ୍ୟକନ୍ୟାଙ୍କ ଯୋଗୁଁ ଅର୍ଜୁନ ଯମଙ୍କୁ ପରାସ୍ତ କରିଥିବା ପ୍ରଭୃତି କେତେକ ସାଙ୍ଗତ୍ୟବିହୀନ କଥା ଲେଖାଅଛି । ପରୀକ୍ଷିତଙ୍କୁ ରାଜ୍ୟ ଦେବା ପ୍ରସ୍ତାବରେ ବେଦପୁର ଗ୍ରାମନିବାସୀ ଭୂକର୍ଷଣରେ ସଂପ୍ରାପ୍ତନିଧି କୃଷକ ଏବଂ ଭୂସ୍ୱାମୀ ବ୍ରାହ୍ମଣଙ୍କର ପରବିତ୍ତବିମୁଖତାର କଥାନକଟି କଳ୍ପିତ ହେଲେ ସୁଦ୍ଧା ବଡ଼ ସୁନ୍ଦର ଉପଦେଶମୂଳକ ଓ କଳିମାହାତ୍ମ୍ୟବ୍ୟଞ୍ଜକ ହୋଇଅଛି । ଏହା ପରେ ଗୃହରୁ ବହିର୍ଗତ ମହାପ୍ରାସ୍ଥାନିକ ଯୁଧିଷ୍ଠିରାଦିଙ୍କର ପ୍ରସ୍ଥାନମାର୍ଗରେ ତଣ୍ଡୁଳାହରଣାର୍ଥ ଭୀମସେନ ସାତ ଗୋଟି ବ୍ୟାଘ୍ର ବାନ୍ଧି ଧାନ୍ୟ ମଛିବା, ପ୍ରାଚୀ ତୀର୍ଥରେ ଆଭୀରୀବେଶଧାରିଣୀ ପାର୍ବତୀଙ୍କ ହସ୍ତରେ କୃତ୍ତିବାସ ଓ କୀର୍ତ୍ତିବାସ ନାମକ ଦୈତ୍ୟଦ୍ୱୟ ବିନଷ୍ଟ ହେବା, ଭୀମସେନ ତତ୍ର ଆରଡ଼କ ଦୈତ୍ୟକୁ ବିନାଶ କରିବା ପ୍ରଭୃତି କଳ୍ପିତ କଥାମାନ ଲେଖିଅଛନ୍ତି । ମୂଳଗ୍ରନ୍ଥର ଯୁଧିଷ୍ଠିରାଦିଙ୍କର ତୀର୍ଥଭ୍ରମଣ ବା ପୃଥିବୀ ପରିକ୍ରମଣର କ୍ରମ ଏବଂ ଗାଣ୍ଡୀବାଦି ଅସ୍ତ୍ରବିସର୍ଜନକ୍ରମକୁ ଏ ମହାଶୟ କିଛିତ୍ ଅନ୍ୟଥା କରି ପ୍ରକାଶ କରି ଅଛନ୍ତି । ହିମାଳୟ ଆରୋହଣରେ ମୂଳରେ ଯେପରି କ୍ରମଶଃ ଦ୍ରୌପଦୀ ପ୍ରଭୃତିଙ୍କ ପତନ, ଏ ମହାଶୟ ମଧ୍ୟ ଠିକ୍ ସେହିପରି କରି ଅଛନ୍ତି । କିନ୍ତୁ ପ୍ରୋକ୍ତ ପତନର କାରଣଭୂତଦୋଷର ଉଦ୍‌ଘାଟନକ୍ରମକୁ ମୂଳ ଅପେକ୍ଷା

କିଞ୍ଚିତ୍ ଭିନ୍ନ ପ୍ରକାର କରି ଅଛନ୍ତି । ପରନ୍ତୁ ଭୀମଙ୍କ ପତନରେ ଯୁଧିଷ୍ଠିରଙ୍କର ସ୍ୱର୍ଗମନରେ ନରକ ଦର୍ଶନକ୍ରମ କିଞ୍ଚିତ୍ ଅନ୍ୟଥା ହୋଇ ସୁଦ୍ଧା ମୂଳାନୁକୃତ ହୋଇଅଛି । ଏକାକୀ ଯୁଧିଷ୍ଠିରଙ୍କୁ ବ୍ରହ୍ମାଙ୍କ ଆଦେଶରେ ଇନ୍ଦ୍ରାଦି ଦେବତାମାନେ ଦେବସଭାରେ ଉପସ୍ଥିତ ହେବାକୁ ଆମନ୍ତ୍ରଣ କରିବା ସ୍ଥଳରେ ଧର୍ମଦେବତା କୁକ୍କୁର ସ୍ୱରୂପରେ ତାହାଙ୍କ ଅନୁଗତ ହୋଇ ଥିବାର ଲେଖିଅଛନ୍ତି । ଯଥାର୍ଥତଃ ଶଂସିତ ଶ୍ୱାନଟି ଧର୍ମଦେବତାଙ୍କର ପ୍ରଚ୍ଛନ୍ନ ରୂପ କେବଳ । କିନ୍ତୁ ଏହି ଶ୍ୱାନ ଓ ଯୁଧିଷ୍ଠିରଙ୍କର ମିଳନର ସମୟ ମାତ୍ର ଏଥିରେ ଅନ୍ୟଥା ହୋଇଅଛି । ପରିଶେଷରେ ଯୁଧିଷ୍ଠିର ଦେବସଭାରେ ଉପବିଷ୍ଟ ହୋଇ ନିଜ ପ୍ରିୟଜନମାନଙ୍କୁ ଦୃଷ୍ଟିଗୋଚର କରିବାକ୍ରମ ପ୍ରାୟଶଃ ମୂଳାନୁମତ । ମୂଳଗ୍ରନ୍ଥରେ ଯେପରି ସ୍ୱର୍ଗରେ ପ୍ରଥମତଃ ଏକମାତ୍ର ଦୁର୍ଯ୍ୟୋଧନଙ୍କର ସୁ-ଶ୍ରୀକସ୍ଥାନାବସ୍ଥାନ ଦେଖି ସକୃତ୍ ଯୁଧିଷ୍ଠିରଙ୍କ ମନରେ ଅଶାନ୍ତିର ସଂଚାର ଉକ୍ତ ଅଛି, ଏଥିରେ ସେପରି ଭାବ ଉକ୍ତ ହୋଇନାହିଁ । ଯାହାହେଉ ସାରଳାଦାସେ ମହାପ୍ରାସ୍ଥାନିକ ପାଠରେ ନାନା ପ୍ରକାର ଅସଙ୍ଗତ ଘଟନା ମିଳାଇ ସୁଦ୍ଧା ସ୍ୱର୍ଗାରୋହଣ ପାଠକୁ ପ୍ରାୟଶଃ ମୂଳାନୁରୂପ କରିଅଛନ୍ତି ।



## ଭାଷା ଓ ସାହିତ୍ୟ

ମହାଭାରତର ବିଷୟବୈଷମ୍ୟର ବିଚାରସନ୍ଦର୍ଭ ଶେଷ ହୋଇଅଛି । ପ୍ରୋକ୍ତ ମହାଗ୍ରନ୍ଥର ପ୍ରସାର ଅସୀମ ଥିବାରୁ ବିଚାରର ସିଦ୍ଧାନ୍ତ ସମାସତଃ ଲେଖି ଯାଉଁ ଯାଉଁ ସୁଦ୍ଧା ତାହାର କଳେବର ଟିକିଏ ବଢ଼ିଯାଇଅଛି । ଏପରି ହେବା ମଧ୍ୟ କଥଞ୍ଚିତ ଅସମ୍ଭବ ନୁହେ । ତଥାପି କେତେକ ପାଠକଙ୍କ ମନରେ ପଠନଶ୍ରମରେ ଅସହିଷ୍ଣୁତା ଜନ୍ମି ହୃତ୍କମ୍ପ ପର୍ଯ୍ୟନ୍ତ ଘଟାଇ ଦେଇଅଛି । ଏ ବଡ଼ ଆଶ୍ଚର୍ଯ୍ୟର କଥା । ସେମାନେ ଯତ୍‌କିଂଚିତ୍ ଦୂରଦର୍ଶିତା ସହ ସମ୍ୟକ୍ ବିଚାର କଲେ ପ୍ରୋକ୍ତ ସନ୍ଦର୍ଭର ଅବୟବମାନ ଅପେକ୍ଷାକୃତ ଆହୁରି କିଞ୍ଚିତ୍ ବଢ଼ିବାର ଥିଲା, ଏହା ଅବଶ୍ୟ ବିଶ୍ୱାସ ସହିତ ସ୍ୱୀକାର କରିବେ । ସେ ଯାହାହେଉ, ବର୍ତ୍ତମାନ ସମାଲୋଚ୍ୟ ଗ୍ରନ୍ଥର ଭାଷା ଓ ସାହିତ୍ୟ ପ୍ରଭୃତିର ବିଚାର ଯଥାସମ୍ଭବ ସଂକ୍ଷିପ୍ତଭାବରେ ଲେଖିବାକୁ ପ୍ରବୃତ୍ତ ହେଉଅଛୁଁ । ଅଭିଜ୍ଞ ପାଠକେ ତଦୀୟ ଗୁଣଦୋଷାହରଣରେ ତତ୍ପର ହେବେ ।

ସାରଳା ମହାଭାରତ ଗ୍ରନ୍ଥର ଭାଷା ସର୍ବତ୍ର ଅତି ସରଳତା ଓ ପ୍ରାଞ୍ଜଳତାରେ ଏକପ୍ରଖ୍ୟ ଅଟେ । ଯେ କୌଣସି ଅଂଶ ଦେଖିବେ, ନିସର୍ଗ-ସୌନ୍ଦର୍ଯ୍ୟରେ ମନୋହର । ତତ୍କାଳୀନ ଓଡ଼ିଆ ଭାଷାର ଶୈଶବାବସ୍ଥାରେ ଏତାଦୃଶ ରମଣୀୟତା ଓ ସୌଷ୍ଟବର ଆବିର୍ଭାବ କେବଳ ସାରଳାଦାସ ମହାଶୟଙ୍କର ଅସାଧାରଣ ବୁଦ୍ଧିମତ୍ତା ଓ ସହୃଦୟତାର

ଫଳ, ଏହା କହିବା ବାହୁଲ୍ୟ ମାତ୍ର । ଏହାଙ୍କ ସମୟର ଖୋଦିତ ଲିପି ଓ ଶାସନପତ୍ର ପ୍ରଭୃତିର ଭାଷା ସହ ଏହି ଭାରତୀୟ ଭାଷାର ତୁଳନା କରିନେଲେ ଏହା ଯେ କବିଙ୍କ ମତିମରମତାରୁ ବହୁ ଗୁଣରେ ପରିମାର୍ଜିତ ଓ ପରିବର୍ଦ୍ଧିତ ହୋଇଅଛି, ଏହା ସମସ୍ତେ ଅବଶ୍ୟ ଅକୁଣ୍ଠତାରେ ବିଶ୍ୱାସ କରିବେ । ଏହି ପ୍ରକାଣ୍ଡ ମହାଭାରତ ଗ୍ରନ୍ଥରେ କବି ମହୋଦୟ ନିଜର ପରମାରାଧ ଦେବତାସ୍ୱରୂପ ଅର୍ଭକତ୍ୱାପନ୍ନ ମାତୃଭାଷାକୁ ପରିପୁଷ୍ଟାଙ୍ଗ ଓ ସମାପ୍ତ-ସୌନ୍ଦର୍ଯ୍ୟ କରିବା ପାଇଁ ତାଦୃଶ କୌଣସି ଓଡ଼ିଆ ପୁସ୍ତକାଦିର ଆଶ୍ରୟ କିମ୍ୱା ସାହାଯ୍ୟ ମଧ ପାଇପାରି ନ ଥିଲେ । କେବଳ ସ୍ୱକୀୟ ମତିମତ୍ତା ଓ ସୌହୃଦ୍ୟବତ୍ତାକୁ ଆଶ୍ରୟ ଓ ସହାୟ କରି ଭାଷାକୁ ଏତେଦୂର ପରିପୁଷ୍ଟ କରିଅଛନ୍ତି ଯେ, ପଞ୍ଚଶତାଧିକ ବର୍ଷ ବ୍ୟାପୀ ସଂସ୍କାର ଓ ସଂବର୍ଦ୍ଧନଦ୍ୱାରା ଆଧୁନିକ ସାହିତ୍ୟର ଭାଷା ଯାଦୃଶ ସୌନ୍ଦର୍ଯ୍ୟ ସହ ମସ୍ତକୋତ୍ତୋଳନ କରି ସ୍ୱୀୟ ରୂପବତୀ ଭଗିନୀମାନଙ୍କୁ ଚମତ୍କୃତ କରୁଅଛି, ତଦପେକ୍ଷା ଏହାର ସୌନ୍ଦର୍ଯ୍ୟ ଅଧିକ ନ୍ୟୁନ ନୁହେ । କେତେକ ଅଂଶ ମାତ୍ର ଛାଡ଼ିଦେଲେ ଅବଶ୍ୟ ସ୍ୱୀକାର କରିବାକୁ ହେବ ଯେ, ଭାଷାର ଇଦାନୀନ୍ତନ ରୂପ ଅପେକ୍ଷା ତଦାନୀନ୍ତନ ସହଜ ସୁନ୍ଦର ମୌଳିକ ରୂପରେ ଜାତୀୟତାର ଅଳଙ୍କାରମାନ ସମଧିକତଃ ଜାଜ୍ୱଲ୍ୟମାନ ରହିଅଛି । ଓଡ଼ିଆ ଭାଷାର ଏହି ଜାତୀୟ ଅଳଙ୍କାର ନିଚୟର ପ୍ରଧାନ ସୃଷ୍ଟିକର୍ତ୍ତା ସାରଳାଦାସ କବି କେବଳ, ଏହା କହିବା ଅତ୍ୟୁକ୍ତି ନୁହେ । କାରଣ ଏହାଙ୍କ ପୂର୍ବରୁ ଓଡ଼ିଆ ଭାଷାର ପ୍ରଚାର ଗ୍ରନ୍ଥରୂପରେ ନ ଥିଲା, ଏହା କହିଲେ ଚଳେ । ଯାହା କିଛି ଥିବ, ତାହା ଅତି ସାମାନ୍ୟ ଓ ଅତିପ୍ରମିତ । ଏହାଙ୍କ ପୂର୍ବେ 'କେଶବ କୋଇଲି' 'ଗୋପୀଭାଷା' ପ୍ରଭୃତି କେତେକ ଅତି କ୍ଷୁଦ୍ର ପୁସ୍ତକ ଛଡ଼ା ଆଉ କିଛି ଥିବାର କେହି ଜାଣନ୍ତି ନାହିଁ । ଅତଏବ କହୁଁ, ସାରଳାଦାସେ କେବଳ ଓଡ଼ିଆ ଗ୍ରନ୍ଥର ପ୍ରାଥମିକ ପ୍ରବର୍ତ୍ତକ ଏବଂ ଓଡ଼ିଆ ଭାଷାର ପ୍ରଧାନ ପରିପୋଷକ ।

ପାଠକେ ! ବିଚାର କରନ୍ତୁ, ବର୍ତ୍ତମାନ ଯେ କୌଣସି ଭାଷା ବା ସାହିତ୍ୟରେ ଲୋକଙ୍କର ଅଭିଜ୍ଞତାର ଉତ୍ପତ୍ତି ସକାଶେ କେତେ ପ୍ରକାର ସୁଗମ ଉପାୟ ଓ ଉପକରଣମାନ ବୁଦ୍ଧି ସମକ୍ଷରେ ଉପସ୍ଥାପିତ ହେଲାଣି; ଏହାର ଶତାଂଶରୁ ଏକ ଅଂଶ ସୌନ୍ଦର୍ଯ୍ୟ ସୁଦ୍ଧା ସାରଳାଦାସଙ୍କ ସମୟରେ ସୁପ୍ରାପ୍ୟ ନଥିଲା । ଯେ କୌଣସି ପ୍ରକାର ପ୍ରୟୋଗରେ ହୃଦୟ ସନ୍ଦିହାନ ହେଲେ, ତାହା ଅର୍ହ କ ଗର୍ହ, ଏହା ଭାବିବାକୁ ଆଦର୍ଶ ରୂପେ ଖଣ୍ଡିଏ ସୁଦ୍ଧା ଓଡ଼ିଆ ପୁସ୍ତକ ନ ଥିଲା, କେବଳ ସ୍ୱକୀୟ ଅସାମାନ୍ୟ ବୁଦ୍ଧିକୁ ସମ୍ବଳ କରି ସାରଳାଙ୍କ ବରପୁତ୍ର ଭାଷାକୁ ଏପରି ସୁନ୍ଦର କରିପାରିଅଛନ୍ତି, ଏଥିରେ କି କାହାର ଅବିଶ୍ୱାସ ହୋଇପାରେ ? ଆଜିକାଲି ଯେତେ ଲେଖକ ବା କବି ଅଛନ୍ତି, ସେମାନଙ୍କ ମଧରୁ କେତେ ଜଣ ଏତାଦୃଶ ଅନନ୍ୟାଶ୍ରୟ ରହି ପ୍ରଗାଢ଼ କର୍ମଠବ୍ରତରେ ବ୍ରତୀ ହୋଇ ସିଦ୍ଧିଲାଭ

କରିପାରିବେ ? ଆମ୍ଭମାନଙ୍କ ମଧ୍ୟରୁ କେତେ ଜଣ ଗୋଟିଏ କିମ୍ବା ଅସାଧାରଣ ଶବ୍ଦ ମାତ୍ରର ନିଃସନ୍ଦିଗ୍ଧ ଅର୍ଥ ପ୍ରତିପତ୍ତି ପାଇଁ ଶବ୍ଦକୋଷ ଆଲୋଡ଼ନ କରୁ ନାହାନ୍ତି ? ଗୋଟିଏ ପ୍ରୟୋଗ ଦୋଷଶୂନ୍ୟ କି ନା, ଜାଣିବା ପାଇଁ ବ୍ୟାକରଣର ପୃଷ୍ଠାମାନ ଲେଉଟାଇ ସୁଦ୍ଧା ସଂଦିଗ୍ଧମନା ହେଉ ନାହାନ୍ତି ? ଅଥଚ ପ୍ରୟୋଗଟି ରୀତିମତ ରଖି ଜାଣିବାପାଇଁ ପୂର୍ବ କବିମାନଙ୍କ କାବ୍ୟ ନାଟକାଦିର ଆଶ୍ରୟ ନେଉ ନାହାନ୍ତି କିମ୍ବା ତଦେକଶରଣ ହେଉ ନାହାନ୍ତି ? ଏ ସବୁ ଉପାୟ ଓ ଉପକରଣ ସାରଳାଦାସଙ୍କ ସମୟରେ ଥିଲା ? ଏତାଦୃଶ ଆଶ୍ରୟ ସହାୟ ଉପାୟାଦିର ଅଭାବ ସତ୍ତ୍ୱେ ଏ ମହୋଦୟ ନିଜର ନିରଳସ ବୁଦ୍ଧିମତ୍ତା, ପ୍ରତ୍ୟୁତ୍ପନ୍ନ ମତିମତ୍ତା ଓ ସ୍ମୃତିମତ୍ତାର ବଳରୁ ଏକାଧାରରେ ପ୍ରାୟ ଷାଠିଏ ସହସ୍ର ପଦ ଏକରୂପ କରି ଲେଖି ଯାଇ ଅଛନ୍ତି । ଆପଣମାନେ ଏହି ଭାରତର ଯେ କୌଣସି ଅଂଶ (ଯାହା କି ଅନୁଲେଖକଙ୍କ କର୍ତ୍ତୃକ କଳୁଷିତ ହୋଇନାହିଁ) ଫିଟାଇ ଦେଖନ୍ତୁ, ସର୍ବତ୍ର ଭାଷା ପରିପାଟୀର ଅନ୍ୟୋଽନ୍ୟତୁଲ୍ୟତା ଏବଂ କବିଙ୍କର ବୁଦ୍ଧି ଓ ଶକ୍ତିର ନିରଳସତା ପରିସ୍ଫୁଟ ପ୍ରତୀୟମାନ ହେଉଅଛି, ଜାଣି ପାରିବେ ।

ସାରଳାଦାସ କବିଙ୍କ ସମୟରେ ଓଡ଼ିଆ ଭାଷାର ଶାରୀରିକ ଅବସ୍ଥା ଅତି ଶୈଶବଭାବାପନ୍ନ ଥିଲା । ସେହି ସଂକୀର୍ଣ୍ଣଭାଷା ରାଜ୍ୟରେ ସଂସ୍କୃତ ଓ ପ୍ରାକୃତ ଭାଷା ସଂପୂର୍ଣ୍ଣତଃ ଆଧିପତ୍ୟ ସ୍ଥାପନ କରିଥିଲା । ଅତଏବ ସେ ଉଭୟର ଶାସନାନୁସାରେ ଅଥଚ ତଦୀୟ ଦତ୍ତଦ୍ରବ୍ୟ ବା ସମ୍ପତ୍ତିରେ ଅପରିପୁଷ୍ଟାଙ୍ଗ ଓଡ଼ିଆ ଭାଷାଟିକୁ ପରିପୋଷଣ କରିବାକୁ ହୋଇଥିଲା । ମାତ୍ର ଏହାର ଶାରୀରିକ (୧) ଯୋଗଜ ବଳ ଓ ବାହ୍ୟ ଚାକଚିକ୍ୟ ସଂସ୍କୃତ ଭାଷା ଅପେକ୍ଷା ବିଶେଷତଃ ପ୍ରାକୃତର ଅନୁରୂପ ହୋଇ ଉଠିଲା । ଏହା ଏହି ଭାଷାର ନୈସର୍ଗିକ ଗୁଣ । ସେହି ସମୟରେ ଓଡ଼ିଆ ଭାଷାରେ ପ୍ରାକୃତ ସତ୍ତା ସମଧିକ ଥିବାରୁ ଏହାର ଆଦିମ ଗ୍ରନ୍ଥ ଏହି ମହାଭାରତରେ ବହୁ ସ୍ଥଳରେ ସଂସ୍କୃତ ଭାଷା ଅପେକ୍ଷା ପ୍ରାକୃତର ରୀତିମତେ ଅନେକଧା ଶାବ୍ଦ ବିଭକ୍ତି କ୍ରିୟା ପ୍ରଭୃତିର ପ୍ରୟୋଗମାନ ନିହିତ କରାଯାଇ ଅଛି । ବୋଧହୁଏ, ସେହି ସମୟରେ (ପ୍ରାକୃତ ଭାଷାର ଆଘାତପ୍ରାପ୍ତ ଓଡ଼ିଆ ଭାଷାର ଶୈଶବାବସ୍ଥାରେ) ବ୍ୟାବହାରିକ ଭାଷାରେ ଯାହା ଯାହା ଚଳୁଥିଲା, ସେ ସବୁ ସାରଳାଦାସ କବି ଅବଶ୍ୟ ପ୍ରୟୋଜନାନୁସାରେ କିଛି ସଂସ୍କାର କରି ଲିଖିତ ଭାଷାରେ ଚଳାଇ ଅଛନ୍ତି । ତାହା ନ ହେଲେ ସାଂପ୍ରତିକ ଶାବ୍ଦ ବିଭକ୍ତି ଓ କ୍ରିୟା ପ୍ରଭୃତିରେ ଏତେ ସାଦୃଶ୍ୟ ଲକ୍ଷିତ ହୁଅନ୍ତା ନାହିଁ । ଏହି ମହାଭାରତରେ ଯେଉଁ ଯେଉଁ ବିଭକ୍ତି ପ୍ରତ୍ୟୟାଦିର ପ୍ରୟୋଗ ନିହିତ କରାଯାଇ ଅଛି, ଅଥଚ ସେଥି ମଧ୍ୟରୁ ଆଧୁନିକ ଭାଷା ବା ସାହିତ୍ୟରେ ଯାହା ଯାହା ପ୍ରଚଳିତ ନୁହେ, ସେ ସବୁ ତତ୍‌ପରବର୍ତ୍ତୀ ଶ୍ରୀ ବଳରାମଦାସ ପ୍ରଭୃତି

(୧) ବଳ ତ୍ରିବିଧ । ସହଜ, କାଳଜ, ଯୁକ୍ତିକୃତ ବା ଯୋଗଜ — ଇତି ଆୟୁର୍ବେଦ ।

କବିମାନେ ମଧ୍ୟ ପୂର୍ବପ୍ରଦର୍ଶିତ ପନ୍ଥାନୁକରଣରେ ବ୍ୟବହାର କରିଅଛନ୍ତି । ଶ୍ରୀମାନ୍ ସାରଳାଦାସଙ୍କ ପ୍ରଚାରିତ ଓଡ଼ିଆ ପ୍ରୟୋଗ ପ୍ରଣାଳୀର ବିଶେଷତ୍ୱ ଶ୍ରୀମଦ୍ଭାଗବତ ରଚୟିତା ଶ୍ରୀ ଜଗନ୍ନାଥଦାସଙ୍କ ସମୟ ପର୍ଯ୍ୟନ୍ତ ପ୍ରାୟଶଃ ଅକ୍ଷୁର୍ଣ୍ଣ ଥିଲା । କାବ୍ୟ ପ୍ରବନ୍ଧ ପ୍ରଣେତା ଶ୍ରୀ ଉପେନ୍ଦ୍ର ଭଞ୍ଜ ପ୍ରଭୃତିଙ୍କ ସମୟରୁ ସେଥିରୁ କେତେକ ଅଂଶ ପରିବର୍ତ୍ତିତ ଓ ପରିତ୍ୟକ୍ତ ହୋଇ ଯାଇଅଛି ।

ଏ ସ୍ଥଳରେ ପ୍ରଥମତଃ ସାରଳା-ମହାଭାରତୀୟ ଭାଷାରେ ସଂସ୍କୃତ ଓ ପ୍ରାକୃତର ଅନୁକରଣରେ ଯେଉଁ ଯେଉଁ କାରକ ବା ଶାବ୍ଦ ବିଭକ୍ତିମାନଙ୍କର ପ୍ରୟୋଗ ପ୍ରଣାଳୀ ଏବଂ ବହୁଧା କ୍ରିୟାମାନଙ୍କର ଯୋଗ-ପରିପାଟୀର ବିଶେଷତ୍ୱ ନିହିତ ଅଛି, ତାହାର ଦିଗ୍‌ଦର୍ଶନ କ୍ରମରେ କ୍ରମଶଃ ବିଚାର କରାଯାଉ । ଅଭିଜ୍ଞ ପାଠକଗଣ ସର୍ବତ୍ର ନିମ୍ନରେ ଉଦ୍ଧୃତ ପ୍ରମାଣ ବାକ୍ୟଗୁଡ଼ିକୁ ଧରି ବିଚାରରେ ପ୍ରବୃତ୍ତ ହୁଅନ୍ତୁ । ସଂସ୍କୃତରେ କେତେକ କୃଦ୍ ପ୍ରତ୍ୟୟ ଯୋଗେ ମାତ୍ର କର୍ତ୍ତାର ଷଷ୍ଠୀ ବିଭକ୍ତି (ପ୍ରଥମାର୍ଥରେ ଷଷ୍ଠୀ) ହେଉଥିବାରୁ ଏ କବି ମହାଶୟ ତାଦୃଶ ପ୍ରୟୋଗାନୁକରଣରେ ଅନେକ ସ୍ଥଳରେ ଅନ୍ୟାନ୍ୟ କ୍ରିୟାଯୋଗେ ମଧ୍ୟ ତାହାହିଁ କରିଦେଇ ଅଛନ୍ତି । (୧) ତଦ୍‌ପରବର୍ତ୍ତୀ ବଳରାମଦାସ ପ୍ରଭୃତି ସୁଦ୍ଧା ତନ୍ନିର୍ଦ୍ଦିଷ୍ଟ ପଥରେ ପଥିକ ହୋଇ ବହୁ ଦୂର ଚାଲିଯାଇ ଅଛନ୍ତି । ତାତ୍କାଳିକ ଦୈଶିକ ଭାଷାର ବ୍ୟବହାରରେ ପ୍ରାକୃତାନୁସରଣରେ 'ନ୍ତ' ଓ 'ନ୍ତି' ଏବଂ 'ତହିଁକି' ପ୍ରତ୍ୟୟାନ୍ତ ପଦମାନ ଦ୍ୱିତୀୟାର୍ଥ ବ୍ୟଞ୍ଜକରୂପେ ବ୍ୟବହୃତ ହେଉଥିବାରୁ ଏ ମହାଶୟ ସେ ସବୁ ମଧ୍ୟ ଲିଖିତ ଭାଷାରୂପରେ ସମ୍ୟକ୍ ଚଳାଇ ନେଇ ଅଛନ୍ତି ଏବଂ 'ତୁ' ଓ 'ମୁ' ପଦରେ ଦ୍ୱିତୀୟାର 'କୁ' ଯୋଗପୂର୍ବକ 'ତୁକୁ' 'ମୁକୁ' କରି ଯୁଷ୍ମଦ୍ ଓ ଅସ୍ମଦ୍ ଶବ୍ଦର ଦ୍ୱିତୀୟାବୋଧକ

---

(୧) ୧— ଦୁର୍ଲଭ କଥା କହିଲୁ ମାଗୋ ଏମନ୍ତ ପ୍ରକାର
ଆମ୍ଭର ଲଙ୍ଘିଲେ ଗୋ ନାଶ ଯିବ ସଂସାର ॥ ଆ. ପ.
ଆମ୍ଭର ଲଙ୍ଘିଲେ = ଆମ୍ଭେ ଲଙ୍ଘିଲେ ।

୨— ଆମ୍ଭର ବୋଇଲା ବୋଲି ହକାରି ବ୍ୟଗ୍ରେ ଆଣ । ବି. ପ.
ଆମ୍ଭର ବୋଇଲା ବୋଲି = ଆମ୍ଭେ ବୋଇଲୁଁ ବୋଲି ।

୩— ତୋହର ଧନୁ ଧରନ୍ତେ ତ୍ରାସ କରନ୍ତି ଦେବ ହରି । ଭୀ. ପ.
ତୋହର ଧନୁ ଧରନ୍ତେ = ତୁ ଧନୁ ଧରନ୍ତେ ବା ଧଇଲେ ।

୪— ଇନ୍ଦ୍ର ଶଙ୍କା କରଇ ତୋହର ଧନୁ ଧରୁଁ । ଭୀ. ପ.
ତୋହର ଧନୁ ଧରୁଁ = ତୁ ଧନୁ ଧରନ୍ତେ ।

୫— ତୋହର ଥାନ୍ତେ ପାଣ୍ଡବେ ନାଶ ଗଲେ କେମନ୍ତେ । ଆ. ପ.
ତୋହର ଥାନ୍ତେ = ତୁ ଥାଉଁ ଥାଉଁ । ଇତ୍ୟାଦି ।

ପଦ ନିଷ୍ପନ୍ନ କରିଦେଇ ଅଛନ୍ତି । (୧) କିନ୍ତୁ ଏ ସବୁ ବହୁ କାଳରୁ ଅନ୍ତର୍ହିତ ହୋଇ ସାରିଲାଣି ।

ଇତଃପୂର୍ବେ ଏହି ପତ୍ରିକାର ସପ୍ତମ ଭାଗ ଚତୁର୍ଥ ସଂଖ୍ୟାରେ ଏବଂ ନବମ ଭାଗ ପ୍ରଥମ ସଂଖ୍ୟାରେ ମୋର ଶ୍ରଦ୍ଧାସ୍ପଦ ବନ୍ଧୁଦ୍ୱୟ ପ୍ରସ୍ତାବତଃ ସୂଚନା କରି ଅଛନ୍ତି କି, ଏ କବି ମହାଶୟ ନିଜ ଭାଷାରେ ଦ୍ୱିତୀୟା ଓ ଚତୁର୍ଥ ଅର୍ଥବ୍ୟଞ୍ଜକ ରୂପେ 'କଇ' ପ୍ରତ୍ୟୟାନ୍ତ ପଦମାନ ପ୍ରୟୋଗ କରିଅଛନ୍ତି । କିନ୍ତୁ ଉଭୟ ସୂଚିତ ପ୍ରତ୍ୟୟର ପ୍ରମାଣ ଉଦ୍ଧୃତ କରିପାରି ନାହାନ୍ତି । 'ପୁତ୍ରକଇ' = 'ପୁତ୍ରକୁ' ଏତିକି ମାତ୍ର ପ୍ରମାଣରୂପେ ଦେଇଅଛନ୍ତି । ଆମ୍ଭେ ଆମୂଳାନ୍ତ ସାରଳ ଭାରତ ଯତ୍‌କିଂଚିତ୍ ସାବଧାନତାପୂର୍ବକ ପାଠ କରିଅଛୁଁ । ପ୍ରମାଣ ଉଲ୍ଲେଖ କରିବାକୁ କୁତ୍ରାପି 'କଇ' ପ୍ରତ୍ୟୟାନ୍ତ ପଦ ପାଇପାରି ନାହୁଁ । କେଜାଣି ଆମ୍ଭର ଅସାବଧାନ ପାଠ ସମୟରେ ତାଦୃଶ ପଦମାନ ଦୃଷ୍ଟିର କିମ୍ବା ମନର ଅନ୍ତରାଳରେ କୁତ୍ରାପି ସାବହିଥିଅ ରହିଯାଇ ଥାଇ ପାରେ । (୨) ଯାହାହେଉ ବିଶ୍ୱାସ କରି ନ ପାରୁଁ ଯେ, ସାରଳା ଦାସ ମହୋଦୟ ସାଂପ୍ରତିକ ସାହିତ୍ୟରେ ଅପ୍ରଚୁର ଅନ୍ୟାନ୍ୟ ପ୍ରାଚୀନ ପ୍ରତ୍ୟୟାନ୍ତ ପଦମାନଙ୍କ ପରି 'କଇ' ପ୍ରତ୍ୟୟାନ୍ତ ପଦମାନ ଅସକୃତ୍ ପ୍ରୟୋଗ କରି ଅଛନ୍ତି । ପରନ୍ତୁ ପ୍ରୋକ୍ତ 'କଇ' ପ୍ରତ୍ୟୟର ମୂଳ ପ୍ରକୃତି ସଂସ୍କୃତ 'କୃତେ' ପଦକୁ ଚତୁର୍ଥୀ ଅର୍ଥରେ ଅନେକତ୍ର ବ୍ୟବହାର କରି ଅଛନ୍ତି । ଯଥା –

---

(୧) ୧— ମହାଭରା ଉଦ୍ଧାରିବେ ସେ ପାଣ୍ଡବନ୍ତ ଘେନି । ଉ.ପ.
ପାଣ୍ଡବନ୍ତ = ପାଣ୍ଡବମାନଙ୍କୁ ।

୨— ଅଭେଦ କବଚ ବଜ୍ରଛଉଡ଼ି ଅମୃତକୁଣ୍ଡଳ ।
ତିନିନ୍ତି ଘେନି ରଥେ ବିଜେ ଆଖଣ୍ଡଳ ।। ଉ. ପ.

୩— ପୁରୋହିତ ବୋଇଲେ ଜୟଦ୍ରଥ ତୁହିଟିକି ।
ଆମ୍ଭେ ଯେ ଅଇଲୁ ତୋହର ତର୍ହିକି ।। ବ. ପ.

୪— ବିଜେ କର୍ଣ୍ଣକୁଣ୍ଡଳ ଯେ ମେରୁ ଶୃଙ୍ଗ ହେଲା ମୁକୁ । ଉ. ପ.
ତୁମ୍ଭଙ୍କୁ ଜିଣିଲେ ରାଜ୍ୟ ପ୍ରାପତ ହୁଏ ମୁକୁ । ଗୀ. ପ.
କୋପ କରି ଶାପ ଦେଲି ମୁଁ ଅର୍ଜୁନକୁ ।
ରାଗେ ବୋଇଲି ପୁଂସତ୍ୱ ନୋହୁ ତୁକୁ ।। ବ. ପ.
ଇତ୍ୟାଦି ।

(୨) ଏହି 'କଇ' ପ୍ରତ୍ୟୟର ବ୍ୟବହାର ଶ୍ରୀ ବଳରାମଦାସେ ନିଜ ରାମାୟଣରେ ସମଧିକ ଚଳାଇ ଅଛନ୍ତି । ବୋଧହୁଏ ଏ ମହାଶୟ କେବଳ ଏହି ପ୍ରତ୍ୟୟର ସୃଷ୍ଟିକର୍ତ୍ତା । ଯଦିଚ ଏହି ଭାରତରେ ସେହି ପ୍ରତ୍ୟୟର ବ୍ୟବହାର ଥାଏ, ତେବେ ତାଳପତ୍ର ପୁସ୍ତକରୁ ମାତ୍ର କେହିହେଲେ ଦୟାପୂର୍ବକ ପ୍ରଦର୍ଶନ କରାଇ ଦେଇ ଚିରବାଧିତ କରନ୍ତୁ, ଏହାହିଁ ପ୍ରାର୍ଥନା ।

ରଜନୀ ଶେଷେ ଭୀମଙ୍କୁ ପୁଚ୍ଛିଲେ ଯୁଧିଷ୍ଠି ।
ନିତ୍ୟକର୍ମକୃତେ ବାବୁ ଦେଖ ଜଳଘାଟୀ ।। ଆ. ପ.

ପ୍ରାକୃତରେ ଷଷ୍ଠୀ ଓ ଚତୁର୍ଥୀ ବିଭକ୍ତିର ପ୍ରଭେଦ ରହେନାହିଁ । ତଦନୁସରଣରେ ତତ୍ସନ୍ନିହିତ ପ୍ରାଚୀନ ଓଡ଼ିଆ ଭାଷାରେ ସାରଳାଦାସଙ୍କ ସମୟରୁ ଷଷ୍ଠୀ ପରିବର୍ତ୍ତେ ଚତୁର୍ଥୀ ବିଭକ୍ତିର ପ୍ରୟୋଗ ଚଳି ଆସୁଅଛି । (୧) ତଥାଚ ଏହି ମହାଶୟ ଏହାଛଡ଼ା ଆଉ କେତେକ ପ୍ରକାର ସଂସ୍କୃତରୁ ଅବିକଳାନୁକୃତ ଚତୁର୍ଥୀର କ୍ରମକୁ ସୁଦ୍ଧା (୨) ବହୁ ସ୍ଥଳରେ ବ୍ୟବହାର କରି ଅଛନ୍ତି । ଅଦ୍ୟାପି ସୁଦ୍ଧା ସେହି ସଂସ୍କୃତାନୁକୃତ ଚତୁର୍ଥୀ ପ୍ରୟୋଗ ପରିପାଟୀ ଭାଷାରେ ପ୍ରଚଳିତ ଅଛି । ଏହାଙ୍କ ରଚିତ ଗ୍ରନ୍ଥ ମଧ୍ୟରେ ଯାହାରେ, ତାହାରେ, କାହାରେ, ଆମ୍ଭରେ, ତୋହରେ ଇତ୍ୟାକାରକ ତୃତୀୟାର୍ଥ ବୋଧକ ପଦମାନ ଏବଂ ବିଶେଷ୍ୟ ଆଉ ସର୍ବନାମରୁ ଉତ୍ତର ପଞ୍ଚମୀ ଓ ସପ୍ତମୀ ବୋଧନାର୍ଥ ଔପବିଭକ୍ତିକ ପ୍ରତ୍ୟୟସ୍ୱରୂପ 'ତହୁଁ' ଓ 'ତହିଁକି' ଓ 'ତହିଁ' ଏହି ପଦମାନ ବହୁ ସ୍ଥଳରେ ବ୍ୟବହୃତ ହୋଇ ଆସିଅଛି । (୩)

---

(୧) ତୋତେ ନ କହି ମୁଁ ଯିବି କେମନ୍ତେ ।
ତୋହର ଆଜ୍ଞା ଶିରୋଧାର୍ଯ୍ୟ ମୋତେ ।। ଉ. ପ.
କୌରବ ବଂଶେ ତୁହି ମୋତେ ଯେ ସୁହୃଦ ।
ତୋହର ଥାନ୍ତେ କେହି ନ ଜନ୍ମେ ପ୍ରମାଦ ।। ଆ.ପ.
ଇତ୍ୟାଦି ।

(୨) ପୁତ୍ର କୋଳେ ଧରି ଗଙ୍ଗେ ହୋଇଲେ ବାହାର ।
ଗଙ୍ଗାଙ୍କୁ ଭୂତାର ଦେଲେ ସତ୍ୟବତୀ କୋଳ ।। ଆ.ପ.
ଈଶ୍ୱର ବୋଇଲେ ତୁହି ଯାହାକୁ ତପ କରୁ । ସ.ପ.
ଇତ୍ୟାଦି ।

ଏତାଦୃଶ ଚତୁର୍ଥୀର ତତ୍ତ୍ୱବିଚାର ମତ୍କର୍ତ୍ତୃକ ରଚିତ ଓଡ଼ିଆ ଭାଷାତତ୍ତ୍ୱର ଓଡ଼ିଆ ବିଭକ୍ତି ପ୍ରକରଣରେ ଦେଖନ୍ତୁ, ପାଇ ପାରିବେ ।

(୩) ୧— ଭୀମର ପ୍ରତିଜ୍ଞା କହିତ କି ପାରି ।
ଯାହାରେ ପାତାଳେ ପଶିଲା ଶତଶୃଙ୍ଗ ଗିରି । ବି. ପ.
ବିପତ୍ତି କାଳେ ଆମ୍ଭରେ ପାଇଲୁ ଗୋ ଦୁଃଖ । ଆ.ପ.
ଆମ୍ଭରେ = ଆମ୍ଭଦ୍ୱାରା ।

୨— ଯୋଗପୁରୁଷ ତହୁଁ ଜନ୍ମିଲେ ଗାୟତିରୀ ।
ଯାଙ୍କ ତହୁଁ ଜାତହେଲେ ମହାମନ୍ତ୍ର ଚାରି ।। ଆ.ପ.

୩— ନୀଳ ଯେହ୍ନେ ପଦ୍ମରେ ପଡ଼ନ୍ତେ ଝଳହଳି ।
ତହିଁକି ଶୋଭାବନ୍ତ କିଞ୍ଚିତ୍ ରୋମାବଳୀ ।। ମ.ପ.
ତହିଁକି = ତାହାଠାରୁ ବା ତଦପେକ୍ଷା ।

ବର୍ତ୍ତମାନ ଏତାଦୃଶ ପ୍ରୟୋଗ ଖୁବ୍ ସଂଯତ ହୋଇ ଆସିଲାଣି ସତ୍ୟ, ମାତ୍ର ଏହାଙ୍କ ପରବର୍ତ୍ତୀ ପ୍ରାଚୀନ କବିମାନେ ଏଭଳି ପ୍ରୟୋଗର ସଂପୂର୍ଣ୍ଣତଃ ପକ୍ଷପାତୀ ଥିଲେ । ସାରଳା ମହାଭାରତର ରଚନା ସମୟକୁ ଓଡ଼ିଆ ଭାଷାର ପ୍ରାକୃତାନୁଗାମିତା ସମଧିକ ଥିବାରୁ ତଦୀୟ ରୀତିମତେ ଆକାରାନ୍ତ ଶବ୍ଦରୁ ଉତ୍ତର 'ଏ' ବିଭକ୍ତି ପ୍ରତ୍ୟୟ ଯୋଗ, ସପ୍ତମୀ ବିଭକ୍ତ ବ୍ୟଞ୍ଜକରୂପେ 'ଇ' ପ୍ରତ୍ୟୟ ଯୋଗ, ବ୍ୟକ୍ତିବାଚକ ବୋଧନାର୍ଥ ସ୍ଥଳରେ ସୁଦ୍ଧା ଯାହା, କାହା ପ୍ରଭୃତି ସର୍ବନାମର ବ୍ୟବହାର ଏବଂ ବିଶେଷଣକୁ ପଶ୍ଚାଦ୍ ବିଭିନ୍ନ ରଖି ବିଶେଷ୍ୟକୁ ଦ୍ୱିତୀୟାଦି ବିଭକ୍ତିରେ ଯୁକ୍ତ କରିବା କିମ୍ବା ସେହି ସେହି ବିଭକ୍ତିର ଅର୍ଥରେ ଯୁକ୍ତ ରଖିବାର କ୍ରମ ଏଥିରେ ଅନେକତ୍ର ବ୍ୟବହୃତ ହୋଇଅଛି । (୧) ଏସବୁ ବର୍ତ୍ତମାନ ତାଦୃଶ ପ୍ରୟୋଗାର୍ହ ନୁହେ ସତ୍ୟ ମାତ୍ର ପ୍ରାୟଶଃ ସମସ୍ତ ପ୍ରାଚୀନ ପୌରାଣିକ କବିମାନେ ଆଦିକବିଙ୍କ ପ୍ରଥାନୁଗତ ହୋଇ ଅଛନ୍ତି ।

ପ୍ରାଚୀନ ଓଡ଼ିଆ ଭାଷାରେ ଶାବ୍ଦ ବିଭକ୍ତି ପ୍ରତ୍ୟୟାନ୍ତ ପଦମାନଙ୍କ ପରି କ୍ରିୟା ବିଭକ୍ତି-ଯୁକ୍ତ ପଦମାନ ମଧ୍ୟ ତାତ୍କାଳିକ ବ୍ୟାବହାରିକ ଭାଷାର ଅନୁଗୁଣ ଓ ପ୍ରାକୃତାନୁଗତ । ସେହି ସମୟରେ ଓଡ଼ିଆ ଭାଷାସହ ପ୍ରାକୃତର ସଂସ୍ରବ ଅଧିକ ଥିବାରୁ ସେ ନିଜେ ସାହଜିକ ବଳସତ୍ତାନେ ପ୍ରବଳ ଓ ପରିପକ୍ୱ ନ ଥିବାରୁ ତଥାଚ ତଦାନୀନ୍ତନ ବ୍ୟାବହାରିକ ଭାଷାର କ୍ରିୟା ପ୍ରଭୃତି ପଦମାନ ନିୟମତଃ ନିର୍ଦ୍ଦିଷ୍ଟ କରାଯାଇ ନ ଥିବାରୁ (ଏପରି ଅବସ୍ଥାରେ ପ୍ରାୟ ସମସ୍ତ ଭାଷାରେ ବିଶେଷତଃ କ୍ରିୟାପଦଗୁଡ଼ିକ ନିୟମ ରହିତ ଥାଏ ।) ତଦାଶ୍ରୟାଭୂତ ସଂସ୍କୃତ ଏବଂ ତଜ୍ଜନିତ

---

୪— ତାତହିଁ ଅଛି ଅଭେଦକବଚ ବଜ୍ରସଦୃଶ ଅମୃତକୁଣ୍ଡଳ । ବ.ପ.
ସେମାନଙ୍କ ତହିଁ କୃପଣ ନୋହିବୁ ତୁ ରାଜା । ଶା.ପ.
ଇତ୍ୟାଦି ।

(୧) ୧— ବହୁତ ବୁଝାଇ ଦେବ କହିବୁ ଗଣାଏ । ଘ.ଗ.
ଦୁର୍ବାସା ପ୍ରବେଶ ହେଲେ ଦ୍ୱାରବାଏ । ଆ. ପ.

୨— ପ୍ରବେଶ ହେଲେ ମଦ୍ୟରାଜ ଦେଖିଉ । ଉ. ପ.
ବଣା ହୋଇ ପଡ଼ିଲି ମୁଁ ତୁମ୍ଭର ହସ୍ତଇ । ବ. ପ.

୩— ଦ୍ୱାରରକ୍ଷାପାଳ କରିବାକ କାହା
ଭୋ ଯୁଧିଷ୍ଠିର ଏକା ତୁମ୍ଭେ ହୋଇବାକ ସାହା । ଅଶ୍ୱ. ପ.

୪— ଅନେକ ବ୍ୟାକୁଳ ହୋଇଲା ମେଦିନୀ ।
ଅନେକ ଉତ୍ପାତ ହୋଇଲା ଭୁବନ ତିନି । ବ.ପ.
ଭୁବନ ତିନି = ତିନି ଭୁବନରେ ।

ପ୍ରାକୃତର ଅନୁସରଣରେ ଏହାର କେତେକ କ୍ରିୟାପଦମାନଙ୍କର ବ୍ୟବହାର ଓ ତାହାରି (ସଂସ୍କୃତ ଓ ପ୍ରାକୃତର) ଅବିକଳ ରୀତିମତେ ଚାଲିଅଛି । ଏହା ଯେ କେବଳ ସାରଳାଦାସଙ୍କ ରଚନାରେ, ଏହା ନୁହେ; ଜଗନ୍ନାଥଦାସଙ୍କ ପର୍ଯ୍ୟନ୍ତ କିଞ୍ଚିଦ୍ ନ୍ୟୂନାଧିକତଃ ଚାଲି ଆସି ତଦୂପରସ୍ତାଦ୍ ଶିଥିଳତାକୁ ଭଜିଅଛି । ମାଗଧୀ ପ୍ରଭୃତି ପ୍ରାକୃତ ଭାଷାରେ ଖାଦନ୍ତି, ଗାୟନ୍ତି, ପିବନ୍ତି, ପ୍ରାପ୍ନାବନ୍ତି ପ୍ରଭୃତି ସ୍ଥଳରେ ଖାବନ୍ତି, ଗାବନ୍ତି, ପିବନ୍ତି, ପାବନ୍ତି ଇତ୍ୟାଦି ହୋଇଥାଏ । ତଦନୁଗତ ଏହି ମହାଭାରତୀୟ ଭାଷାରେ ଅନେକତ୍ର ତାହାହିଁ ଅବିକଳ ବ୍ୟବହୃତ ହୋଇଅଛି । (୧) ସଂସ୍କୃତରେ ଗଚ୍ଛସି, ବଦସି ପ୍ରଭୃତି ମଧ୍ୟମପୁରୁଷୀୟ କ୍ରିୟାପଦମାନଙ୍କ ଅନ୍ତରେ 'ସି' ବା 'ଅସି' ଥାଏ । ତଦନୁସମ୍ଭୃତ ପ୍ରାକୃତରେ ମଧ୍ୟ ହୋସି, ଦେସି ପ୍ରଭୃତି ସ୍ଥଳରେ ପ୍ରୋକ୍ତ 'ସି' ଯୁକ୍ତ ହୋଇଥାଏ । ଅତଏବ ସଂସ୍କୃତ ଓ ପ୍ରାକୃତର ସମ୍ବନ୍ଧରେ ଘନିଷ୍ଠତମ ପ୍ରାଚୀନ ଓଡ଼ିଆ ଭାଷାର ଶୈଶବ ଲୀଳାସ୍ଥଳୀ ଏହି ମହାଭାରତରେ ତାଦୃଶ କ୍ରିୟାପଦମାନଙ୍କର ବ୍ୟବହାର ମଧ୍ୟ ଏକାନ୍ତ ବିରଳ ନୁହେ । (୨) ମୂଳ ସଂସ୍କୃତର ଅନୁକରଣରେ ହେଉ କିମ୍ବା ତଦ୍ଭବ ପ୍ରାକୃତାନୁକରଣରେ ହେଉ, ମଧ୍ୟମପୁରୁଷରେ ତାଦୃଶ କ୍ରିୟାନୁଯୋଗ ସାମୟିକ ରୀତି ଅନୁସାରେ ସାଧୁ; ପରନ୍ତୁ ପ୍ରଥମ ପୁରୁଷ କିମ୍ବା (ଓଡ଼ିଆରେ ତୃତୀୟ ପୁରୁଷ) ତଦ୍‌ଶବ୍ଦର ପଦସହ ଅନ୍ୱିତ କରିବା ଉଚ୍ଛୃଙ୍ଖଳତାସୂଚକ ନୁହେ ବୋଲି କହି ନ ପାରୁଁ । (୩) ଇଦାନୀନ୍ତନ ମୌଖିକ ଓ ଲିଖିତ ଭାଷାରେ 'ଜାଣିବ' କିମ୍ବା 'ଜାଣିବେ' 'ଲେଖିବ' କିମ୍ବା 'ଲେଖିବେ', ଇତ୍ୟାଦି ଅର୍ଥରେ 'ଜାଣିବାହେବେ', 'ଜାଣିବାହେଉ', 'ଲେଖିବାହେବେ', 'ଲେଖିବାହେଉ' ଇତ୍ୟାଦି କ୍ରିୟାରୂପମାନଙ୍କର ବ୍ୟବହାର ଚଳୁଅଛି । ଏତାଦୃଶ ଭାବଦ୍ୟୋତନାର୍ଥ ଆମ୍ଭମାନଙ୍କର ଆଦିମ କବି ମହୋଦୟ ଶଂସିତ କ୍ରମାନୁଗତ ପଦମାନଙ୍କର ଚରମଭାଗ 'ହେବେ' ଓ 'ହେଉ'

---

(୧) ତା ପିତୃଲୋକେ ତାହାର ଶୋଣିତ ପିବନ୍ତି । ଆ. ପ.
ଅମରଭୁବନେ ଯେତେ ସିଦ୍ଧବିଦ୍ୟା ।
ଅର୍ଜୁନକୁ ଶିଖାବନ୍ତି ଗନ୍ଧର୍ବ ସର୍ବସିଦ୍ଧା ।। ବ. ପ.
ଦେବ ଅର୍ପିତ ଅନ୍ନ ନ ପାବନ୍ତି ଅତିଥି ନ ଚିହ୍ନିଲେ । ବ.ପ. ଇତ୍ୟାଦି ।

(୨) ଶୁଣସି ମହାରାଜା ହୋଇ ପରମ ଶାନ୍ତି । ଆ. ପ.
ତୁ ହୋ ଧନଞ୍ଜୟ ସତ୍ୟ ବଚନ କହସି । ବ. ପ.
ସେ ରମ୍ଭାକୁ ଛାଡ଼ି ଆନ ମାଗସିରେ ବଳା । ଉ. ପ.
ଦେସି ପିତା ତୋହର ବଜ୍ର ଯେ ଶକତା । ଉ. ପ. ଇତ୍ୟାଦି ।

(୩) ସେ ଯୁଗେ ପରଜା ଅରଜଇ କୃଷି ।
କାହାକୁ କିଛି ନ ଦେଇ ସବୁ ସେ ନିଏସି । ଆ. ପ. । ଇତ୍ୟାଦି ।

ବିନା କେବଳ 'ଇବା' ପ୍ରତ୍ୟୟାନ୍ତରେ ସମାପିକା କ୍ରିୟାମାନ ଅନନ୍ତ ସ୍ଥଳରେ ବ୍ୟବହାର କରି ଅଛନ୍ତି । (୧) ବର୍ତ୍ତମାନ ସେ ସବୁ ବିକୃତ ବୋଧହୁଏ । ପ୍ରାକୃତରେ ସ୍ଥାନେ ସ୍ଥାନେ ନିୟମର ବ୍ୟଭିଚାର ଯୋଗୁଁ 'ଇ' ପ୍ରତ୍ୟୟାନ୍ତ କ୍ରିୟାପଦଗୁଡ଼ିକ ଅନିର୍ଦ୍ଦିଷ୍ଟରୂପେ ପୁରୁଷ-ବଚନ-ନିର୍ବିଶେଷରେ ଭୂତାଦି କାଳତ୍ରୟରେ ବ୍ୟବହୃତ ହୋଇଥାଏ । ତନ୍ନିୟମର ନେଦିଷ୍ଟତମ ପ୍ରାଚୀନ ଓଡ଼ିଆ ଭାଷାର ସମୁଦ୍ଭବକ୍ଷେତ୍ର ସାରଳା ମହାଭାରତରେ ଏ କବି ମହୋଦୟ ତାଦୃଶ କ୍ରିୟାପଦଗୁଡ଼ିଏ ତଦନୁକରଣରେ ପ୍ରୟୋଗ କରିଦେଇ ଅଛନ୍ତି । (୨) ଏହା ଯେ କେବଳ ସାରଳାଦାସେ କରି ଅଛନ୍ତି ତାହା ନୁହେ, ତାହାଙ୍କ ପଶ୍ଚାଦ୍‌ବର୍ତ୍ତୀ ବିପଣ୍ଣିନତି କବିମାନେ ସୁଦ୍ଧା ଅନେକ ସ୍ଥଳରେ ଚଳାଇ ଦେଇ ଅଛନ୍ତି । ବର୍ତ୍ତମାନ ଏପରି ପ୍ରୟୋଗ ସର୍ବତ୍ର କରାଯାଏ ନାହିଁ ସତ୍ୟ, ମାତ୍ର ଯୋଗ୍ୟାର୍ଥ ବା ବିଧ୍ୟର୍ଥ ଓ ନିତ୍ୟପ୍ରବୃତ୍ତ ବର୍ତ୍ତମାନ ଅର୍ଥରେ

---

(୧) ଶ୍ରୀ ଅମୃତାକ୍ଷନାଥ ଚରଣେ ମୋର ସେବା ।
ମହାଭାରତ କହିବି ପ୍ରସନ୍ନ ହୋଇବା ।। ଅ.ପ.
ଭୋ ଦିଗପାଳମାନେ ବିଚାର କରିବା ।
ମୋର ଦୋଷନାହିଁ ମୋତେ ଅପଖ୍ୟାତି ନ ଦେବା ।। ବି.ପ.
ପଣ୍ଡିତଜନେ ମୋର ଦୋଷ ନ ଘେନିମା । ମୁ.ପ. ଇତ୍ୟାଦି ।

ସ୍ଥାନେ ସ୍ଥାନେ ଏଭଳି ପଦରେ କ କାରକୁ ମଧ୍ୟ ଆନୁଷଙ୍ଗିକ କରି ରଖିଅଛନ୍ତି ।
ସଂସାର ସାଗରୁ ତରିବାକ ପ୍ରାଣି । ଆଶ୍ର. ପ.
ଭୋ ଯୁଧିଷ୍ଠିର ତୁମ୍ଭେ ହୋଇବାକ ସାହା । ଅଶ୍ବ. ପ. ଇତ୍ୟାଦି ।

(୨) [କ] ଯେତେ ବତ୍ସେ ଛୁଇଁ ତେତେ ବତ୍ସେ ସ୍ନାନ କରି ।
ସେ ଦିନ ଉପବାସେ ବସିଣ ଦିନ ହରି ।। ଆଦି ପର୍ବ ।।
କରି = କରିବ, ହରି = ହରିବ ।
ଅନବର୍ତ୍ତେ ଦୁଷ୍ଟପଣ ଅଟଇ ଯାହାରି ।
କେମନ୍ତେ ତାହାକୁ ଘେନି ଅଜ୍ଞାତବାସ ତରି ।। ବି. ପ.
ତରି = ତରିବି ।
ଦଶ ଦିବସ ଅନ୍ତରେ ଯେବେ ଶିଖଣ୍ଡିକି ଆଗ କରି ।
ତେବେ ସେ ଶସ୍ତ୍ର ଛାଡ଼ିବି ସତ୍ୟ ଯେ ମୋହରି ।। ଭୀ. ପ.
ଆଗ କରି = ତୁମ୍ଭେ ଆଗ କରିବ ।

[ଖ] ଏକାନ୍ତେ ବସାଇଣ ପଦ୍ମନାଭ କୁମାରୀ ।
ପ୍ରସ୍ତାବନା ବାକ୍ୟେ ସତ୍ୟବତୀ ତିଆରି ।। ଆ. ପ.
ତିଆରି = ତିଆରିଲେ ।
ସମସ୍ତ ବାଡ଼ି ଦେବ ବସିଲି ମୁଁ ଭୁଞ୍ଜ ।
ଏସନ ବେଳେ ଦେବ ଡମ୍ବରୁ ଶବ୍ଦ ବାଜି ।। ଆ. ପ.
ବାଜି = ବାଜିଲା । ଇତ୍ୟାଦି ।

ସ୍ଥାନେ ସ୍ଥାନେ ସଂଯତଭାବରେ ପ୍ରୟୋଜନାନୁସାରେ ଏତାଦୃଶ 'ଇ' ପ୍ରତ୍ୟୟାନ୍ତ କ୍ରିୟାର ବ୍ୟବହାର ହେଉଅଛି ।(୧)

ପ୍ରୟୋଗକୁଶଳ ଶ୍ରୀମାନ୍ ସାରଳାଦାସ ମହାଶୟ କୃତସଂସ୍କାର ଆଧୁନିକ ସାହିତ୍ୟର ପ୍ରୟୋଗପ୍ରଣାଳୀକ୍ରମରେ ବାକ୍ୟର ଅକୃତ୍ରିମ ଅଳଙ୍କାରସ୍ୱରୂପ ସମୁପଯୁକ୍ତ ନାମଧାତୁ କ୍ରିୟାଗୁଡ଼ିଏ ମଧ ବହୁ ସ୍ଥଳରେ ଅତି ସୁନ୍ଦରରୂପେ ବ୍ୟବହାର କରି ଅଛନ୍ତି ।(୨) ସେଥିରେ ତାହାଙ୍କର ଭାଷା-ସୌନ୍ଦର୍ଯ୍ୟ-ପିପାସା ଥିବାର ପ୍ରତୀତ ହୁଏ । ଅଥଚ ଏତାଦୃଶ ସମୁନ୍ନତ ଲେଖାର କ୍ରିୟାମାନଙ୍କ ସଙ୍ଗେ ବିଶୁଦ୍ଧ ଓଡ଼ିଆ ବା ଦୈଶିକ ଅର୍ଥାତ୍ ଗ୍ରାମ୍ୟକ୍ରିୟା ପଦଗୁଡ଼ିଏ ସୁଦ୍ଧା (୩) ଅବିରଳ ଭାବରେ ଯତ୍ର ତତ୍ର ସାଧୁଶବ୍ଦମାନଙ୍କ ସହ ମିଶାଇ ଦେଇ ଅଛନ୍ତି । ଆଉ କେତେକ ସ୍ଥଳରେ ଧର୍ମପଦ ବା ବିଶେଷ୍ୟପଦମାନଙ୍କ ସହ 'କର' ଧାତୁ ପରିବର୍ତ୍ତରେ 'ହୋ' ଧାତୁଯୋଗେ କେତେଗୁଡ଼ାଏ ବିଲକ୍ଷଣ କ୍ରିୟା କଳ୍ପନା କରି ଯାଦୃଶ କ୍ରମରେ

---

(୧) [କ] ପଦାଙ୍କ ତାଙ୍କର ପୂରି ଦେଉଥାଉ ଚୂତମୁକୁଳର ଧୂଳି । } ଯଯାତି
[ଖ] ଅଛି କି ଭାଗ୍ୟେ ନା ଜାଣି । ଇତ୍ୟାଦି । } କେଶରବୀ

(୨) ବିବାହ ଯୋଗରେ ରାଜା ଆସଇ ସଂଭାରି । ଆ.ପ.
ସଂଭାରି = ସମ୍ଭାର କରି ।
ଯଦ୍ୟପି ଈଶ୍ୱର ଧାତା ଆସିବେ ପରିଘାଇ । ବ.ପ.
ପରିଘାଇ = ପରିଘ ପ୍ରହାରି ।
କସ୍ତୁରୀ ଗନ୍ଧ ଆମୋଦିଲା ଏକ ଯୋଜନ । ଆ.ପ.
ଆମୋଦିଲା = ଆମୋଦଯୁକ୍ତ କଲା । ଇତ୍ୟାଦି ।

(୩) ଦକ୍ଷିଣାବର୍ତ୍ତ ଶଙ୍ଖେ ନବ ତିକ ଲାଉ । ଆ.ପ.
ସପ୍ତମ ଗୋପ୍ୟସ୍ଥାନ ଲୋଡ଼ନ୍ତି ଉପଲେସି । ଆ.ପ.
ଉପଲେସି = ଉପଲକ୍ଷ କରି ।
ମାତାର ମୁଣ୍ଡ ତାର ହୃଦୟରେ ଲଥି । ବ.ପ.
ଉଳାରନ୍ତେ ଖଣ୍ଡା ଯଦି ଦୋରଲା ବିରୋଧୀ । ଉ.ପ.
ଉଳାରନ୍ତେ = ଉତ୍କୋଷ କରନ୍ତେ ।
ପାଦେ ଜଗନ୍ନାଥ ସ୍ତୁତିଲେ ଘଡ଼ଘାଳି । ବ.ପ.
ଘଡ଼ଘାଳି = ଦଣ୍ଡବତ୍ ପଡ଼ି ।
ଦାନ ଭାରାରେ ରଥ ଆଜାଣନ୍ତି ନ ଖେଦି । ଉ.ପ.
ନ ଖେଦି = ବ୍ୟାପୁ ନାହିଁ ବା ଉଠୁଁ ନାହିଁ ।
ବୃନ୍ଦାର୍କ ମେଳକୁ ନୂଆରିଲି ଯାଇ । ଜ.ପ.
ନୂଆରିଲି = ନ ପାରିଲି ବ.ପ.
ଉଗ୍ରସେନ ମୂଳେ ସାତ ବଂଶ ପଳାଣି । ଅଶ୍ୱ.ପ.
ପଳାଣି = ସୁସଜ କରି ଇତ୍ୟାଦି ।

ପ୍ରୟୋଗ କରିଅଛନ୍ତି,(୧) ତାହା ବର୍ତ୍ତମାନ ବିଚାରରେ ଅସମୀଚୀନ ବୋଧହୁଏ । ଏସବୁ ଛଡ଼ା ଯାହା କି ସଂସ୍କୃତ ଓ ପ୍ରାକୃତାନୁକରଣରୁ ପ୍ରାଚୀନ ଭାଷାରେ ପ୍ରଚଳିତ ଥିଲେହେଁ ଆଧୁନିକ ଭାଷାରେ ତାଦୃଶ ସୁସାଧ୍ୟ ହୋଇ ନ ପାରେ, ସେଭଳି ଭବିଷ୍ୟଦର୍ଥବୋଧକ 'ଉ' ପ୍ରତ୍ୟୟାନ୍ତ କେତେକ କ୍ରିୟାର ବ୍ୟବହାର ମଧ କରିଅଛନ୍ତି ।(୨) ମାତ୍ର ନିର୍ମାଣାର୍ଥବୋଧକ 'ଇ' ଓ 'ତ' ପ୍ରତ୍ୟୟାନ୍ତ ଅସମାପିକା କ୍ରିୟାମାନ ଗ୍ରନ୍ଥ ମଧରେ ସର୍ବତ୍ର ଯେଉଁ କ୍ରମରେ ପ୍ରୟୋଗ କରି ଅଛନ୍ତି, ତାହା ସର୍ବଥା ଅନୁକରଣୀୟ ।(୩)

ବର୍ତ୍ତମାନ ସାରଳା ସାହିତ୍ୟର କୃଦନ୍ତିତ ସମାସ-ପ୍ରକରଣୀୟ ପ୍ରୟୋଗ ପ୍ରଣାଳୀ କୀଦୃଶ, ତାହାର ସଂକ୍ଷିପ୍ତ ବିଚାର କ୍ରମାନୁସାରେ କରାଯାଉଅଛି । ପ୍ରତ୍ୟେକ ଭାଷାରେ

---

(୧) [କ] ଦେବତା ବ୍ରାହ୍ମଣେ ହୋଉଛନ୍ତିକି ଭକତି । ମା.ପ.
[ଖ] ପଦାନ ନେଲେ ତହୁଁ ସିଦ୍ଧ ଧବନାଙ୍କି । ଆ.ଧ.
[ଗ] ମନ୍ଦାକିନକୁ କନ୍ୟାଏ ହେଲା ପ୍ରଦାନ ।
[ଘ] ହେ ମାଧବ ମୋର ଆନ ପାତକ ଯେ ନାହିଁ ।
ପରେ ହିଂସା ଅପବାଦ ନୁହର ନ ମୁହିଁ ॥ ଆ.ପ.
ନୁହର = ନ କରଇ ।
[ଙ] ଧର୍ମନନ୍ଦନ ଶୁଣି ଦେଲେ ଅନେକ ଭକ୍ତି
ଭକ୍ତି ଦେଲେ = ଭକ୍ତି କଲେ । ଇତ୍ୟାଦି ।
(୨) [କ] ଏତେ କହି ଧର୍ମ ପିଇ ଲୋଡ଼ନ୍ତେ ପାଣି ।
ଜଳ ବୋଲେ ପାଣି ପିଉ ସିନା ଏହିକ୍ଷଣି । ବ.ପ.
ଏ ସ୍ଥଳରେ ମଧ୍ୟମ ପୁରୁଷରେ ଅନ୍ୱିତ ।
[ଖ] ଦୁଃସହ ସମର କରୁଥିଲେ ଦ୍ରୋଣଗୁରୁ ।
ଅଗ୍ନିର ସ୍ଥାମୁରେ କିଏ ଅବା ରହି ପାରୁ । ଦ୍ରୋ.ପ.
ଏ ସ୍ଥଳରେ ତୃତୀୟ ପୁରୁଷରେ ଅନ୍ୱିତ ।
(୩) [କ] ଆମ୍ଭାନଙ୍କୁ ଯମ ପଶି ନ ଦେଲା ମୋତେ । ବ.ପ.
ପୁଣି ସାନ୍ତନୁକୁ ସେ ଯାଇ ନ ଦେଲା କତି । ଆ.ପ.
ଆମ୍ଭର ଶିର ଯେ ଲୋଡଥିଲ ହାଣି । ବ. ପ.
ମୋହର ବଳେ ତହୁଁ ନେଇ ନହଇ ଚିନାଏ । ସ୍ୱ.ପ.
ନିଜ ଭୁବନକୁ କି ଯାଇ ଲୋଡୁ ତୁହି । ମୁ.ପ.
କର୍ଣ୍ଣ ବୋଇଲେ ତୋର କିଛି ଦେଇ ନାହିଁ ଇଚ୍ଛା । ଉ.ପ.
ଦେଇ ନାହିଁ ଇଚ୍ଛା = ଦେବାକୁ ଇଚ୍ଛା ନାହିଁ ।
[ଖ] ଭୀମର ପ୍ରତିଜ୍ଞା କହି ତ କି ପାରି । ବି.ପ.
ରଣରଙ୍ଗ ଧନେ'କ ମନ କହି ତ ନ ପାରି । ଦ୍ରୋ.ପ.
ଇନ୍ଦ୍ର ଦେବତାଙ୍କୁ ବସି ତ ନ ଦେଲେ । ବି.ପ.
ନାନାଦି ସ୍ୱୟମ୍ବର କରି ତ ବିଦ୍ୟମାନେ । ଆ.ପ. । ଇତ୍ୟାଦି ।

କୃତ୍ତଦ୍ଧିତ ଓ ସମାସର ପ୍ରୟୋଜନୀୟତା ବିଶେଷତଃ ବିସ୍ତୃତ ଭାବର ସଂକ୍ଷିପ୍ତୀକରଣ ଆଉ ବାକ୍ୟର ବାହ୍ୟ ରମଣୀୟତାର ଉପପାଦକ ହୋଇଥାଏ ବୋଲି ଅନେକେ କହିଥାନ୍ତି; ତାହା କେତେଦୂର ଯଥାର୍ଥ ହୋଇପାରେ, ମାତ୍ର ବହୁ ସ୍ଥଳରେ ଭାଷା ସୌନ୍ଦର୍ଯ୍ୟର ସାଧନୀଭୂତ ଏହି ପ୍ରକରଣତ୍ରୟର ଏକାନ୍ତ ଅନାଶ୍ରୟରୁ ବକ୍ତବ୍ୟ ଭାବକୁ ଇତଃସ୍ତତଃ ଦ୍ରାବିଡ଼ ପ୍ରାଣାୟାମ ପ୍ରାୟ * ଅଯଥା ବିସ୍ତୃତ କରି କିମ୍ବା ଏଣେ ତେଣେ ବିକ୍ଷିପ୍ତ କରି ପ୍ରକାଶ କରିବାକୁ ହୋଇଥାଏ । ଅଥଚ ତେତେବେଳେ ଭାଷା ଓ ଭାବସ୍ଫୂର୍ତ୍ତିର ତାଦୃଶ୍ୟ ଲାଳିତ୍ୟ ସୁଦ୍ଧା ରହେ ନାହିଁ ଏବଂ ଅଳ୍ପାକ୍ଷର-ପରିଷ୍କୃତ ଅନାବିଳ ବଚନମାନଙ୍କର ଆବିର୍ଭାବ ଦେଖାଯାଏ ନାହିଁ । ଅତଏବ ଭାଷା ଯେତେ ପ୍ରାଞ୍ଜଳ ଓ ସରଳ ହେଲେ ସୁଦ୍ଧା ପ୍ରୟୋଜନାନୁସାରେ କୃତ୍ତଦ୍ଧିତ ସମାସାନ୍ତ ପଦମାନ ପ୍ରୟୋଗ କରି ତଦୀୟ ଶୋଭାର ସମ୍ପାଦନ କରିବା ନିତାନ୍ତ ଆବଶ୍ୟକ । ଏହି କବି ମହୋଦୟ ମଧ ଏହି ସୁପ୍ରକାଣ୍ଡ ଗ୍ରନ୍ଥରେ ସର୍ବତ୍ର ଏକ ପ୍ରକାର ବିନିହିତ ସରଳ ପ୍ରାଞ୍ଜଳ ନିରାଡ଼ମ୍ବର ଭାଷାର ସମୁପଯୁକ୍ତ ତାତ୍କାଳିକ ଶିକ୍ଷିତ-ସମାଜର ଭାଷାରେ ପ୍ରଚାରିତ ଅନତିକ୍ଲିଷ୍ଟ ଇନ୍ ପ୍ରତ୍ୟୟାନ୍ତ ପ୍ରଭୃତି ସଂସ୍କୃତୀୟ ପଦମାନଙ୍କର† ଏବଂ ଭାବାଦି ବାଚ୍ୟର ଅଣ, ଅଣା, ଆଣ, ଉଣି ଓ ଅନ୍ତା ପ୍ରତ୍ୟୟାନ୍ତ ଓଡ଼ିଆ କୃଦନ୍ତ ପଦମାନଙ୍କର ବ୍ୟବହାର କରି ଅଛନ୍ତି ।(୧) ଆପଣମାନେ ଯେ କୌଣସି ପର୍ବରେ ବହୁ ସାବଧାନତା ଓଡ଼ିଆ କୃଦନ୍ତ ପଦମାନ ଏହି ଭାରତରୁ ପାଇ ପାରିବେ ନାହିଁ । ବୋଧହୁଏ ଅନ୍ୟାଦୃଶ କୃଦନ୍ତ ପଦମାନ ଏହି ପରିମେୟ-ପ୍ରସାଧନ-ଭାଷାର ସୌନ୍ଦର୍ଯ୍ୟ-ସମ୍ପାଦକ ନୁହେ ବୋଲି କବି ମହୋଦୟ ତ୍ୟାଗ କରିଦେଇ ଅଛନ୍ତି । ଉପରି ସୂଚିତ ପ୍ରତ୍ୟୟାନ୍ତ ପଦମାନ ସର୍ବତ୍ର ପ୍ରୟୋଗ କରି ଅଛନ୍ତି ସତ୍ୟ, ମାତ୍ର 'ଅନ୍ତା'

---

*ଦ୍ରାବିଡ଼ ପ୍ରାଣାୟାମ — ଲୋକରେ ପ୍ରବଚନ ସ୍ୱରୂପ ପ୍ରଖ୍ୟାତ ; — କେତେକ ଅଶିକ୍ଷିତ ଦ୍ରାବିଡ଼ ପ୍ରାଣାୟାମକରଣରେ ହସ୍ତକୁ ଋଜୁ ଭାବରେ ଠିକ୍ ନାସିକାର ସମ୍ମୁଖୀନ ନ ରଖି ପଶ୍ଚାଦ୍ ପରିବର୍ତ୍ତିତ କରି ଆଣୁଥିଲେ ।

[କ] ଉତ୍ତାନଶାୟୀ ହୋଇ ପଡ଼ିଲେ ମହାସତୀ । ବ.ପ.

[ଖ] କୁନ୍ତୀଦେବୀ ବୋଇଲେ ଗୋ ଭିକ୍ଷାଶୀ ମୋର ପୋଏ । ଆ.ପ.

[ଗ] ଦର୍ଶନେ ଦୁରିତହା ପ୍ରସନ୍ନେ କାର୍ଯ୍ୟ ସିଦ୍ଧି । ଆ.ପ. । ଇତ୍ୟାଦି ।

† ବିଷ୍ଣୁଙ୍କର ମାୟା ଏହୁ କହଣ ନ ଯାଇ । ବ. ପ. କହ + ଅଣ ।

(୧) ପାର୍ବତୀଙ୍କ ରୂପ ଦେଖି ନ ଯାଇ କହଣା । ବ.ପ. କହ + ଅଣା ।

[କ] ଅର୍ଜୁନ ମାଇଲେ ଯେ ଭଇରବ ବାଣ ।

ତ୍ର୍ୟମ୍ବକଶରେ କିରାତ କଲା ଯେ ଭଙ୍ଗାଣ । ମୂ.ପ. ଭଙ୍ଗ + ଆଣ ।

[ଖ] ଅଶ୍ୱ ଗଜ ଚରଣି ପିଉଣି ଖାସ ବିରି । ମ.ପ.

ଆଜିକାଲି ଖାଉଣା, ପିଉଣା, ଗା଼ଣା ପ୍ରଭୃତି ପଦର ବ୍ୟବହାର ହୁଏ, ମାତ୍ର ପିଉଣି ପଦର ବ୍ୟବହାର ଦେଖାଯାଏ ନାହିଁ ।

ପ୍ରତ୍ୟୟାନ୍ତ ପଦ ଅପେକ୍ଷା ଏ ସବୁର ବ୍ୟବହାର ବିରଳ ଅନତିପ୍ରଚୁର । ଏ କବି ମହୋଦୟ ଅନ୍ତା ପ୍ରତ୍ୟୟାନ୍ତ ପଦଗୁଡ଼ିକର ଲିଙ୍ଗାଦି ନିର୍ବିଶେଷରେ ଟିକିଏ ଅତିମାତ୍ର ବ୍ୟବହାର କରି ଅଛନ୍ତି । *ଆଧୁନିକ ସାହିତ୍ୟରେ ଅନ୍ତା ପ୍ରତ୍ୟୟାନ୍ତ କୃଦନ୍ତ ପଦ କୌଣସି ବିଶେଷ୍ୟ ପଦର ବିଶେଷଣ ରୂପେ ପ୍ରୟୋଜନମତେ ବ୍ୟବହୃତ ହେଉଅଛି; କିନ୍ତୁ ବ୍ୟକ୍ତିବାଚକ ରୂପେ ସ୍ୱତନ୍ତ୍ର ରହେ ନାହିଁ । ଏ କବି ମହାଶୟ ବିଶେଷ୍ୟ ପଦର ନିରପେକ୍ଷତାରେ ମଧ୍ୟ ଅନ୍ତା ପ୍ରତ୍ୟୟାନ୍ତ ପଦକୁ ବ୍ୟକ୍ତ୍ୟର୍ଥବୋଧକ ସ୍ୱାତନ୍ତ୍ର୍ୟ ଦେଇ ବ୍ୟବହାର କରି ଅଛନ୍ତି ।†

ସାଧାରଣତଃ ଲିଖିତ କିମ୍ୱା ବ୍ୟାବହାରିକ ଭାଷା ମଧ୍ୟରେ ଅକ୍ଲିଷ୍ଟ କୃଦନ୍ତପଦ ଓ ସମାସାନ୍ତ ପଦମାନଙ୍କର ବ୍ୟବହାର ଯେପରି ସହଜରେ ହୋଇପାରେ, ତଦ୍ଧିତାନ୍ତ ପଦ ସେପରି ନୁହେ । ଏହାର ବ୍ୟବହାର ଅପେକ୍ଷାକୃତ ଟିକିଏ ଅଧିକ ବିବକ୍ଷାଧୀନ ଓ ଯତ୍ନସାପେକ୍ଷ । ବକ୍ତା ଟିକିଏ ସମଧିକ ଯତ୍ନ ଓ ଅପେକ୍ଷା ନ କଲେ ତଦ୍ଧିତାନ୍ତ ପଦର ବ୍ୟବହାର କରି ପାରନ୍ତି ନାହିଁ । ସୁତରାଂ ତାହାର ତାଦୃଶ ଆବଶ୍ୟକତା ରହେ ନାହିଁ । ପୂର୍ବକ ଅନ୍ୱେଷଣ କରନ୍ତୁ, ଏତଦ୍‌ଭିନ୍ନ ଅନ୍ୟ ପ୍ରକାର କ୍ଲିଷ୍ଟ ସଂସ୍କୃତ କିମ୍ୱା ଆଧୁନିକ ବ୍ୟାବହାରିକ ଭାଷାରେ ସୁଦ୍ଧା ତାଦୃଶ ତଦ୍ଧିତାନ୍ତ ପଦମାନଙ୍କର ବ୍ୟବହାର ଚଳେ, ତଦପେକ୍ଷା ପ୍ରାଚୀନ ଓଡ଼ିଆର ଲିଖିତ ଭାଷାରେ ମଧ୍ୟ ବହୁ ନ୍ୟୂନ । ଅନ୍ୟାନ୍ୟ ପ୍ରାଚୀନ ସାହିତ୍ୟିକ ଓଡ଼ିଆ ଗ୍ରନ୍ଥମାନଙ୍କରେ ଯେପରି ଅତି ବିରଳ ଭାବରେ ସ୍ଥାନେ ସ୍ଥାନେ ମାତ୍ର

---

[ଗ] ଲାଖବିନ୍ଧା ବ୍ରାହ୍ମଣ ଛଡ଼ାଇଲା କିଞ୍ଚିତେ । ଆ.ପ.

[ଘ] କେଶ ମୋହର ଅବନ୍ଧା ଦେଖ ଜନାର୍ଦ୍ଦନ । ଉ.ପ. । ଇତ୍ୟାଦି ।

* ତୁ ସେ ଚରାଚର ପାଳନ୍ତା ଉଦ୍ଧାରନ୍ତା ।
ଦୁର୍ଜନ ନିବାରଣ ସୁଜନ ରଖନ୍ତା ।
ଗାବ ଚରାନ୍ତେ ଷଣ୍ଢାସୁର ଦର୍ପହନ୍ତା ।
ବକାସୁରକୁ ନାଥ ତୁହି ଯେ ନିବାରନ୍ତା । ସ୍ୱର୍ଗ.ପ.
ବତ୍ସା ହରି ନେଲେ ବିହନ୍ତା ମହାତ୍ମା । ମୃ.ପ. । ଇତ୍ୟାଦି ।

† ଶୁକମୁନିଙ୍କ ବଚନେ ହସିଲେ ସହସ୍ରାକ୍ଷ ।
ଏ ନୃତ୍ୟ କରନ୍ତା ମୁନି ହେ ଅଟଇ ବିଭତ୍ସ । ବ.ପ.

ହେ ମୁନି ! ଏ ନୃତ୍ୟ କରନ୍ତା ଅର୍ଥାତ୍ ନୃତ୍ୟକାରୀ ବୀଭତ୍ସ ଅଟଇ ।
ଏମନ୍ତ ଅର୍ଥ ।

[୧] ବୋଇଲେ ବାସବି ମୋର ପ୍ରତିଜ୍ଞା ଶୁଣ । ବି.ପ.

[୨] ମଲ୍ଲୁର ମୂର୍ତ୍ତି ଯେ ଦେଖିଣ ପାବକି । ବି.ପ.

[୩] ସମ୍ଭାଳି ନ ପାରେ ଏକା ପାର୍ଥିରଣ କର୍ଣ୍ଣୁ । ଦ୍ରୋ.ପ.

[୪] ପୁଣ ଏକ ବାଣ ଘେନି ବିନ୍ଧିଲେ ସେ ଦ୍ରୋଣି । ଘେ.ପ.

[୫] ଥାଟ ଘେନି ବେଢ଼ିଛନ୍ତି ତାଙ୍କୁ ଧୃତରାଷ୍ଟ୍ରି । ଭୀ.ପ.

ଅତିପ୍ରମିତ ତଦ୍ଧିତାନ୍ତ ପଦର ବ୍ୟବହାର, ଏହି ମହାଭାରତରେ ମଧ୍ୟ ସେହିପରି ଦେଖାଯାଏ । ଅପତ୍ୟାର୍ଥକ 'ଇ' ପ୍ରତ୍ୟୟାନ୍ତ ବାସବି, ପାବନି, ପାର୍ଥି, ଦ୍ରୋଣି, ଧୃତରାଷ୍ଟ୍ରି ଓ 'ଅ' ପ୍ରତ୍ୟୟାନ୍ତ ବୈନତ ପଦ ଏବଂ ବୈମାତୃକ ସୋଦରିମା ତ୍ରମ୍ଭୀଭୂତ ପ୍ରଭୃତି ପଦମାନ ଅଥଚ ତାଦୃଶ ଆଉ କେତେକର ବ୍ୟବହାର ମାତ୍ର ଏହି ପ୍ରକାଣ୍ଡ ଗ୍ରନ୍ଥ ମଧ୍ୟରେ ଦେଖାଯାଏ । ଅନ୍ୟାନ୍ୟ ତଦ୍ଧିତ ପ୍ରତ୍ୟୟାନ୍ତ ପଦମାନ କୁତ୍ରାପି ଦେଖିବାକୁ ମିଳେ ନାହିଁ । ଏ କବି ମହାଶୟ ବାସବଙ୍କ ପୁତ୍ର ବାସବି ହେଲା ପରି ପାର୍ଥଙ୍କ ପାର୍ଥି (ଅଭିମନ୍ୟୁ) କରି ଅଛନ୍ତି; ଦ୍ରୋଣଙ୍କ ପୁତ୍ର ଦ୍ରୋଣି କରିଅଛନ୍ତି । କିନ୍ତୁ ଦ୍ରୌଣି ହେବାର ଥିଲା । ଏହି ଭାରତରେ ସର୍ବତ୍ର (ଯେଉଁ ଯେଉଁଠାରେ ଏହାର ପ୍ରୟୋଗ ହୋଇଅଛି) ଦ୍ରୋଣି ପଦ କେବଳ ଲେଖାଥିବାର ଦେଖାଯାଏ । ବୋଧହୁଏ ଏହା ଅନୁଲେଖକଙ୍କର ଭୁଲ୍ ନୁହେ । ନିଜେ କବି କେବଳ ଏପରି କରି ଅଛନ୍ତି ବୋଲିବାକୁ ହେବ । କାରଣ ଧୃତରାଷ୍ଟ୍ରଙ୍କ ପୁତ୍ର ଧୃତରାଷ୍ଟ୍ରି ବୋଲି ତାଳପତ୍ର ପୁସ୍ତକମାନଙ୍କରେ ସର୍ବତ୍ର ଲେଖାଅଛି । ସକୃଦପି ଧାର୍ତ୍ତରାଷ୍ଟ୍ରି ଲେଖାଯାଇ ନାହିଁ । ଛାପା ପୁସ୍ତକରେ ସ୍ଥାନେ ସ୍ଥାନେ ମାତ୍ର ଧାର୍ତ୍ତରାଷ୍ଟ୍ରି ଲେଖାଅଛି । ବିଶ୍ୱାସ କରୁଁ, ଛାପାକାର ମହାଶୟ ସ୍ଥାନେ ସ୍ଥାନେ ସୁବିଧା ପାଇ ଏପରି ପରିଶୋଧିତ କରିଦେଇ ଅଛନ୍ତି । କିନ୍ତୁ କବି ନିଜେ ପୂର୍ବ ସ୍ୱରର ବୃଦ୍ଧି ନ କରି କେବଳ 'ଇ' ପ୍ରତ୍ୟୟ ଯୋଗେ ଧୃତରାଷ୍ଟ୍ରି, ଦ୍ରୋଣି ଇତ୍ୟାଦି ପଦ ଲେଖିଯାଇ ଅଛନ୍ତି । 'ଅ' ପ୍ରତ୍ୟୟ ଯୋଗେ ପୃଥାଙ୍କ ପୁତ୍ର ପାର୍ଥ ହୋଇଥିବାର ଜାଣି ତଦନୁକରଣରେ ବୋଧହୁଏ ଏ ମହାଶୟ ବିନତାଙ୍କ ପୁତ୍ରଙ୍କୁ ବୈନତ କରିଦେଇ ଅଛନ୍ତି ।(୧) ପରନ୍ତୁ ଛାପା ଏବଂ ତାଳପତ୍ର ପୁସ୍ତକରେ ମଧ୍ୟ ସ୍ଥାନେ ସ୍ଥାନେ 'ବଇନେତ୍ର' ଗରୁଡ଼ାର୍ଥକ ପଦ ଲେଖାଅଛି । ସଂପୂର୍ଣ୍ଣ ବିଶ୍ୱାସ କରୁଁ, ଏହା ଅନୁଲେଖକମାନଙ୍କ ଅଜ୍ଞାନ ମହିମାର ଫଳ । କବି ସେପରି ଲେଖି ନାହାନ୍ତି । କାରଣ ବହୁ ସ୍ଥଳରେ ସ୍ପଷ୍ଟତଃ ବୈନତ ବା ବଇନତ କରି ଅନ୍ୟତ୍ର କାହିଁକି ବୃଥା ବଇନେତ୍ର କରନ୍ତେ ? ତଥାପି ପୃଥାଙ୍କ ପୁତ୍ର ପାର୍ଥ ପରି ବିନତାଙ୍କ ପୁତ୍ର ବୈନତ ପଦଟି ସଂସ୍କୃତର ଶିଷ୍ଟପ୍ରୟୋଗରେ ପ୍ରଚଳିତ ନ ଥିବାରୁ ସୁସାଧୁ ବୋଲାଯାଇ ନ ପାରେ ।

---

[୬] ପବନୁ ବେଗ ହୋଇ ଗମଇ ବଇନତ । ଉ.ପ.

[୭] ଆମ୍ଭେ ଯେ ବୈମାତୃକ ଭାଇ ବେନିଗୋଟି । ଉ.ପ.

[୮] ସୋଦରିମା ଗୁଣଟି ନ ପାଳିଲା କର୍ଣ୍ଣ । ଭୀ.ପ.

[୯] ଶ୍ରୀକୃଷ୍ଣ ମୁଖୁଁ ଯେ ଶୁଣି ଏମନ୍ତ କଥା ।
ପୁଣି ତ୍ରମ୍ଭୀଭୂତ ଅର୍ଜୁନ ବଳବନ୍ତା । ଉ.ପ. ଇତ୍ୟାଦି ।

(୧) କିନ୍ତୁ ପାର୍ଥ ଶବ୍ଦର ବ୍ୟୁତ୍ପତ୍ତି ସ୍ଥାନରେ ଅନ୍ୟଥା କରି ଅଛନ୍ତି । ଅତଏବ ପାର୍ଥ ଶବ୍ଦର ଅନୁକୃତ ବୈନତ ବୋଲି ତାଦୃଶ ବିଶ୍ୱାସ ହୁଏ ନାହିଁ ।

କୃଦନ୍ତ ଓ ତଦ୍ଧିତାନ୍ତ ପଦମାନ ବାକ୍ୟର ଯାଦୃଶ ସୌନ୍ଦର୍ଯ୍ୟସାଧକ ସମାସାନ୍ତ ପଦମାନ ମଧ୍ୟ ସେହିପରି । ଭାଷା ଯେତେ ସରଳ ହେଉ ପଛକେ ସ୍ଥାନେ ସ୍ଥାନେ ଅକ୍ଲିଷ୍ଟ ଅଦୀର୍ଘ ଓ ଅକ୍ରକଚକର୍କଶ କୃଦ୍-ତଦ୍ଧିତ- ସମାସାନ୍ତ ପଦମାନ ଯୋଗ କରି ଅଳ୍ପାକ୍ଷରରେ ବହୁ ବିସ୍ତୃତ ଭାବ ବିଦ୍ୟୋତନ କରିବା ସଂପୂର୍ଣ୍ଣ ଆବଶ୍ୟକ । ଅତଏବ ଆମ୍ଭମାନଙ୍କର ଆଦିମ ମହାକବି ମହୋଦୟ ତାଦୃଶ ପଥର ପ୍ରଦର୍ଶକ ଓ ପଥିକ ହୋଇଅଛନ୍ତି । ଆପଣମାନେ ଓଡ଼ିଆର ପ୍ରାଚୀନ କାବ୍ୟ-ଯୁଗ ସାହିତ୍ୟରେ ଯାଦୃଶ ଅଦୀର୍ଘ ସମାସାନ୍ତ ପଦମାନଙ୍କର ଅସ୍ତିତ୍ୱ ଦେଖିବାକୁ ପାଇବେ, ଏହି ପୁରାଣ ସାହିତ୍ୟରେ ମଧ୍ୟ ବିରଳଭାବରେ ତାଦୃଶ ସମାସମାନ ଦୃଷ୍ଟିଗୋଚର କରି ପାରିବେ । ପ୍ରାୟଶଃ ସମସ୍ତେ ଅବଗତ ଥିବେ ଯେ, ସମାସମାନଙ୍କ ମଧ୍ୟରୁ ବହୁବ୍ରୀହି ସମାସର ପ୍ରୟୋଗକ୍ରମାବଗମନ ଅଧିକ ଜ୍ଞାନସାପେକ୍ଷ । କାରଣ ଏହାର ଅଧିକାର ବହୁତୋମୁଖ । ହୃଦୟରେ ଜ୍ଞାନସତ୍ତା ସମଧିକ ନ ହେଲେ ଲେଖକ ନାନାବିଧ ବହୁବ୍ରୀହି ସମାସକୁ ପ୍ରୟୋଗ କରି ପାରିବେ ନାହିଁ, ପୁଣି ପାଠକେ ବୁଝିପାରିବେ ନାହିଁ । ଏହି ମହାଭାରତ ଗ୍ରନ୍ଥରେ ଅନ୍ୟାନ୍ୟ ସମାସମାନଙ୍କ ପରି ସାଂସ୍କୃତିକ ଓ ଓଡ଼ିଆର ମିଶ୍ର ଅତି ବିଶୁଦ୍ଧ ବହୁବ୍ରୀହି ସମାସାନ୍ତ ପଦମାନ ମଧ୍ୟ ବହୁ ସ୍ଥଳରେ ସାଧୂତଃ ପ୍ରଯୁକ୍ତ ହୋଇଅଛି । ତଦ୍‌ସମୁଦାୟରୁ ନିମ୍ନରେ କେତେକ ବହୁବ୍ରୀହିର ପ୍ରମାଣ ପଦ୍ୟମାନ ମାତ୍ର ପ୍ରଦର୍ଶନ କଲୁଁ । ତତ୍‌ପରିଶୀଳନରେ ସାରଳାଦାସ କବିଙ୍କର ସମାସାନ୍ତ ପଦପ୍ରୟୋଗପଟୁତା କୀଦୃଶ ଥିଲା, ବୁଝି ପାରିବେ ।(୧)

ଏହି ଭାରତରେ ପ୍ରଯୁକ୍ତ କୃତଦ୍ଧିତ-ସମାସାନ୍ତ ପଦମାନଙ୍କର ବିଚାର ଦିଗ୍‌ଦର୍ଶନକ୍ରମରେ କରାଗଲା । ବର୍ତ୍ତମାନ କେବଳ ଶବ୍ଦ ସମ୍ବନ୍ଧୀୟ ବିଚାର କରାଯାଉଅଛି ।

---

(୧) [କ] କୋପେଣ ଶୂଳ ଧରି ଧାଇଁଲେ ପର୍ଣ୍ଣପାଣି । ଆ.ପ.
[ଖ ] ହତରାଜ୍ୟ ହୋଇ ଦ୍ରୁପଦ ପଳାଇଲା । ଆ.ପ.
[ଗ] ମାରି ତାରି ପାରଇ ସେ ଅମୂଲ୍ୟ-ରତ୍ନ-କାନ୍ତି । ମ.ପ.
[ଘ] ସପ୍ତଦ୍ୱୀପା ପୃଥିବୀ ସୋମବଂଶ ନରପତି । ଆ.ପ.
[ଙ] ନିର୍ଧୂମ-ଅଗ୍ନି ଜାଣି ବ୍ରାହ୍ମଣର ତେଜ କାନ୍ତି । ଉ.ପ.
[ଚ] ଭୋ କୃଷ୍ଣ ଅନିର୍ବାର ସେଟି ସହସ୍ର ଧାରା-ଶକ୍ତି । ଉ.ପ.
[ଛ] ମୋହେ ପଡ଼ିଲେ ସତୀ ଗତପ୍ରାଣ ଜାଣି । ଉ.ପ.
[ଜ] ଇକ୍ଷେକ ବଜ୍ର ଗାଣ୍ଡୀବ ଧନୁ ପ୍ରଶସ୍ତପାସ୍ତ-ହସ୍ତ । ଅଶ୍ୱ.ପ.
[ଝ] ବଡ଼େ ମହାତେଜେ ଅଯୋନିସମ୍ଭୂତ-ମୂର୍ତ୍ତି । ଆ.ପ.
[ଞ] କରୁଣାମୟ-ବାନା ଯେ ଶରଣ ବୀରଧ୍ୱ । ଆ.ପ.
[ଟ] ବିହ୍ଲା-ବାହନି ମାଗୋ ତୋହର ପ୍ରସାଦେ । ଭୀ.ପ.
[ଠ] ଅର୍ଜ୍ଜୁନଙ୍କ ବଚନେ ଯେ ଦେବ ଚକ୍ରହସ୍ତ । ଭୀ.ପ.
[ଡ] ସେ ଅପାଇଟ ଶର ଦେବୁ ତୁ କାହାକୁ । ଉ.ପ.
ପାଇଟ କି ପ୍ରତ୍ୟାବୃତ୍ତି ନାହିଁ ଯାହାର ସେ ଅପାଇଟ । ଇତ୍ୟାଦି ।

ମତିମାନ୍ ଶ୍ରୀ ସାରଳାଦାସ କବି ନିଜର ଭାରତ ଗ୍ରନ୍ଥକୁ ସର୍ବସାଧାରଣଙ୍କର ଅର୍ଥାତ୍ ଅଳ୍ପ ମାତ୍ର ଶିକ୍ଷିତ ଆବାଳ-ଗୋପାଳ ତଥାଚ ସ୍ତ୍ରୀ ଓ ଦ୍ୱିଜବନ୍ଧୁମାନଙ୍କର ମଧ୍ୟ ସୁବୋଧ ହେଲା ପରି ସୁଦ୍ଧା ତଦୀୟ ସରଳ ପ୍ରାଞ୍ଜଳ ଭାଷାରେ ମଧ୍ୟେ ମଧ୍ୟେ ଏଭଳି ପାଠକମାନଙ୍କର ଅର୍ଥାବଗମନରେ ଟିକିଏ କ୍ଲିଷ୍ଟ ସଂସ୍କୃତ ଶବ୍ଦମାନ ମଧ୍ୟ ବ୍ୟବହାର କରିଅଛନ୍ତି । ଓଡ଼ିଆ ଭାଷାର ବ୍ୟାବହାରିକ ଶବ୍ଦମାନଙ୍କରେ ପ୍ରାୟ ଅର୍ଦ୍ଧଭାଗ ସଂସ୍କୃତ ବିଦ୍ୟମାନ ଥିବାରୁ, ସୁତରାଂ ଓଡ଼ିଆ ଭାଷା ସଂସ୍କୃତ ପ୍ରାୟ ଥିବାରୁ ଲିଖିତ ଭାଷାକୁ ଯେଡ଼େ ସରଳ କରିବାକୁ ଗଲେ ହେଁ ସାଧାରଣ ସଂସ୍କୃତ ଶବ୍ଦଗୁଡ଼ିକ ଅଯତ୍ନତଃ ସହଜରେ ଆସି ଓଡ଼ିଆରେ ମିଳିମିଶି ଏକାତ୍ମା ପରି ରହିଯାନ୍ତି । ପରନ୍ତୁ ଏ କବି ମହାଶୟ ଆଶୁ ଲେଖନ ଧୋରଣୀର ଆବେଗରେ ଟିକିଏ କ୍ଲିଷ୍ଟ ସଂସ୍କୃତ ଶବ୍ଦମାନଙ୍କୁ ମଧ୍ୟ ବହୁସ୍ଥଳରେ ଏପରି ମିଶାଇ ଦେଇ ବ୍ୟବହାର କରି ଅଛନ୍ତି ଯେ, ସାଧାରଣ ପାଠକଙ୍କୁ ସେଗୁଡ଼ିକପାଇଁ କ୍ଳେଶ ଭୋଗ କରିବାକୁ ହୁଏ ନାହିଁ, କିମ୍ବା ବାକ୍ୟାର୍ଥା ବଗତିର ଅନ୍ତରାୟରେ ପଡ଼ିବାକୁ ହୁଏ ନାହିଁ । ଯେକୌଣସି ପ୍ରକାରେ ସ୍ଥୂଳଚରିତ ଓ ଭାବଟା ଜଣା ପଡ଼ିଯାଏ । ସେହି କ୍ଲିଷ୍ଟ ଶବ୍ଦଗୁଡ଼ିକ ଚରିତ୍ରପ୍ରବାହ ମଧ୍ୟରେ କେଉଁଠି କିପରି ଭାବରେ ରହିଯାଇ ଥାଏ, ସର୍ବସାଧାରଣଙ୍କୁ ଜଣାଯାଏ ନାହିଁ । ସେଥିମଧ୍ୟରୁ ନାନା ସ୍ଥାନରେ ପ୍ରାୟୋଜିତ କେତେକ କ୍ଲିଷ୍ଟ ଶବ୍ଦ ନିମ୍ନସ୍ଥ ଟିପ୍ପଣୀରେ ଉଦ୍ଧୃତ କରାଗଲା । ପାଠକଗଣ ତଦନୁକ୍ରମରେ ଅନ୍ୟାନ୍ୟ କ୍ଲିଷ୍ଟ ଶବ୍ଦ ଥିବାର ଉହା କରି ପାରିବେ ।(୧) ଏ ସ୍ଥଳରେ ଆଉ ଗୋଟିଏ ବିଷୟ ପ୍ରକାଶ କରିବା ଉଚିତ । ଏ କବି ମହାଶୟ ଏପରି ଅତିଗୂଢ଼ାର୍ଥ ବା ଅଜ୍ଞାତାର୍ଥ ସଂସ୍କୃତ ଶବ୍ଦକୁ କେଜାଣି କୁଆଡୁ ଆଣି ସ୍ଥାନେ ସ୍ଥାନେ ଯୋଗକରି ଦେଇ ଅଛନ୍ତି ଯେ, ତାହାର ଅର୍ଥାବଗତିରେ ଆର୍ଥିକଶକ୍ତିସମ୍ପନ୍ନ ସଂପୂର୍ଣ୍ଣ ବ୍ୟୁତ୍ପନ୍ନ ବ୍ୟକ୍ତିଙ୍କୁ ସୁଦ୍ଧା ସମୟରେ ନିରସ୍ତ ହେବାକୁ ହୁଏ । ଯଥା–

ଶଙ୍ଖଚିଲ ଡାକ ଦେଇ ପଶ୍ଚିମ ମୂରତି,<br>
ଉଦାତ୍ରୁଳକ ପକ୍ଷୀ ଯେ ରମ୍ଭା ବୃକ୍ଷେ ସ୍ଥିତି । ଭୀ.ପ.

ସାରଳାଦାସଙ୍କ ସମୟରେ ଓଡ଼ିଆ ଭାଷା ଏକାନ୍ତ ଅସଂପୂର୍ଣ୍ଣ ଥିଲା, ଏହା ସମସ୍ତେ ବିଶ୍ୱାସ କରିବେ । ତଥାପି ଏ ମହାଶୟ ପ୍ରାୟଶଃ ଷଷ୍ଟି ସହସ୍ର  ପରିମିତ ପାଠ ମଧ୍ୟରେ କୁତ୍ରାପି ବିଜାତୀୟ ଶବ୍ଦର ଯୋଗ କରି ନାହାନ୍ତି । ସେ ସୁପ୍ରାସାଦପୂର୍ଣ୍ଣ ଆକ୍ଷରିକ କୀର୍ତ୍ତିପ୍ରାସାଦ ରଚନାର୍ଥ ତାତ୍କାଳିକ ପ୍ରଚଳିତ ସମଧିକ ଖାଣ୍ଟି ଓଡ଼ିଆ ଶବ୍ଦ ଓ ଅନତିକ୍ଲିଷ୍ଟ ସଂସ୍କୃତ

---

(୧) ଅମରାଧିନାଥ, ଉତ୍କର୍ମ, ଜାତ୍ୟନ୍ଧ, ମନୀଷା, ବରପୂର୍ବା, ଅପଚୟ, ଉକ୍ଷ, ଦର୍ଦ୍ଦୁର, ମଘବା, ବାରାଙ୍ଗନା, ଅପସାର, କିଂଶୁକ, ପଟଳ, ମଞ୍ଜୁଷ, ସମସ୍ୟା, ଆଜ, କୌଣପ, ପୁରୁହୂତ, ଯାତୁଧାନ, ସୁନାଶୀର, ଆଖଣ୍ଡଳ, କରପଟ, ଭାବିନୀ, ବିଡ଼ୋଜା, ଶୋଣିତ, ଉତ୍ତାନଶାୟୀ, ଜମ୍ଭଭେଦୀ, ଭିକ୍ଷାଶୀ, ରାତ୍ରିଂଚର । ଇତ୍ୟାଦି ।

ଶବ୍ଦମାନଙ୍କର ସାହାଯ୍ୟ ନେଇ ଅଛନ୍ତି । ତଥାଚ ଆପଭ୍ରଂଶିକ ତଦ୍ଭବ ଶବ୍ଦସୃଷ୍ଟିକ୍ରମରେ ନିଜ ବୁଦ୍ଧିମତ୍ତାକୁ ଅଗ୍ରସର କରି ବର୍ଣ୍ଣଲୋପ, ବର୍ଣ୍ଣାଗମ, ବର୍ଣ୍ଣବିଲୋମ, ବର୍ଣ୍ଣସ୍ଥିତି, ପରିବୃତ୍ତି, ବର୍ଣ୍ଣପ୍ଲୁତି ପ୍ରଭୃତି ନିୟମରେ ମୂଳଶବ୍ଦମାନଙ୍କରୁ ପର୍ଯ୍ୟାପ୍ତ ରୂପେ ତଦ୍ଭବ ଶବ୍ଦ ସନ୍ଦୋହର ସୃଷ୍ଟି କରି ଅଛନ୍ତି । ଏହାଙ୍କର ଏହି ଶବ୍ଦ ସୃଷ୍ଟି ବଡ଼ ଚମତ୍କାରଜନକ । ଏହାଙ୍କ ପ୍ରଯୋଜିତ ତଦ୍ଭବ ଶବ୍ଦମାନଙ୍କୁ ମୂଳଶବ୍ଦ ସହ ମିଳାଇ ଦେଖିଲେ ଏ ମହାତ୍ମାଙ୍କ ପ୍ରତିଭାର ବଳ କୀଦୃଶ ଥିଲା, ପାଠକେ ତାହା ଅବଶ୍ୟ ବୁଝି ପାରିବେ । ଅଥଚ ଓଡ଼ିଆ ଗ୍ରନ୍ଥର ରଚକ ଶ୍ରେଣୀରେ ଏହାଙ୍କର ଆଦିମତ୍ୱ ଥିବାରୁ ଏହାଙ୍କୁ ଓଡ଼ିଆ ତଦ୍ଭବ ଶବ୍ଦ ସୃଷ୍ଟିର ଆଦିବିଧାତା ବୋଲି ଆଦର କରିବେ । ଅତଏବ ଏ ସ୍ଥଳରେ ତତ୍‌କୃତ କେତେଗୋଟି ତଦ୍ଭବ ଶବ୍ଦର ମାତ୍ର କ୍ରମ ଉଦାହରଣସ୍ୱରୂପ ନିମ୍ନରେ ପ୍ରଦର୍ଶନ କରୁଅଛୁଁ ।(୧)

ଏସବୁ ଛଡ଼ା ଆମ୍ଭମାନଙ୍କର ଆଦିମ ମହାକବି ମହୋଦୟ ଏଥିମଧ୍ୟରେ ଭୂରି ଭୂରି ବିଶୁଦ୍ଧ ସ୍ୱତନ୍ତ୍ର ଓଡ଼ିଆ ଶବ୍ଦମାନ ପ୍ରୟୋଜିତ କରି ଅଛନ୍ତି ।ତତ୍‌ପରବର୍ତ୍ତୀ ପୌରାଣିକ କବିମାନେ ମଧ୍ୟ ପ୍ରାୟଶଃ ସେ ସମସ୍ତ ଖାଣ୍ଟି ଓଡ଼ିଆ ଶବ୍ଦଗୁଡ଼ିକୁ ନିଜ ନିଜ ପୁରାଣମାନଙ୍କରେ ବ୍ୟବହାର କରି ଅଛନ୍ତି । ବିଶେଷତଃ ଏସବୁ ପୁରାଣମାନଙ୍କରେ ପ୍ରଚଳିତ ଥିବାରୁ ଏପରିଗୁଡ଼ିକୁ ପୌରାଣିକ ଶବ୍ଦ କୁହାଯାଇପାରେ । କିନ୍ତୁ ଦୁଃଖର ବିଷୟ, ଏଥି ମଧ୍ୟରୁ ଅନେକ ଶବ୍ଦର ଅର୍ଥାବଗତି ସନ୍ଦେହାସ୍ପଦ ହୋଇ ପଡୁଅଛି । ଅନେକେ ଏପରି ଶବ୍‌ଦମାନଙ୍କରେ ଅର୍ଥର ଆଭାସ ସୁଦ୍ଧା ଜାଣିପାରୁ ନାହାନ୍ତି । ଏହାର ପ୍ରଧାନ କାରଣ ଆମ୍ଭମାନଙ୍କର ନିଜ ପୁରାଣ ସାହିତ୍ୟ ପ୍ରତି ଅନାସକ୍ତି ମାତ୍ର । ବର୍ତ୍ତମାନ ଆମ୍ଭମାନଙ୍କର ଶିକ୍ଷିତମ୍ମନ୍ୟମାନ ଅଭିମାନ ଏପରି ଏକାନ୍ତ ନିଃସାର ହୋଇ ପଡ଼ିଅଛି ଯେ, ନିଜର ପୂର୍ବସଞ୍ଚିତ ଅଖିଳ ସମ୍ପତ୍ତି ହରାଇ କିମ୍ବା ତାହାର ପ୍ରୟୋଜନମହତ୍ତ୍ୱ ଜାଣି ନ ପାରି ପରଠାରୁ ଭିକ୍ଷାମାର୍ଗଣ ବ୍ରତରେ ବ୍ରତୀ ହୋଇ ସମ୍ପତ୍ତିଶାଳିତା ଗର୍ବରେ ସ୍ଫୀତ ହେଉଅଛୁଁ – ଗୃହଦେବତାର ପୂଜାର ବ୍ୟତିକ୍ରମ କରୁଅଛୁଁ । ଏହାଠାରୁ ବଳି ଲଜ୍ଜାର କଥା କଣ ହୋଇପାରେ !(୨)

---

(୧) ଅମର୍ଷ = ଅମରିଷ, କାତ୍ୟାୟନୀ = କାନ୍ତାନୀ, ପଞ୍ଚାନନ = ପଞ୍ଚାଣ, ଦ୍ୱିତୀୟ = ଦ୍ୱିତି, ଦୁତି, ମୋହପାଶ = ମୁହାଁସ, ଦ୍ରୋହୀ = ଦୋରେହା, ମଦନ = ମୟାଣ, ଉରଗ = ଉଡ଼ଙ୍ଗ, ଧ୍ୱଜାକ୍ଷ = ଧ୍ୱଙ୍ଗାସ, ରଜନୀ = ରୟଣୀ, ଉଭୟ = ଓହ, ପତାକା = ପତାଙ୍ଗ, ସାଗର = ସାହେର, ଉରଃଶଲ୍ୟ = ଉରସଲ, ପଙ୍କ = ପଙ୍କୁ, ସଦୃଷ = ସାରିକ୍ଷ, କନକ = କଣୟ, ଭଗିନୀ = ବହିଣୀ । ଇତ୍ୟାଦି ।

(୨) ଅଧାଟି, ଅଗୁଳି, ଅଧାମ, ଅଇଟା, ଉବୁରା, ଆଗବଳି, ଉଚପାଚ, ଉଜ୍ଜାଉଳ, ଉଦଣ୍ଡ, ଦ୍ରିପଣ୍ଡ, ପଡ଼ିଜ, ତଡ଼ତି, ତିହୁଡି ବାରାସ, ବିଖଣ୍ଡ, ମେଦ, ଲାଟ, (ଖେଳବିଶେଷ), ଶୟଳ, ହାଲହୋଳ,

ସଂସ୍କୃତ ପୁରାଣ ରଚୟିତାମାନେ ନିଜ ନିଜ ପୁରାଣମାନଙ୍କର ଚରିତପ୍ରବାହ ମଧ୍ୟରେ ସମାଗତ କେତେକ ଆଖ୍ୟାନପୁରୁଷ ଓ ପ୍ରସିଦ୍ଧ ନଦୀ, ନଗର, କାନନ ପ୍ରଭୃତିର ଅଭିକ୍ଷା ବ୍ୟୁତ୍ପତ୍ତିର ବ୍ୟାଖ୍ୟାନ କରିଥାନ୍ତି । ତଦ୍ୱାରା ସେହି ନାମକରଣର ଐତିହାସିକ ବିବରଣ ସ୍ପଷ୍ଟତଃ ପ୍ରତିପନ୍ନ ହେଉଥାଏ । ଆମ୍ଭମାନଙ୍କର ଆଦିମ ପୁରାଣପ୍ରଣେତା ମଧ୍ୟ ତଦନୁକରଣରେ ଏହି ମହାଭାରତ ବହୁ ସ୍ଥଳରେ ପ୍ରସ୍ତାବାନୁଗତ ଅନେକଗୁଡ଼ିଏ ପଦମାନଙ୍କର ବ୍ୟୁତ୍ପତ୍ତିକ୍ରମ ଦେଇ ଅଛନ୍ତି । ତାହାଙ୍କର ଅଧୀତି-ଜନିତ ପାଣ୍ଡିତ୍ୟ ବା ବ୍ୟୁତ୍ପତ୍ତି-ଶକ୍ତିର ସଦ୍ଭାବ କିମ୍ବା ଅସଦ୍ଭାବ କୀଦୃଶ, ସେଥିରୁ ସ୍ପଷ୍ଟ ଜଣାଯାଉଅଛି । ପ୍ରଦତ୍ତ ବ୍ୟୁତ୍ପତ୍ତି ସ୍ଥାନମାନ ସମ୍ୟକ୍ ପରିଶୀଳନପୂର୍ବକ ଦେଖିଗଲେ ସୁବିଦିତ ହୁଏ ଯେ ଏହି ମହାକବି ମହାଶୟ ସଂସ୍କୃତ ଶାସ୍ତ୍ରରେ ସଂପୂର୍ଣ୍ଣ ବ୍ୟୁତ୍ପନ୍ନ ନ ଥିଲେ ସୁଦ୍ଧା ତାହାଙ୍କର ଯେ ସଂସ୍କୃତଜ୍ଞାନ ନିତାନ୍ତ ଊଣା ଥିଲା, ତାହା ନୁହେଁ । କେତେକ ବ୍ୟୁତ୍ପତ୍ତି ଓ ଯାବତୀୟ ରୂପାଦିବର୍ଣ୍ଣନାର ସ୍ଥାନମାନ ଦେଖିଲେ ଏବଂ ତତ୍‌ପ୍ରୟୋଜିତ ସଂସ୍କୃତ ଗୂଢ଼ ଶବ୍ଦ ଓ ସମାସାନ୍ତ ପ୍ରଭୃତି ପଦମାନଙ୍କୁ ଦେଖିଲେ ଏବଂ ଓଡ଼ିଆ ଭାଷାର ଶୈଶବାବସ୍ଥାରେ ଏତାଦୃଶ ମହାଗ୍ରନ୍ଥ ରଚନାରେ ତଦୀୟ ମହନୀୟ ସଫଳ ପ୍ରତିଜ୍ଞତାର ସମୁଜ୍ଜ୍ୱଳ ଆଲୋକ ପ୍ରତି ଦୃଷ୍ଟିଦେଲେ ସ୍ପଷ୍ଟ ବୋଧହୁଏ, କବି ମହାଶୟ ସଂସ୍କୃତରେ ଅବଶ୍ୟ କେତେକ ଦୂର ସୁବ୍ୟୁତ୍ପନ୍ନ ଥିଲେ, ଅଥଚ ତାହାଙ୍କର ସୁପ୍ରଗାଢ଼ ଶାସ୍ତ୍ର ଶୁଶ୍ରୂଷା ସମ୍ୟକ୍ ବଳବତୀ ଥିଲା, ଏଥିରେ କଥଞ୍ଚିତ୍ ସନ୍ଦେହ ହୋଇ ନ ପାରେ । ବର୍ଣ୍ଣନା ସ୍ଥଳମାନଙ୍କରେ ଦେଖିବାକୁ ପାଇବେ, ସାରଳାଦାସ କବି ରୂପବର୍ଣ୍ଣନାଦିର ସୌନ୍ଦର୍ଯ୍ୟ ସମ୍ପାଦନ ବିଷୟରେ କାବ୍ୟଯୁଗର କେତେକ କବିମାନଙ୍କ ଅପେକ୍ଷା ସୁଦ୍ଧା ଅତିରେକ ଶକ୍ତିସମ୍ପନ୍ନତା ପ୍ରକାଶ କରି ଅଛନ୍ତି । ଏହା ତାହାଙ୍କର ପ୍ରତିଭାର ପ୍ରଧାନ ପରିଚାୟକ । ପରନ୍ତୁ ଏ ମହାଶୟ ନିଜର ପ୍ରକୃତିସିଦ୍ଧ କାଳ୍ପନିକ ବୈଷମ୍ୟ-ପ୍ରିୟତାବଶରୁ କେତେକ ସ୍ଥଳରେ କାଳ୍ପନିକ ବିଲକ୍ଷଣ ବ୍ୟୁତ୍ପତ୍ତି ଦ୍ୱାରା ପଦମାନଙ୍କର ବ୍ୟୁତ୍ପତ୍ତିକ୍ରମ ବୁଝାଇ ଅଛନ୍ତି ।ଏହା ବୋଲି ଯେ ସର୍ବତ୍ର ସେ ସବୁ ଅସଙ୍ଗତ

---

ବନ୍ଧାହୋଳ, ଖୁରାଣି, ଖୁରୁଷାଣି, ଖୁରିଶାସି, ଖଡ଼ିଆଳି, କରାଣ୍ଡି, କଳତି, କହୁରା, କରୁଣି, କେରଣ୍ଡ, କଳାଟି, ଗୁଆଣି, କାକୁଆଳୀ, ଗୁଗୁଚିଆ, ଗୁଣ୍ଡୁରି, ନଡ଼ପ, ପଙ୍ଗୁଫଳ, ଭଉହ, ମୁରାଟ, ସୋହଡ଼, ସିଂହଡ଼ା, ସଙ୍କୋଡ଼, ସୋରଡ଼ା, ପୋଏଲା, ପାଳତି, ପରିମୁଣ୍ଡା, ଯୁଆଦ ଇତ୍ୟାଦି । ଏତାଦୃଶ ଅଶେଷ କ୍ଳିଷ୍ଟ ବିଶୁଦ୍ଧ ଓଡ଼ିଆ ଶବ୍ଦମାନ ଏହି ଭାରତରେ ବ୍ୟବହୃତ ଅଛି । ପରନ୍ତୁ କାଇଁସିକା ପର୍ବରେ ଉକ୍ତ ଅଛି କି, ଶ୍ରୀକୃଷ୍ଣ ଅଶ୍ୱତ୍ଥାମାକୁ ଭଣ୍ଡିଦେଇ ତଦୀୟ ଶସ୍ତ୍ରମାନ ଘେନି ଆସି ଗୋଟିଏ ତୀର୍ଥ ଜଳରେ ନିକ୍ଷିପ୍ତ କରିଦେଲେ । ଏ କବି ମହାଶୟ ଏହି ତୀର୍ଥର ନାମ ଓଡ଼ପା ବୋଲି ଦୁଇ ତିନି ସ୍ଥଳରେ ଲେଖି ଅଛନ୍ତି, ଏହାର ଅର୍ଥ କିଛି ହିଁ ଜଣାଯାଏ ନାହିଁ ।

ଓଡ଼ପା ତୀର୍ଥକୁ ଆସି ପୁଣ ସେ ଲୋଡ଼ନ୍ତି ।
ଦେଖିଲେ ପାଦ ପଡ଼ିଛି କେ ପଶିଲା ଏଥି ।। କାଇଁ.ପ.

ହୋଇଅଛି, ତାହା ନୁହେଁ । ବହୁ ସ୍ଥଳରେ ମୂଳଗ୍ରନ୍ଥରେ ପ୍ରତିପାଦିତ ବ୍ୟୁତ୍ପତ୍ତିକ୍ରମ ସହିତ ନିଜର ପ୍ରଦତ୍ତ ବ୍ୟୁତ୍ପତ୍ତିକ୍ରମକୁ ଅବିକଳ ମିଳାଇ ଅଛନ୍ତି । ଏହାଙ୍କ ପ୍ରଦତ୍ତ ସମଗ୍ର ବ୍ୟୁତ୍ପତ୍ତି ପ୍ରକାଶନକ୍ରମକୁ ସମ୍ୟକ୍ ବିଚାର କଲେ ଜଣାଯାଏ, କବି ମୂଳଗ୍ରନ୍ଥ ଓ ତଦିତର ଗ୍ରନ୍ଥମାନଙ୍କର ଶୁଶ୍ରୁଷାରେ ଯାହା ଯାହା ହୃଦୟଙ୍ଗମପୂର୍ବକ ସ୍ମୃତିଗର୍ଭରେ ସଯତ୍ନ ରଖି ପାରିଥିଲେ ଅଥଚ ନିଜ ବୁଦ୍ଧି ବଳରେ ସୁସମ୍ପନ୍ନ କରି ପାରିଥିଲେ, ସେସବୁ ସଙ୍ଗତ ରୂପେ ପ୍ରଦର୍ଶନ କରି ଅଛନ୍ତି । ଯାହା ଯାହା ସ୍ମୃତିକୋଷରୁ ବିଚ୍ୟୁତ କିମ୍ବା ବୁଦ୍ଧି ସମକ୍ଷରୁ ଅନ୍ତର୍ହିତ ହୋଇ ଯାଇଥିଲା, ସେସବୁ କାଳ୍ପନିକ ଜାଲରେ ପଡ଼ିବାରୁ ସ୍ଥାନେ ସ୍ଥାନେ ଅସଙ୍ଗତ ହୋଇଯାଇ ଅଛି । ସୁତରାଂ ବିଶ୍ୱାସ ହୁଏ, ଏଥିମଧ୍ୟରେ କେତେକ ଅନଭିଜ୍ଞ ପ୍ରକ୍ଷେପକଙ୍କ ଅତ୍ୟାଚାର ସୁଦ୍ଧା ମିଶି ଯାଇଅଛି । ଅଭିଜ୍ଞ ପାଠକଗଣ ସାବହିତ୍‌ଥ ହୃଦୟରେ ବିଚାର କରି ନିଅନ୍ତୁ । ଏ ମହାଶୟ ଆଦି ପର୍ବର ପ୍ରାରମ୍ଭରେ "ମହାଭାରତ" ଏହି ପଦର ବ୍ୟୁତ୍ପତ୍ତି ଲେଖି ଅଛନ୍ତି କି, ଦେବତାମାନେ ଶାସ୍ତ୍ରମହତ୍ତାର ମୀମାଂସୁ ହୋଇ ତୁଳାଦଣ୍ଡର ଏକ ପାର୍ଶ୍ୱରେ ସମଗ୍ର ପୁରାଣ ଓ ବେଦ ଶାସ୍ତ୍ରାଦିମାନଙ୍କୁ, ଅପର ପାର୍ଶ୍ୱରେ ଏହି ସଂହିତାକୁ ରଖିଲେ । ଫଳତଃ ଏହି ସଂହିତାଟିର ଭାର ସମଧିକ ବା ମହାନ୍ ହେବାରୁ ଏହାକୁ ମହାଭାରତ ଆଖ୍ୟା ପ୍ରଦାନ କରିଥିଲେ ।(୧) ମୂଳଗ୍ରନ୍ଥର ଅନୁକ୍ରମଣିକାଧ୍ୟାୟରେ ମଧ୍ୟ ଠିକ୍ ଏହିପରି ଉକ୍ତ ଅଛି । ବ୍ରହ୍ମ ମୁନି ଓ ଶୂଦ୍ର ମୁନିଙ୍କ ବ୍ୟୁତ୍ପତ୍ତିକରଣ ଠିକ୍ ଏକାଧାରରେ ବିଦ୍ୟମାନ ରହିଅଛି । ମୂଳ ମହାଭାରତରେ ଗଣ୍ଡକୀ (ନଦୀ) ପଦର ବ୍ୟୁତ୍ପତ୍ତି ନ ଥିଲେ ସୁଦ୍ଧା ଏ କବି ମହୋଦୟ ନାନା ପୁରାଣ ଶୁଶ୍ରୁଷକତା ବଳରୁ ତାହାର ବ୍ୟୁତ୍ପତ୍ତିବିବରଣ ସୁସମୀଚୀନ କରି ଲେଖିପାରି ଅଛନ୍ତି । ପଦ୍ମପୁରାଣ ପାତାଳ ଖଣ୍ଡରେ ଉକ୍ତ ଅଛି, ପୁରା ପ୍ରଜାପତି ପ୍ରଜାବର୍ଗକୁ ପାପରହିତ କରିବା ପାଇଁ ସ୍ୱକୀୟ ଗଣ୍ଡବିନ୍ଦୁମାନଙ୍କରେ ଗଣ୍ଡକୀ ନଦୀର

---

(୧) ପୁରାକିଳ ସୁରୈଃ ସର୍ବୈଃ ସମେତ୍ୟ ତୁଳୟା ଧୃତଂ ।
ଚତୁର୍ଭ୍ୟଃ ସରହସ୍ୟେଭ୍ୟୋ ବେଦେଭ୍ୟୋଽପ୍ୟଧିକଂ ଯଦା ।
ତଦା ପ୍ରଭୃତି ଲୋକେଽସ୍ମିନ୍ ମହାଭାରତମୁଚ୍ୟତେ ।
ମହତ୍ତ୍ୱେ ଚ ଗୁରୁତ୍ୱେ ଚ ଧ୍ରିୟମାଣଂ ଯତୋଽଧିକଂ ।
ମହତ୍ତ୍ୱାଦ୍ ଭାରତତ୍ତ୍ୱାଚ ମହାଭାରତମୁଚ୍ୟତେ ।

ଏ ଚାରି ପୁରାଣଆଦି ସମସ୍ତ ପୁରାଣ,
ଏମାନ ବସାଇ ତୁଳାଦଣ୍ଡ ବାଡ଼କେଣ ।
ଆରବାଡ଼େ ଅଷ୍ଟାଦଶ ପର୍ବକୁ ଥୋଇଲେ,
ସମସ୍ତ ଗ୍ରନ୍ଥରୁ ମହାଭାରା ଏ ହୋଇଲେ ।
ଭାରତ ଗ୍ରନ୍ଥ ଯହୁଁ ହୋଇଲା ମହାଭାରା,
ତେଣୁ ମହାଭାରତ ନାମ ଦେଲେ ଅଙ୍ଗିରା ।

ସୃଷ୍ଟି କରିଥିଲେ । ଏହି ମହାକବି ମହୋଦୟ ମଧ ତାହା ହିଁ ଲେଖି ଅଛନ୍ତି ।(୧) ଏହି କ୍ରମରେ ନିଜର ବୁଦ୍ଧି ବିଚାରକୁ ଅଗ୍ରସର କରି ଜମ୍ଭଭେଦୀ, ପ୍ରମଦା, ଭରତଖଣ୍ଡ ବା ଭାରତବର୍ଷ, ନୀଳକଣ୍ଠ, କାମ୍ୟବନ, ମଧୁରିପୁ, ନାରାୟଣ, ଲକ୍ଷ୍ମଣ, ଇନ୍ଦ୍ରାବତୀ, ଖାଣ୍ଡବ, ବୀଭତ୍ସୁ ପ୍ରଭୃତି ପଦମାନଙ୍କର ବ୍ୟୁତ୍ପତ୍ତିକ୍ରମ ସୁଦ୍ଧା ପ୍ରାୟଶଃ ସୁସମୀଚୀନ କରିପାରି ଅଛନ୍ତି, କିନ୍ତୁ ଏଥି ମଧରେ ସନ୍ନିଳିତ ବିରାଟ ପଦର ବ୍ୟାଖ୍ୟା ପ୍ରକୃତମତେ ସମାଖ୍ୟାନ କରିପାରି ନାହାନ୍ତି । ପାଠକଗଣ ନିମ୍ନରେ ଉଦ୍ଧୃତ ପଦମାନ ଦେଖିଲେ କବିକୃତ ସିଦ୍ଧାନ୍ତ ସମ୍ୟକ୍ ଅବଗତ ହୋଇପାରିବେ ।(୨) ଆଦି ପର୍ବରେ ପ୍ରଥମତଃ ସୋମବଂଶର କ୍ରମୋତ୍ପତ୍ତି ବିବରଣ କହି ସେଥି ମଧରେ ଲେଖି ଅଛନ୍ତି କି, ସୋମବଂଶଜାତ ପୁରୁ ନାମକ ନୃପତିଙ୍କ

---

ତେଣୁ କରି ହୋଇଲା ମହାଭାରତ ନାମ,
ତୁଳତେ ହୋଇଲା ସେହୁ ମହାଭାରା ସମ ।

(୧) ଗଣ୍ଡକୀୟଂ ନଦୀ ରାଜନ୍ ସୁରାସୁରନିଷେବିତା ।
ପୁରାଦୃଷ୍ଟା ପ୍ରଜାନାଥଃ ପ୍ରଜାଃ ସର୍ବା ବିପାପିନୀଃ ।
ସ୍ୱଗଣ୍ଡବିପୃଷାନେକପାପଘ୍ନୀ ସୃଷ୍ଟାବାନିମାଂ । ପଦ୍ମ. ପୁ. ପା.ଖ. ୨୦ ଅ:

XX ଉଦକ ଗଣ୍ଡୁଷ କରେ ଏ ନଦୀ ଭିତର ।
ବ୍ରହ୍ମାର ଗଣ୍ଡୁଷ ଏଥି ଅଟଇ ଉଦେ କି ।
ତେଣୁ କରି ଏହା ନାମ ଅଟଇ ଗଣ୍ଡକୀ । ସଭା.ପ.

(୨) ଜମ୍ଭଭେଦୀ – ଜମ୍ଭ ଦୈତ୍ୟକୁ ନାଶି ମୋର ନାମ ଜମ୍ଭଭେଦୀ । ଉ.ପ.

ପ୍ରମଦା – ପ୍ର = ଉତ୍କୃଷ୍ଟ, ମଦରୂପ ସୌଭାଗ୍ୟଜନିତ ଗର୍ବ ଅଛି ଯାହାର – ଯଥା –
ମଦିରା ଖାଇଲେ ଯେହ୍ନେ ହେଠ ଅସମ୍ଭାଳ ।
ପରପୁରୁଷ ଦେଖିଲେ ଆମ୍ଭେ ହେଉ ଭୋଳ ।
ତେଣୁ କରି ପ୍ରମଦା ନାମ ଯେ ଆମ୍ଭର ।
ଅନୁବ୍ରତେ ଇଚ୍ଛା କରୁଁ ପୁରୁଷ ସୁନ୍ଦର । ଆ.ପ.

ଭାରତଖଣ୍ଡ– ଦୁଷ୍ମନ୍ତର ଭରତ ନାମେ ପୁତ୍ର ଜନ୍ମିଲା ।
ତେଣୁ କରି ଭ୍ରତଖଣ୍ଡ ମେଦିନୀର ନାମ ହେଲା । ଆ.ପ.

ନୀଳକଣ୍ଠ– ତ୍ରୈଲୋକ୍ୟ ଉଦ୍ଧାରଣେ ଯାର ଗଣ୍ଡୁଷ କାଳକୂଟ ।
ତେଣୁ ବୋଲାଇଲୁ ତୁ ନାମ ନୀଳକଣ୍ଠ । ଅଶ୍ୱ.ପ.

କାମ୍ୟବନ– ପର୍ଶୁରାମ ପିତା ଯମଦଗ୍ନି ଦଇବତେ ।
କାମ୍ୟଶ୍ରାଦ୍ଧ କଲେ ଏଥି ପିତୃକାର୍ଯ୍ୟ ନିମନ୍ତେ ।
ତହୁଁ ସେ କାମ୍ୟବନ ହୋଇଲା ପ୍ରସିଦ୍ଧ । ବ.ପ.

ମଧୁରିପୁ } ମଧୁଦୈତ୍ୟ ସଂହାରଣେ ମଧୂରିପୁ ନାମ ।
ନାରାୟଣ } ନରର ଆଶ୍ରୟ ବୋଲି ନାମ ନାରାୟଣ । ବ.ପ.

"ନରାଣାମୟନାଚ୍ଚାପି ତତୋ ନାରାୟଣଃ ସ୍ମୃତଃ" – ଉ.ପ. ୬୯ ଅଧାୟ ।

ଭାର୍ଯ୍ୟା ଓଡ଼ଣୀ (ଓଡ଼ଦେଶ ସ୍ତ୍ରୀ) ଥିବାରୁ ଓଡ଼ିଶାର ନାମ ଓଡ଼ରାଷ୍ଟ୍ର ହେଲା । ଏହା ଅକୃତ୍ରିମ ଓ ସଂସ୍କୃତ କ୍ରମାନୁରୂପ ନ ହେଲେ ସୁଦ୍ଧା ବ୍ୟୁତ୍ପତ୍ତିକ୍ରମର ସଂଘଟନା ତାଦୃଶ ଅସଙ୍ଗତ ବୋଧହୁଏ ନାହିଁ । ସେ ଯାହା ହେଉ ଓଡ଼ିଶା ଆଦିମ ଓଡ଼ିଆମାନଙ୍କର ଦେଶ ଥିବାରୁ ଓଡ଼ରାଷ୍ଟ୍ର ନାମରେ ଅଭିହିତ ହେଲା, ଏହା ହିଁ କବିଙ୍କ ହୃଦଗତ ଭାବ ଜଣାଯାଏ ।(୧) ପୁଣି କୋଣ ଓ ଅର୍କ ଏହି ଉଭୟ ଶବ୍ଦକୁ ଧରି ଐତିହାସିକ ପ୍ରଥାନୁସାରେ

---

ଲକ୍ଷ୍ମଣ — ବାବୁ ଅତ୍ୟନ୍ତ ସୁଗୁଣ ତୋର ବତ୍ରିଶ ଲକ୍ଷଣ ।
ତେଣୁ କରି ନାମ ତୋତେ ଦେଲେ ଯେ ଲକ୍ଷ୍ମଣ । ଗଦା.ପ.

ଚନ୍ଦ୍ରାବତୀ — ଚନ୍ଦ୍ର କିରଣକୁ ଜିଣି ଦିଶେ ତାର ଜ୍ୟୋତି ।
ତେଣୁ କରି ନାମ ତାର ଅଟେ ଚନ୍ଦ୍ରାବତୀ । ମ.ପ.

ଖାଣ୍ଡବ — ଖଣ୍ଡନ କରିଣ ଯେଣୁ ଲଗାଇଲେ ବୃକ୍ଷ ।
ଖାଣ୍ଡବ ବନ ନାମ ଦେଲେଟି ପ୍ରତ୍ୟକ୍ଷ । ମ.ପ.

ଜନାର୍ଦ୍ଦନ — ଦୈତ୍ୟପାଳ ବିଦାରଣେ ନାମ ଜନାର୍ଦ୍ଦନ । ବି.ପ.
"ଦସ୍ୟୁତ୍ରାସାଜ୍ଜନାର୍ଦ୍ଦନଃ" ଉ.ପ. ୬୯ ଅ:

ଭୀଭତ୍ସୁ — ବାବୁ ସଂଗ୍ରାମେ ନିସତ ହୋନ୍ତି ଯେଉଁ କ୍ଷତ୍ରି ।
କେଶ ମୁକୁଳା ଉଲଗ୍ନ ନିରସ୍ତ୍ର ଯେ ରଥୀ ।
ରଣେ ତାହାକୁ ମୁଁ ନ ପେଷଇ ଶରଗୋଟି ।
× ତେଣୁ ବୀଭତ୍ସୁ ନାମକୁ ଦେଲେ ସର୍ବଜନ । ବି.ପ.
ନ କୁର୍ଯ୍ୟାଂ କର୍ମବୀଭତ୍ସଂ ଯୁଧମାନଃ କଥଂଚନ ।
ତେନ ଦେବମନୁଷ୍ୟେଷୁ ବିଭତ୍ସୁରିତିବିଶ୍ରୁତଃ । ବି.ପ.
ଏହି ପଦରେ ସୁଦ୍ଧା କିଛି ମୌଳିକ ସାଦୃଶ୍ୟ ଅଛି ।

ଇଚ୍ଛାମୃତ୍ୟୁ — ଜିଇଲେ ଜିଉ ମଲେ ମରୁ ଗଙ୍ଗା ବୋଇଲେ ।
ତେଣୁ କରି ଭୀଷ୍ମ ଦେବ ଇଚ୍ଛାମୃତ୍ୟୁ ହେଲେ । ଆ.ପ.

ବିରାଟ — ଦଇବ ଯୋଗେ ରାଣୀ ଛାଡ଼ିଲା ଯହୁଁ ରାଷ୍ଟ୍ର ।
ସେ ପୁତ୍ରର ନାମଗୋଟି ଦେଲାକ ବିରାଟ । ସଭା.ପ.

(୧) ଗୋପାଳ ନୃପତି ନାମ ମରୁଧ୍ୱଜ ବୀର ।
ସୁଗାବତୀ ବୋଲିଣ ଯେ ଦୁହିତା ତାହାର ।
ସସାଗରା ପୃଥିବୀ ନବଭାଗ କଲେ ।
ନବଖଣ୍ଡ ମେଦିନୀ ନବ ପୁତ୍ରକୁ ଦେଲେ ।
ରାଜାର ଜ୍ୟେଷ୍ଠପୁତ୍ର ନାମ ପ୍ରଭୁ ନୃପତି ।
ଓଡ଼ଣୀ ଭାରିଯା ତାର ଅଟଇ ସତ୍ତତି ।
ମାତାଙ୍କର ଭାଗ ଯେ ଓଡ଼ରାଷ୍ଟ୍ର ମଣ୍ଡଳେ ।
ତେଣୁ ଓଡ଼ିଶାକୁ ଓଡ଼ରାଷ୍ଟ୍ର ଯେ ବୋଇଲେ । ଆ.ପ.

ଯାହାକି କୋଣାର୍କର ବ୍ୟୁତ୍ପତ୍ତି ସ୍ଥିର କରିଅଛନ୍ତି, ତାହା ସୁଦ୍ଧା ସୁସଙ୍ଗତ ବୋଧହୁଏ । କାରଣ ସୂର୍ଯ୍ୟଦେବ ଚନ୍ଦ୍ରଭାଗା ନଦୀର ଏକ କୋଣରେ ଅର୍କ ଦୈତ୍ୟକୁ ନିହତ କରିଥିବାରୁ ପ୍ରୋକ୍ତ ସ୍ଥାନର ନାମ କୋଣାର୍କ ହେଲା ବୋଲି (୧) ଅନେକତ୍ର ସିଦ୍ଧାନ୍ତ କରିଅଛନ୍ତି । ଏହାର ଅନ୍ୟଥାକରଣରେ ଅନ୍ୟତ୍ର ଅନ୍ୟ ପ୍ରକାର ବ୍ୟୁତ୍ପତ୍ତି ପ୍ରଶସ୍ତି ଥିଲେ ହେଁ ଏହା କେବଳ ଅସଙ୍ଗତ ପରି ଧାର୍ଯ୍ୟ ହୋଇ ନ ପାରେ । କିନ୍ତୁ ଏତାଦୃଶକ୍ରମରେ ମଲ୍ଲିକାର୍ଜୁନ ଓ ପରିକ୍ଷିତ ଶବ୍ଦର ଆକ୍ଷରିକ ଅର୍ଥ ଧରି ବ୍ୟୁତ୍ପତ୍ତି ସ୍ଥିର କରିବାକୁ ଯାଇ କିଞ୍ଚିତ୍ ପ୍ରମାଦ ଓ ଭ୍ରାନ୍ତ ଧାରଣାରେ ପଡ଼ିଯାଇ ଅଛନ୍ତି । ଦକ୍ଷିଣ ଭାରତର ଶ୍ରୀପର୍ବତରେ ମଲ୍ଲିକାର୍ଜୁନାଭିଧ ଶିବମୂର୍ତ୍ତି ସର୍ବତ୍ର ସୁବିଖ୍ୟାତ ।(୨) ଏ ସମ୍ବନ୍ଧରେ ଏ କବି ମହାଶୟ ନକୁଳଙ୍କ ଦକ୍ଷିଣ ଦିଗ୍‌ବିଜୟ ପ୍ରକରଣରେ କହି ଅଛନ୍ତି କି, ତତ୍ରତ୍ୟ ଶ୍ରୀଗିରି ପର୍ବତରେ ଶ୍ରୀରାମଚନ୍ଦ୍ର ସୁଷେଣଙ୍କୁ ରାଜା କରିବାର ମନସ୍ଥ କରିଥିଲେ । ମାତ୍ର ଅସମୟରେ ସୁଷେଣ ପଞ୍ଚତ୍ୱ ପ୍ରାପ୍ତ ହେବାରୁ ହନୁମାନ କେତେଗୁଡ଼ିଏ ମଲ୍ଲିକାପୁଷ୍ପ ଓ କୃଷ୍ଣାଜିନରେ ପ୍ରୋଥିତ ମୃତ କଳେବରକୁ ଆଚ୍ଛାଦିତ କରି ରଖିଲେ । ପରେ ରାମଚନ୍ଦ୍ର ଆସି ପ୍ରୋକ୍ତ ଆଚ୍ଛାଦନ ଉନ୍ମୋଚନ କରି ଦେଖିଲେ ଯେ, ମୃତ କଳେବରଟି ଗୋଟିଏ ସ୍ୱୟମ୍ଭୁ ଲିଙ୍ଗରେ ପରିଣତ ହୋଇଅଛି । ଅତଏବ ମଲ୍ଲିକା ଓ ଅଜିନ ନାମ ନେଇ ଆବିର୍ଭୂତ ଲିଙ୍ଗକୁ ମଲ୍ଲିକାର୍ଜୁନ ନାମରେ ନାମିତ କଲେ ।(୩) ଏହା ତାଦୃଶ ସୁସଙ୍ଗତ ହୋଇ ନାହିଁ । କିଞ୍ଚିତ୍ ଅସାବଧାନତାରୁ ଏପରି କହିଦେଇ ଅଛନ୍ତି । ଲିଙ୍ଗଟି ମଲ୍ଲିକା ପ୍ରାୟ ଅର୍ଜୁନ ଅର୍ଥାତ୍ ଶୁକ୍ଳ ଥିବାରୁ ମଲ୍ଲିକାର୍ଜୁନ ନାମ ଦେଲେ । ଏହା କହିଥିଲେ ସୁସଙ୍ଗତ ହୋଇଥାନ୍ତା । ପରିକ୍ଷିତ୍ ନାମକୁ ପରୀକ୍ଷା କରି ପରୀକ୍ଷା ଦ୍ୱାରା ଏ ରକ୍ଷିତ ହୋଇଥିବାରୁ ପ୍ରୋକ୍ତ ନାମ ପାଇଥିଲେ

---

(୧) ପୃଥିବୀର ଅଗ୍ନିକୋଣେ ଦୈତ୍ୟକୁ ସେ ମାରି ।
କୋଣାରକ ତୀର୍ଥ କଲେ ନାମ ଅନୁସରି । ଭୀ.ପ.
ଅର୍କ ଦୈତ୍ୟକୁ ମାଡ଼ି ବସିଲେ ବିରଞ୍ଚି ।
ଏ ହେତୁ କୋଣାଅର୍କ ନାମ ଏବେ ଅଛି । ବି.ପ.

(୨) ଏ ସ୍ଥଳରେ ସସୀତା ଲକ୍ଷ୍ମଣ ରାମଚନ୍ଦ୍ର ମଧ୍ୟ ପ୍ରତିଷ୍ଠିତ ଥିବା ପଦ୍ମପୁରାଣରେ ଉକ୍ତ ଅଛି ।
ତତଃ ଶ୍ରୀଶୈଳମାସାଦ୍ୟ ସିଦ୍ଧଗନ୍ଧର୍ବ ସେବିତଂ ।
ଗିରିଜାବଲ୍ଲଭୋ ଯତ୍ର ମଲ୍ଲିନାଥୋଽଭିଧାନତଃ × × ×
ରାମୋଽସ୍ତି ସାନୁଜଃ ସାର୍ଦ୍ଧଂ ଜାନକ୍ୟାପି ତତୋଗତଃ । ଇତ୍ୟାଦି ।
ପଦ୍ମ ଉ.ଖ. ୧୮୦ ଅଧ୍ୟାୟ ।

(୩) ହନୁ ଘୋଡ଼ାଇଲେ ଯେଣୁ ମଲ୍ଲିକାଗୁଡ଼ିଏ ।
ଉପରେ ଦେଲା କୃଷ୍ଣାଜିନ ଛାଲ ଗୋଟିଏ ।
ମଲ୍ଲିକା ଅଜିନ ଲିଙ୍ଗ ହେଲା ଉତପରି ।
ମଲ୍ଲିକାର୍ଜୁନ ନାମ ଦେଲେ ରଘୁପତି । ସଭା.ପ.

ବୋଲି କହି ଅଛନ୍ତି । କିନ୍ତୁ ତାହାର ଯଥାର୍ଥତାରେ ଏହା ନିର୍ଭର ହୋଇ ନାହିଁ । ମୂଳଗ୍ରନ୍ଥରେ ଏହାର ପ୍ରକୃତ ବ୍ୟୁତ୍ପତ୍ତି ଅନ୍ୟଥା ଅଭିହିତ ଅଛି ସତ୍ୟ, ମାତ୍ର ଏ ସ୍ଥଳରେ ଦାସ କବିଙ୍କ ହୃଦ୍‌ଗତ ଭାବ ଏହି ଯେ, ଶ୍ରୀକୃଷ୍ଣ ସର୍ବସମକ୍ଷରେ ନିଜ ମହିମାର ପରୀକ୍ଷା ପ୍ରଦର୍ଶନ ପୂର୍ବକ ଏହାଙ୍କୁ ପୁନରୁଜ୍ଜୀବିତ କରିଥିଲେ ବୋଲି ଏହାଙ୍କ ନାମ ପରୀକ୍ଷ ହେଲା ।(୧) ପରିକ୍ଷିତ୍ ଶବ୍ଦକୁ ପରୀକ୍ଷା କଲା ପରି ଅଙ୍ଗାରପର୍ଣ୍ଣ ଶବ୍ଦକୁ ଅଙ୍ଗାରପନ୍ନଗ କରି କାଳ୍ପନିକ ବ୍ୟୁତ୍ପତ୍ତି ପ୍ରକାଶ କରି ଅଛନ୍ତି । ତଥାପି ଯୁକ୍ତିଯୁକ୍ତ ଓ ପୂର୍ବାପର ଅବିରୁଦ୍ଧ ହୋଇ ନାହିଁ । ମୂଳ ଆଦିପର୍ବାନ୍ତର୍ଗତ ଚୈତ୍ରରଥ ଉପପର୍ବରେ ଅଙ୍ଗାରପର୍ଣ୍ଣ ଗନ୍ଧର୍ବଙ୍କ ବିଷୟ ଲେଖାଅଛି । ଏହି ନାମର ବ୍ୟୁତ୍ପତ୍ତି - ଦୀପ୍ତ ଅଙ୍ଗାର ପ୍ରାୟ ଅନ୍ୟର ଦୁଃସ୍ପର୍ଶନୀୟ ଅଟେ ପର୍ଣ୍ଣ ଅର୍ଥାତ୍ ରଥ ଯାହାର । ଏହି ଅଭିଧେୟକୁ ସାରଳାଦାସେ ହୃଦୟଙ୍ଗମ କରି ନ ପାରି ତାତ୍କାଳିକ ମତିମାନ୍ଦ୍ୟରୁ ବିକୃତ କରି କହନ୍ତି କି, ଗରୁଡ଼ଙ୍କ ଭୟରେ ସର୍ପମାନେ ତାହାଙ୍କୁ ଶରଣ କରିବାରୁ ନିଜେ ସେ ସର୍ପମାନଙ୍କୁ ଆପଣା ଅଙ୍ଗରେ ରଖିଲେ । ଅତଏବ ତାହାଙ୍କ ନାମ ଅଙ୍ଗାରପନ୍ନଗ ବା ଅଙ୍ଗାରପନଙ୍ଗ ହେଲା ।(୨) କେତୁକା ପଦର ବ୍ୟୁତ୍ପତ୍ତିରେ 'କେ ତୁ' ଏପରି ବର୍ଣ୍ଣ ବିଶ୍ଳେଷଣରେ ଦେଶୀୟ ଭାଷାନୁଗତ ଅର୍ଥକୁ ଗ୍ରାହ୍ୟ କରି ପଦର ସାର୍ଥକତା ବୁଝାଇ ଅଛନ୍ତି (୩) ଏବଂ କର୍ଣ୍ଣବାଟେ ପ୍ରସୂତ ହୋଇଥିବାରୁ ରାଧେୟଙ୍କ ନାମ କର୍ଣ୍ଣ ହୋଇଥିଲା ବୋଲି ପ୍ରକାଶ କରି ଅଛନ୍ତି, କିନ୍ତୁ ମୂଳ ମହାଭାରତରେ କର୍ଣ୍ଣଙ୍କ କର୍ଣ୍ଣପ୍ରସୂତତ୍ୱ ଉକ୍ତ ନାହିଁ । ସେ ସଦ୍ୟୋଗ ମାତ୍ରେ ପ୍ରସୂତ ବୋଲି ଏବଂ ତାହାଙ୍କର ସହଜ କୁଣ୍ଡଳ

---

(୧) ମୃତ୍ୟୁପିଣ୍ଡ ଛିଆଇଁ ସୋମବଂଶ ରକ୍ଷାକଲେ ।
ପରୀକ୍ଷାରେ ତାରିଣ ପରୀକ୍ଷ ନାମ ଦେଲେ । କାଇଁ. ପ.
ପରୀକ୍ଷାରୁ କୁମର ଯେ ପାଇବାରୁ ଜୀବ ।
ତେଣୁ ଯେ ପରୀକ୍ଷ ନାମ ଦେଲେ ଦେବଦେବ । ନାରୀ,ପ.
"ଜୀବୟିତ୍ୱାଚୈନମୁବାଚ
ପରିକ୍ଷୀଣେ କୁଳେ ଜାତୋ ଭବତ୍ୱୟଂ ପରିକ୍ଷିନ୍ନାମେତି ।"
ଆ.ପ. ୯୫ ଅଧ୍ୟାୟ ।

(୨) ସର୍ପମଧ୍ୟେ ଯହୁଁ ହେଲା ମୋର ଅଙ୍ଗ ।
ତେଣୁ ସେ ମୋର ନାମ ଅଙ୍ଗାରପନଗ । ଆ.ପ.
ପୁଣି ଅନ୍ୟତ୍ର ଲେଖା ଅଛି—
ଏହି ଅଙ୍ଗେ ଭୋଗ କରଇ ରସରଙ୍ଗ ।
ତେଣୁ ସେ ନାମ ମୋର ଅଙ୍ଗାରପନ୍ନଗ । ଆ.ପ.
ଏହି ବିତଥ ଭାଷଣ କବିଙ୍କର କି ପ୍ରକ୍ଷେପକଙ୍କର ସନ୍ଦେହ ହୁଏ ।

(୩) କେ ତୁ ? ବୋଲିଣ ବୋଇଲେ ତାକୁ ଆଦି ନାରୀ ।
ତେଣୁ କେତୁକା ନାମ ଯେ ହୋଇଲା ତାହାରି । ଆ.ପ.

ମହାକବି ଉପେନ୍ଦ୍ର ଭଞ୍ଜ ମଧ୍ୟ ଏହି କ୍ରମରେ ତୁହିନ, ମାର ପ୍ରଭୃତି ପଦର ବ୍ୟୁତ୍ପତ୍ତି ବୁଝାଇ ଅଛନ୍ତି ।

ଥିବାରୁ ଏବଂ ସମୟରେ ତାହା କର୍ଣ୍ଣରୁ ଉତ୍କର୍ତ୍ତନ କରି ଇନ୍ଦ୍ରଙ୍କୁ ପ୍ରଦାନ କରିଥିବାରୁ କର୍ଣ୍ଣ ନାମ ପାଇଥିଲେ ବୋଲି ଉକ୍ତ ଅଛି ।(୧) ଏହାପରେ ଏ ମହାଶୟ ଶିଖଣ୍ଡୀ ପଦର ବ୍ୟୁତ୍ପତ୍ତିରେ କହନ୍ତି କି, ଦ୍ରୁପଦରାଜ ଜନ୍ମ ମାତ୍ରେ ତାହାଙ୍କୁ ନପୁଂସକ ଦେଖି ଶିର ଖଣ୍ଡନ କରୁଥିଲେ । ଅତଏବ ସେହି ସନ୍ତାନର ନାମ ଶିଖଣ୍ଡୀ ହେଲା ।(୨) ଇତ୍ୟାକାରକର କେତେକ ବ୍ୟୁତ୍ପତ୍ତି ପ୍ରକାଶ ସ୍ଥଳରେ ଯଥାର୍ଥତାର ଆଭାସ ମାତ୍ର ରହିଅଛି । କିନ୍ତୁ ବୈତରଣୀ, ପାଣ୍ଡବ, ଯୁଧିଷ୍ଠିର, ନକୁଳ, ହର, ଭୁଷଣ୍ଡ, ତ୍ର୍ୟମ୍ବକ, ଅଶ୍ୱତ୍ଥାମା, ସହଦେବ, ଧୃଷ୍ଟଦ୍ୟୁମ୍ନ, ଶ୍ୱେତବାହନ, ଧନଞ୍ଜୟ, ପାର୍ଥ ଓ ସବ୍ୟସାଚୀ ପଦର ପ୍ରଦତ୍ତ ବ୍ୟୁତ୍ପତ୍ତି ନିତାନ୍ତ ଅଜ୍ଞାନମୂଳକ ବୋଧହୁଏ । ଏହି ପଦଗୁଡ଼ିକର ସାର୍ଥକତା ପ୍ରକାଶ କରଣରେ ସାରଳାଦାସେ ଏକାନ୍ତ ଅନୁଚିତ ସାହସରେ ଆରୂଢ଼ ହୋଇ ଅଛନ୍ତି । ଅଗ୍ରପଶ୍ଚାତ୍ କିଛି ବିଚାର ନ କରି ଯାହା ମନେହେଲା, ତାହା ହିଁ ଆଶୁ ଲେଖନର ଧୋରଣୀରେ ପକାଇ ଲେଖିଯାଇ ଅଛନ୍ତି ବୋଲିବାକୁ ହେବ । ପ୍ରୋକ୍ତ ପଦମାନଙ୍କର ବ୍ୟୁତ୍ପତ୍ତିକ୍ରମର ପ୍ରମାଣ ବାକ୍ୟମାନ ନିମ୍ନରେ ଉଦ୍ଧୃତ କରୁଅଛୁଁ –

ବୈତରଣୀ – ବିତରଣ + ଅ + ଇ ।
ବଇଲୋଚନ ଆଣିଲାରୁ ନାମ ବୈତରଣୀ । ବ.ପ.
ପାଣ୍ଡବ – ପାଣ୍ଡୁ + ଅ ।
ପାଣ୍ଡବାସୁରକୁ ଯହୁଁ ପାଣ୍ଡବେ ବଧିଲେ ।
ତେଣୁ ସେ ପାଣ୍ଡବ ନାମ ପାଅହେଁ ବିହିଲେ । ଆ.ପ.
ଯୁଧିଷ୍ଠିର – ଯୁଧି = ଯୁଦ୍ଧରେ + ସ୍ଥିର । ସ୍ଥ = ଷ୍ଠ ।
ମହାବିଜ୍ଞବନ୍ତ ଅବୀକ୍ଷଣେ ଜ୍ଞାନ ଧର୍ମ ।
ଏ ନ୍ୟାୟରୁ ଦେଲେ ଯୁଧିଷ୍ଠିର ନାମ । ଆ.ପ.

---

(୧) କର୍ଣ୍ଣବାଟେ ସେ ପୁତ୍ର ହୋଇଲେ ମୋର ଜାତ ।
କର୍ଣ୍ଣ ନାମ ଦେଲେ ତାର ଦେବ ଯେ ଆଦିତ୍ୟ । ଆ.ପ.
ତତଶ୍ଛିତ୍ୱା କବଚଂ ଦିବ୍ୟମଙ୍ଗାତ୍ ।
ତଥୈବାର୍ଦ୍ରଂ ପ୍ରଦଦୌ ବାସବାୟ ।
ତଥୋତ୍କୃତ୍ୟ ପ୍ରଦଦୌ କୁଣ୍ଡଳେ ତେ ।
କର୍ଣ୍ଣାତ୍ ତସ୍ମାତ୍ କର୍ମଣା ତେନ କର୍ଣ୍ଣଃ । ବ.ପ. ୩୦୯ ଅ:
(୨) ଶିର ଏହାର କିପାଇଁ ଖଣ୍ଡୁ ଥିଲୁ ଏବେ ।
ଶିଖଣ୍ଡୀ ନାମ ଦେବୁ ଏହାର ରାଜଦେବେ । ଆ.ପ.
ଏତାଦୃଶ ବ୍ୟୁତ୍ପତ୍ତି ବିଶିଷ୍ଟ ଅନେକଗୁଡ଼ିଏ ପଦ ସଂସ୍କୃତ ପୁରାଣମାନଙ୍କରେ ମଧ ଦେଖାଯାଏ । ଯଥା–
ଯଂ ଯଂ କରାଭ୍ୟାଂ ସ୍ପୃଶତି ଜୀର୍ଣ୍ଣଂ ସୁଖମଶ୍ନୁତେ ।
ପୁନର୍ଯବାଚ ଭବତି ତସ୍ମାତ୍ ତଂ ଶାନ୍ତନୁଂ ବିଦୁଃ । ଆ.ପ. ୯୫ ଅ:

ନକୁଳ – କୁଳେ ନାସ୍ତି ସମୋରୂପେ ଯସ୍ୟେତି ନକୁଳ ସ୍ମୃତଃ । ବି.ପ. ୫ ଅ:
ବନ ନଦୀକୂଳରେ କୁମାର ଉପୁଜିଲା ।
ତେଣୁ କରି ମହାତ୍ମା ନକୁଳ ନାମ ଦେଲା । ଆ.ପ.

ହର – ବ୍ରହ୍ମାଣମିନ୍ଦ୍ରାବରୁଣୌ ଯମଃ ଧନଦମେବଚ ।
ନିଗୃହ୍ୟ ହରତେ ଯସ୍ମାଦ୍ ତସ୍ମାଦ୍ ହର ଇତିସ୍ମୃତଃ । ଦ୍ରୋ.ପ. ୨୦୩ ଅ:
ଖାରକୁଣ୍ଡେ ପଡ଼ିଣ ରୁଦ୍ର ମୋହ ଯାନ୍ତି ।
ତେଣୁ ସେ ହର ନାମ ବିହିଲେ ପଶୁପତି । ଆ.ପ.

ଅର୍ଥାତ୍ ଶ୍ୱେତରାଜାଙ୍କ ଯାଗାଗ୍ନି ଖାରକୁଣ୍ଡରେ ପଡ଼ି ମୋହିତ ହେବାରୁ ମହାଦେବ ହର ନାମ ଧାରଣ କଲେ ।

ଭୁଷଣ୍ଡ – ଅଣ୍ଡ ଖସନ୍ତେ ଯେ ପୁତ୍ର ହୋଇଲାକ ଜନ୍ମ ।
ତେଣୁ କରି ଭୁଷଣ୍ଡଟି ଦେଲେ ତାର ନାମ । ବ.ପ.

ତ୍ର୍ୟମ୍ବକ – ତିସ୍ରୋଦେବ୍ୟା ଯଦା ଚୈନଂ ଭଜନ୍ତେ ଭୁବନେଶ୍ୱରଂ ।
ଦ୍ୟୌରାପଃ ପୃଥିବୀ ଚୈବ ତ୍ର୍ୟମ୍ବକସ୍ତୁ ତତଃ ସ୍ମୃତଃ ।
ଦ୍ରୋ.ପ. ୨୦୩ ଅ:
ତୀର ପୋତି ଲକ୍ଷ୍ମଣ ଯେ କରାଇଲା ଶାନ୍ତ ।
ନାମ ଏଣୁ ଏହାର ଯେ ତ୍ର୍ୟମ୍ବକନାଥ । ବ.ପ.

ଅର୍ଥାତ୍ ତୀର ବା କାଣ୍ଡ ପୋତି ଏହାଙ୍କୁ ପୂଜା କରି ଥିବାରୁ ଏହାଙ୍କ ନାମ ତ୍ର୍ୟମ୍ବକ ହେଲା ।

ଅଶ୍ୱତ୍‌ଥାମା – ଅଶ୍ୱତ୍‌ଥାମାଙ୍କ ପ୍ରସୂତି ବହୁ କଷ୍ଟକର ହେବାରୁ ଦ୍ରୋଣ ବଳାତ୍କାରରେ ଉପାୟ ପ୍ରୟୋଗପୂର୍ବକ ଗର୍ଭସ୍ଥ ସନ୍ତାନକୁ ଭୂମିଷ୍ଠ କରାଇବା ସମୟରେ ଶିଶୁର ମାତା ମୃତ ହେବାରୁ ତାହାଙ୍କ ନାମ ଅଶ୍ୱତ୍‌ଥାମା ହେଲା ।

ତୋ ମନ୍ଦ ବୁଦ୍ଧିରେ ପୁତ୍ର ମାତା ନାଶ ଗଲା ।
ତେଣୁ ସେ ପୁତ୍ରର ନାମ ଅଶ୍ୱତ୍‌ଥାମା ହେଲା । ଉ.ପ.
ସଜାତମାତ୍ରୋ ବ୍ୟନଦଦ୍ ଯଥୈବୋଚ୍ଚୈଃଶ୍ରବା ହୟଃ ।
ତଦଶ୍ରୁତ୍ୱାନ୍ତର୍ହିତଂ ଭୂତମନ୍ତରୀକ୍ଷସ୍ଥମବ୍ରବୀଦ୍ ।
ଅଶ୍ୱସ୍ୟେବାସ୍ୟ ଯଦ୍ ସ୍ଥାମନଦତଃ ପ୍ରଦିଶୋ ଗତଂ ।
ଅଶ୍ୱତ୍‌ଥାମୈବ ବାଳୋଽୟଂ ତସ୍ମାଦ୍ ନାମ୍ନା ଭବିଷ୍ୟତି ।
ଆ.ପ. ୧୩୧ ଅ:

ସହଦେବ – ପଣ୍ଡୁଙ୍କ ଔରସରେ ଜନ୍ମି କ୍ଷୀର ଅଭାବରୁ ମୃତ ହେଲେ ।

ତେତେବେଳେ ଅଶ୍ୱିନୀକୁମାର ଆସି ନିଜ ଆତ୍ମାକୁ ତହିଁରେ ସଂସ୍ଥାପନ କରି ଜୀବନ୍ୟାସ କରିଥିବାରୁ ଏ ପ୍ରସୂତ ସନ୍ତାନଙ୍କ ନାମ ସହଦେବ ହେଲା ।

ଆପଣା ତହୁଁ ନେଇ ଭରିଲେ ସେ ଜୀବ ।
ତେଣୁ କରି ନାମ ତାର ହେଲା ସହଦେବ । ଆ. ପ.
ଧୃଷ୍ଟଦ୍ୟୁମ୍ନ – ଦୃଷ୍ଟିରେ ଚାହିଁଲେ ଯେ ଅଗ୍ନିକି ବହନ ।
ଏ ପୁତ୍ରର ନାମ ହେଉ ତେଣୁ ଧୃଷ୍ଟଦ୍ୟୁମ୍ନ । ଆ. ପ.
ଧୃଷ୍ଟତ୍ୱାଦତିଧୃଷ୍ଣୁତ୍ୱାଦ୍‌ଦ୍ୟୁମ୍ନା ଦ୍ୟୁସମ୍ଭବାଦପି ।
ଧୃଷ୍ଟଦ୍ୟୁମ୍ନଃ କୁମାରୋଽୟଂ ଦ୍ରୁପଦସ୍ୟ ଭବତ୍ୱିତି ।

ଅର୍ଥାତ୍ ଶତ୍ରୁ ଉତ୍କର୍ଷର ଅସହନତ୍ୱର ପ୍ରଗଲ୍‌ଭତ୍ୱରୁ ଧୃଷ୍ଟ ଏବଂ କବଚକୁଣ୍ଡଳାଦି ସହ ଜନ୍ମିଥିବାର ଦ୍ୟୁମ୍ନ ଏପରି ଉଭୟ ନାମର ଏକତାରେ ଧୃଷ୍ଟଦ୍ୟୁମ୍ନ ନାମ ଦିଆଯାଇ ଅଛି ।

ଶ୍ୱେତବାହନ – ବିଶ୍ୱାବସୁ ଗନ୍ଧର୍ବ ଭାରିଯା ରତ୍ନମତୀ,
ତାହାକୁ ହରନ୍ତେ ବଜ୍ରକବଚର ନାତି ।
ହିରଣ୍ୟକବଚ ମାରି ଆଣିଲି ତା ପ୍ରିୟା,
ଗନ୍ଧର୍ବ ହୋଇଲା ମୋତେ ବହୁତ ବିନୟା ।
ହିରଣ୍ୟ ଦୈତ୍ୟପୁରରେ ଥିଲା ରତ୍ନରାଜ,
ଶୁଦ୍ଧ ସ୍ଫଟିକକୁ ଜିଣି ଦିଶଇ ତା ତେଜ ।
ବିଶ୍ୱାବସୁ ପୂଜା ମୋତେ କଲା ତାହା ଘେନି,
ତଣ୍ଡେ କରି ନାମ ଦେଲା ମୋ ଶ୍ୱେତବାହିନି । ବି.ପ.
''ଶ୍ୱେତାଃ କାଞ୍ଚନସନ୍ନାହା ରଥେ ଯୁଜ୍ୟନ୍ତି ମେ ହୟାଃ
ସଂଗ୍ରାମେ ଯୁଧମାନସ୍ୟ ତେନାହଂ ଶ୍ୱେତବାହନଃ ।'' ବି. ପ.
ଧନଞ୍ଜୟ – ଶୁଣ ତୁ ଉତ୍ତର ହୋ ସୁଦେଷ୍ଣାନନ୍ଦନ,
ଯେତେବେଳେ ଖାଣ୍ଡବ ମୁଁ କରିଲି ଦହନ ।
ଅଗ୍ନି ଦେବତା ଅନେକ ତୃପତି ହୋଇଲେ,
ଶିବ ଗାଣ୍ଡୀବ ଧନୁକୁ ତହୁଁ ମୋତେ ଦେଲେ ।
ଏ ଧନୁ ହସ୍ତେ ଥିଲେ ସବୁ ହେବ ଜୟ,
ତେଣୁ କରି ନାମ ମୋର ଦେଲେ ଧନଞ୍ଜୟ । ବି.ପ.
''ସର୍ବାନ୍ ଜନପଦାନ୍ ଜିତ୍ୱା ବିତ୍ତମାଦାୟ କେବଳଂ ।
ଧର୍ମେ ଧନସ୍ୟ ତିଷ୍ଠାମି ତେନାହୁର୍ମାଂ ଧନଞ୍ଜୟଂ ।'' ବି. ପ. ୪୪ ଅ:

ପାର୍ଥ – ପୃଥା + ଅ ।

ସୁଗନ୍ଧିକା ହରଣେ ହନୁ ହେଲା ଦ୍ୱନ୍ଦୀ ।
ଶରେ ସାଗରରେ ମୁହିଁ ସେତୁ ବାନ୍ଧି ।
ଶତେ ଚୌବିଂଶ ଯୋଜନ ସମୁଦ୍ରର ମଧ ।
ଦକ୍ଷିଣାମୂର୍ତ୍ତିରେ ବାନ୍ଧିଲି ଏଡ଼େ ବନ୍ଧ ।
ଅନେକ ପ୍ରଶଂସା ମୋତେ କଲେ ହନୁମନ୍ତ ।
ତେଣୁ କରି ନାମ ମୋର ସେହୁ ଦେଲେ ପାର୍ଥ । ବି. ପ.

ସବ୍ୟସାଚୀ – ଗଙ୍ଗାରେ କୃତସ୍ନାନା ଶଚୀଦେବୀଙ୍କୁ ଜଣେ ରାକ୍ଷସ ହରି ନେଇଯାଉଥିଲା; ଅର୍ଜୁନ ସେହି ରାକ୍ଷସକୁ ନିହତ କରି ଶଚୀଙ୍କୁ ରକ୍ଷା କରିବାରୁ ସେ ତାଙ୍କୁ ସବ୍ୟସାଚୀ ନାମ ଦେଲେ ।

ଆପଦ ବେଳରେ ତୁହି ଉଦ୍ଧାର କରିଲୁ ।
ତେଣୁ ସବ୍ୟସାଚୀ ନାମ ଆମ୍ଭେ ତୋତେ ଦେଲୁଁ । ବି.ପ.ବ. ଇତ୍ୟାଦି ।
''ଉଭୌ ମେ ଦକ୍ଷିଣୌ ପାଣୀ ଗାଣ୍ଡୀବସ୍ୟ ବିକର୍ଷଣେ ।
ତେନ ଦେବମନୁଷ୍ୟେଷୁ ସବ୍ୟସାଚୀତି ମା ବିଦୁଃ ।'' ବି.ପ. ୪୪ ଅ:

ପାଠକଗଣ ଏଗୁଡ଼ିକ ପରିଶୀଳନ କରନ୍ତୁ, କବି ମହାଶୟଙ୍କର ଅବିମୃଷ୍ୟକାରିତାକୁ କ୍ଷମା କରନ୍ତୁ । ତଥାପି ବିଶ୍ୱାସ କରନ୍ତୁ ଯେ, ନାନା ସ୍ଥାନରୁ ଉନ୍ନୀତ ଏ ଦୋଷଗୁଡ଼ିକ କେବଳ କବିଙ୍କର ନୁହେ । ଏଥି ମଧ୍ୟରେ ସମଧିକତଃ ଅନୁଲେଖକ ଓ ପ୍ରକ୍ଷେପକମାନଙ୍କର ନିକୃତି ବିକୃତି ମିଶି ଯାଇଅଛି ।

ଅତଃପର ଶ୍ରୀମାନ୍ ସାରଳାଦାସଙ୍କର କବିତ୍ୱଚାତୁରୀ ବା ରୂପାଦି ବର୍ଣ୍ଣନାତ୍ମକ ସ୍ଥଳମାନଙ୍କର ସୌଷ୍ଠବର ବିଚାର କରାଯାଉଅଛି । ଏ ମହାକବିଙ୍କର କବିତ୍ୱ (ଅନୁଲେଖକ-ମତିମାନ୍ଦ୍ୟ-କାଳିମାଦୂଷିତ ସ୍ଥାନ ଛଡ଼ା) ସର୍ବତ୍ର ମୃଦୁ ମଧୁର, ସ୍ଥୂଳଭାର୍ଥ ଚମତ୍କୃତ, ସଂଯତ ଭାବରେ ସମୁଚିତାଳଂକାର-ପରିଷ୍କୃତ ଓ ଲଳିତ, ରସସ୍ଫୂର୍ତ୍ତିବିଳସିତ ଏବଂ ଦ୍ରାକ୍ଷାପାକସୁଭଗ ଥିବାରୁ ସୁହୃଦୟ ପ୍ରାଚୀନ କବିତ୍ୱ-ଭାବୁକମାନଙ୍କର ହୃଦ୍ୟ ଓ କର୍ଣ୍ଣରସାୟନ ପ୍ରାୟ ପ୍ରତୀୟମାନ ହୁଏ । ଏହାଙ୍କ କବିତ୍ୱ ମଧ୍ୟରେ ଭୂରି ଭୂରି ଦୁର୍ଲ୍ଲଭ ବିଶୁଦ୍ଧ ଓଡ଼ିଆ ଶବ୍ଦମାନ ଦୃଷ୍ଟ ହୁଏ । ବିଭାଗତଃ କହିବାକୁ ହେଲେ ସଂସ୍କୃତ ଶବ୍ଦ ଅପେକ୍ଷା ଏହାହିଁ ସମଧିକ । ଏ ମହାଶୟ ବହୁ ସ୍ଥଳରେ ଏପରି ମନୋମୁଗ୍ଧକର ଭାଷାର ଜାତୀୟ ପଦମାନ ପ୍ରୟୋଗ କରି ଅଛନ୍ତି ଯେ, ସେଗୁଡ଼ିକ ପଢ଼ିଲାବେଳେ ପରମ ଆହ୍ଲାଦଜନକ ହୋଇଥାଏ । ତତ୍କାଳୀନ ସୁପ୍ରଚୁର କବିଙ୍କ ପ୍ରୟୋଜିତଓଡ଼ିଆ ଶବ୍ଦମାନଙ୍କ ମଧ୍ୟରୁ ବର୍ତ୍ତମାନ

ବହୁଭାଗ ସର୍ବସାଧାରଣଙ୍କର ଅଜ୍ଞାନତିମିରରେ ଲୁକ୍କାୟିତ ହୋଇ ସାରିଲାଣି । ସେ ସବୁ ତତ୍ସାମୟିକ ବ୍ୟାବହାରିକ ଭାଷାରେ ସୁପ୍ରଚଳିତ ଥିଲେ ସୁଦ୍ଧା ସାଂପ୍ରତିକ ପ୍ରାଚୀନ ସାହିତ୍ୟ ସୌଦାସୀନ୍ୟରୁ ଲୋକଙ୍କ ଜ୍ଞାନ ଗୋଚର ହୋଇପାରେ ନାହିଁ । ସେ ଯାହାହେଉ ଏହି କବିଙ୍କ ବର୍ଣ୍ଣନାଗୁଡ଼ିକ ସର୍ବତ୍ର ସରଳ ପ୍ରାଞ୍ଜଳ ଓ ସ୍ୱଭାବରମଣୀୟ ହୋଇଅଛି । ସ୍ଥାନେ ସ୍ଥାନେ ସ୍ତ୍ରୀ ରୂପ ବର୍ଣ୍ଣନା ପ୍ରଭୃତି ଅତ୍ୟନ୍ତ ମନୋହର ଓ ଉଚ୍ଚଭାବସମ୍ପନ୍ନ ତଥାଚ ତଦନ୍ତର୍ଗତ କଳ୍ପନାମାନ ଅତି ଚମତ୍କାର ଅଳଂକାରସମେତ ଓ ଭାବଜ୍ଞନକ ଅଟେ । ବର୍ଣ୍ଣନା ସ୍ଥଳମାନ ସଂଯତ ଓ ଅନାଡ଼ମ୍ବରଭାବରେ ଚିତ୍ରିତ ହୋଇଥିବାରୁ ରସ ଭାବୁକମାନଙ୍କର ଅତିରିକ୍ତ ଚିତ୍ତରଞ୍ଜକରୂପେ ପ୍ରଦ୍ୟୋତିତ ହୋଇଅଛି । ପ୍ରାୟଶଃ କବିମାନେ ସ୍ତ୍ରୀ ବର୍ଣ୍ଣନା ପ୍ରସଙ୍ଗର ଅଶୃଙ୍ଖଳ ବା ନିରୁଙ୍କୁଶଭାବରେ ଅସମଞ୍ଜସରୂପେ ନାନାପ୍ରକାର ଅଶ୍ଳୀଳ ଶବ୍ଦ ସହ ଚାତୁରୀ ପ୍ରକାଶ କରିଥାନ୍ତି । ଏହି କବି ମହାଶୟଙ୍କ ବର୍ଣ୍ଣନା ସ୍ଥଳମାନଙ୍କ ମଧ୍ୟରେ ତାଦୃଶ ଅସଭ୍ୟତା ଓ ଅସଂଯତତା ନାହିଁ କହିଲେ ଚଳେ । ସାଧାରଣ ଶବ୍ଦମାନଙ୍କରେ ରସସ୍ଫୂର୍ତ୍ତି ହେଲା ଭଳି ସୁହୃଦୟଙ୍କର କର୍ଣ୍ଣମଧୁର ହେଲାପରି ଏହାଙ୍କର ବର୍ଣ୍ଣନା ସ୍ଥଳମାନ ପ୍ରକାଶମାନ ହୋଇଥାଏ । ଯେଉଁ ସ୍ଥାନରେ ଅନାର୍ଯ୍ୟ ବା ଅନାଗରିକ ଭାବି କହିବା ଆବଶ୍ୟକ, ସେହି ଭାବ ବା ଅର୍ଥକୁ ଆର୍ଯ୍ୟବୃତ୍ତି ସହ କିଞ୍ଚିଦ୍ ଭିନ୍ନ ପ୍ରକାର କରି କହିଅଛନ୍ତି । ଯେପରି କି ପାଣ୍ଡୁରାଜ ଶତଶୃଙ୍ଗ ପର୍ବତରେ ନିଜର ପୁତ୍ରାଭାବ ହେତୁରୁ କୁନ୍ତୀଦେବୀଙ୍କୁ ଉପାୟ ବଳରେ ପୁତ୍ର ଉତ୍ପାଦନ କର ବୋଲି କହିଥିବା ସନ୍ଦର୍ଭରେ ବ୍ୟଭିଚାରବୃତ୍ତି ତ୍ୟାଗ କରି "ସନ୍ତାନ ପ୍ରାପ୍ତିର ବିଧାନ କର" ବୋଲି କହିବା ଅତି ଚମତ୍କାରଜନକ ଉକ୍ତି ଅଟେ । ଆଉ କେତେକ ସ୍ଥଳରେ ରସସ୍ଫୂର୍ତ୍ତି ସକାଶେ ଅପ୍ରସ୍ତୁତ ଅର୍ଥମାନ ଅଭିଧା-ଅର୍ଥବୋଧକ ଶବ୍ଦରେ ପ୍ରକାଶ ନ କରି ଗୌଣାର୍ଥ ପଦ ପ୍ରୟୋଗରେ ବିବକ୍ଷିତାର୍ଥ ପ୍ରତିପାଦନପୂର୍ବକ ଚାତୁର୍ଯ୍ୟ ପ୍ରକାଶ କରିଅଛନ୍ତି । ଯେପରି କି "ଲୋକନିନ୍ଦ୍ୟ ବିଷୟ କହିବା ଉଚିତ କି ?" ଏହି ଅଭିପ୍ରାୟ ନିରୂପଣ କରିବା ସ୍ଥଳରେ ଅଭିଧାର୍ଥରେ "କହବା" "ପ୍ରକାଶ କରିବା" ଇତ୍ୟାଦି ପଦ ପ୍ରୟୋଗ ନ କରି "ତୁଣ୍ଡରେ ଧରିବା" ଏହି ପଦ ପ୍ରୟୋଗ କରି ଅଛନ୍ତି । ଏହାଦ୍ୱାରା ସେହି ଦୂଷିତ ଅଭିପ୍ରାୟ ଅତି ନିନ୍ଦ୍ୟ ବୋଲି ସୁସ୍ପଷ୍ଟ ପ୍ରକାଶ ପାଏ, ଅଥଚ ବାକ୍ୟର ଗୌରବ ସାଧିତ ହୁଏ, ଶାସ୍ତ୍ରନିର୍ଦ୍ଦିଷ୍ଟକ୍ରମରେ ଦେବତାମାନଙ୍କର ପ୍ରଥମତଃ ପାଦରୁ ମସ୍ତକ ଯାଏ ଏବଂ ମାନବର ମସ୍ତକଠାରୁ ପାଦଯାଏ ବର୍ଣ୍ଣନୀୟ ଅବୟାଦିର ବର୍ଣ୍ଣନାକ୍ରମ ନିୟମିତ ଥିବାରୁ (୧) ଏ ମହୋଦୟ ପ୍ରୋକ୍ତ ଆଦେଶକୁ ଏବଂ ଅଳଂକାର ଶାସ୍ତ୍ରୋକ୍ତ ଅନ୍ୟାନ୍ୟ କବିସମୟଗୁଡ଼ିକୁ ଉଲ୍ଲଂଘନ ନ କରି ସମୁଚିତ ସରଣୀ ଅନୁସରଣରେ ଅତି ସରଳ ଭାଷାରେ ସୁବିସ୍ତରରୂପେ ଅନନ୍ୟ ସୁଲଭ

(୧) ମାନବା ମୌଳିତୋ ବର୍ଣ୍ଣ୍ୟା ଦେବାଶ୍ଚରଣୟୋଃ ପୁନଃ । ଇତି କବିକଳ୍ପଲତା ।

ଭାବମାନ ନିହିତ କରି ଅଛନ୍ତି । ପାଠକେ ! ନିମ୍ନରେ ଉଦାହୃତ ସ୍ତ୍ରୀରୂପବର୍ଣ୍ଣନାତ୍ମକ ସ୍ଥଳମାନଙ୍କରୁ ଏଥିର ସଂପୂର୍ଣ୍ଣ ପରିଚୟ ପାଇ ପାରିବେ । ଅଥଚ କବି ଯେପରି ସ୍ଥାନେ ସ୍ଥାନେ ଏହି ମହାଭାରତ ଗ୍ରନ୍ଥ ଶ୍ରବଣରେ ପାଠକଗଣଙ୍କର ପଠନେଚ୍ଛା କ୍ରମଶଃ ବଳବତୀ ହେବାର (୧) କହି ଅଛନ୍ତି, ତାହା ଏକାନ୍ତ ସତ୍ୟ । ଆପଣମାନେ କ୍ରମଶଃ ଦେଖିନେଲେ, ଅବଶ୍ୟ ବିଶ୍ୱାସ କରିବେ, ଏହି ସରଳ ସୁନ୍ଦର ପ୍ରାସାଦ ଗୁଣବିଶିଷ୍ଟ କବିତା ପାଠରେ ଶୁଶ୍ରୂଷା ଉତ୍ତରୋତ୍ତର ବଳବତୀ ହୋଇଉଠେ । କିନ୍ତୁ ଆଉ ଗୋଟିଏ କଥା ସୁହୃଦୟ ପାଠକଗଣ ସମାହିତ ମନରେ ହୃଦୟଙ୍ଗମ କରିବା ଆବଶ୍ୟକ । ସଂପ୍ରତି ପ୍ରଦର୍ଶିତ ବର୍ଣ୍ଣନା ସ୍ଥଳମାନ ବହୁକାଳ ବ୍ୟାପୀ ଅସ୍ଥାନସ୍ଥିତି ହେତୁରୁ ବହୁ ପରିମାଣରେ ବିକୃତ ହୋଇଯାଇଅଛି । କବି ନିହିତ ପଦବିନ୍ୟାସର ସୌଷ୍ଠବ ଓ ଅଯତ୍ନ-ମାଧୁର୍ଯ୍ୟ ଅନେକ ସ୍ଥଳରେ ବିଚ୍ୟୁତ ହୋଇଯାଇ ଅଛି, ଏହି କବିତାଗୁଡ଼ିକର ପୂର୍ବ ରୂପ ଅପେକ୍ଷାକୃତ ପରିଶୁଦ୍ଧ ଓ ରମଣୀୟ ଥିଲା, ଏଥିରେ କିଞ୍ଚିଦପି ସନ୍ଦେହ ହୁଏନାହିଁ ।

ମଧ୍ୟପର୍ବରେ ଶାମ୍ବକୁମାରଙ୍କ ପ୍ରତି ନାରଦଙ୍କ ଉକ୍ତି ।
ଚନ୍ଦ୍ରାବତୀଙ୍କ ସର୍ବାଙ୍ଗ ରୂପ ବର୍ଣ୍ଣନା ।

କୁଞ୍ଚିତକେଶ ଯେ ନୀଳାରେଖ ଖଞ୍ଜଣି,
ଅତି ଛୋଟ ଅତି ଲମ୍ବ ନୁହଇ ଚିକୁର ବେଣୀ ।
ରତ୍ନରଞ୍ଜିତ ଜାଣି ଦିଶଇ ଲଲାଟ ପାଟୀ,
ତଥିର ଉପରେ କି ନୀଳାରେଖ ଗୋଟି ।
ଲଳିତ ଭ୍ରୂଲତା କି କାମଦେବର ଧନୁ,
ପୁରୁଷ ମାତ୍ରକ ଦେଖି କେ ନିଜ ଶରୀର ଘେନୁ ।
ତାହା ତୀକ୍ଷ ସରୁ ନୟନର ବାଣ,
ରବି ସୋମ ସତ୍ତ୍ୱ ରଜ ତମ ପଞ୍ଚ ଗୁଣ ।
ଏ ପଞ୍ଚ ଗୁଣ ଘେନି ଚାହିଁଲେଣ ଦୃଷ୍ଟି,
ଲୋହ ପାଷାଣ ହୋଇଲେ ତକ୍ଷଣେ ଯିବ ଫୁଟି ।
ସୁନ୍ଦରୀର କିଞ୍ଚିତ ଅବଲୋକନ ଚାହାଣି,
ଅନମିତେ ସହସ୍ରେକ ସଂସାର ପାରଇ ହାଣି ।
ଏକ ଧର୍ମ ମାତ୍ରକ କଲା ପ୍ରଜାପତି,
ମାରି ତାରି ପାରଇ ଅମୂଲ୍ୟ-ରତ୍ନ-କାନ୍ତି ।
ନାସା ପଟାନ୍ତର କଣୟ ଘଟନ ଶୋଭା,

(୧) ମ.ପ. ୧୯୨ ପୃଷ୍ଠା ଦେଖନ୍ତୁ ।

ତିଳଫୁଲ ପଟାନ୍ତର କରନ୍ତି ମୁହିଁ ଅବା ।
ଅଳପ ଦିନେ ସେ ପୁଷ୍ପ ଭୂମିରେ ଲୋଟଇ,
ତେଣୁକରି ପଟାନ୍ତର ସେ ପୁଷ୍ପ ନ ଘଟଇ ।
ଜୀବ ଘେନି ବହଇ ତହିଁ ପବନ ବେନି,
ମୁଦ୍ର ନାସା ଭିତରେ ଅଛି ମୃତ୍ୟୁସଞ୍ଜୀବନୀ ।
ମଞ୍ଜୁଳ ପୁଷ୍ପ ପ୍ରାୟେ ତାହାର ଅଧର ବିକାଶି,
ତାମ୍ବୁଳ ବିହୁନେ ଝଲକନ୍ତି ରୂପରାଶି ।
ମଞ୍ଜୁଳ ମଞ୍ଜି ପ୍ରାୟେ ଦିଶଇ ଦନ୍ତପନ୍ତି,
ଶାମଳ ମେଘେ ଦିଶଇ ବିଜୁଳୀର ଜ୍ୟୋତି ।
ମଉନେ ସୁନ୍ଦରୀ ନ କହଇ ବଢ଼େଁ କଥା,
ନ ପୁଣ ଇହଲୋକେ ପାବନ୍ତି ଅବସ୍ଥା ।
କୋକିଳ ଯେ ଭାଷଇ ମଧୁର ସ୍ୱର ବାଣୀ,
ବସନ୍ତ ଋତୁ ଛାଡ଼ିଲା ସେ ତାହାର ବାକ୍ୟ ଶୁଣି ।
ଶୁଷ୍କ ତରୁ ପଲ୍ଲବଇ ତାହାର ଭାଷନ୍ତେ,
ମଳୟାନିଳ ବହିଲା କି ଏହାର ବାକ୍ୟ ଶୁଣନ୍ତେ ।
ଢଳନ୍ତି ବେନି କର୍ଣ୍ଣ ଏହାର ଶିରର ବେନିପାଖେ,
ପଞ୍ଚଶର ଶର (ପାଶ) ଘେନି ଗମନ୍ତି ବା ଲାଖେ ।
କୁନ୍ଦ କମ୍ବୁ ଘଟଣ ପ୍ରାୟେକ ତାହାର କଣ୍ଠତଟ,
ଉର୍ଦ୍ଧ୍ୱ ଗମ୍ଭୀର, ନୁହଇ ଯେ ବାକ୍ୟ ମୂରାଟ ।
ନୀଳ ଯେହ୍ନେ ପଦ୍ମରେ ପଡ଼ନ୍ତେ ଢଳହଳି,
ତହିଁ କି ଶୋଭାବନ କିଂଚିତ ରୋମାବଳୀ ।
ସମସ୍ତ ଠୁଳ କରି ଚନ୍ଦ୍ର ବଦନ କଲା,
ପଶ୍ଚାତେ ଶଶଧର ଇଜାହିଁ ପାଇଲା ।
ଚନ୍ଦ୍ର ହିଁ ତ ତୁଲ୍ୟ ନୋହିଲା ପ୍ରଜାପତିର ଶାପେ ।
ତନୁ କ୍ଷିନ ଗଲା ପଟାନ୍ତର ନୋହିଲା ଅନୁରୂପେ ।
ଚନ୍ଦ୍ର ବଦନୀ ବୋଲି ଅବା ପଟାନ୍ତର କଲି ନ ଜାଣି,
ଲେଖନ ଘଟନେ ତ ତୁଲ୍ୟ କଲି ଆଣି ।
ସିନ୍ଧୁ ମନ୍ଥନୁ ଉତପତ୍ତି ଯେବଣ ଶଶୀ,
ସେ ଚନ୍ଦ୍ର ଅକଳଙ୍କ ଅଟଇ ନିରିଦୋଷୀ ।

ସେ କନ୍ୟା ବଦନକୁ ସେ ଚନ୍ଦ୍ର ପଟାନ୍ତର ଅଟଇ,
ସଂପୂର୍ଣ୍ଣ ଚନ୍ଦ୍ର ସେ ନ ତୁଟଇ ନ ଫୁଟଇ ।
ବପୁଦର୍ପ-ଧ୍ୱଂସିନୀ ସେ ଆକର୍ଷଣ ବେନି ବାହୁ,
ପୁରୁଷ କୁଳରେ ଦର୍ପ ଘେନି କେ ତାହା ସହୁ ।
ସୁବଳିତ ରସାଣ କନକରତ୍ନ-ଝଲି,
ହେମଝଲି ବେନି ପତ୍ର ଉପରେ ଦଶ ଅଙ୍ଗୁଳୀ ।
ଏ ଉଭାରୁ କଙ୍କଣ ବିରାଜିତ ପଞ୍ଚରେଖ,
ଶୁଦ୍ଧ ସ୍ଫଟିକ ପ୍ରାୟେ ଘଟନ ଦିଶଇ ନଖ ।
ସେ ଦୁଇ ଭୁଜର ମଧ୍ୟେ ବିସ୍ତାର ତାର ହୃଦେ,
ସୁଠାଣି ଆରମ୍ଭ ତଥ ବେନି କୁମ୍ଭ ହାଦେ ।
"ଶରଦ ହିମ ଶିଶିର ବସନ୍ତ ଗ୍ରୀଷମ ବରଷା",
ଏ ଛଡ଼ ଋତୁକୁ ଘେନି ସେହି କୁମ୍ଭକଳସା ।
ରତ୍ନକୁମ୍ଭ ଉପରେ ନୀଳା-ବେଣ୍ଟ କଳସା,
ଯେ ଯାହା ଋତୁକୁ ଘେନି ଭୋଗ କରନ୍ତି ସାଠିଏ ଦିବସା ।
ସେ କୁଚକୁମ୍ଭ ଲାଗିବ ଯାହାର ହୃଦେ,
ଗଗନ ତାପହିଁ ନ ଘେନିବ ଋତୁ ଶରଦେ ।
ଶିଶିରେ ଉଷ୍ମମ ହୋଇବାକ କାୟେ,
ହିମ ଋତୁକୁ ହୋଇବ ବହନି ତେଜ ପ୍ରାୟେ ।
ବସନ୍ତେ ହୋଇବ ଶୀତଳ ଜଳ ଜାଣି,
ଗ୍ରୀଷମେ ଶୀତଳ ଯେହ୍ନେ ଜଳେ ନଳିନୀ ।
ବରଷା ଋତୁକୁ ହୋଇବ ଉଷ୍ମମ
ଛଡ଼ ଋତୁକୁ ଘେନି ବହିବ ଛଡ଼ ନାମ । (୧)
ପେଟଗୋଟି ତାହାର ମୃଣାଳ ପତ୍ର ପ୍ରାୟେ,
ସୁରଭି ପତ୍ର ଜାଣି, ଗଭୀର କୂପ ସେ ଯେ ।
ମଦନ ମାଦନ ମୋହନ ଦହନ ଶୋଷଣ ଏ ପଞ୍ଚଶର (୨)
ଏ ବ୍ରହ୍ମକୁଣ୍ଡରୁ ହୋଇଛନ୍ତି ଅବତାର ।

---

(୧) ଶୀତେଷୁ କୋଷ୍ଣସର୍ବାଙ୍ଗୀ ଗ୍ରୀଷ୍ମେ ଯା ସୁଖଶୀତଳା—
ଏହି ଶାସ୍ତ୍ରୀୟ ମତକୁ ଅନୁସରି ଅଛନ୍ତି ।

(୨) ଉନ୍ମାଦନଃ ଶୋଷଣଶ୍ଚ ମାରଣସ୍ତାପନସ୍ତଥା,
ସଂମୋହନଶ୍ଚ କାମସ୍ୟ ବାଣାଃ ପଞ୍ଚ ପ୍ରକୀର୍ତ୍ତିତାଃ ।

x x x x

ଉଲଟ କଦଳୀ ଜାଣି ତାହାର ବେନି ଜାନୁ,
ମଦନ ଧନୁକୁ କି ସନ୍ଧିଲା କୃଶାନୁ ?
ଘନଜଘନ ସୁନ୍ଦର ପରମ ବେଷ୍ଟ ବୃକ୍ଷତ୍ରିବଳୀ,
ଦେଖିଣ ପୁରୁଷ କେ ଯିବ ତହୁଁ ବଳି ।

x x x x

ନବ ସୃଷ୍ଟି ରଚନା ଛାଡ଼ିଲା ପ୍ରଜାପତି,
ସହସ୍ରେ ବରଷେ ଲେଖନ କଲା ସ୍ତିରୀ ରୂପକାନ୍ତି ।
ଏତେକାଳେ ବସିପାରିଲା ଯତନେ ସମ୍ପାଦି,
କିଞ୍ଚିତ ଦୋଷେ ଅଜ୍ଞ ହୋଇଲା ପ୍ରମାଦୀ ।
ମଝାଖଣ୍ଡ ଆଣି ସଂକୀର୍ଣ୍ଣ କଲା ଖିନ୍ନ,
ପଟାନ୍ତରକୁହିଁ ଦିଶିଲା କୃପଣର ଦାନ ।
ଘନ ଗହନ ଲାଗି ପଡ଼ଇ ନିକି ଭାଙ୍ଗି,
ପୁଣ କେତେକାଳେ ପ୍ରଜାପତି ପାରିବ ତାହା ସର୍ଜି ।
ଚାଲନ୍ତେ ସୁନ୍ଦରୀ ନ ପଡ଼ଇ ପାଦଗତି,
ଚକିତ ଚକିତେଣ ପାଦେଣ ପଦଭ୍ରାନ୍ତି ।
ଜଳେ ଯେସନେକ କ୍ରୀଡ଼ନ୍ତି ରାଜହଂସ ପନ୍ତି,
ସେହିରୂପେ କନ୍ୟା ଚାଲଇ ହଂସଗତି ।

ଆହା ! କି ସୁନ୍ଦର ସରଳ ବିମଳ ଭାବ, କି ସୁନ୍ଦର କଳ୍ପନା । ପାଠକେ ! କେତେଗୋଟି ଆଧୁନିକ କାବ୍ୟରେ ଏତାଦୃଶ ସରଳ ଭାବ ପ୍ରଚୁରତା ଏବଂ ବୃଥାଡ଼ମ୍ବରହୀନ ଭାବଗର୍ଭସୌନ୍ଦର୍ଯ୍ୟାଧାର ବର୍ଣ୍ଣନା ଦେଖିବାକୁ ପାଇବେ ? ଏଥି ମଧରେ ସୁବିନିହିତ ସାରଳାଦାସଙ୍କର ହୃଦ୍‌ଗତ ସୁମଧୁର ଭାବମାନ ଅନେକ ପ୍ରାଚୀନ ଓଡ଼ିଆ ଓ ସାଂସ୍କୃତିକ କବିମାନଙ୍କ ଭାବ ସହିତ ଏକପ୍ରଖ୍ୟ ବିଦ୍ୟମାନ ରହିଅଛି । ଏହା ସଂଗେ ମିଳାଇବା ପାଇଁ ଅନ୍ୟାନ୍ୟ କାବ୍ୟର ପଦ୍ୟମାନ ଉଦ୍ଧୃତ କରି ପ୍ରବନ୍ଧ ବଢ଼ାଇବାର ଆବଶ୍ୟକତା ଦେଖୁନାହୁଁ । ଅଭିଜ୍ଞ ପାଠକଗଣ ଯେ କୌଣସି ପ୍ରାଥମିକ ସାହିତ୍ୟିକ ଲେଖାର କବିତା ସଂଗେ ଏହାକୁ ମିଳାଇ ଦେଖନ୍ତୁ, ସର୍ବଥା ଉତ୍କୃଷ୍ଟ ମନେ କରିବେ । ତଥାପି ନିତାନ୍ତ ଦୁଃଖର ବିଷୟ ଏହି ଯେ, କେତେକ ପଦ୍ୟର ଭାବ ଓ ପଦବିନ୍ୟାସଚାତୁରୀ ଅନଭିଜ୍ଞ ଅନୁଲେଖକମାନଙ୍କଦ୍ୱାରା ଅନ୍ୟାକୃତି ହୋଇଯାଇ ଥିବାରୁ ସୌନ୍ଦର୍ଯ୍ୟ ହରାଇ ଅନର୍ଥତାରେ ପଡ଼ିଯାଇ ଅଛି । ସୁତରାଂ ଏହି ପଦ୍ୟଗୁଡ଼ିକ ଛାପା ପୁସ୍ତକରେ ମଧ ଭିନ୍ନାକାର ଓ ଅଯଥାକ୍ରମ

ହୋଇ ପଡ଼ିଅଛି । (୧) କବିଙ୍କର ରଚନାକାଳୀନ ପ୍ରକୃତ ସୌନ୍ଦର୍ଯ୍ୟାଧାର ପ୍ରତିକୃତି ଅତ୍ୟଳ୍ପ ସ୍ଥଳରେ ମାତ୍ର ଅକ୍ଷୁଣ୍ଣ ରହିପାରି ଅଛି । ସମଧିକ ସ୍ଥଳ ଅନୁଲେଖକଙ୍କର ମତିଦୋଷକାଳିମାରେ କଳଙ୍କିତ ଓ ବିକୃତ ହୋଇଯାଇ ଅଛି । ଏହି କବିଙ୍କର ଯାବତୀୟ ରୂପବର୍ଣ୍ଣନାର ସ୍ଥଳମାନ ଏତାଦୃଶ ଦୁରବସ୍ଥାରେ ଅବସ୍ଥିତ । ତଥାପି ତାହାର ନୈସର୍ଗିକ ଚମତ୍କାରିତା ଅଂଶ ଅଂଶତଃ ବିଦ୍ୟମାନ ରହିଅଛି । ଏତାଦୃଶ ଆଉ ଗୋଟିଏ ବିଚିତ୍ର ଚିତ୍ରଣ ବର୍ଣ୍ଣନାତ୍ମକ ସ୍ଥଳ ଦେଖନ୍ତୁ । ତହିଁରେ ସୁଦ୍ଧା ଏଭଳି ଅସାଧାରଣ ସୌନ୍ଦର୍ଯ ଚିତ୍ରଣର ପ୍ରତିମା ପ୍ରତିବିମ୍ବିତ ହୋଇଅଛି । ଦେଖିବେ, ତହିଁରେ ମଧ ପୂର୍ବ ପ୍ରଦର୍ଶିତ ଭାବମାନ ଠିକ୍ ବିଦ୍ୟମାନ ରହିଅଛି । ଅତଏବ ପାଠକଗଣ ସଂପୂର୍ଣ୍ଣ ପ୍ରତୀତି କରିବେ ଯେ, ଶ୍ରୀମାନ୍ ସାରଳାଦାସଙ୍କର ଚିତ୍ରିତ ସ୍ତ୍ରୀରୂପ ବର୍ଣ୍ଣନାତ୍ମକ ଚିତ୍ରଣ ପ୍ରାୟଶଃ ସର୍ବତ୍ର ସମାନ ।

ବନ ପର୍ବରେ ମେରୁଶୃଙ୍ଗ ନାମକ ଦୈତ୍ୟର ନନ୍ଦିନୀ ତ୍ରିପୁରମୋହିନୀଙ୍କର ସର୍ବାଙ୍ଗ ଶୋଭାବର୍ଣ୍ଣନା ନାରଦ ପ୍ରଦ୍ୟୁମ୍ନଙ୍କୁ କହୁ ଅଛନ୍ତି –

ବାବୁ ତ୍ରିପୁରମୋହିନୀ ସମ ନାହିଁ ତିନିପୁର,
ରୂପେ ଗୁଣେ ତାହାଙ୍କୁ ନାହିଁ ଯେ ପଟାନ୍ତର ।
ଆକୁଞ୍ଚିତ ଚିକୁର କବରୀ ଅଙ୍ଗ ଭାରି,
ପ୍ରବନ୍ଧ ଥୋପ ତାର ବିସ୍ତାରଶାଳୀ କରି ।
କୁସୁମ ନ ଘେନଇ ଗୁରୁ ହେବ ବୋଲି,
ସୁଗନ୍ଧେ ମଧୁକର ବନ୍ଦୀ ହେଲେ ଭୁଲି ।
ରସାଣର ପତ୍ର ପ୍ରାୟେ ଲଲାଟ ପରିପାଟୀ,
ମର୍କତ ରୋମାବଳୀ ନୀଳାରେଖ ଗୋଟି ।
ଲଲାଟର ତଳେ ବକ୍ର ଯେ ରୋମାଞ୍ଚି,
କାମଦେବ ଧନୁ କି ତହିଁରେ ନେଇଁ ସଞ୍ଚି ।
ସେ ଧନୁ ଆମଞ୍ଚି ନୟନ ତୀକ୍ଷ ବାଣେ,
କିଞ୍ଚିତେ ଚାହିଁଲେ ପୁରୁଷେ ଢଳନ୍ତି ତତକ୍ଷଣେ ।
ଯଦ୍ୟପି ପାଷାଣ ହୋଇବ ବଜ୍ର ଘୋଟି,
ଅପାଙ୍ଗେ ଚାହିଁଲେ ଯେ ସେହି ଯିବ ଫୁଟି ।
ହତ୍ୟା ଅପବାଦକୁ ଭୟ କରି ସେହି ବାଳୀ,
ତେଣୁ କରି ବଦନ ନ ଚାହେଁ ଦେବୀ ତୋଳି ।
କଣୟ ଘଟନ ପ୍ରାୟେ ତିଳପୁଷ୍ପ ନାସା,

(୧) ମଧ୍ୟପର୍ବ ଛାପାରେ ୨୫୫-୨୫୬ ପୃଷ୍ଠା ଦେଖନ୍ତୁ ।

ବକ୍ରେ ଚାହିଁଲେ ପୁରୁଷର ଭାଙ୍ଗିବ ଭରସା ।
ତଥିରେ ପବନ କରନ୍ତେ ବିକାଶ,
ମୃଗନାଭୀକସ୍ତୁରୀ ଯେହ୍ନେ କରଇ ବାସ ।
ବଧୁଲୀ ପୁଷ୍ପ ଜାଣି ରଙ୍ଗ ଓଷ୍ଠଗୋଟି,
ବିକାଶିତ ବିଦ୍ୟୁତ ଦଶନ ବେନି ପାଟି ।
ବଚନ ଭାଷନ୍ତେ ନ ରହିଲେ ପିକ ଜନ୍ତୁ,
ଭାଜିଲେ ବନ ସ୍ଥାନେ ଅକାଳେଣ ମୃତ୍ୟୁ ।
ନବୀନ କୁନ୍ଦ ଜାଣି ହିରଣ୍ୟ ଗଣ୍ଡସ୍ଥଳ,
ଗଭୀର କଣ୍ଠତଟ ସୁସଞ୍ଚ ସରଳ ।
ବିସ୍ତାର ପ୍ରଲମ୍ବ ଭୁଜ ବେନି ବାହେ,
ହୃଦବିସ୍ତୃତ ସ୍ତନ ସୁଧାକୁମ୍ଭ ପ୍ରାୟେ ।
କୁମୁଦ ନାଳ ଯେହ୍ନେ ଶୀତଳ ସୁସଞ୍ଚ,
ନୁହଇ ସୂକ୍ଷ୍ମ ସେ ନୁହଇ ବଡ଼ ଉଚ୍ଚ ।
ଚମ୍ପା କଢ଼ି ଜାଣି ଦିଶଇ ଅଙ୍ଗୁଷ୍ଠୀ,
କୁନ୍ଦପାଖୁଡ଼ା ପ୍ରାୟେ ନଖ ରେଖ ଘଟି ।

X X X

ଉଲଟ କଦଳୀ ଜାଣି ଦିଶଇ ତାର ଜାନୁ,
ଦେଖିଲେ ପୁରୁଷର ଭାଜିଯିବ ତନୁ ।

X X X

ସୁରଭି ପୁଷ୍ପ ପ୍ରାୟେ ପାଦତଳର କାନ୍ତି,
ସୁଗନ୍ଧ ପୋହଳା ପ୍ରାୟେ ଅଙ୍ଗୁଳୀ ବିରାଜନ୍ତି ।

X X X

ଅତ୍ୟନ୍ତ ନିବିଡ଼ କୁଚ ବେନି ଶୋଭା,
ଅନଙ୍ଗଭଣ୍ଡାର କୁଢ଼ କରିଅଛି ଅବା ।
ସଂପୂର୍ଣ୍ଣ ଚନ୍ଦ୍ରମା ବୋଲି ପଟାନ୍ତର ମୁଖକୁ,
ତାର ମୁଖ ନିନ୍ଦିଲା ଚନ୍ଦ୍ର ଦେବତାକୁ ।
ବର୍ଣ୍ଣେ କଳଙ୍କୀ ସେ ଯେ ହୋଇଲାକ ଶଶୀ,
ତାହାର ବଦନଗୋଟି ଅଟଇ ନିର୍ଦ୍ଦୋଷୀ ।
ହୃଦୟ ବିସ୍ତାର ଯେ ଅତ୍ୟନ୍ତ ବିଶାଳ,
ତଥି ଉପରେ ଭାରା ଯେ ଅଛି କୁଚ ଯୁଗଳ ।

ଏ ମହା ଭାରାକୁ ଯେ ମଝା ତାର ଖିନ୍ନ,
ନ ପୁଣ ଭାଜିଯିବ ବହିଲେ ପବନ ।
ଏତେ କାଳ ବସି ସର୍ଜିଲା ବିଧାତା,
ସେ ଘେନି ଛାଡ଼ିଲା ନବ ସୃଷ୍ଟି ଚିନ୍ତା ।
ଶିଶିରେ ହିମରେ ତପତ ତାର କାୟେ,
ବସନ୍ତ ଗ୍ରୀଷ୍ମରେ କମଳଦଳ ପ୍ରାୟେ ।
ବରଷା ଶରତକାଳେ ବାଳାର୍କର ତେଜ,
ତୋତେ ସିନା ପ୍ରାପ୍ତ ସେ ହୋଇବ ମନସିଜ ।

X X X

ଇତ୍ୟାଦି (୧)

ଏହି କବି ମହୋଦୟ ସ୍ୱୟମ୍ବର ସଭାରେ ଉପଗତା ଦ୍ରୌପଦୀ ଦେବୀଙ୍କ ରୂପବର୍ଣ୍ଣନାଟିକୁ ପ୍ରାୟ ତିନି ପତ୍ର ପର୍ଯ୍ୟନ୍ତ ସୁବିସ୍ତୃତ କରି ଅପେକ୍ଷାକୃତ ରମଣୀୟରୂପେ ବର୍ଣ୍ଣିତ ଅଛନ୍ତି । ଏଥିରୁ ଅନେକଗୁଡ଼ିଏ ପଦ୍ୟ ବଡ଼ ହୃଦୟସ୍ପର୍ଶୀ । ଏଥିରେ ଦେଖିବେ, କବିଙ୍କର ଖୁବ୍ ଭାବୁକତା ପ୍ରକାଶ ପାଉଅଛି । ବିରାଟ ପର୍ବରେ ମଧ୍ୟ ଦ୍ରୌପଦୀଙ୍କର ରୂପବର୍ଣ୍ଣନା ଏତାଦୃଶ କରି ଅଛନ୍ତି । ସ୍ଥୂଳତଃ କହିଲେ ଶ୍ରୀମାନ୍ ସାରଳାଦାସଙ୍କର ସ୍ତ୍ରୀରୂପ ବର୍ଣ୍ଣନାର ଚାତୁରୀ ସର୍ବତ୍ର ଏକପ୍ରଖ୍ୟ । ସ୍ଥାଳୀପୁଲାକ ନ୍ୟାୟରେ ପ୍ରଦର୍ଶିତ ସ୍ଥଳମାନଙ୍କରୁ ଅଭିଜ୍ଞ ପାଠକଗଣ ପ୍ରାଚୀନ କବିଙ୍କର ପ୍ରାଚୀନ କବିତ୍ୱପଟିମା ବିଚାର କରି ନେବେ । ଆଉ ବିଶେଷ ଉଦ୍ଧୃତ କରିବା ଆବଶ୍ୟକ ନୁହେ । ଏ ମହାଶୟ ସ୍ତ୍ରୀ ରୂପ ବର୍ଣ୍ଣନା ପରି ପୁଂରୂପ ଚିତ୍ରଣରେ ସୁଦ୍ଧା କବିସମ୍ମତତ୍ୱ ଓ ବିଷୟସଂଗତିସଂପନ୍ନତ୍ୱସହକାରେ କୃତିତ୍ୱ ପ୍ରଦର୍ଶନ କରି ଅଛନ୍ତି । ଯଦିଚ ପାଠକଙ୍କର ଦିଦୃକ୍ଷା ହୁଏ, ଆଦିପର୍ବାନ୍ତର୍ଗତ କର୍ଣ୍ଣଙ୍କର ଶୈଶବ ରୂପ ବର୍ଣ୍ଣନାଟି ଦେଖିନେବେ, ଏହାର ପ୍ରଧାନ ଦୃଷ୍ଟାନ୍ତ ସ୍ଥଳରୂପେ ବିଦ୍ୟମାନ ଅଛି; କିନ୍ତୁ ଏତିକି ଅନୁରୋଧ ଯେ, ଏ ସବୁ ଛାପା ପୁସ୍ତକରେ ରୂପାନ୍ତରିତ ହୋଇଯାଇ ଥିବାରୁ ତାଳପତ୍ର ପୁସ୍ତକରୁ କିଛିତ୍ ଗବେଷଣା ସହ କବିପ୍ରଦତ୍ତ ସରଳ ସୌନ୍ଦର୍ଯ୍ୟ ଦେଖିବାକୁ ଚେଷ୍ଟା କରିବେ ।

ଆମ୍ଭମାନଙ୍କର ଆଦିମ କବି ମହୋଦୟଙ୍କର ଶୃଙ୍ଗାର ରସାତ୍ମକ ବର୍ଣ୍ଣନାରେ ପ୍ରକାଶିତ କୃତିତ୍ୱ ଅପେକ୍ଷା ବୀରାଦି ରସବର୍ଣ୍ଣନରେ ମଧ୍ୟ କିଛି ଊଣା ନୁହେ । ଏହାଙ୍କର

(୧) ଏହି ବର୍ଣ୍ଣନାତ୍ମକ ପଦ୍ୟଗୁଡ଼ିକ ଛାପା ବନ ପର୍ବର ୩୨୪ । ୩୨୫ ପୃଷ୍ଠାରେ ଦେଖନ୍ତୁ, ଭିନ୍ନାକାର ହୋଇ ପଡ଼ିଅଛି । ତାଳପତ୍ର ପୁସ୍ତକରେ ମଧ୍ୟ ଅନେକ ସ୍ଥଳ ମତିଦୁର୍ବିଧ ଅନୁଲେଖକମାନଙ୍କ ଦ୍ୱାରା ଏକାନ୍ତ ବିକୃତ ଓ ବିଧ୍ୱସ୍ତ-ଭାବ ହୋଇ ଯାଇଅଛି । ଅତଏବ ସେପରିଗୁଡ଼ିକୁ ପରିତ୍ୟାଗ କଲୁଁ ।

ଯେଉଁ ରସାତ୍ମକ ବର୍ଣ୍ଣନାଟି ପଢ଼ିବେ, ତତ୍‌କ୍ଷଣାତ୍ ଭାବୁକଙ୍କ ହୃଦୟରେ ସେହି ରସ ଭାବର ଆବିର୍ଭାବ ହୁଏ । ବିସ୍ତୃତି ଭୟରୁ ବୀରବୀଭତ୍ସାଦି ରସାତ୍ମକ ସମଗ୍ର ବର୍ଣ୍ଣନାମାନ ନ ଦେଇ ନାନା ସ୍ଥାନଗତ କେତେକ ବର୍ଣ୍ଣନା ଅଂଶ ମାତ୍ର ଉଦ୍ଧୃତ କରୁଅଛୁଁ । ପାଠକଗଣ ତଦ୍ଦ୍ୱାରା କବିଙ୍କ କବିତା ଶକ୍ତି ଅବଶ୍ୟ ବୁଝିପାରିବେ । ସୁତରାଂ ଏ କବି ଯେ ଯେ ସ୍ଥଳରେ ଯେଉଁ ଯେଉଁ ଯୁଦ୍ଧର ବର୍ଣ୍ଣନା କରି ଯାଇ ଅଛନ୍ତି, ସେ ସବୁ ବଡ଼ ସୁନ୍ଦର ଓ ହୃଦୟଗ୍ରାହୀ ହୋଇଅଛି । ଭୀଷ୍ମାଦିପର୍ବପଞ୍ଚକରେ ନିହିତ ଆହବିକ ବର୍ଣ୍ଣନା ଛଡ଼ା ଅନ୍ୟାନ୍ୟ ସ୍ଥଳଗତ ଯୁଦ୍ଧମାନଙ୍କ ପରିପାଟୀରେ ସୁଦ୍ଧା ଏହାଙ୍କର ଖୁବ୍ ସିଦ୍ଧହସ୍ତତା ପ୍ରକାଶ ପାଏ । ସଭା ପର୍ବରେ ଭୀମସେନଙ୍କର ପଶ୍ଚିମ ଦିଗ୍‌ବିଜୟ ସନ୍ଦର୍ଭରେ କାମପାଳ ରାଜାଙ୍କର ସହ ଭୀମକର୍ମା ବୃକୋଦରଙ୍କର, ଉତ୍ତର ଦିଗ୍‌ବିଜୟ ସନ୍ଦର୍ଭରେ ଦରଦସେନ ରାଜାଙ୍କ ସହ ଅର୍ଜୁନଙ୍କର ଏବଂ କାଶୀ ତୀରରେ ପ୍ରବର୍ତ୍ତିତ ଅର୍ଜୁନ ଓ ତଦୀୟ ପୁତ୍ର ନାଗାର୍ଜୁନଙ୍କର କୃତ ଲୋମହର୍ଷଣକାରୀ ଯୁଦ୍ଧର ବର୍ଣ୍ଣନା ଅଥଚ ବନ ପର୍ବରେ ସଚଳା ହରଣ ବୃତ୍ତାନ୍ତରେ ପ୍ରବର୍ତ୍ତିତ ଯାଦବାଦିଗଣ ଓ ଦେବତାମାନଙ୍କର ବହୁ ପ୍ରସାରିତ ଯୁଦ୍ଧ ବର୍ଣ୍ଣନା ସର୍ବତୋଭାବେ ସମୁତ୍କୃଷ୍ଟ ହୋଇଅଛି ।

ଭୀମ ଓ ଦୁର୍ଯ୍ୟୋଧନଙ୍କର ଗଦାଯୁଦ୍ଧ ବା ବାହୁଯୁଦ୍ଧ ବର୍ଣ୍ଣନାର ଅଂଶ–

ଡାକହାକ କରି ଯେ ଦିଅନ୍ତି ଘୋର ରଡ଼ି,
ପ୍ରଳୟ ମେଘର କି ସେ ଅଟେ ଘଡ଼ଘଡ଼ି ।
ଅନ୍ୟ ଅନ୍ୟେ କର ଚାପି କରନ୍ତି ପହିଜ,
ନିର୍ଦ୍ଧୂମ ଅନଳ ଜିଣି ବିରାଜଇ ତେଜ ।
ବାହା ନାଦ କରି ବେନି ଚାପନ୍ତି କପାଳେ,
ରଣଝଣ ଅଗ୍ନି ଯେ ଉଠଇ ଅନ୍ତରାଳେ ।
ଉଲଟ ପାଲଟ ଯେ ହୁଅନ୍ତି କ୍ଷଣେ କ୍ଷଣ,
ମୁଖରାବ ଘାତ ଶୁଭେ ଯଥା ବଜ୍ରବାଣ ।
ପରବତ ପ୍ରାୟେକ ପଡ଼ନ୍ତି ବେନି ବୀର,
ଗିରିବରମାନେ ସର୍ବେ ହେଉଛନ୍ତି ଚୂର ।
ରଟ ରଟ ମଟ ମଟ ଶୁଭେ ବେନି ପାଟି,
ଚାପିଲେ ଅସ୍ଥି ଚର୍ମ ଯେ ଯାଉଥାଇ ଫାଟି ।
ଦୁହେଁ ପିଟାପିଟି ଯେ ହୁଅନ୍ତି ମହାଶ୍ରମେ,
ଝରିଣ ରୁଧିର ଯେ ବହଇ ରୋମେ ରୋମେ ।
ମୁଥ ପ୍ରହାରେ ନାସାରୁ ବହଇ ରୁଧିର,
ଜଡ଼ି ହୋଇଯାଏ ଯେ ଦୁହିଁଙ୍କ କଳେବର ।

ସତ୍ୟଯୁଗେ ଯେଉଁ ପରି କେତୁ ଯେ ମଙ୍ଗଳ,
ସେପରି କମ୍ପି ଯେ ମହୀ ହୁଏ ଟଳମଳ ।
ଗିରିବରମାନେ ଯେ ଉଠିଲେ ହୋଇ ଧୂଳି,
ଆକାଶରେ ଅଦୃଶ୍ୟ ଯେ ହୋଇଲେ ଅଶ୍ୱମାଳୀ ।       ଗଦାପର୍ବ ।

ଏ ସ୍ଥଳରେ ବୀର ରସର ଅନୁଗୁଣ ବର୍ଣ୍ଣନାମାନଙ୍କରେ ଗଠିତ ଶବ୍ଦମାନଙ୍କ ଯୋଗେ କବିତାଟି ଯଥାଯଥ ଓଜଗୁଣବିଶିଷ୍ଟ ହୋଇଅଛି । ଏତାଦୃଶ ସ୍ଥଳମାନଙ୍କରେ ମୂଳ ଗ୍ରନ୍ଥରେ ଭଟ ପ୍ରତିଭଟଦ୍ୱୟଙ୍କର ''ବଳିବାସବୟୋରିବ'' ''ବୃତ୍ରବାସବୟୋରିବ'' ''ବଳବାସବୟୋରିବ'' ଇତ୍ୟାଦି ଉପମା (୧) ଧାର୍ଯ୍ୟ ହୋଇଥାଏ । ସାରଳାଦାସ କବି ମଧ୍ୟ ତଦନୁଗୁଣରେ ପ୍ରତିଦ୍ୱନ୍ଦ୍ୱୀ ଦୁହିଁଙ୍କର ସାଦୃଶ୍ୟ କେତୁ ମଙ୍ଗଳରେ ଆରୋପଣ କରି ପୌରାଣିକ ଗାଥାର ସୂଚନା କରିପାରି ଅଛନ୍ତି ।

## ସୈନ୍ୟ ବର୍ଣ୍ଣନା

କୁରୁସେନା ଦେଖି ବୈରାଟି ଉତ୍ତର ସମୁଦ୍ର ଜ୍ଞାନ କଲାରୁ ତତ୍‌ସମର୍ଥନରେ ବୃହନ୍ନଳା କହୁ ଅଛନ୍ତି :—

ଶୁଣ ହୋ ଉତ୍ତର ବୋଇଲା ସବ୍ୟସାଚୀ,
ସାଗର ବାକ୍ୟ ତୋର ନାସ୍ତିକେ କରୁଛି ।
ନିଶ୍ଚେ ସାଗର ଅଟଇ ଏ କୁରୁ ସଇନି,
ସିନ୍ଧୁ ଘୋଷ ପ୍ରାୟେ ଶୁଭୁଅଛି ମୁଖଧ୍ୱନି ।
ବୋହିତ ବୋଲି ଯେ ବୋଲୁଅଛୁ ଯହିଁକି,
ରଥମାନେ ସେଟି ଏହା ତୁ ବିଚାରୁ କି ?
ମତ୍ସ୍ୟ କୂର୍ମ ବୋଲି ଯା ବିଚାରୁ ହୃଦଗତେ,
ଗଜ ଅଶ୍ୱମାନେ ସେହୁ ଅଟନ୍ତି ଯୁଗତେ ।
ତୁ ଯେ ବୋଇଲୁ ଦେଖ ସ୍ଥିର ଜଳ,
ସୈନ୍ୟ ବେଢ଼ିଛନ୍ତି ତୋର ଗୋରୁକୁଳ ।

---

(୧) ତୟୋଃ ସମଭବଦ୍‌ଯୁଦ୍ଧଂ ଘୋରରୂପଂ ସଦାରୁଣଂ ।
ଈକ୍ଷିତୃପ୍ରୀତିଜନନଂ ଶୁକ୍ରାଙ୍ଗାରକୟୋରିବ ।
ଭୀ.ପ. ୪୫ ଅ: ୫୬ ଶ୍ଳୋକ ।
ତୌ ତତ୍ର ସମରେ କ୍ରୁଦ୍ଧୌ ନର୍ଦ୍ଦତୌ ଚ ମୁହୁର୍ମୁହୁଃ ।
ସମୀୟତୁଃ ସୁସଂକ୍ରୁଦ୍ଧାବଙ୍ଗାରକବୁଧାବିବ ।
ଭୀ. ପ. ୪୫ ଅ: ୪୧ ଶ୍ଳୋକ ।

ଧବଳ କମଳ ପ୍ରାୟେ ଅଟନ୍ତି ଗୋଧନେ,
ସ୍ଥିର ଜଳ ପ୍ରାୟେ ସେ ଅଟନ୍ତି ବିଦ୍ୟମାନେ ।
ଲହରୀ ବୋଲି ଯେ ବୋଲୁଥିଲୁ ଏକା,
ରଥଙ୍କର ଉପରେ ଉଡ଼ଇ ପତାକା । ଇତ୍ୟାଦି । ଉ.ପ.

ପାଠକେ ! ସମ୍ୟକ୍ ପରିଶୀଳନ କରନ୍ତୁ । ଏହି ସାଙ୍ଗରୂପକ ଅଳଙ୍କାରରେ ସମେତ ବର୍ଣ୍ଣନାଟିକୁ କବି ମହାଶୟ ନିରାଡ଼ମ୍ବର ଭାବରେ କି ସୁନ୍ଦର ସଂଗତ କରି ଲେଖିଅଛନ୍ତି । ମହାକାବ୍ୟୋଚିତ ବର୍ଣ୍ଣନାକୁ ଏତାଦୃଶ ସରଳ ଭାଷାରେ ପ୍ରକାଶ କରିବା ସାଧାରଣ ଜ୍ଞାନସାଧ ହୋଇ ନ ପାରେ । ଅଥଚ ଭାଷାର ଶୈଶବାବସ୍ଥାରେ ଏ ଭଳି ପଦବିନ୍ୟାସ ଚାତୁରୀ ସୁଦ୍ଧା କବିଙ୍କର ମହତୀ ବୁଦ୍ଧିସିଦ୍ଧିର ଫଳ ବୋଲିବାକୁ ହେବ । ଏହାର ବହୁକାଳ ପରେ ଭାଷାର ସମୁଜ୍ଜିତ ଶୈଶବ ଓ ସମୁନ୍ମୁଖ ଯୌବନାବସ୍ଥାରେ ରାଜକବି ଶ୍ରୀ କୃଷ୍ଣସିଂହ ଦେବଙ୍କ କୃତ ଏହି ବର୍ଣ୍ଣନାର ଆକୃତି (୧) ଅପିଚ ମୂଳ ଗ୍ରନ୍ଥଗତ ଏତଦ୍‌ବର୍ଣ୍ଣନାମୂଳକ ପଦ୍ୟଗୁଡ଼ିକର ଭାବ ସୁଦ୍ଧା ଏହାଠାରୁ ଅତି ପୁଷ୍ଟ ନୁହେ । ସମ୍ୟକ୍ ଦେଖି ନେଲେ ଏ ତାହାର ସଦୃଶାକୃତି ଅନୁଜ ପରି ପ୍ରତୀତ ହୁଏ । ଆମ୍ଭମାନଙ୍କର ଆଦିମ ମହାକବି ମହୋଦୟ ଭାଷାର ତରୁଣାବସ୍ଥାରେ ପରିଲଭ୍ୟ ଶୋଭା ସମ୍ପତ୍ତିକୁ ଶୈଶବରେ ସୁଦ୍ଧା ସମ୍ପାଦନ କରିପାରି ଅଛନ୍ତି ଏବଂ ମୂଳ ଗ୍ରନ୍ଥର ଠିକ୍ ଅନୁବାଦରେ ଅପ୍ରବୃତ୍ତ ରହି ସୁଦ୍ଧା ମୌଳିକ ଭାବକୁ ଯଥାଯଥ ଚିତ୍ରଣ କରିପାରି ଅଛନ୍ତି ।

---

(୧) ଦେଖିଲେ କୁରୁଙ୍କର ସଇନ ସାଗର,
ପତାକା ଫେନରେ ସେ ହୋଇଛି ସୁନ୍ଦର ।
ସେ ସାଗର ଗର୍ଜନ ଅଟଇ ମୁଖଧ୍ୱନି,
ମଣ୍ଡୁଅଛି ତହିଁରେ ଶତ୍ରୁଙ୍କ କର୍ଣ୍ଣ ବେନି ।
ମଗର ପରି ତହିଁ ଗଦା ଶକ୍ତି ଶୂଳ,
ହୋଇଛନ୍ତି ଶୋଭା ନୀରରେ ଚଞ୍ଚଳ ।
ଖଣ୍ଡା ଧଣ୍ଡା ସାପ ପରାୟେ ଚହଟି,
ଥୋଇଅଛି ଶତ୍ରୁଙ୍କ ବୁକୁରେ ଦକୁଟି ।
ହାତୀ କୂଳପଥର, ଓଟଙ୍କ ବେକଯାକ,
ଟେକିଛନ୍ତି ଯାହାଟି ବସିଛନ୍ତି ବକ ।
ଛୁରୀକାତି ମୀନମାନଙ୍କୁ ଖାଇବାକୁ,
ଏ କଥା ବିନା ଆନ ନ ଆସେ ମନକୁ ।
କଚ୍ଛପର ଶୋଭାକୁ ନିନ୍ଦି ସୁନା ମୁଣ୍ଡା,
ଢାଲ ତହିଁ ଦିଶୁଛନ୍ତି ଗଣ୍ଡା ଗଣ୍ଡା ।
ଭୀଷ୍ମ ଦ୍ରୋଣ ଦ୍ରୌଣି କର୍ଣ୍ଣ ସାରଦ୍ୱତ,
ମାନଙ୍କେ ସେ ସାଗର ହୋଇଛି ରକ୍ଷିତ ।

କୃ. ସିଂ. ଭା. ବି. ପ.

## ବୀଭତ୍ସ ରସ ବର୍ଣ୍ଣନା

ରଟମଟ ଝଟଝଟ ଯେ ଶବଦ ଗୁରୁ ଟାଣ,
ଯେସନେ ଆକାଶୁଁ ପଡ଼ଇ ଅଗ୍ନି ବାଣ ।
ଜମ୍ବୁପଟଳ ଯେହ୍ନେ ମେଘ ବରଷା କାଳେ,
ରୁଧିର ମାଂସ ଦେବୀ ଭୁଞ୍ଜନ୍ତି କୁତୂହଳେ ।
ଡିବିଡ଼ିବି ଡମ୍ବରୁ ବାଜଇ ଶୂନ୍ୟ ବ୍ୟାପି,
ଲହ ଲହ ଜିହ୍ୱା ଯେ କରେ ଖପର ଚାପି ।
ମେଦମେଦା ମାଂସ ଯେ କରନ୍ତି ଦେବୀ ଗ୍ରାସ,
ଉଲଗ୍ନଶାୟୀ ହୋଇ ନୃତ୍ୟରେ ହରଷ ।
କୁତୂହଳେ ରୁଧିର କରନ୍ତି ଯେ ପାନ,
କେହୁ ମୁଣ୍ଡମାଳା ହୃଦରେ ଆଭରଣ ।
ବାଜଇ ବିଜିଘୋଷ ଡିବିଡ଼ିବି ଦାଉଣ୍ଡି,
ଗାବନ୍ତି ଗୀତ ଯେ ନାଚନ୍ତି ଖେମଟା (ଚ) ଖଣ୍ଡି ।
ଆକାଶେ ଓଷ୍ଠ ଯେ ପାତାଳେ ତାଙ୍କ ପାଟି,
ଏକା ଥରକେ ମୃତ୍ୟୁପିଣ୍ଡ ଭକ୍ଷନ୍ତି କୋଟି କୋଟି ।
ନାଚନ୍ତି ଗାବନ୍ତି ଯେ ଗୀତ ନାନା ରସ,
ସମସ୍ତ ଦେବୀମାନେ ମୁକୁଳିତ କେଶ ।
ଉପରକୁ ଫିଙ୍ଗିଦେଇ କେହି ତୁଣ୍ଡ ପାତି,
ଅନନ୍ତା ବିଜୟା ଯେ ସଂଗେ କାଳରାତି ।
ବିକଟାଳ ଲୋକନ ମଦିରା ରସେ ଭୋଳୀ,
କହ କହ ହୋଇ ସେ ମଙ୍ଗଳ ଧ୍ୱନି ତୋଳି ।
ପ୍ରେତ ପିଶାଚ ଯେ ବେଗଳ ମହାଖଳା,
ଶୂଦ୍ରମୁନି ସାରଳାଦାସର ଶରଣ ସର୍ବମଙ୍ଗଳା ।

ଶ୍ରୀମାନ୍ ରସଜ୍ଞ ସାରଳାଦାସ ମହାକବି ମହୋଦୟ ଏଠାରେ ସ୍ୱକୀୟ ବିଭବାନୁଭାବାଦିଜନିତ ବୀଭସ ରସକୁ ସଂପୂର୍ଣ୍ଣ ମୂର୍ତ୍ତିମାନ କରି ଚିତ୍ରଣ କରି ଅଛନ୍ତି । ମହାକବି ଭବଭୂତିଙ୍କ ରଚିତ ମାଳତୀମାଧବ ନାଟକର ପଞ୍ଚମାଙ୍କରେ ବର୍ଣ୍ଣିତ ପ୍ରକଟିତ-ଦଶନ ପ୍ରେତରଙ୍କ ପିଶାଚମାନଙ୍କର କୁଣପ ମାଂସ ଭୋଜନ ଓ ଅସ୍ଥି

ସୁଷିର-ପୂରକ-ମଜ୍ଜଧାରା ପାନାଦି ବିକୃତ କ୍ରିୟାମୂଳକ ବୀଭତ୍ସରସବର୍ଣ୍ଣନାର ଆଭାସ ଏଥିରେ ସମ୍ୟକ୍ ପ୍ରକାଶ ପାଉଅଛି । (୧)

## ସୁରାଜକତ୍ୱ ବର୍ଣ୍ଣନା

ଶୁଣ ହେ ମହାରାଜା ଯୁଧିଷ୍ଠିରଙ୍କ ବେଭାର,
ଲବେ ତାହାଙ୍କର ନାହିଁ ଅଣାଚାର ।
ଆପଣା ଦେଶକୁ ବରଗିଲେ ଚାର,
ମିଥ୍ୟା ନ ବାହାରିବ ମୁଖରୁ କାହାର ।
ପ୍ରଜାଏ ବ୍ୟାକୁଳ ନ କରିବେ ମନ,
କୃଷି ଉପୁଜାଇ ହରଷ ହେବେ ମନ ।

X X X

ପ୍ରଜାଙ୍କ ଭବନ କନକ ଛାଏଣି,
ସୁବର୍ଣ୍ଣ କଳଶ ମଣ୍ଡିଲେ ନିର୍ମାଣି ।
ପିତା ପୁତ୍ରଠାରେ ନ ଥାଇ ଅବିଶ୍ୱାସ,
ଇନ୍ଦ୍ର ଜାଣି ବୃଷ୍ଟି କରଇ ଉପୁଜାନ୍ତି ଶସ୍ୟ ।
ଅନେକ ଆହୁତି ଦିଅନ୍ତି ଯେ ଅଗ୍ନି,
ସକଳ ବ୍ରାହ୍ମଣ ପୁରେ ଶୁଭଇ ବେଦଧ୍ୱନି ।
ଜରା ଅବସ୍ଥା ନାହିଁ ଜନେ ଦିଶନ୍ତି ଇନ୍ଦ୍ରପରା ।
ଫଳପତ୍ରେ ବୃକ୍ଷାଳ ଦିଶନ୍ତି ବୃକ୍ଷଭରା ।
ଲୋକେ କଳି ନୁହନ୍ତି ହୁଅନ୍ତି ଏକ ସଙ୍ଗ,
ପବନ ପ୍ରାୟେ ଗମନ୍ତି ମତ୍ତ ଅଶ୍ୱ ନାଗ ।
ମରାଳଗମନୀ ପଦ୍ମିନୀ ଜାତି ସର୍ବବାଳୀ,
ଭୟ ଲଜ୍ଜାକୁ ସେ ଅଳପ ଆହାରୀ ।

---

(୧) ଉତ୍କୃତ୍ୟୋତ୍କୃତ୍ୟ କୃତ୍ତିଂ ପ୍ରଥମମଥ ପୃଥୁତ୍ସେଧଭୂୟାଂସିମାଂସା,
ନ୍ୟଂସସ୍ଫିକ୍ପୃଷ୍ଠପୀଠାଦ୍ୟବୟବସୁଲଭାନ୍ୟୁଗ୍ରପୂତୀନି ଜଗ୍ଧ୍ୱା ।
ଆର୍ତ୍ତପର୍ଯ୍ୟସ୍ତା ନେତ୍ରଃ ପ୍ରକଟିତଦଶନଃ ପ୍ରେତରଙ୍କଃ କରଙ୍କା-
ଦଙ୍କସ୍ଥାଦସ୍ଥିସଂସ୍ଥଂସ୍ଥପୁଟଗତମପି କ୍ରବ୍ୟମବ୍ୟଗ୍ରମତ୍ତି ।।
ନିଷ୍କାପସ୍ୱିଦ୍ୟଦସ୍ମଃ କ୍ୱଥନ ପରି ଗଳନ୍ମେଦସଃ ପ୍ରେତକାୟାନ୍
କୃଷ୍ଣା ସଂସକ୍ତଧୂମାନପି କୁଣପଭୁଜୋ ଭୂୟସୀଭ୍ୟଣ୍ଡିତାଭ୍ୟଃ ।
ଉଦ୍ପକ୍ୱ ସ୍ତ୍ରଂସିମାଂସଂ ପ୍ରଚଳଦୁଭୟତଃ ସନ୍ଧିନିର୍ମୁକ୍ତ ମାରା -
ଦେତେ ନିଷ୍କୃଷ୍ୟ ଜଂଘାନଳକ ମୃଦୟିନୀମଜ୍ଜଧାରାଃ ପିବନ୍ତି ।।

ଶୁକ ସାରୀ ଭାଷନ୍ତି ରାମ କୃଷ୍ଣ ନାଦେ ।
ଅବିକ୍ଷଣେ ଭାଷନ୍ତି (ଜନେ) ଶ୍ରୀକୃଷ୍ଣ ବାମ ହୃଦେ ।
ବ୍ରତ ଉପବାସ କରନ୍ତି ଦେବ ସେବା,
ଶ୍ରୀକୃଷ୍ଣ ଲୀଳାରେ ସମସ୍ତେ ଦିଶନ୍ତି ଶୋଭା ।
ଅରୋଗୀ ଅପାପୀ ଯେ ଅଟନ୍ତି ସର୍ବଜନ,
ସମସ୍ତେ ନିଶ୍ଚିନ୍ତ ଗୃହେ ଗୃହେ ପୁରାଣ ।
କାମେ ଅବଶ ସେ ଯେ କେବେହେଁ ନୁହନ୍ତି,
ଅପାରବନ୍ତକୁ ଦୟା କରିଥାନ୍ତି ।
ଯେ ଯାହା ଅଧିକାରେ ବର୍ତ୍ତନ୍ତି ପ୍ରତ୍ୟକ୍ଷେ,
ଦଣ୍ଡ ମଣ୍ଡ ନାହିଁ ପଡ଼ି ଧନ ଆଶେ ।
ଗୁରୁଜନେ ଭକ୍ତି, ଯେ ନାହିଁ ପରଦାରା,
ଦୁଃଖୀ ତସ୍କର ନାହିଁ ପରଧନହରା ।
ଦିବସେ ବୃଷ୍ଟି ଯେ ନ କରନ୍ତି ମେଘେ,
କୃଷିବେଳ ଜାଣି ଇନ୍ଦ୍ର ପାଳଇ ବେଗେ ।
ଯେ ଯାହା ବେଭାର କରି ରହିଥାନ୍ତି,
ପରରାଷ୍ଟ୍ର ବାରତା ଶ୍ରବଣେ ନ ଶୁଣନ୍ତି ।
ପାପକର୍ମ କଥାରେ ନ କରନ୍ତି ଲୟେ,
ସମସ୍ତେ ଦିଶନ୍ତି ରାଜକୁମାର ପ୍ରାୟେ ।
ଯମର ଅନୀତି ନ ଶୁଣି ଶ୍ରବଣେ,
ମଙ୍ଗଳ ଧ୍ୱନି ଶୁଭଇ ସମସ୍ତ ଭବନେ । (୧)

ଏହି ପଂକ୍ତିଗୁଡ଼ିକରେ କବି ମହାଶୟଙ୍କର ଶାସ୍ତ୍ରୋକ୍ତ ରୀତି ନୀତିର ଅନୁମୋଦିତ ବିଷୟାଭିଜ୍ଞତା ଓ ବ୍ୟବହାରକୁଶଳତା ପ୍ରତିପନ୍ନ ହେଉଅଛି । ଅନ୍ୟାନ୍ୟ ପୁରାଣମାନଙ୍କରେ ସୁଦ୍ଧା ସୌରାଜ୍ୟ ଗୁଣକୀର୍ତ୍ତନ ପ୍ରସଙ୍ଗରେ ଏ ସବୁ କେବଳ କୁହାଯାଇଥାଏ । ଯାହାକି ପ୍ରଜାମାନଙ୍କର ଶ୍ରେୟସ୍କର ଓ ଆଦରଣୀୟ, ତାହାହିଁ ସୁଶାସନର ଲକ୍ଷଣ । ସେହି ସୁଶାସନ ପାଇଁ ଧର୍ମହିଁ ଏକାଶ୍ରୟ । ଧର୍ମ ବଳରେ କେବଳ ରାଜା ବଳୀୟାନ୍ ହୁଅନ୍ତି, ଅପିଚ ପ୍ରଜାବୃନ୍ଦର ଦୁଃଖାପନୋଦନରେ ସହାୟୀଭୂତ ହୋଇ ପାରନ୍ତି । ଅତଏବ ଶ୍ରୀ ସାରଳାଦାସ ମହୋଦୟ ଏ ସ୍ଥଳରେ ଚାତୁର୍ବର୍ଣ୍ଣ୍ୟ, ଧର୍ମରକ୍ଷାକୁ କେବଳ ସୁଶାସନର ମୂଳ କାରଣ ମନେ କରି ଧର୍ମଜନିତ ବହୁବିଧ ସାଂସାରିକ ସୁଖର ଅବତାରଣା କରିଅଛନ୍ତି । ସବୁ ଯୁଗରେ ସବୁ ଦେଶରେ ପ୍ରଜାବୃନ୍ଦ ଧର୍ମପ୍ରାଣ ରାଜାଙ୍କୁ ପାଇ ଏହିସବୁ ସୁଖ କେବଳ ପ୍ରାପ୍ତ ହୁଅନ୍ତି । ସୁତରାଂ ମନୁଷ୍ୟ

(୧) ଏ ସବୁ ତାଳପତ୍ରରେ ସ୍ତ୍ରୀପର୍ବରେ, ଛାପାରେ କିଛିତ୍ ଭିନ୍ନପ୍ରକାରତଃ ଆଶ୍ରମିକ ପର୍ବରେ ଲେଖା ଅଛି ।

ସଂସାରରେ ସଂସାରୀ ହେଲେ ଏହାହିଁ ବାଞ୍ଛନୀୟ । ଯଦିଚ ରାଜ୍ୟ ମଧ୍ୟରେ ସମସ୍ତେ ସର୍ବଦା ଧର୍ମୈକଶରଣ ପ୍ରବୃତ୍ତୋତ୍ସବମଙ୍ଗଳ ଓ ହର୍ଷନିର୍ଭରମାନସ ହୋଇ ଅନପଗାମିନୀ ଲକ୍ଷ୍ମୀଙ୍କ ପ୍ରସାଦରୁ ତୁଙ୍ଗ ପ୍ରାକାର ଗୋପୁରେ ସୁଖୋପକରଣ ସହ ବିହାର କରନ୍ତି, ପୁଣ୍ୟସଂଭବ ବୈଭବ ସଞ୍ଚୟରେ ପରବ୍ୟସନନାଶନତତ୍ପର ହୋଇ ଆଧିବ୍ୟାଧି ପ୍ରଭୃତି ଦୁଃଖରୁ ବିମୁକ୍ତ ରହନ୍ତି ଏବଂ ''ସର୍ବଂ ଶୁଭଂ ଜଗତି ଧର୍ମତ ଏବ ଲଭ୍ୟଂ'' ଏହି ମହାବାକ୍ୟକୁ ହୃଦୟର ନିଭୃତ କକ୍ଷରେ ପ୍ରତିଷ୍ଠିତ ରଖି ସଂସାର ଯାତ୍ରା ନିର୍ବାହ କରିଯାନ୍ତି, ତେବେ ବିଶ୍ୱାସ କରିବାକୁ ହେବ ଯେ ରାଜ୍ୟ ସୁରାଜତ୍ୱରେ ପ୍ରତିଷ୍ଠିତ ଅଛି । ଆମ୍ଭମାନଙ୍କ ଆଦିମ କବି ମହୋଦୟ ଏଠାରେ ତାହା ହିଁ ଚିତ୍ରଣ କରି ଅଛନ୍ତି ।

ଏସବୁ ଛଡ଼ା ଏହି ଗ୍ରନ୍ଥ ମଧ୍ୟରେ ଯଥା ସ୍ଥାନମାନଙ୍କରେ ସମୁଚିତ କ୍ରମରେ ରଥାଦିର ବର୍ଣ୍ଣନା ଏବଂ ଆବଶ୍ୟକୀୟମତେ ଆରାମ ପ୍ରଭୃତିର ବର୍ଣ୍ଣନା ବର୍ଣ୍ଣିତ ହୋଇଅଛି । କବି ମହାଶୟ ରାଜସୂୟ ଯାଗାର୍ଥ ରଚିତ ସଭାମଣ୍ଡପାଦିର ବର୍ଣ୍ଣନାରେ ବହୁବିଧ ଗୃହମାନଙ୍କର ନାମାଦି ବିବରଣ ଏବଂ ଉପକରଣ ଓ ଭୂଷଣାଦିର ବିବରଣ ବିସ୍ତୃତ ଭାବରେ ପ୍ରକାଶ କରିଅଛନ୍ତି । ଏଥିରେ ଏ ମହୋଦୟଙ୍କର ନାନା ପ୍ରକାର ବୈଷୟିକ ବୈଦୁଷ୍ୟ ପ୍ରକାଶ ପାଉଅଛି । ପରନ୍ତୁ ଦୁଃଖର କଥା ଏହି ଯେ, ଏଥି ମଧ୍ୟରୁ ଅନେକଗୁଡ଼ିଏ ନାମର ଅର୍ଥ ଆଦୌ ଜଣାଯାଉ ନାହିଁ । ପ୍ରବନ୍ଧ ବିସ୍ତୃତି ଭୟରୁ ସେ ସବୁ ଉଲ୍ଲେଖ ନ କରି ବିରତ ହେଲୁଁ ।( ୧ ) ସୁତରାଂ ଶ୍ରୀମାନ୍ ସାରଳାଦାସଙ୍କ କୃତ ଦେବୀସ୍ତୁତିମୂଳକ ସୁବିସ୍ତୃତ ବର୍ଣ୍ଣନାଗୁଡ଼ିକ ଦେଖିବେ, ସର୍ବତ୍ର ଓଜସ୍ୱିନୀ ଭାଷାରେ ବଡ଼ ମନୋହର ଓ ଭାବଜନକ ହୋଇଅଛି ।ଏହି ମହାକବି ମହୋଦୟ ବହୁ ସ୍ଥଳରେ ଯେପରି ସର୍ବସାଧାରଣ ପ୍ରଚଳିତ ପଦାର୍ଥଗୁଡ଼ିକର ସୌସାଦୃଶ୍ୟ ନେଇ ସୁହୃଦ-ହୃଦୟଗ୍ରାହି ରୂପେ ଉପମା ଉତ୍ପ୍ରେକ୍ଷା ଦୃଷ୍ଟାନ୍ତାଦି ସହ ବର୍ଣ୍ଣନାଚମତ୍କୃତି ଦେଖାଇ ଅଛନ୍ତି, ସେହିପରି କେତେକ ସ୍ଥଳରେ ବର୍ଣ୍ଣନୀୟ ବିଷୟମାନଙ୍କୁ ମନୋହର ରୂପେ ପୌରାଣିକ ଗାଥା ଓ ସମୁତ୍କୃଷ୍ଟ ପଦାର୍ଥର ସମକକ୍ଷ କରି ଅଛନ୍ତି । ଅର୍ଥାଳଙ୍କାରମାନଙ୍କରୁ ମୁଖ୍ୟତଃ ଉପମା ଉତ୍ପ୍ରେକ୍ଷା ରୂପକ ସ୍ୱଭାବୋକ୍ତି ଓ ଅତିଶୟୋକ୍ତି ମାତ୍ର ବହୁ ସ୍ଥଳରେ ପ୍ରୟୋଗ କରି ଅଛନ୍ତି । ଶବ୍ଦାଳଙ୍କାରକୁ ଆଦୌ ସ୍ପର୍ଶ କରି ନାହାନ୍ତି । ଏହାଙ୍କର ଅକୃତ୍ରିମ ରମଣୀୟ ଉପମାଦିର ବର୍ଣ୍ଣନା ସ୍ଥଳମାନ ପାଠ କଲେ ହୃଦୟ ଆନନ୍ଦରେ ବିମୁଗ୍ଧ ହୁଏ । ବୋଧହୁଏ ସପ୍ରତିଭ କବିଙ୍କର ଆଶୁକବିତା ଧୋରଣୀରେ ଏସବୁ ତାତ୍କ୍ଷଣିକ-ସ୍ଫୂର୍ତ୍ତିସଂଜାତ ଓ ଆକସ୍ମିକ ସଂପ୍ରାପ୍ତ ହୋଇଥିବାରୁ ଅଯତ୍ନମାଧୁର୍ଯ୍ୟସମ୍ପନ୍ନ ହୋଇ ପାରିଅଛି । ପାଠକମାନଙ୍କର ମନୋବିନୋଦନାର୍ଥ ଏପରି କେତେକ ସ୍ଥଳ ମାତ୍ର ନାନା ଦିଗରୁ ଆନୟନ କରି ନିମ୍ନରେ ପ୍ରଦର୍ଶନ କରୁଅଛୁ । ତଦନୁକ୍ରମଣରେ ପରିତ୍ୟକ୍ତ ବା ଅବଶିଷ୍ଟ ସ୍ଥାନମାନଙ୍କର ସ୍ୱାଭାବିକ କମନୀୟତା ପାଠକ ଅନୁମାନ କରିବେ ।

---

(୧) ଛାପାରେ ସ.ପ. ପୃ.୫୫-୫୯ଶ୍ଲୋ ଯାଏ ଦେଖନ୍ତୁ ।

୧ । ତଦନ୍ତେ କି ହେଲା କହ ଫେଡ଼ ବ୍ରହ୍ମଚାରୀ,
ବଦତି ଅଗସ୍ତି ଯେଉଁ ପରି କୃଷିକାରୀ ।
ବଳଦ ହଜାଇ ଏଣେ ତେଣେ ଖୋଜେ ବୁଲି,
ଭୀଷ୍ମଙ୍କ ଅଭାବେ ରାଜା ହେଲା ସେହିପରି । ଦ୍ରୋ.ପ.
୨ । ଯେସନେକ ପିଲାମାନେ ଫିଙ୍ଗନ୍ତି ଟେଙ୍କା,
ସେ ରଥକୁ ଫିଙ୍ଗିଦେଲା ପବନର ବଙ୍କା । ଦ୍ରୋ.ପ.
୩ । ଯେସନେ ବଢ଼ି ପାଣି ବାନ୍ଧିଲେ ରହଇ,
ସେହି ରୂପେ ଅସୁରେ ରହିଲେ ଦୂର ହୋଇ । ଅଶ୍ବ.ପ.
୪ । ବୃକ୍ଷକୁ ପିଟିଲେ ଯଥା ଝଡ଼େ ପକ୍ୱଫଳ,
ନାଚନ୍ତି କବନ୍ଧ ଛିଡ଼ି ପଡ଼େ ବକ୍ଷଃସ୍ଥଳ ।
ସମସ୍ତଙ୍କ ଅଙ୍ଗରୁ ରୁଧିର ବୃଷ୍ଟି ହେଲା,
ପଲାଶ ଗଛ କି କୁସୁମେ ମଣ୍ଡିତ ହୋଇଲା । ଦ୍ରୋ.ପ.
୫ । ବସା ଭଗ୍ନେ ପକ୍ଷିଏ ପଳାନ୍ତି ଯେହ୍ନେ ଡରେ,
କେ ରହି ନ ପାରିଲେ ନନ୍ଦିଘୋଷ ଛାମୁରେ । ଦ୍ରୋ.ପ.
୬ । କୁରୁସାଗର ବଳ ଯେ ମଧୁବନ ସମ,
ଲୋଟାଏ ପ୍ରଚଣ୍ଡ ବାତ କି ସେ ଅରଜୁନ । ଦ୍ରୋ.ପ.
୭ । ଯେଉଁପରି ସର୍ପମାନେ ପଶନ୍ତି ବିମ୍ବରେ,
ପଖି ପର୍ଯ୍ୟନ୍ତ ଶର ପଶିଲା ହୃଦୟରେ । ଦ୍ରୋ.ପ.
୮ । ଏକା ନାରାଚକେ ଅନେକ ଅସୁର ପଡ଼ି,
ଯେସନେ ବାତଘାତେ ପକ୍ୱଫଳ ଝଡ଼ି । ଅଶ୍ୱ.ପ.
୯ । ନାନାବିଧ ପୁଷ୍ପର ବାସ ଆମୋଦଇ,
କି ସେ ରାଜାର ଅବା ମନ୍ଦିର ଅଟଇ । ମୂଷ. ପ.
୧୦ । ନାରଦ ବଚନ ଶୁଣି ଅସୁର କଲା କୋପ,
ଯଷ୍ଟି ପ୍ରହାରରେ ଯେହ୍ନେ ଗର୍ଜଇ କାଳସର୍ପ । ଅଶ୍ୱ.ପ.
୧୧ । ରକ୍ତେ ବିଲେପନ ଭୀମସେନର ସେ ଅଙ୍ଗ,
ହିରଣ୍ୟ ବିଦାରି ଯେହ୍ନେ ଦିଶଇ ନୃସିଂହ । ଭୀ.ପ.
୧୨ । ରୁଧିରେ କର୍ଦମ ଯେ ହୋଇଲା ସର୍ବକାୟେ,
ଶରୀର ଦିଶିଲା ଯେ କିଂଶୁକ ପୁଷ୍ପ ପ୍ରାଏ ।(୧) ଭୀ.ପ.

---

(୧) ଏତାଦୃଶ ଉପମା ମୂଳ ଗ୍ରନ୍ଥରେ ବହୁ ସ୍ଥଳରେ ଦେଖାଯାଏ ।
ବଭୌ ରାମ ସ୍ତଥା ରାଜନ୍ ପ୍ରଫୁଲ୍ଲ ଇବ କିଂଶୁକ । ଉ.ପ. ୧୮୦ ଅ:

୧୩ । ଦୁତି ସାଗର ଛବିକୁ କୁରୁ ସୈନ୍ୟ ଢିଣେ,
ଅଶ୍ୱେ ପହଁରନ୍ତି ହଂସପନ୍ତିର ସମାନେ । (୧) ଦ୍ରୋ.ପ.

୧୪ । ତାରକା ବଧରେ ଯଥା ଦିଶଇ କୁମାର,
ଅର୍ଜୁନର ମହିମା ଯେ ତେମନ୍ତ ପ୍ରକାର । ମଧ. ପ.

୧୫ । ମନ୍ଦର ମାଡ଼ି ଯେହ୍ନେ ବସଇ ହିମବନ୍ତ,
ସେହି ରୂପେ ଭୀମ ବକ୍ଷଃସ୍ଥଳେ ଦିଶଇ ଦୈତ୍ୟ । ବନ.ପ.

୧୬ । କଦମ୍ବାସୁର ବଳରାମ ହେଲେ ଏକ କତି,
ମେରୁ ମନ୍ଦର ପ୍ରାୟେ ସମରେ ଦିଶନ୍ତି । ଅଶ୍ୱ.ପ.

୧୭ । ମେରୁ ପୃଷ୍ଠରୁ ଯେହ୍ନେ ବହଇ ନୀରଧାର,
ତଥା ଭୂରିଶ୍ରବା ଅଙ୍ଗୁ ଗଳିପଡ଼େ ରୁଧିର ।(୨) ଦ୍ରୋ.ପ.

୧୮ । ରେରେକାର କରିଣ ଯେ ବୋଇଲା ପାଞ୍ଚାଳ,
ଘୃତ ସଂଯୋଗରେ ଯେହ୍ନେ ବହ୍ନି ବିକରାଳ । ଦ୍ରୋ.ପ.

୧୯ । ଆଦିତ୍ୟ ଉଦେ ଯଥା ଉଦେଗିରି ଜ୍ୟୋତି,
ତଥା ନନ୍ଦିଘୋଷ ଆସେ ଶଲ୍ୟଙ୍କର କତି । କର୍ଣ୍ଣ.ପ.

୨୦ । ରସାଣ ଶିରରେ ତାର ଲାଗିଅଛି କଳା,
କଣୟ ପର୍ବତେ କି ଦିଶିଲା ମେଘମାଳା ।
ବି.ପ. । ଇତ୍ୟାଦି ।

ପରିଶେଷରେ ସ୍ଥୂଳତଃ ଦୁଇ ଚାରି କଥା ପ୍ରକାଶ କରି ଏହି ସନ୍ଦର୍ଭର ଉପସଂହାର କରିବୁଁ । ଇତିପୂର୍ବେ ନିଦର୍ଶନ ପ୍ରଦର୍ଶନ ପୂର୍ବକ କହିଅଛୁଁ କି, ସାରଳାଦାସ ମହାଶୟ ମହାଭାରତ ରଚନାରେ ଗ୍ରନ୍ଥଶୁଶ୍ରୂଷା ଓ ପୌରାଣିକ ଚରିତବେତ୍ତାଙ୍କ ମୁଖର ନାନା ପ୍ରକାର ଚରିତ ଶୁଶ୍ରୂଷା ବିନା ଆଉ କୌଣସି ପ୍ରକାର ସାହାଯ୍ୟ ପାଇ ପାରି ନ ଥିଲେ । ସେ କେବଳ ନିଜ ବୁଦ୍ଧିସିଦ୍ଧିକୁ ଅଗ୍ରସର କରି ଏତାଦୃଶ ମହତୀ କୀର୍ତ୍ତି ସମ୍ପାଦନ କରିପାରି ଅଛନ୍ତି । କିନ୍ତୁ ମଦୀୟ ସୁହୃଦବନ୍ଧୁ ଜଣେ ପଣ୍ଡିତ ମହାଶୟ ଏହି ଭାରତର ସୂକ୍ଷ୍ମସୌଚିକ

---

(୧) ଏହି ଉପମା ସୁଦ୍ଧା ମୂଳ ଗ୍ରନ୍ଥରେ ବହୁ ସ୍ଥଳରେ ଦେଖାଯାଏ ।
''ତେ ହୟା କାଞ୍ଚନା ପୀଡ଼ା ନାନାବର୍ଣ୍ଣା ମହାଜବାଃ,
ଉପେତୁଃ ସହସା ରାଜନ୍ ହଂସାଇବ ମହୋଦଧୌ ।
ନିପତଦ୍ଭିର୍ମହାବେଗୈ ର୍ହଂସୈରିବ ମହସରଃ ।'' ଭୀ.ପ. ୧୦୬ ଶ୍ଳୋ:

(୨) ଏତାଦୃଶ ଉପମା ସୁଦ୍ଧା ମୂଳ ଗ୍ରନ୍ଥରେ ଅସକୃଦ୍ ବର୍ଣ୍ଣିତ ଅଛି ।
କ୍ଷତଜୋକ୍ଷିତସର୍ବାଙ୍ଗଃ କ୍ଷରନ୍ ସରୁଧିରଂ ରଣେ ।
ବଭୌ ରାମସ୍ତଦା ରାଜନ୍ ମେରୁର୍ଦ୍ଧାତୁମିବୋତ୍ସୃଜନ୍ । ଉ.ପ. ୧୮୦ ପୃ

ସମାଲୋଚନା ମାତ୍ର କରିବାକୁ ଯାଇ ଇତଃପୂର୍ବେ ମୁକୁର ପଞ୍ଚମ ଭାଗରେ କହି ଅଛନ୍ତି କି ''ସାରଳା ମହାଭାରତ ଲେଖିବା ପାଇଁ ସେ କାଳରେ ଉପକରଣମାନ କବିଙ୍କୁ ବଡ଼ ସୁଲଭ ଥିଲା । ସାରଳାଦାସ ତାତ୍କାଳିକ ସୁଲଭ ସ୍ତୂପୀକୃତ ମାଲ ମସଲା ପାଇ ମହାଭାରତ ରଚନାରେ ପ୍ରବୃତ୍ତ ହେଲେ ।'' ପୁଣି ଏହି ଭ୍ରାନ୍ତ ଧାରଣାରେ ନିଜର ବୃଥା କଳ୍ପନାକଳ୍ପିତ ଉପକରଣର ପ୍ରକାଶନାର୍ଥ ଏହି ଭାରତ କବିଙ୍କର ସମସାମୟିକ ଉତ୍କଳ ଚକ୍ରବର୍ତ୍ତୀ କପିଳେନ୍ଦ୍ର ଦେବ ପ୍ରଭୃତିଙ୍କର ଯୁଦ୍ଧାଦି ଚର୍ଯ୍ୟାମାନଙ୍କର ସୂଚନାସମ୍ବଳିତ ତାତ୍କାଳିକ ଐତିହାସିକ ବିବରଣରୁ କେତେକ ଟାଣି ଆଣି ଭର୍ତ୍ତି କରି ଅଛନ୍ତି । ସେହି ଅବସ୍ଥାରେ ସାଧାରଣଙ୍କର ଏକାନ୍ତ ଦୁରଧିଗମ୍ୟ ମହାଭାରତର ଯୁଦ୍ଧବ୍ୟାପାର ସମସ୍ତଙ୍କ ଆଖି ଆଗରେ ନାଚୁଥିଲା, ଅତଏବ ସାରଳାଦାସ କବି ଚାରିଆଡ଼େ ସ୍ତୂପୀକୃତ ମାଲ ମସଲାମାନ ପାଇ ମହାଭାରତ ରଚନା କରି ପକାଇଲେ ବୋଲି ବ୍ୟକ୍ତ କରି ଅଛନ୍ତି । ଏ ବଡ଼ ବିସ୍ମୟଜନକ ଓ ବିଲକ୍ଷଣ ସମାଲୋଚକତା । କପିଳେନ୍ଦ୍ର ଦେବଙ୍କର ଯୁଦ୍ଧଚର୍ଯ୍ୟାସନ୍ଦୋହର ପରିଦର୍ଶନ ଓ ପରିଶ୍ରବଣ ଯଦି ମହାଭାରତ ରଚନାର ଉପକରଣ ବା ଉପାଦାନ ଅପିଚ ସାହାଯ୍ୟ ସ୍ୱରୂପ ହୋଇ ମହାଭାରତ ଗ୍ରନ୍ଥ ରଚନାରେ ପ୍ରବୃତ୍ତି ଓ ଶକ୍ତି ଜନ୍ମାଇ ପାରୁଥିଲା, ତାହାହେଲେ ଏତାଦୃଶ ଶତ ଶତ ଗ୍ରନ୍ଥତ ସେହି ସମୟରେ ରଚିତ ହୋଇ ପାରିଥାନ୍ତା । ନା, ଏହା କଦାଚ ହୋଇ ନ ପାରେ । ଯଥାର୍ଥ କହିବାକୁ ହେଲେ ଏପରି ଅଳୀକ ସାହସିକ ବାକ୍‌ଧୋରଣୀକୁ ଭ୍ରାନ୍ତିବିଳାସର ସରଣୀ ବୋଲିବାକୁ ହେବ ।

ଏହା ପରେ ପ୍ରୋକ୍ତ ସୁହୃଦ୍‌ବନ୍ଧୁ ମହୋଦୟ ଏହି ଭାରତ ଗ୍ରନ୍ଥର ଭାଷା ଓ ଭାବ ସମ୍ବନ୍ଧରେ ସଂକ୍ଷେପରେ କିଛି କହିବୁଁ ବୋଲି ସମଗ୍ର ଗ୍ରନ୍ଥର କଳ୍ପିତ ବିଭାଗକୁ ଯଥାକ୍ରମରେ ମାନବର କୌମାର ଯୌବନ ଓ ଜରାବସ୍ଥାର ଚେଷ୍ଟାରେ ଆରୋପିତ କରି ସାଧୁବାଣୀରେ ଗୋଟିଏ ପଦ୍ୟ ଦେଇ ଅଛନ୍ତି । ପଦ୍ୟଟିର ପୂର୍ବଦଳ ପ୍ରାଚୀନ ବା ଆର୍ଷ, ଦ୍ୱିତୀୟ ଦଳଟି ସମାଲୋଚକଙ୍କର ମନଗଢ଼ା, ଏହାର ଗତିଟି ଯେପରି ଖଞ୍ଜର ଗତିପ୍ରାୟ ବିକୃତ, କଳ୍ପିତ ବିଭଜନ ସୁଦ୍ଧା ସେହିପରି ଅସମଞ୍ଜସ । ଏହି ବିଭାଗକରଣରେ ଆଦିପର୍ବଠାରୁ ବିରାଟପର୍ବ ପର୍ଯ୍ୟନ୍ତ ପର୍ବଚତୁଷ୍ଟୟକୁ ମାନବର କୌମାର ଚେଷ୍ଟାରେ ପକାଇ କବି ପ୍ରତିଭାର ମାନ୍ଦ୍ୟ ଓ ମାଳିନ୍ୟ ପ୍ରକାଶ କରି ଅଛନ୍ତି । ଏହା ନିତାନ୍ତ ଅଳୀକ ଓ ଅସଙ୍ଗତ । ସମାଲୋଚକ ମହାଶୟ ଯଦି ଏହି ମହାଭାରତକୁ ଆମୂଳାନ୍ତ ପାଠ କରିଥାନ୍ତେ, ତାହାହେଲେ ଏହା କହନ୍ତେ ନାହିଁ । ଏହି ଭାରତ ଗ୍ରନ୍ଥରୁ ଆପଣମାନେ ଯେ କୌଣସି ପର୍ବର ଯେକୌଣସି ଅଂଶ ଦେଖନ୍ତୁ, ନଚେତ୍ ନାନା ପର୍ବରୁ ଉଦ୍ଧୃତ ପ୍ରମାଣ ବାକ୍ୟମାନ ନେଇ ପରିଶୀଳନ କରନ୍ତୁ, ଦେଖିବେ, ସମ୍ପୂର୍ଣ୍ଣ ବିଶ୍ୱାସ କରିବେ, ସାରଳା ମହାଭାରତର ଭାଷା ସର୍ବତ୍ର ସମାନ । ଭାବ ପ୍ରକାଶର କଥା କହିବେ ? ତଦୀୟ କୃତ ଦ୍ୱିତୀୟ ଭାଗରେ କେବଳ ଯୁଦ୍ଧ

ବର୍ଣ୍ଣନାର ଚାତୁର୍ଯ୍ୟ ମାତ୍ର କିଞ୍ଚିଦ୍ ଅଧିକ, ବାକି ସବୁ ସମାନ । ପ୍ରଥମ ଭାଗରେ ଅର୍ଥାତ୍ ଆଦିପର୍ବଠାରୁ ବିରାଟପର୍ବ ପର୍ଯ୍ୟନ୍ତ ଅନେକତ୍ର ବୀର ଓ ଶୃଙ୍ଗାର ରସର ସମୁଚିତ ବର୍ଣ୍ଣନାରେ ସଂପୂର୍ଣ୍ଣତଃ ଭାବବିଦ୍ୟୋତିତ ହୋଇଅଛି । ଏହାର ପ୍ରାମାଣ୍ୟ ଇତଃପୂର୍ବେ ପ୍ରଦର୍ଶିତ ବର୍ଣ୍ଣନାତ୍ମକ ସ୍ଥଳମାନଙ୍କରୁ ହୃଦୟଙ୍ଗମ କରି ପାରିବେ । ସୁତରାଂ ଆଦିପର୍ବରେ ଏ କବି ମହାଶୟଙ୍କର ଆବଶ୍ୟକମତେ ସଂକ୍ଷିପ୍ତୀକରଣ ଓ ବିସ୍ତୃତୀକରଣର ଚିତ୍ରଣନୈପୁଣ୍ୟରୁ ପ୍ରୌଢ଼ମନସ୍କତାର ପ୍ରମାଣ ଖୁବ୍ ପ୍ରକାଶ ପାଉଅଛି । ଏ ମହାଶୟ ମୂଳ ଗ୍ରନ୍ଥର ନାନା ପ୍ରକାର ଅବାନ୍ତର କଥା ଜାଳ ସଙ୍କୁଳ ଧାରାବାହିକ ଭାରତୀୟ ଚରିତରୁ ପୃଥଗ୍‌ଭୂତ ପୌଷ୍ୟ ପୌଲୋମାଦି ପର୍ବମାନଙ୍କ ବିଷୟର ପରିତ୍ୟାଗରେ (୧) ସମ୍ୟକ୍ ସୁବିଚାରପୂର୍ବକ ଗ୍ରନ୍ଥର ପ୍ରଧାନ ନାୟକୀଭୂତ କୌରବମାନଙ୍କର ଆଦିପୁରୁଷର ଉତ୍ପତ୍ତିଠାରୁ କେବଳ ଗ୍ରନ୍ଥାରମ୍ଭ କରିଅଛନ୍ତି । ଏପରି କରିବାରେ ବିଷୟ ସଂଯୋଗ ସମୀଚୀନତା ଓ ସୁସଙ୍ଗତତାର କ୍ଳାନ୍ତି କିଛି ହିଁ ଘଟି ନାହିଁ । ଆପଣମାନେ ଅବଶ୍ୟ ଅବଗତ ଅଛନ୍ତି, ଗ୍ରନ୍ଥର ପ୍ରାରମ୍ଭ ଓ ପରିସମାପ୍ତିର ନୈପୁଣ୍ୟ ଗ୍ରନ୍ଥାକର୍ତ୍ତାମାନଙ୍କର ସୁବିଚାରର ପ୍ରଧାନ ପରିଚାୟକ ବୋଲି ବିଦ୍ୱଦ୍‌ଗଣ ଅନୁମୋଦନ କରନ୍ତି । ଅତଏବ ସାରଳାଦାସଙ୍କର ଗ୍ରନ୍ଥାରମ୍ଭକରଣ ବିଦ୍ୱଦନୁମୋଦନୀୟ, ସନ୍ଦେହ ନାହିଁ । ଏଥିରେ ପୁଣି କବି ମହାଶୟ ମୂଳଗ୍ରନ୍ଥର ବହୁଦୂର ବିନ୍ୟସ୍ତ ଅନ୍ୟୋପାଖ୍ୟାନର ଯାବତୀୟ ଚରିତାବ୍‌ଳୀ ଏବଂ କର୍ଣ୍ଣୋତ୍ପତ୍ତି ସନ୍ଦର୍ଭକୁ ସଙ୍ଗତି ସଂଲଗ୍ନତାପୂର୍ବକ ଯଥାଯୋଗ୍ୟ ସ୍ଥାନରେ ସନ୍ନିବେଶିତ କରି ନିଜର ସଂପୂର୍ଣ୍ଣ ବୈଦୁଷ୍ୟର ପରିଚୟ ପ୍ରଦାନ କରିଅଛନ୍ତି ଏବଂ ଅର୍ଜୁନ ଲାଖବିନ୍ଧା ପ୍ରଭୃତି ସ୍ଥଳରେ ଅସାମାନ୍ୟ କବିତା ଚାତୁରୀକି ଦେଦିପ୍ୟମାନ କରି ଅଛନ୍ତି । ତଥାପି ଗ୍ରନ୍ଥ ମଧ୍ୟରେ ସର୍ବତ୍ର କଳ୍ପିତ-ଗଳ୍ପପ୍ରିୟତା ବୈଷୟିକ ବୈଷମ୍ୟ ପ୍ରଭୃତି ନ୍ୟୂନା``କତଃ ବିଦ୍ୟମାନ ଅଛି ସତ୍ୟ, ତେବେ ଆଦି ସଭାଦି ପର୍ବଚତୁଷ୍ଟୟର ପାଠ ଶୈଶବଚେଷ୍ଟିତ କିପରି ? ପଣ୍ଡିତ ମହାଶୟଙ୍କର ଏହି ବିଭାଗକରଣ ଓ ଦୋଷାରୋପଣ ସୁବିଚାରର କାର୍ଯ୍ୟ ନୁହେ, କିମ୍ବା ଦୂରଦର୍ଶିତାର ପରିଚାୟକ ନୁହେ । ଏହା ଏକାନ୍ତ ଭ୍ରାନ୍ତିବିଳାସ । କିନ୍ତୁ ସାରଳା ଦାସ କବି ମହୋଦୟ ଗ୍ରନ୍ଥର ଆରୋହ ସମାରୋହ ଓ ଅବରୋହ ଭାଗରେ ତଦ୍‌ତଦ୍ ରୀତିମତେ ଯଥାସମ୍ଭବ ବାଗ୍‌ବୈଭବ ପ୍ରକାଶ କରି ଥିବାରୁ ଉଦୀୟମାନ ପ୍ରଭାକରଙ୍କର ପୂର୍ବାହ୍ଣ ମଧ୍ୟାହ୍ନ ଓ ଅପରାହ୍ଣକାଳୀନ ତୈଜସ ଅବସ୍ଥାତ୍ରୟ ସହ ଗ୍ରନ୍ଥର ବିଭାଗତ୍ରୟର ତୁଳନା କରାଯାଇ ପାରେ । ଯେପରି ବିଭାବସୁଙ୍କ ପ୍ରଭାବୈଭବ ପୂର୍ବାହ୍ଣରେ ନାତିପ୍ରଖରରୂପେ କ୍ରମଶଃ ପରିବର୍ଦ୍ଧିଷ୍ଣୁ ହୋଇଉଠେ, ମଧ୍ୟାହ୍ନରେ ଅମିତ ତେଜସ୍କର ଓ ଦିଗନ୍ତରାଳ ତମୋଜାଡ୍ୟ-ବିନାଶକରୂପେ ଦେଦୀପ୍ୟମାନ ହୁଏ ଏବଂ ଅପରାହ୍ଣରେ ଯେପରି ନିଜ ଗୁଣଗୁଡ଼ିକ କ୍ରମଶଃ ମନ୍ଦୀଭୂତ କରି ଆଣି ଆଲୋକୋତ୍ସବ ପରିସମାପ୍ତ କରେ, ଏହି

(୧) ତୈଲଙ୍ଗ ଭାରତକର୍ତ୍ତା ସୁଦ୍ଧା ଏତାଦୃଶ ତ୍ୟାଗ ସ୍ୱୀକାର କରି ଅଛନ୍ତି ।

ମହାଭାରତର କବିତାର୍ଭଟୀ ମଧ୍ୟ ସେହିପରି । ଉଦ୍ୟୋଗପର୍ବ ପର୍ଯ୍ୟନ୍ତ କବି ମହାଶୟ ନାନା ପ୍ରକାର ଐତିହାସିକ ଓ କାଳ୍ପନିକ ଘଟନା ସଂଯୋଗାର୍ଥ ଖୁବ୍ ସୁବିଧାପ୍ରାପ୍ତ ହୋଇ କ୍ରମଶଃ ତେଜ ବଢ଼ାଇ ଅଛନ୍ତି । ତା ପରେ କବି ନିଜେ ମଧ୍ୟ ବୀର ରସର ମୂର୍ତ୍ତି ପରିଗ୍ରହାର୍ଥ ସୁଲଭ ସୁଯୋଗ ପ୍ରାପ୍ତ ହେଲେ । ତେତେବେଳେ ତାହାଙ୍କୁ ତୁଣ୍ଡକଣ୍ଡୁ ଖଣ୍ଡନ ପୂର୍ବକ ବାକ୍ତାଣ୍ଡବ ଆରମ୍ଭରେ ସ୍ୱକୀୟ ଓଜସ୍ୱିନୀ ଶକ୍ତିର ପ୍ରଦ୍ୟୋତନାର୍ଥ ସମୁଚିତ ସମୟ ପ୍ରାପ୍ତ ହେଲା । ସେ ସ୍ଥଳରେ ଭାରତୀ ବୈଭବକୁ ବହୁଦୂର ପର୍ଯ୍ୟନ୍ତ ସଂପୂର୍ଣ୍ଣତଃ ବିକୀର୍ଣ୍ଣ କରି ଦେଲେ । ତାପରେ ଆଉ ତାଦୃଶ ସୁବିଧା ନାହିଁ । ତେଣିକି ଗ୍ରନ୍ଥର ଅବରୋହ ଭାଗ । ଚରିତ ସୁଦ୍ଧା ତାଦୃଶ ନୁହେଁ । ତେତେବେଳେ କବି ମହୋଦୟ ନିଜ ଶକ୍ତିକୁ ଫଣିଗୁଚ୍ଛ କ୍ରମରେ କ୍ରମଶଃ କ୍ଷୀଣ-ବିକାଶ କରି ଆଣିଲେ । ତଥାପି ଭାଷା ଓ ରୀତି ସର୍ବତ୍ର ସମାନ ରଖି ଅଛନ୍ତି । ଉପକରଣର ପ୍ରାଚୁର୍ଯ୍ୟ ଓ ଅପ୍ରାଚୁର୍ଯ୍ୟରୁ ବର୍ଣ୍ଣନା ବୈଚିତ୍ର୍ୟରେ ତାରତମ୍ୟ ଥିଲେ ସୁଦ୍ଧା ଭାଷାକ୍ରମ ଯେ ସର୍ବତ୍ର ସମାନ, ଏଥିରେ କୌଣସି ପ୍ରକାର ସନ୍ଦେହ ନାହିଁ । ଅତଏବ କହୁଁ–

ତ୍ରୟୀମୟସ୍ୟ ସୂର୍ଯ୍ୟସ୍ୟ ଯଥାବସ୍ଥାତ୍ରୟୀ ଭବେତ୍ ।
ତଥାତ୍ରଭାରତେ ଗ୍ରନ୍ଥେ ପଶ୍ୟେଽବସ୍ଥାତ୍ରୟଂ ଖଳୁ ।

ଆଉ ଗୋଟିଏ କଥା, ଏ ମହାଭାରତ ଗ୍ରନ୍ଥ ବହୁ ପରିମାଣରେ ରୂପହୀନ ହୋଇ ପଡ଼ିଲାଣି, ଏହାର ଜନ୍ମକାଳୀନ ନୈସର୍ଗିକ ସୁନ୍ଦରତା ଅତ୍ୟଳ୍ପ ସ୍ଥଳରେ ମାତ୍ର ରହିଅଛି । କେତେକ ସ୍ଥଳ ଅଜ୍ଞ ଅନୁଲେଖକମାନଙ୍କ ମତିମାନ୍ଦ୍ୟକାଳିମାରେ ଏପରି ଦୂଷିତ ହୋଇଯାଇଛି ଯେ, ଯାହା କିଛି ସୁନ୍ଦରତା ଅବଶିଷ୍ଟ ଅଛି, ତାହା ସୁଦ୍ଧା ପ୍ରକାଶ ପାଇପାରୁ ନାହିଁ । ପୁରାଣ ପ୍ରକାଶକ କମ୍ପାନୀ ପୁସ୍ତକ ମୁଦ୍ରଣ ସମୟରେ ଅବଶ୍ୟ କେତେକ ସ୍ଥଳ ମାର୍ଜିତ କରି ଅଛନ୍ତି ସତ୍ୟ, ତଥାପି ସେଥି ମଧ୍ୟରେ ବହୁ ଦୋଷ ରହିଯାଇ ଅଛି । ମୁଦ୍ରଣ କ୍ରମ ସୁଦ୍ଧା ଭଲ ନୁହେଁ । କେଉଁଠି କେଉଁ ବିଷୟ ଅଛି, ପର୍ବଟିଯାକ ନ ପଢ଼ିଲେ ଜଣାଯାଏ ନାହିଁ । ଆମ୍ଭମାନଙ୍କ ଦେଶରେ ଅନେକ ମହାରାଜା ରାଜା ଓ ଧନକୁବେରମାନେ ଅଛନ୍ତି, ତା ପରେ ଅନେକ ପୁସ୍ତକ ପ୍ରକାଶକ କମ୍ପାନୀର ସୁଦ୍ଧା ଅଭାବ ନାହିଁ । ସେଥିମଧ୍ୟରୁ କେହି ହେଲେ ଓଡ଼ିଆମାନଙ୍କର ଏହି ଖାଣ୍ଟି ବିଶୁଦ୍ଧ ରତ୍ନକୁ ସାଦରରେ ଚାହୁଁ ନାହାନ୍ତି । ଏ ବଡ଼ ଦୁଃଖ ଓ ଲଜ୍ଜାର କଥା । ଏହି ଗ୍ରନ୍ଥଟିକୁ ପ୍ରାଚୀନ ତାଳପତ୍ର ପୁସ୍ତକମାନଙ୍କ ସହ ମିଳାଇ ଅଭିଜ୍ଞ ପଣ୍ଡିତମାନଙ୍କ ସାହାଯ୍ୟରେ ଯଥାସାଧ୍ୟ ପରିଶୋଧନପୂର୍ବକ ଅବତରଣିକା ସହ ବିଷୟସଂସ୍ଥାନ କରି ସୁନ୍ଦର କାଗଜ ଓ ଛାପାରେ ଛେକ ଛେକତଃ ମୁଦ୍ରିତ କରାଇଲେ ଉପକାର ସାଧିତ ହୁଅନ୍ତା, ଭାଷା ଓ ଜାତିର ପ୍ରାଚୀନ ଗୌରବ ରକ୍ଷିତ ହୁଅନ୍ତା । ଆମ୍ଭେମାନେ ପ୍ରୋକ୍ତ କ୍ରମରେ ମୁଦ୍ରିତ ଏହାର ବିରାଟପର୍ବ ଖଣ୍ଡିଏ ମାତ୍ର ଉପହାର ସ୍ୱରୂପ ପାଇଅଛୁଁ । ପ୍ରୋକ୍ତ ପୁସ୍ତକଟି କଟକ ଅରୁଣୋଦୟ ପ୍ରେସରେ ମୁଦ୍ରିତ । ଏଥିରେ ଯେ

କୌଣସି ପ୍ରକାର ଦୋଷ ନାହିଁ, ତାହା କହୁ ନାହୁଁ । ତଥାପି ସେହି ପୁସ୍ତକର ମୁଦ୍ରଣକ୍ରମ ଅନୁକରଣଯୋଗ୍ୟ । ତଦନୁକ୍ରମରେ ବା ତତୋଽଧିକ ସୁନ୍ଦର ସୁନ୍ଦର କ୍ରମରେ ସମଗ୍ର ସାରଳା ମହାଭାରତ ଗ୍ରନ୍ଥଟି ପ୍ରକାଶିତ ହେବା ଏକାନ୍ତ ବାଞ୍ଛନୀୟ ।



## କବିଙ୍କ ପରିଚୟ

ଏହି ସମାଲୋଚନାମୂଳକପ୍ରବନ୍ଧର ପ୍ରଧାନ ଭାଗଦ୍ୱୟର ବିଚାର ଶେଷ ହୋଇଅଛି । ଏଥିରେ ପ୍ରବନ୍ଧର କଳେବର ସୁଦ୍ଧା ଟିକିଏ ବଢ଼ି ଯାଇଅଛି । ବର୍ତ୍ତମାନ ତଦଙ୍ଗଭୂତ ତୃତୀୟ ଭାଗର ବିଚାର ଆସି ଉପଗତ । ଏହାର କାୟ ଅପେକ୍ଷାକୃତ ଅଳ୍ପପ୍ରସର ବୋଲି ଏତତ୍‌ସମ୍ବନ୍ଧରେ ଗ୍ରନ୍ଥ ମଧରେ ଅନୁଦିତ ନାନା ଦିଗ୍‌ଦେଶରୁ ବଳାଦାକୃଷ୍ଟ ଆନୁମାନିକ ବିଷୟଗୁଡ଼ାଏ ଟାଣିଆଣି ଯେକୌଣସି ପ୍ରକାର ସମ୍ପର୍କ ଲଗାଇ ବୃଥା ସୁବିସ୍ତର କରିବା ଅନାବଶ୍ୟକ ଭାବୁଅଛୁଁ । କବି ନିର୍ଦ୍ଦିଷ୍ଟ ଏହି ଗ୍ରନ୍ଥଗତ ପ୍ରମାଣମାନ କେବଳ ପ୍ରଧାନତଃ ଗ୍ରାହ୍ୟ କରି ତତ୍ ତତ୍ ବିଷୟର ସ୍ଥିର ସିଦ୍ଧାନ୍ତ ସକାଶେ ଯାହା ଯାହା ଅତ୍ୟାବଶ୍ୟକ, ସେ ସବୁର ଆଶ୍ରୟରେ ମାତ୍ର ଏହି ସନ୍ଦର୍ଭକୁ ସମାସତଃ ସୁସଂପନ୍ନ କରିବୁଁ ।

ଯେକୌଣସି ସମାଲୋଚ୍ୟ ଗ୍ରନ୍ଥର କବି କିମ୍ବା ରଚୟିତାଙ୍କର ପରିଚୟ ପ୍ରଦାନ ସ୍ଥଳରେ କବିଙ୍କର ଜୀବିତ ସମୟ ବା ଗ୍ରନ୍ଥାରମ୍ଭର ସମୟ, ନିବାସ ସ୍ଥାନ, ନାମଧାମାଦି, ତତ୍‌କର୍ତ୍ତୃକ କୃତ ଅନ୍ୟାନ୍ୟ ଗ୍ରନ୍ଥସୂଚନା, ତଦୀୟ ସଦନୁଷ୍ଠାନ ନିଷ୍ଠାଗରିଷ୍ଠତ୍ୱ ପ୍ରଭୃତି ବିଷୟର ବିଚାର କରିବାକୁ ହୁଏ । ଅନ୍ୟାନ୍ୟ ଭାଷାର ଗ୍ରନ୍ଥ ସମାଲୋଚନାରେ ସମାଲୋଚକମାନେ ସମାଲୋଚ୍ୟ ପୁସ୍ତକଗତ ପ୍ରମାଣ ବାକ୍ୟମାନଙ୍କରେ ଅନୁପ୍ରାଣିତ ଓ ସିଦ୍ଧାନ୍ତିତ କରି ଏହା ହିଁ କହିଥାନ୍ତି । ଯଦିଚ କବି ସ୍ୱକୀୟ ଜନ୍ମସ୍ଥାନର ପରିଚୟ ସ୍ପଷ୍ଟତଃ ପ୍ରକାଶ କରି ନ ଥାନ୍ତି, ତେବେ ତଦୀୟ ବର୍ଣ୍ଣିତ ସ୍ଥାନମାନଙ୍କରୁ ଯହିଁରେ କବିଙ୍କର ସମଧିକ ସମାଦର ଥିବା ତଦୀୟ କଣ୍ଠୋକ୍ତି ପଂକ୍ତିରୁ ଜଣାଯାଏ, ସେହି ସ୍ଥାନକୁ କେବଳ କବିଙ୍କର ଅଧ୍ୟୁଷିତ ବା ଜନ୍ମସ୍ଥାନ ବୋଲି ଅନୁମାନ କରିବାକୁ ହୁଏ; କାରଣ ସମସ୍ତଙ୍କର ସ୍ୱ ସ୍ୱ ନିବାସଭୂତ ଦେଶରେ କେବଳ ସମଧିକତଃ ସମାଦର ରହିବା ସହଜ ଅଟେ । ଏହି କାରଣାନୁସରଣରେ କେବଳ ଅନେକେ ଶ୍ରୀମାନ୍ କାଳିଦାସଙ୍କର ମେଘସନ୍ଦେଶାଦି ଗତ ଉଜ୍ଜୟିନୀ ବର୍ଣ୍ଣନାର ଆଧିକ୍ୟ ବା ସମୁତ୍କର୍ଷ ଦେଖି ଉଜ୍ଜୟିନୀ ତାହାଙ୍କର ଜନ୍ମସ୍ଥାନ ଓ ପରିବର୍ଦ୍ଧନର ସ୍ଥାନ ବୋଲି କହନ୍ତି । କବି ଯଦି ନିଜର ଜୀବିତ ସମୟକୁ ଗ୍ରନ୍ଥ ମଧରେ କୁତ୍ରାପି ନିର୍ଦ୍ଦେଶ କରି ନ ଥାନ୍ତି, ତାହାହେଲେ ତତ୍‌ବର୍ଣ୍ଣିତ ତତ୍ସାମୟିକ ମହାପୁରୁଷମାନଙ୍କର ଚରିତାନୁସରଣରେ କବି ସମୟ ନିର୍ଦ୍ଧାରଣ କରିବାକୁ ହୁଏ । ଏତାଦୃଶ କ୍ରମରେ ଗ୍ରନ୍ଥକର୍ତ୍ତାଙ୍କର ଯାବତୀୟ

ବିଷୟମାନ ତଦୀୟ ଗ୍ରନ୍ଥରେ ବର୍ଣ୍ଣିତ ବିଷୟ, ସ୍ଥାନ ଓ ମହାପୁରୁଷ ପ୍ରଭୃତିଙ୍କ ଚିତ୍ରଣର ଅନୁସରଣରେ ଅନୁମିତ ହୋଇଥାଏ ।

ସାରଳାଦାସ କବି ଏହି ମହାଭାରତ ଗ୍ରନ୍ଥ ରଚନାର ସାମୟିକ ପ୍ରମାଣ ବିଶେଷ ରୂପେ କେଉଁଠି ଦେଇ ନାହାନ୍ତି । କିନ୍ତୁ ଆଦି ପର୍ବର ପ୍ରାରମ୍ଭରେ ନୀଳାଚଳ ବର୍ଣ୍ଣନାବସରରେ ମାତ୍ର ଲେଖି ଅଛନ୍ତି କି, ତଦାନୀଂ କପିଳେଶ୍ୱର ଦେବ ମହାରାଜ ଉତ୍କଳର ରାଜସିଂହାସନକୁ ଅଳଂକୃତ କରି ଶ୍ରୀ ଜଗନ୍ନାଥ ମହାପ୍ରଭୁଙ୍କ ସେବାରେ ତତ୍ପର ଥିଲେ ।(୧) ଅତଏବ ଜଣାଯାଏ, ଶ୍ରୀମାନ୍ ସାରଳାଦାସ ମହାଶୟ ଶ୍ରୀକପିଳେଶ୍ୱର ବା କପିଳେନ୍ଦ୍ର ଦେବ ମହାରାଜାଙ୍କ ସମସାମୟିକ ଥିଲେ । ତାହାହେଲେ ଶ୍ରୀମାନ୍ ସାରଳାଦାସ କବି ମହୋଦୟ ଆଜକୁ ପ୍ରାୟ ସାର୍ଦ୍ଧଚତୁଃଶତ ବର୍ଷ ପୂର୍ବେ ଅର୍ଥାତ୍ ପଞ୍ଚଦଶ ଶତାବ୍ଦୀର କୌଣସି ଦଶକରେ ଉତ୍କଳର ଅଳଂକାରସ୍ୱରୂପ ବିଦ୍ୟମାନ ଥିଲେ । ତଥାପି ବହୁ ଲୋକଙ୍କର ସିଦ୍ଧାନ୍ତକୁ ଅନୁସରଣ କଲେ କପିଳେଶ୍ୱର ଦେବଙ୍କ ରାଜତ୍ୱ ସମୟକୁ ଅନ୍ୟୂନାଧିକତଃ ଠିକ୍ ନିର୍ଦ୍ଧାରିତ କରି ହେଉ ନାହିଁ । ଅନେକେ ନାନାବିଧ ଅସଦୃଶ ପ୍ରମାଣମାନଙ୍କୁ ଅନୁସରି ଅନେକ ପ୍ରକାର ଲେଖିଯାଇ ଅଛନ୍ତି । ତତ୍ ତଦ୍ ପ୍ରମାଣାନୁଗତ ସିଦ୍ଧାନ୍ତମାନଙ୍କରେ ପ୍ରାୟଶଃ ବିଂଶତି ବର୍ଷ ନ୍ୟୂନ ନଚେଦ୍ ଅଧିକ ଥିବାର ଜଣାଯାଉ ଅଛି । ସେସବୁ ପ୍ରମାଣମାନ ଦେଇ ଆନୁମାନିକ ସିଦ୍ଧାନ୍ତରେ ଏହି ପ୍ରବନ୍ଧର କଳେବର ଅଯଥା ବଢ଼ାଇବା ଅନାବଶ୍ୟକ ମନେ କରି (୨) ହଣ୍ଟର ଓ ପ୍ୟାରୀମୋହନଙ୍କ ଐତିହାସିକ ବିବରଣ ଏବଂ ମାଦଳା ପାଞ୍ଜିର ନିର୍ଦ୍ଧାରଣକୁ ଅବଧାରଣ କରି ସମୟ ନିର୍ଦ୍ଧାରିତ କରୁଅଛୁଁ । ମାଦଳା ପାଞ୍ଜି ଏବଂ ବହୁ ଗବେଷଣା ତତ୍ପର ପ୍ୟାରୀମୋହନ ଆଚାର୍ଯ୍ୟ ଓ ହଣ୍ଟର ସାହେବଙ୍କ (୩) ମତରେ କପିଳେନ୍ଦ୍ର ଦେବ ଖ୍ରୀଷ୍ଟାବ୍ଦ ୧୪୫୨ - ୧୪୭୯ ବର୍ଷ ପର୍ଯ୍ୟନ୍ତ ରାଜତ୍ୱ ପ୍ରାପ୍ତ ହୋଇଥିଲେ । ଏହାଙ୍କର ରାଜତ୍ୱ ସମୟ ସପ୍ତବିଂଶତି ବର୍ଷର କୌଣସି ଭାଗରେ ଆନୁମାନିକ ଅନ୍ତିମ ଭାଗ ପ୍ରାରମ୍ଭରେ ଶ୍ରୀମାନ୍ ସାରଳାଦାସ କବି ମହାଭାରତ ଗ୍ରନ୍ଥ ରଚନା ଆରମ୍ଭ କରିଥିଲେ ।

---

(୧) ପ୍ରଣପତ୍ୟେ ଖଟଇ କପିଳେଶ୍ୱର ନାମେ ରାଜା ।
ତେତିଶ କୋଟି ଦେବେ ଚରଣେ ଯାର ପୂଜା । ଆ.ପ.

(୨) ଅନେକେ ସାରଳାଦାସଙ୍କୁ ୬୦୦ ଛଅଶତ ବର୍ଷର କବି ବୋଲି କହିଥାନ୍ତି । ଆମ୍ଭେମାନେ ସୁଦ୍ଧା ସମୟେ ସମୟେ ତାଦୃଶ ଭ୍ରାନ୍ତ ଧାରଣାରେ ପଡ଼ି ବର୍ତ୍ତମାନ ସିଦ୍ଧାନ୍ତିତ ସମୟ ଅପେକ୍ଷା ଅତି ପ୍ରାଚୀନ ବୋଲି ପ୍ରକାଶ କରିଥାଉଁ, କିନ୍ତୁ ସଂପ୍ରତି ସମଗ୍ର ପରିଶୀଳନଦ୍ୱାରା ପ୍ରୋକ୍ତ ଧାରଣା ଭ୍ରାନ୍ତ ବୋଲି ସ୍ଥିର କରିଅଛୁଁ ।

(୩) ଶ୍ରୀମାନ୍ ହଣ୍ଟର ସାହେବ ତାତ୍କାଳିକ ସର୍ବସାଧାରଣ ଲୋକଙ୍କ କଥାରେ ବିଶ୍ୱାସ ରଖି ଅନ୍ୟାନ୍ୟ କେତେକ ବିଷୟମାନଙ୍କର ସାମୟିକ ନିର୍ଦ୍ଧାରଣରେ ଭ୍ରାନ୍ତ ପଥାନୁସରଣ କରିଥିଲେ ସୁଦ୍ଧା ତାହାଙ୍କର ଏହି ନିର୍ଦ୍ଧାରଣଟି ଭ୍ରାନ୍ତ ବୋଧହୁଏ ନାହିଁ, କାରଣ ଶିଳାଲିପି ତାମ୍ରପଟ ପ୍ରଭୃତି ବିଚାର କରି ସେ ଏହି ସମୟକୁ ନିର୍ଦ୍ଧାରିତ କରି ଅଛନ୍ତି ।

ଏଥିମଧ୍ୟରେ ସେ ଗ୍ରନ୍ଥ ରଚନା ସଂପୂର୍ଣ୍ଣ କରିଥିଲେ କି ନାହିଁ, ଠିକ୍ କହାଯାଇ ନ ପାରେ । ଏହି କବି ମହୋଦୟ ନିଜ ମହାଭାରତ ଗ୍ରନ୍ଥର ପ୍ରାରମ୍ଭରେ ମାତ୍ର କପିଳେନ୍ଦ୍ର ଦେବଙ୍କ ନାମ ଉଲ୍ଲେଖ କରି ଅଛନ୍ତି । ପରନ୍ତୁ ବର୍ଣ୍ଣନୀୟ ଚରିତର ପ୍ରାସ୍ତାବିକ ନ ହେଲେ ସୁଦ୍ଧା ଅନେକତ୍ର ପ୍ରସଙ୍ଗାନୁଷଙ୍ଗିକ ରୂପେ ଅନେକ ମହାପୁରୁଷ ପ୍ରଭୃତିଙ୍କର ନାମଧାମାଦି ପ୍ରକାଶ କରଣରେ ଅକୁଣ୍ଠିତ ହୋଇ କପିଳେନ୍ଦ୍ର ଦେବଙ୍କ ନାମ ଅନ୍ୟ କେଉଁଠି ପ୍ରକାଶିତ ରଖି ନାହାନ୍ତି । ଅତଏବ କହିବାକୁ ହେବ ଯେ, ଏହି ଗ୍ରନ୍ଥର ରଚନାରମ୍ଭ ସମୟରେ କିମ୍ବା କେତେକ ଅଂଶ ରଚନାର ଶେଷ ପର୍ଯ୍ୟନ୍ତ କପିଳେନ୍ଦ୍ର ଦେବ ଜୀବିତ ଥିଲେ, ଏଥିରେ ସନ୍ଦେହ ନାହିଁ । ତାହାହେଲେ ବିଶ୍ୱାସ କରାଯାଇପାରେ କି ଶ୍ରୀମାନ୍ ସାରଳାଦାସ ମହୋଦୟ ଖ୍ରୀଷ୍ଟୀୟ ପଞ୍ଚଦଶ ଶତାବ୍ଦୀର ଷଷ୍ଠ ବା ସପ୍ତମ ଦଶକରେ ଗ୍ରନ୍ଥ ରଚନା ଆରମ୍ଭ କରିଥିବେ । ଏ କବି ମହାଶୟ ବିଲଙ୍କା ରାମାୟଣ ପ୍ରଭୃତି ଆଉ କେତେକ ଗ୍ରନ୍ଥ ପ୍ରଣୟନ କରି ଥିବାର ମଧ୍ୟ ଜଣାଯାଏ । ସେଗୁଡ଼ିକ ମଧ୍ୟରେ ମହାଭାରତ ଅଗ୍ରଜ । ଯେଉଁ ମହାଗ୍ରନ୍ଥ ରଚନାରେ ଈଶ୍ୱରାଂଶସମ୍ଭୂତ ମହାପ୍ରାଜ୍ଞ ଭଗବାନ ଶ୍ରୀକୃଷ୍ଣ ଦ୍ୱୈପାୟନଙ୍କୁ ତିନିବର୍ଷ ସମୟ(୧) ସନ୍ତତ ଉଦ୍ୟମଶୀଳ ହେବାକୁ ପଡ଼ିଥିଲା, ସେହି ଗ୍ରନ୍ଥର ସମସ୍ତ କଥା ପ୍ରକାଶ କରିବା ପାଇଁ ସାରଳା ଦାସେ ଯେ ତତୋଽଧିକ ସମୟ ରଚନାରେ ତତ୍ପର ହୋଇଥିବେ, ଏହା କହିବା ବାହୁଲ୍ୟ ମାତ୍ର । ଅଥଚ ଏହି କବି ମହୋଦୟ ଅଳ୍ପ ବୟସରେ ବା ସଂପ୍ରାପ୍ତ ତାରୁଣ୍ୟରେ ମହାଭାରତ ରଚନାରେ ପ୍ରବୃତ୍ତ ହୋଇଥିବାର ସେ ନିଜେ ମଧ୍ୟ ପର୍ବରେ ଏକ ସ୍ଥାନରେ ପ୍ରକାଶ କରି ଅଛନ୍ତି ।(୨) ସୁତରାଂ ଏହା ସଂପୂର୍ଣ୍ଣ ଯଥାର୍ଥ ବୋଧହୁଏ । କାରଣ ଏ ମହାଶୟ ଅପ୍ରାପ୍ତ ବୟସ୍କ ଥିବା ସମୟରେ ପିତାଙ୍କ ଦ୍ୱାରା ଭର୍ତ୍ସିତ ହୋଇ ପୌରାଣିକ ଜ୍ଞାନ ଓ ଗ୍ରନ୍ଥକର୍ତ୍ତୃତା ସମ୍ପାଦନାର୍ଥ ଦେବୀଙ୍କ ଛାମୁରେ ଅଧିଆ ପଡ଼ିଥିଲେ । ସମ୍ଭବତଃ ପାଞ୍ଚ ସାତ ବର୍ଷ ମାତ୍ର ଦେବୀଙ୍କ ସେବାରେ ଅତୀତ ହୋଇଥିବ । ତା ପରେ ଦେବୀଙ୍କ ପ୍ରସାଦ ପ୍ରାପ୍ତ ହୋଇ ମହାଭାରତ ରଚନାରେ ପ୍ରବୃତ୍ତ ହୋଇଥିଲେ । ଏସବୁ ବିଚାର କରିନେଲେ ସାରଳାଦାସଙ୍କ ଗ୍ରନ୍ଥ ରଚନାର ସାମୁଦାୟିକ ସମୟ ମଧ୍ୟରେ କପିଳେନ୍ଦ୍ର ଦେବ ପଞ୍ଚତ୍ୱପ୍ରାପ୍ତ ହୋଇଥିଲେ ଏବଂ ତଦୀୟ ପଞ୍ଚତା ପରେ ସୁଦ୍ଧା ଏ କବି ମହାଶୟ କେତେକାଳ ଜୀବିତ ଥିଲେ ବୋଲିବା ଅସମ୍ଭବ ବୋଧହୁଏ ନାହିଁ । କିନ୍ତୁ ଏ ସ୍ଥଳରେ ପଣ୍ଡିତ ମୃତ୍ୟୁଞ୍ଜୟ ରଥ ମହାଶୟ ସାରଳା ଚରିତରେ ସାରଳା ଭାରତର ରଚନାକାଳକୁ କବିଙ୍କର ବୟସ ନିର୍ଦ୍ଧାରଣ କରିବାକୁ ଯାଇଁ ତାହାକୁ କାଳ୍ପନିକ ଜରାରେ

(୧) ତ୍ରିଭିର୍ବର୍ଷୈଃ ସଦୋତ୍ଥାୟୀ କୃଷ୍ଣଦ୍ୱୈପାୟନୋ ମୁନିଃ ।
ମହାଭାରତମାଖ୍ୟାନଂ କୃତବାନିଦମଦ୍ଭୁତଂ ।
ଆ.ପ. ୬୨ ଅଧ୍ୟାୟ, ୫୨ ଶ୍ଲୋକ ।

(୨) ଶିଶୁ ବୁଦ୍ଧି ମୋହର ବୟସ ଅଳପଟି । ସ.ପ.

ଜର୍ଜର କରିଦେଇ ଅଛନ୍ତି । "ସାରଳାଦାସଙ୍କୁ ପ୍ରଭୁ ଗତିମୁକ୍ତି ଦେବା" ଇତ୍ୟାକାରକ ବାକ୍ୟଗତ ମୁମୁକ୍ଷାକୁ ମାତ୍ର ଧରି କବିଙ୍କର ଜରାବସ୍ଥା ଧାର୍ଯ୍ୟ କରି ପକାଇ ଅଛନ୍ତି । ସମ୍ୟକ୍ ବିଚାରରେ ଅବଗତ ହୋଇପାରି ନାହାନ୍ତି ଯେ, ଭକ୍ତ ବୟସା ବୃଦ୍ଧ ହେଉନ୍ତୁ ବା ତରୁଣ ହେଉନ୍ତୁ ଅଥବା ଅପ୍ରାପ୍ତ-ତାରୁଣ୍ୟ ହେଉନ୍ତୁ, ହୃଦୟରେ ଯଦି ଭକ୍ତି ଉଦ୍ରିକ୍ତ ହୋଇ ଉଠେ, ତଦା ଅବଶ୍ୟ ବିଷୟ – ବିରକ୍ତି ଓ ବ୍ୟାକୁଳତା ସହ ମୁମୁକ୍ଷା ବଳବତୀ ହୁଏ; ଏହାର ବିପରୀତ ହୃଦୟରେ ଅଶୀତି ବର୍ଷ ବୟସ୍କତାରେ ସୁଦ୍ଧା ଭକ୍ତି, ବିରକ୍ତି ବା ବ୍ୟାକୁଳତା ଜନ୍ମେ ନାହିଁ । ଏହାର ଜ୍ୱଳନ୍ତ ପ୍ରମାଣମାନ ସର୍ବତ୍ର ଦେଖାଯାଏ । ସାରଳାଦାସଙ୍କ ହୃଦୟ ଉନ୍ମୁଖ ତାରୁଣ୍ୟ ସମୟରୁ ସମଧିକତଃ ଭକ୍ତିପ୍ରବଣ ଥିଲା । ଅତଏବ ପ୍ରତ୍ୟେକ ଦେବଦେବୀ-ସ୍ତୁତି ସ୍ଥଳରେ ସେ ବିଷୟ ବିରକ୍ତି ଓ ବ୍ୟାକୁଳତା ପ୍ରକାଶ କରି ମୁମୁକ୍ଷୁ ହୋଇ ଅଛନ୍ତି । ଏଥିପାଇଁ ସେ ତେତେବେଳେ ଅର୍ଥାତ୍ ଭାରତ ରଚନା ସମୟକୁ ବୟସା ବୃଦ୍ଧ ଥିଲେ ବୋଲି କହିବା ସଙ୍ଗତ ନୁହେଁ ।

ଶ୍ରୀମାନ୍ ସାରଳାଦାସ ମହାଶୟ ଓଡ଼ିଶାର ସର୍ବପ୍ରଥମ ଉତ୍କଳ ଗ୍ରନ୍ଥକର୍ତ୍ତା ବା ମହାକବି ଥିଲେ । ଏହାଙ୍କ ପୂର୍ବେ କେହି ଏତାଦୃଶ କବି ଥିବାର ବିଶ୍ୱାସ ହୁଏ ନାହିଁ । ମାର୍କଣ୍ଡ ଦାସ ପ୍ରଭୃତି ଏହାଙ୍କର ପୂର୍ବବର୍ତ୍ତୀ ଥିଲେ ସୁଦ୍ଧା ସେମାନଙ୍କୁ ମହାକବି କୁହାଯାଇ ନ ପାରେ । କାରଣ ସେମାନେ ମୁଷ୍ଟିମେୟ କେତେକ ପଦ୍ୟ ମାତ୍ର ଲେଖିଯାଇ ଅଛନ୍ତି । ଆମ୍ଭମାନଙ୍କ ସାହିତ୍ୟରେ ସାରଳା ମହାଭାରତ କେବଳ ଆଦିମ ଓ ଅତି ପ୍ରାଚୀନ ଗ୍ରନ୍ଥ । ଏହା ବହୁ ଅନୁସନ୍ଧିତ୍ସୁ ହଣ୍ଟର ସାହେବଙ୍କଠାରୁ ଶ୍ରୀମାନ୍ ମଧୁସୂଦନ ଦାସ ବି.ଏ. ମହାଶୟଙ୍କ ପର୍ଯ୍ୟନ୍ତ ଅନେକ ଅଭିଜ୍ଞ ବ୍ୟକ୍ତି ସ୍ଥିର କରି ଅଛନ୍ତି । ଆମ୍ଭମାନଙ୍କର ବହୁ ଗବେଷଣାଲବ୍‌ଧ ଓ ପରିଶୀଳନ ଜନିତ ବିଶ୍ୱାସମୂଳକ ଅଭିମତ ମଧ୍ୟ ତାହା । ଓଡ଼ିଆ ଭାଷା ରାଜ୍ୟରେ ସାରଳାଦାସଙ୍କ ମହାଭାରତ ଗ୍ରନ୍ଥ ଯେ ସର୍ବପ୍ରଥମ ଓ ଅତି ପ୍ରାଚୀନ ଏବଂ କପିଳେନ୍ଦ୍ରଦେବଙ୍କର ସମକାଳୀନ, ଏଥିରେ କୌଣସି ପ୍ରକାର ସନ୍ଦେହର କଥା ନାହିଁ । ଏହି ମହାଭାରତ ଗ୍ରନ୍ଥ ବିଶେଷତଃ ପ୍ରାଚୀନ ଓଡ଼ିଆ ଭାଷା ସାହିତ୍ୟର ଆଦର୍ଶସ୍ଥାନୀୟ । ଏଥିରେ ଭାଷାର ପ୍ରୟୋଗ ପ୍ରଣାଳୀର ବିଶେଷତ୍ୱ ଓ ମୌଳିକତା ବିଦ୍ୟମାନ ରହିଅଛି । ଅଥଚ ଏହାର ସମୟରେ ଓଡ଼ିଆ ଭାଷା ମଧ୍ୟରେ ପ୍ରାକୃତ ଭାଷାସମ୍ବନ୍ଧ ସମଧିକ ରହିଥିବାରୁ ଅନେକତ୍ର ପ୍ରାକୃତର ରୀତିମତେ ଶାବ୍ଦବିଭକ୍ତି, କ୍ରିୟାବିଭକ୍ତି ପ୍ରଭୃତିର ପ୍ରୟୋଗ ନିହିତ ଅଛି । ଏ ସମ୍ବନ୍ଧରେ ମତିମାନ୍ ସାରଳାଦାସ ମହାଶୟ ଯେ ଯେ କ୍ରମ ପ୍ରଦର୍ଶନ କରି ଅଛନ୍ତି, ସେ ସବୁ ତତ୍‌ପରବର୍ତ୍ତୀ ଶ୍ରୀ ବଳରାମ ଦାସଙ୍କ ପର୍ଯ୍ୟନ୍ତ ପ୍ରାୟଶଃ ଅକ୍ଷୁଣ୍ଣ ବ୍ୟବହୃତ ହୋଇ ଆସିଅଛି । ଭାଷାର ପ୍ରାଚୀନ ପ୍ରୟୋଗକ୍ରମ କିମ୍ବା ଭାଷା ଓ ସାହିତ୍ୟର ପ୍ରାଚୀନତାର ଅନୁସନ୍ଧିତ୍ସା ହେଲେ ସର୍ବାଗ୍ରେ ସାରଳା ମହାଭାରତ କେବଳ ଆମ୍ଭମାନଙ୍କର ଏକାନ୍ତ ଆଶ୍ରୟଣୀୟ, ଏଥିରେ କାହାରି କଦାଚ ଦ୍ୱିଧା ହେବାର ସମ୍ଭାବନା ନାହିଁ ।

ଏ ସ୍ଥଳରେ ଏ ସମ୍ବନ୍ଧୀୟ ଗୋଟିଏ ଭ୍ରାନ୍ତିର ନିରସନ କରିଦେବା ଉଚିତ ବୋଧ କରୁଅଛୁଁ । ସାରଳା ମହାଭାରତ ଗ୍ରନ୍ଥର ସର୍ବପ୍ରଥମତା ଓ ପ୍ରାଚୀନତା ସ୍ଥିର କରିବାକୁ ଯାଇ ମଦୀୟ ବନ୍ଧୁ ଶ୍ରୀ ମୃତ୍ୟୁଞ୍ଜୟ ରଥ ମହାଶୟ କହିଦେଇ ଅଛନ୍ତି କି, ''ପ୍ରାକୃତ ରୀତିମତରେ ଶୁଣସି, ହୋସି, ଦେସି, କରସି, ଗଛୁ, ତୋହର ଥାନ୍ତେ, ଆମ୍ଭର ଥିଲେ, ଧାମନ୍ତେଣ, ଯାନ୍ତେଣ ଇତ୍ୟାଦି କ୍ରିୟାପଦ, ସବୁନ୍ତି, ଆମ୍ଭନ୍ତି, ପୁଅନ୍ତ, ଦେବତାନ୍ତ, ଛାମୁରେଣ, ତୋହରେଣ, ସଙ୍ଗତେଣ ପ୍ରଭୃତି ଶାବ୍ଦବିଭକ୍ତ୍ୟନ୍ତ ପଦ ଏବଂ ଜଗୁନାହା, କଣୟ, ରହୁଦର ପ୍ରଭୃତି କେତେକ ପଦର ବ୍ୟବହାର ଯେପରି ସାରଳା ମହାଭାରତରେ ଦେଖାଯାଏ, ଏତତ୍‌ପରବର୍ତ୍ତୀ ପୁରାଣ ଗ୍ରନ୍ଥମାନଙ୍କରେ ତାଦୃଶ ପ୍ରୟୋଗ ଦେଖାଯାଏ ନାହିଁ ।'' ''ସେ ପ୍ରକାର ଶବ୍ଦର ବ୍ୟବହାର ଜଗନ୍ନାଥ ଦାସୀୟ ଅଥବା ତତ୍‌ପରବର୍ତ୍ତୀ ସାହିତ୍ୟରେ ଆମ୍ଭେମାନେ ପ୍ରାୟ ଦେଖିପାରୁ ନାହିଁ ।'' ''ମୋହରେଣ, ମୋହରେଣ, ଏ ପ୍ରକାର ପ୍ରୟୋଗ ତତ୍‌ପରବର୍ତ୍ତୀ କୌଣସି ପ୍ରାଚୀନ ସାହିତ୍ୟ ପୁସ୍ତକରେ ପ୍ରାୟ ନାହିଁ ବୋଲି ଆମ୍ଭମାନଙ୍କର ବିଶ୍ୱାସ ।'' ଇତ୍ୟାଦି । କିନ୍ତୁ ଏହା ଅନଳୀକ ନୁହେ । ଯେ କି ପ୍ରାଚୀନ ସାହିତ୍ୟର ପାରଦର୍ଶୀ ତାହାଙ୍କର ଏଥିରେ କୌଣସି ପ୍ରକାର ବିଶ୍ୱାସ ବା ଆସ୍ଥା ରହି ନ ପାରେ । ଏସବୁ ପ୍ରୟୋଗ ପ୍ରଣାଳୀ ସାରଳାଦାସଙ୍କ ପରବର୍ତ୍ତୀ ବଳରାମ ଦାସଙ୍କ ପର୍ଯ୍ୟନ୍ତ ଅକ୍ଷୁଣ୍ଣ ଚାଲି ଆସିଅଛି । ନିମ୍ନରେ ତାହାଙ୍କ ରାମାୟଣ ଆଦି କାଣ୍ଡରୁ ମାତ୍ର ଏବଂ ଅନ୍ୟାନ୍ୟ ପ୍ରାଚୀନ ଗ୍ରନ୍ଥରୁ କେତେକ ପ୍ରମାଣ ଉଦ୍ଧୃତ କରୁଅଛୁଁ–

(୧) କଉଶିକ ବୋଇଲେ ଶୁଣ ଶତାନନ୍ଦ ଋଷି ।
ଅଯୋଧ୍ୟା ରାଜାକୁ ବାରତା ଘେନି 'ଯାସି' ।

(୨) ଆମ୍ଭେ ବିଭାଣ୍ଡକ ପୁତ୍ର ବ୍ରହ୍ମଋଷି ।
ନକର ତୁ ବିଚାର କନ୍ୟା ମୋତେ 'ଦେସି' ।

(୩) ଜୁଆଁଇ ସହିତେଣ ଦୋହିତାକୁ 'ନେସି' ।
ଅତି ଆରମ୍ଭ କରି ଯାଗ ତୁ 'କରସି' ।

(୪) ସହସ୍ରେକ ଯୋନି 'ହୁଂଅସି' ବୋଇଲେ ।

(୧) ଦେବତାଏ ନ 'ଗଛିଲେ' ମହାପାପୀ ବୋଲି ।

(୨) ଧନ ଲୋଭରେ ପର ପୁରୁଷକୁ 'ଗଛୁ' ।

(୧) 'ତୁମ୍ଭର ଥାନ୍ତେ' ମୋହର ଅଶ୍ୱ କେହୁନେଲା ।

(୨) 'ମୋହର ଆସନ୍ତେ' ହୋଇଲା ଏଥେ ବୃଷ୍ଟି ।

(୧) ବାସୁଦେବ ଜାତ ହୋଇବେ 'ଏହାର ଯାଗ କଲେ' ।
(ଏହାର ଯାଗ କଲେ = ଏ ଯାଗ କଲେ ।)

(୨) 'ତୋହର ଗଲେ' ସିନା ରକ୍ଷା ହୋଇବ ରାଜ୍ୟ ।
(୧) ପୁତ୍ର 'ନ ଥିଲେ ଣ' ନୁହଇ କାରଣ ।
(୨) ଏକ 'କହନ୍ତେଣ' ଆରେକ ଧାମନ୍ତି । ଇତ୍ୟାଦି ।
(୧) ଦିଗପାଳମାନ ସେହି ବରିଲା 'ସବୁନ୍ତି' ।
(୨) ପାଚିଲାର ଫୁଟିଲାର 'ବୃକ୍ଷନ୍ତ' ନେଇ ଥାପି ।
(୩) ନିଜ ମଢ଼ିଆ ଯେ ଦେଖାଇଣ 'ତାହାନ୍ତ' ।
(୪) 'ଦାସୀନ୍ତ' ରାଇଣ ଆଜ୍ଞା ଦେଲେ ରାମ ମାତା ।
(୧) 'ତାହାରେଣ' ରକ୍ଷା ହୋଇବ ତୋର ଗୋତ୍ର ।
(୨) 'ତୋହରେଣ' ଭ୍ରାନ୍ତି ଯେ ପାଇଲି ଏହୁ କଥା ।
(୩) 'ଏଥେଣ' ଆମ୍ଭର କିଛି ନାହିଁ ପ୍ରୟୋଜନ ।
(୪) ବିଧାତା 'ପ୍ରସାଦେଣ' ଜିଣିଲା ତିନିପୁର ।

ଏ ସବୁ ଛଡ଼ା ଏହି ରାମାୟଣରେ ପ୍ରାକୃତ ରୀତିମତେ ବାରହ, ତେରହ, ଜିସ ତିସ, ଏଣ୍ହେକ, ତେଣ୍ହେକ, କେଣ୍ହେକ ପ୍ରଭୃତି ଶବ୍ଦମାନ, ଏବଂ ତୁମ୍ଭକଇ, ଆମ୍ଭକଇ ପ୍ରଭୃତି ପଦମାନ ଆହୁରି ଅନ୍ୟାନ୍ୟ କେତେକ ବିଲକ୍ଷଣ କ୍ରିୟାପଦ ସୁଦ୍ଧା ବ୍ୟବହୃତ ଅଛି ।

ଜଗଜିଣା – ଖିରି ଖେଚଡ଼ି ସରପଣା ।
ଧରି ଚଳିଲେ ଜଗଜିଣା । ଦା.ର.

ଜଗଜେଠି – ବାହିନୀମାନେ ଜଗଜେଠିମାନଙ୍କେ
ଏବିଧିର ରଣଚକ । ବୈ.ବି.

ଜଗନାହା – ଶୁଣିଣ ମନେ ମନେ ହସିଲେ ଜଗନାହା । ନୃ.ପୁ.ସ.ତ.

ଜଗୁଜୀବନ – ଜଗୁଜୀବନ ଦାଶରଥି ।
ଜାନକୀଦେବୀ ପ୍ରାଣପତି । କ. ଲୋ.

ଜଗୁଜିତା – ବେଶକୁ ବଢ଼ାଇ ଉଭା ହେଲେ
ଜଗୁଜିତା । ମ.ସଂ.

କଣୟ – କପିଳାସ ପୁରେ ବର୍ଷଯାକେ ଥରେ ।
ହୁଅଇ କଣୟ ବୃଷ୍ଟି ସମ ଦିବସରେ । ନୃ.ପୁ. ଦ୍ୱି.ତ.

ରହୁବର – ପ୍ରତିଜ୍ଞା କରିଣ ବାହାର ହୋଇଲା ।
ହେମରହୁବର ଚଢ଼ି । ବି.ରା.

ଅଭିଜ୍ଞ ପାଠକଗଣ କ୍ରମଶଃ ଦେଖିନେଲେ ଅବଶ୍ୟ ବିଶ୍ୱାସ କରିବେ ଯେ, ସାରଳାଦାସଙ୍କ ପ୍ରଦର୍ଶିତ ଏତାଦୃଶ ପ୍ରୟୋଗ ପ୍ରଣାଳୀ ଓଡ଼ିଆର ତତ୍‌ପରବର୍ତ୍ତୀ ପୁରାଣ ସାହିତ୍ୟରେ ବହୁକାଳ ଅନୁକୃତ ଓ ସମାଦୃତ ହୋଇଅଛି ।

ଶ୍ରୀମାନ୍ ସାରଳାଦାସଙ୍କ ନିବାସସ୍ଥାନ କଟକ ଜିଲ୍ଲା ଅନ୍ତର୍ଗତ ଝଙ୍କଡ଼ ପରଗଣାସ୍ଥ ଶ୍ରୀ ସାରଳା ଦେବୀଙ୍କ ପୀଠର ଅନତିଦୂରବର୍ତ୍ତୀ କୌଣସି ଏକ ପ୍ରସିଦ୍ଧ ଗ୍ରାମ ହେବ । ଅନେକେ କହନ୍ତି, ଶ୍ରୀ ସାରଳା ପୀଠର ସମୀପ ତେନ୍ତୁଳିପଦା ନାମକ ଗ୍ରାମରେ ସାରଳାଦାସେ ଜନ୍ମଗ୍ରହଣ କରିଥିଲେ । କବି ନିଜେ ସ୍ଥାନେ ସ୍ଥାନେ ଜଙ୍ଖେରପୁର (ଯକ୍ଷପୁର) ବା କନକପୁର ପାଟଣା ତାହାଙ୍କର ଜନ୍ମସ୍ଥାନ ଓ ନିବାସଧାମ ଥିବାର ବ୍ୟକ୍ତ କରି ଅଛନ୍ତି ଏବଂ ବିରାଟପର୍ବ ପାଠର ପରିଶେଷରେ ସ୍ୱକୀୟ ଜନ୍ମସ୍ଥାନର ସଂପୂର୍ଣ୍ଣ ପରିଚୟ ପ୍ରଦାନରେ କହି ଅଛନ୍ତି କି, ଜମ୍ବୁଦ୍ୱୀପ ଭରତଖଣ୍ଡଗତ ଓଡ୍ରରାଷ୍ଟ୍ରରେ ଯାଜନ ନଗରର ପୂର୍ବ ଭାଗରେ ଶ୍ୱେତବରାହୀ ଓ ନୀଳାଚଳର ମଧ୍ୟ ପ୍ରଦେଶରେ ଚନ୍ଦ୍ରଭାଗା କୋଣାର୍କର ଐଶାନ୍ୟ ଦିଗରେ ମୋର ଜନ୍ମସ୍ଥାନ ।* ସମ୍ଭବତଃ ଅନ୍ୟୋନ୍ୟ ନେଦିଷ୍ଠବର୍ତ୍ତୀ ଝଙ୍କଡ଼, ଶାରଳ, ତେନ୍ତୁଳିଆପଦା ଓ କନକପୁର ପାଟଣା ବା ରାମ ପାଟଣା ଏହି ସ୍ଥାନମାନ ସାରଳାଦାସ କବିଙ୍କର ସାମୟିକ ନିବାସର ଆଭାସଭୂତ ଥିଲା । ଅଦ୍ୟାପି ତାଙ୍କର ବଂଶଧରମାନେ ତତ୍ର ତତ୍ର ନିବାସ କରୁଅଛନ୍ତି । ସେମାନେ ଇଦାନୀଂ ଆପଣାକୁ କରଣ ବୋଲି ପରିଚିତ କରନ୍ତି; କିନ୍ତୁ ପ୍ରକୃତତଃ ସେମାନେ ଏବଂ ଏହି କବି ମହୋଦୟ ଖଣ୍ଡାଏତ ଥିଲେ । ଆମ୍ଭେ ସଂପୂର୍ଣ୍ଣ ବିଶ୍ୱସ୍ତ ହୃଦୟରେ କହିପାରୁଁ ଯେ, ବଳାଙ୍ଗୀ, ବୈତରଣୀ ଓ ଚନ୍ଦ୍ରଭାଗା ନଦୀର ଅନତିଦୂରରେ ଶ୍ରୀମାନ୍ ଉତ୍କଳ-ଆଦି-ମହାକବିଙ୍କର ଆବାସଭୂମି ଥିଲା । ମହାକବି କାଳିଦାସ ଯେପରି ନିଜର ସଂପୂର୍ଣ୍ଣ ଅନୁଭୂତ ଓ ଆଦରଣୀୟ ଶିପ୍ରାନଦୀକୁ ଗୌରବର ସମୁଚ୍ଚସ୍ଥାନ ଓ ସମାଦର ପ୍ରଦାନ କରି ଅଛନ୍ତି, ବଳାଙ୍ଗୀ, ବୈତରଣୀ ଓ ଚନ୍ଦ୍ରଭାଗା ସମ୍ବନ୍ଧରେ ସାରଳାଦାସେ ମଧ୍ୟ ସେହିପରି ସମାଦର ପ୍ରକାଶ କରି ଅଛନ୍ତି । ଏ କବି ମହୋଦୟ ଅନେକତ୍ର ଅସ୍ଥାନରେ

---

*(କ) ଚିତ୍ରୋତ୍ପଳା ନଦୀର ଯେ ଉତ୍ତର ଭାଗେଣ ।
ଜଙ୍ଖେରପୁର ନାମରେ ଅଟଇ ପାଟଣ ।
କନକପୁର ପାଟଣା ଘର ପର୍ଶୁରାମ ।
ମୁହିଁ ତାର ଅନୁଜ ସାରଳାଦାସ ନାମ । ମଧ୍ୟପର୍ବ ।

(ଖ) ଜମ୍ବୁଦ୍ୱୀପ ଭ୍ରତଖଣ୍ଡ ମଣ୍ଡଳ ଓଡ୍ର ରାଷ୍ଟ୍ର ।
ଭୁବନ ଯାଜନଗ୍ରପୂର୍ବଦିଗ ମହୋଦଧି ତଟ ।
ଶ୍ୱେତବାରାହୀ ନୀଳସୁନ୍ଦର ଗିରି ମଧ୍ୟସ୍ଥାନେ
ମହେନ୍ଦ୍ର ଚନ୍ଦ୍ରଭାଗା କୋଣାର୍କ ଐଶାନ୍ୟେ ।
ସେ ପୁର ବାସ (ଜଙ୍ଖେରପୁର ବାସିନୀ) ଯକ୍ଷେରପୁର ବାସିନୀ ।
ଶ୍ରୀରାମ ଆଜ୍ଞାରେ (ଗିରିରାଜ ଆଜ୍ଞାରେ) ତହିଁରେ ମୁହିଁ ଜନ୍ମି । ଇତ୍ୟାଦି ।

ମଧ ବଙ୍କାଙ୍ଗୀ, ବୈତରଣୀ ଓ ଚନ୍ଦ୍ରଭାଗାର ନାମ ଉଲ୍ଲେଖ କରି ଅଛନ୍ତି । ବୋଧହୁଏ, ଏହି ନାମମାନ କବିଙ୍କର ଅତି ପରିଚିତ । ପ୍ରୋକ୍ତ ନଦୀତ୍ରୟ ତାହାଙ୍କର ସନ୍ନିହିତ ଓ ବହୁଦୃଷ୍ଟ ଥିବାରୁ ଅପିଚ ତତ୍ର ତତ୍ର ଭକ୍ତି ଓ ଶ୍ରଦ୍ଧାର ଆତିଶଯ୍ୟରୁ ଅଯଥା ସ୍ଥାନରେ ସୁଦ୍ଧା ସେହି ନାମରେ ଅନ୍ୟାନ୍ୟ ନଦୀମାନଙ୍କୁ ଅଭିହିତ କରିଅଛନ୍ତି । ଦେଖିବେ, ଭୀମସେନଙ୍କର ପଶ୍ଚିମ ଦିଗ୍‌ବିଜୟ ପ୍ରସ୍ତାବରେ ବିନ୍ଧ୍ୟଗିରି ନିକଟରେ କୌଣସି ମନୋହାରିଣୀ ନଦୀରେ ବଙ୍କାଙ୍ଗୀ ନଦୀର ଆବିର୍ଭାବ କରିଅଛନ୍ତି । ସେହିପରି ଅର୍ଜ୍ଜୁନଙ୍କର ଉତ୍ତର ଦିଗ୍‌ବିଜୟ ସନ୍ଦର୍ଭରେ କନକଧାରା ପର୍ବତ ସନ୍ନିଧାନରେ ସେହି ବଙ୍କାଙ୍ଗୀ ନଦୀର ଅସ୍ତିତ୍ୱ ପ୍ରକାଶ କରିଅଛନ୍ତି ଏବଂ ଅତ୍ର ଅରଣ୍ୟବାସିନୀ ବୈବସ୍ୱତବଧୂ ଜାନକୀ ବାଲୁକାଲିଙ୍ଗ ପୂଜା କରିଥିବାର ମଧ ଲେଖିଅଛନ୍ତି । ପଶ୍ଚିମ ଦିଗ୍‌ବିଜିଗୀଷୁ ଭୀମସେନଙ୍କର ଜୈତ୍ରଯାତ୍ରା ପ୍ରସଙ୍ଗରେ ଅର୍କଦୈତ୍ୟାଧ୍ୟୁଷିତ କୋଣାର୍କ ଚନ୍ଦ୍ରଭାଗା ନଦୀର ଉଦ୍‌ଘୋଷ କରି ଅଛନ୍ତି(୧) ଏବଂ ବନପର୍ବରେ ସୁଦ୍ଧା ପାଣ୍ଡବମାନଙ୍କର ବନଭ୍ରମଣ ପ୍ରସ୍ତାବାନୁମୋଦନରେ ଏହି ଚନ୍ଦ୍ରଭାଗା ନଦୀର କଥା ଦୁଇଠିଁ ଉଲ୍ଲେଖ କରିଅଛନ୍ତି ।(୨) ଏତାଦୃଶ କ୍ରମରେ ଏ ମହୋଦୟ ଅନେକତ୍ର ଅସ୍ଥାନରେ ପ୍ରସିଦ୍ଧ ନଦୀର ନାମ ବୈତରଣୀ ଏବଂ ତତ୍ତୀରସ୍ଥ ନଗରର ନାମ କରବୀରପୁର କରିଅଛନ୍ତି । ଏଥିରୁ ବୋଧହୁଏ, ଏ ତାହାଙ୍କର ଚିର ପରିଚିତ ନେଦିଷ୍ଠବର୍ତ୍ତିନୀ ବୈତରଣୀର ସୁପବିତ୍ରତାରେ ଏକାନ୍ତ ଭକ୍ତି-ପ୍ରବଣତା ପ୍ରକାଶ କରି ଅଛନ୍ତି, ତଥାଚ ତହିଁରୁ ଅନୁମାନ ହୁଏ, ବୈତରଣୀ ତୀରସ୍ଥ କୌଣସି ପ୍ରଧାନ ସ୍ଥଳର ନାମ କରବୀରପୁର ହୋଇଥିବ, ନଚେତ୍ ଅନ୍ୟତ୍ର ଥିଲେ ସୁଦ୍ଧା ଏହି କବିଙ୍କର ବହୁ ଅଧ୍ୟୁଷିତ ବା ନିବାସାଭ୍ୟସ୍ତ ହୋଇଥାଇପାରେ । ଦେଖନ୍ତୁ, ଯେଉଁ ଦରିଦ୍ର ବ୍ରାହ୍ମଣଙ୍କୁ ଶ୍ରୀକୃଷ୍ଣ ନେତ୍ର ପ୍ରଦାନ କରିଥିଲେ, ସେ ମହାଶୟ ବୈତରଣୀ ତୀରସ୍ଥ କରବୀରପୁରରୁ ଚାରି ପାଞ୍ଚ ବର୍ଷ ବ୍ୟାପୀ ପଦବ୍ରଜରେ ଦ୍ୱାରକାରେ ପ୍ରବିଷ୍ଟ ହୋଇଥିଲେ ବୋଲି ବିଦୁର ଓ ଧୃତରାଷ୍ଟ୍ରଙ୍କ ସମ୍ବାଦାତ୍ମକ ଚରିତରେ ଲେଖି ଅଛନ୍ତି ।(୩)

---

(୧) କୋଣକେ ମାଡ଼ି ବସିଛୁ ଦେବ ସିନ୍ଧୁ କୂଳେ ।
ଅଗ୍ନିକୋଣେ ଚନ୍ଦ୍ରଭାଗା ପଶ୍ଚିମପ୍ରସ୍ଥେ ।
କୋଣାର୍କ ବୋଲି ଧାତା ଶାସ୍ତ୍ରର ସଙ୍ଗତେ । ସ.ପ. ୧୦୫ ପୃ ।

(୨) ବନପର୍ବ ୨୪୪ ଏବଂ ୨୪୭ ପୃଷ୍ଠା ଦେଖନ୍ତୁ ।

(୩) ବୈତରଣୀ କୂଳେ କରବୀର ନାମେ ପୁର ।
ଲକ୍ଷେ ଅଶି ସହସ୍ର ଯେ ବସେ ତହିଁ ଘର । ଉ.ପ. ୪୩ ପୃ ।

ଭାରତର ଦକ୍ଷିଣାଞ୍ଚଳରେ କରବୀର ନାମରେ ଏକ ପ୍ରସିଦ୍ଧ ନଗର ଥିବା ଶ୍ରୀମଦ୍‌ଭାଗବତାଦିରେ କଥିତ ଅଛି ।

ଏ ମହାଶୟ ମଧ ଏକ ସ୍ଥାନରେ କରବୀରପୁର ଭାରତର ଦକ୍ଷିଣରେ ଅବସ୍ଥିତ ଥିବାର ଲେଖି ଅଛନ୍ତି ।

ଏହି କବିଙ୍କର ପିତୃମାତୃପ୍ରଦତ୍ତ ବା ଶୈଶବରୁ ଆହୂତ ନାମ ସାରଳାଦାସ ନୁହେ । ତାହାଙ୍କ ଜନ୍ମକାଳୀନ ଅନ୍ୟ ନାମ ଥିଲା । ଏହି ଭାରତର ଭୂମିକାରେ ପ୍ରକାଶକ ଉଲ୍ଲେଖ କରି ଅଛନ୍ତି କି, ସାରଳାଦାସଙ୍କର ପିତୃଦତ୍ତ ଜନ୍ମକାଳୀନ ବା ଶୈଶବ ନାମ ସିଦ୍ଧେଶ୍ୱର ଥିଲା । କିନ୍ତୁ କବି ମହାଶୟ ସ୍ୱୀୟ ପ୍ରକାଣ୍ଡ ଗ୍ରନ୍ଥ ମଧ୍ୟରେ ନାନା ସ୍ଥାନରେ ଆପଣାର ନାନାବିଧ ବିବରଣ ଦେବାରେ କୃତପ୍ରବୃତ୍ତି ହୋଇ ଏକ ସ୍ଥାନରେ ସୁଦ୍ଧା ପିତୃଦତ୍ତ ନାମର ଉଲ୍ଲେଖ କରି ନାହାନ୍ତି । ଜନଶ୍ରୁତି କହୁଅଛି, ଏ କବି ମହାଶୟଙ୍କର ଆଉ ପାଞ୍ଚ ସହୋଦାର ମଧ୍ୟ ଥିଲେ । ସେମାନଙ୍କ ମଧ୍ୟରୁ ଜ୍ୟେଷ୍ଠ ଭ୍ରାତାଙ୍କ ନାମ ପର୍ଶୁରାମ ଥିବାର ମାତ୍ର କବି ଅସକୃଦ୍ ପ୍ରକାଶ କରିଛନ୍ତି ।(୧) ଅନ୍ୟମାନଙ୍କର ଆଭାସ ସୁଦ୍ଧା କୁତ୍ରାପି ଦେଇ ନାହାନ୍ତି । ସେ ଯାହାହେଉ ସାରଳାଦାସ ନାମ ଯେ ସାରଳା ଦେବୀଙ୍କ ପ୍ରତି ଜନିତ ତଦୀୟ ପ୍ରଗାଢ଼ ଭକ୍ତିର ସୂଚକ ଓ କାଳ୍ପନିକ ଏବଂ ଭାରତ ରଚନା ପ୍ରବୃତ୍ତି ପୂର୍ବେ କିମ୍ବା ଦେବୀଙ୍କ ପ୍ରତି ପ୍ରଗାଢ଼ ଭକ୍ତି ସଞ୍ଜନନ ପୂର୍ବେ ତାହାଙ୍କର ଅନ୍ୟ କୌଣସି ନାମ ଥିଲା, ଏହା ସଂପୂର୍ଣ୍ଣ ସତ୍ୟ । କେତେକ ସମୟ ପରେ ଏ ମହାତ୍ମା ମହାମାୟା ଶ୍ରୀ ସାରଳା ଦେବୀଙ୍କର ଚରଣାରବିନ୍ଦରେ ନବବିଧ ଭକ୍ତିରୁ ସମଧିକତଃ ଦାସ୍ୟ ଭକ୍ତିମତେ ଏକାନ୍ତ ପ୍ରସନ୍ନ ରହି ଆତ୍ମାକୁ ଦେବୀଙ୍କ ଦାସ ବୋଲି ଅଭିହିତ କରି ଅଛନ୍ତି । ଏହିପରି କରିବା ହିଁ ପ୍ରଗାଢ଼ ଭକ୍ତିର ଲକ୍ଷଣ । ଏହି ମର୍ମ ଅଭିପ୍ରାୟକୁ କବି ମଧ୍ୟ ଗ୍ରନ୍ଥ ମଧ୍ୟରେ ଅସକୃଦ୍ ସୁସ୍ପଷ୍ଟ ରୂପେ ବ୍ୟକ୍ତ କରି ଅଛନ୍ତି ।(୨) ପରନ୍ତୁ ସାରଳାଦାସ – ଆଖ୍ୟାନ ପ୍ରଖ୍ୟାନ କେବଳ ତାଙ୍କର ଇଚ୍ଛାମୂଳକ ନୁହେଁ । କୃପାମୟୀ ଦେବୀଙ୍କର ଅକମ୍ପାନୁକମ୍ପାବଶତଃ ଏହା ତାହାଙ୍କ ପ୍ରତି ପ୍ରବର୍ତ୍ତି ଥିଲା । ଏହି ଭକ୍ତିପ୍ରବଣ କବି ଦେବୀଙ୍କୁ ଜନ୍ମଦାତ୍ରୀ ମାତା ପ୍ରାୟ ଭାବନା କରୁଥିଲେ, ଅନ୍ୟାନ୍ୟ ବିଷୟବ୍ୟାବର୍ତ୍ତନପୂର୍ବକ ସତତ ତନ୍ମନସ୍କତାରେ ଏକତା ନ ରହି ଦେବୀଙ୍କୁ ସ୍ୱକୀୟ ହୃଦୟ-ପ୍ରାସାଦରେ ଅଧିଷ୍ଠିତା ମନେ କରୁଥିଲେ । ତାହାଙ୍କର ବିଶ୍ୱାସ ହେଉଥିଲା କି, ଦେବୀଙ୍କ ପ୍ରଣୋଦନରେ କେବଳ ସକଳେନ୍ଦ୍ରିୟମାନ ନିଯୋଜିତ ହେଉଅଛନ୍ତି, ହୃଦୟରେ ଯେ ଯେ ସଦଭିଳାଷ ଉଦ୍‌ଥିତ ହୁଏ, ସେ ସବୁ ଦେବୀଙ୍କର କୃପାନୁପ୍ରାଣିତ-ଆଦେଶାନୁଜାତ କେବଳ । ଅତଏବ ସେ ଦେବୀଙ୍କ ପ୍ରତି ଏକାନ୍ତ ଅନ୍ତର୍ମୁଖ ଥିବା ସମୟରେ ଅନୁଭବ

---

(୧) କନକପୁର ପାଟଣା ଘର ପର୍ଶୁରାମ ।
ମୁହିଁ ତାର ଅନୁଜ ସାରଳାଦାସ ନାମ । ଇତ୍ୟାଦି । ମ.ପ.

(୨) ସାରଳା ଚଣ୍ଡୀ ନାମ ଅଟଇ ସେହି ଦେବୀ ।
ତାହାର ଦାସ ମୁଁ ଯେ ସାରଳାଦାସ କବି । ଆ.ପ.
ଶ୍ରୀ ଚଣ୍ଡୀ ସାରଳାର ମୁଁ ଭୃତ୍ୟର ଭୃତ୍ୟ ।
ସାରଳାଦାସର ତହିଁ ରହିଥାଉ ଚିତ୍ତ । ଦ୍ରୋ.ପ.
ଶ୍ରୀମାତା-ବଲ୍ଲଭ ଶ୍ରୀଚରଣ ନିଜ ଦାସ ।
ବଦେ ଶୂଦ୍ରମୁନି ଗ୍ରନ୍ଥକର୍ତ୍ତା ସାରଳାଦାସ । ଆ.ପ.

କଲେ କି ଦେବୀ ମୋତେ ସାରଳାଦାସ ନାମ ପ୍ରଦାନ କରି ଅଛନ୍ତି । ସେ ଏହି ପ୍ରଗାଢ଼ତମ ଭକ୍ତି ଭାବନାରେ ରତ ଥାଇ ଆତ୍ମାକୁ ଦେବୀଦତ୍ତ ନାମରେ ସାଦରେ ନାମିତ କରି ଦେବୀ କୃପାକଟାକ୍ଷରୁ ସର୍ବତ୍ର ପ୍ରଖ୍ୟାତ ହେଲେ; ନିଜକୁ ଦେବୀଙ୍କ ପୁତ୍ର ବୋଲି ପ୍ରଚାରିତ କଲେ । କବି ଏହି ଅଭିପ୍ରାୟକୁ ଗ୍ରନ୍ଥର ସ୍ଥାନେ ସ୍ଥାନେ ମଧ୍ୟ ପ୍ରକାଶ କରିଦେଇ ଅଛନ୍ତି ।(୧) ଏହାଙ୍କ ଅପେକ୍ଷା ଅତି ପ୍ରାଚୀନ ସାଂସ୍କୃତିକ କବିମାନେ ମଧ୍ୟ ଏତାଦୃଶ ନାମଗ୍ରହଣରେ ଆତ୍ମାକୁ ପବିତ୍ର ଓ କୃତାର୍ଥ ମନେ କରିଅଛନ୍ତି । ରଘୁବଂଶାଦି ଓ ଶକୁନ୍ତଳାଦିର ପ୍ରଣେତା ମହାକବି କାଳିଦାସଙ୍କର ନାମକରଣ ମଧ୍ୟ ଏତାଦୃଶ ହୋଇଥିଲା । ଭାଗବତ ଚମ୍ପୂର ରଚୟିତା ଅଭିନବ କାଳିଦାସଙ୍କର ନାମ ଉତ୍ପତ୍ତିର କ୍ରମ ସୁଦ୍ଧା ଏତାଦୃଶ । ଏ ମହାଶୟ ଶ୍ରୀମାନ୍ ସାରଳାଦାସଙ୍କ ପରି ଭକ୍ତିତଃ ଆତ୍ମାକୁ ଦେବୀଙ୍କର ପ୍ରେମପାତ୍ର ପୁତ୍ର ମନେ କରୁଥିଲେ ।(୨)

ମୂଳଗ୍ରନ୍ଥର ରଚୟିତା ବ୍ୟାସଦେବ ବ୍ରାହ୍ମଣତ୍ୱରୁ ବ୍ରହ୍ମମୁନି ଥିବାରୁ ତଦନୁକରଣରେ ଆତ୍ମଗୌରବ ଓ ସ୍ୱକୃତ ଗ୍ରନ୍ଥର ସମୁତ୍କର୍ଷ ବର୍ଦ୍ଧନାର୍ଥ ସାରଳାଦାସ ମହାଶୟ ଜନ୍ମତଃ ଶୂଦ୍ର ଥାଇ ସୁଦ୍ଧା ଦେବୀଙ୍କ ପ୍ରସାଦରୁ ଭାରତ ରଚନାରେ ପ୍ରାପ୍ତ-ସାମର୍ଥ୍ୟ ହେଲେ ବୋଲି ଶୂଦ୍ରମୁନି ନାମ ଉପାଧିରୂପେ ପରିଗ୍ରହ କରିଥିଲେ । ଏହି ଉପାଧି ଧାରଣ ମଧ୍ୟ ଶ୍ରୀ ସାରଳା ଦେବୀଙ୍କର ଆଦେଶାନୁମୋଦିତ ବୋଲି ପ୍ରକାଶ କରି ଅଛନ୍ତି ।(୩) କେହି କେହି ଏହି ମୁନି ଶବ୍ଦକୁ ନେଇ କହନ୍ତି, ଶୂଦ୍ର ଜାତିର ଅନ୍ୟତମ ଶ୍ରେଣୀ ଦେବୀପୂଜକ ମୁନି ନାମଧାରୀ ଯେଉଁ ଜାତି ଅଛନ୍ତି, ସାରଳାଦାସ ସେହି ଶ୍ରେଣୀରେ ଭୁକ୍ତ ଥିଲେ; ମାତ୍ର ତାହା ଯଥାର୍ଥ ନୁହେ । ସାରଳାଦାସେ ସ୍ୱକୀୟ ପୌରାଣିକ ଗୌରବ ସମ୍ପାଦନାର୍ଥ ଓ ପୂର୍ବ ଜନ୍ମାନୁଗତ ବାସନାର ଔନ୍ନତ୍ୟ ସାଧନାର୍ଥ କେବଳ ମୂଳ କବିଙ୍କ ନାମାନୁକରଣରେ ଶୂଦ୍ରମୁନି ଉପାଧି ଧାରଣ କରିଥିଲେ, ସନ୍ଦେହ ନାହିଁ ।

---

(୧) ଜଗନ୍ମାତା ଯହୁଁ ପ୍ରସନ୍ନ ମୋତେ ହେଲେ ।
ଶୂଦ୍ରମୁନି ସାରଳାଦାସ ନାମ ଦେଲେ । ଆଶ୍ର.ପ.
ଶୂଦ୍ରମୁନି ସାରଳାଦାସ ଅଟେ ଚଣ୍ଡୀ ପୁତ୍ର ।ସ.ପ.

(୨) ଅଭିନବ ପଦପୂର୍ବଃ କାଳିଦାସଃ ପ୍ରଗଲ୍ଭଃ ।
ତ୍ରିନୟନଦୟିତାୟାଃ ପ୍ରେମତିମ୍ନସ୍ତୃତୀୟଃ ।
ବିରଚୟତି ତୟୈବ ପ୍ରେରିତଃ ପ୍ରେମପର୍ବଂ ।
ହରଗୁଣ-ପରିଣଦ୍ଧଂ ଚାରୁଚମ୍ପୂ ପ୍ରବନ୍ଧଂ ।

(୩) ଯେଣୁ ଶାସ୍ତ୍ର ବାହାର ହୋଇଲା ମୋର ହୃଦୁ ।
ଶୂଦ୍ରମୁନି ପଦ ମୋର ସାରଳା ପ୍ରସାଦୁ । ସ.ପ.
ତୋ ଆଜ୍ଞାରେ ବହିଲି ଶୂଦ୍ରମୁନି ନାମ ।
ଏକଥା ଅତର ଗୋ ନ କରାଅ ମତିଭ୍ରମ । ଆ.ପ.

ସାରଳାଦାସ ମହାଶୟ ଶ୍ରୀ ସାରଳା ଦେବୀଙ୍କୁ ସର୍ବତୋଭାବେ ମାତା ପ୍ରାୟ ବିଶ୍ୱାସ କରି ଏକାନ୍ତ ଭକ୍ତି ବିସ୍ତାର କରିଥିଲେ; ଏଥିରେ କେହି ମତଦ୍ୱୈଧ କରି ପାରିବେ ନାହିଁ । ସେ ଦେବୀଙ୍କ ଛାମୁରେ ଆପଣାକୁ ତାହାଙ୍କର ପୁତ୍ର ବୋଲି ନିବେଦନ କରୁଥିଲେ, ଅନୁଦିନ ଦେବୀଙ୍କର ନିଗମାଗମଦୁର୍ଗମ ମହିମାରେ ଅକୁଣ୍ଠ-ଶ୍ରବଣୋତ୍କଣ୍ଠା ପ୍ରକାଶ କରୁଥିଲେ, ଦେବୀଙ୍କୁ ସତତ ଧ୍ୟାନ କରି ଆନନ୍ଦପୂର-ପରିପୂରିତହୃଦୟ ହେଉଥିଲେ । ଏଥିରୁ ସ୍ପଷ୍ଟ ଜଣାଯାଏ, ଶ୍ରୀ ସାରଳାଦେବୀଙ୍କ ଚରଣାମ୍ବୁଜରେ ଏହାଙ୍କର ପରିଶୁଦ୍ଧ ପ୍ରଗାଢ଼ ଆନ୍ତରିକ ଭକ୍ତି ଥିଲା । ଏ କବି ଗ୍ରନ୍ଥର ସ୍ଥାନେ ସ୍ଥାନେ ଗଣେଶ, ମହାଦେବ, ଜଗନ୍ନାଥ, ସରସ୍ୱତୀ ପ୍ରଭୃତି ଦେବଦେବୀଙ୍କର ସ୍ତୁତି କରି ଅଛନ୍ତି, ସ୍ଥାନେ ସ୍ଥାନେ ବ୍ରହ୍ମାଙ୍କର (୧) ସ୍ତୁତି ମଧ କରି ଅଛନ୍ତି, ବିଶେଷତଃ ଭୀଷ୍ମପର୍ବ ପ୍ରାରମ୍ଭରେ ଏକତ୍ର ମହାଦେବ, ଗଣେଶ, ଜଗନ୍ନାଥ ପ୍ରଭୃତିଙ୍କୁ ସ୍ତୁତି କରି ଅଛନ୍ତି ସତ୍ୟ, ତଥାପି ଶ୍ରୀ ସାରଳା ଦେବୀଙ୍କଠାରେ କେବଳ ଏହାଙ୍କର ସମଧିକ ଐକାନ୍ତିକ ଭକ୍ତିନିଷ୍ଠାଗରିଷ୍ଠତ୍ୱ ଥିବାର ପ୍ରତୀତ ହୁଏ । ଅତଏବ ବହୁସ୍ଥଳରେ ଏ ମହାଶୟ ଶ୍ରୀ ସାରଳା ଦେବୀଙ୍କର ମହିମା ପ୍ରଦ୍ୟୋତନାର୍ଥ ସ୍ତବାବଳୀର ମଧ୍ୟେ ମଧ୍ୟେ ତଦୀୟ ବହୁବିଧ ଚରିତକୁ ଗର୍ଭିତ ରଖି ସ୍ତବନ କରି ଅଛନ୍ତି । ଲୋକରେ ପ୍ରଥିତ ଅଛି, ଏହି ମହାଭାରତ ରଚନା ସମୟରେ କବିଙ୍କୁ ଯେଉଁ ଯେଉଁ ସ୍ଥଳରେ ଚରିତ ପ୍ରବାହ କିମ୍ବା ଚରିତ-ସନ୍ଧିଧାନ ଗହନ ହୋଇପଡ଼େ ଅର୍ଥାତ୍ ସ୍ତୁତିମନ୍ଦିରରେ କ୍ଲକ୍‌କାୟିତ ରହେ, ସେହି ସେହି ସ୍ଥଳରେ ଶ୍ରୀ ସାରଳା ଦେବୀଙ୍କର ତଥାଚ ଅନ୍ୟାନ୍ୟ ସ୍ୱସମାରାଧିତ ଦେବତାମାନଙ୍କର ସ୍ତୁତି ପାଠ କରନ୍ତି । ଏହି ଭାରତୀୟ ସ୍ତୁତି-ପ୍ରଚୁରତା ବିଚାର କଲେ ଉପର୍ଯ୍ୟୁକ୍ତ ଉକ୍ତିଟି କେତେଦୂର ଅନଲୀକ ବୋଧହୁଏ । ତଥାପି ଏହାଙ୍କର ଦୈବିକ ସମାଶ୍ରୟରେ ଏହା ହିଁ ସ୍ଥିର କରିବାକୁ ହେବ ଯେ, ଏ ମହାଶୟ ଅନ୍ୟାନ୍ୟ ଦେବଦେବୀଙ୍କ ପ୍ରତି ଭକ୍ତିନିଷ୍ଠାର ପରାକାଷ୍ଠା ପ୍ରକାଶ କରିଥିଲେ ସୁଦ୍ଧା ପ୍ରଧାନତଃ ଦେବୀଭକ୍ତ ଥିଲେ । ଏଥିରେ ସନ୍ଦେହର ଆଭାଷ ସୁଦ୍ଧା ହୁଏ ନାହିଁ । ଏହାଙ୍କର ଭକ୍ତିପ୍ରୟତ ହୃଦୟ ସତତ ଦେବୀଙ୍କ ପ୍ରତି ସମାସକ୍ତ ଓ ଉଦ୍ରିକ୍ତ ଥିବାରୁ ଗ୍ରନ୍ଥ ମଧ୍ୟରେ ବହୁ ବିଷୟର ପ୍ରାରମ୍ଭ ଓ ପରିସମାପ୍ତି ସ୍ଥଳରେ ଦେବୀଙ୍କର ସ୍ତୁତିମାନ ଅତି ଓଜସ୍ୱିନୀ ଭାଷାରେ ଲେଖି ସାହସୋତ୍ସାହସ୍ୱମନତା ପ୍ରକାଶ କରି ଅଛନ୍ତି ଏବଂ ଭାରତ ରୂପକ ଚିତ୍ତପ୍ରସାଦଜନକ ସାରସ୍ୱତ କୀର୍ତ୍ତି-ପ୍ରାସାଦ ରଚନାର ସାମର୍ଥ୍ୟ ସାରଳା ଦେବୀଙ୍କ ପ୍ରସାଦଜନିତ ବୋଲି ବ୍ୟକ୍ତ କରି ଅଛନ୍ତି ।(୨)



(୧) ବ୍ରହ୍ମାଙ୍କ ସ୍ତୁତି ଭୀଷ୍ମପର୍ବ ୨୧ ପୃଷ୍ଠାରେ ଦେଖନ୍ତୁ ।

(୨) କୃପାଜଳନନ୍ଦିନୀ ନାମ ଭଦ୍ରକାଳୀ ।
ସେ ମୋର ଗଳାରେ ନୀଳୋତ୍ପଳମାଳୀ ।

# ଦୁଇ 'ବ୍ୟାସ'ଙ୍କ ତୁଳନା

ପ୍ରିୟ ଅଭିଜ୍ଞ ପାଠକ ମହାଶୟମାନେ ! ଦାସମୁନିଙ୍କର ବ୍ୟାସମୁନିଙ୍କ ନାମସାଦୃଶ୍ୟର ପ୍ରାପ୍ତିକ୍ରମ ଦେଖିଅଛନ୍ତି; ଏବେ କ୍ରମଶଃ ଦେଖିନେବେ, ବ୍ୟାସମୁନି ଓ ଦାସମୁନିଙ୍କର ମହାଭାରତ ରଚନାର ପ୍ରବୃତ୍ତିକାରଣ ପ୍ରଭୃତିରେ ମଧ କେତେଦୂର ଏକଦେଶୀୟ ସାଦୃଶ୍ୟ ଦେଖାଯାଉଅଛି । ପ୍ରଥମତଃ ଅନ୍ୟାନ୍ୟ ପୁରାଣମାନଙ୍କରେ କଥିତ ବ୍ୟାସଦେବଙ୍କର ମହାଭାରତ ରଚନା ପ୍ରବୃତ୍ତିମୂଳକ କେତେକ କଥା ଲେଖାଯାଉ ଅଛି । ଏଥିରୁ ଘଟନାବିଶେଷ ଧରି ସାରଳାଦାସଙ୍କ ଚରିତରୁ ସାଦୃଶ୍ୟ ଖୋଜିବାକୁ ହେବ; କିମ୍ବା ତାଙ୍କ ଚରିତରେ ସଂଲଗ୍ନ କରିବାକୁ ହେବ । ନାରାୟଣଙ୍କ ଅଂଶସମ୍ଭୂତ ମହର୍ଷି କୃଷ୍ଣଦ୍ୱୈପାୟନ ପ୍ରଥମତଃ ଦ୍ୱାପରାନ୍ତରେ ସ୍ୱତଃସିଦ୍ଧ ଦିବ୍ୟଜ୍ଞାନଦ୍ୱାରା ଅବଗତ ହୋଇ ପାରିଲେ ଯେ, ପାପଜାଳ-ସଂକୁଳ କଳିକାଳରେ ଅଧର୍ମବାହୁଲ୍ୟରୁ ମନୁଷ୍ୟମାନେ ଅଳ୍ପାୟୁ, ଅଳ୍ପବୁଦ୍ଧି ଓ ଅଳ୍ପବଳ ହେବେ । କଳିକାଳୀନ ଦ୍ୱିଜମାନେ ସମଗ୍ର ବେଦାଧ୍ୟୟନରେ ନିତାନ୍ତ ଅସମର୍ଥ ହେବେ । ଅତଏବ ଅଗାଧଜ୍ଞାନ ତ୍ରିକାଳତତ୍ତ୍ୱଦର୍ଶୀ ମହର୍ଷି ପରମେଶ୍ୱରାଗତ ପରମ-ପ୍ରମାଣ ପରମାର୍ଥ-ପ୍ରକାଶକ ସମଗ୍ର ବେଦକୁ ଉଚିତକ୍ରମରେ ବିଭକ୍ତ କରି ବେଦବ୍ୟାସ ନାମରେ ଅଭିହିତ ହୋଇଥିଲେ । ଆମ୍ଭମାନଙ୍କର ଭାରତକର୍ତ୍ତା ସିଦ୍ଧେଶ୍ୱର ଭଗବତୀ ସାରଳା ଦେବୀଙ୍କ ଭକ୍ତିର ଏକାନ୍ତନିଷ୍ଠତାରେ ସଂକଳ୍ପିତ କାର୍ଯ୍ୟ ସାଧନପୂର୍ବକ ଅବଶିଷ୍ଟ ଜୀବିତ ସମୟରେ କର୍ତ୍ତବ୍ୟ ବିଭକ୍ତ କରି ସାରଳାଦାସ ନାମରେ ସର୍ବତ୍ର ଅଭିହିତ ହୋଇଥିଲେ । ବେଦାଚାର୍ଯ୍ୟ ଆର୍ଯ୍ୟବର୍ଯ୍ୟ ପାରାଶର୍ଯ୍ୟ ଋକ୍, ଯଜୁଃ, ସାମ ଓ ଅଥର୍ବ ନାମକ ଆର୍ଯ୍ୟସର୍ବସ୍ୱଭୂତ ବେଦଭାଗକୁ ଯଥାକ୍ରମେ ଅନଳ୍ପପ୍ରଜ୍ଞ ସମସ୍ତ ଶାସ୍ତ୍ରରେ ପ୍ରତ୍ୟଗ୍ରୋନ୍ମୁଖମନୀଷ ପୈଲ, ବୈଶମ୍ପାୟନ, ଜୈମିନି ଓ ସୁମନ୍ତ ନାମକ ଶିଷ୍ୟମାନଙ୍କୁ ପ୍ରଦାନ କଲାପରେ ବିଚାର କଲେ ଯେ ବେଦର ଅନଧିକାରୀ ଓ ଅନୁପଯୁକ୍ତ ଦ୍ୱିଜେତରମାନଙ୍କର ଉପଯୋଗାର୍ଥ ଅଥଚ ଦ୍ୱିଜାତିମାନଙ୍କର ବେଦାର୍ଥ ବିବରଣଜ୍ଞାନର

---

ତାହାର ପ୍ରସନ୍ନେ କହିବି ଶ୍ରୀକୃଷ୍ଣର ଗୀତି ।
ପିବନ୍ତେ ଅମୃତ ଶୁଣନ୍ତେ ସଦ୍‌ଗତି । ଅଶ୍ୱପର୍ବ ।
ନୁହଇ ପଣ୍ଡିତ ମୁଁ ନ ଜାଣେ ଶାସ୍ତ୍ରବିଧି ।.
ସାରଳା ପ୍ରସାଦେ ହେଲା ମୋର ବୁଦ୍ଧି ।
ସେ ଯାହା ଆଜ୍ଞା ଦେଲେ କୃପାଜଳନନ୍ଦିନୀ ।
ତାହାକୁ ସେବିଛି ହୃଦପଦ୍ମେ ଘେନି ।
ସର୍ବଜନବୋଧନ ଯକ୍ଷରପୁରବାସୀ ।
ତାହାର ଚରଣେ ଶରଣ ପଶିଛି ଅହର୍ନିଶି । ଶାନ୍ତିପର୍ବ । । ଇତ୍ୟାଦି ।

ଯୌଗମାର୍ଥ ଏବଂ ସର୍ବବର୍ଣ୍ଣସାଧାରଣଙ୍କର ନିର୍ବିଶେଷ ଐହିକାମୁଷ୍ମିକ ଧର୍ମବିଚାରରେ ସମର୍ଥତା ପ୍ରତିପାଦନାର୍ଥ ବେଦାର୍ଥବୃଂହକ ଗୋଟିଏ ଗ୍ରନ୍ଥ ରଚନା କରିବୁଁ । ଶୂଦ୍ରମୁନି ମହାଶୟ ନିଜର ପିତୃପିତାମହସମର୍ଜିତ ପରମ୍ପରାନୁଗତ ସର୍ବସମ୍ପତ୍ତିକୁ ସ୍ୱକୀୟ ସହୋଦରମାନଙ୍କୁ ସମର୍ପଣ କରି ବିଷୟବାସନାରହିତ ଓ ମୁକ୍ତ ସଂସାରବନ୍ଧନ ହୋଇ ବିଶେଷତଃ ସ୍ତ୍ରୀ ଶୂଦ୍ର ଦ୍ୱିଜବନ୍ଧୁମାନଙ୍କ ଭବବନ୍ଧନ ଛେଦନର ଉପଯୋଗାର୍ଥ ଏବଂ ସର୍ବସାଧାରଣଙ୍କର ଚିତ୍ତବିନୋଦନାର୍ଥ ଶ୍ରୀ ସାରଳା ଦେବୀଙ୍କ ପ୍ରସାଦରୁ ମହାଭାରତ ରଚନାରେ ଇଚ୍ଛୁକ ହୋଇଥିଲେ । ତେତେବେଳେ ଶୁଚିମାନ୍ ନିୟମପର ପ୍ରୟତାତ୍ମା ପରାପୂର-ଜ୍ଞାନନିଷ୍ଠ ମହର୍ଷି ଦେବଭାବୋଦ୍ରେକଜକ ହିମାଳୟର ଏକ ବିବିକ୍ତ ଗୁହାଗୃହରେ ଦର୍ଭାସନାସୀନ ହୋଇ ନିଜର ଦିବ୍ୟଚିତ୍ତରେ ସମୁଦାୟ ବେଦ ପୁରାଣାଦିର ଅକ୍ଷୁଣ୍ଣ ଅର୍ଥଜାଳ ସମୁଦ୍ୟତ ରଖି କୁରୁ ପାଣ୍ଡବମାନଙ୍କର ଚରିତ୍ରାନୁପ୍ରାଣନରେ ଶ୍ରୀ ମହାଭାରତ ନାମକ ପଞ୍ଚମ ବେଦ ସ୍ଥାନୀୟ ଇତିହାସ ଲେଖାରେ ଏକତାନ ହେଲେ । ସାରଳାଦାସ ମଧ ଭଗବଦ୍ଭକ୍ତି-ପ୍ରୟତହୃଦୟରେ ବିବିକ୍ତ ଓ ପବିତ୍ର ସ୍ଥାନରେ ଆସୀନ ରହି ମହତୀ ଗ୍ରନ୍ଥ ଶୁଶ୍ରୂଷାବଳରୁ ଭାରତ ଓ ଅନ୍ୟାନ୍ୟ ପୁରାଣମାନଙ୍କ ଚରିତସନ୍ଦର୍ଭସନ୍ଦୋହକୁ ସ୍ମୃତିକୋଷରେ ସମୁଦ୍ୟତ ରଖି ଅନନ୍ୟ ବୃତ୍ତିରେ ମହାଭାରତ ଲେଖାରେ ପ୍ରବୃତ୍ତ ହୋଇଥିଲେ । ବ୍ୟାସଦେବ ନିତ୍ୟ ପ୍ରଯତ୍ନରେ ପ୍ରୋକ୍ତ ଗ୍ରନ୍ଥକୁ ବର୍ଷତ୍ରୟରେ ସଂପୂର୍ଣ୍ଣ କରି ସମୟରେ ଜନକାନୁକୃତ-ଧର୍ମା ଜନମେଜୟ ସର୍ପସତ୍ର କରଣାନନ୍ତର ଶ୍ରୀ ମହାଭାରତ ଶୁଶ୍ରୂଷାରେ ପ୍ରାର୍ଥନା କଲାରୁ ସେ ସାନୁକ୍ରୋଶହୃଦୟରେ ରାଜାଙ୍କୁ ଶ୍ରବଣ କରାଇବା ପାଇଁ ନିଜ ଶିଷ୍ୟ ବୈଶମ୍ପାୟନଙ୍କୁ ଆଦେଶ ଦେଇଥିଲେ । ସାରଳାଦାସେ ମଧ ଚିକୀର୍ଷିତ ଗ୍ରନ୍ଥର ପରିସମାପନରେ ସର୍ବତ୍ର ପ୍ରଚାରକରଣାର୍ଥ ତାତ୍କାଳିକ ସ୍ୱକୀୟ ମତାନୁଗତ ଶିଷ୍ୟମାନଙ୍କ ହସ୍ତରେ ତାହା ସମର୍ପଣ କରିଥିଲେ ।

ଶ୍ରୀମାନ୍ ସାରଳାଦାସଙ୍କ ମହାଭାରତ ରଚନା ପ୍ରବୃତ୍ତି ସମ୍ବନ୍ଧରେ ଲୋକରେ ଗୋଟିଏ ପ୍ରବାଦ ପ୍ରଚଳିତ ଅଛି । ଜଗଦମ୍ବା ଶ୍ରୀ ସାରଳା ଦେବୀଙ୍କ ପୀଠ ସ୍ଥାନରୁ ଅନତିଦୂର ଜନପଦରେ ଭାରତ ଚରିତ-ଗଳ୍ପନିପୁଣ କୌଣସି ଏକ ଶୂଦ୍ର ବାସ କରୁଥିଲେ । ସେ ସମୟ ସମୟରେ ନିଜ ସନ୍ତାନମାନଙ୍କ ସମ୍ମୁଖରେ ଭାରତୀୟ ଚରିତମାନ ଗଳ୍ପ କରନ୍ତି; ପୁଣି ଅନ୍ୟ ସମୟରେ ନିଜ ବର୍ଣ୍ଣିତ ବିଷୟଗୁଡ଼ିକ ପୁତ୍ରମାନେ ମନସ୍ଥ କରି ଅଛନ୍ତି କି ନାହିଁ, ଏହାର ଜିଜ୍ଞାସାରେ ସେମାନଙ୍କୁ ପ୍ରଶ୍ନ କରନ୍ତି । କନୀୟାନ୍ ପୁତ୍ର ବିନା ଅନ୍ୟମାନେ ପୂର୍ବଶ୍ରୁତ କଥାମାନ ହୃଦୟସ୍ଥ କରିପାରି ଥିବାରୁ କିଛି କିଛି କହି ପାରନ୍ତି, ମାତ୍ର ସିଦ୍ଧେଶ୍ୱର ନାମଧେୟ କନିଷ୍ଠ ପୁତ୍ର (ଯେ କି ଭବିଷ୍ୟମାଣ ସାରଳାଦାସ) ସ୍ମରଣଶକ୍ତି ଅଭାବରୁ କିଛି କହି ପାରନ୍ତି ନାହିଁ । ତେଣୁ ପିତା ତାହାଙ୍କୁ ସହୋଦରମାନଙ୍କ ସମକ୍ଷରେ କଟୁତର

ଭର୍ତ୍ସନା କରନ୍ତି । ସେ ତାହା ସହ୍ୟ କରି ନ ପାରି ଆପଣାକୁ ଅପମାନିତ ଜ୍ଞାନ କରିଥିଲେ । ତା ପରେ ଅତି ଗହନ ମହାଭାରତୀୟ ଚରିତମାନଙ୍କର ସମ୍ୟକ୍ ହୃଦୟଙ୍ଗମତା ଲାଭପୂର୍ବକ ସ୍ୱୟଂବକ୍ତା ହେବା ସକାଶେ ଶ୍ରୀ ସାରଳା ଦେବୀଙ୍କ ଛାମୁରେ ଅଧା ପଡ଼ି ରହିଲେ । ଇତ୍ୟାଦି ।

ଏ ମହାଶୟଙ୍କର ଭାରତ ରଚନା ପ୍ରବୃତ୍ତିରେ ଉପର୍ଯ୍ୟୁକ୍ତ ଜନଶ୍ରୁତିରେ କେତେଦୂର ଆନୁପୂର୍ବିକ ସତ୍ୟତା ଅଛି, କହି ନ ପାରୁଁ । ପ୍ରୋକ୍ତ କିମ୍ବଦନ୍ତୀର ସଂପୂର୍ଣ୍ଣ ସତ୍ୟତାର ଉପଲବ୍ଧି ସକାଶେ କବିଙ୍କ ମୁଖୋଚ୍ଚାରିତ ବାକ୍ୟ ତଦୀୟ ମହାଭାରତରେ କୁତ୍ରାପି ପଦେ ଅଧେ ମଧ୍ୟ ଦେଖାଯାଏ ନାହିଁ । ଅତଏବ କହିବାକୁ ହେବ ଯେ, ସାରଳାଦାସଙ୍କର ମହାଭାରତ ରଚନା ପ୍ରବୃତ୍ତିର କାରଣ ସ୍ୱପିତାଙ୍କ ଭର୍ତ୍ସନା ହେଉ କିମ୍ବା ବହୁଜନ୍ମାର୍ଜିତ ସୁପୁଣ୍ୟସଂଜାତ ବାସନା ହେଉ, ସେ ଯେ ଭଗବତୀ ସାରଳା ଦେବୀଙ୍କ ଅନବସାଦ ମହାପ୍ରସାଦରୁ ସର୍ବବିଧ ଦୁଃଖରେ ନିର୍ଲିପ୍ତ ଥାଇ ପୁରାଣ ରଚୟିତା ହୋଇପାରି ଅଛନ୍ତି, ଅନନ୍ୟ ସୁଲଭ ଶକ୍ତି ସମ୍ପାଦନ କରିପାରି ଅଛନ୍ତି, ସାରସ୍ୱତ ଯଶୋଡିଣ୍ଡିମ ଧ୍ୱନିତ କରିପାରି ଅଛନ୍ତି, ଏହା ସଂପୂର୍ଣ୍ଣ ସତ୍ୟ । ଶ୍ରୀ ସାରଳା ଦେବୀଙ୍କର ସୁପ୍ରସନ୍ନତାଯୁକ୍ତ ଆଦେଶ ବଳରେ କେବଳ ସେ ଶକ୍ତିମାନ୍ ଓ ସମୁତ୍ସାହିତ ହୋଇ ମହାଭାରତ ଲେଖିପାରି ଥିବାର ପ୍ରମାଣ ବହୁ ସ୍ଥଳରେ ଦେଇ ଅଛନ୍ତି ଏବଂ ଦେବୀଙ୍କୁ ସନ୍ତତ ତନ୍ମନସ୍କତା ଓ ତନିଷ୍ଠତାରେ ଧ୍ୟାନ କରି କଳ୍ପବଟ ମୂଳରେ ବସି ଦେବୀସମାଦିଷ୍ଟ ବଚନ ପରିପାଟୀ ଅନୁସାରେ ଏହି ଭାରତ ଲେଖିଥିବାର କହି ଅଛନ୍ତି ।(୧) ସୁତରାଂ ଦେବୀ-ପ୍ରସାଦ-ପ୍ରାପ୍ତ କବିମାନେ ଏପରି ପରିପୂତ ଭାବକୁ ହୃଦୟଗ୍ରନ୍ଥି ରୂପେ ପରିପୋଷଣ କରିବା ହିଁ ଉଚିତ । ଅଭିନବ କାଳିଦାସ ପ୍ରଭୃତି ସାଂସ୍କୃତିକ କବିମାନେ ମଧ୍ୟ ଏହି ଭାବ ପ୍ରକାଶ କରି ଅଛନ୍ତି(୨) ବୋଧହୁଏ ଏପରି ମହାକବିମାନେ ସ୍ୱଗ୍ରନ୍ଥର ଗୌରବ ବର୍ଦ୍ଧନାର୍ଥ ସର୍ବକର୍ତୃତ୍ୱ ଆରାଧ୍ୟ-ଦେବତାଙ୍କୁ ସମର୍ପଣ କରିଥାନ୍ତି । ଏ ମହାଶୟ ଆହୁରି ସ୍ଥାନେ ସ୍ଥାନେ କହିଅଛନ୍ତି, "ମୁଁ ତାଦୃଶ ବିଦ୍ୱାନ ନୁହେ, ତଥାପି ସର୍ବସାଧାରଣଙ୍କର ଯାହା କି ଅଦୃଷ୍ଟି-ସାଧ୍ୟ କିମ୍ବା ଅଜ୍ଞେୟ, ତାଦୃଶ ମହନୀୟ ବିଷୟକୁ ମୁଁ ଯାହା ପରିଦୃଷ୍ଟ ଉପଲବ୍ଧି କରି ପାରିଅଛି, ସେଥିରେ ମୋହର ନିଜର କିଛିମାତ୍ର ପ୍ରତିଜ୍ଞା ନାହିଁ, ପ୍ରତିଭା ନାହିଁ । ମତ୍ପ୍ରତିକୃତ ଶ୍ରୀ ସାରଳା

(୧) ପ୍ରସନ୍ନେ ଆଜ୍ଞା ମୋତେ ଦେଲେ ଶାକାମ୍ବରୀ ।
ଲଭ ତୁ ଯଶ ମହାଭାରତ ଗ୍ରନ୍ଥ କରି ।
ଶୁଣିଣ ବୁଧଜନେ ନ ଧର ଆନମନ ।
ନୁହେ ପଣ୍ଡିତ ମୁଁ ଯେ ସ୍ୱଭାବେ ମୂର୍ଖଜନ । (ଇତ୍ୟାଦି) । ଆ.ପ.

(୨) ବିରଚୟତି ତୟୈବ ପ୍ରେରିତଃ ପ୍ରେମପୂର୍ବଂ ।
ହରିଗୁଣପରିଣଦ୍ଧଂ ଚାରୁଚମ୍ପୂ ପ୍ରବନ୍ଧଂ । ଅଭିନବ କାଳିଦାସ ।

ଦେବୀଙ୍କ ପ୍ରସାଦ କେବଳ ମୋତେ ଏତାଦୃଶ ଶକ୍ତିମାନ୍ ବିଦ୍ୟାବାନ୍ ଓ ସଫଳପ୍ରତିଜ୍ଞ କରିଅଛି ।(୧) ସେ ଯାହା ଯାହା ମୋତେ ଆଦେଶ କରନ୍ତି, ସେଗୁଡ଼ିକ କେବଳ ମୁଁ ଲିପିବଦ୍ଧ କରେଁ । ଦେବୀ ମୋର ହୃଦୟ ମନ୍ଦିରରେ ବିଜେ ହୋଇ ଯାହା କହନ୍ତି, ତାହା କେବଳ ମୁଁ ପ୍ରକାଶ କରେଁ ।'' ଇତ୍ୟାକାରକ ଭାବମାନ ଏ ବହୁ ସ୍ଥଳରେ ପ୍ରକାଶ କରି ଅଛନ୍ତି । ସେସବୁ ବିଚାର କରିନେଲେ ଜଣାଯାଏ, କୃପାନିଧାନୀ ଭକ୍ତାନୁକମ୍ପିତହୃଦୟା ଭଗବତୀ ସାରଳା ଦେବୀ ଏହାଙ୍କ ପ୍ରତି ସଂପୂର୍ଣ୍ଣ ସଦୟା ରହି ସ୍ୱରୂପତଃ ପ୍ରତ୍ୟକ୍ଷତଃ ସାଧାରଣମାନଙ୍କର ଦୃଷ୍ଟିପଥାରୂଢ଼ ହେବା ଅସମୀଚୀନ ବୋଲି ସ୍ୱପ୍ନାବେଶରେ ନିଜ ଦାସଙ୍କ ମହାଭାରତର ଗହନ ଚରିତମାନ ନିଜର ଶକ୍ତିସଂଚାରପୂର୍ବକ ଅବଗତ କରାଇ ଦେଉଥିଲେ । ଦେବୀସମାଦିଷ୍ଟ ଭାରତୀୟ ବଚନକ୍ରମଗୁଡ଼ିକ ହୃଦୟର ନିଭୃତ କକ୍ଷରେ ଅକ୍ଷୁଣ୍ଣ ରଖି ଏ ପୁଣି ପଦ୍ୟ ରଚନାରେ ପ୍ରବୃତ୍ତ ହେଉଥିଲେ ।

[୧] ସୁବୁଦ୍ଧି ଜନେ ମୋର ନ ଘେନିବା ଦୋଷ ।
ସେ ଯାହା କହଇ ମୁଁ ତାହା କରଇ ପ୍ରକାଶ ।
ମାନବ ହୋଇ କେ ତାଙ୍କୁ ସ୍ୱରୂପେ ଦେଖଇ ।
ସେ ରାତ୍ରେ କହେ ଯାହା ଦିବସେ ତା ମୁଁ ଲେଖଇ ।
ମୁହିଁ ମୂଢ଼ ମୂର୍ଖଜନ ଶୂଦ୍ର ଅପଣ୍ଡିତ ।
ମୁହିଁ କାହୁଁ କହିବି ଅକଳିତ ଭାରତ ।
ନ ପଢ଼ିଲି ନ ଘୋଷିଲି ଗତଜନ୍ମ ପୁଣ୍ୟେ ।
ପୁରାଣ ଅଭ୍ୟାସ କଲି ସାରଦା ପ୍ରସନ୍ନେ । ଉ.ପ.

[୨] ନ ପଢ଼ି ପଣ୍ଡିତ ହେଲି ମୋତେ ଶାରଳା ପ୍ରସନ୍ନ ।
ଜନ୍ମେ ଜନ୍ମେ ମୋତେ କହଇ ସେ ଜ୍ଞାନ ।
ତେଣୁ ଲେଖନ୍ତେ ମୋତେ ସମସ୍ତ ହୁଏ ଦୃଶ୍ୟ ।
ଆପଣେ କହଇ ଯେ ଅବା ଅଦୃଶ୍ୟ ।

---

(୧) ଅଦୃଷ୍ଟିକୁ ଦୃଷ୍ଟି ମୁହିଁ କରାଇଲି ଆଣି ।
କୃପା କରିବାରୁ ମା ସାରଳା ଠାକୁରାଣୀ ।
ଏ ପଦ ରଚନେ ମୁହିଁ ନ କରେ ପ୍ରତିଜ୍ଞା ।
ଲେଖେଁ ସାରଳା ଦିଅନ୍ତି ମୋତେ ଯାହା ଆଜ୍ଞା ।
ଜନ୍ମହୁଁ ମୂର୍ଖ ମୁଁ ପଢ଼ିନାହିଁ ବିଦ୍ୟା ।
ନ ଜାଣଇ ଜପମନ୍ତ୍ର ନୁହଇ ପ୍ରସିଦ୍ଧା ।
ସେ ମାତା ପ୍ରସାଦେ ଯାହା ମନ୍ତେ ମୋର ସ୍ଫୁରେ ।
ଲେଖଇ ଯେ ବସି ନୀଳକଣ୍ଠ ବଟ ମୂଳେ । ଦ୍ରୋଣପର୍ବ ।

ସେ ଦେବୀର କରୁଣା ଅଛି ମୋର ହୃଦେ ।
ଅନୁବର୍ତ୍ତେ ସେବଇ ସେ ଦେବୀ ପଦ୍ମପାଦେ । କା.ପ.

ଏହା ଛାପାରେ ଭିନ୍ନ ପ୍ରକାର ହୋଇ ଯାଇଅଛି ।

[୩] ମୋତେ ଯେତେ ଦୃଶ୍ୟ ହେଲା କହିଲଇଁ ମୁହିଁ ।
ଆଉ ଯେ ମାହେଶ୍ୱରୀ କହିଲେ କଣ୍ଠେ ମୋର ରହି ।
ଆ. ପ. ଦ୍ରୌପଦୀ ସ୍ୱୟମ୍ବର ସ୍ଥଳେ ।

[୪] ଜ୍ଞାନୀ ବା ଋଷିସୁତ ନୁହେଁ ଅନୁବ୍ରତେ ।
ଜଗନ୍ମାତା ଯାହା କହିଅଛନ୍ତି ନିରତେ ।
ଜଗତଜନ ହିତେ କରୁଛି ପ୍ରକାଶ ।
ସାଧୁଜନମାନେ ମୋର ନ ଘେନିବା ଦୋଷ । ଦ୍ରୋ.ପ.

ଆମ୍ଭମାନଙ୍କର ସାରଳା ବରପୁତ୍ର କବି ଦେବୀଙ୍କ ପ୍ରସାଦଜନିତ ଅସାଧାରଣ ସ୍ମୃତିମତ୍ତା ଧୀମତ୍ତା ଓ ପ୍ରତିଭାରେ ସମ୍ପନ୍ନ ଥାଇ ମଧ୍ୟ ଶିଷ୍ଟାଚାରବଶତଃ ନିଜର ଅଜ୍ଞତା ପ୍ରକାଶପୂର୍ବକ ଆତ୍ମଦୈନ୍ୟକୁ ବହୁ ସ୍ଥଳରେ ବିନୟପୁରଃସର ବିବୃତ କରି ଅଛନ୍ତି । ଏହା ତାହାଙ୍କର ମହନୀୟ ହୃଦୟବତ୍ତାର ଲକ୍ଷଣ । ସେ ସାଧୁତା-ପ୍ରଣୋଦିତ ହୋଇ ଆପଣାର ଏତାଦୃଶ ଅଜ୍ଞତା ପ୍ରକାଶ କରି ଅଛନ୍ତି ଯେ, ପାଠକ ସେହି ସଂକ୍ରାନ୍ତ ପଦଗୁଡ଼ିକ କେବଳ ପଢ଼ିନେଲେ ''ସାରଳା ଦାସ କବି ତାଦୃଶ ଜ୍ଞାନବାନ୍ ନ ଥିଲେ'' ହୃଦୟରେ ଏହି ଆକସ୍ମିକ ମନ୍ତବ୍ୟକୁ ଜନ୍ମାଇ ଦେଇ ପାରନ୍ତି; ମାତ୍ର ତଦୀୟ ସମଗ୍ର ଭାରତ ପାଠ କଲେ ଅବଶ୍ୟ ବିଶ୍ୱାସ କରିବେ, ଦାସ ମହୋଦୟ ଅଗାଧ ଶକ୍ତିଶାଳୀ ଥିଲେ । ପାଠକେ ! ସମାହିତ ହୃଦୟ ହେଉନ୍ତୁ, ଆଦିମ ମହାକବି ମହୋଦୟଙ୍କର ଶିଷ୍ଟାଚାର ଓ ସାଧୁତାର ସମାଦର କରନ୍ତୁ, ନିମ୍ନରେ ଉଦ୍ଧୃତ ପଂକ୍ତିଗୁଡ଼ିକ ପଢ଼ି ମନେ କରନ୍ତୁ ନାହିଁ ଯେ ''ସାରଳାଦାସ ମହାଶୟଙ୍କର ତାଦୃଶ ପାଣ୍ଡିତ୍ୟ ନ ଥିଲା ।''

[୧] ନପଢ଼ିଲି ଅକ୍ଷର ମୁଁ ନୁହେଁ ଶାସ୍ତ୍ରବାଦୀ ।
ପଣ୍ଡିତଙ୍କ ସଙ୍ଗେ ବସି ନ କଲି ସମାଦି ।
କୁସ୍ଥାନେ ବସିଲି ନ ବସିଲି ବିପ୍ରଗୋଷ୍ଠୀ ।
ଶିଶୁବୁଦ୍ଧି ମୋହର ବୟସ ଅଳପଟି ।
ପଣ୍ଡିତ ଜନଙ୍କୁ ମୁହିଁ ମାଗଇ ବିନୟେ ।
କର ଆଜ୍ଞା ହେଉ ମୋର ନାରାୟଣେ ଲୟେ । ମ.ପ.

[୨] ନ ପାଇଲି ପଦମନ୍ତ୍ର ନ ଗଲି ମୁଁ ତୀର୍ଥ ।
ନ ପଶିଲି ଯାଗଯଜ୍ଞେ ନ ଭାବିଲି ମନ୍ତ୍ର ।

ନ ପଢ଼ିଲି ଅକ୍ଷର ମୁଁ ନ ଜାଣଇ କିଛି ।
ଆନ ଅଭ୍ୟାସେ ମୋତେ ପ୍ରସନ୍ନ ହିଙ୍ଗୁଳାକ୍ଷୀ । ଭୀ.ପ.

[୩] ଅଯଶୀ ଅକର୍ମା ମୂର୍ଖ ମୁହିଁଟି ଅଟଇ ।
ଶ୍ରୀସାରଳା ପ୍ରସନ୍ନରେ ଗ୍ରନ୍ଥ ମୁଁ ରଚଇ ।
ଯେବଣ ଭାରତ ଖଣ୍ଡି ନ ଯାଇ ଯେ ଲେଖା ।
କିସ ମୁହିଁ ଲେଖିବି ବା କିସ ମୋର ଭାଖା ।
ଯେତେଦୂର ପଶିଥିଲି ତେତେ ମୁଁ ଜାଣିଲି ।
କେହୁ ଲେଖା କରିବ ଯେ ଗଙ୍ଗାକୂଳ ବାଲି । ଭୀ.ପ.

[୪] ନିର୍ମଳ ଜଳେ ଯେହ୍ନେ କ୍ରୀଡ଼ନ୍ତି ହଂସପନ୍ତି ।
ତଥା ମୋ ହୃଦେ ବିଳସେ ଶ୍ରୀକୃଷ୍ଣ ଭାରତୀ ।
ବୁଡ଼ିଲା ମୋ ସର୍ବ ମୋହ କୃଷ୍ଣଗତି ଯୋଗେ ।
ବାକ୍ୟଦେବୀ ଭଣ୍ଡାରେ ବିଳସେ ନାନାରଙ୍ଗେ ।
ନ ପଢ଼ିଲି ନ ଦେଖିଲି ନ ଜାଣେ ମୁହିଁ କିଛି ।
ତବ ପ୍ରସାଦେ ଶବ୍ଦ ମାତ୍ରକ ଶୁଣିଛି ।
ହୃଦକୁ ଅଳଙ୍କାର ତବ ନାମ ଗୋଟି ।
ତୁମ୍ଭେ ଦୟା କଲେ ଭବମୋହ ଯିବ ତୁଟି । ଦ୍ରୋ.ପ.

ଏହି ପଦ୍ୟଗୁଡ଼ିକ ପ୍ରୋକ୍ତ ମହାନୁଭାବ ସ୍ୱକୀୟ ସୌଜନ୍ୟ ଓ ସମୁଚ୍ଚ-ହୃଦୟତାର ପରାକାଷ୍ଠା ପ୍ରଦର୍ଶନାର୍ଥ କେବଳ ଲେଖି ଅଛନ୍ତି ବୋଲି ବିଶ୍ୱାସ କରନ୍ତୁ । ସଂସ୍କୃତର ମହାଶାସ୍ତ୍ରବିଶାରଦ କବିମାନେ ମଧ ଏପରି ଲେଖିଥାନ୍ତି ।(୧) ଏ କବିଙ୍କର ଖୁବ୍ ପୂରାଣପାରଦର୍ଶିତା ଓ ତଦାବଶ୍ୟକତାନୁଯାୟୀ ପାଣ୍ଡିତ୍ୟ ଥିଲା, ଏଥିରେ କିଛି ମାତ୍ର ସନ୍ଦେହ ନାହିଁ । କବି ନିଜର ପାଣ୍ଡିତ୍ୟ ସମ୍ବନ୍ଧରେ ନିଜେ କହିବାରେ ଆତ୍ମପ୍ରୌଢ଼ିର ଆଶଙ୍କା ଭାବି ତାହା ସମ୍ପୂର୍ଣ୍ଣତଃ ଦେବୀଙ୍କ ପ୍ରସାଦଜନିତ ବୋଲି ଅନେକ ସ୍ଥଳରେ ମଧ ଲେଖି ଅଛନ୍ତି । ପାଠକେ ଅନ୍ୟାନ୍ୟ ନିମ୍ନସ୍ଥ ପଦ୍ୟଗୁଡ଼ିକରୁ ତାହାର ପ୍ରମାଣ ପାଇ ପାରିବେ । ଲେଖନ୍ତୁ ବା ନ ଲେଖନ୍ତୁ, ଏହି ପ୍ରକାଣ୍ଡ ଗ୍ରନ୍ଥର ଆମୂଳାନ୍ତ ବିଚାର କଲେ କବିଙ୍କର ଅସୀମ ଶକ୍ତିମତ୍ତା ଓ ବିଦ୍ୱତ୍ତା ସ୍ପଷ୍ଟ ପ୍ରତୀୟମାନ ହୁଏ । ଏ ମହୋଦୟ ବହୁବିଧ ଶାସ୍ତ୍ରପାଠରୁ ବଞ୍ଚିତ ଥିଲେ ସୁଦ୍ଧା ଦେବୀଙ୍କ ପ୍ରସାଦରୁ ଅଥଚ ପୂର୍ବଜନ୍ମ ବାସନାରୁ ଯେ ଯଥାସାଧ

---

(୧) କ୍ୱ ସୂର୍ଯ୍ୟପ୍ରଭବୋବଂଶଃ କ୍ୱ ଚାଳ୍ପବିଷୟା ମତିଃ ।
ଇତ୍ୟାଦି । କାଳିଦାସ ।
କେ ଯଂ ପୁନର୍ମମଣିଶୋର ଗଭୀରବାଚା । ଇତ୍ୟାଦି ।
ଅଭିନବ କାଳିଦାସ ।

ପାଣ୍ଡିତ୍ୟ ଲାଭ କରିଥିଲେ, ଏଥିରେ କୌଣସିମତେ ସନ୍ଦିହାନ ହେବାର କଥା ନାହିଁ। କବି ମଧ ନିଜେ କହି ଅଛନ୍ତି, ମୁଁ ଶାସ୍ତ୍ରମାନ ନ ପଢ଼ି ସୁଦ୍ଧା ଦେବୀଙ୍କ ବରପ୍ରସାଦରୁ ପଣ୍ଡିତ ହୋଇ ପାରିଅଛି ।(୧)

ଏ ସ୍ଥଳରେ ଏହାଙ୍କର ଆଉ ଗୋଟିଏ କଥା ପ୍ରକାଶିତ ରଖିବା ଉଚିତ ବୋଧକରୁ ଅଛୁଁ । ଏ କବି ଆତ୍ମଦୈନ୍ୟାଦି ପ୍ରକାଶନାବସରରେ କିଞ୍ଚିଦ୍ ଅବହିଥିଥାସହ ପ୍ରକାଶ କରି ଅଛନ୍ତି କି ''ରାମ ପାଟଣା ବା କନକପୁର ପାଟଣା କିମ୍ବା କନକାବତୀ ପାଟଣା(୨) ଯାହା କି ସମୟରେ ତାହାଙ୍କର ନିବାସଭୂତ ସ୍ଥାନ ଥିଲା, ତହିଁରେ ତାହାଙ୍କର ସୁଖ ଶାନ୍ତିର ସଂସ୍ଥାନ ହୋଇପାରୁ ନ ଥିଲା ।'' ପାଠକେ ଜାଣିଅଛନ୍ତି, ''ଦୁଃସ୍ଥାନସ୍ଥିତିହେତୋର୍ଗୁଣବାନପି ହାସ୍ୟତାଂ ଯାତି ।'' କେବଳ ''ହାସ୍ୟତାଂ ଯାତି'' ଏତିକି ନୁହେଁ, ''ଦୁଃସହକଷ୍ଟଂ ଭୁନକ୍ତି'', ''ଅସୀମସନ୍ତାପସମୁଦ୍ର ମଧ୍ୟେ ମଜ୍ଜତି'', ''ହତପ୍ରଜ୍ଞୋ ଭବତି ଚ ।'' ଭୁକ୍ତଭୋଗୀ ମାତ୍ରକେ ଅବଶ୍ୟ ସ୍ୱୀକାର କରିବେ, ଦୁଃସମାଜ ମନୁଷ୍ୟକୁ ଅପଦାର୍ଥ କରି ପକାଏ, ହତପ୍ରଜ୍ଞ କରି ପକାଏ । ପାରିବାରିକ ସମାଜ ହେଉ କିମ୍ବା ଜାତୀୟ ସମାଜ ହେଉ ନଚେତ୍ ଏକତ୍ରାବସ୍ଥିତି ସମାଜ ହେଉ ଅର୍ଥାତ୍ ଯେଉଁମାନଙ୍କ ସଙ୍ଗେ ଏ ସମସ୍ତ ପ୍ରକାର ସମ୍ବନ୍ଧ ବା ସମ୍ପର୍କ ରଖିବାକୁ ବାଧ, ସେ ଯଦି ଅଶିକ୍ଷିତ ବା ଅସଭ୍ୟ ଅଥଚ ଦୁଷ୍ପ୍ରବୃତ୍ତ ଥାଏ, ତେବେ ତଦଧୀନ ବ୍ୟକ୍ତିର ଅବସ୍ଥା ବଡ଼ ଶୋଚନୀୟ ହୋଇପଡ଼େ । ଅନୁମାନ ହୁଏ, ଆମ୍ଭମାନଙ୍କର ଏହି ଆଦିମ ମହାକବି ମହୋଦୟ ସେପରି ଦୁରବସ୍ଥାରେ କେତେକ ଦିନ ପଡ଼ିଥିଲେ; ତଥାପି ସେ ଭକ୍ତାନୁକମ୍ପିତହୃଦୟା ଦେବୀଙ୍କ କୃପାବଳରୁ ସମସ୍ତ ପ୍ରକାର ଅଭାବ ଓ ଦୁର୍ଭାବରୁ ମୁକ୍ତି ପାଇଥିଲେ । ଶ୍ରୀ ସାରଳା ଦେବୀଙ୍କୁ ହୃଦୟପ୍ରାସାଦର ଅଧିଷ୍ଠାତ୍ରୀ ଦେବତା ରଖି ଅସାଧ ସାଧନ କରିପାରୁଥିଲେ ।

ଆହେ ସାଧୁଜନେ ମହାଭାରତ ପରିମାଣି ବୁଝ ।
ଲେଖନ୍ତେ ଅନ୍ତ କରି ନୁହଇ ମହାଭାରତ ଯୁଦ୍ଧ ।

---

(୧) ନ ପଢ଼ି ପଣ୍ଡିତ ହେଲି ମୋତେ ସାରଳା ପ୍ରସନ୍ନ ।
ଜନ୍ମେ ଜନ୍ମେ ମୋତେ କହଇ ସେ ଜ୍ଞାନ । ବିରାଟପର୍ବ ।
ନ ପଢ଼ି ପଣ୍ଡିତ ମୁଁ ନ ସାଧି ବେଦବିଦ୍ୟା ।
ସଭାପର୍ବ, ୧୨୯ ପୃ: ଇତ୍ୟାଦି ।

(୨) କନକପୁର ପାଟଣା ବା କନକାବତୀ ପାଟଣାର ଆଧୁନିକ ନାମ କନକପୁର । ଏହାର ପାର୍ଶ୍ୱରେ ଚନ୍ଦ୍ରଭାଗା ପ୍ରବାହିତ । ଏହି ଗ୍ରାମକୁ କବିଙ୍କ ଅଗ୍ରଜ ପର୍ଶୁରାମ ବସାଇଥିଲେ ବୋଲି ଲୋକେ କହନ୍ତି । ଏହାର ଅନତିଦୂରରେ ଶାରଳା ନାମକ ଗ୍ରାମ । ଏହା କବିଙ୍କ ଆଦିନିବାସ ସ୍ଥାନ । ସାରଳା ଦେବୀ ମଧ ପ୍ରଥମେ ଏହିଠାରେ ପ୍ରତିଷ୍ଠିତ ଥିବାର ଶୁଣାଯାଏ ।

ଅସାଧ ସାଧ ପୁଣ କଲା କାର ବୁଦ୍ଧି ।
ଅସଞ୍ଚୟ ଯୁଦ୍ଧ ଅଟଇ ପୟୋଧି ।
ସକଳ ଦୃଶ୍ୟ ସେ କହିବାକୁ ମୋତେ ।
ଶୟଳଜନେ ନ ବୁଝନ୍ତି ଗହଳ ଲେଖନ୍ତେ ।
ତେଣୁ କରି କହିଲି ଠିକ ଠିକ ବାକ୍ୟ ।
ଶ୍ରୀ ସାରଳା ପ୍ରସାଦେ ମୋତେ ନୁହଇ ଅଶକ୍ୟ ।
ମୁହିଁ ଭ୍ରାନ୍ତି କରିବି କୁଟୁମ୍ବ ଦେଖନ୍ତେ ।
ମାୟା ସଂସାର ସେ ବଞ୍ଚାଇ ଦିଅଇ ମୋତେ ।
ହେ ବୁଧଜନେ ମୁଁ ମୂର୍ଖ ଅପଣ୍ଡିତ ।
କୁଶାସନେ ମୁଁ ବସଇ ନିଶାଗତ ।
ରାମପାଟଣା ହେତୁ ନାହିଁ ମୋର ଭଲେ ।
ନିକଟ ଶାସନେ ନ ବସିଲି ଶାସନିଙ୍କ ତୁଲେ ।
ଯକ୍ଷପୁରବାସିନୀ ସାରଳା ଚଣ୍ଡୀ ବୋଲି ।
ତାହାର ବଚନେ ମୁଁ ଭଗତିରେ କହିଲି ।
ନକଲି ପୁଣ୍ୟ ମୁଁ ନ କଲି ବଡ଼ ଜନେ ସେବା ।
ଅଦ୍ଭୁତେ ଆଜ୍ଞାଦେଲେ ମହାଭାରତ କହିବୁରେ ବାବା ।
ଇତ୍ୟାଦି । ଦ୍ରୋଣପର୍ବ ।

ଛାପାରେ ପଦ୍ୟଗୁଡ଼ିକ କିଛି ଭିନ୍ନ ପ୍ରକାର ହୋଇଅଛି ।

ଦ୍ରୋ.ପ. ୧୦୮ ପୃଷ୍ଠା ଦେଖନ୍ତୁ ।

ଏ ସ୍ଥଳରେ ଆଉ ଗୋଟିଏ କଥା ସୂଚିତ କରିବା ଉଚିତ ବୋଧ କରୁଅଛୁଁ । ବିରାଗିବୃତ୍ତି ସାରଳାଦାସେ ନିଜ ପାରିବାରିକ ପରିଚୟ କୁତ୍ରାପି ଦେଇ ନାହାନ୍ତି । କେବଳ ଜ୍ୟେଷ୍ଠଭ୍ରାତା ପର୍ଶୁରାମଙ୍କ ନାମମାତ୍ର ଉଦ୍‌ଘୋଷ କରି ଅଛନ୍ତି । ପିତା ମାତା ପୁତ୍ର ଓ କଳତ୍ର ପ୍ରଭୃତିଙ୍କର ଆଭାଷ ସୁଦ୍ଧା ଦେଇ ନାହାନ୍ତି । ନିଜେ ନାନା ପ୍ରକାର ଅବାନ୍ତର କଥାମାନଙ୍କରେ ବାବଦୂକ ହୋଇ ସୁଦ୍ଧା ପ୍ରୟୋଜନମତେ ଏଡ଼େବଡ଼ ଗ୍ରନ୍ଥ ମଧରେ କିଞ୍ଚିଦ୍‌ମାତ୍ର ପରିଚୟ ନ ଦେବା ବଡ଼ ସନ୍ଦେହର କଥା । ଏହାଙ୍କର ଅନ୍ୟତର ଗ୍ରନ୍ଥ ଚଣ୍ଡୀପୁରାଣ ପ୍ରଭୃତି ଦେଖି ସମୟରେ ତାହାର ବିଚାର କରିବାର ଇଚ୍ଛା ରହିଲା । ସେ ଯାହାହେଉ ଏହାଙ୍କର କଳତ୍ର ସ୍ନେହ ସମ୍ପତ୍ତି ତାଦୃଶ ପରିପୁଷ୍ଟକା ଥିବାର ଅନୁମିତ ହୁଏ ନାହିଁ । ଯେତେଦୂର ସମ୍ଭବ, ଦୁର୍ଭାବାପନ୍ନ ହୋଇଥାଇପାରେ । ମାତ୍ର ଏହାର କୌଣସି ପ୍ରତ୍ୟକ୍ଷ ପ୍ରମାଣ ପ୍ରକାଣ୍ଡ ଗ୍ରନ୍ଥ ମଧରେ କୁତ୍ରାପି ନିହିତ ନାହିଁ ସତ୍ୟ, ତଥାପି ଆଦିପର୍ବରେ

ଗଙ୍ଗା ଓ ଶାନ୍ତନୁଙ୍କର ପବିତ୍ର ଦାମ୍ପତ୍ୟଭାବରେ ସେ ଯାଦୃଶ କଦର୍ଯ୍ୟତାର ଆରୋପଣ କରି ଅଛନ୍ତି, ତଦ୍ୱାରା କବିଙ୍କର ହୃଦୟର ନିଗୂଢ଼ଭାବ ଅନୁମେୟ ହୋଇପାରେ ।

ଏ କବି ମହାଶୟ ଯେ ଶ୍ରୀ ସାରଳା ଦେବୀଙ୍କର ପୂର୍ଣ୍ଣ ପ୍ରସାଦରୁ ମହାପ୍ରଜ୍ଞ ହୋଇ ମହାଭାରତ ଲେଖିପାରି ଅଛନ୍ତି, ଏହାର ପ୍ରମାଣ ବହୁ ସ୍ଥଳରେ ଜାଜ୍ୱଲ୍ୟମାନ ରହିଅଛି । ଆଉ ତାହା ବିଶେଷ ଉଲ୍ଲେଖ କରିବାର ପ୍ରୟୋଜନ ଦେଖୁ ନାହୁଁ । ସାରଳାଦେବୀ ଯେ ଏ କବିଙ୍କ ପ୍ରତି କେବଳ ଅନୁଗ୍ରହ ପ୍ରକାଶ କରିଦେଇ ନୀରବ ବା ନିଶ୍ଚେଷ୍ଟ ରହିଥିଲେ, ତାହା ନୁହେଁ । ସେ କବିଙ୍କ ପ୍ରତି ନିଜ ହୃଦୟସମ୍ଭୂତ ଅସୀମ ଅନନ୍ୟଲଭ୍ୟ ଦୟାରେ ବିବଶା ହୋଇ ସମୟ ସମୟରେ କବିଙ୍କ ହୃଦୟକୁ ସମାଶ୍ୱାସନପୂର୍ବକ ସାରସ୍ୱତ ଶକ୍ତିରେ ଉଦ୍‌ବେଳିତ କରି ଦେଉଥିଲେ ଏବଂ ଅସୀମ ଦୁରଧିଗମ୍ୟ ଗ୍ରନ୍ଥ ଲେଖନର ପ୍ରଧାନ ସାଧନୀଭୂତ ଅମୋଘ ଓ ନିରାମୟ ଲେଖନୀ(୧) ସୁଦ୍ଧା ପ୍ରାପ୍ତ କରାଇ ଦେଇଥିଲେ । କବି ମହୋଦୟ ଦେବୀପ୍ରସାଦପ୍ରାପ୍ତ ଲେଖନୀର ସର୍ବସାଧକ ଶକ୍ତିରେ ଶକ୍ତିମାନ୍ ହୋଇ ନିରବଚ୍ଛିନ୍ନ ଧାରାକ୍ରମରେ ସମସ୍ତ ଲେଖିଗଲେ । ଏହି ମହାଭାରତ ଗ୍ରନ୍ଥଟି ଦେବୀଙ୍କ ପ୍ରସାଦସମ୍ଭୂତ ହୋଇ ଥିବାରୁ ଏହାର ସମଗ୍ର ପାଠ ବନ୍ଧ୍ୟାତ୍ୱ ଓ ମୃତବତ୍ସାତ୍ୱ ନିରାକରଣ କରି ଅବଶ୍ୟ ସୁପୁତ୍ର ପ୍ରାପ୍ତ କରାଇବ ବୋଲି ଦେବୀକୃପାନୁଭାବିତ-ହୃଦୟ କବି ମହୋଦୟ ପ୍ରକାଶ କରି ଅଛନ୍ତି । ଆମ୍ଭେମାନେ ଯେତେଦୂର ଜାଣୁଁ, ଯେତେଠାରେ ଦେଖିଅଛୁଁ, ଯେତେଠାରେ ଶୁଣିଅଛୁ, ସମଧିକ ବ୍ୟକ୍ତି ପୁତ୍ରପ୍ରାପ୍ତି କାମନାରେ ଶ୍ରୀ ସାରଳା ମହାଭାରତ ପାଠ କରନ୍ତି ଏବଂ ନିଷ୍ଠା ନିଷ୍ପତ୍ତିରେ ଶ୍ରବଣ କରିଥାନ୍ତି ।

ଏହାଙ୍କର ପରିଚୟମୂଳକ କେତେକ ପଂକ୍ତିରୁ ଜଣାଯାଏ, ପୂର୍ବକୃତ ପୁଣ୍ୟନିଚୟର ମହିମାବଶରୁ ଏବଂ ଦେବାମୃତାବଳରୁ ଜାତିସ୍ମରତା ଶକ୍ତି ମଧ୍ୟ ଏ ପାଇଥିଲେ । ତଦ୍‌ପ୍ରଭାବରୁ ସେ ତ୍ରୈକାଳିକ ବିଷୟମାନ ଯଥାସାଧ୍ୟ ଅବଗତ ହୋଇ ପାରୁଥିଲେ । ପୁଣି କହନ୍ତି, ସେ ସିଦ୍ଧ ଦେହରେ ପୁରା ଶିବଙ୍କର ଦ୍ୱାରପାଳ ଥିଲେ, ଦୈବବଶତଃ ମାନୁଷଯୋନିରେ କ୍ରମଶଃ ଚାରିଗୋଟି ଜନ୍ମରେ ମର୍ତ୍ତ୍ୟମଣ୍ଡଳରେ ଅବତୀର୍ଣ୍ଣ ହେବାପାଇଁ

---

(୧) × × ×

ଅଭୟବାକ୍ୟେ ଶ୍ରୀ ଶାରଦା ପ୍ରସନ୍ନ ।
ସେ ଯାହା କହଇ ମୁଁ କରଇ ଲେଖନ । × ×
ପ୍ରସନ୍ନେ ଦେଲେ ମୋତେ ଲେଖନ ଗୋଟିଏ ।
ତାହା ଘେନି ଲେଖିଲେ ଦୃଶ୍ୟ ମୋତେ ହୁଏ ।
ତେଣୁ କରି ଲେଖନ କଲି ମୁହିଁ ଗ୍ରନ୍ଥ ।
ସଂପୂର୍ଣ୍ଣ କରି ପଢ଼ିଲେ ହେବ ପୁତ୍ର ଜାତ । ବିରାଟପର୍ବ ।

ଗଣେଶଙ୍କଠାରୁ ଶାପ ଲଭି ଆଗେ କାଳିଦାସ, ଦ୍ୱିତୀୟତଃ ମହାକାଳଧ୍ୱଂସ ଓ ତୃତୀୟତଃ ସାରଳାଦାସ ନାମ ବହି କବିଶକ୍ତିରେ ସଂପନ୍ନ ହୋଇଥିଲେ । ତଥାଚ ଏହି ଜନ୍ମ ପରେ ଆଉ ଥରେ ପୁଣି ମାନୁଷ କଳେବର ଧାରଣ କରିବେ । ପ୍ରତ୍ୟେକ ଜନ୍ମରେ ପଞ୍ଚଦଶ ଲକ୍ଷ ପରିମାଣରେ ସମୁଦାୟ ଷାଠିଏ ଲକ୍ଷ ପଦ ଲେଖି ସାରିଲା ପରେ ପୁନଶ୍ଚ ମର୍ତ୍ତ୍ୟମଣ୍ଡଳ ତ୍ୟାଗ କରି ମହାଦେବଙ୍କର ଦ୍ୱାରପାଳ ହେବେ । ଇତ୍ୟାଦି ।

କୈଳାସ ଦ୍ୱାରପାଳ ନାମ ମୋର ନନ୍ଦୀ ।
ଶାସ୍ତ୍ରର ଆଗମେ ହର ଗଉରାଙ୍କୁ ବନ୍ଦି ।
ଯେଉଁପରି ରତିରସ ସେ ମୋତେ ବୋଇଲେ ।
ମାତା ପିତାଙ୍କ ସଙ୍ଗ ବୋଲିଣ କହିଲେ ।
ତାହା ଶୁଣି ବିଘ୍ନରାଜ ଦେଲେ ମୋତେ ଶାପ ।
ତହୁଁ ଦୋଷୀ ହୋଇଲି ମୁଁ ମନୁଷ୍ୟ ସ୍ୱରୂପ ।
ପ୍ରଥମ ଜନ୍ମରେ ମୁହିଁ ହେଲି କାଳିଦାସ ।
ଦ୍ୱିତୀୟ ଜନ୍ମରେ ମୁହିଁ ମହାକାଳଧ୍ୱଂସ ।
ତୃତୀୟ ଜନ୍ମରେ ମୁଁ ସାରଳାଦାସ କବି ।
ଆଉ ଜନ୍ମେ ମୁହିଁ ମର୍ତ୍ତ୍ୟମଣ୍ଡଳେ ଜନ୍ମିବି ।
ପ୍ରତି ଜନ୍ମେ ମୁଁ ପନ୍ଦର ଲକ୍ଷ କଥା ଭାବି ।
ଚାରି ଜନ୍ମେ ଷାଠିଏ ଲକ୍ଷ କଥା ମୁଁ କହିବି ।
ଉକ୍ତ କଥା କହି ସାରି ଏ ମର୍ତ୍ତ୍ୟମଣ୍ଡଳ ।
ତେବେ ଯାଇ ହୋଇବି ମୁଁ ଶିବ ଦ୍ୱାରପାଳ ।
ମୋର ଜାତି ନ ଜାଣେ ମୁଁ ଜାଣଇ ଯେ ଏହା ।
ସିଦ୍ଧଚଣ୍ଡୀ ଶ୍ରୀ ସାରଳା କଲେ ଯାହା ଯାହା । ସ୍ୱ. ପ.

ଏତାଦୃଶ ପରିଚୟ ପ୍ରଦାନର ପଂକ୍ତିମାନ ସ୍ୱର୍ଗାରୋହଣ ପର୍ବର ପ୍ରାରମ୍ଭରେ ଚିତ୍ରୋତ୍ପଳାତଟନିକଟସ୍ଥ ଯାଜନ ନଗରର ନିବାସିନୀ ବୈଶ୍ୟାତ୍ମଜା ସହ ଯୁଧିଷ୍ଠିରଙ୍କ ବିବାହ ସ୍ଥଳରେ ଲେଖାଅଛି । ତାଳପତ୍ର ପୁସ୍ତକମାନଙ୍କରେ ପ୍ରୋକ୍ତ ବୈଶ୍ୟ କନ୍ୟାର ବୈବାହିକ ବିଷୟ ଅନ୍ୟ ସ୍ଥଳରେ ଲକ୍ଷିତ ଥିଲେହେଁ, କେତେକ ତାଳପତ୍ର ପୁସ୍ତକରେ ଏହି ପଦ୍ୟଗୁଡ଼ିକ ଲେଖା ନାହିଁ । କିନ୍ତୁ ଅନ୍ୟତ୍ର ଲେଖା ଥିବାର ଖୁବ୍ ସମ୍ଭାବନା । ପରନ୍ତୁ ଏହି ଭାବର ପଦ୍ୟଗୁଡ଼ିକ କବି ନିଜେ ଲେଖି ନାହାନ୍ତି, ଅନ୍ୟ କେହି ଲେଖି ଏ ସ୍ଥଳରେ ଭର୍ତ୍ତି କରିଦେଇ ଅଛନ୍ତି ପରା ? ଏହି ଆଶଙ୍କାର ନିରସନ ସୁଦ୍ଧା ସ୍ପଷ୍ଟ ଜଣା ଯାଉଅଛି ।

କାରଣ ଏ ସବୁର ଭାବ ସକୃତ୍ କେବଳ ଲେଖା ଥିବାର ଦେଖାଯାଉ ନାହିଁ । ଅନେକ ସ୍ଥଳରେ ଏହି ଭାବର ପଦ୍ୟମାନ ବିଦ୍ୟମାନ ରହିଅଛି ।

[୧] ମୋତେ ସବୁ ଦିଶଇ ଲେଖିବା ଲୋକ ନାହିଁ ।
ଯୋଗ ବ୍ରହ୍ମ ସାଧନା ନ ଜାଣଇ ମୁହିଁ ।
ଶିବ ଦ୍ୱାରପାଳ ଅଭିସାରିକା କବି ।
ମାନୁଷ ଯୋନିରେ ଜାତ ପ୍ରସନ୍ନ ବାକ୍ୟଦେବୀ । ମୁ. ପ.
କିଛି ସାଧିବି ମୁଁ ତୁମ୍ଭେ ପ୍ରସନ୍ନ ହୋଇଲେ ।
ଶୂଦ୍ରମୁନି ସାରଳାଦାସ ସ୍ତୁତି କରି ବୋଇଲେ ।
ଜୟ ତୁ କାମସେଣା ଗୋ କାମାରୀ କାମାକ୍ଷୀ ।
ଏ ଦୁରାସଦ ପ୍ରତିଜ୍ଞାକୁ ତୁହି ମୋତେ ସାକ୍ଷୀ ।
ନୁହଇ ପଣ୍ଡିତ ମୁଁ ନ ଜାଣଇ ଶାସ୍ତ୍ର ।
ସାଧନେ ବୋଧନେ ମୋତେ ପ୍ରସନ୍ନ ଜଗନ୍ମାତ ।
ଅଭୟେ ଅନ୍ନପୂର୍ଣ୍ଣା ଗୋ ଯକ୍ଷରପୁରବାସୀ
ଯମଦଣ୍ଡି, ମୋତେ ତୁମ୍ଭ ଭୁବନ ଦେସି ।
ସଦାଶିବ ଦ୍ୱାରେ ଦ୍ୱାରପାଳ ପୂର୍ବେ ।
କିଞ୍ଚିତ ଶାପେ ମୁଁ ମାନୁଷ ଜନ୍ମ ଏବେ ।
ବିଷ୍ଣୁ ସ୍ମରଣେ ମୁଁ ପାଇଲି ଚେତନା ।
ମୋର ପୂର୍ଣ୍ଣ କଲେ ସେ ସମସ୍ତ କଳ୍ପନା । ଇତ୍ୟାଦି । ବ.ପ.

ଏ ସବୁ ଛଡ଼ା ବିରା ପର୍ବର ଶେଷଭାଗରେ କବିପ୍ରବର ସମସ୍ତବିଧ ଆତ୍ମ ପରିଚୟର ପଛିକାରେ ମଧ୍ୟ ଏହି ଭାବ ନିହିତ କରି ଅଛନ୍ତି ।

X X X X

ପୂର୍ବର ପାତକେ ଜନ୍ମିଲି ମାନୁଷ ଯୋନି ।
ଦେବୀର ପ୍ରସନ୍ନେ ମୁଁ ହେଲି ଶୂଦ୍ରମୁନି ।

X X X X

ଅତଏବ ବିଶ୍ୱାସ ହୁଏ, ଏହି ଭାବ କେବଳ କବିଙ୍କର ହୃଦୟନିହିତ ଥିଲା । ଘଟନା ଅଳୀକ କିମ୍ବା ନିର୍ବ୍ୟଳୀକ ଭାବନ୍ତୁ, କବି କେବଳ ଏପରି ଲେଖିଯାଇ ଅଛନ୍ତି, ଏଥିରେ କିଛିମାତ୍ର ସନ୍ଦେହ ହେଉନାହିଁ । ସୁତରାଂ ସାରଳାଦାସ କବି ନିଜେ ନିଜର ଏକ ଭାବୀ ଜନ୍ମ ଅବଶିଷ୍ଟ ଥିବାର କହି ଥିବାରୁ କେବଳ ନୃସିଂହପୁରାଣ ରଚୟିତା ଶ୍ରୀ

ପିତାମ୍ବରଦାସ ମହାଶୟ ତଦନୁସରଣରେ ଆପଣାକୁ ଜନ୍ମାନ୍ତରଗ୍ରାହୀ ସାରଳାଦାସ ବୋଲି ପରିଚୟ ଦେବାକୁ ଅଗ୍ରସର ହୋଇପାରି ଅଛନ୍ତି ।

ଏ ଘେନି ବିଷ୍ଣୁ ଆଜ୍ଞାରେ ହେଲି ମୁଁ ମନୁଷ୍ୟ ।
ଆଦିଜନ୍ମେ ବୋଲାଇଲି ନାମ କାଳିଦାସ ।
ସେ ଜନ୍ମେ ମୋତେ ପ୍ରସନ୍ନ ହେଲେ ବାକ୍‌ଦେବୀ ।
ମାଘ (ରଘୁ ?) କାବ୍ୟ କରିଣ ରଖିଣ ଗଲି ଭୁବି ।
ଦ୍ୱିତୀୟ ଜନ୍ମେ ହୋଇଲି ଜଗନ୍ନାଥ ଦାସ ।
ଶ୍ରୀଭାଗବତ ଗ୍ରନ୍ଥ ମୁଁ କଲଇଁ ପ୍ରକାଶ ।
ତୃତୀୟ ଜନ୍ମେଣ ବଳରାମ ଦାସ ହେଲି ।
ରାମାୟଣ ଗ୍ରନ୍ଥ ମୋ ହୃଦୁଁ ପ୍ରକାଶିଲି ।
ଚତୁର୍ଥ ଜନ୍ମେଣ ହେଲି ମୁଁ ଅଚ୍ୟୁତ ଦାସ ।
ବାନ୍ଧିଲି ହରିବଂଶ ପୁରାଣ ଗୀତ ରସ ।
ତହିଁ ଉତ୍ତାରୁ ଯାଇ ପଞ୍ଚମ ଜନ୍ମେ ପୁଣ ।
ସାରଳାଦାସ କବି ହୋଇଲି ଜଗତେଣ ।
ଶ୍ରୀମହାଭାରତ ଯାକ ବାନ୍ଧିଲି ପ୍ରାକୃତେ ।
ଅଠର ଖଣ୍ଡ ହୋଇଣ ରହିଲା ଜଗତେ ।
ତହିଁ ଉତ୍ତାରୁ ବାନ୍ଧିଲି ଚଣ୍ଡିକା ପୁରାଣ ।
ସାଧୁଙ୍କ କଲ୍ୟାଣୁ ମୁଁ ଅଟଇ ବଡ଼ ଜଣ ।
ଷଷ୍ଠ ଜନ୍ମେଣ ମହାଦେବ ଦାସ ମୁହିଁ ।
ବିଷ୍ଣୁ ପୁରାଣ, ବିଷ୍ଣୁ କେଶରୀ ଗଲି ଲିହି ।
ଏ ଅନ୍ତେ ପଦ୍ମପୁରାଣ କରିଣ ଲିହିଲି ।
ଶ୍ରୀଗୋବିନ୍ଦ କୃପାରୁ ମୁଁ ପଦ ନିର୍ଭା କଲି ।
ସପ୍ତମ ଜନ୍ମେ ମୋର ଶୁଣିବା ସାଧୁଜନେ ।
ଗୋବିନ୍ଦ ଆଣି ମୋତେ ସଞ୍ଚିଲେ ବଡ଼ ସ୍ଥାନେ ।

x x x x

ଇତ୍ୟାଦି । ନୃ. ପୁ. ଦ୍ୱିତୀୟ ତରଙ୍ଗ ।

କିନ୍ତୁ ଏହାଙ୍କ କଥାଗୁଡ଼ିକ ସାରଳାଦାସଙ୍କ ମତରେ ସଂପୂର୍ଣ୍ଣ ଐକମତ୍ୟ ସ୍ଥାପନ କରିପାରି ନାହିଁ । ଉଭୟ କବିଙ୍କର ପଦ୍ୟଗୁଡ଼ିକୁ ବିଚାର କରିନେଲେ ଏହି ଭାବ କାଳ୍ପନିକ ପରି ଆଭାସୁ ଅଛି । ସାରଳାଦାସଙ୍କ ସମୟକୁ ବା ତତ୍‌ପୂର୍ବରୁ କେହି ପ୍ରଧାନ ଓଡ଼ିଆ

କବି ନ ଥିଲେ ବୋଲି ସେ ମହାଶୟ କାଳିଦାସ ଓ ମହାକାଳଙ୍କୁ ଆପଣାର ଜନ୍ମାନ୍ତର ସ୍ଥାନୀୟ କରିଅଛନ୍ତି । ପୀତାମ୍ବର ଦାସଙ୍କ ବହୁ ପୂର୍ବେ ଅନେକ ପ୍ରଧାନ ପ୍ରଧାନ ଓଡ଼ିଆ ପୌରାଣିକ କବିମାନେ ଆବିର୍ଭୂତ ହୋଇଯାଇ ଥିଲେ, ସେମାନଙ୍କ ନାମ ଓ ଗ୍ରନ୍ଥ ଶୁଣିବାକୁ ଓ ପଢ଼ିବାକୁ ଏ ପାଇ ପାରିଥିଲେ; ଅତଏବ ସେମାନଙ୍କୁ ଆପଣାର ଜନ୍ମାନ୍ତର ସ୍ଥାନୀୟ କରି ପକାଇ ଅଛନ୍ତି । ସୁତରାଂ ଏଥିରେ ଆନୁପୂର୍ବିକ କ୍ରମ ସୁଦ୍ଧା ଭ୍ରାନ୍ତ ଓ ବିପରୀତ ହୋଇଅଛି । ଏ ମହାଶୟ ସର୍ବାଗ୍ରବର୍ତ୍ତୀ ସାରଳାଦାସଙ୍କୁ ସର୍ବପଶ୍ଚାତ୍ ପକାଇ ଦେଇ ଅଛନ୍ତି । ଏହା ତାହାଙ୍କର ଅସାବଧାନତାର ଫଳ ବୋଲିବାକୁ ହେବ । ଯେ ଯାହାହେଉ ଶିବ ଦ୍ୱାରପାଳ ନନ୍ଦୀ ଯେ ଗାଣପତ୍ୟ ଶାପରେ ଅଭିଶପ୍ତ ହୋଇ କ୍ରମଶଃ ସାରଳାଦାସ ରୂପରେ ଅବତୀର୍ଣ୍ଣ ହୋଇଥିଲେ, ଏହା କେତେଦୂର ସତ୍ୟ କହି ନ ପାରୁ । ସଂସ୍କୃତ ଭାଷାରେ ସମଗ୍ର ଧୀଶକ୍ତି-ସଂପନ୍ନ ଐଶ୍ୱରିକ ଭକ୍ତି ନିଷ୍ଠାଗରିଷ୍ଠ ଅତ୍ୟନ୍ତ ମହନୀୟ ଗ୍ରନ୍ଥ ଲେଖକ, ଏମନ୍ତ କି, ପ୍ରୋକ୍ତ ଭାଷାର ସଞ୍ଜୀବନୀ ଶକ୍ତିର ଜନକ କବିମାନେ ମଧ୍ୟ ନିଜ ଭାଗ୍ୟରେ ଜାତିସ୍ମରତା ଶକ୍ତି ପ୍ରାପ୍ତ ହୋଇଥିବାର ଉଲ୍ଲେଖ କରି ନାହାନ୍ତି । ସାରଳାଦାସେ ତାହା କିପରି ଲଭି ପାରିଥିଲେ, ଠିକ୍ ବିଶ୍ୱାସସୂତ୍ରରେ କହି ନ ପାରୁଁ । ପରନ୍ତୁ ସଂସ୍କୃତର ପୁରାଣମାନଙ୍କରେ ପୂର୍ବବାସନାବଶତଃ ଏତାଦୃଶ ଶକ୍ତି ସଂପ୍ରାପ୍ତିର ଚରିତମାନ ଅନେକତ୍ର ଉକ୍ତ ଅଛି । କି ବ୍ରାହ୍ମଣ, କି କ୍ଷତ୍ରିୟ, କି ବୈଶ୍ୟ, କି ଶୂଦ୍ର, ଏପରି କି, ତୀର୍ଯ୍ୟକ୍‌ଜାତୀୟ ବିଶେଷ ବିଶେଷ ବ୍ୟକ୍ତିମାନେ ସୁଦ୍ଧା ପୂର୍ବବାସନାନୁବାସିତ ହୋଇ ଜାତିସ୍ମର ଥିବାର ପ୍ରମାଣମାନ ଦେଦୀପ୍ୟମାନ ରହିଅଛି । ତେବେ ବି ସାହସରେ କହି ପାରିବୁଁ ଯେ, ପ୍ରସନ୍ନ- ସାରଳାଦାସଙ୍କର ଏହି ଭାବବିଦ୍ୟୋତନ ଅଳୀକ କେବଳ ? ଆପଣମାନେ ଅବଶ୍ୟ ବିଶ୍ୱାସ କରିବେ ଯେ, ଐଶ୍ୱରିକ ଶକ୍ତିସଂପନ୍ନ ଭକ୍ତିର କିଛି ତାଦୃଶ ଅସାଧ ନୁହେ । ଏ ମହାଶୟ ପ୍ରଗାଢ଼ଭକ୍ତିପ୍ରବଣ ହୃଦୟରେ ଏବଂ ଦେବୀପ୍ରଦତ୍ତ ଶକ୍ତିରେ ଆତ୍ମାକୁ ଗୌରବାନ୍ୱିତ କରି ସୁଦ୍ଧା ଏପରି କହି ପାରିଥିବେ । ଯଦି କେହି କହିବେ, ଅନ୍ୟ କେହି ପ୍ରତିଭାପୂଜକ ''ଶ୍ରୀମାନ ସାରଳାଦାସଙ୍କ ପ୍ରତିଭା ଏକାନ୍ତ ପୂଜନୀୟା'' ଜାଣିପାରି ତାହାଙ୍କୁ ଦେବାତ୍ମାରେ ଅନୁପ୍ରାଣିତ କରି ସମୁଚିତ କବିମାନଙ୍କର ଅନର୍ଘ ଆସନୋପରି ସମାରୂଢ଼ କରାଇ ଥରେ ଥରେ ପୂଜା କରି ଅଛନ୍ତି, ଆମ୍ଭେ କହୁଁ, ତଥାପି ଏହା ଦୂଷଣୀୟ ନୁହେ ।

ପୂର୍ବୋକ୍ତ ଭାବର ପରିପୋଷକରୂପେ ଆହୁରି ଅନେକ ସ୍ଥଳରେ ଅନେକ ପ୍ରକାର ଚରିତ ଲେଖାଅଛି । ସେ ସବୁ ତାଦୃଶ ସୁସଂଗତ ବୋଧ ନ ହେବାରୁ ଅଥଚ ଗ୍ରନ୍ଥବିସ୍ତୃତି ଭୟରୁ ପରିତ୍ୟାଗ କରି କେବଳ ମଧ୍ୟପର୍ବରେ ଲିଖିତ ଗୋଟିଏ ଚରିତସଂବିଧାନକୁ ମାତ୍ର ଏ ସ୍ଥଳରେ ପ୍ରଦର୍ଶନ କରୁଅଛୁଁ । ଲେଖାଅଛି, ଜଗଦ୍ଧାତ୍ରୀ ମହାମାୟା ଆଦିଶକ୍ତି ବିଷ୍ଣୁଙ୍କ ଆଦେଶରେ କନକପୁର ପାଟଣା ନାମକ ସ୍ଥାନରେ ଶ୍ରୀ ସାରଳା ଚଣ୍ଡୀରୂପରେ ଆବିର୍ଭୂତ

ହୋଇ ସ୍ୱପୁତ୍ରକଳ୍ପ ସାରଳାଦାସଙ୍କ ପ୍ରତି ସୁପ୍ରସନ୍ନା ହେଲେ, ତାଙ୍କ ହୃଦୟରେ ଶକ୍ତି ସଂଚାର କରାଇ ମହାଭାରତକୁ ତାଙ୍କ ମୁଖରେ କୁହାଇଲେ । ଇତ୍ୟାଦି । ଛାପା ପୁସ୍ତକରେ ମଧ୍ୟପର୍ବ ୮୨ ପୃଷ୍ଠାରେ ଲେଖାଥିଲା ପରି ୧୧୨ ପୃଷ୍ଠାରେ ମଧ୍ୟ ଗୋଟିଏ ଚରିତର ଅନ୍ତିମ ଭାଗରେ ଏ ସବୁ ଅବିକଳ ଭାବରେ ଲେଖାଅଛି । କିନ୍ତୁ ଏ ବିଷୟସୂଚକ ପଂକ୍ତିଗୁଡ଼ିକ କେତେକ ତାଳପତ୍ର ପୁସ୍ତକରେ ଦେଖାଯାଏ ନାହିଁ । ତଥାପି ସାରଳାଦାସଙ୍କର ଏତାଦୃଶ କ୍ରମରେ ପୌରାଣିକ ଚାରିତ୍ରଶକ୍ତିସଂପନ୍ନତା କବିଶକ୍ତିସଂପନ୍ନତା, ଦେବତା ବରପ୍ରାପ୍ତି ପ୍ରଭୃତି ବିଷୟମାନଙ୍କର ସ୍ଥୂଳ ସାରାଂଶମାନ ସେହି ସେହି ପୁସ୍ତକମାନଙ୍କର ଅନ୍ୟାନ୍ୟ ସ୍ଥଳମାନଙ୍କରେ ସୁସ୍ପଷ୍ଟ ବିଦ୍ୟମାନ ରହିଅଛି ।

ଆମ୍ଭମାନଙ୍କର ଏହି ଭାରତ କବି ମହାଶୟ ଜ୍ୟୋତିଃଶାସ୍ତ୍ରରେ ମଧ୍ୟ ବିଶେଷତଃ ତଦୀୟ ତୃତୀୟ ସ୍କନ୍ଧ (୧) ସଂହିତା ଭାଗରେ ସମଧିକ ପାରଦର୍ଶିତା ଲାଭ କରିଥିଲେ । ଏହାର ଜ୍ୱଳନ୍ତ ପ୍ରମାଣମାନ ଏହି ଗ୍ରନ୍ଥମଧ୍ୟରୁ ସମ୍ୟକ୍‌ରୂପେ ମିଳୁଅଛି । ପ୍ରାୟଶଃ ପ୍ରତ୍ୟେକ ପ୍ରଧାନ ଘଟନା ଅର୍ଥାତ୍ ଯାତ୍ରା, ଜନ୍ମ, ରଜୋଦର୍ଶନ, ବିବାହ, ଗଣ୍ଡଦୋଷ ପ୍ରଭୃତି ସ୍ଥାନମାନଙ୍କରେ ଗ୍ରହ-ନକ୍ଷତ୍ରାଦିର ପ୍ରକୃଷ୍ଟାପ୍ରକୃଷ୍ଟ ସଂସ୍ଥାନଜନ୍ୟ ଫଳାଫଳର ବିବରଣ ଲେଖିଯାଇ ଅଛନ୍ତି । ଏହାର ପ୍ରତ୍ୟେକ ଅଂଶର ପ୍ରତ୍ୟେକ ବିବରଣ ନିର୍ଦ୍ଦେଶତଃ ଦେଖାଇବା ଅନାବଶ୍ୟକ । ଏହି ଭାରତରୁ ଏତାଦୃଶ ଯେ କୌଣସି ସ୍ଥଳ ବାହାର କରି ଦେଖନ୍ତୁ, ଅବଶ୍ୟ ଏହାର ସତ୍ୟତା ଉପଲବ୍ଧି କରି ପାରିବେ ।

ମୂଳଗ୍ରନ୍ଥରେ ମଧ୍ୟ ଏହିପରି ଜ୍ୟୌତିଷିକ ବିଷୟମାନ ସ୍ଥାନେ ସ୍ଥାନେ ଦିଆଯାଇଅଛି । ମାତ୍ର ସେସବୁ ଆଦର୍ଶ କରି ଏ ଲେଖି ନାହାନ୍ତି । ନିଜ ବୁଦ୍ଧିମତେ ମୂଳଗ୍ରନ୍ଥରୁ ଭିନ୍ନରୂପ ହେଲେ ସୁଦ୍ଧା ଶାସ୍ତ୍ରର ଅବିରୋଧକ୍ରମରେ ଲେଖିଯାଇ ଅଛନ୍ତି । କିନ୍ତୁ ମୌଳିକ ଯଥାର୍ଥତା ରହି ନାହିଁ । ଏ ସମ୍ବନ୍ଧରେ ଆଦ୍ୟ ପ୍ରକରଣରେ ଆବଶ୍ୟକମତେ କେତେକ ସ୍ଥଳ ଦେଖାଇ ଅଛୁଁ, ପୁଣି ଏ ସ୍ଥଳରେ ଉଭୟ ଗ୍ରନ୍ଥର ଏକ ଦୁଇ ବିବରଣ ମାତ୍ର ଦିଗ୍‌ଦର୍ଶନତଃ ବିଚାର କରିନେଲେ ପାଠକଙ୍କୁ ଏହାର ଯାଥାର୍ଥ୍ୟ ଉପଲବ୍ଧି, ବୋଧହୁଏ, ଯଥେଷ୍ଟ ହୋଇ ପାରିବ ।

## ଯୁଧିଷ୍ଠିରଙ୍କ ଜନ୍ମଦିନର ବିବରଣ

ମେଷ ମାସ ଶୁକ୍ଳପକ୍ଷ ପ୍ରତିପଦା ତିଥି ।
ସେ ଦିନ ଚନ୍ଦ୍ରବାର ଅଢ଼ାଇ ପ୍ରହର ରାତି ।
ଦ୍ୱିଜା ନକ୍ଷତ୍ର ଭୋଗ ସତାଇଶ ଦଣ୍ଡ ।

---

(୧) ସ୍କନ୍ଧତ୍ରୟାତ୍ମକଂ ଶାସ୍ତ୍ରଂ ଆଦ୍ୟଂ ସିଦ୍ଧାନ୍ତସଂଜ୍ଞକଂ ।
ଦ୍ୱିତୀୟଂ ଜାତକସ୍କନ୍ଧଂ ତୃତୀୟଂ ସଂହିତାହ୍ୱୟଂ ।

ମେଷ ରାଶିରେ ନାହିଁ ପାପଗ୍ରହ ଦଣ୍ଡ ।
ମଙ୍ଗଳ କ୍ଷତ୍ରିକୁଳେ ଉପୁଜିଲା ବଳା ।
ଚନ୍ଦ୍ର ରୋହିଣୀ ଯେ ସପ୍ତମ ଘରେ ମେଳା ।
(ପ୍ରଥମ) ପାଦେ ଜନ୍ମିଲା ଚତୁର୍ଥ ଘରେ ବୃହସ୍ପତି ।
ତୈତିଳ ନାମେ କରଣ ଯୋଗ ଯେ ବୈଧୃତି ।
ଚୌଧର୍ମ ନାମ କାଳ ଅମୃତ ଯୋଗ ଘେତି ।
ଐଶାନ୍ୟରେ ଯୋଗିନୀ ଯେ ମହାଲକ୍ଷ୍ମୀ ମୂର୍ତ୍ତି ।
ମାହେନ୍ଦ୍ର ଯୋଗ ଘେନି ଉତପତି ନନ୍ଦନ ।
ଗୁରୁଙ୍କ ବଚନେ ସାନନ୍ଦ ପାଣ୍ଡୁ ରାଜନ । ଆ. ପ.

ମୂଳଗ୍ରନ୍ଥରେ ଏହା ଭିନ୍ନ ପ୍ରକାର ।

ଐନ୍ଦ୍ରେ ଚନ୍ଦ୍ର ସମାଯୁକ୍ତେ ମୁହୂର୍ତ୍ତେଽଭିଜିତେଽଷ୍ଟମେ
ଦିବାମଧ୍ୟଗତେ ସୂର୍ଯ୍ୟେ ତିଥୌ ପୂର୍ଣ୍ଣେଽତିପୂଜିତେ ।
ସମୃଦ୍ଧଯଶସଂ କୁନ୍ତୀ ସୁଷାବ ପ୍ରବରଂ ସୁତଂ ।

ଆ. ପ. ୧୨୨ ଅ:

ମୂଳ ଟୀକାରେ ଲେଖାଅଛି କି, ତୁଳା ଅୟନ ମାର୍ଗଶିର ମାସର ଅତି ପ୍ରଶଂସିତା ଶୁକ୍ଳପଞ୍ଚମୀ ପର୍ଣ୍ଣାତିଥିରେ ଚନ୍ଦ୍ରଯୁକ୍ତ ଜ୍ୟେଷ୍ଠାନକ୍ଷତ୍ରରେ ଅଭିଜିତ୍ ନାମକ ଅଷ୍ଟମ ମୁହୂର୍ତ୍ତରେ ଦିବସର ମଧ୍ୟଭାଗରେ କୁନ୍ତୀ ସମୃଦ୍ଧଯଶା (ଯୁଧିଷ୍ଠିରଙ୍କୁ) ସୁତପ୍ରବରଙ୍କୁ ପ୍ରସବ କଲେ । ଇତ୍ୟାକାର ସ୍ଥଳମାନଙ୍କରୁ ସ୍ପଷ୍ଟ ଜଣାଯାଏ, ସାରଳାଦାସ କବି ବ୍ୟାସ କବିଙ୍କର କୌଣସି ଘଟନାସଂକ୍ରାନ୍ତ ତିଥି ବାରାଦିର ଅନୁସରଣ କରି ନାହାନ୍ତି । ସେ ଜ୍ୟୋତିଃଶାସ୍ତ୍ରରେ କେତେଦୂର ପ୍ରବୀଣ କିମ୍ବା ପ୍ରଧାନ କାର୍ତ୍ତାନ୍ତିକ ଥିବାରୁ ତତ୍ ତତ୍ ବିଷୟମାନଙ୍କର ଉପଯୁକ୍ତ ଓ ଶୁଭକାରକ ତିଥି ବାରାଦି ଓ ଗ୍ରହନକ୍ଷତ୍ରାଦିର କାଳ୍ପନିକ ସଂସ୍ଥାନ ନିର୍ଦ୍ଦେଶ କରି ଅଛନ୍ତି । ଏତାଦୃଶ ବିବରଣଗୁଡ଼ିକ ମୌଳିକକ୍ରମରୁ ଭିନ୍ନ ପ୍ରକାର ଓ କାଳ୍ପନିକ ସତ୍ୟ, ତଥାପି ଶାସ୍ତ୍ରୀୟ କ୍ରମର ବିରୁଦ୍ଧ ହୋଇ ନ ପାରେ ବୋଲି ଆମ୍ଭମାନଙ୍କର ବିଶ୍ୱାସ । କବି ଆହୁରି ଅନେକ ସ୍ଥଳରେ ଶିଶୁରିଷ୍ଟ ବା ଗଣ୍ଡଯୋଗର ମଧ୍ୟ ଉଲ୍ଲେଖ କରି ଅଛନ୍ତି । ସେଥିରୁ କେତେକ ସ୍ଥଳ ଆମ୍ଭେମାନେ ଜ୍ୟୋତିଃଶାସ୍ତ୍ରୋକ୍ତ ପ୍ରମାଣ ବାକ୍ୟସହ ମିଳାଇ ଦେଖିଅଛୁଁ, ଠିକ୍ ଶାସ୍ତ୍ରାନୁମୋଦିତ ହୋଇଅଛି । ପାଠକମାନଙ୍କ ଅବଗତ୍ୟର୍ଥ ସେଥିରୁ ଗୋଟିଏ ଦିଓଟି ମେଳନକ୍ରମ ଉଲ୍ଲେଖ କରୁଅଛୁଁ । ମଧ୍ୟପର୍ବର ଅନ୍ତିମ ଭାଗରେ ନୀଳେନ୍ଦ୍ରୀ କନ୍ୟାଙ୍କ ଜନ୍ମ ସ୍ଥଳରେ କବି ଗଣ୍ଡଦୋଷ ଦେଖାଇ ଅଛନ୍ତି । ଏହା ଠିକ୍ ଶାସ୍ତ୍ରସମ୍ମତ ହୋଇଅଛି ।

ବରୁଣଙ୍କ ଅଗ୍ରତେ ଜଳାଧି ମନ୍ତ୍ରୀ କହିଲା ।
ପ୍ରଥମେ ଅଶ୍ୱିନୀ ନକ୍ଷତ୍ର ଆଦ୍ୟ ଗଣ୍ଡ ପାଇଲା ।
ଦିବସେ ଉତପତି ହୋଇଲାଟି ବିରୋଧି ତୁକୁ ।
ପ୍ରଥମେ ଗଣ୍ଡ ଉପୁଜିଲା ଷୋଳ ବରଷକୁ ।
ଦିବସେ ଉପୁଜିଲା ପିତାକୁ ବିରୋଧିଲା ।
ରାତ୍ରେ ଉପୁଜିଲେ ମାତାକୁ ଲାଗଇ ଶାହାସ୍ତ୍ରେ କହିଲା । ମ. ପ.

[୧] ଅଶ୍ୱିନୀମଘମୂଳାନାଂ ତିସ୍ରୋଗଣ୍ଡାଦ୍ୟନାଡ଼ିକାଃ ।
ଅନ୍ତ୍ୟେ ପୌଷ୍ଣୋରଗେନ୍ଦ୍ରାଣାଂ ପଞ୍ଚୈବ ଯବନା ଜଗୁଃ ।
[୨] ଅଶ୍ୱିନ୍ୟାଂ ଷୋଡ଼ଶଢାନି –
[୩] ସନ୍ଧ୍ୟାରାତ୍ରିଦିବାଭାଗେ ଗଣ୍ଡଯୋଗୋଭବଃ ଶିଶୁଃ ।
ଆତ୍ମାନଂ ମାତରଂ ତାତଂ ବିନିହନ୍ତି ଯଥାକ୍ରମଂ । –

ଇତ ଦୀପିକା ।

ଏପରି ଆଉ ଗୋଟିଏ ମତାନ୍ତର ସ୍ଥଳ ଦେଖନ୍ତୁ –

ଉଭୟ ମଧ୍ୟେ ଯେବେ ଉପୁଜଇ ସନ୍ତତି ।
ସେ ପୁତ୍ର ନାଶଯାଏ ଜାଣ ତତ୍କ୍ଷଣାନ୍ତି ।
ମଘାନକ୍ଷତ୍ରର ଆଦ୍ୟ ଯେଉଁ ଚାରି ଦଣ୍ଡ ।
ଏଥେ ଜନମି ହେଲେ ବରଷେ ପାଇ ଗଣ୍ଡ ।
ମୂଳାନକ୍ଷତ୍ରରୁ ଯେବେ ଚାରି ଦଣ୍ଡ ଥାଇ ।
ଜନ୍ମିଲେ ତହିଁରେ ଚାରି ବର୍ଷ ଗଣ୍ଡ ପାଇ ।
ଜ୍ୟେଷ୍ଠାନକ୍ଷତ୍ରରେ ଯେ ପ୍ରଥମ ଆଠ ଗଣ୍ଡ ।
ଏଥେ ଜନମ ହେଲେ ବରଷେ ପାଇ ଗଣ୍ଡ ।
ଅଶ୍ଳେଷା ନକ୍ଷତ୍ରର ଯେ ସାତ ଦଣ୍ଡ ମଧ୍ୟେ ।
ବାର ବରଷରୁ ଗଣ୍ଡ ପାଇ ସେ ଯେ ମଧ୍ୟେ ।
ରେବତୀ ନକ୍ଷତ୍ରର ଯେ ଦୋଷ ପଞ୍ଚ ଦଣ୍ଡ ।
ଏଥେ ଜନମ ହେଲେ ବରଷେ ପାଇ ଗଣ୍ଡ ।
ଏତେ ଯୋଗେ ଦିବସେ ସନ୍ତାନ ଜନ୍ମହେଲେ ।
ପିତାକୁ ଗଣ୍ଡ ଦୋଷ ଲାଗଇ ନିଶ୍ଚଳେ ।
ରାତ୍ରିକାଳେ ଯଦି ଉପୁଜଇ ସନ୍ତତି ।
ମାତାକୁହିଁ ଗଣ୍ଡ ହୁଏ ବୋଲନ୍ତି ଅଗସ୍ତି ।

ଉଭୟ ମଧ୍ୟରେ ଯେବେ ଉପୁଜଇ ବାଳ ।
ତାହାର ଉପରେ ସେ ଭୋଗଇ ନିଶ୍ଚେ କାଳ । ବ. ପ.

ଜ୍ୟୋତିଃଶାସ୍ତ୍ରରେ ଫଳିତ ଜ୍ୟୋତିଷ ଓ ମୌହୂର୍ତ୍ତିକ ଭାଗରେ ଏହାଙ୍କର ଯେ ଖୁବ୍ ପାରଦର୍ଶିତା ଥିଲା, ଏହା କହିବା ବାହୁଲ୍ୟ ମାତ୍ର । ଅତଏବ ପ୍ରତ୍ୟେକ ଯୋଗଯାତ୍ରାଦି ଓ ପ୍ରଧାନ ଘଟନା ସ୍ଥଳମାନଙ୍କରେ ତିଥିବାରାଦି ଓ ଲଗ୍ନାଦିର ବିବରଣ ଦେଇପାରି ଅଛନ୍ତି, ବିଶେଷତଃ ମଧ୍ୟପର୍ବର ପ୍ରାରମ୍ଭରେ ସ୍ତ୍ରୀର ପ୍ରାଥମିକ ରଜୋଦର୍ଶନର ଦୋଷାଦୋଷ ବିବରଣ ସଂପୂର୍ଣ୍ଣ ଓ ବିସ୍ତରତଃ ଲେଖିବାକୁ ପାରିଅଛନ୍ତି । ସୁତରାଂ ଏହାଙ୍କର କାର୍ତ୍ତାନ୍ତିକବିଦ୍ୱତ୍ତାର ଅଖଣ୍ଡ ପରିଚୟ ଭୀଷ୍ମ ପର୍ବର ପ୍ରାରମ୍ଭରେ ଦେଖାଯାଏ । (୧) ଏଥିରେ ଋତୁ ପ୍ରଭୃତିର ନିୟମ, ମୁହୂର୍ତ୍ତଠାରୁ ପ୍ରଳୟ ପର୍ଯ୍ୟନ୍ତ କାଳନିର୍ଣ୍ଣୟ, ପ୍ରଳୟାନ୍ତେ ପୁନଃ ସୃଷ୍ଟିକ୍ରମ, ମୁହୂର୍ତ୍ତ ସମ୍ବନ୍ଧରେ ବାରବେଳା ଓ ଯୋଗିନୀମାନଙ୍କର ନିର୍ଣ୍ଣୟ ପ୍ରଭୃତି ଜ୍ୟୋତିଃଶାସ୍ତ୍ରୀୟ ନାନାବିଧ କଥା ପ୍ରକାଶ କରି ଅଛନ୍ତି । ଏଥି ମଧ୍ୟରେ କେତେକ ନାମାଦିର କପୋଳକଳ୍ପିତତ୍ୱ ଓ ଅସାମଞ୍ଜସ୍ୟ ଲକ୍ଷିତ ହେଉଥିଲେ ସୁଦ୍ଧା କବିଙ୍କର ଖୁବ୍ ବହୁଦର୍ଶିତା ପ୍ରକାଶ ପାଉଅଛି, ଏଥିରେ କୌଣସି ସନ୍ଦେହ ନାହିଁ । କବି ଯେ ତ୍ରିଭାଗାତ୍ମକ ଜ୍ୟୋତିଃଶାସ୍ତ୍ରର ମୌହୂର୍ତ୍ତିକ ଭାଗରେ ଯଥେଷ୍ଟ ପାରଙ୍ଗମ ଥିଲେ, ଏଥିରେ ବିଶ୍ୱାସ ଦ୍ୱିଧା ହୁଏ ନାହିଁ । ଅଷ୍ଟାଦଶ ପର୍ବ ମଧ୍ୟରେ ଏହାଙ୍କର ପ୍ରଦର୍ଶିତ ଜ୍ୟୋତିଷିକ ବିବରଣଗୁଡ଼ିକୁ ପୃଥକ୍ ଲେଖିଲେ ଗୋଟିଏ ସ୍ୱତନ୍ତ୍ର ସାଧାରଣ ପର୍ବାକାର ହେବ । ଏଥି ମଧ୍ୟରେ ଯେ କବିଙ୍କର କିଛି ସ୍ୱେଚ୍ଛାଚାରିତା ଓ ଅମୂଳକ କାଳ୍ପନିକ ବ୍ୟବସ୍ଥା ନାହିଁ, ତାହା କହୁ ନାହୁଁ । ଚରିତମାନଙ୍କରେ ବହୁ ସ୍ଥଳରେ ଯେପରି ନିଜର ଇଚ୍ଛାମତେ ଐତିହାସିକ ପ୍ରକୃତ ନାମଗୁଡ଼ିକୁ କୃତ୍ରିମାଦର୍ଶରେ ପକାଇ ବିଭିନ୍ନ କରିଦେଇଅଛନ୍ତି, କେତେକ ସ୍ଥଳରେ ଏଥିରେ ସୁଦ୍ଧା ସେହିପରି । ବନପର୍ବରେ ଯୁଧିଷ୍ଠିରଙ୍କ ପ୍ରଶ୍ନରେ ସହଦେବ ବନବାସର ଦଶ ବର୍ଷ ଅତୀତ ହୋଇଅଛି ବୋଲି ସେହି ବର୍ଷଗୁଡ଼ିକର ନାମ କିଂଭୂତକିମାକାର କରି କହିଥିବାର ଲେଖି ଅଛନ୍ତି । (୨) କେତେକ ସ୍ଥଳରେ ଧର୍ମଶାସ୍ତ୍ରାନୁମୋଦିତ ଦାମ୍ପତ୍ୟ ଧର୍ମର ବ୍ୟବସ୍ଥା ଅର୍ଥାତ୍ ସ୍ତ୍ରୀର ଆର୍ତ୍ତବ ସମୟରେ ସଂଗମ ବ୍ୟବସ୍ଥା ବା କର୍ତ୍ତବ୍ୟ ନିର୍ଦ୍ଧାରଣ ପ୍ରଭୃତି ଠିକ୍ ଲେଖିଯାଇ

(୧) ଛାପା ପୁସ୍ତକରେ ୧୭ ପୃଷ୍ଠା ଠାରୁ ୨୧ ପୃଷ୍ଠା ପର୍ଯ୍ୟନ୍ତ ଦେଖନ୍ତୁ ।

(୨) ଅନୁସମ୍ବରେ ଆମ୍ଭେ କଲଇଁ ବନବାସ ।
କନ୍ୟା ମାସ କୃଷ୍ଣପକ୍ଷ ଦ୍ୱିତୀୟା ଦିବସ ।

ଅନୁ, ତନୁ, ଅଗ୍ନି, ଧ୍ୱଜ, ଉଦାସନ ।
ଧ୍ରୁବ, ହରଷ, କରଷଣ, ଅନୁସାନ ।

ଏହା ପୁଣି ଛାପା ପୁସ୍ତକରେ ଆଉ ଟିକିଏ ଭିନ୍ନ ଆକାର ଧାରଣ କରିଅଛି ।

ବ. ପ. ୩୧୦ ପୃଷ୍ଠା ଦେଖନ୍ତୁ ।

ଅଛନ୍ତି । ଏଥିରୁ ଜଣା ଯାଉଅଛି, ଏ ମହାଶୟଙ୍କର ଧର୍ମଶାସ୍ତ୍ର ଶୁଶ୍ରୂଷାଜନିତ ଧର୍ମ ବ୍ୟବସ୍ଥାପକନୈପୁଣ୍ୟ ମଧ୍ୟ କିଛି କିଛି ଥିଲା । ରଜୋଦର୍ଶନ ସମୟରେ ପ୍ରଥମ, ଦ୍ୱିତୀୟ ଓ ତୃତୀୟ ତଥାଚ ଚତୁର୍ଥ ଦିବସରେ ମଧ୍ୟ ସ୍ତ୍ରୀ ସଂଗମଯୋଗ୍ୟା ନୁହେ । ତଦା ସେ ଆତ୍ରେୟୀ (୧) ପ୍ରାୟ ଅଗମ୍ୟା ଥିବାରୁ ଆତ୍ରେୟୀ ନାମ ଧାରଣ କରିଥାଏ । ତାହାର ଆତ୍ରେୟୀ ନାମର ସାର୍ଥକତା ସେହି ସମୟରେ କେବଳ ପ୍ରକାଶ ପାଏ । "ଚତୁର୍ଥେହନି ଶୁଦ୍ଧ୍ୟତି" ଏହି ସ୍ମାର୍ତ୍ତ ବାକ୍ୟର ଆଦେଶାନୁସାରେ ଚତୁର୍ଥ ଦିବସରେ ଋତୁମତୀ ସ୍ପର୍ଶଯୋଗ୍ୟା ମାତ୍ର, ବ୍ରାହ୍ମଣମାନଙ୍କ ପକ୍ଷରେ କଥଂଚିତ୍ ସଂଗମଯୋଗ୍ୟା ନୁହେ । ଏହି ତତ୍ତ୍ୱାର୍ଥକୁ ତଥାଚ "ଋତୌ ତ୍ରିରାତ୍ରଂ ସୁରତଂ" ଇତ୍ୟାଦି ଶ୍ରୌତ ସ୍ମାର୍ତ୍ତ ଓ ଆୟୁର୍ବେଦୀୟ ପୁରୁଷାର୍ଥପ୍ରତିପାଦକ ବିଧିବାକ୍ୟର ସ୍ପଷ୍ଟାର୍ଥକୁ ପ୍ରକାଶ କରି ଅଛନ୍ତି । ଏ ମହାଶୟ ଯେ ଯେ ସ୍ଥଳରେ ଏତାଦୃଶ ବିଧିମାନ ଲେଖି ଅଛନ୍ତି, ମୂଳଗ୍ରନ୍ଥର ତଦ୍ ତଦ୍ ସ୍ଥଳରେ ତାହା ଉକ୍ତ ହୋଇନାହିଁ । ସ୍ମାର୍ତ୍ତ ବାକ୍ୟ ଶୁଶ୍ରୂଷାଜନିତ ଜ୍ଞାନବଳରୁ କେବଳ ଏ ପ୍ରାସଙ୍ଗିକ କ୍ରମରେ ଲେଖିଯାଇ ଅଛନ୍ତି । (୨)

ଆଉ କେତେକ ସ୍ଥଳର ବିଷୟାବତରଣମାନ ସମ୍ୟକ୍ ବିଚାର କରିନେଲେ ଏ ମହାଶୟ ବୈଦିକ କର୍ମକାଣ୍ଡ ଓ ତନ୍ତ୍ରାଦି ଉପବିଦ୍ୟାମାନଙ୍କ କ୍ରମ ଅବଗତ ଥିବା ଅନୁମିତ ହୁଏ । ଗ୍ରନ୍ଥ ମଧ୍ୟରୁ ଏତାଦୃଶ କେତେକମାତ୍ର ବିବରଣର ପରିଚୟ ଦିଗ୍‌ଦର୍ଶନ କ୍ରମରେ ଲେଖୁଅଛୁଁ । ବିରାଟପର୍ବର ସର୍ବାବସାନ ବୈବାହିକ ଉପପର୍ବ ପାଠରେ ଉତ୍ତରାଙ୍କ ବିବାହ ସ୍ଥଳରେ ଏ ମହାଶୟ ହୁତ ଅଗ୍ନିଙ୍କର ଜ୍ୱାଳାଜାଳ ସମୁଦ୍‌ଥାନର କ୍ରମ ଏବଂ ତଦୀୟ କେଉଁ ଅଙ୍ଗରେ ଆହୁତିପାତ ହେଲେ କି ଫଳ ହୁଏ, ଇତ୍ୟାଦି ସମ୍ବନ୍ଧରେ ଅନେକଗୁଡ଼ିଏ କଥା ଲେଖିଯାଇ ଅଛନ୍ତି । ଏ ସବୁ ତତ୍ରତ୍ୟ ମୂଳ ପାଠରେ ନାହିଁ । କବି ଅନୁଭବବୈଭବରୁ

---

(୧) ସ୍ତ୍ରୀଧର୍ମିଣ୍ୟବିରାତ୍ରେୟୀ ମଳିନୀ ପୁଷ୍ପବତ୍ୟପି – ଅମର ।

(୨) ଚତୁର୍ଥ ଦିନେ ଯେ ଯାନ୍ତି ଯୁବତୀର ପାଶ ।
ଗୋହତ୍ୟା ବ୍ରହ୍ମହତ୍ୟା ମାତୃହରଣ ଦୋଷ ।
ଶୁଦ୍ଧସ୍ନାନ କରନ୍ତେ ସ୍ତିରୀ ପଞ୍ଚମ ଦିବସେ ।
ସେ ଦିନେ ଯିବେ ପୁରୁଷେ ସ୍ତ୍ରୀରୀଙ୍କର ପାଶେ ।
ନାନା ଧର୍ମ ପିତୃକ୍ରିୟା ଯଜ୍ଞ ଆଦି କରି ।
ସମସ୍ତ ତେଜି ତାରେ ହୋଇବ ବ୍ରତଚାରୀ ।
ପଞ୍ଚମ ଦିନୁ ଯେ ସପତମ ପରିଯନ୍ତେ ।
ଯେବଣ ଜନ ନ ଯାନ୍ତି ଦୋଷ କୋପ ଅର୍ଥେ ।
ସେ ଶୋଣିତ ପାନ କରନ୍ତି ତା ପିତୃଲୋକେ ।
ଏସନ ଅଛିଟି ଧର୍ମଶାସ୍ତ୍ର ବାକ୍ୟେ । ଇତ୍ୟାଦି । ଆ. ପ.

କିମ୍ବା ପଣ୍ଡିତ ବ୍ରାହ୍ମଣ ସମାଜର ସହବାସ ସୁଯୋଗରୁ ଏତାଦୃଶ ସ୍ମାର୍ତ୍ତ ବ୍ୟୁତ୍ପତ୍ତି ବା ଜ୍ଞାନ ଲାଭ କରିପାରି ଥିବାର ଜଣାଯାଏ । ଏ ସ୍ଥଳରେ ଏ ମହାଶୟ ସାକ୍ଷାତ୍ ବୈଦିକବିଧାନଜ୍ଞ କର୍ମକାଣ୍ଡପାରଦର୍ଶୀ ବ୍ରାହ୍ମଣଙ୍କର ସାରସ୍ୱତ ବିଭୂତିରେ ବିରାଜମାନ ଥିଲା ପରି ପ୍ରତୀୟମାନ ହେଉ ଅଛନ୍ତି । ବିରାଟ ନଗରରେ ଦ୍ରୌପଦୀ ଦେବୀ ନୀଚ କୀଚକର ଘୋର ଉପଦ୍ରବ ଯୁଧିଷ୍ଠିରାଦିଙ୍କୁ ଜଣାଇବା ନିମନ୍ତେ ପ୍ରଚ୍ଛନ୍ନବେଶରେ ରାତ୍ରି ସମୟରେ ଯାଇଥିବା ସନ୍ଦର୍ଭରେ ଉଲୂକ ବିଦ୍ୟାର (୧) ପ୍ରଭାବରୁ ଯାଇ ପାରିଥିଲେ ବୋଲି କହନ୍ତି । ମୂଳଗ୍ରନ୍ଥରେ ତ ଏହାର କୌଣସି କଥା ନାହିଁ । ଏହା ଏହାଙ୍କର ଅନୁଭୂତି ବା ଜ୍ଞାତ ଔପୟିକ ଉପାୟର କଳ୍ପନା ହୋଇପାରେ । ଏଥିରୁ କଣ ଅନୁମାନ କରାଯାଇ ନ ପାରେ ଯେ, ଏ ମହୋଦୟ ଏଭଳି କେତେକ ତନ୍ତ୍ରଶାସ୍ତ୍ରୋକ୍ତ ନିରପାୟ ଉପାୟମାନ ମଧ୍ୟ ଜାଣୁଥିଲେ ? ଅନୁମାନତଃ କହିପାରୁଁ, ସାରଳାଦାସ କବି ଭୂତ ପ୍ରେତାଦିର ଆବେଶନ, ବନ୍ଧନ, ମାରଣ, ଜାରଣ ପ୍ରଭୃତି ଭୂତଚିକିତ୍ସା ଓ ତାନ୍ତ୍ରିକ ଉପାୟମାନ ସୁଦ୍ଧା ଅବଗତ ଥିଲେ । ଏହାର ବିଶେଷ ପ୍ରମାଣସ୍ୱରୂପ ଉଦ୍‌ଯୋଗ ପର୍ବରେ ଦୁର୍ଯ୍ୟୋଧନ-ଭାନୁମତୀ ସମ୍ବାଦରେ ଭୂତପ୍ରକ୍ରିୟାର ବଶୀକରଣାଦିର କ୍ରିୟାମାନ ଲେଖାଥିବାର ଦେଖାଯାଏ । ଏହି କ୍ରିୟାକଳାପରେ ରାଉଳମାନେ (ଏମାନେ ପ୍ରଧାନ ଗୁଣିଆ ବୋଲି ପ୍ରଖ୍ୟାତ) ନିପୁଣ ଥିବାର ମଧ୍ୟ କହି ଅଛନ୍ତି । ପ୍ରଥମତଃ ଭୂତମାନଙ୍କୁ ମୁଦ୍ରାରେ ମୁଦ୍ରିତ କରିବା ଅର୍ଥାତ୍ ମୁଦ୍ରା ପକାଇ ବାନ୍ଧିବା କିମ୍ବା ସମନ୍ତ୍ରକ ଜାଲ ବିସ୍ତାର କରି ବାନ୍ଧିବା ତା ପରେ ଲୌହକୀଳକରେ କୀଳଣ କରିବା କିମ୍ବା କିଳିବା ଏବଂ ଭୂତମାନଙ୍କୁ ସ୍ୱବଶରେ ରଖି ସେମାନଙ୍କଦ୍ୱାରା ଆପଣାର ଅନ୍ୟାନ୍ୟ କାର୍ଯ୍ୟମାନ କରାଇନେବା ପ୍ରଭୃତି ବିଷୟ ଲେଖିଅଛନ୍ତି । (୨) ଏ କବି ଭୂତବିଦ୍ୟା ପରି ଗାରୁଡ଼ବିଦ୍ୟା ସୁଦ୍ଧା ଅବଗତ ଥିବାର ଅନୁମାନତଃ ଜଣାଯାଏ । ଗାରୁଡ଼ ବିଦ୍ୟାରେ ମଧ୍ୟ ଗୋରକ୍ଷନାଥ ପ୍ରଭୃତି ଖୁବ୍ ପ୍ରସିଦ୍ଧି ଲାଭ କରିଥିଲେ । ଆମ୍ଭମାନଙ୍କର ଏହି ଭାରତ କବି ଅନେକ ସ୍ଥଳରେ ମୂଳଗ୍ରନ୍ଥରେ ଅନୁକ୍ତତା ସତ୍ତ୍ୱେ ସେହି ମତ୍ସ୍ୟେନ୍ଦ୍ରନାଥ ଶିଷ୍ୟ ଗୋରକ୍ଷନାଥଙ୍କର ନାମ ଓ ମହିମା ପୁନଃ ପୁନଃ ଉଦ୍‌ଘୋଷ କରି ଆସି ଅଛନ୍ତି । ସୁତରାଂ ବିରାଟପର୍ବରେ ଶମୀକୋଟରନିହିତ ଶର ଶରାସନାଦିର ଆହରଣ ସମୟରେ କାଳସର୍ପ-ଦଷ୍ଟ ବୈରାଟିଙ୍କର ଦୁର୍ବିସହ ବିଷଝାଡ଼ଣକୁ ଅର୍ଜୁନ ଗୋରକ୍ଷନାମ

(୧) ଯେବଣ ଉଲୂକ ବିଦ୍ୟା ବ୍ୟାସ ଦେଇଛନ୍ତି ।
ସେ ବିଦ୍ୟାର ବଳେ ଦେବୀ ଚଳେ ନିଶା ରାତି । ଉ. ପ. ୮୩ ପୃ:

(୨) ଉ.ପ. ୬୬-୬୭ ପୃଷ୍ଠା ଦେଖନ୍ତୁ ।

ଉଚ୍ଚାରଣପୂର୍ବକ ନିଷ୍ପନ୍ନ କରିଥିବାର ଲେଖିଅଛନ୍ତି । (୧) ଏଥିରୁ ଅନୁମାନ କରାଯାଏ ଦାସ ମହାଶୟ ଗୋରକ୍ଷନାଥଙ୍କର ଦୈଶିକୋପଦେଶକ୍ରମ କିଛି କିଛି ଅବଗତ ଥିଲେ ଏବଂ ତତ୍‌ପନ୍ଥାନୁଗତ ଗାରୁଡ଼କ୍ରମରେ ବିଷଝାରଣ ଝାଡ଼ଣରୀତି ମଧ୍ୟ ଜାଣି ପାରିଥିଲେ । ଅପିଚ ବିରାଟପର୍ବରେ ବର୍ଣ୍ଣିତ (୨) ସ୍ଥୂଳ ଋଷି ଓ ଇନ୍ଦ୍ରଙ୍କ ବିବାଦ ବିସମ୍ବାଦ ପ୍ରସ୍ତାବରେ ତାହାଙ୍କ ପୁତ୍ର ଦୁହେଁ ଋଷିଙ୍କ ଦେହରେ ସୂକ୍ଷ୍ମଶରୀରଯୋଗେ ପ୍ରବେଶ କରି ଅତ୍ୟାଚାର କରିଥିବାର କଳ୍ପିତ ବିଷୟ ସଂସ୍ଥାନଟି ସମ୍ୟକ୍ ପରିଶୀଳନ କରି ଗଲେ ବୋଧହୁଏ, ଏହି ଦୈବିକ ବଳପ୍ରାପ୍ତ କବି ପରକାୟା ପ୍ରବେଶ ବିଦ୍ୟାର କ୍ରମ କିଛି କିଛି ଅବଶ୍ୟ ଜାଣି ପାରିଥିଲେ । ତାହା ନ ହେଲେ ମୂଳଗ୍ରନ୍ଥରେ ଅନୁକ୍ତ ଏପରି ଗୋଟିଏ ପ୍ରସ୍ତାବର ଉତ୍ଥାପନ କରି କିପରି ଅବା ତତ୍‌ସମ୍ବନ୍ଧରେ କଳ୍ପିତ ସଂଗତ ଉତ୍ତର ପ୍ରଦାନ କରି ପାରିଥାନ୍ତେ ? ସେ ନିଜେ ଦେବୀଙ୍କ ପ୍ରସାଦରୁ ପ୍ରୋକ୍ତ ବିଦ୍ୟାର କ୍ରମ ଜାଣୁଥିବେ, ନଚେତ୍ ତାଦୃଶ ପ୍ରକ୍ରିୟାକୁଶଳ ତାତ୍କାଳିକ ତାନ୍ତ୍ରିକମାନଙ୍କର ସହବାସରୁ ତଦ୍ରୂପ ଘଟନାସମୂହ ଶ୍ରବଣରେ ସଂପୂର୍ଣ୍ଣ ଅଭ୍ୟସ୍ତ ଥିବେ । ବର୍ତ୍ତମାନ ସମୟରେ ଏ ଭଳି ପ୍ରକ୍ରିୟା ସଂପୂର୍ଣ୍ଣ ଅନ୍ତର୍ହିତ ବା ବିଲୁପ୍ତ ହୋଇଥିଲେ ସୁଦ୍ଧା ଏହାଙ୍କ ସମୟକୁ ଉତ୍କଳରେ ସେ ବିଦ୍ୟାର ଏକାନ୍ତ ଅଭାବ ନ ଥିଲା । ତାତ୍କାଳିକ ଏବଂ ତାହାର ଅନତିବିପ୍ରକୃଷ୍ଟ ସମୟର ଐତିହାସିକ ଘଟନାମାନ ତାହାର ପ୍ରତ୍ୟକ୍ଷ ପ୍ରମାଣସ୍ୱରୂପ ସାକ୍ଷ ପ୍ରଦାନ କରୁଅଛି । ତେତେବେଳେ ତାନ୍ତ୍ରିକମତିମତ୍ତମ ଶାସ୍ତ୍ରବିତ୍ ବ୍ରାହ୍ମଣମାନେ ଏତାଦୃଶ ଅତ୍ୟାଶ୍ଚର୍ଯ୍ୟଜନକ ଅସାଧାରଣ କାର୍ଯ୍ୟମାନ ସଂପନ୍ନ କରି ନେଇ ପାରିଥିଲେ ।

ଏ ମହାଶୟଙ୍କର କେତେଗୋଟି ଉକ୍ତି ଏବଂ ପ୍ରଦର୍ଶିତ କ୍ରମ ଉତ୍କଳରେ ଅଦ୍ୟାପି ବିଧିବାକ୍ୟ ପ୍ରାୟ ସମାଦୃତ ଓ ପ୍ରଚଳିତ ହେଉଅଛି । ଝିମିଟି ୀଳରୁ ମହାଭାରତ – ଏହାର କୌଣସି ପ୍ରକାର ତାଦୃଶ ପ୍ରାମାଣ୍ୟ ଓ ଯାଥାର୍ଥ୍ୟ ମୂଳଗ୍ରନ୍ଥରେ ଅଭିହିତ ନ ଥିଲେ ସୁଦ୍ଧା ଏ କବିଙ୍କ ପ୍ରଦର୍ଶିତ ମତ ଅନୁସାରେ ସମଗ୍ର ଉତ୍କଳ ପ୍ରୋକ୍ତ ସୂକ୍ତିକି ଗୋଟିଏ

---

(୧) ମହାପଣ୍ଡିତ ଉତ୍ତର ନ ଜାଣଇ ବିଦ୍ୟା ।
ଗୋରେଖ ବଚନେ ଯେ ପରମଯୋଗସିଦ୍ଧା ।
X X X X
ସପତ ଋଷି ଯେ ମୋତେ ଦେଇଥିଲେ ବର ।
ଯେ ମୋତେ ଦେଇଥିଲେ ବର ।
ଆରେ ରେ ବିଷମ ଘାଆ ଅନ୍ତରୀକ୍ଷେ ମର ।
ଏହି ରୂପରେ ଅର୍ଜୁନ ଝାଡ଼ିଲା ଗରଳ ।
ସାଷ୍ଟମ ହୋଇ ବସିଲା ସୁଦେଷ୍ଣାର ବାଳ । ଉ. ପ.

(୨) ବି. ପ. ୫୦-୫୧ ପୃ:

ପ୍ରବଚନରୂପେ ସାଦରେ ଧାର୍ଯ୍ୟ କରିଅଛନ୍ତି । ଯାହାଙ୍କର ବଚନ ସମଗ୍ର ଦେଶରେ ମହାବାକ୍ୟସ୍ୱରୂପ ଗୃହୀତ, ସେ ଦେଶର ଜଣେ ଉପଦେଷ୍ଟା, ଏହା ବୋଲିବା ଅସମୀଚୀନ ନୁହେ । ଅଥଚ ଯେ କି ବହୁମୃତ-ଦାର, ତଦ୍ଦୋଷ ପରିହାରାର୍ଥ ଆଗେ ଶାହାଡ଼ା ବୃକ୍ଷକୁ ବିବାହ ହେଲା ପରେ ପୁନଶ୍ଚ ଉଦ୍ବାହ୍ୟ-କନ୍ୟାର ପାଣିଗ୍ରହଣ କରିବାର କ୍ରମ ମତିମାନ ସାରଳା ଦାସ ଆଦିପର୍ବଗତ ଧୃତରାଷ୍ଟ୍ର ଓ ଗାନ୍ଧାରୀଙ୍କ ବିବାହ ସ୍ଥଳରେ ବିବୃତ କରି ଅଛନ୍ତି । ତଦବଧି ଏହା ଏ ଦେଶରେ ପ୍ରଚଳିତ ହୋଇ ଆସୁଅଛି । ଏତଦ୍ୱାରା ସାରଳାଦାସଙ୍କ ମତ ଧର୍ମଶାସ୍ତ୍ରର ଆଦେଶ ପ୍ରାୟ ଗୃହୀତ ହୋଇ ଯାଇଅଛି ବୋଲିବାକୁ ହେବ । ଅତଏବ ସେ ଉତ୍କଳର ଜଣେ ପ୍ରାଚୀନ ଦେଶିକକଳ୍ପ ବୋଲାଯାଇ ପାରନ୍ତି । ମଧ୍ୟପର୍ବରେ ଚନ୍ଦ୍ରାବତୀ ପରିଣୟ ପ୍ରକରଣରେ ସେ ଯାହା କଟକମାସୁରର ପ୍ରସ୍ତାବରେ ବିବାହରେ କଟକମାର ନିର୍ଦ୍ଦେଶ କରିଅଛନ୍ତି, ତାହା ସୁଦ୍ଧା ସଂପ୍ରତି ଉତ୍କଳର ଦ୍ୱିଜାତୀତର ବା ଅଧସ୍ତନ ସମାଜରେ ଚଳି ଆସୁଅଛି । ଅତଏବ ଏହାଙ୍କୁ ଏକ ପ୍ରକାର ବିଧିପ୍ରବର୍ତ୍ତକ କହିବା ଅସଂଗତ ହେବନାହିଁ । ଔନତ୍ୟ ଓ ଔଦ୍ଧତ୍ୟରେ ଏକାନ୍ତ ଉନ୍ମତ୍ତ ପାପକଞ୍ଚୁକ-ବଞ୍ଚକ ଦୁଷ୍ଟ ଅଶିଷ୍ଟ ଲୋକେ ପବିତ୍ର-ଚରିତ୍ର ଲୋକପୂଜ୍ୟ ମହଜ୍ଜନମାନଙ୍କର ଯେପରି ଅନିଷ୍ଟାଚରଣ ଓ ଅପମାନ-ଦାନରେ ସନ୍ତତ ବ୍ୟାପୃତ ରହିଥାନ୍ତି, ମତିମାନ୍ ଦାସ କବି ମହୋଦୟ ସେ ସବୁ ଅନେକଦା ଦେଖି ହୃଦୟରେ ବହୁ ଦୁଃସହ ଦୁଃଖ ଭୋଗ କରି ସେମାନଙ୍କର ଗର୍ହଣ ଉଦ୍ଦେଶ୍ୟରେ ପ୍ରସ୍ତାବତଃ ନୀତିଗର୍ଭକ କଥା ଭଲ ଚିତ୍ରଣ କରି ପାରୁଥିଲେ । ଏହାର ନିଦର୍ଶନ ଗ୍ରନ୍ଥ ମଧ୍ୟରେ ବହୁ ସ୍ଥଳରେ ଦେଖା ଯାଉଅଛି ସତ୍ୟ, ତଥାପି ଏହି ଚିତ୍ର-ପଟୁତା ପ୍ରଧାନତଃ ଉଦ୍‌ଯୋଗପର୍ବରେ ଶ୍ରୀକୃଷ୍ଣଙ୍କ ଦୌତ୍ୟସାଧନାବସରରେ ସଂପୂର୍ଣ୍ଣତଃ ପ୍ରକାଶିତ ହୋଇଅଛି । ଅତ୍ର ଚରିତସଂସ୍ଥାନ ମୌଳିକ ଚିତ୍ରଣ ଅପେକ୍ଷା ସଂପୂର୍ଣ୍ଣ ଭିନ୍ନ ପ୍ରକାର । ଶ୍ରୀକୃଷ୍ଣଙ୍କୁ ବହୁ ସମୟ ସଭାଧଃସ୍ଥ କରିଥିବା ବିତ୍ତ-ମଦ-ମତ୍ତ ଦୁର୍ଯ୍ୟୋଧନାଦିଙ୍କର ଔଦ୍ଧତ୍ୟ ଓ ଦୁର୍ନୀତିର ପରାକାଷ୍ଠା ପ୍ରଦର୍ଶନରେ ତଦ୍‌ତୁଲ୍ୟ ଦୁଷ୍ଟ ନଷ୍ଟ ଲୋକଙ୍କ ଦୁରାଚରଣର ପରିଚୟ ପ୍ରକାଶ କରି ଅଛନ୍ତି ।

ଅଭିଜ୍ଞ ପାଠକମାନେ ! ବିଶ୍ୱାସ କରନ୍ତୁ ଯେ ଏତାଦୃଶକ୍ରମରେ ଅଷ୍ଟାଦଶ ପର୍ବ ମଧ୍ୟରେ ଗଭୀର ଅନୁସନ୍ଧାନ କଲେ ଆମ୍ଭମାନଙ୍କର ଆଦିମ ମହାକବିଙ୍କର ନାନା ପ୍ରକାର ଅଭିଜ୍ଞତାର ପରିଚୟ ପାଇ ପାରିବେ । ଗ୍ରନ୍ଥବିସ୍ତାର ଭୟରୁ କେବଳ ଆମ୍ଭେ ଏହିଠାରୁ ବିରତ ହେଉଅଛୁଁ । ଆଉ ଗୋଟିଏ ପ୍ରସ୍ତାବ ମାତ୍ର କହି ଏହି ପ୍ରକରଣର ଉପସଂହାର କରିବୁଁ । କୌଶଳ-ପେଶଳ ପାଣ୍ଡବମାନେ ଜତୁଗୃହରୁ ବହିର୍ଗତ ହୋଇ ଜାହ୍ନବୀ ଉତ୍ତରଣପୂର୍ବକ ଭାରତବର୍ଷର ଉତ୍ତର ପଶ୍ଚିମାଞ୍ଚଳକୁ ଯାଇଥିଲେ ବୋଲି ବ୍ୟାସ ମୁନିଙ୍କ ମତ; କିନ୍ତୁ ଦାସ ମୁନି ଏହି ସନ୍ଦର୍ଭରେ ଜତୁଗୃହୋତ୍ତୀର୍ଣ୍ଣ ପାଣ୍ଡବମାନେ ବନଭ୍ରମଣକ୍ରମରେ ନାନା ଦେଶରେ ଅବସ୍ଥାନ କଲା ପରେ ଓଡ଼ାଦି ଶିବପୁରକୁ ଯାଇଥିଲେ ବୋଲି, ଜନନୀ-

ଦ୍ୱିତୀୟ ଭୀମସେନଙ୍କୁ ସେହିଠାରେ ରଖାଇ ଯୁଧିଷ୍ଠିର ଅନ୍ୟ ଭ୍ରାତୃମାନଙ୍କ ସହ ଗୋଦାବରୀ ତୀର୍ଥକୁ ପ୍ରସ୍ଥାନ କରିଥିଲେ ବୋଲି ଲେଖିଅଛନ୍ତି । କେବଳ ଏ ସ୍ଥଳରେ ନୁହେ, ଗ୍ରନ୍ଥ ମଧ୍ୟରେ ଅନେକତ୍ର ପ୍ରସଙ୍ଗାନ୍ତର ଲଗାଇ ଓଡ଼ାଦିର ନାମ ଅସକୃତ୍ ପ୍ରକାଶ କରିଅଛନ୍ତି । ଓଡ଼ାଦି ନାମକ ସ୍ଥାନ ଉତ୍କଳର ବିଶେଷତଃ ଗଞ୍ଜାମର ଦକ୍ଷିଣରେ ଗୋଦାବରୀର ଅନତିଦୂରରେ ଅଦ୍ୟାପି ପ୍ରୋକ୍ତ ନାମରେ ନାମିତ ଅଛି । ବୋଧହୁଏ, ଏହି ଓଡ଼ାଦି ସ୍ଥାନ କବିଙ୍କର ଅନୁଭୂତ ବା ପରିଚିତ ଥିଲା । ଉତ୍କଳର ଏତେଦୂର ଦକ୍ଷିଣରେ ଅବସ୍ଥିତ ଓଡ଼ାଦିର ପରିଚୟ ଏ ମହାଶୟ କିପରି ପାଇଲେ ? ଏହି ପ୍ରଶ୍ନ ହେବା ଅନୁଚିତ ନୁହେ । ଏହି ତ୍ରୈକଙ୍ଗୀୟ ଦେଶବିଦେଶର ନାମ ଅସକୃତ୍ ଉଦ୍‌ଘୋଷ କରିଥିବାରୁ, ତଥାଚ ଅସ୍ଥାନରେ ସେ ସ୍ଥାନରୁ ଅଭୀମସେନ ଯୁଧିଷ୍ଠିରାଦି ଚତୁଷ୍ଟୟ ଗୋଦାବରୀକୁ ଯାଇଥିଲେ ବୋଲି କହିଥିବାରୁ ଅନୁମିତ ହୁଏ, ଏ ମହାଶୟ ସମୟରେ ଗୋଦାବରୀ ସ୍ନାନାର୍ଥ ଦକ୍ଷିଣ ଦେଶକୁ ଯାଇଥିଲେ ଏବଂ ତଦ୍ଦେଶ ପ୍ରବର୍ତ୍ତିତ ଓ ପ୍ରଥିତ ଓଡ଼ାଦି ନାମ ଓ ତଦ୍ଦେଶର ତାତ୍କାଳିକ ରମଣୀୟତା ମନେ ରଖିଥିଲେ । ନତୁବା ଦକ୍ଷିଣରାଷ୍ଟ୍ର ବିଜେତା ଉତ୍କଳସମ୍ରାଟ ଶ୍ରୀ କପିଳେନ୍ଦ୍ର ଦେବଙ୍କର ଏ ମହାଶୟ ସମସାମୟିକ ଥିବାରୁ ତଦୀୟ ଜୈତ୍ରଯାତ୍ରାର ଗନ୍ତବ୍ୟ ମାର୍ଗରେ ଅବସ୍ଥିତ ଓଡ଼ାଦିର ପରିଚୟ ପାଇଥିଲେ । କପିଳେନ୍ଦ୍ରଦେବ ଦକ୍ଷିଣରେ କାଞ୍ଚୀ ପ୍ରଭୃତି ଦେଶ ଜୟ କରି ସ୍ୱକୀୟ ସାମ୍ରାଜ୍ୟ ବଢ଼ାଇଥିବା ଇତିହାସମାନଙ୍କରେ ପ୍ରତିପାଦିତ ଅଛି । ଯେତେବେଳେ କପିଳେନ୍ଦ୍ର ଦେବ (କିମ୍ବା ତତ୍‌ପରବର୍ତ୍ତୀ ପୁରୁଷୋତ୍ତମ ଦେବ) ଦକ୍ଷିଣ ଦିଗ୍‌ବିଜୟରେ ବ୍ୟାପୃତ, ତଦା ପଦାତିକ ବୃତ୍ତିସଂପନ୍ନ, ଅସ୍ଖଳିତବୟସ୍କ ଏହି କବି ମହାଶୟ ଉତ୍କଳ ସମ୍ରାଟଙ୍କ ଅଭିନିର୍ଯ୍ୟାଣର ଅନୁଗମନ କରିଥିଲେ; କିମ୍ବା ତତ୍ରଗତ ତଦୀୟ ବଂଶସ୍ଥ ଲୋକଙ୍କ ମୁଖରୁ ପ୍ରୋକ୍ତ ସ୍ଥାନର ତାତ୍କାଳିକ ଉତ୍କୃଷ୍ଟତା ଅବଗତ ଥିଲେ । ସୁତରାଂ ଏ ସ୍ଥଳରେ ତତ୍ରତ୍ୟ ଚଣ୍ଡାଳ ଓ ବ୍ରାହ୍ମଣମାନଙ୍କର କଳ୍ପିତ ଯୁଦ୍ଧଘଟନାରେ ମହାବଳପରାକ୍ରାନ୍ତ କପିଳେନ୍ଦ୍ର ଦେବଙ୍କର ଯୁଦ୍ଧକ୍ରମ ବ୍ୟଞ୍ଜିତ କରିଅଛନ୍ତି । ସେହିଠାରେ ଭୀମକର୍ମା ଭୀମସେନଙ୍କର ପ୍ରାପ୍ତ ପଦବୀ (ଉପାଧି) କାଳବର ଶବ୍ଦଟି ଉତ୍କଳ ସମ୍ରାଟଙ୍କର କାଳବର ନାମଜନିତ ଅନନ୍ୟଲଭ୍ୟ ପ୍ରୌଢ଼ିକୁ ସୂଚିତ କରୁଅଛି । ଏହି ସନ୍ଦର୍ଭରେ ବୋଧହୁଏ କବି ମହୋଦୟ ଶତ୍ରୁଦୁର୍ଦ୍ଧର୍ଷ କପିଳେନ୍ଦ୍ର ଦେବଙ୍କଠାରେ ଭୀମତ୍ୱାରୋପଣ କରି ଆଶୟାର୍ଥରେ ଏ ସବୁ ଲେଖିଯାଇ ଅଛନ୍ତି । ଏ କବି ମହାଶୟ ଏପରି ଆଶୟାର୍ଥରେ ଅନେକତ୍ର ବୀରଚରିତର ଚିତ୍ରଣ କରିଅଛନ୍ତି । ଏହାର ବିଶେଷ ପ୍ରମାଣ ସଭା ପର୍ବରେ ଅନେକତ୍ର ଦେଖାଯାଏ । ତତ୍ର କଳ୍ପିତ ବର୍ଣ୍ଣନାରେ ବର୍ଣ୍ଣିତ ଜେନାବଳି ନଗରର ଅଧିପତି ଜୟସିଂହଙ୍କର ଔଦ୍ଧତ୍ୟ ବର୍ଣ୍ଣନା ପ୍ରଭୃତି ରାଜସ୍ଥାନର ସିଂହୋପାଧିକ କେତେକ ବୀରପୁରୁଷମାନଙ୍କର ଚେଷ୍ଟାନୁସରଣରେ ଆଶୟାର୍ଥରେ ଲେଖିଥିବାର ଜଣାଯାଉଅଛି । ଇତ୍ୟାଦି ।



# ସଙ୍କୀର୍ଣ୍ଣ ଭାଗ

ଅଭିଜ୍ଞ ପାଠକଗଣ ! ଏହି ଭାରତ ଦର୍ପଣ ପ୍ରବନ୍ଧର ପ୍ରଧାନ ଭାଗତ୍ରୟର ବିଚାର କଥଞ୍ଚିତ୍ ଶେଷ କରିଅଛୁଁ । କଥଞ୍ଚିତ୍ କହିବାର କାରଣ ଏହି, ଆମ୍ଭେ ଯାଦୃଶ କ୍ରମରେ ବିଷୟ ସଂସ୍ଥାନମାନ ସନ୍ନିବେଶ କରିବାର ସଂକଳ୍ପ କରିଥିଲୁଁ, ଅପିଚ ଆପାତତଃ ଉଭୟ ମହାଭାରତ ଗ୍ରନ୍ଥ ଆମୂଳାନ୍ତ ଆଲୋଡ଼ନ ଓ ପରିଶୀଳନ କରି ଯାବତ୍ ପରିମିତ ଜ୍ଞାତବ୍ୟ ସାମଗ୍ରୀ ସଂପାଦନ କରିପାରି ସଂଚିତ ରଖିଥିଲୁଁ, ସେଥିରୁ ଅନେକ ଉଦ୍‌ବୃତ୍ତ ରହିଗଲା । ଗ୍ରନ୍ଥାରମ୍ଭରୁ ଆମ୍ଭେ କହି ଆସିଅଛୁଁ କି, ଏହାର ଅଖଣ୍ଡ ପାଠରେ ଯେ ପାଠକମାନଙ୍କର କିଞ୍ଚିତ୍ ଦୀର୍ଘସୂତ୍ରତା ଆବଶ୍ୟକ ପଡ଼ିବ, ସେଥିପାଇଁ ସେମାନେ କାତର ନ ହୋଇ ଅକୁଣ୍ଠାପଠନୋତ୍କଣ୍ଠାସହ ଶ୍ରମସହିଷ୍ଣୁତା ଅବଲମ୍ବନ କରିବେ । ମାତ୍ର ଫଳତଃ ଅବଗତ ହୋଇ ପାରିଲୁଁ, କେତେକ ପାଠକ ବିଷୟର ଗୁରୁତର ମହତ୍ତ୍ୱକୁ ସମ୍ୟକ୍ ହୃଦୟଙ୍ଗମ କରି ନ ପାରି ଅଯଥା ବିଚାରରେ ପ୍ରବନ୍ଧକୁ ଅତିକାୟ ମନେ କରି ଭୀତ ହୋଇ ପଡ଼ିଲେ; ଗ୍ରନ୍ଥ ମଧ୍ୟରେ ନାନା ବିଷୟର ଆବଶ୍ୟକ ଭୂରି-ଭାଷଣ-ଭୂଷଣକୁ ଦୂଷଣ ପ୍ରାୟ ମନେ କରିବାକୁ ଶଙ୍କିତ ହେଲେ ନାହିଁ । ଆଉ କେତେକ ମତ୍ସର ପ୍ରକୃତି କଛର-ମତି ଏହି ପ୍ରବନ୍ଧଟି ବହୁମୂଲ୍ୟ ସାହିତ୍ୟ ପତ୍ରିକାରେ ଦୀର୍ଘକାଳ କାହିଁକି ନିବେଶାଧିକାର ସ୍ଥାପନ କରିବ ବୋଲି ଶ୍ରୀମାନ୍ ସଂପାଦକଙ୍କ ପ୍ରତି ପ୍ରଖରାୟମାନ ହେବାକୁ ଲାଗିଲେ । କିନ୍ତୁ ଉତ୍କଳ-ସାହିତ୍ୟର ପ୍ରତିଷ୍ଠାତା ଓ ମଙ୍ଗଳ ସଂପାଦକ ସଂପାଦକ ମହାଶୟ ଆଉ କାହାରି ପରି ବିଲକ୍ଷଣଗୁଣଜ୍ଞ ନୁହନ୍ତି, ଏତାଦୃଶ ବା ଅନ୍ୟାଦୃଶ ବୃଥା ବିଭୀଷିକାରେ ତଦୀୟ ଅଟଳ-ମନୀଷା ବିଚଳିତ ହେବାର ନୁହେ, ସେ ଯାହା କର୍ତ୍ତବ୍ୟ ତାହାହିଁ ସାଧନ କଲେ । ପରନ୍ତୁ ଆମ୍ଭେମାନେ ପ୍ରବନ୍ଧ ପ୍ରତି ଆରୋପିତ ଏହି ଅତିକାୟତ୍ୱ ଓ ଅଯଥା ଦୂଷଣତ୍ୱ ଏବଂ ମହନୀୟ ପ୍ରତୀପଯୁକ୍ତି ପ୍ରଖରତ୍ୱରେ କିଞ୍ଚିତ୍ ବିଚଳିତ ହୋଇଗଲୁଁ । ଏଭଳି ପାଠକମାନଙ୍କୁ କୌଣସି ପ୍ରକାର ଗୋଟାଏ ଧନ୍ୟବାଦ ଦେଇ ମନେକଲୁଁ ଯେ, ଯେ କୌଣସି ପ୍ରକାରେ ଗ୍ରନ୍ଥ ଶୀଘ୍ର ସମାପନ ନ କଲେ ଆଉ ମଙ୍ଗଳ ନାହିଁ ।

"ଅପ୍ରତିବୋଧେ ଶ୍ରୋତରି ବକ୍ତୁର୍ବାକ୍ୟଂ
ପ୍ରୟାତି ବୈଫଂଲ୍ୟଂ ।"

ଏହାହିଁ ସ୍ଥିର କଲୁଁ । ତଥାପି ହୃଦୟ ବଡ଼ ଦୁଃଖିତ ହେଲା । ଏପରି ସମୟରେ ଗୁଣଗ୍ରହଣକୌତୁକୀ ଶ୍ରୀମାନ୍ ନୀଳକଣ୍ଠ ଦାଶ, ଏମ.ଏ. ମହୋଦୟ ଯଦୃଚ୍ଛାକ୍ରମେ ଆସି ଉପଗତ ହେଲେ । ପ୍ରସ୍ତାବବଶତଃ ସେ ମହାଶୟ ଏହି ପ୍ରବନ୍ଧ ସମ୍ବନ୍ଧରେ ନିଜର ଏକାନ୍ତ ଅନୁକୂଳ ମତ ପ୍ରକାଶ କଲେ । ତେତେବେଳେ ମୁଁ ପୁଣି ଏହି ଦୁଃଖକୁ ହୃଦୟରେ ପ୍ରଚ୍ଛନ୍ନ—ଶଲ୍ୟ ପ୍ରାୟ ଅନ୍ତର୍ନିହିତ ନ ରଖି ପ୍ରକାଶ କରିଦେଲି । ସେ ମହାଶୟ କହିଲେ,

''ଆପଣ ଯଦି ଏହି ହତଭାଗ୍ୟ ଦେଶର ଏତାଦୃଶ୍ୟ ପାଠକଙ୍କ ସମାରାଧନାରେ ଲାଗିବେ, ତାହାହେଲେ ଆଉ କଣ କରି ପାରିବେ ?'' ପ୍ରୋକ୍ତ ମହାଶୟଙ୍କର ଇତ୍ୟାକାରକ ଅନେକଗୁଡ଼ିଏ ଅମୋଘ କଥାକୁ ଉପଦେଶ ପ୍ରାୟ ଗ୍ରହଣ କରିବାପାଇଁ 'ଶିଶୁର୍ବାଶିଷ୍ୟା ବା ଯଦସି ମମତଭିଷ୍ଟତୁ ତଥା । ବିଶ୍ୱଦ୍ଦେରୁତ୍କର୍ଷସ୍ତ୍ୱୟିତୁ ମମ ଭକ୍ତିଂ ଦ୍ରଢ଼ୟତି । ଶିଶୁତ୍ୱଂ ସ୍ତ୍ରୈଣଂ ବା ଭବନ୍ତୁ ନନୁ ବନ୍ଧ୍ୟାସି ଜଗତଃ । ଗୁଣାଃ ପୂଜାସ୍ଥାନଂ ଗୁଣିଷୁ ନଚ ଲିଙ୍ଗ ନ ଚ ବୟଃ ।'' ଏହି ବାକ୍ୟକୁ ସ୍ମରଣ କରି ଆଉ ପଶ୍ଚାଦ୍‌ପଦ ହେଲୁ ନାହିଁ । ତଦ୍‌ପ୍ରଭୃତି ବନ୍ଧୁଙ୍କ ବାକ୍ୟରେ ଏବଂ ଗୁଣଗରିମାରେ ପ୍ରୀୟମାଣ-ମାନସ ସମ୍ପାଦକଙ୍କର କାଳୋଚିତ ସମାଶ୍ୱାସନରେ ସାହସୋତ୍ସାହ-ସମ୍ପନ୍ନ ହୋଇ କର୍ତ୍ତବ୍ୟପରାୟଣତାରେ ବ୍ୟସ୍ତ ହେଲୁଁ । ବିଷୟଗୁଡ଼ିକୁ ସଂପୂର୍ଣ୍ଣତଃ ତ୍ୟାଗ କଲେ ଗ୍ରନ୍ଥ ବିକଳାଙ୍ଗ ହୋଇ ପଡ଼ିବ, ସମଗ୍ର ସନ୍ନିବେଶରେ ଗ୍ରନ୍ଥ ଅତି ବିସ୍ତୃତ ହୋଇଯିବ, ଭାବି ଯାହା ଯାହା ଅତ୍ୟାବଶ୍ୟକ, ସେଗୁଡ଼ିକର ଯଥାଯଥ ବିଚାରରେ କେବଳ ଗ୍ରନ୍ଥକୁ ପ୍ରାୟ ସମାପ୍ତ କରି ଆସିଲୁଁ । ବର୍ତ୍ତମାନ ତଦବଶିଷ୍ଟ ସଂକୀର୍ଣ୍ଣ ଭାଗର କିଛି ବିଚାର କରିବୁଁ । ପାଠକମାନେ ଏହାର ନାମକରଣରୁ ସଂସ୍ଥାପୟିଷ୍ୟମାଣ ବିଷୟ ପରିପାଟୀ ଅବଶ୍ୟ ବୁଝି ପାରିଥିବେ । ଏଥିରୁ ଏକମାତ୍ର ବିଷୟ-ମୂଳକ ଧାରାଳ-ବାକ୍ୟପ୍ରଣାଳୀ କିମ୍ବା ଚରିତ୍ର ଚିତ୍ରଣର ବିସ୍ତୃତ ସଂବିଧାନ ପାଇପାରିବେ ନାହିଁ । ଏଥିରେ ପରସ୍ପର ବିଜାତୀୟ ଅନତିପ୍ରସର ବହୁବିଷୟକ ବିବରଣମାନ ସନ୍ନିବେଶିତ କରାଯିବ । ଅତଏବ ଏହାର ନାମ ହେଲା, ସଂକୀର୍ଣ୍ଣ ଭାଗ ବା ମିଶ୍ରିତ ଭାଗ । ଆମ୍ଭେ ଯେତେଦୂର ପାରୁଁ ବା ଯେତେଦୂର ଅବସର ଓ ସୁବିଧା ପାଉଁ, ଅପିଚ ବହୁ ବିସ୍ତୃତିକାତର ବହୁ ପଠନ ଶ୍ରମରେ ଅସହିଷ୍ଣୁ ପାଠକ ମହାଶୟଙ୍କର କଟୁକଟାକ୍ଷରେ ଯେପରି ପତିତ ନ ହେଉ ତଦନୁକ୍ରମରେ କେବଳ ପୂର୍ବୋକ୍ତ ସନ୍ଦର୍ଭମାନଙ୍କରୁ ଅବଶିଷ୍ଟ କେତେକ ବିଷୟର ବିଚାର ସଂକ୍ଷିପ୍ତତଃ ଏଥିରେ ମିଳିତ ରଖିବୁଁ ।

ଆମ୍ଭମାନଙ୍କର ଆଦିମ ମହାକବି ମହୋଦୟ ଓଡ଼ିଆର ପ୍ରାଚୀନ ସାରସ୍ୱତ-ବିଭୁତିପେଟିକା ଏହି ପ୍ରକାଣ୍ଡତମ ମହାଭାରତ ଗ୍ରନ୍ଥ ମଧ୍ୟରେ ବହୁତଗୁଡ଼ିଏ କଳ୍ପିତାର୍ଥ ଶବ୍ଦ ଯତ୍ର ତତ୍ର ସନ୍ନିବେଶିତ କରି ରଖିଅଛନ୍ତି । ସେଥିରୁ କେତକେ ମାତ୍ର ଆପଣମାନଙ୍କ ସମ୍ମୁଖରେ ଉପସ୍ଥାପିତ କରୁଅଛୁଁ । ତାତ୍କାଳିକ ମନୁ ସ୍ୱରୂପ ଆଉ କୁରୁବଂଶୀୟମାନଙ୍କର ମହାପୁରୁଷ ଥିବାରୁ ମହାତ୍ମା ଶାନ୍ତନୁ ଓ ପରାଶରଙ୍କୁ ଏ ମହାଶୟ (୧) ଯୁଗମନୁ ନାମରେ ଅଭିହିତ କରି ଅଛନ୍ତି । ସତ୍ୟାଭିରୁଦ୍ଧ ମହାସତ୍ତ୍ୱ ପାଣ୍ଡବମାନେ ଯେତେବେଳେ ଏକଚକ୍ରାପୁରରେ ସ୍ୱଭାବତଃ ପରାନ୍ନବୁଭୁକ୍ଷୁକ ନ ଥାଇ ସୁଦ୍ଧା ଦୈବଗତ୍ୟା ଭିକ୍ଷୁକକର୍ମ-

---

(୧) ଏହା ଦେଖିକରି ଧାଇଁଲେ ସେ ଶାୟତନୁ ।
ଭୀଷ୍ମଙ୍କ ହସ୍ତ ଧଇଲେ ଯାଇ ଯୁଗମନୁ । ଆ.ପ.

ଇଚ୍ଛୁକ ଥିଲେ, ତେତେବେଳେ ସେମାନଙ୍କର ଅନୁଷ୍ଠିତ ଭିକ୍ଷାକ୍ରମକୁ ଚକ୍ରଭିକ୍ଷା(୧) ନାମରେ ନିର୍ଦ୍ଦିଷ୍ଟ କରିଅଛନ୍ତି । ଏହାର କୌଣସି ପ୍ରକାର ଆଂଶିକ ପ୍ରମାଣ ସୁଦ୍ଧା ମୂଳ-ଗ୍ରନ୍ଥରେ ଦେଖାଯାଏ ନାହିଁ । ଏପରି ନାମ କାହିଁକି ଦେଲେ ? ଏହାର କୌଣସି ଅବାରଣ-କାରଣ ଜଣାଯାଉ ନାହିଁ । ତଥାପି କହିବାକୁ ହେବ ଯେ, ଏ ସମ୍ବନ୍ଧରେ କବିଙ୍କ ହୃଦୟରେ କୌଣସି ଏକ ଭାବ ଅବଶ୍ୟ ଜନ୍ମିଥିବ, ସେହି ଭାବର ଅନୁସରଣରେ ଏହି ଭିକ୍ଷାକୁ ଏପରି ନାମରେ ନାମିତ କରି ଅଛନ୍ତି । ନୁହେତ ଏପରି ହୋଇଥାଇ ପାରେ, ଏହି ଦେଶରେ ଅନେକତ୍ର କେତେକ ଭିକ୍ଷୁକ-ବ୍ରାହ୍ମଣ ଚକ୍ରାକୃତି ପାତ୍ରଦ୍ୱୟରେ ଭିକ୍ଷାଭାର ଧରିଥାନ୍ତି, ଏମାନେ ସାମୟିକ ଭିକ୍ଷୁକ, ସର୍ବଦା ସର୍ବତ୍ର ଯାନ୍ତି ନାହିଁ । ଏମାନଙ୍କର ଉପସ୍ଥିତି ମାତ୍ରକେ ଲୋକେ ଭିକ୍ଷା ଦିଅନ୍ତି, ଏପରି କି, ଯେଉଁ ବ୍ୟକ୍ତି କେବେ ହେଁ କାହାକୁ କିଛି ଦିଏ ନାହିଁ, ସେ ସୁଦ୍ଧା ଭୟରେ କିମ୍ୱା ଭକ୍ତିରେ ଏହାଙ୍କୁ ଭିକ୍ଷା ପ୍ରଦାନ କରିଥାଏ । ବୋଧହୁଏ କବି ମହାଶୟ ଏହି ଭିକ୍ଷାକ୍ରମକୁ ଅନୁସରି ଚକ୍ରଭିକ୍ଷା ପଦର ସୃଷ୍ଟି କରିଥିବେ କିମ୍ୱା ସାରଳାଦାସଙ୍କ ପ୍ରଦର୍ଶିତ ଚକ୍ରଭିକ୍ଷାର ଅନୁସରଣରେ କାଳକ୍ରମେ ଦେଶରେ ଉପର୍ଯ୍ୟୁକ୍ତ ଭିକ୍ଷାକ୍ରମ ପ୍ରଚଳିତ ହୋଇଥିବ । ସୁତରାଂ କବି ମହାଶୟ ଏହି ଭିକ୍ଷାପାତ୍ରକୁ ସ୍ଥାନେ ସ୍ଥାନେ ଚକ୍ରଭାର ବୋଲି ମଧ୍ୟ ଲେଖିଅଛନ୍ତି ।(୨)

ଗ୍ରନ୍ଥ ମଧ୍ୟରେ ଅନେକ ସ୍ଥଳରେ ଗଙ୍ଗାଙ୍କ ନାମ ଧବଳୀ ଓ ବଳରାମଙ୍କ ନାମ ଧବଳି(୩) ଲେଖାଅଛି । ସମସ୍ତେ ଦେଖୁଅଛନ୍ତି, ଗଙ୍ଗା ସର୍ବତ୍ର ଧବଳବର୍ଣ୍ଣା, ପ୍ରକୃତି ପ୍ରତ୍ୟୟ କ୍ରମାନୁସାରେ ସୁଦ୍ଧା ଧବଳୀ ଶବ୍ଦଟି ସାଧୁଶବ୍ଦ ପ୍ରାୟ । ବଳରାମଙ୍କର "ଶଶାଙ୍କଧବଳଂ ଶ୍ରୀକାମପାଳଂ ଭଜେ" ଇତ୍ୟାକାର ସ୍ତୁତିନିହିତ ଶିଷ୍ଟ ପ୍ରୟୋଗର ଅନୁସରଣରେ କବି ମହାଶୟ ରାମଙ୍କୁ ଧବଳ-ବିଗ୍ରହ ଜାଣି ଏହି କଳ୍ପିତ ନାମରେ ନାମିତ କରି ଅଛନ୍ତି; ସୁତରାଂ ଏହା ଓଡ଼ିଆରେ ତଦ୍ଭବଶବ୍ଦ ରୂପେ ଗ୍ରାହ୍ୟ ହେବ।

---

(୧) ଚକ୍ରଭିକ୍ଷା ବାବୁରେ ଅନେକ ଅବିଗୁଣ ।
ମିଥ୍ୟା କହିଲେ ରୌରବେ ପଡ଼ଇ ବ୍ରାହ୍ମଣ । ଆ.ପ.

(୨) ଯୁଧିଷ୍ଠି ସଉରଭପାତ୍ର ଭୀମ ଚକ୍ରଭାର ।
ହରିଗୋବିନ୍ଦ (ମୁଣି) ଯେ ଅର୍ଜୁନ କନ୍ଧର । ଆ.ପ.

(୩) ଧର୍ମ ଅଭିଷେକ ହୋନ୍ତି ଶମୀବୃକ୍ଷ ତଳେ ।
ଦିଗପାଳମାନେ ଘେନି ବିଜେ ଆଖଣ୍ଡଳେ ।।
ଅଭିଷେକ ଦେଖି ଆମ୍ଭେ ଯିବା କି ଧବଳି ।
ବ୍ରହ୍ମା ଇନ୍ଦ୍ର ସଙ୍ଗେ ଦିଗପାଳେ ଛନ୍ତି ମିଳି ।। ବି.ପ.
ବଳରାମଙ୍କ ପ୍ରତି ଶ୍ରୀକୃଷ୍ଣ ।

ଅସଙ୍ଗତ ବୋଧହୁଏ ନାହିଁ । ଯଦିଚ ଏହି ଶବ୍ଦଟି ତତ୍‌ପରବର୍ତ୍ତୀ ବଳରାମ ଦାସ ପ୍ରଭୃତିଙ୍କ କବିତାରେ ପ୍ରଯୁକ୍ତ ଥାଏ, ତେବେ ହେଁ କହିବାକୁ ହେବ ଯେ ବଳରାମାର୍ଥବୋଧକ ଧବଳି ପଦର ସୃଷ୍ଟିକର୍ତ୍ତା ସାରଳାଦାସ କେବଳ । କାରଣ ଏହାଙ୍କ ଅପେକ୍ଷା ପ୍ରାଚୀନ ଓଡ଼ିଆର ପ୍ରଧାନ ଗ୍ରନ୍ଥକର୍ତ୍ତା ବା ଶବ୍ଦକର୍ତ୍ତା କେହି ନ ଥିଲେ ।

କବି ଆଦିପର୍ବର ବହୁ ସ୍ଥଳରେ ଯମଜ ପାଣ୍ଡବଙ୍କ ମାତା ମାଦ୍ରୀଦେବୀଙ୍କୁ ମଦନାବତୀ ବୋଲି ଏବଂ ଗ୍ରନ୍ଥର ଅନେକତ୍ର ଶ୍ରୀ ସାରଳା ଦେବୀଙ୍କୁ କୃପାଜଳନନ୍ଦିନୀ ବୋଲି ଆଖ୍ୟାତ କରି ଅଛନ୍ତି । ମୂଳଗ୍ରନ୍ଥର କେତେକ ସ୍ଥାନରେ ପାଣ୍ଡୁଙ୍କ ଦ୍ୱିତୀୟ କଳତ୍ରଙ୍କ ନାମ ମାଦ୍ରବତୀ ଥିବାରୁ ବୋଧହୁଏ ଏ ଦାସ ମହାଶୟ ମୂଳ ଶୁଶ୍ରୂଷାରେ ସ୍ମରଣ ଶକ୍ତିକୁ ଯଥାଯଥ ଅକ୍ଷୁଣ୍ଣ ରଖି ନ ପାରି ମାଦ୍ରବତୀ ପଦକୁ ମଦନାବତୀ କରି ଦେଇଥିବେ । କିନ୍ତୁ କୃପାଜଳନନ୍ଦିନୀ(୧) ନାମକରଣର କାରଣ ଠିକ୍ ଜଣାଯାଉ ନାହିଁ । କବି ଏଠାରେ କୃପାଜଳସ୍ଥାନୀୟ କାହାକୁ କରି ଅଛନ୍ତି ? ତଦନୁଧାବନମୂଳକ ଉହାର ଧାରଣା ସୁଦ୍ଧା ନିଷ୍ପ୍ରତ୍ୟୂହ ଦଣ୍ଡାୟମାନ ରହିପାରୁ ନାହିଁ । ଉହାର ସରଣୀ ନାନା ଦିଗକୁ ଚାଲିଯାଉଅଛି । ଯାହାହେଉ, କବି ଯେ ଦେବୀଙ୍କର କୃପାମୟୀ ସ୍ଥିର କରି ଏହି ନାମ ଦେଇ ଅଛନ୍ତି, ଏଥିରେ ସନ୍ଦେହ ହେଉ ନାହିଁ ।

ଅନେକ ସ୍ଥଳରେ ହସ୍ତିନା ନଗରୀକୁ କିମ୍ବା କୁରୁକ୍ଷେତ୍ରକୁ କୁଞ୍ଜଗଳ ନାମରେ ଏବଂ ଦୁର୍ଯ୍ୟୋଧନଙ୍କୁ (୨) କୁଞ୍ଜଗଳ ଦେଶାଧିପତି, ପନଙ୍ଗାନାରାୟଣ ବା ପନ୍ନଗାନାରାୟଣ ଓ ମାନଗୋବିନ୍ଦ ନାମରେ ସମାଖ୍ୟାତ କରି ଅଛନ୍ତି । ମୂଳଗ୍ରନ୍ଥରେ କୁରୁକ୍ଷେତ୍ରର ଅନ୍ୟ ନାମ ଏବଂ ତନ୍ନିକଟବର୍ତ୍ତୀ ଦେଶର ନାମ କୁରୁଜାଙ୍ଗଳ । ହୁଏତ ଦାସ କବି ମହୋଦୟ ପ୍ରୋକ୍ତ ନାମର ନିର୍ଦ୍ଦେଶାର୍ଥ ଏପରି ବିକୃତୀକରଣରେ ଲେଖି ଦେଇଥିବେ, ନୁହେତ ଅନୁଲେଖକମାନେ କୁରୁଜାଙ୍ଗଳ ପଦକୁ କୁଞ୍ଜଗଳ କରି ଦେଇଥିବେ । ସାରଳାଦାସଙ୍କର ବିଶ୍ୱାସ ଯେ ଦୁର୍ଯ୍ୟୋଧନ ଜଣେ ସାଧାରଣ ମାନବ ନୁହନ୍ତି । ସେ ଶେଷ ପନ୍ନଗଙ୍କ ଅଂଶରେ ଉତ୍ପନ୍ନ । ଅତଏବ ତାହାଙ୍କୁ ପନ୍ନଗାନାରାୟଣ

---

(୧) କୃପାଜଳନନ୍ଦିନୀ ନାମ ଭଦ୍ରକାଳୀ ।
ସେ ମୋର ଗଳାରେ ନୀଳୋତ୍ପଳମାଳୀ । ଅଶ୍ୱ.ପ.
କୃପା କଲେ ମୋତେ କୃପାଜଳର ନନ୍ଦିନୀ ।
ତେଣୁ କରି ଭାବିଲି ମୁଁ ସାରଳାଦାସ ମୁନି । ମଧ୍ୟପର୍ବ ।

(୨) ସେ ବୋଲେ ମୁଁ କୁଞ୍ଜଗଳ ଦେଶ ଅଧିକାରୀ ।
ମୁହିଁ ପାଣ୍ଡବଙ୍କ ସଙ୍ଗେ ଅଛି ବାଦ କରି । ଦ୍ରୋ.ପ.

କହି ଅଛନ୍ତି ଏବଂ ସେ ପୁଣି ଅନୁପମାନ ଅଭିମାନରେ ଏକନିଷ୍ଠ ଥିବାରୁ ମାନଗୋବିନ୍ଦ ନାମରେ ନାମିତ କରି ଅଛନ୍ତି । ନରମାଂସ ପରିବର୍ତ୍ତରେ ମହୁମାଂସ ଏବଂ ସ୍ୱର୍ଣ୍ଣ ରତ୍ନାଦି ପରିବର୍ତ୍ତରେ ପାଣିଦ୍ରବ୍ୟ ପଦର ବ୍ୟବହାର ବହୁ ସ୍ଥଳରେ ଦେଖାଯାଏ । କିନ୍ତୁ ଛାପା ପୁସ୍ତକରେ ନରମାଂସାର୍ଥବାଚକ ମହୁମାଂସ ପଦଟି ମିଳେ ନାହିଁ । ଛାପା ପୁସ୍ତକରେ କୁତ୍ରାପି ଦୃଷ୍ଟ ନ ହେଲେ ସୁଦ୍ଧା ସେଇଟି ଯେ କବିଙ୍କଦ୍ୱାରା ନିଶ୍ଚେ ବ୍ୟବହୃତ ଏଥିରେ ସନ୍ଦେହ ନାହିଁ । ବିଶ୍ୱାସ ହୁଏ, ପ୍ରକାଶକ ମହାଶୟ ମହୁମାଂସ ପଦର ଅର୍ଥ ଅସଙ୍ଗତ ମନେକରି ଉଠାଇ ଦେଇ ଅଛନ୍ତି । ପ୍ରୟୋଗକର୍ତ୍ତା ମହାଶୟ ପ୍ରୋକ୍ତ ପଦର ଅର୍ଥସାଙ୍ଗତ୍ୟକୁ ଭିନ୍ନ ପ୍ରକାର ସମୀଚୀନ ମନେ କରିଥିବାର ଅନୁମାନ ହୁଏ । ନରମାଂସ ମାଂସାଦମାନଙ୍କର ବଡ଼ ଇଷ୍ଟ ଓ ମିଷ୍ଟ ବୋଲି ପ୍ରସିଦ୍ଧି ଅଛି; ଅତଏବ ମିଷ୍ଟତ୍ୱ ପ୍ରତିପାଦକ ମଧୁ ଶବ୍ଦ ସହ ମାଂସ ଶବ୍ଦ ଯୋଗେ ମହୁମାଂସ ପଦର ସୃଷ୍ଟି ଅନୁମିତ ହୁଏ । ରତ୍ନାଦିଙ୍କୁ ପାଣିଦ୍ରବ୍ୟ କହିବାର କାରଣ ତାଦୃଶ ଜଟିଳ ନୁହେଁ । ରତ୍ନମାନଙ୍କର ପ୍ରଧାନ ଆଧାର ରତ୍ନାକର ସ୍ପଷ୍ଟତଃ ପାଣିମୟ, ସେହି ପାଣିରୁ ତ ସମଧିକ ରତ୍ନ ଜାତହୁଏ; ଅତଏବ ତାହାକୁ ପାଣିଦ୍ରବ୍ୟ ଆଖ୍ୟା ପ୍ରଦାନ କରି ଅଛନ୍ତି; ସୁତରାଂ ଲୋକରେ ଏତାଦୃଶ କ୍ରମରେ କରକାକୁ ସ୍ୱର୍ଗଫଳ କହିଥାନ୍ତି । ଯଦିଚ ଏହି କ୍ରମରେ ରତ୍ନାଦି ପାଣିଦ୍ରବ୍ୟ ବୋଲି ଧାର୍ଯ୍ୟ ହେଲା, ତେବେ ତଦୀୟ ସାହଚର୍ଯ୍ୟରୁ ସ୍ୱର୍ଣ୍ଣାଦି ମଧ ତନ୍ନାମରେ ନାମିତ ହୋଇ ଆସିଲା । କନ୍ୟାର ପ୍ରଥମ ରଜୋଦର୍ଶନ ସମୟରେ ବରୋପରି ନିକ୍ଷେପଣୀୟ ଜଳକୁ କୁସୁମଜଳ ନାମରେ ଆଖ୍ୟାତ କରି ଅଛନ୍ତି । (୧) ଏ ସମ୍ବନ୍ଧରେ କବିଙ୍କ ହୃଦୟର କଳ୍ପିତ ଭାବ କଣ, ତାହା ହିଁ ଜ୍ଞାତବ୍ୟ । କୁସୁମ ସମୟ ଅର୍ଥାତ୍ ସ୍ତ୍ରୀର ଆର୍ତ୍ତବ ସମୟରେ ନିର୍ଦ୍ଦିଷ୍ଟ କୌଳିକ ପ୍ରଥାନୁସାରେ ଯେଉଁ ପ୍ରକାର ଜଳ ବ୍ୟବହାରଣୀୟ, ତାହାକୁ କୁସୁମଜଳ କୁହାଯାଇ ପାରେ । ଭୀମକର୍ମା ଭୀମସେନ ଯେତେବେଳେ ଅତିମାନୁଷକର୍ମ ଚିକୀର୍ଷାର ବଶବର୍ତ୍ତୀ ହୁଅନ୍ତି, ତଦା ଉଦଗ୍ର-ଉଗ୍ରମୂର୍ତ୍ତି ଧାରଣପୂର୍ବକ ଅତି ପ୍ରକାଣ୍ଡ ବୃକ୍ଷକୁ ଉତ୍ପାଟନ କରି ନିଅନ୍ତି । ସେପରି ଆଚରଣରେ ସେ ବଡ଼ ଅଭ୍ୟସ୍ତ ଓ ଲଘୁହସ୍ତ । ଦ୍ରୌପଦୀ ସ୍ୱୟମ୍ବର ସ୍ଥଳରେ ଶତ୍ରୁ-ବୃକୋଦର ବୃକୋଦର ପ୍ରତିଦ୍ୱନ୍ଦ୍ୱୀମାନଙ୍କ ପ୍ରହରଣାର୍ଥ ଦୁଇଗୋଟି ତିନ୍ତିଡ଼ି ବୃକ୍ଷ ଉତ୍ପାଟନ କରିଥିଲେ ଏବଂ ତଦବଧି ଶ୍ରୀକୃଷ୍ଣ ସେହି ଜାତୀୟ ବୃକ୍ଷକୁ ପାଣ୍ଡବବୃକ୍ଷ ନାମରେ ଅଭିହିତ କରିଥିଲେ

---

(୧) ଏଥିଅନ୍ତେ ଯେ ମତ୍ସ୍ୟଦେଶର ଦୂତ ।
କୁସୁମ ଜଳ ଘେନି ପ୍ରବେଶ ଇନ୍ଦ୍ରପ୍ରସ୍ଥ ।
ଉତ୍ତରା ରଜୋବତୀ ବୋଲି ତଥ୍ୟବାଣୀ ।
ଉପରେ ସିଞ୍ଚିଲେ ଗଙ୍ଗାଜଳ ଆଣି ॥ ଉ.ପ.

ବୋଲି ଲେଖାଅଛି ।(୧) ଏହି ନାମକରଣରେ କବି ଏହି ଭାବ ମନେ କରିଥିବେ, ଭୀମ ବିଶେଷତଃ ଏହି ତିନ୍ତିଡ଼ୀ ବୃକ୍ଷକୁ କେବଳ ଉତ୍ପାଟନ କରନ୍ତି, ଏଥିରେ ଏହାଙ୍କର ମନ ଆକୃଷ୍ଟ ହୁଏ, ଏ ଏହାକୁ ଭଲ ପ୍ରହରଣ ଭାବନା କରନ୍ତି; ଅତଏବ ଯେପରି କକୁଭର ନାମ ଅର୍ଜୁନବୃକ୍ଷ, ସେପରି ତିନ୍ତିଡ଼ୀର ନାମ ପାଣ୍ଡବବୃକ୍ଷ ହେବା ଉଚିତ ।

କେତେକ ସ୍ଥଳରେ ଶ୍ରୀପୁରୁଷୋତ୍ତମକ୍ଷେତ୍ର ବା ଶ୍ରୀଜଗନ୍ନାଥ ପୁରୀର ନାମ ଯମନିକ ତୀର୍ଥ ଏବଂ ଯମପୁରୀର ନାମ ସଂଜୀବନୀପୁର ବୋଲି ଲେଖି ଅଛନ୍ତି ।(୨) ଶ୍ରୀଜଗନ୍ନାଥକ୍ଷେତ୍ର ପ୍ରତି ପ୍ରଯୁକ୍ତ ଯମନିକ ନାମର ସାର୍ଥକତା ବା କାରଣ ଏ ସ୍ଥଳରେ କିଛି ଜଣାଯାଉ ନାହିଁ । କବି ହୃଦୟରେ କି ଭାବ ପୋଷି ଏହି ନାମକରଣ କରି ଅଛନ୍ତି, ତାହା ଠିକ୍ ଅନୁମିତ ହୋଇପାରୁ ନାହିଁ । ମାତ୍ର ଏକ୍ଷଣି ତାହାର ବ୍ୟୁତ୍ପତ୍ତି ସାଧନ କରିବାକୁ ଗଲେ ପାପମାନଙ୍କର ଯମନ ଯେ ଛେଦନ ବା ନାଶନ ଯେଉଁ ତୀର୍ଥରେ ହୁଏ, ତାହାକୁ ଯମନିକ ତୀର୍ଥ କହାଯାଇ ପାରେ । ଏହା କବିଙ୍କର ହୃଦ୍‌ଗତ ଭାବ କି ନୁହେ, କହି ନ ପାରୁଁ । କିନ୍ତୁ ବୈବସ୍ୱତପୁରୀ ପ୍ରତି ପ୍ରଯୁକ୍ତ ସଞ୍ଜୀବନୀପୁର ପଦଟି ପ୍ରାମାଦିକ କେବଳ । ଯମପୁରୀର ନାମ ସଂଯମନୀ ।(୩) ତାହାହେଲେ ସଂଯମନୀପୁର ବା ପୁରୀ କହିବା ଉଚିତ । ସଂଯମନୀ ପଦଟି ପ୍ରମାଦବଶତଃ କବିଙ୍କଦ୍ୱାରା ହେଉ କିମ୍ବା ଅନୁଲେଖକଙ୍କ ଦ୍ୱାରା ହେଉ ସଂଜୀବନୀ ହୋଇ ଯାଇଅଛି, ଏଥିରେ କିଛି ସନ୍ଦେହ ନାହିଁ । ଏହି ଭାରତ କବି ଅନେକତ୍ର ଶଲ୍ୟଙ୍କୁ ଶାକଲ୍ୟଦେଶାଧିପ ଏବଂ ଦ୍ରୋଣଙ୍କୁ ପାଟରଷିଗୋତ୍ରୀ ବୋଲି ଅଭିଖ୍ୟାତ କରି ଅଛନ୍ତି ।(୪) ଶାକଳ ନାମରେ ଦେଶବିଶେଷ ଅଛି ସତ୍ୟ, ମାତ୍ର

---

(୧) ଯାରେ ଦେଖିଲେ ବାଟେ ତେନ୍ତୁଳି ବେନି ବୃକ୍ଷ ।
ବେଗେ ଉପାଡ଼ିଲେ ତାହା ପବନର ବତ୍ସ ॥
x x x
ଶ୍ରୀକୃଷ୍ଣ ବୋଇଲେ ଯେ ବୃକ୍ଷ ଧଇଲା ଭୀମ ।
ପାଣ୍ଡବବୃକ୍ଷ ବୋଲି ହେଉ ସେ ତରୁନାମ ॥ ଆ.ପ.

(୨) ଯାବତ ଜୀବର ପ୍ରଭୁ ଜଗନ୍ନାଥ ମୂର୍ତ୍ତି ।
ଯମନିକ ତୀର୍ଥ ଉଦଧି ଉତ୍ତରେ ସ୍ଥିତି ॥
ଏ ଧନୁକୁ ଧଇଲେ କମ୍ପେ ଆଖଣ୍ଡଳ ।
ଯମ ଦେବତା ନ ରହେ ସଂଜୀବନୀପୁର ॥ ବ.ପ.

(୩) ସଂଯମନୀ - ଯମପୁରୀ = ଅତୋଽପି ଯେ ସଂଯମିନଃ ସଂଯମନ୍ୟାମୁଶନ୍ତି ତଂ ।

(୪) ଶାକଲ୍ୟ ଦେଶର ସେହି ଅଟେ ଦଣ୍ଡଧାରୀ ।
ମାଦ୍ରୀଦେବୀଙ୍କର ଭ୍ରାତା ସେହି ନିରାଧାରୀ । ବି.ପ.
ଦ୍ରୋଣଙ୍କୁ ଜାଣୁ ନା ବାବୁ ପାଟରଷିଗୋତ୍ରୀ ।
ନିମିଷକେ ପୃଥ୍ୱୀଭାର ଯେ ପାରେ ନିପାତି । ଉ.ପ.

ଶଲ୍ୟ ମଦ୍ରାଧିପ ନାମରେ ସର୍ବତ୍ର ପ୍ରଥିତ । ମଦ୍ରର ନାମାନ୍ତର ଶାକଳ ବା ଶାକଲ୍ୟ ବୋଲି ମୂଳ ମହାଭାରତରେ କୁତ୍ରାପି ଉକ୍ତ ଥିବାର ଦେଖାଯାଇ ନାହିଁ । କିନ୍ତୁ ଋଷିପ୍ରବର ଭରଦ୍ୱାଜଙ୍କୁ ପାଟରଷି କରି ତଦ୍‌ଗୋତ୍ରସମ୍ଭବ ଦ୍ରୋଣଙ୍କୁ ପାଟରଷିଗୋତ୍ରୀ ନାମରେ ଅଭିହିତ କରିବା ଅସମୀଚୀନ ନୁହେଁ । ଏ ସମ୍ବନ୍ଧରେ ଆଉ ଅଧିକ ଲେଖିବୁ ନାହିଁ । ପାଠକଗଣ ଏତିକିରୁ ଅବଗତ ହୋଇ ପାରିବେ ଯେ ଏହି ମହାଭାରତ ଗ୍ରନ୍ଥ ଭିତରେ କବି ମହାଶୟ ଏତାଦୃଶ ଆହୁରି କେତେଗୁଡ଼ିଏ କଳ୍ପିତାର୍ଥ ଶବ୍ଦର ପ୍ରୟୋଗ କରି ବୁଦ୍ଧିର କୌଶଳ ପ୍ରଦର୍ଶନ କରିଅଛନ୍ତି ।

ଏ ସବୁ ଛଡ଼ା ଆଉ କେତେକ ସ୍ଥଳରେ ଗୋରୁମାନଙ୍କର ସଂଖ୍ୟା ବିଶେଷତ୍ୱ ଅନୁସାରେ ନିର୍ଦ୍ଦିଷ୍ଟ ପଲ୍ଲୀ, ଲଉଡ଼ି, ମହାଖୁଡ଼ ପ୍ରଭୃତି ନାମର(୧) ନିର୍ଦ୍ଦେଶ କରିଅଛନ୍ତି । ସେହି ନାମଗୁଡ଼ିକ ତତ୍‌ପୂର୍ବରୁ ଅନ୍ୟ କୌଣସି ଗ୍ରନ୍ଥରେ ପ୍ରଥିତ ଥିବାର ବିଦିତ ହୁଏ ନାହିଁ । ଅତଏବ କହାଯାଇପାରେ ଯେ ସେଗୁଡ଼ିକର ସୃଷ୍ଟିକର୍ତ୍ତା ଏ ମହାଶୟ କେବଳ ହୋଇ ପାରନ୍ତି । ସନ୍ଧ୍ୟାବନ୍ଦନାଦି ସ୍ଥଳରେ ଆର୍ଯ୍ୟସାଂପ୍ରଦାୟିକମାନେ ସୂର୍ଯ୍ୟଙ୍କୁ ଜଗଦାଦିପୁରୁଷ ଓ ଜଗଦ୍‌ପ୍ରସୂତି-ସ୍ଥିତି- ନାଶ-କାରକ ଭାବି ''ବିରଞ୍ଚିନାରାୟଣ-ଶଙ୍କରାତ୍ମନେ ନମଃ'' ବୋଲି ସ୍ତବ କରିଥାନ୍ତି । ଆମ୍ଭମାନଙ୍କର ଭାରତ କବି ମହାଶୟ ଦ୍ୱିଜାତିରୁ ଇତର ହେଲେ ହେଁ ସେମାନଙ୍କର ସଜାତୀୟ ପରି ଅନବରତ ସହବାସ ଓ ସଂଳାପରେ ଅନୁରକ୍ତ ଥିବାରୁ ପ୍ରୋକ୍ତ ସୌରସ୍ତବ ବାକ୍ୟକୁ ଅସକୃଦ୍ ଶ୍ରବଣ କରୁଥିଲେ । ଅତଏବ ଅନେକ ସ୍ଥଳରେ ସୂର୍ଯ୍ୟଦେବଙ୍କୁ ବିରଞ୍ଚି ନାମରେ ଅଭିହିତ କରି ଅଛନ୍ତି ।(୨) ମୂଳ ମହାଭାରତରେ ଋଷିମାନଙ୍କର ପରିଧେୟବାଚକ କର୍ପଟ ଶବ୍ଦ ଏବଂ ସ୍ନାନ ସନ୍ଧ୍ୟା ବନ୍ଦନାଦି କ୍ରିୟାବାଚକ ଆହ୍ନିକ ଶବ୍ଦର ବ୍ୟବହାର ବହୁ ସ୍ଥଳରେ ହୋଇଅଛି । ଏ ମହାଶୟ ମୂଳ ଭାରତ ଶ୍ରବଣରେ ସଂପୂର୍ଣ୍ଣ ନିଷ୍ଣାତ ଥିବାରୁ ସେହି ଶବ୍ଦମାନଙ୍କୁ ଠିକ୍ ସମୁଚିତ ସ୍ଥଳମାନଙ୍କରେ 'କରପଟ' ଓ 'ଆହାନିକ' ବା ଆହ୍ନିକ କରି ପ୍ରଯୋଜିତ କରି ଅଛନ୍ତି । ଏହି ଭାରତ ଗ୍ରନ୍ଥ ମଧ୍ୟରେ ଦେଖିବେ, ଭରଦ୍ୱାଜ ଦ୍ରୋଣଙ୍କ ଶାଳକ, ଗୌତମ କୃପଙ୍କର

---

(୧) ପଞ୍ଚଶତ ଗାଈରେ ଯେ ହୁଏ ଏକ ପଲ୍ଲୀ ।
ଚତୁର୍ବିଂଶ ପଲ୍ଲୀରେ ଯେ ଗୋଷ୍ଠେକ କହିଲି ।
ଚଉବିଂଶ ଗୋଷ୍ଠେ ଲଉଡ଼ି ଏକ ନିର୍ମାଣି ।
ଚଉବିଂଶ ଲଉଡ଼ିରେ ମହାଖୁଡ଼େ ଗଣି ।
ଚଉବିଂଶ ମହାଖୁଡ଼େ ହୁଏ ଯେତେ ଗାଈ ।
ତେତେକ ଉପରେ ଖଟଇ ଏକ ମହାଭୋଇ । ସ.ପ.

(୨) ଅର୍କ ଦଣ୍ଡକୁ ମାଡ଼ି ବସିଲେ ବିରଞ୍ଚି ।
ଏ ହେତୁରୁ କୋଣାଅର୍କ ନାମ ଏବେ ଅଛି । ବି.ପ.

ଉପାଧି କେତେକ ସ୍ଥଳରେ ବ୍ରହ୍ମା ଆଉ କେତେକ ସ୍ଥଳରେ ବର୍ମା କରିଥିବାର ପ୍ରତ୍ୟକ୍ଷତଃ ଦେଖାଯାଉଅଛି । ଯଦିଚ ବ୍ରହ୍ମା ପଦକୁ ଅନୁଲେଖକମାନେ ବର୍ମା ପଦରେ ପରିଣତ କରି ନ ଥାନ୍ତି, ତାହାହେଲେ କବି ମହାଶୟ କୃପଙ୍କର ବ୍ରାହ୍ମଣତ୍ୱକୁ ତାହାଙ୍କୁ ବ୍ରହ୍ମା ଉପାଧିରେ ଭୂଷିତ କରି ଅଛନ୍ତି ଏବଂ ସେ ନିଜେ ବ୍ରାହ୍ମଣ ଥାଇ କ୍ଷାତ୍ରବୃତ୍ତିରେ କୃତାଦର ହେବାରୁ କ୍ଷତ୍ରିୟ-ଉପାଧି ବର୍ମା ପଦରେ ଭୂଷିତ କରି ତାହାଙ୍କର ପୂର୍ବବର୍ତ୍ତୀ ପର୍ଶୁରାମଙ୍କ ପରି କ୍ଷତ୍ରିୟ ବ୍ରାହ୍ମଣତ୍ୱ ପ୍ରକାଶ କରି ଅଛନ୍ତି, ଏହା ହିଁ ବୋଲିବାକୁ ହେବ ।

ଇତଃପୂର୍ବେ ଭାଷା ଓ ସାହିତ୍ୟର କ୍ରମ ପ୍ରଦର୍ଶନ ସ୍ଥଳରେ ବିଭକ୍ତି କ୍ରିୟା ପ୍ରଭୃତିର ପ୍ରୟୋଗ ରୀତିମାନ ସବିସ୍ତର ଉଲ୍ଲେଖ କରିଅଛୁ । ପ୍ରୋକ୍ତ ପ୍ରୟୋଗପରିପାଟୀରେ ଅନନ୍ତର୍ଭୁକ୍ତ ଅବଶିଷ୍ଟ ଆଉ କେତେକ ଶବ୍ଦାଦିର ପ୍ରୟୋଗ ରୀତିକୁ ଏ ସ୍ଥଳରେ ଉଲ୍ଲେଖ କରିବୁଁ । ତଦ୍ୱାରା ସାରଳାଦାସଙ୍କର ସବିଶେଷ  ପଦପ୍ରୟୋଗ – ପଟୁତାର ପରିଚୟ ପାଠକେ ଅବଶ୍ୟ ଅବଗତ ହୋଇପାରିବେ । ଉତ୍ତରମୁଖରେ ବା ଉତ୍ତରାଭିମୁଖ ହୋଇ, ପୂର୍ବ ମୁଖରେ ବା ପୂର୍ବାଭିମୁଖ ହୋଇ, ଇତ୍ୟାଦିର ଅର୍ଥବୋଧକ ସ୍ଥଳରେ ଉତ୍ତରମୂର୍ତ୍ତିରେ, ପୂର୍ବମୂର୍ତ୍ତିରେ ଇତ୍ୟାଦି କାରକପଦମାନ  କବି ମହାଶୟ ବହୁ ସ୍ଥଳରେ ବ୍ୟବହାର କରି ଅଛନ୍ତି । ପୂର୍ବାଦି ଶବ୍ଦକୁ ଉତ୍ତର ଅଭିମୁଖ ଅର୍ଥରେ ମୂର୍ତ୍ତି ଶବ୍ଦର ବ୍ୟବହାର କାହିଁକି କିପରି ଅନୁକୃତ ହୋଇଅଛି, ତାହା ସହସା ଠିକ୍ ଧରାଯାଇ ନ ପାରେ ।

[୧] ଉତ୍ତର ମୂର୍ତ୍ତିରେ ରାଜା ଥାଟକୁ ଚଳାଇ । ସ.ପ.
ଚଳନ୍ତି ପାଣ୍ଡବେ ହୋଇ ପଶ୍ଚିମ ମୁରତି ।
କୌତୁକ ବନେ ପ୍ରବେଶ ହେଲେ ଧର୍ମନୃପତି । ବି.ପ.

[୨] ବିରାଟ ରାଜା ସହିଲା ଆମ୍ଭର ଅର୍ଦ୍ଧଳି ।
କୀଚକମୂଳେ ମାଇଲୁ ଶତମହାବଳୀ । ବି.ପ.
କଂସକେଶୀ ମୂଳେ ଯେ ଅନେକ ମାରି ଦୈତ୍ୟ ।
କଂସ ତୁଳେ ଦେଲେକ କବନ୍ଧ କୋଟି ସାତ । ଦ୍ରୋ.ପ.

ଏହିପରି ପ୍ରମୁଖ ବା ପ୍ରଭୃତି ଅର୍ଥରେ "ମୂଳେ" ପଦର ବ୍ୟବହାର ମଧ ଏହି ଭାରତରେ ବହୁ ସ୍ଥଳରେ ଦେଖାଯାଉଅଛି । ଅଧୀଶ୍ୱର ବା ଅଧିଦେବ ପ୍ରଭୃତି ପଦର ଅର୍ଥବୋଧନାର୍ଥ କେବଳ ଅଧିପଦର ପୂର୍ବପଦ ସହ ସମାବେଶ ଏବଂ କୋହ ବା ଶୋକ ଅର୍ଥରେ କ୍ରୋଧ ଶବ୍ଦର ବ୍ୟବହାର ମଧ ଏହି ଗ୍ରନ୍ଥ ମଧରେ ବିରଳ ନୁହେ ।(୧) କବି

(୧) ନାନାରତ୍ନେ ଭୂଷିତ ହୋଇଛନ୍ତି ଦେବାଧି ।
ଅନନ୍ତ ମାୟାଧର କରୁଣା ଜଳଧି । ଅଶ୍ୱ.ପ.
ଚରଣେ ପଡ଼ି ଯେ ବୋଇଲା ଉଦ୍ଧବ ।

ଏହି ଗ୍ରନ୍ଥରେ ବିଶେଷଣ ଶବ୍ଦମାନଙ୍କରୁ ଉତ୍ତର ''ରେ'' ବା ''ଏ'' ପ୍ରତ୍ୟୟ ଯୋଗ ଆଉ କେତେକ ସ୍ଥଳରେ ଆନୁସଙ୍ଗିକ ''କରି'' ଓ ''ହୋଇ'' ପଦ ଯୋଗଦ୍ୱାରା କ୍ରିୟାବିଶେଷଣ ପଦମାନଙ୍କର ନିର୍ଦ୍ଦେଶ କରି ଏବଂ ବହୁ ସ୍ଥଳରେ ବିଶେଷ୍ୟ ଓ ବିଶେଷଣ ପଦର ଅଭେଦ କଳ୍ପନା କରି ପ୍ରାଚୀନ ପ୍ରୟୋଗପରିପାଟୀ ଦେଖାଇ ଅଛନ୍ତି ।

[କ] ସନ୍ତାନ ସମାନରେ ବର୍ତ୍ତନ୍ତି ଜନପ୍ରଜା ।
ଏସନକ ସାର୍ଥକ ସେ ସୋମବଂଶ ରାଜା । ଆ.ପ.
ଭୋକର ବେଳେ ଅନ୍ନ ନ ଦିଅଇ ପାଞ୍ଚ ।
ଅଭୋକ ବେଳରେ ସେ ଅନେକ କରି ଯାଚି । ଆ.ପ.
ଯୁଧିଷ୍ଠିର ବୋଇଲେ ତୋତେ ଲାଗିଲା ମୋହପାଶ ।
ନକୁଳକୁ ଥୋଇ ରେ ବହନ ହୋଇ ଆସ । ସ୍ୱର୍ଗ.ପ.

ସାଂପ୍ରତିକ ସାହିତ୍ୟରେ ଚଞ୍ଚଳ ହୋଇ ଆସ, ସତ୍ୱର ହୋଇ ଆସ ଏପରି ପ୍ରୟୋଗ ସାଧୁ, ମାତ୍ର ଶୀଘ୍ର ହୋଇ, ବହନ ହୋଇଆସ ଏଗୁଡ଼ିକ ସୁସଙ୍ଗତ ବୋଧହୁଏ ନାହିଁ ।

[ଖ] ଅତ୍ୟନ୍ତ ଶୂରବନ୍ତ ସେ କାଶୀ ସେବା କରି । ଆ.ପ.
ଶୌର୍ଯ୍ୟବନ୍ତ ହେବାର ଥିଲା ।
ସମସ୍ତ ନିଷ୍କଳଙ୍କ ହେଲା ଏବେ ବନେ ।
ସୁଖେ ତୀର୍ଥ କରିବି ତୋହରି ପ୍ରସନ୍ନେ । ବ.ପ. ଇତ୍ୟାଦି ।
ତୋହରି ପ୍ରସାଦେ – ଏପରି ହେବାର ଥିଲା ।

ଅଦ୍ୟାପି ''ସଂସ୍କାରସମ୍ପନ୍ନ ଓଡ଼ିଆ ସାହିତ୍ୟରେ ଏହାଙ୍କ ପ୍ରଦର୍ଶିତ କ୍ରିୟା-ବିଶେଷଣର କ୍ରମ ପ୍ରାୟଶଃ ଚଳୁଅଛି; ମାତ୍ର ବିଶେଷ୍ୟ ଓ ବିଶେଷଣର ଅଭେଦ କଳ୍ପନାକୁ ପ୍ରାମାଦିକ ନ କହି ସାଧୁ କହାଯାଇ ନ ପାରେ । ଏ ମହାଶୟ ଯେ କୌଣସି ପ୍ରକାର ଶବ୍ଦ ହେଉ, ତାହାର ସ୍ତ୍ରୀତ୍ୱ ପ୍ରତିପାଦନାର୍ଥ କେବଳ ଇକାର ପ୍ରତ୍ୟୟ ଯୋଗ ଆଉ ମହୀଶବ୍ଦ ସହ ସ୍ତ୍ରୀତ୍ୱବୋଧକ ଆଳୀ ଶବ୍ଦର ଯୋଗ(୧) ଏବଂ ଅନୁଚିତ ହେଉ ପଛକେ ଆବଶ୍ୟକ ହେଲେ ଅନର୍ଥକତଃ ଆନୁଷଙ୍ଗିକ ''କାର'' ପଦର ଯୋଗ ଅନଳ୍ପ ସ୍ଥଳରେ କରି ଆସିଛନ୍ତି, ଆହୁରି ଦେଖିବେ, ଅନେକତ୍ର ଏକାର୍ଥ ପ୍ରତିପାଦକ ଦୁଇ ଦୁଇ ଗୋଟି ବିଶେଷ୍ୟ ଶବ୍ଦ

---

କି ନିମିରେ କ୍ରୋଧ କର ତୁମ୍ଭେ ଦେବ । ମୂ.ପ.
କ୍ରୋଧ = ଶୋକ ।

(୧) ବ୍ରାହ୍ମଣ ରୂପ ଧରି ମୁଁ ଅଇଲି ଏଥିକି ।
ବୁକୁ ବିଦାରିଲି ଅସୁର ଦେବେଁଟୀଙ୍କି । ବ.ପ. ଇତ୍ୟାଦି ।
ସମୟ ଜାଣି ନ ବରଷିଲେ ଇନ୍ଦ୍ରକୁ ହୁଏ ଗାଳି ।
ଏମନ୍ତ ଅପଖ୍ୟାତି ମୋତେ ହେବଟି ମହୀଆଳୀ । ବ.ପ.

ଏବଂ ନଞାର୍ଥ-ପ୍ରତିପାଦକ ଦୁଇ ଦୁଇ ଗୋଟି ଅବ୍ୟୟ ପଦର ବ୍ୟବହାର ମଧ୍ୟ ଭଣା କରି ନାହାନ୍ତି । ଏପରି ସ୍ଥଳରେ ବକ୍ତବ୍ୟ ଭାବର ଦୃଢ଼ତା ସାଧନାର୍ଥ ଦ୍ୱିରୁକ୍ତି କରିଥିବାର ଜଣାଯାଉଅଛି ।

ଅଦ୍ୟାପି ବିଶେଷତଃ ମୌଖିକ ଭାଷାରେ "ସେ ବଡ଼ ଅଧିକ ଲୋକ" "ସେଟା ବଡ଼ ଅଳ୍ପ ଲୋକ" ଏପରି ପ୍ରୟୋଗର ବ୍ୟବହାର ଚଳୁଅଛି । ଏହା ଅସାଧୁ ବୋଲି କହାଯାଇ ନ ପାରେ । ଆମ୍ଭମାନଙ୍କର ଆଦିମ ମହାକବି ମହୋଦୟ ମଧ୍ୟ ଏତାଦୃଶ ପ୍ରୟୋଗପ୍ରଣାଳୀ ଦେଖାଇ ଅଛନ୍ତି । ବୋଧହୁଏ ଏଭଳି ପ୍ରୟୋଗକ୍ରମ ଏହାଙ୍କ ସମୟରୁ ପୌରାଣିକ ସାହିତ୍ୟରେ ଚଳି ଆସୁଥିବାରୁ ଅଭ୍ୟାସବଶତଃ ଅଦ୍ୟାବଧି ବ୍ୟାବହାରିକ ଭାଷାରେ ଅକ୍ଷୁଣ୍ଣ ରହିଅଛି । ଅଳ୍ପ ଓ ଅଧିକ, ଏ ଦୁଇଟି ସଂଖ୍ୟାଦିର ପରିମିତବାଚକ ହେଲେ ସୁଦ୍ଧା ଏପରି ସ୍ଥଳରେ ନୀଚ ଓ ମହତ୍‌ର ଅର୍ଥ ବୁଝାଇ ଦେଇଥାଏ ।(୧) ଉତ୍କଳର ଆଦିମ ଭାରତ କବି ଏହି ଗ୍ରନ୍ଥ ମଧ୍ୟରେ ବହୁ ସ୍ଥଳରେ ଯୁଗ୍ମ ଶବ୍ଦଗୁଡ଼ିଏ ଅର୍ଥାତ୍ ଗୋଟିଏ ପଦ ସଙ୍ଗେ ତଦାତ୍ମଭୂତ ତଦାକୃତିବିଶିଷ୍ଟ ଅନନ୍ୟାର୍ଥବ୍ୟଞ୍ଜକ ଶବ୍ଦଗୁଡ଼ିଏ ସୁଚାରୁରୂପେ ବ୍ୟବହାର କରି ଆସି ଅଛନ୍ତି । ଏପରି ସ୍ଥଳମାନଙ୍କରେ ପରବର୍ତ୍ତୀ ବା ପୂର୍ବବର୍ତ୍ତୀ ଗୋଟିଏ ଶବ୍ଦର କୌଣସି ସ୍ୱତନ୍ତ୍ରତା ନ ଥାଏ, ସେଇଟି କେବଳ ତଦନ୍ତିକସ୍ଥ ଅଭିଧେୟରେ ଆବଦ୍ଧ ଓ ସାପେକ୍ଷ ରହିଥାଏ । ସୁତରାଂ ଏତାଦୃଶ ଶବ୍ଦବିନ୍ୟାସ ଭାଷାରାଜ୍ୟରେ ବଡ଼ ଚମତ୍କୃତିଜନକ ବୋଧହୁଏ ।

ଠାଣିମାଣିରେ ଯେ ଉଭା ହୋଇଲା ଅର୍ଜୁନ ।
ବାବୁ ମୋ ଆୟୁଷ ଘେନି ବଂଚ ବୋଲେ ଦ୍ରୋଣ । ଆ.ପ.
ଆୟ ଅଳଙ୍କାର ସବୁ ଦେହେ ଛନ୍ତି ପୂରି । ମ.ପ.
ସ୍ଥାନମାନ୍ୟ ବୁଝିସୁଝି କଥା ସିନା କହି ।
ଢିସତିସ ଆସ୍ଥାନ ପ୍ରାୟେ କି ବୁଝୁ ତୁହି । ଉ.ପ. ଇତ୍ୟାଦି ।

ପରନ୍ତୁ ଏହି ଭାରତ ମଧ୍ୟରେ ଏକାତ୍ମଭୂତ ଅଯଥା ଦ୍ୱିଧାବିଶ୍ଳିଷ୍ଟ ପଦମାନଙ୍କ ମଧ୍ୟରେ ପାଦପୂରଣାଦି ଅର୍ଥବୋଧକ "ଯେ" ଅବ୍ୟୟର ଯୋଗ ଏବଂ ଅନୁଚିତ ଓ

---

କର୍ଣ୍ଣର ଆଗେ ଯାଇ କହନ୍ତି ଦୂତକାରେ – ବ. ପ. ଇତ୍ୟାଦି ।
ଦୂତକାରେ = ଦୂତମାନେ ।
ନିର୍ଦ୍ଧୂମ ଅଗ୍ନି ଜାଣି ବ୍ରାହ୍ମଣର ତେଜକାନ୍ତି – ଉ.ପ. ଇତ୍ୟାଦି ।
ଚତୁର୍ବେଦ ଶାସ୍ତ୍ରେ ତାକୁ ନାହିଁ ନା ଜିଣନ୍ତା । ବ.ପ. ଇତ୍ୟାଦି ।
(୧) ବିଚାରେ ବିଭୀଷଣ ଏ ନୁହେଁ ଅଳ୍ପ ଜଣ ।
ଶ୍ରୀକୃଷ୍ଣ ଯାହାର ପାଦେ କରନ୍ତି ପ୍ରଣାମ । ସ.ପ. ଇତ୍ୟାଦି ।
ଅଳ୍ପ ଜଣ = ସାଧାରଣ ବ୍ୟକ୍ତି ।

ଅସଙ୍ଗତ କେତେକ ବହୁବ୍ରୀହୀ ସମାସାନ୍ତ ପଦମାନଙ୍କର ବ୍ୟବହାର ଅନନ୍ତ ସ୍ଥଳରେ ହୋଇଯାଇଅଛି ।

ପ୍ରବେଶ ହରି ଅର୍ଜୁନ ଇନ୍ଦ୍ର ଯେ ପ୍ରଶସ୍ତ । ଉ.ପ.
ଅପୂର୍ବ ପଦାର୍ଥ ଦେବ ଧୃତ ଯେ ରାଷ୍ଟ୍ରକୁ । ଉ.ପ.
ଯେସନେ ଆର୍ତ୍ତ ହୋନ୍ତି ବସାଭଗ୍ନ ପକ୍ଷୀ ।
ଭାଳିଲେ କୁରୁବଳ ବିଷ୍ଣୁର ତେଜ ଦେଖି । ଉ.ପ.

ଭଗ୍ନ-ବସା-ପକ୍ଷୀ – ଏପରି ହେବାର ଥିଲା ।

ମହାଦାନୀ କର୍ଣ୍ଣ ଯେ କକ୍ଷା ଜଗଜ୍ଜେଠି ।
ସତ୍ୟ ଅଲଘିତ ଯାର ବାନା ଗୋଟି । ଉ.ପ.

ଯାର ବାନା (ମହିମା) ଅଲଘିତ – ସତ୍ୟ ଅଟେ, ଏପରି ହେବାର ଥିଲା ଇତ୍ୟାଦି ।

ଏ ମହାଶୟ ଯୁଦ୍ଧାଦି ବର୍ଣ୍ଣନାର ସ୍ଥଳମାନଙ୍କରେ ରଥ ଗଜ ଅଶ୍ୱ ପ୍ରଭୃତିର ସଂଖ୍ୟା ଉଲ୍ଲେଖନରେ ଏବଂ ରାଜାଙ୍କ ପଟୁଆର, ଯୌତୁକଦାନ ପ୍ରଭୃତିର ବିବୃତୀକରଣରେ ଅପେକ୍ଷାକୃତ ଅତିରିକ୍ତତା ବା ଅତିଶୟୋକ୍ତିକୁ ଉଚ୍ଛୃଙ୍ଖଳ ଭାବରେ ଚାଳିତ କରି ଅଛନ୍ତି ଏବଂ ଯେଉଁ ଯେଉଁ ଘଟନାସଂକ୍ରାନ୍ତ ତିଥି ବାର ନକ୍ଷତ୍ର ଆଦିର ବିବରଣ ଦେଇ ଅଛନ୍ତି, ତଦ୍ ତଦ୍ ବୃତ୍ତାନ୍ତର ସମସାମୟିକ ଓ ଏକସ୍ଥାନୀୟ ଥାଇ ସବୁ ପ୍ରତ୍ୟକ୍ଷ କରିଥିଲା ପରି ଲେଖିଯାଇ ଅଛନ୍ତି । ଏହାର ସତ୍ୟତାର ଉପଲବ୍ଧି ସକାଶେ ପାଠକମାନଙ୍କୁ ପ୍ରାମାଣିକ ସ୍ଥଳମାନ ଉପହାର ଦେବାର ଆବଶ୍ୟକତା ନାହିଁ । ଏତାଦୃଶ ଯେ କୌଣସି ପ୍ରଧାନ ଘଟନାର ବର୍ଣ୍ଣନା ବ୍ୟବହାର କରି ଦେଖିନେଲେ ପ୍ରାମାଣ୍ୟ ଉପଲବ୍ଧି କରି ପାରିବେ । ମନେକରୁଁ, ଏହାଙ୍କର ଏତାଦୃଶ ଅତିଶୟୋକ୍ତି – ବର୍ଣ୍ଣନପଟୁ ସ୍ୱଭାବ କେବଳ ନିରାଲମ୍ବ ନୁହେଁ । ଏ ତାହାର ଅନୁକରଣ ପାଇଁ ମୂଳ ଭାରତାଦି ଗ୍ରନ୍ଥମାନଙ୍କର ସ୍ଥାନେ ସ୍ଥାନେ ବର୍ଣ୍ଣିତ ଅତିଶୟୋକ୍ତିକୁ ଅବଶ୍ୟ ଆଶ୍ରୟ କରିଥିବେ । ଏହାଙ୍କର ପୁରାଣ ଲେଖନ ଶକ୍ତିମତ୍ତା ତ ବିଶେଷତଃ ଶୁଶ୍ରୂଷାଜନିତ, ପୁରାଣ ଶ୍ରବଣରେ ଯଦି ସ୍ଥାନେ ଅତିଶୟୋକ୍ତି ବର୍ଣ୍ଣନା ଶୁଣି ପାରିଲେ, ତେବେ ତାହାର ଆଶ୍ରୟରେ ସର୍ବତ୍ର ତାହାହିଁ ଧାର୍ଯ୍ୟ କରି ନେଲେ । ଆପଣମାନେ ଦେଖିବେ, ମୂଳ ଭାରତ ଗ୍ରନ୍ଥରେ କେତେକ ବିଷୟର ଉତ୍କର୍ଷ ବା ଆଧିକ୍ୟ ପ୍ରଦ୍ୟୋତନାର୍ଥ ଅତିଶୟୋକ୍ତିର ଆବଶ୍ୟକତା ଧାର୍ଯ୍ୟ ହୋଇଅଛି ।



# ଅନ୍ୟାନ୍ୟ ବିଷୟ ।

ଏ କବି ଯେ ଯେ ସ୍ଥଳମାନଙ୍କରେ ମୃଗ ପକ୍ଷୀ ପ୍ରଭୃତି ଜନ୍ତୁମାନଙ୍କର ବହୁଧା ନାମ ଦେଇ ଅଛନ୍ତି, ସେଥିରୁ ସମଧିକ ଶବ୍ଦର ଅର୍ଥ ଆଦୌ ଜଣାଯାଉ ନାହିଁ । ବ୍ୟୁତ୍ପତ୍ତିକି ଧରିବା ବୋଇଲେ, ସେଗୁଡ଼ିକ ସଂସ୍କୃତ ଶବ୍ଦ ନୁହେଁ । ପରନ୍ତୁ ପ୍ରତ୍ୟେକ ତାଳପତ୍ର ପୁସ୍ତକରେ ସେପରି ଶବ୍ଦଗୁଡ଼ିକର ରୂପ ସମାନ ଦେଖାଯାଏ ନାହିଁ । ବିଶେଷତଃ ଛାପା ଓ ତାଳପତ୍ର ପୁସ୍ତକରେ ବହୁ ପ୍ରଭେଦ ଦେଖାଯାଏ । କବିଦତ୍ତ ଶବ୍ଦ ଯଦି ଅବିକୃତ ଓ ସସ୍ୱରୂପ ଥାନ୍ତା, ତାହାହେଲେ ଅର୍ଥାବଗତି ଏଡ଼େ ଦୁଃସାଧ ହୁଅନ୍ତା ନାହିଁ । ପ୍ରୋକ୍ତ ଶବ୍ଦମାନଙ୍କର ଅନଭିଜ୍ଞ ଅନୁଲେଖକମାନଙ୍କଦ୍ୱାରା ସଂପ୍ରାପ୍ତ ଅନେକ ପ୍ରକାର ବିକୃତ ପରିଣତି ଘଟି ଯାଇଅଛି । ପାଠକଙ୍କୁ ପ୍ରତ୍ୟକ୍ଷତଃ ଦେଖାଇବାପାଇଁ ସେ ସବୁ ପ୍ରତ୍ୟେକ ପୁସ୍ତକରୁ ଉଦ୍ଧୃତ କରି ପ୍ରବନ୍ଧର କଳେବର ବୃଥା ବଢ଼ାଇବା ଅନାବଶ୍ୟକ ମନେ କଲୁଁ । କାରଣ କେବଳ ପ୍ରତ୍ୟକ୍ଷତଃ ଦେଖାଇ ଦେବାରେ ସୁଦ୍ଧା କୌଣସି ଫଳ ହେବ ନାହିଁ । ଯଦି କବିପ୍ରଦତ୍ତ ତାଦୃଶ ଶବ୍ଦ କୌଣସି ପୁସ୍ତକରେ ହେଲେ ଅବିକୃତ ରହିଥାନ୍ତା, ତେବେ ଅର୍ଥାବଗତିର ଯେ କୌଣସି ପ୍ରକାର ସୁଗମୋପାୟ ଦେଖାଇ, ଅନ୍ୟାନ୍ୟ ପୁସ୍ତକଗତ ଭିନ୍ନାକାରରେ ପରିଣତ ଶବ୍ଦମାନଙ୍କର ଉଲ୍ଲେଖ କରିଗଲେ କିଛି ପ୍ରୟୋଜନ ହୋଇଥାନ୍ତା । ଅତଏବ ଏ ସମ୍ବନ୍ଧରେ ସହସା କିଛି କର୍ତ୍ତବ୍ୟ ନିର୍ଦ୍ଧାରଣ କରାଯାଇ ନ ପାରେ । ଏହା ବହୁ ସମୟ ଓ ବହୁ ଭାଷାତତ୍ତ୍ୱବିଚାରଶୀଳ ଅଭିଜ୍ଞ ବ୍ୟକ୍ତିମାନଙ୍କର ଗଭୀର ବିଚାରର ସାପେକ୍ଷ ।

ବିରାଟପର୍ବରେ ଦେଖିବେ, ବିରାଟଙ୍କ ସଭାରେ ନକୁଳ ଓ ସହଦେବଙ୍କ ପ୍ରବେଶ ପ୍ରସ୍ତାବରେ ଅଶ୍ୱ ଓ ଗୋରୁମାନଙ୍କର ବିବିଧ ରୋଗମାନଙ୍କର ଦେଶୀୟ ନାମମାନ ପ୍ରଦାନ କରି ଅଛନ୍ତି । ସେଗୁଡ଼ିକ ସୁଦ୍ଧା ଏତାଦୃଶ ବିକୃତ ଓ ଅନର୍ଥ ହୋଇଯାଇଅଛି । ମୂଳଗ୍ରନ୍ଥରେ ଏଭଳି ରୋଗର ନାମ କିମ୍ବା ପରିଚୟ ଆଦୌ ଉକ୍ତ ନାହିଁ । ବୋଧହୁଏ, ଏହି ଭାରତ କବି ତଦାନୀନ୍ତନ ପ୍ରଚଳିତ ଦେଶୀୟ ନାମଗୁଡ଼ିଏ ଦେଇଥିବେ । ସେସବୁ କ୍ରମରେ ଅନଭିଜ୍ଞମାନଙ୍କ ଲେଖାରେ ପଡ଼ି ବିକୃତ ହୋଇ ଯାଇଅଛି । ତାଳପତ୍ର ପୁସ୍ତକରେ ଛାପା ପୁସ୍ତକଗତ ଆକୃତି ଅପେକ୍ଷା ବିକୃତିର ମାତ୍ରା ସମଧିକ ଦେଖାଯାଉଅଛି । ସାରଳାଦାସଙ୍କ ସମୟରେ ସର୍ବତ୍ର ସୁଖସଞ୍ଚାର-ସୁବିଧାର ଅଭାବ କିଛି ଊଣା ହୋଇ ନ ଥିଲା । ସେହି ସମୟରେ ଦେଶମାନଙ୍କର ସଂସ୍ଥାନ କିମ୍ବା ଭୌଗୋଳିକ ବିବରଣ ପ୍ରତ୍ୟକ୍ଷତଃ ଜାଣି ପାରିବା ବହୁ କଷ୍ଟ-ସାଧ ଥିଲା । ଅତଏବ ଏହାଙ୍କର ଦେଶାଦି ସଂସ୍ଥାନର କଳ୍ପିତ ବର୍ଣ୍ଣନାମାନଙ୍କରେ ଅଯଥାର୍ଥତା ରହିଯାଇଅଛି ସତ୍ୟ, ତଥାପି ଏ ମହାଶୟ ପୁରାଣାଦିର ଶୁଶ୍ରୂଷାବଳରେ ଅନେକ ସ୍ଥଳରେ ଦେଶାଦିମାନଙ୍କର ସଂସ୍ଥାନକ୍ରମ ଠିକ୍ ଅନୁସନ୍ଧାନ କରି ଚିତ୍ରଣ କରି ଅଛନ୍ତି । ଆଦିପର୍ବରେ ଦେଖିବେ, ଆସିଆକୁ ଜମ୍ବୁଦୀପ ବୋଲି, ଶତଶୃଙ୍ଗ

ପର୍ବତ ଯାହାର ଏକ ଭାଗ ସେହି ହିମାଳୟ ପର୍ବତ ଜମ୍ବୁଦୀପର ମଧ୍ୟବର୍ତ୍ତୀ ବୋଲି ନିର୍ଦ୍ଧାରିତ କରିପାରି ଅଛନ୍ତି ଏବଂ ଗ୍ରନ୍ଥାରମ୍ଭରେ ପ୍ରକାଶ କରି ଅଛନ୍ତି କି, ଶ୍ରୀ ଜଗନ୍ନାଥ କ୍ଷେତ୍ର ଭାରତବର୍ଷର ଐଶାନ୍ୟ କୋଣରେ ଅବସ୍ଥିତ ଇତ୍ୟାଦି ।(୧)

ଆମ୍ଭମାନଙ୍କର ଏହି ଆଦିମ କବି ମହାଶୟ ଉତ୍କଳର ଦକ୍ଷିଣସ୍ଥ ଦେଶମାନଙ୍କରେ ସଞ୍ଚାର କରିଥିବାର କେତେକ ପ୍ରମାଣ ଇତଃପୂର୍ବେ ପ୍ରସ୍ତାବାନୁସାରେ ପ୍ରକାଶ କରିଅଛୁଁ । ସେହିପରି ଆଉ ଗୋଟିଏ ପ୍ରମାଣ ଏଠାରେ ସୂଚିତ କରିବୁଁ । ଏ ମହାଶୟ ଗ୍ରନ୍ଥ ମଧ୍ୟରେ ଅନେକ ସ୍ଥଳରେ ଜଙ୍ଗମ ନାମକ ଏକ ଜାତିର ଉଲ୍ଲେଖ କରି ଅଛନ୍ତି । ଏହି ଜାତି ତୈଲଙ୍ଗ । ଉତ୍କଳର ଉତ୍ତରାଞ୍ଚଳରେ କିମ୍ୱା ଗଞ୍ଜାମ ବିନା ଅନ୍ୟ ଓଡ଼ିଆ ସ୍ଥାନରେ ଏମାନଙ୍କର ବସତି ଥିବାର ଜଣାଯାଉ ନାହିଁ । ବୋଧହୁଏ, ସେ ସେ ସ୍ଥାନମାନଙ୍କରେ ଏମାନେ ନାହାନ୍ତି । ଏ ଜାତି ବିଶେଷତଃ ଉତ୍କଳର ଦକ୍ଷିଣାଞ୍ଚଳରେ ଏବଂ ଦକ୍ଷିଣ କଳିଙ୍ଗ ଦେଶରେ ଅଛନ୍ତି । ଏମାନେ ଅନ୍ୟାନ୍ୟ କର୍ମ କରୁଥିଲେ ସୁଦ୍ଧା ମହାଦେବ ସେବା ଏମାନଙ୍କର ପ୍ରଧାନ କର୍ମ । ଏମାନେ ମହାଦେବ ପୂଜକ ଓ ମାଳିପ୍ରାୟ ଶଙ୍ଖବାଦକ ରୂପେ ପ୍ରଥିତ । ଅନୁମାନ ହୁଏ, ସାରଳାଦାସେ ଦେଶଭ୍ରମଣ ବା ନାନା ତୀର୍ଥଯାତ୍ରାରେ ଯାଇ ଏ ଜାତିର ନାମାଦିର ପରିଚୟ ପାଇଥିବେ ।(୨)

ମୌଳିକ ଯୁଦ୍ଧ ପ୍ରକରଣମାନଙ୍କରେ ଯେ ଯେ ଅସ୍ତ୍ରଶସ୍ତ୍ରମାନଙ୍କର ନାମ ଉଲ୍ଲେଖ ଅଛି, ସେଥିରୁ ସମଧିକ ଏହି ଭାରତରେ ଦେଖାଯାଏ ନାହିଁ, ତତ୍‌ପରିବର୍ତ୍ତରେ ଅନ୍ୟାନ୍ୟ କେତେକ ନାମର ପ୍ରୟୋଗ ଦେଖାଯାଏ । ଏହାର କାରଣ, କବିଙ୍କର ବର୍ଣ୍ଣନା ଶକ୍ତିର ସ୍ୱତନ୍ତ୍ରତା । ଯଦି କବି ମୂଳଗ୍ରନ୍ଥରେ ଏକାନ୍ତ ନିର୍ଭର ରହି ବିଷୟମାନ ଲେଖିଯାଇଥାନ୍ତେ, ତେବେ ଅବଶ୍ୟ ମୂଳଗତ ଅସ୍ତ୍ରଶସ୍ତ୍ରମାନଙ୍କର ନାମ କିଛି ରୂପାନ୍ତରିତ କରି ସୁଦ୍ଧା ନିଜ ଗ୍ରନ୍ଥରେ ନିହିତ କରିଥାନ୍ତେ । କବି ତ ତାହା କରି ନାହାନ୍ତି, ସେହି ମାର୍ଗରେ ଯାଇ ନାହାନ୍ତି । ଆପଣାର ସ୍ୱାତନ୍ତ୍ର୍ୟ ସର୍ବତ୍ର ଅକ୍ଷୁଣ୍ଣ ରଖି ମୂଳଗ୍ରନ୍ଥର ଧାରାବାହିକ କଥାପ୍ରଣାଳୀକୁ କେବଳ ଆଶ୍ରୟ କରି ଗ୍ରନ୍ଥ ଲେଖାରେ ତତ୍ପର ଥିବାରୁ ମୌଳିକ ନାମମାନ ନ ଦେଇ କିମ୍ୱା ଦେଇ ନ ପାରି ନିଜର କଳ୍ପିତ ନାମମାନ ଦେଇଅଛନ୍ତି । ଏଥିରୁ କବିଙ୍କର ଖୁବ୍ ବୁଦ୍ଧି

(୧) ନୀଳସୁନ୍ଦରଗିରି ଉତ୍ତର ଦିଗ କୋଣେ ।
ସାରସ୍ୱତ ଭୂମି ଭରତଖଣ୍ଡ ଐଶାନ୍ୟେ ॥
ଚନ୍ଦ୍ରଭାଗା ବୋଲି ନଦୀ ଏକ ଗୋଟି ।
ବୃଦ୍ଧମାତାଙ୍କ ପାରୁଶେ ମହୋଦଧି ଭେଟି ॥

(୨) ସୁଜାତ ଈଶ୍ୱର ବୋଲି ଜଙ୍ଗମ ଏକ ଜାତି ।
ସେ କାଳିନ୍ଦୀ ନଗ୍ରେ ତାକୁ କଲେ ଚକ୍ରବର୍ତ୍ତୀ । ବ.ପ.

କୌଶଳ ମଧ୍ୟ ପ୍ରତିପନ୍ନ ହେଉଅଛି । ପାଠକଗଣ ! ନିମ୍ନଭାଗରେ ଉଲ୍ଲିଖିତ ଉଭୟ ଗ୍ରନ୍ଥର ଅସ୍ତ୍ରଶସ୍ତ୍ରର ନାମାବଳୀ ଦେଖିଲେ ଏହାର ସତ୍ୟତା ଉପଲବ୍‌ଧି କରି ପାରିବେ ।

ମୂଳଗ୍ରନ୍ଥଗତ ଅସ୍ତ୍ର ଶସ୍ତ୍ର ନାମଃ—

ଶତଘ୍ନୀ, ପରିଘ, ପରଶ୍ୱଧ, ମୁଦ୍‌ଗର, ମୂଷଳ, ପ୍ରାସ, ଶକ୍ତି, ତୋମର, କମ୍ପନ, ଭୁଶୁଣ୍ଡ, ବସ୍ତଦନ୍ତ, ପଟ୍ଟିଶ, ନିସ୍ତ୍ରିଂଶ, ବିପାଟ, କ୍ଷୁରପ୍ର, ଭଲ୍ଲ, ଅଞ୍ଜଳିକ, କର୍ଣ୍ଣ, କ୍ଷୁଣପ, ଋଷ୍ଟି, ଗୁଡ଼, କୂର୍ମନଖ ବାଣ, ଭୁଷଣ୍ଡୀ, ଗୋଶୀର୍ଷ, ଉଲୂଖଳ, ବୈତସିକ ଶର, ପ୍ରଦର, ବିକର୍ଣ୍ଣ, ବଜ୍ରାସ୍ତ୍ର, ବ୍ରହ୍ମାସ୍ତ୍ର, ପାଶୁପତାସ୍ତ୍ର, ବାୟବାସ୍ତ୍ର, ମେଘାସ୍ତ୍ର, ଦହନାସ୍ତ୍ର, ମୋହନାସ୍ତ୍ର ଇତ୍ୟାଦି ।

ସାରଳା ଭାରତର ଅସ୍ତ୍ର ଶସ୍ତ୍ର ନାମ :—

ଜ୍ୱାଳାବଳୀ ନାରାଚ, ଅଧାଚନ୍ଦ୍ର ବାଣ, ତ୍ରିଦଶ ନାରାଚ, ନିଦାଘ ବାଣ, ଆର୍ଦ୍ରାବଳୀ ଧନୁ, ମେଘାସ୍ତ୍ର, ପର୍ବତା ଶର, ବଜ୍ରାସ୍ତ୍ର, ବଜ୍ରାଶର, ପନଙ୍ଗା ବାଣ, ଖଗବର ନାରାଚ, ଗରୁଡ଼ ଶସ୍ତ୍ର, ଅନଳ ଶର, ତପତଶତାଂଶୁ ଶର, ନବତଂଶ ଶର, ଜଳବିମ୍ବ ଶର, ବଜ୍ରମୁନା ଶର, ପଞ୍ଚମୁନା ଶର, ବଜ୍ରସୂଚୀ ଶର, ବାବଲ ଶର, ତିମ୍ବୁରୁ, ମୋହନା ଶର, କୁନ୍ତ, ମୁଦ୍ଗର, ଅନନ୍ତ ଶକ୍ତି ଇତ୍ୟାଦି ।

କବି ପ୍ରସ୍ତାବିତ ଚରିତମାନଙ୍କ ମଧ୍ୟରେ ସଂପ୍ରାପ୍ତ ସମସ୍ତ ଦେବ-ଦେବୀମାନଙ୍କର ଏପରି କି ଚିତ୍ତ ଉନ୍ମାଦକ କନ୍ଦର୍ପ ଦେବଙ୍କର (୧) ମଧ୍ୟ ସ୍ତୁତିଗୁଡ଼ିଏ ଲେଖିଯାଇ ଅଛନ୍ତି ସତ୍ୟ କିନ୍ତୁ, ସେ ପ୍ରଧାନତଃ ଜଗଦମ୍ବା ସାରଳା ଦେବୀଙ୍କର ଏକାନ୍ତ ଭକ୍ତ ଥିବାରୁ ଦେବୀମହିମାସୂଚକ ସ୍ତୁତିଗାନ ବହୁ ସ୍ଥଳରେ ନିଜର ଓଜସ୍ୱିନୀ ଭାଷାରେ ସବିସ୍ତର ଲେଖିଥିବାର ଇତଃପୂର୍ବେ ସୁଦ୍ଧା ପ୍ରକାଶ କରିଅଛୁ; ଦେବୀଙ୍କ ପ୍ରତି ଏହାଙ୍କର ଭକ୍ତିନିଷ୍ଠା ସମ୍ପତ୍ତି ସମଧିକ ଥିବାରୁ ଭାରତକୁ ସ୍ଥାନେ ସ୍ଥାନେ କାଳିକାପୁରାଣ ବୋଲି ସୁଦ୍ଧା ଅଭିହିତ କରିଦେଇ ଅଛନ୍ତି ।(୨) ସ୍ଥାନେ ସ୍ଥାନେ ଦେବୀ ସ୍ତୁତି ମଧ୍ୟରେ ସେ ଯେପରି ନିଜର ବହୁ ପୁରାଣପାରଦର୍ଶିତା ଓ ବହୁ ଚରିତ ତତ୍ତ୍ୱବେତ୍ତୃତା ପ୍ରକାଶ କରି ଅଛନ୍ତି, ବର୍ତ୍ତମାନ ତାଦୃଶ ଗୋଟିଏ ସ୍ଥଳ ପାଠକମାନଙ୍କୁ ପ୍ରଦର୍ଶନ କରିବୁଁ । ଦ୍ରୋଣପର୍ବର ଅଭିମନ୍ୟୁ ବଧ ପରେ ଗୋଟିଏ ଅନଳ୍ପପ୍ରସର ସ୍ତୁତିପାଠ ନିହିତ ଅଛି । କବି ଏଥିରେ ଅନନ୍ୟସାଧାରଣ-ବୋଧଗମ୍ୟ ପୁରାଣାନ୍ତରମାନଙ୍କରେ ବର୍ଣ୍ଣିତ ବିଷୟ ସନ୍ନିଧାନମାନଙ୍କୁ ସ୍ତୁତ୍ୟ ବିଷୟର ବିଶେଷଣରୂପେ ଅନ୍ତର୍ଭୁକ୍ତ କରି ଦେବୀଙ୍କ ସୁମହିମାପୁଞ୍ଜର ପ୍ରଦ୍ୟୋତନ କରି ଅଛନ୍ତି ଏବଂ ତାହା ସଙ୍ଗେ ସଙ୍ଗେ ଦେବୀଙ୍କର ପ୍ରତି ନିଜର ଆତ୍ୟନ୍ତିକ ଭକ୍ତି ନିଷ୍ଠା ଗରିଷ୍ଠତ୍ୱ

(୧) ବ୍ୟାସ ଓ ଅମ୍ବିକାଙ୍କ ସଙ୍ଗସ୍ଥଳରେ ଦେଖିବେ । ଆ.ପ.

(୨) ଇତିଶ୍ରୀ ମହାଭାରତ କାଳିକା ପୁରାଣ ।
ସଂସାର ଜନ ହିତେ ମୁଁ କରିଲି ବଖାଣ । ସ.ପ. ୮୪ ପୃ:

ଦେଖାଇ ଅଛନ୍ତି । ଏହି ସ୍ତୋତ୍ର ମଧ୍ୟରେ ଦେବୀଙ୍କର ଶିଷ୍ଟରକ୍ଷଣ ଦୁଷ୍ଟନାଶନର ସ୍ୱାଭାବିକତା, ଶୁମ୍ଭନିଶୁମ୍ଭ ହନନରେ ଦେବଗଣଙ୍କର ସୁଖସଂବିଧାନ, କାତ୍ୟାୟନୀ ବିମଳାଦି ରୂପ ଧାରଣରେ କାଳଘଣ୍ଟ ରକ୍ତବୀର୍ଯ୍ୟାଦିଙ୍କର ନିର୍ମୂଳନ, ଜଟୀ ନାମକ ବଟ ମହୀରୁହ ନିକଟରେ ବିକଟ ଜଟୀ ଅସୁର ବା ଜଟାସୁରର ବିନାଶରେ ରକ୍ତକଲ୍ଲୋଳମାଳିନୀ ତରଙ୍ଗୀଣୀର ଆବିର୍ଭାବ, ତ୍ରୈଲୋକ୍ୟବିଜୟୀ ଘୋର-ଦୁର୍ଦ୍ଦାନ୍ତ ମଦୋନ୍ମତ୍ତ କାମରୂପୀ ମହିଷାସୁରର ଅକ୍ଷୟତମ-ଶରୀର- ଧ୍ୱଂସନାର୍ଥ ବହୁ ଚେଷ୍ଟାନୁଷ୍ଠାନ ପରେ ସ୍ୱକୀୟ ଅଂଶରୁ ପିଶାଚୀ ଇନ୍ଦ୍ରାଣୀ ବ୍ରହ୍ମାଣୀ ନାରାୟଣୀ ବ୍ୟାଘ୍ରମୁଖୀ ଭୈରବୀ ଡାକୁନୀ ବାସେଳୀ ଉଗ୍ରତାରା ଚାଚିକା ବା ଚର୍ଚ୍ଚିକା ଡାକେଶ୍ୱରୀ ପ୍ରଭୃତି ଉପଦେବୀମାନଙ୍କର ସର୍ଜ୍ଜନ, ଅସୁର ସହ ଯୁଦ୍ଧ ସଂମର୍ଦ୍ଦରେ ସଂଘଟିତ ଉପଦେବୀଗଣଙ୍କର ଦୁରବସ୍ଥାନକ୍ରମ, ବହୁ ଚେଷ୍ଟା ବୈଫଲ୍ୟରୁ ଦେବୀଙ୍କ ଧୃତି ନିରସନରେ ଅସୁର ପ୍ରତି ତ୍ୟାଗର ସଂକଳ୍ପ, ତଦବଗତିରେ ମହାଭୀତ ଦେବତାମାନଙ୍କର ସ୍ତୁତିନତିକରଣ, ତଦା ଅମାପ କୋପରେ ଆବିଷ୍ଟା ଦେବୀଙ୍କ ହୃଦୟରୁ ସଂଭୂତା ସର୍ବମଙ୍ଗଳାଙ୍କର ଅସୁରବିନାଶାର୍ଥ ଉପାୟ କୀର୍ତ୍ତନ, ବିବସ୍ତ୍ରରୂପା ଦେବୀଙ୍କ ସହ ଦିଗମ୍ବର ମହାଦେବଙ୍କର ମିଳନକ୍ରମ ପ୍ରଭୃତି ବିଷୟମାନ ଧାରାବାହିକ ଚରିତରେ ଅନୁପ୍ରାଣିତ ରଖି କବି ମହାଶୟ ଦେବୀଙ୍କର ଅସୀମ ମହିମାର ପ୍ରଖ୍ୟାପନ କରି ଅଛନ୍ତି ।

ଇତଃପୂର୍ବେ ସୂଚିତ କରିଅଛୁଁ କି, କବି ଅନେକ ସ୍ଥଳରେ ଶାଖୋଟକ (ସାହାଡ଼ା) ବୃକ୍ଷରେ ସୁଖସୌଭାଗ୍ୟପ୍ରଦତ୍ୱ ଆରୋପିତ କରିଅଛନ୍ତି । ଦେଖିବେ, ଆଦିପର୍ବରେ ଧୃତରାଷ୍ଟ୍ର ଓ ଗାନ୍ଧାରୀଙ୍କ ବିବାହ ପ୍ରସ୍ତାବରେ ବନପର୍ବରେ ବନବିହାରୀ ପାଣ୍ଡବମାନଙ୍କ ଭ୍ରମଣାବସରରେ ଭୀମସେନ ସୁଖସୌଭାଗ୍ୟ କାମନାରେ ଏହାର ପତ୍ର ମସ୍ତକସ୍ଥ କରିଥିବା ସ୍ଥଳରେ ଏହାର ସର୍ବଶୁଭକାରକତ୍ୱ ଓ ଉଦର୍କ ସୁଖଦାୟକତ୍ୱ ପ୍ରତିପାଦିତ କରି ଅଛନ୍ତି । ପୁରାଣାଦିରେ ଶାଖୋଟକ ବୃକ୍ଷର ଏକ ପ୍ରକାର ଯକ୍ଷାଙ୍ଗତ୍ୱ ଉକ୍ତ ଥିଲେ ସୁଦ୍ଧା ଏତାଦୃଶ ଶୁଭକରତ୍ୱ ଓ ସୁଖଦାୟକତ୍ୱ କୁତ୍ରାପି କିଞ୍ଚିଦପି ଉକ୍ତ ହୋଇ ନାହିଁ । ପ୍ରତ୍ୟୁତ ଆମ୍ଭମାନଙ୍କ ଦେଶରେ ଶନି ଓ ରବିବାରମାନଙ୍କରେ ସାୟଂ ଓ ରୌଦ୍ର ସମୟରେ ଏହାର ଅଶୁଭକରତ୍ୱ ଓ ଅମଙ୍ଗଳଦାୟକତ୍ୱ ପ୍ରଥିତ ଅଛି । ଏହି ବୃକ୍ଷଟି ତାଦୃଶ ଉପଯୋଗକାରକ ମନୋରମ କିମ୍ବା ସୁପୁଷ୍ପଫଳ-ଭରିତ ମଧ୍ୟ ନୁହେଁ; ନିତାନ୍ତ କର୍କଶ ଓ ଜଟିଳାଙ୍ଗ ଅଟେ । ଦନ୍ତମାର୍ଜ୍ଜନ କାଠି ଓ ଚୁଲ୍ଲୀଜାଳ ଛଡ଼ା ଅନ୍ୟ କୌଣସି କାର୍ଯ୍ୟରେ ଏହା ପ୍ରାୟଶଃ ଲାଗେ ନାହିଁ । ଭୁତ ପ୍ରେତାଦିର ଆସ୍ଥାନ ବୋଲି ଏହାକୁ ଲୋକରେ ସମସ୍ତେ ଅନାଦର କରିଥାନ୍ତି । ତଥାପି କବି ମହାଶୟ, କେଜାଣି ଅବା କାହିଁକି ଏହାକୁ ଏତେଦୂର ପ୍ରଶଂସା କରି ଅଛନ୍ତି, ତାହା ପାଇଁ ନିଜର ବିଚିତ୍ର କଳ୍ପନାର ସନ୍ଦର୍ଭ ତୟାର କରିଅଛନ୍ତି, ବୃଥା ଆରୋପିତ ଗୌରବର ଦୃଢ଼ୀକରଣାର୍ଥ ଜଗଦମ୍ବାଙ୍କ ଅକରଣୀୟ ରଚନା ପର୍ଯ୍ୟନ୍ତ ସାହସୀ ହୋଇ ଅଛନ୍ତି, ତାହାର କାରଣ କିଛି ଜଣାଯାଉ ନାହିଁ, ଠିକ୍ ଧାର୍ଯ୍ୟ ହୋଇପାରୁ ନାହିଁ । କିନ୍ତୁ ଅନୁମାନ ହୁଏ, ଏଥି ମଧ୍ୟରେ କୌଣସି ପ୍ରକାର ଆଶୟାର୍ଥ ଲୁକ୍କାୟିତ ଥାଇପାରେ ।

କବି ଏ ଗ୍ରନ୍ଥ ମଧ୍ୟରେ ପ୍ରାୟଶଃ ସମସ୍ତ ଦେବସ୍ତୁତି ପ୍ରଭୃତି ବିଷୟମାନଙ୍କର ଅବତାରଣାରେ ଶ୍ରୀଜଗନ୍ନାଥ ମହାପ୍ରଭୁଙ୍କୁ ଅପିଚ ସମସ୍ତ ଦେବତାଧାର ଶ୍ରୀଜଗନ୍ନାଥ କ୍ଷେତ୍ରକୁ ହୃଦୟର ଗଭୀରତମ ପ୍ରଦେଶରେ ସ୍ମୃତିଭଦ୍ରାସନୋପରି ଆରୂଢ଼ ରଖିଥିବାର ଅନୁମିତ ହୁଏ । କାରଣ, ଏ ଯେଉଁଠି ଯେଉଁ ଦେବତାଙ୍କର ସ୍ତବ ଆରମ୍ଭ କରନ୍ତି, ତଦ୍ ତଦ୍ ସ୍ଥାନମାନଙ୍କରେ ସ୍ତୋତବ୍ୟ ଦେବତାଙ୍କର ଅଧିଷ୍ଠିତ ସ୍ଥାନର କ୍ରମ ଶ୍ରୀ ଜଗନ୍ନାଥ ମନ୍ଦିରାନ୍ତର୍ଗତ ତଦ୍ ତଦ୍ ଦେବତାଙ୍କ ଅବସ୍ଥିତି ଅନୁସାରେ ନିର୍ଦ୍ଧାରିତ କରିଅଛନ୍ତି । ଏହାର ପ୍ରମାଣ ସ୍ୱରୂପ ଗୋଟିଏ ସ୍ଥଳ ଦେଖନ୍ତୁ । ବିରାଟପର୍ବ ପ୍ରାରମ୍ଭରେ ଗଣେଶଙ୍କର ସ୍ତୋତ୍ର ରଚନା କରି ସେଠାରେ ତାହାଙ୍କର ଦକ୍ଷିଣଦିଗବସ୍ଥିତିକି ଯାହା ପ୍ରକାଶ କରି ଅଛନ୍ତି, ପାଠକେ ଦେଖିବେ, ଗଣେଶଙ୍କ ସେହି ସମବସ୍ଥାନ ପୁରୀ ମନ୍ଦିରର କ୍ରମାନୁଗତ କେବଳ ।(୧) ଉଦ୍‌ଯୋଗପର୍ବରେ ଯାହାକି ସୁଦେଷ୍ଣାଙ୍କର ଭାବୀ ଜନ୍ମରେ ଇନ୍ଦ୍ରଦ୍ୟୁମ୍ନଙ୍କ ପତ୍ନୀ ଗୁଣ୍ଡିଚାବତୀଙ୍କର ଶରୀର ଗ୍ରହଣ ପ୍ରକାଶିତ ହୋଇଅଛି, ସେଥିରୁ କବି ମହାଶୟଙ୍କର ଶ୍ରୀଜଗନ୍ନାଥ ମହାପ୍ରଭୁଙ୍କ ପ୍ରଧାନ ଯାତ୍ରା ଗୁଣ୍ଡିଚାର ସଂପୂର୍ଣ୍ଣ ତତ୍ତ୍ୱାଭିଜ୍ଞତା ଆଉ ତଦ୍‌ପ୍ରତି ତଦୀୟ ଅକ୍ଷୁଣ୍ଣ ଅନୁରାଗବତ୍ତା ଅନୁମିତ ହୁଏ । ତଥାଚ କେତେକ ସ୍ଥଳରେ ଯାହାକି ଭରଦ୍ୱାଜ ଋଷିଙ୍କର ଆଶ୍ରମ ବା ନିବାସର ସ୍ଥାନ ଉତ୍କଳ ଦେଶ ବୋଲି ଏ ଲେଖି ଅଛନ୍ତି, ତହିଁରେ ସୁଦ୍ଧା ଶ୍ରୀ ଜଗନ୍ନାଥ କ୍ଷେତ୍ର ପ୍ରତି କବିଙ୍କର ପ୍ରଗାଢ଼ ଗୌରବ ଥିବାର ଜଣାଯାଏ । ଭରଦ୍ୱାଜଙ୍କ ଆଶ୍ରମର ଚିତ୍ରକୁଟର ଅନତିଦୂର ଅର୍ଥାତ୍ ପ୍ରାୟ ଦଶକ୍ରୋଶ ବ୍ୟବଧାନରେ ଅବସ୍ଥିତ । ତେବେ ଉତ୍କଳ ଦେଶ ପ୍ରତି ତାହାଙ୍କୁ ଓଟାରି ଆଣିଲେ କିପରି ? ଏହାର ଉତ୍ତର ସ୍ୱରୂପ କି ସମାଧାନ ଦିଆଯାଇପାରେ ? ବୋଧହୁଏ, ଉତ୍କଳର ସ୍ୱର୍ଗାତିରେକ ସ୍ଥାନ ଶ୍ରୀ ପୁରୁଷୋତ୍ତମକ୍ଷେତ୍ର ସର୍ବଦେବତା ଓ ଋଷିବର୍ଗଙ୍କ ଆବାସଭୂତ ବା ବିହାରନିଳୟ ଥିବାରୁ ତଦ୍‌ଦ୍ୱାରା ମାତୃଦେଶର ଗୌରବ ବଢ଼ାଇବାପାଇଁ କବି ମହାଶୟ ଏପରି ଲେଖିଥିବେ; ଆହୁରି ସେ ମନେ କରିଥିବେ ଯେ, ଯେ କୌଣସି ପ୍ରକାର ମହତ୍ତ୍ୱ ସୂଚନା କରି ସ୍ୱର୍ଗାଦପି ଗରୀୟସୀ ମାତୃଭୂମିର ମହତ୍ତ୍ୱ ସମ୍ପାଦନ କିମ୍ବା ମହତ୍ତ୍ୱ ପ୍ରତିଷ୍ଠାନ ସାଧୁସନ୍ତତିର ପ୍ରଧାନ କର୍ତ୍ତବ୍ୟ । ଅତଏବ ତ୍ରିକାଳତତ୍ତ୍ୱଦର୍ଶୀ ଜ୍ଞାନୈଶ୍ୱର୍ଯ୍ୟ-ସମ୍ପନ୍ନ ସୁରାସୁର-ପୂଜ୍ୟପାଦ ଭରଦ୍ୱାଜଙ୍କୁ ଉତ୍କଳର ନିବାସୀ ବୋଲି ନିର୍ଦ୍ଦେଶ କରି ଅଛନ୍ତି ।[୨]



(୧) ଦକ୍ଷିଣ ଦ୍ୱାର ଆବୋରି ଥାଅ ସବୁବେଳେ ।
ସୁମରନ୍ତେ ବିଘ୍ନମାନ ହର ଅବହେଳେ । ବି.ପ୍ର.

[୨] ଉତ୍କଳ ଦେଶରେ ଭରଦ୍ୱାଜ ମହାଋଷି ।
ଦ୍ରୋଣ ମହାରଥି ଏହୁ ତାହାଙ୍କର ଶିଷି । ବି.ପ.
କୁରୁସୈନ୍ୟ ଦର୍ଶନ ସ୍ଥଳେ ।

# ଅନ୍ୱୟ ବାଧା

ଅନ୍ୱୟ କବିତାର ଅର୍ଥାତ୍ କାବ୍ୟ ବା ପଦ୍ୟପ୍ରଣାଳୀର ପ୍ରାଣ ଅଟେ । କବିତାଟି ଅନ୍ୟାନ୍ୟ ଗୁଣମାନଙ୍କରେ ସମଧିକ ସମଳଂକୃତ ଓ ଚମତ୍କୃତ ହୋଇଥାଉ ପଛକେ ଯଦି ସମନ୍ୱୟ ବାଧାରେ କଳଙ୍କିତ, ତାହାହେଲେ ଜୀବନ୍ତ ଶବ ପ୍ରାୟ କେବଳ; ଜୀବନ୍ତ ଶବ କାହିଁକି ? ଯଥାର୍ଥ ଶବ ପ୍ରାୟ କହିଲେ ହେଲା । ଏହି ଗ୍ରନ୍ଥ ମଧ୍ୟରେ ଯେ ଯେ ସ୍ଥାନମାନ ଦୁର୍ମେଧ ଅନୁଲେଖକମାନଙ୍କ ଦ୍ୱାରା ଏକାନ୍ତ ଅନ୍ୱୟହୀନ ଓ କଦର୍ଯ୍ୟ ହୋଇ ପଡ଼ିଅଛି, ସେ ସବୁ ଛାଡ଼ନ୍ତୁ, ସେ ସବୁ ନିଷ୍ପ୍ରାଣ କହିବାକୁ ହେବ, ସେଗୁଡ଼ିକୁ ପୁନରପି ପ୍ରାଣଦାନରେ ଅର୍ଥାତ୍ ଅନ୍ୱୟ ସାଙ୍ଗତ୍ୟରେ ପୁନରୁଜ୍ଜୀବିତ କରିବା ପାଇଁ ବହୁ ଚେଷ୍ଟା ଓ ସମୁଚିତ ଯତ୍ନ ଦରକାର । ସେସବୁ ଛଡ଼ା ଆଉ କେତେକ ସ୍ଥଳରେ କବିଙ୍କର ଆଶୁଲେଖା ପରିପାଟୀରେ ମଧ୍ୟ ପ୍ରମାଦତଃ ଅନ୍ୱୟ ବାଧା ଘଟି ଯାଇଅଛି । ସେଗୁଡ଼ିକ ଅଳ୍ପମାତ୍ର ଯତ୍ନରେ ସାନ୍ୱୟ ଓ ସଙ୍ଗତ ହୋଇପାରେ । ତାଦୃଶ କ୍ରମର ଦିଗ୍‌ଦର୍ଶନ ରୂପେ କେତେକ ସ୍ଥଳମାତ୍ର ନିମ୍ନଭାଗରେ ଦେଖାଉଅଛୁଁ । ତଦନୁକ୍ରମରେ ଅନ୍ୟାନ୍ୟ ସ୍ଥଳମାନ ପାଠକଗଣ ଅନୁମେୟ କରିନେବେ ।

ଯଥା–

(୧) ପୁତ୍ରେକ ଉପୁଜିଲା ଯେ ମହାବଳନ୍ତା
କୋଳେଣ ଧଇଲେ ଶାୟନ୍ତନୁ ମନେ ଚିନ୍ତା । ଆ.ପ.

ମନେ ଚିନ୍ତା– ଏ ସ୍ଥଳରେ କର ଧାତୁର କ୍ରିୟାପଦର ଅଧ୍ୟାହାର ନ କଲେ ଅନ୍ୱୟ ବାଧା ଘଟୁଅଛି ।

(୨) ଶାନ୍ତନଙ୍କୁ ପ୍ରଣିପତ୍ୟ ହୋଇ ଜୟନାଭ ।
ବିବାହକୁ କିପାଇଁ ନ କଲେ ଭୀଷ୍ମଦେବ । ଆ.ପ.

ଏ ସ୍ଥଳରେ ପଚାରିଲେ କିମ୍ବା ପ୍ରଶ୍ନକାରକ କ୍ରିୟାପଦର ଅଭାବରୁ ଅନ୍ୱୟ ବାଧା ଘଟୁଅଛି ।

(୩) ଯେବେ କୀଚକକୁ ନ ମାରଇ ସଖି ! ଆଜ ।
ବେନି ପାଦ ଦ୍ରୋହ ମୁଁ କରଇ ଦେବରାଜ । ବି.ପ.

ଏ ସ୍ଥଳରେ ''ଦେବରାଜଙ୍କ ବେନି ପାଦକୁ କିମ୍ବା ବେନି ପାଦରେ ଦ୍ରୋହ କରଇ'' ଏମନ୍ତ ଅର୍ଥରେ ଯଥାଯଥ ପଦବିନ୍ୟାସ ଓ ଆବଶ୍ୟକୀୟ ବିଭକ୍ତିଯୋଗ ଅଭାବରୁ ଅନ୍ୱୟ ବାଧା ଘଟୁଅଛି । ଇତ୍ୟାଦି, ଇତ୍ୟାଦି ।



# ଛନ୍ଦୋନିୟମ ।

ଉତ୍କଳ-ଆଦିକବି ଶ୍ରୀ ସାରଳାଦାସେ ନିଜର ଭାରତୀୟ ପଦ୍ୟ ରଚନାରେ କୌଣସି ଏକ ନିର୍ଦ୍ଦିଷ୍ଟ ଛନ୍ଦର ନିୟମ ବା ଲକ୍ଷଣକୁ ସଂପୂର୍ଣ୍ଣତଃ ରକ୍ଷା କରିବାପାଇଁ ଯତ୍ନବାନ୍ ହୋଇ ନାହାନ୍ତି । ତଥାପି ଏହା କହାଯାଇ ପାରେ ଯେ, ଚତୁର୍ଦ୍ଦଶାକ୍ଷର ଛନ୍ଦର ପଢ଼ା ବା ଦିଶର ଅନୁସରଣରେ ସ୍ୱୟଂ ଗାନ କରି ଆଶୁକବିତା ଲେଖନପରିପାଟୀରେ ସ୍ୱକୀୟ ଅନର୍ଗଳ ବାକ୍‌ବୈଖରୀକୁ ପଦ୍ୟରେ ନିହିତ କରି ଅଛନ୍ତି । ଅତଏବ ସମଧିକ ସ୍ଥଳରେ ପଦ୍ୟର ଉଭୟ ଦଳ ଚତୁର୍ଦ୍ଦଶାକ୍ଷର ବିଶିଷ୍ଟ ହେଲେହେଁ ବହୁ ସ୍ଥଳରେ ବର୍ଣ୍ଣ ସଂଖ୍ୟାର ବ୍ୟତିକ୍ରମ ଘଟିଯାଇଅଛି । ଏହା କେବଳ ଏହାଙ୍କ କବିତାରେ ଦେଖାଯାଏ, ଏହା ମନେ କରନ୍ତୁ ନାହିଁ । ବଳରାମ ଦାସ ପ୍ରଭୃତିଙ୍କ (ଯାହା ଯାହାଂ କି ଅତି ପ୍ରାଚୀନ) ରାମାୟଣାଦିର ତାଳପତ୍ର ପୁସ୍ତକମାନ ଫିଟାଇ ଦେଖନ୍ତୁ, ଅନେକ ସ୍ଥଳରେ ଚତୁର୍ଦ୍ଦଶାକ୍ଷରିକ ଛନ୍ଦର ପଦ୍ୟଗୁଡ଼ିକର ବର୍ଣ୍ଣସଂଖ୍ୟାର ବ୍ୟତିକ୍ରମ ନ୍ୟୂନାଧିକତଃ ଦେଖିବାକୁ ପାରିବେ । କିନ୍ତୁ ଏହା ବୋଲାଯାଇ ପାରେ ଯେ, ଏହି କ୍ରମଟି ଏହି ଭାରତରେ ଅତିରିକ୍ତ । ପଦ୍ୟର ବର୍ଣ୍ଣମାନଙ୍କର ନିୟମିତ ସଂଖ୍ୟାର ଅତିକ୍ରମ ସମ୍ବନ୍ଧରେ ଆମ୍ଭମାନଙ୍କର ମନ୍ତବ୍ୟ ଏହି ଯେ, ଯେ କୌଣସି ଭାଷା ହେଉ, ପ୍ରାଥମିକ ପଦ୍ୟ ରଚନାରେ ଅବଶ୍ୟ ଏଭଳି କ୍ରମ ଘଟିବା ଅସମ୍ଭବ ନୁହେ । ପଦ୍ୟ ରଚନାର ପ୍ରଥମାବସ୍ଥାରେ ଛନ୍ଦୋନିୟମ ପ୍ରତି କେତେଦୂର ଲକ୍ଷ୍ୟ ରହେ ନାହିଁ, ଯେ କୌଣସି ପ୍ରକାର ପଢ଼ାଧୋରଣୀରେ କେବଳ ମନ ନିବିଷ୍ଟ ଥାଏ, ଦେଶୀୟ ଭାଷା ପଦ୍ୟରେ ଏହା ହେବା ସହଜ କଥା । ଦେଶୀୟ ଭାଷାମାନଙ୍କ ଅପେକ୍ଷା ସଂସ୍କୃତ ଭାଷାର କେବଳ ଛନ୍ଦୋନିୟମ କାହିଁକି, ଯାବତୀୟ ବିଷୟ ସଂପୂର୍ଣ୍ଣତଃ ଲକ୍ଷଣଲକ୍ଷିତ, ଏହା କହିବା ବାହୁଲ୍ୟ ମାତ୍ର । ତଥାପି ମହାଭାରତ ଗ୍ରନ୍ଥ ଅତି ପ୍ରାଚୀନ ଓ ଅତି ପ୍ରକାଣ୍ଡ ଥିବାରୁ ତାହାର କେତେକ ସ୍ଥଳରେ ପଦ୍ୟଗୁଡ଼ିକ ବର୍ଣ୍ଣସଂଖ୍ୟା ବ୍ୟତିକ୍ରମଣ ବିଶିଷ୍ଟ ବା ଦୁଇଗୋଟି ଛନ୍ଦ କିମ୍ବା ବୃତ୍ତର ଲକ୍ଷଣବିଶିଷ୍ଟ ହୋଇଯାଇ ଥିବାର ଦେଖାଯାଏ । * ଅତଏବ ସାରଳାଦାସ କବି ଓଡ଼ିଆରେ ପ୍ରଥମତଃ ଅତି ପ୍ରକାଣ୍ଡ ଗ୍ରନ୍ଥ ଲେଖିବାକୁଯାଇ ମଧ୍ୟେ ମଧ୍ୟେ ପଦ୍ୟମାନଙ୍କର ଯେଉଁ ବର୍ଣ୍ଣସଂଖ୍ୟା ବ୍ୟତିକ୍ରମ ବା ଛନ୍ଦ ଲକ୍ଷଣର ବ୍ୟତିକ୍ରମ କରି ଅଛନ୍ତି, ତାହା ଦୋଷାବହ ନୁହେ । ପଦ୍ୟ ଗାନର ସାମୟିକ ଅବସ୍ଥାନୁସାରେ ତାହା

---

* (୧) ରଥଃ ଶରୀରଂ ପୁରୁଷସ୍ୟ ରାଜନ୍ !
ଆତ୍ମାନିୟନ୍ତେନ୍ଦ୍ରିୟାଣ୍ୟସ୍ୟ ଚାଶ୍ୱାଃ । ଉ. ପ. ୩୩ ଅ:

(୨) ନ ଦେବାନାଂ ନାପି ଚ ମାନୁଷାଣାଂ ।
ଭବିଷ୍ୟସି ତ୍ୱଂ ତର୍କଣୀୟୋ ନରେନ୍ଦ୍ର । ଉ. ପ. ୩୨ ଅ:

ଇତ୍ୟାଦି ସ୍ଥଳରେ ଦେଖନ୍ତୁ ପଦ୍ୟର ଉଭୟ ଦଳ ଉଭୟ ବୃତ୍ତର ଲକ୍ଷଣବିଶିଷ୍ଟ ହୋଇ ଯାଇଅଛି ।

ଘଟିଅଛି । ସମୟର ସଂସ୍କାରବଶତଃ ଅବିରୁଦ୍ଧଭାବରେ ସେ ସବୁ ସଂଯତ କରାଯାଇ ପାରେ । ଏ ସମ୍ବନ୍ଧରେ ଏହି ଭାରତରୁ ବହୁ ପଦ୍ୟମାନ ଉଦ୍ଧୃତ କରି ପ୍ରମାଣ ଦେଖାଇବା ଅନାବଶ୍ୟକ । ପାଠକ ଏହାର ଯେ କୌଣସି ତାଳପତ୍ର ପୁସ୍ତକ ଦେଖିନେଲେ, ତାହା ସହଜରେ ଉପଲବ୍ଧି କରି ପାରିବେ, ଏହା ସଂପୂର୍ଣ୍ଣ ସତ୍ୟ ବୋଲି ବିଶ୍ୱାସ କରିବେ । କିନ୍ତୁ ଏହି ବ୍ୟତିକ୍ରମଣରେ ଯେ ଉଚ୍ଛୃଙ୍ଖଳ, ଦୁର୍ମତି ଅନୁଲେଖକମାନଙ୍କର ବିପ୍ଲବ ଘଟିନାହିଁ, ଏହା କିଏ କହି ପାରିବ ? ଏହି ଭାରତୀୟ ପଦ୍ୟ ସନ୍ଦୋହରେ ସ୍ଥାନେ ସ୍ଥାନେ ପଦ୍ୟାର୍ଦ୍ଧର ବର୍ଣ୍ଣସଂଖ୍ୟା ଚତୁର୍ଦ୍ଦଶାବଧି ପଞ୍ଚବିଂଶତି ପର୍ଯ୍ୟନ୍ତ ଅତିକ୍ରାନ୍ତ; ତଥାଚ ସ୍ଥାନେ ସ୍ଥାନେ ଏକାଦଶ ପର୍ଯ୍ୟନ୍ତ ହ୍ରାସପ୍ରାପ୍ତ ହୋଇଯାଇଥିବାର ଦେଖା ଯାଉଅଛି । ଏହାର ପ୍ରମାଣ୍ୟ ସ୍ଥିର କରିବା ପାଇଁ ନିମ୍ନରେ ଦୁଇ ଚାରି ଗୋଟି ପଦ୍ୟ ଉଦ୍ଧୃତ କରୁଅଛୁଁ ।

[୧] ବଦନ୍ତି ଅଗସ୍ତି ଶୁଣ ହୋ ଯୁଗପତି ।
ଏମନ୍ତେ ବିଦ୍ୟା ଶିଖିଲା ଚଉବିଂଶ ବର୍ଷ ପର୍ଯ୍ୟନ୍ତେ ନିତି । ଆ. ପ.

ଏହି ପଦ୍ୟରେ ପ୍ରଥମ ଦଳରେ ୧୩, ଦ୍ୱିତୀୟ ଦଳରେ ୧୯ ଅକ୍ଷର ।

[୨] ସେ ରମ୍ଭାକୁ ଛାଡ଼ି ଆନ ମାଗସି ରେ ବଳା ।
କର୍ଣ୍ଣ ବୋଇଲେ ତାତ ସମସ୍ତ ପଦାର୍ଥେ ତୋର ଆଶା ଯେ ବଳିଲା । ଉ.ପ.

ଏହି ପଦ୍ୟର ପ୍ରଥମ ଦଳରେ ୧୪, ଦ୍ୱିତୀୟ ଦଳରେ ୨୧ ଅକ୍ଷର ।

[୩] ବାସବର ହସ୍ତେ କର୍ଣ୍ଣ ଛାଡ଼ନ୍ତେଣ ଅମ୍ବୁ ।
ବ୍ରାହ୍ମଣ ବୋଇଲେ ଅଭେଦ କବଚ ବଜ୍ର ଛଉଡ଼ି ଅମୃତକୁଣ୍ଡଳ ଦେବୁ । ଉ. ପ.

ଏହି ପଦ୍ୟର ପ୍ରଥମ ଦଳରେ ୧୪, ଦ୍ୱିତୀୟ ଦଳରେ ୨୫ ଅକ୍ଷର ।

[୪] ତୋତେ ନ କହି ମୁଁ ଯିବି କେମନ୍ତେ ।
ତୋହର ଆଜ୍ଞା ଶିରୋଧାର୍ଯ୍ୟ ମୋତେ । ଉ. ପ.

ଏହି ପଦ୍ୟର ପ୍ରଥମ ଓ ଦ୍ୱିତୀୟ ଦଳ ୧୧ ଏକାଦଶାକ୍ଷର ବିଶିଷ୍ଟ । ଇତ୍ୟାଦି ।



## ମିତ୍ରାକ୍ଷର ମିଳନ ।

ପଦ୍ୟର ଅନ୍ତ୍ୟରେ ମିତ୍ରାକ୍ଷର ମିଳନାର୍ଥ ବିଶେଷତଃ ଅଭିନ୍ନାକ୍ଷର (୧) ତୁଲ୍ୟାକ୍ଷରର ସଂସ୍ଥାପନ ଏବଂ ଶ ଓ ସ ବା ଷ, ର ଓ ଳ, ଡ଼ ଓ ଳ, ଡ ଓ ର, ଜ ଓ ଯ, ମ ଓ ନ, ଣ

(୧) ଅଭିନ୍ନାକ୍ଷର = କକାରକୁ କକାର, ଚକାରକୁ ଚକାର । ଇତ୍ୟାଦି ।
ତୁଲ୍ୟାକ୍ଷର = କକାରକୁ ଖକାର, ଡକାରକୁ ଡକାର । ଇତ୍ୟାଦି ।

ଓ ନ ପ୍ରଭୃତିର ତୁଲ୍ୟତା ସଂପାଦନପୂର୍ବକୁ ସମସ୍ତ ଭାଷାର ସମସ୍ତ କବିମାନଙ୍କ ଲେଖାରେ ଚଳି ଆସୁଅଛି । (୧) ତଥାଚ କେତେକ ସ୍ଥଳରେ ପଦ୍ୟାର୍ଦ୍ଧର ଅବସାନରେ ସଂଯୁକ୍ତ ବର୍ଣ୍ଣର ଅନ୍ତିମାକ୍ଷର ଓ କେତେକ ସ୍ଥଳରେ ସଂଯୁକ୍ତ ଆଦିମାକ୍ଷରକୁ ଅଗ୍ରାହ୍ୟ କରି ତତ୍‌ପୂର୍ବ ବା ପରବର୍ତ୍ତୀ ଅକ୍ଷର ସହ ପଦ୍ୟର ଅନ୍ୟ ଦଳର ଅନ୍ତ୍ୟସ୍ଥ ତଦଭିନ୍ନ ବର୍ଣ୍ଣ ବା ତତ୍‌ତୁଲ୍ୟ ଧ୍ୱନିଯୁକ୍ତ ବର୍ଣ୍ଣର ମିତ୍ରତା କଳ୍ପନା ମଧ ପ୍ରାଚୀନ ପଦ୍ୟ ଗ୍ରନ୍ଥମାନଙ୍କରେ ଦେଖା ଯାଉଅଛି । ଯେ ଯେ ସ୍ଥଳରେ ଅନ୍ତିମସ୍ଥ ସଂଯୁକ୍ତାକ୍ଷରର ଏକ ଭାଗ ଅଗ୍ରାହ୍ୟ ହୋଇଥାଏ, ସେ ସ୍ଥଳରେ ପଦ୍ୟର ଅନ୍ୟ ଦଳସ୍ଥ ଶେଷାକ୍ଷରର ଧ୍ୱନିର ସାମ୍ୟ ସମଧିକରୂପେ ଧାର୍ଯ୍ୟ ହୋଇଥାଏ; ଧ୍ୱନିର ତାଦୃଶ ସାମ୍ୟ ନ ଥିଲେ ସଂଯୁକ୍ତାକ୍ଷରର ଏକଦେଶ ମିତ୍ରବର୍ଣ୍ଣସ୍ୱରୂପ ଗ୍ରହଣ କରାଯାଇ ନ ପାରେ । ଏହି ମହାଭାରତରେ ଏ ସବୁ ପ୍ରଚୁର ଭାବରେ ଦେଖାଯାଏ ଏବଂ ଏତଦ୍‌ଭିନ୍ନ ଅନ୍ୟ ପ୍ରକାର ଆକ୍ଷରିକ କୃତ୍ରିମ ମିତ୍ରତାର ସଂସ୍ଥାପନ ମଧ ବିରଳ ନୁହେ । ତାହାର ପ୍ରମାଣ ସ୍ୱରୂପ କେତେଗୋଟି ପଦ୍ୟମାତ୍ର ନିମ୍ନରେ ଉଦ୍ଧୃତ ହେଲା ।

ତ୍ର – ତ-ରକ୍ତକୁମୁଦ ପ୍ରାୟେ ଦିଶଇ ବେନି ନେତ୍ର ।
ବଦନ ଦେଖିଣ ପୁଣ ଓପ୍ରୋଧ ବହୁତ । ବି. ପ.

ନ୍ତେ – ତ୍ରେ-ଅନେକ ମଧୁର ବାକ୍ୟ ବଦୟନ୍ତି କୋନ୍ତେ ।
ପରମ ସାନନ୍ଦ ଶୁଣି ହେଲେ ପିତା ପୁତ୍ରେ । ବି. ପ.

ତ୍ୟ – ର୍ଥ-ସହଦେବ ବୋଲେ ଦେବ ! ତୁମ୍ଭ ବାକ୍ୟ ସତ୍ୟ ।
ଶମୀବୃକ୍ଷ ତଳେ ଦେବ ! ଅଛି ମହାତୀର୍ଥ । ବି. ପ.

ତ୍ୟ – ସ୍ତ୍ର-କର୍ଣ୍ଣ ବୋଇଲେ ତାତ ଅନେକ କଲୁ ସତ୍ୟ ।
ଦିଅ ପିତା ମୋତେ ଏବେ ବଜ୍ରଶକ୍ତି ଅସ୍ତ୍ର । ଉ. ପ.

ନ୍ତ୍ରୀ – ଥି-ପାବଛର ତଳେ ସହଦେବ ମହାମନ୍ତ୍ରୀ ।
ଭୂତଭବିଷ୍ୟ ଜାଣଇ କରେ ମନ୍ତ୍ରପୋଥି । ବି.ପ.

ହ୍ୟ – ଜ-ସ୍ୱାମୀ ତୁ ସିନା ଆମ୍ଭଙ୍କୁ କରାନ୍ତୁ ଯେ ଦହ୍ୟ ।
ମୁଁ ଏବେ ତୁମ୍ଭଙ୍କୁ ଦହନ କରୁଅଛି ଆଜ । ଇତ୍ୟାଦି ।

ଓଡ଼ିଆର କେତେକ ତଦ୍ଭବ ଶବ୍ଦମାନଙ୍କରେ ମୂଳପ୍ରକୃତିସ୍ଥ ତକାରର ଟକାର ହେଉଥିବାରୁ ତଥାଚ ଟକାର ଓ ଠକାର ତୁଲ୍ୟାକ୍ଷର ଥିବାରୁ ପରା ସାରଳାଦାସେ ତକାର

(୧) ରଳୟୋର୍ଡଳୟୋସ୍ତଦ୍ୱଦ୍ ଜଯୟୋର୍ବବୟୋରପି ।
ଶସୟୋର୍ମନୟୋଶ୍ଚାନ୍ତେ ସବିସର୍ଗାବିସର୍ଗୟୋଃ ।
ସବିନ୍ଦୁକାବିନ୍ଦୁକୟୋଃ ସ୍ୟାଦଭେଦେନ କଳ୍ପନଂ । ଇତ୍ୟାଦି । କବି ଚିନ୍ତାମଣି ।

ଓ ଠକାରର କୃତ୍ରିମ ମିତ୍ରତା କଳ୍ପନା କରି ପ୍ରୋକ୍ତ ଅକ୍ଷରଦ୍ୱୟକୁ ଅନେକ ସ୍ଥଳରେ ମିତ୍ରାକ୍ଷରରୂପେ ମିଳାଇ ଅଛନ୍ତି । ତଥାଚ କ୍ଷକାର ଓ ଛକାର, କ୍ଷକାର ଓ ଖକାର ପଦ୍ୟରେ କେତେକ ସ୍ଥଳରେ ମିତ୍ରାକ୍ଷରସ୍ୱରୂପ ରହୁଥିବାରୁ ଅପିଚ ଷକାର ଓ ଛକାରର ଉଚ୍ଚାରିତ ଧ୍ୱନି ପ୍ରାୟ ସମାନ ଥିବାରୁ ଖ ଓ ଷ କୁ, ଷ ଓ କ୍ଷ କୁ ଆଉ ଖ ଓ ଛ କୁ ମଧ୍ୟ ମିତ୍ରାକ୍ଷର ପରି ମିଳାଇ ଦେଇ ଅଛନ୍ତି ।

ତ – ଠ-ଯାହାକୁ ଇଚ୍ଛା ତୋର ବର ଗୋ ସୁଚିତ୍ତେ ।
ପାରିଜାତ ପୁଷ୍ପମାଳା ଦିଅ ତାର କଣ୍ଠେ । ଆ. ପ.

ଖ – ଛ-ଚାରିଦିଗେ ଚାରିମେଘେ ତୁମ୍ଭେ ହୁଅ ସାକ୍ଷୀ ।
ଭୋ ଧର୍ମଦେବତା ଦଣ୍ଡେ ରହ କର୍ଣ୍ଣ ମୋତେ ଦାନ ଦେଉଛି । ଉ. ପ.

ଖ – ଷ-ଶୁଣିଣ ଶ୍ରୀକୃଷ୍ଣ ଚାହିଁଲେ ଅର୍ଜୁନର ମୁଖ ।
କର୍ଣ୍ଣର ଠହୁଁ କବଚ କୁଣ୍ଡଳ କେମନ୍ତେ ଆଣିବୁ ବୀଭତ୍ସ । ଉ. ପ.

ଏ ପଦ୍ୟଟିକୁ ଛାପାରେ ପରବର୍ତ୍ତିତ କରି ଦେଇଅଛନ୍ତି । ଉ. ପ. ୨୨ ପୃ: ଦେଖନ୍ତୁ ।

କ୍ଷ – ଷ-ଉତ୍ତରକୁମାର ଯେ ବିରାଟ ଜ୍ୟେଷ୍ଠବତ୍ସ ।
ମଘଦେଶ ମତ୍ସ୍ୟଦେଶ କରଇ ସେ ରକ୍ଷା । ବି. ପ.

କ୍ଷ – ଛ-ତୁମେ ଯେବେ ସମରକୁ କରିଅଛ ଇଚ୍ଛା ।
ପ୍ରତ୍ୟକ୍ଷରେ ଜାଣଟିକି ଭୀଷ୍ମଙ୍କର କକ୍ଷା । ଉ. ପ.

ଆଉ କେତେକ ସ୍ଥଳରେ ତକାର ଓ ଛକାରର, ସକାର ଓ ଛକାରର, ଚକାର ଓ କ୍ଷକାରର ଏବଂ ଥକାର ଓ ଛକାରର ମଧ୍ୟ ଉଚ୍ଚାରିତ ଧ୍ୱନିର ସାମ୍ୟକଳ୍ପନା କରି ମିତ୍ରତା ସଂପାଦନ କରି ପକାଇ ଅଛନ୍ତି ।

ତ – ଛ-ଆପଣେ ଆପଣେ ରାୟେ ହେଲା ଶାନ୍ତମୂର୍ତ୍ତି ।
ଦେଖି କୁନ୍ତେ ସମସ୍ୟା ଯେ ନ ଦେଲେକ କିଛି । ବି.ପ.

ସ – ଛ-ଯୁଧିଷ୍ଠିଦେବ ତାକୁ ବଚନ ପ୍ରକାଶି ।
ବାବୁ ଅଜ୍ଞାତ ଲେଖ ହେ କେତେଦିନ ଅଛି । ବି. ପ.

ଚ – କ୍ଷ-ଶସ୍ତ୍ର ନ କାଟନ୍ତେ ଯେ ରହିଲେ ବୀରେ ଘୁଞ୍ଚି ।
ଭୀମ ବୋଇଲେ ତୁମ୍ଭେ ଯେ ହୋଇଲ ନିର୍ମାକ୍ଷି । (ନିର୍ମାଖି) ବି. ପ.

ଥ – ଛ-ଏକ ଶରେ ରହିଅଛି ଶଲ୍ୟଙ୍କର ରଥ ।
କୃଷ୍ଣାର୍ଜୁନେ ଶର ବିନ୍ଧେ ହୋଇ ସମକକ୍ଷ । ଦ୍ରୋ. ପ.

କିନ୍ତୁ ଖ ଓ ଛ, ଥ ଓ ଛ ଏବଂ ଚ ଓ କ୍ଷ ର ମିଳନରେ ଆଦୌ କିଛିହିଁ ସମୀଚୀନତା ନାହିଁ । ଏହାଛଡ଼ା ଆହୁରି କେତେକ ସ୍ଥଳରେ ଅନ୍ୟ ଲେଖକମାନଙ୍କର ଏକାନ୍ତ ଉଚ୍ଛୃଙ୍ଖଳତାରେ ଗଠିତ ମିତ୍ରାକ୍ଷର କଳ୍ପନା ସଂପୂର୍ଣ୍ଣ ବିକୃତ ହୋଇ ପଡ଼ିଅଛି । ଏ ସବୁ ସ୍ଥଳମାନ ସଂସ୍କର୍ତ୍ତବ୍ୟ ।

ଏହି ପ୍ରକାଣ୍ଡତମ ମହାଭାରତର ଅନେକ ସ୍ଥଳରେ ଦେଖିବେ, କବି ମହାଶୟ ପଦ୍ୟଗତ ଅନ୍ତ୍ୟ ବର୍ଣ୍ଣମାନଙ୍କର ପରସ୍ପର ମିତ୍ରତା ଘଟାଇବାପାଇଁ ଅଯଥା ସ୍ୱର ଯୋଗ ଓ ସ୍ୱର ବିଯୋଗ ମଧ କରି ଅଛନ୍ତି । ଏତଦ୍‌ଦ୍ୱାରା ସ୍ଥାନେ ସ୍ଥାନେ ପଦମାନ ବିକୃତାର୍ଥ ହୋଇ ଯାଇଅଛି ।

(୧) ଏହା ଶୁଣି ବୋଇଲେ ଶାନ୍ତନୁ ନୃପଋଷି ।
ତୋତେ ଦେଖିଲେ ଚିତ୍ତେ ଲାଗଇ ମହାତ୍ରାସି । ଆ. ପ.

(୨) ନୀଳରାମ ବୋଇଲେ ପର୍ଶୁରାମ ଆଜ୍ଞା ମେଣ୍ଟି ।
ଅବଶ୍ୟ ହୋଇବ ଯେ ତୋହର ଶିର କାଟି । ଆ. ପ.

(୩) ଅଣଉପରୋଧୀ ଏ ତ୍ରିଲୋକେ ମହାଯୋଦ୍ଧି ।
ଏହାଙ୍କୁ ତୋହର ଆରେ କିସ ଅଛି ବୁଦ୍ଧି । ଆ. ପ.

(୪) ଅତି ଶ୍ରମ ହୋଇ ପଳାଇଲା ଶତଧନୁ ।
ଶରଣ ପଶିଲା ଯାଇ ପାର୍ଥ ଅରଜୁନୁ । ମ. ପ.

ଅରଜୁନେ ଶରଣ ପଶିଲା – ଏପରି ହେବାକୁ ଥିବାସ୍ଥଳେ ଅରଜୁନୁ ଶରଣ ପଶିଲା କରି ଅଛନ୍ତି ।

(୫) ହସ୍ତେ ଅଛି ମହାତ୍ମାର ସପ୍ତସ୍ୱର ବେଣୀ ।
ଦେଖି କରି ପୂଜା କଲେ ଦେବ ଚକ୍ରପାଣି । ସ. ପ.
ବୀଣାକୁ ବେଣୀ କରି ଅଛନ୍ତି ॥

(୬) ପାଣ୍ଡବେ ରହିଛନ୍ତି ଅସ୍କନ୍ଧ ନାମେ ବନେ ।
ଗଙ୍ଗା ବହଇ ସେଠାରେ ଉତ୍ତର ବାହିନେ । ବ. ପ.
ଉତ୍ତର ବାହିନୀକୁ ଉତ୍ତର ବାହିନେ କରିଅଛନ୍ତି ।

(୭) ମୁଁ ଯେ ଆଶା କଲି ତୋହର ବଚନେ ।
କ୍ଷୁଧାରେ ଶରୀର ମୋର ହେଉଅଛି ଦହନେ । ବ. ପ. ଇତ୍ୟାଦି ।
ଦହନକୁ ଦହନେ କରି ଅଛନ୍ତି ।

କିନ୍ତୁ ଏଥି ମଧରେ ଯେ ଯେ ସ୍ଥଳରେ ବ୍ୟକ୍ତିବାଚକ ଆକାରନ୍ତ ପଦକୁ ମାନ୍ୟାର୍ଥରେ ଏକାରାନ୍ତ ଆଉ ଆଦର କିମ୍ବା ଅନାଦର ଅର୍ଥରେ ଆକାରନ୍ତ କରି ଅଛନ୍ତି, ସେହି ସ୍ଥଳଗୁଡ଼ିକ ମାତ୍ର ପ୍ରାଚୀନ ସାହିତ୍ୟର ରୀତିସଙ୍ଗତ ।

(୧) ଅତି ଗହନ ବନକୁ ନ ଯିବୁଟି ପାର୍ଥ ।
ଦୂତ ମୁଖରୁ ଆମ୍ଭେ ପାଇବୁ ବାରତ । ମ. ପ. । ଆକାରଲୋପ ।

(୨) ପୂର୍ବର ଭବିଷ୍ୟ କଥା କେ କରିବ ଆନ ।
ତୋର ପୁତ୍ର ନୁହଇଟି କୁମାର ଅଭିମନ୍ୟ । ଉ. ପ. । ଉକାରଲୋପ ।

(୩) ଦଶ ସହସ୍ର ରାଜା ପଡ଼ିବେ ଅଶୀ ସହସ୍ର ସେନା ।
ତିନି ପ୍ରହରେ ପଡ଼ିବ କୁମାର ଅଭିମନ୍ୟା । ଉ. ପ.

ଅଭିମନ୍ୟୁ ଶବ୍ଦର ଉକାର ଲୋପ କରି ଆକାର ଯୋଗ କରି ଅଛନ୍ତି । ମାତ୍ର ଏତାଦୃଶ କେତେକ ସ୍ଥଳରେ କବିଦତ୍ତ ପଦକୁ ଛାପାକାର ବଦଳାଇ ଦେଇ ଅଛନ୍ତି । ଉ. ପ. ୧୮ ପୃ: ଦେଖନ୍ତୁ ।

(୧) ଶୁଣିଣ ଗାଲବ ରାଜା ସୈନ୍ୟବଳ ସାଜେ ।
ପାତ୍ର ଅମନାତ୍ୟ ତୁଲେ ଚଳେ ମହାରାଜେ । ମୁ. ପ.

(୨) ଏ ଜନ୍ମେ ମୋହର କେବେ ନାହିଁ ତୋରେ ସେବା ।
ମୋତେ କିସ ଅର୍ଥେ କଷ୍ଟ ଦେଲୁ ବାସୁଦେବା । ବ. ପ.

(୩) କର୍ଣ୍ଣ ବୋଇଲେ ତୋର କିଛି ଦେଇ ନାହିଁ ଇଚ୍ଛା ।
ଆବର କେତେ ସତ୍ୟଭଗ୍ନ ହେଉ ସହସ୍ରାକ୍ଷା । ଉ. ପ. ଇତ୍ୟାଦି ।

(୧) ଏ ମହାକ୍ଷେତ୍ର ହୋଇଲା ଅସୁରଙ୍କ ଭୋଗି ।
ପଥିକ ଜନଙ୍କୁ ଥାନ୍ତି ବାଟରେ ସେ ଛଗି । ବ. ପ.

(୨) ଏତେ ଭାରାକୁ ଉଶ୍ୱାସ କଲା ଫାଲଗୁନି ।
ମାନବ ଜନ୍ମ ହୋଇ ମହିମା ଧନି ଧନି । ବ. ପ.

ଭୋଗ୍ୟ ପଦକୁ ଭୋଗ ଓ ଧନ୍ୟ ପଦକୁ ଧନି କରି ଅଛନ୍ତି ।

(୧) କୁମର ବୋଇଲା ତାତ ବରିଲାକ ମୋତେ ।
ତାହା ଶୁଣିଣ ହରଷ ହୋଇଲା ନୃପତ୍ୟେ । ମ. ପ.

(୨) ଏଥୁଅନ୍ତେ ଶୁଣ ଜନେ ଦେଇ ମନ କର୍ଣ୍ଣ ।
ଯୁଧିଷ୍ଠି ଆଗେ କହନ୍ତି କଉଶିକ ମୁନ୍ୟ । ବ. ପ.

ଇତ୍ୟାଦି ସ୍ଥଳରେ ଇକାର ଯକାରରେ ପରିଣତ ଥିବା ଦେଖାଯାଏ ।

(୧) ଦେବୀ ଯେ ହୋଇଲେ କାକ ରୂପ ଗୋଟିଏ ।
କାକ ରୂପ ଦେଖି ହର ରମଣ ଇଚ୍ଛିଏ । ବ. ପ.

''ଇଚ୍ଛିଲେ'' ପଦ ଇଚ୍ଛିଏ ହୋଇଅଛି ।

(୨) ସ୍ନାହାନ କରିଣ ସେ ରାକ୍ଷସ ଗଲା ରାୟେ ।
ନିଜ ପୁର କଥା ହୃଦେ ସୁମରଣ କଏ । ବ. ପ.

''କରେ'' ପଦ କଏ ହୋଇଅଛି । ଇତ୍ୟାଦି ।

କେତେକ ସ୍ଥଳରେ ଏହି ଆଶୁ କବିତା ଧୋରଣୀର ଆବେଗରେ ହଠାତ୍ ମିତ୍ରାକ୍ଷର ସଂଯୋଗର ଅପ୍ରାପ୍ତିରୁ ଯକାରକୁ ଇକାରରେ ଆଉ ଇକାରକୁ ଯକାରରେ ପରିଣତ କରିଦେଇ ଅଛନ୍ତି । ଅପିଚ କେତେକ କ୍ରିୟା ପଦର ବ୍ୟଞ୍ଜନର ଲୋପ କରି ତଦନ୍ତ୍ୟସ୍ଥ ସ୍ୱରରେ କେବଳ ମିତ୍ରାକ୍ଷର ମିଳନର ଯୋଗାଡ଼ କରି ଅଛନ୍ତି । ପାଠକେ ! ଏତାଦୃଶ ସ୍ଥଳମାନଙ୍କରେ ଅବଶ୍ୟ ବିଶ୍ୱାସ କରିବେ ଯେ, ଶ୍ରୀମାନ୍ ସାରଳାଦାସ କବି ମିତ୍ରାକ୍ଷର ଓ ସମସ୍ୱର ମିଳାଇବା ପାଇଁ ଅନର୍ଥତଃ ସ୍ୱରମାନଙ୍କର ଯୋଗ ବିଯୋଗାଦି କରି ଅଛନ୍ତି ସତ୍ୟ; ତଥାପି ତହିଁରେ ଅନଭିଜ୍ଞ ଅନୁଲେଖକମାନଙ୍କର ବୁଦ୍ଧି ଦୁର୍ବିଧତାର ବିପ୍ଳବ ସୁଦ୍ଧା ଅପେକ୍ଷାକୃତ ସମଧିକ ଘଟିଅଛି, ଏଥିରେ କିଛି ସନ୍ଦେହ ନାହିଁ ।



## ଆଚାରନୀତି ।

ଆଚାର ଓ ନୀତି ସମ୍ବନ୍ଧରେ ମୂଳ ଗ୍ରନ୍ଥରେ ଯେପରି ସୁବିସ୍ତୃତ ବକ୍ତୃତାମାନ ଦେଖିବାକୁ ପାଉଁ, ଏହି ଭାରତ ଗ୍ରନ୍ଥରେ ସେପରି ସମଧିକ ଲେଖାଥିବାର ଦେଖାଯାଏ ନାହିଁ । କବି ମହାଶୟ ଯାହା ଯାହା ଆବଶ୍ୟକ ମନେ କରି ଅଛନ୍ତି, ଅଥଚ ଯେତେଦୂର ପାରି ଅଛନ୍ତି, ତାହା ଅତି ସଂକ୍ଷିପ୍ତ କରି ନିଜର ଆଉ ତାତ୍କାଳିକ ଲୋକ ବ୍ୟବହାରର ଅନୁକୂଳତାରେ କେତେକ ଆଚାର ଓ ନୀତି ବୁଝାଇ ଅଛନ୍ତି । ସ୍ଥାନେ ସ୍ଥାନେ ସେପରି ଯାହା ଯାହା କିଛି ଉକ୍ତ ଅଛି, ତାହା ନେଇ ବିଚାର କଲେ ତଦାନୀନ୍ତନ ଓ ଆଧୁନିକ ଉତ୍କଳୀୟ ଆଚାର ଓ ନୀତିର ତାଦୃଶ ପ୍ରଭେଦ ପରିଦୃଶ୍ୟମାନ ହୁଏନାହିଁ । ବର୍ତ୍ତମାନ ଉତ୍କଳରେ ସାଧାରଣତଃ ପ୍ରଚଳିତ ଆଚାର ଓ ବ୍ୟବହାରଗୁଡ଼ିକ ଯେପରି ଅଛି, ବୋଧହୁଏ ସାରଳାଦାସଙ୍କ ସମୟରେ ମଧ୍ୟ ପ୍ରାୟଶଃ ସେହିପରି ଥିଲା । ସ୍ଥୂଳରେ କହିଲେ, ଉତ୍କଳର ଆଚାର ଓ ବ୍ୟବହାରକ୍ରମ ତାଙ୍କ ଦିନାବଧି ଏ ଦେଶରେ ଏକ ପ୍ରକାର ଚଳି ଆସୁଅଛି ବୋଲିବାକୁ ହେବ, ତଥାପି ପାଠକଙ୍କ ତୃପ୍ତି ନିମନ୍ତେ ଏ ସମ୍ବନ୍ଧରେ ଗ୍ରନ୍ଥ ମଧ୍ୟରୁ କେତେକ ବିଶିଷ୍ଟ କ୍ରମମାନ ଉଦ୍ଧୃତ କରି ନିମ୍ନରେ ସମାସତଃ କିଛି ଲେଖୁଅଛୁଁ ।

ଗାନ୍ଧାରୀ ଓ ପାଣ୍ଡୁଙ୍କର ଉପସ୍ଥିତି ଘଟଣାର ଚିତ୍ରଣ ବିଚାର କଲେ ବୋଧହୁଏ କବିଙ୍କ ସମୟରେ ରାଜସ୍ତ୍ରୀ ବା ରାଜମହିଷୀମାନେ ମଧ୍ୟ ସଂପ୍ରାପ୍ତବୟସ୍କ ଦେବରଙ୍କ ସମ୍ମୁଖରେ ଆଉ ଗୁରୁବର୍ଗଙ୍କ ନିକଟରେ ପ୍ରତ୍ୟକ୍ଷତଃ ନିଃଶଙ୍କ ଭାବରେ ଉପସ୍ଥାନ ବା ଉପବେଶନ କରୁ ନ ଥିଲେ । ପତିଙ୍କ ନିକଟରେ ଦେବରାଦିଙ୍କ ସମାଗମ ଜାଣି, ଟିକିଏ ଅନ୍ତରାଳରେ ରହୁଥିଲେ କିମ୍ବା କିଞ୍ଚିତ୍ ଅନ୍ତର ହେଉଥିଲେ [୧] ଯଦିଚ ସେ ସମୟରେ ଦେବର ଓ ଜ୍ୟେଷ୍ଠଭ୍ରାତୃଜାୟାଙ୍କର ଏକତ୍ର ପ୍ରାତ୍ୟକ୍ଷିକ ଉପସ୍ଥିତି ହେଉ ନ ଥିଲା, ତେବେ କନିଷ୍ଠଭ୍ରାତୃଜାୟା ପ୍ରଭୃତିଙ୍କର ଦେବରାଦିଙ୍କ ସହ ଏକତ୍ରାବସ୍ଥାନର ନିତାନ୍ତ ଅଭାବ ଥିଲା ବୋଲି କହିବା ବାହୁଲ୍ୟ ମାତ୍ର । ଏଥିରୁ ପୁଣି ଜଣା ଯାଉଅଛି କି, ସେହି ସମୟରେ ନାରୀମାନଙ୍କର ଅବରୋଧ ପ୍ରଥା ଇଦାନୀଂତନକ୍ରମ ଅପେକ୍ଷା ଗାଢ଼ତର ଥିଲା । ବର୍ତ୍ତମାନ ତାହା ଅନେକ ପରିମାଣରେ ଶିଥିଳ ହୋଇ ପଡ଼ିଲାଣି ।

ପୂର୍ବେ ଏହି ମିତ-ବିତ୍ତ ଉତ୍କଳରେ ମଧ୍ୟ ଧନଶାଳୀମାନେ ପରସ୍ୱଲୋଲୁପ ଧନୈକପ୍ରାଣ ଅଧର୍ମାଭୀରୁ କେତେକ ରାଜା ଓ ଦସ୍ୟୁମାନଙ୍କର ଅପଜିହୀର୍ଷା ଭୟରେ ନିଜର କଷ୍ଟୋପାର୍ଜିତ କିମ୍ବା ପୈତୃକ ସମ୍ପତ୍ତିରାଶି ଗୁପ୍ତତଃ ଭୂଗର୍ଭସ୍ଥ କରୁଥିଲେ; ଘରେ ପର୍ଯ୍ୟାପ୍ତ ଧନ ଥିଲେ ସୁଦ୍ଧା ଲୋକେ ରାଜଭୟରୁ ଭିକ୍ଷୁକ ବା ଦରିଦ୍ର ପ୍ରାୟ କୁଚେଲ ଓ କୁବେଶ ହୋଇ ସଂଚାର କରୁଥିଲେ । ଏହାର ପ୍ରମାଣ ଏହି ଗ୍ରନ୍ଥର ଅନେକତ୍ର ଦେଖାଯାଏ [୨] ବର୍ତ୍ତମାନ ଇଂରାଜ ଆଧିପତ୍ୟର ସୁମହିମାବଳରୁ ଏହି ଅତ୍ୟାଚାର ବହୁ ସମୟରୁ ଏକାବେଳକେ ବିଲୁପ୍ତପ୍ରାୟ ହୋଇଯାଇ ଅଛି ।

ଦ୍ରୋଣାଚାର୍ଯ୍ୟ ପ୍ରଥମତଃ ଦ୍ରୁପଦାଧିପତିଙ୍କର ଆପଦ୍‌କାଳୀନ ମିତ୍ର ଓ ସଦୁପଦେଶକ ଥିଲେ । ସୌଭାଗ୍ୟକ୍ରମେ ସମୟରେ ଦ୍ରୁପଦରାଜ ରାଜ୍ୟପ୍ରାପ୍ତ ହେବାରୁ କୌଣସି କାରଣବଶତଃ ଦ୍ରୋଣ ରାଜଦିଦୃକ୍ଷୁ ହୋଇ ଦ୍ରୁପଦ ରାଜ୍ୟରେ ଉପଗତ ହୋଇଥିଲେ, ସେହି ସମୟରେ କେତେକ ରାଜପୁରୁଷ ବା ରାଜକର୍ମଚାରୀ ରାଜା ଓ ଦ୍ରୋଣଙ୍କର ପୂର୍ବସୌହୃଦ ସ୍ମରି ରାଜାଙ୍କଠାରେ ତଦାଗମନବାର୍ତ୍ତା ଅବିଳମ୍ବେ ଜଣାଇ ଦେଇଥିଲେ ।

---

[୧] ଗାନ୍ଧାରୀ ଅନ୍ତର ହେଲେ ଦେଖିଣ ପାଣ୍ଡୁଙ୍କୁ ।
ସଞ୍ଜୟ ମନ୍ତ୍ରୀ କହେ ଧୃତରାଷ୍ଟ୍ର ରାଜାଙ୍କୁ । ଆ. ପ.

[୨] ଭଣ୍ଡାର ଫେଡ଼ିଣ ତାକୁ ଲକ୍ଷେ ଧନ ଦେଲେ ।
ଆପଣାର ଘରେ ନେଇ ପୋତ ଖା ବୋଇଲେ ।
x x x x
ଧନମାନ ନେଇ ସେ ପୋତିଲା ନିଜ ପୁରେ ।
ସର୍ବଦା ଗୋଡ଼ାଇ ଥାଇ ବିଦୁର ସଙ୍ଗରେ । ଆ. ପ.

ଦ୍ରୁପଦ ସମାଗତ ଦ୍ରୋଣଙ୍କୁ ଭିକ୍ଷୁକ ବ୍ରାହ୍ମଣ ପ୍ରାୟ ମଣି ସମ୍ବାଦଦାତା କର୍ମଚାରୀମାନଙ୍କ ପ୍ରତି ବିରକ୍ତ ଓ ସରୋଷ ହୋଇ ଦଣ୍ଡବିଧାନ କରିଥିଲେ ବୋଲି ଆଦି ପର୍ବରେ ଉକ୍ତ ଅଛି । ଏ ବଡ଼ ବିଲକ୍ଷଣ ବିବେକର ବିଚାର !! ଭାବନ୍ତୁ, ଏଥିରେ ସମ୍ବାଦଦାତାମାନଙ୍କର ଦୋଷ କଣ ? ଏଥିରୁ ସ୍ପଷ୍ଟ ଜଣା ଯାଉଅଛି, ଆଜକୁ ପ୍ରାୟ ପାଞ୍ଚଶତ ବର୍ଷ ପୂର୍ବେ ସୁଦ୍ଧା ଏହି ଉତ୍କଳରେ ଏତାଦୃଶ ଅକୃତଜ୍ଞ ବିବେକଶୂନ୍ୟ ରାଜା କେତେକ ଥିଲେ, ଅବିବେକିତା ରୂପ ଦୁଷ୍ଟଗ୍ରହାବେଶ ରାଜସମାଜରେ ମଧ କେତେକଙ୍କ ହୃଦୟକୁ ସଂପୂର୍ଣ୍ଣତଃ ଅଧିକାର କରିଥିଲା ।

ଏହି ଭାରତ ଗ୍ରନ୍ଥରେ ବିଶେଷତଃ ଉରସଲ (ଶତ୍ରୁର – ଉରଃଶଲ୍ୟ) ପଦ ରାଜବଂଶୀୟ ଉପାଧିରୂପେ ସାହାମଲ୍ଲ ବା ସାହସମଲ୍ଲ କିମ୍ବା ସାମଲ ପଦ ସାଧାରଣ ବୀରମାନଙ୍କର ଉପାଧିରୂପେ ପ୍ରଚଳିତ ଥିବାର ଅନେକ ସ୍ଥଳରେ ଲେଖା ଅଛି ।

ଜରାସନ୍ଧଙ୍କ ପୁତ୍ର ସହଦେବଙ୍କର ଅଭିଷେକ ବର୍ଣ୍ଣନାରେ ମଧ ଏପରି ଉପାଧିଯୁକ୍ତ ବ୍ୟକ୍ତିମାନଙ୍କର କଥା ଲେଖି ଅଛନ୍ତି । ଏଥିରୁ ଜଣା ଯାଉଅଛି, ଉତ୍କଳରେ ଆଜକୁ ପାଞ୍ଚଶତ ବର୍ଷ ପୂର୍ବରୁ ଏତାଦୃଶ ରାଜଦତ୍ତ ଉପାଧି ପଦମାନଙ୍କର ବ୍ୟବହାର ଚଳି ଆସୁଅଛି । [୧] ସାହାଣୀଆ ପଦର ସାର୍ଥକତା ବା ବ୍ୟୁତ୍ପତ୍ତିକ୍ରମ ସଂପୂର୍ଣ୍ଣତଃ ଧରାଯାଇ ନ ପାରେ ସତ୍ୟ, କିନ୍ତୁ ସାହାମଲ୍ଲ ବା ସହମଲ୍ଲ ପଦଟି ସଦୃଶାର୍ଥ ସହ ଓ ମଲ୍ଲ ଶବ୍ଦର ଅର୍ଥାନୁକୂଲ୍ୟରେ ଗଠିତ ହୋଇଥିବା ସୁସ୍ପଷ୍ଟ ଜଣା ଯାଉଅଛି, ଅଦ୍ୟାପି ଉତ୍କଳରେ ସର୍ବତ୍ର ସାହାଣି ଓ ସାହାମଲ୍ଲ ବା ସାମଲ ଉପାଧି ପ୍ରଚଳିତ ଅଛି । ଏହି ଉପାଧିରେ ଭୂଷିତ ଲୋକେ ପଦାତିମାନଙ୍କର ଏକପ୍ରକାର ଅଧିନେତା ବା ଅଧିପତି ଅଟନ୍ତି ।

ପୁରା ଆମ୍ଭମାନଙ୍କ ଦେଶରେ ବଳବତ୍ତା ଓ ଦୁର୍ଦ୍ଧର୍ଷତା ପ୍ରକାଶାର୍ଥ ବଳବାନ୍ ବା ବୀରପୁରୁଷମାନଙ୍କଠାରେ ରାହୁତ୍ୱ [୨] ଆରୋପିତ କରୁଥିଲେ । ତାହାର କାରଣ ଏହି ଯେ ଲୋକଙ୍କ ମନରେ ଏହି ଆସ୍ଥା ଜନ୍ମିଥିଲା କି ରାହୁ ବିଦ୍ୱେଷିର ଅମୋଘ ଗୁରୁତର ଆଘାତରେ ଛିନ୍ନମସ୍ତକ ହୋଇ ସୁଦ୍ଧା ସଂକଳ୍ପିତ କାର୍ଯ୍ୟରୁ ବିରତ ହୋଇ ନ ଥିଲେ, କୃତକାର୍ଯ୍ୟ ହେବାଯାଏ ଅଗ୍ରସର ହୋଇଥିଲେ । ଅତଏବ ତାଦୃଶ ଦୁର୍ଦ୍ଦମ୍ୟତାର ଉପଲକ୍ଷରେ ବୀରପୁରୁଷମାନଙ୍କୁ ରାହୁତ୍ୱରେ ଯୁକ୍ତ କରୁଥିଲେ । ଏହି ଗ୍ରନ୍ଥ ମଧସ୍ଥ ବୀର ବର୍ଣ୍ଣନାର ସମଧିକ ସ୍ଥଳରେ ବୀରମାନଙ୍କୁ କବି ମହୋଦୟ ତାହାହିଁ କରି ଅଛନ୍ତି, ଅଦ୍ୟାପି

---

[୧] ସାହାଣିଆ ସାହାମଲ୍ଲ ଅନେକ ନିଯୋଗୀ ।
ସମସ୍ତ ବେପାରୀ ଯେ ଧାମଚି ବେଗି ବେଗି । ସ. ପ.

[୨] ସ୍ୱାମୀ ! କଳିଙ୍ଗଦେଶ ରାଜା ହେଲେ ବୀରବାହୁ ।
ଦଣ୍ଡ ବାହିଲା ସେ ସମରେ ଯେହ୍ନେ ରାହୁ । ବି.ପ.

ଉତ୍କଳରେ ତଦନୁକରଣରେ ''ରଣରାଉ'' ''ରଣରାହୁ'' ପ୍ରଭୃତି ବୈରନିର୍ଯ୍ୟାତନ-ବିଦ୍ୟୋତକ ଉପାଧିମାନ ପ୍ରଚଳିତ ରହିଅଛି ।

ଉତ୍କଳରେ ସାରଳାଦାସଙ୍କ ସମୟରୁ କିମ୍ବା ତଦ୍‌ପୂର୍ବରୁ ଆଜ ପର୍ଯ୍ୟନ୍ତ ରାଜସମାଜରେ ବ୍ୟବହାରବିଦ୍‌ମାନଙ୍କ ପାଇଁ ସୁମନ୍ତ (ସୁମନ୍ତ = ଯେ ଉତ୍ତମ ମନ୍ତ୍ରଣା କରି ପାରନ୍ତି) ପ୍ରଭୃତି ଉପାଧିର ଦାନକ୍ରମ ପ୍ରଚଳିତ ହୋଇ ଆସୁଥିବାର ସ୍ପଷ୍ଟ ଜଣା ଯାଉଅଛି । ପାଣ୍ଡବମାନେ ଏକଚକ୍ରାପୁରର ସନ୍ନିହିତ ଓଡ଼ାଦି ଶିବପୁରରେ ଯେତେବେଳେ ଅବସ୍ଥାନ କରୁଥିଲେ, ତଦା ଭୀଷ୍ମସେନ ତତ୍ର ରାଜପଦରେ ଅଧିଷ୍ଠିତ ହୋଇ ତଦୀୟ ପୁରୋହିତଙ୍କୁ ସୁମନ୍ତ ଉପାଧି ପ୍ରଦାନ କରିଥିବାର ଆଦିପର୍ବରେ ଉକ୍ତ ଅଛି । ବର୍ତ୍ତମାନ ସୁମନ୍ତ ପଦ କରଣମାନେ ମଧ୍ୟ ପାଇପାରୁ ଅଛନ୍ତି ।

ଏ କବି ମହାଶୟ ପ୍ରାୟଶଃ ପ୍ରତ୍ୟେକ ଘଟନାରେ ଯେପରି ତିଥିବାରାଦିର ଓ ମୁହୂର୍ତ୍ତ, ଯୋଗ, ଲଗ୍ନାଦିର ଶୁଭାଶୁଭ ବିବରଣ ଦେଇ ଅଛନ୍ତି, ସେଥିରୁ ଜଣାଯାଏ, ସେ କାଳରେ ପ୍ରାୟ ସମସ୍ତଙ୍କୁ ନିତ୍ୟ ନୈମିତ୍ତିକ ଅନୁଷ୍ଠାନରେ ଜ୍ୟୋତିଃଶାସ୍ତ୍ରୀୟ ମତ ଅତ୍ୟାବଶ୍ୟକ ପଡ଼ୁଥିଲା, କାର୍ତ୍ତାନ୍ତିକମାନଙ୍କର ଆଦେଶ ଉପଦେଶ ନ ପାଇଲେ ଲୋକେ ବୋଧହୁଏ କୌଣସି କାର୍ଯ୍ୟରେ ହସ୍ତକ୍ଷେପ କରୁ ନ ଥିଲେ ।

ଆମ୍ଭମାନଙ୍କ ଦେଶରେ ଅଦ୍ୟାପି ଜ୍ୟୋତିଃଶାସ୍ତ୍ରସମ୍ମତ କୃଷି, ବାଣିଜ୍ୟ ପ୍ରଭୃତି ବିଷୟକ ଯେଉଁ ଡାକ ବଚନଗୁଡ଼ିକ (ଏକପ୍ରକାର ପ୍ରବଚନ) ପ୍ରଥିତ ଅଛି, ବିଶ୍ୱାସ ହୁଏ, ସେଗୁଡ଼ିକର ସୃଷ୍ଟି ଏହି ସମୟରୁ ଆରମ୍ଭ ହୋଇଥିଲା ।

ଏହି ଭାରତର ଅନେକ ସ୍ଥଳରେ କବି ମହାଶୟ ତାତ୍କାଳିକ ରାଜାମାନଙ୍କର ବେହରଣ ବିଜୟାଦି କ୍ରମକୁ ମଧ୍ୟ ଚିତ୍ରଣ କରି ଅଛନ୍ତି । ସେଥିରୁ ଜଣାଯାଏ, ତେତେବେଳେ ରାଜାମାନେ ମଣୋହି ପରେ ସୁଖସୁପ୍ତ ରହିବା ପାଇଁ କେବଳ ପହଡ଼ରେ ବିଜେ ନ ହୋଇ ଆପ୍ତ ଓ ବିଦ୍ୱଜ୍ଜନଙ୍କ ସହିତ ସଭାରେ ବା ବେହରଣରେ ବିଜେ କରୁ ନ ଥିଲେ । ସେପରି ସମୟରେ କୌଣସି ପ୍ରକାର ରାଷ୍ଟ୍ରୀୟ କାର୍ଯ୍ୟରେ ନ ଲାଗି ବିଦେଶାଗତ ଭଦ୍ରଲୋକଙ୍କ ସହ ପ୍ରୟୋଜନମତେ ଆଳାପ କରୁଥିଲେ, ନୁହେ ତ କୌଣସି ପ୍ରକାର ପୁରାଣ ବା ଶାସ୍ତ୍ର ସମ୍ବନ୍ଧୀୟ ଆଳାପରେ ଚିତ୍ତ ବିନୋଦନ କରୁଥିଲେ । ବର୍ତ୍ତମାନ ଯୁଗରେ ମଧ୍ୟ ତାଦୃଶ ନିରଳସପ୍ରକୃତିକ ସାହିତ୍ୟବିନୋଦ ରାଜାମାନେ ନିଦ୍ରାଦେବୀଙ୍କର ଅନ୍ତର୍ନୀରସ ବହିଃସରସ କ୍ରୋଡ଼ରେ ପଡ଼ି ରହିବାକୁ ନ ଚାହିଁ 'କାବ୍ୟ ଶାସ୍ତ୍ର ବିନୋଦେନ କାଳୋଗଚ୍ଛତିଧୀମତାଂ' ଏହି ସଦୁପଦେଶର ପକ୍ଷପାତୀ ହୋଇ ଅମୂଲ୍ୟ ସମୟକୁ ଉଚିତ କ୍ରମରେ ଯାପିତ କରନ୍ତି । ପୁରା ଧୃତରାଷ୍ଟ୍ରଙ୍କର ଏହିପରି ସମୟରେ ଯୁଧିଷ୍ଠିରଙ୍କ ପ୍ରେରିତ

ମହାମତି ବିଦୁର [୧] ଉପସ୍ଥିତ ହୋଇ ରାଜନୀତି ବ୍ୟବହାର ନୀତି ପ୍ରଭୃତି ଆଳାପ କରିଥିବା କ୍ରମର ଚିତ୍ରଣରେ କବି ମହାଶୟ ଉଦ୍‌ଯୋଗ ପର୍ବରେ ତାତ୍କାଳିକ ରାଜାମାନଙ୍କର ବ୍ୟବସ୍ଥାର ଆଭାସ ସୂଚନା କରି ଅଛନ୍ତି ।

ସାରଳାଦାସଙ୍କର ନୀତି ବାକ୍ୟ ଚିତ୍ରଣ ସୁଦ୍ଧା ଅତି ମନୋହର । ଏ ମହାଶୟ ମୂଳଗ୍ରନ୍ଥରେ ଉକ୍ତ ଯାବତୀୟ ନୈତିକ ସନ୍ଦର୍ଭକୁ ଯଥାଯଥ ଚିତ୍ରିତ କରି ନ ଥିଲେ ସୁଦ୍ଧା ନିଜର ଅଭିରୁଚି ଓ ମନୀଷା ଅନୁସାରେ ଯେ ଯେ ବିଷୟାବତରଣସ୍ଥଳମାନଙ୍କରେ ତଦୁଚିତ କ୍ରମରେ ନୈତିକ ଚିତ୍ରଣର ପଟ୍ଟିମା ପ୍ରଦର୍ଶନ କରି ଅଛନ୍ତି, ସେଗୁଡ଼ିକ ଅବଶ୍ୟ ହୃଦୟ ସ୍ପର୍ଶ କରୁଅଛି । ତାଦୃଶକ୍ରମର କେତେଗୋଟି ସ୍ଥାନ ଏକମାତ୍ର ବିରାଟ ପର୍ବରୁ ଉଦ୍ଧୟନ କରି ଦିଗ୍‌ଦର୍ଶନକ୍ରମରେ ପାଠକମାନଙ୍କ ସମ୍ମୁଖରେ ଉପସ୍ଥାପିତ କରୁଅଛୁଁ ।

(୧) ବୈରାଟିକ ଭଦ୍ରାସନରେ ସମାରୂଢ଼ ପାଣ୍ଡବମାନଙ୍କ ପ୍ରତି ପରିକୁପିତ ଓ ଜିଘାଂସୋଦ୍ୟତ ବିରାଟରାଜାଙ୍କୁ ତଦୀୟ ପୁତ୍ର ଉତ୍ତର ବୁଝାଉ ଅଛନ୍ତି :—

ପର୍ବତ ତୁଟେ କି ନାଥ ! ଟେଙ୍ଗାରେ ମାଇଲେ ?
ସମୁଦ୍ର ପୋତି ହୁଏ କି ଧୂଳି ପକାଇଲେ ?
ମୃଗର ବଳେ କାହିଁ ଯେ ସିଂହ ଜିଣିହୁଏ ?
ତୁଳାଦ୍ୱାରା ପିଟିଲେ କି ଲୁହା ତୁଟିଯାଏ ?
ଭୁଜଙ୍ଗମ ବଳମାନ ଅପ୍ରମିତ ହେଲେ
ସେ କି ରହି ପାରନ୍ତି ବୈନତେୟ ଆସିଲେ ?
ବହୁ ପରିମାଣ ଗଜ ଏକତ୍ର ହୋଇଲେ
ଏକା କେଶରୀକୁ ଜିଣି ପାରିବେ କି ଭଲେ ? ବି. ପ.

ଏତାଦୃଶ ପଦ୍ୟଗୁଡ଼ିକ ପାଠ କଲାକ୍ଷଣି ନୀତି କୋବିଦଙ୍କ ହୃଦୟରେ—

ତାବଦ୍ ଗର୍ଜ୍ଜତ ମାତଙ୍ଗଃ, ବନେ ମତ୍ତମଦାଳସଃ
ମସ୍ତକନ୍ୟସ୍ତଲାଙ୍ଗୁଳଃ, ଯାବନ୍ନାୟାତି କେଶରୀ ।

ଇତ୍ୟାକାରକ ପ୍ରାଚୀନ ନୀତିବାକ୍ୟଗୁଡ଼ିଏ ସହସା ସମାରୂଢ଼ ହୁଏ ।

(୨) ବାବୁ ! ବିଷ ଅମୃତ ଯେ ଜିହ୍ୱା ଅଗ୍ରେ ଥାଇ
ସଦବୁଦ୍ଧି ଥାଉଁ କି ଅସଦମାର୍ଗେ ପାଇ ?

---

[୧] ମଣୋହି ଉତାରେ କରି ବାହାର ବିଜେୟେ ।
ଏକ ସ୍ଥାନେ ଛନ୍ତି ଧୃତରାଷ୍ଟ୍ର ଯେ ସଞ୍ଜୟେ । ଇତ୍ୟାଦି । ଉ. ପ.

ବାବୁ ଧର୍ମଅଂଶେ ଥିଲେ ହେ ମାନଗୋବିନ୍ଦ !
କଦାଚିତେ ପ୍ରାଣିଙ୍କୁ ନ ପଡ଼େ ପରମାଦ ।

ବିରାଟ ପର୍ବରେ ଧୌମ୍ୟ ପୁରୋହିତଙ୍କ ମୁଖରେ ଦୁର୍ଯ୍ୟୋଧନଙ୍କୁ ବୁଝାଇଥିବା ଏହି ବାକ୍ୟମାନଙ୍କରେ ''ବାକ୍ ମାଧୁର୍ଯ୍ୟାତ୍ ସର୍ବଲୋକପ୍ରିୟତ୍ୱଂ ବାକ୍ ପାରୁଷ୍ୟାତ୍ ସର୍ବଲୋକାହିତତ୍ୱଂ'' ଏହି ନୈତିକ ବାକ୍ୟର ଭାବ ନିହିତ ଥିବାର ପ୍ରତିପନ୍ନ ହେଉଅଛି ।

(୩) ପାଣ୍ଡବମାନେ ବିପଦ ସମୟରେ ବିରାଟ ରାଜାଙ୍କ କର୍ତ୍ତୃକ ପରିରକ୍ଷିତ ଓ ଉପକୃତ ହୋଇଥିବାରୁ ଯୁଧିଷ୍ଠିର କୃତଜ୍ଞତାରେ ପ୍ରଣୋଦିତ ହୋଇ ତ୍ରିଗର୍ତ୍ତ ରାଜାଙ୍କଦ୍ୱାରା ବନ୍ଦୀକୃତ ବିରାଟ ନୃପତିଙ୍କୁ ମୁକ୍ତ କରିବା ଆମ୍ଭମାନଙ୍କର ପ୍ରଧାନ କର୍ତ୍ତବ୍ୟ ବୋଲି ଭୀମସେନଙ୍କୁ ବୁଝାଇ ଅଛନ୍ତି କି –

ଯେବଣ ବୃକ୍ଷ ତଳରେ ଯେତେବେଳେ ବସି ।
ତାର ଗୁଣ ସୁମରଣା କରି ଦିବା ନିଶି ।
ଧିକ ଆମ୍ଭ ଜୀବନରେ ଫୁଟୁ କିନା ଆଖି ।
ନିର୍ଲ୍ଲଜ ମୁଁ ରହିଛି ବିରାଟ କଷ୍ଟ ଦେଖି ।
X X X X
ବାବୁ ଖାଇ ଯାହାର ତାହାର କାର୍ଯ୍ୟ କରି ।
କଲା ଉପକାର ହୃଦଗତେ ନ ପାସୋରି ।

ଏ ସ୍ଥଳରେ ଭାବ ସାଦୃଶ୍ୟରୁ ''ଉପକାରିଣି ବିଶ୍ରବ୍ଧେ, ଶୁଦ୍ଧମତୌ ଯଃ ସମାଚରତି ପାପଂ । ତଂ ଜନମସତ୍ୟସନ୍ଧଂ ଭଗବତି ବସୁଧେ କଥଂ ବହସି'' ''ପତଗେନ ମୟା ଜଗତ୍‌ପତେରୂପକୃତୌ ତବ କିଂ ପ୍ରଭୂୟତେ । ଇତି ବେଦ୍ମିନତୁ ତ୍ୟଜନ୍ତି ମାଂ ତଦପି ପ୍ରତ୍ୟୁପକର୍ତ୍ତୁ– ମର୍ତ୍ତୟଃ'' ଇତ୍ୟାକାରକ ପ୍ରାଚୀନ ନୀତିବାକ୍ୟଗୁଡ଼ିଏ ହୃଦୟତନ୍ତ୍ରୀକୁ ତାଡ଼ନପୂର୍ବକ ଉତ୍ତେଜିତ କରିଦିଏ ।

(୪) ଭୀଷ୍ମ ବୋଇଲେ ହେ ତେଣେ ପ୍ରୟୋଜନ କିସ ?
ପରଧନେ ଇଚ୍ଛା କଲେ ନିଜ ଧର୍ମ ନାଶ । ବି. ପ.

ଅଥବା ସମୁଦ୍ର ଯେବେ ଲଙ୍ଘିବେକ ମହୀ ।
ପୃଥ୍ୱୀ ମାତ୍ର ଆଉ ତାହା ପାରିବ କି ସହି । ବି.ପ.

କଲା ଉପକାର ନ ଘେନନ୍ତି ଯେଉଁ ଜନ ।
ସେ ପ୍ରାଣୀ ପ୍ରତ୍ୟକ୍ଷେ ନର୍କେ ହୁଅନ୍ତି ଯେ ଲୀନ । ବି. ପ. ଇତ୍ୟାଦି ।

ଇତ୍ୟାକାରକ ସ୍ଥଳମାନ "ଅଙ୍ଗୀକୃତଂ ସୁକୃତିନଃ ପରିପାଳୟନ୍ତି" "କୋ ଧର୍ମ ବିନାଶ ହେତୁଃ ? ପରବନିତା ପରଧନାକାଙ୍କ୍ଷା ।" "ବିପରୀତାର୍ଥ-ବୁଦ୍ଧୀନାଂ ସୁଲଭୋ ବିପଦାଗମଃ" ଇତ୍ୟାଦି ନୀତିଗର୍ଭ ବାକ୍ୟମାନ ହୃଦୟପଟରେ ଅଙ୍କିତ କରିଦିଏ ।

ମୂଳ ମହାଭାରତ ଗ୍ରନ୍ଥର ସ୍ଥାନେ ସ୍ଥାନେ ପ୍ରସ୍ତାବବଶତଃ ଅନେକଗୁଡ଼ିଏ ନୈତିକ ଗଳ୍ପ ନିହିତ ଅଛି । ଏହି ଭାରତକର୍ତ୍ତା ମହାକବି ମହାଶୟ ସେ ସବୁ ଆଶ୍ରୟ ନ କରି ସୁଦ୍ଧା ନିଜର ବୁଦ୍ଧି ସିଦ୍ଧି ଅନୁସାରେ ତାତ୍କାଳିକ ଦେଶ ପ୍ରଚଳିତ ଅନେକଗୁଡ଼ିଏ କିମ୍ବଦନ୍ତୀ ବା ଗଳ୍ପ କଳ୍ପନାର ସନ୍ଦର୍ଭ ଗ୍ରନ୍ଥ ମଧ୍ୟରେ ପ୍ରାସଙ୍ଗିକରୂପେ ଅନେକତ୍ର ଲେଖି ରଖି ଅଛନ୍ତି । ସେ ସବୁ ଏକତ୍ରିତ କଲେ ଗୋଟାଏ ସ୍ୱତନ୍ତ୍ର ପୁସ୍ତକ ହେବ । ଅତଏବ ଏକମାତ୍ର ଉଦ୍ୟୋଗ ପର୍ବରୁ କେତେକ ଗଳ୍ପ ଉଦ୍ଧୃତ କରି ଗ୍ରନ୍ଥର ପରିସମାପ୍ତି ସ୍ଥଳରେ ପାଠକମାନଙ୍କୁ ଉପହାର ଦେଉଅଛୁଁ ।

ଉଦ୍ୟୋଗ ପର୍ବରେ (ଛାପାରେ ୬୦-୬୨ ପୃ:) ଦେଖିବେ, ମହାଦେବଙ୍କର କୃପାମୟତ୍ୱ ଓ ଆଶୁତୋଷତ୍ୱ ପ୍ରକାଶନାର୍ଥ କବି ଶକୁନିଙ୍କ ମୁଖରେ ଗୋଟାଏ ଗଳ୍ପ ଆରମ୍ଭ କରାଇ ଦେଇ ଅଛନ୍ତି । ଏହି ଗଳ୍ପଟିର ସାର ମର୍ମ ଏହି – ଏକଦା ସପାର୍ବତୀକ ଦେବଦେବ ମହାଦେବ ଜିଗମିଷାବଶତଃ ନାନା ସ୍ଥାନ ଭ୍ରମଣ କରୁଅଛନ୍ତି । ନାମ ଶ୍ରବଣରେ ଦିଦୃକ୍ଷା ଜନ୍ମିବାରୁ ବେଦପୁର ନାମକ ଏକ ଅଗ୍ରହାରରେ ଉପଗତ ହେଲେ । ଦେଖିଲେ ଯେ ସେହିଠାରେ ଆଠଗୋଟି ଅପ୍ରାପ୍ତବୟସ୍କା ବାଳିକା ଧୂଳି ଖେଳାରେ ରତ ଥାଇ ସ୍ୱଭାବସିଦ୍ଧ ମୂଢ଼ତାର କୌତୂହଳରେ ଅଯତ୍ନଲବ୍ଧ ଧୂଳିପାଳୀରେ କେବଳ ଭାତ ତିଅଣର ସୃଷ୍ଟି କରି ଖେଳା ଘର ଆରମ୍ଭ କରିଅଛନ୍ତି । ଦୟାମୟ ଈଶ୍ୱର କୌତୂହଳାକ୍ରାନ୍ତ ହୋଇ ସେମାନଙ୍କୁ ଭିକ୍ଷା ପ୍ରାର୍ଥନା କଲେ । ବାଳିକାଗଣ ଚମତ୍କୃତା ହୋଇ ଧୂଳି ...ାଏ ଲେଖାଏଁ ଆଣି ଯୋଗୀଶ୍ୱରଙ୍କୁ ଭିକ୍ଷାସ୍ୱରୂପ ସମର୍ପଣ କଲେ । ଧୂଳି ହେଉ ପଛକେ, ସେମାନେ ଭକ୍ତି ଓ ଶ୍ରଦ୍ଧାରେ ପ୍ରଦାନ କରି ଅଛନ୍ତି ବୋଲି ମହାଦେବ ତାହାକୁ ରତ୍ନରାଶି ଅପେକ୍ଷା ମହତ୍ତର ଭାବି ସାଦରେ ଗ୍ରହଣ କଲେ ଏବଂ ପରିତୁଷ୍ଟ ହୃଦୟରେ ସେମାନଙ୍କୁ ସ୍ୱର୍ଗରେ ରମ୍ଭାଦି ଅପ୍ସରା ହେବାପାଇଁ ବର ପ୍ରଦାନ କଲେ । ଆମ୍ଭମାନଙ୍କ ଦେଶରେ ଈଶ୍ୱର ପାର୍ବତୀ ବୁଲି ବାହାରିବା ସମ୍ବନ୍ଧରେ ଅନେକଗୁଡ଼ିଏ ଗଳ୍ପ ପ୍ରଚଳିତ ଅଛି, ଏହି ଗଳ୍ପଟି ସେଥି ମଧ୍ୟରୁ ଗୋଟିଏ ।

ପାଠକେ ଶୁଣିଥିବେ, ଆମ୍ଭମାନଙ୍କ ଦେଶରେ ବହୁବିଧ ଭୂତକଥା ଶୁଣା ଯାଇଥାଏ । ସେଗୁଡ଼ିକ ମଧ୍ୟରୁ କେତେକ ନୀତି ବା ଉପଦେଶବ୍ୟଞ୍ଜକ ମଧ୍ୟ ହୋଇଥାଏ । ଏ ମହାଶୟ ଉଦ୍ୟୋଗ ପର୍ବରେ ତଦ୍ରୂପ ବାବନା ଭୂତର ଗୋଟିଏ କଥା ଲେଖି ଅଛନ୍ତି । ଦୁର୍ଯ୍ୟୋଧନ ଶକୁନିଙ୍କ ଦୁର୍ମନ୍ତ୍ରଣାରେ କେବଳ ଆସକ୍ତ ହୋଇ କାହାରି କଥାରେ ଭ୍ରୂକ୍ଷେପ ନ କରି

ଉନ୍ମାର୍ଗଗାମୀ ହେବାରୁ ଭାନୁମତୀ ତାହାଙ୍କୁ ଔପଦେଶିକ କଥାଟିଏ କହି ଅଛନ୍ତି (୧) ସେହି କଥାଟି ଏହି – ଅଜ୍ଞାନପୁର ନଗରରେ ଜଣେ ଶୂଦ୍ର ଜାତୀୟ ରାଉଳ ନିବାସ କରିଥାଏ । ତତ୍ରତ୍ୟ ତୁଙ୍ଗଭଦ୍ରା ନଦୀକୂଳରେ ପ୍ରେତମାନେ ପ୍ରତ୍ୟହ ରୁଣ୍ଡୀଭୂତ ହୁଅନ୍ତି । ସେହି ରାଉଳ ପ୍ରୋକ୍ତ ନଦୀତଟସ୍ଥ ଧବଳି ପର୍ବତର ତଟରେ ଖଣ୍ଡିଏ ଭୂମି ଚାଷ କରି ମାଘୀ ତିଳ ବପନ କରିଥିଲା । ସମୟରେ ତତ୍ରତ୍ୟ ଅନାହାର-ଭୂତମାନେ ଉକ୍ତ ତିଳ ସବୁ ଖାଇ ପକାଇଲେ । ରାଉଳ ତାହା ଜାଣି ପାରି କ୍ରୋଧଭରରେ ମୁଦ୍ରା ପ୍ରୟୋଗ କରି ଭୂତମାନଙ୍କୁ ଆକ୍ରମଣପୂର୍ବକ ବାନ୍ଧି ପକାଇଲା । ତେତେବେଳେ ସେମାନେ ନିତାନ୍ତ ଭୀତ ହୋଇ ଉଚ୍ଛିଷ୍ଟ ତିଳ ସବୁ ଦେଇ ପକାଇ ଥିଲେ । ତାହାର କେତେକ ଦିନ ପରେ ଭୂତମାନଙ୍କର ଅଧିପତି ବାବନାଭୂତ ଆସି ପହଞ୍ଚିଲା । ନିଜ ଆବାସର ଅବିପ୍ରକୃଷ୍ଟରେ କୃଷ୍ଟ ଜମି ଦେଖି କ୍ରୋଧରେ ଏକାନ୍ତ ଅସ୍ଥିର ହୋଇ ପଚାରିଲା, ଏହି ମୋର କ୍ରୀଡ଼ାଭୂମିରେ କିଏ ସେ ଚାଷ କରିଅଛି ? ଭୂତମାନେ ଆମୂଳାନ୍ତ ସମସ୍ତ ବିଷୟର ପରିଚୟ ଦେଲେ । ସେହି ରାଉଳର ଜିମା ଯିବ ନାହିଁ ବୋଲି ଅନେକଧା ବୁଝାଇ କହିଲେ । ତଥାପି ବାବନା ମାନିଲା ନାହିଁ । ପ୍ରୋକ୍ତ ରାଉଳକୁ ପରାଭବ ଦେବା ଇଚ୍ଛାରେ ତାର ପୃଅକୁ ଲାଗିଲା । ରାଉଳ ଜାଲ ବିନ୍ୟାସ କରି ବାବନାକୁ ବାନ୍ଧି ଲୋହକୀଲରେ କିଳିବାକୁ ବାହାରିଲା । ତେତେବେଳେ ବାବନା ଅନନ୍ୟୋପାୟ ହୋଇ ରାଉଳକୁ ଶରଣ ବୋଲି ଆତ୍ମରକ୍ଷାର୍ଥ ତାହାଠାରେ କୃପାଭିକ୍ଷା କଲା ଇତ୍ୟାଦି ।

ଉଦ୍ୟୋଗ ପର୍ବରେ ଯୁଧିଷ୍ଠିର ଓ ଶକୁନିଙ୍କ ସମ୍ବାଦରେ ଆଉ ଗୋଟିଏ କିମ୍ବଦନ୍ତୀ ପ୍ରକାଶ କରି ଅଛନ୍ତି । କୃଷ୍ଣବେଣୀ ନଦୀତୀରସ୍ଥ କାମପୁର ନଗରରେ ଜଣେ ଶୂଦ୍ର ନିବାସ କରୁଥିଲା । ତାହାର ଆଉ କେହି ନ ଥିଲେ, ପୋଷ୍ୟବର୍ଗରୁ ଏକମାତ୍ର ଭାର୍ଯ୍ୟା ଥିଲା । ତଥାପି ସେ ସଂସାରଯାତ୍ରା ନିର୍ବାହରେ ଅସମର୍ଥ । ସେଉଟି ବଡ଼ ଅଳସୁଆ, ଅନ୍ୟାନ୍ୟ କାର୍ଯ୍ୟ କିଛି କରିପାରେ ନାହିଁ । କେବଳ କାଷ୍ଠ ବିକ୍ରୟ କରି ଯେ କୌଣସି ପ୍ରକାରେ କାଳଯାପନ କରୁଥାଏ । ଦିନେ ବଡ଼ ବର୍ଷା ହେଲା, ଅଜସ୍ର ଧାରାପାତର ବିରାମ ହେଲା ନାହିଁ, ଅଳସୁଆ କାଷ୍ଠ ଆନୟନାର୍ଥ ଗୃହରୁ ଆଉ ଯାଇ ପାରିଲା ନାହିଁ । ତାହାର ପ୍ରଧାନ କାର୍ଯ୍ୟ ଶୟନ, ତହିଁରେ ସେ ପଡ଼ି ରହିଲା । ଦେଖୁଁ ଦେଖୁଁ ସୂର୍ଯ୍ୟଦେବ ଅସ୍ତମିତ ହୋଇ ଆସିଲେ । ତେତେବେଳେ ଘରଣୀର ଘୋର ଭର୍ତ୍ସନାରେ ଏକାନ୍ତ ବ୍ୟାକୁଳ ଅଳସୁଆ ଅଗତ୍ୟା କୁଠାର ହସ୍ତରେ ବହିର୍ଗତ ହେଲା, କିନ୍ତୁ ନିଦ୍ରାକୁଳତାବଶରୁ ନଗରପ୍ରାନ୍ତସ୍ଥିତ ଜୀର୍ଣ୍ଣ ଦେବମଣ୍ଡପରେ ସୁଖସୁପ୍ତ ହୋଇ ପଡ଼ିଲା । ପ୍ରଦୋଷ ଆରାଧନାର ଶଙ୍ଖ, ଘଣ୍ଟା ଧ୍ୱନିରେ

(୧) ମାନଗୋବିନ୍ଦର ଆଗେ ଭାନୁମତୀ ବୋଲିଲେ ।
କାହେ ତା ହେବ ବହୁତ ବଚନ ମେଣ୍ଟିଲେ । ଉ. ପ. ୬୬-୬୭ ପୃ:

ସଚେତ ହୋଇ ଭାବିଲା, ଏବେ କଣ କରିବି ? କାଠ ନ ଧରି ଘରକୁ ଯିବି କିପରି ? ବେଳ ଉଣ୍ଡି ଦେବାଳୟର ଭିତରେ ପଶିଲା, ଆଉ କିଛି ଦେଖିଲା ନାହିଁ, ଦାରୁମୂର୍ତ୍ତି ବିଷ୍ଣୁଙ୍କୁ ହାଣିବାକୁ ଉଦ୍ୟତ ହେଲା । ସହସା ବିଷ୍ଣୁ ଆବିର୍ଭୂତ ହୋଇ ତାହାର ହାତ ଧରି ପକାଇଲେ, ତାକୁ ବୋଇଲେ ରେ ମୂର୍ଖ, ସମସ୍ତ ଲୋକେ ଏହି ଦେବତାଙ୍କୁ ପୂଜା କରୁଅଛନ୍ତି, ତୁ ଯାଙ୍କୁ ହାଣିବାକୁ ବସିଛୁ ? ସେ କହିଲା, ମୁଁ ଜାତିରେ ଶୂଦ୍ର, ଦେବଧର୍ମ କିଛି ଜାଣେ ନାହିଁ, ଅନ୍ନକଷ୍ଟରେ ମରୁଅଛି, ଏଗୁଡ଼ିକୁ ହାଣି ନେଲେ ଝଡ଼ିରେ କେତେକ ଦିନ ପର୍ଯ୍ୟନ୍ତ  ଦୁଇ ପ୍ରାଣୀ ସୁସ୍ଥ ହେବୁଁ । ତେତେବେଳେ ଦେବତା କହିଲେ, ଆମ୍ଭେ ନାରାୟଣ, ଆମ୍ଭଙ୍କୁ ହାଣିଲେ ତୋର ସର୍ବନାଶ ହେବ । ସେ କହିଲା, ଆଚ୍ଛା ତୁମେ ଯଦି ଦୀନଜନରକ୍ଷକ ନାରାୟଣ, ତେବେ ଆମର ଅନ୍ନକଷ୍ଟ ଦୂର କର । ଚାଉଳ ପାଞ୍ଚ ମାଣ, ଆଉ ପାଞ୍ଚ ବୋଡ଼ି କଉଡ଼ି ମାତ୍ର ଦେଲେ, ଆମେ ଦିହେଁ ସୁଖରେ ବଞ୍ଚିବୁଁ, ଏତିକି ମାତ୍ର ପ୍ରଦାନ କର । ନାରାୟଣ କହିଲେ, ହେଉ ତେବେ ଯାଅ, ତୋର ନିବାସ ଗୃହର ଦକ୍ଷିଣରେ ଗଣପତିଙ୍କ ମନ୍ଦିରରେ ଚାଉଳ କଉଡ଼ି ରଖା ଅଛି, ଘେନି ଯାଅ । ଶୂଦ୍ର ସନ୍ତୁଷ୍ଟ ମନରେ ସେତକ ନେଇ ଝଡ଼ିତକ ସୁଖରେ ବଞ୍ଚିଲା । ଝଡ଼ି ସରିଲା, ଘରେ ଚାଉଳ ସରିଲା, ନାରାୟଣ ଆଉ ଦେଲେ ନାହିଁ । ଅଳସୁଆ କଷ୍ଟ ପାଇ କଷ୍ଟ ନିରାକରଣର ସୁଲଭ ଉପାୟଭୂତ ସେହି ଦେବ ମୂର୍ତ୍ତିକୁ ଫେର ହାଣିବାକୁ ଗଲା । ପୁନରପି ନାରାୟଣ ଦେଖା ଦେଇ ବୋଇଲେ, କିରେ ? ଝଡ଼ିତକ ବଞ୍ଚିବା ପାଇଁ ତ କହିଥିଲୁ, ଫେର କାହିଁକି ଆସିଲୁ ? ଶୂଦ୍ର କହିଲା ନାରାୟଣ ! ମୁଁ ବଡ଼ ଅଳସୁଆ, ଏ ଉପାୟ ବଡ଼ ସୁଲଭ ମଣିଲି, ମୋଠାରେ ଯଦି ତୋର ଦୟା ଅଛି, ମୁଁ ଜୀଇଁଥିବାଯାଏ ଏପରି ଦେଉଥାଅ ।  ସେ ଯାହାହେଉ ନାରାୟଣ ତାହା କଥାରେ ସମ୍ମତ ହେଲେ । ଅଳସୁଆ ନିର୍ଦ୍ଦିଷ୍ଟ ସ୍ଥାନରୁ ନିତି ପାଉଣା ନେଇ ସୁଖରେ କାଳଯାପନ କଲା । ତାହାର ପଡ଼ୋଶୀ  ଅନନ୍ତା ନାମକ ଚଷା, ନୀଳାନାମ୍ନୀ ତାହାର ଭାର୍ଯ୍ୟା, ଏ ଦୁହେଁ ମଧ୍ୟ ପିଲାଦିନୁଁ ବଡ଼ ଅଳସୁଆ ଥିଲେ । ଦିନେ ଅନନ୍ତା ନୀଳାକୁ ଜିଜ୍ଞାସା କଲା, ଆମର ପଡ଼ୋଶୀ ଏହି ଅଳସୁଆ କି ଉପାୟ କରି ସୁଖରେ କାଳ କଟାଉଅଛି ? ତାର ଭାର୍ଯ୍ୟାକୁ ଥରେ ପଚାର ତ ? ନୀଳା ପୂର୍ବ ଅଳସୁଆର ଭାର୍ଯ୍ୟାର ମୁଖରୁ ବିଶ୍ୱାସସୂତ୍ରରେ ସବୁ ଶୁଣି ଆସି ଭର୍ତ୍ତାକୁ କହିଲା, ଅନନ୍ତା ରାତ୍ରି ସମୟରେ କୁଠାରହସ୍ତରେ ଦେଉଳ ଭିତରେ ପଶି ଖଟ୍ୱାଙ୍ଗପାଣିଙ୍କୁ ଆକ୍ରମଣ କଲା, ତେତେବେଳେ ପ୍ରତିମା ମଧ୍ୟରୁ ସହସା ବିକରାଳ ମୂର୍ତ୍ତି ଆବିର୍ଭୂତ ହୋଇ ଅନନ୍ତାକୁ ଦ୍ୱିଫାଳ କରିବାକୁ ଉଦ୍ୟତ ହେଲେ । ତାହା ଦେଖି ଅନନ୍ତା ବୋଇଲା, କି ହେ ମହାପ୍ରଭୁ ! ଏ କଣ ! ଅଳସୁଆ ତୁମକୁ ଚିରିବାକୁ ଯିବାରୁ ନିତି ତାକୁ ଚାଉଳ କଉଡ଼ି ଦେଲ, ମୋତେ ପୁଣି କାହିଁକି ଏପରି କରୁଛ ? ଦେବତା କହିଲେ, ଆରେ, ସେ ଅଳସୁଆର ଜ୍ଞାନ ନାହିଁ,

ତୋର ପାପ ପୁଣ୍ୟ ଜ୍ଞାନ ଅଛି, ତୁ ଅକର୍ମଣ୍ୟ ନୋହୁ, କାର୍ଯ୍ୟ କରିପାରୁ, କଷ୍ଟ ସହିପାରୁ । ସେ ଅଳସୁଆ ଅସୁର-ପ୍ରକୃତି, ତାକୁ ଦେବତା ଡରନ୍ତି । ତୁ ଦେବ-ପ୍ରକୃତି, ଏପରି ଲୋକଙ୍କୁ ଦାରୁ ଦେବତା ଡରନ୍ତି ନାହିଁ । ଇତ୍ୟାଦି ।

ତୁ ଦୁଃଖୀ ହେଲେ ହେଁ ଦେବ ବ୍ରାହ୍ମଣେ ଭଗତା ।
ଏପରି ଲୋକକୁ ଡରେ କି ଦାରୁ ଦେବତା । ଉ.ପ.

ପାଠକେ ! ଗ୍ରନ୍ଥର ସର୍ବାବସାନରେ ନିବେଦନ ଏହି, ମୁଁ ବହୁଦିନ ଆଲୋଡନ ବିଲୋଡନ ପୂର୍ବକ ପରିଶୀଳନ କରିଯାଇ ଥିବାରୁ ଏହି ମହାଭାରତର ଗୌରବ ସମ୍ୟକ୍ ଉପଲବ୍ଧି କରିପାରିଅଛି । ଏଥିରେ ଏପରି କେତେକ ମନୋହର କବିତା ଦେଖି ପାରିଅଛି ଯେ ଆଧୁନିକ କେତେକ ଅଚ୍ଛଞ୍ଚ ପଦ୍ୟ ଲେଖକଙ୍କ ରଚିତ ପଦ୍ୟାବଳୀ ଅପେକ୍ଷା ସେଗୁଡ଼ିକ ବହୁଗୁଣରେ ସମୁତ୍କୃଷ୍ଟ । ସାରଳାଦାସ କବି ଯାହା କି ଦେବୀଙ୍କ ପ୍ରସାଦ ପାଇଥିଲେ, ତାହା ତେଣେ ଥାଉ, ସେ ଯାବତ୍ ପରିମିତ ଗୁଣଗରିମାରେ ସମଳଙ୍କୃତ ଥାଇ କବିତା ରଚନାରେ ପ୍ରବୃତ୍ତ ହୋଇଥିଲେ, ଆଧୁନିକ କେତେକ ଲେଖକ ତାହାର ଶତାଂଶରେ ଭୂଷିତ ନ ଥାଇ ସୁଦ୍ଧା କବିତା ଲେଖିବା ପାଇଁ ବ୍ୟାକୁଳ । ଅନେକ ସ୍କୁଲ କଲେଜର ଛାତ୍ର ଆଭ୍ୟନ୍ତରିକ ଶ୍ରେଣୀରେ (ଇଣ୍ଟର କ୍ଲାସରେ) ପ୍ରବେଶ କରିବା ପୂର୍ବରୁ ପଢ଼ା ତ୍ୟାଗ କରି ଲେଖକଙ୍କ ମନ୍ୟମାନ ହୋଇଯାନ୍ତି, ଆଉ କେତେକ ଯେକୌଣସି ପ୍ରକାର ଦୁଇ ଚାରିଖଣ୍ଡ ପୁସ୍ତକ ପଢ଼ି ସାରିଲେ ଅଧ୍ୟୟନ ସତ୍ରର ପୂର୍ଣ୍ଣାହୂତି କରିଦେଇ ପଣ୍ଡିତଂମନ୍ୟମାନ ହୋଇ କବି ହେବାକୁ ସମୁତ୍କଣ୍ଠିତ ହୁଅନ୍ତି । ଅତଏବ ଆଜିକାଲି ଆମ୍ଭମାନଙ୍କ ଦେଶରେ ଉପଯୁକ୍ତ ପାଠକ ଅପେକ୍ଷା ଯେ କୌଣସି ପ୍ରକାର ଲେଖକ ସଂଖ୍ୟା ଢେର ବେଶି । କେତେକ ନିଃସାର ଲେଖକ ପନସ-ପକ୍ବଶଳାଟୁ ପ୍ରାୟ କୃତ୍ରିମ ସୌରଭ ମହକାଇବାକୁ ସତତ ସଚେଷ୍ଟ ଓ·ବ୍ୟାକୁଳ ଅଛନ୍ତି । କିନ୍ତୁ କବିତା ଲେଖିବା ପାଇଁ ଯାବତ୍ ପରିମିତ ଗୁଣ ସାମଗ୍ରୀ ଆବଶ୍ୟକ, ତାହାର ସମ୍ପାଦନ କରନ୍ତି ନାହିଁ କିମ୍ବା କରିବାର ଇଚ୍ଛା ସୁଦ୍ଧା କରନ୍ତି ନାହିଁ । କରନ୍ତି କେବଳ କବିତା ଲେଖନ ଇଚ୍ଛା । ଏପରି କରିବାରେ ଲେଖାଗୁଡ଼ିକ କିମ୍ଭୂତ କିମାକାର ହୋଇପଡ଼େ । ସ୍ଥାନେ ସ୍ଥାନେ ରୀତି ଓ ଅନ୍ୱୟ-ହୀନତାରୁ ନିଷ୍ପ୍ରାଣ ହୋଇ ପଡ଼ିଥାଏ । ଲେଖକ ଯେଉଁ ଯେଉଁ ଶବ୍ଦ ଓ ପଦପ୍ରୟୋଗ କରିବେ, ସେ ସେଗୁଡ଼ିକର ସାର୍ଥକତା ଓ ବ୍ୟୁତ୍ପତ୍ତିକ୍ରମକୁ ସମ୍ୟକ୍ ଅବଗତ ଥିବା ଏକାନ୍ତ ଆବଶ୍ୟକ । ଏଥିପାଇଁ ବିଶେଷ ପାଠ ଦରକାର । ଲେଖକଠାରେ ଅନ୍ତତଃ ଏତିକି ମାତ୍ର ଅଛି କି ନାହିଁ, ବିଚାର କର୍ତ୍ତବ୍ୟ । ଯଥାର୍ଥ କହିବାକୁ ହେଲେ, ଅନେକେ ଏଥିରୁ ବଞ୍ଚିତ ଥାଇ ସୁଦ୍ଧା ଅଭ୍ୟାସବଶତଃ ଉଚ୍ଛୃଙ୍ଖଳତାର ସମାଶ୍ରୟରେ ଅଥଚ ଅନ୍ୟ କବିଙ୍କ କବିତାରୁ କିଛି ଆମଦାନି କରି ଯାହା ଇଚ୍ଛା ତାହା ଲେଖିଯାନ୍ତି । ଏପରି କି ଅନେକେ ବର୍ଣ୍ଣାଶୁଦ୍ଧି ସୁଦ୍ଧା ଅବଗତ ହୋଇ ପାରନ୍ତି

ନାହିଁ, ସମୟରେ ସାହସରେ କହି ଦିଅନ୍ତି କି ଏହା ଛାପା ହୁଡ଼ । ପଦ-ପଦାର୍ଥ- ଜ୍ଞାନବିହୀନ ଓ ଅବ୍ୟୁତ୍ପନ୍ନ ଥାଇ ଲେଖାରେ ପ୍ରବୃତ୍ତ ହେବା ବର୍ତ୍ତମାନ ଯୁଗରେ ବଡ଼ ବିଡ଼ମ୍ବନାର କଥା । ଏପରି ଲେଖକମାନଙ୍କୁ ସାନୁନୟ ବିନୟରେ କହୁଅଛୁଁ । ପାଠକ ମହାଶୟଗଣ ! ଆପଣମାନେ ମଧ କହନ୍ତୁ, ସେମାନେ ପ୍ରଥମତଃ ଏହି ଭାରତର କବିତାକୁ ଆଶ୍ରୟ କରନ୍ତୁ । ଏଥିରେ ଅନେକଗୁଡ଼ିଏ ଉତ୍ତମ ବର୍ଣ୍ଣନାବିଶିଷ୍ଟ ଚରିତ ସନ୍ନିଧାନମାନ ନିହିତ ଅଛି । ସେଥିମଧରୁ ଯେ କୌଣସି ସନ୍ଦର୍ଭକୁ ନେଇ ସେଥିରେ ଆପଣାର ଯତ୍କିଞ୍ଚିତ୍ ବୁଦ୍ଧି-ସିଦ୍ଧି ବ୍ୟୟ କରନ୍ତୁ । ତଦ୍‌ଗତ ଅସଙ୍ଗତ ସ୍ଥାନମାନ ସଙ୍ଗତ କରି ବ୍ୟାକରଣିକାଦି ଦୋଷଯୁକ୍ତ ସ୍ଥାନଗୁଡ଼ିକୁ ଯଥାଯଥ ସଂସ୍କାର କରି ଉତ୍ତମ ଆକାରବିଶିଷ୍ଟ କରନ୍ତୁ । ପୌରାଣିକ କବିତା ସଂଗ୍ରହ ନାମରେ କବିତାଗୁଡ଼ିକୁ ପୁସ୍ତକାକାର କରନ୍ତୁ । ଏହା ହେଲେ ଲେଖନ ପ୍ରବୃତ୍ତି ସଙ୍ଗେ ସଙ୍ଗେ କବିତାଶକ୍ତି ସମୁଜ୍ଜ୍ୱଳ ହୋଇ ଉଠିବ । ପ୍ରାଚୀନ କବିତାଗୁଡ଼ିକ ଏପରି ସଂସ୍କୃତ ହେବ । ପରେ ଭାଷାର ଗୌରବ ବଢ଼ିବ । ଦେଖିବେ, ସେମାନେ (ଅଜ୍ଞ ଲେଖକମାନେ) ଯେନକେନପ୍ରକାରେଣ ଯେ ଯେ କବିତା ଗଢୁ ଅଛନ୍ତି, ତଦପେକ୍ଷା ଏହି ସଂଗୃହୀତ ଓ କୃତସଂସ୍କାର କବିତାଗୁଡ଼ିକ ଅତି ମନୋହର ହେବ ଏବଂ ଅଭିଜ୍ଞ ସମାଜରେ ସମାଦୃତ ହେବ ।



# ଶ୍ରୀମଦ୍ ରାମାୟଣ ସମାଲୋଚନା

ପୁରାଣ-ତତ୍ତ୍ୱାଭିସନ୍ଧିତ୍ସୁ ପ୍ରାଚୀନ-ସାହିତ୍ୟ-ରସାଭିଜ୍ଞ ମାତୃଭାଷା-ସମୁନ୍ନତ-ବ୍ରତୈ-କନିଷ୍ଠ ଅକନିଷ୍ଠ-ବିବେକ ପାଠକ-ବୃନ୍ଦ ! ବର୍ତ୍ତମାନ ଶ୍ରୀରାମଚନ୍ଦ୍ରଙ୍କ ଶ୍ରୀଚରଣାରବିନ୍ଦ – ଗଳିତମକରନ୍ଦ – ସନ୍ଦୋହ-ପାନାନନ୍ଦ-ତୁନ୍ଦିଳ ହୃଦୟରେ ବଳରାମଦାସ–କୃତ ଓଡ଼ିଆ ରାମାୟଣ ଗ୍ରନ୍ଥର ସମାଲୋଚନାରେ ପ୍ରବୃତ୍ତ ହୋଇ ସେଥିପାଇଁ ତଦର୍ଥୋପବୃଂହକ ଅନ୍ୟାନ୍ୟ ସଂସ୍କୃତ ରାମାୟଣଗ୍ରନ୍ଥ ଏବଂ ତଦୀୟ ନିୟାମକତା ଓ ପ୍ରାମାଣିକତାର ପ୍ରତିପାଦକ ଅନ୍ୟାନ୍ୟ ପୌରାଣିକ ଗ୍ରନ୍ଥମାନଙ୍କର ପରିଶୀଳନଦ୍ୱାରା ଶ୍ରୀରାମାୟଣିକ ସଂବିଧାନମାନଙ୍କର ଯେ ଯେ ତତ୍ତ୍ୱବିଚାରମାନ ଅପିଚ ତଦୀୟ ଘଟସ୍ଥଳମାନଙ୍କର ଯାଦୃଶ ସିଦ୍ଧାନ୍ତମାନ ପ୍ରତିପାଦିତ କରିଅଛୁଁ, ସେ ସବୁ ଆପଣମାନଙ୍କ ନିକଟରେ ଉପସ୍ଥାପିତ କରୁଅଛୁଁ; ବିଶ୍ୱାସ କରୁଅଛୁଁ, ଆପଣମାନେ ଗୁଣଗ୍ରହଣରେ ଏହାକୁ ସମାଦୃତ କରିବେ; ଯଦିଚ ଏଥିରେ କ୍ୱଚିତ୍ ଭ୍ରାନ୍ତିବିଳାସର କିମ୍ବା ପ୍ରାମାଦିକତାର ଅବସ୍ଥିତି ଦେଖନ୍ତି, ତେବେ ତାର ପରିସଂମାର୍ଜ୍ଜନାରେ ଲେଖକ ଆଉ ପାଠକମାନଙ୍କୁ ଉପକୃତ କରିବେ ।

ଲେଖକ ଏହି ସମାଲୋଚନିକ ଗ୍ରନ୍ଥଟିକୁ ବିଷୟସଂବିଧାନ, ସମୟ-ସଂବିଧାନ, ଭାଷା-ସଂବିଧାନ ଆଉ କବିସଂବିଧାନ ନାମରେ ଚାରି କାଣ୍ଡରେ ବିଭକ୍ତ କରୁଅଛନ୍ତି । ଏହାର ପ୍ରତ୍ୟେକ ସଂସ୍ଥାନରେ ତଦନୁଗତ ଆଉ ତତ୍‌ସାପେକ୍ଷକ ବିଷୟମାନ ଆନୁସଂଗିକ ସ୍ୱରୂପ ପ୍ରକାଶ କରିବାପାଇଁ ବିବକ୍ଷିତ ରଖି ଅଛନ୍ତି ।

ପାଠକଗଣ, ପରିଶୀଳନତଃ ଦେଖି ନେବେ, ଆମ୍ଭମାନଙ୍କର ବଳରାମଦାସ-କୃତ ରାମାୟଣ ଗ୍ରନ୍ଥଟି ବାଲ୍ମୀକି ରାମାୟଣରୁ ଅବିକଳ ଅନୁବାଦିତ ନୁହେଁ କିମ୍ବା ତାହାର ଅନନୁକୃତ ନୁହେ । ସୁତରାଂ ମୂଳଗ୍ରନ୍ଥର ଅତିସଂନିକୃଷ୍ଟ ଜଗନ୍ନାଥଦାସଙ୍କ ଶ୍ରୀମଦ୍ ଭାଗବତ, ମୂଳଗ୍ରନ୍ଥରୁ ବିପ୍ରକୃଷ୍ଟ ଶାରଳାଦାସଙ୍କ ଶ୍ରୀମହାଭାରତ, ଏହି ଉଭୟ ଗ୍ରନ୍ଥର ସଦୃଶ ଏହାର ଲେଖା ନୁହେଁ । ଜଗନ୍ନାଥ ଦାସଙ୍କ ଭାଗବତ ମୂଳରୂପର ଆଉ ଗୋଟିଏ ଅବିକଳ ପ୍ରତିକୃତି ମାତ୍ର; କିନ୍ତୁ ଶାରଳାଦାସଙ୍କ ମହାଭାରତଟି ଅନେକ ଅଂଶରେ ମୂଳ ଗ୍ରନ୍ଥର କ୍ରମରୁ ବହୁଦୂରରେ ଅବସ୍ଥିତ । ଜଗନ୍ନାଥ ଦାସେ ମୌଳିକ ପ୍ରତ୍ୟେକ ଶ୍ଳୋକର ପୃଥକ୍ ପୃଥକ୍ ଅନୁବାଦନରେ ନିଜର ଭାଗବତକୁ ମୂଳଗ୍ରନ୍ଥରୁ ଅବିକଳ ଅନୁବାଦିତ କରିଅଛନ୍ତି । ଶାରଳାଦାସେ ମୂଳ ମହାଭାରତର ସ୍ଥୂଳ ବିଷୟମାନ ମାତ୍ର ଅନୁସରି ଯୋଗବିଯୋଗ

ପୂର୍ବକ ସ୍ୱେଚ୍ଛାନୁକ୍ରମରେ ନିଜର ଭାରତ ଲେଖି ଯାଇଅଛନ୍ତି । କିନ୍ତୁ ବଳରାମ ଦାସଙ୍କ ରାମାୟଣର ଲେଖାର ପରିପାଟୀ ପ୍ରୋକ୍ତ ଉଭୟ କ୍ରମର ମଧ୍ୟବର୍ତ୍ତୀ ଅଟେ । ତଥାପି ଶାରଳା ମହାଭାରତରେ ଯେପରି ସର୍ଗ ବା ଅଧ୍ୟାୟ ନାମରେ ବିଷୟ ବିରାମର ସ୍ଥାନ ନିର୍ଦ୍ଦେଶ ବିନା ବିଷୟାବଳିର ଏକ ଧାଡ଼ିଆ ସଂମିଶ୍ରିତ ଲେଖା ଏକାଧାରାରେ ଚାଲିଅଛି, ଏହି ରାମାୟଣର ଲେଖା ମଧ୍ୟ ସେହିପରି । ବଳରାମଦାସେ ନିଜର ଏହି ଜଗମୋହନ ରାମାୟଣର ଲେଖାପ୍ରବାହକୁ ଘୋଡ଼ାଦାଣ୍ଡି ପରି ବିଶ୍ରାମବିରାମ ବିନା ବରାବର ବହୁଦୂର ପର୍ଯ୍ୟନ୍ତ ଚଳାଇ ନେଇଥିବାରୁ ଲୋକରେ ଏହା ପୁଣି ଦାଣ୍ଡିରାମାୟଣ ନାମରେ ଅଭିହିତ ହେଉଅଛି । କବି ମହାଶୟ ବହୁ ପ୍ରଧାନ ଘଟନାମାନଙ୍କର ଅବସାନ ସ୍ଥଳମାନଙ୍କରେ ଭଣିତି ପଦ୍ୟମାନ ନିହିତ କରି ଅଛନ୍ତି ସତ୍ୟ, ତଥାପି ଏହି ରାମାୟଣରୁ ଏକୈକଶଃ ବିଷୟମାନଙ୍କର ଅବଗାହନରେ ପାଠକମାନଙ୍କୁ ବହୁ ଅସୁବିଧା ଭୋଗିବାକୁ ପଡୁଅଛି । ଏଥିରେ ପୁଣି ବିଶେଷତଃ ଅନୁଲେଖକ ଆଉ ଛାପାକାର ମାନଙ୍କର ଅଯଥା ଲେଖନ ଓ ମୁଦ୍ରଣ ଦ୍ୱାରା ପାଠକମାନଙ୍କର ଆହୁରି ସମଧିକ ଅସୁବିଧା ଘଟୁଅଛି । ସୁତରାଂ ମୁଦ୍ରଣରେ ଯେ ପାଠପରିବର୍ତ୍ତନ, ଅଯଥା ଶୋଧନ ଏବଂ ଅସାବଧାନତା ଘଟିଅଛି, ତଜ୍ଜନିତ ଦୋଷସଂଚୟ ଦ୍ୱାରା ସ୍ଥାନେ ସ୍ଥାନେ ବିଷୟାର୍ଥ ଅବଗତିରେ ସୁଦ୍ଧା ପାଠକମାନଙ୍କର ଭ୍ରାନ୍ତି ଜନ୍ମିଯାଏ । ଅତଏବ ମୁଦ୍ରଣକାରମାନଙ୍କ ପ୍ରତି ବିନୀତ ଅନୁରୋଧ ଯେ, ଇତଃପର ଭବିଷ୍ୟମାଣ ସଂସ୍କରଣରେ ବହୁ ଆଦର୍ଶ ଏବଂ ସମାଲୋଚିତ ଗ୍ରନ୍ଥର ଅନୁସରଣରେ ବିଚାରପୂର୍ବକ କବିଙ୍କ ନିହିତ ନିର୍ଦ୍ଦୋଷ ପଂକ୍ତି ଓ ଭାବ ଆବିଷ୍କୃତ କରିବେ, ତଥାଚ ପାଠାବଳୀ ଏଭଳି ମିଳାମିଶି ମୁଦ୍ରିତ ନ କରି ପ୍ରତ୍ୟେକ ଘଟନାର ଅବସାନରେ ବିରାମସ୍ଥାନ ରଖିବେ ଏବଂ ସେହି ସେହି ଘଟନାମାନଙ୍କର ପ୍ରାରମ୍ଭ ସ୍ଥଳରେ ଏକୈକଶଃ ଶିରୋନାମ ଅଙ୍କିତ ରଖି ଗ୍ରନ୍ଥର ଭୂମିକାରେ ଗୋଟିଏ ନାମାନୁକ୍ରମଣିକା ଦେବେ । ଏଥିପାଇଁ ଏହି ସମାଲୋଚିତ ଗ୍ରନ୍ଥଖଣ୍ଡିକ ଆଶ୍ରୟ କରିନେଲେ ଆଦର୍ଶ ଗ୍ରନ୍ଥ ଅପେକ୍ଷା ବହୁ ଉପକାର ସାଧିତ ହେବ ।

## ବିଷୟ ସଂବିଧାନ ।

'ମୂଳଗ୍ରନ୍ଥରେ, ଆପାତତଃ ମହର୍ଷି ବାଲ୍ମୀକିଙ୍କର, ଅଖିଳ ସଦ୍‌ଗୁଣାସ୍ପଦ ଚରିତ୍ର-ସମ୍ପଦ ସର୍ବଶ୍ରେଷ୍ଠ ସତ୍‌ପୁରୁଷଙ୍କ ପରିଚୟ ଜିଜ୍ଞାସାରେ ଦେବର୍ଷି ନାରଦ ଶ୍ରୀରାମଚନ୍ଦ୍ରଙ୍କୁ ସେହି ସ୍ଥାନରେ ପ୍ରତିଷ୍ଠିତ କରି ସମାସତଃ ତଦୀୟ ଆଖ୍ୟାନର ବ୍ୟାଖ୍ୟାନ କରିଅଛନ୍ତି, ତା'ପରେ ତମସାତୀରସଂଚାରୀ ତମସାହୀନଆଚାରୀ ବାଲ୍ମୀକି କ୍ରୌଞ୍ଚଘାତୀ ନିଷାଦର ନିବାରଣ କରୁଁ କରୁଁ ତଦୀୟ ମୁଖରୁ ଛନ୍ଦୋମୟୀ ଭାରତୀଙ୍କର ଆବିର୍ଭାବରେ ବିସ୍ମିତ ହୁଅନ୍ତେ ତତ୍ର ପିତାମହ ସହସା ଉପଗତ ହୋଇ ସେହି ଛନ୍ଦୋମୟୀ ଭାରତୀର

ଅବଲମ୍ବନରେ ଶ୍ରୀରାମଚରିତକୁ ମହାକାବ୍ୟସ୍ୱରୂପ ରଚନା କରିବାପାଇଁ ତାହାଙ୍କୁ ସାଦରେ ଅନୁରୋଧ କରିଅଛନ୍ତି । ଅତଃପର ବାଲ୍ମୀକି ଯୋଗବଳରେ ଶ୍ରୀରାମଚନ୍ଦ୍ରଙ୍କର ଆଦ୍ୟନ୍ତ ଯାବତୀୟ କଥାନକମାନ କରାମଳକପ୍ରାୟ ସମ୍ୟକ୍ ଅବଗତ ହୋଇ ସର୍ବାଦୌ ରାମାୟଣର ନିଖିଳ ସଂବିଧାନମାନଙ୍କର ଗୋଟିଏ ସ୍ଥୂଳ ବିବରଣ-ପଞ୍ଜିକା ଲେଖି କ୍ରମଶଃ ଶ୍ରୀମଦ୍ ରାମାୟଣଗ୍ରନ୍ଥ ରଚନାର ଆରମ୍ଭ କରିଅଛନ୍ତି ।

ଚତୁର୍ଥ ଅଧ୍ୟାୟରେ ଲେଖାଅଛି କି ବାଲ୍ମୀକି ମହୋଦୟ ରାମାୟଣର ରଚନା ସଂପୂର୍ଣ୍ଣ କଲାପରେ ଶ୍ରୀରାମସଂନିକାଶ ବ୍ରହ୍ମଣ୍ୟ-ବିକାଶ କାସ-ହାସ ଦୁଇଜଣ କୁଶୀଲବଙ୍କୁ ତାହାର ଶିକ୍ଷାପ୍ରଦାନ କରିଥିଲେ । ପରସ୍ପରୋପମ ସେହି କୁଶୀଲବ ଦୁହେଁ ରାମାୟଣର ମଧୁମଧୁର ଗାନରେ ମୁନିସମାଜର ପରିତୁଷ୍ଟି ସାଧିତ କରୁଥିଲେ । ଏକଦା ରାମଚନ୍ଦ୍ର ସେ ଦୁହିଁଙ୍କୁ ସାଦରେ ଅନୁରୋଧ କଲାରୁ ସେମାନେ ପ୍ରମୋଦରେ ଶ୍ରଦ୍ଧାସହିତ ତାହା ଗାନ କରିଥିଲେ । କୁଶୀଲବଉଦ୍‌ଗୀତ ରାମାୟଣର ପ୍ରାଥମିକ ବିଷୟ ଅଯୋଧ୍ୟା ନଗରୀର ବର୍ଣ୍ଣନା ଆଉ ଦଶରଥ ମହାରାଜଙ୍କର ରାଜତ୍ୱ ପ୍ରକ୍ରିୟା । ରାମାୟଣ ମହାକାବ୍ୟର ପଞ୍ଚମ ସର୍ଗଠାରୁ ଏହି ବିଷୟର ପ୍ରାରମ୍ଭ ହୋଇଅଛି ।

ଏ ସ୍ଥଳେ ପ୍ରକାଶିତ ରଖିବା ଉଚିତ ଯେ, ଆଦିକବି ମହର୍ଷି ବାଲ୍ମୀକି ନିଜର ରାମାୟଣ ଗ୍ରନ୍ଥକୁ ଛଅଗୋଟି କାଣ୍ଡରେ ମାତ୍ର ସମ୍ପନ୍ନ କରି ଅଛନ୍ତି । ଉତ୍ତର କାଣ୍ଡଟି ଏହାର ଆନୁଷଙ୍ଗିକ ମାତ୍ର । ଅତଏବ ରାମାୟଣ ଗ୍ରନ୍ଥଟିକୁ (ସଭବିଷ୍ୟ ସହୋତ୍ତର) ଷଟ୍‌କାଣ୍ଡାତ୍ମକ କୁହାଯାଏ । ଏହାର ରଚୟିତା ମହାଶୟ ଏହି ଛଅଗୋଟି କାଣ୍ଡର ମାତ୍ର ସାମୁଦୟିକ ଗ୍ରନ୍ଥସଂଖ୍ୟା ବା ପାଠସଂଖ୍ୟା ଅପିଚ ସର୍ଗସଂଖ୍ୟା ଏସ୍ଥଳରେ ପ୍ରକାଶିତ ରଖିଅଛନ୍ତି । * ସେ ସ୍ପଷ୍ଟତଃ କହିଅଛନ୍ତି କି ରାମାୟଣ ପ୍ରଧାନତଃ ଷଟ୍‌କାଣ୍ଡରେ ଯୁକ୍ତ । ଏସବୁ ପାଞ୍ଚଶତ ସର୍ଗରେ ବିଭକ୍ତ । ଏହାର ସମୁଦାୟ ଶ୍ଳୋକ ସଂଖ୍ୟା ଚତୁର୍ବିଂଶତି ସହସ୍ର ଅଟେ । ପରଂତୁ ଏହା ସଙ୍ଗେ ଉତ୍ତର କାଣ୍ଡଟି ଅନୁପ୍ରାଣିତ ରହୁଅଛି ।

ବଳରାମ ଦାସେ ତାଙ୍କରି ରାମାୟଣରେ ପ୍ରଥମତଃ ପ୍ରଚେତସ ପ୍ରାଚେତସଙ୍କ ପ୍ରତି ନାରଦଙ୍କ ଉପଦେଶ ଆଉ ବ୍ରହ୍ମାଙ୍କ ଆଦେଶ ତଥାଚ ଛନ୍ଦୋମୟୀ ସରସ୍ୱତୀଙ୍କର ଆବିର୍ଭାବର ବିବରଣମାନ ଦେଇ ନାହାନ୍ତି । ଏ ମହାଶୟ ଗ୍ରନ୍ଥାନ୍ତରରେ ଶ୍ରୀନୀଳକନ୍ଦରସ୍ଥ

---

* ଚତୁର୍ବିଂଶଦ୍ ସହସ୍ରାଣି ଶ୍ଳୋକାନାମୁକ୍ତବାନ୍ ଋଷିଃ ।
ତଥା ସର୍ଗଶତାନ୍ ପଞ୍ଚ ଷଟ୍ କାଣ୍ଡାନି ତଥୋତ୍ତରଂ ।
କୃତ୍ୱାପି ତଦ୍ ମହାପ୍ରାଜ୍ଞଃ ସଭବିଷ୍ୟଂ ସହୋତ୍ତରଂ ।
ଚିନ୍ତୟାମାସ କୋଽନ୍ୱେତଦ୍ ପ୍ରଯୁଞ୍ଜୀୟାଦିତ ପ୍ରଭୁଃ ॥
ଆଦି କା । ୪ ଅଧ୍ୟାୟ ।

ଭଗବାନ୍ ଶ୍ରୀଜଗନ୍ନାଥ ମହାପ୍ରଭୁଙ୍କର ସୁନ୍ଦର ଶ୍ରୀଅଙ୍ଗ-ବର୍ଣ୍ଣନାମୂଳକ ସୁବିସ୍ତୃତ ସ୍ତୁତିର ପାଠପରେ ରାମାୟଣ-ରଚନାର କାରଣଭୂତ ପ୍ରସ୍ତାବରେ ହିମାଳୟସ୍ଥ ଶିବଶିବାସମ୍ବାଦକୁ ସର୍ବାଦୌ ଅନୁସରି ଅଛନ୍ତି * । ଏହି ଅବାଲ୍ମୀକୀୟ କ୍ରମ ବଳରାମ ଦାସଙ୍କର କପୋଳକଳ୍ପିତ ନୁହେଁ । ଅଧ୍ୟାତ୍ମ ରାମାୟଣର ରଚୟିତା ପ୍ରଥମେ ଏହି ପଥ ଆବିଷ୍କୃତ କରିଅଛନ୍ତି । × ଅଧ୍ୟାତ୍ମରାମାୟଣକାର ମନେ କଲେ ଯେ, ଶ୍ରୀରାମ-କଥାନକ-ପୀୟୂଷ-ପ୍ରବାହ ଯଦିଚ ଭବ-ସନ୍ତାପ-ହାରକ, ଦୁଃଖତାରକ, ତାରକ ମନ୍ତ୍ରର ଜଂଜପୂକ ରାମଚରିତୈକତାନ ଶ୍ରୀମହାଦେବଙ୍କ ମୁଖକନ୍ଦରରୁ ବିନିର୍ଗତ ହୁଏ, ତେବେ ଲୋକରେ ସମଧିକ ସମାଦୃତ ଓ ନିଷେବିତ ହେବ । ବଳରାମ ଦାସେ ମଧ ତାହା ହିଁ ମନେ କରିଅଛନ୍ତି । ପ୍ରାଚେତସ ରାମାୟଣ ମହାକାବ୍ୟରେ ମହର୍ଷିଙ୍କ ପରିପୂତ-ମୁଖ-ସଂଭୂତ ରାମଚରିତାମୃତ-ବର୍ଷିଣୀ ସରସ୍ୱତୀ ରାମାତ୍ମଜ କୁଶ-ଲବଙ୍କ ବଦନାରବିନ୍ଦ ଦେଇ ଲୋକରେ ଅବତୀର୍ଣ୍ଣ ହୋଇ ଅଛନ୍ତି । ବଳରାମ ଦାସଙ୍କ ରମାୟଣରେ ସେହି ଦେବୀ ରାମନାମ-ଜାପକ ଶିବଙ୍କ ମୁଖ ଦେଇ ଅବତୀର୍ଣ୍ଣ ହୋଇ ଅଛନ୍ତି । ଯୋଗିପ୍ରବର-ଶୁକ-ମୁଖ-ନିର୍ଗଳିତ ଭାଗବତାମୃତ ଯେପରି ସମସ୍ତଙ୍କର ସମାଦୃତ, ଯୋଗୀଶ୍ୱର-ମୁଖ-ନିଃସୃତ ରାମଚରିତାମୃତ ସେପରି ସାଧୁସନ୍ଥମାନଙ୍କର ସାଦରେ ପେପୀୟମାନ ।

ବଳରାମ ଦାସଙ୍କ ରାମାୟଣରେ ସେହି ଗ୍ରନ୍ଥ ସମୁତ୍ପତ୍ତିର ପ୍ରଥମ ପ୍ରସ୍ତାବ ଏହି । ଏକ ଦିନ ଦୀନାନୁକମ୍ପ ମହାଦେବ ପାର୍ବତୀଙ୍କ ସ୍ୱକୀୟ ବିଳାସନିଳୟ କୈଳାସରେ ସୁଖେ ଅବସ୍ଥାନ କରିଅଛନ୍ତି, ଏହି ସମୟରେ ବ୍ରହ୍ମା ଆସି ତତ୍ର ଉପଗତ ହେଲେ । ଉଭୟଙ୍କର ସ୍ନେହଙ୍କର ସଂଳାପାଦିପରେ ଶିବ କହିଲେ, ''ଭୋ ପିତାମହ ! ମୁଁ ଜାଣିପାରୁ ନାହିଁ, କାହିଁକି ବା ମୋର ଶରୀର ଦିନକୁଦିନ ଦୁର୍ବଳ ଓ କ୍ଷୀଣ ପଡୁଅଛି ।'' ବ୍ରହ୍ମା କହିଲେ, ''ଆପଣ ତାମସିଆ ପଣରୁ ଦକ୍ଷ ପ୍ରଜାପତିଙ୍କର ପୁଣ୍ୟତମାଚରଣ ସବନକ୍ରିୟାକୁ ତମାମ

---

* ଶୁଣିମା ସୁଜ୍ଞଜନେ ଶ୍ରୀରାମ-ମହିମା । ସଦାଶିବ ଛାମୁରେ ଯା ପୁଚ୍ଛା କଲେ ଉମା ।
ପ୍ରସନ୍ନ ହୋଇ କହନ୍ତି ତାଙ୍କୁ ତ୍ରିପୁରାରି । ମୁହିଁ ତାହା ବଖାଣିବି ହୃଦରେ ବିଚାରି । ଇତ୍ୟାଦି ।
ଆଦିକାଣ୍ଡର ପ୍ରାରମ୍ଭ

(ପାଠକ ମନେ ରଖିଥିବେ, ବଳରାମ ଦାସେ ନିଜର ରାମାୟଣ ରଚନାରେ ଅଧ୍ୟାତ୍ମ ରାମାୟଣ ଆଉ ଅନ୍ୟାନ୍ୟ ରାମାୟଣ ମଧ ଅନୁସରି ଅଛନ୍ତି ।)

× କୈଳାସାଗ୍ରେ କଦାଚିଦ୍ ରବିଶତବିମଳେ ମନ୍ଦିରେ ରତ୍ନପୀଠେ ।
ସଂବିଷ୍ଟଂ ଧ୍ୟାନନିଷ୍ଠଂ ତ୍ରିନୟନମଭୟଂ ସେବିତଂ ସିଦ୍ଧସଂଘୈଃ ।
ଦେବୀ ବାମାଙ୍କସଂସ୍ଥା ଗରିବରତନୟା ପାର୍ବତୀ ଭକ୍ତିନମ୍ରା ।
ପ୍ରାହେଦଂ ଦେବମୀଶଂ ସକଳହିତକରଂ ବାଚମାନନ୍ଦ-କନ୍ଦଂ । ଇତ୍ୟାଦି
ଅଧ୍ୟାତ୍ମ । ରା । ଆ । କା । ପ୍ର । ଅ । ୬-୭ ଶ୍ଳୋ ।

ବିଧ୍ୱସ୍ତ କରି ପକାଇ ଅଛନ୍ତି । ଏହି ହେତୁରୁ ଆପଣଙ୍କ ଶରୀର ଏପରି କ୍ଷୀଣବଳ ଆଉ ନିସ୍ତେଜ ହୋଇ ପଡ଼ୁଅଛି । ଆପଣ ଯଦି ଶ୍ରୀରାମଙ୍କର ଶୁଭଙ୍କର ତାରକବ୍ରହ୍ମ ମନ୍ତ୍ର ଜପ କରନ୍ତି, ତେବେ ନିଶ୍ଚୟ ଆପଣଙ୍କ ଶରୀର ପୂର୍ବାପେକ୍ଷା ସମଧିକ ସତେଜ, ସବଳ ଓ ସୁସ୍ଥ ହେବ ।'' ତଦବଧି ନିରବଧିକ-ଜ୍ଞାନ ମହାଦେବ ତାରକ ମନ୍ତ୍ର ଜପରେ ସନ୍ତତ ଅନନ୍ୟବୃତ୍ତି ହେଲେ ଏବଂ ତାଦୃଶ ଫଳପ୍ରାପ୍ତ ହେଲେ । ଏକ ଦିନ ପାର୍ବତୀ ପୁଣି ମହାଦେବଙ୍କୁ ଜିଜ୍ଞାସା କଲେ, ''ଆପଣ ପ୍ରତ୍ୟହ ନିରୀହ ଭାବରେ କେଉଁ ମନ୍ତ୍ର ଜପ କରୁଅଛନ୍ତି ?'' ମହାଦେବ ତାହାଙ୍କୁ ସମସ୍ତ ବୁଝାଇ କହିଲେ । ତେତେବେଳେ ପତିଭକ୍ତି-ଅକୁଣ୍ଠିତା ସୁଜ୍ଞାନ-ସମୁତ୍କଣ୍ଠିତା ଶୈଳରାଜ-ଦୁହିତା ବିନୀତଭାବରେ ପଚାରିଲେ, ''ପ୍ରଭୋ ! ଶ୍ରୀରାମ କେହି ? ସେ କେବେ ଏ ଧରଣୀରେ ଅବତୀର୍ଣ୍ଣ ହୋଇଥିଲେ ?'' ପ୍ରିୟତମା ଉମାଙ୍କର ଇତ୍ୟାକାରକ ପ୍ରଶ୍ନରେ ତ୍ରିଲୋଚନ ରାମାୟଣଚରିତର ସୁତରାଂ ଶ୍ରୀରାମମୂର୍ତ୍ତିଙ୍କର ଆବିର୍ଭବନର ପ୍ରଧାନ-କାରଣ-ଭୂତ ରାମଙ୍କର ଉତ୍ପତ୍ତିଠାରୁ ଯାବତୀୟ ସଦ୍‌ଗତୀୟ ରାମକଥାମାନ କହିବାର ଆରମ୍ଭ କଲେ ।

ପ୍ରାଚେତସ ମୂଳଗ୍ରନ୍ଥରେ ସର୍ବାଗ୍ରେ ରାବଣଚରିତ ଲେଖା ନାହିଁ । ଏହା ଉତ୍ତରକାଣ୍ଡରେ ପ୍ରତିପାଦିତ ଅଛି । ତଥାପି ସାମୟିକ ଘଟନାବଳିର ପୌର୍ବାପର୍ଯ୍ୟ-ବିଚାରରେ ରାମଚନ୍ଦ୍ରଙ୍କର ଅବତରଣ ପୂର୍ବରୁ ରାବଣାଦିଙ୍କ ଉତ୍ପତ୍ତି ଅଯଥାର୍ଥ ନୁହେଁ । ସୁତରାଂ ରାମାୟଣ ମହାକାବ୍ୟରେ ଶ୍ରୀରାମଚନ୍ଦ୍ର ଯେପରି ସର୍ବପ୍ରଧାନ ନାୟକ, ତଦୀୟ ପ୍ରତିଭଟତ୍ୱରୁ ରାବଣ ମଧ ତାଦୃଶ ଅଟନ୍ତି । ଯଦିଚ ରାବଣାଦିଙ୍କର ଜନନାଦିଚରିତ ଉତ୍ତରକାଣ୍ଡ ପର୍ଯ୍ୟନ୍ତ ସ୍ଥଗିତ ରହେ, ଏପରି ଦେଶୀୟ ଭାଷାପ୍ରବନ୍ଧମାନଙ୍କରେ ଧାରାବାହିକ ଯଥାନୁକ୍ରମିକ ଚରିତମାନଙ୍କର ଅବଗାହନରେ ସାଧାରଣ ପାଠକମାନଙ୍କର ପକ୍ଷେ ଅସୌକର୍ଯ୍ୟ ଘଟିପାରେ । ଏହି ବିଚାର କରି ଓଡ଼ିଆ ଭାଷାର ଆଦିରାମାୟଣ-କର୍ତ୍ତା ସର୍ବାଗ୍ରେ ରାବଣାଦିଙ୍କର ଜନନାଦିର କଥା ସୂଚିତ କରି ଦେଇଅଛନ୍ତି । ଏପରି କରିବା ଅସଙ୍ଗତ ମଧ ନୁହେ । ଆମ୍ଭମାନଙ୍କର କାବ୍ୟ-ସାହିତ୍ୟ-ସାମ୍ରାଜ୍ୟର ଚକ୍ରବର୍ତ୍ତୀ ଭଞ୍ଜକବି ମହୋଦୟ ମଧ ବଳରାମ ଦାସଙ୍କ ମାର୍ଗକୁ ଅନୁସରି ନିଜର ବୈଦେହୀଶବିଳାସ ମହାକାବ୍ୟରେ ରାମକଥାରମ୍ଭ ପୂର୍ବରୁ ରାବଣଙ୍କର ଉତ୍ପତ୍ତି କହିଅଛନ୍ତି । * ସଂସ୍କୃତ ସାହିତ୍ୟ-ସାମ୍ରାଜ୍ୟର ଅନନ୍ୟସାଧାରଣ ଶାସକ ମହାକବି ଶ୍ରୀମୁରାରି ମହାଶୟ ମଧ ନିଜର ଅନର୍ଘ ରାଘବରେ ରାମଙ୍କ ପୂର୍ବରୁ ରାବଣଙ୍କର ଉତ୍ପତ୍ତିକଥାର ଉତ୍ଥାପନ କରିଅଛନ୍ତି । +

---

* ବିଦ୍ୟୁତକେଶ ବଂଶରେ ଜାତ ମାଳୀ ସୁମାଳୀ ଯେ ମାଲ୍ୟବନ୍ତ – ଇତ୍ୟାଦି ।

ବୈ, । ବି । ପ୍ର । ଛା ।

\+ ଅପି କଥମସୌ ରକ୍ଷୋରାଜ ସ୍ତତାପ ଜଗତ୍‌ତ୍ରୟୀଂ – ଇତ୍ୟାଦି । ଅନର୍ଘରାଘବ । ପ୍ର ।

ବଳରାମଦାସେ ମୂଳ ଉତ୍ତରାକାଣ୍ଡରେ ପ୍ରତିପାଦିତ ରାବଣାଦିଙ୍କର ଜନ୍ମକ୍ରମ, ରାବଣଙ୍କର ଦେବହେଳନାଦିମୂଳକ ବୈଜୟିକୀ କ୍ରିୟା ଏବଂ ବେଦମତୀ ଓ ନନ୍ଦିକେଶ୍ୱରଙ୍କ ଠାରୁ ପ୍ରାପ୍ତ ଶାପବୃତ୍ତାନ୍ତମାନ ଏ ସ୍ଥଳେ ଲେଖି ଅଛନ୍ତି । ଏ ସବୁର ଚିତ୍ରଣରେ ମୂଳଗ୍ରନ୍ଥ ଅପେକ୍ଷା କ୍ୱଚିତ୍ କ୍ୱଚିତ୍ କିଂଚିତ୍ କିଂଚିତ୍ ବୈଷମ୍ୟ ଦେଖାଯାଏ ସତ୍ୟ, ତଥାପି ସ୍ଥୂଳତଃ ଏହି ବିଷୟମାନ ମୌଳିକ ସଂବିଧାନର ଅନୁଗତ କେବଳ । ଏଥିରେ ପୁଣି ଲେଖା ଅଛି; ସମୟେ ସେହି କଣ୍ଡୁଳ-ଭୁଜ-ତାଣ୍ଡବ-ପଣ୍ଡିତ ଅଖଣ୍ଡିତସତ୍ତ୍ୱ ରାବଣ କୈଳାସର ଉତ୍ପାଟନାର୍ଥ ସାହସୀ ହୋଇଥିଲେ; କିନ୍ତୁ ମହାଦେବ ପ୍ରମଥଗଣଙ୍କ ସହ ସେହି ପର୍ବତକୁ ମାଡ଼ିବସି ଗାଢ଼େ ଚାପ ଦେଲାରୁ ଲଙ୍କାପତି ଅସହନୀୟ ଗୁରୁତର ଭାରରେ ଅଭିଭୂତ ହୋଇ ଘୋର ଗର୍ଜନରେ ପ୍ରାଣ ବିସର୍ଜନ କରିଥିଲେ । ତା'ପରେ ପୁଣି ଆଶୁତୋଷ ମହାଦେବ ସାନୁକ୍ରୋଶତାରେ ତାହାଙ୍କୁ ଉଜ୍ଜୀବିତ କରି ରାବଣ ନାମରେ ଅଭିହିତ କଲେ । × ଦାସଙ୍କର ଏହା ଆଳଙ୍କାରିକ ଲେଖା । ତତ୍ରାପି ଲଙ୍କାଧିପ ଏ ସ୍ଥଳେ ପ୍ରାଣ ବିସର୍ଜନ କରି ନାହାନ୍ତି କିମ୍ବା ବିଶ୍ୱନାଥ ତାହାଙ୍କୁ ଏ ଘଟନାରେ ରାବଣ ନାମରେ ନାମିତ କରି ନାହାନ୍ତି ।

ବାଲ୍ମୀକି – ରାମାୟଣର ଉପକ୍ରମର ନିଦାନଭୂତ ପ୍ରସ୍ତାବର ପରେ ପ୍ରଥମତଃ ଅଯୋଧ୍ୟା ନଗରୀର ବର୍ଣ୍ଣନା ସହ ଦଶରଥ ମହାରାଜଙ୍କର ସୌରାଜ୍ୟ-ବିଭବର ବର୍ଣ୍ଣନା ଯେପରି ଲେଖା ଅଛି, ଏଥିରେ ମଧ୍ୟ ସେହିପରି । ସୁତରାଂ ବଳରାମ ଦାସେ ଅଯୋଧ୍ୟାଧୀଶ୍ୱରଙ୍କ ମହିମାକୁ ଟିକିଏ ବିସ୍ତୃତଭାବରେ ପ୍ରଦ୍ୟୋତିତ କରିଅଛନ୍ତି । ଦଶରଥ ସମୟେ ଶନୈଶ୍ଚରଙ୍କୁ ପରାସ୍ତ କରିଥିବାର କଥାନକଟିକୁ ଦାସେ ଏଥିରେ ସାଙ୍ଗୋପାଙ୍ଗ ବର୍ଣ୍ଣନା ସହ ଆନୁଷଙ୍ଗିକ ରଖିଅଛନ୍ତି । କିନ୍ତ ମୂଳ ଗ୍ରନ୍ଥରେ ଏହା ଉକ୍ତ ନାହିଁ । ବୋଧହୁଏ, ଦାସେ ପଦ୍ମପୁରାଣରୁ ଏହା ଆନୟନ କରି ଏଥିରେ ଯୋଖି ଦେଇ ଅଛନ୍ତି । ଦଶରଥଙ୍କର ମନ୍ତ୍ରୀ ପ୍ରଭୃତି ରାଜପୁରୁଷମାନଙ୍କର ଯେ ଯେ ବାସ୍ତବିକ ନାମ ଥିଲା, ସେଗୁଡ଼ିକୁ ଦାସେ ଠିକ୍ ଯଥାଯଥ ଦେଇପାରି ନାହାନ୍ତି, କାରଣ ସେ ମହାଶୟ ମୂଳ ଗ୍ରନ୍ଥର ଅନୁକରଣରେ ଅନୁବାଦ କରି ନାହାନ୍ତି । (୧) ତଥାପି ଯେ ଯେ ନାମ ସୁପ୍ରଥିତ ଓ ସୁପ୍ରସିଦ୍ଧ, ସେଗୁଡ଼ିକୁ ଠିକ ଯଥାଯଥ ଲେଖି ଅଛନ୍ତି ।

ଏହାପରେ ମୂଳଗ୍ରନ୍ଥର ଅଷ୍ଟମ ସର୍ଗରେ ଉକ୍ତ ଅପୁତ୍ରକ ଦଶରଥଙ୍କର ବଶିଷ୍ଠାଦିଙ୍କ ସହ ପୁତ୍ରପ୍ରାପ୍ତି ବିଚାର ପ୍ରଭୃତି ଘଟନାକୁ ବଳରାମ ଦାସେ ମଧ୍ୟ ଯଥାସ୍ଥାନରେ ଦେଇଅଛନ୍ତି;

× ଛାପାପୁସ୍ତକରେ ଆଦିକାଣ୍ଡ ପ୍ରଥମ ପ୍ରସ୍ତାବସ୍ଥଳେ ଦେଖନ୍ତୁ ।

(୧) ପୁରୋହିତ ବଶିଷ୍ଠ ତା ମନ୍ତ୍ରୀ ଯେ ସୁମନ୍ତ । ଉଗ୍ରମିଶ୍ର ବାମଦେବ ପଣ୍ଡା ତପୋବନ୍ତ । ଇତ୍ୟାଦି । ଆଦି । କା ।

କିନ୍ତୁ ଏ ସବୁଥିରେ ସେ ମୂଳଗ୍ରନ୍ଥର ବର୍ଣ୍ଣନାରେ କେବଳ ଆବଦ୍ଧ ରହିନାହାନ୍ତି ବା ଅବିକଳ ଅନୁସରଣ କରି ନାହାନ୍ତି । ସୁମନ୍ତ ସନତ୍କୁମାରଙ୍କ ମୁଖରୁ ବହୁ ବର୍ଷ ପୂର୍ବେ ଶ୍ରୁତ ରାମଜନ୍ମ-ବୃତ୍ତାନ୍ତ ଦଶରଥଙ୍କୁ ଜଣାଇଥିବା, ଅଙ୍ଗଦେଶାଧିପତି ଲୋମପାଦ ନିଜ ସାମ୍ରାଜ୍ୟର ଅନାବୃଷ୍ଟି -ଶାନ୍ତିନିମନ୍ତେ ବୈଭାଣ୍ଡକି ଋଷ୍ୟଶୃଙ୍ଗଙ୍କୁ ଅଣାଇଥିବାର କ୍ରମ ଏବଂ ଋଷ୍ୟଶୃଙ୍ଗ ପ୍ରଭାବରୁ ଅବଗ୍ରହ ଦୋଷ ଶମିତ ହେଲାପରେ ଅଙ୍ଗାଧିପ ନିଜ ସୁତା ଶାନ୍ତାଙ୍କୁ ଋଷିଙ୍କ ସହ ପରିଣୀତା କରିଥିବା ଘଟନାମାନଙ୍କରେ ଦାସ ମହୋଦୟ ଅନେକତ୍ର ନାମଧାମାଦିର ବୈଷମ୍ୟ ଯୋଗପୂର୍ବକ ସ୍ୱକୀୟ କଳ୍ପନା-ବୈଭବକୁ ପ୍ରକାଶ କରିଅଛନ୍ତି । (୧) ଋଷ୍ୟଶୃଙ୍ଗଙ୍କ ସମାନୟନ-ସନ୍ଦର୍ଭରେ ମୂଳରେ ଅନୁକ୍ତ ପରନ୍ତୁ ଅନ୍ୟ ପୁରାଣ ଅର୍ଥାତ୍ ପଦ୍ମପୁରାଣ ପାତାଳଖଣ୍ଡ ତ୍ରୟୋଦଶାଧ୍ୟାୟରୁ ଆନୀତ ବୈଭାଣ୍ଡକ-ଜନ୍ମ-ବୃତ୍ତାନ୍ତକୁ ସେ ବିବୃତ କରିଅଛନ୍ତି । ସେ ଲେଖିଅଛନ୍ତି କି, ଏକଦା ବିଭାଣ୍ଡକ ସ୍ନାନାର୍ଥ ଆଗତା ଉର୍ବଶୀଙ୍କର ହୃଦୟ-ମୋହନ ଯୌବନର ଲାବଣ୍ୟ ଦେଖି ସ୍ଖଳିତ-ରେତ ହେଲେ । ମୃଗୀଟିଏ ସେହି ଅମୋଘ ରେତକୁ ସଲିଳସହ ପାନ କଲାରୁ ତଦୀୟ ଗର୍ଭରୁ ଋଷ୍ୟଶୃଙ୍ଗ ଜାତ ହେଲେ ଇତ୍ୟାଦି । ଏ ସ୍ଥଳରେ ପୁଣି ଦାସେ ଲେଖିଅଛନ୍ତି, ଶାନ୍ତା ଦେବୀ ଦଶରଥଙ୍କ ଔରସରୁ କୌଶଲ୍ୟାଙ୍କ ଗର୍ଭରୁ ଉତ୍ପନ୍ନା ଥିଲେ, (୨) ଦଶରଥ-ମିତ୍ର ଲୋମପାଦ ରାଜା ମଧ ତାଙ୍କରି ପରି ଅପୁତ୍ରକ ଥିଲେ, ସେ ଉଭୟେ ପୁତ୍ରହୀନତା – ଜନିତ ଦୁଃଖରେ ସମଦୁଃଖ ଆଉ ଅନ୍ୟୋନ୍ୟ ପ୍ରିୟ-ସଖ ଥିଲେ ବୋଲି ଲୋମପାଦ ଶାନ୍ତାଙ୍କୁ ନେଇ ନିଜ ତନୁଜାପ୍ରାୟ ଲାଳନପାଳନ କରୁଥିଲେ ଇତ୍ୟାଦି ।

ଏ ସ୍ଥଳରେ ମୂଳ ଗ୍ରନ୍ଥରେ ଏ କଥା ସୁସ୍ପଷ୍ଟ ବିବୃତ ନ ଥିବାରୁ କେହି କେହିଁ କହନ୍ତି କି, ଶାନ୍ତା ଯେ ଦଶରଥଙ୍କର ତଥାଚ ଲୋମପାଦଙ୍କର ଦୁହିତା, ଏଥିରେ ଆପତ୍ତି ନାହିଁ; କିନ୍ତୁ ସେ କୌଶଲ୍ୟାଙ୍କ ଗର୍ଭସମ୍ଭୂତା ଦଶରଥଙ୍କର ଆତ୍ମଜ ନୁହନ୍ତି । କାରଣ ଏହାର ପ୍ରମାଣ ମୂଳରେ ଦେଖା ଯାଉନାହିଁ । ଆମ୍ଭେ କହୁଁ, ବହୁପୁରାଣ-ଚରିତବେତ୍ତା ବଳରାମ ଦାସେ ଶାନ୍ତାସଂକ୍ରାନ୍ତ ଯାହା ଯାହା କହିଛନ୍ତି, ସେ ସବୁ ଯଥାର୍ଥ କେବଳ । ସେ ନିଜର

---

୧ । ବଳରାମ ଦାସେ ଯେପରି ଋଷି ମୋହିନୀ ବେଶ୍ୟାମାନଙ୍କ ନିମନ୍ତେ ନୌକାର ସାଜସଜ୍ଜାକୁ ସ୍ୱତନ୍ତ୍ର ଭାବରେ ବର୍ଣ୍ଣିଅଛନ୍ତି, ବଙ୍ଗ-ରାମାୟଣ-ରଚୟିତା କୃତ୍ତିବାସ ଦାସେ ମଧ ସେହିପରି ଲେଖିଅଛନ୍ତି । ଏହାଙ୍କର ଆଦିକାଣ୍ଡ ୧୩୦ ପୃଷ୍ଠାଠାରୁ ପଢ଼ି ନିଅନ୍ତୁ, ଜାଣିପାରିବେ ।

୨ । ଛାପା ପୁସ୍ତକରେ ଆଦିକାଣ୍ଡ ୩୭ ପୃଷ୍ଠା ଆଉ ୩୮ ପୃଷ୍ଠା ପଢ଼ନ୍ତୁ । ଋଷ୍ୟଶୃଙ୍ଗଙ୍କ ପ୍ରତି ଦଶରଥ ଏ ସବୁ କହିଅଛନ୍ତି, ଜାଣିପାରିବେ । ଶ୍ରୀମାନ୍ ମହାକବି ଉପେନ୍ଦ୍ର ଭଞ୍ଜ ମହାଶୟ ମଧ ଶାନ୍ତାଙ୍କୁ ଦଶରଥଙ୍କର ତନୁଜା ବୋଲି ଏବଂ ତାହାଙ୍କର ବୈବାହିକ ଦାନକର୍ତ୍ତା ଦଶରଥ ବୋଲି କହି ଅଛନ୍ତି । ବୈଦେହୀଶ-ବିଳାସ ଚତୁର୍ଥ ଏବଂ ପଞ୍ଚମ ଛାନ୍ଦ ଦେଖନ୍ତୁ ।

ବହୁଦର୍ଶୀ-ମତିମତ୍ତା-ବଳରେ ଏହି ଘଟନାର ଅବହିତ୍ଥା – ପ୍ରାପ୍ତ ଯଥାର୍ଥତାକୁ ପ୍ରକାଶିତ କରିଅଛନ୍ତି । ଶାନ୍ତା ଦଶରଥଙ୍କର ତନୁଜା ଲୋମପାଦଙ୍କର କୃତକକନ୍ୟା ଥିଲେ, ଏହା ମୂଳଗ୍ରନ୍ଥରେ ଉଭୟ-ବୃନ୍ତା-ବଳୟୀ ଫଳର ନ୍ୟାୟ ପ୍ରକାଶିତ ଥିଲେ ସୁଦ୍ଧା ବଳରାମ ଦାସେ ପୁରାଣାନ୍ତରରୁ ଏହାର ଯଥାର୍ଥ୍ୟ ଅବଗତ ହୋଇ ସର୍ବସାଧାରଣଙ୍କ ସମକ୍ଷରେ ଅଭିବ୍ୟକ୍ତ କରିଛନ୍ତି । ବଳରାମ ଦାସଙ୍କର ଏହି ଉକ୍ତି ଅନ୍ୟ-ପୌରାଣିକ (୧) ଏବଂ ପ୍ରାମାଣିକ ବୋଲି ମହାକବି ଭବଭୂତିଙ୍କର ବଚନରୁ ମଧ ସ୍ପଷ୍ଟ ଜଣା ଯାଉଅଛି । (୨)

ଅତଃପର ବାଲ୍ମୀକୀୟ ରାମାୟଣରେ ଦଶରଥ ମହାରାଜଙ୍କର ପୁତ୍ରେଷ୍ଟି-କ୍ରିୟା-ସାଧନର କର୍ମ ଲେଖାଅଛି । ଦଶରଥ ସୁମନ୍ତ୍ରଙ୍କ ମୁଖରୁ ପୁତ୍ର-ପ୍ରାପ୍ତିର ଭବିଷ୍ୟତ ବାଣୀ ଶୁଣି, ସ୍ୱୟଂ ସାବରୋଧ ପରିଜନ-ପରିଚାରବର୍ଗଙ୍କୁ ସମଭିବ୍ୟାହାରରେ ନେଇ ପ୍ରିୟସଖ ଲୋମପାଦଙ୍କ ଭବନକୁ ପ୍ରସ୍ଥାନ କଲେ ଏବଂ ସଭାର୍ଯ୍ୟ ଋଷ୍ୟଶୃଙ୍ଗଙ୍କୁ ବହୁ ସମାରୋହରେ ଧରି ଅଯୋଧ୍ୟାକୁ ପ୍ରତ୍ୟାବୃତ୍ତ ହେଲେ । ଏ ସ୍ଥଳରେ ରାଜା ପୁତ୍ରେଷ୍ଟି ଯାଗପୂର୍ବରୁ ସନ୍ତାନାର୍ଥ ଅଶ୍ୱମେଧଯାଗ କରିଥିବାର କଥାମାନ ଆଦିକାଣ୍ଡ ଦ୍ୱାଦଶାଧ୍ୟାୟ-ପ୍ରାରମ୍ଭରୁ ଚତୁର୍ଦ୍ଦଶାଧ୍ୟାୟ ଅବସାନ ପର୍ଯ୍ୟନ୍ତ ବର୍ଣ୍ଣିତ ଅଛି । ଏହାପରେ ପୁତ୍ରେଷ୍ଟି ଯାଗଟି ଅଶ୍ୱମେଧଯାଗର ଆନୁସଙ୍ଗିକ ସ୍ୱରୂପ ଅନୁଷ୍ଠିତ ହୋଇଥିବା ଜଣା ଯାଉଅଛି । ଦଶରଥଙ୍କର ଏହି ଅଶ୍ୱମେଧଯାଗ ସମ୍ପୂର୍ଣ୍ଣତଃ ଏକ ବର୍ଷରେ ସାଙ୍ଗ ହୋଇଥିବା ମଧ ଉକ୍ତ ଅଛି । (୩) ତାହା ହେଲେ

---

୧ । ଅଥ ଶାନ୍ତାଽଭବନ୍ନାମ୍ନା କନ୍ୟା ତସ୍ୟ (ଦଶରଥସ୍ୟ) ମହାତ୍ମନଃ ।
ତାମସୌ ପ୍ରଦଦୌ ସଖ୍ୟେ ରୋମପାଦାୟ ଭୂଭୁଜେ ।

ଇତି ପଦ୍ମପୁରାଣେ ପାତାଳଖଣ୍ଡେ ଦ୍ୱାଦଶଧ୍ୟାୟେ । କୃତ୍ତିବାସ ଦାସ ରାମାୟଣରେ ମଧ ଏପରି ଲେଖାଅଛି । ଛାପା ପୁସ୍ତକ ଆଦ୍ୟକାଣ୍ଡ ୧୪୮ ପୃଷ୍ଠା ଦେଖନ୍ତୁ ।

୨ । ବଶିଷ୍ଠାଧିଷ୍ଠିତା ଦେବ୍ୟୋ ଗତା ରାଘବମାତରଃ
ଅରୁନ୍ଧତୀଂ ପୁରସ୍କୃତ୍ୟ ଯଜ୍ଞେ ଜାମାତୁରାଶ୍ରମଂ ।
ସୂତ୍ରଧାରଃ – ବୈଦେଶିକୋଽସ୍ମୀତିପୃଚ୍ଛାମି । କଃ ପୁନରସୌ ଜାମାତା ?
ନଟଃ – କନ୍ୟାଂ ଦଶରଥୋ ରାଜା ଶାନ୍ତାଂନାମ ବ୍ୟଜୀଜନତ୍
ଅପତ୍ୟ କୃତିକାଂ ରାଜ୍ଞେ ଲୋମପାଦାୟ ଯାଂ ଦଦୌ ।
ଇତି ଉତ୍ତରରାମଚରିତନାଟକେ, ପ୍ରସ୍ତାବନାୟାଂ ।

୩ । ବସନ୍ତେ ସମନୁପ୍ରାପ୍ତେ ରାଜ୍ଞୋ ଯଷ୍ଟୁଂ ମନୋଽଭବତ୍ ।୧। x x x
ସଂଭରାଃ ସଂଭ୍ରିୟଂତାଂତେ ତୁରଗଣ୍ଡ ବିମୁଚ୍ୟତାଂ ।୩। ଇତ୍ୟାଦି ।
ଆଦିକାଣ୍ଡ–୧୨ସ–୧–୩ ଶ୍ଳୋ
ମମଲାଲପ୍ୟମାନସ୍ୟ ପୁତ୍ରାର୍ଥଂ ନାସ୍ତିବୈସୁଖଂ ।
ତଦର୍ଥଂ ହୟମେଧେନ ଯକ୍ଷାମୀତି ମତିର୍ମମ । ଇତ୍ୟାଦି
ଇତି ଆଦିକାଣ୍ଡେ ୧୨ ସ । ୮ ଶ୍ଳୋ

କହିବାକୁ ହେବ ଯେ, ମହାମହିମ ଋଷ୍ୟଶୃଙ୍ଗ ଅଯୋଧ୍ୟାରେ ବର୍ଷାଧିକ ସମୟ ଅବସ୍ଥାନ ଏବଂ ଅଶ୍ୱମେଧ-ସମାପ୍ତି ପରେ ଦଶରଥଙ୍କର ପୁତ୍ରେଷ୍ଟି ସମ୍ପାଦନା କରିଥିଲେ । (୧)

ଏହି ସଂବିଧାନଟି ବଳରାମ ଦାସଙ୍କ ରାମାୟଣରେ ଅଂଶତଃ ଅନ୍ୟପ୍ରକାର ଦେଖାଯାଏ । ବୋଧହୁଏ, ଦାସେ ଦଶରଥଙ୍କର ପୁତ୍ରେଷ୍ଟି-ଯାଗର କେବଳ ପ୍ରାଧାନ୍ୟ ନେଇ ଅଶ୍ୱମେଧଯାଗର ନାମ ପର୍ଯ୍ୟନ୍ତ ଆଦୌ ଦେଇ ନାହାନ୍ତି । ସେ କହିଅଛନ୍ତି କି, ଲୋମପାଦ ଶାନ୍ତାଙ୍କୁ ପରିଣୀତା କଲାପରେ ବହୁବିଧ ଯୌତୁକ ଦ୍ରବ୍ୟମାନ ତାହାଙ୍କ ଶ୍ୱଶୁର ବିଭାଣ୍ଡକଙ୍କଠାକୁ ପଠାଇ ଦେଲେ । (୨) ବିଭାଣ୍ଡକ ପୁତ୍ରଙ୍କ ଶୁଭସମ୍ବାଦ ପାଇ ଅଙ୍ଗଦେଶରେ ଆସି ଉପଗତ ହେଲାରୁ, ଲୋମପାଦ ତାହାଙ୍କୁ ବହୁ ଅନୁନୟ-ବିନୟପୂର୍ବକ ସର୍ବଥା ସତ୍କୃତ କରି ତାହାଙ୍କ କର୍ତ୍ତୃକ ଆପଣାର ପୁତ୍ରେଷ୍ଟି ଯାଗ ସମ୍ପନ୍ନ କଲେ (୩) ଏବଂ ତଦୀୟ କୃପାରୁ ପୁତ୍ରବାନ୍ ହେଲେ । ତତଃପର ଦଶରଥଙ୍କ କର୍ତ୍ତୃକ ଆମନ୍ତ୍ରିତ ଆଉ ସମ୍ମାନିତ ଋଷ୍ୟଶୃଙ୍ଗ ତାହାଙ୍କର ପୁତ୍ରେଷ୍ଟି ସମାପନ କରିଥିଲେ ।

ବାଲ୍ମୀକିଙ୍କ ରାମାୟଣରେ ଅଙ୍ଗରାଜଙ୍କର ଅପୁତ୍ରକତା ସଂକ୍ରାନ୍ତ କଥାମାନ ପ୍ରତିପାଦିତ ନାହିଁ । ତଥାପି ଓଡ଼ିଆ ବାଲ୍ମିକୀ ବଳରାମ ଦାସେ ବହୁ ପୁରଣାଭିଜ୍ଞତା ବଳରୁ ତାହା ହୃଦୟଙ୍ଗମ କରିପାରି ନିଜ ରାମାୟଣରେ ଯଥାସ୍ଥାନରେ ସନ୍ନିବେଶିତ କରି ଦେଇଅଛନ୍ତି । ଲୋମପାଦ ସନ୍ତାନବିହୀନ ଥିବାରୁ କେବଳ ଦଶରଥଙ୍କ ତନୁଜା ଶାନ୍ତାଙ୍କୁ କୃତକତନୟା କରିଥିଲେ, ଏହା ମଧ୍ୟ ଦାସେ ସ୍ପଷ୍ଟତଃ ପ୍ରକାଶ କରିଅଛନ୍ତି । ଏ ସ୍ଥଳେ ପୁଣି ସେ ମହୋଦୟ ମୂଳରେ ଅନୁକ୍ତ ଦଶରଥଙ୍କର ପୁତ୍ରେଷ୍ଟି ଯାଗର ମହୋତ୍ସବରେ ନିମନ୍ତ୍ରିତ ଓ ସମବେତ

---

୧ । ପୁନଃ ପ୍ରାପ୍ତେ ବସନ୍ତେତୁ ପୂର୍ଣଃ ସମ୍ବତ୍ସରୋଽଭବତ୍
ପ୍ରସବାର୍ଥଂ ତତୋ ଯଷ୍ଟୁଂ ହୟମେଧେନ ବୀର୍ଯବାନ୍ । ବା । କା । ୧୩ସ । ୧ ଶ୍ଳୋ
ଅଥ ସଂବତ୍ସରେ ପୂର୍ଣେ ତସ୍ମିନ୍ ପ୍ରାପ୍ତେ ତୁରଙ୍ଗମେ ।
ସରୟ୍ୱାଶ୍ଚୋତ୍ତରେତୀରେ ରାଜ୍ଞୋ ଯଜ୍ଞୋଽଭ୍ୟବର୍ତ୍ତତ । ବା । କା । ୧୪ସ । ୧ ଶ୍ଳୋ
ଇଷ୍ଟିଂତେଽହଂ କରିଷ୍ୟାମି ପୁତ୍ରୀୟାଂ ପୁତ୍ରକାରଣାତ୍ ।
ଅଥର୍ବଶିରସି ପ୍ରୋକ୍ତୈଃ ମନ୍ତ୍ରୈଃ ସିଦ୍ଧାଂ ବିଧାନତଃ ।
ବାଳକାଣ୍ଡ ୧୫ ସ । ୨ ଶ୍ଳୋ ।

୨ । ପଦ୍ମପୁରାଣ ପାତାଳଖଣ୍ଡ ୧୩ ତ୍ରୟୋଦଶାଧ୍ୟାୟରେ ମଧ୍ୟ ଉକ୍ତ ଅଛି ଯେ, ବିଭାଣ୍ଡକ ଶାନ୍ତାଙ୍କ ବିବାହ ପୂର୍ବରୁ ଋଷ୍ୟଶୃଙ୍ଗଙ୍କର ସମ୍ବାଦ ପାଇ ଅଙ୍ଗଦେଶରେ କ୍ରୋଧରେ ଉପଗତ ହୋଇଥିଲେ ଇତ୍ୟାଦି । ପଦ୍ମପୁରାଣର ଏହି ପ୍ରମାଣକୁ ଅନୁସରି. କୃତ୍ତିବାସ ଦାସେ ମଧ୍ୟ ନିଜର ବଙ୍ଗ ରାମାୟଣରେ ଏହି ଭାବକୁ ନିଜ ଭାବରେ ମିଶ୍ରିତ କରି ବର୍ଣ୍ଣିଅଛନ୍ତି । ବାଳକାଣ୍ଡ–୧୪୯–୧୫୧ ପୃଷ୍ଠା ପଢ଼ନ୍ତୁ ।

୩ । ଏ କଥାମାନଙ୍କର ପ୍ରମାଣବାକ୍ୟମାନ ଛାପା ପୁସ୍ତକରେ ୪୫ ପୃଷ୍ଠାଠାରୁ ଦେଖନ୍ତୁ । ଲୋମପାଦଙ୍କ ଯୌତୁକ ପ୍ରେରଣାଦି କଥାର ପ୍ରମାଣ ୪୨ ପୃଷ୍ଠାଠାରୁ ଦେଖି ନିଅନ୍ତୁ ।

ବହୁ ରାଜାମାନଙ୍କର କଳ୍ପନାପ୍ରସୂତ ଦେଶ ଆଉ ବଂଶମାନଙ୍କର ନାମାବଳୀ ସହିତ ଚରିତପରମ୍ପରାର ପ୍ରକାଶନରେ ଆପଣାର କଳ୍ପନାବିଭୂତିକୁ ମଧ୍ୟ ପ୍ରଦ୍ୟୋତିତ କରିଅଛନ୍ତି ।

ଏଣେ ଦେବପ୍ରଭାବ ଋଷ୍ୟଶୃଙ୍ଗ ଦଶରଥଙ୍କ ସନ୍ତାନପ୍ରାପ୍ତି ନିମନ୍ତେ ଯେତେବେଳେ ପୁତ୍ରେଷ୍ଟି ଯାଗରେ ବ୍ୟାପୃତ, ଠିକ୍ ସେହି ସମୟରେ ଦେବତାମାନେ ଲୋକରାବଣ ରାବଣଙ୍କ ଦୁର୍ଦ୍ଦମ୍ୟ ଅତ୍ୟାହିତ ସମ୍ବନ୍ଧେ ପରମେଷ୍ଠ ପରମେଷ୍ଠିଙ୍କ ଛାମୁରେ ହାରିଗୁହାରି କଲାରୁ ସେନ୍ଦ୍ରାଦି ଦେବଗଣ ପିତାମହ ଭଗବାନ ଶ୍ରୀନାରାୟଣଙ୍କ ଛାମୁରେ କୃପାଭିକ୍ଷା କଲେ ଯେ, "ହେ ଦୟାମୟ ଜଗନ୍ନିବାସ ! ଆପଣ ରାମରୂପେ ଅବତୀର୍ଣ୍ଣ ହୋଇ ଭୁବନତ୍ରୟର କଲ୍ୟାଣ ନିମନ୍ତେ ରାବଣାଦିଙ୍କୁ ନିହତ କରନ୍ତୁ । ଏହି ପ୍ରସ୍ତାବରେ ମଧ ଦାସ ମହାଶୟ ରାବଣାଦିଙ୍କର ଜନ୍ମାଦି ବୃତ୍ତାନ୍ତକୁ ତତ୍ରତ୍ୟ ପୂର୍ବାପର ବାକ୍ୟମାନଙ୍କର ସାଙ୍ଗତ୍ୟରକ୍ଷାପୂର୍ବକ ସଂକ୍ଷେପତଃ ଫେର୍ କହିଅଛନ୍ତି । ତଥାଚ ମଧୁକୈଟଭ ଦାନବଦ୍ୱୟଙ୍କ ଆବିର୍ଭାବ ପ୍ରଭୃତିର କଥା ସହିତ ବିଷ୍ଣୁଙ୍କର ମୀନାଦି ଅବତାରମାନଙ୍କର ଘଟନାବଳୀକୁ ସମାସତଃ ଲେଖିଯାଇ ଅଛନ୍ତି । (୧)

ଅତଃପର ଦଶରଥଙ୍କ ପୁତ୍ରେଷ୍ଟି ଯାଗରେ ଅକସ୍ମାନ୍ନୂକମ୍ପ ପରମେଶ୍ୱରଙ୍କ ପ୍ରଦତ୍ତ ଦିବ୍ୟ ପାୟସର ବିଭଜନର କଥା । ଏହା ଗୋଟିଏ ଘଟ ସ୍ଥଳ । ଏହାର ନାମ ପରମାନ୍ନବିଭାଗ ଘଟ । ଏତତ୍‌ସଂକ୍ରାନ୍ତ ମୌଳିକ ବାକ୍ୟମାନଙ୍କରେ ସୁଦ୍ଧା ମହର୍ଷି ବାଲ୍ମୀକିଙ୍କର ଅଭିପ୍ରାୟ ଅତି ନିଗୂଢ଼ ରହିଅଛି । ଯେ କୌଣସି ଅନୁବାଦକ ମାତ୍ରେ ତାହା ଅବଗତ ହେବା ନିତାନ୍ତ କଠିନ । ଏ ସ୍ଥଳରେ ଅନେକେ ଭ୍ରାନ୍ତିରେ ପଡ଼ିଅଛନ୍ତି । ଏପରି ଭ୍ରାନ୍ତିରେ ପଡ଼ିବା ଅସମ୍ଭବ ନୁହେଁ; ପ୍ରତ୍ୟୁତଃ ସମ୍ଭବ କେବଳ । ନିଜେ ବାଲ୍ମୀକି ମହର୍ଷି ମୂଳଗ୍ରନ୍ଥରେ ତାଦୃଶ ଦୁରୂହାର୍ଥ ପଦବିନ୍ୟାସ କରିଅଛନ୍ତି । ସେ ତହିଁରେ ଯଥାର୍ଥତାକୁ ସାବହିତ୍‌ଥ ରଖିଅଛନ୍ତି । ଏପରି ଘଟସ୍ଥଳମାନଙ୍କରେ ସର୍ବତ୍ର ଗ୍ରନ୍ଥକର୍ତ୍ତା ମହୋଦୟଙ୍କର ହୃଦୟାଶୟ ବଡ଼ ନିଗୂଢ଼ ଥାଏ । ପରନ୍ତୁ ତାଦୃଶ ବାକ୍ୟମାନଙ୍କର ବାହ୍ୟ ଅର୍ଥଟା ସହଜେ ଅନ୍ୟପ୍ରକାର ଜଣାପଡ଼ିଯାଏ । କିନ୍ତୁ ପୂର୍ବାପର ବାକ୍ୟାର୍ଥ ସାଙ୍ଗତ୍ୟରେ ମିଳାଇ ନେବାକୁ ବସିଲେ ତାହା ଅସଙ୍ଗତ ହୋଇପଡ଼େ । ତେତେବେଳେ ପାଠକଙ୍କର ନାନା ବିଚିକିତ୍ସା ଜନ୍ମେ । ସେ ଯାହା ହେଉ ଏ ସମ୍ବନ୍ଧରେ ଆମ୍ଭମାନଙ୍କ ଆଦିମ ଓଡ଼ିଆ ରାମାୟଣ କଣ କଣ କହିଅଛନ୍ତି, ଦେଖନ୍ତୁ । ଏହି ପଂକ୍ତିଗୁଡ଼ିକର ଭାବ ଅକ୍ଷୁଣ୍ଣ ମନେ ରଖନ୍ତୁ ।

ଏମନ୍ତେ କେକୟୀ କଉଶଲ୍ୟା ଦୁଇ ରାଣୀ ।
ଆଗଭର ହୋଇଣ ସେ ବୋଲନ୍ତି ତରୁଣୀ ॥

---

୧ । ଦାସଙ୍କ ରାମାୟଣର ଛପା ପୁସ୍ତକରେ ଆଦିକାଣ୍ଡ ୫୩ ପୃଷ୍ଠାଠାରୁ ୫୭ ପୃଷ୍ଠା ପର୍ଯ୍ୟନ୍ତ ପଢ଼ନ୍ତୁ ।

ଭୋ ଦେବରାଜ ! ତୁମ୍ଭର ଆଜ୍ଞା ପରମାଣେ ।
ବ୍ରତକୁ ପାଳିଣ ଅଛୁଁ ଆମ୍ଭେ ତିନିଜଣେ ॥

ଶୁଣି ମନରେ ଆନନ୍ଦ ହୋଇଲା ଦଶରଥ ।
ଦୁଇଭାଗ ଚରୁକୁ ଘେନିଲା ଦୁଇ ହସ୍ତ ॥

କଉଶଲ୍ୟା କେକୟୀ ଯେ ଥିଲେ ଆଗ ହୋଇ ।
ଦୁଇଙ୍କର ହସ୍ତେ ତୋଳି ଦେଲା ନରସାଇଁ ॥

ଚରୁ ନେଲେ ଦୁଇ ରାଣୀ ହୃଷ୍ଟମନା ହୋଇ ।
ଏହାଙ୍କର ପଛରେ ଯେ ସୁମିତ୍ରା ଅଛଇ ॥

ହସ୍ତ ଧରି କୌଶଲ୍ୟା ରାଜାଙ୍କୁ ଦେଖାଇଲା ।
ଭୋ ଦେବ ! ଏହାଙ୍କୁ କିଁପା ସ୍ୱଦୟା ନୋହିଲା ॥

ବହୁତ କଷ୍ଟେ ପାଳିଛି ବ୍ରତ ଶଶିମୁଖୀ ।
ଏଡ଼େ କଷ୍ଟ ପାଇ ଏ ହୋଇଲା ନିରିମାଖୀ ? ॥

କର ଅନୁଗ୍ରହ ବ୍ରତ ବିଫଳ ଯେ ନୋହୁ ।
ଆମ୍ଭ ଦୁଇ ସଙ୍ଗତେ ଏ ପୁତ୍ରଦାନ ପାଉ ॥

ଦଶରଥ ବୋଇଲେ ଉତ୍ସାହୀ ହୋଇଥିଲି ।
ସବୁ ଚରୁଅନ୍ନ ମୁଁ ଦୁହିଁଙ୍କି ବାଣ୍ଟିଦେଲି ॥

ଆଉ ରାଣୀମାନଙ୍କ ନିମନ୍ତେ ବିସୋରିଲି ।
ସେମାନଙ୍କ ସଙ୍ଗତେ ମୁଁ ଏହାକୁ ଗଣିଲି ॥

ଏ ତୁମ୍ଭ ସଙ୍ଗତେ ଯେବେ କରିଅଛି ବ୍ରତ ।
ଦିଅ ତୁମ୍ଭେ ଦୁହେଁ ଚରୁ ପୁତ୍ର ହେଉ ଜାତ ॥

ମୋହର ବଚନେ ଗୋ କଲ୍ୟାଣ ହେଉ ହେଉ ।
ତୁମ୍ଭର ସଙ୍ଗତେ ଏହୁ ପୁତ୍ରଦାନ ପାଉ ॥

ଏତେ କହି ଆସ୍ଥାନକୁ ଗଲେ ଦଶରଥ ।
ସଭାରେ ବିଜୟ ଯାଇଁ କଲେ ନରନାଥ ॥
ରାଜାର ବଚନେ ସେ ଯେ ଜ୍ୟେଷ୍ଠ ଦୁଇ ଭଗ୍ନୀ ।
ସୁମିତ୍ରାଙ୍କୁ ଚରୁ ପୁଣ ଦୁହେଁ ଦେଲେ ଆଣି ॥

ତାହା ପୂର୍ବ ପୁଣ୍ୟେ ସେ ପାଇଲା ଦୁଇଭାଗ ।
ଯାହାର ଯହିଁକି ପୁଣି ଥାଇ ଯେଉଁ ଯୋଗ ।।
ନାରାୟଣ ସୁମରିଣ କଲେ ଚରୁ ଗ୍ରାସ ।
ସଂସାର ସ୍ୱଭାବେ ସେ ହୋଇଲେ ଗର୍ଭବାସ ।।
ସାଧୁ ସାଧୁ ମହିମା ସେ କଉଶଲ୍ୟା ରାଣୀ ।
ଗର୍ଭରେ ଧଇଲା ସେ ଅନାଦି ଶିରୋମଣି ।।
ତିନି ମହାଦେଇ ଯେ ହୋଇଲେ ଗର୍ଭବାସ ।
ଜଗନ୍ନାଥ-ଶରଣ ମୁଁ ବଳରାମ ଦାସ ।୧।

ହରିଭକ୍ତ-ପ୍ରବର ବଳରାମ ଦାସେ ଶ୍ରୀହରିଙ୍କ କୃପାରୁ କେବଳ ପରମାନ୍ନବିଭାଗୀୟ ମୌଳିକ ବାକ୍ୟମାନଙ୍କର ଜଟିଳ ନିଗୂଢ଼ ଅର୍ଥକୁ ହୃଦୟଙ୍ଗମ କରିପାରିଥିଲେ । ଏହି ଯେ ତାଙ୍କର ପଦ୍ୟଗୁଡ଼ିକ ଉଦ୍ଧୃତ ହୋଇଅଛି, ସ୍ଥୂଳତଃ ଏହାର ଅର୍ଥହିଁ ଆଦିକବିଙ୍କର ହୃଦୟସ୍ଥ ଅଭିପ୍ରାୟ । ବାଲ୍ମୀକିଙ୍କ ବାକ୍ୟରୁ ଏହି ଯଥାର୍ଥକତା ବାହାର କରିନେବା ବଡ଼ ଅସାଧ୍ୟ ବ୍ୟାପାର । ଏ ସ୍ଥଳରେ ମହର୍ଷି ବାଲ୍ମୀକି ଯେଉଁ ବାକ୍ୟମାନ ଦେଇଅଛନ୍ତି, ତତ୍‌ସହିତ ବାଶିଷ୍ଠ, ଦୌର୍ବାସପ୍ରମୁଖ ରାମାୟଣମାନଙ୍କରେ ଉକ୍ତ ବାକ୍ୟମାନଙ୍କର ଅର୍ଥ ଏକ ହୋଇ ପାରୁନାହିଁ । କାରଣ ବାଲ୍ମୀକିଙ୍କ ବାକ୍ୟର ସର୍ବସାଧାରଣବୋଧ ବାହ୍ୟରେ ପ୍ରକାଶିତ ଅର୍ଥଟାକୁ ଧରିବାରେ ଏପରି ଧନ୍ଦା ଜନ୍ମୁଅଛି । କେତେକ ଟୀକାକାର ମଧ୍ୟ ଏ ଧନ୍ଦାରେ ପଡ଼ି ସର୍ବବାକ୍ୟମାନଙ୍କର ସମରସତା ଦେଖାଇ ପାରିନାହାନ୍ତି । ସେମାନଙ୍କ ମଧ୍ୟରୁ ଅତି ଅଳ୍ପ ମନୀଷୀ ମାତ୍ର ମହର୍ଷିଙ୍କ ନିଗୂଢ଼ ଅଭିପ୍ରାୟ ବୁଝିପାରି ସର୍ବବାକ୍ୟସାମରସ୍ୟ ପ୍ରତିପାଦିତ କରିପାରି ଅଛନ୍ତି । ଅନେକେ ଏହି ଘଟରେ ପ୍ରତିପାଦିତ ମୌଳିକ ବାକ୍ୟମାନଙ୍କର ଅର୍ଥରେ ତର୍କ-ବିତର୍କ-ମୂଳକ ବିଚିକିତ୍ସା କରି ଆପଣାର ଅଯଥା ପକ୍ଷକୁ ସମର୍ଥନ କରନ୍ତି । ପାଠକଗଣ ଏ ସ୍ଥଳରେ ଏକାନ୍ତ ସାବଧାନତାପୂର୍ବକ ପାଠ ପରିଶୀଳନ କରନ୍ତୁ, ବିଷୟର ପରିଶୀଳନ କରନ୍ତୁ । ଆମ୍ଭମାନଙ୍କର ଓଡ଼ିଆ ବାଲ୍ମୀକି ଯଥାର୍ଥ କହିଅଛନ୍ତି କି ନାହିଁ, ବିଚାର କରନ୍ତୁ । ଏହି ଘଟର ବାଲ୍ମୀକୀୟ ବାକ୍ୟମାନଙ୍କର ବିଚାରରେ ପରମାନ୍ନବିଭାଗର ପୂର୍ବାପର ସିଦ୍ଧାନ୍ତ କ୍ରମଶଃ ବିବୃତ କରୁଅଛୁଁ; ପାଠକ ! ସାବଧାନତାରେ ହୃଦୟଙ୍ଗମ କରି ନିଅନ୍ତୁ ।

ମହର୍ଷି ବାଲ୍ମୀକି ଲେଖିଅଛନ୍ତି କି –

କୌଶଲ୍ୟାୟୈ ନରପତିଃ ପାୟସାର୍ଦ୍ଧଂ ଦଦୌ ତଦା ।
ଅର୍ଦ୍ଧାଦର୍ଦ୍ଧଂ ଦଦୌଚାପି ସୁମିତ୍ରାୟୈ ନରାଧିପଃ ।

୧ । ଏ ସ୍ଥଳରେ କବିଙ୍କର ଆଦିକାଣ୍ଡର ସର୍ବପ୍ରଥମ ଭଣତି ନିହିତ ଅଛି ।

କୈକେୟୈ୍ୟ ଚାବଶିଷ୍ଟାର୍ଦ୍ଧଂ ଦଦୌ ପୁତ୍ରାର୍ଥକାରଣାତ୍ ।
ପ୍ରଦଦୌ ଚାବଶିଷ୍ଟାର୍ଦ୍ଧଂ ପାୟସସ୍ୟାମୃତୋପମଂ ।
ଅନୁଚିନ୍ତ୍ୟ ସୁମିତ୍ରାୟୈ ପୁନରେବ ମହୀପତିଃ ।
ଏବଂ ତାସାଂ ଦଦୌ ରାଜା ଭାର୍ଯ୍ୟାଣାଂ ପାୟସଂ ପୃଥକ୍ ।
ଇତି ବାଲକାଣ୍ଡେ ୧୬ଶ ୨୭ – ୨୯ଶ୍ଳୋ ।

ଏ ସ୍ଥଳରେ କେହି କେହି ବ୍ୟାଖ୍ୟାନ-କର୍ତ୍ତାଙ୍କ ପ୍ରତିପାଦିତ ଅର୍ଥ ସହିତ ବାଲ୍ମୀକି ରାମାୟଣାର୍ଥର ଉପବୃଂହକ ବାଶିଷ୍ଠ, ଦୌର୍ବାସ, ଅଧ୍ୟାତ୍ମ-ରାମାୟଣ ପ୍ରମୁଖ ଗ୍ରନ୍ଥମାନଙ୍କରେ ପ୍ରତିପାଦିତ ବିଷୟାର୍ଥର ବିଚାର କଲେ ଦହନ-ତୁହିନ-ନ୍ୟାୟ ବିରୋଧ ଘଟୁଅଛି । ତେବେ ଯଥାର୍ଥ ଅର୍ଥର ସିଦ୍ଧାନ୍ତ କିପରି କରାଯାଇପାରେ ? ଯଦିଚ ଏପରି ଅପେକ୍ଷା ହୁଏ, ତେବେ ବହୁ ଅନୁସନ୍ଧାନ ପୂର୍ବକ ଯଥାର୍ଥତାକୁ ସୁତରାଂ ବାଲ୍ମୀକି ମହର୍ଷିଙ୍କ ହୃଦୟାଶୟକୁ ଖୋଜିନେବାକୁ ହେବ ।

ପ୍ରଥମତଃ ସନ୍ଦେହମୂଳକ ପୂର୍ବପକ୍ଷକୁ ଉପସ୍ଥାପିତ କରି ତା'ପରେ ପ୍ରାମାଣିକ ବଚନମାନଙ୍କରେ ସାଧକ-ବାଧକତାର ବିଚାରପୂର୍ବକ ସ୍ଥିର ସିଦ୍ଧାନ୍ତ ପ୍ରତିପାଦନ କରିବୁଁ ।

ଦଶରଥ ମହାରାଜ ପୁତ୍ରକାମେଷ୍ଟି ଯାଗରେ ଯେତେବେଳେ ପ୍ରାଜାପତ୍ୟ ପୁରୁଷଙ୍କର ହସ୍ତରୁ ସନ୍ତାନପ୍ରଦ ଦେବନିର୍ମିତ ପାୟସାନ୍ନକୁ ଅତି ଶ୍ରଦ୍ଧା ଓ ଆଦରର ସହିତ ଗ୍ରହଣ କଲେ, ତେତିକିବେଳେ ପ୍ରୋକ୍ତ ପରମାନ୍ନକୁ ପ୍ରଥମେ ଦ୍ୱିଧା ବିଭକ୍ତ କରି ଅର୍ଦ୍ଧଭାଗ ପ୍ରଥମ ମହିଷୀ କୌଶଲ୍ୟାଙ୍କୁ ନେଇ ଦେଲେ । ତା'ପରେ ତଦବିଶିଷ୍ଟ ଅର୍ଦ୍ଧଭାଗକୁ ପୁନଶ୍ଚ ଦୁଇଭାଗ କରି ତାହାର ଏକ ଭାଗ ସୁମିତ୍ରାଙ୍କୁ ଦେଇ ତଦବଶିଷ୍ଟ ଏକଭାଗକୁ ପୁଣି ଦୁଇଭାଗ କରି ସେହି ଅଂଶଦ୍ୱୟରୁ ଏକଅଂଶ କୈକେୟୀଙ୍କୁ ଦେଇ ତଦନନ୍ତର ଅବଶିଷ୍ଟ ଅଂଶତକ ମଧ ପୁନରପି ସୁମିତ୍ରାଙ୍କୁ କେବଳ ଦେଲେ ।

ଏପରି ଯେ ବ୍ୟାଖ୍ୟାନ କରନ୍ତି, ସେ ପୁଣି ନିଜ ଅଭିପ୍ରାୟର ଉପଲକ୍ଷରେ ପୁଣି କହନ୍ତି କି, ଏହି ହେତୁରୁ କେବଳ ବିଷ୍ଣୁଙ୍କର ଅର୍ଦ୍ଧଭାଗ ଦିବ୍ୟ-ଲକ୍ଷଣ-ସଂଯୁତ ଇକ୍ଷ୍ୱାକୁକୁଳବର୍ଦ୍ଧନ ରାମଚନ୍ଦ୍ରଙ୍କୁ କୌଶଲ୍ୟା ପ୍ରସବ କରିଥିଲେ (୧) ଅତ୍ରତ୍ୟ ପ୍ରମାଣ ଶ୍ଳୋକସ୍ଥ ଅର୍ଦ୍ଧଶବ୍ଦର ଅର୍ଥସହିତ ପୂର୍ବ କଥାର ସାମରସ୍ୟ ମଧ ରହିଅଛି । ଏହି ଅଭିପ୍ରାୟର ଅନୁରୋଧରେ କୃତବିଭକ୍ତ ପାୟସର ବିଭାଗ ଅନୁସାରେ ଶ୍ରୀରାମ ଓ ଲକ୍ଷ୍ମଣାଦିଙ୍କର

(୧) କୌଶଲ୍ୟା ଜନୟଦ୍ ରାମଂ ଦିବ୍ୟ-ଲକ୍ଷଣ ସଂଯୁତଂ । ବିଷ୍ଣୋରର୍ଦ୍ଧଂ ମହାଭାଗଂ ପୁତ୍ରମିକ୍ଷ୍ୱାକୁନନ୍ଦନଂ ।

ଇତି । ବା । କା । ୧୮ଶ । ୧୦ଶ୍ଳୋ ।

ଅଂଶ-ବିଭାଗ-ବିବରଣ ନିମ୍ନରେ ସୂଚିତ ପ୍ରକାର ହୋଇଥିବା ଜଣା ଯାଉଅଛି । ରାମଚନ୍ଦ୍ର ଅର୍ଦ୍ଧାଂଶବାନ୍ ଅର୍ଥାତ୍ ଷୋଡ଼ଶ କଳାର ଅର୍ଦ୍ଧଭାଗ ଆଠକଳାବିଶିଷ୍ଟ । ଲକ୍ଷ୍ମଣ ଷୋଡ଼ଷକଳାର ଚତୁର୍ଥାଂଶ ଅର୍ଥାତ୍ ଚାରିକଳାରେ ବିଶିଷ୍ଟ । ଭରତ ଓ ଶତ୍ରୁଘ୍ନ ଦୁହେଁ ଷୋଡ଼ଶ କଳାର ଅଷ୍ଟମାଂଶ ଅର୍ଥାତ୍ ଦୁଇ ଦୁଇ କଳାରେ ବିଶିଷ୍ଟ ଥିଲେ । କାରଣ ରାଜା ପ୍ରଥମେ ଅର୍ଦ୍ଧଭାଗ ଅର୍ଥାତ୍ ଷୋଡ଼ଶ ଭାଗର ଅର୍ଦ୍ଧଭାଗ ଆଠଅଣାର ଅଂଶ କୌଶଲ୍ୟାଙ୍କୁ ଦେଲେ, ତା'ପରେ ଅର୍ଦ୍ଧରୁ ଅଧେ ଅର୍ଥାତ୍ ଆଠଅଣା ଅଂଶରୁ ଅଧେ ଚାରିଅଣାର ଅଂଶ ସୁମିତ୍ରାଙ୍କୁ ଦେଲେ, ତା'ପରେ ଅବଶିଷ୍ଟ ଯାହାକି ଚାରିଅଣାର ଅଂଶ, ତାକୁ ପୁଣି ଦୁଇଭାଗ କରି ଅଧେ କୈକେୟୀଙ୍କୁ ଦେଲେ ଅପରାର୍ଦ୍ଧ ଆଣି ଫେର ସୁମିତ୍ରାଙ୍କୁ ଦେଲେ । ତେବେ କୌଶଲ୍ୟା ଦେବୀ ଆଠଅଣା, ସୁମିତ୍ରା ଛଅଅଣା ଏବଂ କୈକେୟୀ ଦୁଇଅଣାର ଭାଗ ମାତ୍ର ପାଇଥିଲେ ।

ବିଭାଗକ୍ରମ ଏହିପରି କହିବାକୁ ହେଲେ ଅଧ୍ୟାତ୍ମରାମାୟଣ ପ୍ରଭୃତି ଅନ୍ୟାନ୍ୟ ରାମାୟଣ ଗ୍ରନ୍ଥ ସ୍କନ୍ଦପ୍ରଭୃତି ପୁରାଣ ଏବଂ ଭୋଜରାଜ, କାଳିଦାସ ପ୍ରଭୃତି ମହାକବିମାନଙ୍କର ବା ଅପିଚ ସେହି ମହର୍ଷିବାଲ୍ମୀକିଙ୍କର ଅପରାପର ପାଠମାନଙ୍କ ସହିତ ଏହାର ପ୍ରଧାନ ବିରୋଧ ଘଟୁଅଛି ।

ଏଇ ଦେଖନ୍ତୁ, ଅଧ୍ୟାତ୍ମ ରାମାୟଣରେ ଉକ୍ତ ଅଛି କି, ଦଶରଥ ହବ୍ୟବାହନଙ୍କ ହସ୍ତରୁ ପାୟସ-ପାତ୍ର ଗ୍ରହଣକରି ପ୍ରଥମତଃ କୌଶଲ୍ୟାଙ୍କ ନିକଟକୁ ଗଲେ । ଦୈବଗତ୍ୟା ତେତେବେଳେ ତାହାଙ୍କ ସମୀପରେ କୈକେୟୀ ମଧ ଉପବିଷ୍ଟା ଥିଲେ । ତଦା ଦଶରଥ ସେହି ପାୟସ ଦ୍ୱିଧା ବିଭକ୍ତ କରି ଅଧେ କୌଶଲ୍ୟାଙ୍କୁ ଆଉ ଅଧେ କୈକେୟୀଙ୍କୁ ଦେଇ ପକାଇଲେ । ତାହାର ଅବ୍ୟବହିତ ପରେ ପୁଣି ସୁମିତ୍ରାଦେବୀ ଆସି ତତ୍ର ଉପଗତ ହେଲେ । ତାହାଙ୍କୁ ଦେଖି କୌଶଲ୍ୟା ଏବଂ କୈକେୟୀ ଦୁହେଁ ପ୍ରୀତି-ପ୍ରଫୁଲ୍ଲ ହୃଦୟରେ ନିଜ ନିଜ ଭାଗରୁ ଅର୍ଦ୍ଧ ଅର୍ଦ୍ଧ ଭାଗ ତାହାଙ୍କୁ ପ୍ରଦାନ କଲେ । (୧)

ଆମ୍ଭମାନଙ୍କର ଉତ୍କଳବାଲ୍ମୀକି ମଧ ଏହା ହିଁ ଅର୍ଥାତ୍ ଅଧ୍ୟାତ୍ମରାମାୟଣକାରଙ୍କ କଥାହିଁ ନିଜ ରାମାୟଣରେ କହିଅଛନ୍ତି । ଅତଏବ ପାୟସପାତ୍ରରୁ କୌଶଲ୍ୟା ଚାରିଅଣାର ଅଂଶ, କୈକେୟୀ ମଧ ସେହି ଚାରିଅଣାର ଅଂଶ; ପରନ୍ତୁ ସୁମିତ୍ରା ଆଠ ଅଣାର ଅଂଶ ପାଇଥିଲେ ।

---

(୧) ଋଷ୍ୟଶୃଙ୍ଗ ବଶିଷ୍ଠାଭ୍ୟାଂ ଅନୁଜ୍ଞାତୋ ଦଦୌ ହବିଃ । କୌଶଲ୍ୟାୟୈ ସକେୟ୍ୟୈଚାର୍ଦ୍ଧମର୍ଦ୍ଧଂ ପ୍ରଯତ୍ନତଃ ।
ତତଃ ସୁମିତ୍ରା ସଂପ୍ରାପ୍ତା ଜଗୃଧ୍ନୁଃ ପୌତ୍ରିକାଂ ଚରୁଂ । କୌଶଲ୍ୟା ତୁ ସ୍ୱଭାଗାର୍ଦ୍ଧଂ ଦଦୌ ତସ୍ୟୈ ମୁଦାନ୍ୱିତା ।
କୈକେୟୀଚ ସ୍ୱଭାଗାର୍ଦ୍ଧଂ ଦଦୌ ପ୍ରୀତି-ସମନ୍ୱିତା ।
ଇତି । ଅଧ୍ୟାତ୍ମରାମାୟଣେ - ବା । କା । ୩ସ ।

ଏହିପରି କ୍ରମରେ ହବ୍ୟବାହନପ୍ରଦତ୍ତ ଚରୁର ବିଭାଗଦ୍ୱାରା ଜଗଦୀଶ୍ୱର ସ୍ୱକୀୟ ଷୋଡ଼ଶ କଳାରୁ ସମାନ ଚାରଭାଗରେ ଚାରି ଚାରି କଳାରେ ଚତୁର୍ଦ୍ଧାରୂପରେ ଅବତୀର୍ଣ୍ଣ ହୋଇଥିଲେ । ଅତଏବ ରାମ, ଭରତ, ଲକ୍ଷ୍ମଣ ଓ ଶତ୍ରୁଘ୍ନ ଚାରିହେଁ ପରମେଶ୍ୱରଙ୍କର ଚାରି ଚାରି କଳାରେ ବିଶିଷ୍ଟ ଥିଲେ । ଏହି କାରଣରୁ ଏହି ଅବତାରରେ ଶ୍ରୀମନ୍ନାରାୟଣଙ୍କର ଚତୁର୍ଦ୍ଧା ପରିଣାମ ହୋଇଥିଲା । ତଥାଚ ରାମାଦି ଚାରିମୂର୍ତ୍ତି ସମାନକଳା-ବିଶିଷ୍ଟ ଥିଲେ । ଏସବୁର ବହୁବିଧ ଆର୍ଷପୌରୁଷ ପ୍ରମାଣମାନ ବହୁବିଧ ଗ୍ରନ୍ଥରେ ବିଦ୍ୟମାନ ରହିଅଛି । ସେଥି ମଧ୍ୟରୁ କେତେକ ନିମ୍ନ ଟିପ୍ପଣୀରେ ପ୍ରଦତ୍ତ କଲୁଁ । (୧)

ଯଦି ନିଶ୍ଚେ ଏପରି ହୁଏ, ତେବେ ପୂର୍ବୋକ୍ତ ଅଶେଷ ଗ୍ରନ୍ଥମାନଙ୍କରେ ପ୍ରତିପାଦିତ ପାୟସ ବିଭାଗର ଅନୁପାତରେ କୌଶଲ୍ୟା ଦେବୀଙ୍କର ସମଗ୍ର ସମଷ୍ଟି ଅଂଶରୁ ଏକପାଦାଂଶ, ତଥାଚ କୈକେୟୀଙ୍କର ମଧ୍ୟ ସେହିପରି ଏକପାଦାଂଶ, ପରନ୍ତୁ

---

(୧) (କ) କଶ୍ୟପସ୍ୟ ବରୋଦତ୍ତଃ ତପସା ତୋଷିତେନମେ । ଯାଚିତଃ ପୁତ୍ରଭାବାୟ ତଥେତ୍ୟଙ୍ଗୀକୃତ ମୟା ।
ସ ଚ ଇଦାନୀଂ ଦଶରଥୋ ଭୂତ୍ୱା ତିଷ୍ଠତି ଭୂତଳେ । ତସ୍ୟାହଂ ପୁତ୍ରତାମେତ୍ୟ କୌଶଲ୍ୟାୟାଂ ଶୁଭୋଦୟେ ।
ଚତୁର୍ଦ୍ଧାତ୍ମାନମେବାହଂ ସୃଜାମୀତରେୟୋଃ ପୃଥକ୍ ।
ଇତି ଅଧ୍ୟାତ୍ମ ରାମାୟଣେ । ବା । କା । ୨ ସ ।
(ଖ) ଇଦଂତୁ ପାୟସଂ ଦେହି ପତ୍ନୀଭ୍ୟସ୍ତବ ପାର୍ଥିବ । ତସ୍ମାତ୍ ତବ ଜନିଷ୍ୟେଽହଂ ମାଂ ବିଭଜ୍ୟ ଚତୁର୍ବିଧଂ ।
ଜନିଷ୍ୟେଽହଂ ସପତ୍ନୀକଃ ସପର୍ଯ୍ୟଙ୍କଃ ସହାୟୁଧଃ । ଇତ୍ୟୁକ୍ତ୍ୱା ପାୟସେ ସାକ୍ଷାତ୍ ପ୍ରବିଷ୍ଟୋଽନ୍ତରଧାୟତ ।
ପର୍ଯ୍ୟଙ୍କଃ = ଶେଷଦେବଃ ଲକ୍ଷ୍ମଣତ୍ୱେନ ଅବତୀର୍ଣ୍ଣଃ । ଆୟୁଧାଃ = ଭରତାଦୟଃ ।
ଇତି ତତ୍ତ୍ୱ ସଂଗ୍ରହ ରାମାୟଣେ । ବା । କା ।
(ଗ) — ଆତ୍ମାନଂ ଚତୁରୋଭାଗାଂ ସ୍ତୁଲ୍ୟରୂପାନ୍ ମହାବଳାନ୍ । ରାମରୂପମହଂଯାମି ଲକ୍ଷ୍ମଣଣ୍ଚ ମମାନୁଜଃ ।
ଭରତୋ ନାମ ଧର୍ମାତ୍ମା ଶତ୍ରୁଘ୍ନ ସ୍ତଦନନ୍ତରଂ ।
ଇତି ସ୍କନ୍ଦପୁରାଣେ — ଦେବାନ୍ ପ୍ରତି ବିଷ୍ଣୁଃ ।
(ଘ) ଚତୁର୍ଥୋଽଂଶସ୍ତୁ ରାମଃ ସ୍ୟାତ୍ ବିଷ୍ଣୋସ୍ତତ୍ତ୍ୱସ୍ତୁ ଲକ୍ଷ୍ମଣଃ ।
ଶଂଖସ୍ତୁ ଭରତୋ ନାମ ଚକ୍ରଂ ଶତ୍ରୁଘ୍ନ ଈରିତଃ ।
ଇତି ଆଗସ୍ତ୍ୟ ରାମାୟଣେ —
(ଙ) କୌଶଲ୍ୟାୟୈ ପ୍ରଥମମିଦଶତ୍ ଭୂପତିଃ ପାୟସାର୍ଦ୍ଧଂ ।
ପ୍ରାଦାଦର୍ଦ୍ଧଂ ପ୍ରଣୟମଧୁରଂ କେକୟେନ୍ଦ୍ରସ୍ୟ ପୁତ୍ର୍ୟୈ ।
ଏତୌ ଦେବ୍ୟୌ ତରଳମନସଃ ପତ୍ୟୁରାଲୋଚ୍ୟ ଭାବଂ । ସ୍ୱାର୍ଦ୍ଧାଂଶାଭ୍ୟାଂ ସ୍ୱୟମକୁରୁତାଂ ପୂର୍ଣ୍ଣକାମାଂ ସୁମିତ୍ରାଂ
ଇତି ଭୋଜରାଜଃ
(ଏ ମହାଶୟ ଠିକ ବଳରାମ ଦାସଙ୍କ ପରି ଅଧ୍ୟାତ୍ମ ରାମାୟଣର ବିଭାଗକ୍ରମକୁ ସ୍ୱୀକାର କରିଅଛନ୍ତି)
(ଚ) ପତ୍ନ୍ୟୌପତ୍ୟୁ ମହୀକ୍ଷିତିଃ
ଚରୋର୍ଦ୍ଧାର୍ଦ୍ଧ-ଭାଗାଭ୍ୟାଂ ତାମଯୋଜୟତାମୁଭେ ।
ଇତି ରଘୁବଂଶେ —୧୦ ସ ।

ସୁମିତ୍ରାଦେବୀଙ୍କର ସମଗ୍ରରୁ ଅର୍ଦ୍ଧଭାଗ ପ୍ରାପ୍ତ ହୋଇଥିଲା; ଏହା ସ୍ପଷ୍ଟତଃ ଜଣାଯାଉଅଛି । ସୁତରାଂ ଏହାର ଜାଜ୍ୱଲ୍ୟମାନ ପ୍ରମାଣସ୍ୱରୂପ ଶ୍ରୀମାନ୍ ମହର୍ଷି ବାଲ୍ମୀକିଙ୍କର କଣ୍ଠୋକ୍ତି ମଧ୍ୟ ଦେଖା ଯାଉଅଛି (୧) ।

ନିମ୍ନରେ ଉଦ୍ଧୃତ ବାକ୍ୟ ଦେଖିନେବେ, ଅର୍ଥ ମିଳାଇନେବେ,ଏ ସ୍ଥଳରେ "ବିଷ୍ଣୋଶ୍ଚତୁର୍ଭାଗଃ" "ବିଷ୍ଣୋରର୍ଦ୍ଧସମନ୍ୱିତୌ" ସାକ୍ଷାତ୍ ବିଷ୍ଣୁଙ୍କର ଚତୁର୍ଭାଗ, ଅପିଚ ବିଷ୍ଣୁଙ୍କର ଅର୍ଦ୍ଧ-ସମନ୍ୱିତ, ଏପରି ଉକ୍ତ ଥିବାରୁ ଭରତ ବିଷ୍ଣୁଙ୍କର ଚାରିକଳାରେ ଏବଂ ଲକ୍ଷ୍ମଣ ଓ ଶତ୍ରୁଘ୍ନ ଦୁହେଁ ମିଶ୍ରଣତଃ ଅଷ୍ଟକଳା ବା ଅର୍ଦ୍ଧାଂଶରେ ଅବତୀର୍ଣ୍ଣ ହୋଇଥିବାର କଥା ଗ୍ରନ୍ଥାକର୍ତ୍ତା ମହାଶୟଙ୍କ କଣ୍ଠୋକ୍ତିରେ ସ୍ପଷ୍ଟତଃ ପ୍ରତିପନ୍ନ ହେଉଅଛି ।

ତେବେ ଅଶେଷ ଗ୍ରନ୍ଥ ପରିଶୀଳନ ଦ୍ୱାରା ଏହି କ୍ରମ ହିଁ ନିଶ୍ଚିତ ହେଉଥିବାସ୍ଥଳେ କିପରି ବା ଦଶରଥ ସର୍ବସିଦ୍ଧାନ୍ତ ବିରୁଦ୍ଧତାରେ ପରମାନ୍ନକୁ ଅଯଥା ବିଭକ୍ତ କରିଥିବାର କୁହାଯାଉଅଛି ? ପୂର୍ବପକ୍ଷରେ ଏତାଦୃଶ ପ୍ରଶ୍ନ ଉତ୍ଥାପିତ ହୁଅନ୍ତେ ସର୍ବ-ଗ୍ରନ୍ଥ-ସମରସତାସହ ତାହାର ଯଥାର୍ଥତାର ସିଦ୍ଧାନ୍ତ ପ୍ରତିପାଦନ କରୁଅଛୁଁ ।

ସର୍ବ ପ୍ରଥମେ ଉଦାହୃତ ବାଲ୍ମୀକିଙ୍କ ଶ୍ଳୋକତ୍ରୟର ଯଥାର୍ଥ (୨) ସ୍ପଷ୍ଟ ଅର୍ଥକୁ ପୁନରପି ପ୍ରକାଶ କରୁଅଛୁଁ । ପାଠକଗଣ ନିମ୍ନରେ ପ୍ରଦତ୍ତ ସେହି ଶ୍ଳୋକମାନଙ୍କର ପଦମାନଙ୍କ ସହ ପ୍ରଦତ୍ତ ଅର୍ଥକୁ ମିଳାଇ ପରିଶୀଳନ କରିବେ । ଅତ୍ରତ୍ୟ "କୌସଲ୍ୟାୟୈ" ଇତ୍ୟାକାରକ ଶ୍ଳୋକତ୍ରୟର ପ୍ରାତିପଦିକ ଅର୍ଥ ସମ୍ପ୍ରଦାୟ କ୍ରମରେ ବିବୃତ କରାଯାଉଅଛି ।

ନରପତି ଯେ ଦଶରଥ ପାୟସାର୍ଦ୍ଧକୁ ପ୍ରାଜାପତ୍ୟ ପୁରୁଷଙ୍କ ପ୍ରଦତ୍ତ ପାୟସର ସମ ଅର୍ଦ୍ଧ ଅଂଶକୁ "କୌସଲ୍ୟାୟୈ" କୌସଲ୍ୟାଙ୍କ ନିମନ୍ତେ "ଦଦୌ" ଖଣ୍ଡନ କଲେ, ପୃଥକ୍ କଲେ, ବା ବିଭକ୍ତ କଲେ । "ଦୋଅବଖଣ୍ଡନେ" ଖଣ୍ଡନାର୍ଥ ଦୋ-ଧାତୁର ଭୂତାର୍ଥରେ

---

(୧) ଭରତୋ ନାମ କୈକାୟ୍ୟାଂ ଜଜ୍ଞେ ସତ୍ୟପରାକ୍ରମଃ, ସାକ୍ଷାତ୍ ବିଷ୍ଣୋଶ୍ଚତୁର୍ଭାଗଃ ସର୍ବୈଃ ସମୁଦିତୈର୍ଗୁଣୈଃ । ଅଥ ଲକ୍ଷ୍ମଣ ଶତ୍ରୁଘ୍ନୌ ସୁମିତ୍ରାଜନୟତ୍ ସୁତୌ । ବୀରୌ ସର୍ବାସ୍ତ୍ରକୁଶଳୌ ବିଷ୍ଣୋରର୍ଦ୍ଧ-ସମନ୍ୱିତୌ ।

ଇତି ଶ୍ରୀମଦ୍ ରାମାୟଣେ ।୧୮ଶ ।୧୨ ଶ୍ଳୋ ।

(୨) କୌସଲ୍ୟାୟୈ ନରପତିଃ ପାୟସାର୍ଦ୍ଧଂ ଦଦୌ ତଦା ।<br>
ଅର୍ଦ୍ଧାଦର୍ଦ୍ଧଂ ଦଦୌଚାପି ସୁମିତ୍ରାୟୈ ନରାଧିପଃ । ୧ ।<br>
କୈକେୟ୍ୟୈଚାବଶିଷ୍ଟାର୍ଦ୍ଧଂ ଦଦୌ ପୁତ୍ରାର୍ଥକାରଣାତ୍ ।<br>
ପ୍ରଦଦୌ ଚାବଶିଷ୍ଟାର୍ଦ୍ଧଂ ପାୟସସ୍ୟାମୃତୋପମଂ । ୨ ।<br>
ଅନୁଚିନ୍ତ୍ୟ ସୁମିତ୍ରାୟୈ ପୁନରେବ ମହୀପତିଃ ।<br>
ଏବଂ ତାସାଂ ଦଦୌ ରାଜା ଭାର୍ଯ୍ୟାଣାଂ ପାୟସଂ ପୃଥକ୍ । ୩ ।

ଦଦୌ ରୂପ ହୋଇଅଛି । ଅର୍ଥତଃ ଦଦୌ କହିଲେ ବିଭକ୍ତ କଲେ, ଏହି ଅର୍ଥ ପ୍ରତିପନ୍ନ ହୁଏ । ଏଥିଦ୍ୱାରା ଦଶରଥ ସର୍ବପ୍ରଥମେ କୌସଲ୍ୟାଙ୍କ ଉଦ୍ଦେଶ୍ୟରେ କେବଳ ପାୟସକୁ ସମାନ ଦୁଇ ଭାଗରେ ବିଭକ୍ତ କରିଥିବା ସୂଚିତ ହୁଏ; ତଥାଚ ପ୍ରଥମେ ଦଶରଥ ପାୟସ ପାତ୍ରରୁ ଯେଉଁ ଅର୍ଦ୍ଧ ଭାଗତକ ବିଭକ୍ତ ରଖିଲେ, ତାହା କୌସଲ୍ୟାଙ୍କ ସମ୍ବନ୍ଧୀୟ କେବଳ, ଏହି ଅର୍ଥ ମଧ୍ୟ ଜଣାଯାଏ ।

'ତଦା' ଅର୍ଥାତ୍ ବିଭାଗକରଣର ଅବ୍ୟବହିତ କାଳରେ ''ଅର୍ଦ୍ଧାଦର୍ଦ୍ଧମିତି' ଅଧକରୁ ପୁଣି ଅଧେ, ଏହି ଅର୍ଦ୍ଧତକ କେବଳ 'ଦଦୌ ଚାପୀତି' ଚ ଶବ୍ଦ ଏବଂ ଅପିଶବ୍ଦ, ଏହି ଅବ୍ୟୟଦ୍ୱୟର ଅର୍ଥପ୍ରାବଲ୍ୟରୁ ଦେଲେ ଏହି ଅର୍ଥ ଜଣାଯାଉଅଛି, ସୁତରାଂ କୌସଲ୍ୟାଙ୍କୁ ସେ ଅଧକରୁ ଅଧେ ଅର୍ଥାତ୍ ସମ ଚତୁର୍ଥାଂଶକୁ ଦେଲେ । ଏହା ହିଁ ଜଣାଯାଉଅଛି ।

ତା'ପରେ 'ଅର୍ଦ୍ଧାଦର୍ଦ୍ଧଂ' ସମଚତୁର୍ଥାଂଶକୁ ସୁମିତ୍ରାୟୈ ଦ୍ୱିତୀୟ ମହିଷୀ ସୁମିତ୍ରାଙ୍କୁ 'ଦଦୌ' ଦେଲେ । ''ଅବଶିଷ୍ଟାର୍ଦ୍ଧଂ'' ଏ ସ୍ଥଳରେ ଷଷ୍ଠୀ ତତ୍ପୁରୁଷ ସମାସ କରିବାକୁ ହେବ, କର୍ମଧାରୟ ନୁହେଁ । ଅବଶିଷ୍ଟ ଅର୍ଥାତ୍ ପୂର୍ବ ଅଧକରୁ ଯାହା ବଳକା ଅର୍ଦ୍ଧଭାଗ, ତାହାର ଅର୍ଦ୍ଧଭାଗ ଅର୍ଥାତ୍ ଚତୁର୍ଥାଂଶ (ଅବଶିଷ୍ଟସ୍ୟ ଅର୍ଦ୍ଧାଂଶସ୍ୟ ଅର୍ଦ୍ଧଂ) ''ପୁତ୍ରାର୍ଥକାରଣାତ୍'' ପୁତ୍ରପ୍ରୟୋଜନ ନିମନ୍ତେ ''କୈକେୟୈଚ'' ତୃତୀୟ ମହିଷୀ କେକୟ-ସୁତାଙ୍କୁ ''ଦଦୌ'' ଦେଲେ । ''ଅମୃତୋପମଂ'' ସର୍ବୋତ୍ତମରସଭାବରୁ ଅମୃତାଖ୍ୟ ପଦାର୍ଥସଦୃଶ ''ଅବଶିଷ୍ଟାର୍ଦ୍ଧଂ'' ଏ ସ୍ଥଳରେ କର୍ମଧାରୟ ସମାସ କରିବାକୁ ହେବ, ପୂର୍ବବତ୍ ଷଷ୍ଠୀତତ୍ପୁରୁଷ ସମାସ ନୁହେ, ଅବଶିଷ୍ଟ ଯେ ଅର୍ଦ୍ଧ ଅର୍ଥାତ୍ ଚତୁର୍ଥାଂଶ, 'ପୁନଃ' ପୁନରପି ''ସୁମିତ୍ରାୟୈ ଏବ'' ସୁମିତ୍ରାଙ୍କୁ କେବଳ ଦ୍ୱିତୀୟ ଭାର୍ଯ୍ୟାଙ୍କୁ କେବଳ 'ଅନୁଚିନ୍ତ୍ୟ'' ଅର୍ଥାତ୍ କୌସଲ୍ୟା ଓ କୈକେୟୀଙ୍କର ଅଭିପ୍ରାୟକୁ ତଥାଚ ''ଆତ୍ମାନଂ ଚତୁରୋ ଭାଗାନ୍ ତୁଲ୍ୟରୂପାନ୍, ମହାବଳାନ୍'' – ଇତ୍ୟାଦି ରୂପକ ପ୍ରାଜାପତ୍ୟ ପୁରୁଷଙ୍କ ବଚନକୁ ମଧ୍ୟ ସମ୍ୟକ୍‌ପ୍ରକାର ଆଲୋଚନା କରି ''ଦଦୌ'' ଦେଲେ ।

ଏହି ଯେ ସର୍ବଗ୍ରନ୍ଥ-ସମରସତାରେ ସାମ୍ପ୍ରଦାୟିକ ଅର୍ଥ ପ୍ରତିପାଦିତ ହେଲା, ଏହାକୁ ହିଁ ତତ୍ତ୍ୱାନୁସନ୍ଧିତ୍ସୁ ପଣ୍ଡିତ ପ୍ରବରମାନେ ବାଲ୍ମୀକିଙ୍କର ବାକ୍ୟରୁ ଉହନ କରିନେବେ । ଏସ୍ଥଳେ ଶ୍ରୀମାନ୍ ମହର୍ଷି ବାଲ୍ମୀକିଙ୍କର ହୃଦୟାଶୟ ମଧ୍ୟ ଏହା ହିଁ କେବଳ, ଅନ୍ୟପ୍ରକାର ନୁହେ । ସୁତରାଂ ଏହାର ଦୃଢ଼ୀକରଣାର୍ଥ ତଦୀୟ ବିସ୍ତୃତ ତାତ୍ପର୍ଯ୍ୟାର୍ଥକୁ ବିବୃତ କରୁଅଛୁଁ । ଅଭିଜ୍ଞ ପାଠକଗଣ ଖୁବ୍ ଅଭିନିବେଶ ପୂର୍ବକ ମନନ କରିନେବେ ।

ପ୍ରାଜାପତ୍ୟ ପୁରୁଷଙ୍କ ପ୍ରସାଦରୁ ଲବ୍ଧ ଦିବ୍ୟପାୟସାନ୍ନର ଭକ୍ଷଣ – କାଳାନୁକ୍ରମରେ କେବଳ ଶ୍ରୀରାମ, ଭରତ, ଲକ୍ଷ୍ମଣ ଓ ଶତ୍ରୁଘ୍ନଙ୍କର ଉତ୍ପତ୍ତି ଘଟିଅଛି । ଅନ୍ୟାନ୍ୟ ସମସ୍ତ

ରାମାୟଣଗ୍ରନ୍ଥମାନଙ୍କରେ ସୁଦ୍ଧା ଏକ ରୀତିରେ ରାମାଦି ଭ୍ରାତୃଚତୁଷ୍ଟୟଙ୍କର ଉତ୍ପତ୍ତି-ଘଟଣାଙ୍କରେ ଏହି କ୍ରମ ପ୍ରତିପାଦିତ ଅଛି । ସେହି ସେହି କ୍ରମର ପର୍ଯ୍ୟାଲୋଚନାରେ ମହିଷୀମାନଙ୍କର ପାୟସାନ୍ନ-ଭକ୍ଷଣ-କ୍ରମ ମଧ ଏତାଦୃଶ ବୋଲି ମନୀଷିପ୍ରବର ପଣ୍ଡିତମାନଙ୍କର ଊହନୀୟ ଅଟେ ।

ରାଜା ଦଶରଥ ପ୍ରଥମତଃ କୌଶଲ୍ୟାଙ୍କ ନିମନ୍ତେ ଉଦ୍ଦିଷ୍ଟ ବିଭକ୍ତ ପାୟସର ଅର୍ଦ୍ଧଭାଗକୁ ପୁଣେର ସମାନ ଦୁଇ ଭାଗ କରି ସେଥିରୁ ଅଧେକ କୌଶଲ୍ୟାଙ୍କୁ ପ୍ରଦାନ କଲେ । କୌଶଲ୍ୟା ଦେବୀ ତାହା ପ୍ରାପ୍ତିମାତ୍ରେ ଭକ୍ଷଣ କଲେ । ସେଥିରୁ ଅପର ଅର୍ଦ୍ଧଭାଗ ଯାହାକି ଅବଶିଷ୍ଟ ଥିଲା, ଅର୍ଥାତ୍ ସମଗ୍ରର ଚତୁର୍ଥାଂଶ, ତାହା ସୁମିତ୍ରାଙ୍କୁ ପ୍ରଦାନ କଲେ । ସୁମିତ୍ରା ଦେବୀ ପ୍ରାପ୍ତ ଅଂଶତକ ଗ୍ରହଣ କଲାରୁ ଅବଶିଷ୍ଟ (ସମଗ୍ରର) ଅର୍ଦ୍ଧଭାଗକୁ ଦଶରଥରାଜା କିପରି ବା ବିଭାଗ କରିବେ ? ଅଥବା ସେ ମହାତ୍ମା ଆପଣାର ସମ୍ପୂର୍ଣ୍ଣ-ପ୍ରେମାସ୍ପଦୀଭୂତା କେକୟରାଜସୁତାଙ୍କୁ ଅବଶିଷ୍ଟ ସମାନ (ସମଗ୍ରର) ଅର୍ଦ୍ଧଭାଗ ସବୁ ଦେଇପକାଇବେ ? କିମ୍ବା ତଦବଶିଷ୍ଟ ଅଂଶକୁ ପୁଣେର ଯଥାପ୍ରକାର ବିଭାଗ କରି ସମସ୍ତଙ୍କୁ ଅବା ଆଉଥରେ ଦେବେ ? ଏହାର ଜିଜ୍ଞାସାରେ ଆପଣା ହସ୍ତଗତ ପାୟସପାତ୍ରର ଚତୁର୍ଥାଂଶ ପାୟସକୁ ପ୍ରାପ୍ତିମାତ୍ରେ ଭକ୍ଷଣ ନ କରି ଅପେକ୍ଷାରେ ରହିଲେ । ତଦନନ୍ତର ଦଶରଥ କୈକେୟୀଙ୍କ ଉଦ୍ଦେଶ୍ୟରେ ଧୃତ ଅବଶିଷ୍ଟ (ସମଗ୍ରର) ଅର୍ଦ୍ଧଭାଗ ପାୟସକୁ ତାହାଙ୍କୁ ଦେଇ ପକାଉଥିବା ସମୟରେ ମନରେ ବିଚାର କଲେ ଯେ, ମଦୀୟ ଜ୍ୟେଷ୍ଠା ମହିଷୀଙ୍କ ବିଦ୍ୟମାନତାରେ କନିଷ୍ଠା ଭାର୍ଯ୍ୟାଙ୍କୁ ସମଧିକ ଅଂଶ ପ୍ରଦାନ କରିବା କଥଂଚିତ୍ ଉଚିତ ନୁହେଁ । ସେ ଏହି ବିଚାରରେ ଅବଶିଷ୍ଟ ଅର୍ଦ୍ଧଭାଗର ଅର୍ଦ୍ଧଭାଗ ଅର୍ଥାତ୍ (ସମଗ୍ରର) ଚତୁର୍ଥାଂଶ କୈକେୟୀଙ୍କୁ ପ୍ରଦାନ କଲେ । ସେ ପୁଣି ସେହିକ୍ଷଣି ତାହା ଭକ୍ଷଣ କରିଦେଲେ । ତତଃପର ରାଜା ଅବଶିଷ୍ଟ ଚତୁର୍ଥାଂଶ ପାୟସକୁ ପୁଣେର କୌଶଲ୍ୟାଦେବୀଙ୍କୁ ଦେବା ପାଇଁ ଉଦ୍ୟୁକ୍ତ ହେଲେ । ସୁହୃଦୟା ସୁମିତ୍ରା ପ୍ରତି କୃତ-ସୁଦୟା କୌଶଲ୍ୟାଦେବୀଙ୍କର ପୁନଃ ପାୟସ ଭକ୍ଷଣରେ ଇଚ୍ଛା ଥିଲେ ସୁଦ୍ଧା ସେ ତାହାକୁ ହୃଦୟରେ ନିଗୂଢ଼ ରଖି ଗୌରବର ଅନୁରୋଧରେ କହିଲେ କି, ହେ ମହାରାଜ ! ମୁଁ ଯାହା ଭକ୍ଷଣ କରିଅଛି, ସେତିକି ମୋର ଯଥେଷ୍ଟ; ଇତଃପୂର୍ବରୁ ଆପଣଙ୍କ ଦତ୍ତ ପରମାନ୍ନକୁ ଭକ୍ଷଣ ନ କରି ତୁଷ୍ଣୀଭାବରେ ନିରୀକ୍ଷମାଣା ସୁମିତ୍ରାଙ୍କୁ ଆପଣ ପୁଣେର ପ୍ରଦାନ କରନ୍ତୁ । କୈକେୟୀ ମଧ ପ୍ରୀତିଗୌରବରୁ କୌଶଲ୍ୟାଦେବୀଙ୍କ କଥାକୁ ଅନୁମୋଦନ କଲେ । ତଥାପି ସୁଦ୍ଧା ଦଶରଥ ଦ୍ୱିତୀୟ ଭାର୍ଯ୍ୟାଙ୍କୁ ଅଧିକାଂଶ ଦେବା ଉଚିତ ନୁହେଁ, ନ୍ୟାଯ୍ୟ ନୁହେଁ, ଏହି ଭାବନାରେ କିଞ୍ଚିତ୍ କାଳମାତ୍ର ସନ୍ଦିହାନତାରେ ବିଚାରସ୍ଥ ହେଲେ । ସେତିକିବେଳେ ତଦୀୟ ସ୍ମୃତିପଟରେ ହଠାତ୍ ପ୍ରତିଫଳିତ ହେଲା ଯେ, "ଲକ୍ଷ୍ମଣ ଶ୍ଚୈବ ଶତ୍ରୁଘ୍ନଃ ସୁମିତ୍ରାୟାଂ ଜନିଷ୍ୟତଃ ।"

ବାୟୁପୁରାଣର ଏହି ଭବିଷ୍ୟମାଣ ବିଧାନକୁ ତଥାଚ ପ୍ରାଜାପତ୍ୟ ପୁରୁଷଙ୍କର ବଚନକୁ ସେ ମହାଶୟ ସମ୍ୟକ୍ ବିଚାର କରି ସର୍ବାବଶିଷ୍ଟ ଚତୁର୍ଥାଂଶ ପାୟସକୁ ପୁନରପି ସୁମିତ୍ରାଙ୍କୁ ପ୍ରଦାନ କଲେ । ଏହା ହି ସୁନିଶ୍ଚିତ କଥା । ଏହା ହି ବିଦ୍ୱଦନୁମୋଦିତ ସ୍ଥିର ସିଦ୍ଧାନ୍ତ । ଏହାଛଡ଼ା ସର୍ବ-ସମରସତାମୂଳକ ସମାଧାନର ଅନ୍ୟ ଦିଗ ନାହିଁ । ମହର୍ଷି ବାଲ୍ମୀକିଙ୍କର ଏହା ହିଁ ହୃଦୟାଶୟ ବୋଲି ଅଗସ୍ତ୍ୟ, ଦୁର୍ବାସା, ବଶିଷ୍ଠ, ବିଶ୍ୱାମିତ୍ର ପ୍ରମୁଖ ଋଷିମାନେ ତପଃପ୍ରଭାବରୁ ଅବଗତ ହୋଇ ନିଜ ନିଜ ରାମାୟଣ ଗ୍ରନ୍ଥମାନଙ୍କରେ ଏହି ଅର୍ଥକୁ କେବଳ ସୁସ୍ପଷ୍ଟତଃ ପ୍ରକାଶିତ ରଖିଅଛନ୍ତି । ଏହା ହି ସର୍ବଥା ସୁସମଞ୍ଜସ ଅଟେ । ସୁତରାଂ ଭଗବାନ୍ ଶ୍ରୀରାମଚନ୍ଦ୍ରଙ୍କର ଏପରି ସମଚତୁର୍ଥଭାଗ-ବିଶିଷ୍ଟତ୍ୱରେ ଲକ୍ଷ୍ମଣାଦିଙ୍କ ମଧ୍ୟରେ ସର୍ବୋତ୍କୃଷ୍ଟତ୍ୱର ଭଙ୍ଗ ମଧ୍ୟ ଆଶଙ୍କନୀୟ ନୁହେ । ତାହା ହେଲେ ଇତର ଅବତାରମାନଙ୍କ ଅପେକ୍ଷା ଏହି ଅବତାରର ପୂର୍ଣ୍ଣତ୍ୱ ଭଙ୍ଗ-ପ୍ରସଙ୍ଗ ମଧ୍ୟ ଘଟିପାରେ । ''ରାମରୂପମହଂ ଯାମି ''ଚତୁର୍ଦ୍ଧାତ୍ମାନମେବାହଂ'' ଇତ୍ୟାଦି-ରୂପକ ଇତଃପୂର୍ବେ ଉଦାହୃତ ବଚନମାନ ଭଗବାନ ଶ୍ରୀମନ୍ନାରାୟଣ ସ୍ୱୟଂ ଅସ୍ମଦ୍ ଶବ୍ଦର ପୁରସ୍କୃତତାରେ ଆଜ୍ଞା କରିଥିବାରୁ ଅଖିଳ ଅବୟବମାନଙ୍କର ନିରାମୟ ବିଦ୍ୟମାନତାରେ ସୁଦ୍ଧା ମସ୍ତକର ଯେପରି ଉତ୍ତମାଙ୍ଗତ୍ୱ ଅଭିହିତ ହୁଏ, ସେହିପରି ଶ୍ରୀରାମଚନ୍ଦ୍ରଙ୍କର ସମସ୍ତ ଅଂଶମାନଙ୍କରେ ସର୍ବପ୍ରାଧାନ୍ୟ ସମ୍ୟକ୍ ସୂଚିତ ହେଉଅଛି । ଅପିଚ ଲକ୍ଷ୍ମଣ, ଭରତ, ଶତ୍ରୁଘ୍ନ ଏବଂ ସୁଗ୍ରୀବ ପ୍ରମୁଖ ନିଖିଳ ବାନରାଦିମାନଙ୍କର ଜନନ, ଶ୍ରୀରାମଚନ୍ଦ୍ରଙ୍କର ସାହାଯ୍ୟାର୍ଥକ କେବଳ, ଏହା ଅଖିଳ ଗ୍ରନ୍ଥମାନଙ୍କରେ ବର୍ଣ୍ଣିତ ଥିବାରୁ ତଥାଚ ମାତ୍ସ୍ୟ, କୌର୍ମ, ବାରାହାଦି ଅବତାରମାନଙ୍କରେ ଏହି ରୀତିର କ୍ରମରେ ଭଗବାନ୍ ନାରାୟଣଙ୍କର ସଗଣାବତାରର ବୈଚିତ୍ର୍ୟ ଅସମ୍ଭବ ଥିବାରୁ ଲକ୍ଷ୍ମଣାଦିମାନଙ୍କ ମଧ୍ୟରେ ଶ୍ରୀରାମଚନ୍ଦ୍ରଙ୍କର ସର୍ବପ୍ରାଧାନ୍ୟ ସର୍ବସମ୍ମତିରେ ପ୍ରଦ୍ୟୋତିତ ହେଉଅଛି । ଏଥିପ୍ରତି ଆଉ ବୃଥା ଆଶଙ୍କାର ଅବସର ନାହିଁ ।

ଅତଃପର ବ୍ରହ୍ମାଙ୍କ ଆଦେଶରେ ଦେବତାମାନେ ଅବତରିଷ୍ୟମାଣ (ସାଙ୍ଗୋପାଙ୍ଗ) ଶ୍ରୀରାମଚନ୍ଦ୍ରଙ୍କର ସହାୟତା ନିମନ୍ତେ ଋକ୍ଷୀ, ବାନରୀ, ଅପ୍ସରା ପ୍ରଭୃତିଙ୍କ ଗର୍ଭରୁ ନିଜ ନିଜ ଔରସରେ ମହାବଳ-ପରାକ୍ରାନ୍ତ ସନ୍ତାନ-ସନ୍ତତି-ଉତ୍ପାଦନାର୍ଥ ଆବିଷ୍ଟ ହୋଇଥିବା ସନ୍ଦର୍ଭରେ କେଉଁ କେଉଁ ଦେବତାମାନଙ୍କର ଔରସରେ କେଉଁ କେଉଁ ପ୍ରଧାନ ପ୍ରଧାନ ବାନରାଦିମାନେ ଉତ୍ପନ୍ନ ହୋଇଥିଲେ, ଏସବୁର ବିବରଣ ମୂଳଗ୍ରନ୍ଥର ସପ୍ତଦଶ ସର୍ଗରେ ଲେଖାଅଛି । ବଳରାମଦାସେ ଏ ସ୍ଥଳରେ ଏସବୁର ବିବରଣ ଯଥାକ୍ରମେ ଦେଇନାହାନ୍ତି ସତ୍ୟ, ପରଂତୁ ଏହି ସନ୍ଦର୍ଭର ଅଂଶମାନ ଅନ୍ୟାନ୍ୟ ସ୍ଥଳମାନଙ୍କରେ ପ୍ରସ୍ତାବ ଅନୁକ୍ରମରେ ପ୍ରକାଶିତ ରଖିଅଛନ୍ତି ।

ଅଷ୍ଟମ ସର୍ଗରେ ଶ୍ରୀରାମଚନ୍ଦ୍ର ପ୍ରଭୃତିଙ୍କର ଉତ୍ପତ୍ତି ଏବଂ ସେମାନଙ୍କର କ୍ରାମିକ ପରିବୃଦ୍ଧିର କଥା ଲେଖାଅଛି । ବଳରାମଦାସେ ମଧ୍ୟ ତାହା ହିଁ ଲେଖିଅଛନ୍ତି । ସୁତରାଂ ଏ ମହାଶୟ ଏ ସ୍ଥଳରେ ବିଶେଷତଃ ଦେଶାଚାର ଓ କୁଳାଚାରର ପାରମ୍ପରିକ ପ୍ରଥାର ଅନୁସରଣରେ ଅପିଚ ଆପଣାର ସୁମତିର ଅନୁଭୂତି ଅନୁସାରେ ଗର୍ଭବତୀ ନୃପଯୁବତୀମାନଙ୍କର ଗର୍ଭଦୋହଦକ୍ରମମାନ ତଥାଚ ସୂତିକାଗାର-ଶାୟୀ ସନ୍ତାନ-ମାନଙ୍କର ଶାନ୍ତିପୌଷ୍ଟିକ କ୍ରିୟାମାନ, (୧) କୌଶଲ୍ୟାଦିମାନଙ୍କର ଗର୍ଭଧାରଣାବଧି ଚତୁର୍ଥାଦି ମାସର ମାସିକ କୃତ୍ୟରେ ବିଶେଷତଃ ଅଷ୍ଟମମାସର ସୀମନ୍ତୋନ୍ନୟନ-ବନ୍ଧାପନାବିଧି(୨) ଏବଂ ରାମାଦିଙ୍କର ସାମୟିକ କର୍ଣ୍ଣବେଧ, ବିଦ୍ୟାରମ୍ଭ ଓ ଉପନୟନାଦି କ୍ରିୟାମାନ ସମ୍ୟକ୍‌ପ୍ରକାର ବିବୃତ କରିଅଛନ୍ତି ।

କିନ୍ତୁ ପାଠକ ଛାପା ପୁସ୍ତକରେ ଦେଖିନେବେ (୩) ଅନେକତ୍ର ଛାପାକାର ମହାଶୟ ଅବିଚାରତଃ ପାଠର ଯେ ଅନ୍ୟଥା ପରିଣତି କରିନେଇଅଛନ୍ତି, ତଦ୍‌ଦ୍ୱାରା ଯଥାର୍ଥ ଅର୍ଥ ଉପଲବ୍ଧ ହୋଇପାରୁ ନାହିଁ । ତାପରେ ତାଳପତ୍ର ପୁସ୍ତକମାନଙ୍କରେ ମଧ୍ୟ ଅନେକତ୍ର ଅନଭିଜ୍ଞ ଓ ଅଜ୍ଞ ଅନୁଲେଖକମାନଙ୍କର ମତିଦୁର୍ବିଧତାବଶରୁ ପାଠମାନ ବିକୃତ ଓ ଅପାର୍ଥ ହୋଇଯାଇଅଛି । ଏଭଳି ଉଭୟ ପାଠମାନ ମିଳାଇ ନେଇ ଯଥାର୍ଥତା ବାହାର କଲାବେଳକୁ ପାଠକଙ୍କର ମସ୍ତିଷ୍କ ବିଗଳିତ ହୋଇପଡ଼ିବା ଅସମ୍ଭବ ନୁହେଁ । କିନ୍ତୁ ପାଠକମହାଶୟମାନେ ବରାବର ମନେ ରଖିବେ ଯେ, ଏଭଳି ଦୁଃସ୍ଥାନ-ସ୍ଥିତି-ଜନିତ କଳଙ୍କର ପାଇଁ ଶ୍ରୀମାନ୍ ମତିମାନ ବଳରାମଦାସେ ଦାୟୀ ନୁହନ୍ତି ।

ଅତଃପର ଶ୍ରୀରାମଚନ୍ଦ୍ର ବୀର ରାଘବ ନାମରେ ଅଭିହିତ । ଏହିଠାରୁ ରାମାୟଣ ମହାକାବ୍ୟରେ ପ୍ରଧାନତଃ ବୀରରସର ଆବିର୍ଭାବ । ମହାପ୍ରତାପ ଓ ଅସାଧାରଣ-ମହିମାଶାଳୀ ବିଶ୍ୱାମିତ୍ର ରାମଙ୍କୁ ଅନନ୍ୟସାଧ୍ୟ ବୀରକାର୍ଯ୍ୟର ସାଧନାର୍ଥ ନିମନ୍ତ୍ରଣ କରୁଅଛନ୍ତି । ବିଶ୍ୱାମିତ୍ର ଆସି ଦଶରଥଙ୍କୁ କହିଲେ କି, ଦୁଷ୍ଟାତ୍ମା ରାବଣର ପ୍ରୋତ୍ସାହରେ

(୧) ଏଥୁ ଅନନ୍ତରେ ଶୁଣ ଗଲା ଦିନଚାରି । ପାଞ୍ଚଦିନ ମଉଛାଏ ଜଗନ୍ତି ପାହାରି । ୬୬ଷ ପୃ ।
ପୁତ୍ରଜନ୍ମର ପଞ୍ଚମଦିବସରେ ତଦୀୟ ମାତୃକ ସୂତିକାଗାରକୁ ଜଗିରହିବା ଦେଶାଚାରର କ୍ରମ ।

(୨) (ଚତୁର୍ଥେମାସି ପୁଂସବନଂ) ଚତୁର୍ଥମାସର ପୁଂସବନ କ୍ରିୟାପରେ ଅଷ୍ଟମାସରେ (କେଉଁଠି ଦେଶାଚାରମତେ ଷଷ୍ଠମାସରେ) ସୀମନ୍ତୋନ୍ନୟନ କ୍ରିୟା କରାଯାଏ । ଯଥା

ମାସେଷେ ପ୍ରବଳେ ଶୁଭେକ୍ଷିତ-ବିଧୌ ମାସେଽଥ ଷଷ୍ଠେଽଷ୍ଟମେ । ମୈତ୍ରେ ପୁଂସବନୋଦିତର୍କ୍ଷସହିତେ ରିକ୍ତା ବିହୀନେ ତିଥୌ । ସୀମନ୍ତୋନ୍ନୟନଂ ମୃଗାଙ୍କରହିତେ ଲଗ୍ନେ ନରାଂଶୋଦୟେ । ଯୋଜ୍ୟଂ ପୁଂସବନୋଦିତଂ ଯଦପରଂ ତତ୍ସର୍ବମତ୍ରାପି ଚ । ଇତି ଶ୍ରୀନିବାସକୃତ-ଦୀପିକାୟାଂ ।

(୩) ୬୦ ପୃଷ୍ଠାଠାରୁ ୬୬ ପୃଷ୍ଠାପର୍ଯ୍ୟନ୍ତ ଦେଖନ୍ତୁ ଅନେକତ୍ର ପାଠ ବିକୃତ ହୋଇପଡ଼ିଅଛି ।

ମାରୀଚ-ସୁବାହୁ ପ୍ରଭୃତି ଦୁର୍ଦ୍ଦାନ୍ତ ରାକ୍ଷସମାନେ ମଦୀୟ ଯଜ୍ଞର ବିଘାତ କରୁଅଛନ୍ତି, ଆପଣ ନିଜ ପୁତ୍ର ବୀର ରାଘବ ରାମଙ୍କୁ ମୋତେ କେତେକ ଦିନ ପାଇଁ ପ୍ରଦାନ କରନ୍ତୁ; ସେ ଯାଇ ଦୁଷ୍ଟ ଅଶିଷ୍ଟ ଦନୁଜ-ଗରିଷ୍ଟଙ୍କୁ ବିନଷ୍ଟ କରି ମଦୀୟ ସ୍ୱେଷ୍ଟ ଇଷ୍ଟିରକ୍ଷାପୂର୍ବକ ପୁଷ୍ଟି ସାଧନ କରିବେ । ଦଶରଥ ପ୍ରଥମେ ବିଶ୍ୱାମିତ୍ରଙ୍କ ପ୍ରାର୍ଥନାରେ ସ୍ୱୀକାର କରି ପରେ ରାମଙ୍କୁ ପଠାଇବାପାଇଁ ଅନିଚ୍ଛା ପ୍ରକାଶ କଲାରୁ ଋଷି କ୍ରୁଦ୍ଧ ହୋଇଗଲେ । ତେତେବେଳେ (ବିଶିଷ୍ଟ) ବଶିଷ୍ଠ ଦଶରଥଙ୍କୁ ବିଶ୍ୱାମିତ୍ରଙ୍କ ମହିମା ବୁଝାଇ ଦେଲାରୁ ରାଜା ରାମଙ୍କୁ ଲକ୍ଷ୍ମଣଙ୍କ ସହ ଯିବାପାଇଁ ଆଦେଶ ଦେଲେ ।

ବଳରାମଦାସେ ମଧ ବୀର ରାଘବଙ୍କର ଏହି ବୀରତ୍ୱ-ଦ୍ୟୋତକ ପ୍ରସ୍ଥାନର ସନ୍ଦର୍ଭ-କ୍ରମକୁ ପ୍ରାୟଶଃ ମୂଳାନୁମତ ଲେଖିଅଛନ୍ତି । ଏଥିସଙ୍ଗେ ଦାସମହାଶୟଙ୍କର ଯାହା ଯାହା କି ଆନୁଷଙ୍ଗିକ କଥାମାନ ଲେଖାଅଛି, ତାହା ମଧ ଠିକ୍ ମୂଳାନୁଗତ ନ ହେଲେ ସୁଦ୍ଧା ଅସଙ୍ଗତ ନୁହେଁ । ଦାସେ ବିଶ୍ୱାମିତ୍ରଙ୍କ ସହ ରାମଙ୍କ ପ୍ରସ୍ଥାନ ପରେ ଆଦିକାଣ୍ଡର ତୃତୀୟ ଭଣତିପଦ୍ୟ ଦେଇଅଛନ୍ତି (୧) ।

ସାନୁଜ ରାମଚନ୍ଦ୍ର ବିଶ୍ୱାମିତ୍ରଙ୍କ ସହିତ ତଦୀୟ ଆଶ୍ରମକୁ ପ୍ରସ୍ଥାନ କଲା ସମୟେ ମଧମାର୍ଗରେ ଯେ ଯେ ଘଟନାସବୁ ଘଟିଥିଲା, ସେସବୁ ଦାସଙ୍କ ରାମାୟଣରେ ଯଥାସ୍ଥାନ-ସଂନିବିଷ୍ଟ ନୁହେଁ କିମ୍ୱା ଅବିକଳ ମୂଳାନୁମତ ନୁହେଁ । ମୂଳଗ୍ରନ୍ଥରେ ଦ୍ୱାବିଂଶ ସର୍ଗଠାରୁ ଊନତ୍ରିଂଶସର୍ଗାନ୍ତ ପର୍ଯ୍ୟନ୍ତ ଏ କଥାମାନ ଲେଖାଅଛି । ବିଶ୍ୱମିତ୍ର ଅଯୋଧ୍ୟାରୁ ଅର୍ଦ୍ଧଯୋଜନ ମାତ୍ର ଯାଇ ସାନୁଜ ରାମଙ୍କୁ ବଳା ଓ ଅତିବଳା ନାମକ ବିଦ୍ୟା ପ୍ରଦାନ କରିଥିଲେ ।(୨) ଏମାନେ ସିଦ୍ଧବନ ଯାତ୍ରାର ପ୍ରଥମ ରାତ୍ରିକୁ ଏ ସ୍ଥଳରେ ଯାପିତ କରିଥିଲେ । (୩) ତାର ପର ଦିବସରେ ପୂର୍ବେ ଅମନ୍ଦଦର୍ପ କନ୍ଦର୍ପ ଯେଉଁଠି ହରାଗ୍ନିନେତ୍ରରେ ଦଗ୍ଧ ହୋଇଥିଲେ, ସେହି କାମାଶ୍ରମ-ନାମକ ବନରେ ଯାଇ ରହିଲେ । ତତ୍ର ରାମଙ୍କ ଜିଜ୍ଞାସାରେ ବିଶ୍ୱାମିତ୍ର ସେହି ଆଶ୍ରମର ପୁରାବୃତ୍ତ କହି ସେହି ରଜନୀକୁ ତତ୍ର ଅତିବାହିତ କରିଅଛନ୍ତି । (୪) ତାର ପରଦିନ ପ୍ରାତଃକାଳରୁ ସରଯୂ ପାରିହେବାବେଳେ ବିଶ୍ୱାମିତ୍ର ଶ୍ରୀରାମଙ୍କୁ ମାନସଜନିତା ସରଯୂ ନଦୀର ଉତ୍ପତ୍ତି ପ୍ରଭୃତିର କେତେକ କଥା କହିଅଛନ୍ତି; ବୃତ୍ର-ବଧ-ପାପରେ ଲିପ୍ତ ଇନ୍ଦ୍ରଙ୍କର ଦେହସ୍ଥ ମଳ-ସଂଯୋଗରୁ ଅତ୍ରତ୍ୟ ମଳଦ ଆଉ କରୂଷ ନାମକ

(୧) ପାତ୍ରମନ୍ତ୍ରି-ସହିତରେ ନବରେ ପ୍ରବେଶ । ଶ୍ରୀଜଗନ୍ନାଥ-ଶରଣ ବଳରାମଦାସ । ୭୮ ପୃ

(୨) ଅଧ୍ୟାର୍ଦ୍ଧଯୋଜନଂ ଗତ୍ୱା ସରଯ୍ୱା ଦକ୍ଷିଣେ ତଟେ । × × ×
ମନ୍ତ୍ର ଗ୍ରାମଂ ଗୃହାଣ ତ୍ୱଂ ବଳାମତିବଳାଂ ତଥା, ଇତ୍ୟାଦି ।୨୨ସର୍ଗ ।

(୩) ଉଷୁସ୍ତାଂ ରଜନୀଂ ତୀରେ ସରଯ୍ୱାଃ ସୁସୁଖଂ ତ୍ରୟଃ ୨୨ସ, ୨୨ ଶ୍ଳୋକ ।

(୪) ନ୍ୟବସଦ୍ ସସୁଖଂ ତତ୍ର କାମାଃଶ୍ରମପଦେ ତଥା । ୨୩ସ, ୨୨ ଶ୍ଳୋକ ।

ଦେଶଦ୍ୱୟର ଉତ୍ପତ୍ତି ଏବଂ ତତ୍ର ବାସ୍ତବ୍ୟ ଜନ-ନିବହପ୍ରତି ଭୟଶୁଙ୍ଗାଟିକା ପ୍ରାଣନାଟିକା-ହାରିଣୀ ଯକ୍ଷିଣୀ ତାଟକା ଆଉ ତାହାର ପୁତ୍ର ମାରୀଚର ପ୍ରଦତ୍ତ ଅସହ୍ୟ ବାଧାର କଥା ମଧ୍ୟ କହିଅଛନ୍ତି ।(୧) ତା'ପରେ ପୁଣି ଋଷି ରାମଙ୍କୁ କହି ଅଛନ୍ତି କି, ସୁକେତୁ ଯକ୍ଷଙ୍କର ଔରସରେ ଯକ୍ଷିଣୀ ତାଟକା-ଗର୍ଭରୁ ମାରୀଚ ଉତ୍ପନ୍ନ ହୋଇ ଅଗସ୍ତି ମହର୍ଷିଙ୍କର ଶାପରୁ ମାତାମହୀୟ ରାକ୍ଷସ-ପ୍ରକୃତି ପ୍ରାପ୍ତ ହେଲା । ବିଶ୍ୱାମିତ୍ର ରାମଙ୍କ ସହ ଆଳାପ କରୁଅଛନ୍ତି, ଇତ୍ୟବସରରେ ତାଟକା ଆସି ଉପଗତ ହେଲା । ସେ ପୁଣି ବହୁମାୟିକ, ସାମ୍ପରାୟିକ ପ୍ରଭାବ ଦେଖାଇଲା ପରେ ବୀର ରାଘବଙ୍କ କର୍ତ୍ତୃକ ନିହତ ହୋଇଅଛି । ସାନୁଜ ରାମଚନ୍ଦ୍ର ପ୍ରୟାଣର ତୃତୀୟ ରାତ୍ରିକୁ ଏହି ତାଟକାଟବୀରେ ଯାପିତ କରିଥିଲେ । (୨) ଏ ସ୍ଥଳରେ ବିଶ୍ୱାମିତ୍ର ଶ୍ରୀରାମଚନ୍ଦ୍ରଙ୍କୁ ତଥାଚ ଶ୍ରୀରାମ ତଦାଦେଶରେ ଲକ୍ଷ୍ମଣଙ୍କୁ ବହୁବିଧ ସମସ୍ତ ଅସ୍ତ୍ରଶସ୍ତ୍ରମାନ ପ୍ରଦାନ କରିଅଛନ୍ତି ।

ଗୃହୀତାସ୍ତ୍ର ରାମଚନ୍ଦ୍ର ତାଟକାବନରୁ ଯାଉଁ ଯାଉଁ ବାଟରେ ପ୍ରାର୍ଥନା କଲାରୁ ବିଶ୍ୱାମିତ୍ର ତାହାଙ୍କୁ ଯାବତୀୟ ଅସ୍ତ୍ରମାନଙ୍କର ସଂହାରକ୍ରମ ଅପିଚ ତଦାନୁଷଙ୍ଗିକ ଅନ୍ୟାନ୍ୟ ବିଷୟମାନ କହିଅଛନ୍ତି; ତଥାଚ ରାମଚନ୍ଦ୍ର ଓ ଲକ୍ଷ୍ମଣଙ୍କୁ ସେ ପୁଣି ଜୃମ୍ଭକାସ୍ତ୍ର ମଧ୍ୟ ପ୍ରଦାନ କରିଅଛନ୍ତି । ବାଟରେ ଯାଉଁ ଯାଉଁ ରାମ ଜିଜ୍ଞାସା କଲାରୁ ବିଶ୍ୱାମିତ୍ର ପରିଶେଷରେ କ୍ରମଶଃ କହିଅଛନ୍ତି, କି ବିଷ୍ଣୁ ବାମନାବତାରରେ ସିଦ୍ଧାଶ୍ରମରେ ତପସ୍ୟା କରିଥିଲେ, ସେ ପୁଣି ବଳିଙ୍କଠାରୁ ପ୍ରତିଗୃହୀତ ଲୋକାଧିପତ୍ୟ ଇନ୍ଦ୍ରଙ୍କୁ ପ୍ରଦାନ କରିଥିଲେ, ସେ ସ୍ୱୟଂ ପୁତ୍ର ରୂପେ ଜନ୍ମିବା ପାଇଁ କଶ୍ୟପଙ୍କୁ ବର ପ୍ରଦାନ କରିଥିଲେ, ଇତ୍ୟାଦି । ରାମାଦିମାନେ ଇତ୍ୟାକାରକ ପୌରାଣିକ କଥାଳାପନରେ ଚତୁର୍ଥ ଦିବସରେ ବିଶ୍ୱାମିତ୍ରଙ୍କ ସିଦ୍ଧାଶ୍ରମରେ ପହୁଞ୍ଚିଥିଲେ; ଏହା ହିଁ ମୂଳଗ୍ରନ୍ଥରୁ ଜଣାଯାଉଅଛି ।

ବଳରାମ ଦାସେ କହନ୍ତି କି, ବିଶ୍ୱାମିତ୍ର ରାମ ଲକ୍ଷ୍ମଣଙ୍କ ସହ ସରଯୂ ପାରହେଲା ପରେ ଗଙ୍ଗାତୀରକୁ ଗଲେ । ମୂଳଗ୍ରନ୍ଥରେ ପ୍ରତିପାଦିତ ସରଯୂତୀରରେ ଗଦିତ କଥାରେ ବଳରାମ ଦାସେ ବଳା-ଅତିବଳା-ବିଦ୍ୟାର ପ୍ରଦାନକୁ ସ୍ପଷ୍ଟତଃ ଅଭିହିତ କରିନାହାନ୍ତି ସତ୍ୟ କିନ୍ତୁ ସେହି ସ୍ଥଳରେ ବିଶ୍ୱାମିତ୍ର ଶ୍ରୀରାମଙ୍କୁ ମନ୍ତ୍ରଦୀକ୍ଷା ଦେଇଥିବା କହିଅଛନ୍ତି । ଏଥିରୁ ବଳା-ଅତିବଳା-ବିଦ୍ୟା-ଦାନର କଥା ସୂଚିତ ହେଉଅଛି । ଦାସେ ପୁଣି ଗଙ୍ଗାତୀରସ୍ଥ ବନକୁ କୌଶିକାଶ୍ରମ ବୋଲି କହିଅଛନ୍ତି ।କୌଶିକାଶ୍ରମ ମୂଳଗ୍ରନ୍ଥମତରେ ଏହି ସ୍ଥାନରେ

(୧) ମଲଦାଶ୍ଚ କରୂଷାଶ୍ଚ ମମାଙ୍ଗମଳଧାରିଣୌ । ଇତ୍ୟାଦି ୨୪ ସର୍ଗ ।

(୨) ନିହତ୍ୟ ତାଂ ଯକ୍ଷସୁତାଂ ସରାମଃ ପ୍ରଶସ୍ୟମାନଃ ସୁରସିଦ୍ଧସଂଘୈଃ ।
ଉବାସ ତସ୍ମିନ୍ ମୁନିନା ସହୈବ ପ୍ରଭାତବେଳାଂ ପ୍ରତିବୋଧମାନଃ ।
ବା, କା, ୨୬ସ । ୩୭ ଶ୍ଳୋ,

ଅବସ୍ଥିତ ନୁହେଁ । ଏହାପରେ ରାମାଦିମାନେ ଅଗସ୍ତ୍ୟାଶ୍ରମକୁ ଯାଇଥିବା ଏଥିରେ ଲେଖାଅଛି । ଏସ୍ଥଳେ ଆହୁରି ଲେଖାଅଛି କି, ଗଙ୍ଗାନଦୀର ଉତ୍ତରଣ ସମୟରେ ରାମଙ୍କର ଜିଜ୍ଞାସା ହେଲାରୁ ବିଶ୍ୱାମିତ୍ର ସରଯୂନଦୀର ଉତ୍ପତ୍ତିର କଥା କହିଲେ । ପରନ୍ତୁ ବାସ୍ତବତଃ ରାମାଦିଙ୍କର ଗଙ୍ଗାନଦୀ ଉତ୍ତରଣ ଏ ସ୍ଥଳେ ନୁହେଁତ । ସେମାନେ ସିଦ୍ଧାଶ୍ରମରୁ ମିଥିଳା ନଗରୀକୁ ପ୍ରସ୍ଥାନ କଲାବେଳେ ଗଙ୍ଗାପାର ହୋଇଥିଲେ । ପାଠକ ମହାଶୟ ! ପରେ ଦେଖିବେ, ଦାସ ମହାଶୟ ଉତ୍ତରତ୍ର ଯଥାସ୍ଥାନରେ ଗଙ୍ଗାପାର-କଥା ଲେଖିଅଛନ୍ତି । ଏହି ଯେ ଅଯଥା ସ୍ଥାନର ଅଯଥା ଲେଖା ଦାସଙ୍କର ନୁହେଁ, ଏହା ଅନୁଲେଖକଙ୍କର ବିଲୋମ ଲେଖା । ଅତ୍ରତ୍ୟ ସରଯୂ-ଉତ୍ପତ୍ତିର କଥାନକ ମଧ ଠିକ୍ ମୂଳାନୁଗତ ନୁହେଁ । ଏ ସମ୍ବନ୍ଧରେ ମୂଳଗ୍ରନ୍ଥରେ ଏତିକି ମାତ୍ର ଗଙ୍ଗା ସମ୍ବନ୍ଧୀୟ କଥା ଲେଖାଅଛି ଯେ, ରାମ ସରଯୂ ମଧ୍ୟରୁ ଉତ୍‌ଥିତ ତୁମୂଳ ଶବ୍ଦ ଶୁଣି ପ୍ରଶ୍ନ କରିବାରୁ ବିଶ୍ୱାମିତ୍ର ବୁଝାଇଦେଇ ଅଛନ୍ତି କି, ଗଙ୍ଗାଙ୍କ ସହିତ ସରଯୂଙ୍କର ସଙ୍ଘର୍ଷଣବଶରୁ ଏହି ଶବ୍ଦ ଉଠୁଅଛି । ଏ ସ୍ଥଳରେ ପୁଣି ଅଗସ୍ତ୍ୟାଶ୍ରମରେ* ଶ୍ରୀରାମାଦିଙ୍କ ସମାଳାପନରେ ଦେବେନ୍ଦ୍ର ଶୁଚିଦୈତ-ନିଧନରୁ ବିଶ୍ୱାସଘାତକ ହୋଇଥିବାର ସାଙ୍ଗୋପାଙ୍ଗ କଥାମାନ, ଅଗସ୍ତିଙ୍କର ବୈବାହିକ ଚରିତ, ଆତାପି ବାତାପିର କଥାମାନ ଏବଂ ବିନ୍ଧ୍ୟଗିରିସଂଯନ ପ୍ରଭୃତିର କଥାମାନ ଲେଖାଅଛି । (୧) ଏହି ଯେ ବିଲୋମାନୁଲୋମ ଅଯଥାଯଥ ଲେଖା ଶ୍ରୀମାନ୍ ଜଗନ୍ନାଥ ଦାସଙ୍କର ସମକକ୍ଷ ସୁଦକ୍ଷ ବଳରାମ ଦାସଙ୍କର ଅଟେ, ଦୁର୍ମତି ଅନୁଲେଖକଙ୍କର ନୁହେଁ, ଆମ୍ଭେ ବିଶ୍ୱାସ କରି ନ ପାରୁଁ, ଏଥିପାଇଁ ବଳରାମ ଦାସେ ଦୋଷାନ୍ୱିତ ହୋଇ ନ ପାରନ୍ତି, କାରଣ ତାହାଙ୍କ ଲିଖିତ ପଂକ୍ତିମାନ ବିକୃତ ଏବଂ ଅଯଥାସ୍ଥାନସ୍ଥିତ ତଥାଚ କର୍ତ୍ତିତ ଓ ପରିବର୍ତ୍ତିତ ହୋଇ ଯାଇଅଛି । ଏଥିରେ ଅନୁଲେଖକମାନଙ୍କର ଅତ୍ୟାଚାର ଯେ ବହୁସ୍ଥଳେ ରହିଅଛି, ଏହା ହିଁ ସନ୍ଦେହ । ଏହାର ଛାପା ଏବଂ ତାଳପତ୍ର ପୁସ୍ତକମାନ ଧରି ବିଚାର କରିଅଛୁଁ, ସମ୍ୟକ୍ ପରିଶୀଳନ କରିଅଛୁଁ, ଅନେକତ୍ର ପାଠାବଳୀ ପରସ୍ପର ଅସଦୃଶ ବିସଦୃଶ ରହିଅଛି । ଏହାହିଁ ଅନୁଲେଖକ-ଅତ୍ୟାଚାରର ସୁସ୍ପଷ୍ଟ ପ୍ରମାଣ ।

ଏହି ରାମାୟଣରେ ତାଟକାଜନ୍ମବୃତ୍ତାନ୍ତ ଯାଦୃଶ କ୍ରମରେ ସୂଚିତ ଅଛି, ତାହା ଠିକ୍ ମୂଳାନୁସାରୀ ନୁହେଁ । (୨) ବିଶ୍ୱାମିତ୍ର ଦେବତାମାନଙ୍କ ଆଦେଶରୁ ଶ୍ରୀରାମଚନ୍ଦ୍ରଙ୍କୁ ଅଗସ୍ତ୍ୟାଶ୍ରମରେ ଜୟାବିଜୟା ପ୍ରଭୃତି ଅସ୍ତ୍ରମାନ ପ୍ରଦାନ କରିଥିଲେ, ଏହା ଦାସଙ୍କ ରାମାୟଣରେ ଦେଖାଯାଏ । ଏ ସ୍ଥଳରେ ଦାସେ ବହୁବିଧ ଅନ୍ୟାନ୍ୟ ଅସ୍ତ୍ରଶସ୍ତ୍ରମାନଙ୍କର

---

* ବୋଧହୁଏ, ତାଟକାଧୁଷିତ ବନ ଅଗସ୍ତ୍ୟାଶ୍ରମ ନାମରେ ଅଭିହିତ ହୋଇଅଛି ?

(୧) ଏବୁ ଛାପା ପୁସ୍ତକରେ ୭୬ ପୃଷ୍ଠାଠାରୁ ୮୩ ପୃଷ୍ଠାଯାଏ ଦେଖନ୍ତୁ ।

(୨) ଛାପା ପୁସ୍ତକରେ ୮୩ ପୃଷ୍ଠାରେ ତାଟକା-ଜନ୍ମବୃତ୍ତାନ୍ତ ଦେଖନ୍ତୁ—

ଯେ ଯେ ନାମମାନ ପ୍ରକାଶ କରିଅଛନ୍ତି, ବୋଧହୁଏ, ସେସବୁ ମୂଳ ସପ୍ତବିଂଶତି ସର୍ଗରେ ଉକ୍ତ ଶାସ୍ତ୍ରାସ୍ତ୍ରୀୟ ନାମାବଳିର ଅନୁକରଣରେ ଲିଖିତ । (୧) ବିଶ୍ୱାମିତ୍ର ରାମ ଓ ଲକ୍ଷ୍ମଣଙ୍କ ସହ ସିଦ୍ଧବନ ବା ସିଦ୍ଧାଶ୍ରମରେ ଉପଗତ ହେବା ସ୍ଥଳେ ମୂଳରେ ଉକ୍ତ ବାମନାବତାରର କେତେକ ଚରିତ ମଧ ଦାସେ ଲେଖିଅଛନ୍ତି । ପରନ୍ତୁ ଏହି କଥାମେଳକ ମଧ୍ୟରେ ଯେ ଯେ ଅସାଙ୍ଗତ୍ୟ ରହିଅଛି, ସେସବୁ ଅନୁଲେଖକମାନଙ୍କର ମସ୍ତିଷ୍କ ବିକୃତି-ଜନିତ ବୋଲି ଆମ୍ଭମାନଙ୍କର ସମ୍ପୂର୍ଣ୍ଣ ବିଶ୍ୱାସ ।

ବାଳକାଣ୍ଡ ତ୍ରିଂଶ ସର୍ଗରେ ଲେଖାଅଛି, ରାମ ସିଦ୍ଧାଶ୍ରମରେ ପ୍ରବେଶ କରି ବିଶ୍ୱାମିତ୍ରଙ୍କୁ ଷଟ୍-ଦିବସାବସାନ-ଯଜ୍ଞଦୀକ୍ଷାରେ ପ୍ରବୃତ୍ତ କଲେ । ଯାଗର ଅନ୍ତିମ ଦିବସରେ ଯାଗହନ୍ତା ମାରୀଚ ଓ ସୁବାହୁକୁ ରାମଚନ୍ଦ୍ର ବାୟବ୍ୟାସ୍ତ୍ରରେ ନିକ୍ଷିପ୍ତ ଆଉ ଅନ୍ୟାନ୍ୟ ରାକ୍ଷସମାନଙ୍କୁ ଆଗ୍ନେୟାସ୍ତ୍ରରେ ପରିଦଗ୍ଧ କରିଦେଲେ ଏବଂ କୌଶିକସତ୍ରକୁ ନିରନ୍ତରାୟ ସମାପ୍ତ କଲେ ।(୨) ବଳରାମ ଦାସେ ସୁଦ୍ଧା ଏହାକୁ ମୌଳିକ ଘଟନାର ଅନୁକରଣରେ କେବଳ ଲେଖିଅଛନ୍ତି । ତାଙ୍କର ଏହି ଲେଖାରେ ସମୟର ବୈଷମ୍ୟ ରହିଥିଲେ ସୁଦ୍ଧା ଘଟନାଟି ମୌଳିକ-ସତ୍ୟ-ଭିତ୍ତିରେ କେବଳ ପ୍ରତିଷ୍ଠିତ ଅଛି ।

ଅତଃପର ରାମାଦିମାନଙ୍କର ମିଥିଳାପ୍ରୟାଣର କଥା । ମୂଳ ଏକତ୍ରିଂଶସର୍ଗରେ ବିଶ୍ୱାମିତ୍ର ରାମଚନ୍ଦ୍ରଙ୍କୁ ଧନୁର୍ଯଜ୍ଞ ଦର୍ଶନାର୍ଥ ମିଥିଳା ଯିବା ପାଇଁ ଅନୁରୋଧ କରି ତତ୍ର ପ୍ରତିଷ୍ଠିତ ଶୈବଧନୁର ତାବତୀୟ ଚରିତ କହିଅଛନ୍ତି । କିନ୍ତୁ ପାଠକଗଣ ବଳରାମଦାସଙ୍କ ରାମାୟଣରେ ଶୈବଧନୁର ଏହି ମୌଳିକ ପରିଚୟକୁ ଯଥାସ୍ଥାନରେ ଯଥାଯଥ ପାଇପାରିବେ ନାହିଁ । ମିଥିଳାଯାତ୍ରୀ ବିଶ୍ୱାମିତ୍ର ରାମ ଓ ଲକ୍ଷ୍ମଣଙ୍କ ସହ ପ୍ରଥମ ରଜନୀକୁ ଶୋଣାନଦୀର ତୀରରେ ଅତିବାହିତ କଲେ ।(୩) ଦାସେ ମଧ ବରାବର ଏହା ହିଁ କହିଅଛନ୍ତି ।

ଏହାପରେ ଦ୍ୱାତ୍ରିଂଶ ସର୍ଗଠାରୁ ସପ୍ତଚତ୍ୱାରିଂଶସର୍ଗ ପର୍ଯ୍ୟନ୍ତ ଷୋଳଗୋଟି ସର୍ଗରେ ବର୍ଣ୍ଣିତ ପାଠତକ ଅନ୍ୟାନ୍ୟ ପୌରାଣିକ-ଚରିତସଂସ୍ଥାନ ଅଟେ । ଏସବୁ ରାମାୟଣର କଥା ନୁହେଁ, ଅର୍ଥାତ୍ ରାମଚରିତରେ ଅନ୍ତର୍ଭୁକ୍ତ ନୁହେଁ; କିନ୍ତୁ ଏସବୁ ପ୍ରସ୍ତାବ ଅନୁସାରେ ସମାଗତ ଉଦ୍‌ବୃତ୍ତ କଥା । ରାମାୟଣର ଷଟ୍‌କାଣ୍ଡ ମଧ୍ୟରେ ଏଭଳି ଅତିପ୍ରସର ପୌରାଣିକ

---

(୧) ଛାପା ପୁସ୍ତକରେ ୮୫/୮୬ ପୃଷ୍ଠାର ପାଠକୁ ମୂଳ ୨୭ସର୍ଗର ପାଠସଙ୍ଗେ ମିଳାଇ ଦେଖନ୍ତୁ ।

(୨) ତୌ ତୁ ତଦ୍ ବଚନଂ ଶ୍ରୁତ୍ୱା ରାଜପୁତ୍ରୌ ଯଶସ୍ୱିନୌ ।
ଅନିଦ୍ରଂ ଷଡ଼ହୋରାତ୍ରଂ ତପୋବନମରକ୍ଷତାଂ ॥ ବା, କା, ୩୦ ସ, ୫ ଶ୍ଳୋ ।

(୩) ତେ ଗତ୍ୱାଦୂରମଧ୍ୱାନଂ ଲମ୍ବମାନେ ଦିବାକରେ ।
ବାସଂ ଚକ୍ରୁର୍ମୁନିଗଣାଃ ଶୋଣାକୂଳେ ସମାହିତାଃ । ୩୧ସ । ୨୦ ଶ୍ଳୋ ।

ଉତ୍‌ବୃତ୍ତ ଚରିତ ଅନ୍ୟତ୍ର ଲେଖା ନାହିଁ । ରାମାୟଣକୁ ଅନୁସରି ଯେଉଁମାନେ ଦେଶୀୟ ଭାଷାରେ ରାମଚରିତ ଲେଖନ୍ତି, ସେମାନଙ୍କ ଲେଖାରେ ଏସବୁ ଅବିକଳତଃ ଗୃହୀତ ନ ହେବା ଅସ୍ୱାଭାବିକ ନୁହେଁ ।

ଏ ସ୍ଥଳରେ ବିଶ୍ୱାମିତ୍ର ରାମଙ୍କୁ କହିଅଛନ୍ତି କି କୁଶ ନାମକ ମହା ତପସ୍ୱିଙ୍କର ଔରସରୁ କୁଶାମ୍ବ, (୧) କୁଶନାଭ, ଆଧୂର୍ତରଜସ ଓ ବସୁ ନାମକ ପୁତ୍ରଚତୁଷ୍ଟୟ ଜନ୍ମଗ୍ରହଣ କରିଥିଲେ । ଏମାନେ ପୁଣି କୌଶାମ୍ବୀ ପ୍ରଭୃତି ନଗରୀଚତୁଷ୍ଟୟ ପ୍ରତିଷ୍ଠିତ କରିଥିଲେ । କୁଶନାଭଙ୍କ ଔରସରୁ ଘୃତାଚୀଙ୍କ ଗର୍ଭରୁ ଯେଉଁ ଶତଗୋଟି କନ୍ୟାମାନେ ଜନ୍ମିଥିଲେ, ସେମାନଙ୍କୁ ବାୟୁଦେବ ନିଜର କଳତ୍ର ହେବାପାଇଁ ପ୍ରାର୍ଥନା କରି ସୁଦ୍ଧା ଅସମ୍ମତି ବଚନ ଶୁଣି କ୍ରୋଧବଶରୁ କୁବ୍‌ଜଗାତ୍ରା କରି ଦେଇଥିଲେ । ରାଜାଙ୍କ କନ୍ୟାମାନେ କୁବ୍‌ଜା ହେଲେ ବୋଲି ତଦବଧି ସେହି ଦେଶର ନାମ କାନ୍ୟକୁବ୍‌ଜ(୨) ହେଲା । ତା'ପରେ କୁଶନାଭ ନିଜର କୁବ୍‌ଜା କନ୍ୟାମାନଙ୍କୁ ସୋମଦାନାମ୍ନୀ ଗନ୍ଧର୍ବୀଙ୍କର (ମାନସିକ) ପୁତ୍ର ବ୍ରହ୍ମଦତ୍ତଙ୍କୁ ପ୍ରଦାନ କରିଥିଲେ । ସେହି ସୌମଦେୟ ବ୍ରହ୍ମଦତ୍ତଙ୍କର ହସ୍ତସ୍ପର୍ଶ-ପ୍ରାପ୍ତିମାତ୍ରେ ପ୍ରୋକ୍ତ କୁବ୍‌ଜୀଭୂତା କନ୍ୟାମାନେ ସୁମନୋହର ଆକୃତି ପ୍ରାପ୍ତ ହେଲେ । ସମୟେ ପୁଣି କୁଶନାଭ ବ୍ରହ୍ମସୁତ କୁଶଙ୍କ କୃପାରୁ ପୁତ୍ରେଷ୍ଟିଯାଗ ସମାପନ କରି ଗାଧି ନାମକ ପୁତ୍ର ପାଇଥିଲେ । ମୁଁ ସେହି ପୂଜ୍ୟପାଦ ଗାଧିଙ୍କର ଆତ୍ମଜ କୌଶିକ ଅଟେ (୩) । ମୋର ଅଗ୍ରଜା ଭଗିନୀ ସତ୍ୟବତୀ ଋଚିକଙ୍କୁ ପ୍ରଦତ୍ତା ହୋଇଥିଲେ । ଇତ୍ୟାଦି ଇତ୍ୟାଦି ।

ଏତାଦୃଶ ବିବିଧ କଥାର ଆଳାପନରେ ରାତ୍ରିର ଅର୍ଦ୍ଧଭାଗ ଅତୀତ ହେଲାରୁ ସେ ତିନିହେଁ ଶୋଣାନଦୀକୂଳରେ (୪) ନିଦ୍ରାଦେବୀଙ୍କ କୋଳରେ ବିଶ୍ରାମ ନେଲେ । ଶ୍ରୀମାନ୍ ବଳରାମ ଦାସେ ମଧ ଏହି କଥାଗୁଡ଼ିକୁ ନିଜର ରାମାୟଣରେ ନିହିତ କରିଅଛନ୍ତି; କିନ୍ତୁ ଅନେକତ୍ର ଅନୁଲେଖକଙ୍କ ଅନଭିଜ୍ଞତା ଆଉ ଦୁର୍ମତି-ଦୁର୍ବିଳସନ ଦ୍ୱାରା ପାଠମାନ ଭିନ୍ନାକୃତି-ପରିଣତିରେ ବିକୃତଭାବାପନ୍ନ ହୋଇଯାଇଅଛି । ସେହି ବିକୃତ ଲେଖା ମଧରେ ପୁଣି ପାଠକ ଦେଖିବେ, ଋଚିକତପସ୍ୱିଙ୍କ ନାମ ଶୁଚିକମୁନି, ସୋମଦା ଗନ୍ଧର୍ବୀଙ୍କ ନାମ ସମଦା

---

(୧) କେତେକ ମୂଳଗ୍ରନ୍ଥରେ — କୁଶାଶ୍ୱଂ କୁଶନାଭଂ ଚ ଅମୂର୍ତ୍ତରଜସଂ ବସୁଂ — ଏପରି ଲିଖିତ ଅଛି ।

(୨) ଏହାର ଆଧୁନିକ ନାମ କନୋଜ ହୋଇଅଛି ।

(୩) କୁଶବଂଶ-ପ୍ରସୂତୋଽସ୍ମି କୌଶିକୋ ରଘୁନନ୍ଦନ । ବା, କା, ୩୪ ସ ।

(୪) ଗତୋଽର୍ଦ୍ଧରାତ୍ରଃ କାକୁସ୍ଥ କଥାଂ କଥୟତୋ ମମ ।
ନିଦ୍ରାଃଭ୍ରେହି ଭଦ୍ରଂ ତେ ମାଭୂଦ୍‌ବିଘ୍ନୋଽଧ୍ୱନୀହନମ୍ । ବା । କା । ୩୪ ସ । ୧୪ ଶ୍ଳୋ
ଉପାସ୍ୟ ରାତ୍ରିଶେଷଂ ତୁ ଶୋଣାକୂଳେ ମହର୍ଷିଭିଃ । ବା । କା । ୩୫ ସ ।

ଗନ୍ଧର୍ବକନ୍ୟା, ବ୍ରହ୍ମଦତ୍ତଙ୍କ ନାମ ବ୍ରହ୍ମତେଜ, ଇତ୍ୟାକାରକ ଅଯଥାକୃତିରେ ପରିଣତ ଅଯଥାଯଥ ନାମଧାମଗୁଡ଼ିଏ ସଂନିବିଷ୍ଟ ରହିଅଛି । (୧)

ରାମାଦିମାନେ ମିଥିଳାଯାତ୍ରାର ଦ୍ୱିତୀୟ ଦିବସରେ ଶୋଣାନଦୀ ତୀରରୁ ଯାଇ ଗଙ୍ଗାତୀରରେ ଅବସ୍ଥାନ (୨) କଲେ । ଏ ସ୍ଥଳରେ ବିଶ୍ୱାମିତ୍ର ରାମଚନ୍ଦ୍ରଙ୍କ ଜିଜ୍ଞାସାରେ ଗଙ୍ଗାଦେବୀଙ୍କ ଆବିର୍ଭାବ, ଦେବସେନାନୀ କୁମାରଙ୍କର ଉତ୍ପତ୍ତି ଏବଂ ଭଗୀରଥ ଓ ସଗରପୁତ୍ରମାନଙ୍କର ସାନୁଷଙ୍ଗିକ ଚରିତମାନ ପଞ୍ଚତ୍ରିଂଶ ସର୍ଗଠାରୁ (୩) ନବଗୋଟି ସର୍ଗରେ ସୁବିସ୍ତରଭାବରେ କହିଅଛନ୍ତି । ଏଥିରେ କୁମାରସମ୍ଭବ ଚରିତତକ ସପ୍ତତ୍ରିଂଶସର୍ଗାବସାନରେ ସାଙ୍ଗ ହୋଇଅଛି । ତା'ପରେ ସଗରଙ୍କର ସାନୁଷଙ୍ଗିକ ଘଟଣାବଳିମାନ କ୍ରମଶଃ ଯଥାଯଥ ବିବୃତ ହୋଇଅଛି । ସୁତରାଂ ଗଙ୍ଗାବତରଣସନ୍ଦର୍ଭରେ ଗଙ୍ଗାଦେବୀ ଯେପରି କ୍ରମଶଃ ବ୍ରହ୍ମାଙ୍କଠାରୁ ମହାଦେବଙ୍କ ଜଟାକୂଟରେ, ତହିଁରୁ ପୁଣି ବିନ୍ଦୁ ସରୋବରରେ ଅବତୀର୍ଣ୍ଣା ହୋଇ ସପ୍ତସ୍ରୋତା ହୋଇ ପରେ ଜାହ୍ନବୀ ଆଖ୍ୟା ପ୍ରାପ୍ତ ହୋଇଥିଲେ, ସେସବୁର କଥାମାନ ମଧ୍ୟ ଉକ୍ତ ଅଛି । (୪)

ବଳରାମ ଦାସ ମହାଶୟ ଏସବୁ କଥା ପ୍ରକାଶ କରିବାର ଚେଷ୍ଟା କରି ସ୍ଥୂଳସତ୍ୟତା ମାତ୍ର ରକ୍ଷାକରିପାରିଅଛନ୍ତି । ତଥାପି ସେ ମହାଶୟ ଏଥିରେ ନାନାପ୍ରକାର ଅବାନ୍ତର କଥାମାନଙ୍କର ମିଳନରେ ଅନେକତ୍ର (୫) ନାମଧାମାଦିର ଅନ୍ୟଥାକରଣ କରିଅଛନ୍ତି । ଦାସଙ୍କ ରାମାୟଣରେ ସଗର ଚରିତ ଆଉ କୁମାରୋତ୍ପତ୍ତିମୂଳକ ଘଟନା ବିଲୋମତଃ ଲେଖାଥିବାର ଦେଖାଯାଉଅଛି । ଏହି ଯେ ଚରିତ ପ୍ରକାଶନରେ ବିଲୋମତା, ଏହା କି

---

(୧) ଛାପା ପୁସ୍ତକରେ ୯୩ ପୃଷ୍ଠାଠାରୁ ୯୭ ପୃଷ୍ଠା ପର୍ଯ୍ୟନ୍ତ ଭଲକରି ଦେ ୁ ।

(୨) ତେ ଗତ୍ୱାଦୂରମଧ୍ୱାନଂ ଗତେଽର୍ଦ୍ଧେ ଦିବସେ ତଦା ।
ଜାହ୍ନବୀଂ ସରିତାଂ ଶ୍ରେଷ୍ଠାଂ ଦଦୃଶୁର୍ମୁନିସେବିତାଂ । ବା, କା, ୩୫ ସ, ୬ ଶ୍ଳୋ ।

(୩) ୩୫ ସର୍ଗଠାରୁ ୪୩ ସର୍ଗ ପର୍ଯ୍ୟନ୍ତ ଦେଖନ୍ତୁ ।

(୪) ଗଙ୍ଗା ଜହ୍ନୁଙ୍କ ଯଜ୍ଞବାଟ ପ୍ଳାବିତ କଲାରୁ ଋଷି କ୍ରୁଦ୍ଧ ହୋଇ—
ଅପିବଚ୍ଚଜ୍ଜ୍ୱଳଂ ସର୍ବଂ ଗଙ୍ଗାୟାଃ ପରମାଦ୍ଭୁତଂ—
ତତସ୍ତୁଷ୍ଟୋମହାତେଜାଃ ଶ୍ରୋତ୍ରାଭ୍ୟାମସୃଜଦ୍ ପୁନଃ
ତସ୍ମାଦ୍ ଜହ୍ନୁସୁତା ଗଙ୍ଗା ପ୍ରୋଚ୍ୟତେ ଜାହ୍ନବୀତି ଚ । ବା, କା, ୪୩ ସର୍ଗ ।

(୫) ଛାପା ପୁସ୍ତକ ୯୭ ପୃଷ୍ଠାରେ ଦେଖନ୍ତୁ, ସଗରଙ୍କ ପତ୍ନୀ କେଶିନୀ ଓ ସୁମତିଙ୍କର ନାମ ବନ୍ଧ୍ୟା ଓ ନିଷଦ୍ଧ୍ୟା ହୋଇଅଛି । ତାଳପତ୍ର ପୁସ୍ତକରେ ଦେଖିବେ, ଏହାର ଅନ୍ୟାକାର ବିକୃତି ଦେଖାଯାଏ ଯଥା-
ବଇଧର୍ବୀ (ବୈଦର୍ଭୀ ?) ସବ୍ୟା ତାହାର ଦୁଇ ବାମା,
ରବିତଳେ ନୃପତି ବଢ଼ାଇ ଗାରିମା, ଇତ୍ୟାଦି ।
ଏହିପରି କ୍ରମେ ଦେଖି ନିଅନ୍ତୁ, ସଗରପୁତ୍ର ଅସମଞ୍ଜସ ଏବଂ ତାହାଙ୍କ ପୁତ୍ର ଅଂଶୁମାନଙ୍କର ନାମ ଛାପାରେ 'ଅଶ୍ୱରଜା' 'ଅଶ୍ୱବନ୍ତ' ହୋଇଅଛି । ଇତ୍ୟାଦି ଇତ୍ୟାଦି ।

ପ୍ରଥମରୁ ଦାସଙ୍କ ଲେଖାରେ ନ ଥିଲା ? କିମ୍ବା ଅନୁଲେଖକ ଲେଖାରେ ଏପରି ହୋଇ ଯାଇଅଛି ? ଏହା ଠିକ୍ କୁହାଯାଇ ନ ପାରେ । ଦାସ ମହାଶୟ ମଧ କହିଅଛନ୍ତି, ମହର୍ଷି ବିଶ୍ୱାମିତ୍ର ମିଥିଳା ଯାତ୍ରାର ଦ୍ୱିତୀୟ ଦିବସରେ ସାନୁଜ ରାମଙ୍କ ସହିତ ଶୋଣାନଦୀ ତୀରରୁ ଗଙ୍ଗା ତୀରରେ ଉପଗତ ହୋଇଥିଲେ । ଦାସେ ପୁଣି ଗଙ୍ଗାବତରଣ ସନ୍ଦର୍ଭରେ ଚରିତ ପ୍ରବାହକୁ ମୂଳ ଅପେକ୍ଷା କିଛିଦ୍ ପରିବର୍ଦ୍ଧିତ କରି ଲେଖିଅଛନ୍ତି କି ଐରାବତ ପ୍ରଥମତଃ ଭଗୀରଥଙ୍କ ମୁଖରେ ଗଙ୍ଗାଦେବୀଙ୍କର ରମଣ ପ୍ରାର୍ଥନା କରିଥିଲେ (୧); ଗଙ୍ଗାଦେବୀ ଐରାବତଦନ୍ତ ଭେଦରେ ମେରୁ ପର୍ବ୍ବତରୁ ନିର୍ଗତ ହୋଇ ପରିଧାବମାନା ହେଲାରୁ ଅନୁଗତ ଗଜରାଜ ସ୍ରୋତରେ ଭାସିଯାଇ ଅସ୍ତବ୍ୟସ୍ତତାରେ ସ୍ଥାନେ ଲାଗି ରହିଲେ; ସେହି ସ୍ଥାନ ପୁଣି ହସ୍ତିନା  ନାମରେ ଅଭିହିତ ହେଲା, ଇତ୍ୟାଦି । (୨)

ଏଥିମଧ୍ୟରେ ପୁଣି ଲେଖାଅଛି କି, ଇନ୍ଦ୍ର କାହିଁକି ସେହି ଯାଗାଶ୍ୱକୁ ଅପହରଣ କରି ନେଲେ । ଏହା ରାମ ଜିଜ୍ଞାସା କଲାରୁ ବିଶ୍ୱାମିତ୍ର ଏହି ଉତ୍ତର ପ୍ରଦାନ କରିଥିଲେ ବୋଲି ବଳରାମ ଦାସ ମହାଶୟ ପୁରାଣାନ୍ତରିତ ଅନେକଗୁଡ଼ିଏ କଥା ଏ ସ୍ଥଳରେ ଲେଖିଅଛନ୍ତି । ଏହାର ସ୍ଥୂଳ ବିବରଣ ଏହି । ସମୁଦ୍ର ମଧ୍ୟରେ କୃତ-ନିଳୟ  କାଳକେୟାଦି ଦୁଷ୍ଟ ଅଶିଷ୍ଟ ଅସୁରମାନେ ତ୍ରିଲୋକସନ୍ତାପପ୍ରଦ ଘୋର ଉପଦ୍ରବ କଲାରୁ ମହର୍ଷି ଅଗସ୍ତି ସେମାନଙ୍କର ବିନାଶନର ନିରୁପାୟ ଉପାୟ ପ୍ରଦର୍ଶନାର୍ଥ ସମଗ୍ର ସମୁଦ୍ରକୁ ନିଃଶେଷନିଃଶୋଷିତ କରିଦେଇଥିଲେ । ସମୟେ ନାରାୟଣ ଫେରେ ସମୁଦ୍ରର ପୂରଣାର୍ଥ କପିଳ ରୂପରେ ତପୋନିଷ୍ଠ ରହି ଗଙ୍ଗାଙ୍କର ଆନୟନାର୍ଥ ଇନ୍ଦ୍ରଙ୍କ କର୍ତ୍ତୃକ ସଗରଙ୍କ ଯାଗାଶ୍ୱକୁ ଅପହୃତ କରାଇଥିଲେ । (୩)

ଏହାପରେ ବଳରାମ ଦାସେ ଅନ୍ୟାନ୍ୟ କେତେଗୁଡ଼ିଏ ଆନୁଷଙ୍ଗିକ କଥା ସହିତ ଲେଖିଅଛନ୍ତି କି ଗଙ୍ଗାଦେବୀ ଭଗୀରଥଙ୍କ ସହ ଆସି ପ୍ରୟାଗରେ ଯମୁନାଙ୍କ ସଙ୍ଗେ ଏକ

---

(୧) ଗଙ୍ଗାଙ୍କ ପ୍ରତି ଐରାବତଙ୍କର ଏହି କଥା ଏବଂ ତଦାନୁଷଙ୍ଗିକ କଥାମାନ ପଦ୍ମପୁରାଣ, ସର୍ଗଖଣ୍ଡ ୧୬ ଷୋଡ଼ଶ ଅଧ୍ୟାୟରେ ବର୍ଣ୍ଣିତ ଅଛି । ବଳରାମ ଦାସଙ୍କ ପରି ବଙ୍ଗୀୟ ରାମାୟଣକର୍ତ୍ତା କୃତ୍ତିବାସ ଦାସ ମହାଶୟ ମଧ ନିଜର ରାମାୟଣରେ ଏହି ଚରିତମାନ ଲେଖିଅଛନ୍ତି ।

(୨) ଛାପା ପୁସ୍ତକରେ ୧୦୯ ପୃଷ୍ଠାଠାରୁ ଦେଖନ୍ତୁ ।
ସେ ସ୍ଥାନ ହୋଇଲା ପୁଣ ହସ୍ତିନା ନଗରେ — ୧୧୨ ପୃଷ୍ଠା ।

(୩) ଏହି ଯେ ସଗରଙ୍କ ଯାଗାଶ୍ୱର ଅପହରଣର ପ୍ରଧାନ କର୍ତ୍ତା କପିଳଦେବ, ଏ ବିଷୟ ବଙ୍ଗ ଦେଶରେ ପ୍ରଚଳିତ କେତେକ ମୂଳ ରାମାୟଣ ଗ୍ରନ୍ଥରେ ମଧ ଲେଖାଅଛି । ଯଥା
ବିଭର୍ତ୍ତି ଯୋ ଜଗଦ୍ କୃତ୍ସ୍ନଂ ଯସ୍ୟୋପ୍ରଭିର୍ନିବିଦ୍ୟତେ ।
ତେନାଶ୍ୱୋ ବାସୁଦେବେନ କପିଳୈର୍ନାପବାହିତଃ । ଇତ୍ୟାଦି, ଆଦିକାଣ୍ଡ ୪୨ ସର୍ଗ ।

ମାସ ପର୍ଯ୍ୟନ୍ତ ସ୍ଥଗିତା ରହିଗଲେ (୧) । ଏ ସ୍ଥଳେ ଦାସେ ପୁଣି କହିଅଛନ୍ତି କି ଭଗୀରଥ ତେତେବେଳେ ଗଙ୍ଗାଦେବୀଙ୍କ କହିବାନୁସାରେ କାଶୀଧାମ ଏବଂ ତତ୍ରତ୍ୟ ଚକ୍ରସର, ହାଟକକର୍ଣ୍ଣ ଓ ଲକ୍ଷ୍ମୀସର ପ୍ରଭୃତି ସ୍ଥାନମାନଙ୍କର ପରିଚୟ ପ୍ରଦାନ କରିଥିଲେ (୨) । ଏସବୁ ମୂଳ ଗ୍ରନ୍ଥରେ ଅନୁକ୍ତ ହେଲେ ହେଁ ଏକାନ୍ତ କପୋଳକଳ୍ପିତ ବୋଧ ହୁଏ ନାହିଁ । ଶ୍ରୀମାନ୍ ବଳରାମ ଦାସେ ବହୁ ପୁରାଣାଭିଜ୍ଞ ଥିବାରୁ ପୁରାଣାନ୍ତରିତ ଚରିତମାନ ପ୍ରସ୍ତାବ ଅନୁସାରେ ପୂର୍ବାପର ଚରିତର ସାଙ୍ଗତ୍ୟ ସହ ଏ ସ୍ଥଳରେ ମିଳାଇ ଦେଇଅଛନ୍ତି ।

**[ ବାଳକାଣ୍ଡ ୪୫ ସର୍ଗଠାରୁ ଅଯୋଧ୍ୟାକାଣ୍ଡର ୫୭ ସର୍ଗ ପର୍ଯ୍ୟନ୍ତର ଆଲୋଚନା ଉପଲବ୍ଧ ନୁହେଁ । ]**

ଏହାପରେ ସପ୍ତପଞ୍ଚାଶତ ସର୍ଗଠାରୁ ଷଟ୍‌ଷଷ୍ଟିତମ ସର୍ଗ ପର୍ଯ୍ୟନ୍ତ ଦଶଗୋଟି ସର୍ଗରେ ପ୍ରତ୍ୟାବୃତ୍ତ ସୁମନ୍ତଙ୍କ ମୁଖରୁ ରାମଙ୍କ ଗହନ ପ୍ରବେଶ ବାର୍ତ୍ତା ଶୁଣି ଦଶରଥ କୌଶଲ୍ୟାଙ୍କର ଅସୀମ କରୁଣ ବିବରଣ ଏବଂ ଦଶରଥ ବିଯୋଗର କଥାମାନ ଲେଖାଅଛି । ସୁମନ୍ତ ରାମ ବନବାସର ଷଷ୍ଠ ଦିବସର ସାୟାହ୍ନ ସମୟରେ ବା ଦିବସର ତୃତୀୟ ଭାଗରେ (୩) ଦୁଃଖ-ସ୍ତିମିତ ଅଯୋଧ୍ୟାରେ ପ୍ରବିଷ୍ଟ ହେଲେ । ପୌରବର୍ଗ ଏବଂ କୌଶଲ୍ୟା ଓ ଦଶରଥ ଏକାକୀ ସୁମନ୍ତଙ୍କୁ ପ୍ରତ୍ୟାବୃତ୍ତ ଦେଖି ଶୋକୋଦ୍‌ବେଳିତ ହୃଦୟରେ ଏକାବେଳେକେ ମୋହିତ ହୋଇ ପଡ଼ିଲେ । ସୁମନ୍ତ ପିତା ମାତାଦିଙ୍କ ପ୍ରତି ରାମଙ୍କ କୃତ ପ୍ରଣାମ ଓ ସମ୍ବାଦ ଜଣାଇଲେ । ରାଜା ସୁମନ୍ତଙ୍କୁ ରାମଙ୍କ ସବିଶେଷ ସମ୍ବାଦ ଜିଜ୍ଞାସା କଲାରୁ ସେ କହିଲେ କି ରାମ ଓ ଲକ୍ଷ୍ମଣ ଜଟା ବନ୍ଧନ ପୂର୍ବକ ପ୍ରୟାଗର ଅଭିମୁଖରେ ପ୍ରସ୍ଥାନ କଲେ । ସେ ମୋତେ ସଦୟେ ଫେର ଆହ୍ୱାନ କରିବେ ! ଏହି ଆଶାରେ ମୁଁ ପୁଣି ତତ୍ର ଗୁହକଙ୍କ ସହିତ ଅନେକ ସମୟ (୪) ଅପେକ୍ଷାରେ ରହିଲି । ତଦା ଦେଖିଲି ଶ୍ରୀରାମଙ୍କ ଦୁଃଖରେ ବୃକ୍ଷଲତାଦି ନଦୀନଦ ପ୍ରଭୃତି ମଧ୍ୟ ଦୁରବସ୍ଥାପନ୍ନ ହେଲେ । ରାମ ସେଠୁଁ ଚିତ୍ରକୂଟ ଗଲେ । ଏହା ଜାଣି ମୁ ଫେରି ଆସି ଦେଖିଲି ସମଗ୍ର ଅଯୋଧ୍ୟା ନିରାନନ୍ଦ

(୧) ଛାପା ପୁସ୍ତକରେ ୧୧୧ ପୃଷ୍ଠା ପଢ଼ନ୍ତୁ । କିନ୍ତୁ ବଙ୍ଗଦେଶରେ ପ୍ରଚଳିତ ମୂଳ ରାମାୟଣରେ ଲେଖାଅଛି, ଗଙ୍ଗା ଶିବଙ୍କ ଜଟାଜୁଟରେ ଏକବର୍ଷ ଅବସ୍ଥାନ କରିଥିଲେ ଯଥା—
ତତ୍ରସଂବତ୍ସରଂ ପୂର୍ଣ୍ଣଂ ବଭ୍ରାମ ପରିମୋହିତା ।
ଗଙ୍ଗା ଶିରସି ଦେବସ୍ୟ ବିସୃତା ବେଗବାହିନୀ । ଆଦିକାଣ୍ଡ ୪୫ ସର୍ଗ ।

(୨) ଛାପା ପୁସ୍ତକରେ ଆଦିକାଣ୍ଡ ୧୧୩ ପୃଷ୍ଠାଠାରୁ ୧୧୫ ପୃଷ୍ଠା ପର୍ଯ୍ୟନ୍ତ ଦେଖନ୍ତୁ ।

(୩) ତତଃ ସାୟାହ୍ନସମୟେ ତୃତୀୟେଽହନି ସାରଥିଃ । ଅଯୋଧ୍ୟାଂ ସମନୁପ୍ରାପ୍ୟ ନିରାନନ୍ଦାଂ ଦଦର୍ଶ ହ । ୫୭ସ. ୫ ଶ୍ଳୋ ।
ତୃତୀୟେଽହନି ଅହ୍ନଃ ତୃତୀୟ ଭାଗେ

(୪) ଗୁହେନ ସାର୍ଦ୍ଧଂ ତତ୍ରୈବ ସ୍ଥିତୋଽସ୍ମି ଦିବସାନ୍ ବହୂନ୍ । ଆଶୟା ଯଦି ମାଂ ରାମଃ ପୁନଃ ଶବ୍ଦାପୟେଦିତି । ଇତି ୫୯ ସ ୩ ଶ୍ଳୋ ।

ଓ ଦୁଃଖ ବିଶୀର୍ଣ୍ଣ (ହୋଇ)ପଡ଼ିଛି । ତଦା ଦଶରଥ ବୋଇଲେ – ହେ ସୁମନ୍ତ୍ର ! ମୁଁ ମନ୍ତ୍ରୀ ପ୍ରଭୃତିଙ୍କୁ ବିସର୍ଜନ କରି କେବଳ ସ୍ତ୍ରୀର କଥାରେ ହାୟ ହାୟ: ସହସା ଏପରି ସର୍ବନାଶ କରି ପକାଇଲି । ଅଥବା ଏହା ନିୟତି ନିର୍ଦ୍ଦିଷ୍ଟ କୁଳକ୍ଷୟକାର୍ଯ୍ୟ । ରାମଙ୍କ ବିନା ମୁ କ୍ଷଣେ ମାତ୍ର ଜୀବିତ ରହି ନ ପାରେ । ମୋତେ ତୁମେ ରଥରେ ନେଇ ରାମଙ୍କୁ ଦେଖାଅ । କୌଶଲ୍ୟା ମଧ ଶୋକସନ୍ତାପରେ ଦଂଦହ୍ୟମାନା ହୋଇ ରାମ ଦିଦୃକ୍ଷୁ ହେଲେ । ତଦା ପୁଣି ସୁମନ୍ତ ପ୍ରବୋଧ ଦେଇ କହିଲେ, ସାନୁଜ ସକଳତ୍ର ରାମଚନ୍ଦ୍ର ସର୍ବତ୍ର ସୁଖରେ ଅଛନ୍ତି । ସୀତା ଦେବୀ ଆରଣ୍ୟକ କମନୀୟ ଦୃଶ୍ୟମାନ ଦେଖି ପତିଙ୍କ ସଙ୍ଗେ ନିଃଶଙ୍କେ ଓ ନିରାତଙ୍କେ ବିହାର କରୁଅଛନ୍ତି । ଅଯୋଧ୍ୟାର କଥା କେହି ମନେ ଧରୁ ନାହାନ୍ତି । ତାପରେ କୌଶଲ୍ୟା ରାଜାଙ୍କ କତିରେ ସୀତାଙ୍କ ଉଦ୍ଦେଶ୍ୟରେ ଶୋକ ପ୍ରକାଶ କରି ରାମବନବାସ ବ୍ରତ ଯାପନାନ୍ତର ଅଯୋଧ୍ୟାରେ ଉପଗତ ହେଲେ ଭରତ ତାହାଙ୍କୁ ରାଜ୍ୟାଦି ସମର୍ପଣ କରିବେ, ବା ନାହିଁ ଇତ୍ୟାକାରକ ରାମଙ୍କ ଭାବି ଅବସ୍ଥା ସମ୍ବନ୍ଧେ ଅନେକଧା କହି ଅଛନ୍ତି ।(୧)

ଦଶରଥ ପୁଣି ମୂର୍ଚ୍ଛାବସାନରେ କୌଶଲ୍ୟାଙ୍କୁ ପତିଙ୍କ ପ୍ରତି ପତ୍ନିଙ୍କର କର୍ତ୍ତବ୍ୟ ବୁଝାଇ ଆତ୍ମଦୋଷର କ୍ଷମା ପ୍ରାର୍ଥନା କଲେ । କୌଶଲ୍ୟା ମଧ କରୁଣ ସ୍ୱରରେ ପତିଙ୍କ ପାଦ ଧରି କ୍ଷମା ପ୍ରାର୍ଥନା ପୂର୍ବକ ନିଜର ହୃଦ୍‌ଗତ ଦୁଃଖ ଜଣାଇଲେ । ଏହିପରି ସେ ଦୁହିଁଙ୍କର ଦୁଃଖ ଶୋକର ଆଳାପନ ବିଳପନରେ ସନ୍ଧ୍ୟା ଆସି ଉପଗତା ହେଲା ।(୨)

ରାଜା ଆଉ ବସି ନ ପାରି ଶୋକ ଜନିତ ସୁଷୁପ୍ତିରେ ଅଭିଭୂତ ହେଲେ । ରାମ ପ୍ରବ୍ରାଜନର ସେହି ଷଷ୍ଠରାତ୍ରିର ଅର୍ଦ୍ଧ ଭାଗରେ ଦଶରଥ ପୂର୍ବେ ଆପଣାକୃତ ମୁନି ପୁତ୍ର

---

ତତ୍ରୈବ ନତୁ ବର୍ତ୍ମନି ଦିବସାନିତି ବହୁବଚନେନ କପିଂଜଳାଧିକରଣ ନ୍ୟାୟେନ ତ୍ରିତ୍ୱସିଦ୍ଧିତ୍ୟେକେ । ବସ୍ତୁତସ୍ତୁ ବନସ୍ପତିମୂଳେ ଏକଦିନଂ ଭରଦ୍ୱାଜାଶ୍ରମେ ଦ୍ୱିତୀୟଂ ଯମୁନାତୀରେ ତୃତୀୟଂ ଚତୁର୍ଥେ ଚିତ୍ରକୂଟ ପ୍ରବେଶଃ ପଞ୍ଚମେ ଗୁହଚାରୈସ୍ତସର୍ବଂ ନିବେଦିତଂ ଷଷ୍ଠେ ସୂତନିର୍ଗମଃ, ଯଦ୍ ବା ଦ୍ୱିତୀୟଦିନେ ଭରଦ୍ୱାଜାଶ୍ରମେ ରାମସ୍ୟ ଚିତ୍ରକୂଟଗମନବ୍ୟବସାୟାଦ୍ ତୃତୀୟଦିନେ ଚାରୈର୍ନିବେଦନଂ ଚତୁର୍ଥେ ସୂତନିର୍ଗମଃ, ଅତଃ ତ୍ରୀନ୍ ଦିବସାନ୍ ଗଙ୍ଗାକୂଳେ ସ୍ଥିତୋଽସ୍ମୀତ୍ୟର୍ଥଃ । ବହୂନିତି ବିଶେଷଣାତ୍ ରାମବିଯୋଗେନ ଏକୈକସ୍ୟ ଦିବସସ୍ୟ କଳ୍ପବଦ୍ ପ୍ରତିଭାନମିତିଦର୍ଶିତଂ । ଇତି ଗୋବିନ୍ଦରାଜୀୟଟୀକାୟାଂ ।

× × ସୀତାରାମଲକ୍ଷ୍ମଣୈଃ ସହ ଗଙ୍ଗାଂପ୍ରାପ୍ୟ ଗୁହେନସହ ସ୍ଥିତ ଦିବସୈସ୍ତ୍ୱେକଃ, ରାମସ୍ୟ ଗଙ୍ଗୋତ୍ତରଣାନନ୍ତରଂ ବଟମୂଳାବସ୍ଥାନ ଦିବସସ୍ତ୍ୱେଦାକଃ, ରାମସ୍ୟ ଭରଦ୍ୱାଜାଶ୍ରମ ପ୍ରାପ୍ତି ଦିବସେ ଭରଦ୍ୱାଜାଶ୍ରମାଦ୍ ଯାବଦ୍ ସ୍ୱପ୍ରେଷିତ ଚାରାଗମନଂ ତାବଦ୍ ଦିବସସ୍ତ୍ୱେକଃ, ଏବମାହତ୍ୟ ତ୍ରିଦିବସାଃ । ଅତଃ ବହୁତ୍ୱସ୍ୟ ତ୍ରିତ୍ୱେ ପର୍ଯବସାନାଦ୍ ସ୍ଥିତୋଽସ୍ମି ଦିବସାନ୍ ବହୂନ୍ ଇତ୍ୟସ୍ୟାପ୍ୟବିରୋଧଃ । ଇତି ମହେଶ୍ୱର ଦୀକ୍ଷିତ ଟୀକାୟାଂ–

(୨) ଯଦି ପଞ୍ଚଦଶେ ବର୍ଷେ ରାଘବଃ ପୁନରେଷ୍ୟତି ।
ଜହ୍ୟାଦ୍ରାଜ୍ୟଂ ଚ କୋଶଂ ଚ ଭରତୋ ନୋପଲକ୍ଷ୍ୟତେ । ଇତି ୬୧ ସ. ୧୧ଶ୍ଳୋ ।

ବିନାଶ ରୂପକ ଦୁଷ୍କୃତର କଥା ତଥାଚ ତନ୍ନିମିତ୍ତ ଋଷିଙ୍କ ପ୍ରଦତ୍ତ ଶାପ ମଧ୍ୟ ସ୍ମରଣ କରି କୌଶଲ୍ୟାଙ୍କୁ ଜଣାଇଲେ । (୧)

ତେତିକିବେଳେ ସେ ପୁଣି କହନ୍ତି କି 'ହେ କୌଶଲ୍ୟେ ମୋ ଆଖିକି ତୁମେ ଦିଶୁ ନାହଁ ।' (୨)

ବୈବସ୍ୱତ ଦୂତମାନେ ମୋତେ ସତ୍ୱର ଡାକୁଅଛନ୍ତି । ହୃଦୟସ୍ଥ ବାୟୁ ଅବସନ୍ନ ହୋଇଆସୁଅଛି ଇତ୍ୟାଦି । ଦଶରଥ ଏହିପରି ଶୋଚନୀୟ ଅବସ୍ଥାରେ ପଡ଼ିରହି ଅର୍ଦ୍ଧରାତ୍ର ପରେ ପ୍ରାଣତ୍ୟାଗ କଲେ । ପରଦିନ ବହୁ ସମୟ ଯାଏ ନରନାଥ ଶଯ୍ୟାରୁ ଗାତ୍ରୋତ୍‌ଥାନ ନ କଲାରୁ ପତ୍ନୀମାନେ ଯାଇ ଦେଖିଲେ ଯେ ସେ ମୃତ ହୋଇ ପଡ଼ିଅଛନ୍ତି । ସେମାନଙ୍କର କ୍ରନ୍ଦନ କୋଳାହଳ ଏହି ଦୁଃଖ ସମ୍ବାଦକୁ ପୌରବର୍ଗଙ୍କୁ ଜଣାଇ ଦେଲା । କୌଶଲ୍ୟା ଅସୀମ ବିଳାପରେ ସହଗମନାର୍ଥେ କୃତସଂକଳ୍ପା ହେଲେ । କିନ୍ତୁ ପୁତ୍ର ବିନା ଅନ୍ତେଷ୍ଟିଃ ହୋଇ ନ ପାରେ । ତୈଳ ଦ୍ରୋଣୀରେ ଶବ ସଞ୍ଚିତ କରାଗଲା । ସେଦିନ ନିଜର କୁଳବଧୂମାନଙ୍କର ନିରବଚ୍ଛିନ୍ନ ପ୍ରଗାଢ଼ କରୁଣ ବିଳାପ ଶୁଣି ଏକାନ୍ତ ଅସ୍ଥିର ହୃଦୟରେ ନିବୃତ୍ତସଂଚାର ହେଲାରୁ ରଜନୀ ଆସି ଉପସ୍ଥିତ ହେଲା ।(୩)

ଦାସଙ୍କ ରାମାୟଣରେ ଏସବୁର ବିବରଣ କେବଳ ଦିଗ୍‌ଦର୍ଶନ କ୍ରମରେ ଅତି ସଂକ୍ଷିପ୍ତ ଆଉ କୁତ୍ରଚିତ୍ ଅଂଶତଃ ଅନ୍ୟଥାକୃତ ଅଟେ । ରାଜାଙ୍କ ପ୍ରତି ସୁମନ୍ତ ନିବେଦିତ

---

ଏବଂ ହି କଥୟନ୍ତ୍ୟାସ୍ତୁ କୋଶଲ୍ୟାୟାଃ ଶୁଭଂ ବଚଃ ।
ମନ୍ଦରଶ୍ମୀରଭୂଦ୍‌ସୂର୍ଯୋ ରଜନୀ ଚାଭ୍ୟବର୍ତତ । ୬୨ସ. ୨୦ ଶ୍ଳୋ ।

(୧) ସରାଜା ରଜନୀଂ ଷଷ୍ଠୀଂ ରାମେ ପ୍ରବ୍ରାଜିତେ ବନଂ
ଅର୍ଦ୍ଧରାତ୍ରେ ଦଶରଥଃ ସଂସ୍ମରନ୍ ଦୁଷ୍କୃତଂ କୃତଂ । ଇତ୍ୟାଦି ୬୩ ସ. ୪ ଶ୍ଳୋ ।
ପୁତ୍ରବ୍ୟସନଜଂ ଦୁଃଖଂ ଯଦେତତ୍ ମମ ସାଂପ୍ରତଂ
ଏବଂ ତ୍ୱଂ ପୁତ୍ର ଶୋକେନ ରାଜନ୍ କାଳଂ କରିଷ୍ୟସି ୬୪ସ. ୫୫ ଶ୍ଳୋ ।

(୨) ଚକ୍ଷୁଷା, ତ୍ୱାଂ ନପଶ୍ୟାମି ସ୍ମୃତିର୍ମମ ବିଲୁପ୍ୟତେ ଇତ୍ୟାଦି ।
ଦୂତାବୈବସ୍ୱତସ୍ୟୈତେ କୌଶଲ୍ୟେ ! ତ୍ୱରୟନ୍ତି ମାଂ ୬୬

× × ×

ଯଦା ତୁ ଦୀନଂ କଥୟନ୍ ନରାଧିପଃ
ପ୍ରିୟସ୍ୟ ପୁତ୍ରସ୍ୟ ବିବାସନାତୁରଃ ।
ଗତେଽର୍ଦ୍ଧରାତ୍ରେ ଭୃଶଦୁଃଖ ପୀଡ଼ିତ ।
ତଦା ଜହୌ ପ୍ରାଣମୁଦାରଦର୍ଶନଃ । ଇତି ୬୪ ସ. ୬୬-୭୯ ଶ୍ଳୋ ।

(୩) ଗତେତୁ ଶୋକାତ୍ ତ୍ରିଦିବଂ ନରାଧିପେମହୀତଳ ସ୍ଥାସ୍ମା ନୃପାଙ୍ଗନାସୁ ଚ ।
ନିବୃତ୍ତଚାରଃ ସହସା ଗତୋରବିଃ ପ୍ରବୃତ୍ତଚାରାରଜନୀ ହ୍ୟୁପସ୍ଥିତା । ଇତି ୬୬ସ, ୨୬ ଶ୍ଳୋ ।

ରାମବୃତାନ୍ତମାନ ଦାସେ ଦୁଇଟି ପଦ୍ୟରେ ବା ଚାରି ପଂକ୍ତିରେ ସମାପ୍ତ କରିଦେଇଅଛନ୍ତି ।(୧)

ଏଥିରେ ଲେଖା ଅଛି ରାମଙ୍କୁ ସଙ୍ଗେ ଫେରାଇ ଆଣି ନ ଥିବାରୁ ସୁମନ୍ତ୍ରଙ୍କୁ ପୌରଲୋକେ ବିଲକ୍ଷଣ ନିନ୍ଦା କରିଥିଲେ ।(୨) ଏହାପରେ ଦଶରଥ କୌଶଲ୍ୟା ଦେବୀଙ୍କୁ ନିଜର ପାଖକୁ ଡକାଇ ଅଣାଇବା– ରାଜା କୌଶଲ୍ୟାଙ୍କ ମୁଖରୁ ରାମ-ବିବାସନର କରଣୋକ୍ତି ଶୁଣି ତାଙ୍କୁ ପୁଣି ପୁରା ଋଷି – ପ୍ରଦତ୍ତ ନିଜର ଶାପ ବୃତାନ୍ତ ଜଣାଇବା, ତାର ଅବ୍ୟବହିତ ପରେ ରାଜା ମୁଖ ପୋତି ଶୋଇପଡ଼ି ପ୍ରାଣତ୍ୟାଗ କରିଦେଇଥିବା ଲେଖାଅଛି ।(୩)

ଯାହାହେଉ ଦାସେ ଦଶରଥଙ୍କର ସ୍ୱର୍ଗାରୋହଣ ରାମ ବିବାସନର ଷଷ୍ଠ ରାତ୍ରିରେ ହୋଇଥିବା ଠିକ୍ ଲେଖିଅଛନ୍ତି ।(୪)

ପରନ୍ତୁ ସେ ଏ ସ୍ଥଳେ ବୈଷମ୍ୟ ଦେଖାଇ ଅଛନ୍ତି ଯେ କୌଶଲ୍ୟା ମୃତ ଦଶରଥଙ୍କୁ ପରିସୁପ୍ତଥିବା ଜାଣି ରାମବିବାସନମୂଳକ ଶୋକୋକ୍ତିମାନ ଜଣାଇଲେ । ସେ ରାଜାଙ୍କ ମୁଖରୁ କୌଣସି ଉତ୍ତର ନ ପାଇ ନିଦ୍ରାରେ ଶୋଇ ପଡ଼ିଲେଣି ଭାବି ନିକଟରୁ ବାହାରି ଯାଇ ପଲଙ୍କରେ ଶୋଇପଡ଼ିଲେ ।(୫)

ପ୍ରଭାତ ପରେ ସେ ପୁଣି ରାଜାଙ୍କୁ ନାନା କଥା କହି ଉଠାଇବାର ଚେଷ୍ଟା କଲେ । ପରେ ନିର୍ଗତପ୍ରାଣ ଜାଣି ରୋଦନ କଲାରୁ ଅନ୍ତଃପୁରରୁ ଅନ୍ୟାନ୍ୟ ରାଣୀମାନେ ଧାଇଁଆସିଲେ ଇତ୍ୟାଦି । ଦୂତମାନେ ଯେଉଁ ଯେଉଁ ଦେଶ ଦେଇ ଗିରିବ୍ରଜକୁ ଯାଇଥିଲେ ସେସବୁ ଏ ସ୍ଥଳେ ଲେଖା ଅଛି ।

---

(୧) ବଟକ୍ଷୀର ଘେନି ଜଟା ବନ୍ଧନ କଲେ । ସନ୍ନ୍ୟାସିବେଶ ଶ୍ରୀରାମ ସେଠାରେ ହୋଇଲେ । ମୋହର ଦେଖୁଁ ଦେଖୁଁ, ସେ ପାରି ହୋଇଗଲେ । ପିତାମାତାଙ୍କୁ କହିବୁ ବୋଲିଣ ବୋଇଲେ । ଛାପା ପୁସ୍ତକରେ ୭୧ପୃ ।

(୨) × × × ଭରତଙ୍କୁ ସେବା କରିବାକୁ ଯେ ଅଇଲୁ ।
କେକୟୀ ରାଣୀଙ୍କୁ ତୁ ଚନ୍ଦନ ମଣିଲୁ
ଧିକ ତୋର ବୁଦ୍ଧି ବଳ ଧିକ ମନ୍ତ୍ରୀ ପଣ
ଦେହ ରଖି ଅଛୁ ତୁହି କେବଣ କାରଣ । ଛାପାରେ ୭୧ ପୃ ।

(୩) ଏତେ କହି ସେ ରାଜା ମୁଖମାଡ଼ି ଶୋଇ, ଦେହ ଛାଡ଼ି ପ୍ରାଣଗଲା ବାହାର ଯେ ହୋଇ ।
(ଛାପା. ୭୨ ପୃ)

(୪) ଶ୍ରୀରାମର ଯିବାର ହୋଇଛି ଷଡ଼ରାତି, ପଲ୍ୟଙ୍କ ଉପରେ ଦେହ ଛାଡ଼ିଲେ ନୃପତି ।
(ଛାପା. ୭୨ ପୃ)

(୫) ଛାପାରେ ୭୨, ୭୩ ପୃଷ୍ଠା ଦେଖନ୍ତୁ ।

ଏହା ପରେ ସପ୍ତଷଷ୍ଟିତମ ସର୍ଗଠାରୁ ଏକୋନାଶିତିତମ ସର୍ଗ ପର୍ଯ୍ୟନ୍ତ ତେର ଗୋଟି ସର୍ଗରେ ଭରତଙ୍କଠାକୁ ଦୂତମାନଙ୍କର ଯିବା, ଭରତ ଅଯୋଧ୍ୟାରେ ପ୍ରବିଷ୍ଟ ହୋଇ ପିତାଙ୍କ ଅନ୍ତ୍ୟେଷ୍ଟି ସାଧିତ କରିଥିବାର ଆମୂଳାନ୍ତ କଥାମାନ ଲେଖା ଅଛି । ଦଶରଥ ବିଯୋଗ ପରେ ବଶିଷ୍ଠ ରାଜକର୍ମଚାରୀଙ୍କ ସହିତ ବ୍ରାହ୍ମଣ ସଭା ଆହୂତ କଲେ । ସେ ପୁଣି ତହିଁରେ ଅରାଜକ ରାଜ୍ୟର ଦୁର୍ଦ୍ଦଶା ଏବଂ ରାଜ ମାହାତ୍ମ୍ୟର ବର୍ଣ୍ଣନା ପୂର୍ବକ ସ୍ଥିର କଲେ ଯେ ଭରତ ଆନୀତ ହୋଇ ସିଂହାସନରେ ଅଭିଷିକ୍ତ ହୁଅନ୍ତୁ, ସିଦ୍ଧାର୍ଥାଦି ଦୂତମାନେ ଦଶରଥ ମରଣର ତୃତୀୟ ଦିନ କେକୟ ରାଜ୍ୟ ପ୍ରତି ପ୍ରସ୍ଥାନ କଲେ । (୧)

ଯେଉଁଦିନ ରାତ୍ରିରେ ଦୂତମାନେ କେକୟ ରାଜଧାନୀରେ ପ୍ରବିଷ୍ଟ ସେହି ରାତ୍ରିରେ କେବଳ ଭରତ ଦୁଃସ୍ୱପ୍ନ ଦେଖି କ୍ଷୁଭିତ ଥିଲେ । ପରଦିନ ଦୂତମାନେ ରାଜଦର୍ଶନ କରି ଭରତଙ୍କୁ ଶୀଘ୍ର ଆସିବା ପାଇଁ ବଶିଷ୍ଠ– ଆଦେଶ ଜଣାଇଲେ ଏବଂ ମହାମୂଲ୍ୟ ବସ୍ତ୍ରାଦି ତଦୀୟ ମାତୁଳଙ୍କ ସକାଶେ ସମର୍ପଣ କଲେ । (୨)

ଭରତ ଶତ୍ରୁଘ୍ନଙ୍କର ସହିତ କେକୟ ନଗରରୁ ପ୍ରସ୍ଥାନ କରି ମାର୍ଗରେ ସାତରାତ୍ରି ଅତିବାହିତ କଲାପରେ ଉଦୟବେଳାରେ ଅଯୋଧ୍ୟାରେ ପ୍ରବିଷ୍ଟ ହେଲେ । (୩)

ଏ ସ୍ଥଳେ ଭରତଙ୍କ ପରିଦୃଷ୍ଟ (ଦୂତଙ୍କ ପ୍ରତି ପରିପୃଷ୍ଟ ?) ଅଯୋଧ୍ୟା ନଗରୀର ବହୁତ ଲକ୍ଷଣ ଲେଖାଅଛି । ଭରତ ପ୍ରଥମେ ପିତାଙ୍କ ସଦନରେ ତାଙ୍କୁ ନ ଦେଖି ମାତାଙ୍କଠାକୁ ଗଲେ । କୁଶଳ ପ୍ରଶ୍ନାଦି ପରେ ସେ ମାତାଙ୍କ ମୁଖରୁ ପିତାଙ୍କ ମରଣ ଶୁଣି ବିଳାପରେ ଶ୍ରୀରାମ ଦର୍ଶନ ଦିଦୃକ୍ଷାରେ ତଦୀୟ କୁଶଳାବସ୍ଥାନ ପ୍ରଶ୍ନ କଲେ । ତେତେବେଳେ

---

(୧) ଏହି ସିଦ୍ଧାର୍ଥ ବିଜୟ ଜୟନ୍ତାଶୋକ ନନ୍ଦନ
ଶ୍ରୂୟତାମିତି କର୍ତ୍ତବ୍ୟଂ ସର୍ବାନେବ ବ୍ରବିମି ବଃ । ୬୮ ସ. ୫ ଶ୍ଳୋ
ସିଦ୍ଧାର୍ଥବିଜୟଜୟନ୍ତାଶୋକାଖ୍ୟାମନ୍ତ୍ରି ସମାନନାମାନୋ ଦୂତାଃ ନତୁ ମନ୍ତ୍ରିଣଃ । ମନ୍ତ୍ରୀ ବ୍ୟତିରିକ୍ତ ନନ୍ଦନଶବ୍ଦସହପାଠାତ୍ ଇତି ଗୋବିନ୍ଦରାଜୀୟେ ।

(୨) ପୁରୋହିତସ୍ତ୍ୱାଂ କୁଶଳଂ ପ୍ରାହ ସର୍ବେଚ ମନ୍ତ୍ରିଣଃ । ତ୍ୱରମାଣୋ ନିର୍ଯାହି କୃତ୍ୟମାତ୍ୟୟିକଂ ତ୍ୱୟା । ଇମାନି ଚ ମହାର୍ହାଣିବସ୍ତ୍ରାନ୍ୟାଭରଣାନିଚ । ପ୍ରତିଗୃହ୍ୟ ବିଶାଳାକ୍ଷ ମାତୁଳସ୍ୟ ଚ ଦାପୟ । ୪ × × ଇତି ୭୦ ସ. ୩, ୪ ଶ୍ଳୋ

(୩) ଭରତଃ କ୍ଷୀପ୍ରମାଗଚ୍ଛତ୍ ସୁପରିଶ୍ରାନ୍ତବାହନଃ
ବନଂ ଚ ସମତୀତ୍ୟାଶୁ ଶର୍ବର୍ଯାମରୁଣୋଦୟେ ।
ଅଯୋଧ୍ୟାଂ ମନୁନା ରାଜ୍ଞା ନିର୍ମିତାଂ ସଂ ଦଦର୍ଶ ହ
ତାଂ ପୁରିଂ ପୁରୁଷବ୍ୟାଘ୍ରଃ ସପ୍ତରାତ୍ରୋଷିତଃ ପଥି । ୭୧ସ ୧୭, ୧୮ ଶ୍ଳୋ

ପୁଣି ଭରତ କହିଲେ ବର୍ତ୍ତମାନ ଶ୍ରୀରାମ କେବଳ ମୋର ପିତୃ ସ୍ଥାନୀୟ (୧) କିନ୍ତୁ କୈକେୟୀ ତାଙ୍କୁ ରାମଙ୍କ ସମ୍ବାଦ ସହସା ଗଳ୍ପ କ୍ରମେ ନ କହି ବୋଇଲେକି ତୁମ ପିତା ହା ରାମ ହା ରାମ କହି କହି ପ୍ରାଣତ୍ୟାଗ କଲେ । ଏପରି ଦୁଇ ଚାରିକଥା କହି ପରେ ବୋଇଲେ ଯେ ସେ ପୁଣି ପ୍ରତ୍ୟାବୃତ୍ତ ହେଲେ ତୁମ ସଙ୍ଗେ ପ୍ରଜାମାନେ ମଧ୍ୟ ସିଦ୍ଧାର୍ଥ ହେବେ । (୨)

ଭରତ ଏତକ ଶୁଣି ଚମକି ପଡ଼ି ବୋଇଲେ, ସେ କେଉଁଠି ଅଛନ୍ତି କି ? ତଦା କୈକୟୀ ଯଥାଘଟିତ ବୃତ୍ତାନ୍ତ ଜଣାଇଦେଲେ । ଭରତ ଏହି ଦୁଃସମ୍ବାଦକୁ ଘୋରତର ମଣି ମାତାଙ୍କୁ ବହୁ ନିନ୍ଦାକରି ଉଚ୍ଚବିଳାପ କଲେ ।(୩)

ପରେ ଭରତ କୈକେୟୀଙ୍କୁ ବହୁ ଭର୍ତ୍ସନାପୂର୍ବକ (୪) ରାମୈକପୁତ୍ରା କୌଶଲ୍ୟାଙ୍କୁ ଏହି ଘୋର ଦୁଃଖ ଦେଇଅଛ ବୋଲି ପୁରା ସୁରଭୀ ନିଜ ପୁତ୍ରଙ୍କୁ ଭାରବାହକ ଦେଖି ଇନ୍ଦ୍ରଙ୍କଠାରେ ପୁତ୍ର ଦୁଃଖ ପ୍ରକାଶ କରିଥିବା ପୌରାଣିକ ଚରିତକୁ ବୁଝାଇ ଅଛନ୍ତି ।(୫)

---

(୧) ଯୋମେ ଭ୍ରାତା ପିତା ବନ୍ଧୁଃ ଯସ୍ୟ ଦାସୋଽସ୍ମି ଧୀମତଃ
ତସ୍ୟ ମାଂ ଶୀଘ୍ରମାଖ୍ୟାହି ରାମସ୍ୟାକ୍ଳିଷ୍ଟ କର୍ମଣଃ ।
ପିତାହି ଭବତି ଜ୍ୟେଷ୍ଠଃ ଧର୍ମମାର୍ଯସ୍ୟ ଜାନତଃ
ତସ୍ୟ ପାଦୌ ଗ୍ରହିଷ୍ୟାମି ସହାଦାନୀଂ ଗତିର୍ମମ. ୭୨. ସ. ୩୨, ୩୩ ଶ୍ଳୋ

(୨) ସିଦ୍ଧାର୍ଥାସ୍ତୁ ନରା ରାମମାଗତଂ ସୀତୟାସହ
ଲକ୍ଷ୍ମଣଂ ଚ ମହାବାହୁଂ ଦ୍ରକ୍ଷନ୍ତି ପୁନରାଗତଂ । ୭୨ ସ. ୩୮ ଶ୍ଳୋ

(୩) ଇତ୍ୟେବମୁକ୍ତ୍ୱା ଭରତୋ ମହାତ୍ମା ପ୍ରିୟେତରୈର୍ବାକ୍ୟଗଣୈସ୍ତୁଦଂସ୍ତାମ୍
ଶୋକାତୁରଶ୍ଚାପି ନନାଦ ଭୂୟଃ ସିଂହୋ ଯଥା ମନ୍ଦରକନ୍ଦରସ୍ଥଃ. ଇତି ୭୩ସ. ୨୮ ଶ୍ଳୋ

(୪) ରାଜ୍ୟାଦ୍ ଭ୍ରଂଶସ୍ୱ କୈକେୟି ! ନୃଶଂସେ ଦୁଷ୍ଟଚାରିଣି
ପରିତ୍ୟକ୍ତାସି ଧର୍ମେଣ ମା ମୃତଂ ରୁଦତୀ ଭବ ... ୨. × ×
ଭ୍ରୂଣହତ୍ୟାମସି ପ୍ରାପ୍ତା କୁଳସ୍ୟାସ୍ୟ ବିନାଶନାଦ୍
କୈକେୟି ନରକଂ ଗଚ୍ଛ ମା ଚଭର୍ତୁଃ ସଲୋକତାଂ ୪ × ×
ମାତୃ ରୂପେ ମମାମିତ୍ରେ ନୃଶଂସେ ରାଜ୍ୟ କାମୁକେ
ନତେ ଽହମଭିଭାଷ୍ୟୋଽସ୍ମି ଦୁର୍ବୃତ୍ତେ ପତିଘାତିନି ୭. × ×
ନତ୍ୱମଶ୍ୱପତେଃ କନ୍ୟା ଧର୍ମରାଜସ୍ୟ ଧୀମତଃ
ରାକ୍ଷସୀ ତତ୍ର ଜାତାସି କୁଳପ୍ରଧ୍ୱଂସିନୀ ପିତୁଃ । ୯. ଇତି ୭୪ସ. ୨-୯ ଶ୍ଳୋ.

(୫) ୭୪ ସର୍ଗ ପାଠ କରନ୍ତୁ ।

ଭରତ ବିଳାପ କରି କରି ମୋହିତ ହୋଇ ପଡ଼ିଲାରୁ (୧) ତଦୀୟ ବିଳାପ ଶବ୍ଦ ଶୁଣି କୌଶଲ୍ୟା ଦେବୀ ସୁମିତ୍ରାଙ୍କ ସହ ଆସୁ ଅଛନ୍ତି । ଏଣେ ଭରତ ଶତ୍ରୁଘ୍ନଙ୍କୁ ସଙ୍ଗେ ଧରି ତଦୀୟ ପାଦ ବନ୍ଦନାର୍ଥ ଗଲେ । କୌଶଲ୍ୟା ପ୍ରଗାଢ଼ ଦୁଃଖରେ ଭରତଙ୍କୁ କହିଲେ, କୈକେୟୀ ମୋତେ ଶ୍ରୀରାମଙ୍କଠାକୁ ପଠାଇ ଦେଉ ତା ନହେଲେ ମୁ ନିଜେ ସୁମିତ୍ରାଙ୍କୁ ଧରି ମୋର ଦୁଃଖହରା ସୁଖପସରା ରାମ ଯେଉଁଠି ଅଛି ମୁଁ ସେଠାକୁ ବାହାରି ଯିବି । (୨)

ଭରତ କୌଶଲ୍ୟାଙ୍କର ଏଭଳି କଠିନ ବଚନ ଶୁଣି ତଦୀୟ ପାଦ ଯୁଗଳରେ ବିମୋହିତ (ହୋଇ) ପଡ଼ିଲେ । ଯାହାର ଅଭିମତରେ ଆର୍ଯ୍ୟ ନିର୍ବାସିତ ହୋଇଅଛନ୍ତି, ସେ ବହୁବିଧ ନିରୟପ୍ରାପ୍ତ ହୁଅନ୍ତୁ ବୋଲି ଷଟ୍‌ତ୍ରିଂଶ ଗୋଟି ବାକ୍ୟରେ ବହୁବିଧ ଶପଥ ପ୍ରଦର୍ଶାଇଅଛନ୍ତି । ମୋର ଅତିରିକ୍ତ ଦୁଃଖ (୩) ହେଉଅଛି । ଏପରି ଶପଥ କରନାହିଁ – ଏହା କହି କୌଶଲ୍ୟାଦେବୀ ଭରତଙ୍କୁ କୋଳରେ ଧରି ଆଶ୍ୱାସିତ କଲେ । ସେ ଦୁହିଙ୍କର ଏତାଦୃଶ ଦୁଃଖାଭିନୟରେ ରାତ୍ରି ସମାଗତ ହେଲା । ଭରତାଗମନର ପ୍ରଥମ ଦିବସ ଅବସାନ ହେଲା । ତାର ପରଦିନଠାରୁ ଭରତ ପିତାଙ୍କ ଅନ୍ତ୍ୟେଷ୍ଟି କ୍ରିୟାକୁ ବହୁ ବିଳାପପୂର୍ବକ ଆରମ୍ଭ କରି କ୍ରମଶଃ ଦ୍ୱାଦଶ ତ୍ରୟୋଦଶ ଦିବସର ଶ୍ରାଦ୍ଧ କାର୍ଯ୍ୟ ସମ୍ପନ୍ନ କଲେ । ଯଦା ସାନୁଜ ଭରତ ନିତାନ୍ତ ଶୋକାଭିସନ୍ତପ୍ତ ଅଛନ୍ତି ତଦା କ୍ରୂରମନ୍ତ୍ରଣା କୁବ୍ଜା ସାଳଂକରଣ ଓ ସପ୍ରସାଧନ ଗାତ୍ରରେ ରାଜଦ୍ୱାରରେ ଦଣ୍ଡାୟମାନା ସଦୃଶା ହେଲେ । ଶତ୍ରୁଘ୍ନ ତାଙ୍କୁ ବହୁ ଦଣ୍ଡ ବିଧାନ କଲାରୁ କୈକେୟୀ ଭୀତ ଭୀତ ହୃଦୟରେ ଭରତଙ୍କର ଶରଣାପନ୍ନ ହେଲେ । ଭରତ ଶତ୍ରୁଘ୍ନଙ୍କୁ ସ୍ତ୍ରୀ ଅବଧ୍ୟା କହି ନିବାରଣ କଲେ ଏବଂ କହିଲେ ଭାଇ ଶତ୍ରୁଘ୍ନ ! ଯଦି ଚ ଧର୍ମାତ୍ମା ରାମଚନ୍ଦ୍ର ଏହା ଜାଣନ୍ତି, ତେବେ ଆମ୍ଭମାନଙ୍କୁ କଥା ସୁଦ୍ଧା କହିବେ ନାହିଁ । ଏ ଭୟ ନ ଥିଲେ ମୁ ନିଶ୍ଚେ ଦୁଷ୍ଟାଚାରିଣୀ କୈକେୟୀଙ୍କୁ ନିହତ କରିଥାଆନ୍ତି । (୪)

---

(୧) ବଭୂବ ଭୂମୌ ପତିତୋ ନୃପାତ୍ମଜଃ ଶଚୀପତେଃ କେତୁରିବୋତ୍ସବକ୍ଷୟେ ଇତି. ୭୪ ସ. ୩୬ ଶ୍ଳୋ

(୨) କ୍ଷିପ୍ରଂମାମପି କୈକେୟୀ ପ୍ରସ୍ଥାପୟିତୁମର୍ହତି
ହିରଣ୍ୟନାଭୋ ଯତ୍ରାସ୍ତେ ସୁତା ମେ ସୁମହାଯଶାଃ
ଅଥବା ସ୍ୱୟମେବାହଂ ସୁମିତ୍ରାନୁଚରା ସୁଖମ୍
ଅଗ୍ନି ହୋତ୍ରଂ ପୁରସ୍କୃତ୍ୟ ପ୍ରସ୍ଥାସ୍ୟେ ଯତ୍ର ରାଘବଃ. ଇତି ୭୫ ସ.୧୩,୧୪ ଶ୍ଳୋ

(୩) ପ୍ରୈଷ୍ୟଂ ପାପୀୟସାଂ ଯାତୁ ସୂର୍ଯ୍ୟଂ ଚ ପ୍ରତି ମେହତୁ
ହନ୍ତୁଂ ପାଦେନ ଗା ସୁପ୍ତା ଯସ୍ୟାର୍ଯୋ ନୁମତେ ଗତଃ ଇତି. ୭୫ ସ. ୨୨-୫ ଶ୍ଳୋ
ଅଗ୍ନିହୋତ୍ରସ୍ୟ ଜ୍ୟେଷ୍ଠଭାର୍ଯ୍ୟାଧୀନତ୍ୱାଦ୍ ଦଶରଥେନ ଭରତସଂସ୍କାର
ପ୍ରତି ସେଧାଚ୍ଛେତି ଭାବଃ । ଏତେନ ରାଜଶରୀର ପ୍ରାପଣମପ୍ୟର୍ଥ ସିଦ୍ଧଂ । ଇତି ଗୋବିନ୍ଦରାଜୀୟ ଟୀକାୟାଂ

(୪) ହନ୍ୟାମହ ମିମାଂ ପାପାଂ କୈକେୟୀଂ ଦୁଷ୍ଟଚାରିଣୀଂ
ଯଦି ମାଂ ଧାର୍ମିକୋରାମଃ ନାସୂୟେଦ୍ ମାତୃଘାତକଂ .୨୨
ଇମାମପି ହତାଂ କୁବ୍ଜାଂ ଯଦି ଜାନାତି ରାଘବଃ
ତ୍ୱାଂ ଚ ମାଂ ଚୈବ ଧର୍ମାତ୍ମା ନାଭିଭାଷିଷ୍ୟତେ ଧ୍ରୁବଂ । ୨୩. ଇତି ୭୮ସ. ୨୨, ୨୩ ଶ୍ଳୋ

ଅନ୍ତ୍ୟେଷ୍ଟି ସମାପନାନ୍ତର ଚତୁର୍ଦ୍ଦଶ ଦିବସରେ ରାଜକର୍ମଚାରୀମାନେ ଭରତଙ୍କୁ ରାଜ୍ୟରେ ଅଭିଷିକ୍ତ ହେବା ପାଇଁ ବୀନିତ ଅନୁରୋଧ କଲେ । ଭରତ ବୋଇଲେ ଏପରି ଆଉ କେବେ କେହି କହନାହିଁ । ଶ୍ରୀରାମଚନ୍ଦ୍ର କେବଳ ରାଜା ହେବେ । ମୁ ବନକୁ ଯିବି । ରାମଙ୍କୁ ସଙ୍ଗେ ଆଣିବି । ଆଟବିକ ମାର୍ଗ ପରିଷ୍କାର କରାଅ । ଇତ୍ୟାଦି ।

ଶ୍ରୀମାନ୍ ବଳରାମ ଦାସେ ଏସବୁ ଘଟଣାନ୍ତ ପ୍ରଧାନ ପ୍ରଧାନ ବିବରଣ କେବଳ ସାମାସିକ କ୍ରମରେ ପ୍ରକାଶ କରି ଅଛନ୍ତି । ସେ ଦୂତମାନଙ୍କର କେତେକ ମାତ୍ର ମୌଳିକ ନାମ ଦେଇ ଅଛନ୍ତି । ମାତ୍ର ଦଶରଥଙ୍କ ମରଣର ତୃତୀୟ ଦିବସରେ ଭରତ ଦୁଃସ୍ୱପ୍ନ ଦେଖିଥିବାର ଲେଖିଅଛନ୍ତି । (୧)

ଏହା ସଙ୍ଗତ ବୋଧ ହେଉ ନାହିଁ । ସମୟ ସନ୍ନିଧାନ ପ୍ରକରଣରେ ଏହାର ସମାଧା ପାଇପାରିବେ । ଭରତ ଅଯୋଧ୍ୟାରେ ପ୍ରବିଷ୍ଟ ହେଲାପରେ କୈକେୟୀଙ୍କୁ ଯେ ନିନ୍ଦା ଭର୍ତ୍ସନା କରିଅଛନ୍ତି, ତାହା ମୂଳ ଅପେକ୍ଷା ସ୍ୱତନ୍ତ୍ର ଓ ସଂକ୍ଷିପ୍ତ ଅଟେ । (୨)

ସୁତରାଂ ଏଥିରେ ବଶିଷ୍ଠଙ୍କ ଆହୂତ ସଭା ଏବଂ ଭରତଙ୍କ କଥିତ ସୁରଭୀଙ୍କର ପୁତ୍ର ଶୋକ କଥା ଏଥିରେ ଆଦୌ ଉକ୍ତ ନାହିଁ । ମୂଳଗ୍ରନ୍ଥରେ ରାମଙ୍କ ନିର୍ବାସନର କଥା ଶୁଣିଲା କ୍ଷଣି ଭରତଙ୍କର ଯେ ଅମିତ ଅସହ୍ୟ ଦୁଃଖସନ୍ତପ୍ତତା ଓ ପ୍ରାଣର ବ୍ୟାକୁଳତା ଏଥିରେ କେତେକ ପ୍ରସ୍ଫୁଟିତ ବୋଧ ହେଉନାହିଁ । ଭରତଙ୍କର କରୁଣୋକ୍ତି ତେତେ ହୃଦୟସ୍ପର୍ଶୀ ଜଣାଯାଉ ନାହିଁ । ଯାହା କିଛି ଲେଖାଅଛି ତାହାର ସୂଚନା ମାତ୍ର କୈକେୟୀ ଭରତଙ୍କ କ୍ରୋଧ ଜାଣିପାରି କଞ୍ଚୀକବାଟ କିଳି ପ୍ରକୋଷ୍ଠ ମଧରେ ଲୁଚିରହିଲେ ଏବଂ ଭରତ ଆପେ ମନ୍ଥରାକୁ ନିହତ କରିବା ପାଇଁ ଆଦେଶ ଦେଲାରୁ ତତ୍ ପ୍ରତିରୋଧକ ଦେବତାମାନଙ୍କଦ୍ୱାରା ପ୍ରଣୋଦିତା ଶାରଦାଦେବୀ ଶତ୍ରୁଘ୍ନଙ୍କ ହୃଦୟରେ ବସି ତଦୀୟ ମୁଖରେ ସ୍ତ୍ରୀ ବଧ ନିଷେଧ, ଏହା କୁହାଇଥିଲେ ବୋଲି ଲେଖାଅଛି । (୩) ତଥାପି କୁବ୍ଜା ମୁଣ୍ଡନ ଦଣ୍ଡନରେ ଦଣ୍ଡିତା ଥିବା ମଧ ଲେଖାଅଛି । ଭରତ କୌଶଲ୍ୟାଙ୍କ ନିକଟରେ ରାମଙ୍କ ପ୍ରତି ମୋର ମାୟା ବା କପଟ ନାହିଁ ବୋଲି ବହୁ ଧର୍ମନୀତି ମୂଳକ ଶପଥମାନ କରିଥିବାର ଦାସେ ଲେଖିଅଛନ୍ତି ସତ୍ୟ ତଥାପି ସେ ସବୁ ସର୍ବତ୍ର ମୌଳିକ ଭାବ ଦ୍ୟୋତକ ନୁହେ । କେତେକ ସ୍ଥଳରେ ମାତ୍ର ମୌଳିକ ଶପଥରେ ନିହିତ ବିଷୟ ଏଥିରେ ସମନ୍ୱିତ ହୋଇ ଯାଇଅଛି । (୪)

---

(୧) ସିଦ୍ଧାର୍ଥ ଜୟନ୍ତ ଯେ ଅଶୋକ ନାମ ଧରି । ଆସଆସ ଯା ବୋଲି କହନ୍ତି ଉପଚାରୀ ।
ଛାପା ପୁସ୍ତକରେ ସିଦ୍ଧାର୍ଥ ପଦକୁ ସିଦ୍ଧାନ୍ତ କରିଅଛନ୍ତି । ୭୪
ଦଶରଥ ମଲାର ହୋଇଲା ତିନିଦିନ । ରାତ୍ରିକାଳେ ଭରତ ଯେ ଦେଖିଲେ ସ୍ୱପନ । ୭୪ ପୃ

(୨) ଛାପାପୁସ୍ତକରେ ୭୮ ପୃଷ୍ଠା ଦେଖନ୍ତୁ

(୩) ଛାପାପୁସ୍ତକରେ ୭୮ ପୃଷ୍ଠା ଦେଖନ୍ତୁ

(୪) ଏସବୁ ଛାପା ପୁସ୍ତକରେ ୭୯, ୮୦ ପୃଷ୍ଠାରେ ୪୪ ଗୋଟି ପଦ୍ୟରେ ବର୍ଣ୍ଣିତ ଅଛି ।

ଅନ୍ତ୍ୟେଷ୍ଟି କାର୍ଯ୍ୟ ପରେ ତ୍ରୟୋଦଶ ଦିବସରେ ବଶିଷ୍ଠାଦି ଭରତଙ୍କୁ ଅଭିଷେକାର୍ଥ ଅନୁରୋଧିଥିବା, ଭରତ ପୁଣି ଏଥିପାଇଁ ଆପେ ଏକାନ୍ତ ଅନୁପଯୁକ୍ତ ବୋଲି ଅନେକ ଗୁଡ଼ିଏ ନିକୃଷ୍ଟ ଦୃଷ୍ଟାନ୍ତ ପ୍ରଦର୍ଶାଇ ରାମାନୟନାର୍ଥ ପ୍ରୋଦ୍ୟୁକ୍ତ ହେବା ଲେଖାଅଛି । (୧)

ଅତଃପର ଅଶୀତିତମାଧାୟଠାରୁ ତ୍ରୟୋଦଶୋତ୍ତରଶତତମ ସର୍ଗ ପର୍ଯ୍ୟନ୍ତ ଚତୁସ୍ତ୍ରିଂଶତି ଗୋଟି ସର୍ଗରେ ଶ୍ରୀରାମାନୟନାର୍ଥ ଭରତଙ୍କର ବନ ପ୍ରସ୍ଥାନ, ତତ୍ର କେତେକ ଦିନ ଅବସ୍ଥାନ କଲାପରେ ଅଯୋଧ୍ୟା ପ୍ରତି ପୁନରାଗମନ, ଏହି ଉଭୟ ଘଟନାମଧ୍ୟସ୍ଥ କଥାମାନ ଲେଖାଅଛି । ଭରତଙ୍କ ଆଦେଶ ମାତ୍ରେ ଶିଳ୍ପିଗଣ ମାର୍ଗ ସମୀକରଣ ଓ ଅଳଙ୍କରଣରେ ବ୍ୟାପୃତ ହେଲେ । ପିତାଙ୍କ ଅନ୍ତ୍ୟେଷ୍ଟ୍ୟର୍ଥ ଚତୁର୍ଦ୍ଦଶ ଦିବସର ପରଦିନ ପ୍ରତ୍ୟୁଷରୁ ବନ୍ଦୀବୃନ୍ଦ ଦୁନ୍ଦୁଭିବାଦନ ପରେ ରାଜସ୍ତୁତି ପାଠ କଲାରୁ ଭରତ ମର୍ମାହତ ପ୍ରାୟ ଦୁଃଖ ପ୍ରକାଶନରେ ସେମାନଙ୍କୁ ନିବାରିତ କରି ମୁ ରାଜା ନୁହେ, ଏହା ବୁଝାଇ ଦେଇଥିଲେ ଏବଂ ନିରାଲମ୍ବା ରାଜଲକ୍ଷ୍ମୀ ଆଉ ଶ୍ରୀରାମଙ୍କର ଉଦ୍ଦେଶ୍ୟରେ ବିଳାପ କରିଥିଲେ । (୨)

ଏହାପରେ ବଶିଷ୍ଠ ସଭାରେ ଭରତଙ୍କୁ ରାଜା ହେବା ପାଇଁ ସାଦରେ ଅନୁରୋଧ କଲେ । କିନ୍ତୁ ଭରତ ସର୍ବ ସମକ୍ଷରେ ରାମ ସ୍ମରଣ ପୂର୍ବକ କ୍ରନ୍ଦନ କରି ନ୍ୟାୟତଃ ମୁଁ ରାଜା ହେବାକୁ ଯୋଗ୍ୟ ନୁହେ, ରାମଙ୍କ ଆନୟନାର୍ଥ ମୁଁ ଯାଉଅଛି, ଶୀଘ୍ର ଯାତ୍ରାର ଯୋଗାଡ଼ କରାଯାଉ, ଏସବୁ କହିଲେ । ମାତୃଗଣସମେତ ଭରତଙ୍କ ଯାତରେ ନାନା ରକମ ଶିଳ୍ପୀ ଆଉ ଅନ୍ୟାନ୍ୟ କାର୍ଯ୍ୟକାରୀ ବ୍ୟକ୍ତିମାନେ ଯାଇଥିଲେ । ତାହାର ସୂଚନା ଏହି ପୁରୋହିତ, ମନ୍ତ୍ରିଗଣ, ଗଜବାଜି, ରଥ ପ୍ରକର, ଧନ୍ୱୀନିକର, ଅଶ୍ୱାରୋହି ସିପାହିଗଣ, ଆର୍ଯ୍ୟବର୍ଗ, ନାଗରିକ ଜନମାନେ, ନୈଗମଗଣ, ମଣିକାର ବା ମଣିସଂସ୍କାରକ, ତନ୍ତୁବାୟଗଣ, ଶସ୍ତ୍ରୋପଜୀବୀ ବା ଶସ୍ତ୍ରକାରଗଣ, ମାୟରିକ ବା ମୟୂର ପିଞ୍ଛରେ ବ୍ୟଜନାଦିକାରୀମାନେ, କ୍ରାକଚିକ ଅର୍ଥାତ୍ କ୍ରକଚାସ୍ତ୍ରରେ ଚନ୍ଦନାଦି ଦାରୁ ଦଳନକାରିଗଣ, ବେଧକ ଅର୍ଥାତ୍ ଦାରୁ ଓ ରତ୍ନାଦିର ରନ୍ଧ୍ରକାରୀଗଣ, ରୋଚକ ଅର୍ଥାତ୍ ଦନ୍ତକୁଡ୍ୟ ଓ ଗୃହାଦିରେ କାନ୍ତି ଉତ୍ପାଦକ ବ୍ୟକ୍ତି ଗଣ, ସୁଧାକାର ବା ପ୍ରାସାଦାଦିରେ ଚୂର୍ଣ୍ଣ ଲେପନ କର୍ମକାରୀ, ଗନ୍ଧୋପଜୀବୀ ଅର୍ଥାତ୍ ଯେଉଁମାନେ ଚନ୍ଦନ, କସ୍ତୁରୀ, କର୍ପୂର, କୁଙ୍କୁମାଦି ସୁଗନ୍ଧଦ୍ରବ୍ୟ ବିକ୍ରୟ କରନ୍ତି, ସ୍ୱର୍ଣ୍ଣକାର, କମ୍ବଳକାର ବା କମ୍ବଳ ଧାବକ ଅର୍ଥାତ୍ କମ୍ବଳପତ୍ରସୋଧକ ବ୍ୟକ୍ତିଗଣ, ସ୍ନାପକ ଅର୍ଥାତ୍ ଯେଉଁମାନେ ତୈଳାଭ୍ୟଙ୍ଗାଦି ପୂର୍ବକ ସ୍ନାନ କରାନ୍ତି, ଉଷ୍ଣୋଦକ ବା ଅଙ୍ଗମର୍ଦ୍ଦକ ଭୃତ୍ୟଗଣ, ଦନ୍ତାକାର ଅର୍ଥାତ୍ ଯେଉଁ ମାନେ

(୧) ଛାପା ପୁସ୍ତକରେ ୮୩ ପୃଷ୍ଠା ଦେଖନ୍ତୁ ।
(୨) ମୂଳ ଅଯୋଧ୍ୟା କାଣ୍ଡ ଏକାଶୀତିତମ ସର୍ଗ ଦେଖନ୍ତୁ ।

ଦନ୍ତରେ ପୁତ୍ତଳିକା ପାଠ ଶିବନାଦିର କାର୍ଯ୍ୟ କରନ୍ତି, ଧୂପକ ବା ଗୃହାଦିରେ ଧୂପବାସକ ଭୃତ୍ୟଗଣ, ତୁନ୍ନବାୟ, ବାସୌଚିକ୍‌ଗଣ, ଶୌଣ୍ଡିକ, ରଜକ, ବୈଦ୍ୟ, ଗ୍ରାମାଧିପତି, ଘୋଷାଧିପତି ନିକର, କୈବର୍ତ୍ତକଗଣ, ବେଦ୍‌ବିଦ୍ ବ୍ରାହ୍ମଣ ପ୍ରଭୃତି ଦ୍ୱିଜାତିଗଣ ଏବଂ ସସ୍ତ୍ରୀକ ଶୈଳୂଷ ପ୍ରଭୃତି ଭରତଙ୍କର ବନଯାତ୍ରାର ଅନୁଯାତ୍ରୀ ଥିଲେ । ସାନୁଯାତ୍ରୀକ ଭରତ ପ୍ରଥମ ଦିନ ପ୍ରଥମାବସଥ ଶୃଙ୍ଗବେର ପୁରରେ ବିଶ୍ରାମ କଲେ । (୧) ତତ୍ରତ୍ୟ ରାଜା ଗୁହ ପ୍ରଥମେ ଭରତଙ୍କୁ ରାମନିଧନ ଓ ସ୍ୱୀୟବନ୍ଧନ ଅର୍ଥେ ଆଗତ ମଣି ଭୀତ ଥିଲେ, ପରେ ସେ ବହୁ ଉପହାର ସହ ଭରତଙ୍କୁ ଭେଟିଲାରୁ ସୁମନ୍ତ ତାହାଙ୍କୁ ଚିହ୍ନାଇ ଦେଲେ । ଦାସଗଣାନୁରତ ଗୁହ ଜଣାଇଲେ, ହେ ରାମାନୁଜ ! ମୁଁ ଆପଣଙ୍କୁ ଚିତ୍ରକୂଟର ଗନ୍ତବ୍ୟ ମାର୍ଗ ଦର୍ଶାଇ ଦେବି । ରାମଙ୍କ ଉଦ୍ଦେଶରେ ଭରତ ଶୋକସନ୍ତପ୍ତ ହେଲାରୁ ଶୃଙ୍ଗବେରାଧିପ ଆଶ୍ୱାସିତ କଲେ । ଗୁହ ତଥାଚ ଗୂଢ଼ପରାକ୍ରମ ଭରତଙ୍କର ଏତାଦୃଶ ସମାଳାପରେ ସାୟଂ ଉପସ୍ଥିତ ହେଲା । (୨)

ତାପରେ ନିଷାଦାଧିପ ଇତଃ ପୂର୍ବେ ଲକ୍ଷ୍ମଣ ରାତିରେ ନିଜେ ଜାଗରୁକ ରହିବା ପାଇଁ ତାହାଙ୍କୁ ଯାହା ଯାହା କହିଥିଲେ ତଥାଚ ତତ୍ର ସେ ଦୁଇ ଭ୍ରାତାଙ୍କର ଜଟାବନ୍ଧନ ବାର୍ତ୍ତା ଶୁଣିଲାକ୍ଷଣି ଧରଣୀରେ ମୋହିତ ହୋଇ ପଡ଼ିଲେ । କୌଶଲ୍ୟା ଧାଇଁ ଆସି ଆଶ୍ୱାସିତ କଲେ । ତଦା ଭରତ ଗୁହଙ୍କୁ ଜିଜ୍ଞାସା କଲେ ସାନୁଜ ସଭାର୍ଯ ଆର୍ଯ କେଉଁଠି କଣ ଖାଇ ଶୟନ କଲେ (୩) ଗୁହ ତାଙ୍କୁ ସମସ୍ତ ଜଣାଇଲେ । ଭରତ ଶ୍ରୀରାମଙ୍କ ଅଧ୍ୟୁଷିତ ଶଯ୍ୟା ଦେଖି ତଦୀୟ ପ୍ରାକ୍ତନ ସୁଖ ଚିନ୍ତନ ପୂର୍ବକ ବହୁ ଶୋକ ପ୍ରକାଶ କଲେ ଏବଂ କହିଲେ, ଅଦ୍ୟ ପ୍ରଭୃତି ମୁଁ ଶ୍ରୀରାମଙ୍କ ଅବସ୍ଥା ଗ୍ରହଣ କଲି । (୪)

ତାପରେ ତପସ୍ୱୀବେଶ ଭରତ ଗୁହଙ୍କ ସହ ଗଙ୍ଗାପାର ହୋଇ ଭରଦ୍ୱାଜାଶ୍ରମକୁ ଗଲେ । ମହର୍ଷି ଭରଦ୍ୱାଜ ରାଜପୁତ୍ରଙ୍କ ଆଳାପ କୁଶଳାଦିରେ ଅଗ୍ନିସଦନରେ ସମାଧିସ୍ଥ ରହି ସାନୁଗ ସପରିବାର ପରିକର – ଭରତଙ୍କର ଅଲୌକିକ ଆତିଥ୍ୟ ସମ୍ଭାର-

---

(୧) ଏ ସ୍ଥଳେ ଭରତ ଭାଗୀରଥିରେ ସ୍ୱର୍ଗତ ପିତାଙ୍କର ଔର୍ଦ୍ଧ୍ୱ ଦେହିକ ଜଳ ପ୍ରଦାନ କରିଥିବା ଲେଖାଅଛି ।
ଦାତୁଂ ଚ ତାବଦିଚ୍ଛାମି ସ୍ୱର୍ଗତସ୍ୟ ମହିପତେଃ ।
ଔର୍ଦ୍ଧ୍ୱ ଦେହ ନିମିତ୍ତାର୍ଥଂ ଅବତୀର୍ଯ୍ୟୋଦକଂ ନଦୀମ୍ । ଇତି ଅ: କା. ୮୩ସ. ୨୪ ଶ୍ଳୋ

(୨) ଜଗୌ ନଷ୍ଟପ୍ରଭ ସୂର୍ଯଃ ରଜନୀ ଚାଭ୍ୟବର୍ତ୍ତତ । ଇତି ୮୬ସ. ୧୪ ଶ୍ଳୋ

(୩) ଭ୍ରାତା ମେ କ୍ୱାବସତରାତୌ କ୍ୱ ସୀତ୍ୱା କ୍ୱ ଚ ଲକ୍ଷ୍ମଣଃ
ଅସ୍ୱପଦ୍ ଶୟନେ କସ୍ମିନ୍ କିଂ ଭୁକ୍ତ୍ୱା ଗୁହ ଶଂସ ମେ । ଇତି ୮୭ସ. ୧୨ ଶ୍ଳୋକ

(୪) ଅଦ୍ୟ ପ୍ରଭୃତି ଭୂମୌ ତୁ ଶୟିଷ୍ୟେଽହଂ ତୃଣେଷୁ ବା
ଫଳମୂଳାଶନୋ ନିତ୍ୟଂ ଜଟାଚୀରାଣି ଧାରୟନ୍ । ଇତ୍ୟାଦି ୮୮ସ. ୨୩ ଶ୍ଳୋ

ସମାଭୋଗର ନିର୍ବାହ ନିମନ୍ତେ ଦେବଗନ୍ଧର୍ବ ଦିଗପାଳ ଅପ୍‌ସରା ପ୍ରଭୃତିଙ୍କୁ ଆହ୍ବାନ ପୂର୍ବକ ଆଦେଶ ଦେଲେ । (୧)

ଭରତ ଭରଦ୍ୱାଜଙ୍କ ତପସ୍ୟା, ସୁଲଭ ଦେବଦୁର୍ଲଭ ଆତିଥ୍ୟପାଇ ସେ ରାତି ସେଠାରେ ଅବସ୍ଥାନ କଲେ । ପରଦିନ ଋଷି ରାଜପୁତ୍ରଙ୍କୁ ଚିତ୍ରକୂଟର ଗନ୍ତବ୍ୟ ମାର୍ଗ ବୁଝାଇ ଦେଲେ । (୨)

ରାଜମହିଷୀମାନେ ଋଷିଙ୍କ ପାଦ ବନ୍ଦନା କଲା ସମୟେ ଭରତ ପ୍ରଥମେ କୌଶଲ୍ୟା ଓ ସୁମିତ୍ରାଙ୍କୁ ଚିହ୍ନାଇ ଦେଇ ଜଣାଇଲେ କି ଯାହାଙ୍କ ହେତୁରୁ ସାନୁଜ ସଭାର୍ଯ୍ୟ ରାମଚନ୍ଦ୍ର ଘୋର ବିପନ୍ନ, ରାଜା ପୁଣି ପୁତ୍ରହୀନ ହୋଇ ପ୍ରାଣତ୍ୟାଗ କରିଅଛନ୍ତି, ସେହି ଆର୍ଯ୍ୟ ରୂପିଣୀ ଅନାର୍ଯ୍ୟା ଏ ମୋର ମାତା ଅଟନ୍ତି ।(୩)

ଭରଦ୍ୱାଜ କହିଲେ, ଏଥିରେ କୈକେୟୀ କିଞ୍ଚିତ୍ ଦୋଷଭାଗିନୀ ନୁହନ୍ତି, ଏହା ଦୈବକୃତ୍ୟ ସୁଖୋଦକ କାର୍ଯ୍ୟ । (୪)

ଭରତ କ୍ରମଶଃ ବନେ ବନେ ଚିତ୍ରକୂଟ ସନ୍ନିହିତ ହେଲେ । ସେ ପୁଣି ଭରଦ୍ୱାଜ ସୂଚିତ ଆରଣ୍ୟକ ଆରୁଣ୍ୟଙ୍କ ଦୃଶ୍ୟର ବର୍ଣ୍ଣନା ବଶିଷ୍ଠଙ୍କୁ କହି କହି ଏହି କେବଳ ବିଚିତ୍ର କୂଟ ଚିତ୍ରକୂଟ ବୋଲି ଜଣାଇଲେ । ଅତ୍ର ଧୂମର ସଂଚାର ଦେଖି ସୈନିକେ ମନେ କଲେ ଏଣେ ରାମ ନିବାସ ଥିବ । ଭରତ କିଂଚିତ୍ ଦୂରରେ ସେନା ସନ୍ନିବେଶିତ କରି ବଶିଷ୍ଠ ଓ ସୁମନ୍ତଙ୍କ ସଙ୍ଗେ ଶ୍ରୀରାମଙ୍କଠାକୁ ପାଦ ବ୍ରଜରେ ଯିବାର ସ୍ଥିର କଲେ । (୫)

---

(୧) ଅଗ୍ନିଶାଲାଂ ପ୍ରବିଶ୍ୟାଥ ପୀତ୍ୱାପଃ ପରିମୃଜ୍ୟ ଚ
ଆତିଥ୍ୟସ୍ୟ କ୍ରିୟାହେତୋଃ ବିଶ୍ୱ କର୍ମାଣମାହ୍ବୟତ୍ । ଇତ୍ୟାଦି ୯୧ସ. ୧୧ ଶ୍ଳୋ

(୨) ଅଯୋଧ୍ୟାକାଣ୍ଡ ୯୨ ସର୍ଗ ଦଶମ ଶ୍ଳୋକଠାରୁ ଦେଖନ୍ତୁ ।

(୩) ଯସ୍ୟାଃ କୃତେ ନରବ୍ୟାଘ୍ରୌ ଜୀବନାଶମିତୋ ଗତୌ
ରାଜା ପୁତ୍ର ବିହୀନଶ୍ଚ ସ୍ୱର୍ଗଂ ଦଶରଥୋ ଗତଃ ୨୪
କ୍ରୋଧନାମକୃତପ୍ରଜ୍ଞାଂ ଦୃପ୍ତାଂ ସୁଭଗମାନିନୀଂ
ଐଶ୍ୱର୍ଯ୍ୟକାମାଂ କୈକେୟୀଂ ଅନାର୍ଯ୍ୟାମାର୍ଯ୍ୟରୂପିଣୀଂ । ୨୫
ମମୈତାଂ ମାତରଂ ବିଦ୍ଧି ନୃଶଂସାଂ ପାପ ନିଶ୍ଚୟାଂ । ୨୬ ଇତି ୯୨ ସର୍ଗେ

(୪) ନ ଦୋଷେଣାବଗନ୍ତବ୍ୟା କୈକେୟୀ ଭରତ ତ୍ୱୟା
ରାମ ପ୍ରବ୍ରାଜନଂ ହ୍ୟେତତ୍ ସୁଖୋଦର୍କଂ ଭବିଷ୍ୟତି ।୩୦।
ଦେବାନାଂ ଦାନବାନାଂ ଚ ଋଷିଣାଂ ଭାବିତାତ୍ମନାଂ
ହିତମେବା ଭବିଷ୍ୟଦ୍ଧି ରାମପ୍ରବ୍ରାଜନାଦିହ । ୩୧. ଇତି ୯୨ ସର୍ଗ

(୫) ଅଯୋଧ୍ୟା କାଣ୍ଡେ ୯୩ ସର୍ଗ ୨୫ ଶ୍ଳୋକ ଦେଖନ୍ତୁ ।

ତେଣେ ରାମଚନ୍ଦ୍ର ବସ୍ୱୌକସାରା ଓ ଭରତଙ୍କୁ ଅପେକ୍ଷା କରି ପ୍ରକୃଷ୍ଟ ଓ ସୁବିସ୍ତୃତ ଚିତ୍ରକୂଟର (୧) ତଥାଚ ତତ୍ର ପ୍ରବାହିତା ମନ୍ଦାକିନୀର ରମଣୀୟତାର ବର୍ଣ୍ଣନାରେ ଜାନକୀଙ୍କର ଚିତ୍ତବିନୋଦ କରୁଅଛନ୍ତି ।

ଏ ସମୟେ ସୈନିକ କୋଳାହଳ ଓ ଉଦ୍ଧୂତ ଧୂଳି ପଟଳ ଦେଖି ନିରୀକ୍ଷଣ କଲେ ଯେ ପାରବାର ପ୍ରତିମ ମହତୀ ସେନା ଆସୁଅଛି, ଲକ୍ଷ୍ମଣ ରାମାଦେଶରେ ବିଶାଳ ଶାଳ ବୃକ୍ଷରୁ ସେନା କଳନା କଲେ ଏବଂ ଜଣାଇଲେ କି ଆର୍ଯ ସନ୍ନଦ୍ଧ ହୁଅନ୍ତୁ, ସୀତାଙ୍କୁ ଗୁହାରେ ପିନଦ୍ଧ ରଖନ୍ତୁ । (୨)

ରାମ କହିଲେ ଭଲକରି ଦେଖ, କାହାରି ସେନା ? ସୌମିତ୍ରୀ କହିଲେ କୋବିଦାର ଧ୍ୱଜ ଦିଶୁଅଛି, ବୋଧହୁଏ, ଭରତ ଆମ୍ଭ ଦୁହିଙ୍କୁ ନିହତ କରିବା ପାଇଁ ଆସୁଅଛନ୍ତି, ମୁଁ ଭରତ ଓ କୈକେୟୀଙ୍କୁ ନିହତ କରିବି ଇତ୍ୟାଦି ।(୩)

ଏହି କାଣ୍ଡର ସପ୍ତନବତିତମ ସର୍ଗଟି ପବିତ୍ର ଭ୍ରାତୃପ୍ରେମର ବିଶୁଦ୍ଧ ଅମୃତ ସରୋବର । ଏଥିରେ ପ୍ରତିଷ୍ଠିତ ସତ୍ ଭ୍ରାତୃତା-ମୂଳକ ପବିତ୍ର ସ୍ନେହ ମୂର୍ତ୍ତିର ଏକ ପାର୍ଶ୍ୱରେ ସ୍ୱର୍ଗୀୟ ମହୋଲ୍ଲାସକର ଅମୃତ ପ୍ରଭାର ଜାଜ୍ୱଲ୍ୟମାନତା ଅପର ପାର୍ଶ୍ୱରେ ହୃଦୟାହ୍ଲାଦକ ବିସ୍ମୃମର ? ମହା ସୌରଭ ବିଦ୍ୟମାନ । ଭରତ ଯେପରି ଅସହ୍ୟ ଦୁଃଖ ଅନୁଭବ କରି ଆସିଅଛନ୍ତି, ରାମଚନ୍ଦ୍ର ତାହା ଅନୁମାନତଃ ଅବିକଳ ଅବଗତ କରିପାରି ଲକ୍ଷ୍ମଣଙ୍କୁ ବୋଇଲେ ଭରତ ମୋତେ ରାଜ୍ୟ ସମର୍ପଣ କରିବାକୁ ଆସୁଅଛନ୍ତି । (୪)

---

(୧) ସମଗ୍ର ଚତୁର୍ନବତି ସର୍ଗଟି ଚିତ୍ରକୂଟ ବର୍ଣ୍ଣନାତ୍ମକ ସମଗ୍ର ପଞ୍ଚନବତିତମ ସର୍ଗଟି ମନ୍ଦାକିନୀ ବର୍ଣ୍ଣନାତ୍ମକ
ବସ୍ୱୌକସାରାଂ ନଳିନୀଂ ଅତୌବୋଉରାନ୍ କୁରୂନ୍
ପର୍ବତଶ୍ଚିତ୍ରକୂଟୋସୌ ବହୁମୂଳଫଳୋଦକଃ ଇତ୍ୟାଦି । ୯୪ ସର୍ଗେ
ବସ୍ୱୌକସାରା ପୂର୍ବଦିଗବସ୍ଥିତା ଶକ୍ରପୁରୀ 'ବସ୍ୱୌକସାରାଶକ୍ରସ୍ୟ ପୂର୍ବସ୍ୟାଂ ଦିଶିସଂସ୍ଥିତା' ଇତି ବିଷ୍ଣୁପୁରାଣବଚନାତ୍ । ଯଦ୍ୱା ବସ୍ୱୌକସାରା କୁବେରପୁରୀ 'ପୁରୀ ବସ୍ୱୌକସାରା ସ୍ୟାଦ୍ ବିମାନଂ ପୁଷ୍ପକୋଽସ୍ତ୍ରିୟାଂ' ଇତି ଯାଦବଃ । ନଳିନୀଂ ମାନସସରସୀଂ ସୌଗନ୍ଧିକାଖ୍ୟସରସୀଂତାବବା ଅତ୍ୟେତୀବ ରମଣୀୟତୟା ଅତିକ୍ରମତି ଇତି ଗୋବିନ୍ଦରାଜୀୟଟୀକାୟାଂ –

(୨) ଅଗ୍ନିଂସଂଶମୟତ୍ୱାର୍ଯ୍ୟ ସୀତାଚ ଭଜତାଂ ଗୁହାଂ
ସଜ୍ଜଂ କୁରୁଷ୍ୱ ଚାପଂଚ ଶରାଂଶ୍ଚ କବଚଂ ତଥା ୯୬ ସ. ୧୪ ଶ୍ଳୋ

(୩) ସଂପ୍ରାପ୍ତୋୟଂମରିବୀର ଭରତୋ ବଧ ଏବ ହି
ଭରତସ୍ୟ ବଧେ ଦୋଷଂ ନାହଂ ପଶ୍ୟାମି ରାଘବ ୨୪ × ×
କୈକେୟୀଂଚ ବଧିଷ୍ୟାମି ସାନୁବନ୍ଧାଂ ସବାନ୍ଧବାଂ
କଳୁଷେଣାଦ୍ୟ ମହତା ମେଦିନୀ ପରିମୁଚ୍ୟତାମ୍ । ୨୮ ଇତ୍ୟାଦି
ଇତି ୯୬ ସର୍ଗେ

(୪) ଅପର ପୃଷ୍ଠରେ ଲେଖାଅଛି ।

ତୁମେ ଅପୁରୁଷ ପରି ଏପରି ପରୁଷ ବଚନ କାହିକି କହୁଅଛ । ଯଦି ଚ ତୁମର ରାଜ୍ୟ ଆବଶ୍ୟକ ତେବେ ମୁଁ ଭରତଙ୍କଠାରୁ ତୁମକୁ ରାଜ୍ୟ ଦିଆଇବି । (୧)

ଲକ୍ଷ୍ମଣ ଏହା ଶୁଣି ନିତାନ୍ତ ଲଜ୍ଜିତ ହେଲେ । ସେ ପୁଣି କହିଲେ, ବୋଧହୁଏ ପିତା ଆପଣଙ୍କୁ ନେବା ପାଇଁ ଆସୁଅଛନ୍ତି । ରାମ କହିଲେ କିନ୍ତୁ ପିତାଙ୍କର ଛତ୍ର ଦିଶୁ ନାହିଁ ଯେ ! ତଦା ଲକ୍ଷ୍ମଣ ସମ୍ୟକ୍ ନିରୀକ୍ଷଣ କରି ରାମଙ୍କୁ ଜଣାଇଲେ, ଆର୍ଯ୍ୟ ! ସେନାଙ୍କ ପ୍ରତି ଭରତ କେବଳ ସର୍ବଥା ଆଦେଶ ଦେଉଅଛନ୍ତି, ତେଣେ ଭରତ ବଶିଷ୍ଠଙ୍କ ସହ ପଦ ବ୍ରଜରେ ଯାଉଁ ଯାଉଁ ଶ୍ରୀରାମଙ୍କ ଦର୍ଶନ ସହବାସାଦିରୁ ଭବିଷ୍ୟମାଣ ସୌଭାଗ୍ୟ ଆଭୋଗର ଆଳପନରେ ଭରଦ୍ୱାଜଙ୍କ କଥିତ ଲକ୍ଷଣାନୁସାରେ ରାମଙ୍କ ନିବାସ ସ୍ଥାନ ଠିକ କରି ନେଲେ । ମାତାମାନଙ୍କୁ ସଙ୍ଗେ ଧରି ଆସିବା ପାଇଁ ଶତ୍ରୁଘନଙ୍କୁ ପଠାଇଲେ । ରାମ ଦର୍ଶନାର୍ଥ ନିତାନ୍ତ ସମୁତ୍କଣ୍ଠିତ ଭରତ ଗୁରୁଙ୍କୁ କିଂଚିଦ୍ ବ୍ୟବଧାନରେ ରଖି ସୁମନ୍ତ୍ର ଓ ଗୁହକଙ୍କ ସହିତ ଯାଇ ଶ୍ରୀରାମଙ୍କର ଚରଣସରୋଜରେ ପତିତ ହେଲେ । (୨)

ରାମ ପାଦଲଗ୍ନ ଭରତଙ୍କୁ ଉଠାଇ ପିତାଙ୍କ କୁଶଳ ପ୍ରଶ୍ନ ସହ ରାଜ କର୍ତ୍ତବ୍ୟ ଓ ରାଜନୀତି ପ୍ରଦର୍ଶାଇ ବନାଗମନର ଜିଜ୍ଞାସା କଲେ । (୩)

ଭରତ କହିଲେ, ପ୍ରଭୋ ! ମୋର ଧର୍ମଜ୍ଞାନ ଓ ରାଜଧର୍ମରେ କି ପ୍ରୟୋଜନ ! ଆପଣ ବନଗାମୀ ହେଲାରୁ ପିତା ସ୍ୱର୍ଗଗାମୀ ହେଲେ । ଆପଣ ଆସି ସିଂହାସନରେ ଅଭିଷିକ୍ତ ହୁଅନ୍ତୁ । ରାମ ପିତୃ ନିଧନ ଶୁଣି ବିଳାପରେ ବିମୋହିତ ହେଲେ । ସମାଶ୍ୱସିତ ସାନୁଜ ସଭାର୍ଯ୍ୟ ଆର୍ଯ୍ୟବର୍ଯ୍ୟ ଦାଶରଥି କଷ୍ଟେକଷ୍ଟେ ରୁଦ୍ଧବେଗ ନୟନଧାରା ସହ ମନ୍ଦାକିନୀ ଧାରାରେ ସ୍ନାନ ସମାଧାନ କରି ବାପାଙ୍କୁ ନିବାପାଞ୍ଜଳି ପ୍ରଦାନ କଲେ ।

ଏସ୍ଥଳରେ ସୈନିକ ଗଜାଦିଙ୍କର ସଂକୁଳ ନିନାଦରେ ଉଦ୍‌ଭ୍ରାନ୍ତ ବନଜନ୍ତୁ ପ୍ରଭୃତିଙ୍କର ଜନିତ ବିବିଧ ଚେଷ୍ଟାମାନ ବର୍ଣ୍ଣିତ ଅଛି । (୪)

---

(୧) ଅୟାଂ ଚ କୈକେୟୀଂ ରଷ୍ୟ ଭରତଶ୍ଚାପ୍ରିୟଂ ବଦନ୍
ପ୍ରସାଦ୍ୟ ପିତରଂ ଶ୍ରୀମାନ୍ ରାଜ୍ୟଂ ମେ ଦାତୁମାଗତଃ ଇତି ୯୭ ସ. ୧୨ ଶ୍ଳୋ
ଯଦି ରାଜ୍ୟସ୍ୟ ହେତୋସ୍ତ୍ୱଂ ଇମାଂବାଚଂ ପ୍ରଭାଷସେ
ବକ୍ଷ୍ୟାମି ଭରତଂ ଦୃଷ୍ଟ୍ୱା ରାଜ୍ୟମସ୍ମୈ ପ୍ରଦୀୟତାମ୍ । ୧୭ ଶ୍ଳୋ
ଉଚ୍ୟମାନୋ ହି ଭରତୋ ମୟା ଲକ୍ଷ୍ମଣ ତଦ୍‌ବଚଃ
ରାଜ୍ୟମସ୍ମୈ ପ୍ରଯଚ୍ଛେତି ବାଢ଼ମିତ୍ୟେବ ମଂସ୍ୟତେ
ଇତି ୯୭ ସର୍ଗେ ୧୭, ୧୮ ଶ୍ଳୋ

(୨) ତତଃ ସୁମନ୍ତ୍ରେଣ ଗୁହେନ ଚୈବ ସମୀୟତୁ ରାଜସୁତା ବରଣ୍ୟେ ।
ଦିବାକର ଶ୍ଚୈବ ନିଶାକରଶ୍ଚ ଯଥାମ୍ବରେ ଶୁକ୍ରବୃହସ୍ପତିଭ୍ୟାମ୍ ଇତି ୯୯ସ. ୪୧ ଶ୍ଳୋ

(୩) ରାମୋକ୍ତ ରାଜକର୍ତ୍ତବ୍ୟ ରାଜଦୋଷ ରାଜ୍ୟ ରକ୍ଷଣକ୍ରମ ନୀତିମାନ ଶତ
ତମ ସର୍ଗରେ ଦେଖନ୍ତୁ । ଏହି ସର୍ଗଟିକୁ ରାଜଧର୍ମ ସମୂତା କହିଲେ ଚଳେ

(୪) ୧୦୨ ସର୍ଗ ପାଠକରି ବିବିଧ ଜନ୍ତୁର ବିବିଧ ଚେଷ୍ଟାର କ୍ରମ ଅବଗତ ହୁଅନ୍ତୁ ।

ଏହାପରେ ମାତାମାନଙ୍କର ଦର୍ଶନ ଆଉ ରାମଙ୍କ ଦୁରବସ୍ଥା ଦର୍ଶନରେ ସେମାନଙ୍କର ଅମିତ ଦୁଃଖ ପ୍ରକାଶ, ରାମଙ୍କୁ ସମସ୍ତେ ଅଭିତଃ ପରିବେଷ୍ଟିତ କରି ଉପବିଷ୍ଟ ହେଲେ । ଶ୍ରୀରାମ ଭରତଙ୍କୁ ପଚାରିଲେ ତୁମ୍ଭେ, ବେଶ ତ୍ୟାଗ କରି କୃଷ୍ଣାଜିନ ଜଟାଧର ହୋଇଛ କାହିଁକି ? (୧) ଭରତ ରାମଙ୍କୁ ପାଦରେ କର ଦେଇ ଜଣାଇଲେ, ପ୍ରଭୋ ! ମଦୀୟ ମାତାଙ୍କ ଦୁର୍ବିଚାରରୁ ଯାହା ହୋଇ ଯାଇଅଛି, ତାହା କ୍ଷନ୍ତବ୍ୟ ମନେ କରନ୍ତୁ । ମନ୍ତ୍ରୀବର୍ଗ ଓ ପ୍ରଜାବର୍ଗଙ୍କ ପ୍ରାର୍ଥନା ସଫଳ କରି ଅନାଥା ଧରଣୀକୁ ସନାଥା କରନ୍ତୁ । ଶୀଘ୍ର ଆସି ଅଭିଷିକ୍ତ ହୁଅନ୍ତୁ । ରାମ ଭରତଙ୍କୁ ବହୁବିଧ ଧର୍ମନୀତି ବୁଝାଇ କହିଲେ, ପିତାଙ୍କ ଆଜ୍ଞା ପାଳନୀୟ, ମୋର ଚତୁର୍ଦ୍ଦଶ ବର୍ଷ ବନବାସୀ ହେବା କର୍ତ୍ତବ୍ୟ, ତୁମେ ଉଚିତ ମତେ ରାଜ୍ୟ ପାଳନ କରୁଥାଅ । ଏପରି ସେମାନଙ୍କ ଦୁଃଖସୁଖାଳାପରେ ରାତ୍ରି ସମାଗତ ହେଲା । ପରଦିନ ସମସ୍ତେ ମନ୍ଦାକିନୀରେ ନିତ୍ୟକୃତ୍ୟ କରି ରାମଙ୍କ ଛାମୁରେ ଉପବେଶନ କଲେ । ଭରତ ଫେରେ ଦୁଃଖ କାତର କଣ୍ଠରେ ରାମଙ୍କୁ ରାଜା ହେବା ପାଇଁ ପ୍ରାର୍ଥନା କଲେ । ରାମ ତେତେବେଳେ "ସଂସାର ଆଉ ଜୀବନ ଅନିତ୍ୟ" ଏ ସମ୍ବନ୍ଧେ ଷୋଡ଼ଷଗୋଟି ଶ୍ଳୋକରେ (୨) ଭରତଙ୍କୁ ଉପଦେଶ ଦେଇ କହିଲେ, ଭାଇ ଭରତ ! ପିତୃଦେବ ମୋତେ ଏବଂ ତୁମକୁ ଯେଉଁ ଆଦେଶ ଦେଇ ଅଛନ୍ତି, ତାହା ପ୍ରାଣପଣେ ପାଳିବା ଉଚିତ । ତାପରେ ନିରାଶ ଭରତ ଏକାନ୍ତ କାତରତାରେ କିଂକର୍ତ୍ତବ୍ୟବିମୂଢ଼ ହୋଇ ରାମଙ୍କୁ ଜଣାଇଲେ, ହେ ଆର୍ଯ୍ୟବର୍ଯ୍ୟ ! ମୁଁ ଯେତେବେଳେ ଦେଶାନ୍ତରସ୍ଥ, ମୋର ମାତା ଏହି ପାପାଚରଣ କରିଅଛନ୍ତି, ମୁଁ ଧର୍ମ ପାଶରେ ଆବଦ୍ଧରହି ସୁତରାଂ ଆପଣଙ୍କ ଛାମୁରେ ସେହି ଦଣ୍ଡନୀୟାଙ୍କୁ ଦଣ୍ଡିତା କରି ପାରୁନାହିଁ । ପିତା ମଧ ବୃଦ୍ଧତ୍ୱ ମୂଳକ ଦୁର୍ମତିତ୍ୱରୁ ଅନାର୍ଯ୍ୟ କରିଅଛନ୍ତି । ଆପଣ ଆମ୍ଭମାନଙ୍କୁ କ୍ଷମା ଦେଇ ରକ୍ଷା କରନ୍ତୁ, ରାଜ୍ୟ ପାଳନ କରନ୍ତୁ । ଭରତ କେତେ ଶୋକ ସନ୍ତାପର ପରାକାଷ୍ଠା ପ୍ରଦର୍ଶନରେ କେତେ ପ୍ରାର୍ଥନା କଲେ ସୁଦ୍ଧା ରାମ ପିତ୍ରାଜ୍ଞା ପାଳନ ବ୍ରତରୁ ବିଚ୍ଛିନ୍ନ ହେଲେ ନାହିଁ ।

ଏ ସ୍ଥଳରେ ମହର୍ଷି ଜାବାଳି ରାମଙ୍କୁ ଏକ ସର୍ଗ ବ୍ୟାପୀ ଉପଦେଶ ଶୁଣାଇ ଅଛନ୍ତି । (୩)

ତାର ସ୍ଥୂଳକଥା ଏହି, ହେ ରାମ ! ସଂସାରରେ ପିତାମାତା ପ୍ରଭୃତି କେହି କାହାରି ନୁହନ୍ତି, ତୁମେ ପୁଣି କାହିଁକି ବୃଥାରେ ବନଜଙ୍ଗଲରେ ବୁଲିବାପାଇଁ ଏପରି ଦୁର୍ବିଚାର କରୁଅଛ ? ରାମଚନ୍ଦ୍ର ତାହାଙ୍କ ମତକୁ ନାନାବିଧ ସପ୍ରମାଣ ଯୁକ୍ତିରେ ଖଣ୍ଡନ କରି ଚାରିତ୍ର୍ୟର ପବିତ୍ରତା ପ୍ରତିଷ୍ଠିତ କରିଅଛନ୍ତି । (୪)

---

(୧) କିଂ ନିମିତ୍ତମିମଂ ବେଶଂ କୃଷ୍ଣାଜିନ ଜଟାଧରଃ
ହିତ୍ୱା ରାଜ୍ୟଂ ପ୍ରବିଷ୍ଟ ସ୍ତ୍ୱଂ ତଦ୍‌ସର୍ବଂ ବକ୍ତୁମର୍ହସି ୧୦୧ସ. ୩ ଶ୍ଳୋ

(୨) ୧୦୫ ସର୍ଗର ୧୫ ଶ୍ଳୋକଠାରୁ ୩୧ ଶ୍ଳୋକ ପର୍ଯ୍ୟନ୍ତ ଦେଖନ୍ତୁ ।

(୩) ୧୦୮ ସର୍ଗଟିକୁ ପାଠ କରନ୍ତୁ ।

(୪) ୧୦୯ ସର୍ଗଟିକୁ ପାଠ କରନ୍ତୁ ।

ତାପରେ ବଶିଷ୍ଠ ଜାବାଳିଙ୍କ ମତରେ ଗୌରବ ସ୍ଥାପନ ପୂର୍ବକ ସୃଷ୍ଟି ପ୍ରାରମ୍ଭରୁ ମନୁବଂଶୀୟ ନୃପତିମାନଙ୍କର ଉତ୍ପତ୍ତି – ସ୍ଥିତି କ୍ରମରେ କହି ସେମାନେ ଯେପରି ଜ୍ୟେଷ୍ଠତ୍ୱର ରାଜ୍ୟ ଭୋଗ କରୁଥିଲେ ତୁମେ ମଧ ତାହାହିଁ କର ବୋଲି ରାମଙ୍କୁ ସାଦରେ ଅନୁରୋଧ କଲେ । (୧) ଏବଂ କହିଲେ ହେ ରାମଚନ୍ଦ୍ର ! ମୁଁ ତୁମର କୁଳାଚାର୍ଯ୍ୟ । ମୋର ବଚନ କର ଇତ୍ୟାଦି । ତଥାପି ରାମ ସତ୍ୟରୁ ବିଚ୍ଛିନ୍ନ ହେଲେ ନାହିଁ । ତଦା ନିରୁପାୟ ଭରତ ନିରପାୟ ଉପାୟ ସ୍ୱରୂପ ପ୍ରାୟୋପବେଶର ସଂକଳ୍ପ କଲେ । (୨)

କିନ୍ତୁ ରାମ ନିବାରଣ କଲେ । ତେବେ ଭରତ କହିଲେ ଆର୍ଯ ଆପଣ ଯଦି ବନରେ କେବଳ ରହନ୍ତି, ମୁଁ ମଧ ଚତୁର୍ଦ୍ଦଶ ବର୍ଷ ଆପଣଙ୍କ ସଂଗେ ସଂଗେ ରହିବି । (୩)

ପ୍ରାଣତଃ ଅଦ୍ୱିତୀୟ ଭ୍ରାତୃଦ୍ୱୟ ଏତାଦୃଶ ସାମ୍ରାଜ୍ୟ ତ୍ୟାଗରେ ଅକୁଣ୍ଠିତମନା ହେଲେ । ତତ୍ର ସମାଗତ ବନୌକସ ଋଷି ଓ ଗନ୍ଧର୍ବମାନେ ଏଥିରେ ବିସ୍ମିତ ହୋଇ ରାବଣବଧ ମନସ୍ଥ କରି ଭରତଙ୍କୁ କହିଲେ, ରାଜପୁତ୍ର ! ଅଗ୍ରଜଙ୍କ ବଚନ ପାଳନ କର । ଭରତ ରାମଙ୍କ ପାଦରେ ପଡ଼ି ଜଣାଇଲେ, ପ୍ରଭୋ ! ପ୍ରଜାମାନେ ଆପଣଙ୍କୁ କେବଳ ଇଚ୍ଛା କରୁଛନ୍ତି । ରାମ ଭରତଙ୍କୁ କୋଳରେ ଧରି ନିଜର ପ୍ରତିନିଧି ସ୍ୱରୂପ ପାଦୁକା ଦେବାକୁ ସ୍ୱୀକାର କଲେ । ତଦା ଭରତ ରାମଙ୍କୁ ଜଣାଇଲେ ଯଦିଚ ଚତୁର୍ଦ୍ଦଶ ବର୍ଷ ପରେ ପ୍ରଥମ ଦିବସରେ ଆପଣଙ୍କୁ ଦର୍ଶନ କରି ନପାରେ, ତେବେ ନିଶ୍ଚେ ଅଗ୍ନିରେ ପ୍ରବେଶିବି । (୪) ୧୧୩ ତ୍ରୟୋଦଶୋତ୍ତରଶତତମ ସର୍ଗରେ ଲେଖାଅଛି କି ଶ୍ରୀରାମଙ୍କ ଛାମୁରୁ ତଦୀୟ ପାଦୁକା ହସ୍ତରେ ଭରତ କଷ୍ଟେ କଷ୍ଟେ ପ୍ରତ୍ୟାବୃତ୍ତ ହୋଇ କ୍ରମଶଃ ଫେର ଭରଦ୍ୱାଜଙ୍କୁ ଦର୍ଶନ କଲେ, ରାମଙ୍କ ପାଦୁକା ପ୍ରଦାନ ଜଣାଇଲେ । ସେ ପୁଣି ଯମୁନା ଓ ଗଙ୍ଗା ପାର ହୋଇ ଶୃଙ୍ଗବେର ପୁର ଦେଇ ଅଯୋଧାରେ ଉପଗତ ହେଲେ ।

ଭରତଙ୍କ ଚିତ୍ରକୂଟ ପ୍ରସ୍ଥାନ ତଥାଚ ଚିତ୍ରକୂଟରୁ ଫେରି ଅଯୋଧା ପ୍ରତ୍ୟାବର୍ତ୍ତନ, ଏହି ଉଭୟ ଯାତ୍ରା ମଧରେ ଯେତେ ଗୁଡ଼ିଏ ଘଟନା ଓ ଉପଘଟନା ସଂଘଟିତ, ପ୍ରାୟଶଃ ସେସବୁ ବଳରାମ ଦାସେ ସଂକ୍ଷିପ୍ତ ପ୍ରକାରରେ ଏବଂ କେତେକ ବୈଷମ୍ୟ ଓ ଯୋଗ

---

(୧) ୧୧୦ ସର୍ଗଟିକୁ ପାଠ କରନ୍ତୁ ।

(୨) ଇହତୁ ସ୍ଥଣ୍ଡିଳେ ଶୀଘ୍ରଂ କୁଶାନାସ୍ତର ସାରଥେ ।
ଆର୍ଯ୍ୟଂ ପ୍ରତ୍ୟୁପବେକ୍ଷାମି ଯାବନ୍ ମେ ସଂପ୍ରସିଦତି । ୧୧୧ସ. ୧୪ ଶ୍ଳୋ

(୩) ଯଦିତ୍ୱବଶ୍ୟଂ ବସ୍ତବ୍ୟଂ କର୍ତବ୍ୟଂ ଚ ପିତୁର୍ବଚଃ ।
ଅହମେବ ନିବତ୍ସ୍ୟାମି ଚତୁର୍ଦ୍ଦଶ ସମାଃ ବନେ । ଇତି ୧୧୧ସ. ୨୪ ଶ୍ଳୋ

(୪) ଚତୁର୍ଦ୍ଦଶେ ହି ସଂପୂର୍ଣ୍ଣେ ବର୍ଷେଽହନି ରଘୂତମ ।
ନ ଦ୍ରକ୍ଷାମି ଯଦିତ୍ୱାଂ ତୁ ପ୍ରବେକ୍ଷ୍ୟାମି ହୁତାଶନମ୍ । ଇତି ୧୧୨ସ. ୨୫ ଶ୍ଳୋ

ବିଯୋଗ ସହ ଲେଖିଅଛନ୍ତି; କିନ୍ତୁ ଏଥି ମଧ୍ୟରେ ଅନୁଲେଖକ ଦୌରାତ୍ମ୍ୟ ସୁଦ୍ଧା ରହିଛି । ମୂଳରେ ଅନୁକ୍ତ ଉର୍ମିଳା ପ୍ରଭୃତି ବଧୂତ୍ରୟ ରାମଦର୍ଶନାର୍ଥେ ଭରତଙ୍କ ଅନୁଗମନ କରିଥିବା ଦାସେ କହିଅଛନ୍ତି । (୧)

ଭରତଙ୍କର ଗନ୍ତବ୍ୟ ମାର୍ଗରେ ଆଗୁଁ ପାନୀୟ ଜଳଯୋଗାଡ଼, ଅନ୍ନ ବ୍ୟଞ୍ଜନାଦିର ସମ୍ଭାର, ଆମ୍ରାଦି ବାଞ୍ଛନୀୟ ଫଳମୂଳ, ହସ୍ତିଙ୍କର ଆଉ ଅଶ୍ୱ ପ୍ରଭୃତିମାନଙ୍କର ଖାଦ୍ୟ ଘାସ ପଲ୍ଲବାଦି, କ୍ରୋଶମାତ୍ରକେ ଏକ ଏକ ଜଳାଶୟ ଓ ଚଉରା, ମାର୍ଗର ଉଭୟ ପାର୍ଶ୍ୱରେ ବୃକ୍ଷ ଶ୍ରେଣୀ, କ୍ରୋଶମାତ୍ରକେ ଚାରିଚାରି ମଣ୍ଡପ, ଅଷ୍ଟ କ୍ରୋଶ ବ୍ୟବଧାନରେ ଏକ ଏକ ଦେବାଳୟ ତଥାଚ ତତ୍ର ଭୋଗରାଗାଦି ସେବାବୈଭବ ଏସବୁ ଏକ ରାତ୍ରି ମଧ୍ୟରେ ସୁସମ୍ପନ୍ନ କରାଯାଇଥିଲା ବୋଲି ଦାସେ ଲେଖିଅଛନ୍ତି । (୨)

କିନ୍ତୁ ଏହି ଅତ୍ୟଳ୍ପ କାଳ ମଧ୍ୟରେ ଦେବାଳୟ ନିର୍ମାଣ, ଜଳାଶୟ ଖନନାଦି ଅସମ୍ଭବ ବୋଧହୁଏ । ସୁତରାଂ ମୂଳ ଗ୍ରନ୍ଥରେ ଏପରି ଅସଂଭବ ଚର୍ଯ୍ୟା ଉକ୍ତ ନାହିଁ । ଭରତ ପ୍ରଥମ ରାତ୍ରିରେ ତମସାତୀରରେ ରହି ପରଦିନ ଗଙ୍ଗାତୀରରେ ସେନା ସନ୍ନିବେଶ କଲାରୁ ପ୍ରଥମତଃ ଶୃଙ୍ଗବେରାଧିପ ବିଦ୍ୱେଷତଃ ଭରତ ବାହିନୀଙ୍କୁ ଆକ୍ରମଣ କରିଥିଲେ, ମାତ୍ର ପରେ ସେ ଭରତଙ୍କୁ ରାମଙ୍କ ଭ୍ରାତାଜାଣି ଉପହାର ପ୍ରଦାନ କଲେ, ଏହା ଦାସେ ଲେଖିଅଛନ୍ତି ।(୩)

ଏଥିରେ ଏତିକି ମାତ୍ର ଆକ୍ଷେପ ଯେ ଗୁହ ସର୍ବ ପ୍ରଥମେ ଶ୍ରୀରାମଙ୍କ ମୁଖରୁ ଭରତଙ୍କ ସଂପୂର୍ଣ୍ଣ ପରିଚୟ ଅବଗତ ଥିଲେ । ଭରତ ରାମଙ୍କର ବୈମାତ୍ରେୟ କନିଷ୍ଠ ଭ୍ରାତା କୈକେୟ ବୋଲି ଭଲ ଜାଣିଥିଲେ । ଭରତଙ୍କର କଥା ଏକ୍ଷଣି ଗୁହଙ୍କର ×× ଅତଏବ ଦାସଙ୍କ ପ୍ରଦତ୍ତ କାରଣ ସଂଗତ ଜଣାଯାଉ ନାହିଁ । ଏହି ରାମାୟଣରେ ଭରତଙ୍କର ଗଙ୍ଗୋତ୍ତରଣ କ୍ରମ ଅତି ସଂକ୍ଷିପ୍ତ । ଦାସେ କହିଛନ୍ତି, ଭରଦ୍ୱାଜ ମହର୍ଷି ନି   ପାଛୋଟି ଆସି ଭରତଙ୍କୁ ନେଇଥିଲେ ।(୪)

---

(୧) ଭରତ ଶତ୍ରୁଘନ ଏ ଅଟନ୍ତି ଭାଇବେନି ।
ଶ୍ରୁତକୀର୍ତ୍ତୀ ଉର୍ମିଳା ମାଣ୍ଡବୀ ଏତିନି,
ସୁଖାସନ ଚଢ଼ିଣ ଯେ ବାହାର ହୋଇଲେ
ଯହୁଁ ସେ ଭରତବୀର ଅଯୋଧ୍ୟା ଛାଡ଼ିଲେ ।

ଛାପା ଅଯୋଧ୍ୟାକାଣ୍ଡ ୮୫ ପୃଷ୍ଠା

(୨) ଛାପା ପୁସ୍ତକରେ ୮୪ ପୃଷ୍ଠାଠାରୁ ଦେଖନ୍ତୁ ।

(୩) ଛାପା ପୁସ୍ତକରେ ୮୬ ପୃଷ୍ଠା ଦେଖନ୍ତୁ ।

(୪) ବେନି ଘଡ଼ିଥାଉଁ ସେ ପ୍ରୟାଗେ ଯାଇ ହୋନ୍ତି । ଜାଣି ଭରଦ୍ୱାଜ ମୁନି ପାଛୋଟି ଆସନ୍ତି । ୮୭ ପୃ.

କିନ୍ତୁ ଏହା ସାମ୍ପ୍ରଦାୟିକ ଶିଷ୍ଟାଚାର ନୁହେ । ଭରତ ଲୋକରେ ରାଜା ହେଲେ ସୁଦ୍ଧା ଭରଦ୍ୱାଜ ରାଜାମାନଙ୍କର କଦାଚ ଅଭ୍ୟୁପଗମ୍ୟ ହୋଇ ନ ପାରନ୍ତି । ଏଭଳି ଅଭ୍ୟୁପଗମତା ଆଦୌ ହୋଇ ନ ପାରେ । ଅଭିଭାବକ ସ୍ୱରୂପ ଅନୁଗମନ ସୁଦ୍ଧା ବାତ୍ସଲ୍ୟ ଛଡ଼ା ଅନ୍ୟତ୍ର ଶୋଭାପାଏ ନାହିଁ । ଅତଏବ ମୂଳରେ ପୁତ୍ରକୁ ପିତା ସ୍ୱରୂପ ଭରତଙ୍କୁ ଭରଦ୍ୱାଜ ଦୁଇଚାରି ପାଦ ଅନୁଗମନ କରିଥିଲେ ବୋଲି ଲେଖା ଅଛି । (୧)

ଭରଦ୍ୱାଜ ଭରତଙ୍କର ଅଲୌକିକ ଆତିଥ୍ୟ ଯୋଗାଡ଼ ସକାଶେ ବିଶ୍ୱକର୍ମା ପ୍ରଭୃତିଙ୍କୁ ଆଦେଶ ଦେଇଥିବା ଏଥିରେ ଉକ୍ତ ନାହିଁ, କିନ୍ତୁ ଋଷି ଆପେ ତପୋମହିମା ବଳରେ ସବୁ ଯୋଗାଡ଼ି ଦେଇଥିବା ଲେଖାଅଛି । ସୁତରାଂ ତତ୍ର ମାୟିକ ତୈଳାଦିର ନଦୀ ପ୍ରବାହିତ ହୋଇଥିବା ମଧ ଉକ୍ତ ଅଛି । (୨)

ଭରତଙ୍କୁ ଏପରି ବିଚିତ୍ର ଚର୍ଚ୍ଚା କଲେ ଯେ ସେ ସବୁ ଦେବଦୁର୍ଲ୍ଲଭ ପଦାର୍ଥମାନ ଅମରାବତୀର ସଦୃଶ ଭବନମାନ, ଦିବ୍ୟ ପରିଧେୟମାନ, ଅପ୍ସରାମାନେ ଆସି ତତ୍ର ଏକୀକୃତ ହେଲେ । କିନ୍ତୁ ଫେର ପାହାନ୍ତି ସମୟକୁ ସେସବୁ ଅନ୍ତର୍ହିତ ହୋଇଗଲେ । ଏ ସ୍ଥଳେ ଦାସ ମହାଶୟ ଅନେକ ବିଧ ଦେଶୀୟ ପିଷ୍ଟକ ଓ ପକ୍ୱଫଳାଦିର ନାମ ଦେଇ ଅଛନ୍ତି । (୩)

ପରନ୍ତୁ ନିମ୍ନ ଶ୍ରେଣୀର ଅନୁଯାତ୍ରୀଗଣ ଭରଦ୍ୱାଜଙ୍କ ପ୍ରଦତ୍ତ ସୁଖ ବୈଭବର ଭୋଗରେ ଏକା ବେଳେକେ ମୁଗ୍ଧ ଓ ଆତ୍ମହରା ହୋଇଯାଇ ଭରତ ଓ ରାମଙ୍କର ସହବାସର ଉପେକ୍ଷା କରିଥିଲେ ବୋଲି ସେମାନଙ୍କର ଲଘୁ ହୃଦୟତା ପ୍ରକାଶ କରିଅଛନ୍ତି । (୪)

ଯମୁନା ପାର ସ୍ଥଳେ ଲେଖା ଅଛି ତତ୍ର ଗୁହ ଅଧିକତଃ ଉଭୟ ତୀରରୁ ଆକୃଷ୍ଟ ଓ ଆବଦ୍ଧ ଗୋଟାଏ ମଜଭୂତ ରଜ୍ଜୁଦ୍ୱାରା ଜନ ସନ୍ତରଣର ନିରପାୟ ଉପାୟ କରିଥିଲେ । (୫)

---

(୧) ତତ୍ରୈବ ।

(୨) ତଇଳନଦୀ ଏକ ବହିଲାକ ତହିଁ । ଘୃତନଦୀ ଏକ ତା ଥଳ କୂଳ ନାହିଁ । ଥୋକାଏ ଦୂରରେ ବହଇ ନଦୀ ସୁରା । ପର୍ବତ ସମାନେ ମାଂସ ବଖରା ବଖରା । ଇତ୍ୟାଦି ୮୮ପୃ.

(୩) ଛାପାରେ ୮୯ ପୃଷ୍ଠା ଦେଖନ୍ତୁ ।

(୪) ହାତୀଙ୍କ ଶଗଡ଼, ଘୋଡ଼ାଙ୍କ ବାରୁଆଳ, ମାଦକଦ୍ରବ୍ୟ ଖାଇ ଯେ ହେଲେ ମତୁଆଳ । ମାହୁନ୍ତ ଯାଇ ଘୋଡ଼ାର ପିଠିରେ ଯେ ବସି, ହାତୀ ପିଠିରେ ଯେ ବାରୁଆଳ ବସେ ଆସି । ଆନନ୍ଦ ହୋଇଣ ଯେ ଡାକନ୍ତି ସୁଖ ପାଇ, ଅଯୋଧ୍ୟା ନଗ୍ରକୁ ଆଉ ଆମ୍ଭେ ଯିବା ନାହିଁ । ଶ୍ରୀରାମଙ୍କ ପାଶେ ଯାଇ କରିବା ଯେ କିସ, ଏଥି ଥିଲେ ଆଉ ନ ଲୋଡ଼ିବା ଘରବାସ । କେ ବୋଇଲଇ ଆମ୍ଭେ ଏ ଋଷିଙ୍କ ଘରେ ଥିବୁ, ଭରତ କି ରାଜା ତାହା ସଂଗତରେ ଯିବୁ ।

(୫) ଗୁହନାମେ ଶବର କଲା ଏକ ବୁଦ୍ଧି, ଦୁଇକୂଳ କିଳା ପୋତି ଦଉଡ଼ିଏ ବାନ୍ଧି । ତାହାକୁ ଧରି ଅନେକ ଲୋକ ହେଲେ ପାରି, ଶବରକୁ ପ୍ରଶଂସା କରନ୍ତି ତପଚାରୀ ଇତ୍ୟାଦି । ୯୦ ପୃ.

ଦାସେ ସଂକ୍ଷିପ୍ତତଃ ପ୍ରାୟ ଏକପୃଷ୍ଠା ବା ତ୍ରିଂଶଦଧିକ ପଦ୍ୟରେ ସ୍ୱକୀୟ କଳ୍ପନାର ଚିତ୍ରତାରେ ଚିତ୍ରକୂଟ ଓ ମନ୍ଦାକିନୀର ବର୍ଣ୍ଣନା କରି ଅଧିକନ୍ତୁ ତତ୍ରତ୍ୟ ଶ୍ରୀରାମ ପୁଣି ସୀତା ଦେବୀଙ୍କର ପ୍ରସାଧନ ପୂର୍ବକ ଲୁଚୁକାଳି ଖେଳ ପ୍ରଭୃତିରେ କୃତ ବିହାର ଚେଷ୍ଟାମାନ ଟିକିଏ ବିସ୍ତୃତ ଭାବରେ ଲେଖିଅଛନ୍ତି ।(୧)

ଏ ସ୍ଥଳେ ପୁଣି ଲେଖାଅଛି, ସସୀତ ରାମଚନ୍ଦ୍ରଙ୍କର ବନବିହାରର ପ୍ରତ୍ୟାବୃତ୍ତି ସମୟକୁ ଲକ୍ଷ୍ମଣ ମୃଗମାଂସ ରନ୍ଧନ କରି ରଖୁଥିଲେ, ରାମାଦିଙ୍କ ଭୋଜନ ପରେ ଅପକ୍ୱ ମାଂସତକ ଆତପରେ ଶୁଷ୍କ କରୁଥିଲେ । ଏକ ଦିନ ଗୋଟିଏ କାକ ସେହି ମାଂସର ଜିଘୃକ୍ଷାରେ ବହୁ ଚେଷ୍ଟା କରି ସୀତାଙ୍କ ଓଷ୍ଠକୁ ଦଂଶନ କଲା । ରାମ ରୋଷରେ ଶର ଦ୍ୱାରା ତାର ଚକ୍ଷୁବିଦ୍ଧ କଲାପରେ ସେହି ସମଗ୍ର ଜାତିକୁ ସେହି ଅବସ୍ଥାପନ୍ନ କରିଦେଲେ । (୨)

ଚିତ୍ରକୂଟସ୍ଥ ଅନ୍ଧକାକଗଣ ସୀତାଦେବୀଙ୍କ ଚରଣରେ ଶରଣାଗତ ହେଲାରୁ ସୀତା ସାନୁକୋଶତାରେ ଶ୍ରୀରାମଙ୍କ ଚରଣରେ ତଦୀୟ ଚକ୍ଷୁଦାନାର୍ଥ ଅଳି କଲେ । ରାମ ସ୍ୱକୀୟ ଅମୋଘଶରର ପ୍ରଭାବ ରକ୍ଷା ପୂର୍ବକ ସେ ଜାତିକୁ ଫେର ଆଖି ଦାନ ଦେଇ ସୁଦ୍ଧା ଢେର ଟେରା କଲେ । (୩)

ଏହି କଥାନକଟି ରାମଚରିତରେ ଅନ୍ୟ ସମୟରେ ସଂଘଟିତ ଥିଲେ ସୁଦ୍ଧା ଇଦାନୀଂତନ ହୋଇ ନ ପାରେ । ସୁତରାଂ ମୂଳ ଗ୍ରନ୍ଥର ଏହି ସ୍ଥଳେ ଏହା ଉକ୍ତ ନାହିଁ । ବିଶେଷତଃ ଏହି ପାଠତକ ଦାସଙ୍କର ପୂର୍ବାପର ପାଠ ଦେଖି ନେଲେ ମଧ୍ୟରେ ପ୍ରକ୍ଷିପ୍ତ ଥିବା ଜଣାଯାଏ । ଦାସଙ୍କ ରାମାୟଣରେ ଭରତାଗମନରେ ରାମାଦିଙ୍କର ପ୍ରାଥମିକ ତର୍କଣା କିଂଚିତ୍ ଭିନ୍ନ ପ୍ରକାର । ରାମ ଚିତ୍ରକୂଟରେ ଭୋଜନ କରି ବସିଅଛନ୍ତି, ଲକ୍ଷ୍ମଣ ଜଣାଇଲେ, ପ୍ରଭୋ ! ଆରଣ୍ୟକ ଜନ୍ତୁପନ୍ତି ଭୀତି ପାଇ ଇତସ୍ପ୍ଲୁତ ହେଉଅଛନ୍ତି, ଘୋର ଶବ୍ଦ ଶୁଭୁଅଛି ଏବଂ ବୀରବାଦ୍ୟ ବାଜୁଅଛି । ରାମ କହିଲେ, କେହି ରାଜା ମୃଗୟାର୍ଥ ଆସିଥିବେ । ତୁମେ ବୃକ୍ଷରେ ଆରୋହି ନିରୀକ୍ଷଣ କର ।(୪)

---

(୧) ଛାପାରେ ୯୧, ୯୨ ପୃଷ୍ଠା ଦେଖନ୍ତୁ ।

(୨) ତାହାକୁ ଦଣ୍ଡି ସେ ଶସ୍ତ୍ର ବୁଲିଲା ଜଗତ । ଯେତେ କାକ ଥିଲେ ତାଙ୍କ ଚକ୍ଷୁ କଲା ହତ ।
ତୁ ଯେବେ ଆଜ୍ଞାକଲୁ ମୋ ପ୍ରାଣ ଈଶ୍ୱରୀ । ପାଆନ୍ତୁ ଲୋଚନ ଏ ତାହାନ୍ତୁ ବକ୍ର କରି । ୯୫ ପୃ.

(୩) ଯେତେ ପୁଣି ଏହାଙ୍କ ଅଂଶେ ଜାତ ହେଉ, ଟେରେଇ ଚାହିଁବେ କଥା ଯୁଗେ ଯୁଗେ ଥାଉ ।
ଦୋରେହ ହୋଇଲେ ସେହି ଦୋଷୁ ଦଣ୍ଡ ପାଇ, ଦକ୍ଷିଣ ଦିଗ ଲାଞ୍ଜ ପୂର୍ବକୁ ବକ୍ର ହୋଇ । ୯୫ ପୃଷ୍ଠା

(୪) ଛାପା ପୁସ୍ତକରେ ୯୬ ପୃଷ୍ଠା ଦେଖନ୍ତୁ ।

ଲକ୍ଷ୍ମଣ ବିଶାଳ ଶାଳବୃକ୍ଷରୁ ନିରୀକ୍ଷଣ କରି ରାମଙ୍କୁ ଜଣାଇଲେ, ଆର୍ଯ୍ୟ ! ଧନୁଶର ଧରନ୍ତୁ, ଭରତ ଓ ଶତ୍ରୁଘ୍ନ ଆମ୍ଭ ଦୁହିଁଙ୍କୁ ନିହତ କରିବାକୁ ଆସୁଅଛନ୍ତି ଇତ୍ୟାଦି । ଏଥି ମଧ୍ୟରେ ରାମଙ୍କ ଅଯଥା ଉକ୍ତି ମୂଳକ ଦଶଗୋଟି ପଦ୍ୟ ଅନ୍ୟ କେହି ଅବିମୃଷ୍ୟକାରୀ ଅନୁଲେଖକ ମିଶାଇ ଦେଇଅଛନ୍ତି । (୧) ଧୀରୋଦାତ୍ତ ଶିରୋମଣି ଶ୍ରୀରାମଚନ୍ଦ୍ର ଅଜ୍ଞାନରେ କଦାଚ ଏପରି କ୍ରୁଦ୍ଧ ବା ଉଦ୍ଧତ ହୋଇ ନାହାନ୍ତି । ସୁତରାଂ ଭରତ ପ୍ରଭୃତିଙ୍କୁ ନିହତ କରା ସେ ସ୍ୱପ୍ନରେ ସୁଦ୍ଧା ଭାବିବେ ନାହିଁ । ରାମଚନ୍ଦ୍ରଙ୍କ ଚରିତ୍ର ଯେପରି ବିଶୁଦ୍ଧ ପବିତ୍ର, ସେଥିରେ ଏପରି ଦୁର୍ଭାବନାର ଛାୟା ସୁଦ୍ଧା ପଡ଼ିବାର ନୁହେ, ସ୍ପଷ୍ଟତଃ କହିପାରୁ ।

ଏହି ଦୁର୍ଭାବଭାବିତ ପଂକ୍ତିଗୁଡ଼ିକୁ ବଳରାମ ଦାସେ ଲେଖି ନାହାନ୍ତି । ଏହି ଦୂଷିତ ଭାବର ପଦ୍ୟ ଦଶକର ପରେ ଶ୍ରୀରାମଙ୍କର ପବିତ୍ର ସ୍ୱଭାବର ଅନୁଗତ ଉକ୍ତିର ଲେଖା ଦାସେ ଲେଖି ଅଛନ୍ତି । ତାହା ଠିକ୍ ମୌଳିକ ସଦ୍‌ଭାବର ବିଦ୍ୟୋତକ ହୋଇଅଛି ।(୨)

ପାଠକ ମହାଶୟ ! ପରିଶୀଳନ କରନ୍ତୁ, ରାମ ପୁଣି ଲକ୍ଷ୍ମଣଙ୍କୁ ପଚାରିଲେ ବତ୍ସ ! ଏହାକୁ ଅଯୋଧ୍ୟା ବାହିନୀ ବୋଲି କିପରି ସ୍ଥିର କରୁଅଛ । ଲକ୍ଷ୍ମଣ କହିଲେ, ପିତୃଦେବଙ୍କର ରଥ ଦିଶୁଅଛି । (୩)

ମୂଳଗ୍ରନ୍ଥରେ ଲେଖାଅଛି, ତତ୍ର ଦଶରଥଙ୍କର ରଥ ଚିହ୍ନ ଦେଖା ନଗଲାରୁ ରାମଙ୍କର ସନ୍ଦେହ ଜନ୍ମିଥିଲା । କିନ୍ତୁ ଏଥିରେ ଲକ୍ଷ୍ମଣ ସେନା ମଧ୍ୟରେ ଦଶରଥଙ୍କର ଅସ୍ତିତ୍ୱର ପରିଚୟ ଦେଇ ଅଛନ୍ତି । ଚିତ୍ରକୂଟରେ ଶ୍ରୀରାମ ଓ ଭରତଙ୍କର ଯେ ମିଳନ ସନ୍ଦର୍ଭ, ସେ ଉଭୟଙ୍କର ସ୍ୱଭାବ ଓ ଚରିତ୍ରର ନିକଷ ଅଟେ । ଏହି ଚରିତ୍ର ଚିତ୍ରଣରେ ଲେଖକଙ୍କର

---

(୧) ସୌମିତ୍ରି ବଚନେ ବୋଲନ୍ତି ଦାଶରଥି, ଶତ୍ରୁ ହୋଇ କେ ଆସିବ ମୋହର ଯେ କତି ।
ମନ୍ଦାକିନୀ ନଦୀକି ରକତେ ବୁହାଇବି, ପୃଥିବୀର ଜମ୍ବୁକାଙ୍କି ମାଂସ ଖୁଆଇବି ।
ଖଣ୍ଡ ଖଣ୍ଡ କରି କାଟିବି ମୁଁ ଶିରମାନ, ଗଜଅଶ୍ୱ ମାଂସ କରିବି ମୁଁ ଭିନ୍ନ ଭିନ୍ନ ।
ଭ୍ରାତ ଶତ୍ରୁଘ୍ନର ଛେଦିବି ଆଗ ଶିର, ଦଶରଥ ଥିଲେ ଯିବେ ଆଜି ଯମପୁର ।
ବଶିଷ୍ଠ ଜାବାଳି ଯେ କାଶ୍ୟପ ବାମଦେବ, ଚିତ୍ରକୂଟେ ଏହାଙ୍କର ପଡ଼ିଥିବ ଶବ ।
ସୁମନ୍ତର ଜୀବନକୁ ନ ଥୋଇବି କ୍ଷଣେ, ଧର୍ମ ଅର୍ଥ ବିଚାର କରନ୍ତି ସୁରଗଣେ ।
ବନେ ପଠିଆଇ ପୁଣି ଆସୁଛନ୍ତି ମାରି ! ଆଜ ଜାଣିବା ପ୍ରତିଜ୍ଞା କେଡ଼େ ତାହାଙ୍କରି ।
ଏତେ କଷ୍ଟେ ଆମ୍ଭେ ଆସି ରହିଥିଲୁ ବନେ, ଏଥକୁ ଅହନ୍ତା କରନ୍ତି ସେ କି କାରଣେ ।
ରାଜ୍ୟ ଯାଉ କିବା ଆଜି ପ୍ରାଣ ଦେଇଯାଉ, ଏ ବେନି କଥାରୁ ଯେ କଥାଏ ଆଜ ହେଉ ।
ଏତେକ ବୋଲିଣ କୋଦଣ୍ଡରେ ଗୁଣ ଦେଇ, ଅକ୍ଷୟ ତୂଣକୁ ଯେ ବାନ୍ଧନ୍ତି ରଘୁ ସାଇଁ ।
ଛାପାରେ ୯୬ ପୃଷ୍ଠା ଦେଖନ୍ତୁ ।

(୨) ଛାପାରେ ୯୭ ପୃଷ୍ଠା ଦେଖନ୍ତୁ ।
(୩) ଛାପାରେ ୯୬ ପୃଷ୍ଠା ଦେଖନ୍ତୁ ।

ଖୁବ୍ ବହୁଦର୍ଶିତା ଓ ପ୍ରବେକ ବିବେକ ଦରକାର । ଲକ୍ଷ୍ମଣ ନିଜର ଧୀରୋଦ୍ଧତତ୍ୱରୁ ତତ୍ତ୍ୱ ସଂପୂର୍ଣ୍ଣତଃ ସହସା ବୁଝି ନ ପାରି ଭରତଙ୍କ ପ୍ରତି କୁଭାବାରୋପଣ କରୁଥିଲେ ସୁଦ୍ଧା ରାମ ତାହାଙ୍କୁ କିଂଚଦପି ହୃଦୟକୁ ନିଅନ୍ତି ନାହିଁ । ଭରତଙ୍କର ପବିତ୍ର ସ୍ୱଭାବ ରାମ ଭଲଭାବେ ବୁଝିଥିଲେ । ଏ ହେତୁ ତାହାଙ୍କ ପ୍ରତି ଲକ୍ଷ୍ମଣଙ୍କର ଯେ ସାହସିକ ପାପାଶୟ, ତାର ଦୂରୀକରଣାର୍ଥ ତାଙ୍କୁ ଦରକାର ହେଲେ ସାମ୍ରାଜ୍ୟ ସୁଖ ସମ୍ଭୋଗ ଦେବାକୁ କହିଥିଲେ । ଦାସେ ମଧ ତାହାହିଁ ଲେଖି ଅଛନ୍ତି । (୧)

ଭରତ ଚିତ୍ରକୂଟରେ ଶ୍ରୀରାମଙ୍କ ଛାମୁକୁ ଯିବାବେଳେ ଆର୍ଯ୍ୟ ଅଗ୍ରଜଙ୍କ ଦର୍ଶନାର୍ଥେ ନିତାନ୍ତ ଉତ୍କଣ୍ଠିତ ହୋଇ ବଶିଷ୍ଠଙ୍କ ପ୍ରତି ଯାହା ଯାହା ପ୍ରକାଶ କରିଅଛନ୍ତି, ତାହା ଏଥିରେ ଅନ୍ୟ ପ୍ରକାର । ଭରତ କୈକେୟୀକୃତ ଦୋଷରେ ଆତ୍ମପ୍ରତି ଆଶଙ୍କିତ ହୋଇ ବଶିଷ୍ଠଙ୍କ କତିରେ ସ୍ୱୀୟ ନିର୍ଦ୍ଦୋଷର ପ୍ରକାଶ କରିଅଛନ୍ତି । (୨)

ଶ୍ରୀରାମଙ୍କ ଚରଣରେ ଭରତଙ୍କ ପ୍ରଣାମାବସରରେ ସେ ସୁବିଚାରତଃ ବଶିଷ୍ଠଙ୍କୁ କିଂଚିତ୍ ବ୍ୟବଧାନରେ ରଖାଇଥିଲେ । କିନ୍ତୁ ଦାସେ କହନ୍ତି ଭରତ ବଶିଷ୍ଠାଦିଙ୍କର ସହ ରାମଙ୍କ ଚରଣ ବନ୍ଦନା କଲେ । (୩)

ଏ ସମୟରେ ଭରତ ବଶିଷ୍ଠଙ୍କୁ ସଙ୍ଗେ ନ ହେବାର ସମୁଚିତ ଗୌରବାବହ କାରଣ ଥିଲା । ଭରତ ରାମଙ୍କଠାକୁ ଭୃତ୍ୟ ବା ସେବକ ସ୍ୱରୂପ ଯିବେ । ତଦା ଯଦି ଶ୍ରୀରାମ କୁଳଗୁରୁ ବଶିଷ୍ଠଙ୍କୁ ଦେଖନ୍ତି, ତେବେ ସେ ସହସା ସତ୍ୱରତାରେ ଗାତ୍ରୋତ୍ଥାନ ପୂର୍ବକ ଗୁରୁଚରଣ ବନ୍ଦନାଦିରେ ଲାଗିବେ । ଏହେତୁ ଭରତ ତାହାଙ୍କୁ ପୃଥକ୍ ରଖିଥିଲେ । ଏଭଳି ସମୟରେ ବଶିଷ୍ଠ ଭରତଙ୍କ ସଙ୍ଗେ ଯାଇ ରାମଙ୍କୁ ଦେଖା କରିବା ସୁଦ୍ଧା ପାରମ୍ପରିକ ଗୌରାବବହ ପ୍ରଥା ନୁହେ । ଶ୍ରୀରାମଙ୍କ ଛାମୁରେ ଭରତଙ୍କର ଯେ ନିବେଦନ କ୍ରମ ଏଥିରେ ମୂଳଗ୍ରନ୍ଥ ଅପେକ୍ଷା ଆମୂଳାନ୍ତ ନିତାନ୍ତ ଭିନ୍ନ ପ୍ରକାର । ସୁତରାଂ ଏଥି ମଧରେ କେତେକ ପଦ୍ୟ ପ୍ରକ୍ଷିପ୍ତ ଥିବାର ସୁଦ୍ଧା ଜଣାଯାଏ । କାରଣ ଅନେକତ୍ର ପଦ୍ୟମାନଙ୍କର ପୂର୍ବାପର ସହ ଠିକ୍ ସମନ୍ୱୟ ଓ ସାଙ୍ଗତ୍ୟ ଘଟୁନାହିଁ । (୪)

ରାମଙ୍କୁ ପିତୃଶୋକ ସଂତପ୍ତ ଦେଖି ବଶିଷ୍ଠ ଯେ ରକମର ଅମୌଳିକ ଆଶ୍ୱାସନା ଦେଇଥିବାର ଲେଖାଅଛି, ତାହା ଅପ୍ରାସଙ୍ଗିକ ସନ୍ଦର୍ଭ । ବୋଧହୁଏ, ମୂଳଗ୍ରନ୍ଥରେ ଜାବାଳିଙ୍କ

---

(୧) ଛାପାରେ ୯୭ ପୃଷ୍ଠା ଦେଖନ୍ତୁ ।
(୨) ଛାପାରେ ୯୭ ପୃଷ୍ଠା ଦେଖନ୍ତୁ ।
(୩) ଛାପାରେ ୯୮ ପୃଷ୍ଠା ଦେଖନ୍ତୁ ।
(୪) ଛାପାରେ ୯୮ ପୃଷ୍ଠାଠାରୁ ଦେଖନ୍ତୁ ।

ଉକ୍ତିରେ ଏ ଭଳି କେତେକ କଥା ଉକ୍ତଥିବାରୁ ଦାସ ମହାଶୟ ସେସବୁ ଯଥାଯଥ ମନେ ରଖି ନପାରି ଅସ୍ଥାନରେ ତାର ଆଭାସ ଦେଇ ଅଛନ୍ତି । ଏଥି ମଧରେ ରାମଚନ୍ଦ୍ରଙ୍କର ପିତୃମରଣ ଦିବସାଦି ଜ୍ଞାନର ଯେ ପ୍ରଶ୍ନମାନ, ତତ୍ରତ୍ୟ ମୁଖାଗ୍ନିଦାନର ପ୍ରଶ୍ନଟା ଅସଙ୍ଗତ ଜଣାଯାଏ । କାରଣ ଇତଃପୂର୍ବେ ରାମଙ୍କ କତିରେ କୁହାଯାଇଅଛି ଯେ ଦଶରଥଙ୍କୁ ତୈଳ ଦ୍ରୋଣୀରେ ନିକ୍ଷିପ୍ତ ରଖି ଭରତଙ୍କୁ ଆନୀତ କଲୁ । ଏଥିରୁ କଣ ରାମ ବୁଝିପାରି ନଥିଲେ ଯେ, ଭରତ ଅନ୍ତ୍ୟେଷ୍ଟିକ୍ରିୟା କରିଅଛନ୍ତି ! ଅତଏବ ସ୍ପଷ୍ଟ ଜଣାଯାଏ, ଏଥିମଧରେ ଅନୁଲେଖକଙ୍କର କେତେକ ଅଯଥାପାଠ ପ୍ରକ୍ଷିପ୍ତ ରହିଅଛି । ରାମ ଭରତଙ୍କୁ ରାଜ୍ୟପାଳନାର୍ଥ ଯେଉଁ ଉପଦେଶ ଦେଇଅଛନ୍ତି, ସେଥିରେ ଅବଶ୍ୟ କର୍ତ୍ତବ୍ୟନିଷ୍ଠତା ଅଛି, ତଥାପି ତାହା କବିଙ୍କର କଳ୍ପିତ, ମୌଳିକ ନୁହେଁ । (୧)

ମୃତ ପିତାଙ୍କ ଉଦ୍ଦେଶ୍ୟରେ ରାମଙ୍କ ସ୍ନାନାଦି କ୍ରିୟାରେ ମଧ ବୈଷମ୍ୟ ଅନୁଷକ୍ତ ରଖିଅଛନ୍ତି । ଏ କହିଛନ୍ତି, ଶ୍ରୀରାମ ସ୍ନାନାର୍ଥେ ବଶିଷ୍ଠଙ୍କୁ ସଂଗେ ଡାକି ନେଲେ । ବଶିଷ୍ଠ କୁଶତିଳାଦି ହସ୍ତରେ ମନ୍ତ୍ର ଉଚ୍ଚାରଣ କରନ୍ତି । ରାମାଦି ଏ ସ୍ଥଳେ ପିଣ୍ଡ ପ୍ରଦାନ କରିଥିବା ମଧ ଲେଖାଅଛି । (୨)

ଏଥିରେ ବଶିଷ୍ଠ ଜାବାଳି ଦୁହେଁ ଶ୍ରୀରାମଚନ୍ଦ୍ରଙ୍କୁ ତଦୀୟ ଅଭିଷେଚନାର୍ଥ ଯାହା ଯାହା କହିଅଛନ୍ତି, ତଥାଚ ଜାବାଳିଙ୍କର ବଚନର ଉତ୍ତର ସ୍ୱରୂପ ଶ୍ରୀରାମ ଯେ ସମାଧାନ ଦେଇଅଛନ୍ତି, ତାହା ଏକଧା ଲୌକିକ ବ୍ୟବହାର-ସିଦ୍ଧ ହେଲେହେଁ ମୂଳାନୁମତ ନୁହେ । ଦାସ ମହାଶୟ ମୂଳ ଗ୍ରନ୍ଥରେ ଉକ୍ତ ଆନୁପୂର୍ବ ସମ୍ବାଦମାନଙ୍କର କ୍ରମମାନ ଯଥାସାଧ ମନେରଖି ତାହାର ଆଭାଷ ସ୍ୱରୂପ ତତ୍ରତତ୍ର ଲୌକିକ ରୀତିର ସଙ୍ଗତ ନିଜର କଥାମାନ ଲେଖି ଅଛନ୍ତି । ସ୍ମୃତିମାନ୍ ବଳରାମ ଦାସେ ମୂଳ ରାମାୟଣ ଗ୍ରନ୍ଥର ଅଖଣ୍ଡ ପଠନ ଓ ଶ୍ରବଣରେ ଏକାନ୍ତ ପଟୁତର ଥିଲେ । ସେ ମୂଳଗ୍ରନ୍ଥରୁ ଯାହା ଯାହା ମନନ କରିଥିଲେ, ପ୍ରାୟଶଃ ସେ ସମସ୍ତ ସ୍ମୃତିକୋଷରେ ନିହିତ କରି ନିଜର ରାମାୟଣରେ ନିଜର ଭାଷାରେ ସେହି ସେହି ଘଟନାକୁ ନିଜର ଅନୁଭୂତି ବିଭୂତି ସହ ଚିତ୍ରିତ କରିଅଛନ୍ତି । ଯାହାକି ତାହାଙ୍କ ସ୍ମୃତିକୋଷରେ ଅକ୍ଷୁଣ୍ଣ ବିଦ୍ୟମାନ, ତାହା କିଂଚିତ୍‌କର ସାଧାରଣ ଘଟନା ହେଲେ ସୁଦ୍ଧା, ନ ଲେଖି ଛାଡ଼ି ନାହାନ୍ତି । ଅତଏବ ଏ ସ୍ଥଳେ ଭରତଙ୍କର ଦର୍ଭଶୟନାରମ୍ଭକୁ ମଧ ବିସ୍ତୃତ ସନ୍ଦର୍ଭ କରି ଲେଖି ଅଛନ୍ତି । (୩)

---

(୧) ୧୦୦, ୧୦୧ ପୃଷ୍ଠା ଦେଖନ୍ତୁ ।

(୨) ୧୦୧ ପୃଷ୍ଠା ଦେଖନ୍ତୁ ।

(୩) ୧୦୫ ପୃଷ୍ଠା ଦେଖନ୍ତୁ ।

ଭରତଙ୍କ ଦର୍ଭଶୟନର ଅବ୍ୟବହିତ ପରେ ଦାସେ ଲେଖିଅଛନ୍ତି କି ମହର୍ଷି ଶରଭଙ୍ଗ ନିଜ ଶିଷ୍ୟ ଉଲୁଙ୍ଗଙ୍କ ହସ୍ତରେ ଶ୍ରୀରାମଙ୍କଠାକୁ ଦୁଇଗୋଟି ପାଦୁକା ଦେଇ ପଠାଇଥିଲେ ଏବଂ ସେ ଆଦେଶ କରିଥିଲେ କି ଏହି ପାଦୁକା ଦ୍ୱୟକୁ ତୁମେ ସନ୍ଦେଶ ସ୍ୱରୂପ ପ୍ରଦାନ କର । (୧)

ପରେ ରାମଚନ୍ଦ୍ର ଏହି ପାଦୁକା ଦ୍ୱୟକୁ କେବଳ ଭରତଙ୍କୁ ପ୍ରଦାନ କରିଥିଲେ । (୨)

ବିଶ୍ୱାସ ହୁଏ, ଏହି କଥାନକଟି ଦାସେ ପୁରାଣାନ୍ତରରୁ ଆନୀତ କରିଅଛନ୍ତି । ଏହାପରେ ପୁଣି ଲେଖା ଅଛି, ଭରତ କୁଶ ଆସ୍ତରଣରେ ପଡ଼ି ରହିଲାରୁ ଦେବତାମାନେ ରାମନିବୃତ୍ତି ଶଙ୍କାରେ ଭୀତ ହୋଇ ଭରତଙ୍କୁ ଭୀତି ପ୍ରଦର୍ଶନ ପୂର୍ବକ ଉଚ୍ଚରାବରେ ସେହି ଚେଷ୍ଟାରୁ ନିବର୍ତ୍ତାଇ ଥିଲେ । ବଶିଷ୍ଠ ସୁଦ୍ଧା ସେହି ବିଭୀଷିକାମୂଳକ ଆକାଶବାଣୀରେ ଭୀତ ହୋଇ ଭରତଙ୍କୁ ଅଯୋଧ୍ୟା ଗମନାର୍ଥ ପ୍ରବର୍ତ୍ତାଇ ଥିଲେ । (୩)

ପରନ୍ତୁ ଭରତ ରାମଙ୍କୁ ଅଯୋଧ୍ୟା ପ୍ରତ୍ୟାବୃତ୍ତିରେ ସର୍ବଥା ବିମୁଖ ଜାଣି ତାହାଙ୍କ ସଙ୍ଗେ ଚତୁର୍ଦ୍ଦଶ ବର୍ଷ ସମାବସ୍ଥାପନ୍ନରେ ଅରଣ୍ୟବାସୀ ହେବା ପାଇଁ ଯେ ନିବେଦନ କରିଥିଲେ, ତାହା ଏଥିରେ ଲେଖାଥିବା ଦେଖାଯାଏ ନାହିଁ । ସୁତରାଂ ଭରତ ରାମଙ୍କ ପାଦୁକା ଦାନର ସ୍ୱୀକାର କଲା ସ୍ଥଳେ ରାମଙ୍କୁ ଯେଉଁ ସର୍ବାନ୍ତିମ ବଚନଟି ଜଣାଇଥିବା ଲେଖା ଅଛି, ତାହା ଅସଙ୍ଗତ ଓ ଅସମ୍ଭବ ଜଣାଯାଏ । (୪) କାରଣ ଶ୍ରୀରାମଙ୍କ ପ୍ରତି ଏପରି ଆଶଙ୍କା ଭରତଙ୍କ ହୃଦୟରେ କଦାଚ ଜନ୍ମି ନପାରେ । ମୂଳରେ ଯେପରି ଶ୍ରୀରାମଙ୍କ ଚତୁର୍ଦ୍ଦଶ ବର୍ଷ ବନବାସର ସମାପ୍ତିର ପ୍ରଥମ ଦିବସରେ ଭରତ ଯଦି ତାହାଙ୍କୁ ନ ଦେଖନ୍ତି, ତେବେ ଅଗ୍ନି ପ୍ରବେଶ କରିବା ଜଣାଇଅଛନ୍ତି, ଦାସେ ମଧ ତାହାହିଁ ଲେଖିଛନ୍ତି ଏବଂ ଇହା ପରେ ଚିତ୍ରକୂଟରୁ ପ୍ରତ୍ୟାବୃତ୍ତ ଭରତଙ୍କର ଅଯୋଧ୍ୟା ପ୍ରବେଶ ବୃତ୍ତାନ୍ତ ସଂକ୍ଷିପ୍ତ କରି ସୁଦ୍ଧା ଯଥାଯଥ ଲେଖିଅଛନ୍ତି ।

ମୂଳଗ୍ରନ୍ଥର ଚତୁର୍ଦ୍ଦଶାଧିକ ଶତତମାଧ୍ୟାୟରେ ଭରତଙ୍କର ବିସ୍ମୟୋତ୍ପାଦକ ଅଯୋଧ୍ୟା ନଗରୀର ଦୁରବସ୍ଥା ପୂର୍ଣ୍ଣତଃ ବର୍ଣ୍ଣିତ ଅଛି । ତାର ପର ଅଧ୍ୟାୟରେ ଭରତ ମାତାମାନଙ୍କୁ ଅଯୋଧ୍ୟାରେ ରଖି ବାହିନି ସହ ନନ୍ଦିଗ୍ରାମରେ ନିବାସ କରିବା, ରାମ ପାଦୁକା ସିଂହାସନରେ

(୧) ଛାପାରେ ୧୦୫ ପୃଷ୍ଠା ଦେଖନ୍ତୁ ।

(୨) ଯେ କଠାଉ ଦେଇଥିଲେ ଶରଭଙ୍ଗ ମୁନି । ଭରତକୁ ରାମ ଦେଲେ ସେ ପାଦୁକା ବେନି । ୧୦୭ ପୃ.

(୩) ୧୦୫, ୧୦୬ ପୃଷ୍ଠା ଦେଖନ୍ତୁ ।

(୪) ଭୋ ସ୍ୱାମୀ ତୋହର ବଚନରେ ଯାଉଅଛି ।
ପଛେନିକି ରଘୁନାଥ ମନେ ଧରୁ କିଛି । ୧୦୬ ପୃଷ୍ଠା

ଅଭିଷିକ୍ତ ରଖି ସମସ୍ତ ରାଜୋପଚାରବିଚାରାଦି ତତ୍ର ସମର୍ପଣ କରିଥିବା ଲେଖାଅଛି । ଅତଃପର ଏହି କାଣ୍ଡର ସର୍ବାନ୍ତିମ ଚାରିଗୋଟି ସର୍ଗରେ ରାମଙ୍କର ଚିତ୍ରକୂଟରୁ ଅତ୍ରିଙ୍କ ଆଶ୍ରମ ଦେଇ ଦଣ୍ଡକାରଣ୍ୟ ପ୍ରତି ଅଭିମୁଖତ୍ୱ ବର୍ଣ୍ଣିତ ଅଛି । ଏକଦିନ ରାଘବେନ୍ଦ୍ର ଚିତ୍ରକୂଟରେ ନିଜାବସ୍ଥାନ ହେତୁ ଋଷିମାନଙ୍କୁ ଭୀତ ଭୀତ ଓ ଇତସ୍ତତ ହେବା ଦେଖି କାରଣ ଜିଜ୍ଞାସା କଲେ । ସେମାନେ ରାମଙ୍କୁ ଦଣ୍ଡକସ୍ଥ ଖରାସୁରର ଦୌରାତ୍ମ୍ୟ ମୂଳକ ଋଷିହିଂସା ଜଣାଇ ଆମ୍ଭେମାନେ ଆପଣଙ୍କର ସନ୍ନିହିତ ଥିଲେ ଦୁଷ୍ଟ ରାକ୍ଷସମାନେ ଅନ୍ୟଥା ଆଶଙ୍କା କରିବେ ବୋଲି କହି ସେଠାରୁ ଅନତିଦୂର ପୁରାଣାଶ୍ରମକୁ ବାହାରି ଗଲେ । ରାମ ମଧ୍ୟ ଦଣ୍ଡକାରଣ୍ୟ ଯାତ୍ରା ଉଦ୍ଦେଶରେ ଚିତ୍ରକୂଟରେ ଅତ୍ରିଙ୍କ ଆଶ୍ରମକୁ ପ୍ରସ୍ଥାନ କଲେ । ମହର୍ଷି ଅତ୍ରିଙ୍କ ଧର୍ମପତ୍ନୀ ଅନସୂୟା ଦେବୀ ସୀତାଙ୍କ ପ୍ରତି ସୁପ୍ରୀତା ହୋଇ ତାହାଙ୍କୁ ଦିବ୍ୟ ବସ୍ତ୍ର, ଅଳଙ୍କାର ଓ ସ୍ୱର୍ଗୀୟସୌରଭ – ଅନୁଲେପନାଦି ପ୍ରଦାନ କଲେ, ତଥାଚ ସେହି ସବୁ ଦେବଦୁର୍ଲ୍ଲଭ ପଦାର୍ଥଗୁଡ଼ିକର ସୁଗୁଣ ମହିମା ବୁଝାଇଦେଲେ ।(୧)

ଏସ୍ଥଳେ ଅନୁସୂୟାଙ୍କ ଜିଜ୍ଞାସାରେ ସୀତାଦେବୀ ନିଜର ଉତ୍ପତ୍ତିଠାରୁ ରାମପ୍ରାପ୍ତି ପର୍ଯ୍ୟନ୍ତ ସମସ୍ତ କଥା ସଂକ୍ଷେପରେ କହିଅଛନ୍ତି । ସସୀତ ସାନୁଜ ରାମଚନ୍ଦ୍ର ସେହି ରାତ୍ରିମାତ୍ର ଅତ୍ରିଙ୍କ ସତ୍କାରରେ ତତ୍ର ଯାପିତ କରି ପ୍ରଭାତରୁ ପ୍ରସ୍ଥାନୋଦ୍ୟତ ହେଲାରୁ ଋଷିମାନେ ତଦୀୟ ସ୍ୱସ୍ତ୍ୟୟନ ସାଧନ ପୂର୍ବକ କହିଲେ କି ଏହି ବନରେ ପୁରୁଷାଦ ରାକ୍ଷସମାନେ ସଂଚାର କରନ୍ତି । ଆପଣ ସେମାନଙ୍କୁ ନିବାରଣ କରନ୍ତୁ । ରାମଚନ୍ଦ୍ର ସେଠାରୁ ଦଣ୍ଡକାରଣ୍ୟ ଅଭିମୁଖରେ ଯାତ୍ରା କଲେ । ଏହିଠାରେ ମୂଳ ଅଯୋଧ୍ୟା କାଣ୍ଡ ସମାପ୍ତ ହୋଇଅଛି ।

ବଳରାମ ଦାସଙ୍କ ରାମାୟଣରେ ଭରତ ଶ୍ରୀରାମ ଦର୍ଶନରୁ ପ୍ରତ୍ୟାବୃତ୍ତିରେ ଅଯୋଧ୍ୟା ପ୍ରବିଷ୍ଟ ହେବା ଯାଏ ମାତ୍ର ଅଯୋଧ୍ୟା କାଣ୍ଡ ପ୍ରସରି ଅଛି । ଏଥିରେ ଭରତଙ୍କର ନନ୍ଦିଗ୍ରାମ ଅବସ୍ଥାନ ପ୍ରକ୍ରିୟା ଦୁଇଚାରି ପଦ୍ୟରେ ମାତ୍ର ସୂଚିତ ହୋଇଅଛି । ମୂଳ ଗ୍ରନ୍ଥରେ ଏ ସ୍ଥଳେ ଉକ୍ତ ରାମବିରହବିଷଣ୍ଣହତଶ୍ରୀ ଅଯୋଧ୍ୟାର ଦୁରବସ୍ଥା ବର୍ଣ୍ଣନା ଦାସ ରାମାୟଣରେ ଏ ସ୍ଥଳେ ଲେଖା ନାହିଁ । ଏ ସ୍ଥଳେ କେବଳ କବିଙ୍କର ଅଯୋଧ୍ୟାକାଣ୍ଡର ଭଣିତ ପଦ୍ୟ ଦେଖାଯାଏ । ପୂର୍ବକାଣ୍ଡରେ ପ୍ରଧାନତଃ ସାଧାରଣ ଲୋକ ସମବାୟର ଅନୁଷ୍ଠାତବ୍ୟ

---

(୧) ଇଦଂ ଦିବ୍ୟଂ ବରଂ ମାଲ୍ୟଂ ବସ୍ତ୍ରମାଭରଣାନିଚ
ଅଙ୍ଗରାଗଂଚ ବୈଦେହି ମହାର୍ହ ଚାନୁଲେପନଂ ।
ମୟାଦତ୍ତମିଦଂ ସୀତେ ତବ ଗାତ୍ରାଣି ଶୋଭୟେତ୍ ଇତ୍ୟାଦି ୧୧୮ ସ ୧୮, ୧୯ ଶ୍ଳୋ ।
ଅନୁଲେପନଂ ତୁ କର୍ପୁରାଗୁରୁକସ୍ତୂରୀ କଙ୍କୋଳୈଯକ୍ଷକର୍ଦମମିତ୍ୟୁକ୍ତଯକ୍ଷକର୍ଦମବଦ୍ ମହାପରିମଳଦ୍ରବ୍ୟସହିତମନୁଲେପନମିତ୍ୟଙ୍ଗରାଗାନୁଲେପନୟୋର୍ଭେଦଃ ଇତି ମହେଶ୍ୱର ତୀର୍ଥଟୀକାୟାଂ –

ପିତୃ ବଚନ ପରିପାଳକ ରୂପ ସଦ୍‌ଧର୍ମ ଶ୍ରୀ ରାମଚନ୍ଦ୍ରଙ୍କ ଚରିତାବଳିଦ୍ୱାରା ଉପବିଷ୍ଟ ହୋଇଅଛି । ବର୍ତ୍ତମାନ ଆରଣ୍ୟକ କାଣ୍ଡରେ ସଜ୍ଜନରକ୍ଷଣ ରୂପକ ବିଶେଷ ଧର୍ମର ପ୍ରତିପାଦନ କରାଯାଇଅଛି । ଏଥିରେ ମହାପ୍ରଭୁଙ୍କର ଅଦ୍ଭୁତ ପରାକ୍ରମ ସବିସ୍ତର ବର୍ଣ୍ଣିତ ଅଛି । ମହର୍ଷି ଆଦିକବି ଶ୍ରୀରାମଚନ୍ଦ୍ରଙ୍କର ଦଣ୍ଡକାରଣ୍ୟ ପ୍ରବେଶମୂଳକ ପାଠଠାରୁ ଆରଣ୍ୟକକାଣ୍ଡ ନାମର ପ୍ରାରମ୍ଭଣ କରିଅଛନ୍ତି । (୧)

ଏହି କାଣ୍ଡର ନାମର ଏହାହିଁ ସାର୍ଥକତା ବ୍ୟଞ୍ଜକ । କିନ୍ତୁ ବଳରାମ ଦାସେ ଶ୍ରୀରାମଚନ୍ଦ୍ରଙ୍କର ଚିତ୍ରକୂଟ ଅବସ୍ଥାନ ଓ ରାମଦର୍ଶନ – ପ୍ରତ୍ୟାବର୍ତ୍ତ ଭରତଙ୍କର ଅଯୋଧ୍ୟା ପ୍ରବେଶାବସାନଠାରୁ ଶଂସିତ କାଣ୍ଡର ପ୍ରାରମ୍ଭ କରିଅଛନ୍ତି । (୨)

ଅତଏବ ମୂଳ ଅଯୋଧ୍ୟା କାଣ୍ଡର ସର୍ଗାବସାନରେ ଲିଖିତ ଭରତଙ୍କ ନନ୍ଦିଗ୍ରାମ ପ୍ରବେଶାଦି କଥା ଏବଂ ରାମଙ୍କ ଚିତ୍ରକୂଟ ପରିତ୍ୟାଗ ପୂର୍ବକ ଅତ୍ରିସତ୍‌କାର ଗ୍ରହଣାଦି କଥା ଏଥିରେ ଆରଣ୍ୟକ କାଣ୍ଡର ପ୍ରାରମ୍ଭରେ ଦିଆଯାଇଅଛି । ରାମଚନ୍ଦ୍ରଙ୍କ ସହାବସ୍ଥାନରୁ ଚ୍ରିତକୂଟ ନିବାସୀ ଋଷିମାନଙ୍କର ଯାଦୃଶୀ ଆଶଙ୍କା ଏବଂ ଅତ୍ରି ଓ ଅନୁସୂୟାଙ୍କ ସହ ରାମ ଓ ସୀତାଙ୍କର ଯାଦୃଶ ଆଳାପ ମୂଳରେ ଉକ୍ତ, ଦାସେ ମଧ୍ୟ ତାହାହିଁ ଠିକ୍ ଦେଇ ଅଛନ୍ତି । ପରନ୍ତୁ ବିଶେଷତଃ ଲେଖିଅଛନ୍ତି କି ଅତ୍ରିପତ୍ନୀ ଅନସୂୟା ସୀତାଙ୍କୁ ଉପହାର ଦେବା ପୂର୍ବରୁ ସୀତା ନିଜେ ଲକ୍ଷ୍ମୀ, ରାମଚନ୍ଦ୍ର ସ୍ୱୟଂ ନାରାୟଣ ଆଉ ଦଶରଥ କୌଶଲ୍ୟାଦି ମାନେ କଶ୍ୟପ ଓ ଅଦିତି ପ୍ରଭୃତିଙ୍କର ଅବତାର ବୋଲି ଜଣାଇଥିଲେ ଏବଂ ତଦୀୟ ଅମ୍ଳାନ ବସ୍ତ୍ରର ପରିଚୟ ଦାନରେ ସେ ସୀତାଙ୍କୁ କହିଥିଲେ ଯେ ଏହି ଦିବ୍ୟ ବସ୍ତ୍ରଟିକୁ ଆପେ ଉମାଦେବୀ ବିବାହ ସମୟରେ ପରିଧାନ କରିଥିଲେ । ସମୟେ ପୁଣି ଏହାକୁ ମହାଦେବ ନେଇ ବ୍ରହ୍ମାଙ୍କୁ ଦେଇଥିଲେ । ବ୍ରହ୍ମା ପୁଣି ଆଣି ଏହାକୁ ଅତ୍ରି ମହର୍ଷିଙ୍କୁ ପ୍ରଦାନ କରିଅଛନ୍ତି ଇତ୍ୟାଦି ସେହି ଅମ୍ଳାନ ବସ୍ତ୍ରର ହୈତୁକ କଥାମାନ ମୂଳ ଗ୍ରନ୍ଥରେ ଲେଖା ନାହିଁ । ଦାସେ ଏସବୁ ପୁରାଣାନ୍ତରରୁ ଅବଗତ ହୋଇ ଏଠାରେ ଦେଇଅଛନ୍ତି ।

ରାମଚନ୍ଦ୍ର ଦଣ୍ଡକାରଣ୍ୟରେ ପ୍ରବେଶି ତତ୍ରତ୍ୟ ଋଷିବୃନ୍ଦକୃତ ସତ୍‌କୃତି ସତ୍କୃତ ହେଲା ପରେ ଏକଦା ବୀରାଧିପ ଅବାଧ-ବୀରଧି ବିରାଧ ଦୈତ୍ୟ ଦ୍ୱାରା ଆକ୍ରାନ୍ତ ହେଲେ । ଦ୍ୱିତୀୟ ଓ ତୃତୀୟ ସର୍ଗରେ ବିରାଧ ବିରୋଧ ବିଧାନ ଉକ୍ତ ଅଛି । ଶତହ୍ରଦାତନୟ ଅବିନୟ ବିରାଧ ପ୍ରଥମତଃ ହଠାତ୍ ପଶ୍ୟତୋହର ପ୍ରାୟ ସହସା ସୀତାଙ୍କୁ ଧରି ନେଲା ।

---

(୧) ପ୍ରବିଶ୍ୟ ତୁ ମହାରଣ୍ୟଂ ଦଣ୍ଡକାରଣ୍ୟମାତ୍ମବାନ୍
ଦଦର୍ଶ ରାମୋ ଦୁର୍ଦ୍ଧର୍ଷଃ ତାପସାଶ୍ରମମଣ୍ଡଳମ୍ । ଆରଣ୍ୟ-କା-୧ସ. ୧ ଶ୍ଳୋ

(୨) ଚିତ୍ରକୂଟ ଗିରିପରେ ପର୍ଣ୍ଣକୁଟୀକରି
ଶ୍ରୀରାମ ରହିଲେ ଘେନି ଜନକ କୁମାରୀ । ଆରଣ୍ୟ-କାଣ୍ଡର-ପ୍ରଥମପଦ୍ୟ ।

ତାପରେ ସେ ପୁଣି ଆତ୍ମ ଅଭିବ୍ୟକ୍ତି ଓ ସୀତାଙ୍କ ମୁକ୍ତି ପୂର୍ବକ ରାମ ଓ ଲକ୍ଷ୍ମଣଙ୍କ ସହ ଯୁଦ୍ଧ ସଂମର୍ଦ କରି ସେ ଦୁହିଙ୍କୁ ବଳେ ସ୍କନ୍ଧସ୍ଥ କରି ଚାଲିଗଲା । ବିରାଢ ସ୍କନ୍ଧରେ ସାଗ୍ରଜ ଶ୍ରୀକୃଷ୍ଣଚନ୍ଦ୍ରଙ୍କ ପ୍ରାୟ ବିରାଧ ସ୍କନ୍ଧରେ ବିରାଜମାନ ସାନୁଜ ଶ୍ରୀରାମଚନ୍ଦ୍ର ସୀତାଙ୍କ ବିଳାପରେ ଉତ୍ତେଜିତ ହୋଇ ରାକ୍ଷସର ବାହୁଦ୍ୱୟ ବିଚ୍ଛେଦିତ କଲେ । ତଥାପି ରାକ୍ଷସ ବିଜିଗୀଷା ପ୍ରବୃତ୍ତିରେ ପ୍ରବୃତ୍ତ ହେଲାରୁ ତାକୁ ଭ୍ରାତୃଦ୍ୱୟ କ୍ଷତ ବିକ୍ଷତ କରି ତଦୁକ୍ତ ତଦୀୟ ମୃତ୍ୟୁ ଭେଦ ବଚନାନୁସାରେ ତାହାକୁ ଗର୍ତ୍ତ ମଧରେ ନିକ୍ଷିପ୍ତ କଲେ । ତେତେବେଳେ ବିରାଧ ସ୍ୱକୀୟ ପ୍ରାକ୍ତନ ପୁଣ୍ୟ ବଳରୁ ଦିବ୍ୟ ଦେହ ଧାରଣରେ ଶ୍ରୀରାମଚନ୍ଦ୍ରଙ୍କୁ ଚିହ୍ନିପାରି ନିଜର ଶାପ ବୃତ୍ତାନ୍ତର ବିଜ୍ଞାପନ ପୂର୍ବକ ରାମଙ୍କୁ ଶୁଭୋଦର୍କ ନିମନ୍ତେ ଶରଭଙ୍ଗାଶ୍ରମକୁ ଯିବା ପାଇଁ ଅନୁରୋଧ କରି ଅଛନ୍ତି । ସେ କହିଛନ୍ତି କି ମୁଁ ପୂର୍ବେ ତୁମ୍ବୁରୁ ନାମକ ଗନ୍ଧର୍ବ ଥିଲି (୧) କୁବେରଙ୍କ ଶାପରୁ ଏହି ଦୁର୍ଦ୍ଦାନ୍ତ ରାକ୍ଷସ ସ୍ୱରୂପ ବହି ଆପଣଙ୍କ ସୁଦୟାରୁ, ସେଥିରୁ ମୁକ୍ତି ପ୍ରାପ୍ତ ହୋଇଅଛି । ଦାସଙ୍କ ରାମାୟଣରେ ଏ ସ୍ଥଳେ ବୈଷମ୍ୟ ଏହି । ସେ ସଂକ୍ଷିପ୍ତତଃ କହିଅଛନ୍ତି କି ବିରାଧ ସୀତାଙ୍କୁ କେବଳ ଘେନି ଯାଇଥିଲା । ବିରାଧ ପୂର୍ବ ରୂପରେ ସୁବାହୁ ଗନ୍ଧର୍ବ ଥିଲେ ।(୨) କିନ୍ତୁ ସେ ରାକ୍ଷସ ରାମ ଲକ୍ଷ୍ମଣଙ୍କୁ ସ୍କନ୍ଧସ୍ଥ ନେବା ଏଥିରେ ଲେଖାନାହିଁ । (୩)

ରାମଙ୍କର ଦଣ୍ଡକାରଣ୍ୟ ପ୍ରବେଶର ପ୍ରାରମ୍ଭରେ ଋଷିମାନେ ତଦୀୟ ମନ୍ମଥାତିରେକ-କମନୀୟ ରୂପ ଦେଖି ନିଜର ରୂପର ସ୍ତ୍ରୀତ୍ୱ ଅଭିଳାଷ କରିଥିବା ମଧ ଏଥିରେ ଲେଖା ଅଛି । ଏହା ମୂଳ ଗ୍ରନ୍ଥରେ ଲେଖା ନଥିଲେ ସୁଦ୍ଧା ଅତ୍ରତ୍ୟ ଚରିତ କେବଳ ଦାସେ ଏହାକୁ ପୁରୁଣାନ୍ତରରୁ ଅବଗତ ହୋଇ ଠିକ୍ ସ୍ଥାନରେ ମିଳାଇ ଦେଇଅଛନ୍ତି ।

ପଞ୍ଚମ ସର୍ଗରେ ରାମଚନ୍ଦ୍ରେ ଶରଭଙ୍ଗଙ୍କ ଆଶ୍ରମରେ ତାହାଙ୍କର ସ୍ୱର୍ଗ ପ୍ରାପଣ ନିମନ୍ତେ ସାନୁଗ ସପରିଚର ସୋପକରଣେ ସମାଗତ ଦେବେନ୍ଦ୍ରଙ୍କୁ ଦେଖି ଆଗମନର କାରଣ ଜିଜ୍ଞାସା କଲାରୁ ମହର୍ଷି ଶରଭଙ୍ଗ ରାମଦର୍ଶନପବିତ୍ରୀକୃତ ଚିତ୍ତରେ ନିଜର ଭବିଷ୍ୟମାଣ ବ୍ରହ୍ମଲୋକ ପ୍ରାପ୍ତି ଜଣାଇ ସ୍ନାର୍ତ୍ତାଗ୍ନିରେ ଦେହତ୍ୟାଗ ପୂର୍ବକ ଦିବ୍ୟରୂପରେ ସ୍ୱର୍ଗଯାତ୍ରା କରିଅଛନ୍ତି । ଦାସେ ମଧ ସମାସତଃ ଏହାହିଁ ଲେଖିଅଛନ୍ତି । ସପ୍ତମ ଓ ଅଷ୍ଟମ ସର୍ଗରେ ରାମଚନ୍ଦ୍ର ସୁତୀକ୍ଷ୍ଣ ଋଷିଙ୍କ ଆଶ୍ରମରେ ତଦୀୟ ଆଳାପନରେ ଏକ ରାତ୍ର ମାତ୍ର ଅତିବାହିତ କରି ପରଦିନ ପ୍ରାତଃ କାଳରୁ ଋଷିମାନଙ୍କସହ ସେଠାରୁ ପ୍ରସ୍ଥାନ କରିଥିବା ବର୍ଣ୍ଣିତ ଅଛି । କିନ୍ତୁ ଦାସେ ଲେଖିଅଛନ୍ତି କି ରାମଚନ୍ଦ୍ର ସୁତୀକ୍ଷ୍ଣଙ୍କ ଆଶ୍ରମରେ ଅନେକ

(୧) ତୁମ୍ବୁରୁ ନାମ ଗନ୍ଧର୍ବଃ ଶପ୍ତୋବୈଶ୍ରବଣେନ ହି .ଇତି.ଆର.କା. ୪ସ. ।
(୨) ଛାପା ପୁସ୍ତକରେ ଦଶମ ପୃଷ୍ଠା ଦେଖନ୍ତୁ ।
(୩) ବିରାଧ ସୀତାଙ୍କୁ ତ୍ୟାଗକରି ରାମ ଓ ଲକ୍ଷ୍ମଣଙ୍କୁ ସ୍କନ୍ଧରେ ବହି ପଳାଉଥିବାର କଥା ଚମ୍ପୂ ରାମାୟଣରେ ମଧ ଉକ୍ତ ଅଛି । ଆର. କା. ୯ ଗଦ୍ୟ ଦେଖନ୍ତୁ ।

ଦିନ ଅବସ୍ଥାନ କରିଥିଲେ । (୧) ଯଥାର୍ଥତଃ ତେତେବେଳେ ରାମଙ୍କ ନିଜାଶ୍ରମରେ କେବଳ ସର୍ବଦା ରହିବା ଉଚିତ ନୁହେ ବୋଲି ରାମ କହିଲାରୁ ଋଷି ତାହାଙ୍କୁ ଫେର ଆଉଥରେ ନିଜାଶ୍ରମକୁ ଆସିବା ପାଇଁ ସାଦରେ ଅନୁରୋଧ କରିଥିଲେ । ରାମଚନ୍ଦ୍ର ଋଷି ସମାଜର ଅଭୟ ପ୍ରଦାନପୂର୍ବକ ରାକ୍ଷସ ଜାତିର ବିନାଶରେ କୃତପ୍ରତିଜ୍ଞ ହେଲାରୁ ସୀତାଦେବୀ ବିନା ଦୋଷରେ ରାକ୍ଷସ ମାରଣରୁ ତାହାଙ୍କୁ ନିବର୍ତ୍ତାଇବା ପାଇଁ ନବମ ସର୍ଗରେ ସହେତୁକ ଅନୁରୋଧ କରିଅଛନ୍ତି । ସେ ପୁଣି ଏ ସ୍ଥଳେ ଅସତ୍ୟ ପରଦାରାଭିଗମନ ଓ ପରପ୍ରାଣାଭିହିଂସନ, ରୌଦ୍ର କର୍ମ, ଏହି ତିନିଗୋଟି ବ୍ୟସନ ଦୋଷ ଉଲ୍ଲେଖ କରି ପ୍ରଥମ ଓ ଦ୍ୱିତୀୟ ଦୋଷ ରାମଙ୍କଠାରେ ଅସମ୍ଭବ କିନ୍ତୁ ତୃତୀୟଟିରେ ରାମ ସନ୍ତତ ସଚେଷ୍ଟ ଥିବା ଅନୁଚିତ ବୋଲି ପ୍ରକାଶ କରି ଅଛନ୍ତି । (୨)

ବଳରାମ ଦାସେ ଏହି ଗୋଟିକ ଦୋଷକୁ ଅନୁସରି ଅନ୍ୟପ୍ରକାର ଅନୁବାଦନ କରି ଅଛନ୍ତି । ସେ ଅନୁବାଦନର କ୍ରମ ଯାହା ହେଉ ବିରାଙ୍ଗନାପ୍ରବରା ବୈଦେହୀଙ୍କ ମୁଖରେ ସେ ଯାହା କେତେକ ଅବୀରୋଚିତ ଦୀନ କାତରୋକ୍ତି ପ୍ରକାଶ କରି ଅଛନ୍ତି, ମୂଳ ଗ୍ରନ୍ଥରେ ତାହାର ଆଭାସ ସୁଦ୍ଧା ନାହିଁ, ସୁତରାଂ ସୀତାଙ୍କ ଉକ୍ତିର ସ୍ୱରୂପ ରାମଙ୍କ ମୁଖରେ ଯାହା ଆତ୍ମ ପ୍ରଭାବ ବା ଆତ୍ମପ୍ରୌଢ଼ି ପ୍ରକାଶ କରି ଅଛନ୍ତି, ତାହା ମଧ ଧୀରୋଦାତ୍ତ ଉକ୍ତିର ସୀମାରୁ ଟିକିଏ ଅତିକ୍ରାନ୍ତ ପରି ଜଣାଯାଉଅଛି । (୩)

ପରଂତୁ ମୂଳ ଗ୍ରନ୍ଥରେ ଦୃଢ଼ ପ୍ରତିଜ୍ଞ ରାମଚନ୍ଦ୍ର ସୀତାଙ୍କ ଉକ୍ତିର ପ୍ରତ୍ୟୁକ୍ତିରେ ଯେ ପ୍ରକାର କୃତପ୍ରତିଜ୍ଞାର ଅକ୍ଷୁଣ୍ଣ ପରିପାଳନ ତତ୍‌ପରତା ନିମନ୍ତେ ସ୍ୱକୀୟ ପ୍ରାଣ ତଥାଚ ସ୍ୱପ୍ରାଣକଳ୍ପ ପ୍ରିୟତମାଙ୍କ ପ୍ରତି ମଧ ନିରପେକ୍ଷତା ପ୍ରକାଶ କରିଅଛନ୍ତି । (୪) ଦାସେ ଠିକ୍ ତାହାର ଅଭିବ୍ୟକ୍ତି ଦେଖାଇ ନାହାନ୍ତି । ଏହାପରେ ରାମଚନ୍ଦ୍ର ଋଷିମାନଙ୍କ ସହ ବନରେ ଯାଉଁ ଯାଉଁ ପଞ୍ଚାପ୍ସରାଭିଧ ସରୋବର ମଧରେ ସଂଗୀତ ଆଳାପନ ଶ୍ରବଣ କରି ସେମାନଙ୍କୁ ତଦୀୟ ସଂଧାନ ଜିଜ୍ଞାସା କରିଅଛନ୍ତି । ଏ ସ୍ଥଳରେ ଅପ୍ସରାକୃତ ସଂଗୀତ-ସଂରକ୍ତ ମାଣ୍ଡକର୍ଣ୍ଣି ଋଷିଙ୍କ ଚରିତ ଲେଖା ଅଛି । (୫)

---

(୧) ଛାପା ଆରଣ୍ୟକ ପର୍ବରେ ୧୧ ପୃଷ୍ଠା ଦେଖନ୍ତୁ ।

(୨) ତୃତୀୟଂ ଯଦିଦଂରୌଦ୍ରଂ ପରପ୍ରାଣାଭିହିଂସନଂ
ନିର୍ବୈରଂ କ୍ରିୟତେ ମୋହାତ୍ ତଚ୍ଚତେ ସମୁପସ୍ଥିତମ୍ । ୯ସ.

(୩) ଛାପା ପୁସ୍ତକରେ ୧୧, ୧୨, ୧୩ ପୃଷ୍ଠାମାନ ପଢ଼ନ୍ତୁ ।

(୪) ଅପ୍ୟହଂ ଜୀବିତଂ ଜହ୍ୟାଂ ତ୍ୱାଂ ବା ସୀତେ ସଲକ୍ଷ୍ମଣାମ୍
ନ ତୁ ପ୍ରତିଜ୍ଞାଂ ସଂଶ୍ରୁତ୍ୟ ବ୍ରାହ୍ମଣେଭ୍ୟୋ ବିଶେଷତଃ । ଆର. କା. ୧୦ ସର୍ଗ

(୫) ଇଦଂ ପଞ୍ଚାପ୍ସରୋ ନାମ ତଟାକଂ ସାର୍ବକାଳିକମ୍
ନିର୍ମିତଂ ତପସା ରାମ ମୁନିନା ମାଣ୍ଡକର୍ଣ୍ଣିନା ଆର. କା: ୧୧ସ.

ଅପିଚ ଏହି ଏକାଦଶ ସର୍ଗରେ ଲେଖା ଅଛି କି, ରାମ ପଞ୍ଚାପ୍‌ସର ଦର୍ଶନ ପରେ ସାଦର ଅନୁରୋଧକ୍ରମେ ଅନୁଗତ ଋଷିମାନଙ୍କର ଆଶ୍ରମମାନଙ୍କରେ ଯଥାକ୍ରମେ ଦୁଇ ଦୁଇ ଥର ଅବସ୍ଥାନ କରି ବନବାସ ସମୟରୁ ଦଶବର୍ଷ କାଳ ଅତୀତ କରିଥିଲେ । (୧)

ଦାସଙ୍କ ରାମାୟଣରେ ପଞ୍ଚାପ୍ସର କଥାନକଟି ଟିକିଏ ଭିନ୍ନ ପ୍ରକାର ଉକ୍ତ ଅଛି । ଦାସେ କହିଛନ୍ତି, ଏହି ସରୋବରର ପ୍ରଦେଶରେ ସନ୍ତତ ସବୁଦିନେ ବର୍ଷା ହେଉଥାଏ । ଏହି ମାର୍ଗରେ କେହି ଗମନାଗମନ କରନ୍ତି ନାହିଁ । ଇତ୍ୟାଦି । (୨)

ମାଣ୍ଡକର୍ଣ୍ଣି ନାମଟି ଏଥିରେ ଅନୁଲେଖକଙ୍କ ଲେଖାରେ ମନ୍ଦକର୍ଣ୍ଣ ହୋଇ ଯାଇଅଛି । ମୂଳ ଏକାଦଶ ସର୍ଗରେ ଦେଖିବେ ରାମଚନ୍ଦ୍ର ଫେର ଦ୍ୱିତୀୟବାର ସୁତୀକ୍ଷ୍ଣଙ୍କ ଆଶ୍ରମକୁ ଗଲେ । (୩)

ତତ୍ର ସେ କେତେକ ଦିନ ଅବସ୍ଥାନ କରି ସୁତୀକ୍ଷ୍ଣଙ୍କ ପ୍ରଦତ୍ତ ପରିଚୟରେ ପ୍ରଥମେ ଅଗସ୍ତ୍ୟାନୁଜ ତାପରେ ଅଗସ୍ତ୍ୟଙ୍କ ଆଶ୍ରମକୁ ଯାତ୍ରା କଲେ । ଏ ସ୍ଥଳରେ ପ୍ରସ୍ତାବଶତଃ ସେହି ଋଷିଙ୍କ ମୁଖରେ ଅଗସ୍ତ୍ୟ-ବିନଷ୍ଟ-ବାତାପି ଓ ଇଲ୍ୱଳଙ୍କ ଚରିତ ପ୍ରକାଶିତ ଅଛି । ରାମ ସୁତୀକ୍ଷ୍ଣାଶ୍ରମରୁ ଚତୁର୍ଯୋଜନରେ ଅବସ୍ଥିତ ଅଗସ୍ତ୍ୟଙ୍କ ଭ୍ରାତାଙ୍କ ଆଶ୍ରମରେ ପ୍ରବେଶି ତତ୍ର ଏକରାତ୍ରି ମାତ୍ର ଅବସ୍ଥାନ କରି ପରଦିନ ଅଗସ୍ତ୍ୟାଶ୍ରମକୁ ପ୍ରସ୍ଥାନ କରିଥିଲେ । ଏ ସ୍ଥାନରେ ପ୍ରସ୍ତାବବଶତଃ ଅଗସ୍ତ୍ୟଙ୍କ ସଂଯମିତ ବିନ୍ଧ୍ୟପର୍ବତର ଚରିତ ସଂକ୍ଷିପ୍ତ ଭାବରେ ବର୍ଣ୍ଣିତ ଅଛି ।

ବଳରାମ ଦାସଙ୍କ ରାମାୟଣରେ ରାମଚନ୍ଦ୍ରଙ୍କର ସୁତୀକ୍ଷ୍ଣାଶ୍ରମ ପ୍ରବେଶ ଓ ସେଠାରୁ ଅଗସ୍ତ୍ୟାଶ୍ରମ ପ୍ରସ୍ଥାନ ଏହି ଉଭୟ ପାଠ ମଧ୍ୟରେ କେତେଗୁଡ଼ିଏ ଅବାନ୍ତର କଥା ଲେଖାଅଛି । ଏଥିରେ ଦେଖିବେ ରାମ ଦ୍ୱିତୀୟବାର ସୁତୀକ୍ଷ୍ଣାଶ୍ରମରେ ଏକ ମାସ ଅବସ୍ଥାନ କରି ଦଣ୍ଡକାରଣ୍ୟରେ ପ୍ରବେଶିଲେ । ଏଥି ମଧ୍ୟରେ ଶ୍ରୀରାମ ଫଲ୍‌ଗୁ ନଦୀ ତୀରସ୍ଥ ଗୟା କ୍ଷେତ୍ରରେ ପ୍ରବେଶି ଥିବା ଲେଖାଅଛି । କିନ୍ତୁ ଦଣ୍ଡକାରଣ୍ୟର ବହୁଦୂର ଉତ୍ତର ଦିଗରେତ ଗୟାର ଅବସ୍ଥାନ, ଦଣ୍ଡକାରଣ୍ୟରେ ପ୍ରବେଶ କରୁ କରୁ ଗୟାକୁ କିପରି ଗଲେ ? ଏହି

---

(୧) ତତ୍ର ସଂବସତସ୍ତସ୍ୟ ମୁନୀନାମାଶ୍ରମେଷ୍ୱ ବୈ
ରମତଷ୍ଚାନୁକୂଲ୍ୟେନ ଯଯୁଃ ସଂବତ୍ସରା ଦଶ । ୧୧ସ. ୨୮ ଶ୍ଳୋ

(୨) ଇନ୍ଦ୍ରଙ୍କର ଆଜ୍ଞାରେ ଯେଯେ ବରଷନ୍ତି । ଆନଲୋକ କେହି ଏଥେ ପଥ ନ ବହନ୍ତି ।। ତୁମ୍ଭେ ତ ଶ୍ରୀରାମ ଯେ ପରମ ବ୍ରହ୍ମ ହରି । ତୋତେ ଦେଖି ମେଘମାନେ ଗଲେ ଅପସରି ।। ୧୪ ପୃଷ୍ଠା

(୩) ରାମଙ୍କ ସୁତୀକ୍ଷ୍ଣଙ୍କ ଆଶ୍ରମ ପ୍ରତି ପ୍ରଥମ ପ୍ରୟାଣ ଛାପାରେ ୧୧ ପୃଷ୍ଠାରେ ଲେଖାଅଛି । ଦ୍ୱିତୀୟ ପ୍ରୟାଣ ଓ ଅବସ୍ଥାନ ୧୩ ପୃଷ୍ଠାରେ ରାମଙ୍କ ମିଳନ ଲେଖାଅଛି ।

ଆଶଙ୍କା ମୂଳକ ଆପତ୍ତି ଘଟୁଅଛି, ଲେଖକଙ୍କର ଦେଶାବସ୍ଥାନ ଜ୍ଞାନରେ ଅନଭିଜ୍ଞତାର ସୂଚନା ହୋଉଅଛି । ଶ୍ରୀରାମ ଯେତେବେଳେ ଗୟାରେ ଗୟାସୁରକୁ ନିହତ କରିଥିଲେ । ତତ୍ର ସୀତାଦେବୀ ପାକାସ୍ପର୍ଶ ହେଲା ପରେ (୧) ଦଶରଥଙ୍କ ଉଦ୍ଦେଶରେ ବାଲୁକାପିଣ୍ଡ ପ୍ରଦାନ କଲାରୁ ସେ ସ୍ୱର୍ଗକୁ ପ୍ରସ୍ଥାନ କଲେ । ତଥାଚ ଦେବତାମାନେ ମଧ୍ୟ ପରିତୃପ୍ତିରେ ପରିତୁଷ୍ଟ ହୋଇ ରାମଙ୍କୁ ପିତୃଉଦ୍ଦେଶକ ପୁନଃ ପିଣ୍ଡ ପ୍ରଦାନରେ ନିଷେଧିଲେ , ଗୟାଳି ପଣ୍ଡାମାନେ ଅବିମୃଷ୍ୟକାରିତା ଓ ଅତ୍ୟନ୍ତ ଲୋଲୁପତାରେ ସୀତାଙ୍କ ଉତ୍ତରୀୟାଞ୍ଚଳ ଆକର୍ଷଣ କଲାରୁ ଲକ୍ଷ୍ମଣ ଅଞ୍ଚଳ ଛେଦନ କରିଥିଲେ ।(୨) ଏବଂ ରାମଚନ୍ଦ୍ର ସକ୍ରୋଧରେ ଗୟାଳି ପଣ୍ଡାମାନଙ୍କୁ ଅପିଚ ଫଲଗୁ ନଦୀକୁ ମଧ୍ୟ ଶାପ ପ୍ରଦାନ କରିଥିଲେ ବୋଲି ଲେଖାଅଛି ।

ଦାସଙ୍କ ରାମାୟଣମତେ ରାମ ଯେତେବେଳେ ଗୟାରୁ କାଶୀଧାମକୁ ଯାଇଥିଲେ, ସେଠାରେ ମଧ୍ୟ ବିରକ୍ତହୋଇ ବ୍ରାହ୍ମଣମାନଙ୍କୁ ଶାପ ପ୍ରଦାନ କରିଥିଲେ । ରାମଚନ୍ଦ୍ର ଯେ ବ୍ରାହ୍ମଣମାନଙ୍କୁ ଶାପ ପ୍ରଦାନ କରିଥିବେ, ଏହା କୁତ୍ରାପି କୌଣସି ମତେ ସମ୍ଭବ ନୁହେ । ସୁତରାଂ ରାମଚନ୍ଦ୍ର ଅଯୋଧ୍ୟାରୁ ଦଣ୍ଡକାରଣ୍ୟ ଅଗସ୍ତ୍ୟାଶ୍ରମ ପର୍ଯ୍ୟନ୍ତ ଆସି ଫେର ବିଲୋମଗତିରେ ଉତ୍ତରୋତ୍ତର ଗୟା ତାପରେ ପୁଣି କାଶୀଧାମକୁ ଯାଇଥିଲେ ବୋଲି କହିବା ଦ୍ୱାରା ଲେଖକଙ୍କର ଦେଶାବସ୍ଥାନ ଅନଭିଜ୍ଞତା ସୁଦ୍ଧା ବ୍ୟଞ୍ଜିତ ହୋଇଅଛି । ତାପରେ ରାମଚନ୍ଦ୍ର କାଶୀଧାମରୁ ଏକାବେଳେକେ ଚନ୍ଦ୍ରଭାଗାତୀରସ୍ଥ ଭାସ୍କର ତୀର୍ଥକୁ ଗଲେ ବୋଲି ଲେଖାଅଛି । ଭାସ୍କର ତୀର୍ଥ ବା ଚନ୍ଦ୍ରଭାଗା ତୀର୍ଥରେ ରାମଚନ୍ଦ୍ର ନୀଳକଣ୍ଠ ପତିତ ରୁଦ୍ରାକ୍ଷ ବୀଜରୁ ବୃକ୍ଷ ଜନ୍ମାଇଥିବା, ତହୁଁ ସେ ଚନ୍ଦ୍ରଭାଗା ସଙ୍ଗମ ସ୍ଥାନକୁ ଯାଇ ତତ୍ରତ୍ୟ ବୁଳାଇଚଣ୍ଡୀ ଦେବୀଙ୍କୁ ପୂଜାକରି ରାମଚଣ୍ଡୀ ନାମରେ ନାମିତ କରିଥିଲେ । ଅପିଚ ତତ୍ର ପାଷାଣ ଚଣ୍ଡୀଙ୍କୁ ପ୍ରତିଷ୍ଠିତ କରିଥିବା ଲେଖାଅଛି । ଆହୁରି ପୁଣି ଲେଖା ଅଛି କି ରାମଚନ୍ଦ୍ର ପାଷାଣ୍ଡିଙ୍କର ପ୍ରତିଷ୍ଠାନୁଷ୍ଠାନ କଲା ପରେ ଚିତ୍ରୋତ୍ପଳା ତୀରକୁ ତାପରେ ପୁଣ୍ୟଗିରିକୁ ସେଠାରେ ପୁଣି ନୀଳଗିରି ଶ୍ରୀପୁରୁଷୋତ୍ତମ କ୍ଷେତ୍ରକୁ ଯାଇଥିଲେ । ଏଥି ମଧ୍ୟରେ ରାମଚନ୍ଦ୍ର ତୁମ୍ବେଶ୍ୱର ଲିଙ୍ଗଙ୍କୁ ପ୍ରତିଷ୍ଠିତ କରିଥିବା ମଧ୍ୟ ଲେଖା ଅଛି । ସୁତରାଂ ଏହି ଉଦ୍‌ବୃତ୍ତ ଚରିତ ସଂବିଧାନଗୁଡ଼ିକର ଲେଖକ ମହାଶୟ ଏ ସ୍ଥଳେ ପୁଣି ରାମ, ଲକ୍ଷ୍ମଣ ଓ ସୀତାଙ୍କର ଶ୍ରୀଜଗନ୍ନାଥ ବଳଭଦ୍ର ଓ ସୁଭଦ୍ରା ଦେବୀ – ମୂଳକ ଐଶ୍ୱରିକ ତତ୍ତ୍ୱକୁ ମଧ୍ୟ ଅଭିବ୍ୟଞ୍ଜିତ କରିଅଛନ୍ତି । ଏହି ଅମୌଳିକ ଚରିତମାନ ଓଡ଼ିଆ ରାମାୟଣର କବି ମହାଶୟ ନିଜେ ସ୍ୱକୀୟ ଭକ୍ତିଭାବ ଓ ଅନୁଭୂତି ଅନୁସାରେ ଏପରି ଚିତ୍ରଣ କରିଅଛନ୍ତି । କିମ୍ବା ଅନୁଲେଖକ

---

(୧) ପାକା ସରସନ ହୋଇ ଅଛନ୍ତି ଯେ ସତୀ
ନଦୀକୁ ନ ଛୁଇଁଲେ ଯେ କରି ମହାରୀତି । ୧୫ ପୃ.

(୨) ଛାପା ପୁସ୍ତକରେ ୧୭, ୧୮ ପୃଷ୍ଠା ପଢନ୍ତୁ ।

କେହି ଚରିତ ପ୍ରବାହ ମଧ୍ୟରେ ଏହିତକ ଆଣି ମିଳାଇ ଦେଇଅଛନ୍ତି ? ଏହି ସନ୍ଦେହ ଜନ୍ମିଅଛି । କିନ୍ତୁ ଏଥିରେ ରାମଚନ୍ଦ୍ର ସୁତୀକ୍ଷ୍ଣଙ୍କୁ ଦେଖିଲା ପରେ ବାରାଣସୀ ନୀଳାଚଳ ପ୍ରଭୃତି କ୍ଷେତ୍ର ସ୍ଥାନମାନଙ୍କୁ ଯାଇ ଫେର ସୁତୀକ୍ଷ୍ଣଙ୍କ ଆଶ୍ରମକୁ ଯାଇଥିବାର ଲେଖା ଦେଖି ବିଶ୍ୱାସ ହୁଏ ଯେ ଏହି ଅସାଙ୍ଗତ୍ୟରେ ଥିବାର ଲେଖା ଦେଖି ବିଶ୍ୱାସ ହୁଏ ଯେ ଏହି ଅସାଙ୍ଗତ୍ୟରେ ଅନୁପ୍ରାଣିତ ଉଦ୍‌ବୃତ୍ତ ପାଠତକ ଶ୍ରୀ ବଳରାମ ଦାସେ ଲେଖି ନାହାନ୍ତି । କୌଣସି ଅନୁଲେଖକ ମାତୃଭୂମିର କ୍ଷେତ୍ରମାନଙ୍କ ମହିମା ବିଦ୍ୟୋତନାର୍ଥ ଏଗୁଡ଼ିକ ଲେଖି ଏଥିରେ ପ୍ରକ୍ଷିପ୍ତ କରିଅଛନ୍ତି । ତଥାପି ଏହି କଥା ସଂବିଧାନର ପ୍ରଥାମାନ ଦେଶରେ ସର୍ବଥା ପ୍ରଚଳିତ ଅଛି ଏବଂ ପ୍ରଧାନ ଗ୍ରନ୍ଥ ମଧ୍ୟରେ ବହୁକାଳରୁ ଅନ୍ତର୍ଭୁକ୍ତ ରହିଯିବାରୁ ତଦ୍ ପରବର୍ତ୍ତୀ କେତେକ ଲେଖକ ସୁଦ୍ଧା ନିଜ ନିଜର ରଚନାରେ ଏହି ବୃତ୍ତାନ୍ତ କ୍ରମମାନ ଚିତ୍ରିତ; ଅପିଚ ଜନଶ୍ରୁତିରେ ମଧ୍ୟ ସର୍ବତ୍ର ସଂପୂର୍ଣ୍ଣ ପ୍ରତିଷ୍ଠିତ ରହିଯାଇଅଛି ।(୧)

ମୂଳଗ୍ରନ୍ଥର ଦ୍ୱାଦଶ ଓ ତ୍ରୟୋଦଶ ସର୍ଗରେ ରାମଙ୍କର ଅଗସ୍ତ୍ୟାଶ୍ରମ ଅବସ୍ଥାନରେ ସଂଘଟିତ ଚରିତମାନ ବର୍ଣ୍ଣିତ ଅଛି । ଶ୍ରୀରାମଚନ୍ଦ୍ର ଅଗସ୍ତିଙ୍କ ଦର୍ଶନ ପୂର୍ବରୁ ତତ୍ରତ୍ୟ ବ୍ରହ୍ମା, ଅଗ୍ନି, ବିଷ୍ଣୁ, ମହେନ୍ଦ୍ର, ବିବସ୍ୱତ, ସୋମ, ଭଗ, କୁବେର, ଧାତା, ବିଧାତା, ବାୟୁ, ନାଗରାଜ ଅନନ୍ତ, ଗାୟତ୍ରୀ, ଅଷ୍ଟାବସୁ, ବରୁଣ, କାର୍ତ୍ତିକେୟ ଓ ଧର୍ମ ଦେବତାଙ୍କର ସ୍ଥାନମାନ ପରିଦର୍ଶନ କରିଥିଲେ । ରାମ ଅଗସ୍ତ୍ୟଙ୍କର ଦର୍ଶନ କଲାରୁ ସେ ତାଙ୍କୁ ପରିତୁଷ୍ଟ, ହୃଦୟରେ ଶ୍ରଦ୍ଧା ପ୍ରକାଶ ପୂର୍ବକ ବୈଷ୍ଣବ କାର୍ମୁକ ଓ ତୂଣୀର ଏବଂ ଖଡ୍ଗ ପ୍ରଦାନ କରିଥିଲେ ।(୨)

ରାମ ତତ୍ର ପ୍ରବେଶର ଦ୍ୱିତୀୟ ଦିବସରେ ପ୍ରସ୍ତାବବଶଃ ୍ ଅଗସ୍ତ୍ୟଙ୍କୁ ଜିଜ୍ଞାସା କଲାରୁ ସେ ତାହାଙ୍କୁ ଦଣ୍ଡକାରଣ୍ୟର ଭୂତପୂର୍ବ ଚରିତ କହିଅଛନ୍ତି । ଅଗସ୍ତି କହିଛନ୍ତି, ସହସ୍ର ଯୋଜନ - ବିସ୍ତୃତ ଦଣ୍ଡକାରଣ୍ୟ ବିନ୍ଧ୍ୟର ପ୍ରତ୍ୟନ୍ତପର୍ବତର ଦକ୍ଷିଣରେ ବିଦ୍ୟମାନ । ସେଠାରେ ବର୍ଷା ଏବଂ ସୁଖବାତର ଅଭାବ ସର୍ବଦା ଥାଏ । (୩)

---

(୧) ଛାପା ପୁସ୍ତକରେ ୧୯, ୨୦ ପୃଷ୍ଠା ପଢ଼ନ୍ତୁ ।
ଜଗନ୍ନାଥ ଛାମୁରେ ଶ୍ରୀରାମ ଉଭା ହୋଇ, ଲକ୍ଷ୍ମଣ ବଳରାମ ସନ୍ନିଧିକୁ ଯାଇ,
ସୀତା ସୁଭଦ୍ରା ଯେ ହୋଉଛନ୍ତି ଭେଟବେନି, ତିନି ଦେବତା ହୋଇ ସେତିନି ମୂର୍ତ୍ତି ଘେନି । ୬୦ ପୃଷ୍ଠା ।

(୨) ଅଗସ୍ତ୍ୟ ରାମଙ୍କୁ ବୈଷ୍ଣବ ଚାପ, ବ୍ରହ୍ମାସ୍ତ୍ର ବା ବ୍ରହ୍ମଶର, ଐନ୍ଦ୍ରତୂଣୀର ଦ୍ୱୟ ଏବଂ ଖଡ୍‌ଗ ଦେଇଥିବା ଭୋଜରାଜ ମଧ୍ୟ ଲେଖିଅଛନ୍ତି । ଚମ୍ପୂ ରାମାୟଣ ଦେଖନ୍ତୁ ।

(୩) ଯୋଜନାନାଂ ସହସ୍ରଂତୁ ବିନ୍ଧ୍ୟ ପାଦସ୍ୟ ଦକ୍ଷିଣେ
ନାତ୍ର ବର୍ଷତି ପର୍ଜନ୍ୟଃ ନାପିବାତି ସୁଖାନିଳଃ ୧୩ ସର୍ଗ

ଭାର୍ଗବଙ୍କ ଶାପରୁ ଏହି ସୁବିସ୍ତୃତ ପ୍ରଦେଶ ମଧ୍ୟରେ ମନୁଷ୍ୟ ଓ ମୃଗମାନେ ନିବାସ କରନ୍ତି ନାହିଁ । (୧)

ମୁଁ ସମୟେ ଏଠାକୁ ଆସି ଉପଗତ ହେଲାରୁ ଯଥା ପ୍ରକାରେ ବର୍ଷା ହେଉଅଛି, ବୃକ୍ଷାଦିମାନ ଉତ୍ପନ୍ନ ହୋଇଅଛନ୍ତି । ମୁ ତତ୍ର ତତ୍ର ସରୋବର ପ୍ରଭୃତି ନିର୍ମିତ କରାଇଅଛି । କିନ୍ତୁ ଦୁର୍ଦ୍ଦାନ୍ତ ରାକ୍ଷସମାନଙ୍କର ଉପଦ୍ରବ ବଳବତ୍ତର ରହିଅଛି । ତୁମେ ସେମାନଙ୍କୁ ନିହତ କରି ଋଷିମାନଙ୍କୁ ସୁସ୍ଥ କର । ଏହି ପ୍ରଦେଶ ଆଗେ ଇକ୍ଷ୍ୱାକୁ ରାଜାଙ୍କ ପୁତ୍ର ଦଣ୍ଡକ ରାଜାଙ୍କର ଶାସିତ ସ୍ୱଦେଶ ହୋଇଥିଲା । ଶାପ ବଶରୁ ଏପରି ଦୁରବସ୍ଥାପନ୍ନ ହୋଇଯାଇ ଅଛି । ହେ ରାମ ତୁମେ ଏହାର ଦୁରବସ୍ଥା ଦୂର କର । (୨)

ତେତିକି ବେଳେ ରାମ ପ୍ରଶ୍ନ କଲେ କି, ମୁଁ କେଉଁଠି ରହିଲେ ଅବସ୍ଥାନ ସୁଖକର ହେବ । ଅଗସ୍ତି ରାମଙ୍କୁ ଅନତି ଦୂରବର୍ତ୍ତୀ ପଞ୍ଚବଟିର ପରିଚୟ ଦେଇ ତତ୍ର ନିବାସ କରିବାକୁ କହିଲେ । (୩)

ତଦା ସଭାର୍ଯ୍ୟ ସାନୁଜ ସହୋଜ ରାମଚନ୍ଦ୍ର ପଞ୍ଚବଟୀ ଅଭିମୁଖରେ ପ୍ରସ୍ଥାନ କଲେ ।

ଦାସଙ୍କ ରାମାୟଣରେ ଶ୍ରୀରାମଚନ୍ଦ୍ର ସୁତୀକ୍ଷ୍ଣ ଋଷିଙ୍କ ଆଶ୍ରମରୁ ଅଗସ୍ତ୍ୟାନୁଜଙ୍କ ଆଶ୍ରମକୁ ଯାଇଥିବାର ଲେଖା ଦେଖାଯାଏ ନାହିଁ । ଏଥିରେ ରାମଙ୍କ ଅଗସ୍ତ୍ୟାଶ୍ରମ ପ୍ରବେଶ ପୂର୍ବରୁ ଦଣ୍ଡକାରଣ୍ୟ ସମ୍ବନ୍ଧେ ସଂକ୍ଷିପ୍ତତଃ ଲେଖା ଅଛି କି, ଏହି ଚତୁରଶୀତି ଯୋଜନ ବିସ୍ତୃତ ପ୍ରଦେଶ ଆଗେ ଦଣ୍ଡକ ରାଜା ଶାସନ କରୁଥିଲେ । ସେ ଏକ ଋଷିଙ୍କର ଦୁହିତାଙ୍କୁ ହରିଲାରୁ ଋଷି ପୁରଗ୍ରାମାଦି ସମସ୍ତ ଭସ୍ମୀଭୂତ କରିଦେଲେ । ସର୍ବତ୍ର ବନ ମାଡିଯିବାରୁ ବ୍ରହ୍ମା ପୁଣି ଏଥିରେ ବନ୍ୟଜୀବ ଜନ୍ତୁମାନଙ୍କୁ ସୃଷ୍ଟି କରିଅଛନ୍ତି (୪)

ରାମଙ୍କ ସହ ଅଗସ୍ତିଙ୍କ ସମ୍ବାଦ ଏଥିରେ ଦିକ୍‌ଦର୍ଶନ ସ୍ୱରୂପ ମାତ୍ର । ଦଣ୍ଡକାରଣ୍ୟର ପରିଚୟରେ ଅଗସ୍ତ୍ୟ ରାମଙ୍କ ଯେ ଯେ କଥା କହିଅଛନ୍ତି ସେ ସମସ୍ତ ଏଥିରେ ଲେଖା

---

(୧) ଭାର୍ଗବସ୍ୟ ଚ ଶାପେନ ନିର୍ମନୁଷ୍ୟ ମୃଗୋଭବତ୍ । ୧୩ ସର୍ଗ

(୨) ଇଦମିକ୍ଷ୍ୱାକୁ ପୁତ୍ରେଣ ଦଣ୍ଡକେନ ମହାବଳ ।
ଦେଶୋ ନିରାକୃତୋ ରାମ ଶାପ ଦୋଷେଣ ରାଘବ । ୧୩ ସର୍ଗ

(୩) ଇତୋ ଦ୍ୱିଯୋଜନେ ତାତ ! ବହୁମୂଳଫଂଳୋଦକଃ
ଦେଶୋ ବହୁମୃଗଃ ଶ୍ରୀମାନ୍ ପଞ୍ଚବଟ୍ୟେଭିବିଶ୍ରୁତଃ ।
ତତ୍ର ଗତ୍ୱାଽଽଶ୍ରମପଦଂ କୃତ୍ୱା ସୌମିତ୍ରିଣା ସହ ।
ରମସ୍ୱ ତ୍ୱଂ ପିତୁର୍ବାକ୍ୟଂ ଯଥୋକ୍ତମନୁପାଳୟନ୍ ।
ଇତି ୧୩ ସର୍ଗ. ୧୩,୧୪ ଶ୍ଳୋ

(୪) ଛାପା ପୁସ୍ତକରେ ୨୧ ଏକବିଂଶ ପୃଷ୍ଠା ପଢ଼ନ୍ତୁ ।

ନାହିଁ । ରାମ ଅଗସ୍ତିଙ୍କୁ ଦେଖିଲାରୁ ସେ ଏହାଙ୍କୁ ଧନୁ ଓ ଶର ଦେଇଥିଲେ । ଏତିକି ମାତ୍ର ଲେଖା ଅଛି, ଏହାର ବିଶେଷତ୍ୱ କିଛି ଉକ୍ତ ନାହିଁ । କିନ୍ତୁ ରାମଚନ୍ଦ୍ର ତତ୍ର ଏକ ବର୍ଷ ଅବସ୍ଥାନ କରିଥିବା ଲେଖା ଅଛି । ତାହା ଠିକ୍ ନୁହେଁ । ମୂଳାନୁମତେ ରାମ ଅଗସ୍ତ୍ୟାଶ୍ରମରେ ଦୁଇଦିନ ମାତ୍ର ରହିଥିଲେ । ରାମ ଅଗସ୍ତିଙ୍କ ଆଦେଶରେ ପଞ୍ଚବଟୀକୁ ଯିବାବେଳେ ଏଥିରେ  ଲେଖାଅଛି କି ମାରିଚ ଅନ୍ୟ ଦୁଇଜଣ ରାକ୍ଷସଙ୍କ ସହ ରାମଙ୍କ ଗନ୍ତବ୍ୟ ପଥ ଅଟକାଇ ଥିଲା । କିନ୍ତୁ ସେ ରାମଙ୍କୁ ସଂଧିତ-ଶର ଦେଖି ଅନ୍ତର୍ହିତ ହୋଇଗଲା । ଅନ୍ୟ ଦୁହେଁ ରାମ ଶରରେ ନିହତ ହେଲେ । ଏହି କଥାତକ ଏଗାର ଗୋଟି ପଦ୍ୟ ବା ଦ୍ୱାବିଂଶ ଗୋଟି ପଂକ୍ତିରେ ନିହିତ ଅଛି । ତାର ପର ପାଠ ପୂର୍ବ ପାଠ ସହ ଠିକ୍ ସଲଗ୍ନତାରେ ଚାଲିଅଛି । ଅତଏବ ପଢ଼ିଲାକ୍ଷଣି ଆଦୌ ଅନୁମିତ ହୁଏ, ଏହି ପ୍ରମିତ ପଦ୍ୟତକ ଅତ୍ର ଅନୁଲେଖକଙ୍କ କର୍ତ୍ତୃକ ପ୍ରକ୍ଷିପ୍ତ ରହିଅଛି । (୧)

କିନ୍ତୁ ଏହା ଅମୌଳିକ ନୁହେ କି ପ୍ରକ୍ଷିପ୍ତ ନୁହେ । ଏହା ମୂଳ ଗ୍ରନ୍ଥର ଏହି ସ୍ଥଳରେ ଲେଖା ନାହିଁ ସତ୍ୟ, ତଥାପି ଏହି କଥାତକ ରାବଣଙ୍କୁ କହିଅଛନ୍ତି । ଏହା ପରବର୍ତ୍ତୀ ଏକୋନଚତ୍ୱାରିଂଶ ସର୍ଗରେ ଉକ୍ତ ଅଛି । ଶ୍ରୀମାନ୍ ବଳରାମ ଦାସେ ଆପଣାର ବହୁଶ୍ରୁତ-ତାର ବଳରେ ଘଟନାର ସମସାମୟିକତାର ଅନୁସାରେ ଏହି ଘଟନାଟିକୁ ନେଇ ଯଥା ସ୍ଥାନରେ ମିଳାଇ ଦେଇ ଅଛନ୍ତି ।

ରାମଚନ୍ଦ୍ର ପଞ୍ଚବଟୀରେ ସର୍ବପ୍ରଥମେ ଅରୁଣ ପୁତ୍ର ଗୃଧ୍ରରାଜ ଜଟାୟୁଙ୍କ ସହ ପରିଚିତ ହେଲେ । ଏ ସ୍ଥଳେ ଜଟାୟୁ ଶ୍ରୀରାମଙ୍କୁ ନିଜର ଜନ୍ମ ବିବରଣର ପ୍ରସ୍ତାବରେ ପ୍ରଜାପତିମାନଙ୍କଠାରୁ ଯେପରି ଦେବାସୁର ମନୁଷ୍ୟ ତୀର୍ଯ୍ୟକ୍ ଜନ୍ତୁମାନଙ୍କର ସୃଷ୍ଟି ହୋଇଅଛି, ତାହାର ବିବରଣ କହିଅଛନ୍ତି । (୨)

ରାମାଦିମାନେ ପଞ୍ଚବଟୀରେ କୁଟୀର ନିର୍ମାଣ କରି କେତେକ ଦିନ ଅବସ୍ଥାନ କଲାପରେ ହିମକାଳ ବର୍ଣ୍ଣନା ଲେଖାଅଛି । (୩)

ହେମନ୍ତରେ ଏକଦିନ ସେ ତିନିହେଁ ସ୍ନାନାର୍ଥ ଗୋଦାବରୀକୁ ଯାଉ ଅଛନ୍ତି, ପଥ ମଧରେ ଲକ୍ଷ୍ମଣ ଭରତଙ୍କର ତପସ୍ୱୀ ବେଶ ଧାରଣ, ଅସହ୍ୟ ଶୀତାତପାଦି ସହନ ଏବଂ ଅନ୍ୟାନ୍ୟ ସୁଗୁଣମାନଙ୍କର ଅନୁବାଦନ ପୂର୍ବକ କୈକେୟୀଙ୍କର ପରିବାଦନ କଲେ, କିନ୍ତୁ

(୧) ଛାପା ପୁସ୍ତକରେ ୨୨, ୨୩ ପୃଷ୍ଠା ପଢ଼ନ୍ତୁ ।

(୨) ତସ୍ମାଦ୍ ଜାତୋଽହମରୁଣାଦ୍ ସମ୍ପାତିଶ୍ଚ ମମାଗ୍ରଜଃ ।
ଜଟାୟୁ ରିତିମାଂ ବିଦ୍ଧି ଶ୍ୟେନୀପୁତ୍ରମରିନ୍ଦମ । ୧୪ସ. ୩୨ ଶ୍ଳୋ

(୩) ଭୋଜ ରାଜ ମଧ ଅତ୍ର ହେମତ ବର୍ଣ୍ଣନା ଲେଖିଛନ୍ତି । ଚମ୍ପୂ. ରା. ଆର. କା, ଦେଖନ୍ତୁ

ରାମଚନ୍ଦ୍ର କୈକେୟୀ ପରିବାଦନକୁ ଅନୁମୋଦନ କଲେ ନାହିଁ । ଏହା ପରେ ସପ୍ତଦଶ, ଅଷ୍ଟାଦଶ ଓ ଏକବିଂଶ ସର୍ଗରେ ସୂର୍ପଣଖା ଚରିତ ସଂବିଧାନ, ସୂର୍ପଣଖା ରାମଙ୍କ ମୁଖରୁ ତଦୀୟ ବନ ଗମନାଦିର କଥା ଶୁଣି ନିଜର ପରିଚୟ ପ୍ରଦାନ ପୁରଃସର ନିରପତ୍ର ପଣରେ ରାମଙ୍କୁ ନିଜର ଭର୍ତ୍ତା ହେବା ପାଇଁ ଅନୁରୋଧ କଲା, ରାମ ଅସ୍ୱୀକାର ପ୍ରକାଶ ପୂର୍ବକ ତାକୁ ଲକ୍ଷ୍ମଣଠାକୁ ପଠାଇଲେ । (୧) ଲକ୍ଷ୍ମଣ ସେହି କାମପାଶାବପାଶିତ ପିଶିତାଶନୀକୁ ଛଳୋକ୍ତିରେ – ତୁମେ ରାମଙ୍କୁ ଭଜ, କହିବାରୁ ସେ ପୁଣି ରାମଙ୍କଠାକୁ ଆସି କ୍ରମେ ସୀତାଙ୍କ ଆକ୍ରମଣରେ ଉଦ୍ଯୁକ୍ତା ହେଲା । ତଦା ଲକ୍ଷ୍ମଣ ରାମାଦେଶରେ ତାହାକୁ ବିଗତକର୍ଣ୍ଣନାସିକା କରି ତଡ଼ି ଦେଲେ । ସୂର୍ପଣଖା ଯାଇ ଖରାସୁର ନିକଟରେ ନିଜର ଦୁରବସ୍ଥାର ଗୁହାରି କଲା ।

ବଳରାମ ଦାସଙ୍କ ରାମାୟଣରେ ଜଟାୟୁଙ୍କର ପ୍ରସ୍ତାବିତ ସୃଷ୍ଟିକ୍ରମ ଏବଂ ଭରତ ଗୁଣାନୁବାଦ ଓ କୈକେୟୀପରିବାଦମୂଳକ ଲକ୍ଷ୍ମଣସମ୍ବାଦ ଲେଖାଥିବା ଦେଖାଯାଏ ନାହିଁ । ସୂର୍ପଣଖା ଏବଂ ରାମଙ୍କ ସମ୍ବାଦ କବି ମହାଶୟ ଅପ୍ରାସଙ୍ଗିକତାର ପରିହାର ପୂର୍ବକ ପ୍ରସ୍ତାବିତ ବିଷୟର ଆନୁକୂଲ୍ୟ ପୁରଃସର କେତେକ ଅଧିକା କଥା ମିଶାଇ ଅଛନ୍ତି, ପରନ୍ତୁ ସୂର୍ପଣଖା ନିରାକରଣରେ ରାମ ସ୍ୱୟଂ ସୂର୍ପଣଖାର ହସ୍ତ ଧରି ଯାହା କିଛି ବୁଝାଇ ଥିବାର ସେ ଯା ପ୍ରକାଶ କରିଛନ୍ତି, ତେତକ କେବଳ ଅସଂଗତ ଓ ଅସମଞ୍ଜସ ବୋଧହୁଏ । (୨)

ଏହା ପରେ ବିଂଶ ସର୍ଗଠାରୁ ତ୍ରିଂଶ ସର୍ଗ ପର୍ଯ୍ୟନ୍ତ ଏକାଦଶ ଗୋଟି ସର୍ଗରେ ଖର – ପ୍ରକୃତି ଖର ପ୍ରଭୃତି ଅସୁରମାନଙ୍କ ସହ ଶ୍ରୀରାମଙ୍କ ଯୁଦ୍ଧ ସଂମର୍ଦ । ଖରାସୁର ସୂର୍ପଣଖାର ଦୁରବସ୍ଥାରେ ଦୁଃଖିତ ଓ କୁପିତ ହୋଇ ନିଜର ଚତୁର୍ଦ୍ଦଶ ସହସ୍ର ବାହିନୀକୁ ରାମ ସଂହାରାର୍ଥ ପ୍ରେରଣ କଲା । ନିୟତି ବଳରୁ ସେ ସମସ୍ତଙ୍କୁ ରାମବାଣ ବିନାଶରେ କୀନାଶଅତିଥି କରି ଦେଲାରୁ ବିନାସା ସୂର୍ପଣଖା ଖର ସଂମୁଖରେ ନିରାନନ୍ଦରେ ଆକ୍ରନ୍ଦ କଲା ଏବଂ କହିଲା, ତୁ ଯଦି ରାମଙ୍କୁ ନିହତ କରି ନପାରୁ ତେବେ ବନସ୍ଥାନ ପରିତ୍ୟାଗ

---

(୧) ଏ ସ୍ଥଳେ ଲକ୍ଷ୍ମଣଙ୍କ ବିଷୟରେ ଅଗ୍ରଜ ରାମଙ୍କର ସୀତାଙ୍କ ବିଷୟରେ ଦେବର ଲକ୍ଷ୍ମଣଙ୍କର ପରିହାସ ଉକ୍ତିର ଶିଷ୍ଟତା ଭଙ୍ଗ କେହି କେହି କହିଥାନ୍ତି । ତାର ସମାଧାନ ଏହି – ଗୁରୁଣାପି ସମଂହାସ୍ୟଂ କର୍ତ୍ତବ୍ୟଂ କୁଟିଳଂ ବିନେତିନ୍ୟାୟେନ ଭ୍ରାତୃ ବିଷୟମପି ପରିହାସଂ ପ୍ରଯେବୟନ୍ ରାମୋ ଲକ୍ଷ୍ମଣ ବିଷୟତ୍ୱେନ ପ୍ରବୃତ୍ତ୍ୟାଭାସ ପ୍ରତ୍ୟାୟକୈଃ । ତାତ୍ପର୍ଯେଣ ନିବୃତ୍ତି ପ୍ରତିପାଦକୈଃ ଶିଷ୍ଟ ଶବ୍ଦୈରୁତ୍ତରମନୁଭାଷତେ । ଲକ୍ଷ୍ମଣଃ ସୀତାୟାମପି ପରିହାସଂ ପ୍ରଯୁଂକ୍ତେ । ଇତି ମହେଶ୍ୱର ଦୀକ୍ଷିତଟୀକାୟାଃ –

(୨) ଛାପା ପୁସ୍ତକରେ ୨୮ ପୃଷ୍ଠା ପଢ଼ନ୍ତୁ ।

କରି ଯାଅ । ସୂର୍ପଣଖା ଖରାସୁରକୁ ବହୁ ଉତ୍ତେଜନା ପୂର୍ବକ କଟୁ ବଚନରେ ଭର୍ତ୍ସନା କଲା – ସେ ପୁଣି ରାମହନନାର୍ଥ ପ୍ରତିଜ୍ଞା ପ୍ରକାଶପୂର୍ବକ ଯୁଦ୍ଧାର୍ଥ ସନ୍ନଦ୍ଧ ହେଲା । ରାମାଶ୍ରମ ପ୍ରତି ଖରର ଅଭିଯାନରେ ବହୁ ଦୁଃଶକୁନ ଉତ୍ପାତମାନ ତଥାଚ ତଦୀୟ ପୌରୁଷ ପ୍ରକାଶ ବଚନମାନ ବର୍ଣ୍ଣିତ ଅଛି । ତେଣେ ରାମ ଲକ୍ଷ୍ମଣଙ୍କୁ ସତର୍କ କରାଇ ସୀତାଙ୍କ ସହ ଧନୁଃପାଣିରେ ଗୁହାଭ୍ୟନ୍ତରେ ଅବସ୍ଥାନ କରିବାକୁ ଆଦେଶିଲେ ଏବଂ ନିଜେ ସନ୍ନଦ୍ଧ ହୋଇ ରଣାଙ୍ଗଣରେ ଉପଗତ ହେଲେ । ବହୁ ଯୁଦ୍ଧ ସଂମର୍ଦପରେ ପ୍ରଥମତଃ ଦଣ୍ଡକାରଣ୍ୟଦୂଷଣ ଦୂଷଣ ନିହତ ହେଲା । ତାପରେ ତଦୀୟ ମହାକପାଳ, ସ୍ଥୂଳାକ୍ଷ ଓ ପ୍ରମାଥୀ ନାମକ ସେନାପତି ତ୍ରୟ ଆଉ ସେନାସମୂହ ବିନଷ୍ଟ ହେଲେ । ତାପରେ ତ୍ରିଶିରା ଅବାକ୍‌ଶିରା ହୋଇ ପ୍ରାଣତ୍ୟାଗ କଲା । ଖରାସୁର ରାମଙ୍କ ସହ ଘୋରତର ଆହବରେ ବାହାପିଆ ହୋଇ ସୁଦ୍ଧା ଗତାସୁ ହେଲା । ଅତ୍ରତ୍ୟ ଯୁଦ୍ଧ ସଂମର୍ଦ ବର୍ଣ୍ଣନା ବଡ଼ ମନୋହର । ଏଥିରେ ଭଟ ପ୍ରତିଭଟଙ୍କର ବୀରସମ୍ବାଦ, ରଥାଶ୍ୱହନନ, ଧ୍ୱଜ ଛେଦନ, ଧନୁର୍ଗୁଣ ବିଚ୍ଛେଦ, ଧନୁର ଶକଳୀକରଣ, ସାରଥିହନନ, ରଥ କୂବର ଭଙ୍ଗ, ସେନା ବିଦ୍ରାବଣ, ରଥାକ୍ଷ ଭଂଜନ, ସେନା ପଳାୟନ ପ୍ରଭୃତି ସାର୍ବତ୍ରିକ ଯୁଦ୍ଧ ଲକ୍ଷଣମାନ ପ୍ରକାଶିତ ଅଛି । ଏହି ସନ୍ଦର୍ଭରେ ପୁଣି ଲେଖା ଅଛି କି ଋଷିମାନେ ଆପଣଙ୍କୁ ବହୁ କୌଶଳରେ ଦଣ୍ଡକାରଣ୍ୟକୁ ଆନୀତ କରିଅଛୁଁ, ଆପଣ ମଧ ଦେଖି ଅଛନ୍ତି, ଏଥିପାଇଁ କେବଳ ଦେବେନ୍ଦ୍ର ଶରଭଂଗା-ଶ୍ରମକୁ ଆସିଥିଲେ । ଅପିଚ ଅତ୍ରତ୍ୟ ପ୍ରଗାଢ଼ ଯୁଦ୍ଧ ସଂମର୍ଦରେ ଲେଖାଅଛି, ଜଗଦେକ ବୀର ରାମଚନ୍ଦ୍ର ଖରାସୁରଙ୍କୁ ରୁଧିରାଦିରେ ବିକ୍ଲିନ୍ନ ଓ ଦୁର୍ଗନ୍ଧମୟ ଦେଖି କିଂଚିତ୍ ପଶ୍ଚାଦ୍‌ପଦ ହୋଇଥିଲେ ।(୧)

---

(୧) ତମାପତନ୍ତଂ ସଂକ୍ରୁଦ୍ଧଂ କୃତାସ୍ତ୍ରୋ ରୁଧିରାପ୍ଳୁତଂ ।

ଅପାସର୍ପଦ୍ ଦ୍ୱିତ୍ରିପଦଂ କିଂଚିଦ୍‌ତ୍ୱରିତବିକ୍ରମଃ । ୩୦ ସ. ୨୩ ଶ୍ଳୋ

ଅପସର୍ପଣ ନିମିତ୍ତମାହ – କୃତାସ୍ତ୍ରଇତି । ସଂହିତାସ୍ତ୍ରତ୍ୱାଦ୍ ଅସ୍ତ୍ରମୋଚନାବକାଶଲାଭାୟ ଅପାସର୍ପଦିତି ଭାବଃ । ନିମିତ୍ତାନ୍ତରମାହ – ରୁଧିରାପ୍ଳୁତମିତି ତଦ୍‌ସ୍ପର୍ଶ ବୀଭତ୍ସନାପସର୍ପଣମିତ୍ୟର୍ଥଃ । ଯଦ୍ୟପି ରଣେ କିଂଚିଦପସର୍ପଣଂ ଶୂରସ୍ୟାଯୁକ୍ତଂ ତଥାପି ସର୍ବତୋ ବଳବତୀ ହ୍ୟନ୍ୟଥାନୁପପତ୍ତିରିତି ନ୍ୟାୟେନାପସର୍ପଣଂ ବିନା ତଦ୍ ସଂହାରହେତ୍ୱଲାଭାଦ୍ ଅପସର୍ପଣଂ ନ ଦୋଷ ଇତି ହୃଦୟଂ । ସଂରବ୍ଧଂ ଅତିକ୍ରୁଦ୍ଧଂ, ଆପତଂତଂ ଆୟୁଧପ୍ରସାରଣାନବକାଶତୟା ଅତି ସଂନିକୃଷ୍ଟ ମାଗଚ୍ଛନ୍ତଂ ତତ୍ର ହେତୁଃ । ତ୍ୱରିତ ବିକ୍ରମ ଇତି । ଶସ୍ତ୍ରସଂଧାନାବକାଶାର୍ଥଂ ତ୍ୱରିତବିକ୍ରମତୟା କିଂଚିଦପାସର୍ପଦିତ୍ୟର୍ଥଃ । ହେତ୍ୱନ୍ତମାହ-ରୁଧିରାପ୍ଳୁତମିତି ତଦ୍ୟେହରୁଧିରସ୍ୟ ସ୍ୱସ୍ମିନ୍ ସଂଶ୍ଳେଷୋଭବେଦିତି ଜୁଗୁପ୍ସୟେତ୍ୟର୍ଥଃ । ଇତମେବାଭିପ୍ରେତ୍ୟ ବେଦାନ୍ତାଚାର୍ଯୈରୁକ୍ତମ୍ । ଶ୍ଳୋ କ୍ୱଚିଦତିସଂକଟବିଷୟେ ସୁଭଟାନାମଭ୍ରିତୟୋମସର୍ପ ଇତି । ଗୋବିନ୍ଦରାଜୀୟ ଟୀକାୟାଂ ।

କ୍ୱଚିଦତିସଂକଟଦେଶକାଳୟୋଃ ବୀର ଧୁରନ୍ଧରାଣାମପି
ସମ୍ମତମିଦମପସରଣମିତି ଭାବଃ । ଇତି ମହେଶ୍ୱର ଦୀକ୍ଷିତ ଟୀକାୟାଂ ।

ଏହି ଯେ ଖରାସୁର ପ୍ରଭୃତିଙ୍କର ରାମଙ୍କ ସହ ଯୁଦ୍ଧ ସଂବିଧାନ, ଦାସଙ୍କ ରାମାୟଣରେ ଅତି ସଂକ୍ଷିପ୍ତ । (୧)

ଏଥି ମଧ୍ୟରେ ସୀତାଦେବୀ ଶ୍ରୀରାମଚନ୍ଦ୍ରଙ୍କୁ ଯୁଦ୍ଧରୁ ନିବର୍ତ୍ତାଇବା ପାଇଁ ଯେ ପ୍ରକାର ଅନାତ୍ମବନ୍ତ କାତରୋକ୍ତି କହିଅଛନ୍ତି, ସୀତାଙ୍କ କଥା ଛାଡ଼ନ୍ତୁ, ସାଧାରଣ ବୀରାଙ୍ଗନା ପକ୍ଷେ ମଧ୍ୟ ତାହା ନିତାନ୍ତ ଅନୁଚିତ ଓ ଲଘୁତାସୂଚକ । ମୂଳଗ୍ରନ୍ଥରେ ସୀତା ଦେବୀ ଶ୍ରୀରାମଙ୍କୁ ଅତ୍ର ଯୁଦ୍ଧରୁ ଆଦୌ ନିବର୍ତ୍ତାଇ ନାହାନ୍ତି, ସେଥିପାଇଁ କିଛି ହିଁ କହି ନାହାନ୍ତି । ଏସବୁ ଦାସଙ୍କର ଅଯଥା କପୋଳ କଳ୍ପିତ ମାତ୍ର । କିମ୍ବା ଅନୁଲେଖକଙ୍କର ଦୁର୍ବୁଦ୍ଧି ମାତ୍ର । ସୀତାଙ୍କ ପକ୍ଷେ ସ୍ୱଭାବଭୀତହୃଦୟାନାରୀର ଏହି ଚିତ୍ରଣ ସର୍ବଥା ଅନୁଚିତ । ଅପିଚ ଏହି ରାମାୟଣରେ ସର୍ବପ୍ରଥମେ ଖରାସୁର ପ୍ରେରିତ ଚତୁର୍ଦ୍ଦଶ ସହସ୍ର ବାହିନୀ ବିନିପାତର କଥା ଲେଖାଥିବା ଦେଖାଯାଏ ନାହିଁ । (୨) ନିରନୁକମ୍ପ ଏକତ୍ରିଂଶ ସର୍ଗରେ ଲେଖା ଅଛି କି ରାବଣ ପ୍ରଥମେ ଅକମ୍ପନ ମୁଖରୁ ଖରାଦି ନିଧନର ବାର୍ତ୍ତା ଶୁଣି ରାମବଧାର୍ଥ ଦଣ୍ଡକାରଣ୍ୟ ପ୍ରସ୍ଥାନରେ ଉଦ୍ୟତ ହେଲାରୁ ଅକମ୍ପନ ଶ୍ରୀରାମଙ୍କର ଅଲୌକିକ ଅନନ୍ୟସାମାନ୍ୟ ବୀରତ୍ୱ ଜ୍ଞାପନ ପୂର୍ବକ କହିଲା କି ଆପଣ କେବଳ ନୁହନ୍ତି, ଦେବଗଣ ସୁଦ୍ଧା ସେହି ରାମ ସହ ସମ୍ମୁଖ ଯୁଦ୍ଧରେ ଉନ୍ମୁଖ ହେଲେ, ଅବଶ୍ୟ ପଞ୍ଚତ୍ୱକୁ ପ୍ରାପ୍ତ ହେବେ । ଅତଏବ ଆପଣ ମାୟିକ କୌଶଳରେ ତଦୀୟ ଅଲୌକିକ ରୂପବତୀ ଯୁବତୀକୁ ହରି ଆଣନ୍ତୁ । ସେ ତଦ୍ ବିଯୋଗ-ଜନିତ ଦୁଃଖରେ ପ୍ରାଣତ୍ୟାଗ କରିବେ । ରାବଣ ତନ୍ନିମିତ୍ତ ପ୍ରଥମବାର ମାୟା ଧୁରନ୍ଧର ମାରୀଚର ନିକଟକୁ ଯାଇ ସୀତା ହରଣାର୍ଥ ସାହାଯ୍ୟ ପ୍ରଦାନପାଇଁ ଅନୁରୋଧ କରି ତଦୀୟ ମୁଖରୁ ରାମଙ୍କର ସର୍ବଂକଷ ବୀରମାହତ୍ମ୍ୟ ଶ୍ରବଣରେ ହତାଶ ସହ ସ୍ୱଗୃହକୁ ପ୍ରତ୍ୟାବୃତ୍ତ ହୋଇଥିଲେ । (୩)

ଏହାପରେ ଦ୍ୱାତ୍ରିଂଶ ସର୍ଗଠାରୁ ଏକଚତ୍ୱାରିଂଶ ସର୍ଗ ପର୍ଯ୍ୟନ୍ତ ଦଶଗୋଟି ସର୍ଗରେ ଫେର ଦଶଗ୍ରୀବ ଦ୍ୱିତୀୟବାର ମାରିଚାଶ୍ରମକୁ ଯାଇ ତାକୁ ବଳେ ରାମାଶ୍ରମ ପ୍ରତି ପ୍ରସ୍ଥାନୋଦ୍ୟତ କରାଇଥିବା ବର୍ଣ୍ଣିତ ଅଛି । ସୂର୍ପଣଖା ଲଙ୍କାରେ ପ୍ରବେଶ କରି ରାବଣଙ୍କୁ ନିଜର ଦୁରବସ୍ଥା ଜଣାଇଲା । ସୂର୍ପଣଖାର ନିବେଦିତ ବାକ୍ୟ ମଧ୍ୟରେ ରାବଣଙ୍କର ଦୁଷ୍ଟ ଚେଷ୍ଟାମାନ ତଦୀୟ ବିଶେଷଣ ସ୍ୱରୂପ ନିହିତ ଅଛି । ସୁତରାଂ ସୂର୍ପଣଖା ତେତେବେଳେ

---

(୧) ଛାପା ପୁସ୍ତକରେ ୨୯, ୩୦ ପୃଷ୍ଠା ପଢ଼ନ୍ତୁ । ଏଥି ମଧ୍ୟରେ ସୀତାଦେବୀଙ୍କ ମୁଖରେ ପ୍ରକାଶିତ ଦୀନ କାତରୋକ୍ତିର ଦଶଗୋଟି ପଦ୍ୟ ଲେଖା ଅଛି । ତାକୁ ପରିଶୀଳନ କରନ୍ତୁ ।

(୨) ଭୋଜରାଜ ମଧ୍ୟ ମୂଳାନୁମତ ଖର ପ୍ରେଷିତ ଚତୁର୍ଦ୍ଦଶ ସହସ୍ର ସେନା ବିନାଶର କଥା ଲେଖି ଅଛନ୍ତି । ଚମ୍ପୂ. ରା. ଆର. କା. ଦେଖନ୍ତୁ ।

(୩) ଏବମୁକ୍ତୋ ଦଶଗ୍ରୀବଂ ମାରୀଚେନ ସ ରାବଣଃ
ନ୍ୟବର୍ତତ ପୁରୀଂ ଲଙ୍କାଂ ବିବେଶ ଚ ଗୃହୋତ୍ତମମ୍ । ଆର. କା. ୩୧ ସ ୫୦ ଶ୍ଳୋ

ଅନେକଧା ରାଜଦୋଷ ପ୍ରଦର୍ଶନରେ ରାବଣଙ୍କୁ ଭର୍ତ୍ସନା ପ୍ରଦାନ ପୂର୍ବକ ରାମବିନାଶାର୍ଥେ ଉତ୍ତେଜିତ କରିଅଛି । (୧)

ତାପରେ ସେ ପୁଣି ରାମଚନ୍ଦ୍ରଙ୍କର ତାବତୀୟ ପରିଚୟ ମଧ୍ୟ ନିଜ ଭ୍ରାତାଙ୍କୁ ଜଣାଇଅଛି । ରାବଣ ଦ୍ୱିତୀୟବାର ମାରୀଚାଶ୍ରମରେ ଉପଗତ ହେବା ସ୍ଥଳେ ସମୁଦ୍ରତୀରସ୍ଥ ମାରୀଚାଶ୍ରମର ବର୍ଣ୍ଣନା ଟିକିଏ ବିସ୍ତୃତ ଭାବରେ ବର୍ଣ୍ଣିତ ଅଛି । (୨)

ରାବଣ ମାରୀଚଙ୍କୁ ଖରାଦି ନିଧନ ବିଜ୍ଞାପନ ପୁରଃସର ମାୟିକ ମୃଗରୂପ ଧାରଣରେ ଆପଣା ପ୍ରତି ସାହାଯ୍ୟ କରଣର କ୍ରମ ଆଦେଶିଲେ । ତଦା ମାରୀଚ ଦଶଗ୍ରୀବଙ୍କୁ ବହୁଧା ରାଜଧର୍ମ ବତାଇ (୩) ଏବଂ ରାମଙ୍କର ଅନନ୍ୟସାମାନ୍ୟ ମହନୀୟତ୍ୱ ଓ ଦୁର୍ଦ୍ଧର୍ଷତ୍ୱ ପ୍ରକାଶ କରି ଦୁଷ୍ଟଚେଷ୍ଟାରୁ ନିବର୍ତ୍ତାଇ ଥିଲେ; ପୁରା କୌଶିକଙ୍କ ଯାଗାରମ୍ଭରେ ସେ ନିଜେ ଯେପରି ରାମ ବାଣରେ ନିତାନ୍ତ ପରାଭୂତ, ତାହା ସୁଦ୍ଧା ଜଣାଇଲେ । ଏ ସ୍ଥଳେ ପୁଣି ଅନୀଚବୀର ମାରୀଚ ରାବଣଙ୍କୁ ସୀତାହରଣ ଦୁଷ୍ପ୍ରବୃତ୍ତିରୁ ନିବୃତ୍ତ ହେବା ପାଇଁ କହି ଅଛିକି ମୁ କେତେକ ବର୍ଷପୂର୍ବ ଦୁଇଜଣ ସହଚରଙ୍କ ସହ ମୃଗ ବେଶରେ ଦଣ୍ଡକାରଣ୍ୟ ଦେଶରେ ରାମଙ୍କୁ କେବଳ ତପସ୍ୱୀ ମଣି ଆକ୍ରମଣ କରିଥିଲି । କିନ୍ତୁ ତଦୀୟ ଅମୋଘବିଶିଖଶିଖପ୍ରବିଦ୍ଧହୃଦୟ ମୋର ଅନୁଗତ ସହୃଦୟ ନିହତ ହେବାର ଦେଖି ମୁଁ ଭୀତଭୀତହୃଦୟରେ ଭାଗ୍ୟବଳରୁ ଜୀବିତରେ ପଳାଇଆସି ତପସ୍ୱୀ ବେଶରେ ଏଠାରେ ଲୁକ୍କାୟିତ ଅଛି । ତଥାପି ସର୍ବତ୍ର ଚାରିଆଡୁ ମୋତେ ସେହି ମହାବୀର ରାମରୂପ କେବଳ ଦିଶୁଅଛି । ରା ବର୍ଣ୍ଣ କି ମ ବର୍ଣ୍ଣ ଶୁଣିଲା କ୍ଷଣି ମୋର ହୃଦୟ ଚମକି ଉଠୁଅଛି । ତୁମେ ଯଦି ସେହି ରାମଙ୍କ ପ୍ରତି ବୈର ସାଧନାର୍ଥ ପ୍ରବୃତ୍ତ ହୁଅ ତେବେ ନିଶ୍ଚେ ସବଂଶେ ନିର୍ମୂଳ ହେବ । ତେତେବେଳେ ରାବଣ କେତେକ ଦୁଷ୍ଟ ରାଜନୀତି ଉକ୍ତିବଳରେ ମାରୀଚବଚନକୁ ପ୍ରତିହତ କରି (୪) କନକମୃଗ ରୂପରେ ରାମବଞ୍ଚନାର୍ଥ ପ୍ରବର୍ତ୍ତିବା ପାଇଁ ତାହାକୁ ଆଦେଶ ଦେଲେ ଏବଂ କହିଲେ ଯେ ମୋର ଆଦେଶ ପାଳନ ନ କଲେ ନିଶ୍ଚେ ନିହତ କରିବି । ତଦା ରାକ୍ଷସସମରନାଟକସୂତ୍ରଧାର ନିଗୂଢ଼ ମାୟିକ-ପାଣ୍ଡିତ୍ୟାଧାର ମାରୀଚ ବହୁଧା ରାଜନୀତି ଓ ଅମାତ୍ୟ ନୀତିମୂଳକ (୫) ବାକ୍ୟ ପରମ୍ପରାରେ ଦୁର୍ନୀତି-ନିବୃତ୍ତି ପାଇଁ ଲଙ୍କେଶ୍ୱରଙ୍କୁ ଅନୁରୋଧ କରି ସୁଦ୍ଧା ତଦୀୟ ଆଦେଶ ପାଳନରେ ସ୍ୱୀକୃତ ହେଲେ ।

---

(୧) ୩୩ ସର୍ଗରେ ଏହି ରାଜଦୋଷମାନ ଦ୍ରଷ୍ଟବ୍ୟ ।

(୨) ୩୫ ସର୍ଗରେ ମାରୀଚାଶ୍ରମ ବର୍ଣ୍ଣନା ଦେଖନ୍ତୁ

(୩) ୩୭ ସର୍ଗରେ ମାରୀଚକଥିତ ରାଜଧର୍ମମାନ ଦ୍ରଷ୍ଟବ୍ୟ

(୪) ରାବଣ କଥିତ ଦୁଷ୍ଟ ରାଜନୀତି ବାକ୍ୟମାନ ୪୦ ସର୍ଗରେ ଦେଖନ୍ତୁ

(୫) ମାରୀଚ କଥିତ ରାଜନୀତି ଓ ଅମାତ୍ୟ ନୀତିବାକ୍ୟମାନ ୪୦ ସର୍ଗରେ ଦେଖନ୍ତୁ ।

ଏହା ପରେ ଦ୍ୱିଚତ୍ୱାରିଂଶ ସର୍ଗରୁ ଏକୋନପଞ୍ଚାଶତ୍ ସର୍ଗ ପର୍ଯ୍ୟନ୍ତ ଆଠଗୋଟି ସର୍ଗରେ ରାବଣ ମାୟାଧରଙ୍କର ମାରୀଚ ସହ ରାମାଶ୍ରମରେ ପ୍ରବେଶି ସୀତାଙ୍କୁ ବଳେ ହରି ଆଣି ଥିବାର କଥାମାନ ଲେଖାଅଛି । ଦିନେ ସୀତା ପୁଷ୍ପାପଚୟ କରୁଅଛନ୍ତି, ମାରୀଚ ବିଚିତ୍ର କନକମୃଗରୂପରେ ଦେଖାଦେଲା । ସୀତାଦେବୀ ରାମ ଓ ଲକ୍ଷ୍ମଣଙ୍କୁ ଡାକି ସନ୍ତୋଷରେ ମୃଗଟିକୁ ଦେଖାଇ ସଜୀବରେ କିମ୍ବା ନିହତ କରି ଆଣି ଦେବାକୁ ଅନୁରୋଧ କଲେ । (୧) ଲକ୍ଷ୍ମଣ ତେତିକିବେଳେ କହିଲେ ଏଟା ମୃଗରୂପୀ ମାରିଚ । ରାମଚନ୍ଦ୍ର ସୀତାଙ୍କ ବଚନରେ ଆକୃଷ୍ଟ ହୋଇ ଲକ୍ଷ୍ମଣଙ୍କୁ ମୃଗର ମାୟା ସମ୍ବନ୍ଧେ ପ୍ରସ୍ତାବତଃ ଅଗସ୍ତି ଓ ବାତାପିର କଥା ଏବଂ ତଦନୁରୂପ ଆଉ କେତେକ କଥା ଶୁଣାଇ ଅପିଚ ତାହାଙ୍କଠାରେ ସୀତାଙ୍କର ରକ୍ଷଣଭାର ଅର୍ପଣ କରି ମୃଗବଧାର୍ଥ ସନ୍ନଦ୍ଧ ହେଲେ । ମାରୀଚ ପ୍ରାଣ ନିର୍ଗମନ ସମୟରେ ରାମଙ୍କ କଣ୍ଠର ସ୍ୱରାନୁକରଣରେ ''ହା ସୀତେ, ହା ଲକ୍ଷ୍ମଣ'' ଏପରି ଶୋକ-ଡାକ ଦେଲା । ଏହି ଶବ୍ଦରେ ରାମ ଶଙ୍କିତ ହେଲେ । ତେଣେ ପୁଣି ସୀତା ଭୀତା ହୋଇ ଲକ୍ଷ୍ମଣଙ୍କୁ ଯିବାକୁ ଅନୁରୋଧ କଲେ । ସେ ରାମଙ୍କ ପରାକ୍ରମ-ପ୍ରଭାବ କହିଯିବା ଅନାବଶ୍ୟକ ବୋଲିବାରୁ ସୀତାତାଙ୍କୁ ଭର୍ତ୍ସନାସହ ଶତ୍ରୁ, ନୃଶଂସ ଏବଂ ଭରତଙ୍କର ଦୁଷ୍ଟପ୍ରେରଣାରେ ଆଗତ ହୋଇଅଛ, ବୋଲି ତାଚ୍ଛଲ୍ୟ କଲେ । ତଦା ଲକ୍ଷ୍ମଣ ବିଷଣ୍ଣ ହୃଦୟରେ ଅରନ୍ତୁଦ ବଚନ ଶୁଣି ସୁଦ୍ଧା ସୀତାଙ୍କୁ ଆଶ୍ୱାସନା ଦେଇ, ''ତୁମକୁ ବନଦେବତାମାନେ ରକ୍ଷା କରନ୍ତୁ'' ଏହା କହି ଅଗତ୍ୟା ରାମସରଣୀରେ ପ୍ରସ୍ଥାନ କଲେ । ରାବଣ ବ୍ରହ୍ମଚାରୀବେଶରେ ବ୍ରହ୍ମଘୋଷ ପୁରଃସର ପର୍ଣ୍ଣଶାଳାରେ ଉପଗତ ହେଲେ ଏବଂ ସୀତାଙ୍କ ପରିଚୟ ଜିଜ୍ଞାସାପୂର୍ବକ ତଦୀୟ ସୌନ୍ଦର୍ଯ୍ୟର ପ୍ରଶଂସା କରି ତୁମେ ଏଠାରେ ନିବାସ କରିବା ଉଚିତ ନୁହେ, ଇତ୍ୟାକାରକ ଅନେକ କଥା କହିଲେ । ସୀତା ରାବଣଙ୍କୁ ଅତିଥି ଓ ବ୍ରାହ୍ମଣମଣି ଆସନାଦି ପ୍ରଦାନ କଲେ ଏବଂ ଏ ଋଷିଙ୍କ ସହିତ କଥା ନହେଲେ ଅପମାନ ମନେକରି ଶାପ ଦେବେ, ଏହି ଭାତିରେ ନିଜର ଏବଂ ରାମାଦିଙ୍କର ଯାବତୀୟ ପରିଚୟ ଦେଇଥିଲେ । (୨)

ତାହା ନହେଲେ ସୀତା କଦାପି ରାବଣଙ୍କୁ କଥା କହନ୍ତେ ନାହିଁ । ଏ ସ୍ଥଳେ ସୀତାଙ୍କ ଜିଜ୍ଞାସାରେ ରାବଣ ନିଜର ସୂକ୍ଷ୍ମ ପରିଚୟ ଦେଲା ପରେ ତାହାକୁ ନିଜର

---

(୧) ଯଦି ଗ୍ରହଣମଭ୍ୟେତି ଜୀବନ୍ନେବ ମୃତସ୍ତବ । ଆଶ୍ଚର୍ଯ୍ୟଭୂତଂ ଭବତି ବିସ୍ମୟଂ ଜନୟିଷ୍ୟତି ।
ସମାପ୍ତ ବନବାସାନାଂ ରାଜ୍ୟସ୍ଥାନାଂ ଚ ନଃ ପୁନଃ । ଅନ୍ତଃପୁରେ ବିଭୂଷାର୍ଥୋ ମୃଗ ଏଷ ଭବିଷ୍ୟତି ।
× × × ଜୀବନ୍ନ ଯଦିଽତେଭ୍ୟେତି ଗ୍ରହଣଂ ମୃଗସତ୍ତମଃ । ଅଜିନଂ ନରଶାର୍ଦ୍ଦୂଳ ରୁଚିରଂ ତୁ ଭବିଷ୍ୟତି ଇତି ୪୩ ସ ।
ଏହି ସର୍ଗରେ କେବଳ ରାମକଥିତ ବାତାପି ପ୍ରଭୃତିର କଥା ଲେଖାଅଛି ।

(୨) ବ୍ରାହ୍ମଣଶ୍ଚାତିଥିଶ୍ଚୈଷ ଅନୁକ୍ତୋ ହି ଶପେତ ମାଂ ।
ଇତି ଧ୍ୟାତ୍ୱା ମୁହୂର୍ତ୍ତଂ ତୁ ସୀତା ବଚନମବ୍ରବୀତ୍ ।
ଆର-କା-୪୭ ସ.

ଭାର୍ଯ୍ୟା ହେବାକୁ କହିବାରୁ ସୀତା ରାବଣଙ୍କୁ ଭର୍ତ୍ସନା କରି ରାମଙ୍କର ମହତ୍ତମତା ଆଉ ରାବଣଙ୍କର ନୀଚମତିମତ୍ତମର ବ୍ୟଞ୍ଜକ କଥାମାନ ପ୍ରକାଶ କଲେ । ତେତେବେଳେ ରାବଣ ନିଜ ରୂପ ଧାରଣ ପୂର୍ବକ ନିଜର ବଡ଼ିମା ପ୍ରକାଶ କଲେ, ଭୟ ଆଉ ପ୍ରଲୋଭନର ଅନେକ କଥା କହିଲେ । ସୀତା ଦେବୀ ତାପରେ ଆଉ କିଛି ହିଁ କହିଲେ ନାହିଁ, ତଦା ରାବଣ ସୀତାଙ୍କୁ ବଳେ ଧରି ନେଲେ । ସୀତା ଦେବୀ ବହୁ ବିଳପନ ପୂର୍ବକ ବନର ଦେବତା, ବୃକ୍ଷ ଓ ଜନ୍ତୁମାନଙ୍କୁ କହିଲେ କି ତୁମେମାନେ ଶ୍ରୀରାମଙ୍କୁ ମୋର ଏହି ଦୁରବସ୍ଥାର ଘଟଣା ଜଣାଇ ଦିଅ । ଦାସଙ୍କ ରାମାୟଣରେ ଏସବୁ ଘଟଣାମାନଙ୍କ ବିବରଣ ଅତିହିଁ ସଂକ୍ଷିପ୍ତ । ମାରୀଚ ପ୍ରତି ଲଙ୍କେଶ୍ୱରଙ୍କ ପ୍ରଥମ ଯାତ୍ରାର କଥା ଏଥିରେ କିଛି ଲେଖା ନାହିଁ । ରାବଣ ଭଗିନୀ ମୁଖରୁ ତଦୀୟ ଦୁରବସ୍ଥା ଏବଂ ସୀତାଙ୍କ ଅଲୌକିକ ସୌନ୍ଦର୍ଯ୍ୟର କଥା ଶୁଣି ସୀତାହରଣରେ ଅଭିଳାଷୀ ହେଲେ । ତଦା ମନ୍ଦୋଦରୀ ଅନେକଧା ସୁବଚନ କହି ପତିଙ୍କୁ ଦୁଃସଂକଳ୍ପରୁ ନିବର୍ତ୍ତାଇ ଥିଲେ । ତଥାପି ରାବଣ ତହିଁରେ କର୍ଣ୍ଣପାତ ନକରି ମାରୀଚଠାକୁ ଧାବମାନ ହେଲେ । ଏଥିରେ ରାବଣ ପ୍ରତି ସୂର୍ପଣଖା ରାଜଦୋଷ ପ୍ରଦର୍ଶନ-ମୂଳକ ଭର୍ତ୍ସନାର କ୍ରମ ତଥାଚ ମାରୀଚାଶ୍ରମ ବର୍ଣ୍ଣନା ଓ ମାରୀଚ କଥିତ ରାଜଧର୍ମ ଆଉ ଅମାତ୍ୟ ଧର୍ମମାନ ମଧ ଲେଖାନାହିଁ । ପରନ୍ତୁ ମୂଳରେ ଅନୁକ୍ତ ମାରୀଚପ୍ରତି ରାବଣଙ୍କର ନାନାବିଧ ସମ୍ବନ୍ଧ ମୂଳକ ନାନା ପ୍ରକାର ବକ୍ତୃତାର କଥାମାନ ଏବଂ ମାରୀଚର ପୂର୍ବ ପୁରୁଷମାନଙ୍କର ଚରିତ ସଂକ୍ଷେପତଃ ଲେଖାଅଛି । (୧)

ଏଥିରେ ପୁଣି ମାୟାମୃଗ ଉଦ୍ଦେଶ୍ୟରେ ସୀତାଙ୍କର ଉକ୍ତିମାନ ଠିକ ମୂଳାନୁମତ ନୁହେ । ସୀତା ଦେବୀ ପ୍ରଥମତଃ ଚିତ୍ରମୃଗର ନିଧନାର୍ଥ ପ୍ରାର୍ଥନା କରି ପରେ 'ଏହି ମୃଗ ଯଥାର୍ଥ ନୁହେ, ଆପଣ ଯାଆନ୍ତୁ ନାହିଁ ।' ଏହା କହି ନିଷେଧିଥିବା ମଧ ଲେଖାଅଛି । ଯେତେବେଳେ ସୀତା ରାମଙ୍କଠାକୁ ଯିବାପାଇଁ ଲକ୍ଷ୍ମଣଙ୍କୁ ଅନୁଦ୍ୟତ ଦେଖି ଦୁଇଚାରି ଯେ କଟୂକ୍ତି ପ୍ରକାଶ କରିଥିଲେ, ତାକୁ ଦାସେ ନିଜ କଥାରେ ଖୁବ ବିସ୍ତୃତ କରି ଅଛନ୍ତି । (୨)

ତଥାଚ ଅରୁନ୍ତୁଦ ବଚନରେ ପୀଡ଼ିତ ଲକ୍ଷ୍ମଣ ସୀତାଙ୍କୁ ଶାପଦେଇଥିବା ମଧ କହିଅଛନ୍ତି । (୩)

---

(୧) ଛାପା ପୁସ୍ତକରେ ୪୦, ୪୧ ପୃଷ୍ଠା ଦେଖନ୍ତୁ ।

(୨) ଛାପା ପୁସ୍ତକରେ ୪୪, ୪୫ ପୃଷ୍ଠା ଦେଖନ୍ତୁ ।

(୩) ବୋଇଲେ ସୀତା ମୋତେ ଯେ ଭିନ୍ନାଭିନ୍ନ କଲ ।
ଶ୍ରୀରାମଙ୍କୁ ମୋତେ ଯେ ବେଗଳ ବିଚାରିଲ ।
ଆବର ସୋହଦ୍ରଯେ ବୋଇଲ ମନ୍ଦ ବାଣୀ ।
ପରେଣ ଦୂଷଣ ପାଅ ଜନକ ଦୁଲଣୀ । ୪୫ ପୃଷ୍ଠା

ଚମ୍ପୂ ରାମାୟଣରେ ମଧ ଲକ୍ଷ୍ମଣ ସୀତାଙ୍କୁ ଏପରି ଶାପ ଭଳି କଥା କହିଥିବା ଲେଖା ନାହିଁ । ଲକ୍ଷ୍ମଣ ତାହାଙ୍କୁ ଏତିକି ମାତ୍ର କହିଥିବା ଲେଖା ଅଛି — ତ୍ୱମସି ବିପିନମଧେ ମଧମାୟା ହି ଜାତା

ଚମ୍ପୂ. ରା. ଆର. କା । ୨୬ ଶ୍ଳୋ

ଏହା ପରେ ଭିକ୍ଷୁବେଶୀ ରାବଣ ଏବଂ ସୀତାଦେବୀଙ୍କର ଆଳାପାଦି କଥାମାନ ଠିକ୍ ମୂଳର ଅବିକଳାନୁମତ ନୁହେ । ସୁତରାଂ ରାବଣ କଥିତ ନିଜର ବୟଃ ପରିମାଣ ବଡ଼ ଅସମ୍ଭବ ଜଣାଯାଉଅଛି ।(୧) ରାବଣ ସୀତାଙ୍କୁ ଧରି ଗଲାରୁ ଦେବତାମାନେ ପରମ ସନ୍ତୁଷ୍ଟ ହୃଦୟରେ ସଙ୍ଗୀତାଳାପନରେ ଉତ୍ସବ ଆରମ୍ଭ କରିଥିଲେ ବୋଲି ଦାସେ ଯାହା ଲେଖିଅଛନ୍ତି, ତାହା ମୂଳ ଗ୍ରନ୍ଥରେ ଅତ୍ର ଅନୁକ୍ତ ଥିଲେ ସୁଦ୍ଧା ଅସଂଗତ କିମ୍ବା ଅସତ୍ୟ ନୁହେ ।(୨) କାରଣ ମୂଳ ଗ୍ରନ୍ଥରେ ମଧ୍ୟ ଏକଥା ଅନ୍ୟତ୍ର ଉକ୍ତ ଅଛି ।

ପଞ୍ଚାଶ ସର୍ଗଠାରୁ ତିନିଗୋଟି ସର୍ଗରେ ରାବଣ ଜଟାୟୁଙ୍କୁ ଯୁଦ୍ଧରେ ନିହତ କରି ରଥରେ ସୀତାଙ୍କୁ ବ୍ୟୋମମାର୍ଗ ଧରି ବାହାରିବା ଉକ୍ତ ଅଛି । ରାବଣଧୃତ ସୀତାଙ୍କର ବିଳାପ ଧ୍ୱନି ଶୁଣି ଆରୁଣେୟ ଜଟାୟୁ ଧାଇଁ ଆସିଲେ । ଗୃଧ୍ରରାଜ ପ୍ରଥମେ ରାବଣଙ୍କୁ ବହୁ ଭର୍ତ୍ସନାରେ ଦୁଷ୍ଟ ଚେଷ୍ଟାରୁ ନିବର୍ତ୍ତାଇ ପରେ ଯୁଦ୍ଧରେ ହତାଶ୍ୱ ଓ ହତସାରଥି କରି ପକାଇଲେ । ରାବଣ ଫେର୍ ସୀତାଙ୍କୁ ଧରି ଉପରକୁ ଉଠିଲାରୁ କ୍ରୋଧମୂର୍ଚ୍ଛିତ ଜଟାୟୁ ତାହାଙ୍କୁ ଭର୍ତ୍ସନା ପ୍ରଦାନ ପୂର୍ବକ ବିଶିଖଶିଖନଖାୟୁଧ ଓ ତୁଣ୍ଡାୟୁଧରେ କ୍ଷତବିକ୍ଷତାଙ୍ଗ କରି ପକାଇଲେ । ତେତେବେଳେ ରାବଣ ସୀତାଙ୍କୁ ଅଙ୍କରୁ ତ୍ୟାଗ କରି ମୁଷ୍ଟି ଓ ଚରଣ ଆଘାତରେ ଚିରାୟୁ ଜଟାୟୁଙ୍କୁ ମୃତକଳ୍ପ କରି ପକାଇଲେ । (୩)

ତଦା ବୈଦେହୀ ସ୍ୱନିମିତ୍ତ ତ୍ୟକ୍ତପ୍ରାଣ ବନ୍ଧୁଙ୍କର ବିନାଶରେ ନିତାନ୍ତ ଦୁଃଖିତା ହୋଇ ଦ୍ରୁତ ଗତିରେ ଜଟାୟୁଙ୍କୁ ଧରି ରୋଦନ କରିବାକୁ ଲାଗିଲେ । (୪)

ମୃତକଳ୍ପ ଜଟାୟୁଙ୍କ ଉଦ୍ଦେଶ୍ୟରେ ବିଳାପବତୀ ଜାନକୀ ଭୟରେ ଇତସ୍ତତଃ ଧାବମାନ ହୋଉ ଅଛନ୍ତି, ରାବଣ ଧାଇଁଯାଇ ତାହାଙ୍କୁ ଧଇଲେ । ତଦା ଅତି ବେଗ ବଶରୁ ସୀତାଙ୍କ ପରିଧୃତ ପୁଷ୍ପ ଓ ଅଳଙ୍କାରମାନ ସ୍ଖଳିତ ହୋଇ ଧରଣୀରେ ପତିତ

---

(୧) ଛପନ ଗଣ୍ଡା ଯୁଗକୁ ମୋତେ ପୃଥ୍ୱୀ ଭୋଗ ବ୍ରହ୍ମାବଚନେ ଅଛି ଏସନେକ ଯୋଗ । ଆଜକୁ ବୟସ ମୋତେ ଶୁଣ ଆଗୋ ସୀତେ । ଷାଠିଏ କୋଟି ତିରିଶ ସହସ୍ର ଅୟୁତେ - ୪୮ ପୃ.

(୨) ଛାପା ପୁସ୍ତକରେ ୫୦ ପଞ୍ଚାଶତ୍ ପୃଷ୍ଠା ପଢ଼ନ୍ତୁ ।

(୩) ତତଃ କ୍ରୋଧାଦ୍ ଦଶଗ୍ରୀବଃ ସୀତା ମୁତ୍ସୃଜ୍ୟ ରାବଣଃ ।
ମୁଷ୍ଟିଭ୍ୟାଂ ଚରଣାଭ୍ୟାଂ ଚ ଗୃଧ୍ରରାଜମପୋଥୟଦ୍ । ୫୧ ସ. ୪୦ ଶ୍ଳୋ

(୪) ତଂ ଦୃଷ୍ଟ୍ୱା ପତିତଂ ଭୂମୌ କ୍ଷତଜାର୍ଦ୍ରଂ ଜଟାୟୁଷମ୍
ଅଭ୍ୟଧାବତ ବୈଦେହୀ ସ୍ୱବନ୍ଧୁମିବ ଦୁଃଖିତା ।

× × ×

ତତସ୍ତୁ ତଂ ପତ୍ରରଥଂ ମହୀତଳେ ନିପାତିତଂ ରାବଣବେଗମର୍ଦ୍ଦିତମ୍
ପୁନଃ ପରିଷ୍ୱଜ୍ୟ ଶଶିପ୍ରଭାନନା ରୁରୋଦ ସୀତା ଜନକାତ୍ମଜା ତଦା । ୫୧. ସ. ୪୬ ଶ୍ଳୋ

ହେଲା । ଭୟବିହ୍ବଳା ସୀତାଦେବୀ ବୃକ୍ଷକୁ ଭିଡ଼ି ଧରିଲେ ହେଁ ଲୋକରାବଣ ରାବଣ ତାଙ୍କୁ ବଳେ ଟାଣି ନେଇ ରଥରେ ସୁରପଥରେ ପ୍ରସ୍ଥାନ କଲା । ତେତେବେଳେ ରାବଣଙ୍କର ଏହି ଘୋର ଅତ୍ୟାଚାରରେ ଜାନକୀ ଦେବୀ ପ୍ରଧର୍ଷିତା ହେଲାରୁ ସମଗ୍ର ଜଗତ ସୁଦ୍ଧା ଅମର୍ଯ୍ୟାଦ ହୋଇଗଲା । (୧)

କିନ୍ତୁ ତ୍ରିକାଳଜ୍ଞ ଋଷି ଓ ଦେବତାମାନେ ଦୁଃଖିତ ହୋଇ ସୁଦ୍ଧା ଆନନ୍ଦ ଅନୁଭବ କଲେ । (୨)

ବଳରାମ ଦାସେ ଏହାହିଁ ଲେଖି ଅଛନ୍ତି, କିନ୍ତୁ ମଧ୍ୟେ ମଧ୍ୟେ ଟିକିଏ ବୈଷମ୍ୟ ସହ ନିଜର ସ୍ୱତନ୍ତ୍ର ଚିତ୍ରଣର ବୈଦୁଷ୍ୟ ପ୍ରକାଶ କରିଅଛନ୍ତି । ଏ କହିଛନ୍ତି, ରାବଣ ଜଟାୟୁଙ୍କ ସଂଗେ ଯୁଦ୍ଧ କରୁ କରୁ ସୀତା ସେହିଠାରୁ ବାହାରି ଯାଇ ବନ ମଧ୍ୟରେ ଲୁଚି ରହିଲେ । ରାବଣ ରାମଙ୍କ ପ୍ରତ୍ୟାବୃତ୍ତି ଭୟରେ ତରତର ଯାଇ ସୀତାଙ୍କ ପଦାଙ୍କ ଅନୁସରଣରେ ଖୋଜି ଖୋଜି ତାହାଙ୍କୁ ଲୁଚିବା ସ୍ଥାନରୁ ବଳେ ଟାଣି ଆଣି ଧରଲେ ।

ଦାସେ ପୁଣି କହିଛନ୍ତି, ତଦା ସୀତା ସ୍ୱୟଂ ସ୍ୱତଃପ୍ରବୃତ୍ତିରେ ଶରୀରର ଆଭରଣମାନ ଖୋଲି ଭୂପୃଷ୍ଠରେ ବିକୀର୍ଣ୍ଣ କରି ଫିଙ୍ଗି ଦେଲେ ।(୩)

---

(୧) ତାଂ କ୍ଲିଷ୍ଟମାଲ୍ୟାଭରଣାଂ ବିଳପନ୍ତି ମନାଥବଦ୍
ଅଭ୍ୟଧାବତ ବୈଦେହୀଂ ରାବଣୋ ରାକ୍ଷସାଧିପଃ ।
ତାଂ ଲତାମିବ ବେଷ୍ଟନ୍ତିମାଲିଙ୍ଗନ୍ତୀଂ ମହାଦ୍ରୁମାନ୍
ମୁଞ୍ଚ ମୁଞ୍ଚେତି ବହୁଶଃ ପ୍ରବଦନ୍ ରକ୍ଷସାଧିପଃ ।
× × ×
ଜୀବିତାନ୍ତାୟ କେଶେଷୁ ଜଗ୍ରାହାନ୍ତକସଂନିଭଃ
ପ୍ରଧର୍ଷିତାୟାଂ ସୀତାୟାଂ ବଭୂବ ସଚରାଚରମ୍
ଜଗତ୍ସର୍ବମମର୍ଯାଦଂ ତମସାନ୍ଧେନ ସଂବୃତମ୍ । ଇତ୍ୟାଦି । ୫୨ ସ.

(୨) କୃତଂ କାର୍ଯମିତି ଶ୍ରୀମାନ୍ ବ୍ୟାଜହାର ପିତାମହଃ ।
ପ୍ରହୃଷ୍ଟ ବ୍ୟଥିତାଶ୍ଚାସନ୍ ସର୍ବେତେ ପରମର୍ଷୟଃ । ୮୨ ସ.

(୩) ପାଦ ସଞ୍ଚା ଚିହ୍ନିଣ ସୀତାଙ୍କ ଠାବ କଲା ।
ବାମ ଭୁଜ ତାହାଙ୍କର ଧରିଣ ଆଣିଲା ।
ହାତ ଧରିଣ ଦେବୀର ରାଗେଣ ଝିଙ୍କିଲା ।
ଶ୍ରୀରାମ ଆସିବେ ବୋଲି ତରତର ହେଲା ।
ଲୁଚିବାର ଠାବର ବାହାର କରି ଆଣି ।
ଅତ୍ୟନ୍ତ କୋପ ଯେ କରେ ସେହୁ ଲଙ୍କମଣି ।
ଇତ୍ୟାଦି ୫୨ ପୃଷ୍ଠା

ସୀତାଦେବୀଙ୍କର ସମସ୍ତ ଅଳଙ୍କାରମାନଙ୍କର ସର୍ବତ୍ର ଧରଣୀପୃଷ୍ଠରେ ବିକ୍ଷିପ୍ତୀକରଣ ଅବିକଳ ମୂଳାନୁମତ ନହେଲେ ହେଁ ରାମବିଯୋଗଜନିତ ଅମିତ ଦୁଃଖର ଉଦ୍ୟୋତନାର୍ଥକ ଅଟେ ।(୧)

ତ୍ରିପଞ୍ଚାଶ ଚତୁଃପଞ୍ଚାଶ ସର୍ଗରେ ସୀତାଚୋର ରାବଣଙ୍କର ଲଙ୍କା ପ୍ରତି ଗନ୍ତବ୍ୟ ମାର୍ଗରେ ଘଟିତ କେତେକ ଘଟନା ଲେଖା ଅଛି । ସୀତାଦେବୀ ରାବଣ କର୍ତ୍ତୃକ ଆବଦ୍ଧା ରହି ସୁଦ୍ଧା ତଦୀୟ ନିଚାଚରଣର ଉଦ୍ଘୋଷଣ ପୂର୍ବକ ଅନେକଧା ଭର୍ତ୍ସନା କରିଅଛନ୍ତି ଏବଂ ରାମ ଆଉ ଲକ୍ଷ୍ମଣଙ୍କର ନିରୁପମ ବୀରତ୍ୱ ପ୍ରକାଶନରେ ଭୟ ଦେଖାଇ ନିଜକୁ ଛାଡ଼ି ଦେବା ପାଇଁ କହି ଅଛନ୍ତି । ତାପରେ ରଥ ଧାପରେ ଯାଉଁ ଯାଉଁ ସୀତା ଦେବୀ ଏକତ୍ର ଉପବିଷ୍ଟ ସ୍ୱପ୍ରତି ନିବିଷ୍ଟଚିତ୍ତ ପାଞ୍ଚଗୋଟି ବାନରଙ୍କୁ ଦେଖି ଉତ୍ତରୀୟରେ କେତେକ ଗୋଟି ଅଳଙ୍କାର ବାନ୍ଧି ସେମାନଙ୍କ ମଧ୍ୟରେ ନିକ୍ଷିପ୍ତ କରି ଦେଇ ଅଛନ୍ତି । ସଂଭ୍ରାନ୍ତଚିତ୍ତ ଦଶଗ୍ରୀବ ଏହା ଜାଣି ନଥିଲେ । ରାବଣ ନିଜର ମୃତ୍ୟୁଦେବତା ସ୍ୱରୂପା ସୀତାଙ୍କୁ ଅଙ୍କେଧରି ସମୁଦ୍ର ପର୍ଯ୍ୟନ୍ତ ଯାଇ ଅଛନ୍ତି । ଏ ସମୟରେ ଅଶରୀରିଣୀ ବାଣୀ ଶୁଭିଲା, କିହେ ଲଙ୍କେଶ୍ୱର ! ତୁମେ ଏ ପର୍ଯ୍ୟନ୍ତ କେବଳ (୨) × × × × ରାବଣ

---

(୧) ସୀତା ଶୋକ କରନ୍ତି ରାବଣ ରଥେ ଥାଇ ।
ରତ୍ନହାରମାନ ସବୁ କାଢ଼ିଣ ପକାଇ ।
ବେଶ ଭୂଷଣକୁତ ଛାଡ଼ିଲେ ଶଶିମୁଖୀ ।
× × ×
ଭୂମିରେ ଆସି ପଡ଼େ ସର୍ବ ଆୟମାନ ।
କିବାଣି ସେ ତାରାମାନେ ଖସିଲେ ଗଗନ
କରରୁ କଙ୍କଣମାନ କାଢ଼ି ବିମ୍ବଓଷ୍ଠୀ
ହୃଦୟ ହାର କାଢ଼ିଲେ ମୁଦ୍ରିକା ଅଙ୍ଗୁଷ୍ଠି
ଆକୁଳେ ମେଦିନୀ ପରେ କଲେ ରତ୍ନ ବୃଷ୍ଟି
ଜଗତ ମାତା ଯେ ହୋଇଲେ ମହାକଷ୍ଟି ।

(୨) ଉସଙ୍ଗେ ନୈବ ଭୁଜଗୀଂ ତୀକ୍ଷ୍ଣଦଂଷ୍ଟ୍ରାଂ ମହାବିଷାଂ ।
× × × ×
ଅନ୍ତରୀକ୍ଷଗତାବାଚଃ ସସୃଜୁଶ୍ଚାରଣାସ୍ତଦା
ଏତଦନ୍ତୋ ଦଶଗ୍ରୀବ ଇତି ସିଦ୍ଧାସ୍ତଦା ବ୍ରୁବନ୍ । ୫୪ ସ. ଶ୍ଳୋ- ୧୦
ଦଶଗ୍ରୀବ ଏତଦନ୍ତଃ । ଏତତ୍ ସୀତାପହରଣାବସାନ ଇତି ଗୋବିନ୍ଦରାଜୀୟଟୀକାୟାଂ । ଏତଦନ୍ତଃ । ଏତତ୍ ସୀତାହରଣଂ କର୍ମ ଅନ୍ତେ ଅବସାନଂ ଯସ୍ୟ ସଃ ତଥୋକ୍ତଃ । ଇତି ମହେଶ୍ୱର ଦୀକ୍ଷିତ ଟୀକାୟାଂ ।

ତୀକ୍ଷ୍ଣଦଂଷ୍ଟ୍ରା ମହାବିଷ କାଳସର୍ପିଣୀ ସ୍ୱରୂପିଣୀ ରାମରମଣୀଙ୍କୁ ଲଙ୍କାକୁ ନେଇ ରାକ୍ଷସୀମାନଙ୍କ ଜିମାରେ ରଖିଲେ ଏବଂ ରାମଙ୍କ ପ୍ରବୃତ୍ତି ଦେଖିଆସିବା ଅପିଚ ପାରିଲେ ତାହାଙ୍କୁ ନିହତ କରିବାପାଇଁ ଆଠଜଣ ବୀରପୁରୁଷଙ୍କୁ ଜନସ୍ଥାନକୁ ପେଷଣ କଲେ । ଏ ସ୍ଥଳେ ରାବଣ ସୀତାଙ୍କୁ ଲଙ୍କାକୁ ନେଇାକ୍ଷଣି ଅଶୋକ ବନିକାରେ ରଖିଥିବା ଲେଖା ନାହିଁ । ଏହି କେତେକ ବିଷୟ ମଧ୍ୟରେ ବାନର ଗୋଷ୍ଠୀରେ ସୀତାଦେବୀଙ୍କର ଅଳଙ୍କାର ନିକ୍ଷେପଣ କେବଳ ଦାସଙ୍କ ରାମାୟଣରେ ଲେଖା ଅଛି । ଅନ୍ୟ ବିଷୟ ଲେଖାଥିବା ଦେଖାଯାଏ ନାହିଁ ।

ପଞ୍ଚପଞ୍ଚାଶ ଓ ଷଟ୍‌ପଞ୍ଚାଶ ସର୍ଗରେ ରାବଣ ସୀତାଙ୍କ ମୁଖରୁ ତୀକ୍ଷ୍ଣ ପରୁଷ ବଚନମାନ ଶୁଣି ଅବଧି ନିର୍ଦ୍ଦେଶ ପୂର୍ବକ ତାହାଙ୍କୁ ଅଶୋକ ବନିକାରେ ରଖାଇଥିବାର କଥାମାନ ଲେଖାଅଛି । ପରଦିନ ରାବଣ ସୀତାଙ୍କୁ ଭୋଗୋପକରଣ ପ୍ରଦର୍ଶନରେ ପ୍ରଲୋଭନ ଜନ୍ମାଇବା ଇଙ୍ଗିତରେ ଦେଖିବାକୁ ଗଲେ । ସେ ବଳେ ତାହାଙ୍କୁ ନେଇ ନିଜ ଦିବ୍ୟ ଭବନ ବୈଭବାଦି ଦେଖାଇଲେ । (୧) ତୁମେ ଏସବୁର ଅଧିକାରିଣୀ ହୁଅ କହିଲେ ଏବଂ ନାନାବିଧ ଚାଟୁ ଉକ୍ତି ପ୍ରକାଶ କଲେ । କିନ୍ତୁ ସୀତାଦେବୀ ମୁଖରେ ଅଞ୍ଚଳ ଦେଇ ନୀରବ ରହିଥିଲେ । ପରେ ସେ ଅନ୍ତରତଃ ମଧ୍ୟରେ ଗୋଟିଏ ତୃଣ ପକାଇ କହିଲେ,(୨) 'ଜଗତରେ ଶ୍ରୀରାମଙ୍କ ସମାନ କେହି ନାହାନ୍ତି । ସେ ସମସ୍ତ କରି ପାରନ୍ତି । ସେ ତୋତେ ସବଂଶରେ ନିହତ କରି ମୋତେ ଏଠାରୁ ଅବଶ୍ୟ ନେବେ । ତୁ ଏହି ନିନ୍ଦିତ କାର୍ଯ୍ୟ କରଣରୁ ଅବଶ୍ୟ ବିନଷ୍ଟ ହେବୁ । ମୁଁ ସତୀ ସ୍ତ୍ରୀ, ମୋତେ ଚୌର ବୃତ୍ତିରେ ହରିଆଣିଅଛୁ, କଦାପି ତୋର ମଙ୍ଗଳ ହେବ ନାହିଁ । ମୁଁ ରାମଙ୍କ ବିନା ଶରୀର ଧାରଣ କରିବି ନାହିଁ । ରାବଣ ସୀତାଙ୍କ ମୁଖରୁ ଏହି ଭାବରେ ବହୁତ ନିଷ୍ଠୁର କଥା ଶୁଣି ଅବଧି

---

(୧) ପ୍ରବିବେଶ ଗୃହଂ ରମ୍ୟଂ ସୀତାଂ ଦ୍ରଷ୍ଟୁମଭିତ୍ୱରନ୍ xx
ସବଳାତ୍ ଦର୍ଶୟାମାସ ଗୃହଂ ଦେବଗୃହୋପମମ୍; xxxxx
ଦର୍ଶୟିତ୍ୱା ତୁ ବୈଦେହିଂ କୃତ୍ସ୍ନଂ ତଦ୍‌ଭବନୋତ୍ତମମ୍ ।
ଉବାଚ ବାକ୍ୟଂ ପାପାତ୍ମା ସୀତାଂ ଲୋଭିତୁମିଚ୍ଛୟା । ଇତ୍ୟାଦି ୫୫ ସ.

(୨) ତୃଣମନ୍ତରତଃ କୃତ୍ୱା ପ୍ରତ୍ୟଭାଷତ ମୈଥିଳୀ ଇତ୍ୟାଦି ୫୬ ସ.
ତୃଣମନ୍ତରତଃ କୃତ୍ୱା ପତିବ୍ରତାୟାଃ ପରପୁରୁଷଂ ପ୍ରତ୍ୟଭି — ମୁଖତୟା ଭାଷାଣାଯୋଗାତ୍ । ଇତି ଗୋବିନ୍ଦରାଜୀୟ ଟୀକାୟାମ୍
ତୃଣମନ୍ତରତଃ କୃତ୍ୱା ସାକ୍ଷାତ୍ ପାପାତ୍ମକ ପରପୁରୁଷ ସଂଭାଷଣ ନ ଦୋଷ ପରିହାରାୟେତି ଶେଷଃ । ଇତି ମହେଶ୍ୱର ଟୀକାୟାମ୍ ।

ଦେଇ କହିଲେ କି, ରେ ମୈଥିଳି ! ତୁ ଯଦି ଏକ ବର୍ଷ (୧) ମଧ୍ୟରେ ମୋର ଅଙ୍କଶାୟିନୀ ନହେଉ ତେବେ ତୋତେ ଭୋଜ୍ୟରେ ପରିଣତ କରାଇବି । ସେ ପୁଣି ରାକ୍ଷସୀମାନଙ୍କୁ ବିଭୀଷିକା ସହ କହିଲେ, 'ତୁମେମାନେ ଏହାକୁ ଅଶୋକ ବନିକାକୁ ନେଇ ସାବଧାନତାରେ ରଖ, ଏହାର ଗର୍ବ ଖର୍ବ କର ।' (୨) ଏହି ପାଠତକରୁ ଜଣାଯାଏ ରାବଣ ସୀତାଙ୍କୁ ନେଇ ଅନ୍ତଃପୁରରେ ଦୁଇଦିନ ରଖିଥିଲେ, ତାପରେ ଅଶୋକ ବନିକାରେ ରଖାଇଲେ ।

ଦାସଙ୍କ ରାମାୟଣରେ ଦେଖିବେ ରାବଣ ସୀତାଙ୍କୁ ନେଇ ପ୍ରଥମେ ଅନ୍ତଃପୁରରେ ରଖି ଭୋଗୋପକରଣ ପ୍ରଦର୍ଶନଦ୍ୱାରା ପ୍ରଲୋଭ ଦେଖାଇଥିବା ଉକ୍ତ ନାହିଁ; କିନ୍ତୁ ସେ ସୀତାଙ୍କୁ ନେଇ ଏକାବେଳେକେ ଅଶୋକବନିକାରେ ରଖାଇଥିବା ଲେଖାଅଛି । ସୁତରାଂ ଏ ସ୍ଥଳେ ଦାସେ କହିଅଛନ୍ତି, ସେହିକ୍ଷଣି ବ୍ରହ୍ମାଙ୍କ ଆଦେଶରେ ଦେବେନ୍ଦ୍ର ଅଶୋକବନରେ ଉପଗତ ହୋଇ ନିଜ ରୂପରେ ସୀତାଙ୍କର ବିଶ୍ୱାସ ଜନ୍ମାଇ ଆଶ୍ୱାସ ପ୍ରଦାନପୂର୍ବକ ଅମୃତ ପ୍ରଦାନ କରିଥିଲେ ଏବଂ କହିଲେ ଆପଣ ସ୍ୱୟଂ ଲକ୍ଷ୍ମୀ, ରାମ ସ୍ୱୟଂ ନାରାୟଣ । ଏ ସ୍ଥଳେ ଇନ୍ଦ୍ର ସୀତାଦେବୀଙ୍କୁ ଲକ୍ଷ୍ମୀ-ନାରାୟଣଙ୍କର ଅନ୍ୟାନ୍ୟ ଅବତାରର କଥା ମଧ୍ୟ ଜଣାଇ ଅଛନ୍ତି । (୩)

ଏ ସବୁ କବିଙ୍କର ପୁରାଣାନ୍ତରରୁ ଆନୀତ ।

ସପ୍ତପଞ୍ଚାଶାଦି ସର୍ଗ ତ୍ରୟରେ ରାମଙ୍କର ମୃଗାନୁସରଣର ଅବଶିଷ୍ଟ କଥା ଏବଂ ତାହାଙ୍କର ସୀତାପ୍ରାପ୍ତି ସନ୍ଦେହରେ ସବିସ୍ତର ଶୋକ ପ୍ରଳାପ ବର୍ଣ୍ଣିତ ଅଛି । ରାମ ତେଣେ ଦୁର୍ନିମିତ୍ତମାନ ଦେଖି ଚିନ୍ତିତ ହୃଦୟରେ ଆସୁ ଅଛନ୍ତି । ବାଟରେ ଲକ୍ଷ୍ମଣଙ୍କୁ ଦେଖିଲେ । ତେତେବେଳେ ରାମ ନିତାନ୍ତ ଶଙ୍କିତ ହୋଇ ବିପଦ ଆଶଙ୍କାରେ ସୀତା ଜୀବିତା ଅଛନ୍ତି କି ? ଏହା ବୋଲି ଲକ୍ଷ୍ମଣଙ୍କ ପ୍ରତି ବହୁ ଶୋକମୂଳକବଚନମାନ ପ୍ରକାଶ କଲେ । ଲକ୍ଷ୍ମଣ ରାମଙ୍କୁ ନିଜର ଆଗମନର କାରଣଭୂତ ଯାବତୀୟ କଥା ଜଣାଇଲେ । ଏହିତକ ପାଠ

---

(୧) ଶୃଣୁ ମୈଥିଳି ମଦ୍‌ବାକ୍ୟଂ ମାସାନ୍ ଦ୍ୱାଦଶ ଭାମିନୀ
କାଳେନାନେନ ନାଭ୍ୟେଷି ଯଦି ମାଂ ଚାରୁହାସିନି
ତତସ୍ତ୍ୱାଂ ପ୍ରାତରାଶାର୍ଥଂ ସୂଦାଶ୍ଛେତ୍ସ୍ୟନ୍ତି ଲେଶଶଃ । ଇତି ୫୬ ସ.
ଅତ୍ର ସୀତାହରଣଂ ଚୈତ୍ରମାସ ଇତ୍ୟବଗନ୍ତବ୍ୟମ୍ । ସଂବତ୍ସରାନ୍ତେ
ରାବଣବଧକରଣାତ୍ ତେନ ତ୍ରୀନ୍ ବର୍ଷାନ୍ ପଞ୍ଚବଟ୍ୟାଂ ରାମଃ ସ୍ଥିତ
ଇତି ଗମ୍ୟତେ । ଇତି ଗୋବିନ୍ଦରାଜୀୟ ଟୀକାୟାମ୍ ।

(୨) ଅଶୋକବନିକାମଧ୍ୟେ ମୈଥିଳୀ ନୀୟତାମିତି
ତତ୍ରେୟଂ ରକ୍ଷତାଂ ଗୂଢ଼ଂ ଯୁଷ୍ମାଭିଃ ପରିବାରିତା ।
ଇତି ୫୬ ସ. ୩୦ ଶ୍ଳୋ

(୩) ଛାପା ପୁସ୍ତକରେ ୫୪ ପୃଷ୍ଠା ପଢ଼ନ୍ତୁ ।

ଦାସଙ୍କ ରାମାୟଣରେ ମଧ ସଂକ୍ଷିପ୍ତରେ ଉକ୍ତ ଅଛି । ଅତଃପର ସୁବେଳାରୋହଣ ପର୍ଯ୍ୟନ୍ତ ରାମାୟଣ ମହାକାବ୍ୟରେ ପ୍ରଧାନ ନାୟକ ଶ୍ରୀ ରାମଚନ୍ଦ୍ରଙ୍କର ବିପ୍ରଲମ୍ଭ ଶୃଙ୍ଗାରର ସମୁଜ୍ଜ୍ୱଳଣ ଏବଂ ଏହାର ଅଙ୍ଗଭୂତ କରୁଣାଦିରସାନ୍ତରମାନଙ୍କର ପ୍ରଦ୍ୟୋତନ ହୋଇଅଛି । ଷଷ୍ଟିତମ ସର୍ଗଠାରୁ ତିନିଗୋଟି ସର୍ଗରେ ଶ୍ରୀ ରାମଙ୍କ ବିପ୍ରଲମ୍ଭାବସ୍ଥାରେ ସମଧିକତଃ ଅଷ୍ଟମୀ ଅବସ୍ଥା ଅର୍ଥାତ୍ ଉନ୍ମାଦାବସ୍ଥା ବର୍ଣ୍ଣିତ ଅଛି । ତଥାଚ ଏଥି ମଧରେ ଏକଷଷ୍ଟିତମ ଓ ଦ୍ୱିଷଷ୍ଟିତମ ଅଧ୍ୟାୟରେ କ୍ରମଶଃ ନବମୀ ଅବସ୍ଥା ବା ମୂର୍ଚ୍ଛାବସ୍ଥା ଏବଂ ଷଷ୍ଠୀ ଅବସ୍ଥା ବା ଆରତି ଅବସ୍ଥା ମଧ ବର୍ଣ୍ଣିତ ଅଛି । ତାପରେ ତ୍ରିଷଷ୍ଟିତମ ସର୍ଗରେ ସନ୍ତାପାଖ୍ୟା ମଦନାବସ୍ଥାର ବର୍ଣ୍ଣନା ହୋଇଅଛି । ରାମ କୁଟୀର ଓ ତନ୍ନିକଟସ୍ଥ ବୃକ୍ଷଲତାଦିଙ୍କୁ ଶୋଭାଶୂନ୍ୟ ଦେଖି ସୀତା ମୃତା କିମ୍ବା ଅପହୃତା ହେଲେ ଅଥବା ବନମଧକୁ ନଚେତ୍ ନଦୀକୁ ଯାଇଅଛନ୍ତି, ଭାବି ପରେ ଦେଖିବାକୁ ନପାଇ ଅତ୍ୟନ୍ତ ଶୋକବ୍ୟାକୁଳତାରେ ଉନ୍ମତ୍ତ ପ୍ରାୟ ହୋଇ ବୃକ୍ଷଲତାଦିଙ୍କୁ ଓ ଆରଣ୍ୟକ ଗଜାଶ୍ୱଙ୍କୁ ସୀତାଙ୍କ ସମ୍ବାଦ ପଚାରି ପଚାରି ପୁନରନ୍ୱେଷଣାର୍ଥ ଇତସ୍ତତଃ ଧାବମାନ ହେଲେ । ରାମ ଅନେକତ୍ର ସୀତାଙ୍କୁ ଖୋଜି ଖୋଜି ନପାଇ ଏପରି ଗୁରୁତର ବିଳପନରେ ଅବସନ୍ନ ହୋଇ ପଡ଼ିଲେ ଯେ ସମୟେ ସମୟେ ମୂର୍ଚ୍ଛାରେ ଅଭିଭୂତ ହୋଇ ପଡୁଥିଲେ । ଲକ୍ଷ୍ମଣ ରାମଙ୍କ ଦୁଃଖରେ ବିକ୍ଳବ ହୋଇ ସୁଦ୍ଧା ଅଗ୍ରଜଙ୍କର ସମାଶ୍ୱାସନରେ ତତ୍ପର ହେଉଥିଲେ । ରାମଚନ୍ଦ୍ର ବହୁ ବିଳାପ ପରେ, ସୀତାଙ୍କ ବିନା ମୁଁ କିପରି ବା ଅଯୋଧ୍ୟାକୁ ଯିବି, ଇତ୍ୟାକାରକ ଅରତି ମୂଳକ କଥାମାନ କହି ଦୁର୍ନିବାର ଶୋକ ପ୍ରବାହରେ ବୁଡ଼ିଗଲେ । ଏହା ପରେ ଚତୁଷଷ୍ଟିତମ ସର୍ଗରେ ଲେଖା ଅଛି, ଶ୍ରୀରାମଚନ୍ଦ୍ର ବିଶେଷ ଲକ୍ଷଣମାନ ଦେଖି ସୀତା ନିଶ୍ଚେ କୌଣସି ରାକ୍ଷସ ଦ୍ୱାରା ଅପହୃତା ବୋଲି ସ୍ଥିର କଲେ । ସାନୁଜ ରାମଚନ୍ଦ୍ର ଏତାଦୃଶ ବହୁ ବିଳାପ କଲା ପରେ ସୀତାଙ୍କ ଅନ୍ୱେଷଣାର୍ଥ ଗୋଦାବରୀ ନଦୀକୁ ଧାବମାନ ହୋଇଥିଲେ । ଏ ସ୍ଥଳେ ଲେଖା ଅଛି କି ଗୋଦାବରୀ ରାବଣଙ୍କ ଭୟରୁ ଶ୍ରୀରାମଚନ୍ଦ୍ରଙ୍କୁ ସୀତାଙ୍କ କଥା କିଛି କହିଲେ ନାହିଁ । (୧) କିନ୍ତୁ ମୃଗମାନେ ସୀତା ସଂଦେଶ ନିବେଦନ ଉଦ୍ଦେଶରେ ଶ୍ରୀରାମ ଓ ଲକ୍ଷ୍ମଣଙ୍କୁ ଅପିଚ ଆକାଶକୁ ଚାହିଁ ଚାହିଁ ଦକ୍ଷିଣ ଦିଗକୁ ଧାବମାନ ହେଲେ । ଲକ୍ଷ୍ମଣ ରାମଙ୍କୁ ମୃଗମାନଙ୍କ ଆଶୟ ନିବେଦନ କରି ଅଗ୍ରଜଙ୍କ ସହ ଦକ୍ଷିଣ ଦିଗ ବନ ଆଡ଼କୁ ପ୍ରସ୍ଥାନ କଲେ । ସେ ଦୁହେଁ ଯାଉଁ ଯାଉଁ ପଥ ମଧରେ ପତିତ ସୀତାଙ୍କ ପରିଗୃହୀତ ପୁଷ୍ପମାନ ଆଉ ପଦଚିହ୍ନମାନ ଏବଂ ରାକ୍ଷସର ବୃହତ୍ ପଦାଙ୍କମାନ ଦେଖିଲେ । (୨)

(୧) ରାବଣସ୍ୟ ଚ ତଦ୍ରୂପଂ କର୍ମାଣି ଚ ଦୁରାତ୍ମନଃ ।
ଧ୍ୟାତ୍ୱା ଭୟାଦ୍ ତୁ ବୈଦେହୀଂ ସା ନଦୀ ନ ଶଶଂସ ହ । ୬୪ ସ. ୯ ଶ୍ଳୋ

(୨) ଦଦର୍ଶ ଭୂମୌ ନିଷ୍କ୍ରାନ୍ତଂ ରାକ୍ଷସସ୍ୟ ପଦଂ ମହତ୍
ତ୍ରସ୍ତାୟା ରାମକାଂକ୍ଷିଣ୍ୟାଃ ପ୍ରଧାବନ୍ତ୍ୟା ଇତସ୍ତତଃ ।
ରାକ୍ଷସେନାନୁସୃପ୍ତାୟା ମୈଥିଲ୍ୟାଶ୍ଚ ପଦାନ୍ୟଥ । ୬୪ ସ ।

ତାପରେ ପର୍ବତ ଓ ନଦୀମାନଙ୍କୁ ଭୟ ପ୍ରଦର୍ଶନରେ ସୀତାଙ୍କ ବୃତ୍ତାନ୍ତ ଜିଜ୍ଞାସା କରି ଯାଉଁ ଯାଉଁ ମାର୍ଗରେ ନିପତିତ ଭଗ୍ନ ଧନୁ ଓ ତୂଣୀର ପ୍ରଭୃତି ଦେଖିଲେ । ଫଳତଃ କାହାରିଠାରୁ ସୀତାଙ୍କ ସମ୍ବାଦ ପାଇ ନପାରିବାରୁ ପରିଶେଷରେ ରାମଚନ୍ଦ୍ର କ୍ରୁଦ୍ଧ ହୋଇ ସମସ୍ତ ଜଗତକୁ ଏକାବେଳେକେ ଦୁରବସ୍ଥ କରିବାପାଇଁ ଉଦ୍ୟତ ହେଲେ । (୧)

ବଳରାମ ଦାସେ ଏହି ପଞ୍ଚ ସର୍ଗରେ ପ୍ରପଞ୍ଚିତ ରାମଙ୍କର କରୁଣ ବିଳପନାଦିକୁ ସଂକ୍ଷିପ୍ତତଃ ମାତ୍ର ଲେଖି ଅଛନ୍ତି । ଦେଖି ନେବେ, ଦାସଙ୍କ ରାମାୟଣରେ ରାମଙ୍କ ଶୂନ୍ୟ କୁଟୀର ଦର୍ଶନ, କିଂଚିତ୍ ମାତ୍ର ବ୍ୟବଧାନରେ ଜଟାୟୁ ଦର୍ଶନର କଥା ଲେଖା ଅଛି । (୨)

ଅତଃପର ଦୁଇଗୋଟି ସର୍ଗରେ ଲକ୍ଷ୍ମଣ ଶ୍ରୀରାମଙ୍କୁ ଅଦୃଷ୍ଟପୂର୍ବ ସଂକ୍ରୁଦ୍ଧ ଦେଖି ଏକର ଦୋଷରେ ସମସ୍ତ ଜଗତ ବିନଷ୍ଟ କରିଦେବା ଉଚିତ ନୁହେଁ, ଏହା କହି ବିନୀତ ସୁନୀତି ବାକ୍ୟରେ ପ୍ରବୋଧିତ କରିଅଛନ୍ତି ଏବଂ ଜଗତରେ ଦେହଧାରୀ ସମସ୍ତଙ୍କର ଦୁଃଖସୁଖ ଅନିବାର୍ଯ୍ୟ, ଏହି ବିଷୟକୁ କେତେକ ଦୃଷ୍ଟାନ୍ତରେ ଅନୁପ୍ରାଣିତ ନୀତିବାକ୍ୟ ମାନଙ୍କରେ ଶୋକାତୁରା ରାମଙ୍କୁ ସମାଶ୍ୱସ୍ତ କରିଅଛନ୍ତି । ଏହି ସମାଶ୍ୱାସନ ସନ୍ଦର୍ଭ ଦାସଙ୍କ ରାମାୟଣରେ ଅତ୍ର ଲେଖାଥିବା ଦେଖାଯାଏ ନାହିଁ ।

ଏହାପରେ ସପ୍ତଷଷ୍ଠିତମ ଓ ଅଷ୍ଟଷଷ୍ଠିତମ ସର୍ଗରେ ବର୍ଣ୍ଣିତ ଅଛି କି ଲକ୍ଷ୍ମଣଙ୍କ ଯତ୍ନରେ ପ୍ରତିଷ୍ଠାପିତଧୈର୍ଯ୍ୟ ବୀରଧୂର୍ଯ ଆର୍ଯବର୍ଯ ରାମଚନ୍ଦ୍ର ସୀତାଙ୍କ ଅନ୍ୱେଷଣରେ ବଣରେ ଯାଉଁ ଯାଉଁ ରାବଣ ଓ ଜଟାୟୁଙ୍କର ଯୁଦ୍ଧଭୂମିର ଦକ୍ଷିଣରେ ଅନତିକ୍ଷୀଣ ଦୂରରେ ନିପତିତ ପର୍ବତୋପମ ଗୃଧ୍ରରାଜଙ୍କୁ ଦେଖିଲେ ଏବଂ ତାହାଙ୍କ ମୁଖରୁ ସୀତାପହରଣର ଯାବତୀୟ ବିବରଣ ପାଇ ରୋଦନ କରିବାକୁ ଲାଗିଲେ । ଏ ସ୍ଥଳେ ଜଟାୟୁ ରାମଙ୍କୁ କହିଅଛନ୍ତି, ମନ୍ଦ ବୁଦ୍ଧି ରାବଣ ବିନ୍ଦୋନାମକ ମୁହୂର୍ତ୍ତରେ ସୀତାଙ୍କୁ ହରି ନେଇଅଛି । ଅବଶ୍ୟ ପ୍ରନଷ୍ଟଧନ ପୁନଃ ପ୍ରାପ୍ତ ହେବ, ଇତ୍ୟାଦି । (୩)

ଏହା କହି ଭଗବଦ୍‌କାର୍ଯ୍ୟାର୍ଥ ତ୍ୟକ୍ତଦେହ ଭଗବଦ୍‌ଭକ୍ତ ଗୃଧ୍ରରାଜ ଜଟାୟୁ ଗତାୟୁ ହେଲାରୁ ରାମ ତଦୀୟ ମୋକ୍ଷ ପ୍ରାପଣାର୍ଥ ଅନ୍ତ୍ୟେଷ୍ଟି କ୍ରିୟା ସାଧିତ କଲେ । ଦାସ ମହାଶୟ

---

(୧) ପୁରେବ ମେ ଚାରୁଦତୀମନିନ୍ଦିତାଂ ଦିଶନ୍ତି ସୀତାଂ ଯଦି ନାଦ୍ୟ ମୈଥିଳୀମ୍ ।
ସଦେବଗନ୍ଧର୍ବ ମନୁଷ୍ୟ ପନ୍ନଗଂ ଜଗତ୍‌ସଶୈଳଂ ପରିବର୍ତ୍ତୟାମ୍ୟହମ୍, ୬୪ସ
ପରିବର୍ତ୍ତୟାମି ନାଶୟାମି ଅନ୍ୟଥା କରିଷ୍ୟାମୀତି ବା    ଇତି. ଗୋ. ରା. ଟୀକାୟାଂ

(୨) ଛାପା ପୁସ୍ତକରେ ଦେଖନ୍ତୁ । ସପ୍ତ ପଞ୍ଚାଶ ପୃଷ୍ଠାରେ କେବଳ ଶ୍ରୀରାମଙ୍କ ଶୂନ୍ୟ କୁଟୀର ଦର୍ଶନର ସଙ୍ଗେ ସଙ୍ଗେ ଜଟାୟୁ ଦର୍ଶନ ଲେଖା ଅଛି ।

(୩) ଯେନ ଯାତି ମୁହୂର୍ତେନ ସୀତାମାଦାୟ ରାବଣଃ ।
ବିଗତାଷ୍ଟଂ ଧନଂ କ୍ଷିପ୍ରଂ ତତ୍ ସ୍ୱାମୀ ପ୍ରତିପଦ୍ୟତେ ।
ବିନ୍ଦୋନାମ ମୁହୂର୍ତୋୟଂ ନ ଚ କାକୁତ୍ସ ସୋଽବୁଧତ୍
ତ୍ୱତ୍‌ପ୍ରିୟାଂ ଜାନକୀଂ ହୃତ୍ୱା ରାବଣୋ ରାକ୍ଷସେଶ୍ୱରଃ
ଝଷବତ୍ ବଡ଼ିଶଂ ଗୃହ୍ୟ କ୍ଷିପ୍ରମେବ ବିନଶ୍ୟତି । ୬୮ ସ.

ମଧ ଏହାହି ଲେଖିଅଛନ୍ତି । କିନ୍ତୁ ଜଟାୟୁ କଥିତ ସୀତାହରଣମୂଳକ ମୌହୂର୍ତ୍ତିକ ସମ୍ବାଦ କିଛି ଲେଖି ନାହାନ୍ତି ।

ଅତଃପର ଏକୋନସପ୍ତତିତମ ସର୍ଗରେ ଅୟୋମୁଖୀ ରାକ୍ଷସୀ ଏବଂ କବନ୍ଧର ଚରିତ ଲେଖାଅଛି । ସଲକ୍ଷ୍ମଣସୁଲକ୍ଷଣ ରାମଚନ୍ଦ୍ର ଜଟାୟୁ ମୋକ୍ଷଣର ଅବ୍ୟବହିତ କ୍ଷଣରେ ଦକ୍ଷିଣ ଦଣ୍ଡକାରଣ୍ୟର କ୍ରୌଞ୍ଚାରଣ୍ୟ ଓ ମତଙ୍ଗାଶ୍ରମର ତିନି କ୍ରୋଶ ଅନ୍ତରରେ ନିବିଡ଼ତମ ସାବୃତ ପାତାଳୋପମ ଗଭୀର ଗୋଟିଏ ଦରି ନିକଟରେ ଅୟୋମୁଖୀ ନାମ୍ନୀ ରକ୍ଷସୀକୁ ଦେଖିଲେ । ସେ ଆସି ରାମଙ୍କ ନିକଟରେ ସୂର୍ପଣଖାରପ୍ରାୟ ଅଭିନୟ କରି ତତ୍ତୁଲ୍ୟ ଦୁରବସ୍ଥା ପ୍ରାପ୍ତ ହେଲା । (୧) ସେହି ବିଛିନ୍ନ କର୍ଣ୍ଣ ନାସିକ ରାକ୍ଷସୀ ବିଦୂରିତ ହେଲା ପରେ ରାଘବଦ୍ୱୟ ବିଶେଷତଃ ଲକ୍ଷ୍ମଣ ବିଗତମସ୍ତକସନ୍ଧିବନ୍ଧ କବନ୍ଧ ରାକ୍ଷସଦ୍ୱାରା ଆକ୍ରାନ୍ତ ହେଲେ । ଏସ୍ଥଳେ ବାଳଲକ୍ଷଣ ଲକ୍ଷ୍ମଣ ଅପ୍ରୌଢ଼ ବୁଦ୍ଧିତ୍ୱରୁ ଭୀତ ଭୀତ ହୃଦୟରେ ପ୍ରାଣ ଆଶା ତ୍ୟାଗ ପୂର୍ବକ ରାମଙ୍କୁ କେତେକ କାତରୋକ୍ତି କହିଅଛନ୍ତି । (୨)

ଶ୍ରୀରାମ ମଧ "କାଳୋହିଦୁରତିକ୍ରମଃ" କେତେକ କଥା ପ୍ରକାଶ କରିଅଛନ୍ତି । ବଳରାମ ଦାସେ ଏସ୍ଥଳେ ମୂଳୋକ୍ତ ଦରୀର କଥା ଏବଂ ପୀନୋଦରୀ ଅୟୋମୁଖୀ ରାକ୍ଷସୀର ଘଟଣା ଲେଖି ନାହାନ୍ତି । (୩)

---

(୧) ତତଃ ପରଂ ଜନସ୍ଥାନାଦ୍ ତ୍ରିକୋଶଂ ଗମ୍ୟ ରାଘବୌ
କ୍ରୌଞ୍ଚାରଣ୍ୟଂ ବିବିଶତୁଃ ଗହନଂ ତୌ ମହୌଜସୌ ।
× × ×
ତତଃ ପୂର୍ବେଣ ତୌ ଗତ୍ୱା ତ୍ରିକୋଶଂ ଭ୍ରାତରୌ ତଦା
କୌଞ୍ଚାରଣ୍ୟଂ ଅତିକ୍ରମ୍ୟ ମତଙ୍ଗାଶ୍ରମମନ୍ତରେ ।
ଦଦୃଶା ତେଗିରୌ ତତ୍ର ଦରୀଂ ଦଶରଥାତ୍ମଜୌ
ପାତାଳସମଗମ୍ଭୀରାଂ ତମସା ନିତ୍ୟସଂବୃତାଂ ।
ଆସାଦ୍ୟ ତୌ ନରବ୍ୟାଘ୍ରୌ ଦର୍ଯାସ୍ତସ୍ୟା ବିଦୂରତଃ
ଦଦୃଶାତେ ମହାରୂପାଂ ରାକ୍ଷସୀଂ ବିକୃତାନନାମ୍ ।
× × ×
ଏବମୁକ୍ତସ୍ତୁ କୁପିତଃ ଖଡ୍ଗମୁଦ୍ୟମ୍ୟ ଲକ୍ଷ୍ମଣଃ
କର୍ଣ୍ଣନାସଂସ୍ତନୌ ତସ୍ୟା ନିଚକର୍ତ୍ତାରିସୂଦନଃ । ୬୯ ସ.

(୨) ଉବାଚ ଚ ବିଷଣ୍ଣଃସନ୍ ରାଘବଂ ରାଘବାନୁଜଃ, ପଶ୍ୟ ମାଂ ବିବଶଂ ବୀର ରାକ୍ଷସସ୍ୟ ବଶଂ ଗତଂ । ମୟୈକେନ ବିନିର୍ଯୁକ୍ତଃ ପରିମୁଞ୍ଚସ୍ୱ ରାଘବ, ମାଂ ହି ଭୂତବଳିଂ ଦତ୍ୱା ପଳାୟସ୍ୱ ଯଥା ସୁଖଂ । ଅଧିଗନ୍ତାସି ବୈଦେହୀଂ ଅଚିରେଣେତି ମେ ମତିଃ । ପ୍ରତିଲଭ୍ୟ ଚ କାକୁତ୍ସ୍ଥ ପିତୃ ପୈତାମହୀଂ – ମହିମ୍, ତତ୍ର ମାଂ ରାମ ! ରାଜ୍ୟସ୍ଥଃ ସ୍ମର୍ତ୍ତୁମର୍ହସି ସର୍ବଦା – ୬୯ ସ.

(୩) ରକ୍ତକାମା ଅୟୋମୁଖୀର କଥା ଭୋଜରାଜ ମଧ ଲେଖିଛନ୍ତି । ଚମ୍ପୂ. ରା. ଆରଣ୍ୟକ କାଣ୍ଡ ଦେଖନ୍ତୁ ।

କିନ୍ତୁ କବନ୍ଧର ଅବସ୍ଥାନ ସେ ସ୍ଥାନରୁ ତିନି କ୍ରୋଶ ବ୍ୟବଧାନ ବୋଲି ମୂଳାନୁମତେ କହିଅଛନ୍ତି । (୧)

ଏହା ପରେ ସପ୍ତତିତମ ସର୍ଗଠାରୁ ଚାରିଗୋଟି ସର୍ଗରେ ସ୍ଥୂଳଶିରା ଋଷିଙ୍କ ଶାପରେ ଅଭିଶପ୍ତ କବନ୍ଧର ବାହୁଚ୍ଛେଦନରେ ପୂର୍ବଜନ୍ମସ୍ମୃତି, କବନ୍ଧର ସ୍ୱଭାବ ବୃତ୍ତାନ୍ତ କଥନ ପୂର୍ବକ ଶାପମୋକ୍ଷ୍ୟ ନିମନ୍ତେ ସ୍ୱଶରୀର ଦହନାର୍ଥ ପ୍ରାର୍ଥନା, ରାମାଜ୍ଞାରେ ସଂସ୍କୃତ କବନ୍ଧର ସ୍ୱରୂପ ପ୍ରାପ୍ତିପରେ ରାମଙ୍କର ଅଭିନବ ମୈତ୍ରୀ ସଂପାଦନାର୍ଥ ଉପଦେଶ ଏବଂ ସୁଗ୍ରୀବଙ୍କ ଅବସ୍ଥାନ ସ୍ଥାନର ମାର୍ଗ ପ୍ରଦର୍ଶନ କ୍ରମ ଲେଖା ଅଛି । ପ୍ରଥମତଃ ବିଚ୍ଛିନ୍ନ ବାହୁ କବନ୍ଧର ଜିଜ୍ଞାସାରେ ଲକ୍ଷ୍ମଣ ରାମଙ୍କର ପରିଚୟ ଦେଲେ । କବନ୍ଧ କହିଲାକି, ମୁଁ ସ୍ଥୂଳ- ଶିରା ଋଷିଙ୍କ ଶାପରୁ ଇନ୍ଦ୍ରଙ୍କ ଦ୍ୱାରା ଏପରି ଦୁରବସ୍ଥାପନ୍ନ ହେଲି, ମୋର ଏହି ଦେହରେ ଜ୍ଞାନ ଶକ୍ତି ପ୍ରକାଶ ପାଇବ ନାହିଁ । ଆପଣ ମୋତେ ଗର୍ତ୍ତରେ ପକାଇ ଦଗ୍ଧ କରି ଦିଅନ୍ତୁ । ତେତେବେଳେ ମୁଁ ତାହାଙ୍କର ପ୍ରାପ୍ତିର ନିରପାୟ ଉପାୟ କହିବି, କିନ୍ତୁ ସୂର୍ଯ୍ୟାସ୍ତ ପୂର୍ବେ ମୋତେ ଦଗ୍ଧ କରିବାକୁ ହେବ । (୨)

ତାପରେ କବନ୍ଧ ଦିବ୍ୟ ଶରୀରରେ ଯୁକ୍ତ ହୋଇ କହିଲେ କି ଆପଣ ଋଷ୍ୟମୂକ ପର୍ବତସ୍ଥ ସୁଗ୍ରୀବଙ୍କଠାକୁ ଯାଅନ୍ତୁ । ତାଙ୍କ ସହିତ ମିତ୍ରତା ସ୍ଥାପନ କରନ୍ତୁ । ସେ ଅବଶ୍ୟ ସୀତାଙ୍କୁ ଆଣି ଦେବେ । (୩)

ଆପଣ ପମ୍ପା ସରୋବର ନିକଟସ୍ଥ ସୁଗ୍ରୀବ ସ୍ଥାନକୁ ଯିବା ମାର୍ଗରେ ମାତଙ୍ଗାଶ୍ରମ ଏବଂ ଚିରଜୀବିନୀ ଧର୍ମପ୍ରାଣା ତପସ୍ୱିନୀ ଶ୍ରମଣୀ ନାମ୍ନୀ ଶବରୀଙ୍କୁ ଦେଖିବେ । ସେ ଆପଣଙ୍କୁ ଦର୍ଶନ କରି ସ୍ୱର୍ଗକୁ ଯିବେ । ଏସ୍ଥଳେ କବନ୍ଧ ରାମଙ୍କୁ ଋଷ୍ୟମୂକ ପର୍ବତ ଆଉ ପମ୍ପା ସରୋବରର ସୌନ୍ଦର୍ଯ୍ୟ ଓ ସୁଖସ୍ୱାସ୍ଥ୍ୟର ମହିମା ବ୍ୟାଖ୍ୟାନ ପୂର୍ବକ କହି ଅଛନ୍ତି କି ସେହି ସରୋବରରେ ଘୃତପିଣ୍ଡୋପମ ପକ୍ଷୀମାନେ ତଥାଚ କେତେକ ମତ୍ସ୍ୟମାନେ ଆପଣଙ୍କର ସୁଖଖାଦ୍ୟ ହେବେ ଏବଂ କହି ଅଛନ୍ତି କି ମାତଙ୍ଗାଶ୍ରମରେ ନାନାବିଧ ଗଜମାନେ ଅଛନ୍ତି, ସେମାନେ ମତଙ୍ଗ ବିଧାନରୁ ଆଶ୍ରମକୁ ଅତିକ୍ରମ କରି ପାରନ୍ତି ନାହିଁ । ଇତ୍ୟାଦି । (୪)

---

(୧) ଦକ୍ଷିଣ ମୁଖ ହୋଇଣ ତିନି କୋଶ ଗଲେ
ଅତି ଭୟଙ୍କର ରୂପ କବନ୍ଧ ଦେଖିଲେ ।

(୨) କିନ୍ତୁ ଯାବତ୍ ନଯାତ୍ୟସ୍ତଂ ସବିତା ଶ୍ରାନ୍ତବାହନଃ
ତାବତ୍ ମାମବଟେ କ୍ଷିପ୍ତ୍ୱା ଦହ ରାମ ଯଥା ବିଧି । ୭୧ ସ. ୩୧ ଶ୍ଳୋ

(୩) ସ ମେରୁ ଶୃଙ୍ଗାଗ୍ରଗତାମନିନ୍ଦିତାଂ ପ୍ରବିଶ୍ୟ ପାତାଳତଳେଽପିବାଶ୍ରିତାଂ
ପ୍ଲବଙ୍ଗମାନାଂ ପ୍ରବରସ୍ତବପ୍ରିୟାଂ ନିହତ୍ୟ ରକ୍ଷାଂସି ପୁନଃ ପ୍ରଦାସ୍ୟତି । ୭୨ ସ.

(୪) ଶ୍ରମଣୀ ଶବରୀ ନାମ କାକୁସ୍ଥ ଚିରଜୀବୀନୀ, ତ୍ୱାଂ ତୁ ଧର୍ମେ ସ୍ଥିତ ନିତ୍ୟଂ ସର୍ବଭୂତନମସ୍କୃତଂ । ଦୃଷ୍ଟ୍ୱା ଦେବୋପମଂ ରାମ ସ୍ୱର୍ଗଲୋକଂ ଗମିଷ୍ୟତି । ×× ନତଦ୍ରାକ୍ରମିତୁଂ ନାଗାଃ ଶକ୍ନୁବନ୍ତି ତମାଶ୍ରମଂ । ବିବିଧାସ୍ତତ୍ର ବୈ ନାଗାଃ ବନେ ତସ୍ମିଂଶ୍ଚ ପର୍ବତେ, ଇତ୍ୟାଦି ।

ବଳରାମ ଦାସ ମହାଶୟ ପଞ୍ଚସର୍ଗବ୍ୟାପୀ ଏହି କବନ୍ଧ କଥାନକର ସ୍ଥୂଳ ସାରାଂଶ ମାତ୍ର ସଂକ୍ଷେପରେ ପ୍ରକାଶି ଦେଇ ଅଛନ୍ତି । ଅତ୍ର ସେ ମହାଶୟ ଅଧିକତଃ ଉପରି କଥା ପ୍ରକାଶ କରିଛନ୍ତି କି ପିପାସୁ ରାମଚନ୍ଦ୍ର ଲକ୍ଷ୍ମଣଙ୍କୁ ପାନୀୟ ଜଳ ଆନୟନାର୍ଥ ଆଦେଶିବାରୁ ସେ ପୁଣି ବାଦଲ ଶରରେ ପର୍ବତ ବିଦୀର୍ଣ୍ଣ କରି ପାତାଳରୁ ଗଙ୍ଗାଙ୍କୁ ଆନୀତ କଲେ । ତଦବଧି ସେହି ସ୍ଥାନଟି ଲକ୍ଷ୍ମଣହ୍ରଦ ନାମରେ ଅଭିହିତ ହେଲା । ସେ ମହାଶୟ ପୁଣି ଏଠାରେ ଲେଖିଅଛନ୍ତି ରାମଚନ୍ଦ୍ର ତତ୍ରତ୍ୟ ତୁଙ୍ଗଭଦ୍ରା ନଦୀରେ ନିତ୍ୟକର୍ମ ସାରି ବରୁଣାଖ୍ୟ ଲିଙ୍ଗ ମହାଦେବଙ୍କୁ ପୂଜା କରିଥିଲେ । (୧)

ଏହି ବରୁଣାଖ୍ୟ ଲିଙ୍ଗ କଥା ମୂଳଗ୍ରନ୍ଥରେ ଏବଂ ଅଧ୍ୟାତ୍ମ ରାମାୟଣରେ ମଧ୍ୟ ଉକ୍ତ ନାହିଁ । କବି ପୁରାଣାନ୍ତରରୁ ଉନ୍ନୀତ କରି ଅଛନ୍ତି, ଏହାହିଁ ଅନୁମିତ ହୁଏ ।

ଚତୁଃସପ୍ତତିତମ ସର୍ଗରେ ଉକ୍ତ ଅଛି କି ଶ୍ରୀରାମ କବନ୍ଧ ଦର୍ଶିତ ମାର୍ଗରେ ଯାଇ ଶବର୍ଯାଶ୍ରମରେ ସିଦ୍ଧା ଶବରୀଙ୍କୁ ଦେଖିଲେ । ସେ ରାମଙ୍କୁ ଦର୍ଶନ କରି ମାହାତ୍ମ୍ୟ ବ୍ୟାଖାନ ପୂର୍ବକ ମାତଙ୍ଗାଶ୍ରମ ଦେଖାଇ ଦେଇ ଦେହ ତ୍ୟାଗ ପୂର୍ବକ ସ୍ୱର୍ଗକୁ ପ୍ରସ୍ଥାନ କଲେ । ଏ ସ୍ଥଳେ ପୁଣି ଲେଖା ଅଛି, ଶବରୀ ରାମଙ୍କୁ ପାଦ୍ୟଅର୍ଘ୍ୟାଦିରେ ପୂଜାକଲା ପରେ ଉତ୍ତମ ସୁପକ୍ୱ ଫଳମାନ ସମର୍ପଣ କରିଥିଲେ ଏବଂ କହିଥିଲେ, (୨) ଆପଣ ଚିତ୍ରକୂଟ ବିଜେ ହେବା ସମୟେ ଋଷିମାନେ ମୋତେ ବୁଝାଇ ଦେଇଥିଲେ ଯେ ଆପଣ ଏଠାକୁ ଆସିବେ, ମୋତେ ସଦ୍ଗତି ଦେବେ ।

ଭଗବଦ୍‌ଭକ୍ତପ୍ରବରା ପୁଣ୍ୟକଳେବରା ଶବରୀଙ୍କ ରାମ ସମର୍ଚ୍ଚନା ସ୍ଥଳେ ବଳରାମ ଦାସେ ଲେଖିଅଛନ୍ତି, ସେହି ସିଦ୍ଧା ଶବରୀ ନିଜର ଦନ୍ତ ମୁଦ୍ରାରେ ମୁଦ୍ରିତ ସୁପକ୍ୱ ଫଳମାନ

---

(୧) ଲକ୍ଷ୍ମଣଙ୍କୁ ଚାହିଁଣ ବୋଲନ୍ତି ରଘୁମଣି, ତୃଷା କଲା ମୋତେ ତୁମ୍ଭେ ଜଳଦିଅ ଆଣି । ଶୁଣିଣ ସଉମିତ୍ରି ଯେ ଚାହେଁ ଚଉକତି, ନିକଟରେ ଜଳ ତହିଁ ନ ଦେଖିଲେ କ୍ଷତ୍ରି । ବାଦଲ ଘେନିଣ ଯେ ପର୍ବତ ଚିରି ଦେଲେ, ପାତାଳ ଭେଦିଣ ଗଙ୍ଗା ବାହାର ହୋଇଲେ । ତହିଁରେ ଶ୍ରୀରାମ ଯେ ସାରିଲେ ନିତ୍ୟ କର୍ମ, ଜଳପାନ କଲେ ତହିଁ ହରି ପଥଶ୍ରମ । ଲକ୍ଷ୍ମଣ ହ୍ରଦ ବୋଲିଣ ତାର ନାମ ଦେଲେ, ଅଧକୋଶ ଯାଇ ପୁଣି ତହିଁ ବିଶ୍ରାମିଲେ । ସୀତା ସୁମରି ତହିଁ ପୁହାଇଲେ ନିଶି, ପ୍ରଭାତେ ତହୁଁରେ ଚଳିଲେ ରଘୁପତି । ତୁଙ୍ଗଭଦ୍ରା ନଦୀରେ ସେ ନିତ୍ୟ କର୍ମ ସାରି, ବରୁଣାଖ୍ୟ ଲିଙ୍ଗଙ୍କୁ ପୂଜନ୍ତି ଚାପଧାରୀ । ଇତ୍ୟାଦି

(୨) ତୌ ତୁ ଦୃଷ୍ଟ୍ୱା ତଦା ସିଦ୍ଧା ସମୁତ୍‌ଥାୟ କୃତାଞ୍ଜଳିଃ
ରାମସ୍ୟ ପଦେ ଜଗ୍ରାହ ଲକ୍ଷ୍ମଣସ୍ୟ ଚ ଧୀମତଃ ।
ପାଦ୍ୟମାଚମନୀୟଂ ଚ ସର୍ବଂ ପ୍ରାଦାତ୍ ଯଥା ବିଧି ୭୪ ସ. ୫. ୬. ଶ୍ଳୋ
× × × ×
ମୟା ତୁ ବିବିଧଂ ବନ୍ୟଂ ସଂଚିତଂ ପୁରୁଷର୍ଷଭ
ତବାର୍ଥେ ପୁରୁଷବ୍ୟାଘ୍ର ପମ୍ପାୟାସ୍ତୀରସଂଭବମ୍ । ଇତ୍ୟାଦି ୧୭ ଶ୍ଳୋ

ଆଣି ଶ୍ରୀରାମଙ୍କ ଛାମୁରେ ସମର୍ପଣ କଲେ, ଶ୍ରୀରାମ ତାହା ପରମତୋଷରେ ସହିତ ଭୋଜନ କଲେ । ମାତ୍ର ଯେଉଁ ଫଳଗୁଡ଼ିକରେ ଦନ୍ତ ଚିହ୍ନ ନଥିଲା, ସେଗୁଡ଼ିକୁ ସେ ଗ୍ରହଣ ନକରି ନିକ୍ଷିପ୍ତ କରି ଦେଲେ । (୧)

ଏହି କଥା ମୂଳଗ୍ରନ୍ଥରେ କିମ୍ୱା ଅଧ୍ୟାତ୍ମ ରାମାୟଣରେ (୨) ଲେଖାନାହିଁ, ତଥାପି କଥାଟି ଲୋକବିଶ୍ରୁତ ହୋଇ ପଡ଼ିଅଛି । ଭାବଗ୍ରାହୀ ଜଗଦୀଶ୍ୱର ଭକ୍ତର ଭକ୍ତିରେ ଆବଦ୍ଧ ରହି ତଦୀୟ ସର୍ବବିଧ ବୈଧ ଅବୈଧ କୃତ୍ୟକୁ ଆନନ୍ଦର ସହିତ ଅନୁମୋଦନ କରନ୍ତି । ଏହାହିଁ ଏ ସ୍ଥଳେ ସମାଧି ଦେବାକୁ ହେବ ।

ଏହି କାଣ୍ଡର ସର୍ବାନ୍ତିମ ସର୍ଗରେ ଶ୍ରୀରାମଙ୍କର ପମ୍ପା ସରୋବର ଦର୍ଶନ ବର୍ଣ୍ଣିତ ଅଛି । ପମ୍ପା ରମଣୀୟତାର ଦର୍ଶନରେ ସମୁକ୍ରଣ୍ଠିତ ଅକୁଣ୍ଠିତଧୈର୍ଯ୍ୟ ରାମଚନ୍ଦ୍ର ସୀତାଙ୍କ ଉଦ୍ଦେଶରେ ଦୁଃଖ ପ୍ରକାଶ କରି ଅଛନ୍ତି । ଏ ସ୍ଥଳେ ରାମଚନ୍ଦ୍ର ମତଙ୍ଗାଶ୍ରମ ଦେଖିଥିବା ଏବଂ ଲକ୍ଷ୍ମଣଙ୍କୁ ସୁଗ୍ରୀବଙ୍କଠାକୁ ଯିବାକୁ କହିଥିବା ମଧ୍ୟ ଲେଖାଅଛି ।

କିନ୍ତୁ ଦାସଙ୍କ ରାମାୟଣରେ ଏ ସ୍ଥଳରେ ମୂଳରେ ଅନୁକ୍ତ ଆଉ ଦୁଇ ଚାରି ଉପରି ବିଷୟ ଲେଖାଅଛି । ରାମଙ୍କ ପମ୍ପା ସରୋବର ପ୍ରବେଶ ସ୍ଥଳେ ଦାସେ ଗୋଟିଏ ଦେବୀ ସ୍ତୋତ୍ର ମଧ ଲେଖିଛନ୍ତି । (୩) ପମ୍ପା ସରୋବରବିହାରୀ ଚକ୍ରବାକ ପକ୍ଷୀ ରାମଙ୍କୁ କ୍ରୋଧର ସହିତ ଭର୍ତ୍ସନା କରି ଏକ ପୃଷ୍ଠା ବ୍ୟାପୀ ଉପଦେଶ ଦେଇଥିଲା ।(୪) ଏବଂ ତଦୀୟ ଭର୍ତ୍ସନା ଶୁଣି ଲକ୍ଷ୍ମଣ ତାକୁ ଭର୍ତ୍ସନା ପୂର୍ବକ ଶାପ ପ୍ରଦାନ କରିଥିଲେ ବୋଲି ମଧ ଦାସେ ଲେଖିଅଛନ୍ତି । (୫)

ଏହାପରେ ପୁଣି ସେ ଲେଖି ଅଛନ୍ତି କି ଲକ୍ଷ୍ମଣଙ୍କ ଶାପ ପ୍ରଦାନର ଅବ୍ୟବହିତ ପରେ ଏକ ଜଣ ଶାକୁନିକ ଅଠାକାଠି ଯୋଗେ ଚକ୍ରବାକ ଦମ୍ପତିକୁ ଆବଦ୍ଧ କରି ନେଇ ଗୋଟିଏ ପେଟିକା ମଧ୍ୟରେ ନିହିତ ଓ ପିହିତ ରଖିଲା । ଯେତେବେଳେ ରାତ୍ରି ଆସି ଉପଗତ ହେଲା, ତେତେବେଳେ ଚକ୍ରବାକୀର କରୁଣ ବଚନ ଶୁଣି ଚକ୍ରବାକ କହିଲା କି

---

(୧) ଦନ୍ତ ମୁଦ୍ରାମାନ ଏଥିରେ ଅଛି ବସି । ଭଲ ସଂଚିଅଛ ବେଳ ଜାଣି ତା ପ୍ରଶଂସି ।
କରେ ଧରି ରାମଚନ୍ଦ୍ର ତଳେ ପକାଇଲେ, ଦନ୍ତ ମୁଦ୍ରା ନାହିଁ ଏଥି ବୋଲିଣ ବୋଇଲେ । ୬୨ ପୃ.

(୨) ସଂଗୃହୀତାନି ଦିବ୍ୟାନି ରାମାର୍ଥଂ ଶବରୀ ମୁଦା
ଫଳାନ୍ୟମୃତକଳ୍ପାନି ଦଦୌ ରାମାୟ ଭକ୍ତିତଃ ।
ଇତି ଅଧ୍ୟାତ୍ମ ରାମାୟଣେ. ଆର. କାଃ ୯ ଅ.

(୩) ଛାପା ପୁସ୍ତକରେ ୬୪ ପୃଷ୍ଠା ପାଠ କରନ୍ତୁ ।

(୪) ଛାପା ପୁସ୍ତକରେ ୬୬ ପୃଷ୍ଠା ଦେଖନ୍ତୁ ।

(୫) ଛାପା ପୁସ୍ତକରେ ୬୬ ପୃଷ୍ଠା ଦେଖନ୍ତୁ ।

ଆମ୍ଭେ ଦୁହେଁ ତ ରାମଙ୍କ ଶାପରୁ ରାତ୍ରିରେ ଏକାଠିଁ ମିଳିତ ହୋଇ ପାରିବୁଁ ନାହିଁ । କିନ୍ତୁ ଆମ୍ଭର ଅନିଚ୍ଛା ସତ୍ତ୍ୱେ ଦୈବଗତ୍ୟା ବନ୍ଧନରେ ଏକାଠିଁ ପଡ଼ି ରହିଅଛୁଁ । ଏତେବେଳେ ସତ୍ୟସନ୍ଧ ରାମଙ୍କ କଥା ବୃଥା ଅନ୍ୟଥା ହୋଇ ଯାଉଅଛି । ଚକ୍ରାବାକୀ ଏତିକି ମାତ୍ର କହି ଭକ୍ତିପୂତ ମନରେ ଶ୍ରୀରାମଙ୍କୁ ସ୍ମରଣ ପୂର୍ବକ ଜଣାଇଲା କି ହେ ରାମ ! ଆପଣ ତ ଭକ୍ତବତ୍ସଳ, ଜଗତର କର୍ତ୍ତା, ଭର୍ତ୍ତା ଓ ହର୍ତ୍ତା, ତଥାପି ଆପଣଙ୍କ ଆଦେଶ ବ୍ୟର୍ଥ ହୋଇଯାଉଅଛି । ଆମ୍ଭ ଦୁଇ ପ୍ରାଣୀଙ୍କୁ ବିପଦରୁ ଉଦ୍ଧାର କରିବା ପାଇଁ ଆପଣଙ୍କ ଅମୋଘ ଆଦେଶକୁ ରକ୍ଷା କରନ୍ତୁ । ସେହି ରାମୈକତାନହୃଦୟ ବିହଗ ଏହା କହିଲାକ୍ଷଣି ସେହି ପେଟିକାଟି ଦ୍ୱିଧା ଫାଟିଗଲା । ଚକ୍ରବାକ ଦମ୍ପତି ଆନନ୍ଦିତ ମତିରେ ବିୟତିରେ ଉଡ଼ି ବାହାରି ଗଲେ ଇତ୍ୟାଦି । ଏହି ଘଟଣାଟି ଅମୌଳିକ ସତ୍ୟ, ତଥାପି କଥାଟିର ସଂଗଠନ ରୀତି ସମୀଚୀନ ବୋଧ ହୋଉଅଛି । (୧)

ଏହା ଦାସଙ୍କ ଏକାନ୍ତ କପୋଳ କଳ୍ପିତ ବୋଲି ବିଶ୍ୱାସ ହୁଏ ନାହିଁ । ତଥାପି କେଉଁ ପୁରାଣ ବା ଇତିହାସରୁ ଉନ୍ନୀତ କରିଅଛନ୍ତି ଏକ୍ଷଣି ଜାଣି ହୁଏ ନାହିଁ । ଏହା ପରେ ପୁଣି ଦାସେ ଲେଖିଛନ୍ତି, ରାମ ସେହି ପମ୍ପାରଣ୍ୟରେ ଗୋଗୋଷ୍ଠ ଓ ଗୋପାଳମାନଙ୍କୁ ଦେଖି ସେମାନଙ୍କ ପ୍ରଦତ୍ତ ଦୁଗ୍ଧ ପାନ କରି ସେମାନଙ୍କୁ ସମ୍ମାନସହ ବରପ୍ରଦାନ କଲେ । (୨) ଏ ସ୍ଥଳେ ପୁଣି ଲେଖା ଅଛି । ପ୍ରଥମେ ଲକ୍ଷ୍ମଣ ସମସ୍ତ ଗୋପାଳମାନଙ୍କୁ ମାରି ଧରି ଗାଭୀସବୁ ବଳେ ଘେନି ଆସିବା ପାଇଁ କହିଲେ, କିନ୍ତୁ ରାମ ତହିଁରେ ତିନିଗୋଟି ଦୋଷ ଦର୍ଶାଇ ନିବାରଣ କରିଥିଲେ । ଆଉ ଗୋଟିଏ କଥା ଲେଖା ଅଛି ରାମଚନ୍ଦ୍ର କଦମ୍ବ ପୁଷ୍ପଟିଏ ଦେଖି ତାକୁ ପୁଣି ବୃନ୍ତରୁ ବିଚ୍ଛିନ୍ନ କରି ସୀତାଙ୍କ ଉଦ୍ଦେଶରେ ବିଳାପ କଲେ (୩) । ତାପରେ ପୁଣି ସେ ଲକ୍ଷ୍ମଣଙ୍କୁ କଟୁକଥାମାନ କହିଥିଲେ । ଏସବୁ ମୂଳଗ୍ରନ୍ଥରେ ଏସ୍ଥଳେ ଲେଖା ନାହିଁ । ବିଶ୍ୱାସ ହୁଏ କବି ଅନ୍ୟ ଗ୍ରନ୍ଥରେ ଏହାର ପ୍ରମାଣ ଦେଖି ଏ ସ୍ଥଳେ ଚିତ୍ରଣ କରିଅଛନ୍ତି ।

ଅତଃପର ମୂଳ ଗ୍ରନ୍ଥରେ କିଷ୍କିନ୍ଧା କାଣ୍ଡର ପ୍ରଥମ ସର୍ଗଟି ପମ୍ପା ତୀରସ୍ଥ ବନଲତାଦିର ବାସନ୍ତିକ ଶୋଭାବର୍ଣ୍ଣନା ଏବଂ ତଦ୍ ଦର୍ଶନଜନିତ ରାମଙ୍କ ଶୋକବିଳାପରେ ସଂବଳିତ । (୪) ଏହି ପାଠତକ ଆରଣ୍ୟକ କାଣ୍ଡର ସର୍ବାନ୍ତିମ

---

(୧) ବୈଦେହୀଶ ବିଳାସରେ ଭଂଜେ ଚକ୍ରବାକ ଚକ୍ରବାକୀର ଶାପ ବୃତ୍ତାନ୍ତ ମାତ୍ର ଲେଖିଅଛନ୍ତି ।

(୨) ଛାପାରେ ୬୯ ପୃଷ୍ଠା ଦେଖନ୍ତୁ ।
ଦୁଗ୍ଧଦାତା ଗୋପାଳଙ୍କ ପ୍ରତି ରାମଙ୍କ ବରପ୍ରଦାନ ମୂଳଗ୍ରନ୍ଥରେ ଉକ୍ତ ନଥିଲେ ସୁଦ୍ଧା ଅନ୍ୟାନ୍ୟ ପୁରାଣମାନଙ୍କରେ ଉକ୍ତ ଅଛି । ଦାସଙ୍କ ରାମାୟଣର ଅନୁକାରୀ ଭଞ୍ଜେ ମଧ୍ୟ ଏହା ଲେଖିଅଛନ୍ତି ।

(୩) ଉପେନ୍ଦ୍ର ଭଂଜେ ଏ କଥାକୁ ବୈଦେହୀଶ ବିଳାସରେ ପ୍ରକାଶ କରିଅଛନ୍ତି ।

(୪) ଏହି ସର୍ଗର ୧୩୧ ଗୋଟି ଶ୍ଳୋକ ମଧ୍ୟରୁ ଶତାଧିକ ଶ୍ଳୋକରେ ବନଲତାଦିର ବର୍ଣ୍ଣନା ନିହିତ ଅଛି ।

ସର୍ଗର ଅବଶିଷ୍ଟ କହିବାକୁ ହେବ । ଅତଏବ କିଷିନ୍ଧା କାଣ୍ଡର ପ୍ରାରମ୍ଭ ସୁଗ୍ରୀବଙ୍କର ଶ୍ରୀରାମ ଦର୍ଶନାରମ୍ଭଠାରୁ କୁହାଯାଇପାରେ । ଏହାର ଦ୍ୱିତୀୟ ଓ ତୃତୀୟ ସର୍ଗରେ ଋଷ୍ୟମୂକ ପର୍ବତସ୍ଥ (୧) ବାନରର୍ଷଭ ସୁଗ୍ରୀବ ଶ୍ରୀରାମ ଓ ଲକ୍ଷ୍ମଣଙ୍କୁ ଦେଖି ବାଳିଙ୍କ ଦୂତ ମନେ କରି ଅତ୍ୟନ୍ତ ଭୀତ ହୃଦୟରେ ତଦୀୟ ତତ୍ତ୍ୱ ବୁଝି ଆସିବା ନିମନ୍ତେ ହନୁମାନଙ୍କୁ ପଠାଇଥିବା, ହନୁମାନ ଭିକ୍ଷୁ ବେଶରେ (୨) ଯାଇ ତାହାଙ୍କ ସହ ସଂଭାଷଣ କରିବା ଲେଖାଅଛି । ଚତୁର୍ଥ ସର୍ଗରେ ବର୍ଣ୍ଣିତ ଅଛିକି ହନୁମାନଙ୍କ ଜିଜ୍ଞାସାରେ ଶ୍ରୀରାମଙ୍କ ଆଦେଶ ପାଇ ଲକ୍ଷ୍ମଣ ସ୍ୱକୀୟ ବନବାସର କାରଣ ପ୍ରଭୃତି କହି ବର୍ତ୍ତମାନ ସୁଗ୍ରୀବ ଆମ୍ଭମାନଙ୍କର ଶରଣ ବୋଲି ଜଣାଇଲେ । (୩) ତାପରେ ହନୁମାନ ସୁଗ୍ରୀବ ଅବଶ୍ୟ ଆପଣମାନଙ୍କର ଉପକାର କରିବେ, ଏହା କହି ରାମ ଓ ଲକ୍ଷ୍ମଣଙ୍କୁ ସଙ୍ଗେ ଧରି (୪) ଋଷ୍ୟମୂକକୁ ଗଲେ ।

ବଳରାମ ଦାସେ ମଧ୍ୟ ସୁଗ୍ରୀବଙ୍କର ଶ୍ରୀରାମ ଦର୍ଶନଠାରୁ କିସ୍କିନ୍ଧା କାଣ୍ଡର ଆରମ୍ଭ କରିଅଛନ୍ତି । କିନ୍ତୁ ଅନ୍ୟାନ୍ୟ ପୁରାଣୋକ୍ତ ଅନେକ ମୁଡ଼ିଏ ଉପରି କଥା ଆଣି ଏଥି ମଧ୍ୟରେ ମିଶାଇ ଅଛନ୍ତି । ଏଥିରେ ସୁଗ୍ରୀବ ହନୁମାନଙ୍କୁ କହିଅଛନ୍ତି କି ମୋତେ ଯମର ମହିଷର ହମ୍ବାରବ ଶୁଭୁଅଛି । କିନ୍ତୁ ଏହି ସ୍ୱପ୍ନିଳ ଘଟନାଟି ସୁଗ୍ରୀବଙ୍କର

---

(୧) ଏ ସ୍ଥଳେ ଋଷ୍ୟମୂକର ବା ତଦୀୟ ଅପର ଭାଗର ନାମ ମଳୟ ବୋଲି ଲେଖା ଅଛି ।

୧ (କ) ମଳୟୋଽୟଂ ଗିରିବରୋ ଭୟଂନେହାସ୍ତି ବାଳିନଃ । ୨ ସର୍ଗ

୨ (ଖ) ଋଷ୍ୟମୂକାତ୍ ହନୁମାନ୍ ଗତ୍ୱା ତଂ ମଳୟଂ ଗିରିମ୍

ଆଚଚକ୍ଷେ ତଦା ବୀରୌ କପିରାଜାୟ ରାଘବୌ । ୫ ସର୍ଗ ୧ ଶ୍ଳୋ

ଗହନଂ ମଳୟାଖ୍ୟ ମୃଷ୍ୟମୂକପର୍ଯ୍ୟନ୍ତ ପର୍ବତମ୍

ଇତି ଗୋବିନ୍ଦ ରାଜୀୟଟୀକାୟାଂ

ଋଷ୍ୟମୂକ ପ୍ରଦେଶାନ୍ତର ସୈବ ମଳୟ ଗିରୀତି ନାମ

ଇତି ମହେଶ୍ୱର ଦୀକ୍ଷିତ ଟୀକାୟାମ୍

(୨) ଭିକ୍ଷୁରୂପଂ ତତୋ ଭେଜେ ଶଠବୁଦ୍ଧିତୟା କପିଃ । ୩ ସର୍ଗ

ଅଧ୍ୟାମ୍ର ରାମାୟଣରେ ମଧ୍ୟ ଏହାହିଁ ଲେଖାଅଛି । ଯଥା

ତଥେତି ବଟୁରୂପେଣ ହନୁମାନ୍ ସାନୁପାଗତଃ. ଅଧ୍ୟାମ୍ର ରାମାୟଣ - ୧ ସ. କି. କା.

(୩) ଅହଂ ଚୈବ ସରାମଶ୍ଚ ସୁଗ୍ରୀବଂ ଶରଣଂ ଗତୌ । ୪ ସର୍ଗ

(୪) ଏଠାରେ ଅଧ୍ୟାମ୍ର ରାମାୟଣକାର କହନ୍ତି କି ହନୁମାନ ରାମ ଲକ୍ଷ୍ମଣ ଦୁହିଁଙ୍କୁ ନିଜର ସ୍କନ୍ଧଦ୍ୱୟରେ ଧରି ଗିରିଶିରକୁ ଉପ୍ତିତ ହେଲେ ।

ତଥେତି ତସ୍ୟାରୁରୋହ ସ୍କନ୍ଧଂ ରାମୋଽଥଲକ୍ଷ୍ମଣଃ

ଉତ୍ପାତ ଗିରେର୍ମୂର୍ଦ୍ଧ୍ନି କ୍ଷଣାଦେବ ମହାକପିଃ । କି. କା. ପ୍ର.ସ.

ତଦାନୀଂତନ (୧) ମାନସିକ ଘଟଣାର ସଂପୂର୍ଣ୍ଣ ବିପରୀତ । ସୁତରାଂ ଏହା ମୌଳିକ ଚରିତ ଚିତ୍ରଣରେ ନାହିଁ । ସୁଗ୍ରୀବଙ୍କର ଏହି ସ୍ୱପ୍ନରେ କବି ମହାଶୟ ତଦୀୟ ଦୁରବସ୍ଥାର ଆଭାସ ମଧ ଦେଇ ନାହାନ୍ତି, ପରଂତୁ ତାହାଙ୍କର ଶ୍ରୀରାମ ଦର୍ଶନ-ଜନିତ ଶୁଭୋଦର୍କତାକୁ ସୁସ୍ପଷ୍ଟ ପ୍ରତିବିମ୍ବିତ କରିଅଛନ୍ତି । ତଥାପି ଏହି ସ୍ୱପ୍ନକ ଗୀତର ଅନ୍ତିମ ପଦ୍ୟଦ୍ୱୟର ଚିତ୍ରଣ ସଙ୍ଗତ ହୋଇନାହିଁ । ଦାସେ କହିଛନ୍ତି, ଲକ୍ଷ୍ମଣ ରାମାଦେଶରେ ହନୁମାନଙ୍କୁ ନିଜର ସମସ୍ତ କଥା ଜଣାଇ ତଦୀୟ ପରିଚୟ ଜିଜ୍ଞାସା କଲାରୁ ସେ ପୁଣି ଆପଣାର ପୂର୍ବତନ କେତେକ ଘଟନା ଜଣାଇଥିଲେ । ହନୁମାନ କହିଲେ କି ମୁଁ ପୁରା ଋଷିମାନଙ୍କର କୁଟୀରଭଂଜନ ଦୋଷରେ ପରାକ୍ରମହାନିର ଶାପରେ ଅଭିଶପ୍ତ ହେଲାରୁ ବ୍ରହ୍ମା ମୋତେ କହିଲେ ଯେ ତୁ ଏପରି କେତେକ କାଳ ଗୁପ୍ତ-ପରାକ୍ରମ ଥାଅ । ଯେତେବେଳେ ଶ୍ରୀରାମ ସୀତାନ୍ୱେଷଣରେ ଏଠାକୁ ଆସିବେ ତେତେବେଳେ ସେ ତ୍ୱଦୀୟ ଇନ୍ଦ୍ରଦତ୍ତକୁଣ୍ଡଳ ଆଉ ପବନଦତ୍ତ ମୁକୁଟକୁ ଦେଖି ପାରିବେ; ତୁମେ ମଧ ସେହି କ୍ଷଣି ନିଜର ସ୍ୱାଭାବିକ ସାବହିତ୍ୱଥ ପରାକ୍ରମ ପାଇପାରିବ, ଇତ୍ୟାଦି ।(୨)

ହନୁମାନ ରାମଙ୍କ ଛାମୁରେ ନିଜର ଏ ସବୁ ଘଟନା ଏବଂ ପିତା ଓ ମାତାଙ୍କର ପରିଚୟ ଜଣାଇ ନିଜ ରୂପ ଧାରଣ କଲେ । ରାମଚନ୍ଦ୍ର ତଦୀୟ କିରୀଟକୁଣ୍ଡଳାଦି ଦେବାଭରଣ ଦେଖି ସେସବୁର ପ୍ରାପ୍ତିର କାରଣ ଜିଜ୍ଞାସା କଲେ । (୩)

---

(୧) ଉଚ ପର୍ବତ ଶିଖରେ ଥିଲି ମୁଁ ବସି,
ଛାମୁରେ ମିଳିଲେ ଦୁଇଜଣ ମୋର ଆସି ।
ସୁବର୍ଣ୍ଣ ଥାଳିରେ ଶାଳି ଅନ୍ନଭାଇ
ଦୁଧଘୃତ ଶାକର କର୍ପୂର ମିଶାଇ ।
ମୋତେ ଭୁଂଜାଇଲେ ସେହି ଅତି ସ୍ନେହ କରି,
ଚନ୍ଦନ ଲେପିଲେ ଶିରେ ଶ୍ୱେତ ପୁଷ୍ପଭରି ।
ମୋ କର୍ଣ୍ଣରେ ସୁବର୍ଣ୍ଣର ପଦ୍ମମାଳା ଲାଇ ।
ଶୁକ୍ଳ ବସ୍ତ୍ର ପରିଧାନ ମୋତେ ଯେ କରାଇ ।
ବୀରଛତ୍ର ଧରିଣ ଦାଉଣ୍ଡି ସେ ବଜାନ୍ତି ।
ପୂର୍ବାଭିମୁଖ କରି ଅଭିଷେକ ସେ କରାନ୍ତି ।
ଏସନେ ସ୍ୱପନ ମୁଁ ଉଠିଲି ଚିଆଁଇ ।
କେଶବାସ ଦେଖିଲି ଯେ ରାତ୍ରିପାଇ ନାହିଁ ।
ତେତେବେଳେ ପୁଣି ମୁ ଭାବିଲି ମନେ ମନ,
ଏଣୁ କରି ବିକୃତି ମୋ ଚିତ୍ତେ ହୁଏ ଜନ୍ମ ।
ଏତେ ବୋଲି ସୁଗ୍ରୀବ ଯେ କରଇ ରୋଦନ ।
କପାଳେ କର ତାଡ଼ଇ ସୂର୍ଯ୍ୟର ନନ୍ଦନ ।... ୩ ପୃ.

(୨) ଛାପା ପୁସ୍ତକରେ ୬୮୭ ପୃଷ୍ଠା ଦେଖନ୍ତୁ ।

(୩) ତୁହୋ ହନୁମନ୍ତ ପୁଣି କପି ତନୁ ବହୁ । ମୁକୁଟ କୁଣ୍ଡଳ ହାର ପାଇଲୁ ତୁ କାହୁଁ ।
କେ ତୋତେ ଦେଲାକି ? ତୁହି ଚୋରାଇ ଆଣିଲୁ ?
କିଅବା ତୁ ଧନ ରତ୍ନ ଦେଇଣ କିଣିଲୁ ? ୮ ପୃଷ୍ଠା

ହନୁମାନ ଏ ସ୍ଥଳେ ରାମଙ୍କୁ ନିଜର ଜନ୍ମ ସମୟେ ସୂର୍ଯ୍ୟଙ୍କୁ ପକ୍ୱଫଳ ଭାବି ଧାପ ଦେବା, ଇନ୍ଦ୍ର ତାଙ୍କୁ ବଜ୍ର ପ୍ରହାରିବା, ପବନଙ୍କ ଅନୁରୋଧରେ ଦେବତାମାନେ ତାହାଙ୍କୁ ପୁଣି ଅମୃତ ଓ କୁଣ୍ଡଳାଦି ଦେଇଥିବା ପ୍ରଭୃତି କଥା ଜଣାଇ, ତଥାଚ ସେ କ୍ଷଣି ଶ୍ରୀରାମଙ୍କ ଦର୍ଶନ ପ୍ରଭାବରୁ ସ୍ୱକୀୟ ଅନ୍ତର୍ହିତ ପରାକ୍ରମକୁ ଉପଲବ୍ଧ କରିପାରିଥିବାର ମଧ୍ୟ ନିବେଦନ କଲାପରେ ରାମ ସ୍ୱୟଂ ନାରାୟଣ ଅଟନ୍ତି ବୋଲି ତଦୀୟ ଚରଣାରବିନ୍ଦ ଯୁଗଳରେ ଶରଣ ପଶିଲେ । ଏହା ପରେ ଦାସେ ଲେଖିଅଛନ୍ତି, ହନୁମାନ ତଦା ଶ୍ରୀରାମଙ୍କ ଆଦେଶରେ ସୁଗ୍ରୀବଙ୍କୁ ତତ୍ର ଡାକି ଆଣିବା ପାଇଁ ଯାଇଥିଲେ । ନିତାନ୍ତ ଭୟରେ ବ୍ୟତିବ୍ୟସ୍ତ ଓ ବହୁଦୂର ପଳାଇତ ସୁଗ୍ରୀବଙ୍କୁ ମାରୁତି ଶ୍ରୀରାମଙ୍କ ଯାବତୀୟ ପରିଚୟ ପ୍ରଦାନ ପୂର୍ବକ ଆହ୍ୱାନ କଲେ । (୧)

ତଥାପି ସୁଗ୍ରୀବ ବାଳୀ ଭୟରୁ ବିଳରୁ ବାହାରି ନପାରି ରାମଙ୍କଠାକୁ ଯାଇ ନପାରି ତାହାଙ୍କୁ ଆପଣା କତିକୁ ଆସିବା ପାଇଁ ବିନୀତ ଅନୁରୋଧ ଜଣାଇଲେ । ସୁଗ୍ରୀବଙ୍କୁ ନିଜ କତିକୁ ଡାକି ଆଣିବା ପାଇଁ ଯେ ରାମଙ୍କ ଆଦେଶ ତାହା ମୌଳିକ ନୁହେ । ମୂଳରେ ସ୍ୱୟଂ ଶ୍ରୀରାମ ସର୍ବପ୍ରଥମେ ସୁଗ୍ରୀବଙ୍କ ଅବସ୍ଥାନର ସ୍ଥାନ ଋଷ୍ୟମୂକକୁ ଯାଇଥିବା ଲେଖାଅଛି । ଏ ସ୍ଥଳେ ଓ ଓଡ଼ିଆ ରାମାୟଣରେ ମୂଳ ଅପେକ୍ଷା ଏହାହିଁ ସ୍ଥାନ ପରିବର୍ତ୍ତନ ମୂଳକ କିଂଚିତ୍ ପ୍ରଭେଦ ଦେଖାଯାଏ । ଏଥିରେ ଏସ୍ଥଳେ ଋଷ୍ୟମୂକସ୍ଥ ବନର ବର୍ଣ୍ଣନା ତକ ଯାହା ଲେଖାଅଛି, ତାହା ମୂଳରେ ଅନୁକ୍ତ ଥିଲେ ଅପ୍ରାସଙ୍ଗିକ ବା ଅସଙ୍ଗତ ନୁହେ । ବରଂଚ ସେଥିରେ ତତ୍ର କାବେରି ପ୍ରବାହିତା (୨) ଥିବା ଯାହାକି ଲେଖା ଅଛି, ତାହା ଯଥାର୍ଥ ବୋଧ ହୁଏ ନାହିଁ । ଋଷ୍ୟମୂକ ନିକଟରେ କାବେରୀ ନଦୀର ଅବସ୍ଥାନ କିପରି ? ଏହା ଅପେକ୍ଷା ତୁଙ୍ଗଭଦ୍ରା ନଦୀ ଋଷ୍ୟମୂକର କେତେକ ପରିମାଣରେ ନୈଦିଷ୍ଟବର୍ତ୍ତିନୀ ହୋଇପାରେ । କାରଣ ଅନେକଙ୍କ ମତରେ ପମ୍ପା ସରୋବର ତୁଙ୍ଗଭଦ୍ରାର ଏକ ପ୍ରଦେଶବର୍ତ୍ତୀ ଅଟେ ।

ମୂଳ ପଞ୍ଚମ ସର୍ଗରେ ଉକ୍ତ ଅଛି କି ହନୁମାନ ସାନୁଜ ରାମଚନ୍ଦ୍ରଙ୍କୁ ଋଷ୍ୟମୂକରେ ଉପସ୍ଥାପିତ କଲାପରେ ମଳୟ ଗିରିରେ ଲୁକ୍କାୟିତ ସୁଗ୍ରୀବଙ୍କୁ ଶ୍ରୀରାମଙ୍କ କଥା ଜଣାଇଲେ । (୩) ସୁଗ୍ରୀବ ତଦା ମନୁଷ୍ୟ ରୂପରେ (୪) ଆସି ରାମଚନ୍ଦ୍ରଙ୍କ ଦର୍ଶନ

(୧) ଛାପା ପୁସ୍ତକରେ ୯ ପୃଷ୍ଠା ଦେଖନ୍ତୁ ।

(୨) କାବେରୀ ନଦୀ ତହିଁ ବହଇ ଝରଝରେ । ବହୁତ ଅଛନ୍ତି ତହିଁ ପୁଷ୍ପ ଜଳଚର । ୧୧ପୃ.

(୩) ଋଷ୍ୟମୂକାତ୍ ହନୁମାନ୍ ଗତ୍ୱା ତଂ ମଳୟଂ ଗିରିମ୍ – ଇତ୍ୟାଦି – ୫ ସର୍ଗ; ଦାସେ ଇତଃ ପୂର୍ବେ ଏ କଥାକୁ ଧରି କେବଳ ଘଟନା ସ୍ଥାନର ପରିବର୍ତ୍ତନ ମୂଳକ ବିଷୟ ପ୍ରଭେଦ କରିଅଛନ୍ତି ।

(୪) ସ କୃତ୍ୱା ମାନୁଷଂରୂପଂ ସୁଗ୍ରୀବଃ ପ୍ଲବଗର୍ଷଭଃ । ଦର୍ଶନୀୟତମୋଭୂତ୍ୱା ପ୍ରୀତ୍ୟା ପ୍ରୋବାଚ ରାଘବମ୍ । ୫ ସର୍ଗ ୯ ଶ୍ଳୋକ ।

କରି ଅଗ୍ନି ସାକ୍ଷାତକାରରେ ମିତ୍ରତା ସ୍ଥାପନ କଲେ । (୧) ତାପରେ ସୁଗ୍ରୀବ ବାଳୀଙ୍କ ଦୌରାତ୍ମ୍ୟ ନିବେଦନ କଲାରୁ ଶ୍ରୀରାମ ବାଳି ବଧାର୍ଥ ପ୍ରତିଜ୍ଞା କଲେ ।

ବଳରାମ ଦାସେ ମଧ ପ୍ରାୟଶଃ ଏହାହିଁ କହିଅଛନ୍ତି । କିନ୍ତୁ ଘଟନାଟିକୁ ଟିକିଏ ଇତସ୍ତତଃ କରିଅଛନ୍ତି । ଏଥିରେ ଲେଖାଅଛି, ସୁଗ୍ରୀବ ଋଷ୍ୟମୂକ ବିବରରେ ଲୁଚି ରହିଥିଲେ । ହନୁମାନ ସାନୁଜ ରାମଙ୍କୁ ସଙ୍ଗେ ଧରିଯାଇ ତାହାଙ୍କୁ ରାମଙ୍କ କଥା କହି ବୁଝାଇ ବାହାରକୁ ଡାକି ଆଣିଲେ । (୨)

କିନ୍ତୁ ସୁଗ୍ରୀବ ମଳୟାଞ୍ଚଳକୁ ବାହାରି ଯାଉଥିବା କଥା ଏଥିରେ ଲେଖାନାହିଁ । ଦାସ ମହୋଦୟ ଏ ସ୍ଥଳେ ମୂଳଗ୍ରନ୍ଥାନୁମତ ବିଶିଷ୍ଟ ଶିଷ୍ଟାଚାରକୁ ଅନୁସରି ଲକ୍ଷ୍ମଣଙ୍କୁ ହନୁମାନଙ୍କ ହସ୍ତରେ ଆସନ ପ୍ରଦାନ କରାଇ ଅଛନ୍ତି । (୩)

ନିଜର ପ୍ରାପ୍ୟ ମହାରାଜତ୍ୱ ତ୍ୟାଗପୂର୍ବକ ଗହନ ବନ ପ୍ରସ୍ଥାନର କାରଣରେ ସୁଗ୍ରୀବ ଜିଜ୍ଞାସୁ ହେଲାରୁ ରାମଚନ୍ଦ୍ର ଋଷ୍ୟଶୃଙ୍ଗ ଚରୁ ପ୍ରଦାନଠାରୁ ବନପ୍ରସ୍ଥାନ ପର୍ଯ୍ୟନ୍ତ ସ୍ୱକୀୟ ଯାବତୀୟ ଚରିତ ସଂକ୍ଷେପତଃ ତାହାଙ୍କୁ କହିଅଛନ୍ତି । ଏସବୁ ମୂଳରେ ଏ ସ୍ଥଳେ ଲେଖା ନାହିଁ । କାରଣ ସୁଗ୍ରୀବ ଇତଃପୂର୍ବେ ପ୍ରସ୍ତାବିତ ହନୁମାନଙ୍କ ମୁଖରୁ ଏସବୁ ଅବଗତ ଥିବା ସମ୍ଭବ କେବଳ । ତାପରେ ମୂଳରେ ଯେପରି ଉଭୟଙ୍କ ସାଗ୍ନିକ ମିତ୍ରତା ସ୍ଥାପନ ସମୟେ ରାମ ସୁଗ୍ରୀବଙ୍କ ମୁଖରୁ ବାଳିଙ୍କ ଦୌରାତ୍ମ୍ୟ ଶୁଣି ତଦ୍ ବଧାର୍ଥ କୃତପ୍ରତିଜ୍ଞ ହେବା ଲେଖାଅଛି । ଏଥିରେ ତାହା ଟିକିଏ ବ୍ୟବଧାନରେ ଲେଖାଅଛି । ଅପିଚ ରାମ ସୁଗ୍ରୀବଙ୍କର ମିତ୍ରତା ସ୍ଥାପନ ବେଳେ ଲକ୍ଷ୍ମଣ ବେଦପାଠାଦି କରିଥିବାର ଉଦ୍‌ବୃତ୍ତ କଥା ମଧ ଲେଖାଅଛି । (୪)

---

(୧) ଅଗ୍ନିଂ ସାକ୍ଷିଣମାରୋପ୍ୟ ତେନ ସଖ୍ୟଂ ଦ୍ରୁତଂ କୁରୁ – ଇତି ହନୁମାନ୍ – ଅଧ୍ୟା.ରା.କି କା. ୧ସ.

(୨) ଛାପା ପୁସ୍ତକରେ ୧୨ ଦ୍ୱାଦଶ ପୃଷ୍ଠା ପଢ଼ନ୍ତୁ ।

(୩) ଆସନ ପାଇଣ ଯେ ବସିଲେ ରଘୁନାଥ । ଚନ୍ଦନ ଡାଳେକ ହନୁ ଆଣିଲେ ତୁରିତ ।। ବୃକ୍ଷରୁ ଛିନାଇ ସେ ଯେ ଲକ୍ଷ୍ମଣଙ୍କୁ ଦେଲେ । ଏଥିରେ ଲକ୍ଷ୍ମଣ ତୁମ୍ଭେ ବସସି ବୋଇଲେ ।।
କିନ୍ତୁ ମୂଳ ଗ୍ରନ୍ଥରେ ମିତ୍ରତା ସ୍ଥାପନାଦି ପରେ ୧୨ ପୃଷ୍ଠାରେ କେବଳ ଏହି ଶିଷ୍ଟାଚାରର କଥା ଲେଖା ଅଛି । ମାତ୍ର ତା ପୂର୍ବରୁ କେବଳ ଦାସେ ତାହା ସମ୍ପାଦିତ କରିଅଛନ୍ତି ।

(୪) ତାବାସୀନୌ ତତୋ ଦୃଷ୍ଟ୍ୱା ହନୁମାନପି ଲକ୍ଷ୍ମଣମ୍
ସାଳ ଶାଖାଂ ସମୁତ୍ପାଟ୍ୟ ବିନୀତମୁପବେଶୟତ୍ । ଇତି ୮ ସର୍ଗ ୧୪ ଶ୍ଳୋ
ଏହି ଶିଷ୍ଟାଚାରକୁ ଅଧ୍ୟାତ୍ମ ରାମାୟଣକାର ଆଉ ଟିକିଏ ବଢ଼ାଇ ଅଛନ୍ତି । ଯଥା -
ତତୋଽତି ହର୍ଷାଦ୍ ସୁଗ୍ରୀବଃ ସମାଗମ୍ୟ ରଘୂତ୍ତମମ୍
ବୃକ୍ଷଶାଖାଂ ସ୍ୱୟଂ ଛିତ୍ତ୍ୱା ବିଷ୍ଟରାୟ ଦଦୌ ମୁଦା ।
ହନୁମାନ୍ ଲକ୍ଷ୍ମଣାୟାଦାଦ୍ ସୁଗ୍ରୀବାୟ ଚ ଲକ୍ଷ୍ମଣଃ । କି. କା: ୧ସ ।

ଷଷ୍ଠ ଓ ସପ୍ତମ ସର୍ଗରେ ଲେଖାଅଛି, ସୁଗ୍ରୀବ ରାମଙ୍କୁ କହିଲେ, ''ମୁଁ ଏକଦିନ ଦେଖିଅଛି, ଏକ ରୂପବତୀ ଯୁବତୀ ଆପଣଙ୍କ ନାମ ଧରି ଡାକୁଥିଲେ, ତାଙ୍କୁ ରାକ୍ଷସ ଅନ୍ତରୀକ୍ଷ ମାର୍ଗରେ ଘେନି ଯାଉଥିଲା, ବୋଧହୁଏ ସେ ସୀତା ହେବେ; ମୁଁ ଅବଶ୍ୟ ତାହାଙ୍କୁ ଆଣିଦେବି ।'' ସେ ଏହା କହି ସୀତା ନିକ୍ଷିପ୍ତ ପ୍ରଦୀପ୍ତ ଅଳଙ୍କାରମାନ ଆଣି ରାଘବଙ୍କ କତିରେ ଥୋଇଲେ । ରାମ ତାହା ଦେଖି ଶୋକ ପ୍ରକାଶ କଲେ । ସୁଗ୍ରୀବ ସୀତାପହାରକ ରାକ୍ଷସର ସ୍ଥାନାଦିର ପରିଚୟ ଜିଜ୍ଞାସା ଶୁଣି ରାମଙ୍କୁ କହିଲେ କି 'ପ୍ରଭୋ ! ମୁ ତାହା ଜାଣିପାରୁ ନାହିଁ । ତଥାପି ସୀତାଙ୍କ ସମାନୟନର ନିରପାୟ ଉପାୟ ଅବଶ୍ୟ କରିପାରିବି । ମୁ ଶପଥ କରୁଅଛି । ଏହା ମୋର ଦୃଢ଼ ପ୍ରତିଜ୍ଞା ।' ଏ ସ୍ଥଳେ ସୀତାଦେବୀଙ୍କର ଅଳଂକାରମାନ ଦେଖି ଲକ୍ଷ୍ମଣ କହିଅଛନ୍ତି, ମୁ ନିତି ପାଦବନ୍ଦନାରୁ ଜାଣିଅଛି ଏହି ମଞ୍ଜୁ ମଂଜରିଦ୍ୱୟ ସୀତା ଦେବୀଙ୍କର କେବଳ । ଅନ୍ୟ ଅଳଙ୍କାରମାନ ତାହାଙ୍କର ହୁଏ କିନା, ତାହା ମୁ ଜାଣେ ନାହିଁ ।' ଏହି ଯେ ସୀତା ଦେବୀଙ୍କ ପ୍ରତି ଲକ୍ଷ୍ମଣଙ୍କର ମାତୃଭାବ ଦାସଙ୍କ ରାମାୟଣରେ ଦେଖାଯାଏ ନାହିଁ । ସେହି ଅଳଂକାର ଦର୍ଶନରେ ରାମଙ୍କର ଯେ ଶୋକୋକ୍ତି ତଥାଚ ସୁଗ୍ରୀବଙ୍କ ପ୍ରଦତ୍ତ ଯେ ଆଶ୍ୱାସନା ବାଣୀ ସେଥି ମଧ୍ୟରେ ସୀତାଙ୍କ ପ୍ରତି ବିରହ ବିଧୁର ରାମଙ୍କର ତଦାନୀନ୍ତନ ମାନସିକ ଅବସ୍ଥା ଆଉ ଆସକ୍ତିର ବିପରୀତ ଭାବମାନ, ଅପିଚ ଅସଙ୍ଗତ ଭାବ, କେତେକ ପଂକ୍ତିରେ ବା ପଦ୍ୟରେ ଅଙ୍କିତ ହୋଇ ଯାଇଅଛି । ପାଠକ ପରିଶୀଳନ କରି ନିଅନ୍ତୁ । ଏସବୁ କି ଦାସଙ୍କର ଉକ୍ତି ? କିବା ଦାସଙ୍କ ନିରବଦ୍ୟ ଅବିରୁଦ୍ଧ ଉକ୍ତି ମଧ୍ୟରେ ଅନୁଲେଖକଙ୍କର ଏହି କେତେକ ବିରୁଦ୍ଧ ଉକ୍ତିର ସମ୍ମିଶ୍ରଣ । (୧)

ଏଥି ମଧ୍ୟରେ ପୁଣି ଲକ୍ଷ୍ମଣଙ୍କ ମୁଖ ନିଃସୃତ ରାମଙ୍କ ମହିମା ଓ ପ୍ରଭୁତ୍ୱର ବ୍ୟାଖ୍ୟା ନ ଶୁଣି ଉଦ୍ଭୀବ ସୁଗ୍ରୀବ ଯେ ପ୍ରକାର ପୁରା ସୂର୍ଯ୍ୟଙ୍କ ମୁଖରୁ ଶ୍ରୁତ ନିଜର ଭବିଷ୍ୟମାଣ ରାଜତ୍ୱର କଥା କହିଅଛନ୍ତି, ତାହା ମୌଳିକ ନୁହେ । ବିଶ୍ୱାସ ହୁଏ, ଦାସେ ତାହା ପୁରଣାନ୍ତରରୁ ଆନୀତ କରିଅଛନ୍ତି । (୨)

ମୂଳ ଅଷ୍ଟମ ସର୍ଗଠାରୁ ତିନିଗୋଟି ସର୍ଗରେ ବର୍ଣ୍ଣିତ ଅଛି କି ସୁଗ୍ରୀବ ରାମଙ୍କୁ ନିଜର ଦୁରବସ୍ଥାର ଯାବତୀୟ କଥା ଜଣାଇ ଦେଲାରୁ ସେ ତାଙ୍କୁ ବାଳି ସହିତ ତଦୀୟ ବୈରର କାରଣ ପ୍ରଶ୍ନ କଲେ । ସୁଗ୍ରୀବ ରାମଙ୍କୁ ଦୁଂଦୁଭିପୁତ୍ର ମାୟାବୀ (୩) ଅସୁରର ସହ ବାଳିଙ୍କର ଯେ ସମାଚାର, ଆମୂଳାନ୍ତ ଜଣାଇଲେ, ଏବଂ କହିଲେ ବାଳି ମାୟାବୀଙ୍କୁ

---

(୧) ଛାପା ପୁସ୍ତକରେ ୧୫ ପଞ୍ଚଦଶ ପୃଷ୍ଠା ପଢ଼ନ୍ତୁ ।

(୨) ଛାପା ପୁସ୍ତକରେ ୧୪ ଚତୁର୍ଦ୍ଦଶ ପୃଷ୍ଠା ପଢ଼ନ୍ତୁ ।

(୩) ଅଧ୍ୟାତ୍ମ ରାମାୟଣରେ ଲେଖାଅଛି କି ମାୟାବୀ ଅସୁର ମୟଙ୍କର ପୁତ୍ର ଥିଲେ । ଯଥା-ମୟ ପୁତ୍ରୋଽଥ ମାୟାବୀ ନାମ୍ନା ପରମ ଦୁର୍ମଦଃ, କିଷ୍କିନ୍ଧାଂ ସମୁପାଗତ୍ୟ ବାଳିନଂ ସମୁପାହ୍ୱୟତ୍ । କି : କା: ୧ସ.

ନିହତ କରି ଆସି ମୋତେ ରାଜସିଂହାସନରେ ଅଭିଷିକ୍ତ ଦେଖି ପ୍ରହାର ପୂର୍ବକ ତଡ଼ିଦେଲେ । ଶ୍ରୀମାନ୍ ଦାସେ ମଧ୍ୟେ ଏହାହିଁ ଲେଖିଅଛନ୍ତି । ଏହାପରେ ଏକାଦଶ ସର୍ଗରେ ସୁଗ୍ରୀବ ବାଳି ନିଧନାର୍ଥ ରାମଙ୍କର ପରାକ୍ରମର ପରୀକ୍ଷାର ଚିକୀର୍ଷୁ ହୋଇ ବାଳିଙ୍କର ପ୍ରାତ୍ୟହିକ ଚତୁଃସମୁଦ୍ରସ୍ନାନ (୧) ହିମବତ୍ ପ୍ରେରଣାରେ ତାହାଙ୍କ ସହ ଯୁଦ୍ଧାର୍ଥ ଆଗତ ମହିଷାକୃତି ଦୁନ୍ଦୁଭିର ନିଧନ ଏବଂ ସପ୍ତଶାଳା ଭେଦର କଥାମାନ ଜଣାଇଲା ପରେ ପୁଣି କହିଲେ କି ବାଳି ଦୁନ୍ଦୁଭିର ଶୈଳବିଶାଳ ଶବକୁ ବହୁ ଦୂରକୁ ନିକ୍ଷିପ୍ତ କଲାରୁ ମତଙ୍ଗାଶ୍ରମରେ ତହିଁରୁ ରକ୍ତପାତ'ହେଲା । ସେ ପୁଣି ତାହାଙ୍କୁ ଶାପ ଦେଲେ । ତାପରେ ସୁଗ୍ରୀବ ରାମଙ୍କୁ ଦୁନ୍ଦୁଭିର ଅସ୍ଥିକୂଟ ଦର୍ଶାଇ ଦେବାରୁ ରାମ ତାକୁ ପାଦାଙ୍ଗୁଷ୍ଠରେ ଦଶ ଯୋଜନ ଦୂରକୁ ପ୍ରକ୍ଷିପ୍ତ କରି ଦେଲେ । ତଥାପି ସୁଗ୍ରୀବଙ୍କ ଶଙ୍କାରେ ନିରସନ ହେଲା ନାହିଁ । (୨) ସେ ପୁଣି କହିଲେ, 'ହେ ରାମଚନ୍ଦ୍ର ଆପଣ ଯଦି ଏକମାତ୍ର ବିଶିଖରେ ସପ୍ତଶାଳାକୁ ଏକରେଖତଃ ଭିନ୍ନ କରନ୍ତି – ତେବେ ମୋର ସଂପୂର୍ଣ୍ଣ ବିଶ୍ୱାସ ହେବ ଯେ ଆପଣ ନିଶ୍ଚେ ବାଳିଙ୍କୁ ନିହତ କରିପାରିବେ ।'

ଦାସ ମହାଶୟ ମଧ ଫଳତଃ ପ୍ରାୟ ଏହାହିଁ କହିଅଛନ୍ତି; କିନ୍ତୁ ସେହି ପରିଚୟ କ୍ରମ ମଧ୍ୟରେ ଏକାଧିକ ପ୍ରକାର ବିଲକ୍ଷଣତା ରହିଅଛି । (୩)

ଲକ୍ଷ୍ମଣ ସୁଗ୍ରୀବ କଥିତ ବାଳିଙ୍କର ପୌରୁଷ-ଗାଥା ଶୁଣି ଟିକିଏ ରାଗ ପ୍ରକାଶିଥିବାର ଯାହା ଦାସେ ଲେଖିଅଛନ୍ତି, ତାହା ଅମୌଳିକ କେବଳ, ସୁତରାଂ ସେପରି ସଙ୍ଗତ ବୋଧହୁଏ ନାହିଁ । ଦାସଙ୍କ ରାମାୟଣରେ ରାମକୃତ-ଦୁନ୍ଦୁଭି ଅସ୍ଥିକୂଟ ନିକ୍ଷେପଣ ଏବଂ ସପ୍ତଶାଳା ଭେଦନ ଏହି ଉଭୟ ଘଟନା ମଧ୍ୟରେ ଛାପା ପୁସ୍ତକରେ ଦେଖିବେ ୧୯ ଏକୋବିଂଶ ପୃଷ୍ଠାଠାରୁ ୨୯ ଏକୋନତ୍ରିଂଶ ପୃଷ୍ଠା ପର୍ଯ୍ୟନ୍ତ ଅସ୍ଥାନରେ ତଥାଚ ଅପ୍ରାସଙ୍ଗିକ କ୍ରମରେ ସୁଗ୍ରୀବ ଆଉ ରୁମାଙ୍କ ସମ୍ବାଦ ସ୍ୱରୂପ ଉତ୍ତର କାଣ୍ଡରେ ଉକ୍ତ ସୁଗ୍ରୀବ ଓ ବାଳିଙ୍କ ଜନ୍ମ ବୃତ୍ତାନ୍ତ-ମୂଳକ ସାଙ୍ଗୋପାଙ୍ଗ କଥାମାନ ଲେଖାଅଛି । ତାପରେ ୩୧ ଏକତ୍ରିଂଶ ପୃଷ୍ଠା ପର୍ଯ୍ୟନ୍ତ ଫେର୍ ପୂର୍ବ ପ୍ରତିପାଦିତ ବିଷୟର ଆମ୍ରେଡ଼ନ ମଧ ହୋଇ ଅଛି । ଏହିସବୁ ଦାସ ଲେଖିଅଛନ୍ତି କି ? ଅଥବା ଅନ୍ୟ କେହି ଅନୁଲେଖକଙ୍କର ପ୍ରକ୍ଷେପକ ଅଟେ, (୪)

(୧) ସମୁଦ୍ରାତ୍ ପଶ୍ଚିମାତ୍ ପୂର୍ବଂ ଦକ୍ଷିଣାଦପି ଚୋତ୍ତରମ୍
କ୍ରାମତ୍ୟନୁଦିତେ ସୂର୍ଯ୍ୟେ ବାଳୀ ବ୍ୟପଗତକ୍ଳମଃ । ୧୧ ସର୍ଗ

(୨) ଆର୍ଦ୍ରଃ ସମାଂସଃ ପ୍ରତ୍ୟଗ୍ରଃ କ୍ଷିପ୍ତଃ କାର୍ଯଃ ପୁରା ସଖେ ! ଲଘୁଃ ସ୍ୱଂପତି ନିର୍ମାଂସଃ ତୃଣୀଭୂତଶ୍ଚ ରାଘବ । ପରିଶ୍ରାନ୍ତେନ ମତ୍ତେନ ଭ୍ରାତ୍ରା ମେ ବାଳିନା ତଦା । କ୍ଷିପ୍ତମେବଂ ପ୍ରହର୍ଷେଣ ଭବତା ରଘୁନନ୍ଦନ । ଇତି ୧୧ ସର୍ଗ

(୩) ଛାପା ପୁସ୍ତକରେ ୧୭ ସପ୍ତଦଶ ପୃଷ୍ଠାଠାରୁ ପଢ଼ି ନିଅନ୍ତୁ ।

(୪) ପରେ ଦେଖିବେ ଉତ୍ତରକାଣ୍ଡରେ ଏସବୁ ଆଉ ଦିଆଯାଇ ନାହିଁ । ତତ୍ରତ୍ୟ ପାଠ ଅତ୍ର ପ୍ରକ୍ଷିପ୍ତ ଅଛି ।

ଠିକ ଜାଣି ହେଉ ନାହିଁ । ଏଥି ମଧ୍ୟରେ ପୁଣି ଅନେକତ୍ର ପୂର୍ବାପର କଥାମାନଙ୍କର ପରସ୍ପର ସଂଲଗ୍ନତା ରହି ନାହିଁ । ପ୍ରଶ୍ନୋତ୍ତର ମଧ୍ୟରେ ପରସ୍ପର ସାଙ୍ଗତ୍ୟ ସନ୍ଦର୍ଭ ମଧ୍ୟ ରହିନାହିଁ । ଅତଏବ୍ ବିଶ୍ୱାସ ହୁଏ, ଏଭଳି ପାରିପାଟ୍ୟ ରହିତ ଲେଖା ମତିମାନ୍ ସ୍ମୃତିମାନ୍ ବଳରାମ ଦାସଙ୍କର ନୁହେ । ଏସବୁର ଅବସାନରେ ଲେଖାଅଛି କି ସୁଗ୍ରୀବ ବାଳୀଙ୍କ ଦ୍ୱାରା ବିତାଡ଼ିତ ହୋଇ କଷ୍ଟେ ଏକ ସହସ୍ର ବର୍ଷ ଅତିବାହିତ କଲା ପରେ ଶ୍ରୀରାମଙ୍କୁ ସାକ୍ଷାତ କରିଥିଲେ । (୧) ଏହି ବର୍ଷ ପ୍ରମାଣ କଥା ଏଥିରେ ଏକାଧିକ ସ୍ଥଳେ ଲେଖାଅଛି ।

ମୂଳ ଦ୍ୱାଦଶ ସର୍ଗରେ ରାମଙ୍କର ସପ୍ତଶାଳା ଭେଦକ୍ରମ ଏବଂ ସୁଗ୍ରୀବଙ୍କର ବାଳିଙ୍କ ପ୍ରତି ଯୁଦ୍ଧଯାତ୍ରା ଓ ବିତାଡ଼ନମୂଳକ ବିଦ୍ରାବଣର କ୍ରମ ଲେଖାଅଛି । ତେତେବେଳେ ସୁଗ୍ରୀବ ରାମଙ୍କୁ ପ୍ରଶ୍ନ କରିଛନ୍ତି କି ଆପଣ ପରାକ୍ରମ ପ୍ରକାଶପୂର୍ବକ ମୋତେ ବାଳିଙ୍କଠାକୁ ପଠାଇ ଏପରି କଲେ କାହିଁକି ? (୨)

ରାମ ସୁଗ୍ରୀବଙ୍କୁ ଉତ୍ତର ଦେଲେ ଯେ ମୁଁ ଆପଣଙ୍କର ଏବଂ ବାଳିଙ୍କର ସ୍ୱର ସାଦୃଶ୍ୟ ଆଉ ରୂପାଦିର ସାଦୃଶ୍ୟ ଦେଖି ଠିକ ଚିହ୍ନି ନପାରି ବାଣ ନିକ୍ଷେପଣ କଲି ନାହିଁ ଇତ୍ୟାଦି । (୩) ରାମ ପୁଣି ତେତିକିବେଳେ ଲକ୍ଷ୍ମଣଙ୍କୁ ଆଦେଶ ଦେଲେ କି, ଏହି ବନ୍ୟପୁଷ୍ପମାଳକୁ ସୁଗ୍ରୀବଙ୍କ କଣ୍ଠରେ ଚିହ୍ନ ସ୍ୱରୂପ ବିଲମ୍ବିତ କରିଦିଅ । (୪)

ସମାଲୋଚ୍ୟମାନ ରାମାୟଣରେ ରାମଙ୍କ ସପ୍ତଶାଳାଭେଦ ସଂବିଧାନ ଅତି ସଂକୀର୍ଣ୍ଣ । ମୂଳର ଯାବତୀୟ କଥା ଏଥିରେ ଲେଖା ନାହିଁ । ଏହି ଆମୂଳାନ୍ତ ଘଟନାଟି ଏଥିରେ ଲେଖାନାହିଁ । ଏହା ଦଶଗୋଟି ପଂକ୍ତିରେ ପରିସମାପ୍ତ ହୋଇଅଛି । ବାଳିଙ୍କ ପ୍ରତି ସୁଗ୍ରୀବଙ୍କ ପ୍ରଥମ ଅଭିଯାନ ସମୟରେ ମଧ୍ୟ ମାର୍ଗରେ ରାମ ବୀଣାଦିର ନାଦ ଶୁଣି ତଦୀୟ ପରିଚୟର ପ୍ରଶ୍ନ କଲାରୁ ସୁଗ୍ରୀବ ତଦୁତ୍ତରରେ ମନ୍ଦକର୍ଣ୍ଣ ଋଷିଙ୍କର ନାମ ମାତ୍ର କହିଅଛନ୍ତି । ଏତଦ୍ ସଂକ୍ରାନ୍ତ ଆଉ କିଛି କଥା ଏ ସ୍ଥଳେ ଉକ୍ତ ନାହିଁ । ଏହାର ପ୍ରଶ୍ନ ଏବଂ

---

(୧) ଛାପା ପୁସ୍ତକରେ ୩୧ ଏକତ୍ରିଂଶ ୩୪ ଚତୁସ୍ତ୍ରିଂଶ ପୃଷ୍ଠା ଦେଖନ୍ତୁ

(୨) ଆହ୍ୱୟସ୍ୱେତି ମାମୁକ୍ତ୍ୱା ଦର୍ଶୟିତ୍ୱା ଚ ବିକ୍ରମମ୍ ।
ବୈରିଣା ଘାତୟିତ୍ୱା ଚ କିମିଦାନୀଂ ତ୍ୱୟାକୃତମ୍ ଇତ୍ୟାଦି ୧୨ ସର୍ଗ

(୩) ଅଳଂକାରେଣ ବେଷେଣ ପ୍ରମାଣେନ ଗତେନ ଚ
ତ୍ୱଂ ଚ ସୁଗ୍ରୀବ ବାଳୀ ଚ ସଦୃଶୌସ୍ଥଃ ପରସ୍ପରମ୍
ତତୋଽହଂ ରୂପ ସାଦୃଶ୍ୟାଦ୍ ମୋହିତୋ ବାନରୋତ୍ତମ
ନୋତ୍ସୃଜାମି ମହାବେଗଂ ଶରଂ ଶତ୍ରୁ ନିବର୍ହଣଂ । ୧୨ ସର୍ଗ

(୪) ଗଜପୁଷ୍ପୀମିମାଂ ଫୁଲ୍ଲାଂ ଉତ୍ପାଟ୍ୟ ଶୁଭ ଲକ୍ଷଣାମ୍
କୁରୁ ଲକ୍ଷ୍ମଣ କଣ୍ଠୋଽସ୍ୟ ସୁଗ୍ରୀବସ୍ୟ ମହାତ୍ମନଃ । ୧୨ ସର୍ଗ
ଗଜପୁଷ୍ପ ସଂଚକାଲତାଂ କୁନ୍ଦଲତାଂ ବା ଇତି ମହେଶ୍ୱର ଦୀକ୍ଷିତେଃ

ଉତ୍ତରର ସୂଚକ ଚାରିଗୋଟି ମାତ୍ର ପଦ୍ୟରେ ଋଷିଙ୍କର ନାମ ମାତ୍ର ପ୍ରତିପାଦିତ ହୋଇଅଛି । (୧) ସୁତରାଂ ଏହି ଘଟନାଟିର କଥା ଅତ୍ର ଯଥାଯଥ ହେଉ ବା କୃତାନ୍ୟଥା ହେଉ ସଂକୀର୍ଣ୍ଣ ହେଉ ବା ସଂପୂର୍ଣ୍ଣ ହେଉ, ମୂଳ କ୍ରମାନୁମତିରେ ଅତ୍ରତ୍ୟ ନୁହେ । ମୂଳଗ୍ରନ୍ଥରେ ଏହା ସୁଗ୍ରୀବଙ୍କ ଦ୍ୱିତୀୟ ଅଭିଯାନ ସମୟରେ ଅନ୍ୟ ପ୍ରକାର ଲେଖାଅଛି । ଦାସଙ୍କ ରାମାୟଣରେ ପୁଣି ଲେଖା ଅଛି ଯେ ସୁଗ୍ରୀବ ବାଳିଙ୍କଠାକୁ ପ୍ରଥମବାର ଯୁଦ୍ଧାର୍ଥ ଗଲା ବେଳେ ସୂର୍ଯ୍ୟଦେବ ଆସି ତାହାଙ୍କୁ ଗୋଟିଏ ସୁବର୍ଣ୍ଣ ମାଳା ପ୍ରଦାନ କରିଥିଲେ । (୨) ସୂର୍ଯ୍ୟଦେବଙ୍କର ଏହି ମାଳା ପ୍ରଦାନର କଥା ମିଥ୍ୟା ନୁହେ । ମୂଳ ଉତ୍ତର କାଣ୍ଡରେ ମଧ୍ୟ ଯଥା ସ୍ଥାନରେ ଉକ୍ତ ଅଛି କି ସୂର୍ଯ୍ୟ ତାହାଙ୍କୁ ଏତେବେଳେ ମାଳା ଦେଇ ନାହାନ୍ତି ସୁତରାଂ ଏହାର କଥାଟି ପରବର୍ତ୍ତୀ କଥାର ସହିତ ସଙ୍ଗତ ହେଉନାହିଁ, ଅଯଥା ଗୁଞ୍ଜା କଥାପରି ଜଣାପଡ଼ି ଯାଉଅଛି । ଯଦିଚ ସୂର୍ଯ୍ୟଦତ୍ତ ମାଳାଟି ଏକ୍ଷଣି ମଧ୍ୟ ସୁଗ୍ରୀବଙ୍କ ଗଳାରେ ଲମ୍ବିତ, ତେବେ ବାଳୀ ଅପେକ୍ଷା ତାହାଙ୍କଠାରେ ବିଲକ୍ଷଣ ବା ବିଶେଷ ଲକ୍ଷଣ ବିଦ୍ୟମାନ ଥିଲା ତ, ତେବେ ଦୁଇ ଭାଇ ଏକତ୍ରିତ ହେଲାବେଳେ ରାମଚନ୍ଦ୍ର ସୁଗ୍ରୀବଙ୍କୁ ଚିହ୍ନି ନ ପାରିଲେ ବା କିପରି ? ଏହି ଆପତ୍ତି ବରାବର ଘଟୁଅଛି । ବଳରାମ ଦାସେ କଣ ପୂର୍ବାପର କଥାର ସାଙ୍ଗତ୍ୟ ସଂଲଗ୍ନତା ବିଚାର ନକରି ଏହା ଏ ସ୍ଥଳେ ଲେଖିଅଛନ୍ତି କି ? ବିଶ୍ୱାସ ହୁଏ ନାହିଁ । ଅନୁମିତ ଯେ ଏହି କେତେକ ପଦ୍ୟ ଅନୁଲେଖକଙ୍କର ଏଠିଁ ପ୍ରକ୍ଷିପ୍ତ ରହିଅଛି । ବିପୁଳଗ୍ରୀବ ସୁଗ୍ରୀବ ନିଜର ଯୁଦ୍ଧାର୍ଥ ସମାହୂତ ବାଳୀଙ୍କ ଦ୍ୱାରା ପରାଭୂତ ପାଇ କଷ୍ଟେ କଷ୍ଟେ ପ୍ରତ୍ୟାବୃତ୍ତ ହେଲା ପରେ ରାମଙ୍କୁ ତଦୀୟ ଉଦାସୀନତା ପ୍ରକାଶ ପୂର୍ବକ ଯାହା କିଛି କହିଛନ୍ତି ତଥାଚ ରାମଚନ୍ଦ୍ର ତଦାଶ୍ୱାସନରେ ଯାହା କିଛି ପ୍ରକାଶ କରିଅଛନ୍ତି ତାହା ଏଥିରେ ଲେଖାଥିବା ଦେଖାଯାଏ ନାହିଁ । ତାହା ନଥିବା କାରଣ ଅନୁମିତ ହୁଏ ଯେ ପ୍ରଥମରୁ ଲେଖକ ସୁଗ୍ରୀବଙ୍କର ବିଲକ୍ଷଣତାସୂଚକ ସୂର୍ଯ୍ୟଦତ୍ତ ମାଳାକୁ ତାହାଙ୍କ ଗଳାରେ ଲମ୍ବାଇ ଦେଇଅଛନ୍ତି, ତେବେ ପେର କିପରି ଅଚିହ୍ନାର କାରଣ ଦେଇ ପାରିବେ । ପରନ୍ତୁ ଏ ସ୍ଥଳେ ଏପରି କଥାରେ ସାଙ୍ଗତ୍ୟ ଲଗାଇଥିଲେ ମଧ୍ୟ ଭଲ ହୁଅନ୍ତା । ସୁଗ୍ରୀବଙ୍କ ଗଳାରେ ଯେପରି ସୂର୍ଯ୍ୟଦତ୍ତ ମାଳା ଅଛି ସେପରି ବାଳିଙ୍କ ଗଳାରେ ମଧ୍ୟ ଇନ୍ଦ୍ରଦତ୍ତ ମାଳା ଥିଲା, ମୂଳ ଗ୍ରନ୍ଥରେ ତ୍ରୟୋଦଶ ସର୍ଗଠାରୁ ଚାରିଗୋଟି ସର୍ଗରେ ବାଳିଙ୍କ ପ୍ରତି

---

(୧) ଛାପା ପୁସ୍ତକରେ ୩୪ ଚତୁସ୍ତ୍ରିଂଶ ପୃଷ୍ଠା ଦେଖନ୍ତୁ ।

(୨) ସୂର୍ଯ୍ୟ ବିଚାରିଲେ ରାଜା ହେବ ମୋ ନନ୍ଦନ ।
ସୁବର୍ଣ୍ଣର ମାଳା ଏକ ଗଳାରୁ କାଢ଼ିଲେ ।
ନିଜ ତେଜ ଦେଇ ଅନ୍ତରୀକ୍ଷେ ଚଳିଗଲେ ।
ସେହି ମାଳା ସୁଗ୍ରୀବର ଗଳାରେ ପ୍ରବେଶ ।
ରତ୍ନେ ଜଡ଼ିଛି ଯେ ସୁବର୍ଣ୍ଣର ଶ୍ୱେତପୁଷ୍ପ । ୩୪ ପୃଷ୍ଠା

ସୁଗ୍ରୀବଙ୍କର ଦ୍ୱିତୀୟ ଅଭିଯାନ ତଥାଚ ସାବହିତ୍ୱଥ ରାମଙ୍କ ବିଶିଖରେ ଖରେ ବୀରଶିଖ ବାଳିଙ୍କ ବିନିପାତ କ୍ରମ ସଂପାଦିତ ଅଛି । ତଦା ରାମଚନ୍ଦ୍ର ମଧ୍ୟ ମାର୍ଗରେ ଗୋଟିଏ କମନୀୟ ବନ ଦେଖି ତାର ପରିଚୟ ପ୍ରଶ୍ନ କଲାରୁ ସୁଗ୍ରୀବ ଜଣାଇଲେ, ଏହି ରହିତାଶ୍ରମ ଆଶ୍ରମରେ ସପ୍ତଜନ ନାମରେ ସାତଜଣ ପ୍ରଭାବଶାଳୀ ଋଷିମାନେ ଜଳ ମଧ୍ୟରେ ତପସ୍ୟା କରୁଅଛନ୍ତି । କେହି ଯଦି ପ୍ରମାଦତଃ ଏହି ବନମଧ୍ୟରେ ପ୍ରବେଶ କରନ୍ତି, ତେବେ ଆଉ ଜୀବନରେ ପ୍ରତ୍ୟାବୃତ୍ତ ହୁଅନ୍ତି ନାହିଁ ଇତ୍ୟାଦି । (୧) ରାମଚନ୍ଦ୍ର ସେହି ସପ୍ତଜନାଶ୍ରମରୁ ସୁଗ୍ରୀବାଦିଙ୍କର ସହ ଆଳାପରେ କ୍ରମ କ୍ରମରେ ବାଳୀଙ୍କ ନଗରରେ ପ୍ରବେଶ କଲେ । ବାଳୀ ସୁଗ୍ରୀବଙ୍କ ଗଳଗର୍ଜନ ପୁରଃସର ଯୁଦ୍ଧାହ୍ୱାନ ଶୁଣି ନଗରୀରୁ ବହିର୍ଗତ ହେଉଅଛନ୍ତି, ତାରାଦେବୀ ଆସି ବିନୀତ ନିବାରଣ ପୂର୍ବକ କହିଲେ, 'ଅଯୋଧ୍ୟାର ରାଜପୁତ୍ର ମହାବୀର ରାମଚନ୍ଦ୍ର ସୁଗ୍ରୀବଙ୍କୁ ସହାୟ ଅଛନ୍ତି, ଆପଣ ସୁଗ୍ରୀବଙ୍କୁ ଯୁବରାଜ କରନ୍ତୁ । ଆଉ ତାଙ୍କ ସହ ଯୁଦ୍ଧ କରଣାର୍ଥ ଯାଆନ୍ତୁ ନାହିଁ ।' (୨) ଅମିତବଳ ବାଳୀ ତାହାଙ୍କୁ ଶପଥ ପୂର୍ବକ ଗୃହକୁ ପ୍ରତ୍ୟାବୃତ୍ତ କରି ରଣାଜିରରେ ପ୍ରବେଶିଲେ । ସେ ପୁଣି ସୁଗ୍ରୀବଙ୍କ ସହ ନିଯୁଦ୍ଧରେ ସଶ୍ରଦ୍ଧ ଲାଗିଅଛନ୍ତି । ସହସା ରାମନିର୍ମୁକ୍ତ ଅମୋଘ ବିଶିଖ ଆସି ତାଙ୍କୁ ବିନିପାତ କଲା । (୩)

---

(୧) ଅତ୍ର ସପ୍ତଜନା ନାମ ମୁନୟଃ ଶଂସିତ ବ୍ରତାଃ । ସପ୍ତୈବାସନଧଃ ଶୀର୍ଷା ନିୟତଂ ଜଳଶାୟିନଃ ।
ସପ୍ତରାତ୍ର କୃତାଦରା ବାୟୁନା ବନବାସିନଃ । ଦିବ୍ୟଂ ବର୍ଷ ଶତୈର୍ଯାତାଃ ସପ୍ତଭିଃ ସ କଳେବରାଃ ।
ବିଶନ୍ତି ମୋହାଦ୍ ଯେ ତତ୍ର ନିବର୍ତ୍ତନ୍ତେ ନତେ ପୁନଃ ।
ବିଭୂଷଣ ରବାସ୍ତତ୍ର ଶ୍ରୂୟନ୍ତେ ସକଳାକ୍ଷରାଃ ।
ତୂର୍ଯ୍ୟ ଗୀତ ସ୍ୱରାଶ୍ଚାତ୍ର ଗନ୍ଧୋ ଦିବ୍ୟଶ୍ଚ ରାଘବଃ ।
କୁରୁ ପ୍ରଣାମଂ ଧର୍ମାତ୍ମନ୍ ତାନ୍ ସମୁଦିଶ୍ୟ ରାଘବ :— ଇତି ୧୩ ସର୍ଗ

ସପ୍ତରାତ୍ର କୃତାହାରାଃ ବାୟୁନା ସପ୍ତ ରାତ୍ରସ୍ୟ ଏକବାରଂ କୃତାହାରାଃ । ସପ୍ତଭିଃ ବର୍ଷଶତୈରିତ୍ୟନ୍ୱୟଃ ୧୯.
ଯେ ମୋହାଦ୍ ଅତ୍ରାଶ୍ରମେ ବିଶନ୍ତି ନ ତେ ନିବର୍ତ୍ତନ୍ତେ କିନ୍ତୁ ତତ୍ରୈବ ନଶ୍ୟନ୍ତିତ୍ୟର୍ଥଃ । ୨୧.
ଦିବଂଗତାଃ ଶରୀରାନ୍ତରେଣ ପୁନରତ୍ରାଗତ୍ୟାପ୍ସରୋଭିଃ କ୍ରୀଡ଼ନ୍ତୀତ୍ୟାଶୟେନାହ । ବିଭୂଷଣେତ୍ୟାଦିନା ଭୂଷଣରବେଣ ନୃତ୍ତମୁପଲକ୍ଷ୍ୟତେ । ସକଳାକ୍ଷରା ଇତି ଗୀତସ୍ୱନବିଶେଷଣଂ । ତୂର୍ଯଶବ୍ଦୋତ୍ର ଗୀତ ଭିନ୍ନ ବାଦ୍ୟପରଃ ଇତି ଗୋବିନ୍ଦରାଜୀୟ ଟୀକାୟାଂ ।

(୨) ପ୍ରସାଦ ପଥ୍ୟଂ ଶୃଣୁଜଳ୍ପିତଂ ହି ମେ ନ ରୋଷମେବାନୁବିଧାତୁମର୍ହସି ।
କ୍ଷମୋ ହି ତେ କୋଶଳ ରାଜସୂନୁନା ନ ବିଗ୍ରହଃ ଶକ୍ରସମାନତେଜସା ୧୫ସ. ୩୦ ଶ୍ଳୋ

(୩) ମୂଳଗ୍ରନ୍ଥରେ ଲେଖାଅଛି ରାମାଦିମାନେ ସାଧାରଣ ବୃକ୍ଷମାନଙ୍କ ଅନ୍ତରାଳରେ ଥିଲେ, ମାତ୍ର ଦାସେ ତାକୁ ନିୟଗଛ ବୋଲି ସ୍ପଷ୍ଟତଃ ନିର୍ଦ୍ଦେଶ କରିଅଛନ୍ତି ।
'ଆମ୍ଭେ ପୁଣି ନିୟଗଛ ଉହାଡ଼ରେ ଥିବୁ ।
ନବକୁ ବାଳୀ ବାହାର ହୋଇଲେ ମାରିବୁ' । ୩୮ ପୃଷ୍ଠା

ସମାଲୋଚ୍ୟମାନ ରାମାୟଣରେ ମଧ୍ୟ ସ୍ଥୂଳତଃ ଏହାହିଁ ଲେଖାଅଛି, ପରନ୍ତୁ ଦାସେ ବିଶେଷତଃ ସୁଗ୍ରୀବଙ୍କ ଦ୍ୱିତୀୟ ଅଭିଯାନରେ ପୂର୍ବୋକ୍ତ ସୂର୍ଯ୍ୟଦତ୍ତ ସୁବର୍ଣ୍ଣ ପଦ୍ମମାଳା ଆଉ ଲକ୍ଷ୍ମଣ ରଚିତ ବନମଲ୍ଲୀ ମାଳାରେ ବିଭୂଷିତ କରିଅଛନ୍ତି (୧) ସେ ପୁଣି କହିଅଛନ୍ତି କି ସୁଗ୍ରୀବ ଏକା ଦିନକରେ ସପ୍ତ ଯୋଜନ ଦୂରବର୍ତ୍ତୀ ଋଷ୍ୟମୂକରୁ କିଷ୍କିନ୍ଧା ନଗରକୁ ବାଳୀ ଯୁଦ୍ଧାର୍ଥ ରାମାଦିଙ୍କ ସମଭିବ୍ୟାହାରରେ ଦୁଇଥର (୨) ଯାଇଥିଲେ । (୨) ଏହି ପରିମାଣାଦିର ପ୍ରମାଣ ଏ ସ୍ଥଳେ ମୂଳ ଗ୍ରନ୍ଥରେ ଦେଖା ଯାଉନଥିଲେ ସୁଦ୍ଧା ଅଯଥାର୍ଥ ବୋଧ ହୁଏ ନାହିଁ । ଋଷ୍ୟମୂକ ମାଲ୍ୟବନ୍ତ, କିଷ୍କିନ୍ଧ୍ୟା ପ୍ରଭୃତି ପ୍ରଦେଶମାନ ପମ୍ପାସରୋବରର ଦକ୍ଷିଣରେ ବିଦ୍ୟମାନ ପାର୍ବତ୍ୟ ସ୍ଥଳ ବୋଲି ତଥାଚ ଏସବୁ ପରସ୍ପର ବହୁବ୍ୟବହିତ ବୋଲି ଅନେକ ଅଭିଜ୍ଞ ବ୍ୟକ୍ତିମାନେ ଅଭିମତ ପ୍ରକାଶ କରିଅଛନ୍ତି । ବଳରାମ ଦାସ ମହୋଦୟ ଏହିପରି ଅନେକ ଗୁଡ଼ିଏ ବିଷୟର ପ୍ରମାଣମାନ ଅନ୍ୟାନ୍ୟ ପୁରାଣାଦିରୁ ଅବଗତ ହୋଇ ନିଜର ରାମାୟଣରେ ନିର୍ଦ୍ଦେଶ କରିଅଛନ୍ତି ବୋଲି ଆମ୍ଭମାନଙ୍କର ବିଶ୍ୱାସ । ଦାସେ ଏ ସ୍ଥଳେ ପୁଣି ମୂଳରେ ଅନୁକ୍ତ ତାରା ଦେବୀଙ୍କର ଦୁଃସ୍ୱପ୍ନ ବୃତ୍ତାନ୍ତକୁ ଚିତ୍ରଣ କରିଅଛନ୍ତି (୩) କିଷ୍କିନ୍ଧ୍ୟା ନଗର ବର୍ଣ୍ଣନାକୁ ମଧ୍ୟ ସଂକ୍ଷେପତଃ ଲେଖି ଅଛନ୍ତି । (୪) ମୂଳଗ୍ରନ୍ଥରେ କିଷ୍କିନ୍ଧ୍ୟାର ପ୍ରାକୃତିକ ବର୍ଣ୍ଣନା ଆଉ ଟିକିଏ ବ୍ୟବଧାନରେ ଲେଖାଅଛି । ଏହା ସେହି ବର୍ଣ୍ଣନାର ସଦୃଶ ନୁହେ ସତ୍ୟ, ତଥାପି ଦାସଙ୍କ ଲେଖାରେ ଅସାଙ୍ଗତ୍ୟ ବା ଅସମୀଚୀନତା ରହିନାହିଁ । ଅତଃପର ମୂଳଗ୍ରନ୍ଥରେ ସପ୍ତଦଶ ସର୍ଗଠାରୁ ପଞ୍ଚବିଂଶ ସର୍ଗ ପର୍ଯ୍ୟନ୍ତ ମୁମୂର୍ଷୁ ବାଳିଙ୍କ ସହ ରାମାଦିଙ୍କର ସମ୍ଭାଷଣ ଆଉ ତାରାଦିଙ୍କର ବିଳପନ ଏବଂ ବାନରରାଜଙ୍କର ଅନ୍ତ୍ୟେଷ୍ଟି ସମାଧାନର କଥାମାନ ଲେଖାଅଛି । ମୂଳଗ୍ରନ୍ଥରେ ରାମବାଣବିଦ୍ଧ ମୁମୂର୍ଷ ବାଳିଙ୍କ କୃତ ରାମନିନ୍ଦା ପୁରଃସର ପ୍ରଶ୍ନ ଏବଂ ରାମଙ୍କ ପ୍ରଦତ୍ତ ସମାଧାନ ପୁରଃସର ଉତ୍ତର କ୍ରମ ଯାଦୃଶ ସୁସଙ୍ଗତ ଦାସଙ୍କ ରାମାୟଣରେ ତାଦୃଶ ବୋଧହୁଏ ନାହିଁ । ଏଥିରେ ରାମଙ୍କ ପ୍ରତି ପ୍ରଦତ୍ତ ସମାଧାନର ଯେ କ୍ରମ ତାହା ମୌଳିକ

---

(୧) ଛାପା ପୁସ୍ତକରେ ୩୭ ସପ୍ତତ୍ରିଂଶ ପୃଷ୍ଠା ଦେଖନ୍ତୁ ।
ଏଥୁ ଅନନ୍ତରେ ତୁଗୋ ହେମବତୀ ଶୁଣ, ଋଷ୍ୟମୂକକୁ କିଷ୍କିନ୍ଧା ଅଟେ ସାତକ୍ରୁଶ ଇତ୍ୟାଦି । ୩୭ ପୃ.

(୨) ସୁଗ୍ରୀବ ଯୁଦ୍ଧାର୍ଥ ଏକ ଦିନରେ କେବଳ ଦୁଇଥର ଯାଇଥିବାର କଥା ଅଧ୍ୟାତ୍ମରେ ମଧ୍ୟ ଲେଖାଅଛି ।
ଇଦାନୀମେବତେ ଭଗ୍ନଃ ପୁନରାୟାତି ସତ୍ୱରଂ । (୨) ଇଦାନୀମେବ୍ ତେ ଭଗ୍ନଃ କଥଂ ପୁନରୁପାଗତଃ. । ୨ସ.

(୩) ଛାପା ପୁସ୍ତକରେ ୩୯ ପୃଷ୍ଠାରେ ଏହି ଦୁଃସ୍ୱପ୍ନ ବର୍ଣ୍ଣନା ଦେଖନ୍ତୁ ।

(୪) ୩୭ ଏବଂ ୩୮ ପୃଷ୍ଠାରେ କିଷ୍କିନ୍ଧ୍ୟା ବର୍ଣ୍ଣନା ଦେଖନ୍ତୁ ।
ଏ ସ୍ଥଳେ ଦାସେ ଯେପରି ତାରାଦେବୀ ମୃଗୟାର୍ଥ ଗତ ଅଙ୍ଗଦଙ୍କ ମୁଖରୁ ରାମଙ୍କ ବୃତ୍ତାନ୍ତ ସବୁ ଶୁଣିଥିବାର ଲେଖିଅଛନ୍ତି, ତାହା ଯଥାର୍ଥ କେବଳ । ଏକଥା ଅଧ୍ୟାତ୍ମ ରାମାୟଣ କିଷ୍କିନ୍ଧ୍ୟା କାଣ୍ଡ ଦ୍ୱିତୀୟ ସର୍ଗରେ ମଧ୍ୟ ଲେଖା ଅଛି ।

କ୍ରମରୁ ଭିନ୍ନ ପ୍ରକାରରେ ଲେଖକଙ୍କ ମନୀଷାନୁଗତ ଚିତ୍ରଣରେ ଚିତ୍ରିତ । କିନ୍ତୁ କେତେକ ସ୍ଥଳରେ ମାତ୍ର ମୌଳିକ ପ୍ରଧାନ ପ୍ରଧାନ ଭାବ ପ୍ରତିବିମ୍ବିତ ରହିଅଛି । (୧) ମୂଳ ଗ୍ରନ୍ଥରେ ବାଳିକୃତ ରାମନିନ୍ଦା ଏବଂ ରାମକଥିତ ତଦୀୟ ସମାଧାନ ବାକ୍ୟମାନ ପଥକତଃ ଏକାଧାରରେ ଭିନ୍ନ ଭିନ୍ନ ସର୍ଗରେ ଲେଖାଅଛି । ମାତ୍ର ଦାସଙ୍କ ରାମାୟଣରେ ତାହା ଅନ୍ୟଥା ହୋଇଥିଲେ ସୁଦ୍ଧା ଏକାଧାରରେ ଉକ୍ତ ନାହିଁ । ଏକାଧିକ ବାରରେ ଭିନ୍ନ ଭିନ୍ନ ସ୍ଥାନରେ ମୂଳଗ୍ରନ୍ଥର ଅସଦୃଶ କ୍ରମରେ ଅର୍ଥାତ୍ ଲେଖକଙ୍କର ଅନୁଭୂତି ମନୀଷାର ଅନୁସାରେ ସ୍ୱତନ୍ତ୍ର ଭାବରେ ଲେଖାଅଛି । ଏସବୁ ମୂଳ ସଂଗେ ପ୍ରାୟଶଃ ଅଦ ଲମ୍ବ କହିଲେ ଚଳେ । ସମାଲୋଚ୍ୟମାନ ରାମାୟଣରେ ବାଳୀ ପ୍ରଥମତଃ ଶ୍ରୀରାମଙ୍କୁ ଅଜ୍ଞାତ କୁଳଶୀଳର ପରି କେତେକ ଆକ୍ଷେପ ସହ 'ତୁମେ କିଏ ?' ବୋଲି ପ୍ରଶ୍ନ କରିଅଛନ୍ତି । ତଥାଚ ରାମ ମଧ ଋଷ୍ୟଶୃଙ୍ଗଙ୍କକୃତଯାଗର ଆରମ୍ଭଠାରୁ ଆରମ୍ଭ କରି ସୁଗ୍ରୀବ ମିତ୍ରତା ପ୍ରାପ୍ତି ପର୍ଯ୍ୟନ୍ତ ନିଜର ତାବତୀୟ କଥାମାନ ସଂକ୍ଷେପ କରି କହିଅଛନ୍ତି । ମୂଳଗ୍ରନ୍ଥରେ ଯଥାର୍ଥତଃ ବାଳୀ ରାମଙ୍କୁ ଇତଃପୂର୍ବରୁ ଭଲକରି ଜାଣିଥିଲେ । ଅତଏବ "ତ୍ୱଂ ନରାଧିପତେଃ ପୁତ୍ରଃ ପ୍ରଥିତଃ ପ୍ରିୟଦର୍ଶନଃ" (୨) ଇତ୍ୟାକାରକ ପରିଚିତ କଥାମାନ ଦର୍ଶନର ପ୍ରାରମ୍ଭରୁ କହିଅଛନ୍ତି । ଏହା କେବଳ ନୁହେ, ସେ ପୁଣି ରାମଙ୍କୁ କହି ଅଛନ୍ତି କି 'ହେ ରାମ ମୁଁ ଆପଣଙ୍କୁ ପୂର୍ବରୁ ଧର୍ମଜ୍ଞାତା ପ୍ରଭୃତି ସୁଗୁଣମାନଙ୍କରେ ଭୂଷିତ ଜାଣିଥିବାରୁ ସର୍ବଜ୍ଞା ତାରା ଦେବୀଙ୍କର ପ୍ରତିଷେଧ ନ ମାନି ସୁଗ୍ରୀବ ସଙ୍ଗେ ବୀରବାଦରେ ଆସି ମିଳିଅଛି । ତୁମକୁ ଏହିପରି ଧର୍ମଲିଙ୍ଗି ଅଧାର୍ମିକ ବୋଲି ଆଦୌ ଜାଣି ନଥିଲି ଇତ୍ୟାଦି (୩) । ଏସବୁ ଦାସଙ୍କ ରାମାୟଣରେ ନାହିଁ ।

ମୂଳଗ୍ରନ୍ଥରେ ସପ୍ତଦଶ ସର୍ଗଟି ରାମନିନ୍ଦାକାରକ ବାଳିଙ୍କ କଥିତ ସଦ୍ ରାଜଧର୍ମାଚରଣର ଏବଂ ସୁରାଜ୍ୟ ନୀତିର ଗୋଟିଏ ଆଦର୍ଶ ନିର୍ଘଣ୍ଟ କୁହାଯାଇପାରେ । ଏସବୁର ରାଜଧର୍ମ ଓ ନୀତିନିଚୟର କ୍ରମ ପାଠକଗଣ ଏହି ଓଡ଼ିଆ ରାମାୟଣରେ ପାଇପାରିବେ ନାହିଁ । ଏହି ସର୍ଗରେ ମହାସତ୍ୱ ବାଳି ମହାଶୟ ରାଜଧର୍ମ ଓ ରାଜନିତୀର ପ୍ରଦର୍ଶନରେ ଯଥାର୍ଥତଃ ହେଉ କିମ୍ବା ଅଯାର୍ଥତଃ ହେଉ ରାମଙ୍କୁ ବଡ଼ ସୁନ୍ଦର ମଧୁର ଭର୍ତ୍ସନା କରିଅଛନ୍ତି । ଏଥି ମଧ୍ୟରୁ କେତେକ ମାତ୍ର ମୌଳିକ ଅଭିପ୍ରାୟ ଦାସଙ୍କ ରାମାୟଣରେ ବାଳିଙ୍କର ରାମଙ୍କ ପ୍ରତି ଦ୍ୱିତୀୟବାର କଥିତ ଉକ୍ତିରେ ପ୍ରତିବିମ୍ବିତ ଅଛି । ତାହା ସୁଦ୍ଧା

(୧) ଛାପା ପୁସ୍ତକରେ ୪୧, ୪୨, ୪୩ ପୃଷ୍ଠାମାନ ପାଠ କରନ୍ତୁ ।

(୨) ଅଧ୍ୟାତ୍ମ ରାମାୟଣ କିଷ୍କିନ୍ଧ୍ୟା କାଣ୍ଡ ଦ୍ୱିତୀୟ ସର୍ଗରେ ବାଳୀ ତାରାକୁ ରାମଙ୍କର ପୂର୍ବରୁ ଜ୍ଞାତ ସମଧିକ ପରିଚୟର କଥା କହିଅଛନ୍ତି ଏବଂ ଶ୍ରୀରାମଙ୍କର ପରମେଶ୍ୱରତ୍ୱ ଜଣାଇଅଛନ୍ତି ।

(୩) ସତାଂ ବେଷଧରଂ ପାପଂ ପ୍ରଚ୍ଛନ୍ନମିବ ପାବକମ୍
ନାହଂ ତ୍ୱାମଭିଜାନାମି ଧର୍ମଚ୍ଛଦ୍ମାଭିସଂବୃତମ । ଇତ୍ୟାଦି । ୧୭ ସ

ଅଂଶତଃ ଅନୁଲେଖକଙ୍କ ଲେଖାର ଅତ୍ୟାଚାରରୁ ବିକୃତ ଓ ଭିନ୍ନଭାବାପନ୍ନ ହୋଇ ଯାଇଅଛି । ପାଠକ, ଏହି ଦେଖନ୍ତୁ, ମୂଳଗ୍ରନ୍ଥର ସ୍ଥାନେ ବାଳିଙ୍କ ଉକ୍ତିରେ ଉକ୍ତ ଅଛି କି, "ହେ ରାମ ! ତୁମେ ଯଦି କହ ମୃଗୟା ବିନୋଦରେ ତୋତେ ମୁଁ ନିହତ କଲି ।"(୧) ସତ୍ୟ ନୁହେ, ତଥାପି ପୂର୍ବବଂଶୀୟ ଗାଥାନୁଧାବନମୂଳକ ଏହି ନିନ୍ଦାକରଣ କ୍ରମ ମଧ୍ୟରୁ ଗୋଟିଏ ମାତ୍ର ରାମଙ୍କ ପୂର୍ବବଂଶ ଗୁଣାନୁବାଦନର କଥା ମୂଳରେ ଲେଖାଥିବାର ଦେଖାଯାଉ ଅଛି । ତାହା ଏହି, ବାଳି ସ୍ଥାନେ ରାମଙ୍କୁ ବୋଲି ଅଛନ୍ତି କି ସେହି ମହାତ୍ମା ଦଶରଥଙ୍କର ଠାରୁ ତୁମେ ପାପାଚାରୀ କିପରି ଜନ୍ମ ଗ୍ରହଣ କରିଅଛ ? (୨)

ଏହି ସପ୍ତଦଶ ସର୍ଗରେ ବାଳି ପୁଣି ରାମଙ୍କୁ କହିଅଛନ୍ତି କି, ହେ ରାମ ! ଯଦିଚ ତୁମ୍ଭେ ସୁଗ୍ରୀବଙ୍କ ପ୍ରିୟ କାମନାରେ ଅପିଚ ଯେଉଁ କାର୍ଯ୍ୟ ପାଇଁ ଅକାରଣରେ ମୋତେ ନିହତ କରିଅଛ, ତାହା ମୁଁ ଏକ ଦିବସରେ ଅତି ସହଜରେ ତୁମ୍ଭପାଇଁ ସାଧିତ କରି ଦେଇଥାନ୍ତି ଇତ୍ୟାଦି । (୩) ଏହି ମୌଳିକ ଅଭିପ୍ରାୟକୁ ମଧ ଦାସେ ବାଳିଙ୍କର ତୃତୀୟ ବାର ଉକ୍ତିରେ ଯେକୌଣସିମତେ ବ୍ୟକ୍ତ କରି ଦେଇ ଅଛନ୍ତି । ମୂଳଗ୍ରନ୍ଥରେ ପୁଣି ଲେଖାଅଛିକି ମହାସତ୍ତ୍ୱ ପ୍ରବେକ ବାଳିଙ୍କ ବେକରେ ଇନ୍ଦ୍ରଦତ୍ତ ସୁବର୍ଣ୍ଣମାଳା ବିରାଜମାନ ଥିବାରୁ ରାମଙ୍କ ଅମୋଘ ବାଣରେ ସେ ମୃତ କଳ୍ପ ପଡ଼ି ରହିଥିଲେ ସୁଦ୍ଧା ତଦୀୟ

---

(୧) ମୋତେ ତହିଁ ଅକାରଣ ବିନ୍ଧିଲଟି ଯହିଁ ।
ପଞ୍ଚନଖିଆ ଯେ ପୁଣ ପାଞ୍ଚଜନ୍ତୁ ଖାଇ
ଆବର ଯେ ପାଞ୍ଚଜୀବ ଭକ୍ଷି ନ ଯୋଗାଇ ।
ଗଜ ବ୍ୟାଘ୍ର ମର୍କଟ ଯେ ମନୁଷ୍ୟ କୁମ୍ଭୀର
ଏହି ପାଞ୍ଚ ଜନ୍ତୁ ପୁଣ ନ ଭକ୍ଷନ୍ତି ନର ।
ଗୋଧି ନକୁଳ ଶଶା ଯେ ଗଣ୍ଡା ଝିଙ୍କ ଖାଇ
ମୋତେ ଯେ ବଧିଲୁ ତୁ କେବଣ ଗୁଣ ପାଇଁ ।

(୨) ଶଠୋ ନୈକୃତିକଃ କ୍ଷୁଦ୍ରଃ ମିଥ୍ୟାପ୍ରଶିତମାନସଃ
କଥଂ ଦଶରଥେନ ତ୍ୱଂ ଜାତଃ ପାପୋ ମହାତ୍ମନା ।
ଇତି ୧୭ସ. ୪୧ ଶ୍ଳୋ

(୩) ମାମେବ ଯଦି ପୂର୍ବଂ ତ୍ୱଂ ଏତଦର୍ଥମଚୋଦୟଃ
ମୈଥିଳୀମହମେକାହ୍ନା ତବ ଚାନୀତବାନ୍ ଭବେତ୍ ।
ସୁଗ୍ରୀବ ପ୍ରିୟକାମେନ ଯଦ୍ କୃତୋଽସ୍ମି ହତସ୍ତ୍ୱୟା
କଣ୍ଠେ ବଧ୍ୱା ପ୍ରଦଦ୍ୟାଂତେ ନିହତଂ ରାବଣଂ ରଣେ । ୪୮
ନ୍ୟସ୍ତାଂ ସାଗର ତୋୟେ ବା ପାତାଳେ ବାପି ମୈଥିଳୀମ୍
ଆନୟେୟଂ ତବାଦେଶାଦ୍ ଶ୍ୱେତାମଶ୍ୱତରୀମିବ । ୪୯
ଇତ୍ୟାଦି ୧୭ ସ.

ନୈସର୍ଗିକ ତେଜ ଓ ଶୋଭା ବିଦୂରିତ ହୋଇ ନଥିଲା ଏବଂ ପ୍ରାଣବାୟୁ ମଧ ଅପସାରିତ ହୋଇ ନଥିଲା । (୧) ଏହି ଦେବେନ୍ଦ୍ରଦତ୍ତ ମାଳାର କଥାକୁ ମଧ ବଳରାମ ଦାସେ ପ୍ରକାରାନ୍ତରରେ ପ୍ରକାଶ କରିଅଛନ୍ତି । ଏହା ବାଳିଙ୍କର ଗୋଟିଏ ଅନନ୍ୟସାମାନ୍ୟ ବିଶିଷ୍ଟ ଲକ୍ଷଣ ଆଉ ସୁପ୍ରଥିତ ସୁପ୍ରଶଂସାର ସୂଚକ ଅଟେ । ଏ ହେତୁ ଦାସେ ମୂଳ ଗ୍ରନ୍ଥର ଅବିକଳ ତଥାଚ ଅକ୍ଷୁଣ୍ଣ ଅନୁକରଣ କରି ନଥିଲେ ସୁଦ୍ଧା ଏଭଳି ବିଶିଷ୍ଟ କଥାମାନ ସମ୍ୟକ୍ ହୃଦୟଙ୍ଗମ କରି ନିଜର ରାମାୟଣରେ ଲେଖିଅଛନ୍ତି ।(୨)

ଅଷ୍ଟାଦଶ ସର୍ଗରେ ଶ୍ରୀରାମ ବାଳିଙ୍କୁ ନିଜ ପ୍ରତି ଆରୋପିତ ଦୋଷର ଧର୍ମଶାସ୍ତ୍ରାନୁମୋଦିତ ସମାଧାନ ଦେଇଅଛନ୍ତି । ତଦ୍ ବଚନ ଶ୍ରବଣରେ ସଂଜାତ-ଜ୍ଞାନ ବାଳି ପୁଣି ରାମ ପ୍ରତି କୃତ ଅହେତୁକଦୋଷାରୋପଣର ସମାଧାନରେ ସମ୍ମତି ପ୍ରକାଶ ପୂର୍ବକ ତାହାଙ୍କୁ କ୍ଷମାପ୍ରାର୍ଥନା କରିଅଛନ୍ତି ଏବଂ ଶ୍ରୀରାମଙ୍କଠାରେ ତାରା ଆଉ ଅଙ୍ଗଦଙ୍କର ଭାରାକୁ ସବିନୟ ଅର୍ପଣ କରିଅଛନ୍ତି ।

ଅତଃପର ଏକୋବିଂଶ ସର୍ଗଠାରୁ ତ୍ରୟୋବିଂଶତି ସର୍ଗ ପର୍ଯ୍ୟନ୍ତ ପାଞ୍ଚଗୋଟି ସର୍ଗରେ ବାଳିଙ୍କୁ ନିହତ ପୁଣି ଅଙ୍ଗଦଙ୍କ ସହ ସମାଗତା ତାରା ଏବଂ ତାହାଙ୍କ ସପତ୍ନୀମାନଙ୍କର ବିଳାପ, ତାରାଙ୍କ ପ୍ରତି ହନୁମତ୍ ପ୍ରଦତ୍ତ ପ୍ରବୋଧନ, ସୁଗ୍ରୀବଙ୍କୁ ପ୍ରଦତ୍ତ ବାଳିଙ୍କ ଉପଦେଶ ତଥାଚ ବାଳିଙ୍କର ପ୍ରାଣୋଦ୍କ୍ରମଣରେ ବାନରମାନଙ୍କର ବିଳପନାଦିର କ୍ରମ ସବିସ୍ତର ଉକ୍ତ ଅଛି । ବଳରାମ ଦାସେ ଏହି ସର୍ଗ ପଞ୍ଚକରେ ବର୍ଣ୍ଣିତ ଘଟଣାମାନଙ୍କର ସ୍ଥୂଳ କଥାର ମାତ୍ର ଅବଲମ୍ବନ କରିଅଛନ୍ତି । (୩) ତଥାପି କେତେକ ସ୍ଥାନରେ ପ୍ରମାଦତଃ ହେଉ କିମ୍ବା ଅନ୍ୟ କାରଣରୁ ହେଉ ଚରିତ ଚିତ୍ରଣର ଅସାଙ୍ଗତ୍ୟ ବା ଅନୌଚିତ୍ୟ ଜଣାଯାଉଅଛି । ତଥାପି ବିଶ୍ୱାସ ହେଉ ନାହିଁ ଯେ ଏ ସବୁ କେବଳ ଦାସଙ୍କ ଲିଖିତ

---

(୧) ଭବେଦ୍-ଭବେୟଂ ପୁରୁଷବ୍ୟତ୍ୟୟମାର୍ଷାଃ । ଯଦ୍ କୃତେ-ଯସ୍ୟ ରାବଣସ୍ୟ କୃତେ ଶ୍ୱେତାମଶ୍ୱତରୀମିବ ମଧୁକୈଟଭାଭ୍ୟାଂ ପାତାଳେ ନିବଦ୍ଧାଂ ଶ୍ୱେତାଶ୍ୱତରୀ ରୂପାଂ ଶ୍ରୁତିଂ ହୟଗ୍ରୀବ ଇବେତ୍ୟର୍ଥଃ । ଇତି ଗୋବିନ୍ଦରାଜୀୟ ଟୀକାୟାମ୍ ।

(୨) ଶକ୍ରଦତ୍ତାବରାମାଲା କାଞ୍ଚନୀ ବଜ୍ରଭୂଷିତା,
ଦଧାର ହରିମୁଖ୍ୟସ୍ୟ ପ୍ରାଣାଂସ୍ତେଜଃ ଶ୍ରିୟଂ ଚ ସା
୧୭ ସ. ଏହାର ପ୍ରକାରାନ୍ତର ଅନୁବାଦନ ଛାପା ପୁସ୍ତକରେ ୪୩ ତ୍ରୟଚତ୍ୱାରିଂଶ ପୃଷ୍ଠାରେ ଦେଖନ୍ତୁ ।

(୩) ମୂଳ ଦ୍ୱାବିଂଶ ସର୍ଗରେ ବାନରମାନଙ୍କ ବିଳାପନରେ ବିଳପିତ ଅଛି କି ପୁରା ବାଳିଙ୍କ ଗମନାତିବେଗରେ ଗହନାରଣ୍ୟ ବନମାନଙ୍କର ବୃକ୍ଷନିଚୟ ପୁଷ୍ପବିକଶୟନରେ ଅନୁଧାବନ କରୁଥିଲେ । ଏସବୁ କଥାର ସୂଚନା ବଳରାମ ଦାସଙ୍କ ରାମାୟଣରେ ଦେଖାଯାଏ ନାହିଁ । ଯସ୍ୟ ବେଗେନ ମହତା କାନନାନି ବନାନି ଚ ପୁଷ୍ପୌଘେଣାନୁବଧ୍ୟନ୍ତେ କରିଷ୍ୟତି ତଦଦ୍ୟ କଃ । ୨୨ ସ

ପଂକ୍ତିମାନ । ଦାସେ ବାଳିଙ୍କୁ (୧) ତଦୀୟ ଭ୍ରାତୃଜାୟା ହରଣ ଜନିତ ଦୋଷର ସମାଧାନ ଦେବାରେ ପ୍ରବୃତ୍ତ କରାଇ ତାହାଙ୍କ ମୁଖରେ କୁହାଇ ଅଛନ୍ତି କି ଆମ୍ଭେମାନେ ବନ୍ୟ ମର୍କଟ ପଶୁଜାତି, ଆମ୍ଭମାନଙ୍କର ସାଧୁ ସମାବେଶ ଓ ତଦୁଚିତ ଜ୍ଞାନ ନାହିଁ; ଏ ହେତୁ ପ୍ରୋକ୍ତ ଦୋଷ ଧର୍ତ୍ତବ୍ୟ ନୁହେଁ ।(୨) କିନ୍ତୁ ବାସ୍ତବତଃ ବାଳି ପ୍ରଭୃତି ଆକାରରେ ମର୍କଟ ଜାତୀୟ ହେଲେ ସୁଦ୍ଧା ଆଚାରାଦି ପ୍ରକାରରେ ସର୍ବସାଧାରଣ ମର୍କଟ ନୁହଁନ୍ତି । ସେ ଯେପରି ଦେବେନ୍ଦ୍ର ବୀର୍ଯ୍ୟ ଜାତତ୍ୱରୁ ପରିପୂତମନା ସେହିପରି ବ୍ରହ୍ମଶ୍ରୁତ ଓ ବିଜ୍ଞାନତତ୍ତ୍ୱଜ୍ଞ ଥିଲେ । ଦାସେ ମଧ ଏହା ଅନେକତ୍ର ସ୍ୱୀକାରତଃ ପ୍ରକାଶ କରିଅଛନ୍ତି । ଅତଏବ ଏହି ପ୍ରଦତ୍ତ ସମାଧାନ ସଙ୍ଗତ ବୋଧ ହୁଏ ନାହିଁ । ଏହାପରେ ଦାସେ ଲେଖିଅଛନ୍ତି, ରାମ ବାଳିଙ୍କ ଦୁଃଖରେ ଦୁଃଖିତ ହୋଇ ନିଜ କୃତକାର୍ଯ୍ୟକୁ ପାପ ସମାଚାର ସ୍ୱୀକାର କରି ବାଳିଙ୍କୁ କ୍ଷମା ପ୍ରାର୍ଥନା ପୂର୍ବକ ସୀତା ଆନୟନ ଆଶାରେ ପୁନଃ ଉଜ୍ଜୀବିତ କରିବାକୁ ସଚେଷ୍ଟ ହୋଇଥିଲେ ।(୩)

X X X X

ସୀତା ଆନୟନାର୍ଥ ପ୍ରାର୍ଥୀ ହୋଇଥିଲେ । ରାମଙ୍କର ପ୍ରକୃତିର ଏହି ବିକୃତ ପରିବର୍ତ୍ତନର ଚିତ୍ରଣ ଯେପରି ଅମୌଳିକ ସେପରି ଅସମ୍ଭବ ମଧ ଜଣାଯାଏ । ବିଶେଷତଃ ଏଥିଦ୍ୱାରା ଧୀରୋଦାତ୍ତ ରାମଙ୍କର ଅବ୍ୟବସ୍ଥିତ ଚିତ୍ତତ୍ୱ ମଧ ପ୍ରକାଶ ପାଉଅଛି । ମୂଳ ଗ୍ରନ୍ଥରେ ରାମ ସୁଗ୍ରୀବଙ୍କୁ ଜ୍ୟେଷ୍ଠ ଭ୍ରାତୃ ବିଯୋଗରେ ଦୁଃଖିତ ଦେଖି ବିଶଲ୍ୟକରଣାର୍ଥ କହିଛନ୍ତି । (୪) ବୋଧହୁଏ ଲେଖକ ଏହିତକକୁ ଧରି କଥାଏ ବଢ଼ାଉ ଅଛନ୍ତି । ବିମନା ହୋଇଥିବା ମାତ୍ର ଲେଖାଅଛି ।(୫) ମୂଳ ଗ୍ରନ୍ଥରେ ବାଳି ନିଜର ଇନ୍ଦ୍ରଙ୍କଠାରୁ ପ୍ରାପ୍ତ କାଞ୍ଚନୀମାଳା ତାହାଙ୍କ ସମକ୍ଷରେ ସୁଗ୍ରୀବଙ୍କୁ ଦେଇ ଅଛନ୍ତି; କିନ୍ତୁ ଦାସେ ତାରାଙ୍କ ଆସିବା ପୂର୍ବରୁ ବାଳୀ ତାହା କରିଦେଇ ଅସାକ୍ଷମ ହୋଇ ପଡ଼ିଯାଇଥିବା ଲେଖିଅଛନ୍ତି । (୬) ଏହାପରେ ଦାସଙ୍କ ରାମାୟଣରେ ଲେଖାଅଛି କି ବାଳିଙ୍କ ନିଧନରେ ଏକାନ୍ତ ଦୁଃଖିତା ତାରାଦେବୀଙ୍କର

(୧) ରାମ ବାଳିଙ୍କୁ ନିନ୍ଦା କଲାବେଳେ ମଧ ଏହା କହି ଅଛନ୍ତି – ତ୍ୱଂତୁ ଭ୍ରାତୁଃ କନିଷ୍ଠସ୍ୟ ଭାର୍ଯାୟାଂ ରମତେ ବଳାତ୍ । ଅତୋମୟା ତ୍ୱା ହତୋଽସି ଧର୍ମ ବି ବନଗୋଚର । (?)

(୨) ବାଳି ତାରାଙ୍କୁ ବଳେ ହରିଥିବା ଅଧ୍ୟାତ୍ମ ରାମାୟଣରେ ମଧ ଲେଖା ଅଛି । ଯଥା :– ତଦାଦି ମମ ଭାର୍ଯ୍ୟାଂ ସଃ ସ୍ୱୟଂ ଭୁଂକ୍ତେ ବିମୂଢ଼ଧୀଃ, କି.କା. ୧ ସର୍ଗ ।

(୩) ଏହି ଯେ ବାନରମାନଙ୍କ ବିଳପନରେ ବାଳିଙ୍କ ସୂର୍ଯ୍ୟ ସୂଚନା ମୂଳକ ଚରିତ ଦାସଙ୍କ ରାମାୟଣରେ ନ ଥିବା ଅସମ୍ଭବ ନୁହେଁ । କାରଣ ଏହା ଧାରାବାହିକ ଚରିତ ମଧରେ ଅନ୍ତର୍ଭୁକ୍ତ ନୁହେଁ । ସୁତରାଂ ମୂଳ ଗ୍ରନ୍ଥର ଅବିକଳ ଅନୁକରଣ କରି ନାହାନ୍ତି ।

(୪) ଛାପା ପୁସ୍ତକରେ ୪୩ ତ୍ରୟଶ୍ଚତ୍ୱାରିଂଶ ପୃଷ୍ଠା ଦେଖନ୍ତୁ ।

(୫) ଛାପା ପୁସ୍ତକରେ ୪୪ ଚତୁଶ୍ଚତ୍ୱରିଂଶ ପୃଷ୍ଠା ଦେଖନ୍ତୁ ।

(୬) ଇତ୍ୟେବ ମାର୍ତ୍ତସ୍ୟ ରଘୁପ୍ରବୀରଃ ଶ୍ରୁତ୍ୱା ବଚୋ ବାଳିଜଘନ୍ୟଜସ୍ୟ । ସଂଜାତ ବାଷ୍ପଃ ପରବିର ହନ୍ତା ରାମୋ ମୁହୂର୍ତ୍ତଂ ବିମନା ବଭୂବ । ୨୪ସ. ୨୪ ଶ୍ଳୋକ.

ବିଳପନ ଶୁଣି ତଦୀୟ ମନ୍ତ୍ରିମାନେ ତାହାଙ୍କୁ କହିଲେ ଯେ ଆପଣ ଆଦେଶ ଦିଅନ୍ତୁ ଆମ୍ଭେମାନେ ଏହିକ୍ଷଣି ସୁଗ୍ରୀବ ଓ ହନୁମାନ ପ୍ରଭୃତିଙ୍କ ସହ ରାମ ଆଉ ଲକ୍ଷ୍ମଣଙ୍କୁ ନିହତ କରିବୁଁ । ତେତେବେଳେ ପୁଣି ଅଙ୍ଗଦ ଏକଥା ଶୁଣି କହିଲେ, ତୁମ୍ଭେମାନେ କିଛି ହିଁ ଜାଣ ନାହିଁ, ମୁଁ ପ୍ରକୃତ ତତ୍ତ୍ୱ କଥା ଅବଗତ ଅଛି । ରାମ ସ୍ୱୟଂ ନାରାୟଣ ଅଟନ୍ତି । ତାହା ନ ହେଲେ ବୀରାଗ୍ରଣୀ ବାନରଗ୍ରାମଣୀ ପିତାଙ୍କୁ ନିହତ କରି ପାରନ୍ତେ ନାହିଁ । ଏକଦା ମହର୍ଷି ଗୌତମ ମଧ ମୋତେ କହିଅଛନ୍ତି କି ନାରାୟଣ ରାମ ରୂପରେ ଅବତୀର୍ଣ୍ଣ, ସେ ସମୟେ ସୁଗ୍ରୀବଙ୍କ ମିତ୍ରତା କରି ବାଳିଙ୍କୁ ନିହତ କରିବେ, ପରେ ଲଙ୍କାଭିଯାନରେ ରାବଣଙ୍କୁ ସବଂଶେ ନିପାତ କରି ଅପହୃତା ସୀତାଙ୍କୁ ଆଣିବେ ଇତ୍ୟାଦି । ମୂଳଗ୍ରନ୍ଥରେ ଏକଥା ସବୁ ଏ ସ୍ଥାନରେ କଥିତ ହୋଇ ନାହିଁ । ମୂଳ ଚତୁର୍ବିଂଶ ସର୍ଗରେ ସୁଗ୍ରୀବ ଅନେକଧା ଆତ୍ମଦୋଷ ପ୍ରକାଶ ପୂର୍ବକ ବାଳିଙ୍କ ନିମନ୍ତେ ବିଳାପ କଲାପରେ ତାହାଙ୍କ ସହିତ ଅଗ୍ନି ପ୍ରବେଶନର ସଚେଷ୍ଟ ହେଲାରୁ ମିତ୍ର ହେତୁରୁ ରାମଚନ୍ଦ୍ର କ୍ଷଣମାତ୍ର ବିମନା ରହି ପରେ ତାହାଙ୍କୁ ପ୍ରବୋଧ ଦେଇ ଅଛନ୍ତି । ତାରା ଦେବୀ ରାମଙ୍କର ଅନେକଧା ସୁଗୁଣ ପ୍ରଖ୍ୟାପନ ପରେ ଆପଣାକୁ ବାଳିଘାତକ ଶରରେ ନିହତ କରିବା ପାଇଁ ରାମଙ୍କୁ ପ୍ରାର୍ଥନା କରିଅଛନ୍ତି । (୧)

ତାପରେ ପୁଣି ରାମ ତାହାଙ୍କୁ ଆଶ୍ୱାସନା ପ୍ରଦାନ କରି ଅଛନ୍ତି । ପଞ୍ଚବିଂଶ ସର୍ଗରେ ମଧ ଶ୍ରୀରାମଚନ୍ଦ୍ର ଅଙ୍ଗଦଙ୍କୁ ନିୟତିର ସର୍ବଂକଷତ୍ୱ ବୁଦ୍ଧିରେ ସମାଶ୍ୱାସିତ କରିଅଛନ୍ତି । ତଥାଚ ସସୁଗ୍ରୀବ ଅଙ୍ଗଦ ରାମଙ୍କ ବଚନରେ ଆଶ୍ୱାସିତ ହୋଇ ପିତାଙ୍କର ଅନ୍ତ୍ୟେଷ୍ଟି କ୍ରିୟା ସଂଶାଧିତ କରିଅଛନ୍ତି । ବଳରାମ ଦାସେ ମଧ ସ୍ଥୂଳତଃ ଏକଥାମାନ କେବଳ ଯେ କୌଣସି ପ୍ରକାରେ ପ୍ରକାଶ କରିଅଛନ୍ତି । ମୂଳଗ୍ରନ୍ଥରେ ତାରା ଦେବୀଙ୍କ ସମ୍ବନ୍ଧେ ସୁଗ୍ରୀବଙ୍କର ପତ୍ନୀହର ସ୍ୱୀକାର ନିମନ୍ତେ ରାମଚନ୍ଦ୍ରଙ୍କ ଆଦେଶ ସ୍ଥାନ ବିଶେଷରେ ନିଗୂଢ଼ତଃ ପ୍ରକାଶିତ ଥିବାରୁ (୨) ଅପିଚ ବୈଦିକ କ୍ରିୟାନୁମତ ବ୍ରାହ୍ମବିବାହ

(୧) ଯେନୈବ ବାଣେନ ହତଃ ପ୍ରିୟୋମେ
ତେନୈବ ମାଂ ତ୍ୱଂ ଜହି ଶାୟକେନ ।
ହତା ଗମିଷ୍ୟାମି ସମୀପମସ୍ୟ ।
ନମାମୃତେ ରାମରମେତ ବାଳୀ । ୨୪ସର୍ଗ ।

(୨) ତ୍ରୟୋହିଲୋକା ବିହିତଂ ବିଧାନଂ ନାତିକ୍ରମନ୍ତେ ବଶଗା ହି ତସ୍ୟ
ପ୍ରୀତିଂ ପରାଂ ପ୍ରାପ୍ସ୍ୟସି ତାଂ ତଥୈବ ପୁତ୍ରସ୍ତୁତେ ପ୍ରାପ୍ସ୍ୟତି ଯୌବରାଜ୍ୟଂ ।
ଧାତ୍ରା ବିଧାନଂ ବିହିତଂ ତଥୈବ ନଶୂରପତ୍ନ୍ୟଃ ପରିଦେବୟନ୍ତି ।୪୩ ଶ୍ଳୋ
ଆଶ୍ୱାସିତା ତେନ ତୁ ରାଘବେଣ ପ୍ରଭାବଯୁକ୍ତେନ ପରଂତପେନ ।
ସା ବୀରପତ୍ନୀ ଧ୍ୱନତା ମୁଖେନ ସୁବେଶରୂପା ବିରରାମ ତାରା ।୪୪।
୨୪ସ, ୪୩, ୪୪ ଶ୍ଳୋ.

ପ୍ରୀତିମିତି – ତାଂ ବାଳିସମ୍ଭୋଗ ସଦୃଶ ଭୋଗମିତି ଦ୍ୟୋତୟତି । ଇତି ଗୋବିନ୍ଦରାଜଃ ।
ପ୍ରୀତିମିତି ଜୀବତି ବାଳିନି ଯାଦୃଶ ପ୍ରୀତିଃ ତାଦୃଶୀମିତ୍ୟର୍ଥଃ । ଇତି ମହେଶ୍ୱରଦୀକ୍ଷିତଃ ।

ପଦ୍ଧତିରେ ମଧ (୧) ତାରା ଯେପରି ସୁଗ୍ରୀବଙ୍କ ସହଧର୍ମିଣୀ ସେହିପରି ନବଦମ୍ପତି ଧର୍ମାନୁବନ୍ଧ ହୁଅନ୍ତୁ ବୋଲି ସାଗ୍ନିକ ପ୍ରମାଣବାକ୍ୟମାନ ଦେଖାଯାଉଥିବାର ଏବଂ ତାରାଦେବୀ ପ୍ରତ୍ୟହ ସାଧୁମାନଙ୍କର ଅନୁଗୀୟମାନନାମ୍ନୀ ଥିବାରୁ (୨) ବଳରାମ ଦାସ ମହୋଦୟ ସେହି ସନ୍ଦର୍ଭକୁ ମୀମାଂସା ପୂର୍ବକ ନିଜର ରାମାୟଣରେ ଯଥାସ୍ଥାନରେ ସନ୍ନିବେଶିତ କରିଅଛନ୍ତି ।(୩)

ଏ ସ୍ଥଳେ ଟିପ୍ପଣୀ ଦେଖନ୍ତୁ । ତାହାଙ୍କ ସତୀତ୍ୱ ରକ୍ଷାମୂଳକ ପ୍ରଶ୍ନର ପ୍ରଦତ୍ତ ସମାଧାନ ସଂଗତ ନୁହେଁ ବୋଲି କେହି କେହି ଆଶଙ୍କା କରିପାରନ୍ତି । କିନ୍ତୁ ଠିକ୍ ହେବ ନାହିଁ । ଏଭଳି ଘଟନାମାନଙ୍କରେ ଐଶ୍ୱରିକ ଆଦେଶ ବେଦବାକ୍ୟତୁଲ୍ୟ ବଳବତ୍ତର; ପ୍ରଭୁ ସଂମିତତ୍ତ୍ୱରୁ ଅଲଂଘନୀୟ । ଈଶ୍ୱର ଯାହା କରନ୍ତି ତାର ମୀମାଂସା ନାହିଁ । ଯେପରି ଶ୍ରୁତି ଓ ସ୍ମୃତିର ମୀମାଂସା ନାହିଁ, ପ୍ରତ୍ୟୁତ ତାଦୃଶ ମୀମାଂସାର ଯୋଗ୍ୟତା ଆମ୍ଭମାନଙ୍କର ନାହିଁ । ସୁତରାଂ ଏହି ଯେ ସୁଗ୍ରୀବଙ୍କ ପ୍ରତି ତାରାଦେବୀଙ୍କର ପତ୍ନୀତ୍ୱର ସ୍ୱୀକାର ତାତ୍କାଳିକ ପ୍ରଥାର ଅନୁମୋଦନୀୟ ମଧ । ଏ ସ୍ଥଳେ ଏଥିରେ ପୁଣି ଲେଖାଅଛି କି ପତିବିଯୋଗ-ବିଧୁରା ତାରା ଦେବୀ ପ୍ରଥମତଃ ଶ୍ରୀରାମଙ୍କୁ ପତ୍ନୀବିଯୋଗମୂଳକ ଶାପ ପ୍ରଦାନ କରିଥିଲେ । (୪)

ପରେ ରାମଙ୍କ ମୁଖରୁ କ୍ଷମାପ୍ରାର୍ଥନା ଶୁଣି କୋପ ପ୍ରଶମନ ପୂର୍ବକ ସ୍ୱପ୍ରଦତ୍ତ ଶାପକୁ କିଞ୍ଚିତ୍ ଶିଥିଳ କରି ଶ୍ରୀରାମଚନ୍ଦ୍ରଙ୍କୁ ନିଜେ ଆପଣାକୃତ ଅବିଚାରର କ୍ଷମା ପ୍ରାର୍ଥନା କଲେ । ମୂଳ ଗ୍ରନ୍ଥରେ ଏହି କଥାନକଟି ଏ ସ୍ଥଳେ ଉକ୍ତ ନାହିଁ । ତଥାପି ବିଶ୍ୱାସ ହୁଏ

---

(୧) ଯଥା ସୁଗ୍ରୀବସ୍ୟ ତାରା, ଯଥା ରାବଣସ୍ୟ ମନ୍ଦୋଦରୀ, ଯଥା ସୌଦାସସ୍ୟ ମଦୟନ୍ତୀ ଇତ୍ୟାଦି ।

(୨) ଅହଲ୍ୟାଦ୍ରୌପଦିତାରା ଶଚିମନ୍ଦୋଦରୀ ତଥା ।

(୩) ଯାଅ ତୁ ସାଧବି ! ଗୋ ସ୍ୱାମୀର କାର୍ଯ୍ୟ କର, ତାରା ବୋଇଲା ଭୋ ସ୍ୱାମୀ ଶୁଣ ରଘୁବୀର ।
ସାଧବୀ ବୋଲିଣ ବୋଇଲୁ ଯେ ତୁହି ମୋତେ । ମୁହିଁ ପୁଣ ସାଧବୀ ଯେ ହୋଇଲି କେମନ୍ତେ ।
ନିଜ ପତି ମୋହର ହୋଇଲା ପ୍ରାଣେ ହତ । ମୋତେ କିଁପା ସାଧବୀ ବୋଇଲୁ ରଘୁସୁତ ।
ଶ୍ରୀରାମ ବୋଇଲେ ତୁଗୋ ଶୁଣ ମହାସତୀ । ସୁଗ୍ରୀବ ଏବେ ତୋହର ହୋଇବେ ଯେ ପତି ।
ତୁ ପାଖେ ବସିଣ – ଅଭିଷେକ ଗୋ ହୋଇବୁ । କିଷ୍କିନ୍ଧା ନଗ୍ରରେ ତୁ ଗୋ ସୁଖେ ବିଳସିବୁ ।
ତାରା ବୋଇଲା ତ ଏ ଅଟଇ ଅବେଭାର । ଏସନ କିପାଇଁ ବୋଇଲୁ ରଘୁବୀର ।
ଧାର୍ମିକ ଲୋକ ହୋଇ ଏମନ୍ତ କିପାଁ କହୁ । କି ବୋଲିବେ ସ୍ଥିରିଏ ସଂସାରେ ମହାବାହୁ ।
ଶ୍ରୀରାମ ବୋଇଲେ ତୁ ଗୋ ଯୁଗେ ଯୁଗେ ଥିବୁ । ମହାସତୀ ଲେଖାରେ ତୁ ଗଣିତା ହୋଇବୁ ।
ଅନ୍ତକାଳେ ସ୍ୱର୍ଗ ତୋତେ ହୋଇବ ପରାପତ । ତୋର ନାମ ନରେ ସୁମରିବେ ଯେ ପ୍ରଭାତ ।
ତୁହି ପୁଣ୍ୟ ସ୍ତିରି ଗୋ ମୋହର ବୋଲ କର । ଏକଥାରେ ସାଧବି ତୁ କିଛି ନବିଚାର ।
ତାରା ମହାଦେଇ ମନେ ହେଲାକ ତ୍ରିପୁତି । ଅଙ୍ଗଦକୁ ଡାହିଣ ବୋଇଲେ ରଘୁପତି (୭୦ ପୃଷ୍ଠା)

(୪) ଛାପା ପୁସ୍ତକରେ ୪୬ ଷଟ୍‌ଚତ୍ୱାରିଂଶ ପୃଷ୍ଠା ପଢ଼ନ୍ତୁ ।

ଏହା ଦାସଙ୍କର କପୋଳକଳ୍ପିତ ନୁହେଁ । ଏହା ପୁରାଣାନ୍ତରରେ ଅନୁସନ୍ଧେୟ । ଦାସେ ପୁଣି ଲେଖିଅଛନ୍ତି କି କପିରାଜ ବାଳିଙ୍କର ଅଙ୍ଗଦ ଛଡ଼ା ଆହୁରି ଛଗୋଟି ପୁତ୍ର ଥିଲେ । ଏହାର ପ୍ରମାଣ ସୁଦ୍ଧା ଅନୁସନ୍ଧେୟ ।(୧) ଅତଃପର ମୂଳ ଗ୍ରନ୍ଥର ଷଟ୍‌ତ୍ରିଂଶ ଓ ସପ୍ତବିଂଶ ସର୍ଗରେ ଶ୍ରୀରାମାଦେଶରେ ସୁଗ୍ରୀବଙ୍କ ରାଜ୍ୟାଭିଷେକ ଆଉ ଅଙ୍ଗଦଙ୍କର ଯୌବରାଜ୍ୟକ୍ରମ ଏବଂ ବର୍ଷାବସାନ ପର୍ଯ୍ୟନ୍ତ ଅବଧି ନିର୍ଦ୍ଦେଶକରଣ ପୂର୍ବକ ସାନୁଜ ସାନୁଗ ରାମଚନ୍ଦ୍ରଙ୍କର ପ୍ରସ୍ରବଣ ଗିରିରେ ଅବସ୍ଥାନ କ୍ରମ ବର୍ଣ୍ଣିତ ଅଛି ।

ଏଥିରେ ପ୍ରସ୍ରବଣ ଗିରିର ଅବସ୍ଥାନ ବର୍ଣ୍ଣନାର ସହ ରାମଙ୍କର ଶୋକ ପ୍ରକାଶ ଆଉ ଲକ୍ଷ୍ମଣ ପ୍ରଦତ୍ତ ତଦୀୟ ସମାଶ୍ୱାସନର କ୍ରମ ମଧ ବର୍ଣ୍ଣିତ ଅଛି ।(୨) ଏ ସ୍ଥଳେ ଦାସେ ମଧ ଏହା ହିଁ ଲେଖି ଅଛନ୍ତି । ମୂଳରେ ଯେପରି ସୁଗ୍ରୀବ ଶ୍ରୀରାମଙ୍କୁ ବର୍ଷା ସମୟତକ କିଷ୍କିନ୍ଧ୍ୟାରେ ଅବସ୍ଥାନ ସକାଶେ ପ୍ରାର୍ଥନା କରିଅଛନ୍ତି ତଥାଚ ରାମ ଯେପରି ପିତୃସତ୍ୟ  ଅକ୍ଷୁଣ୍ଣ ରକ୍ଷାର୍ଥ ନଗର ନିବାସ ଅସ୍ୱୀକାର କରି ଅଛନ୍ତି, ଦାସେ ମଧ ତାହା ଠିକ୍ ଲେଖିଅଛନ୍ତି । କିନ୍ତୁ ସେ ଯାହା ରାମ ପ୍ରଥମେ କିଷ୍କିନ୍ଧ୍ୟାରୁ ଫେରି ଋଷ୍ୟମୂକ ଯାଇ ପରେ ମାଲ୍ୟବନ୍ତରେ ଅବସ୍ଥାନ କଲେ  ବୋଲି କହନ୍ତି(୩) ତାହା କିପରି ? ଠିକ୍, ବୋଧହୁଏ ନାହିଁ ତ । କିଷ୍କିନ୍ଧାରୁ ଋଷ୍ୟମୂକ  ସମ୍ଭବତଃ ଅପେକ୍ଷାକୃତ ନେଦିଷ୍ଠ ସୁତରାଂ ମୂଳାନୁମତ ଫେର୍ ତତ୍ର ଗମନ ରାମଙ୍କର ଅଭୀଷ୍ଟ ନୁହେଁ ।(୪)

ବାଲ୍ମୀକିଙ୍କ ରାମାୟଣର ଏହି ଅଷ୍ଟବିଂଶ ସର୍ଗରେ ୬୦ ଷଷ୍ଠି ଗୋଟି ଶ୍ଳୋକରେ ବର୍ଷାକାଳୀୟ ବର୍ଣ୍ଣନାରେ ନିମ୍ନରେ ଶଂସିତ ବିଷୟ ବହୁ ସୁନ୍ଦର ମନୋହର ପଦ ବିନ୍ୟାସ

---

(୧) ଅଙ୍ଗଦର ମୂଳେ ସେହୁ ସାତ ପୁତ୍ର ଘେନି
ଶିରେ କରତାଡ଼ି ପୁଣି କାନ୍ଦଇ କାମିନୀ । (୪୫ପୃ.)

(୨) ଅଭିଷିକ୍ତେ ତୁ ସୁଗ୍ରୀବ ପ୍ରବିଷ୍ଟେ ବାନର ଗୁହାଂ ।
ଆଜଗାମ ସହ ଭ୍ରାତା ରାମଃ ପ୍ରସ୍ରବଣଂ ଗିରିଂ । ୨୭ସ., ୧ ଶ୍ଳୋ.
ନିୟମ୍ୟ କୋପଂ ପ୍ରତିପାଲ୍ୟତାଂ ଶରତ୍ କ୍ଷମସ୍ୱ ମାସାଂଶ୍ଚତୁରୋ ମୟା ସହ ।
ବସାଚଲେଽସ୍ମିନ୍ ମୃଗରାଜସେବିତେ ସଂବର୍ଦ୍ଧୟନ୍‌ଶତ୍ରୁବଧେ ସମୁଦ୍ୟତଃ ।
(ଶତ୍ରୁବଧେ ସମୁଦ୍ୟମଂ) ୨୭ସ. ୪୮ ।
ନିୟମ୍ୟେତି – ଚତୁରୋମାସାନ୍ ଆଷାଢ଼ ଶ୍ରାବଣ ଭାଦ୍ରପଦାଶ୍ୱଯୁଜାନ୍, ଶରତ୍ କାର୍ତ୍ତିକ ମାସଃ – ଇତି ଗୋବିନ୍ଦରାଜଃ ।

(୩) ତାରାକୁ ପ୍ରବୋଧି ବାହୁଡ଼ିଗଲେ ରାମ । ଋଷ୍ୟମୂକ ପର୍ବତେ କରନ୍ତି ବିଶ୍ରାମ ।
ରଜନୀ ପାହାନ୍ତେ ତହୁଁ ପୁଣି ଚଳିଗଲେ । ମାଲ୍ୟବନ୍ତ ଗିରିରେ ସେ ପ୍ରବେଶ ହୋଇଲେ । (୪୯ପୃ.)

(୪) ପ୍ରସ୍ରବଣ ଗିରିର ନାମାନ୍ତର ମାଲ୍ୟବାନ୍ ବା ମାଲ୍ୟବନ୍ତ । ରାମ ସୁଗ୍ରୀବଙ୍କୁ ଅଭିଷେକାର୍ଥ ପଠାଇଥିବା ସମୟରେ ଯାହା କହିଅଛନ୍ତି, ସେଥିରୁ ଅନୁମିତ ହୁଏ ଯେ ମାଲ୍ୟବନ୍ତ ପ୍ରସ୍ରବଣଗିରି କିଷ୍କିନ୍ଧାରୁ ଅତିଦୂରବର୍ତ୍ତୀ ନୁହେଁ । ଯଥା : ଅହଂ ସମୀପେ ଶିଖରେ ପର୍ବତସ୍ୟ ସହାନୁଜମ୍, ବତ୍ସ୍ୟାମି ବର୍ଷବିବସାନ୍ ତତସ୍ତ୍ୱଂ ଯତ୍ନବାନ୍ ଭବ, ଇତି, ଅଧ୍ୟାତ୍ମରାମାୟଣେ କି.କା.୩ସ.

ସହ ବର୍ଣ୍ଣିତ ଅଛି । ଏଥିରେ ଅନେକତ୍ର ରାମଚନ୍ଦ୍ର ସୀତାଙ୍କୁ ଉଦ୍ଦେଶ୍ୟ କରି ଅଛନ୍ତି । ମେଘର ସୂର୍ଯ୍ୟାଂଶୁଦ୍ୱାରା ସମୁଦ୍ରରୁ ଆନୀତ ଜଳରୂପିଣ ଗର୍ଭଧାରଣ, ମେଘର ସୋପାନତ୍ୱ, ଅନେକତ୍ର କୂଟଜାର୍ଜୁନର ପ୍ରକାଶ, ସନ୍ଧ୍ୟାରାଗର ଅରଣ ଅଭ୍ରର ଘଟାଚ୍ଛାଦତ୍ୱ, ମେଘର କାମାତୁରତ୍ୱ, ମହିର ସୀତାତୁଲ୍ୟତ୍ୱ, ମେଘୋଦର ବିନିର୍ମୁକ୍ତ ବାତର କେତକୀ ଗନ୍ଧଯୁକ୍ତତ୍ୱ, ପର୍ବତର ଅଭିଷିକ୍ତ ସୁଗ୍ରୀବଙ୍କ ତୁଲ୍ୟତ୍ୱ, ପର୍ବତର ପ୍ରାଧୀତ-ବ୍ରାହ୍ମଣତ୍ୱ, ବିଦ୍ୟୁତ୍ ରୂପକ ହେମିକଶାଣତାଡ଼ନରେ ମେଘର ଅଧୀୟମାନ ସଖେଦ ମାଣବକତ୍ୱ, ସନ୍ଧ୍ୟାର ରାଗବତୀସ୍ତ୍ରୀତ୍ୱ, ସବିଦ୍ୟୁତ୍ ମେଘର ରାବଣାଂକସ୍ଥିତା ସୀତାଙ୍କ ତୁଲ୍ୟତ୍ୱ, ଦିଗମାନଙ୍କର ମେଘାନୁଲିପ୍ତତ୍ୱ, ସତତ ସଂସାରରେ ବଂଭ୍ରମ୍ୟମାଣ ମାନବ-ସଦୃଶ, ପବନର ରଜଃ-ପ୍ରଶାନ୍ତତ୍ୱ, ପଥିକର ସ୍ୱଗୃହାଗମନ, ମେଘର ପ୍ରଶାନ୍ତ ମହାର୍ଣ୍ଣବତ୍ୱ, ଶୀଘ୍ର ଶୀଘ୍ର ପ୍ରବାହିତ ପାର୍ବତ୍ୟନଦୀ ତଟରେ ସର୍ଜ୍ଜକ ଓ କଦମ୍ବ ପୁଷ୍ପର ଅପିଚ କେକାରବର ପ୍ରକାଶ, ପକ୍ୱ ଜମ୍ବୁ ଫଳ ଓ ଆମ୍ର ଫଳର ପରିପତନ, ମେଘର ସାମରିକ ମତ୍ତଗଜେନ୍ଦ୍ରତ୍ୱ, ଅନେକତ୍ର ମୟୂର ନୃତ୍ୟ ଓ ଶାଦ୍ୱଳସୌନ୍ଦର୍ଯ୍ୟ, ସବଳା ମେଘର ସଲିଳାତିଭାରବଶରୁ ପର୍ବତ ଶୃଙ୍ଗରେ ବିଶ୍ରାମ, ମେଘରେ ବଳାକାମାଳାର ପୌଣ୍ଡରିକିମାଳାର ସାଦୃଶ୍ୟ, ଶାଦ୍ୱଳ ଭୂମିର ଇନ୍ଦ୍ର-ଗୋପନିଚୟରେ ଚିତ୍ରିତତ୍ୱ, ନଦ୍ୟାଦିର ସାଗରାଦିର ପ୍ରତିଗମନ, ବୃଷର ଗୌପ୍ରତି ସକାମ, ମତ୍ତଗଜାଦିର ଗର୍ଜ୍ଜନାଦି ଚେଷ୍ଟା, କଦମ୍ବ ଶାଖାରେ ବିଲମ୍ବମାନ ଭ୍ରମରମାନଙ୍କର ଧାରାପାତାଭିଘାତରୁ ପୁଷ୍ପରସ-ବିସର୍ଜ୍ଜନ, ପକ୍ୱଜମ୍ବୁଫଳ ନିଚୟରେ ତଦୀୟଶାଖାର ମନୋହାରିତା, ମେଘର ରଣୋଦ୍ୟତ ବାରଣତ୍ୱ, ଶୈଳବନାନୁସାରି-ଗଜର ମେଘ ପ୍ରତିରଣ ଗଜେନ୍ଦ୍ରଶଙ୍କା, ବନାନ୍ତରରେ ଷଟ୍ପଦ ସଙ୍ଗୀତ, ଆପାନଭୂମି ରଚନା, ସୁରେନ୍ଦ୍ରଦତ୍ତ ପତ୍ରପୁଟରେ ସଂଲଗ୍ନ ମୁକ୍ତାଫଳ ସଂକାଶ– ସଲିଳ ବିନ୍ଦୁ ନିଚୟକୁ ତୃଷିତ ଚାତକମାନେ ପାନ କରିବା,(୧) ଷଟ୍ପଦ ଓ ପ୍ଲବଙ୍ଗ ନାଦରେ ମେଘ-ମୃଦଙ୍ଗର ନାଦ ମିଶିଲାରୁ ବନରେ ସଙ୍ଗୀତାଳାପର ପ୍ରବୃତ୍ତି, ଅନେକତ୍ର ମୟୂର ସଙ୍ଗୀତ, ମେଘନାଦ ଶ୍ରବଣରେ ପ୍ଲବଙ୍ଗମାନଙ୍କର ଚିରନିଦ୍ରା ପରିହାର, ନଦୀମାନଙ୍କର ତଟାପବାହନ ପୂର୍ବକ ସ୍ୱପତି ପ୍ରତି ଗମନ, ଭ୍ରମରମାନଙ୍କର ନବାମ୍ବୁଧାରାହତ ସରୋଜ ଓ କଦମ୍ବ ପୁଷ୍ପ ବିସର୍ଜ୍ଜନ, ଗଜର ମତ୍ତତ୍ୱ ଓ ବୃଷର ମୁଦିତତ୍ୱ ଆଉ ନଗେନ୍ଦ୍ରର ବିଶ୍ରାନ୍ତତ୍ୱ, ନଗେନ୍ଦ୍ରର ରମଣୀୟତ୍ୱ, ନରେନ୍ଦ୍ରମାନଙ୍କର ନିଭୃତତ୍ୱ, ସର୍ବତ୍ର ଜଳ ପ୍ରବାହରେ ବିପ୍ରତିପନ୍ନ ମାର୍ଗ, ନଗରାଜମାନଙ୍କର ନରରାଜ ସ୍ୱରୂପ ଇନ୍ଦ୍ରଦତ୍ତ ପବନୋପନୀତ ଘନାମ୍ବୁ କୁମ୍ଭରେ ଅଭିଷେକ, ମେଘଚ୍ଛାଦନରୁ ଦିକ୍-ସୂର୍ଯ୍ୟ-ନକ୍ଷତ୍ରାଦିର ଅଦର୍ଶନ, ଶୈଳୋପଳସ୍ଖଳିତ ଜଳଧାରାର ସୁରତାସକ୍ତ

(୧) ମୁକ୍ତାସଂକାଶଂ ସଲିଳଂ ପତଦ୍‌ବୈ, ସୁନିର୍ମଳଂ ପତ୍ରପୁଟେଷ୍ୱ ଲଗ୍ନଂ, ହୃଷ୍ଟ ବିବର୍ଣ୍ଣଚ୍ଛଦନା ବିହଙ୍ଗାଃ, ସୁରେନ୍ଦ୍ର ଦତ୍ତଂ ତୃଷିତାଃ ପିବନ୍ତି । ୩୫ ଶ୍ଳୋ. ବିବର୍ଣ୍ଣଚ୍ଛଦନାଃ ବିବିଧ ବର୍ଣ୍ଣ ପକ୍ଷାଃ, ବିହଙ୍ଗାଃ, ଚାତକାଃ, ସୁରେନ୍ଦ୍ରଦତ୍ତଂ ଦେବେନ୍ଦ୍ର ଦତ୍ତଂ, ଚାତକାଃ ଭୂସଂଜଳଂ ନପିବନ୍ତି, କିନ୍ତୁ ସଦ୍ୟୋବର୍ଷେ ଦେବତାଭୂତେନ୍ଦ୍ରଦତ୍ତମେବ ପିବନ୍ତୀତି ପ୍ରସିଦ୍ଧିଃ ଇତି ଗୋବିନ୍ଦରାଜଃ ।
ମୁକ୍ତାଭିସମାନଃପ୍ରକାଶଃ ପ୍ରକାଶୋଯସ୍ୟ ତତ୍ତଥୋକ୍ତଂ ଇତି ମହେଶ୍ୱର ଦୀକ୍ଷିତଃ ।

ସ୍ୱର୍ଗସ୍ତ୍ରୀମାନଙ୍କର ବିଚ୍ଛିନ୍ନ ହାର ମୌକ୍ତିକ ସାଦୃଶ, ପକ୍ଷିର କୁଲାୟ ବିଶ୍ରାମ, ପଙ୍କଜର ନିମିଳନ ଆଉ ମାଳତିର ବିକଶନ ଦ୍ୱାରା ସୂର୍ଯ୍ୟାସ୍ତ ଗମନ-ବିଜ୍ଞାନ, ରାଜାମାନଙ୍କର ଯୁଦ୍ଧ ନିବୃତ୍ତି, ଭାଦ୍ରପଦରେ ସାମଗ ବ୍ରାହ୍ମଣମାନଙ୍କର ବେଦାଧ୍ୟୟନରେ ସୋଲଣତ୍ୱ ପ୍ରଭୃତି ବିଷୟ ଆଳଙ୍କାରିକ ଛଟାରେ ବର୍ଣ୍ଣିତ ଅଛି ।

ବଳରାମ ଦାସେ ମଧ ରାମଙ୍କର ପ୍ରସ୍ରବଣାବସ୍ଥାନ ସଙ୍ଗେ ସଙ୍ଗେ ବର୍ଷାଋତୁର ବର୍ଣ୍ଣନା କରି ଅଛନ୍ତି; ମାତ୍ର ଏଥିରେ ମୂଳରେ ବର୍ଣ୍ଣିତ ବିଷୟମାନ ପ୍ରାୟଶଃ ନାହିଁ । ପରନ୍ତୁ ବର୍ଷାରେ ବର୍ଣ୍ଣନୀୟ କେତେକ ବିଷୟକୁ ନିଜର ଅନୁଭୂତିର ଅନୁମତରେ ସୁସଂଗତେ ବର୍ଣ୍ଣି ଯାଇ ଅଛନ୍ତି । କେବଳ ଏ ସ୍ଥଳେ ନୁହେଁ, ସର୍ବତ୍ର ସମ୍ୟକ୍ ପରିଶୀଳନରେ ଦେଖିଯାଉଅଛୁଁ । ଏ ମହାଶୟ କୁତ୍ରାପି ମୌଳିକ ସ୍ଥୂଳ ବିଷୟକୁ ଅତିକ୍ରମି ନାହାନ୍ତି । ଏହାର ଲେଖା ପରିପାଟିରୁ ଜଣାଯାଏ, ଏ ମହାଶୟ ମୌଳିକ ସ୍ଥୂଳକ୍ରମକୁ, ଅକ୍ଷୁଣ୍ଣତଃ ଅନୁସରି ସର୍ବତ୍ର ସ୍ୱକୀୟ ଣାସ୍ତ୍ରୀୟ ଅନୁଭୂତି ବିଭୂତିକୁ ପ୍ରକାଶିତ କରିଅଛନ୍ତି । ଏହାଙ୍କର ବର୍ଷାଋତୁର ବର୍ଣ୍ଣନା ତିନିଗୋଟି ପୃଷ୍ଠାରେ ହୃଦୟଗ୍ରାହୀ ରୂପେ ବର୍ଣ୍ଣିତ ଅଛି । (୧) ଏହି ବର୍ଣ୍ଣନାର ଭାବଗୁଡ଼ିକ ଠିକ୍ ମୌଳିକାନୁମତ ନ ହେଲେ ହେଁ କବିସମୟର ଅଭିମତ ନୁହେଁ । (୨) ମୂଳର ବିଷୟମାନ ଧରି ପାଠକ ଦେଖି ନେବେ ଏଥିରେ ତହିଁରୁ କେତେକ

(୧) ଛାପା ପୁସ୍ତକରେ ୪୯ ପୃଷ୍ଠାଠାରୁ ୫୧ ପୃଷ୍ଠାଯାଏ ପଢ଼ନ୍ତୁ ।

(୨) (1) ସନ୍ଧ୍ୟାକାଳେ ଆକାଶରେ ଉଦେ ଆର୍ଦ୍ରାବଳୀ ।
(2) ଶୀତଳ ପବନ ଯେ ବହଇ ଚଉବତି ।
(3) ଅସ୍ତକାଳେ ଆଦିତ୍ୟ ଦିଶଇ ରଙ୍ଗବର୍ଣ୍ଣ ।
(4) ନିର୍ମଳ ଗଗନେ ଯେ କ୍ଷଣକେ ମେଘ ଉଇଁ
(5) ବିଜୁଳି ଦେଖାଇଣ ମାରଇ ଘଡ଼ଘଡ଼ି
(6) ନାନା ପକ୍ଷୀମାନେ ଉଡ଼ିଁ ଭିଅାଇଲେ ବାସ
(7) ନଦୀମାନେ ବଢ଼ନ୍ତି ଯେ ପୂରେ ପୁଷ୍କରିଣୀ
(8) ବୃକ୍ଷେ କଳିମାନ ହରନ୍ତି ପ୍ରଚଣ୍ଡ ପବନେ
(9) ଦକ୍ଷିଣ ସମୁଦ୍ର ରୂପେ ସମୁଦ୍ର ପାଣି ତୋଳି ।
(10) କ୍ଷଣେକ୍ଷଣେ ଦିବାକର ଦିଶେ ଆକାଶରେ ।
(11) ଢଳେ ଦିଶଇ ଯେ ଗଗନର ତାରା
(12) ମୟୂରେ ଛଡ଼ାଇ ଯେ ମଦନେ ଉନମତ ।
(13) କଦମ୍ବ ପୁଷ୍ପମାନ ଫୁଟନ୍ତି ନିରନ୍ତର ।
(14) ଜମ୍ବୁ ଫଳ ପାଚିକଃ ପଡ଼ନ୍ତି ଭୂମିରେ ।
(15) ଅଖଣ୍ଡିତ ଧାରା ଯେ ନ ଦିଶେ ଦଶଦିଶ ।
(16) ସୂର୍ଯ୍ୟଙ୍କ କିରଣ ଯେ ନ ଦିଶେ ଗଗନେ ।
ଇତ୍ୟାଦି, ଛାପା ପୁସ୍ତକରେ ମୁଦିରକୁ ମେଦୁର କରିଛନ୍ତି ।

ସ୍ଥୂଳ ବିଷୟର ଆଭାସ ସୁଦ୍ଧା ବିଦ୍ୟମାନ ରହିଅଛି । ରହିବା ହିଁ ସ୍ୱାଭାବିକ, କାରଣ କବି ବିଶେଷଙ୍କର କଳ୍ପନା ଭିନ୍ନ ପ୍ରକାର ହେଲେ ସୁଦ୍ଧା ନିର୍ଦ୍ଦିଷ୍ଟ ବର୍ଣ୍ଣନାମାନଙ୍କରେ ସମ୍ଭାବ୍ୟ ବିଷୟର ସ୍ଥୂଳତାରେ ବିଭିନ୍ନ ହୋଇ ନ ପାରେ । ପାଠକଗଣ ! ମୌଳିକ ବର୍ଣ୍ଣନା ଏବଂ ଦାସୀୟ ବର୍ଣ୍ଣନାର ପ୍ରଦତ୍ତ ପଂକ୍ତି କେତେକକୁ ବିଶ୍ଳେଷିତ କରି ଭାବ ସମନ୍ୱୟ କରିବାକୁ ଗଲେ, ଅବଶ୍ୟ ମୌଳିକ ସାଦୃଶ୍ୟ ହୃଦୟଙ୍ଗମ କରିପାରିବେ, ସନ୍ଦେହ ନାହିଁ । ଏ ସ୍ଥଳେ ଦାସେ ସୀତା ଉଦ୍ଦେଶ୍ୟରେ ରାମଙ୍କ ଉକ୍ତି ପଂକ୍ତି ମାଧମରେ ସୀତାଙ୍କର ଭର୍ତ୍ତୃଭକ୍ତାତ୍ୱ ଆଉ ଦେବସ୍ତ୍ରୀତ୍ୱମୂଳକ ଲକ୍ଷଣର କେତେକ କଥା ମଧ ପ୍ରକାଶ କରିଅଛନ୍ତି । (୧)

କିନ୍ତୁ ବର୍ଷା ଋତୁର ପ୍ରଦ୍ୟୋତନରେ ସମୁତ୍କଣ୍ଠିତ ହୃଦୟ ରାମଚନ୍ଦ୍ର ସୀତାଙ୍କ ଉଦ୍ଦେଶରେ ଯେ ବିଳାପ କରି ଅଛନ୍ତି, ସେଥି ମଧରେ କବି ମହାଶୟ ଆଶୁଲେଖାଧୋରଣୀର ପ୍ରବାହରେ ଭାସମାନ ରହି ପ୍ରମାଦତଃ ସୀତାଙ୍କର ସୁପବିତ୍ରତମ ଚରିତ୍ରରେ ଦୁଇ ଚାରି ପଦ୍ୟରେ କିଛି ମାତ୍ର କଳଙ୍କ ଲେପନର ଚିତ୍ରଣ କରିଦେଇଥିବା ଦେଖାଯାଉଅଛି । ଏଥିଦ୍ୱାରା ତାହାଙ୍କର ପୂର୍ବାପର କଥାର ଅସଙ୍ଗତି ଓ ଅସଂଲଗ୍ନତା ମଧ ଜଣାଯାଉଅଛି । ତଥାପି ବିଶ୍ୱାସ କରିପାରୁନାହିଁ, ଏହି କେତେକ କଳଂକିତ ପଂକ୍ତି ମତିମାନ୍ ବଳରାମ ଦାସେ ଲେଖିଅଛନ୍ତି । ଦାସ ମହାଶୟ ଅନେକତ୍ର ସୀତାଙ୍କର ସ୍ୱୟଂ ଲକ୍ଷ୍ମୀସ୍ୱରୂପାତ୍ୱ ଏବଂ ଅନନ୍ୟସାମାନ୍ୟ ଚରିତ୍ରର ପରମ ବିଶୁଦ୍ଧତ୍ୱ ଆଉ ରାମୈକତାନତ୍ୱ ପ୍ରକାଶ କରି ସୁଦ୍ଧା ଏହିପରି ଅବିଚାରର କଥା ପ୍ରକାଶ କରିଥିବେ ନାହିଁ । ଏହି କେତେକ ଗୋଟି ପଦ୍ୟ ଦୁର୍ବିଦଗ୍ଧବିଦଗ୍ଧବିଚାରହୃଦୟ କୁମତି ଅନୁଲେଖକ କେହି ମିଶାଇ ଦେଇ ଅଛନ୍ତି । (୨) ଏ ସ୍ଥଳେ ଦାସେ ପୁଣି ମୂଳଗ୍ରନ୍ଥରେ ଅନୁକ୍ତ କେତେଗୁଡ଼ିଏ କଥା ଲେଖିଅଛନ୍ତି । ଏ ମହାଶୟ କହନ୍ତି, ପାର୍ବତୀ ମହାଦେବଙ୍କୁ ପ୍ରଶ୍ନ କଲେକି ଯେ କି

(୧) ଶୀତକୁ ଉଷୁମ ଗୋ ଅଟଇ ତୋର କାୟେ
ଉଷୁମକୁ ଶୀତଳ ଶରୀର ସୁଖ ପାଏ ।
ବରଷାକୁ ଉଷୁମ ଦୁଇମତ । ସାଧୁ ସାଧୁ ସୁନ୍ଦରୀ ତୁ ଜନକ ଦୁହିତ ।
କବି ଏ ସ୍ଥଳେ ଅଳଙ୍କାର ଶାସ୍ତ୍ରର ବାକ୍ୟକୁ ଅନୁସରି ଅଛନ୍ତି, ୫୦ ପୃ.
ଯଥା- ଶୀତେଷ୍ଣୁ କୋଷ୍ଣ ସର୍ବାଙ୍ଗୀ ଗ୍ରୀଷ୍ମେ ଯା ସୁଖଶୀତଳା
ଭର୍ତ୍ତୃଭକ୍ତା ଚଯା ନାରୀ ସା ଭବେଦ୍ ବରବର୍ଣ୍ଣନୀ
ଇତି ଅଳଙ୍କାର ଶେଖରଃ

(୨) ପରପୁରୁଷରେ ସଖି ବଳାଇଲୁ ମତି । ମୋତେ ତୁ ଗୋ ଛାଡ଼ିଲୁ ମହାସତୀ ।
ଭୋ ସଖି ଏ ମୋହର ଶରୀରେ ପ୍ରାଣ ଥାନ୍ତେ । ଦେଖୁ ଦେଖୁ ଆନତୁଗୋ ହୋଇଲୁ ଜୀବନ୍ତେ
ଗଜକୁମ୍ଭ ଜିଣି ଯେ ତୋହର ବେନି କୁଚ, କଟିକ୍ଷୀଣ ବୃଷାଳ ଜଘନ ଶୋଭା ସଞ୍ଚ ।
କାହାକୁ ପ୍ରାପତ ସଖି କଲୁ ତାହା ନେଇ । ସତ୍ୟ ଉଚ୍ଚାରି ତୁଯେ ଥିଲୁ ପ୍ରାଣ ସହି ।
କାହା ତୁଲେ ସଖି ତୁରେ କରିଥିବୁ ପ୍ରେମ, ମୋର ତହୁଁ ଆନକେହି ହୋଇବାକ କ୍ଷମ । ୫୧ ପୃ.

ଚତୁର୍ଦ୍ଦଶ ବ୍ରହ୍ମାଣ୍ଡର ଅଧିପତି ଓ ଅନ୍ତର୍ଯ୍ୟାମୀ ସେ କିପାଇଁ ଏହିପରି ଅଜ୍ଞାନତାରେ ପଡ଼ିଅଛନ୍ତି । (୧) ଏହାର ଉତ୍ତରରେ ମହାଦେବ ସ୍ୱପ୍ରିୟାଙ୍କୁ ଗୋଟିଏ ଦୀର୍ଘକାୟ ଘଟନାର ବିବରଣ କହିଅଛନ୍ତି । ଏହା ମୂଳ ଗ୍ରନ୍ଥରେ ଉକ୍ତ ନାହିଁ । ଦାସେ ପୁରାଣାନ୍ତରରୁ (ବିଶେଷତଃ ପଦ୍ମପୁରାଣର ଅନୁସରଣରେ) ଏହି କଥାର ଅବତାରଣା କରି ଚରିତଟିକୁ ସାଙ୍ଗତ୍ୟ ସଂଲଗ୍ନତା ସହ ମିଳାଇ ଦେଇ ଅଛନ୍ତି । ଶଂସିତ ଘଟଣାର ସଂକ୍ଷିପ୍ତ ବିବରଣ ଏହି, ପୁରାକାଳୀନ ମରୁତ ରାଜାଙ୍କର ଲକ୍ଷ୍ମୀଅଂଶ-ସଂଭୂତା ଲୀଳାବତୀ ନାମ୍ନୀ ଗୋଟିଏ କନ୍ୟା ଥିଲେ । ସମୟେ ପର୍ବତ ଓ ନାରଦ ମୁନିଦ୍ୱୟ ତାହାଙ୍କ ସୁଗୁଣ ସୌନ୍ଦର୍ଯ୍ୟାଦିରେ ମୁଗ୍ଧ ହୋଇ ତାହାଙ୍କ ପିତାଙ୍କ ନିକଟରେ ତାହାଙ୍କୁ ପତ୍ନୀତ୍ୱରେ ପ୍ରାର୍ଥନା କଲେ । ରାଜା ବିଚାରପୂର୍ବକ କହିଲେ କି ଆପଣ ଦୁହେଁ କାଲି ଆସନ୍ତୁ । ମୋର କନ୍ୟାଟି ଯାହାଙ୍କୁ ବରଣ କରିବ ସେ ତାହାଙ୍କୁ ପାଇବ । କିନ୍ତୁ ପ୍ରୋକ୍ତ କନ୍ୟାଟି ଶ୍ରୀମଦ୍ ନାରାୟଣଙ୍କୁ ପାଇବା ଇଚ୍ଛାରେ କଣ୍ୱ ମହର୍ଷିଙ୍କ ପ୍ରଦତ୍ତ ମନ୍ତ୍ର ପାଠକରି ସତତ ଧ୍ୟାନନିଷ୍ଠ ରହିଥାଆନ୍ତି । ତାପରେ ଶ୍ରୀମନ୍ ନାରାୟଣ ଲୀଳାବତୀଙ୍କର ନିଜ ପ୍ରତି ଏକମନସ୍ୱିତା ଓ ଦୃଢ଼ ଭକ୍ତି ଜାଣି ଗରୁଡ଼ାରୋହଣରେ ଆସି ତାହାଙ୍କୁ ଘେନି ବାହାରିଗଲେ । ତାପରେ ନାରଦ ଓ ପର୍ବତ ମନେ କଲେ ରାଜାଙ୍କ ଜ୍ଞାତସାରରେ ଅପିଚ ସ୍ୱୀକାରରେ ନାରାୟଣ ଆମ୍ଭମାନଙ୍କର ଅଭିଳଷିତ ଓ ପ୍ରାର୍ଥିତ କନ୍ୟାଟିକୁ ଘେନି ଯାଉ ଅଛନ୍ତି । ସେ ଦୁହେଁ ଏତାଦୃଶ ଅବିଚାରରେ ରାଜାଙ୍କୁ ଅଭିଶପ୍ତ କଲେ । (୨) ମରୁତ୍ ରାଜା ଏଥିରେ ଏକାନ୍ତ ଦୁଃଖିତ ହୋଇ ନାରାୟଣଙ୍କ ଚରଣରେ ଶରଣାପନ୍ନ ହେଲେ । ଏ ସମୟରେ ଅଜ୍ଞାନ ଋଷିଶାପ ଅନୁସାରେ ମରୁତ ରାଜାଙ୍କୁ ଆକ୍ରମଣ କରିବା ପାଇଁ ସଶରୀରେ ଆସି ଉପଗତ ହେଲା । ନାରାୟଣ ତାକୁ କହିଲେ, ହେ ଅଜ୍ଞାନ ! ଏହି ଘଟନାରେ ମରୁତ ରାଜାଙ୍କର କିଛି ହିଁ ଦୋଷ ନାହିଁ, ତଥାପି ଋଷିଙ୍କ ବଚନ ବ୍ୟର୍ଥ ହୋଇ ନପାରେ, ଅତଏବ ତୁ ଆସ, ମୋତେ ଆକ୍ରମଣ କର, ମୋଠାରେ ତୁ କେତେକ ସମୟ ଅବସ୍ଥାନ କର । (୩) ତଥାପି ଅଜ୍ଞାନ ନାରାୟଣଙ୍କୁ ଆକ୍ରମଣ କରିବାରେ ଅତ୍ୟନ୍ତ ଭୀତ ହେଲା । ତେତେବେଳେ ପୁଣି ନାରାୟଣ ତାକୁ କହିଲେ, ହେ ଅଜ୍ଞାନ ! ହେଉ ତେବେ, ତୁ ଯଦି ଏକ୍ଷଣି ମୋତେ ଆକ୍ରମିବାରେ ଭୀତ ହେଉ ତେବେ ମୁଁ ସମୟେ ଦାଶରଥି ରୂପେ ଅବତୀର୍ଣ୍ଣ ହେବି । ତେତେବେଳେ ତୁ

(୧) ସେ କିପାଁ ଅଜ୍ଞାନ ହୋଇ କିଛି ନ ଜାଣି ? ୫୨ ପୃ.

(୨) ତୁଅସି ଅଜ୍ଞାନ ଯେ ନଜାଣ ତୁହି କିଛି,
ଯେଣୁ ତୋହର ହୃଦରେ ଏତେ ପାପ ଅଛି । ୫୫ ପୃ.

(୩) ତୁହୋ ଅଜ୍ଞାନ ଆମ୍ଭର ଦେହେ ପୁଣି ଥାଅ, ଥୋକାଏକ କାଳ ରହି ଭୋଗ କରିଯାଅ । ୫୬ ପୃ.

ମୋତେ ଆକ୍ରମଣ କରିବୁ । ଏହି ହେତୁରୁ ଏହିକ୍ଷଣି ସେହି ଅଜ୍ଞାନ ରାମଙ୍କୁ ଆକ୍ରମଣ କରିଅଛି, ଇତ୍ୟାଦି । (୧)

ଏହା ପରେ ପରେ ଦାସେ ମୂଳରେ ଅନୁକ୍ତ ଶ୍ରୀରାମଙ୍କର ସୀତାପ୍ରାପ୍ତି ସଂକ୍ରାନ୍ତ ଗୋଟିଏ ଶୁଭ ସ୍ୱପ୍ନର ବିବରଣ ଦେଇଅଛନ୍ତି । ଏହା ଅମୌଳିକ ହେଲେ ହେଁ ଏଥିରେ ଅବଶ୍ୟ, କବିଙ୍କର ଗୂଢ଼ ଅଭିପ୍ରାୟ ରହିଅଛି । ରାମଙ୍କର ସୀତା ପ୍ରାପ୍ତିର ଉପାୟ ସୁଗମ ହେବା ଏବଂ ସେହି ସମୟ ଆସି ସନ୍ନିହିତ ହେବା ଜାଣି କବି ମହାଶୟ ଶ୍ରୀରାମଙ୍କୁ ସୀତାଦେବୀଙ୍କର ସ୍ୱାପ୍ନିକ ସମାବେଶ ପ୍ରାପ୍ତି କରାଇ ଅଛନ୍ତି । (୨)

ଏହା ପରେ ସମାଲୋଚ୍ୟମାନ ରାମାୟଣରେ ଶ୍ରୀରାମ ସୀତାଙ୍କ ବିଳପନରେ ମେଘକୁ ତଦୀୟ ସମ୍ବାଦ ଜିଜ୍ଞାସା କରିବା (୩) ବକପକ୍ଷୀର ଜିଜ୍ଞାସାରେ ଶ୍ରୀରାମ ନିଜର ଆମୂଳାନ୍ତ ଘଟନାମାନ କହି ତାହାଙ୍କୁ ପୁଣି ସୀତାଙ୍କ ସନ୍ଦେଶ ପଚାରିବା ଏବଂ ବକ ପକ୍ଷୀର ମୁଖରୁ ସୀତାଙ୍କୁ ରାବଣ ନେଇଥିବାର କଥା ଶୁଣି ରାମ ତାଙ୍କୁ ବର ମାଗିବା ପାଇଁ ଅନୁରୋଧ କରିବା, ତଥାଚ ତାହାଙ୍କୁ ତଦୀୟ ପ୍ରାର୍ଥନାନୁସାରେ ରାମ ବର ପ୍ରଦାନ କରିଥିବାର କଥାମାନ ଏ ସ୍ଥଳେ ଲେଖାଅଛି । (୪) କିନ୍ତୁ ଏସବୁ ମୂଳଗ୍ରନ୍ଥରେ ଲେଖାଥିବା ଦେଖାଯାଏ ନାହିଁ । ତଥାପି ଏସବୁ ଲୋକବାଦରେ ସୁପ୍ରସିଦ୍ଧ ଅଛି । ଏଥିରେ ପୁଣି ବକ ରାମଙ୍କୁ କହିଅଛି, ରାବଣାପହୃତା ସୀତାଦେବୀଙ୍କର ଅଶ୍ରୁବିନ୍ଦୁମାନ

---

(୧) ଯେବେ ତୁ ମୋତେ ଉପ୍ରୋଧ କଲୁ ହେ ଅଞ୍ଜନ, ରବି ତଳେ ଜାତ ହେବି ଦଶରଥନନ୍ଦନ ।
ମନୁଷ୍ୟ ଶରୀର ହେବି ଶଙ୍ଖଚକ୍ର ଲେଖି, ତେବେ ସାଧ ହୋଇବ ସେ ବିନ୍ଧ୍ରବାର ବଟି ।
ସେ ବେଳେ ତୁ ମୋହର ଅଙ୍ଗେ ଭୋଗ କର । ଭୋ ମହାତ୍ମା ତୁ ମନରେ ଆନ ନ ବିଚାର । ୫୬ପୃ.

(୨) ଫଳମୂଳ ଖାଇତା ବଞ୍ଚିଲେ ବେନିଜନ, ନିଦ୍ରାରେ ଯେ ରଘୁନାଥ ଦେଖିଲେ ସ୍ୱପନ
ଅଯୋଧା ନଗରେ ଯେ ଅଛନ୍ତି ବିଜେ କରି । ରତ୍ନ ପଲଙ୍କେ ଯେ ସୀତାଙ୍କୁ କୋଳେ ଧରି ।
ନାନା ଚାଟୁକଥା ସେହି କୁହାକୁହି ହୋନ୍ତି । ହିଆହିଆ ଭିଡ଼ି ମୁଖେ ଚୁମ୍ବନ ଦିଅନ୍ତି ।
ଶ୍ରୀରାମ ଦକ୍ଷିଣ ଭୁଜ ବୃନ୍ଧା ଯେ ଅଙ୍ଗୁଷ୍ଠି, ଘାତ ପାଇ ଛିଡ଼େ ସୀତା ମୋତିମାଳ ଗୋଟି ।
ଗୋଟି ଗୋଟି ହୋଇ ତଳେ ପଡ଼ିଲାକ ଫିଟି । ଦେଖିଣ ରଖିଲେ ତାଳିମ୍ବପୁଷ୍ପଓଷ୍ଠୀ ।
ରାମଙ୍କୁ ବୋଇଲେ ତୁମ୍ଭେ ଛିଣ୍ଡାଇଲ ହାର, ଗୁନ୍ଥି ଦେବନା ଏବେ ସେ ମୁକୁତା ମୋହର ।
ଏସନ ସ୍ୱପନ ରାମ ଦେଖି ଚେତି ଉଠି, ସୀତା ସୀତା ବୋଲିକରି ଶେଯକୁ ସାଉଁଟି ।

(୩) ଏହା ପଢ଼ିଲେ କାଳିଦାସଙ୍କ ମେଘ ସନ୍ଦେଶ କଥା ହୃଦୟରେ ପ୍ରତିଫଳିତ ହୁଏ । ୫୮ ପୃ.

(୪) ବକର ବର ପ୍ରାର୍ଥନା
ଘୋର ବରଷାରେ ପୁଣ ପାଏ ବଡ଼ ଦୁଃଖ । ଚରିଯିବା ପାଇଁ ମୁହିଁ ନିତାନ୍ତ ବିମୁଖ ।
ବସିବାଠାରେ ଯେ ଯେ ଆହାର ଯେବେ ପାଇ । ତେବେ ବଚନ ତୋହର ସିନା ସିଦ୍ଧ ହୋଇ ।
୬୦ ପୃ.

ମୋ ଦେହରେ ପତିତ ହେଲାରୁ କେବଳ ମୁଁ ନୁହେଁ, ମୋର ସମଗ୍ର ଜାତି ଧବଳ ସମୁଜ୍ଜ୍ୱଳ ହୋଇଅଛନ୍ତି । (୧)

ଏହି କଥାର ଚିତ୍ରଣରେ କବିଙ୍କର ଗୂଢ଼ାଶୟ ଉପଲବ୍ଧ ହୋଉଅଛି ଯେ ସୀତାଙ୍କର ପବିତ୍ରତମ ଅକ୍ଷିନିଃସୃତ ଜଳକେ ଏକାବେଳେକେ ମୁଁ କେବଳ ନୁହେ ମୋ ସାହଚର୍ଯ୍ୟରୁ ଯେପରିକି ସାଧୁ ସନ୍ଥ ସହବାସ ମହିମାରୁ ପାପିନିଚୟର ପାପ ନିର୍ମୁକ୍ତି ତଦନୁରୂପ, ମୋର ସମଗ୍ର ଜାତି ପାପ କଂଚୁକରୁ ଏକାନ୍ତ ନିର୍ମୁକ୍ତ ହୋଇ ଯାଇଅଛନ୍ତି । ମୌଳିକ ଏକତ୍ରିଂଶ ସର୍ଗରେ ଶରତ ପ୍ରବେଶ ମାତ୍ରେ ଭୋଗାସକ୍ତ ସୁଗ୍ରୀବଙ୍କୁ ମାରୁତି ଶ୍ରୀରାମଙ୍କ କଥା ଜଣାଇବା, ତଥାଚ ସୁଗ୍ରୀବ କପିସେନାମାନଙ୍କ ଆନୟନାର୍ଥ ନୀଳ ପ୍ରଭୃତିଙ୍କୁ ପଞ୍ଚଦଶ ଦିବସ ଅବଧି ନିର୍ଦ୍ଦେଶ ପୂର୍ବକ ନିର୍ଦ୍ଦେଶ ପ୍ରଦାନ କରିଥିବା ଉକ୍ତ ଅଛି । (୨)

ତ୍ରିଂଶ ସର୍ଗରେ ରାମଙ୍କର ଶରତ ଶୋଭା ସହ ସୀତାଙ୍କ ଅନୁଶୋଚନା ଆଉ ଲକ୍ଷ୍ମଣଙ୍କ କୃତ ପରିସାନ୍ତ୍ୱନା ପରେ ଚତ୍ୱାରିଂଶ ଗୋଟି ଶ୍ଳୋକରେ (୩) ଶରତ ବର୍ଣ୍ଣନା ଲେଖାଅଛି । ଏଥିରେ ପୁଣି ସୀତାନୟନାର୍ଥ ଅନୁଦ୍ୟୁକ୍ତ ସୁଗ୍ରୀବଙ୍କ ପ୍ରତି କ୍ରୋଧ ପ୍ରକାଶ

---

(୧) ଏହି ବକ ସନ୍ନିଧାନକୁ ଉପେନ୍ଦ୍ର ଭଂଜ ମଧ ବୈଦେହୀଶ ବିଳାସରେ ଦେଇଅଛନ୍ତି ।
ରାମଙ୍କ ବର ପ୍ରଦାନ —
ରାମ ଶୁଣି ବୋଇଲେ ଅସ୍ତୁବାଣୀ ତୋତେ ! ଚତୁର୍ମାସେ ଘରଣୀ ଆହାର ତୋତେ ଦେଇ ।
ସୁଖେ ପୁଣ ବୃକ୍ଷଶିଖେ ତୁହି ବସିଥିବୁ । ବୁଢି ନ ପାଇବା ଯାଏ ତୁ କାହିଁ ନ ଯିବୁ ।
ବକର ଆପତ୍ତି ଏବଂ ରାମଙ୍କ ସମାଧାନ ।
ବନିଶ୍ୱର ଉଚ୍ଛିଷ୍ଟ କିପରି ଖାଇବି । ଲୋକ ନିନ୍ଦା ଅଟେ ନରକ ପାଇବି ।
ପବିତ ଆମ୍ଭରୁ କିବା ଭିନ୍ନ ନାହିଁ । ସେଥିରେ ଦୋଷ କଦାଚ ହେବ ନାହିଁ ।
ଇତିଶ୍ରୁତିଃ ତଥାପି
ଘରଣୀ ତୋହର ଆହାର ଆଣି ତୋତେ ଦେବ । ଅଳପେ ଭୁଞ୍ଜିବୁ ତୁ ଅଙ୍କ ହିଁ ନ ଲାଗିବ ।
କାର୍ତ୍ତିକ ଶୁକ୍ଳ ପକ୍ଷେ ଦଶମୀ ଏକାଦଶୀ, ଦ୍ୱାଦଶୀ ଯେ ତ୍ରୟୋଦଶୀ ପୂର୍ଣ୍ଣିମା ଏ ମିଶି ।
ଏ ପାଞ୍ଚଦିନ ଯେ ଜନ ଭୁଞ୍ଜିବ ଆମିଷ, ଏଥିରେ ଦୋଷ ସେ ପ୍ରାଣୀ ପାଇବ ଅବଶ୍ୟ ।
ଦଶମୀଠାରୁ ପୌର୍ଣ୍ଣମୀ ଯାଏ ପାଞ୍ଚଦିନ, ବକ ପଞ୍ଚକ ବୋଲି ହୋଇବ ବିଦ୍ୟମାନ । ୬୦ ପୃ.
(୨) ତ୍ରିପଞ୍ଚରାତ୍ରାତ୍ପୂର୍ବ୍ୱେଂ ଯଃ ପ୍ରାପ୍ନୁୟାନେହ ବାନରଃ
ତସ୍ୟ ପ୍ରାଣାନ୍ତିକୋ ଦଣ୍ଡଃ ନାତ୍ର କାର୍ଯ୍ୟା ବିଚାରଣା । ୨୯ସ. ୩୩ ଶ୍ଳୋ
ତ୍ରିପଞ୍ଚ ରାତ୍ରାଦୂର୍ଦ୍ଧ୍ୱଂ ପଞ୍ଚଦଶରାତ୍ରାଦନନ୍ତର ଦିବସେ ଇତି ଗୋବିନ୍ଦରାଜଃ
ତ୍ରିପଞ୍ଚ ରାତ୍ରାଦୂର୍ଦ୍ଧ୍ୱଂ ଯଃ ପ୍ରାପ୍ନୁୟାଦିହବାନରଃ ଇତି ପାଠେ ପଞ୍ଚଦଶ ରାତ୍ରା—
ଦର୍ବାଗେବ ଆଗନ୍ତବ୍ୟମିତିଭାବଃ ଇତି ରାମାନୁଜଃ ।
ତ୍ରିରାବୃତ୍ତାନାଂ ପଞ୍ଚାନାଂ ରାତ୍ରିଣାଂ ସମାହାରଃ, ତ୍ରିପଞ୍ଚରାତ୍ରଂ, ଇତି ମହେଶ୍ୱରଦୀକ୍ଷିତଃ
(୩) ୨୨ ଶ୍ଳୋକଠାରୁ ୬୨ ଶ୍ଳୋକ ପର୍ଯ୍ୟନ୍ତ ଶରଦ ବର୍ଣ୍ଣନା ଦେଖନ୍ତୁ ।

ମଧ୍ୟ ଉକ୍ତ ଅଛି । (୧) ଅଧ୍ୟାତ୍ମ ରାମାୟଣରେ ମଧ୍ୟ ରାମଚନ୍ଦ୍ର ଶରତ ପ୍ରବେଶରେ ଲକ୍ଷ୍ମଣଙ୍କୁ କହିଅଛନ୍ତି କି ସୁଗ୍ରୀବ ଶରଦାଗମନ ଦେଖି ସୁଦ୍ଧା ଅଦ୍ୟାପି ସୀତାନ୍ୱେଷଣାର୍ଥ ଆସିଲେ ନାହିଁ । (ନାୟାତିଶରଦଂ ପଶ୍ୟନ୍ନପି ମାର୍ଗୟନ୍ତୁ ପ୍ରିୟାଂ ଅଧ୍ୟା. ରା. କି. କା. ପ. ସ)

ଏସବୁ ଦାସଙ୍କ ରାମାୟଣରେ ଅତି ସଂକ୍ଷେପତଃ ସୂଚିତ ମାତ୍ର । ଦାସେ ଶରତ ବର୍ଣ୍ଣନାକୁ ଅନ୍ୟ ନ ଗୋଟି ପଦ୍ୟରେ ମାତ୍ର ଶେଷ କରିଅଛନ୍ତି । (୨)

ଦାସେ ପୁଣି ଏ ସ୍ଥଳେ ବହୁଧା ବିଚାର କରି ଶରତ-ସନ୍ଧି-ନିର୍ଣ୍ଣୟ କରିଯାଇ ଅଛନ୍ତି । ଭାଦ୍ରପଦ ମାସର ଉତ୍ତରାର୍ଦ୍ଧଠାରୁ ଏ ମହାଶୟ ଶରତ ସମୟ ଧାର୍ଯ୍ୟ କରିଅଛନ୍ତି । (୩)

ଏହି ସ୍ଥାନରେ ମୌଳିକ ପାଠକୁ ଧରି ଟୀକାକାର ମଧ୍ୟ ଏକାଧିକ ପ୍ରକାର କଥା କହିଅଛନ୍ତି । ଶରତ ସମୟକୁ କେବଳ ଏକଥା ଠିକ୍ କରି ଯାଇ ନାହାନ୍ତି । (୪)

ସେ ଯାହା ହେଉ, ଦାସଙ୍କର ଏହି ଯେ ନିର୍ଦ୍ଧାରଣ ଏହାର ମୀମାଂସା ପୂର୍ବକ ସମାଧାନ, ପାଠକେ ସମୟ– ସଂବିଧାନ ସ୍ଥଳରେ ଦେଖିବେ । ଦାସେ ପୁଣି ମୌଳିକ ମତେ ଲେଖିବାକୁ ଯାଇ ପ୍ରକାଶ କରିଅଛନ୍ତି କି, ରାମଚନ୍ଦ୍ର ବର୍ଷାକାଳ ଅବସାନରେ ଲକ୍ଷ୍ମଣଙ୍କୁ ସୁଗ୍ରୀବଙ୍କ ଉଦ୍ଦେଶରେ ଟିକିଏ କଡୁଆ ବଚନରେ କହିଲେ ଯେ ସୁଗ୍ରୀବ ଅଦ୍ୟାପି କାହିଁକି ସେନା ସମାବେଶ କଲେ ନାହିଁ ? ଲକ୍ଷ୍ମଣ କହିଲେ ଏଥିରେ ସୁଗ୍ରୀବଙ୍କର ଦୋଷ ନାହିଁ, ଆପଣ ତ ବର୍ଷୁକ ଚାରିମାସର ଅବସାନ ପରେ ତାହା କରିବା ପାଇଁ ଆଦେଶ କରିଅଛନ୍ତି । ବର୍ତ୍ତମାନ ବଢ଼ା ମାସ ସହ ମାର୍ଗଶିରର ପୂର୍ବାର୍ଦ୍ଧ ଶେଷ ହୋଇଅଛି । ଏହିଯେ

(୧) ଏକ ଏବ ରଣେ ବାଲୀ ଶରେଣ ନିହତୋ ମୟା ।
ତ୍ୱାଂତୁ ସତ୍ୟାଦତିକ୍ରାନ୍ତଂ ହନିଷ୍ୟାମି ସବାନ୍ଧବମ୍ । ୩୦ ସ. ୮୨ ଶ୍ଳୋ

(୨) ଛାପା ପୁସ୍ତକରେ ୬୧ ଏକଷଷ୍ଠୀତମ ପୃଷ୍ଠା ଦେଖନ୍ତୁ ।

(୩) ଭାଦ୍ରବ ମାସର ଯେ ପନ୍ଦର ଦିନ ଗଲା
ସୂର୍ଯ୍ୟର କିରଣ ଯେ ଶରଦ ଆଚ୍ଛାଦିଲା । ୬୧ପୃ.

(୪) ଚତ୍ୱାରୋ ବାର୍ଷିକୀ ମାସା ଶତବର୍ଷଶତୋପମାଃ - ୩୦ସ. ୬୪
ଚତ୍ୱାରଃ ଆଷାଢ଼ାଦ୍ୟାଃ । କେଚିଦାହୁଃ ଶ୍ରାବଣାଦ୍ୟା ଇତି ପୂର୍ବୋଽୟଂ ବାର୍ଷିକୋ ମାସଃ ଶ୍ରାବଣଃ ସଲିଳାଗମଇତ୍ୟୁପକ୍ରମୋକ୍ତେଃ ଆଶ୍ୱଯୁଜ କାର୍ତ୍ତିକୟୋର୍ବର୍ଷାନୁବୃତ୍ତ୍ୟା ବାର୍ଷିକତ୍ୱଂ କାର୍ତ୍ତିକେ ସମନୁପ୍ରାପ୍ତେ ତ୍ୱଂ ରାବଣ ବଧେ ଯତେତି ପୂର୍ବୋକ୍ତ ବଚନେ ତୁ କାର୍ତ୍ତିକେ ସମନୁପ୍ରାପ୍ତେ ଇତ୍ୟସ୍ୟ ସମାପ୍ତେ ଇତ୍ୟର୍ଥ ଇତ୍ୟାହୁଃ ଇତି ଗୋବିନ୍ଦରାଜୀୟଟୀକାୟାଂ । ଗ୍ରୀଷ୍ମେମେଷ ବୃଷୌ ପ୍ରୋକ୍ତୌ ପ୍ରାବୃଟ୍ ମିଥୁନ କର୍କୟୋଃ, ସିଂହେ କନ୍ୟେ ସ୍ମୃତା ବର୍ଷା ତୁଳା ବୃଶ୍ଚିକୟୋଃ ଶରତ୍ ଧନୁର୍ଗ୍ରାହୌତୁ ହେମନ୍ତୋ ବସନ୍ତଃ କୁମ୍ଭମୀନୟୋଃ । ଇତି ଶାରଙ୍ଗଧରଃ ।

ଦାସଙ୍କର ସମୟ ନିର୍ଦ୍ଧାରଣ, କେତେ ଦୂର ସଂଗତ ବା ଅସଂଗତ, ଏହା ମଧ୍ୟ ପାଠକେ ସମୟ ସନ୍ନିଧାନ ଭାଗରେ ଦେଖିବେ । (୧) ଏହାପରେ ହନୁମାନ ଶରଦ ଅବସାନରେ ହେମନ୍ତ ଆଗମନରେ ସୁଗ୍ରୀବଙ୍କୁ ରାମକାର୍ଯ୍ୟାର୍ଥ ଚେତାଇ ଥିବା, (୨) ସୁଗ୍ରୀବ ନୀଳ ସେନାପତିଙ୍କୁ ସୈନ୍ୟ ସଂଗ୍ରହାର୍ଥ ସମାବେଶି ଦୂତ ପ୍ରତ୍ୟାବର୍ତ୍ତନାର୍ଥ ଆଠ ଦିନ ମାତ୍ର ଅବଧି ନିର୍ଦ୍ଧାରଣ କରିଥିବା ଲେଖାଅଛି । (୩) କିନ୍ତୁ ମୂଳ ଗ୍ରନ୍ଥରେ ଏହା ପୂର୍ବରୁ କେବଳ ପ୍ରୋକ୍ତ କାର୍ଯ୍ୟ ସଂପାଦିତ ହୋଇଥିବା ଏବଂ ତଦ୍ ସାଧନାର୍ଥ ପନ୍ଦର ଦିନ ଅବଧି ଦିଆଯାଇ ଥିବା ଲେଖାଅଛି । (୪)

ଏପରି କେତେକ ସ୍ଥଳରେ ସୁସ୍ପଷ୍ଟ ଜଣାଯାଉଛି ଯେ ଶ୍ରୀମାନ୍ ବଳରାମ ଦାସେ ସର୍ବତ୍ର ମୌଳିକ କଥା ସନ୍ନିଧାନକୁ ସ୍ଥୂଳତଃ ଅନୁସରି କେବଳ ନିଜର ରାମାୟଣ ଲେଖି ଅଛନ୍ତି । କିନ୍ତୁ ଅତ୍ରତ୍ୟ ଏହି ଶ୍ଳୋକର ଅର୍ଥ ଗ୍ରହଣ ଟିକିଏ ଅନ୍ୟଥା ହୋଇଯାଇଅଛି । ସ୍ଥଳରେ ଉକ୍ତ ପ୍ରଦତ୍ତ ଅବଧି ବାକ୍ୟରେ 'ତ୍ରିପଞ୍ଚରାତ୍ର' ଲେଖାଥିବାରୁ ତାକୁ ଦାସେ ତ୍ରିଗୁଣ ପଞ୍ଚ ଅର୍ଥ ନକରି ତ୍ରି ଏବଂ ପଞ୍ଚ ଅର୍ଥରେ ଆଠ କରି ଦେଇ ଅଛନ୍ତି । ମାତ୍ର ଏହି ଯେ ଭ୍ରାନ୍ତ ଅର୍ଥ, ଆମ୍ଭମାନଙ୍କର ବିଚାର, ଏହାର ଉତ୍ତରୋତ୍ତର କେତେକ ପାଠ ପଢ଼ି

---

(୧) ଲକ୍ଷ୍ମଣ ବୋଇଲେ ଦେବ, ସୁଗ୍ରୀବର କି ଦୋଷ
ତୁମ୍ଭେ ବୋଇଲ ସବୁ ବରଷା ଚାରି ମାସ ।
ତେଣୁ ଉସ୍ୱାସ ପାଇଲା ସେହି କପିନାଥ
ବିଚାରିଲା ଦୁର୍ଦ୍ଦିନ ପାଇନେ ମିନ କାର୍ଯ୍ୟ ।
ଆଶ୍ୱିନ କାର୍ତ୍ତିକ ଗଲା ମାର୍ଗଶିର ପଛେ
ବଡ଼ମାସ ଅଛି ବୋଲି ସୁଗ୍ରୀବ ଯେ ଲେଖେ ।
ଶୁଣିଲେକ ଶ୍ରୀରାମ ଯେ ଲକ୍ଷ୍ମଣର ବାଣୀ
ହୋଇ ହୋଇ ବୋଇଲେ ସେ ରଘୁ କୁଳମଣି । ୬୧ ପୃ.

(୨) ଶ୍ରୀମାନ୍ ଉପେନ୍ଦ୍ର ଭଂଜ ମଧ୍ୟ ବୈଦେହୀଶ ବିଳାସରେ ହେମନ୍ତେ ସେନା ସମାବେଶର ସମୟ ଧାର୍ଯ୍ୟ କରିଅଛନ୍ତି ।
ଚତ୍ୱାରୋ ବାର୍ଷିକ ମାସଃ – ଏହି ଶ୍ଳୋକର ବ୍ୟାଖ୍ୟାନରେ ଟୀକାକାର ଗୋବିନ୍ଦରାଜ ମହାଶୟ ମଧ୍ୟ ମାର୍ଗଶିର ମାସର ହେମନ୍ତକୁ ଏଥିରେ ଧାର୍ଯ୍ୟ କରିଅଛନ୍ତି ।

(୩) ସବୁନ୍ତି ଡକାଇ ତୁମ୍ଭେ ଆଣ ଦୂତ ପେଷି
ଆଜକୁ ଆଠଦିନେ କହିବୁ ମୋତେ ଆସି । ୬୨ ପୃ.

(୪) ଅଧ୍ୟାତ୍ମ ରାମାୟଣରେ ମଧ୍ୟ ପଞ୍ଚଦିବସ କେବଳ ଅବଧି ଉକ୍ତ ଅଛି । ଯଥା –
ପକ୍ଷ ମଧ୍ୟେ ସମାୟାନ୍ତୁ ସର୍ବେ ବାନର ପୁଙ୍ଗବାଃ
ଯେ ପକ୍ଷମତିବର୍ତନ୍ତେ ବଧ୍ୟା ଏବ ନ ସଂଶୟଃ । କି.କା: ୪ ସର୍ଗ

ନେଲେ ବିଲୁପ୍ତ ହୁଏ ଏବଂ ଏହି ଭ୍ରାନ୍ତ ଲେଖା କ୍ରମତିରେ ଆକ୍ରାନ୍ତ ଭ୍ରାନ୍ତ ଅନୁଲେଖକଙ୍କର ବୋଲି ସ୍ପଷ୍ଟ ପ୍ରତିପନ୍ନ ହୁଏ । କାରଣ ଇତଃପର ତାରା ଦେବୀ ଲକ୍ଷ୍ମଣଙ୍କୁ ସେନାନୟନର କଥା ଜଣାଇବା ସ୍ଥଳରେ ଦାସେ ଏହି ପନ୍ଦର ଦିନ ଅବଧି କଥା ସ୍ପଷ୍ଟ ପ୍ରକାଶ କରିଅଛନ୍ତି । (୧)

ସୈନ୍ୟ ଆନୟନାର୍ଥ ଅଂଗଦ ଯାଇଥିବା ଏଥିରେ ଯାହା ଲେଖାଅଛି, ବୋଧହୁଏ ତାହା ପ୍ରାମାଦିକ । ସୁତରାଂ ମୂଳଗ୍ରନ୍ଥାନୁମତେ ଅଙ୍ଗଦ ଏଥିପାଇଁ ଯାଇ ନାହାନ୍ତି । ସେ ବରାବର ସୁଗ୍ରୀବଙ୍କ କତିରେ ଅଛନ୍ତି । ପରନ୍ତୁ ଯେତେବେଳେ ସୁଗ୍ରୀବ ପ୍ରଥମତଃ ନୀଳଙ୍କୁ ଏଥିପାଇଁ ଆଦେଶ ଦେଇଥିଲେ ତେତେବେଳେ ଅଙ୍ଗଦଙ୍କର ନାମ ମଧ୍ୟ କହିଅଛନ୍ତି । (୨) କିନ୍ତୁ ସେ ସୁଗ୍ରୀବାଦେଶରେ ଦୂତମାନଙ୍କୁ ମାତ୍ର ପଠାଇ ଅଛନ୍ତି, ସେତେବେଳେ ଯାଇ ନାହାନ୍ତି । ବୋଧହୁଏ ସୁଗ୍ରୀବଙ୍କ ଏହି ଆଦେଶ ବାକ୍ୟରେ ଅଙ୍ଗଦ ନାମ ଗୃହୀତ ଥିବାରୁ ଦାସେ ଏପରି ଲେଖି ଅଛନ୍ତି । ଏହି ରାମାୟଣରେ ସ୍ଥାନେ ସେନାନୟନର ଉଦ୍ୟମର ସମୟ ଭାଦ୍ରପଦ ମାସ ବୋଲି ମଧ୍ୟ ଲେଖାଅଛି । (୩)

ଦାସ ମନୋଦୟତ ଏହାର ଅବ୍ୟବହିତ ପୂର୍ବେ ପ୍ରୋକ୍ତ କାର୍ଯ୍ୟର ସମୟ କାର୍ତ୍ତିକାନ୍ତ କହିଅଛନ୍ତି । ତେବେ ପେର୍ ଭାଦ୍ରପଦକୁ ଧରିବାର ଏଡ଼େ ପ୍ରମାଦରେ ପଡ଼ିନଥିବେ ବୋଲି ଆମ ମନରେ ଧାରଣା ହୁଏ । କିନ୍ତୁ ଉଲ୍ଲରୋତ୍ତର ପାଠମାନ ଦେଖି ନେଲେ ବିଶ୍ୱାସ ହୁଏ, ଏହା ଦାସେ କେବଳ ଲେଖି ଅଛନ୍ତି । (୪)

ଏହିପରି କେତେକ ସ୍ଥଳରେ ପୂର୍ବାପର ପାଠରେ ଅନ୍ୟୋନ୍ୟ ଅସଂଲଗ୍ନତା ଏବଂ ଜଟିଳତା ଦେଖାଯାଏ, ଆମ୍ଭମାନଙ୍କର ସଂପୂର୍ଣ୍ଣ ବିଶ୍ୱାସ ଏହିପରି ସ୍ଥାନମାନ ଅନୁଲେଖକଙ୍କ

---

(୧) ଥାଟ ଆଣିବାକୁ ଯେ ଅଙ୍ଗଦ ଅଛି ଯାଇ
ପନ୍ଦର ଦିନକୁ ସେହି କଷ୍ଟ ଯେ କରଇ । ୭୨ପୃ.

(୨) ହରିଂଷ୍ଚ ବୃନ୍ଦାନୁପଯାତୁ ସାଙ୍ଗଦୋ ଭବାନ୍ ମମାଜ୍ଞାମଧିକୃତ୍ୟ ନିଶ୍ଚିତମ୍
ଇତି ବ୍ୟବସ୍ଥାଂ ହରିପୁଙ୍ଗବେଶ୍ବରୋ ବିଧାୟ ବେଶ୍ମ ପ୍ରବିବେଶ ବୀର୍ଯ୍ୟବାନ୍ । ୨୯ସ. ୩୪ପୃ.
ବୃନ୍ଦାନ୍ ଜାମ୍ବବଦ୍ ପ୍ରଭୃତିନ୍ - ଇତି ଗୋବିନ୍ଦରାଜଃ

(୩) ଭାଦ୍ରବ ଶୁକ୍ଳପକ୍ଷ ଚଉଠି ଆଜଦିନ ।
ଏହିକ୍ଷଣି ବାବୁରେ କରିବୁ ପ୍ରସ୍ଥାନ ।
ବେଗେ ଯାଇ ଘେନି ଆସ ଋକ୍ଷ କପିବଳ ।
ଶୁଣି ସଜ ହୋଇଲା ସେ ବାଳିର ଦୁଲାଳ । ୬୨ ପୃ.

(୪) ଥାଟ ଆସିବାକୁ ଅଙ୍ଗଦ ଅଛି ଯାଇ, ପନ୍ଦର ଦିନକୁ ସେହୁ କଷ୍ଟଯେ କରାଇ ।
ଏ ଭାଦ୍ର ଶୁକ୍ଳଚ ଚଉଠୀଠର ସେ ଗଲା, ପୂର୍ଣ୍ଣମା ତ ଆଜ ଦଶଦିବସ ହୋଇଲା ।
ବାରତା ପାଇଲୁ ସେ ଅଛନ୍ତି ଚିତ୍ରକୂଟେ, କାଲି ପହରକେ ଯେ ମିଳିବେ ଆସି ଥାଟେ । ୭୨ ପୃ.

ଦ୍ୱାରା ବିକୃତ ଓ ବିଷମ ହୋଇଅଛି । ମୂଳ ଗ୍ରନ୍ଥର ଏକତ୍ରିଂଶ ଓ ଦ୍ୱାତ୍ରିଂଶ ସର୍ଗରେ ବର୍ଣ୍ଣିତ ଚରିତର ସଂକ୍ଷିପ୍ତ କଥା ଏହି ଯେ ରାମ ଲକ୍ଷ୍ମଣଙ୍କୁ ସୁଗ୍ରୀବଙ୍କ ପ୍ରତି ନିଧନୋଦ୍ୟତ ଦେଖି ସାମୋପାୟାସରେ କାର୍ଯ୍ୟ ସାଧନାର୍ଥ ଆଦେଶ ଦେଲେ । ଲକ୍ଷ୍ମଣ କିଷ୍କିନ୍ଧାରେ ଉପଗତ ହେଲା କ୍ଷଣି ଅଜ୍ଞାତ ବାନରଗଣ ତଦୀୟ ଆକ୍ରମଣରେ ଉଦ୍ୟତ ହେଲେ; କିନ୍ତୁ ଲକ୍ଷ୍ମଣଙ୍କୁ କ୍ରୋଧରେ ପ୍ରଚଣ୍ଡ ଦେଖି ପଳାୟନ ପୂର୍ବକ ସୁଗ୍ରୀବଙ୍କ ଛାମୁରେ ଚଳିତ ବୃତ୍ତାନ୍ତ ଜଣାଇଲେ । ତଥାପି କାମାସକ୍ତ ସୁଗ୍ରୀବ ବାନରମାନଙ୍କ କଥାରେ କର୍ଣ୍ଣପାତ କଲେ ନାହିଁ । ପରେ ଅଙ୍ଗଦ ପିତାଙ୍କୁ ସପ୍ରଣାମେ ଲକ୍ଷ୍ମଣଙ୍କ ଆଗମନ ଜଣାଇଲେ । ତେବେ ହେଁ ସୁଦ୍ଧା ସୁଗ୍ରୀବ ଜାଗରୁକ ହେଲେ ନାହିଁ । (୧) ଏହି ସମୟରେ ବାନର ସମୂହର ଘୋର କୋଳାହଳ ଧ୍ୱନି ଉଠିଲାରୁ ସୁଗ୍ରୀବ ସଚେତ ହେଲେ । ତାହାଙ୍କର ପ୍ଳକ୍ଷ ଓ ପ୍ରଭାବ ନାମକ ମନ୍ତ୍ରୀଦ୍ୱୟ ତାହାଙ୍କୁ ଚଳିତ ବୃତ୍ତାନ୍ତ ସବୁ ବୁଝାଇଲେ । ମୂଳଗ୍ରନ୍ଥରେ ସୁଗ୍ରୀବ ଲକ୍ଷ୍ମଣଙ୍କ ପ୍ରତି କୌଣସି ଛଳୋକ୍ତି ପ୍ରକାଶିଥିବା ଲେଖା ନାହିଁ । ପ୍ରତ୍ୟୁତ ରାମଙ୍କ ମିତ୍ରତା ଭଙ୍ଗ ଭୟରେ ଭୀତ ହୋଇଥିବା ଲେଖାଅଛି । ତଦା ମାରୁତି ସୁଗ୍ରୀବଙ୍କୁ କୋପରୁ ଶଙ୍କିତ ଦେଖି କହିଲେକି ଆପଣ ସମୟ ଜାଣିଶୁଣି ସୁଦ୍ଧା ପ୍ରମତ୍ତ ରହିଲେ, ବର୍ତ୍ତମାନ ଆପଣ ସପରିବାର ସମନ୍ତ୍ରୀକ, ସସ୍ତ୍ରୀକ ଯାଇ ସମାଗତ ଲକ୍ଷ୍ମଣଙ୍କୁ ପ୍ରଶାନ୍ତ କରନ୍ତୁ ଇତ୍ୟାଦି । (୨)

ଏ ସ୍ଥଳରେ ଦାସେ ସଂକ୍ଷେପତଃ କହିଅଛନ୍ତି କି ଲକ୍ଷ୍ମଣ ରାମଙ୍କ ଆଦେଶ ଓ ଉପଦେଶରେ ସୁଗ୍ରୀବାନୟନାର୍ଥ ତିନି ଦିନ ସକାଶେ କିଷ୍କିନ୍ଧାକୁ ଯାଇଥିଲେ । (୩)

କିନ୍ତୁ ଏ ସ୍ଥଳେ ମଧ ଯାହାକି ଲକ୍ଷ୍ମଣଙ୍କର କିଷ୍କିନ୍ଧା ଗମନର ସମୟ ଭାଦ୍ରପଦ ବୋଲି ଲେଖା ଅଛି, ତାହା ବଳରାମ ଦାସଙ୍କର ବୋଲି ବିଶ୍ୱାସ ହୁଏ ନାହିଁ । କାରଣ କବି ଇତଃପୂର୍ବେ ଶରଦ ହେମନ୍ତ ବର୍ଣ୍ଣନା ପରେ ଏହି ପ୍ରସ୍ତାବ ଉଠାଇ ଅଛନ୍ତି; ଫେର୍ ଏଠାରେ ଅସଙ୍ଗତତଃ ଭାଦ୍ରପଦ ବୋଲି କିପରି କହିବେ ? (୪) କବି ମହାଶୟ ଏ ସ୍ଥଳେ ଧୀରୋଦାତ୍ତପ୍ରବର ସୁବିବେକପ୍ରବେକ ରାମଙ୍କ ଛାମୁରେ ଯେ ଆତ୍ମହତ୍ୟାର ଉକ୍ତି ପ୍ରକାଶ କରାଇ ଅଛନ୍ତି, ତାହା ତେତେ ସୁନ୍ଦର ଜଣାଯାଏ ନାହିଁ । (୫) ଇତଃପର

(୧) ସନିଦ୍ରାମଦସଂବୀତୋ ବାନରୋ ନ ବିବୁଦ୍ଧବାନ୍
ବଭୂବ ମଦମତ୍ତଶ୍ଚ ମଦନେନ ଚ ମୋହିତଃ । ୩୧ ସ.

(୨) ତ୍ୱଂପ୍ରମତ୍ତୋ ନ ଜାନୀଷେ କାଳଂ କାଳବିଦାଂବର । ୩୨ ସ.

(୩) ଯାଅ ବାବୁ ତୋତେ ପୁଣ ହୋଉ ଯେ କଲ୍ୟାଣ, ତିନିଦିନି ମଧ୍ୟରେ ତୁ ସୁଗ୍ରୀବଙ୍କୁ ଆଣ । ୬୩ ପୃ.

(୪) ଲକ୍ଷ୍ମଣ ବୋଇଲେ ଦେବ ! ଆସ କିସ ଅର୍ଥେ, ନିଶ୍ଚିତ ହୋଇଣ ତୁମ୍ଭେ ରହ ଏ ପର୍ବତେ !
ଭାଦ୍ର ପୂର୍ଣ୍ଣିମା ଅଟଇ ଆଜି ଏଥିତିଥି । ଲେଉଟି ତିନିଦିନେ ପ୍ରବେଶ ଆସି ଏଥି । ୬୫ ପୃ.

(୫) ଛାପା ପୁସ୍ତକରେ ୬୪ ପୃଷ୍ଠା ଦେଖନ୍ତୁ ।

ଦାସେ ପୁଣି କୁହନ୍ତି ମାଲ୍ୟବନ୍ତରେ ରାମଙ୍କୁ ଏକାକୀ ଜାଣି ଅଗସ୍ତି ମହର୍ଷି ଆସିଥିଲେ । ରାମ ତାହାଙ୍କୁ ନିଜର ପୂର୍ବବଂଶଧରମାନଙ୍କର ଉତ୍କଟ ଟେକ ପ୍ରକାଶ ପୂର୍ବକ ଆପଣାର ଦୁରବସ୍ଥା ଜଣାଇଲେ । ଅଗସ୍ତି ଶ୍ରୀରାମଙ୍କୁ ସାଂସାରିକ ଜଥା ସବୁ କେବଳ ମାୟିକ ବୋଲି ବୁଝାଇ ପରେ ଆପଣ ଅବଶ୍ୟ ସାମ୍ରାଜ୍ୟରେ ସୁପ୍ରତିଷ୍ଠିତ ହେବେ କହି ସମାଶ୍ୱାସିତ କରିଥିଲେ । ଇତ୍ୟବସରରେ ତତ୍ର ପୁଣି ମାର୍କଣ୍ଡେୟ ଆସି ଉପଗତ ହେଲାରୁ ଅଗସ୍ତି ରାମଙ୍କୁ ମାର୍କଣ୍ଡେୟଙ୍କ ପରିଚୟ ପ୍ରଦାନ କଲେ । ରାମ ତଦା ମାର୍କଣ୍ଡେୟଙ୍କୁ ମଧ ନିଜର ଦୁରବସ୍ଥା ଜଣାଉଥିଲେ । ସେ ଦୁହେଁ ରାମଙ୍କୁ ସମାଶ୍ୱାସିତ କରି ପ୍ରସ୍ଥାନ କରୁଅଛନ୍ତି । ଅର୍ଦ୍ଧପଥରେ ମାର୍କଣ୍ଡେୟ ଅଗସ୍ତିଙ୍କୁ କହିଲେ, 'ମୁଁ ରାମଙ୍କର ଯେ ଯେ ଅବସ୍ଥା ଓ ଚେଷ୍ଟା ଦେଖିଲି ତହିଁରେ ପରମେଶ୍ୱର ପ୍ରକାଶ କିଛି ପାଇଲି ନାହିଁ । ଆପଣ ଏବଂ ବିଶ୍ୱାମିତ୍ର ମଧ ତାହାଙ୍କୁ କିପରି ଈଶ୍ୱର ବୋଲି କହନ୍ତି ।' (୧) ତେତେବେଳେ ଅଗସ୍ତି ସମାଧାନ କହିଲେ କି ପୂର୍ବେ ଶ୍ରୀମନ୍ନାରାୟଣ ଶଙ୍ଖ ଚକ୍ରାଦି ବିନା ଏପରି ସାଧାରଣ ମାନବ ଶରୀରରେ ଅବତୀର୍ଣ୍ଣ ହୋଇ ରାବଣଙ୍କୁ ନିହତ କରିବାପାଇଁ ପ୍ରତିଜ୍ଞା କରିଥିଲେ । ତାଙ୍କ ତହିଁ ଆପଣଙ୍କର ଯଦି ପରମେଶ୍ୱରତ୍ୱ ବିତୃଷ୍ଣା ହୁଏ, ତେବେ ଅଦ୍ୟାବଧି ଦ୍ୱିଚତ୍ୱାରିଂଶୋତ୍ତର ଦ୍ୱିଶତ ଦିନରେ ଅଯୋଧ୍ୟାରେ ତଦୀୟ ରାଜ୍ୟାଭିଷେକ ସମୟରେ ଆସି ପ୍ରତ୍ୟକ୍ଷ କରି ନେବେ । ଏସବୁ ମୂଳରେ ଏ ସ୍ଥଳେ ଲେଖା ନାହିଁ ସତ୍ୟ, ତଥାପି ଏସବୁ ସଂପୂର୍ଣ୍ଣ ଯଥାର୍ଥ କଥା । ମତିମାନ୍ ବଳରାମ ଦାସ ମହୋଦୟ ଦୁରବସ୍ଥାରେ ରାମଙ୍କର ଐଶ୍ୱରିକ ବିଭୂତି ପ୍ରଥିତ କରିବାପାଇଁ ଏହା ପୁରାଣାନ୍ତରରୁ ଆନୀତ କରି ଏସ୍ଥଳେ ସୁସଙ୍ଗତତଃ ମିଳାଇ ଦେଇ ଅଛନ୍ତି । ଅନୁସନ୍ଧାନଶୀଳ କବି ମହାଶୟ ଏ ସ୍ଥଳେ ପୁଣି ମାଲ୍ୟବନ୍ତଠାରୁ କିଷ୍କିନ୍ଧା ଅବସ୍ଥାନର ବ୍ୟବଧାନ ବିଂଶ କ୍ରୋଶ ବୋଲି ଲେଖି ଅଛନ୍ତି । (୨)

ଏହା କିଂଚିଦ୍ ନ୍ୟୂନାଧିକତଃ ସଂଗତ ବୋଲି ଅନୁମିତ ହୁଏ । ପରଂତୁ ସୁଗ୍ରୀବଙ୍କଠାରେ ଲକ୍ଷ୍ମଣାଗମନ ସଂବାଦ ଜଣାଇବା ସ୍ଥଳେ କିଂଚିଦ୍ ପ୍ରମାଦିଗତ ତଥାଚ ସୁଗ୍ରୀବଙ୍କର ଯେ ବିସ୍ମରଣ ମୂଳକ ଛଳୋକ୍ତି, ତହିଁରେ ଅମୌଳିକତା ରୂପକ ଅନ୍ୟଥା କାରଣ ଦେଖାଯାଏ । ତଥାପି ଅତ୍ରତ୍ୟ ଯେ ପ୍ରାମାଦିକତା ସେହିତକ ଅନୁଲେଖକ ଓ ଛାପାକାରଙ୍କ ପ୍ରମାଦମୂଳକ ବୋଲି ଜଣାଯାଏ । (୩) କାରଣ ଦ୍ୱାରୀ ସୁଗ୍ରୀବଙ୍କୁ ତ

(୧) ଦେହରେତ ଲକ୍ଷଣ ଏହାର କିଛି ନାହିଁ
କେମନ୍ତେ ବୋଲ ଯେ ତୁମ୍ଭେ କମଳାର ସାଇଁ । ୬୭ ପୃ.

(୨) ଏବେ ଏକମନେ ତୁହି ଶୁଣ ସଙ୍ଗାତୁଣି । କିଷ୍କିନ୍ଧାକୁ ଗଲେ ଯେ ଲକ୍ଷ୍ମଣ ବୀରମଣି ।
ବେଳ ଅସ୍ତକାଳେ ସେ ହୋଇଲେ ପରବେଶ । ମାଲ୍ୟବନ୍ତ ଗିରିକି ଅଟଇ ବିଂଶ କୋଶ । ୬୮ ପୃ.

(୩) ଛାପା ପୁସ୍ତକରେ ୬୮, ୬୯ ପୃଷ୍ଠା ଦେଖନ୍ତୁ । ଦ୍ୱାରୀ ଲକ୍ଷ୍ମଣ ନାମ କହିନାହିଁ । ତଥାପି ଦାସଙ୍କ ଏହି ଛଳୋକ୍ତିକୁ ଉପେନ୍ଦ୍ର ଭଞ୍ଜ ବୈଦେହୀଶ ବିଳାସରେ ଆହୁରି ବିସ୍ତୃତ କରିଅଛନ୍ତି ।

ଲକ୍ଷ୍ମଣଙ୍କ ନାମ ଜଣାଇଥିବା ଲେଖାନାହିଁ । ସୁଗ୍ରୀବ ପୁଣି ଆଗନ୍ତୁକଙ୍କର ସେହି ନାମ ଜାଣିଲେ କିପରି ଯେ କେଉଁ ଲକ୍ଷ୍ମଣ ବୋଲି ପ୍ରଶ୍ନ କରିଅଛନ୍ତି ? ସମ୍ଭବତଃ କବି ଏହିପରି ଛିନ୍ନ ସଂଲଗ୍ନତାରେ ଲେଖି ନାହାନ୍ତି । ହୁଏତ, ଏହିସ୍ଥଳକୁ ଦୁଇଚାରି ପଦ୍ୟ ଅନୁଲେଖକ ଆଉ ଛାପାକାରଙ୍କ ପ୍ରମାଦରୁ ଉଠିଯାଇ ଅଛି, ଯହିଁରେ କି ଦ୍ୱାରୀକଥିତ ବଚନରେ ଲକ୍ଷ୍ମଣ ନାମ ବ୍ୟବହୃତ ଥିଲା । ଏହା ପରେ ଲକ୍ଷ୍ମଣ ଦ୍ୱାରୀ ମୁଖରୁ ସୁଗ୍ରୀବଙ୍କର ଅବିଚାର ପ୍ରଶ୍ନ ଶୁଣି ଯଥାଯଥ ସମୁଚିତ ଉତ୍ତର ଦେଲା ପରେ ସୁଗ୍ରୀବଙ୍କ ଚୈତନ୍ୟୋଦୟ ଉଦ୍ଦେଶରେ ଶର ନିକ୍ଷେପ କରିଅଛନ୍ତି । (୧)

ପରଂତୁ ଏହା ମୌଳିକ କ୍ରମ ନୁହେ । (୨) ମୂଳ ଗ୍ରନ୍ଥରେ ଲକ୍ଷ୍ମଣ ସୁଗ୍ରୀବଙ୍କୁ ଭୟ ପ୍ରଦର୍ଶନାର୍ଥ ଜ୍ୟା ଘୋଷମାତ୍ର କରିଅଛନ୍ତି । (୩)

ଏହାପରେ ଦାସେ ସୁଗ୍ରୀବଙ୍କର ଅତି ଭୀତତ୍ୱ ପ୍ରଦ୍ୟୋତନାର୍ଥ ଲକ୍ଷ୍ମଣ କୃତ ତର୍ଜନାକୁ ଟିକିଏ ବଢ଼ାଇ ଲେଖି ଅଛନ୍ତି କି, ଲକ୍ଷ୍ମଣ ପ୍ରେରିତ ଶରର ତେଜରେ ସୁଗ୍ରୀବାଦିମାନେ ମୋହିତ ପଡ଼ି କ୍ଷଣକରେ ସଚେତ ହେଲେ । ସୁଗ୍ରୀବ ଲକ୍ଷ୍ମଣଙ୍କଠାକୁ ଯିବାପାଇଁ ଭୀତ ହୋଇ ତାରାଦିଙ୍କୁ ପଠାଇବା, ତାରାଦେବୀ ବିନୀତସନ୍ତୁଷ୍ଟକର ବାକ୍ୟରେ ଲକ୍ଷ୍ମଣଙ୍କୁ ପ୍ରଶମିତ କରି ପରେ ସୁଗ୍ରୀବଙ୍କୁ ଆଣି ଭେଟାଇ ଥିବା ପ୍ରଭୃତି କଥାମାନ ଏଥିରେ ଅଂଶତଃ ଇତସ୍ତତ ହୋଇ ମୌଳିକ କ୍ରମ ଅପେକ୍ଷା କିଂଚିତ୍ ଭିନ୍ନ ପ୍ରକାର ଅଛି । (୪)

ଏଥି ମଧ୍ୟରେ ଅନୁଲେଖକଙ୍କ କେତେକ ଅବିମୃଷ୍ୟକାରିତାର ଲେଖା ସୁଦ୍ଧା ମିଶିଯାଇଥିବାର ଅନୁମିତ ହୁଏ । ମୂଳ ଗ୍ରନ୍ଥରେ ତାରାଙ୍କ ମିଷ୍ଟବଚନରେ ପ୍ରଶମିତ ଲକ୍ଷ୍ମଣ ଅନ୍ତଃପୁରସ୍ଥ ସୁଗ୍ରୀବଙ୍କ ଭବନରେ ପ୍ରବେଶ କରିଥିବା ଲେଖା ଅଛି । ମାତ୍ର ଏଥିରେ ଲକ୍ଷ୍ମଣଙ୍କ ଆଦେଶରେ ସୁଗ୍ରୀବ ନାନାବିଧ ଉପାୟନ ଧରି ଭୀତ ଭୀତ ହୃଦୟରେ ନଗରୀର ବହିଃ ପ୍ରଦେଶରେ ସ୍ଥିତ ଲକ୍ଷ୍ମଣଙ୍କଠାକୁ ସଯତ୍ନେ ଆସି ଭେଟିଥିବା ଏବଂ ତଦା ତାରା

---

(୧) ଛାପା ପୁସ୍ତକ ୬୯ ପୃଷ୍ଠା ଦେଖନ୍ତୁ, ଅତ୍ରତ୍ୟ ଲକ୍ଷ୍ମଣଙ୍କ ଶର ନିକ୍ଷେପ କ୍ରମକୁ ରଂଙ୍କେ ମଧ୍ୟ ଅନୁସରି ଅଛନ୍ତି ।

(୨) ଅଧ୍ୟାତ୍ମ ରାମାୟଣରେ ମଧ୍ୟ ଲକ୍ଷ୍ମଣ ଏ ସ୍ଥଳେ ଶର ନିକ୍ଷେପିବା ଉକ୍ତ ନାହିଁ ।

(୩) ଛାପା ପୁସ୍ତକରେ ୬୯ ପୃଷ୍ଠାଠାରୁ ୭୪ ପୃଷ୍ଠା ପର୍ଯ୍ୟନ୍ତ ପଢ଼ି ଦେଖନ୍ତୁ । ଅଧ୍ୟାତ୍ମ ରାମାୟଣରେ ମଧ୍ୟ ଦେଖିବେ ସୁଗ୍ରୀବ ଲକ୍ଷ୍ମଣଙ୍କ ଶାନ୍ତିକରଣାନନ୍ତର ଅନ୍ତଃପୁରକୁ ଆନୟନାର୍ଥ ତାରାଦେବୀଙ୍କୁ ପଠାଇଥିଲେ । ଯଥା- ପ୍ରେଷୟିତ୍ୱା ହନୁମନ୍ତଂ ତାରାମାହ କପୀଶ୍ୱରଃ, ତ୍ୱଂ ଗଚ୍ଛସାନ୍ତ୍ୱୟ କ୍ରୁଦ୍ଧଂ ଲକ୍ଷ୍ମଣଂ ମୃଦୁଭାଷିତୈଃ । ଶାନ୍ତମନ୍ତଃପୁରଂ ନୀତ୍ୱା ପଶ୍ଚାଦ୍ ଦର୍ଶୟ ମେଽନଘ । କି. କା. ୫ସ.

(୪) ଅଧ୍ୟାତ୍ମ ରାମାୟଣ କିଷ୍କିନ୍ଧା କାଣ୍ଡ ପଞ୍ଚମ ସର୍ଗ ଦେଖିବେ, ଲକ୍ଷ୍ମଣ ସୁଗ୍ରୀବ ପର୍ଯ୍ୟଙ୍କକୁ କିମ୍ବା ଅନ୍ୟତ୍ର ଶର ନିକ୍ଷେପ କରି ନାହାନ୍ତି ।

ଦେବୀ ଲକ୍ଷ୍ମଣଙ୍କୁ ଅନ୍ତଃପୁରକୁ ଯିବାପାଇଁ ପ୍ରାର୍ଥନା କଲାରୁ, ଲକ୍ଷ୍ମଣ ମୋର ନଗରୀକୁ ଯିବା ନିୟମ ବିରୁଦ୍ଧ ଓ ଅନୁଚିତ କହି ଅସମ୍ମତ ହେବା ଲେଖାଅଛି । (୧)

ଏ ସ୍ଥଳେ ତାରାଦେବୀ ପୁଣି ଲକ୍ଷ୍ମଣଙ୍କୁ ଜଣାଇ ଅଛନ୍ତି କି ବାନର ବାହିନି ଡାକି ଆଣିବା ପାଇଁ ଅଙ୍ଗଦ ଯାଇ ଅଛନ୍ତି । (୨)

ତେଣୁ ସମ୍ବାଦ ମଧ ଆସି ଅଛି କି ସେମାନେ ପ୍ରତ୍ୟାବୃତ୍ତ ହୋଇ ଚିତ୍ରକୂଟରେ ଅବସ୍ଥାନ କରି ଅଛନ୍ତି ଇତ୍ୟାଦି । (୩)

କିନ୍ତୁ ବାଲ୍ମୀକିଙ୍କ ମତେ ସେନା ସମାନୟନାର୍ଥ ଅଙ୍ଗଦ ଯାଇ ନଥିଲେ । (୪)

ଏହାପରେ ଦାସେ ଆଉ ଗୋଟିଏ ଅମୌଳିକ ଆନୁଷଙ୍ଗିକ କଥା ଲେଖି ଅଛନ୍ତି କି ହନୁମାନ ଲକ୍ଷ୍ମଣଙ୍କ ଆଦେଶରେ ତଦୀୟ ପ୍ରେରିତ ଶରଟିକୁ ଆଣିବାକୁ ଯାଉଥିଲେ । ସୁଗ୍ରୀବଙ୍କ ଦୋଳାରେ ସେହି ଶରଟି ଆପେ ହନୁମାନଙ୍କ ହସ୍ତକୁ ଆସିଲା । ସେ ପୁଣି ଆଣି ଲକ୍ଷ୍ମଣଙ୍କୁ ଦେଲେ । (୫) ମୂଳ ଗ୍ରନ୍ଥର ତ୍ରୟତ୍ରିଂଶ ସର୍ଗରେ ଉକ୍ତ ଅଛିକି ଲକ୍ଷ୍ମଣ କିଷ୍କିନ୍ଧା ଗୁହାରେ ପ୍ରବେଶି ବିଭବଶାଳୀ ନଗରୀକୁ ଦେଖିଲେ । (୬)

ଏହି ନଗରୀର ବର୍ଣ୍ଣନା ପଢ଼ିଲେ ବିଶ୍ୱାସ ହୁଏ କିଷ୍କନ୍ଧା ଗୁହାର ଅନ୍ତର୍ବର୍ତିନୀ ନଗରୀଟି ଆଧୁନିକ ମାନ୍ଦ୍ରାଜ ବା କଲିକତାର ପ୍ରାୟ ସମୃଦ୍ଧିଶାଳିନୀ ଓ ଶୋଭାବତୀ ଥିଲା । ପ୍ରଥମେ ତାରାଦେବୀ ସୁଗ୍ରୀବଙ୍କ ଅନୁରୋଧରେ ଆସି ଲକ୍ଷ୍ମଣଙ୍କୁ ସୁବିନୀତ ସୁମିଷ୍ଟ ବଚନରେ ପ୍ରଶାନ୍ତ କଲା ପରେ ପତିଙ୍କପାଇଁ କ୍ଷମା ପ୍ରାର୍ଥନା କରି ତାହାଙ୍କୁ ଅନ୍ତଃପୁରକୁ

(୧) ଛାପା ପୁସ୍ତକରେ ୭୩ ପୃଷ୍ଠା ଦେଖନ୍ତୁ । କିନ୍ତୁ ମୂଳମତେ ଲକ୍ଷ୍ମଣ ସୁଗ୍ରୀବଙ୍କ ଅନ୍ତଃପୁରକୁ ଯାଉଥିଲେ । ଅଧ୍ୟାତ୍ମ ରାମାୟଣରେ ମଧ ଏହା ବି ଉକ୍ତ ଅଛି । ତାରାୟା ବଚନଂ ଶ୍ରୁତ୍ୱା କୃତକ୍ରୋଧୋଽଥ ଲକ୍ଷ୍ମଣଃ, ଜଗାମାନ୍ତଃପୁରଂ ଯତ୍ର ସୁଗ୍ରୀବୋ ବାନରେଶ୍ୱରଃ. କି. କା. ୫ସ.

(୨) ଅଧ୍ୟାତ୍ମ ରାମାୟଣରେ ମଧ ସେନାନୟନାର୍ଥ ଅଙ୍ଗଦ ଯାଇଥିବାର କଥା ତାରାଦେବୀ କହିନାହାନ୍ତି, କିନ୍ତୁ ସେ କହିଛନ୍ତି କି ସେନା ଆଣିବା ପାଇଁ ନାନା ଦିଗଦେଶକୁ ଦଶସହସ୍ର ଦୂତ ଯାଇଅଛନ୍ତି । ଯଥା – ପ୍ରେଷିତା ଦଶସାହାସ୍ରା ହରୟୋ ରଘୁସତ୍ତମ, ଆନେତୁଂ ବାନରାନ୍ ଦିଗ୍‌ଭ୍ୟଃ ମହାପର୍ବତ ସନ୍ନିଭାନ୍ । ୫ସ

(୩) ଛାପା ପୁସ୍ତକରେ ୭୨ ପୃଷ୍ଠା ଦେଖନ୍ତୁ ।

(୪) ଅଧ୍ୟାତ୍ମ ରାମାୟଣ ଅନୁସାରେ ସେନା ଆନୟନାର୍ଥ ଅଙ୍ଗଦ ଯାଇ ନଥିଲେ ।

(୫) ଛାପା ପୁସ୍ତକରେ ୭୪ ପୃଷ୍ଠା ଦେଖନ୍ତୁ ।

(୬) ତ୍ରୟତ୍ରିଂଶ ସର୍ଗର ୪-୨୫. ୨୨ ଗୋଟି ଶ୍ଳୋକରେ ଏହି ନଗରୀର ବର୍ଣ୍ଣନା ଲେଖାଅଛି ।

ସଙ୍ଗେ ଘେନି ଗଲେ । ଏହାପରେ ତିନିଗୋଟି ସର୍ଗରେ ବର୍ଣ୍ଣିତ ଅଛି କି ସୁଗ୍ରୀବ ଭୀତ ହୃଦୟରେ ଆସି ଲକ୍ଷ୍ମଣଙ୍କୁ ଭେଟିଲେ, ଲକ୍ଷ୍ମଣ କ୍ରୋଧ (୧) ବଚନ ପ୍ରକାଶ କଲାରୁ ତାରା ଦେବୀ ସଂଯୁକ୍ତ .ବଚନରେ କ୍ରୋଧର ଅନୁଚିତ ପ୍ରତିପାଦନ ପୂର୍ବକ ସମାଧାନ ଦେଲେ । (୨) ସୁଗ୍ରୀବ ଶୁଣି ରାମ ଲକ୍ଷ୍ମଣଙ୍କ ପ୍ରତି ନିଜର ସଂପୂର୍ଣ୍ଣ ଅନୁଗତତ୍ୱ ପ୍ରକାଶ କଲେ ଏବଂ ଲକ୍ଷ୍ମଣ ପୁଣି ପରିଶେଷରେ ଆପଣାର ପ୍ରଥମ କଥିତ କର୍କଶ ବଚନର କ୍ଷମା ପ୍ରାର୍ଥନା କରିଥିଲେ । (୩)

ଏହା ପରେ ସପ୍ତତ୍ରିଂଶ ସର୍ଗରେ ଲେଖାଅଛି କି ସୁଗ୍ରୀବ ହନୁମାନଙ୍କୁ ଆଦେଶ ଦେଲେ ଯେ, ଏହି ନିକଟବର୍ତ୍ତୀ ପର୍ବତମାନଙ୍କରୁ ବାନରସଂଘକୁ ଶୀଘ୍ର ଅଣାଅ ଏବଂ ଇତିପୂର୍ବେ ପ୍ରେଷିତ ଦୂତମାନଙ୍କୁ ସତ୍ୱର କରିବାପାଇଁ ଫେର୍ କେତେକ ଦ୍ରୁତଗାମୀ ଦୂତଙ୍କୁ ପଠାଅ; ଏ ସମସ୍ତେ ଯଦି ଦଶଦିନ ମଧ୍ୟରେ ନ ଆସନ୍ତି ତେବେ ନିଶ୍ଚୟ ପ୍ରାଣରେ ଦଣ୍ଡିତ ହେବେ । (୪)

ପରଂତୁ ଏହି ଆଦେଶର ଅବ୍ୟବହିତ ପରେ ସହସା ଅସଂଖ୍ୟ ବାନରସେନା ଆସି ତତ୍ର ଉପଗତ ହେଲେ । (୫) ଅପିଚ ଯେଉଁମାନେ ଦ୍ୱିତୀୟବାର ସେଦିନ ଆଦିଷ୍ଟ

---

(୧) ଅନାର୍ଯ୍ୟସ୍ତ୍ୱଂ କୃତଘ୍ନଶ୍ଚ ମିଥ୍ୟାବାଦୀ ଚ ବାନର ××× ନ ତ୍ୱାଂ ରାମୋ ବିଜାନୀତେ ସର୍ପଂ ମଣ୍ଡୂକ **ରାବଣଂ** ××× ଦସ୍ୟୁସ୍ତ୍ୱଂ ନିଶିତୈର୍ବାଣୈର୍ହତୋ ଦ୍ରକ୍ଷସି ବାଲିନମ୍ । ୩୪ସ. ଅଧ୍ୟାରେ ମଧ୍ୟ ଏହିପରି, ଯଥା – ବାଲି ଯେନ ହତୋ ବୀରଃ ସ ବାଣୋଽତ୍ର ପ୍ରତିକ୍ଷତେ, ତ୍ୱମେବ ବାଲିନେ ମାର୍ଗଂ ଗମିଷ୍ୟସି ମୟା ହତଃ । **୫ ସର୍ଗ**

(୨) ପଞ୍ଚତ୍ରିଂଶ ୩୫ ସର୍ଗରେ ତାରାଦେବୀଙ୍କର ଶାସ୍ତ୍ରପୁରାଣାଦିର ନିଦର୍ଶନ ପୂରଃସର ପ୍ରଦତ୍ତ ସମାଧାନର ବାକ୍ଚାତୁରୀ ଅତି ହୃଦ୍ୟ ଓ ରମଣୀୟ ।

(୩) ମୟା ତ୍ୱଂ ପରୁଷାଣ୍ୟୁକ୍ତଃ ତତ୍ତ୍ୱଂ କ୍ଷନ୍ତୁମର୍ହସି - ୩୬. ୨୦ ଶ୍ଳୋକ

(୪) ଅହୋଭିର୍ଦଶଭିର୍ଯେଚ ନାଗଚ୍ଛନ୍ତି ମମାଜ୍ଞୟା
ହନ୍ତବ୍ୟାସ୍ତେ ଦୁରାତ୍ମାନଃ ରାଜଶାସନଦୂଷକାଃ ୩୭. ୧୨ ଶ୍ଳୋ

(୫) ତତସ୍ତେଽଞ୍ଜନସଂକାଶା ଗିରେସ୍ତସ୍ମାଦ୍ ମହାଜବାଃ
ତିସ୍ରଃ କୋଟ୍ୟ ପ୍ଲବଙ୍ଗାନାଂ ନିର୍ଯ୍ୟୁର୍ଯତ୍ର ରାଘବଃ ୩୭ ସ. ୨୦ ଶ୍ଳୋ

ଯତ୍ର ଯେନ ହେତୁନା ରାଘବୋ ବର୍ତତେ ତତଃ ତସ୍ମାଦ୍ ହେତୋଃତସ୍ମାଦ୍ ଗିରେଃ ଅଂଜନଗିରେଃ ନିର୍ଯ୍ୟୁଃ
ଇତି ଗୋବିନ୍ଦରାଜୀୟଟୀକାୟାଂ ।

ତତ ଇତି – ଯେନ ହେତୁନା ରାଘବୋବର୍ତତେ ତସ୍ମାଦ୍ ହେତୋଃ ଅଂଜନସଂକାଶପ୍ଲବଙ୍ଗମାନାଂ ତିସ୍ରଃ କୋଟ୍ୟଃ ତସ୍ମାଦ୍ ଗିରେଃ ଅଂଜନ ଗିରେଃ ନିର୍ଯ୍ୟୁରିତି ଯୋଜନା, ଇତି ମହେଶ୍ୱରଦୀକ୍ଷିତ ଟୀକାୟାମ୍ ।

ଓ ପ୍ରେରିତ ହୋଇଥିଲେ ସେମାନେ ମଧ କୃତକାର୍ଯ୍ୟତାରେ ଶୀଘ୍ର ପ୍ରତ୍ୟାବୃତ୍ତ ହେଲେ । (୧)

ବାନର ସେନାମାନେ ହିମବତ୍ ପର୍ବତରୁ ମାହେଶ୍ୱର ଯଜ୍ଞସଂଜାତ ଦିବ୍ୟ ବନୌଷଧି ପ୍ରଭୃତି ଆନୟନ କରି ସୁଗ୍ରୀବଙ୍କୁ ଉପହାର ଦେଇଥିବା ମଧ ଏ ସ୍ଥଳେ ଲେଖାଅଛି । (୨)

ତାହାପରେ ଅଷ୍ଟତ୍ରିଂଶ ଓ ଊନଚତ୍ୱାରିଂଶ ସର୍ଗରେ ଲେଖା ଅଛି କି ସଲକ୍ଷ୍ମଣ ସୁଲକ୍ଷଣ ସୁଗ୍ରୀବ ଶିବିକା ରୋହଣ ପୂର୍ବକ ଶ୍ରୀରାମଙ୍କ ଛାମୁକୁ ଯାଇ ସମାଗତ ଅସଂଖ୍ୟ କପିବାହିନିର ସମ୍ୱାଦ ଜଣାଇଲେ । (୩)

ଏ ସ୍ଥଳରେ ବିବରଣତଃ ଉକ୍ତ ଅଛିକି ନାଦେୟ, ପାର୍ବତୀୟ, ସାମୁଦ୍ର, ବନଗିରି ମେରୁ ନିବାସୀ, ବିନ୍ଧ୍ୟାଦି ନିବାସୀ ବାନରଗଣ ଆସିଥିଲେ । (୪) ଦାସଙ୍କ ରାମାୟଣର ଅତ୍ରତ୍ୟ କଥାମାନ ଏହି, ସୁଗ୍ରୀବ ଲକ୍ଷ୍ମଣଙ୍କ ସହ ନିଜ ପ୍ରାସାଦରେ ବସି ଅଛନ୍ତି, ଦୂତ ଆସି ଜଣାଇଲା, ଅସଂଖ୍ୟ ବାନର ବାହିନୀ ଆସୁଅଛନ୍ତି, ବେଳ ସାତ ଘଡ଼ିଠାରେ ଏଠାରେ ପ୍ରବେଶିବେ । (୫)

---

(୧) ତେ ତୁ ସର୍ବେ ହରିବରାଃ ପୃଥିବ୍ୟାଂ ସର୍ବବାନରାନ୍
ସଂଚୋଦୟିତ୍ୱା ତ୍ୱରିତଂ ଯୂଥପାନ୍ଜଗ୍ମୁରଗ୍ରତଃ ।
(ସଂଚୋଦୟିତ୍ୱା ତ୍ୱରିତା ଯୂଥାନାଂ ଜଗ୍ମୁରଗ୍ରତଃ)
ତେ ତୁ ତେନ ମୁହୂର୍ତ୍ତେନ ଯୂଥପାଃ ଶୀଘ୍ରଗାମିନଃ
କିଷ୍କିନ୍ଧାଂ ତ୍ୱରୟା ପ୍ରାପ୍ତାଃ ସୁଗ୍ରୀବୋ ଯତ୍ର ବାନରଃ । ୩୭ସ. ୩୩, ୩୪ ଶ୍ଲୋ

(୨) ତଦନ୍ନ ସଂଭବଂ ଦିବ୍ୟଂ ଫଳମୂଳଂ ମନୋହରଂ ××
ଔଷଧାନି ଚ ଦିବ୍ୟାନି ଜଗୃହୁର୍ହରିଯୂଥପାଃ ×
ଆନିନ୍ୟୁର୍ବାନରା ଗତ୍ୱା ସୁଗ୍ରୀବପ୍ରିୟକାରଣାତ୍ । ୩୭ସ, ୩୦-୩୨ ଶ୍ଲୋ

(୩) ଅଧ୍ୟାତ୍ମ ରାମାୟଣରେ ମଧ ଏହା ଲେଖାଅଛି । ଭେରୀ ମୃଦଙ୍ଗୈର୍ବହୁଭୃକ୍ଷବାନରୈଃ ଶ୍ୱେତାତପତ୍ରୈର୍ବ୍ୟଜନୈଶ୍ଚ ଶୋଭିତଃ । ନୀଳାଙ୍ଗଦାଦ୍ୟୈର୍ହନୁମତ୍ ପ୍ରଧାନୈଃ ସମାବୃତୋ ରାଘବ ମତ୍ୟଗାତ୍ ହରିଃ, ୫ସ. ଏଥିରୁ ଜଣାଯାଏ ସେନାନୟନାର୍ଥ ନୀଳ ମଧ ଯାଇଥିଲେ ।

(୪) ପୃଥିବ୍ୟମ୍ବୁଚରା ରାମ ନାନାନଗନିବାସୀନଃ, କୋଟ୍ୟୋଘାଶ୍ଚଇମେ ପ୍ରାପ୍ତା ବାନରାସ୍ତବକିଙ୍କରାଃ । ୪୦ ସ, ୫ ଶ୍ଲୋ. କୋଟ୍ୟୋଗ୍ରଶ ଇତି ବହୁ ସଂଖ୍ୟୋପଲକ୍ଷଣଂ, ଇତି ଗୋବିନ୍ଦରାଜଃ । ଅଧ୍ୟାତ୍ମ ରାମାୟଣରେ ମଧ ଏହାହିଁ ଉକ୍ତ ଅଛି । ନାନା ଦ୍ୱୀପସରିଦ୍‌ଶୈଳବାସିନଃ ପର୍ବତୋପମାଃ ଅସଂଖ୍ୟାତା ସମାୟାନ୍ତି ହରୟଃ କାମରୂପିଣଃ ୬ସ.

(୫) କିଷ୍କିନ୍ଧା ପ୍ରବେଶ ହେବା ସାତ ଘଡ଼ିମାନେ ।
ଆଗକରି ମୋତେ ଯେ ପେଷିଲେ ତାରାନାନେ । ୭୫ ପୃ.

କବି ମହାଶୟ ଏହି ସେନାର ପରିମିତି ଆଉ ସଂସ୍ଥିତିର ଟିକିଏ ଅତିଶୟୋକ୍ତି ପ୍ରକାଶ କରିଅଛନ୍ତି । (୧) ଏବଂ ଅଙ୍ଗଦ ରଥାରୋହଣରେ ଆସିଥିବାର ଲେଖି ଅଛନ୍ତି । (୨)

ଦାସେ ଏ ସ୍ଥଳେ ମଧ୍ୟ ଲକ୍ଷ୍ମଣଙ୍କର ଅନୁପସ୍ଥିତିର ଦିବସ ତ୍ରୟରେ ରାମଙ୍କ ବିରହାବସ୍ଥାଜନିତ କେତେକ ମୂଳାନୁକ୍ତ ଘଟନା ପ୍ରକାଶ କରିଅଛନ୍ତି । ତାହା ଏହି, ରାମଚନ୍ଦ୍ର ପର୍ବତମାନଙ୍କୁ ସୀତାଙ୍କ ସନ୍ଦେଶ ପଚାରି ଉତ୍ତର ନ ପାଇ ଅପେକ୍ଷା କରିଥିଲେ, କୁକ୍କୁଟ ପୁଣି ରାମଙ୍କୁ ତଦୀୟ ଦୁରବସ୍ଥାର କାରଣ ପଚାରି ତାହାଙ୍କ ମୁଖରୁ ତାହା ଶୁଣିଲା ପରେ ରାବଣ ସୀତାଙ୍କୁ ହରିନେଇଥିବା ଜଣାଇଲେ, ରାମ ପୁଣି ତାହାଙ୍କୁ ବର ସ୍ୱରୂପ ମୁକୁଟ ପ୍ରଦାନ କଲେ । (୩) ତଥାଚ ପର୍ବତମାନଙ୍କୁ ବୃକ୍ଷାଦିରେ ଶୂନ୍ୟ ହେବାକୁ ଶାପ ଦେଲେ । ସେହି କ୍ଷଣି କୁକ୍କୁଟମାନେ ରାମଙ୍କ ଶାପରେ ବୃକ୍ଷମାନେ ପର୍ବତରୁ ପ୍ରସ୍ଖଳିତ ଦେଖି (୪) ରାମ ସାକ୍ଷାତ୍ ଈଶ୍ୱର ଅଟନ୍ତି, ଏହି ବିଶ୍ୱାସରେ ଫେର୍ ଅମରତ୍ୱର ବର ପ୍ରାର୍ଥନା କଲେ ।

ତାପରେ ରାମ ସୀତାଙ୍କ ଚିନ୍ତାରେ ଚିନ୍ତିତ ବସି ଅଛନ୍ତି । ଲକ୍ଷ୍ମଣାଦିମାନେ ଉତ୍ସବର ସହ ଉପଗତ ହେଲେ । ଶ୍ରୀମାନ୍ ବଳରାମ ଦାସ ମହାଶୟ ଏ ସ୍ଥଳରେ ବାନର ବାହିନିପତିମାନଙ୍କର ରାମଦର୍ଶନ ଆଉ ନିଜ ନିଜ ସେନା ପ୍ରଦର୍ଶନର ପ୍ରକ୍ରିୟାକୁ ସ୍ୱମନୀଷା ବଳରେ ବ୍ୟବହାରିକ ବିଶିଷ୍ଟ ଶିଷ୍ଟାଚାର ସହିତ ପ୍ରାୟ ଆଠ ପୃଷ୍ଠା ବ୍ୟାପୀ ପାଠରେ ସୁବିସ୍ତର ବିବୃତ କରିଅଛନ୍ତି । (୫)

ତାହା ସଂଗେ ସଂଗେ ତତ୍ ସମ୍ବନ୍ଧୀୟ ଆନୁସଙ୍ଗିକ ଘଟନାମାନ ମଧ୍ୟ କହିଅଛନ୍ତି । ଯେପରି ଭାବରେ ଅପରିମିତ ସେନାନିବହର ନାରବତଃ ସଂସ୍ଥାପନ, ସୁବ୍ୟବସ୍ଥାର ଏକୈକଶଃ ଆନୟନ ଓ ପ୍ରଦର୍ଶନ ତଥାଚ ପରିଚୟ ପ୍ରଦାନ ପ୍ରଭୃତି କାର୍ଯ୍ୟମାନ ପ୍ରଭୁଙ୍କ

---

(୧) କୃଷ୍ଣବେଣୀ କାବେରୀ କୂଳରେ ଥାଟ ରହି
ବାରାଣସୀ ପର୍ଯ୍ୟନ୍ତେ ଲଗାଲଗି ହୋଇ ××× ୭୫ପୃ.

(୨) ସିଂହଦ୍ୱାରେ ସୁଗ୍ରୀବ ଲକ୍ଷ୍ମଣ ଦୁହେଁ ଦେଖି
ଦୂରହୁଁ ଅଙ୍ଗଦ ରହୁବରକୁ ଉପେଖି । ୭୬ ପୃ.

(୩) ଛାପା ପୁସ୍ତକରେ ୭୭, ୭୮ ପୃଷ୍ଠା ପଢ଼ନ୍ତୁ ।

(୪) ଶାପର ଏ ବଡ଼ ଅଦ୍ଭୁତ ପରିଣାମ ନୁହେଁକି ? ବୃକ୍ଷମାନେ ଅଭିଶପ୍ତ ନୁହନ୍ତି । ଏମାନଙ୍କର ସ୍ଥାନ ଓ ପ୍ରାଣ ବିଯୋଗ ହେଲା କିପରି ? ପର୍ବତରେ ଇତଃପର ବୃକ୍ଷାଦି ନ ଜନ୍ମିବା ହିଁ ଶାପର ସଂଗତ ଫଳ-ପ୍ରବନ୍ଧ ।

(୫) ଛାପା ପୁସ୍ତକରେ ୮୨ ପୃଷ୍ଠାଠାରୁ ୮୯ ପୃଷ୍ଠା ପର୍ଯ୍ୟନ୍ତ ପଢ଼ି ନିଅନ୍ତୁ ।

ସନ୍ନିଧାନରେ କର୍ତ୍ତବ୍ୟ, ତାହାକୁ ସୁଶୃଙ୍ଖଳ ଭାବରେ ସେ ବର୍ଣ୍ଣନା କରିଅଛନ୍ତି । ଏ ସମ୍ବନ୍ଧେ ଦାସେ ମୂଳ ଗ୍ରନ୍ଥର ସାହାଯ୍ୟ କିଛି ପାଇ ନାହାନ୍ତି, କାରଣ ଏ ସବୁ ତହିଁରେ ଉକ୍ତ ନାହିଁ । (୧) ସର୍ବ ପ୍ରଥମେ ଶୌରି ସେନାପତି ରାମଙ୍କ ଛାମୁରେ ଭେଟି ଥିଲେ । ରାମ ଏହାଙ୍କୁ ପ୍ରସାଦ ସ୍ୱରୂପ ପ୍ରଥମେ ଯେଉଁ ପୁଷ୍ପଟିଏ ଦେଲେ ସେହିଟି ଶୌରିଙ୍କ ମସ୍ତକରେ ନିହିତ ହେଲାକ୍ଷଣି ସେ ମୂର୍ଚ୍ଛିତ ହୋଇ ପଡ଼ିଥିଲେ । ତାପରେ ଶୌରି ରାମଙ୍କୁ ଜଣାଇଲେ, 'ପ୍ରଭୋ ! ଏହି ପୁଷ୍ପଟି ମୋତେ ବଜ୍ରତୁଲ୍ୟ ବୋଧ ହେଲା, ତଥାପି ମୁଁ ସାଧାରଣ ବୀର ନୁହେ ।' ଏହା ବୋଲି ସେ ନିଜର ମହାବଳଶାଳିତାର ପରିଚୟରେ ଅନେକ କଥା ରାମଙ୍କୁ ଜଣାଇଲେ । ଫେର୍ ରାମ ଆଉ ଗୋଟିଏ ପୁଷ୍ପକୁ ତାହାଙ୍କ ମସ୍ତକରେ ଦେବାରୁ ସେ ପୁଣି ଅପରିମିତ ପରାକ୍ରମରେ ବିରାଜମାନ ହେଲେ । କବି ଏହି ଘଟଣାଟିକୁ ଶ୍ରୀରାମଚନ୍ଦ୍ରଙ୍କର ଦୟାର ମହିମା ପ୍ରଦ୍ୟୋତନାର୍ଥ କଳ୍ପନା କରିଥିବା ଅନୁମିତ ହୁଏ । ତ୍ରୟୋବିଂଶତି ଦିନ ପର୍ଯ୍ୟନ୍ତ ସମସ୍ତ ସେନାପତିମାନେ ସ୍ୱ ସ୍ୱ ସେନା ସହ ରାମଙ୍କ ଛାମୁରେ ଭେଟିଥିବା, ପ୍ରଥମ ଦିନରେ ତିରିଶି ଜଣ ସେନାପତି ନିଜର ନାମ ଧାମ ବୀରତ୍ୱାଦିର ପରିଚୟ ଦେବା, କାହାର କେତେ ପରିମିତ ସୈନ୍ୟ ସମାନୀତ ତାହା ତାରାକ୍ଷ ପଞ୍ଜିକାରେ ଲେଖି ରଖୁଥିବା, ପରିଶେଷରେ ରାମାଦେଶରେ ବିବରଣ ଜଣାଇବା ଲେଖାଅଛି । (୨) କିନ୍ତୁ ଦ୍ୱିତୀୟ ଦିବସରେ ତିନିଗୋଟି ସେନାପତିଙ୍କର ଦର୍ଶନାଦି କ୍ରିୟା ମାତ୍ର ଲେଖାଅଛି । ତଦନନ୍ତର ଅବଶିଷ୍ଟ ଏକବିଂଶତି ଦିବସର ଏହି ପ୍ରକ୍ରିୟାକୁ ଦାସେ ଆଉ ଲେଖି ନାହାନ୍ତି । ମାତ୍ର ଏହିପରି ତ୍ରୟୋବିଂଶତି ଦିବସ ପର୍ଯ୍ୟନ୍ତ ସେନାଗଣତି ଲାଗିବା ସୂଚିତ କରି ଦେଇ ଅଛନ୍ତି । (୩)

ଦାସଙ୍କ ମତରେ ସେନାସମାଗମ ବରାବର ଲଙ୍କାରେ ଅର୍ଦ୍ଧାଧିକ କାହିଁକି ରାବଣାନ୍ତକ ଯୁଦ୍ଧ ଶେଷ ପର୍ଯ୍ୟନ୍ତ ଯୁଦ୍ଧ ଶେଷ ହେବାଯାଏ ଲାଗିଅଛି । ପ୍ରତ୍ୟହ ନୂତନ ନୂତନ ବାନରସେନା

---

(୧) ଦାସେ ଅନେକତ୍ର ମାଲ୍ୟବନ୍ତରେ ପାତାଳ ଗଙ୍ଗା ନାମ୍ନୀ ନଦୀ ପ୍ରବାହିତ ଥିବା ଲେଖିଅଛନ୍ତି । ମୂଳ ଗ୍ରନ୍ଥରେ ଏହାର ଅସ୍ତିତ୍ୱ କେଉଁଠି ଦେଖାଯାଉ ନାହିଁ ! – ଏତେ ବୋଲି ଶ୍ରୀରାମ ଯେ ବେଗେ ତହୁଁ ଚଳି, ପାତାଳ ଗଙ୍ଗାଜଳରେ ଶ୍ରୀଅଙ୍ଗ ପଖାଳି । କି.କା. ୮୧ ପୃ.

(୨) ଛାପା ପୁସ୍ତକରେ ୮୮ ପୃଷ୍ଠା ଦେଖନ୍ତୁ ।

(୩) ଆଶ୍ୱିନ ମାସ ଯେ କୃଷ୍ଣଦ୍ୱିତୀୟା ସେଦିନ
ପ୍ରଥମେ ସୈନ୍ୟ ଆସି କଲା କି ଦର୍ଶନ ।
କନ୍ୟା ଶୁକଳ ଯେ ନବମୀର ଯାଏ
ଅପ୍ରମିତ ବଳ ସେ ଯେ ଏତେଦିନ ଯାଏ ।
ତେଇଶି ଦିବସରେ ଯେ ସରିଲା ଗଣିତ ।
ଅସଂଖ୍ୟ ସଇନ୍ୟ ସେ ମିଳିଲେ ଅପ୍ରମିତ । ୮୮, ୮୯ ପୃ.

ନିବହ ଆସି ରାମ ବାହିନିରେ ଯୋଗ ଦେଇ ଅଛନ୍ତି । ପାଠକ ଏହାର ପ୍ରମାଣମାନ କ୍ରମଶଃ ଉତ୍ତରୋତ୍ତର ଦେଖିବାକୁ ପାଇବେ । ଏହିଯେ ରାମଙ୍କର ଅନନ୍ତ ସେନା ସମବାୟ, ଏହାର ପରିପାଳନ ସୁଖସାଧ ଥିଲା, କାରଣ ସେ ସମୟରେ ଲୋକେ ସାଧାରଣତଃ ତେତେ ସୌଖୀନ ନ ଥିଲେ, ତେତେ ବିଳାସୀ ନଥିଲେ, ଅପିଚ କୃତ୍ରିମଭୋଜୀ ନଥିଲେ । ସେମାନେ କେବଳ ପ୍ରକୃତିଦତ୍ତ ପଦାର୍ଥଦ୍ୱାରା ପାକ କ୍ରିୟାର ଅନପେକ୍ଷରେ କ୍ଷୁଧା ତୃଷ୍ଣା ନିବାରଣ କରି ଅମିତ ବଳଶାଳୀ ଥିଲେ । ରାମ ବାହିନୀର ବୀରମାନଙ୍କୁ, ଅପିଚ ବାହିନୀପତିମାନଙ୍କୁ ଯାନ ବାହନର ଆବଶ୍ୟକ ନଥିଲା । ସୁତରାଂ ସେମାନେ ପ୍ରବଳ ଜଂଘାଳ ଓ କାମଚାରୀ ଥିଲେ । ସେମାନଙ୍କର କୃତ୍ରିମ ପ୍ରହରଣରେ ଆବଶ୍ୟକତା ନଥିଲା, ସେମାନେ ସମଧିକତଃ ସାହଜିକ-ଅବୟବ-ପ୍ରହରଣ ଥିଲେ । ମହାଭାରତ ଯୁଦ୍ଧ ସକାଶେ ସେନା ସଂଗ୍ରହ ପାଇଁ ପାଣ୍ଡବମାନଙ୍କୁ ଯେତେ ବହୁ ସମୟ ବ୍ୟାପି ମହତ୍ କଷ୍ଟ ସ୍ୱୀକାର କରିବାକୁ ପଡ଼ିଥିଲା, ରାମଙ୍କୁ ବା ସୁଗ୍ରୀବଙ୍କୁ ତାହାର ଏକଶତାଂଶ କଷ୍ଟ ସ୍ୱୀକାରପୂର୍ବକ ଯତ୍ନ କରିବାର ଦରକାର ହୋଇ ନଥିଲା । ତଥାପି ରାମାୟଣ ଯୁଦ୍ଧ ସକାଶେ ଭାରତାହବ ଅପେକ୍ଷା ଶତ ଗୁଣାଧିକ ବାହିନୀ ଅତି ସହଜରେ ଅତି ଅଳ୍ପ ସମୟରେ ଆସି ସମବେତ ହୋଇଥିଲେ ।

ଏଥିରେ ଯେ ତ୍ରୟୋବିଂଶତି ଦିବସ ପର୍ଯ୍ୟନ୍ତ ସେନାଗଣନା ଲାଗିଥିବା ଲେଖାଅଛି, ତାହା ଯଥାର୍ଥ ବୋଧ ହୁଏ ନାହିଁ । ମୂଳ ଗ୍ରନ୍ଥରେତ ଏପରି ବିବରଣ ଆଦୌ ଉକ୍ତ ନାହିଁ, ସୁତରାଂ ଦାସ ମହାଶୟ ମଧ କହିଛନ୍ତି କି ପ୍ରାୟ ରାବଣ ନିଧନ ପର୍ଯ୍ୟନ୍ତ ନବ ନବ୍ ସେନାର ସମାଗମ ଲାଗିଥିଲା । ତେବେ ସେହି ତେଇଶି ଦିନରେ ରାମବାହିନୀର ଯାବତୀୟ ବୀରଗଣନା ଅବସାନ ହେଲା କିପରି ? ତେବେ ପୂର୍ବାପର କଥାର ଅସାଙ୍ଗତ୍ୟ ଆପତ୍ତି ଘଟୁ ନାହିଁ କି ? ଏହାପରେ ପୁଣି ଦାସେ କିମ୍ବା କେହି ପ୍ରକ୍ଷେପକାରକ ଅନୁଲେଖକ ବିଚିତ୍ର କଳ୍ପନାର ଜଳ୍ପନା ପ୍ରକାଶ କରିଅଛନ୍ତି । ସେନା ଗଣନାର ତାଠାନନ୍ତର ଲେଖା ଅଛି କି, ସୁଗ୍ରୀବଙ୍କ ଆଦେଶରେ ନାନାଦିଗ୍‌ଦେଶରୁ ଆସୁଥିବା କେତେକ ସୈନ୍ୟମାନେ ଆବଶ୍ୟକ ପ୍ରଭୁଙ୍କର ଠିକଣା ଜାଣି ନପାରି ଯେ ଯେ ସ୍ଥାନରେ ରହିଗଲେ, ତତ୍ର ତତ୍ର ସେହିମାନେ ଜଙ୍ଗଲମୟ ପ୍ରଦେଶରେ ଏକ ଏକ ଦେଶ ବା ରାଜ୍ୟ ସ୍ଥାପନ କରି ନେଲେ । ଇଦାନୀନ୍ତନ ବଣାଇ ବାମଣ୍ଡା ପ୍ରଭୃତି ସେହି ବାନରିକ ରାଜ୍ୟ ଅଟେ । (୧) ବୋଧହୁଏ

---

(୧) ବଣା ହୋଇ ଯାଇ କରି ରହିଲେକ ଥାଟ
ବଣାଇ ନାମରେ ସେହି ହୋଇଲାକ ରାଷ୍ଟ୍ର ।
ବାମ ଆଡ଼େ ତହିଁ ପୁଣି ବାଟ ନ ପାଇଲେ
ବାମଣ୍ଡା ବୋଲିଣ ସେ ତହିଁର (ତାହାର) ନାମ ଦେଲେ ।

କବି କିମ୍ବା ପ୍ରକ୍ଷେପକ ଅନୁଲେଖକ ସେହି ସ୍ଥାନରେ ତଦ୍ ସାମୟିକ ଲୋକମାନଙ୍କର ଅବସ୍ଥା ଆଉ ଅବସ୍ଥାନର ବୈଲକ୍ଷଣକୁ ଅନୁସରି ଏପରି ଚିତ୍ରର ଚିତ୍ରଣ କରିଅଛନ୍ତି ?

ସୁଗ୍ରୀବଙ୍କର ସମ୍ବାଦପ୍ରେରଣ ମାତ୍ର ଏହି ଯେ ବହୁଦୂରବର୍ତ୍ତୀ ଅନନ୍ତବୀର ଅନୀକିନୀର ଏକତ୍ର ସହସା ସମାବେଶ, ଏହାକୁ ସମ୍ୟକ୍ ବିଚାର କରିଗଲେ ହୃଦୟରେ ଏହି ଭାବ ସମୁଦିତ ହୁଏ, ସୁଗ୍ରୀବଙ୍କର ଆଦେଶ କେବଳ ଏହି ଅମିତ ସେନା ସମାଗମର କାର୍ଯ୍ୟକାରୀ କାରଣ ନୁହେ । ଏଥି ମଧ୍ୟରେ ଐଶ୍ୱରିକ ପ୍ରଭାବର ଉତ୍ତେଜନା ଲୁକ୍କାୟିତ ରହି ଏ ସମସ୍ତଙ୍କୁ କୈଶିକ ଶକ୍ତି ନ୍ୟାୟରେ ଏକାବେଳକେ ଉତ୍ତେଜିତ କରିଅଛି । ଭାରତାହବ ମଧ୍ୟରେ ଯେପରି ଶ୍ରୀକୃଷ୍ଣଙ୍କର ସର୍ବଂକଷ ପ୍ରହରଣ ଶକ୍ତି ସୁଦର୍ଶନ ଲୁକ୍କାୟିତ ରହି ଅର୍ଜୁନାଦିଙ୍କର ଅସାଧ୍ୟ ସାଧନର ସଂସାଧକ, ସେହିପରି ଏଥିରେ ରାମଙ୍କର ସର୍ବବ୍ୟାପକ, ଅବାଚକ, ଐଶ୍ୱରିକ ନିଦେଶ ଏହି ଅନନ୍ତ ସେନାର ସଂକଳନ, ସଂମିଳନ, ସଂଚଳନ ପ୍ରଭୃତିକୁ ସଂସାଧିତ କରିଅଛି । ଯଦିଚ ଏହାର କାରଣ କେବଳ ସୁଗ୍ରୀବଙ୍କର ଆଦେଶ ହୋଇଥାଆନ୍ତା ତେବେ ହୁଏତ ଅବଶ୍ୟ ଲକ୍ଷ ଲକ୍ଷ ସୈନ୍ୟମାନଙ୍କର ଆଗମନ ହୋଇଥାଆନ୍ତା, ମାତ୍ର ଏହି ଯେ ଆସେତୁକୈଳାସ ଆପୂର୍ବାଦ୍ରିଅସ୍ତାଚଳ ସମଗ୍ର ଭାରତ ବର୍ଷ କାହିଁକି ସମଗ୍ର ଜମ୍ବୁ ଦ୍ୱୀପ ମଧ୍ୟରୁ ସମୁଦ୍ର ବାଲୁକା ରାଶି ପ୍ରମିତ ସେନାସଂଘର ସମାବେଶ ଶ୍ରୀରାମଚନ୍ଦ୍ରଙ୍କର ମାନସିକ ଆଦେଶ ବଳରୁ କେବଳ ଘଟିଅଛି । ଏହାଦ୍ୱାରା କପିରାଜ ସୁଗ୍ରୀବ ଖୁବ୍ ମହନୀୟତା ଏବଂ ପ୍ରଭୂତ ପ୍ରଭୁତା ଲାଭ କରିପାରି ଅଛନ୍ତି । ସୁଗ୍ରୀବ ଅବଶ୍ୟ ଶ୍ରୀରାମଙ୍କ ବଡ଼ ଉପକାର କରିଅଛନ୍ତି, ଏପରିକି ପ୍ରାଣପର୍ଯ୍ୟନ୍ତ କାର୍ଯ୍ୟରେ ଲଗାଇବାକୁ କୁଣ୍ଠିତହୋଇ ନାହାନ୍ତି । ତାଙ୍କରି ସୁବିଚାରରୁ କେବଳ ସୀତା ଦେବୀ ଶ୍ରୀରାମଙ୍କୁ ପୁନଃପ୍ରାପ୍ତି ହୋଇ ଅଛନ୍ତି । ତଥାପି ଏହି କଥାଟି ସଂପୂର୍ଣ୍ଣ ସତ୍ୟ ଯେ ଶ୍ରୀରାମ ତାହାଙ୍କୁ ନିଜର ଅନନ୍ୟାଲବ୍ଧ ଦୟାର ପାତ୍ର କରି ଅଛନ୍ତି । ଶ୍ରୀରାମଙ୍କ ସୁଦୟାରୁ, ଶ୍ରୀରାମଙ୍କ ମହିମାରୁ କେବଳ ସୁଗ୍ରୀବଙ୍କର ଆବଶ୍ୟକ ଜୀବସମାଜର ଏପରି କି ତୀର୍ଯ୍ୟକ ଜନ୍ତୁସମାଜରେ ମଧ୍ୟ ଆଦେଶ ସାଫଲ୍ୟ, ଅଖଣ୍ଡ ସାର୍ବଭୌମତ୍ୱ ସଦୃଶ ଅଖଣ୍ଡାଧିପତ୍ୟ ପ୍ରତିଷ୍ଠିତ ହୋଇଅଛି । ତାହାଙ୍କ ଏହି ଅଭିନବପ୍ରାପ୍ତ-ପ୍ରତିଷ୍ଠା ଆମରଣାନ୍ତ ଜାଜ୍ୱଲ୍ୟମାନ ରହିଅଛି ।

ଅତଃପର ମୂଳଗ୍ରନ୍ଥର ଚତ୍ୱାରିଂଶ ସର୍ଗଠାରୁ ପଞ୍ଚଚତ୍ୱାରିଂଶ ସର୍ଗ ପର୍ଯ୍ୟନ୍ତ ଛଗୋଟି ସର୍ଗରେ ସୀତାନ୍ୱେଷଣାର୍ଥ ପୂର୍ବାଦି ଦିଗ୍‌ବିଭାଗମାନଙ୍କ ଦୂତ ପ୍ରେରଣା କ୍ରମ ଏବଂ ବୀରମାନଙ୍କର ପ୍ରତିଜ୍ଞାବାଦ ବର୍ଣ୍ଣିତ ଅଛି । ସୁଗ୍ରୀବ ରାମଙ୍କୁ ସେନାସମାଗମନ ଜଣାଇଲା

---

ବେଣୀନଦୀ କୂଳେ ସେ ଯେ ହର ଗଙ୍ଗାଳାଇ
ସୈନ୍ୟ ପୁରିଛନ୍ତି ସେ ଯେ ଛଡ଼ାଛଡ଼ି ନାହିଁ ।
ରଣ କରିଯାଇ ସେହୁ କଲେକ ବିଚାର
ରଣାଇ ନାମ ସେ ଯେ ହୋଇଲା ତାହାଙ୍କର ।

ପରେ ରାମ ଆଦେଶ କଲେ ବି ସୀତା ସଜୀବ ଅଛନ୍ତି କି ଏବଂ ରାବଣର ସ୍ଥାନ କେଉଁଠି, ଏହା ଆଗେ ବୁଝିବାକୁ ହେବ । ସୁଗ୍ରୀବଦୂତମାନଙ୍କର ପ୍ରତ୍ୟାବର୍ତ୍ତିରେ ଏକମାସ ମାତ୍ର ଅବଧି (୧) ଦେଇ ପୂର୍ବାଦିଦିଗରେ ଯାବତୀୟ ସ୍ଥାନରେ ସୀତାନୁସନ୍ଧାନ କରଣାର୍ଥ ଆଦେଶ ଦେଲେ । ପୂର୍ବ ଦିଗକୁ ପ୍ରେରିତ ବୀରମାନଙ୍କ ମଧ୍ୟରେ ବିନତା ନାମକ ଯୁଥପତି ପ୍ରଧାନ ଥିଲେ । ଏ ସ୍ଥଳେ ଉଦୟାଚଳ ଅବଧି ନାନାବିଧ ପାର୍ବତ୍ୟ ଓ ନାଦେୟ ସ୍ଥାନମାନଙ୍କର ଉଲ୍ଲେଖ ଅଛି । ଦକ୍ଷିଣ ଦିଗକୁ ପ୍ରେରିତ ବୀରମାନଙ୍କ ମଧ୍ୟରେ ଅଙ୍ଗଦ ହନୁମାନାଦି ପ୍ରଧାନ ଥିଲେ । ଏ ସ୍ଥଳେ ଯମଙ୍କ ପୁର ପର୍ଯ୍ୟନ୍ତ ଯିବା ପାଇଁ ଉକ୍ତ ଅଛି । ପଶ୍ଚିମକୁ ପ୍ରେରିତ ବୀର ମାନଙ୍କ ମଧ୍ୟରେ ତାରାଙ୍କ ପିତା ସୁଷେଣ ପ୍ରଧାନ ଥିଲେ । ଏମାନଙ୍କୁ ବରୁଣାଳୟ ଅସ୍ତ ପର୍ବତ ପର୍ଯ୍ୟନ୍ତ ଯିବାକୁ ଆଦେଶ ହୋଇଅଛି । ଏଥି ମଧ୍ୟରେ ନରକାସୁରଙ୍କର ପ୍ରାକ୍‌ଜ୍ୟୋତିଷ ପୁରର ଉଲ୍ଲେଖ ମଧ୍ୟ ଅଛି । ଉତ୍ତରକୁ ପ୍ରେରିତ ଦୂତମାନଙ୍କ ମଧ୍ୟରେ ଶତବଳୀ ପ୍ରଧାନ ଥିଲେ । ଏ ସ୍ଥଳେ ଚୀନ ମହାଚୀନ ଓ ଋଷର ପ୍ରଭୃତି ଦେଶ ଏବଂ ପର୍ବତାଦିର ପରିଚୟ ଦତ୍ତ ଅଛି । ଏମାନେ ଉତ୍ତର କୁରୁ ଓ ଉତ୍ତର ସମୁଦ୍ରପର୍ଯ୍ୟନ୍ତ ଯିବାପାଇଁ ଆଦିଷ୍ଟ ହୋଇଥିଲେ । ଚତୁଶ୍ଚତ୍ୱାରିଂଶ ସର୍ଗରେ ବିଶେଷତଃ ହନୁମାନ କେବଳ ରାମଙ୍କ ଅଙ୍ଗୁରୀୟ ସଂକେତ ଆଦାନ ପୂର୍ବକ କେତେକ କଥାରେ ଆଦିଷ୍ଟ ହୋଇ ଅଛନ୍ତି । (୨) ପଞ୍ଚଚତ୍ୱାରିଂଶ ସର୍ଗରେ ବୀରମାନଙ୍କର ପ୍ରତିଜ୍ଞାବାଦ ବର୍ଣ୍ଣିତ ଅଛି । ଦାସଙ୍କ ରାମାୟଣରେ ପ୍ରେଷିତ ଦୂତମାନଙ୍କର ନାମ ଓ ନିର୍ଦ୍ଦିଷ୍ଟ ସଂଖ୍ୟାମାନ ମୂଳଗ୍ରନ୍ଥାନୁସାରୀ ନୁହେ । ଏଥିରେ କବି ମହାଶୟ ଅନେକ ଗୁଡ଼ିଏ କପୋଳକଳ୍ପିତ ନାମ ମଧ୍ୟ ଦେଇ

---

(୧) ମାସେ ପୂର୍ଣ୍ଣେ ନିବର୍ତ୍ତଧ୍ୱମୁଦୟଂ ପ୍ରାପ୍ୟ ପର୍ବତମ୍
ଊର୍ଦ୍ଧ୍ୱଂ ମାସାନ୍ନବସ୍ତବ୍ୟଂ ବସନ୍ ବଧ୍ୟୋ ଭବେନ୍ମମ । ୪୦ସ.

ମାସାଦର୍ବାକ୍ ନିବର୍ତଧ୍ୱଂ ମଦ୍‌ଶାସନ ପୁରଃସରାଃ, ସୀତାମଦୃଷ୍ଟ୍ୱା ଯଦିବା ମାସ.ଦୂର୍ଦ୍ଧ୍ୱଂ ଦିନଂ ଭବେତ୍; ତଦା ପ୍ରାଣାନ୍ତିକଂ ଦଣ୍ଡଂ ମତ୍ତଃ ପ୍ରାପ୍‌ସ୍ୟଥ ବାନରାଃ । ଇତି ଅଧ୍ୟାତ୍ମ ରାମାୟଣେ କି.କା. ୬ସ.

(୨) ଦଦୌତସ୍ୟ ତତଃ ପ୍ରୀତଃ ସ୍ୱନାମାଙ୍କୋପଶୋଭିତମ୍
ଅଙ୍ଗୁଳୀୟମଭିଜ୍ଞାନଂ ରାଜପୁତ୍ର୍ୟାଃ ପରଂତପଃ । ୪୪ସ. ୧୨ ଶ୍ଳୋ

ନ ତୁ ତ୍ୟକ୍ତସକଳାଧନସ୍ୟ ବନବୃତ୍ତ୍ୟା ବର୍ତ୍ତମାନସ୍ୟ କୁତୋଽଙ୍ଗୁଳୀୟକମିତି ଚେତ୍ ଇଦମେକମେତତ୍ କାର୍ଯ୍ୟାର୍ଥଂ ରକ୍ଷିତବାନ୍ । ଅତଏବାଙ୍ଗୁଳୀୟମୁକ୍ତଂ ଚୈତି ନୋକ୍ତଂ । ଯଦା ରାମନାମାଙ୍କିତମଙ୍ଗୁଳୀୟକଂ ସୀତାୟାଃ କଦାଚିତ୍ ରାବଣାଗମନାତ୍ ପୂର୍ବଂ ପ୍ରଣୟପରତ୍ୱେନ ରାମେଣ ସ୍ୱୀକୃତଂ ଇତି ବୋଧ୍ୟଂ ହେ ଯଦା ଭାର୍ଯ୍ୟାସ୍ୱେ । ନ କନିଷ୍ଠିକାୟାଂ ସଦା ମୁଦ୍ରିକା ଧାର୍ଯ୍ୟତ ଇତି ଦେଶାଚାରଃ । ଯଦ୍ୱା ବିବାହ କାଳେ ଜନକେନଦତ୍ତମିଦଂ ବରାଲଂକାରତ୍ୱେନ ଗୃହିତ୍ୱା ପ୍ରେକ୍ଷମାଣା ସା ଭର୍ତୁଃ କରବିଭୂଷଣମିତ୍ୟୁକ୍ତେଃ ଇତି ଗୋବିନ୍ଦରାଜଃ ।

ଅଭିଜ୍ଞାନାର୍ଥମେତତ୍ ମେ ହ୍ୟଙ୍ଗୁଳୀୟମନୁତ୍ତମଂ, ମନ୍ନାମାକ୍ଷରସଂଯୁକ୍ତଂ ସୀତାୟୈ ଦୀୟତାଂ ରହଃ । ଇତି ଅଧ୍ୟାତ୍ମ ରାମାୟଣେ କି. କା. ୬ସ; ରାମ ହନୁମାନଙ୍କୁ ଏତିକି ମାତ୍ର କହି ଅଛନ୍ତି, ଚିତ୍ରକୂଟ କଥା କିୟା ଅନ୍ୟ କଥା କହିଥିବା ଏଥିରେ ଉକ୍ତ ନାହିଁ ।

ଅଛନ୍ତି । ଥାଦିଷ୍ଟ କଥାମାନଙ୍କର ମଧ କେତେକ ଅଂଶ ସଂଗତକ୍ରମରେ ଅନ୍ୟଥା କରିଅଛନ୍ତି । ତଥାପି ସ୍ଥୂଳ ଘଟଣାତକ ଠିକ୍ ମୂଳାନୁମତ କେବଳ କରିଅଛନ୍ତି । ଏଥିରେ ପୂର୍ବ ଦିଗକୁ ପ୍ରେରିତ ଦୂତମାନଙ୍କ ମଧରେ ବୃତ. ସେନାପତି ପ୍ରଧାନ, ଏହାଙ୍କ ହାତରେ ରାମଚନ୍ଦ୍ର ସୀତାଙ୍କୁ ପ୍ରଦର୍ଶନାର୍ଥ ସଙ୍କେତ ସ୍ୱରୂପ ମନ୍ମଥ ଶର ଦେଇଥିବା ଲେଖାଅଛି । (୧)

ପଶ୍ଚିମକୁ ପ୍ରେରିତ ଦୂତମାନଙ୍କ ମଧରେ କାଳିଗନ ସେନାପତି ଥିଲେ, ରାମ ଏହାଙ୍କ ହସ୍ତରେ ସଙ୍କେତ ରୂପେ ଚନ୍ଦ୍ରାଙ୍କିତ ଶର ଦେଇଥିବା ଲେଖା ଅଛି । (୨)

ଉତ୍ତର ଦୂତମାନଙ୍କ ମଧରେ ଶତବାଳି ପ୍ରଧାନ ଥିଲେ । ରାମ ତାହାଙ୍କ ହାତରେ ସଂକେତ ରୂପେ ଗରୁଡ଼ଧ୍ୱଜଶର ଦେଇଥିଲେ ବୋଲି ଲେଖା ଅଛି । (୩)

ଦାସେ ଏ ସ୍ଥଳେ ନିଗୂଢ଼ ଅଭିପ୍ରାୟରେ ମୂଳାନୁକ୍ତ ଶର ସଂକେତ ପ୍ରେରଣ କଥାର ଉଦ୍ଭାବନ କରିଅଛନ୍ତି ? ଜଣାଯାଉ ନାହିଁ, ଦକ୍ଷିଣ ଦୂତମାନଙ୍କ ମଧରେ ସୁପ୍ରଧାନ ହନୁମାନଙ୍କୁ ଶ୍ରୀରାମ ପ୍ରଶଂସାପୂର୍ବକ କେତେକ କଥା କହିବା ସ୍ଥଳେ ଦାସେ ତାହାଙ୍କ ମୁଖରେ ସୀତାଙ୍କ ପରିଚୟ ପ୍ରକାଶକ ରୂପ ବର୍ଣ୍ଣନା କୁହାଇବାକୁ ଯାଇ କିଛି ଅବାଚ୍ୟ କଥା ମଧ କୁହାଇ ଅଛନ୍ତି । (୪) ଏ ସ୍ଥଳେ ରାମ ହନୁମାନଙ୍କୁ ଚିତ୍ରକୂଟ ପର୍ବତକୂଟରେ ସଂଘଟିତ ସୀତାଙ୍କର ଗୈରିକ ତିଳକର ବିଶ୍ୱସ୍ତ ସମାଚାର ମଧ କହିଥିବା ଏବଂ ହସ୍ତର ମୁଦ୍ରିକାଟି ସଙ୍କେତ ଦେଇଥିବା ଲେଖାଅଛି । ଗୈରିକ ତିଳକର କଥା ରାମ ହନୁମାନଙ୍କୁ କହିଥିବା ଏ ସ୍ଥଳେ ମୂଳଗ୍ରନ୍ଥରେ ପ୍ରକାଶିତ ନଥିଲେ ସୁଦ୍ଧା ଏହା ଯଥାର୍ଥ କେବଳ, ଏହାର ଯଥାର୍ଥତା ସୁନ୍ଦରାକାଣ୍ଡରେ ହନୁମାନ ସୀତାଙ୍କୁ ଜଣାଇବା ସ୍ଥଳେ ସୁବ୍ୟକ୍ତ ହୋଇଅଛି । ବଳରାମ ଦାସେ ରାମାୟଣ ଚରିତରେ ଖୁବ୍ ପାରଦର୍ଶୀ ଥିବାରୁ ଏହି ଘଟନାଟିକୁ ଯଥାସ୍ଥାନରେ ସନ୍ନିବେଶିତ କରିଦେଇ ଅଛନ୍ତି ।

---

(୧) ଶ୍ରୀରାମ ବୋଇଲେ ତୁମେ ଶୁଣ ବୃତ ବୀର
କରେ ଧରିଥିବୁ ତୁହି ଏ ମନ୍ମଥ ଶର । × ×
ଏ କାଣ୍ଡ ଗୋଟି ପୁଣ ଦେଖାଇବୁ ନେଇ – ୯୦ ପୃ.

(୨) କାଳିଗନକୁ ଶ୍ରୀରାମ କତିକି ରାଇଲେ
ଚନ୍ଦ୍ର ଚିହ୍ନିତ ନାରାଚ ତାହାର ହାତେ ଦେଲେ × × ୯୧ ପୃ.

(୩) ଶତବାଳିକି ରାମ ରାଇଲେକ ପାଶ ।
ଗରୁଡ଼ଧ୍ୱଜଶସ୍ତ୍ରକୁ ତାହାର ହସ୍ତେ ଦେଲେ ।
ସୀତାଙ୍କୁ ଦେଖିଲେ ଏହା ଦେବୁଟି ବୋଇଲେ । ୯୧ ପୃ.

(୪) ମଝାଅତି ସଂକୀର୍ଣ୍ଣ ବିଶାଳ ବକ୍ଷସ୍ଥଳ
ସୁବର୍ଣ୍ଣ କଳଶ ଜାଣି ତା କୁଚଯୁଗଳ । ୯୧ପୃ.

ମୂଳଗ୍ରନ୍ଥର ଷଟ୍‌ଚତ୍ୱାରିଂଶ ସର୍ଗରେ ଲେଖା ଅଛିକି ଦୂତମାନଙ୍କ ଗମନ ପରେ ରାମ ସୁଗ୍ରୀବଙ୍କୁ ପଚାରିଲେ, 'ଆପଣ ଭୂମଣ୍ଡଳର କଥିତ ବିବରଣମାନ କିପରି ଅବଗତ ହେଲେ ।' (୧)

ସୁଗ୍ରୀବ ରାମଙ୍କୁ ଜଣାଇଲେ, 'ମୁଁ ଯେତେବେଳେ ବାଳୀଙ୍କଦ୍ୱାରା ବିତାଡ଼ିତ ହେଲି ଏବଂ ମୋତେ ସେ ନିହତ କରିବାକୁ ଅନୁଧାବିତ ହେଲେ, ତଦା ମୁଁ ସମଗ୍ର ଭୂମଣ୍ଡଳର ଦିଗ୍‌ବିଦିଗ ଭ୍ରମି ଭ୍ରମି ତାହାର ଯାବତୀୟ ପରିଚୟ ପାଇଅଛି ।' ରାମଙ୍କର ଏହି ପ୍ରଶ୍ନ ଆଉ ସୁଗ୍ରୀବଙ୍କର ପ୍ରଦତ୍ତ ଉତ୍ତରର କଥା ଶ୍ରୀମାନ୍ ବଳରାମ ଦାସେ ଲେଖି ନାହାନ୍ତି ।

ଅତଃପର ସପ୍ତଚତ୍ୱାରିଂଶ ସର୍ଗରେ ଆଦକ୍ଷିଣଉତ୍ତରାଦି ଦିଗତ୍ରୟରୁ ଦୂତକ୍ଷିଣ ଦୂତମାନେ ସୀତାଙ୍କୁ ଦେଖି ନପାରି ପ୍ରତ୍ୟାବର୍ତ୍ତ ହେବା ଉକ୍ତ ଅଛି । ଏ ସ୍ଥଳେ ପ୍ରତ୍ୟାବୃତ୍ତ ଦୂତମାନେ କୌଣସି ବିଶେଷ ସ୍ଥାନାଦିର ଘଟଣା କିଛି ଜଣାଉ ନାହାନ୍ତି । କୁତ୍ରାପି ସୀତା ଦେବୀଙ୍କୁ ଦେଖିବାକୁ ପାଇଲୁ ନାହିଁ, ଏହା କେବଳ ଜଣାଇ ଅଛନ୍ତି ।

ବଳରାମ ଦାସ ମହାଶୟ ଉତ୍ତର ଦିଗରୁ ପ୍ରତ୍ୟାବୃତ୍ତ ଦୂତମାନଙ୍କ ମୁଖରେ ମୂଳାନୁକ୍ତ କେତେଗୁଡ଼ିଏ ସ୍ଥାନର କଳ୍ପନାନୁପ୍ରାଣିତ ଅନ୍ୟତ୍ର ଘଟନା ପ୍ରକାଶ କରିଅଛନ୍ତି । ଏଥି ମଧ୍ୟରୁ କେତେକ ଅସଂଗତ ମଧ୍ୟ ଜଣାଯାଉ ଅଛି । ଉତ୍ତର ଦିଗର ଦୂତମାନେ କହିଲେ କି ଆମ୍ଭେମାନେ ଶ୍ରୀହଟ ପାଟଣା, କାଉଁରି କାମପୁର, ଆଉ ହିମାଳୟ ପର୍ବତକୁ ଯାଉଥିଲୁ, ହିମାଳୟରେ ତ୍ରିପୁରାରି ପ୍ରସନ୍ନ ହୋଇ ଆମ୍ଭମାନଙ୍କୁ କହିଲେ, ଏହିଠାରେ ସୀତା ନାହାନ୍ତି, ଏହା ଦେବଭୂମି, ତୁମ୍ଭେମାନେ ଏଠାକୁ କାହିଁକି ଆସିଲ ? ତୁମ୍ଭେମାନେ ରାମଙ୍କ ଦୂତ ନଥିଲେ ଏଠାରେ ନିଶ୍ଚେ ପ୍ରାଣରେ ନିହତ ହୁଅନ୍ତ, ଶୀଘ୍ରେ ଏଠାରୁ ବାହାରି ଯାଅ, ଏ ସମ୍ବାଦ ଦେବତାମାନେ ଶୁଣିଲେ କ୍ରୁଦ୍ଧ ହେବେ । ଆମ୍ଭେମାନେ ତେବେ ସେହି ପର୍ବତରୁ ଅବତରି ଆସୁଁ ଆସୁଁ ମହାଗଛ ସ୍ୱରୂପ ଗୋଟିଏ ଜାମୁ ଗଛ ଦେଖିଲୁଁ । ତାହା ତଳେ ବହୁତ ପାଚିଲା ଜାମୁଫଳ ଗୁଡ଼ିଏ ପଡ଼ିଥିଲା । ସେହି ବୃକ୍ଷ ମୂଳରୁ ସ୍ୱର୍ଣ୍ଣାଦି ଧାତୁମାନଙ୍କର ଉତ୍ପତ୍ତି ହୁଏ । ସେହି ପର୍ବତରେ ଜମ୍ବୁନଦ ନାମରେ ଗୋଟିଏ ଗଭୀର ନଦୀ ପ୍ରବାହିତ ହୋଇ ପ୍ରୋକ୍ତ ଜାମୁଫଳ ଗୁଡ଼ିକୁ ଏକତ୍ର କରେ । ସେଥିମଧ୍ୟରୁ ସୁବର୍ଣ୍ଣ ଜନ୍ମିଥାଏ (୨) ଆମ୍ଭେମାନେ ସେଥିରୁ କେତେକ କନକର ଜିହୀର୍ଷାର ମନୀଷା କରି

---

(୧) କଥଂ ଭବାନ୍ ବିଜାନୀତେ ସର୍ବଂ ବୈ ମଣ୍ଡଳଂ ଭୁବଃ । ୪୬ ସ.

(୨) ତହିଁଥିବା ପଙ୍କ ଯେ ଅଟଇ ଶୁଦ୍ଧ ସୁନା
ବିଚାରକୁ ଏଥିରୁ ଖଣ୍ଡିଏକ ନେଇ ସିନା । ୯୩ପୃ.

ଉତ୍ତର ଦିଗର ଦୂତମାନେ ଏହାଛଡ଼ା ଆଉ କୌଣସି ସ୍ଥାନର କଥା କହି ନାହାନ୍ତି ।

ସେହି ନଦୀ ନିକଟରେ ଉପଗତ ହେଲୁ, ତଦା ଗୋଟିଏ ଉଦ୍‌ପର୍ଣ - ପର୍ଣୀ କହିଲା, 'ରେ ପାମର କପି ମାନେ । ଏ ଦେବ ପଦାର୍ଥରେ ତୁମର ଲୋଲୁପ କାହିଁକି । ଏହି କନକ ସାଧାରଣ ନୁହେ, ଏହାକୁ ହାତେ ହାତେ ଅଳଙ୍କାର ଗଢ଼ିବାକୁ ହୁଏ । ଇନ୍ଦ୍ରଙ୍କର ନିରବଗ୍ରହ ଅନୁଗ୍ରହ ବିନା କେହି ଏହା ପାଇ ନପାରେ, ତୁମେମାନେ ମର୍ତ୍ତ୍ୟର ଲୋକ, ତୁମକୁ ଏଠାକୁ କିଏ ଆଣିଲା ?' ପରେ ସେହି ଭୁଜଙ୍ଗମଟି ଧ୍ୟାନ ସମାଧିରେ ଆମ୍ଭମାନଙ୍କର ପରିଚୟ ଜାଣିପାରି କହିଲାକି, ତୁମ୍ଭମାନଙ୍କୁ ରାମଚନ୍ଦ୍ରଙ୍କର ଦୂତ ଜାଣି ଏବେଳକ କ୍ଷମା କଲୁଁ, ଶୀଘ୍ର ଏହିଠାରୁ ପ୍ରତ୍ୟାବୃତ୍ତ କର ।

ପଶ୍ଚିମର ଦୂତମାନେ କହିଲେ, 'ଆମ୍ଭେମାନେ ଯମୁନାର କୂଳେ କୂଳେ ଯାଇ ବଦରିକାଶ୍ରମ ଦେଖିଲୁ । ତାପରେ ଘୋର ଗହନ ଅରଣ୍ୟରେ ଦଶଦିନ ପ୍ରୟାଣ କରି ହିଙ୍ଗୁଳା ଦେବୀଙ୍କୁ ଦର୍ଶନ କଲୁଁ । ତାପରେ ପଶ୍ଚିମ ସମୁଦ୍ରକୂଳରେ ଉପନୀତ ହୋଇ ନିରୀକ୍ଷଣ କଲୁ ଯେ ତେଣିକି ଆଉ ଦେଶ ନଗରାଦି ନାହିଁ । ତତ୍ର ଏକ ମତିମାନ୍ ଯତିକୁ ଦେଖି ସୀତାଙ୍କ ବିଷୟ ପ୍ରଶ୍ନ କଲାରୁ ସେ କହିଲେ କି, ଏ ପ୍ରଦେଶରେ ସୀତା ନାହାନ୍ତି, ତଥାପି କହୁଅଛୁଁ, ସାବଧାନତାରେ ଶ୍ରବଣ କର । ସୀତା ସ୍ୱୟଂ ନାରାୟଣୀ ଅଟନ୍ତି, ରାମାବତାରର ଷୋଡ଼ଶ ଯୁଗ ପରେ ଶ୍ରୀହରି କୃଷ୍ଣାବତାର ଗ୍ରହଣ କରିବେ, ଏହି ଦ୍ୱାରକା ପୁରରେ ସେ ନିବାସ କରିବେ, ମୁଁ ବୃଦ୍ଧ ଯତି ଗୟାକ୍ଷେତ୍ରର ଅଧିପତି ଅଟେ । ବିଷ୍ଣୁ ମୋତେ ଏ ଭୁବନରେ ରଖାଇ ଅଛନ୍ତି । ଏହିଟି ଦେବତାମାନଙ୍କର ଆଶ୍ରମ, ଏଥିରେ ମନୁଷ୍ୟର ସଂଞ୍ଚାର ନାହିଁ । ତୁମ୍ଭେମାନେ ଏହିଠାରୁ ଶୀଘ୍ର ବାହାରି ଯାଅ । (୧)

ପୂର୍ବ ଦିଗର ଦୂତମାନେ ଜଣାଇଲେ, 'ଆମ୍ଭେମାନେ ପଞ୍ଚଧାରା ପର୍ବତ ଓ ପଦ୍ମନାଭ ଗିରିକୁ ଯାଇଥିଲୁ । ଦ୍ରୁମନ ଶୃଙ୍ଗରେ କାମଦହନ ନାମରେ ଗୋଟିଏ ନଦୀ ଦେଖି ନର୍ମଦାରେ ଦେବରାଜ ହରଙ୍କୁ ଦର୍ଶନ କଲୁଁ । ତାପରେ ଲୋକନାଥେଶ୍ୱର ଓ ପାରେଶ୍ୱର ଲିଙ୍ଗ ଦର୍ଶନ କରି ସାଗର ତୀରରେ ନାରାୟଣଙ୍କୁ ସଙ୍କେତ ବା ସଂବାଦ ଜଣାଇଲୁଁ, ସତ୍ତ୍ୱର ବିଷ୍ଣୁ ଆଉ ହରଙ୍କୁ ଦର୍ଶନ କରି ଗୋମୁଖ କେଶବଙ୍କ ସ୍ଥାନକୁ ଯାଇ ଭେଟିଲୁ । ତତ୍ର ଆମ୍ଭେମାନେ ପ୍ରାତଃ ସ୍ନାନାଦି କରି ଦୁର୍ବାସା ତୀର୍ଥ ଗଲୁଁ । ତାପରେ ଭାସ୍କର ତୀର୍ଥରେ ଦୁଇଦିନ ଅବସ୍ଥାନ କରି ନୀଳଗିରି ଶିଖରକୁ ଯାଇ ବିଷ୍ଣୁଙ୍କୁ ଭେଟିଲୁ । ତତ୍ରତ୍ୟ କଳ୍ପବୃକ୍ଷରେ ଆରୋହଣ କରି ନୀଳଗିରିକୁ ନିରୀକ୍ଷଣ କଲୁଁ । ତାପରେ

(୧) ଛାପା ପୁସ୍ତକରେ ୯୪ ପୃଷ୍ଠା ପଢ଼ନ୍ତୁ ।
ଏ ଦିଗର ଦୂତମାନେ ଏହାଛଡ଼ା କୌଣସି ସ୍ଥାନର କଥା କହି ନାହାନ୍ତି ।

ଆମ୍ଭେମାନେ ସମୁଦ୍ର ଭିତରେ ଲମ୍ଫମାରି ପଶିଲୁଁ, କିନ୍ତୁ ଲହରୀମାଳାର ଭିଡ଼ରେ ଆଉ ତେଣିକି ଯାଇପାରିଲୁ ନାହିଁ । (୧)

ଅତଃପର ମୂଳ ଗ୍ରନ୍ଥରେ ଅଷ୍ଟଚତ୍ୱାରିଂଶ ସର୍ଗଠାରୁ ପଞ୍ଚପଞ୍ଚାଶ ସର୍ଗ ପର୍ଯ୍ୟନ୍ତ ସର୍ଗାଷ୍ଟକରେ ଦକ୍ଷିଣ ଦୂତମାନଙ୍କର ସୀତାନ୍ୱେଷଣ ପ୍ରକ୍ରିୟା ସହ ହତାଶତାରେ ଅଙ୍ଗଦଙ୍କର ପ୍ରାୟୋପବେଶ ପର୍ଯ୍ୟନ୍ତ ତାବତୀୟ କଥାମାନ ବର୍ଣ୍ଣିତ ଅଛି । ହନୁମାନ ପ୍ରଭୃତି କ୍ରମଶଃ ବିନ୍ଧ୍ୟାଚଳରେ ପ୍ରବେଶି ତତ୍ରତ୍ୟ ଏକ ନିର୍ଜଳ ଓ ନିର୍ଜନ୍ତୁ ସ୍ଥାନରେ ଉପଗତ ହେଲେ । ତତ୍ରତ୍ୟ ପ୍ରଦେଶମାନଙ୍କରେ ବହୁ କଷ୍ଟ ସ୍ୱୀକାର ପୂର୍ବକ ସୀତାଙ୍କୁ ଅନ୍ୱେଷଣ କଲେ । ଏହି ସ୍ଥାନରେ ପୌରାଣିକ ଗାଥା ଲେଖା ଅଛିକି, ପୁରା କଣ୍ଡୁ ନାମକ ଋଷିଙ୍କର ଷୋଡ଼ଶ ବର୍ଷ ବୟସ୍କ ପୁତ୍ରଟି ଏ ସ୍ଥଳେ ପଞ୍ଚତ୍ୱ ପ୍ରାପ୍ତ ହେଲାରୁ, ସେ ଶାପ ବଳରେ ଏ ପ୍ରଦେଶକୁ ନିର୍ଜଳ ଓ ନିଷ୍ପ୍ରାଣିକ କରି ଦେଇ ଅଛନ୍ତି । (୨)

ଏ ସ୍ଥାନରେ ଗୋଟାଏ ଗର୍ବିତ ପର୍ବତ-ସମୁନ୍ନତ ରାକ୍ଷସ ବାନରମାନଙ୍କୁ ଆକ୍ରମଣ କରି କନ୍ୟକାଙ୍ଗଦ ଅଙ୍ଗଦଙ୍କ ଦ୍ୱାରା ନିହତ ହେଲା । ତାପରେ କ୍ରମଶଃ ଅଙ୍ଗଦାଦିମାନେ ବିନ୍ଧ୍ୟର ଦକ୍ଷିଣ ପଶ୍ଚିମ ଶିଖରର ସୁନ୍ଦର କନ୍ଦରମାନଙ୍କରେ ସୀତାଙ୍କୁ ଖୋଜୁଁ ଖୋଜୁଁ ଗୋଟିଏ ମହତ୍ ବିଳ ଦେଖିଲେ (୩) ତହିଁରୁ ନିର୍ଗତ ପକ୍ଷୀମାନଙ୍କୁ ଦେଖି ଜଳ ପ୍ରତ୍ୟାଶାରେ ତତ୍ର ସମସ୍ତେ ପ୍ରବିଷ୍ଟ ହୋଇ ସବିସ୍ମୟେ ଅବଲୋକନ କଲେ ଯେ ସେଥି ମଧ୍ୟରେ ଦିବ୍ୟ କାନନ, ମନୋରମ ସରୋବର, ସୁଧାଧବଳିତ ମହୋଚ୍ଚ ପ୍ରାସାଦ, ମନ୍ଦିରାଦି ବିରାଜିତ ଅଛି । ସୁବର୍ଣ୍ଣାଦିରେ ବହୁବିଧ ପାତ୍ରମାନ ତତ୍ର ସୁସଜ୍ଜିତ ରହିଅଛି ଏବଂ ଗୋଟିଏ ସ୍ୱର୍ଗୀୟ-ରମଣୀୟ ବୃଦ୍ଧା ସ୍ତ୍ରୀ ଆସନ୍ନ ଆସନରେ ସମାସୀନା ଅଛନ୍ତି । ହନୁମାନ ତାହାଙ୍କୁ ସବିନୟେ ଜିଜ୍ଞାସା କଲେ, (୪) ଆପଣ କିଏ ? ଏହି ସରୋବର ତୀରସ୍ଥ କମନୀୟ ବନ ଓ

(୧) ଛାପା ପୁସ୍ତକରେ ୯୪ ପୃଷ୍ଠା ପଢ଼ନ୍ତୁ. ଏବବୁ କବିଙ୍କର ପରିଚିତ ନାମାନୁସାରୀ ଲେଖା ପରି ଜଣାଯାଏ । ଏ ସ୍ଥାନମାନ ପୂର୍ବଦିଗ ବାସ୍ତବିକ୍ ? ସୁତରାଂ ପରିଚୟ ପ୍ରଦାନର କ୍ରମ ସମୀଚୀନ କି ? ବିଚାର୍ଯ୍ୟ ।

(୨) ୪୮ ସର୍ଗ ଦେଖନ୍ତୁ ।

(୩) ଦଦୃଶୁର୍ବିବୃତଂ ବିଳମ୍ । ଦୁର୍ଗମୃକ୍ଷ ବିଳଂ ନାମ ଦାନବେନାଭିରକ୍ଷିତମ୍ । ୫୦ ସର୍ଗ
ଆର୍ଦ୍ରପକ୍ଷାନ୍ କୌଞ୍ଚହଂସାନ୍‌ନିସୃତାନ୍‌ଦଦୃଶୁସ୍ତତଃ
ଅତ୍ରାସ୍ତେ ସଲିଳଂ ନୂନଂ ପ୍ରବିଶାମୋ ମହାଗୁହାମ୍, ଇତ୍ୟାଦି
ଅଧ୍ୟମ୍. ରା. କି. କା. ୬ସ.

(୪) ତତୋ ହନୁମାନ୍ ଗିରିସଂନିକାଶଃ କୃତାଞ୍ଜଳିସ୍ତାମଭିବାଦ୍ୟବୃଦ୍ଧାମ୍
ପପ୍ରଚ୍ଛ କା ତ୍ୱଂ ଭବନଂ ବିଳଂ ଚ ରତ୍ନାନି ଚେମାନି ବଦସ୍ୱ କସ୍ୟ । ୫୦ ସ.

ଅଧ୍ୟାତ୍ମ ରାମାୟଣରେ ମଧ୍ୟ ଏହା ଲେଖାଅଛି, — କିମର୍ଥଂ ତବ ଶୋକୋଽତ୍ର ବୟଂ ତେ ପ୍ରାଣରକ୍ଷକାଃ, ଭବାମୋ ନିବସାମୋଽତ୍ର ଗୁହାୟାଂ ଭୟବର୍ଜ୍ଜିତାଃ । ୭ସ.

ମନ୍ଦିରାଦି ଅପିଚ କନକରତ୍ନମୟ ପାତ୍ରାଦି ଉପକରଣ ମାନ କାହାରି ? ଦେବୀ କହିଲେ, 'ଏସବୁ ମୟ ଦାନବଙ୍କ ରଚିତ । ସେ ସମୟେ ହେମ ଅପ୍ସରାଙ୍କୁ ଅପହରିବାରୁ ଇନ୍ଦ୍ର ତାଙ୍କୁ ନିହତ କଲେ । ବ୍ରହ୍ମା ହେମା ଅପ୍ସରାଙ୍କୁ ଏସବୁ ପ୍ରଦତ୍ତ କରିଥିଲେ । ମୁଁ ମେରୁ ସାବର୍ଣ୍ଣିଙ୍କ ଦୁହିତା ସ୍ୱୟଂପ୍ରଭା, ଏହି ହେମାଙ୍କ ଭବନକୁ ରକ୍ଷା କରିଅଛି । ତୁମ୍ଭେମାନେ ପୁଣି କିଏ ? କିପରି ଏ ଗୁହା ଦେଖିଲ ? କାହିଁକି ବା ବୁଲୁ ଅଛ ?' ଏହା କହି ଦେବୀ ବାନରମାନଙ୍କୁ ଆହରାର୍ଥେ ଫଳମୂଳାଦି ପ୍ରଦାନ କଲେ । ହନୁମାନ ତେତେବେଳେ ଦେବୀଙ୍କୁ ସ୍ୱକୀୟ ଆଗମନାଦିର ସମସ୍ତ କଥା ଜଣାଇଲେ ଏବଂ ପ୍ରାର୍ଥନା କଲେ, 'ଆମ୍ଭେମାନେ ଦୈବଗତ୍ୟା ଆସି ଏଠାରେ ପଡ଼ିଅଛୁ । ଆମ୍ଭମାନଙ୍କୁ ଏଥିରୁ ଉଦ୍ଧାରଣ କର ।' ଦେବୀ ସେ ସମସ୍ତଙ୍କୁ ମୁଦ୍ରିତ ନେତ୍ର ରଖି ବିଳରୁ ଉତ୍ତାରିତ କଲେ ଏବଂ ସଙ୍ଗେ ଆସି ତତ୍ରତ୍ୟ ପ୍ରସ୍ରବ ଶୈଳ ଆଉ ମହୋଦଧିକୁ ଚିହ୍ନାଇ ଦେଲେ । (୧)

ତଦା ବାନରମାନେ ନିର୍ଦ୍ଦିଷ୍ଟ ଅବଧି ସମୟ ଅତୀତ ହୋଇଯାଇଥିବାରୁ ଚିନ୍ତିତ ହେଲେ । (୨)

ଅଙ୍ଗଦ, ସୁଗ୍ରୀବଙ୍କ ଭୟରୁ ବର୍ତ୍ତମାନ ପ୍ରାୟୋପବେଶନ କେବଳ କର୍ତ୍ତବ୍ୟ ବୋଲି କହିଲେ । ତାହା ଶୁଣି ତାର କହିଲେ ଆମ୍ଭେମାନେ ଏଠାରୁ ଫେରି ନଯାଇ ଏହି ବିଳରେ ଲୁଚି ରହିବା । (୩) ଅନ୍ୟମାନେ ସୁଦ୍ଧା ଏତାଦୃଶ ଭାତି କଥା କହିଲେ । କିନ୍ତୁ ହନୁମାନ ସମସ୍ତ କଥା ଖଣ୍ଡନରେ ନାନା କଥାରେ ଅଙ୍ଗଦଙ୍କୁ କର୍ତ୍ତବ୍ୟ ବୁଝାଇଲେ । (୪) ତାହାପରେ ଅଙ୍ଗଦ ପ୍ରସ୍ତାବତଃ ସୁଗ୍ରୀବଙ୍କର କ୍ରୂରତା ଓ ପ୍ରତାପାଦିରେ ଦୋଷାରୋପଣ ପୂର୍ବକ ନିନ୍ଦା ପ୍ରକାଶ କଲାପରେ ବୋଇଲେ କି ମୁଁ ଆଉ ଏତରି ଅବସ୍ଥାରେ କିଷ୍କିନ୍ଧାକୁ ଯିବି ନାହିଁ, ରାମଲକ୍ଷ୍ମଣଙ୍କୁ ନମସ୍କାର କହିବ, ସୁଗ୍ରୀବାଦିଙ୍କୁ ମଧ୍ୟ ପ୍ରଣାମ କହିବ । ସେ ଏହା କହି

---

(୧) ଏଷ ବିନ୍ଧ୍ୟୋ ଗିରିଃ ଶ୍ରୀମାନ୍ ନାନାଦ୍ରୁମଲତାକୁଳଃ,
ଏଷଃ ପ୍ରସ୍ରବଣଃ ଶୈଳଃ ସାଗରୋଽୟଂ ମହୋଦଧିଃ । ୧୨
ସ୍ୱସ୍ତି ବୋଽସ୍ତୁ ଗମିଷ୍ୟାମି ଭବନଂ ବାନରର୍ଷଭାଃ,
ଇତ୍ୟୁକ୍ତ୍ୱା ତଦ୍‌ବିଳଂ ଶ୍ରୀମଦ୍ ପ୍ରବିବେଶ ସ୍ୱୟଂପ୍ରଭା । ୧୩. ୫୩ସ. ୧୨. ୧୩ ଶ୍ଳୋ

(୨) ଏହା ଅଧ୍ୟାତ୍ମରେ ମଧ୍ୟ ଲେଖାଅଛି । ଯଥା - ଭ୍ରମତାଂ ଗହ୍ୱରେଽସ୍ମାକଂ ମାସୋ ନୂନଂ ଗତୋଽଭବତ୍ । କି. କା. ୭ସ.
ଭ୍ରମତୋ ମେ ବନେ ମାସୋ ଗତୋଽତ୍ରୈବ ଗୁହାନ୍ତରେ । ନ ଦୃଷ୍ଟୋ ରାବଣୋ ବାଦ୍ୟ ସୀତା ବା ଜନକାତ୍ମଜା । କି.କା. ୭ସ.

(୩) ଅଧ୍ୟାତ୍ମରେ ମଧ୍ୟ ଏହା ଲେଖାଅଛି : କିମର୍ଥଂ ତବ ଶୋକୋଽତ୍ର ବୟଂତେ ପ୍ରାଣରକ୍ଷକାଃ, ଭବାମୋ ନିବସାମୋଽତ୍ର ଗୁହାୟାଂ ଭୟବର୍ଜିତାଃ । ୭ସ.

(୪) ୫୪ ସ. ପାଠ କରନ୍ତୁ ।

କୁଶାସ୍ତରଣରେ ପ୍ରାୟୋପବେଶନ କଲେ । ଅନ୍ୟମାନେ ରୋଦନ ପୂର୍ବକ ସୀତା ହରଣାଦି କଥାର ବିଳପନ କରିବାକୁ ଲାଗିଲେ । (୧) ବଳରାମ ଦାସେ ଦକ୍ଷିଣ ଦୂତମାନଙ୍କର ମୌଳିକ ପ୍ରଧାନ ପ୍ରଧାନ ଘଟଣାମାନଙ୍କ ଅନୁସରି ସୁଦ୍ଧା ଅନେକତ୍ର ବୈଷମ୍ୟ ଯୋଗ କରିଅଛନ୍ତି । ଏ ମହାଶୟ ଲେଖି ଅଛନ୍ତି, ଅଙ୍ଗଦାଦିମାନେ ମହ୍ଲାର, ମରହଟ, କାଞ୍ଚି, କର୍ଣ୍ଣାଟ, ତିହଡ଼ା, ଖଇର ଓ ଗୁଜୁରାଟ ନଗରମାନ ତତ୍ରତ୍ୟ ଗ୍ରାମମାନ ଆଉ ବନ, ନଦୀ, ନଦ, ଖୋଲ୍ୟଖାଲ ପର୍ବତାଦିରେ ସୀତାଙ୍କୁ ଖୋଜି ଖୋଜି ମାର୍ଗରେ ଆକ୍ରମଣକାରୀ ଗୋଟାଏ ଅସୁରକୁ ନିହତ କଲାପରେ କୋଳାହଳ ପର୍ବତ ଶିଖରରେ ଉଠିଲେ, ତାପରେ ସେମାନେ କ୍ରମେ ସମୁଦ୍ରତୀର୍ଥ ଓ ଦକ୍ଷିଣମଣିକର୍ଣ୍ଣିକା ସରକୁ ଯାଇ ଅବନ୍ଧ୍ୟଶିଙ୍କ ବିନ୍ଧ୍ୟଶୈଳରେ ଆରୋହଣ କଲେ, ବାନରମାନେ ତତ୍ରତ୍ୟ ଗୋଟାଏ ବିବର ଦେଖି ତା' ଭିତରେ ପଶିଲେ । (୨)

ଏହାପରେ ଅଙ୍ଗଦାଦିଙ୍କର ଏହି ବିଳ ମଧ୍ୟରେ ଏବଂ ବିଳରୁ ଉତ୍ତୀର୍ଣ୍ଣ ହେଲାପରେ ଯେ ଯେ ଚର୍ଯ୍ୟାମାନ ମୂଳଗ୍ରନ୍ଥରେ ଉକ୍ତ ଅଛି, ଦାସେ ମଧ ପ୍ରାୟ ତାହା ହିଁ ଲେଖି ଅଛନ୍ତି । କିନ୍ତୁ ସ୍ୱୟଂପ୍ରଭାଙ୍କର ନାମାଦି ପରିଚୟରେ କିଂଚିତ୍ ବୈଷମ୍ୟ ରହିଅଛି । ତଥାଚ ପ୍ରାୟୋପବେଶରେ କୃତନିଶ୍ଚୟ ଅଙ୍ଗଦଙ୍କ ପ୍ରତି ହନୁମାନଙ୍କ ଉକ୍ତିରେ ମଧ ବୈଷମ୍ୟ ରହିଅଛି । (୩)

---

ଅପର ପୃଷ୍ଠାର (୧)ର ଅନ୍ତର୍ଭୁକ୍ତ ପ୍ରସ୍ରବଣ ଶୈଳ ବିନ୍ଧ୍ୟର ଏକ ଭାଗ ହୋଇଥାଇପାରେ । ଅନ୍ୟ ସ୍ଥାନରେ ଉକ୍ତ ଅଛି, ବିନ୍ଧ୍ୟପର୍ବତ ଦକ୍ଷିଣସମୁଦ୍ର ପର୍ଯ୍ୟନ୍ତ ବ୍ୟାପ୍ତ, — ହୃଷ୍ଟପକ୍ଷୀଗଣାକୀର୍ଣ୍ଣଃ କନ୍ଦରୋଦର କୂଟବାନ୍, ଦକ୍ଷିଣସ୍ୟୋଦଧେସ୍ତୀରେ ବିନ୍ଧ୍ୟୋଽୟମିତି ନିଶ୍ଚିତଃ ୬୦ସ. ୭ ଶ୍ଳୋ
ଅପର ପୃଷ୍ଠାର ଏହି ପ୍ରଦେଶ ମହେନ୍ଦ୍ର ବୋଲି ଅଧ୍ୟାତ୍ମ ରାମାୟଣରେ ଲେଖାଅଛି, ଯଥା -

ବିଚିନ୍ୱନ୍ତୋଽଥଶନକୈଃ ଜାନକୀଂ ଦକ୍ଷିଣାମ୍ବୁଧେଃ ।
ତୀରେ ମହେନ୍ଦ୍ରାଖ୍ୟଗିରେଃ ପବିତ୍ରଂ ପାଦମାଯଯୁଃ ।
ଏ ସ୍ଥଳେ ଟୀକାକାର ମାନେ ମଧ କିଛି ପରିଚୟ ଦେଇ ନାହାନ୍ତି ।

(୧) ଅଧ୍ୟାତ୍ମ ରାମାୟଣରେ ଲେଖାଅଛି କି ସମସ୍ତ ଦକ୍ଷିଣ ଦୂତମାନେ ପ୍ରାୟୋପବେଶ କରିଥିଲେ, ଯଥା — ଇତି ନିଶ୍ଚିତ୍ୟ ତତ୍ରୈବ ଦର୍ଭାନାସ୍ତୀର୍ଯ୍ୟ ସର୍ବତଃ, ସମୁପାବିବିଶୁଃ ସର୍ବେ ମରଣେକୃତନିଶ୍ଚୟାଃ । କି. କା. ୭ସ.

(୨) ମୂଳଗ୍ରନ୍ଥରେ ବର୍ଣ୍ଣିତ ବିଳାଭ୍ୟନ୍ତରରୁ ନିର୍ଗତ ପକ୍ଷୀ ପ୍ରଭୃତିର କଥା ଏଥିରେ ଲେଖା ନାହିଁ ।

(୩) ଛାପା ପୁସ୍ତକରେ ୯୯ ପୃଷ୍ଠା ପଢ଼ନ୍ତୁ ।
ଅଧ୍ୟାତ୍ମ ରାମାୟଣ କିଷ୍କିନ୍ଧା କାଣ୍ଡ ଷଷ୍ଠ ସର୍ଗରେ ଦେଖିବେ ଏଥିରେ ମଧ ସ୍ୱୟଂପ୍ରଭାଙ୍କ ଉକ୍ତିରେ ବାଲ୍ମିକୀଙ୍କ ଉକ୍ତି ଅପେକ୍ଷା କେତେକ ନାମାଦିର ବୈଷମ୍ୟ ଦେଖାଯାଉଛି ଏବଂ ଲେଖାଅଛିକି ସ୍ୱୟଂପ୍ରଭା ବାନରମାନଙ୍କ ପ୍ରତ୍ୟାବୃତ୍ତି ପରେ ରାମଦର୍ଶନାର୍ଥ ମାଲ୍ୟବାନ ଯାଇଥିଲେ ଇତ୍ୟାଦି ଯଥାଃ-
ହେମା ନାମ ପୁରା ଦିବ୍ୟରୂପିଣୀ ବିଶ୍ୱକର୍ମଣଃ । ପୁତ୍ରୀ ମହେଶଂ ନୃତ୍ୟେନ ତୋଷୟାମାସ ଭାମିନୀ । ତୁଷ୍ଟୋ ମହେଶଃ ପ୍ରଦଦୌ ଇଦଂ ଦିବ୍ୟଂ ପୁରଂ ମହତ୍ ଇତ୍ୟାଦି । ସାପି ତ୍ୟକ୍ତ୍ୱା ଗୁହାଂ ଶୀଘ୍ରଂ ଯଯୌ

ଅତଃପର ମୂଳାଷ୍ଟପଞ୍ଚାଶ ସର୍ଗଠାରୁ ତ୍ରିଷଷ୍ଟିତମ ସର୍ଗାନ୍ତ ପର୍ଯ୍ୟନ୍ତ ସର୍ଗାଷ୍ଟକରେ ବାନରମାନଙ୍କର ସମ୍ପାତି ଦର୍ଶନ ଏବଂ ତଦୀୟ ପରିଚୟମୂଳକ ଚରିତାବଳି ପ୍ରଭୃତି ବର୍ଣ୍ଣିତ ଅଛି । ଦଗ୍ଧସଂପାତି ବିନ୍ଧ୍ୟ ପର୍ବତରୁ (୧) ବାନରମାନଙ୍କ ମୁଖରାବ ଶୁଣି ସେମାନଙ୍କୁ ପ୍ରଥମେ କବଳ କରିବାର ଇଚ୍ଛା କରିଥିଲେ । କିନ୍ତୁ ଅଙ୍ଗଦଙ୍କ ମୁଖରୁ ଜଟାୟୁଙ୍କ କଥା ଶ୍ରବଣ କଲାମାତ୍ରେ ତାହାଙ୍କୁ ଅନୁଜଙ୍କ ସନ୍ଦେଶ ପ୍ରଶ୍ନ କଲେ ଏବଂ ଆପଣାକୁ ଶିଖର ଶିଖରରୁ ଭୂତଳକୁ ଆଣିବାପାଇଁ ସାଦରେ ଅନୁରୋଧ କଲେ । (୨) ତଦା ଅଙ୍ଗଦ ସମ୍ପାତିଙ୍କୁ ଭୂତଳରେ ଉପସ୍ଥାପିତ କରି ରାମ ଓ ସୁଗ୍ରୀବଙ୍କର ଯାବତୀୟ ଘଟନା ତଥାଚ ଅକୃତକାର୍ଯ୍ୟତାରୁ ଆପଣାର ମୁମୂର୍ଷାଦିର କଥା ଜଣାଇଲେ । ତେତେବେଳେ ସଂପାତି ଅଙ୍ଗଦଙ୍କୁ ନିଜର ପକ୍ଷଚ୍ଛେଦର କଥା ଏବଂ ରାବଣଙ୍କ ସ୍ଥାନର ପରିଚୟ ଜଣାଇଲେ । (୩)

ସେ ପୁଣି ବାନରମାନଙ୍କଦ୍ୱାରା ସମୁଦ୍ରତୀରକୁ ନୀତ ହୋଇ ଜଟାୟୁଙ୍କ ଉଦ୍ଦେଶ୍ୟରେ ନିବାପ ଆପ ପ୍ରଦାନ କଲେ । ତେତିକିବେଳେ ସମ୍ପାତି ଜାମ୍ବବାନଙ୍କ ବିନୀତ ଜିଜ୍ଞାସାରେ କହିଲେ କି, ମୋର ପୁତ୍ର ନିଜ ଚକ୍ଷୁରେ ଦେଖି ଆସି କହି ଅଛନ୍ତି, ଏକଦା ଗୋଟାଏ ମହାକାୟ ଅସୁର ଏକ ଜଣ ରମଣୀୟ ରମଣୀକୁ ଘେନି ବ୍ୟୋମ ମାର୍ଗରେ ପଳାୟନ କରୁଥିଲା । ସେହି ରାକ୍ଷସ ପୁଣି ମୋର ପୁତ୍ରର ପ୍ରତିରୋଧ ଦେଖି ସବିନୟେ ମାର୍ଗ ପ୍ରାର୍ଥନା କରିଥିଲା । ତାପରେ ମୁଁ ସିଦ୍ଧମାନଙ୍କ ମୁଖରୁ ଶୁଣିଲି ଯେ ସେହି ରାକ୍ଷସର ନାମ ରାବଣ । ସେ ପୁଣି ରାମଙ୍କର ପତ୍ନୀକୁ ହରି ନେଇ ଯାଉଥିଲା ।

ଏହାପରେ ପୁଣି ସମ୍ପାତି ନିଜ ପକ୍ଷ ଦାହର ପୁରାତନ ବୃତ୍ତାନ୍ତରେ କହିଅଛନ୍ତି କି ବିନ୍ଧ୍ୟ ପର୍ବତର ଦକ୍ଷିଣ ଭାଗରେ ଜଟାୟୁଙ୍କ ସହ ସେ ଆଶ୍ରମ ନିର୍ମାଣ କରି ଆଗେ

---

ରାଘବ ସନ୍ନିଧିମ୍, ତତ୍ର ରାମଂ ସସୁଗ୍ରୀବଂ ଲକ୍ଷ୍ମଣଂ ଚ ଦଦର୍ଶ ହ । କୃତ୍ୱା ପ୍ରଦକ୍ଷିଣଂ ରାମଂ ପ୍ରଣମ୍ୟ ବହୁଶଃ ସୁଧୀଃ ଇତ୍ୟାଦି । ଏହାପରେ ସେ ଯୋଗିନୀ ରାମଙ୍କୁ ସ୍ତୁତି କରି ତଦାଜ୍ଞା ଗ୍ରହଣରେ ବଦରିକାଶ୍ରମକୁ ପ୍ରସ୍ଥାନ କରିଥିଲେ ।

(୧) ଅଧ୍ୟାତ୍ମରେ ଲେଖାଅଛି ସମ୍ପାତି ମହେନ୍ଦ୍ର ପର୍ବତରୁ ବାହାରିଲେ । ଅତଏବ ଅନୁମିତ ଯେ ମହେନ୍ଦ୍ର ବିନ୍ଧ୍ୟାଦ୍ରିର ଶାଖା ହେବ । — ଏତସ୍ମିନ୍ନନ୍ତରେ ତତ୍ର ମହେନ୍ଦ୍ରାଦ୍ରି ଗୁହାନ୍ତରାତ୍, ନିର୍ଗତ୍ୟ ଶନକୈରାଗାତ୍ ଗୃଧ୍ରଃ ପର୍ବତ ସନ୍ନିଭଃ, କି.କା.୭ସ ।

(୨) ସୂର୍ଯ୍ୟାଂଶୁ ଦଗ୍ଧ ପକ୍ଷତ୍ୱାତ୍ ନଶକ୍ନୋମ୍ୟୁପସର୍ପିତୁଂ । ୫୭ସ ।

(୩) ୫୮ ସର୍ଗ ପାଠ କରନ୍ତୁ ।

ରହିଥିଲେ । ସେ ପୁଣି ସମୟେ ଦୁରବସ୍ଥାପନ୍ନ ହେଲାରୁ ଅଗ୍ରତପା ନିଶାକର ନାମକ ଋଷିଙ୍କର ନିରବଗ୍ରହ ଅନୁଗ୍ରହ ଗ୍ରହଣ ଅପେକ୍ଷା କଲେ । ଏକଦା ସେହି ଋଷି-ପ୍ରବର ଏହାଙ୍କୁ ଦର୍ଶନ ଦେଇ ଦୟମାନ ହୃଦୟରେ ଦୁରବସ୍ଥାର କାରଣ ଜିଜ୍ଞାସା କଲାରୁ (୧) ଦଗ୍ଧପକ୍ଷ ସଂପାତି ଜଣାଇଲେ ଯେ ମୁଁ ଭ୍ରାତାଙ୍କ (୨) ସହ ବିବାଦରେ ସୂର୍ଯ୍ୟଙ୍କୁ ଅନୁଧାବନ କଲାରୁ ପ୍ରଚଣ୍ଡ ସୂର୍ଯ୍ୟାଂଶୁଜାଳରେ ମୋର ପକ୍ଷଦ୍ୱୟ କେବଳ ଦଗ୍ଧ ହୋଇଗଲା । ତେତେବେଳେ ନିଶାକର ଋଷି ତାହାଙ୍କୁ କହିଲେ, ମୁଁ ଏ କ୍ଷଣି ତୁମର ପକ୍ଷଦ୍ୱୟ ପୁନରୁତ୍ଥାନ କରିବି ନାହିଁ, ସମୟେ ଶ୍ରୀରାମଦୂତମାନେ ସୀତାନ୍ୱେଷଣ ନିମନ୍ତେ ଏଠାରେ ଉପସ୍ଥିତ ହେବେ, ତୁମ୍ଭେ ସେମାନଙ୍କୁ ସୀତାଙ୍କ ସନ୍ଦେଶ ଜଣାଇଲେ ତୁମର ପକ୍ଷଦ୍ୱୟ ସହସା ପୁନରୁତ୍ପନ୍ନ ହେବ, ଏହିଠାରେ ଅପେକ୍ଷା କରି ରହିଥାଅ । (୩) ସମ୍ପାତିଙ୍କର ଏହି ଶୁଭୋଦର୍କ ବଚନାବଳୀ ସଙ୍ଗେ ପୁଣି ଉକ୍ତ ଅଛି ଯେ, ଦେବେନ୍ଦ୍ର

---

(୧) ଜ୍ୟେଷ୍ଠୋଽବିତସ୍ତ୍ୱଂ ସମ୍ପାତେ ଜଟାୟୁରନୁଜସ୍ତବ
ମାନୁଷଂ ରୂପମାସ୍ଥାୟ ଗୃହ୍ଣୀତାଂ ଚରଣୌ ମମ ।
କିଂତେ ବ୍ୟାଧି ସମୁତ୍ଥାନଂ ପକ୍ଷୟୋଃ ପତନଂ କଥମ୍
ଦଣ୍ଡୋ ବାୟଂ କୃତଃ କେନ ସର୍ବମାଯାହି ପୃଚ୍ଛତଃ. ୬୦.ସ. ୨୦,୨୧. ଶ୍ଳୋ

(୨) ଅଧ୍ୟାତ୍ମରାମାୟଣ କିଷ୍କିନ୍ଧାକାଣ୍ଡ ଅଷ୍ଟମସର୍ଗରେ ମଧ୍ୟ ଏହା ଲେଖା ଅଛି, ଯଥା- ସୂର୍ଯ୍ୟମଣ୍ଡଳ ପର୍ଯ୍ୟନ୍ତଂ ଗନ୍ତୁମୁତ୍ପତିତୌ ମଦାତ୍, ଜଟାୟୁଷଂ ପରିତ୍ରାତୁଂ ପକ୍ଷାବାଚ୍ଛାଦ୍ୟ ମୋହିତଃ । ଛିତୋଽହଂ ରଶ୍ମିଭିର୍ଦଗ୍ଧପକ୍ଷୋଽସ୍ମିନ୍ ବିନ୍ଧ୍ୟ ମୂର୍ଦ୍ଧନୀ, ପତିତୋ ଦୂରପତନାତ୍ ମୂର୍ଚ୍ଛିତୋଽହଂ କପୀଶ୍ବରାଃ । × × ଚନ୍ଦ୍ରମା ନାମ ମୁନିରାତ୍ ଦୃଷ୍ଟ୍ୱା ମାଂ ବିସ୍ମିତୋବଦତ୍, ଇତ୍ୟାଦି ।

(୩) ପରମାନ୍ନଂ ତୁ ବୈଦେହ୍ୟାଃ ଜ୍ଞାତ୍ୱା ଦାସ୍ୟତି ବାସବଃ ।
ଯଦନ୍ନମମୃତପ୍ରଖ୍ୟାଂ ସୁରାଣାମପି ଦୁର୍ଲଭଂ । ୮ ।
ତଦନ୍ନଂ ମୈଥିଳୀ ପ୍ରାପ୍ୟ ବିଜ୍ଞାୟେନ୍ଦ୍ରାଦିଦଂ ତ୍ୱିତି ।
ଅଗ୍ରମୁଦ୍ଧୃତ୍ୟ ରାମାୟ ଭୂତଳେ ନିର୍ବପିଷ୍ୟତି । ୯ ।
ଯଦି ଜୀବତି ମେ ଭର୍ତା ଲକ୍ଷ୍ମଣେ ନ ସହ ପ୍ରଭୁଃ
ଦେବତ୍ୱଂ ଗଚ୍ଛତୋର୍ବାପି ତୟୋରନ୍ନମିଦଂ ତ୍ୱିତି । ୧୦ ।
ଏଷ୍ୟନ୍ତିପ୍ରେଷିତାସ୍ତତ୍ର ରାମଦୂତାଃ ପ୍ଲବଙ୍ଗମାଃ
ଆଖ୍ୟେୟା ରାମମହିଷୀ ତ୍ୱୟା ତେଭ୍ୟୋ ବିହଙ୍ଗମ । ୧୧ । ୬୨ସ.
ଜ୍ଞାତ୍ୱା ଅନଶନାମିତିଶେଷଃ । ଇନ୍ଦ୍ରାଦିଦଂତ୍ୱିତି ବିଜ୍ଞାନଂ ପାତିବ୍ରତ୍ୟ ମହିମ୍ନେତିଭାବଃ । ପ୍ରକାରାନ୍ତରେଣ ରାବଣାଦାଗତଂ ଚେତ୍ ତତ୍ପରିହରତୀତ୍ୟାଚାର୍ଯଂ । ଅଗ୍ରମୁଦ୍ଧୃତ୍ୟ ଭୂତଳେ ନିର୍ବପିଷ୍ୟତୀତ୍ୟନେକ ପତିବ୍ରତାଚାର ଉକ୍ତଃ । ଭୁକ୍ତବତ୍ୟେବଭୁଞ୍ଜୀୟାତ୍ ସ୍ୱପତ୍ୟଥଶାୟୀତ ଚ, ଇତିସ୍ମରଣାତ୍ । ୧୧
ଇତି ମହେଶ୍ୱର ଦୀକ୍ଷିତ ଟୀକାୟାମ୍ ।

ସୀତା ଦେବୀଙ୍କୁ ଅମୃତ ପ୍ରଦାନ କରିଥିଲେ । ସମ୍ପାତି ଅଙ୍ଗଦଙ୍କୁ ଏହିପରି ସୀତାଙ୍କ ସନ୍ଦେଶ କହୁଁ କହୁଁ ତାହାଙ୍କ ପକ୍ଷଦ୍ୱୟ ପୁନରୁତ୍ପତ୍ତି ହେଲା । ତତ୍ରତ୍ୟ ସମସ୍ତେ ପ୍ରହୃଷ୍ଟମନା ହେଲେ । ସମ୍ପାତି ଅଙ୍ଗଦଙ୍କ ଅନୁମତିରେ ବିନ୍ଧ୍ୟ ଉପରକୁ ଉଠିଗଲେ । (୧) ବର୍ତ୍ତମାନ ବଳରାମ ଦାସେ ମଧ ଠିକ୍ ଏହା ହିଁ ସଂକ୍ଷେପତଃ ଲେଖିଅଛନ୍ତି । ସମ୍ପାତିଙ୍କର ଭାବି ମଙ୍ଗଳ ସୂଚକ ମୁନିଙ୍କ ନାମ ନିଶାକର ଆଉ ପୁତ୍ରଙ୍କ ନାମ ସୁପାର୍ଶ୍ୱ ବୋଲି ମଧ ଠିକ୍ କହି ଅଛନ୍ତି କିନ୍ତୁ ରାଜ୍ୟାର୍ଥ ବିବଦିଷୁ ସମ୍ପାତି ଓ ଜଟାୟୁଙ୍କର ସୂର୍ଯ୍ୟାନୁଧାବନରେ ଜଟାୟୁଙ୍କ ପକ୍ଷ ମଧ ଦଗ୍ଧ ହୋଇ ଯାଇଥିବା ଏ ମହାଶୟ ଲେଖିଅଛନ୍ତି । (୨) ମୂଳ ଗ୍ରନ୍ଥରେ ଜଟାୟୁଙ୍କ ଦଗ୍ଧପକ୍ଷତା ଲେଖା ନାହିଁ । (୩) ଅତଃପର କିଷ୍କିନ୍ଧାକାଣ୍ଡାବସାନ ପର୍ଯ୍ୟନ୍ତ ଚାରିଗୋଟି ସର୍ଗରେ ବାନରମାନଙ୍କର ଦୁସ୍ତର ଅକୂପାର ଦର୍ଶନରେ ବିଷଣ୍ଣତା, ହନୁମାନାଦିଙ୍କ ସହ ଅଙ୍ଗଦଙ୍କର ଅପାର ପାରାବାର ପାର ହେବାର ମନ୍ତ୍ରଣା, ସମୁଦ୍ରର ଶତଯୋଜନ ଉଲ୍ଲଙ୍ଘନରେ ବାନରମାନଙ୍କର ଅପାରଗମତା ଶୁଣି ଫେର୍ ଅଙ୍ଗଦ ପ୍ରାୟୋପବେଶକୁ କେବଳ ଗତି ମଣିବା, ତଦର୍ଥେ ବୁଦ୍ଧିମାନ୍ ଜାମ୍ବବାନ୍ ଏକାନ୍ତରେ ସୁଖୋପବିଷ୍ଟ ହୃଷ୍ଟପୁଷ୍ଟବିଶିଷ୍ଟଇଷ୍ଟପ୍ଲବଙ୍ଗବରିଷ୍ଠ ହନୁମାନଙ୍କୁ ଶରଣ ଭାବି ବୀର ପ୍ରଶଂସାରେ ପ୍ରରୋଚିତ କରିବା (୪) ଜାମ୍ବବାନ୍ ପ୍ରରୋଚିତ ହନୁମାନ ଅଙ୍ଗଦଙ୍କୁ ହର୍ଷ ପ୍ରଦାନ ପୂର୍ବକ ସମୁଦ୍ର ପ୍ଲବନରେ ସମ୍ମତ ହେବା ଏବଂ ସେ ପ୍ରତିଜ୍ଞା ଓ ପରାକ୍ରମ ପ୍ରକାଶ ପୂର୍ବକ ରାମକାର୍ଯ୍ୟରେ (୫) ମହେନ୍ଦ୍ର ଶିଖରିରେ ଆରୋହଣ କରିବା ପ୍ରଭୃତି

---

(୧) ଅଧ୍ୟାତ୍ମରେ ମଧ ଏହା ଉକ୍ତ ଅଛି – ପଶ୍ୟନ୍ତୁ ପକ୍ଷୌ ମେ ଜାତୌ நୂତନାବତିକୋମଳୌ ।୮ସ ସର୍ବଥାହି ନ ଗନ୍ତବ୍ୟଂ ଈଦୃଶଃ କ୍ୱ ଗମିଷ୍ୟସି, ଦେଶକାଳେ ୮ତାକ୍ଷସ୍ୱ ପକ୍ଷୌ ତ୍ୱଂ ପ୍ରତିପତ୍ସ୍ୟସେ.୧୨ ଇତି୬୨-ସ-୧୨ ଶ୍ଳୋ ।

(୨) ଛାପା ପୁସ୍ତକରେ ୧୦୨ ପୃଷ୍ଠା ଦେଖନ୍ତୁ ।

(୩) ପକ୍ଷାଭ୍ୟାଂ ଚ ମୟା ଗୁପ୍ତୋ ଜଟାୟୁର୍ନପ୍ରଦହ୍ୟତ— ୬୧.୧୫ ଶ୍ଳୋ.
ଅଧ୍ୟାତ୍ମ ରାମାୟଣ କିଷ୍କିନ୍ଧ୍ୟାକାଣ୍ଡ ଅଷ୍ଟମ ସର୍ଗରେ ମଧ ଏହା ଲେଖାଅଛି ।

(୪) ତତଃ ପ୍ରତୀତଂ ପ୍ଲବତାଂ ବରିଷ୍ଠଂ ଏକାନ୍ତମାଶ୍ରିତ୍ୟ ସୁଖୋପବିଷ୍ଟମ୍ ।
ସଂଚୋଦୟାମାସ ହରିପ୍ରବୀରଂ ହରିପ୍ରବୀରଂ ହନୁମନ୍ତମେବ ।
୬୫ସ. ୩୫ଶ୍ଳୋ.
ସୁଖୋପବିଷ୍ଟଂ ପ୍ରକୃତ କାର୍ଯ୍ୟସ୍ୟ ଅନନ୍ୟସାଧତ୍ୱାଦ୍ ତସ୍ୟ ସ୍ୱଜପ୍ୟଚ୍ଛେତିଭାବଃ ଇତି ମହେଶ୍ୱର ଦୀକ୍ଷିତଃ

(୫) ତତସ୍ତୁବୈ ଜାମ୍ବବତା ପ୍ରଚୋଦିତଃ ପ୍ରତୀତବେଗଃ ପବନାତ୍ମଜଃ କପିଃ
ପ୍ରହର୍ଷୟଂ ସ୍ତାଂହରିବୀରବାହିନୀଂ ଚକାର ରୂପଂ ପ୍ଲବନୋନ୍ମୁଖସ୍ତଦା ।
୬୬ସ. ୩୮ ଶ୍ଳୋ

କଥାମାନ ବର୍ଣ୍ଣିତ ଅଛି । ହନୁମାନଙ୍କର ଉଦ୍‌ପ୍ଲବନ ବେଗରୁ ପାର୍ବତୀୟ ଜନ୍ତୁ ପ୍ରଭୃତିଙ୍କର ବିବଶତାଦି ମଧ ବର୍ଣ୍ଣିତ ଅଛି । (୧)

ଦାସଙ୍କ ରାମାୟଣରେ ଏହି ସର୍ଗ ଚତୁଷ୍ଟୟରେ ବର୍ଣ୍ଣିତ ବିଷୟମାନ ଏ ସ୍ଥଳେ ଲେଖା ନାହିଁ । ଦାସେ କିଷ୍କିନ୍ଧା କାଣ୍ଡର ଅବସାନ ସ୍ଥାନରେ ଲେଖି ଅଛନ୍ତି କି ଅଙ୍ଗଦାଦିମାନେ 'ଆମ୍ଭେମାନେ କିପରି ସମୁଦ୍ର ଉତ୍ତୀର୍ଣ୍ଣ ହେବୁ' ବୋଲି ସଂପାତିଙ୍କୁ ପ୍ରଶ୍ନ କଲାରୁ ସେ କହିଲେ କି, ମଦୀୟ ପୁତ୍ର ସୁପାର୍ଶ୍ୱ ଏକ୍ଷଣି ଆସିବ, ସେ ଆପଣମାନଙ୍କୁ ପୃଷ୍ଠରେ ବସାଇ ଲଙ୍କା ଦେଖାଇଦେବ, ସେହିକ୍ଷଣି ସୁପାର୍ଶ୍ୱ ଆସି ନିଜର ପୃଷ୍ଠରେ ଆରୋହିବା ପାଇଁ ବାନରମାନଙ୍କୁ ଅନୁରୋଧ କଲେ; କିନ୍ତୁ ଅଙ୍ଗଦାଦିମାନେ ଲଙ୍କାର ଦର୍ଶନ ମାତ୍ରେ କି ପ୍ରୟୋଜନ ହେବ ! ଏହା କହି ସ୍ୱୀକୃତି ଦେଲେ ନାହିଁ । ସଂପାତି ସେମାନଙ୍କର ଅନୁମତି ନେଇ ବିନ୍ଧ୍ୟକୁ ପ୍ରସ୍ଥାନ କଲେ; ବାନରମାନେ ସମୁଦ୍ର କୂଳରେ ପ୍ରବେଶିଲେ ।

ଅଭିଜ୍ଞ ପାଠକଗଣ ! ଏ ସ୍ଥଳେ ଶ୍ରୀରାମଚନ୍ଦ୍ରଙ୍କର ଅଯୋଧ୍ୟାଠାରୁ ଲଙ୍କା ପର୍ଯ୍ୟନ୍ତ ପ୍ରୟାଣର ନିର୍ଣ୍ଣୟ କରିବା ଆବଶ୍ୟକ ମନେ କରୁ ଅଛୁଁ । ବାଲ୍ମିକୀଙ୍କ ରାମାୟଣର ଘଟନାମାନଙ୍କୁ ଅନୁସରି ରାମଗମନମାର୍ଗର ନିର୍ଣ୍ଣୟ ଲେଖିବୁ । ଏଥିରେ ତାତ୍‌କାଳିକ ପ୍ରଦେଶମାନଙ୍କର ଆଧୁନିକ ନାମମାନ ମଧ ଯଥାସାଧ ନିର୍ଦ୍ଦେଶ କରିବୁ । ଏଥି ସଙ୍ଗେ ଅଯୋଧ୍ୟାଠାରୁ ଲଙ୍କା ପର୍ଯ୍ୟନ୍ତ ଗନ୍ତବ୍ୟ ମାର୍ଗର ପ୍ରଦର୍ଶକ ଗୋଟିଏ ମାନଚିତ୍ର ପଟ ମଧ ସଂକଳିତ ରଖିବୁ । ଏହି ବର୍ଣ୍ଣନାର ପାଠକ ମହାଶୟମାନେ ମାର୍ଗ ବର୍ଣ୍ଣନାର ପାଠ ସଙ୍ଗେ ସଙ୍ଗେ ଏହି ପଟକୁ ଅବଲୋକନ କରି ମାର୍ଗ ସ୍ଥିର କରିନେବେ ।

ଅନେକ ତଥ୍ୟାନୁସନ୍ଧିତ୍ସୁ ମନୀଷୀମାନଙ୍କର ସୁବିଚାରିତ ଅଭିପ୍ରାୟ ଏହି ଯେ ଅତି ପ୍ରାଚୀନ କାଳରୁ ଆର୍ଯ୍ୟମାନଙ୍କ ମଧ୍ୟରୁ ସର୍ବପ୍ରଥମେ ଉତ୍ତର ଦିଗରୁ ଏକାନ୍ତ ଦକ୍ଷିଣଦିଗକୁ ଯାଇ ତାପରେ ସିଂହଳକୁ ପ୍ରସ୍ଥାନ କରିବାରେ ଶ୍ରୀରାମଚନ୍ଦ୍ର କେବଳ ପ୍ରଥମ ଯାତ୍ରୀ ଥିଲେ । ଆର୍ଯ୍ୟମାନଙ୍କ ମଧରୁ ରାମଚନ୍ଦ୍ରଙ୍କ ପୂର୍ବେ କେହି ଏତେଦୂର ଭାରତର ଦକ୍ଷିଣକୁ ଯାତ୍ରା କରି ନ ଥିଲେ । ଅତଏବ ଶ୍ରୀରାମ ଏହି ଚରିତ ସଂସ୍ଥାନକରେ ଅଯୋଧ୍ୟାଠାରୁ ଲଙ୍କା ପର୍ଯ୍ୟନ୍ତ ତଦୀୟ ପ୍ରସ୍ଥାନିକ ମାର୍ଗର ବିବରଣ ପଞ୍ଜିକା ସନ୍ନିହିତ ରଖିବା ସର୍ବଥା ଉଚିତ ଅଟେ ।

---

(୧) ୬୭ ସର୍ଗ ପାଠ କରନ୍ତୁ ।

ଅଧମ୍ର ରାମାୟଣ କିଷ୍କିନ୍ଧା କାଣ୍ଡ ନବମ ସର୍ଗରେ ମଧ ତେତେବେଳେ ମାରୁତି ବିନ୍ଧ୍ୟ ପର୍ବତରେ ଉଠିଥିବା ଲେଖାଅଛି । ଇତ୍ୟାଦି ମହେନ୍ଦ୍ରାଦ୍ରିଶିରୋ ଗତ୍ୱା ବଭୂବାଦ୍ଭୁତ ଦର୍ଶନଃ—

ବର୍ତ୍ତମାନ (audha) ଔଧ ନାମରେ ଅଭିହିତ ପ୍ରଦେଶରେ ସ୍ଥିତ ଅଯୋଧ୍ୟା କେବଳ ପୌରାଣିକ ଅଯୋଧ୍ୟା ଅଟେ । ଏଥିରେ କାହାରି ମତଦ୍ୱୈଧ ହୋଇ ନ ପାରେ, କିନ୍ତୁ ଅଧୁନା ସିଂହଳ ବା ସିଲୋନ୍ ନାମରେ ଅଭିହିତ ଦେଶଟି ରାବଣଙ୍କ ନିବାସ ସ୍ଥାନ – ଲଙ୍କା ଏ ନୁହେଁ ? ବିଚାର୍ଯ୍ୟ । କେହି କେହି କହନ୍ତି ବର୍ତ୍ତମାନ ପରିଦୃଶ୍ୟମାନ ସିଂହଳ ବା ସିଲୋନ୍ ରାବଣଙ୍କର ଲଙ୍କା ଦେଶ ନୁହେଁ । ସେହି ଲଙ୍କା ଅନ୍ୟତ୍ର ପୃଥକ୍ ଥିଲା । ପରନ୍ତୁ ଏହା ଯଥାର୍ଥ ନୁହେଁ । ପ୍ରାଚୀନ ଗ୍ରନ୍ଥମାନଙ୍କର ପରିଶୀଳନ କଲେ ଜଣାଯାଏ ଯେ, ଆମ୍ଭମାନଙ୍କ ପୂର୍ବପୁରୁଷମାନେ ଅତି ପ୍ରାଚୀନ କାଳରୁ ସିଂହଳକୁ କେବଳ ରାବଣାଧୁଷିତ ଲଙ୍କା ବୋଲି ପ୍ରକାଶ କରି ଅଛନ୍ତି । ଚରିତାତ୍ମକ ରାଜତରଙ୍ଗିଣୀ ନାମକ ଗ୍ରନ୍ଥରେ ମଧ୍ୟ ସିଂହଳ ଓ ଲଙ୍କା ଦ୍ୱୀପର ଐକ୍ୟ ପ୍ରତିପାଦିତ ଅଛି । ସିଂହଳରେ ସ୍ଥିତ ଶାସନମାନଙ୍କରେ ସୁଦ୍ଧା ସେହି ଦେଶ ଲଙ୍କା ବୋଲି ପ୍ରକାଶିତ ଅଛି । ସୁତରାଂ ଶ୍ରୀରାମଙ୍କ କୃତ ସେତୁ ଅଦ୍ୟାପି ତଦ୍ରୈବ ବିଦ୍ୟମାନ ରହିଅଛି । ଅତଏବ ବିଶ୍ୱାସ କରିବା ଅସମୀଚୀନ ନୁହେଁ ଯେ ଆଧୁନିକ ସିଂହଳ (Cylon) ସିଲୋନ୍ ରାମାୟଣର ଲଙ୍କା ଅଟେ । ଅଯୋଧ୍ୟାଠାରୁ ପ୍ରୟାଗ ପର୍ଯ୍ୟନ୍ତ ରାମଙ୍କ କୃତ ପ୍ରବାସର ସ୍ଥାନମାନ ସମସ୍ତଙ୍କର ବିହିତ ଅଛି । (୧) ଏ ସମ୍ବନ୍ଧେ ଆଉ କିଛି କହିବା ଅନାବଶ୍ୟକ । ସେହି ସେହି ସ୍ଥାନମାନଙ୍କର ନାମ ପୂର୍ବେ ଯାହା ଥିଲା ବର୍ତ୍ତମାନ ମଧ୍ୟ ତାହା ଅଛି । ଆଗେ ପ୍ରୟାଗରେ ଭରଦ୍ୱାଜ ଆଶ୍ରମ ଥିଲା । ସେଠାରେ ରାମ ଏକ ରାତ୍ରି ମାତ୍ର ଅବସ୍ଥାନ କରି ଚିତ୍ରକୂଟକୁ ଯାତ୍ରା କରିଥିଲେ । ଚିତ୍ରକୂଟ ପ୍ରୟାଗଠାରୁ ଦଶକ୍ରୋଶ ଦୂରରେ ଥିଲା ବୋଲି ଲେଖାଅଛି । (୨) ଆଧୁନିକ ପରିମାଣ ଗଣନା ଅନୁସାରେ ପ୍ରୟାଗଠାରୁ ଚିତ୍ରକୂଟ ପଞ୍ଚସ୍ତୋରି ୭୫ ମାଇଲ ଦୂରରେ ଅବସ୍ଥିତ । ଅତଏବ ସ୍ଥିର କରି ହୃଦୟଙ୍ଗମ କରିବାକୁ ହେବ ଯେ ଆଧୁନିକ ସାର୍ଦ୍ଧସାତ (୭ ୧/୨) ମାଇଲରେ ରାମାୟଣୀୟ ଏକକ୍ରୋଶ । ଏହି ଗଣନା କ୍ରମ ସର୍ବତ୍ର ଅନ୍ୱିତ କରିବାକୁ ହେବ । ରାମାୟଣରେ ଲେଖାଅଛି, ଚିତ୍ରକୂଟରେ ମନ୍ଦାକିନୀ ନଦୀ ପ୍ରବାହିତ (୩) ଅଦ୍ୟାପି ସେହି ନାମରେ ନାମିତା ନଦୀ ସେହି ପର୍ବତ ନିକଟରେ ବହି ଯାଉଅଛି । ଅତଏବ ବିଶ୍ୱାସ କରିବାକୁ ହେବ ଯେ ବର୍ତ୍ତମାନ ପ୍ରୟାଗ ପତ୍ତନର ପଶ୍ଚିମରେ ପଞ୍ଚସ୍ତୋରି ମାଇଲ ଦୂରରେ ବିଦ୍ୟମାନ ଚିତ୍ରକୂଟ କେବଳ ରାମାୟଣୀୟ ଚିତ୍ରକୂଟ ଅଟେ ।

ରାମ ଚିତ୍ରକୂଟଠାରୁ ଆଗ୍ନେୟ ଦିଗକୁ ଯାଇ ଅତ୍ରି ମହର୍ଷିଙ୍କ ଆଶ୍ରମରେ ପ୍ରବେଶ କରିଥିଲେ । ଆଶ୍ରମ କହିଲେ ପାଠକ କୌଣସି ଗୋଟିଏ ପର୍ଣ୍ଣଶାଳା ବୋଲି ବୁଝିବେ ନାହିଁ ।

---

(୧) ରାମାୟଣର ଅଯୋଧ୍ୟା କାଣ୍ଡ ୪୫ ସର୍ଗଠାରୁ ୫୪ ସର୍ଗ ପର୍ଯ୍ୟନ୍ତ ଦେଖନ୍ତୁ ।

(୨) ଦଶକ୍ରୋଶ ଇତସ୍ତାତ ଗିରିର୍ଯତ୍ର ନିବତ୍ସ୍ୟସି ××
ଚିତ୍ରକୂଟ ଇତି ଖ୍ୟାତୋ ଗନ୍ଧମାଦନସନ୍ନିଭଃ । ଅଯୋଧ୍ୟା କା: ୫୪ସ. ୨୮, ୨୯ ଶ୍ଳୋ

(୩) ଅଥ ଶୈଳାଦ୍ ବିନିଷ୍କ୍ରମ୍ୟ ମୈଥିଳୀଂ କୋସଳେଶ୍ୱରଃ, ଅଦର୍ଶୟଦ୍ ଶୁଭଜଳାଂ ରମ୍ୟାଂ ମନ୍ଦାକିନୀଂ ନଦୀମ୍ । ଅଯୋଧ୍ୟା କା. ୯୫ ସ. ୧ ଶ୍ଳୋ

ଆଶ୍ରମର ଅର୍ଥ କେତେଗୁଡ଼ିଏ ମୁନିପଲ୍ଲୀମାନଙ୍କର ସମଷ୍ଟି ବାସଗୃହ ଅଟେ । ପୂର୍ବ କାଳରେ ଏକ ଏକ ମହର୍ଷିଙ୍କୁ ଆଶ୍ରୟ କରି ଅନେକାନେକ ଶିଷ୍ୟମାନେ ତାହାଙ୍କ ବସତିର ଚତୁର୍ଦ୍ଦିଗରେ ବହୁଦୂର ପର୍ଯ୍ୟନ୍ତ କୁଟୀର ନିବାସ ନିର୍ମାଣ କରି ଅବସ୍ଥାନ କରୁଥିଲେ । ତାଦୃଶ ମୁନିପଲ୍ଲିମାନ ଆଶ୍ରୟୀଭୂତ ସେହି ମହର୍ଷିଙ୍କ ନାମରେ ତଦୀୟ ଆଶ୍ରମ ସ୍ୱରୂପ ଲୋକରେ ଅଭିହିତ ହେଉଥିଲା । ତେତେବେଳେ ଅତ୍ରିଙ୍କର ଆଶ୍ରମ ଅତି ବିପୁଳ ଓ ବିସ୍ତୃତ ଥିଲା । ତାହା ଆଧୁନିକ ରିବା ଅଞ୍ଚଳର ଦକ୍ଷିଣ ସୀମା ପର୍ଯ୍ୟନ୍ତ ବ୍ୟାପି ଥିଲା ବୋଲି ଧରାଯାଇ ପାରେ ।

ଋଷିମାନେ ଅତ୍ରିଙ୍କ ଆଶ୍ରମକୁ ଆସି ରାମଙ୍କୁ ସାଦରେ ଅନୁରୋଧ କଲେ ଯେ ରାକ୍ଷସମାନେ ଆମ୍ଭମାନଙ୍କୁ ବହୁ ବାଧା ଦେଉଅଛନ୍ତି । ଆପଣ ଆସି ଆମ୍ଭମାନଙ୍କର କଷ୍ଟ ନିବାରଣ କରନ୍ତୁ । ସେଠାରୁ ରାମ ଗହନ ଅରଣ୍ୟରେ ପ୍ରବେଶ କଲେ । ଏହି ଅରଣ୍ୟର ନାମ ଦଣ୍ଡକାରଣ୍ୟ । ଏହା ଅତି ବିସ୍ତୀର୍ଣ୍ଣ ଥିଲା । ଦଣ୍ଡକାରଣ୍ୟରେ ଅନେକ ଋଷି ଆଶ୍ରମ ଥିଲା । ଏଥି ମଧ୍ୟରେ ରାକ୍ଷସମାନଙ୍କର କେତେକ ନିବାସ ସ୍ଥାନ ମଧ୍ୟ ଥିଲା । ଏହି ମହାଅରଣ୍ୟର ଚତୁଃସୀମା ଏହି – ଏହାର ଉତ୍ତରରେ ଗଙ୍ଗା ନଦୀର ଦକ୍ଷିଣତୀର ଓ ବିନ୍ଧ୍ୟ ପର୍ବତ, ପଶ୍ଚିମରେ ଉତ୍ତର ବିନ୍ଧ୍ୟ ଓ ଅତ୍ରିଙ୍କ ଆଶ୍ରମ ଏବଂ ଦକ୍ଷିଣ ବିନ୍ଧ୍ୟର କେତେକ ଅଞ୍ଚଳ, ବିଦର୍ଭ ଦେଶ ଓ ଦକ୍ଷିଣାପଥର ମଳୟାଦ୍ରି ପର୍ଯ୍ୟନ୍ତ; ଏହାର ଦକ୍ଷିଣ ସୀମାରେ କାବେରୀ ତୀରରେ ଦ୍ରାବିଡ଼ ଓ ପାଣ୍ଡ୍ୟ ଦେଶ ଥିଲା । ଦଣ୍ଡକାରଣ୍ୟର ପୂର୍ବ ସୀମାରେ କ୍ରମଶଃ ଉତ୍କଳ, କଳିଙ୍ଗ, ଆନ୍ଧ୍ର ଓ ଚୋଳ ଦେଶମାନ ବିଦ୍ୟମାନ ଥିଲା । ଏସବୁ ବିଚାର କରି ନେଲେ ରାମଚନ୍ଦ୍ର ଆଧୁନିକ ସୁରଗୁଜା ପ୍ରଦେଶ ପ୍ରାନ୍ତରୁ ଦଣ୍ଡକାରଣ୍ୟରେ ପ୍ରବେଶ କରିଥିବା ଜଣାଯାଉଅଛି ।

ରାମଚନ୍ଦ୍ର ଦଣ୍ଡକାରଣ୍ୟରେ ଋଷିମାନଙ୍କ ଆଶ୍ରମମାନ ଦେଖି ଦେଖି ଯାଉଁ ଯାଉଁ କେତେକ ଦୂରରେ ବିରାଧ ନାମକ ରାକ୍ଷସକୁ ଭେଟିଥିଲେ । ଏହି ପ୍ରଦେଶ ଦଣ୍ଡକାରଣ୍ୟର ଅନ୍ତର୍ଗତ ମଧ୍ୟପରଗଣା ବା ମଧ୍ୟପ୍ରଦେଶ (ସେଣ୍ଟ୍ରାଲ୍ ପ୍ରାଭିନ୍‌ସ୍) ଅନ୍ତର୍ଭୁକ୍ତ ବିଳାସପୁର ଜିଲ୍ଲାର ଐଶାନ୍ୟ କୋଣରେ ଥିଲା । ଏହିଠାରୁ ଶ୍ରୀରାମ ଶରଭଙ୍ଗଙ୍କ ଆଶ୍ରମକୁ ଯାଇଥିଲେ । ଏହି ସ୍ଥାନ ବିରାଧବନଠାରୁ ଅର୍ଦ୍ଧଯୋଜନ ବା ପନ୍ଦର ମାଇଲ ଦୂରରେ ଦକ୍ଷିଣରେ ବିଳାସପୁର ଜିଲ୍ଲାର ଉତ୍ତର ଆଡ଼କୁ ଐଶାନ୍ୟ କୋଣରେ ଥିଲାପରି ଜଣାଯାଉଅଛି । ରାମ ଶରଭଙ୍ଗାଶ୍ରମରୁ ସୁତୀକ୍ଷ୍ଣ ଋଷିଙ୍କ ଆଶ୍ରମକୁ ଗଲେ । ତତ୍ର ଏକରାତ୍ରି ମାତ୍ର ଅବସ୍ଥାନ କରି ଅନ୍ୟାନ୍ୟ ଋଷ୍ୟାଶ୍ରମମାନଙ୍କୁ ଯାଇଥିଲେ । ରାମ ଏହି ମାର୍ଗରେ କେତେକ ଦୂର ଗଲା ପରେ ଗୋଟିଏ ବୃହତ୍ ସରୋବର ଦେଖିଲେ । ତାହାର ନାମ ପଞ୍ଚାପ୍ସର ସରୋବର । ଏହି ସରୋବରଟି କେଉଁ ସ୍ଥାନରେ ଥିଲା ? ଏହାର ବିଚାର କର୍ତ୍ତବ୍ୟ । ଜେନେରଲ୍ କନିଙ୍ଗହ୍ୟାମ୍ ସାହେବ କେତେକ କାରଣମାନ ପ୍ରଦର୍ଶାଇ କହିଅଛନ୍ତି କି, ଏହି ପଞ୍ଚାପ୍ସର ସରଟି ମଧ୍ୟପରଗଣା ବା ସେଣ୍ଟ୍ରାଲ୍ ପ୍ରାଭିନ୍‌ସ୍‌ରେ ବିଳାସପୁର ଜିଲ୍ଲାରେ ଥିଲା । (୧)

---

(୧) ପ୍ରତ୍ନତତ୍ତ୍ୱ ଆବିଷ୍କାରକ ସଂଘର ଦ୍ୱିତୀୟ ଭାଗ ରିପୋର୍ଟରେ ଲେଖା ଅଛି ।

ଅତଏବ ଆମ୍ଭେମାନେ ଏହା କହିପାରୁଁ ଯେ ପ୍ରୋକ୍ତ ସୁତୀକ୍ଷ୍ଣାଶ୍ରମଟି ଆଧୁନିକ ବିଳାସପୁର ଜିଲ୍ଲା ଏବଂ ରାୟପୁର ଜିଲ୍ଲାର ଉତ୍ତର ଭାଗରେ ବ୍ୟାପିଥିଲା । କାଳୀଦାସକୃତ ମେଘଦୂତରେ ବର୍ଣ୍ଣିତ ରାମଗିରି ବୋଧହୁଏ ପୁରା ରାମଙ୍କ ଅଧ୍ୟୁଷିତ ସ୍ଥାନର ଏକ ଅଞ୍ଚଳ । ଅତଏବ ଲୋକ ମୁଖରେ ତାହାର ତାଦୃଶ ନାମ ହୋଇଅଛି । ଅନେକ ମନୀଷୀ ଅଭିମତ ପ୍ରକାଶ କରିଅଛନ୍ତି କି ଏହି ରାମଗିରି ସୁତୀକ୍ଷ୍ଣାଶ୍ରମର ପ୍ରାନ୍ତଭାଗରେ ଥିଲା । ସୁତୀକ୍ଷ୍ଣାଶ୍ରମର ଦକ୍ଷିଣ ଦିଗରେ ଚାରି ଯୋଜନ ଅର୍ଥାତ୍ ଇଦାନୀଂତନ ଏକଶତ କୋଡ଼ିଏ ୧୨୦ ମାଇଲ ଦୂରରେ (୧) ମହାମୁନି ଅଗସ୍ତିଙ୍କ ଭ୍ରାତାଙ୍କ ଆଶ୍ରମ ଥିଲା । ରାମାୟଣୀୟ ବର୍ଣ୍ଣନାମାନଙ୍କଦ୍ୱାରା ଏକ୍ଷଣି ଆମ୍ଭେମାନେ ଉହା କରି ପାରୁ ଯେ ଅଗସ୍ତ୍ୟଭ୍ରାତାଙ୍କ ଆଶ୍ରମଟି ଆଧୁନିକ ରାୟପୁର ଜିଲ୍ଲାର ଦକ୍ଷିଣଭାଗ ଏବଂ ବସ୍ତର ସମସ୍ଥାନର ଉତ୍ତର ଭାଗରେ ବ୍ୟାପିଥିଲା । ଅଗସ୍ତ୍ୟ ଭ୍ରାତାଙ୍କ ଆଶ୍ରମର ଦକ୍ଷିଣରେ ଏକ ଯୋଜନ (୨) ତିରିଶ ୩୦ ମାଇଲ ଦୂରରେ ଅଗସ୍ତି ମହର୍ଷିଙ୍କ ଆଶ୍ରମ ଥିଲା । ଏହି ଆଶ୍ରମଟି ବସ୍ତର ସମସ୍ଥାନ ବା ରାଜ୍ୟର ଦକ୍ଷିଣ ଭାଗରେ ଥିଲା । କାରଣ ଅଗସ୍ତ୍ୟାଶ୍ରମର ଦକ୍ଷିଣରେ ୬୦ ଷାଠିଏ ମାଇଲ ଦୂରରେ ପଞ୍ଚବଟୀ ପ୍ରଦେଶ ଏବଂ ଗୋଦାବରୀ ନଦୀ ଥିବାର ପ୍ରମାଣ ବାଲ୍ମୀକି ରାମାୟଣରେ ଦେଖାଯାଏ । (୩) ପଞ୍ଚବଟୀ କେତେକ ଆରଣ୍ୟକ ପ୍ରଦେଶର ସମିଷ୍ଟି ଅଟେ । ଏଥିରେ ଗୋଦାବରୀ ନଦୀର ସମୀପରେ ସାନୁଜ ସଭାର୍ଯ୍ୟ ରାମଚନ୍ଦ୍ର ପର୍ଣ୍ଣଶାଳା ନିର୍ମାଣ କରି କେତେକ ସମୟ ଅବସ୍ଥାନ କରିଥିଲେ । ଆଧୁନିକ ଗୋଦାବରୀ ଜିଲ୍ଲାରେ ଭଦ୍ରାଚଳର ଅଦୂରରେ ଅବସ୍ଥିତ ପର୍ଣ୍ଣଶାଳା ନାମକ ଗ୍ରାମରେ ଶ୍ରୀରାମଙ୍କ ପର୍ଣ୍ଣଶାଳା ଥିଲା । ଏହା ତ୍ରୈଲଙ୍ଗ ଦେଶୀୟମାନେ କହନ୍ତି । ବାଲ୍ମୀକୀୟ ରାମାୟଣରେ ବର୍ଣ୍ଣିତ ଦୃଶ୍ୟମାନ ଏବଂ ଆଧୁନିକ କେତେକ ବିଦ୍ୱାନ୍‌ମାନଙ୍କର ଅଭିପ୍ରାୟ ପରିଶୀଳନ କରିଲେ ଏହି ଯେ ତୈଲଙ୍ଗ ଦେଶବାସୀମାନଙ୍କର ନିର୍ଦ୍ଦେଶ, ଯଥାର୍ଥ ପରି ଜଣାଯାଏ । ମହାରାଷ୍ଟ୍ରୀୟମାନେ କହନ୍ତି କି ମହାରାଷ୍ଟ୍ର ଦେଶରେ ସ୍ଥିତ ନାସିକ୍ ନାମକ ପଟନଟି ରାମାୟଣୋକ୍ତ ଉକ୍ତସ୍ଥାନ ଅଟେ ଏବଂ ସେହିଠାରେ କେବଳ ରାମଙ୍କ ପର୍ଣ୍ଣଶାଳା ଥିଲା । କେତେକ ଆଧୁନିକ ଗ୍ରନ୍ଥକର୍ତ୍ତାମାନେ ମଧ ମହାରାଷ୍ଟ୍ରୀୟମାନଙ୍କର ଏହି ଅଭିମତକୁ ସ୍ୱୀକାର କରି ନିଜ ନିଜ

---

(୧) ଯୋଜନାନ୍ୟାଶ୍ରମାଦ୍ ତାତ ଯାହି ଚତ୍ୱାରି ବୈ ତତଃ ।
ଦକ୍ଷିଣେନ ମହାନ୍ ଶ୍ରୀମାନ୍ ଅଗସ୍ତ୍ୟଭ୍ରାତୁରାଶ୍ରମଃ । ଅ.କା. ୧୧ ସ. ୩୮ ଶ୍ଳୋ

(୨) ତତ୍ରୈକାଂ ରଜନୀଂ ବ୍ୟୁଷ୍ୟ ପ୍ରଭାତେ ରାମ ଗମ୍ୟତାଂ,
ଦକ୍ଷିଣାଂଦିଶମାସ୍ଥାୟ ବନଖଣ୍ଡସ୍ୟ ପାର୍ଶ୍ୱତଃ ।
ତତ୍ରାଗସ୍ତ୍ୟାଶ୍ରମପଦଂ ଗତ୍ୱା ଯୋଜନମନ୍ତରମ୍ ଆ: କା: ୧୧. ୪୨ଶ୍ଳୋ

(୩) ଆର. କା. ୧୩ ସର୍ଗ
୧୧ ଏକାଦଶ ଶ୍ଳୋକଠାରୁ ୨୫ ପଞ୍ଚବିଂଶ ଶ୍ଳୋକ ପର୍ଯ୍ୟନ୍ତ ଦେଖନ୍ତୁ ।

ଗ୍ରନ୍ଥରେ ନାସିକକୁ ଜନସ୍ଥାନ ଓ ପଞ୍ଚବଟୀର ସ୍ଥାନ କହିଅଛନ୍ତି । କିନ୍ତୁ ଚିତ୍ରକୂଟଠାରୁ ନାସିକକୁ ଯିବାକୁ ହେଲେ ମଧ୍ୟମାର୍ଗରେ ବିନ୍ଧ୍ୟପର୍ବତ ଆଉ ନର୍ମଦା ନଦୀକୁ ଅବଶ୍ୟ ଭେଟିବାକୁ ହେବ । ପରନ୍ତୁ ଶ୍ରୀରାମଙ୍କ ଯିବା ମାର୍ଗରେ ପ୍ରୋକ୍ତ ପର୍ବତ ଓ ନଦୀକୁ ସେ ଭେଟିଥିବାର କଥା ଆଦି କବି ନିଜର ରାମାୟଣରେ ଲେଖି ନାହାନ୍ତି । ଯେଉଁମାନେ ନାସିକ କେବଳ ଜନସ୍ଥାନ ଓ ପଞ୍ଚବଟୀର ସ୍ଥାନ ବୋଲି ପ୍ରତିବାଦ କରନ୍ତି, ସେମାନଙ୍କ ପକ୍ଷରେ ବାଲ୍ମୀକୀୟ ରାମାୟଣ ବାଧକ ହୋଉଅଛି । ରାମାୟଣରେ ବର୍ଣ୍ଣିତ ଦିଗ୍‌ଭାଗମାନ ପରିଶୀଳନ କରି ନେଲେ ଶ୍ରୀରାମଙ୍କ ପର୍ଣ୍ଣଶାଳା ଭାରତବର୍ଷର ପୂର୍ବଦିଗରେ କେବଳ ଅବସ୍ଥିତ ଥିଲା, ଏପରି ଉହନୀୟ ହୋଇପାରୁଅଛି । ଶ୍ରୀରାମ ପଞ୍ଚବଟୀରେ ଅବସ୍ଥାନ କରୁଥିବା ସମୟେ ସୂର୍ପଣଖାର କର୍ଣ୍ଣ ନାସିକା ଛିନ୍ନ କରିଥିଲେ; ଖରାସୁର ପ୍ରଭୃତିଙ୍କୁ ନିହତ କରିଥିଲେ । ଏହି ଖର ପ୍ରଭୃତି ମାନେ ଜନସ୍ଥାନରେ ନିବାସ କରୁଥିଲେ । ତେବେ ଜନସ୍ଥାନ କେଉଁଠି ଥିଲା ? ଏହାର ବିଚାର କର୍ତ୍ତବ୍ୟ । ମଧ୍ୟପ୍ରଦେଶ ବା ସେଣ୍ଟ୍ରାଲ୍ ପ୍ରାବିନ୍ସରେ ରାୟପୁର ଜିଲ୍ଲାର ଅନ୍ତର୍ଗତ ବସ୍ତର ସମସ୍ଥାନ ବା ରାଜ୍ୟର ପୂର୍ବଭାଗ, ସମ୍ବଲପୁର ଜିଲ୍ଲାର ସମଧିକ ଭାଗ, ମାନ୍ଦ୍ରାଜହତାର ଅନ୍ତର୍ଗତ ଜୟପୁର ସମସ୍ଥାନ ଓ ରାଜ୍ୟର ଗୋଦାବରୀ ତୀରସ୍ଥ ଉତ୍ତର ଭାଗର କେତେକ ଅଂଶ, ଗୋଦାବରୀ ନଦୀର ଦକ୍ଷିଣରେ ଅବସ୍ଥିତ ନିଜାମ ରାଜ୍ୟର ସମଧିକ ଭାଗ, ଏହି ସବୁ ପ୍ରଦେଶମାନ ଜନସ୍ଥାନର ଅନ୍ତର୍ଭୁକ୍ତ ଥିଲା ବୋଲି ଏବଂ ଏହାର ଅଧିପତି ଖରାସୁର ଥିଲା ବୋଲି ଜଣାଯାଉ ଅଛି । ଏଥି ମଧ୍ୟରେ ଖରାସୁରଙ୍କ ରାଜଧାନୀର ନାମ ଖରାଳୟ । ରାୟପୁର ଜିଲ୍ଲାର ଖଡ଼ିଆଳ ନାମ ପ୍ରଦେଶ ହିଁ ଖରାଳୟ ଥିଲା । ଖରାଳୟ ଶବ୍ଦଟି କ୍ରମେ କ୍ରମେ ଲୋକଙ୍କ ମୁଖରେ ଖଡ଼ିଆଳ ହୋଇଅଛି । ଖରାଳୟ ପଦ ଆଗେ ଖରିଆଳ ହେଲା, ତାପରେ ଉଚ୍ଚାରଣ ସୌକର୍ଯ୍ୟରୁ ରକାର ସ୍ଥଳେ ଡକାର ଉଚ୍ଚାରିତ ହେଲାରୁ ଖଡ଼ିଆଳ ହୋଇଅଛି (୧) ସୀତା ହରଣାନ୍ତର ଶ୍ରୀରାମ ଦେବ ଦକ୍ଷିଣ ଦିଗକୁ ପ୍ରସ୍ଥାନ କଲେ । ଜନସ୍ଥାନରେ ଗୋଦାବରୀର ଉତ୍ତର ଭାଗରେ ପଞ୍ଚବଟୀ ପ୍ରଦେଶରେ ରାମ ପ୍ରଥମେ ସୀତାଙ୍କୁ ଖୋଜି ଖୋଜି ଗୋଦାବରୀ ତୀରେ ତୀରେ ପର୍ଣ୍ଣଶାଳାର ପୂର୍ବ ଭାଗରେ କେତେକ ଦୂରସ୍ଥିତ ଭଦ୍ରାଚଳଠାରେ ସାନୁଜ ରାମଚନ୍ଦ୍ର ଗୋଦାବରୀ ନଦୀକୁ ପାର ହୋଇଥିଲେ । ତାପରେ ସେ ଗୋଦାବରୀର ଦକ୍ଷିଣରେ ଜନସ୍ଥାନରେ କେବଳ କେତେକ ଦୂର ପର୍ଯ୍ୟନ୍ତ ନିବାସ ପ୍ରବାସ କରି ଯାଇଥିଲେ । (୨)

ତାପରେ କେତେକ ଦୂରରେ ରାମ ଜଟାୟୁଙ୍କୁ ଭେଟିଥିଲେ, ତାପରେ ସେହିଠାରୁ ସେମାନେ ପଶ୍ଚିମ ଦିଗ ଆଡ଼କୁ ନୈଋତ କୋଣକୁ କେତେ ଦୂର ଚାଲିଯାଇ (୩)

(୧) ବାଲ୍ମୀକିଙ୍କ ରାମାୟଣରେ ସ୍ଥାନେ ଶମ୍ବରପୁର ନାମ ଲେଖାଅଛି । ଅନୁମିତ ହୁଏ, ଏହି ଶମ୍ବରପୁର କେବଳ ଆଧୁନିକ ସମ୍ବଲପୁର ଅଟେ ।

(୨) ୬୨-୪ - ୫.୬.

(୩) ୬୯-୧.୨.

ଜନସ୍ଥାନର ଅରଣ୍ୟମାନ ଉତ୍ତୀର୍ଣ୍ଣ ହେଲାପରେ ସେମାନେ ଠିକ୍ ସମାନରେ ଦକ୍ଷିଣ ଦିଗକୁ ଚାଲି ଯାଇଥିଲେ । (୧) ରାମ ଜନସ୍ଥାନ ଡେଇଁଗଲା ପରେ ତିନି କ୍ରୋଶ ଦୂରରେ କ୍ରୌଞ୍ଚାରଣ୍ୟକୁ ଯାଇଥିଲେ । ଏହି କୌଞ୍ଚାରଣ୍ୟ ଇଦାନୀଂତନ ନିଜାମ ରାଜ୍ୟର ନୈରୁତ ଦିଗରେ ଥିଲା । ଏହି ଅରଣ୍ୟ ଉତ୍ତୀର୍ଣ୍ଣ ହେବା ପାଇଁ ସାନୁଜ ରାମଚନ୍ଦ୍ର ପୂର୍ବଦିଗକୁ ତିନିକ୍ରୋଶ ଦୂର ଯାଇଥିଲେ । ତାପରେ ସେହିଠାରେ ସେ ଦୁହେଁ କବନ୍ଧଦ୍ୱାରା ଆକ୍ରାନ୍ତ ହୋଇଥିଲେ । ତଦନନ୍ତର ରାମ ଓ ଲକ୍ଷ୍ମଣ ସେହିଠାରୁ କବନ୍ଧ କଥାନୁସାରେ ପଶ୍ଚିମ ଦିଗକୁ ଯାଇ ପମ୍ପା ସରୋବର ଦେଖିଥିଲେ ।

ପଞ୍ଚବଟୀଠାରୁ ପମ୍ପା ପର୍ଯ୍ୟନ୍ତ ବାଲ୍ମିକୀୟ ରାମାୟଣରେ ବର୍ଣ୍ଣିତ ଦିଗମାନଙ୍କୁ ଧରି ପରିଶୀଳନ କଲେ ଏହି ସବୁ ଦିଗ ବିବରଣ ଭଦ୍ରାଚଳ ନିକଟସ୍ଥ ପର୍ଣ୍ଣଶାଳାର ଅନୁକୂଳ ପ୍ରମାଣ ସ୍ୱରୂପ ଜଣାଯାଏ । ପରଂତୁ ନାସିକ ସ୍ଥାନକୁ ଜନସ୍ଥାନ ବୋଲି କହିବା ପକ୍ଷର ଅନୁକୂଳ ହୁଏ ନାହିଁ; ପ୍ରତ୍ୟୁତ ପ୍ରତିକୂଳ ଜଣାଯାଏ ।

ରାମାୟଣରେ ସ୍ଥାନେ ପମ୍ପା ଗୋଟିଏ ନଦୀ ବୋଲି ଲେଖା ଅଛି । (୨) ତାହାହେଲେ ପମ୍ପା ଆଧୁନିକ ତୁଙ୍ଗଭଦ୍ରା ନଦୀ ହେବ । କହିହେବ ପମ୍ପା ସରୋବର ବୋଲି ଯାହା ବର୍ଣ୍ଣିତ ଅଛି, ତାହା ଆଧୁନିକ ବଲ୍ଲାର ଜିଲ୍ଲାରେ ସ୍ଥିତ ପମ୍ପା ସାଗର ଅଟେ । ଏହା ପରେ ରାମଚନ୍ଦ୍ର ପ୍ରାପ୍ତ ସ୍ଥାନମାନ ଋଷ୍ୟମୂକ, ମାଲ୍ୟବନ୍ତ, କିଷ୍କିନ୍ଧା ପ୍ରଭୃତି । ଏହି ସ୍ଥାନମାନ ହାମ୍ପୀ ସାଗର ଆଉ ବିରୂପାକ୍ଷ୍ୟ ନାମକ ସ୍ଥାନଠାରୁ ନିକଟବର୍ତ୍ତୀ କେତେକ ପର୍ବତ ବା ପାର୍ବତ୍ୟ ସ୍ଥାନ ବୋଲି ସମଧିକ ମନୀଷିମାନଙ୍କର ସୁବିଚାରିତ ଅଭିମତ ହୋଇଅଛି । ଅନେକଙ୍କ ମତରେ ବଲ୍ଲାରି ଜିଲ୍ଲାର ବଲ୍ଲାରି ନାମକ ପ୍ରଦେଶରେ ବାଳିଙ୍କ ରାଜଧାନୀ ଥିଲା । ସେହି ବାଳିପୁରୀର ଅନ୍ୟାକୃତିରେ ପରିଣତ ନାମ ହିଁ ବଲ୍ଲାରି ହୋଇଅଛି । ବାଳିପୁରୀ ପଦକୁ ଲୋକେ ସଂକ୍ଷିପ୍ତୀକୃତ ଉଚ୍ଚାରଣରେ କହୁ କହୁ ସେମାନଙ୍କ ମୁଖରେ କ୍ରମଶଃ ବଲ୍ଲାରି ପଦ ଉଚ୍ଚାରିତ ହୋଇଅଛି । ଏହି ଅନୁମାନ ସୁସଙ୍ଗତ ବୋଧ ହେଉଅଛି । ରାମଚନ୍ଦ୍ର କିଷ୍କିନ୍ଧାଠାରୁ ବାହାରି କପିବାହିନିସହ ଏକାବେଳକେ ରାମେଶ୍ୱର ନିକଟରେ ସମୁଦ୍ରତୀରରେ ପ୍ରବେଶ କରିଥିଲେ । ଅତଏବ ଅତଃପର ତଦୀୟ ଗମିତି ମାର୍ଗର ଅନୁସନ୍ଧାନ ଅନାବଶ୍ୟକ । ମୂଳଗ୍ରନ୍ଥର କିଷ୍କିନ୍ଧାକାଣ୍ଡର ସର୍ବାନ୍ତିମ ସର୍ଗଚତୁଷ୍ଟୟରେ ବର୍ଣ୍ଣିତ ଅଙ୍ଗଦାଦିଙ୍କର ସମୁଦ୍ର ଲଂଘନାର୍ଥ ମନ୍ତ୍ରଣା ପ୍ରଭୃତିର ବିବରଣମାନ ବଳରାମ ଦାସଙ୍କ ରାମାୟଣରେ ସୁନ୍ଦରାକାଣ୍ଡର ପ୍ରାରମ୍ଭରେ ଯେକୌଣସି ମତେ ବର୍ଣ୍ଣିତ ଅଛି । ଏଥିରେ ବାନରବୀରମାନଙ୍କର ପରାକ୍ରମ ବାଦନର ଯେ କ୍ରମ, ତାହା ଠିକ୍ ମୂଳାନୁମତ

(୧) ୬-୪.
(୨) ୭୫ ସ. ୧୪ ଶ୍ଳୋ

ନ ହେଲେ ସୁଦ୍ଧା ଅସଙ୍ଗତ ନୁହେ । ମୂଳ ଗ୍ରନ୍ଥରେ ଏ ସମ୍ବନ୍ଧେ ଜାମ୍ବବାନ ଏବଂ ଅନ୍ୟାନ୍ୟ ହରିବୀର ମାନଙ୍କର ଯେ ବହୁ ପ୍ରସର ଆଳାପ, ତାହା ଏଥିରେ ଆଭାସତଃ ମାତ୍ର ପ୍ରକାଶିତ ଅଛି । ମାରୁତିଙ୍କର ଯେ ଉଦ୍‌ଗମନ ପ୍ରକ୍ରିୟା, ଏଥିରେ ଠିକ୍ ମୂଳାନୁମତ ହୋଇନାହିଁ । ହନୁମାନ ଆକାଶ ସରଣୀରେ ବିକ୍ରମି ଶତଯୋଜନ ସମୁଦ୍ର ଉଲ୍ଲଂଘନ ପୂର୍ବକ ଲଙ୍କା ପ୍ରସ୍ଥାନ କଲେ । ଏହି ସ୍ଥୂଳ କଥାଟକ ମାତ୍ର ଦାସ ମହୋଦୟ ମୂଳ ଗ୍ରନ୍ଥରୁ ଧରି ସ୍ୱକୀୟ ରଚନା ବୈଭବରେ ଏହି ସଂଦର୍ଭର ଚିତ୍ରଣ କରିଯାଇଅଛନ୍ତି । ଏହାକୁ ଅବଶ୍ୟ ତାହାଙ୍କର ଲେଖକ କୃତିତ୍ୱର ଦ୍ୟୋତକ ବୋଲିବାକୁ ହେବ । ମୂଳ ଗ୍ରନ୍ଥରେ ମହେନ୍ଦ୍ର ପର୍ବତରୁ ବ୍ୟୋମସରଣୀ ପ୍ରତି ହନୁମାନଙ୍କର ଉତ୍‌ପ୍ଳବନଠାରୁ ସୁନ୍ଦରାକାଣ୍ଡର ଆରମ୍ଭ ହୋଇଅଛି । (୧)

ହନୁମାନ ଜଳଧି ସନ୍ତରଣାର୍ଥ ଏଡ଼େ ଦୀର୍ଘାକୃତି ହେଲେ ଯେ ତାହାଙ୍କ ଛାୟା ସମୁଦ୍ରଟାକୁ ଆଚ୍ଛନ୍ନ କରି ପକାଉଥିଲା । (୨)

ତଦୁତ୍ପତନ ବେଗରେ ପାର୍ବତ୍ୟଜନ୍ତୁ ପ୍ରଭୃତିଙ୍କର ଦୁରବସ୍ଥା ଘଟିଥିଲା । ତତ୍ରତ୍ୟ ବିଦ୍ୟାଧର ଆଉ ମହର୍ଷିମାନେ ମାରୁତିଙ୍କ ପ୍ରସଂଶାବାଦ ବା ସ୍ତବନ ଆରମ୍ଭି ଥିଲେ । ସାଗର ପୁଣି ସାଗରାନ୍ୱୟ ରାମଙ୍କ ଦୂତ ବୋଲି ତଦୀୟ ଉପଚିକୀର୍ଷାରେ ମୈନାକ ପର୍ବତକୁ ପ୍ରଚୋଦିତ କରିଥିଲେ । ମୈନାକ ପାବନିଙ୍କ ପିତାଙ୍କ ପ୍ରାକ୍ତନ ଉପକାର ସ୍ମରଣରେ ତାହାଙ୍କ ଅଭ୍ୟର୍ଥନା କରିଥିଲେ । (୩) ଇନ୍ଦ୍ରଙ୍କ ପ୍ରଚୋଦନାରେ ସେହି ସୁନାଭ ପର୍ବତ ମଧ ମାରୁତିଙ୍କର ସତ୍‌କାର କରିଥିଲେ । (୪)

ତାପରେ ହରିବୀରଙ୍କ ପରାକ୍ରମ ପରୀକ୍ଷା ନିମନ୍ତେ ଦେବତାମାନଙ୍କ ଦ୍ୱାରା ପ୍ରେରିତ ନାଗମାତା ସୁରସା ପାବନିଙ୍କ ପ୍ରତ୍ୟବାୟ ଘଟାଇବାପାଇଁ ମାୟିକାଚେଷ୍ଟାର ପ୍ରସରଣ କରି ସୁଦ୍ଧା ପରାସ୍ତ ହେଲେ ଏବଂ ଦେବତାମାନଙ୍କୁ ବାତାତ୍ମଜଙ୍କ ବାତପ୍ରମିତ ପରାକ୍ରମାଧିକ୍ୟ ଜଣାଇଲେ । ତାପରେ ସିଂହିକା ତଦୀୟ ଆକ୍ରମଣାର୍ଥ ଆସି ପ୍ରେତରାଜଙ୍କ ଆତିଥ୍ୟ ଗ୍ରହଣ କରିବାକୁ ଗଲେ । ଦ୍ୱିତୀୟ ସର୍ଗରେ ହନୁମାନଙ୍କର ତ୍ରିକୂଟ ଶିଖରସ୍ଥ (୫) ଲଙ୍କା ନଗରୀ ନୀରିକ୍ଷଣ ଆଉ ତାହାର ଅବସ୍ଥାନ ବର୍ଣ୍ଣନା ପ୍ରଭୃତି କଥା ବର୍ଣ୍ଣିତ ଅଛି । ହନୁମାନ

---

(୧) ଅଧ୍ୟାତ୍ମ ରାମାୟଣରେ ମଧ ଏହିପରି ଯଥା - ଶତଯୋଜନବିସ୍ତୀର୍ଣ୍ଣଂ
ସମୁଦ୍ରଂ ମକରାଳୟମ୍, ଲିଲଂଘୟିଷୁରାନନ୍ଦସନ୍ଦୋହୋ ମରୁତାତ୍ମଜଃ । ସୁ. କା. ୧ସ. ୧ଶ୍ଳୋ

(୨) ଦଶ ଯୋଜନ ବିସ୍ତୀର୍ଣ୍ଣା ତ୍ରିଂଶଦ୍ ଯୋଜନ ମାୟତା
ଛାୟା ବାନରସିଂହସ୍ୟ ଜବେ ଚାରୁତରା ଭବେତ୍ । ୧ସ. ୭୬ ଶ୍ଳୋ

(୩) ମାରୁତିଙ୍କ ହସ୍ତ ସ୍ପର୍ଶମାତ୍ରରେ ମୈନାକଙ୍କ ଅଭ୍ୟର୍ଥନାକୁ ଅନୁମୋଦନ କରିଥିଲେ : ଇତ୍ୟୁକ୍ତ୍ୱା ପାଣିନା ଶୈଳମାଲଭ୍ୟ ହରିପୁଙ୍ଗବଃ, ଜଗାମାକାଶମାବିଶ୍ୟ ବୀର୍ଯ୍ୟବାନ୍ ପ୍ରହସନ୍ନିବ । ୧ସ. ୧୩୩ ଶ୍ଳୋ

(୪) ସୁନ୍ଦରକାଣ୍ଡ ୧ସ. ୧୩୭-୧୪୨ ଶ୍ଳୋ

(୫) ତ୍ରିକୂଟ ଶିଖରେ ଲଙ୍କାଂ ସ୍ଥିତାଃ ସ୍ୱସ୍ଥୋ ଦଦର୍ଶ ହ - ୨ସ. ଶ୍ଳୋ

ପର୍ବତସ୍ଥ ତରୁଲତା ଓ ନଦୀ ପ୍ରଭୃତିର ଶୋଭା ଦେଖୁ ଦେଖୁ ସୂର୍ଯ୍ୟ ଅସ୍ତମିତ ହେଲାରୁ ସେ ପୁଣି ଅତି କ୍ଷୀଣ ଶରୀର ଧାରଣ ପୂର୍ବକ (୧) ଲଙ୍କା ନଗରୀ ମଧ୍ୟରେ ପ୍ରବେଶ କଲେ । ମାରୁତିଙ୍କର ଲଙ୍କାଭ୍ୟନ୍ତର ପ୍ରବେଶର ଅନନ୍ତର ଚନ୍ଦ୍ରୋଦୟ ହୋଇଥିବା ଲେଖାଅଛି । (୨)

ତୃତୀୟ ସର୍ଗରେ ହନୁମାନ ମଧ୍ୟମାର୍ଗରେ ଲଙ୍କାଦେବୀଙ୍କୁ ଭେଟିବା, ସେ ପୁଣି ମୁଷ୍ଟି ପ୍ରହାରରେ ତାହାଙ୍କୁ ପରାଭୂତ (୩) କଲାରୁ ସେ ନିଜର ବ୍ରହ୍ମ ଶାପର ବିବରଣ କହିଥିବା (୪) ଲେଖାଅଛି ।

ଏ ସ୍ଥଳେ ବଳରାମ ଦାସେ ହନୁମାନଙ୍କର ମୈନାକକୃତ ସତ୍‌କାର ପୂର୍ବରୁ ତାହାଙ୍କୁ ପଞ୍ଚାଶ ଯୋଜନ ଉପରି ବ୍ୟୋମ ମାର୍ଗରେ ଲଙ୍କା ନିବାସୀମାନେ ଦେଖିପାରି ଯାହା ଯାହା ବହୁଧା ଭାବନା କରିଥିବାର ଲେଖି ଅଛନ୍ତି, ତାହା ମୂଳରେ ଅନୁକ୍ତ ଥିଲେ ହେଁ ଅସମ୍ଭବ ନୁହେ । (୫) ଏହା ପରେ ଦାସଙ୍କ ରାମାୟଣରେ ମାରୁତିଙ୍କ ପ୍ରତି ମୈନାକ, ନାଗମାତା ଓ ସିଂହିକାଙ୍କର ଯେ ସଦସଦାଚରଣ, ଯଥାକ୍ରମେ ବର୍ଣ୍ଣିତ ଅଛି; କିନ୍ତୁ ମୈନାକର ଅପର ନାମ ମଣିନାଗ ବୋଲି ବ୍ୟୁତ୍ପତ୍ତିକ୍ରମ ସହ ଲିଖିତ ଅଛି । (୬) ପରଂତୁ ସୁନାଭର ନାମ ପର୍ଯ୍ୟନ୍ତ ଏଥିରେ ଦିଆଯାଇ ନାହିଁ । ବୋଧହୁଏ ଦାସ ମହାଶୟ ସୁନାଭକୁ ମଣିନାଗ କରିଥିବେ । ବଳରାମ ଦାସେ କହିଅଛନ୍ତି, ହନୁମାନ୍ ସମୁଦ୍ର ଲଂଘନ ପରେ ଲଙ୍କାସ୍ଥ

---

(୧) ସୂର୍ଯ୍ୟେ ଚାସ୍ତଂ ଗତେ [illegible] ଦେହଂ ସଂକ୍ଷିପ୍ୟ ମାରୁତିଃ । ବୃଷଦଂଶକ ମାତ୍ରଃ ସନ୍ ବଭୂବା ଦ୍ଭୁତଦର୍ଶନଃ । — [illegible] କାଳେ ହନୁମାନ୍ ତୂର୍ଣ୍ଣମୁତ୍ପ୍ଲୁତ୍ୟ ବୀର୍ଯ୍ୟବାନ୍ । ପ୍ରବିବେଶ ପୁରୀଂ ରମ୍ୟଂ [illegible] । ୨ସ.

ହନୁମାନ [illegible] ଦେଖିଥିଲେ ତେବେ [illegible] ମାତ୍ର ଭୂତ କେବଳ ଥିଲେ । [illegible] : କୃଷ୍ଣଂ ବାନରରୂପେଣ ମାମନାବୃତ୍ୟ [illegible] , ପ୍ରତିଷ୍ଠା [illegible] [illegible] ଛନ୍ତି ।

ଇତି ଅଧ୍ୟାତ୍ମ ରାମାୟଣେ ସୁ.କା. ୧ସ.

(୨) [illegible] ଚନ୍ଦ୍ରଂ [illegible] ପୋପ୍ଲୁୟମାନଂ ସରସୀବ ହଂସମ୍ ୨ସ. ୫୮ ଶ୍ଳୋ

(୩) ମୁଷ୍ଟିନାଭି ଜଘାନୈନାଂ ହନୁମାନ କ୍ରୋଧମୂର୍ଚ୍ଛିତଃ । ୩ସ. ୪୦ ଶ୍ଳୋ

(୪) [illegible] ସର୍ଗର ୪୭ ଶ୍ଳୋକଠାରୁ ସର୍ଗାନ୍ତ ପର୍ଯ୍ୟନ୍ତ ପାଠ କରନ୍ତୁ ।

(୫) ଏହି ପୁସ୍ତକରେ ୨ ପୃଷ୍ଠାରୁ ଦେଖନ୍ତୁ ।

(୬) କାୟା ବିସ୍ତାରିଣ ଉପରକୁ ଉଠିଗଲା ।

ନାଗେ ଥିବାରୁ ତ ନାମ ମଣିନାଗ ହେଲା । ୬ ପୃ.

ମଣିନାଗ ନାମ ଅଧ୍ୟାତ୍ମ ରାମାୟଣରେ ମଧ୍ୟ ଉକ୍ତ ନାହିଁ । ବୋଧହୁଏ ମଣିଯୁକ୍ତ ମୈନାକକୁ ମଣିନାଗ ବୋଲି ଲେଖିଥିଲେ । ଅନୁଲେଖକମାନେ ତାହାଙ୍କ ଲିଖିତ ମଣିନାଗ ପଦକୁ ମଣିନାମ କରି ଦେଇଅଛନ୍ତି ।

ସୁବଳ ବା ସୁବଳୟା ପର୍ବତରେ (୧) ବିଶ୍ରାମ କରିଥିଲେ । କିନ୍ତୁ ଏହା ଯଥାର୍ଥ ଜଣାଯାଏ ନାହିଁ । ମାରୁତବେଗ ମାରୁତି ଲଙ୍କାରେ ଅପରାହ୍ନ ସମୟରେ ପ୍ରବେଶ କରି (୨) ପ୍ରଦୋଷ ପର୍ଯ୍ୟନ୍ତ ଲମ୍ବଗିରି ବା ଲମ୍ବମାନ ନାମକ ପର୍ବତରେ ବିଶ୍ରାମ କରିଥିଲେ । (୩) ତତ୍ରୈବ ଅବସ୍ଥାନ କରି ପୁରତଃ ଲଙ୍କା ନଗରୀର ସୁଷମା ନୀରିକ୍ଷଣ କରିଥିଲେ । ଫେର୍ ପ୍ରତ୍ୟାବୃତ୍ତି ସମୟରେ ମଧ୍ୟ ସେ ଏହି ପର୍ବତରେ କେବଳ ବିଶ୍ରାମ କରିଥିବା ଜଣାଯାଉଅଛି । ଏକ୍ଷଣି ହନୁମାନ, ପରେ କେବଳ ସୁବେଳ ପର୍ବତରେ ସେନା [illegible] ହୋଇଥିଲା । ଯଦିଚ ସୁବେଳର ଅନ୍ୟନାମ ଲମ୍ବମାନ ହୋଇଥାଏ, ତେବେ ଦାସଙ୍କ ଲେଖା ଭ୍ରାନ୍ତ ହୋଇ ନପାରେ । ଏହାପରେ ହନୁମାନ ସାୟଂ ସମୟରେ [illegible] ରୂପରେ ଲଙ୍କା ମଧ୍ୟରେ ପ୍ରବେଶିଥିବା ଏବଂ ଲଙ୍କାଦେବୀଙ୍କୁ ପରାଭୂତ କରିଥିବା [illegible] ଦାସେ ଠିକ ମୂଳାନୁମତ ଲେଖିଛନ୍ତି, ପରନ୍ତୁ ସାବହିତ୍ୱଥ ଲଙ୍କାରୁ [illegible] ମାରୁତିଙ୍କ [illegible] ରାକ୍ଷସମାନେ ନାନା ପ୍ରକାର ଜନ୍ତୁର ଆଶଙ୍କା କରିଥିବା ଏବଂ (୪) [illegible] ବ୍ୟକ୍ତି ବିଶେଷଙ୍କ ସମକ୍ଷରେ ବିବିଧ ଆକୃତିରେ (୫) ଦେଖା ଦେଇଥିବା ମଧ୍ୟ ଯାହା ଲେଖି ଅଛନ୍ତି, ତାହା ସ୍ଥଳତଃ ସମୀଚୀନ ବୋଧ ହୁଏ ନାହିଁ; [illegible] ଏଥିଦ୍ୱାରା ତାତ୍କାଳିକ ତତ୍ରଦର୍ଶଜମାନଙ୍କର ଅସାମୟିକ ଓ ଅସ୍ଥାନିକ ବହୁ ପ୍ରକାର [illegible] ସଂଗେ ସଂଗେ ଦୌତ୍ୟ କାର୍ଯ୍ୟର ବ୍ୟାଘାତ ମଧ୍ୟ ସମ୍ଭାବନୀୟ, [illegible] ମାରୁତିଙ୍କ ଏହି କାମରୂପିତାର ଅଭିନୟ [illegible] ଜନ୍ତୁ ଓ ତାଦୃଶ [illegible] ସମକ୍ଷରେ ଅଭିନୀତ କରି ମାରୁତିଙ୍କ [illegible]-ସାଧନା-ଚାତୁର୍ଯ୍ୟକୁ [illegible]

---

(୧) ଆଗତେ ଦେଖିଲା [illegible] ପର୍ବତ
ତହିଁରେ ଯାଇ ବିଶ୍ରାମ [illegible] । [illegible]

(୨) ଅଧ୍ୟାତ୍ମ [illegible] ମତରେ ମଧ୍ୟ [illegible] ଲଙ୍କାରେ ପ୍ରବିଷ୍ଟ ହୋଇଥିଲେ । [illegible] ପ୍ରବେଶିବା [illegible] ପରିଦର୍ଶନ କରିବି - ଯଥା- [illegible] ଦୃଷ୍ଟୋହଂ ଲଙ୍କାଂ ରାବଣପାଳିତାମ୍ । ସୁ. କା. ୧ସ.

(୩) ତତଃ ସ ଲମ୍ବସ୍ୟ ଗିରେଃ ସମୃଦ୍ଧେ ବିଚିତ୍ରକୂଟେ ନିପପାତ କୂଟେ
ସକେତକୋଦ୍ଦାଳକନାରିକେଳେ ମହାଦ୍ରିକୂଟପ୍ରତିମୋ ମହାତ୍ମା ।

୧ସ. ୨୦୩ ଶ୍ଳୋ

(୪) ବାନର କି ଶୃଗାଳ ତା ତଥ୍ୟ ନ ଜାଣିଲି, ତହିଁକି ମନରେ ମୋର ସନ୍ଦେହ ରଖିଲି ।
କିଅବା କୁକୁର ଯେ ବାହାର ଗଡ଼େ ଥିଲା, ବେଳକାଳ ଜାଣିଣ ସେ ଭିତରେ ପଶିଲା ।
କିଅବା ମାର୍ଜାର ସେ ଶାକୁଅ ଅବା ବ୍ୟାଘ୍ର, ଶୁଣିଲେ ନୃପତି ଯେ ପାଇବ ବଡ଼ରାଗ । ୯ ପ.

(୫) ମନୁଷ୍ୟକୁ ଦେଖିଲେ ମାର୍ଜାରୀ ରୂପ ହୋଇ, ମାର୍ଜାରିକି ସେ କୁକୁର ପ୍ରାୟେ [illegible] ।
ଶ୍ୱାନକୁ ଶାର୍ଦ୍ଦୁଳ ଯେ ବ୍ୟାଘ୍ରକୁ ମରହଷ୍ଟା, ବନଜନ୍ତୁମାନଙ୍କୁ ଦିଶଇ ବନପତି ।
ଅସୁରଙ୍କୁ ମନୁଷ୍ୟ ଚୋରକୁ ଦଣ୍ଡଆସି । ଦୋସାଧୁକୁ ରୋରୁ ସେ ଗୋରୁକୁ ମହିଷୀ । ୧୦ ପ.

କରିଅଛନ୍ତି । ମତିମାନ୍ ବଳରାମ ଦାସେ ଏତାଦୃଶ ସ୍ୱକପୋଳକଳ୍ପିତ ଅନସଂଗତ ସୁନ୍ଦର ସୁନ୍ଦର ବିଚିତ୍ର ଦୃଶ୍ୟମାନ ନିଜ ରାମାୟଣ ଗ୍ରନ୍ଥରେ ସ୍ଥାନେ ସ୍ଥାନେ ଅଙ୍କିତ କରିଅଛନ୍ତି ।

ମୂଳଗ୍ରନ୍ଥର ଚତୁର୍ଥ ସର୍ଗଠାରୁ ଦ୍ୱାଦଶ ସର୍ଗ ପର୍ଯ୍ୟନ୍ତ ନଅଗୋଟି ସର୍ଗରେ ହନୁମାନଙ୍କର ସମଗ୍ର ଲଙ୍କା ନଗରୀସ୍ଥ ସୁନ୍ଦରମନ୍ଦିରବୃନ୍ଦ ଦର୍ଶନଚର୍ଯ୍ୟାମାନ ବର୍ଣ୍ଣିତ ଅଛି । ଏଥି ମଧ୍ୟରେ ଅନେକତ୍ର ହୃଦୟ-ଗ୍ରାହୀ ବର୍ଣ୍ଣନାମାନଙ୍କର ଅସାଧାରଣ ମନୋହର ଚିତ୍ରମାନ ନିହିତ ଅଛି । ମାରୁତି ପ୍ରଥମତଃ ସୂକ୍ଷ୍ମରୂପରେ ପ୍ରାକାରାଦି ଲଂଘନ କରି ହର୍ମ୍ୟମଣ୍ଡଳୀ ଆଉ ନଗରର ମଧ୍ୟଭାଗରେ ରାବଣଙ୍କର ମୂଳବଳ ବା ନଗରରକ୍ଷକ ସୈନ୍ୟ ସମାଜ ଦର୍ଶନ କରିଥିଲେ । ତାପରେ ସେ ରାଜାଙ୍କ ଅନ୍ତଃପୁରରେ (୧) ପ୍ରବେଶ କରି ରାକ୍ଷସକୁଟୁମ୍ବିସମବାୟର ସ୍ୱପ୍ନାବସ୍ଥାନର ଦୃଶ୍ୟ ଦେଖିଲେ । ଏ ସ୍ଥଳେ ଅସୁର ଚକ୍ରବର୍ତ୍ତୀ ରାବଣଙ୍କ ସହିତ ନିଦ୍ରିତ ସ୍ତ୍ରୀମାନଙ୍କର ସମବସ୍ଥାନର ବର୍ଣ୍ଣନା ଅତି କମନୀୟ ଅଟେ । ମାରୁତି ଏ ପର୍ଯ୍ୟନ୍ତ କୁତ୍ରାପି ସୀତାଙ୍କୁ ଦେଖି ନ ପାରି ବଡ଼ ଚିନ୍ତିତ ହୋଇଥିଲେ । (୨) କାମରୂପୀ ମାରୁତି କୁମ୍ଭକର୍ଣ୍ଣ, ବିଭୀଷଣାଦିଙ୍କ ଭବନମାନ ବିମନରେ ଦେଖି ଦେଖି (୩) ଫେର୍ ରାବଣଙ୍କ ଅନ୍ତଃପୁରରେ ପ୍ରବେଶି ତତ୍ରତ୍ୟ ମହାର୍ହସଜ୍ଜାରେ ସଜ୍ଜିତ ସୁସଜ୍ଜ - ତେଜ ଗୃହମାନ ଦେଖି ନେଲେ ।

ଅଷ୍ଟମ ସର୍ଗର ପୁଷ୍ପକାଦି ବିମାନ ବର୍ଣ୍ଣନାଗୁଡ଼ିକ ଅତୀବ ଚମତ୍କାରକାରିତାରେ ବଡ଼ ମନୋହର ହୋଇଅଛି । ଏହି କାଣ୍ଡରେ ଏତାଦୃଶ ସୁନ୍ଦର ବର୍ଣ୍ଣନାଗୁଡ଼ିକ ନିହିତ ଥିବାରୁ କେବଳ ଏହାର ନାମ ସୁନ୍ଦରାକାଣ୍ଡ ହୋଇଅଛି । ପାବନି

---

(୧) ସ ହେମ ଜାମ୍ବୁନଦଚକ୍ରବାଳଂ ମହାର୍ହମୁକ୍ତାମଣିଭୂଷିତାନ୍ତମ୍ ।
ପରାର୍ଦ୍ଧ କାଳାଗୁରୁ ଚନ୍ଦନାର୍ହଂ ସ ରାବଣାନ୍ତଃପୁରମାବିବେଶ ।
୪ ସର୍ଗ. ୨୯ ଶ୍ଳୋ

(୨) ସୀତାମପଶ୍ୟନ୍ମନୁଜେଶ୍ୱରସ୍ୟ ରାମସ୍ୟ ପତ୍ନୀଂ ବଦତାଂ ବରସ୍ୟ
ବଭୂବ ଦୁଃଖୋପହତଃ ଚିରସ୍ୟ ପ୍ଲବଙ୍ଗମୋ ମନ୍ଦ ଇବାଚିରସ୍ୟ । ୫ସ. ୨୭ ଶ୍ଳୋ

(୩) ସ ନିକାମଂ ବିମାନେଷୁ ବିଚରନ୍ କାମରୂପଧୃକ୍
ବିଚଚାର କପିର୍ଲଙ୍କାଂ ଲାଘବେନ ସମନ୍ୱିତଃ । ୬ସ. ୧ ଶ୍ଳୋ.
ସ ସଂକ୍ଷିପ୍ୟାତ୍ମନଃ କାୟଂ ପ୍ରବିଶ୍ୟାନୁପଲକ୍ଷିତମ୍ –
ଅନେକତ୍ର ଏପରି ରୂପ ଲେଖାଅଛି । କିନ୍ତୁ ଦାସଙ୍କ ଲିଖିତ ଭ୍ରମର ରୂପ ଦେଖାଯାଏ ।

ପୁଷ୍ପକାରୋହଣପୂର୍ବକ ରାବଣଙ୍କ ଅନ୍ତଃପୁରର ରମଣୀୟତର ଗୃହାବଳୀର ବର୍ଣ୍ଣନୀୟ ସୌନ୍ଦର୍ଯ୍ୟଧାରା ଦେଖି ଦେଖି ଦେବାଙ୍ଗନାସହ ସୁପ୍ତ ରାବଣଙ୍କ ଦର୍ଶନରେ, ଅପିଚ ଅନ୍ୟାନ୍ୟତ୍ର ଦୃଷ୍ଟ ପରିସୁପ୍ତା ଦେବସ୍ତ୍ରୀମାନଙ୍କ ରମଣୀୟତା ଦର୍ଶନରେ ଚିନ୍ତାନ୍ୱିତ ହୋଇ ସୀତାଙ୍କ ପ୍ରତି ଆଶଙ୍କା କଲେ । (୧) ତାପରେ ଲଙ୍କେଶ୍ୱରଙ୍କ ପାର୍ଶ୍ୱରେ ସୁଖସୁପ୍ତା ମନ୍ଦୋଦରୀଙ୍କ ଦର୍ଶନରେ ତାହାଙ୍କର ସୀତା ଭ୍ରମ ଜନ୍ମିଥିଲା । (୨) ସେ ଏହି ଭ୍ରାନ୍ତ ଧାରଣାରେ ନିତାନ୍ତ ଆନନ୍ଦିତ ମଧ ହୋଇଯାଇ ଥିଲେ । ତାପରେ ସେ ପୁଣି ଭାବିଲେ ଯେ ଏ ସୀତା ହେବେ ନାହିଁ । ରାମଙ୍କ ବିନା ସୀତା ଦେବୀ କଦାଚ ଅନ୍ୟାନୁରକ୍ତା ହେବେ ନାହିଁ । (୩) ଏହା ଭାବି ମାରୁତି ପାନ ଭୂମିରେ ସଂଚାର

---

(୧) ବଭୂବ ବୁଦ୍ଧିସ୍ତୁ ହରୀଶ୍ୱରସ୍ୟ ଯଦିଦୃଶୀ ରାଘବଧର୍ମପତ୍ନୀ
ଇମା ଯଥା ରାକ୍ଷସରାଜଭାର୍ଯ୍ୟାଃ ସୁଜାତମସ୍ୟେତି ହି ସାଧୁବୁଦ୍ଧେଃ ।
ପୁନଶ୍ଚ ସୋଽଚିନ୍ତୟଦାର୍ତ୍ତରୂପଃ ଧ୍ରୁବଂ ବିଶିଷ୍ଟା ଗୁଣତୋ ହି ସୀତା
ଅଥାୟମସ୍ୟାଂ କୃତବାନ୍ ମହାତ୍ମା ଲଙ୍କେଶ୍ୱରଃ କଷ୍ଟମନାର୍ଯ୍ୟକର୍ମ ।

୯ସ. ୭୨ । ୭୩ ଶ୍ଳୋ

ଇମା ରାକ୍ଷସରାଜଭାର୍ଯ୍ୟାଃ ଯଥା ସ୍ୱଭର୍ତ୍ତ୍ରା ବିଶିଷ୍ଟାଃ ସକଳଭୋଗଯୁକ୍ତାଶ୍ଚ ତଥା ରାଘବ ଧର୍ମପତ୍ନୀ ଇଦୃଶୀ ଯଦି ସ୍ୱଭର୍ତ୍ତ୍ରାସହିତା ଭୋଗଯୁକ୍ତା ଚ, ଯଦି ତଦାସ୍ୟ ରାବଣସ୍ୟ ସୁଜାତ ଶୋଭନଂ ଜନ୍ମେତି ସାଧୁ ବୁଦ୍ଧେଃ ପରଦ୍ରବ୍ୟବିପରସ୍ୟ ହରୀଶ୍ୱରସ୍ୟ ଦ୍ୱୟମାଧ୍ୟେତ୍ୟାଦସ୍ୟ ବୁଦ୍ଧିର୍ବଭୂବ । ଅୟଂ ରାବଣଃ ରାଘବଧର୍ମପତ୍ନୀଂ ଯଦି ପ୍ରତ୍ୟର୍ପୟେତ୍ ତଦାସ୍ୟ ଶୋଭନଂ ଜନ୍ମସ୍ୟାଦିତିବୁଦ୍ଧି ଜାତେତ୍ୟର୍ଥଃ ।

ଇତି ଗୋବିନ୍ଦରାଜୀୟେ

ଇମା ରାକ୍ଷସରାଜଭାର୍ଯ୍ୟା ଯଥା ମୟା ଦୃଷ୍ଟାଃ ଇତି ଶେଷଃ । ରାଘବ ଧର୍ମପତ୍ନୀ ଇଦୃଶୀ ମୟା ଦୃଷ୍ଟା ଯଦିତ୍ୟର୍ଥଃ, ତଦା ଅସ୍ୟ ମମ ସୁଜାତଂ, ଅସ୍ୟ ମମ ଜନ୍ମ ସଫଳମିତି ହରୀଶ୍ୱରସ୍ୟ ବୁଦ୍ଧିର୍ବଭୂବ

ଇତି ମହେଶ୍ୱରଦୀକ୍ଷିତଟୀକାୟାଂ ।

ଚିନ୍ତାନ୍ତରମାହ ପୁନଶ୍ଚେତି ସୀତାଗୁଣତଃ ପାତିବ୍ରତ୍ୟାଦି ଗୁଣତଃ ଧ୍ରୁବଂ ବିଶିଷ୍ଟାହି, ଅସ୍ୟାନେତବ୍ ବିଷୟେ । ଲଙ୍କେଶ୍ୱରଃ ଅନାର୍ଯ୍ୟକର୍ମ ଅପହରଣରୂପଂ କର୍ମ କୃତବାନ୍ କଷ୍ଟମିତି ସ ମହାତ୍ମା ହନୁମାନ୍ ଆର୍ତ୍ତରୂପଃ ସନ୍ ପୁନଶ୍ଚାଚିନ୍ତୟଦିତି ସଂବନ୍ଧଃ ।

ଇତି ମହେଶ୍ୱରଦୀକ୍ଷିତଃ ଟୀକାୟାମ୍

(୨) କପି ମନ୍ଦୋଦରୀ ତତ୍ର ଶୟାନାଂ ଚାରୁରୂପିଣୀଂ । ସ ତାଂ ଦୃଷ୍ଟ୍ୱା ମହାବାହୁଃ ଭୂଷିତାଂ ମାରୁତାତ୍ମଜଃ ।
ତର୍କୟାମାସ ସୀତେତି ରୂପ ଯୌବନ ସମ୍ପଦା । ହର୍ଷେଣ ମହତା ଯୁକ୍ତୋ ନନନ୍ଦ ହରିଯୂଥପଃ ।

୧୦ସ. ୫୨, ୫୩ ଶ୍ଳୋ

(୩) ନ ରାମେଣ ବିଯୁକ୍ତା ସା ସ୍ୱପ୍ତୁମର୍ହତୀ ଭାବିନୀ
ନ ଭୋକ୍ତୁଂ ନାପ୍ୟଲଂକର୍ତ୍ତୁଂ ନପାନମୁପସେବିତୁଂ ଇତ୍ୟାଦି ।

୧୧ସ. ୨ ଶ୍ଳୋ

କଲେ । (୧) ପରସ୍ତ୍ରୀମାନଙ୍କୁ ବିଶେଷତଃ ନିଦ୍ରାବସ୍ଥାରେ ଦେଖିବା ମୋର ଉଚିତ ନୁହେ, ଭାବି ସେ ଦୁଃଖିତ ହେଲା ପରେ, ମୁଁ ମନୋବିକାରସହ ସେମାନଙ୍କୁ ଦେଖି ନାହିଁ, (୨) ଏହି ବିଚାରରେ ସମାହିତ ହୃଦୟ ହେଲେ; ପରନ୍ତୁ ମୁଁ ଅଦ୍ୟାପି ସୀତାଙ୍କୁ ଦେଖିବାକୁ ପାଇଲି ନାହିଁ, ଏହି ଚିନ୍ତା ତାହାଙ୍କୁ ଦୋଦୁୟମାନମନସ୍କ କଲା । ତଦା ମାରୁତି ସୀତାଙ୍କ ପ୍ରତି ବିନାଶାଦି ମୂଳକ ବହୁଧା ଆଶଙ୍କା କଲେ, ସୀତାଙ୍କ ବିଯୋଗରେ ରାମଙ୍କର ଭବମାଣ ଅଶୁଭ ଆଶଙ୍କା କଲେ, ମୁଁ ଯାଇ ସେମାନଙ୍କୁ କଅଣ ବୋଲି କହିବି ? ମୋର ଏ ସମସ୍ତ ପରିଶ୍ରମ ବ୍ୟର୍ଥ ହୋଇଯାଉଅଛି, ଇତ୍ୟାକାରକ ମହତୀ ଚିନ୍ତାରେ ସେ ନିତାନ୍ତ ଚିନ୍ତିତ ହେଲେ (୩) କିନ୍ତୁ ତାପରେ ସେ ଅନିର୍ବେଦ ହିଁ କାର୍ଯ୍ୟସିଦ୍ଧିକାରକ ଭାବି (୪) ନିର୍ବେଦତ୍ୟାଗ ପୂର୍ବକ ପୁନରପି ପାନଶାଳା, ନାଟ୍ୟଶାଳା ଓ ଭୂମିଗୃହ ପ୍ରଭୃତିରେ (୫) ସୀତାନ୍ୱେଷଣରେ ଲାଗିଲେ । ହନୁମାନଙ୍କର ବିଶ୍ରାମଗିରି ପରିତ୍ୟାଗଠାରୁ ଅଶୋକାରାମ ଗମନାବଧି ଯାବତୀୟ ସୀତାନ୍ୱେଷଣ ଅନୁଷ୍ଠାନମାନ ଏବଂ ତତ୍ର ତତ୍ର ନିହିତ ବର୍ଣ୍ଣନାମାନ ଯାହା ଯାହା କି ମୂଳରେ ଅନଳ୍ପପ୍ରସର ନଅ ଗୋଟି ସର୍ଗରେ ବର୍ଣ୍ଣିତ ସେ ସବୁ ଦାସଙ୍କ ରାମାୟଣରେ ପ୍ରାୟଶଃ ଚାରିପୃଷ୍ଠା ମଧ୍ୟରେ ସ୍ୱତନ୍ତ୍ରତଃ ଅତି ସଂକ୍ଷିପ୍ତତଃ ଲେଖା ଅଛି । (୬)

ଅତ୍ରତ୍ୟ ମୌଳିକ ବର୍ଣ୍ଣନାମାନଙ୍କର ହୃଦୟଗ୍ରାହୀ ସୌନ୍ଦର୍ଯ୍ୟ ଏଥିରେ ସଂପୂର୍ଣ୍ଣତଃ ସ୍ଥାନ ପାଇପାରି ନାହିଁ । ହନୁମାନ୍ କେତେକ ସ୍ଥାନରେ ସୀତାଙ୍କୁ ଅନ୍ୱେଷଣ କଲାପରେ

---

(୧) ଅନ୍ୱେଷମିତି ନିଶ୍ଚିତ୍ୟ ପାନ ଭୂମୌ ଚଚାର ସଃ ୧୧ସ. ୪ ଶ୍ଳୋ
ଏ ସ୍ଥଳେ ପାନଭୂମି ଏବଂ ତତ୍ରତ୍ୟ ସ୍ତ୍ରୀମାନଙ୍କର ବର୍ଣ୍ଣନା ନିହିତ ଅଛି ।

(୨) ଚଗାମ ମହତି ଚିନ୍ତାଂ ଧର୍ମ ସାଧ୍ୱସ ଶଙ୍କିତଃ ଇତ୍ୟାଦି
୧୧ ସ. ୩୭ - ୪୧ ଶ୍ଳୋ

(୩) ନ ସୀତା ଦୃଶ୍ୟତେ ସାଧ୍ୱୀ ବୃଥା ଜାତୋ ମମ ଶ୍ରମଃ ।
୧୨ ସ. ୬ ଶ୍ଳୋ

(୪) ଅନିର୍ବେଦଃ ଶ୍ରିୟୋମୂଳଂ ଅନିର୍ବେଦଃ ପରଂ ସୁଖଃ
ଅନିର୍ବେଦୋହି ସତତଂ ସର୍ବାର୍ଥେଷୁ ପ୍ରବର୍ତକଃ ।
୧୨ ସ. ୧୦ ଶ୍ଳୋ

(୫) ଭୂମି ଗୃହାନ୍ ଚୈତ୍ୟ ଗୃହାନ୍ ଗୃହାତିଗୃହକାନପି
ଉତ୍ପତନ୍ ନିପତଂ ଶ୍ଚାପି ତିଷ୍ଠନ୍ ଗଚ୍ଛନ୍ ପୁନଃ ପୁନଃ । ୧୨ସ. ୧୪ ଶ୍ଳୋ
ଭୂମି ଗୃହାନ୍ – ଭୂମିବିଳ ଗୃହାନ୍
ଅତି ଗୃହକାନ୍ – ଗୃହାନତୀତ୍ୟ ଦୂରେ ସ୍ୱୈର ବିହାରାର୍ଥଂ ନିର୍ମିତାନ୍ ଗୃହାନ୍

(୬) ଛାପା ପୁସ୍ତକରେ ଦେଖିବେ ଦଶମ ପୃଷ୍ଠାଠାରୁ ତ୍ରୟୋଦଶ ପୃଷ୍ଠା ପର୍ଯ୍ୟନ୍ତ ମାତ୍ର ଏହି ସନ୍ଦର୍ଭ ଲେଖାଅଛି ।
୧୪ ପୃଷ୍ଠାରେ ହନୁମାନଙ୍କର ଅଶୋକ ବନିକା ଦର୍ଶନ ଲେଖାଅଛି ।

ମୂଷିକ ରୂପରେ ରାବଣଙ୍କ ଅନ୍ତଃପୁରରେ ପ୍ରବେଶ କରିଥିବା ଦାସେ କହନ୍ତି; (୧) କିନ୍ତୁ ମୂଳରେ ଆଞ୍ଜନେୟଙ୍କର ମୂଷିକତ୍ୱ କେଉଁଠି ଦେଖାଯାଏ ନାହିଁ । ସୁତରାଂ ବିଶ୍ଳେଷୟତ୍ୱ ସେପରି ସ୍ଥାନରେ ବହିର୍ଦୃଷ୍ଟିରେ ବ୍ୟାଘାତକ ହୋଇପାରେ, ଏହାହି ଆଶଙ୍କନୀୟ ।

ମୂଳ ଗ୍ରନ୍ଥରେ ବର୍ଣ୍ଣିତ ସୀତାଙ୍କ ଅଦର୍ଶନରେ ମାରୁତାତ୍ମଜଙ୍କର ବହୁବିଧ ଚିନ୍ତା-ସନ୍ତାନ ଆପୁଷ୍ପକାଦି (୨) ବିମାନ ବର୍ଣ୍ଣନା ସଂବିଧାନ ଏହି ରାମାୟଣରେ ଲେଖା ନାହିଁ । ଆଉ ଏକ ସ୍ଥାନରେ ଦାସେ ଲେଖି ଅଛନ୍ତି କି ହନୁମାନ କ୍ଷୁଦ୍ର ରୂପରେ ରାବଣଙ୍କ ଶୟନାଗାରକୁ ଯାଇ ତା'ପରେ ଭ୍ରମର ରୂପରେ ସ୍ତମ୍ଭ ଉପରେ ବସିଲେ । ସୀତାସନ୍ଦେହ ନିବାରଣାର୍ଥ ମନ୍ଦୋଦରୀଙ୍କ ନିକଟକୁ ଯାଇ ବାସ ଆଘ୍ରାଣ କଲେ ଇତ୍ୟାଦି । (୩) ମୂଳ ଗ୍ରନ୍ଥରେ ଏ ସ୍ଥଳେ ମାରୁତିଙ୍କର ସୂକ୍ଷ୍ମରୂପତା କେବଳ ପ୍ରକାଶିତ ଅଛି । ଦାସେ ଏହି କଥାର ଅନୁକରଣରେ ତାହାଙ୍କର ଭ୍ରମରତା ନିର୍ଦ୍ଦିଷ୍ଟ କରି ଅଛନ୍ତି । ଦାସେ ପୁଣି ଲେଖିଅଛନ୍ତି କି ରାବଣ ଶ୍ରୀରାମଚନ୍ଦ୍ରଙ୍କୁ ସାକ୍ଷାତ୍ ବିଷ୍ଣୁ ବୋଲି ଅବଗତ ଥିଲେ, ଅପିଚ ଏହା କଦାଚିତ୍ ବିସ୍ମୃତ ନ ହେବା ପାଇଁ ଭିତ୍ତିପନ୍ତିରେ ତଦୀୟ ପ୍ରାମାଣିକ ବଚନକୁ ଅଙ୍କିତ କରିଥିଲେ, ହନୁମାନ ସେହି ଶ୍ଳୋକ ପାଠକରି ବିସ୍ମିତ ହେଲେ, (୪) ମୂଳ ଗ୍ରନ୍ଥରେ ଏହା ଲେଖା ଥିବା ଦେଖାଯାଉନାହିଁ, ତଥାପି ବିଶ୍ୱାସ ହୁଏ ପୁରାଣାନ୍ତରରେ ପ୍ରତିପାଦିତ ଅଛି ।

ମୂଳ ଗ୍ରନ୍ଥର ତ୍ରୟୋଦଶ ସର୍ଗରେ ହନୁମାନଙ୍କର ମୈଥିଳୀ ଅଦର୍ଶନ ଜନିତ ବିବିଧ ଚିନ୍ତା-ମୂଳକ ବିଚାରମାନ ବର୍ଣ୍ଣିତ ଅଛି । ମାରୁତି ମାରୁତପ୍ରାୟ ସର୍ବତ୍ର ସଂଚାର କରି ମଧ୍ୟ ସୀତାଙ୍କୁ ଦେଖି ନପାରି ଭାବିବେ ଯେ ଦେବୀ କି ମାର୍ଗ ମଧ୍ୟରେ ରାବଣରଥରୁ ପରିଭ୍ରଷ୍ଟା ହେଲେ, କିମ୍ବା ରାବଣ ଦ୍ୱାରା ବିନଷ୍ଟା ହେଲେ, କିମ୍ବା ସମୁଦ୍ରରେ ପଡ଼ି ନକ୍ରାଦିରେ ଆକ୍ରାନ୍ତା ହେଲେ, ଅଥବା ରାକ୍ଷସୀମାନଙ୍କଦ୍ୱାରା ପ୍ରାତରାଶାର୍ଥ ପରିପିଷ୍ଟା ହେଲେ ! ବୈଦେହୀଙ୍କୁ ନ ପାଇଲେ ତ ରାମ ଲକ୍ଷ୍ମଣାଦି, ସୁଗ୍ରୀବାଦି କେହି ହେଲେ ପ୍ରାଣ ଧାରଣ କରିବେ ନାହିଁ । ମୁଁ ଆଉ ଏଣୁ ରାମଙ୍କ ସନ୍ନିଧାନକୁ ଫେରିବି ନାହିଁ, ମୁଁ ବାନପ୍ରସ୍ଥତା ଗ୍ରହଣରେ ଅରଣ୍ୟରେ ବୁଲିବି, କିମ୍ବା ପ୍ରାଣ ତ୍ୟାଗ କରିବି । (୫)

---

(୧) ଖୋଜି ଖୋଜି ହନୁମନ୍ତ ନ ପାଇଲା ସତୀ, ତାହାର ନଦରକୁ ସେ ଗଲାକ ତତ୍ପତି ।
ମୂଷା ରୂପଧରି ସେ ଭିତରକୁ ଗଲା, ମରଣକୁ ନ ଡରି ସେ ଅଗ୍ନିରେ ଝାସିଲା । ୧୦ ପୃ.

(୨) ଛାପା ପୁସ୍ତକରେ ଦେଖିବେ ୧୦ ଏବଂ ୧୧ ଦୁଇ ପୃଷ୍ଠାରେ ମାତ୍ର ରାବଣାନ୍ତଃପୁର ବର୍ଣ୍ଣନା ଲେଖାଅଛି ।

(୩) ଛାପା ପୁସ୍ତକରେ ୧୩ ତ୍ରୟୋଦଶ ପୃଷ୍ଠା ପଢ଼ନ୍ତୁ ।

(୪) ଛାପା ପୁସ୍ତକରେ ୧୨ ପୃଷ୍ଠା ଦେଖନ୍ତୁ ।

(୫) ବାନପ୍ରସ୍ଥୋ ଭବିଷ୍ୟାମି ହ୍ୟଦୃଷ୍ଟ୍ୱା ଜନକାତ୍ମଜାମ୍ । ୧୩ସ. ୪୧ ଶ୍ଳୋ
ଚିତିଂ କୃତ୍ୱା ପ୍ରବେକ୍ଷାମି ସମିଦ୍ଧମରଣୀସୁତଂ । ୧୩ସ. ୪୨ ଶ୍ଳୋ ଇତ୍ୟାଦି
ଅରଣୀସୁତଂ – ଆରଣ୍ୟୁପନ୍ନମ୍

ତାପରେ ପୁଣି ସେ ନିର୍ବେଦ ତ୍ୟାଗପୂର୍ବକ ଭାବିଲେ, ନା ପ୍ରାଣତ୍ୟାଗ ଦୋଷାବହ, ଅତଏବ ପ୍ରାଣରେ ଥିଲେ ସମୟେ ମଙ୍ଗଳ ଭେଟିପାରେ । (୧) ଅତଏବ ପ୍ରାଣ ଧାରଣରେ ଯତ୍ନ କରିବି । ଧ୍ୟାନଶୋକପରିତହୃଦୟ ବିପଶତ ଧୈର୍ଯ୍ୟ, ବୀରଧୈର୍ଯ୍ୟ ହନୁମାନ ଫେର୍ ଦୃଢ଼ସଂକଳ୍ପ କଲେ ଯେ ସୀତାଙ୍କୁ ଦେଖିବାଯାଏ ଲଙ୍କାଯାକ ଭ୍ରମୁଥିବି । (୨) ଏସମୟେ ଅଦୃଷ୍ଟଃପୂର୍ବା ଅଶୋକ ବନିକା ତାଙ୍କର ଦୃଷ୍ଟି ପଥାରୂଢ଼ ହେଲାରୁ ସେ ସେହିଠାକୁ ଜୀଗମିଷୁ ହେଲେ । (୩) ଏବଂ ଶ୍ରୀରାମାଦିଙ୍କୁ ଆଉ ରୁଦ୍ରେନ୍ଦ୍ରାଦି ଦେବଗଣଙ୍କୁ ନମସ୍କାର କରି ତତ୍ର ପ୍ରସ୍ଥାନ କଲେ । (୪) ମୂଳ ଚତୁର୍ଦ୍ଦଶ ସର୍ଗରେ ଅଶୋକ ବନିକାର ସୁବିସ୍ତୃତ ବର୍ଣ୍ଣନା ବିବୃତ ଅଛି । ଏଥିରେ ପୁଣି ମାରୁତି ଭାବିଛନ୍ତି ସୀତାଦେବୀ ଏହି କଦଳିବନ ପ୍ରଭୃତିକୁ କିମ୍ବା ସନ୍ଧ୍ୟା ବନ୍ଦନାର୍ଥ ନଦୀକୁ ବିଜେ କଲେ ମୁଁ ଦେଖା କରିବି । (୫) ପଞ୍ଚଦଶ ସର୍ଗରେ ଅଶୋକ ବନିକାରେ ପ୍ରବେଶିଲେ । ରାବଣଙ୍କୁ ଦେଖି ଭୟବିତ୍ରସ୍ତା ରୁଦିତା ଅନିନ୍ଦିତା ସୀତାଦେବୀ ଦୁଃଖପୂର୍ଣ୍ଣ – ସଂକୁଚିତାବସ୍ଥାରେ, ଦରବସ୍ଥାନରେ ଅବସ୍ଥିତ କଲେ । ରାବଣ ନାନାପ୍ରକାର ଚାଟୁବଚନରଚନ ଏବଂ ନିଜର ଅନ୍ୟସୁଲଭ ବୈଭବ ଓ ପ୍ରଭାବ - ପ୍ରଭବ ଆଧିପତ୍ୟ ପ୍ରକାଶନରେ ସୀତାଙ୍କ ପ୍ରତି ପ୍ରଲୋଭନର ଚେଷ୍ଟା କଲେ । ଏଥିରେ ପୁଣି ରାବଣ ଅଖର୍ବ ଗର୍ବରେ କହି ଅଛନ୍ତି କି, 'ହେ ଧାତେ ! ତୁମଙ୍କୁ ରାମ

---

(୧) ବିନାଶେ ବହବୋ ଦୋଷାଃ ଜୀବନ୍ ଭଦ୍ରାଣି ପଶ୍ୟତି ।
ତସ୍ମାନ୍ ପ୍ରାଣାନ୍ ଧରିଷ୍ୟାମି ଧ୍ରୁବୋ ଜୀବତି ସଙ୍ଗମଃ । ୧୩ସ. ୪୭ଶ୍ଳୋ.
ଜୀବତି ସଙ୍ଗମଃ–ଜୀବିତେ ସଙ୍ଗମଃ ।

(୨) ଯାବତ୍ ସୀତାଂ ନ ପଶ୍ୟାମି ରାମପତ୍ନୀଂ ଯଶସ୍ୱିନୀମ୍ ।
ତାବଦେତାଂ ପୁରୀଂ ଲଙ୍କାଂ ବିଚିନୋମି ପୁନଃ ପୁନଃ । ୧୩.ସ. ୨ ଶ୍ଳୋ.

(୩) ଅଶୋକବନିକା ଚେୟଂ ଦୃଶ୍ୟତେ ଯାମହାଦ୍ରୁମା
ଇମାମଧିଗମିଷ୍ୟାମି ନହୀୟଂ ବିଚିତା ମୟା । ୧୩ସ. ୫୬ଶ୍ଳୋ.
ଅଶୋକ ବନିକା ରାବଣ ଅନ୍ତଃପୁରର ଏକ ପ୍ରଦେଶରେ ଥିଲା, ଯଥା– ରାବଣାନ୍ତ ପୁରବରେ କ୍ରୀଡ଼ାକାନନ ମୁତ୍ତମମ୍ । ତନ୍ମଧ୍ୟେଽଶୋକବନିକା ଦିବ୍ୟପାଦପସଂକୁଳା । ଯତ୍ରାସ୍ତେ ଜାନକୀ ଘୋରରାକ୍ଷସୀଭିଃ ସୁରକ୍ଷିତା, ଅଧ୍ୟାତ୍ମ ରା.ସୁ.କା. ୧ ସର୍ଗ ।

(୪) ୧୩ ସର୍ଗ ୫୯ ଶ୍ଳୋକ ଦେଖନ୍ତୁ ।

(୫) ସନ୍ଧ୍ୟାକାଳମନାଃ ଶ୍ୟାମା ଧ୍ରୁବମେଷ୍ୟତି ଜାନକୀ ।
ନଦୀ ଚେମାଂ ଶୁଭଜଳାଂ ସନ୍ଧ୍ୟାର୍ଥେ ବରବର୍ଣ୍ଣିନୀ ୧୪.ସ. ୪୯ ଶ୍ଳୋ ।
ସନ୍ଧ୍ୟାକାଳେ ମନଃଯସ୍ୟାଃ ସା ସନ୍ଧ୍ୟାକାଳମନାଃ । ସନ୍ଧ୍ୟୋପାସନାତତ୍ପରେତ୍ୟର୍ଥଃ ସନ୍ଧ୍ୟାର୍ଥେ ଏଷ୍ୟତି ପ୍ରତିଦିନମିତି ବିଶେଷଃ । ଇତି ଗୋବିନ୍ଦରାଜଃ ।

ମୋ ହସ୍ତରୁ କଦାପି ନେଇନପାରନ୍ତି । (୧) ସୁତରାଂ ଦେଖିବାକୁ ସୁଦ୍ଧା ନ ପାରନ୍ତି । ଏହି ସର୍ଗତ୍ରୟବ୍ୟାପି ପାଠତକ ମଧ ଦାସଙ୍କ ରାମାୟଣରେ ଅତି ସଂକ୍ଷିପ୍ତତଃ ସୂଚିତ ମାତ୍ର । ତଥାପି ଏଥିରେ ମୂଳାନୁକ୍ତ ସାନୁଷଙ୍ଗିକ ଅବାନ୍ତର କଥାର ବିକାଶ ମଧ ରହିଅଛି । ଯେଉଁଦିନ ହନୁମାନ ଲଙ୍କାରେ ପ୍ରବିଷ୍ଟ ହେଲେ ସେହି ରାତ୍ରିରେ ଲଙ୍କାଦେବୀ ରାବଣଙ୍କୁ ସ୍ୱପ୍ନରେ ରାମଦୂତ ଆଗମନ ସମ୍ବାଦ ଜଣାଇଥିବା ଦାସେ ଲେଖିଛନ୍ତି । (୨) ଏହା ମୂଳ ଗ୍ରନ୍ଥରେ ଅନୁକ୍ତ ଥିଲେ ସୁଦ୍ଧା ଅସଙ୍ଗତ ଜଣାଯାଏ ନାହିଁ । ରାବଣଙ୍କ ପ୍ରତି ଦେବୀଙ୍କର ଏହି ଯେ ସଦୟତାର ପ୍ରମାଣ, ପୁରାଣାନ୍ତରରେ ମଧ ପ୍ରକାଶିତ ଥାଇପାରେ । ଦାସେ ପୁଣି ଏ ସ୍ଥଳେ ଲେଖି ଅଛନ୍ତି ଦେବୀକଥିତ ଦୁଃସ୍ୱପ୍ନ ବୃତ୍ତାନ୍ତରେ ଉତ୍ତେଜିତ କାମମୋହିତ ରାବଣ ଶଯ୍ୟାରୁ ଗାତ୍ରୋତ୍ଥାନ କରି ନଗରଭ୍ରମଣାର୍ଥ ଯାଉଅଛି, ଏହି କପଟୋକ୍ତିରେ ମନ୍ଦୋଦରିଙ୍କୁ ଭୁଲାଇ ଦେଇ ସୀତା ଦର୍ଶନାର୍ଥ ଯାଇଥିଲେ । (୩) କିନ୍ତୁ ମୂଳଗ୍ରନ୍ଥ ମତରେ ରାବଣଙ୍କର ମନ୍ଦୋଦରୀ ସଦୃଶ ପ୍ରିୟତମାଗଣ ତାହାଙ୍କ ସହ ଅଶୋକ ବନକୁ ଯାଇଥିଲେ । ଅଧ୍ୟାତ୍ମ ରାମାୟଣମତେ ମନ୍ଦୋଦରୀ ମଧ ଯାଇଥିଲେ । (୪) ମୂଳ ଏକବିଂଶ ଓ ଦ୍ୱାବିଂଶ ସର୍ଗରେ ବର୍ଣ୍ଣିତ ଚରିତ ଏହି । ସୀତା ନିରବତଃ ରାବଣଙ୍କର ଅଶିଷ୍ଟ ଦୁଷ୍ଟ ବିପ୍ରଳାପ କଥାମାନ ଶୁଣୁଥିଲେ । ପରେ ଅନ୍ତରତଃ ଗୋଟିଏ (୫) ତୃଣ ପକାଇ ଅସୁରାଧିପଙ୍କୁ

(୧) ନହି ବୈଦେହି ରାମସ୍ତ୍ୱାଂ ଦ୍ରଷ୍ଟୁଂ ବାପ୍ୟୁପଲପ୍ସ୍ୟତେ ।
ପୁରୋବଳାକୈରକ୍ଷିତୈର୍ମେଘୈର୍ଜ୍ୟୋସ୍ନାମିବାବୃତାମ୍ । ୨୦ସ.୨୭ ଶ୍ଳୋ
ନ ଚାପି ମମହସ୍ତାତ୍ ତ୍ୱାଂ ପ୍ରାପ୍ତୁମର୍ହତି ରାଘବଃ ।
ହିରଣ୍ୟକଶିପୁଃ କୀର୍ତ୍ତିମିନ୍ଦ୍ରହସ୍ତଗତାମିବ । ୨୦ସ.୨[illegible] ଶ୍ଳୋ.
ଅତ୍ର କୀର୍ତ୍ତିଶବ୍ଦେନ ଭାର୍ଯ୍ୟା ଲକ୍ଷତେ, ଅତ୍ରବୈଦଂ[illegible]ନ୍ତ୍ୟାନ୍ତଃ । ପୁରାକିଳ ହିରଣ୍ୟକଶିପୋ ଭାର୍ଯ୍ୟାଂ ହୃତ୍ୱା ସ ନାରଦମୁଖେନପ୍ରାର୍ଥିତଃ ତସ୍ମୈ ପୁନଃ ପ୍ରାଦାଦିତି ଭାଗବତେ କଥ୍ୟତେ । ତଥାଚ ଭାର୍ଯ୍ୟାହରଣମେବ କୀର୍ତ୍ତିହରଣମିତିଭାବଃ ।

(୨) ଛାପା ପୁସ୍ତକରେ ୧୫/୧୬ ପୃଷ୍ଠା ଦେଖନ୍ତୁ ।
ଅଧ୍ୟାତ୍ମ ରାମାୟଣରେ ମଧ ଏହି ସ୍ୱପ୍ନ ଉକ୍ତ ଅଛି । କିନ୍ତୁ ସେ ସ୍ୱପ୍ନ ରାମଙ୍କ [illegible] ହୋଇଛି । ଯେଉଁଦିନ ହନୁମାନ ଲଙ୍କାରେ ପ୍ରବିଷ୍ଟ ହେଲେ, ସେହି ଅର୍ଦ୍ଧ ରାତ୍ରିରେ ରାବଣ ସ୍ୱପ୍ନ ଦେଖିଥିଲେ, ସ୍ୱପ୍ନ ଭଙ୍ଗ ପରେ ସୀତାଙ୍କଠାକୁ ଆସିଥିଲେ, ଯଥା : ତସ୍ମିନ ଦିନେ ଚାର୍ଦ୍ଧ ରାତ୍ରୌ ରାବଣୋରାକ୍ଷସାଧିପଃ, ସ୍ୱପ୍ନେ ରାମେଣ ସନ୍ଦିଷ୍ଟ କଶ୍ଚିଦାଗତ୍ୟ ବାନରଃ । କାମରୂପ ଧରଃ ସୂକ୍ଷ୍ମଂ ବୃକ୍ଷାଗ୍ରସ୍ଥୋନୁ ପଶ୍ୟତି ଇତ୍ୟାଦି । ୨ ସର୍ଗ ।

(୩) ସୁନ୍ଦରାକାଣ୍ଡ ଦ୍ୱିତୀୟ ସର୍ଗ ଦେଖନ୍ତୁ ।

(୪) ତୃଣ ମନ୍ତରତଃ କୃତ୍ୱା ପ୍ରତ୍ୟୁବାଚ ଶୁଚିସ୍ମିତା
ନିବର୍ତ୍ତୟ ମନୋମତଃ, ସ୍ୱଜନେ ପ୍ରିୟତାଂ ମନଃ । ୨୧ସ. ୩ଶ୍ଳୋ.

(୫) ରାବଣସ୍ୟ ସାକ୍ଷାତ୍‌ସମ୍ଭାଷଣାନର୍ହତ୍ୱାତ୍ ତୃଣ ବ୍ୟବଧାନକରଣଂ । ଇତି ଗୋବିନ୍ଦରାଜଃ ତୃଣମନ୍ତରତଃ କୃତ୍ୱେତି-ପରପୁରୁଷମୁଖଂ ନିରୀକ୍ଷ୍ୟ ବାର୍ତ୍ତା ନକର୍ତ୍ତବ୍ୟେତି ମର୍ଯ୍ୟାଦସବା,ତୃଣବତ୍ ଅଲକ୍ଷୀକୃତ୍ୟ ବା, ସ୍ୱାମିନାତୃଣମାଦାୟ କାକାସୁର ନିରାସବତ୍ ଅନେନ ତୃଣେନୈବତ୍ ନିରାସଃ କାର୍ଯ୍ୟ ଇତିବା, ଆସନସ୍ୟାପ୍ୟ ବ୍ୟବଧାନେନ ଭାବ୍ୟମିତିବୁଦ୍ଧ୍ୟାବା, ପଶୁସମାନସ୍ୟ ତବ ଇଦମେବ ଭୋଗ୍ୟଂ ଇତିବୁଦ୍ଧ୍ୟ ବା ତୃଣଂ ମଧ୍ୟେସ୍ଥାପୟିତ୍ୱା । ଇତି ମହେଶ୍ୱର ଦୀକ୍ଷିତଃ ।

କହିଲେ, ତୃତୀୟ ଉନ୍ମତ୍ତ ମନକୁ ଏହି ଦୁଷ୍ଟ, ଅଶିଷ୍ଟାଚରଣରୁ ନିବୃତ୍ତ କର, ସ୍ୱପ୍ରିୟାପ୍ରତି ମନୋଯୋଗ କର । ଦେବୀ ଏତାଦୃଶ କେତେକ ସଦୁପଦେଶ କଥା କହିଲା ପରେ ରାବଣଙ୍କୁ ସମ୍ମୁଖସ୍ଥ ରଖିବା ଅବିଧେୟ ଭାବି ପିଠି କିରି ବୁଲିପଡ଼ି ପୁଣି ବୋଇଲେ (୧); 'ହେ ଲଙ୍କାଧିପ ! ପରସ୍ତ୍ରୀଆସକ୍ତି ସମୟେ ତୋତେ ବିନଷ୍ଟ କରିବ । ସତୀ ପରଭାର୍ଯ୍ୟା ପ୍ରତି ମନ ଚଳାଅ ନାହିଁ, ସାଧୁ ଚେଷ୍ଟା କର । ତୋ ନିକଟରେ ସାଧୁ ଲୋକ କେହି ନାହାନ୍ତି କି ? ଅଥବା ତୁ ସାଧୁ ଉପଦେଶ ଗ୍ରହଣ କରୁନାହିଁ କି ?' ସେ ଗଠ୍ୟା କାରକ ଅନେକଗୁଡ଼ିଏ କଥା ପ୍ରକାଶ କଲା ପରେ ଫେର ବୋଇଲେ ଯେ 'ହେ ରାବଣ ! ଯଦି ତୋର ମଙ୍ଗଳ କାମନା ଥାଏ ମୋତେ ଶ୍ରୀରାମଙ୍କ ଚରଣରେ ସମର୍ପଣ କରି ଶରଣପ୍ରାର୍ଥୀ ହୁଅ, ତା ନ ହେଲେ ଅଚିରେ ରାମଙ୍କ × × ×' ବଚନମାନ ଶ୍ରବଣ କରି କ୍ରୁଦ୍ଧ ହେବେ, ରାମଙ୍କ ଆନୟନାର୍ଥ ଦୁଇ ମାସ ମାତ୍ର ଅବଧିଦେଲେ । ଫେର୍ ସେ କହିଲେ, 'ଏହି ମୁଦତ ଅବଧି ମଧ୍ୟରେ ରାମ ଯଦି ତୋତେ ନ ନିଅନ୍ତି, ମୋତେ ଯଦି ତୁ ନଭଜିବୁ, ତେବେ ପ୍ରାତରାଶାର୍ଥ ଉପଯୁକ୍ତ ହେବୁ ।' (୨)

ଦାସଙ୍କ ରାମାୟଣରେ ଯେପରି ରାବଣ ସୀତାଙ୍କ ନିଧନାର୍ଥ ଖଡ୍ଗହସ୍ତରେ ଉଠିବା ଆଉ ତ୍ରିଜଟାଙ୍କ ପ୍ରବୋଧନରେ କ୍ଷାନ୍ତ ହେବାର କଥା ଲେଖା ଅଛି, ମୂଳଗ୍ରନ୍ଥରେ ସେପରି ନୁହେଁ । କିନ୍ତୁ ଏଥିରେ ରାବଣଙ୍କ ଉକ୍ତିରେ ଲେଖା ଅଛି କି, 'ହେ ଜାନକି ! ତୁମେ ଯେପରି ପରୁଷ କଥାମାନ ମୋତେ କହୁଅଛ, ସେଥିପାଇଁ ତୁମକୁ ବଧ କରିବା ଉଚିତ ।' (୩)

ଏହାପରେ ସୀତା ରାବଣଙ୍କୁ ବହୁବିଧ ଆକ୍ଷେପ କରି ଅଛନ୍ତି । (୪) ଏଥିରେ ରାବଣ ସୀତାଙ୍କ ହନନାର୍ଥ ଧାଉଁନାହାନ୍ତି, କିନ୍ତୁ କହୁଛନ୍ତି 'ତୋତେ ମୁଁ ମାରିବି ।' ପରନ୍ତୁ ଅଧ୍ୟାତ୍ମ ରାମାୟଣରେ ରାବଣ ସୀତାଙ୍କୁ ହନନାର୍ଥ ଉଠିବା ଲେଖାଅଛି (୫)

---

(୧) ରାକ୍ଷସଂ ପୃଷ୍ଠତଃ କୃତ୍ୱା ଭୂୟୋ ବଚନମବ୍ରବୀତ୍ – ୨୧ ସ. ୬ ଶ୍ଳୋ.
ଅଧ୍ୟାତ୍ମ ରାମାୟଣରେ ମଧ୍ୟ ଏହା ହିଁ ଉକ୍ତ ଅଛି, ଯଥା : ଜଗାଦଧୋମୁଖୀଭୂତ୍ୱା ନିଧାୟ ତୃଣମନ୍ତରେ – ସୁ.କା. ୨ ସ. ।

(୨) ଦ୍ୱୌମାସୌ ରକ୍ଷିତବ୍ୟୌ ମେ ଯେ ବଧିସ୍ତେ ମୟାଽକୃତଃ, ତତଃ ଶୟନମାରୋହ ମମ ତ୍ୱଂ ବରବର୍ଣିନୀ, ଊର୍ଦ୍ଧଂ ଦ୍ୱାଭ୍ୟାଂ ତୁ ୨ ମାସାଭ୍ୟାଂ ଭର୍ତାରଂ ମାମନିଚ୍ଛତୀଂ । ମମ ତ୍ୱାଂ ପ୍ରାତରାଶାର୍ଥମାରଭନ୍ତେ ମହାନସେ । ୨୨ସ. ୮୯ ଶ୍ଳୋ.

(୩) ପରୁଷାଣି ବାକ୍ୟାନି ଯାନି ଯାନି ବ୍ରବୀଷିମାଂ, ତେଷୁ ତେଷୁ ବଧୋଯୁକ୍ତଃ ତବ ମୈଥିଳି ! ଦାରୁଣଃ । ୨୨ସ. ୬ ଶ୍ଳୋ.

(୪) ରାକ୍ଷସାଧମ ରାମସ୍ୟ ଭାର୍ଯ୍ୟାମମିତତେଜସଃ, ଉକ୍ତବାନସି ଯଦ୍ ପାପଂ କ୍ୱ ଗତଃ ତସ୍ୟ ମୋକ୍ଷସେ, × × × କଥଂ ବ୍ୟାହରତୋ ମାଂ ତେ ନ ଜିହ୍ୱା ପାପ ଶୀର୍ଯ୍ୟତି ଇତ୍ୟାଦି । ୨୨ସ.୧୪-୨୨ଶ୍ଳୋ.

(୫) ଶ୍ରୁତ୍ୱା ରକ୍ଷପତିଃ କ୍ରୁଦ୍ଧୋ ଜାନକ୍ୟାଃ ପରୁଷାକ୍ଷରମ୍
ବାକ୍ୟଂ କ୍ରୋଧସମାବିଷ୍ଟଃ ଖଡ୍ଗମୁଦ୍ୟମ୍ୟ ସତ୍ୱରଃ, ହନ୍ତୁଂ ଜନକରାଜସ୍ୟ ତନୟାଂତାମ୍ରଲୋଚନଃ ମନ୍ଦୋଦରୀ ନିବାର୍ଯ୍ୟାହ ପତିଂ, ପତିହିତେରତା ଇତ୍ୟାଦି । ସୁ.କା. ୨ବ.

ସେ ତାହାଙ୍କୁ ଏହା କହି ସେଥି ନିମନ୍ତେ ଘୋରରୂପିଣୀ ରାକ୍ଷସରମଣୀମାନଙ୍କୁ ଆଦେଶ ଦେଇ ଅଛନ୍ତି (୧)। ରାବଣ ଜାନକୀଙ୍କ ପ୍ରତି ତର୍ଜନ ଗର୍ଜନ କରୁଅଛନ୍ତି, ଏ ସମୟରେ ତଦୀୟ ଅନ୍ୟତମାପ୍ରିୟତମା ଧାନ୍ୟମାଳିନୀ ଆସି ରାବଣଙ୍କୁ ଆଲିଙ୍ଗନ ପ୍ରଦାନ ପୂର୍ବକ ପ୍ରବୋଧ କରିନେଲେ। (୨) ଏସବୁ ଦାସଙ୍କ ରାମାୟଣରେ ସୂଚନା କ୍ରମରେ ଅତି ସଂକ୍ଷିପ୍ତ। ରାବଣ ଓ ସୀତାଙ୍କର ଉକ୍ତି ପ୍ରତ୍ୟୁକ୍ତିର ଯେ ଯଥାତଥ୍ୟ ତାହା ପାଠକେ ଏଥିରୁ ପାଇ ପାରିବେ ନାହିଁ। ରାବଣପ୍ରିୟା ଧାନ୍ୟମାଳିନୀର କଥା ଏଥିରେ ଆଦୌ ଲେଖା ନାହିଁ। (୩)

ରାବଣଦତ୍ତ ଦୁଇ ମାସ ଅବଧିର କଥା ଠିକ୍ ଲେଖାଅଛି। ବଳରାମ ଦାସେ ଏପରି ଅନେକ ସ୍ଥଳରେ ଚରିତମାନଙ୍କର ସାର ଅଂଶତକ କେବଳ ସଂକ୍ଷେପତଃ ପ୍ରକାଶିତ କରିଅଛନ୍ତି। ଏହି କଥାନକର ଅବସାନରେ ପୁଣି ଦାସେ କହି ଅଛନ୍ତି କି ବ୍ରହ୍ମାଦି ଦେବତାମାନେ ଏବଂ ନାରଦାଦି ଋଷିମାନେ ପାହାନ୍ତି ସମୟେ ଲଙ୍କାକୁ ଆସି ନିଜ ନିଜ ନିର୍ଦ୍ଦିଷ୍ଟ କାର୍ଯ୍ୟରେ ରାବଣଙ୍କୁ ଖଟିଲେ। (୪) ରାବଣ ଅସୁସ୍ଥ ଓ ସୁପ୍ତ ଥିବାରୁ ଦ୍ୱାରିମାନେ ସେମାନଙ୍କୁ ନିରବତଃ ସାବଧାନ ରହିବା ପାଇଁ ସଂଯତ କରାଉଥିଲେ। ଏହି କଥା ମୂଳଗ୍ରନ୍ଥରେ ଲେଖା ନାହିଁ; ତଥାପି ଉପେନ୍ଦ୍ର ଭଞ୍ଜ ପ୍ରଭୃତି ଓଡ଼ିଆର ମହାକବିମାନେ ଦାସଙ୍କ ପ୍ରଦର୍ଶିତ ଏହି କ୍ରମକୁ ଅନୁସରି ଅଛନ୍ତି। (୫)

ଅତଃପର ମୂଳଗ୍ରନ୍ଥରେ ତ୍ରୟୋବିଂଶ ସର୍ଗଠାରୁ ଅଷ୍ଟାବିଂଶ ସର୍ଗ ପର୍ଯ୍ୟନ୍ତ ସର୍ଗଷଟ୍କରେ ସୀତାଙ୍କ ପ୍ରତି ରାକ୍ଷସୀମାନଙ୍କର ତର୍ଜନା ଏବଂ ଜାନକୀଙ୍କର ଦୁଃଖ ବିଳାପର କ୍ରମ ସବିସ୍ତର ବର୍ଣ୍ଣିତ ଅଛି। ରାବଣଙ୍କର ପ୍ରତ୍ୟାବୃତ୍ତି ପରେ ତଦାଦିଷ୍ଟ ଦୁଷ୍ଟପ୍ରବୃତ୍ତି ରାକ୍ଷସ ସ୍ତ୍ରୀମାନେ ସୀତାଙ୍କୁ ବହୁ ପରୁଷ ଦାରୁଣ ପରେ ନାନା ପ୍ରକାର ପ୍ରଲୋଭନ ଦେଖାଉଥିଲେ। ସୀତାଦେବୀ ଅସହ୍ୟ ଦୁଃଖ ଶୋକ ସହ କହିଲେ, 'ତୁମେମାନେ ମୋତେ

(୧) ୨୨ ସ. ୨ଟି. ୩୦, ୩୧ ଶ୍ଳୋକ ଦେଖନ୍ତୁ।

(୨) ଉପଗମ୍ୟ ତତଃ କ୍ଷିପ୍ରଂ ରାକ୍ଷସୀ ଧାନ୍ୟମାଳିନୀ, ପରିଷ୍ୱଜ୍ୟ ଦଶଗ୍ରୀବମିଦଂ ବଚନମବ୍ରବୀତ୍। ମୟା କ୍ରୀଡ଼ ମହାରାଜ ସୀତୟା କିଂ ତବାନୟା। ବିବର୍ଣ୍ଣୟା କୃପଣୟା ମାନୁଷ୍ୟା ରାକ୍ଷସେଶ୍ୱର ଇତ୍ୟାଦି ୨୨ସ. ୪୦, ୪୧ ଶ୍ଳୋ.
ଅଧ୍ୟାତ୍ମ ରାମାୟଣରେ ନିଜେ ମନ୍ଦୋଦରୀ ରାବଣଙ୍କୁ ଏ ସ୍ଥଳେ ପ୍ରବୋଧିତ କରିଅଛନ୍ତି।
ସୁ.କା. ୨ ସର୍ଗ ଦେଖନ୍ତୁ।

(୩) ଏହି ସନ୍ଦର୍ଭରେ ଦାସେ ବାଲ୍ମିକୀ ରାମାୟଣ ଆଉ ଅଧ୍ୟାତ୍ମ ରାମାୟଣ ଉଭୟକୁ ଆଶ୍ରୟ କରି ଅଛନ୍ତି। ତଥାପି ଉଭୟ ଆଂଶିକ ବୈଷମ୍ୟ ନିହିତ କରିଅଛନ୍ତି। ଏ ସ୍ଥଳେ ବାଲ୍ମିକୀ ରାମାୟଣରେ ରାବଣଙ୍କୁ ଧାନ୍ୟମାଳିନୀ ଯାହା ପ୍ରବୋଧିତ କରିଛନ୍ତି, ତାହା ଅଧ୍ୟାତ୍ମରେ ମନ୍ଦୋଦରୀ ଏବଂ ଦାସଙ୍କ ରାମାୟଣରେ ତ୍ରିଜଟା କରି ଅଛନ୍ତି।

(୪) ଛାପା ପୁସ୍ତକରେ ସପ୍ତଦଶ ପୃଷ୍ଠା ଦେଖନ୍ତୁ।

(୫) ବୈଦେହୀଶ ବିଳାସ।

ଖାଇବ ତ ଖାଅ ବୃଥା ଏପରି କଷ୍ଟ ଦିଅ ନାହିଁ । (୧) ତୁମମାନଙ୍କର କଥା ମୁଁ କଦାଚ ରକ୍ଷା କରିବି ନାହିଁ, ଇତ୍ୟାଦି । ଫେର୍ ସେହି ନୃଶଂସ ପ୍ରକୃତି ବିକୃତାକୃତି ରାକ୍ଷସୀମାନେ ବିଭତ୍ସତା ପ୍ରକାଶ ପୂର୍ବକ ସୀତାଙ୍କୁ ତର୍ଜନା କଲେ । ସୀତା ଦେବୀ ଅମିତ ଦୁଃଖ ପ୍ରକାଶ ପୂର୍ବକ କାନ୍ଦି ବସିଲେ । (୨)

ମହାବୀର ହନୁମାନ ଏସବୁ ଶୁଣୁଅଛନ୍ତି, ଦେଖୁଅଛନ୍ତି । ସୀତା ତଦା ରାମାଦିଙ୍କୁ ସ୍ମରଣ କରି ବିଳାପ କଲେ, ପ୍ରାଣତ୍ୟାଗକୁ ଶ୍ରେୟସ୍କର ମଣିଲେ । ସୀତା ଦେବୀ ଏତାଦୃଶ ବହୁ ଶୋକ ବିଳାପ କଲାପରେ ରାକ୍ଷସୀମାନଙ୍କୁ ଫେର କହିଲେ ଯେ, ମୁଁ ଛିନ୍ନଭିନ୍ନ, ବିଦୀର୍ଣ୍ଣ ହେଲେ ସୁଦ୍ଧା ରାବଣକୁ ବାମପାଦରେ (୩) ସୁଦ୍ଧା ସ୍ପର୍ଶ କରିବି ନାହିଁ । ଶ୍ରୀ ରାମଚନ୍ଦ୍ର ମୋର ଅତ୍ରତ୍ୟ ଅବସ୍ଥାନ ଜାଣିଥିଲେ, ରାବଣକୁ ସବଂଶେ ନିପାତ କରି ଥାଆନ୍ତେ । ଏସବୁ ଶୁଣି ସୁଦ୍ଧା କେତେକ ରାକ୍ଷସୀ ଫେର୍ ସୀତାଙ୍କ ତର୍ଜନରେ ଲାଗିଲେ, କେତେକ ପୁଣି ଏହି ସମ୍ବାଦ ଜଣାଇବାପାଇଁ ରାବଣଙ୍କ ଛାମୁକୁ ଗଲେ । (୪)

ତଦା ବୃଦ୍ଧା ତ୍ରିଜଟା ରାକ୍ଷସୀମାନଙ୍କୁ ଭର୍ତ୍ସନା ପୂର୍ବକ ନିବାରଣ କରି ନିଜର ସ୍ୱପ୍ନ ବୃତ୍ତାନ୍ତ ଜଣାଇଲେ । (୫)

ଏହି ସ୍ୱପ୍ନ ବୃତ୍ତାନ୍ତର ପଞ୍ଚପ୍ରକାର ସାରଅଂଶତକ : ଏହି ଶ୍ରୀରାମଚନ୍ଦ୍ର ରାବଣ ନିଧନପୂର୍ବକ ଦନ୍ତୀଦନ୍ତମୟୀ ଶିବିକାରେ ସୀତାଲକ୍ଷ୍ମଣାଦିଙ୍କ ସହ ମହାମଙ୍ଗଳ ସମାରୋହରେ ଅଯୋଧ୍ୟାକୁ ପ୍ରସ୍ଥାନ କଲେ । (୬) ଶ୍ରୀରାମ ପୁଣି ସ୍ୱୟଂ ବିଷ୍ଣୁ ସ୍ୱରୂପରେ ବ୍ରହ୍ମାଦି ଦେବତାମାନଙ୍କଦ୍ୱାରା ପରିଗୀୟମାନ ପବିତ୍ର ଗାଥା ଓ ପରିସ୍ତୁତ ହୋଇ ଅଭିଷିକ୍ତ ହେଲେ । (୭) ରାବଣ କଦର୍ଯ୍ୟ ଓ ସଂକ୍ଲିଷ୍ଟ ରୂପରେ କୁମ୍ଭକର୍ଣ୍ଣାଦି ସହ ଯମାଳୟକୁ ପ୍ରସ୍ଥାନ କଲେ । (୮)

---

(୧) କାମଂ ଖାଦତ ମାଂ ସର୍ବାନ୍ କରିଷ୍ୟାମି ବୋ ବଚଃ ।
ଦୀନୋ ବା ରାଜ୍ୟ ହିନୋ ବା ଯୋ ମେ ଭର୍ତା ସ ମେ ଗୁରୁଃ ।
ତଂ ନିତ୍ୟମନୁରକ୍ତାସ୍ମି ଯଥା ସୂର୍ଯ୍ୟଂ ସୁବର୍ଚ୍ଚଳା । ୨୪.ସ.୮.୯.ଶ୍ଳୋ

(୨) ରୁରୋଦ ଜନକାତ୍ମଜା....... । ୨୫ସ.୧ ଶ୍ଳୋ. ।

(୩) ଛଦ୍ୟତାଂ ଭିଦ୍ୟତାବାପି ଶରୀରଂ ବିସୃଜାମ୍ୟହମ୍ ।
ଚରଣେନାପି ସବ୍ୟେନ ନସ୍ପୃଶେୟଂ ନିଶାଚରଃ । ଇତ୍ୟାଦି । ୨୬ସ.

(୪) କାଶ୍ଚିଦ୍ ଜଗ୍ମୁସ୍ତଦାଖ୍ୟାତୁଂ ରାବଣସ୍ୟ ଦୁରାତ୍ମନଃ । ୨୭ସ. ୧ଶ୍ଳୋ

(୫) ସୀତାଂ ତାଭିରନାର୍ଯାଭିଃ ଦୃଷ୍ଟ୍ୱା ସଂତର୍ଜିତା ତଦା ।
ରାକ୍ଷସୀ ତ୍ରିଜଟା ବୃଦ୍ଧା ପ୍ରବୁଦ୍ଧା ବାକ୍ୟମବ୍ରବୀତ୍ । ୨୭ସ. ୪ଶ୍ଳୋ.

(୬) ୨୭ ସ.୯ ଶ୍ଳୋକଠାରୁ ୨୪ ଶ୍ଳୋକ ପର୍ଯ୍ୟନ୍ତ ଦେଖନ୍ତୁ ।

(୭) ୨୭ସ.୨୫ ଶ୍ଳୋକଠାରୁ ୩୪ ଶ୍ଳୋକ ପର୍ଯ୍ୟନ୍ତ ଦେଖନ୍ତୁ ।

(୮) ୨୭ ସ. ୩୫ ଶ୍ଳୋକଠାରୁ ୪୩ ଶ୍ଳୋକ ପର୍ଯ୍ୟନ୍ତ ଦେଖନ୍ତୁ ।

ଶ୍ୱେତ ଛତ୍ର- ବିଭୂଷଣ ବିଭୀଷଣ ଗଜାରୋହଣ ପୂର୍ବକ ମହୋତ୍ସବାରମ୍ଭ କଲେ । (୧) ଏବଂ ଲଙ୍କାପୁରି ହନୁମାନଙ୍କଦ୍ୱାରା ପରିଦଗ୍ଧା ଓ ପରିକ୍ଳିଷ୍ଟ ହୋଇଥିଲା । (୨)

ତ୍ରିଜଟା ନିଜର ଏହି ସ୍ୱପ୍ନବୃତାନ୍ତ ଜଣାଇ ଶୁଭୋଦର୍କପାଇଁ ସୀତା ଦେବୀଙ୍କର ସେବାଶୁଶ୍ରୂଷା କରଣାର୍ଥ ରାକ୍ଷସୀମାନଙ୍କୁ ଉପଦେଶ ଦେଇଅଛନ୍ତି । ଅଷ୍ଟାବିଂଶତି ସର୍ଗରେ ଜାନକୀ ଦେବୀ ରାମବିରହିତଜୀବିତଆତ୍ମାରପ୍ରତି ଧିକ୍କାର କରି ରାମାଦିଙ୍କୁ ସ୍ମରଣ ପୂର୍ବକ ବହୁଧା ବିଳାପ କରିଅଛନ୍ତି । (୩) ଦାସଙ୍କ ରାମାୟଣରେ ସୀତାଦେବୀଙ୍କର ପ୍ରଚୁର ବିଳପନାବଳିରେ ପରିସ୍ଫୁଟ ହୃଦ୍‌ଗତ ଭାବରାଶିର ଅବିକଳ ଅକ୍ଷୁର୍ଣ୍ଣ ଚିତ୍ରଣ ଦେଖିବାକୁ ମିଳେ ନାହିଁ । ତଥାପି କୁହାଯାଇପାରେ ଯେ କେତେକ ସ୍ଥଳରେ ଅଯତ୍ନଲବ୍ଧ ମୌଳିକ ଭାବ ନିହିତ ଅଛି । ସମଧିକ ସ୍ଥଳରେ ଦାସ ମହାଶୟ ସ୍ୱକୀୟ ଅଭିପ୍ରାୟର ଅନୁଗତ ବଚନରେ କେବଳ ସଂକ୍ଷିପ୍ତତଃ ଚରିତକୁ ଚିତ୍ରିତ କରି ଅଛନ୍ତି । ପାଠକ ! ପରିଶୀଳନ କରି ଦେଖିନିଅନ୍ତୁ । ଦାସେ ତ୍ରିଜଟାଙ୍କ ସ୍ୱପ୍ନବୃତ୍ତାନ୍ତକୁ ମଧ ସଂକ୍ଷିପ୍ତ କରି ସୁଦ୍ଧା ମୌଳିକ ଭାବର ସମ୍ୱଳିତ ରଖିନାହାନ୍ତି, ଏହା ସୁଦ୍ଧା ତାହାଙ୍କ ସ୍ୱତନ୍ତ୍ର ଚିତ୍ରଣର ଚିତ୍ର । (୪)

ଅତଃପର ଏକୋନତ୍ରିଂଶ ସର୍ଗରେ ପରିଦୁଃଖିତା ସୀତାଦେବୀଙ୍କର ପରିଦୃଶ୍ୟମାନ ଶୁଭୋଦର୍କ ସୂଚକ ଶକୁନମାନ ବର୍ଣ୍ଣିତ ଅଛି । ଏହି ଶୁଭବିସ୍ତୃତି ଦାସଙ୍କ ରାମାୟଣରେ ନାହିଁ କହିଲେ ହେଲା । ଏହାପରେ ତ୍ରିଂଶ ସର୍ଗଠାରୁ ଚତ୍ୱାରିଂଶ ସର୍ଗାନ୍ତ ପର୍ଯ୍ୟନ୍ତ ଏକାଦଶ ଗୋଟି ସର୍ଗରେ ସୀତାଦେବୀ ଏବଂ ମାରୁତିଙ୍କର ପରିଚୟାତ୍ମକ ବହୁବିଧ ସମ୍ବାଦମୂଳକ ସାଙ୍ଗୋପାଙ୍ଗ ଚରିତମାନ ସୁବିସ୍ତୃତ ବର୍ଣ୍ଣିତ ଅଛି । (୫)

ଏହି ଯାବତୀୟ କଥାନକର ଅନୁବାଦନ ଦାସଙ୍କ ରାମାୟଣରେ ଛାପା ପୁସ୍ତକରେ ବିଂଶ ପୃଷ୍ଠାଠାରୁ ତ୍ରିଂଶ ପୃଷ୍ଠା ପର୍ଯ୍ୟନ୍ତ ପ୍ରାୟ ଦଶ ଗୋଟି ପୃଷ୍ଠାରେ ଯେ କୌଣସିମତେ ସଂକ୍ଷିପ୍ତତଃ ଲେଖାଅଛି । ହନୁମାନ ପ୍ରଥମତଃ ଭାବିଲେ ଯେ ରାକ୍ଷସିମାନଙ୍କ ମଧରେ

---

(୧) ୨୭ସ ୪୪ ଶ୍ଳୋକଠାରୁ ୪୭ ଶ୍ଳୋକ ପର୍ଯ୍ୟନ୍ତ ଦେଖନ୍ତୁ ।

(୨) ୨୭ସ. ୪୮ ଶ୍ଳୋକଠାରୁ ଦେଖି ନିଅନ୍ତୁ ।
ଅଧ୍ୟାତ୍ମ ରାମାୟଣରେ ମଧ ତ୍ରିଜଟାଙ୍କ ସ୍ୱପ୍ନ ବୃତ୍ତାନ୍ତ ଏତାଦୃଶ କେବଳ, ସୁନ୍ଦରାକାଣ୍ଡ ଦ୍ୱିତୀୟ ସର୍ଗ ଦେଖନ୍ତୁ ।

(୩) ଇତୀବ ଦେବୀ ବହୁଧା ବିଳପ୍ୟ ସର୍ବାତ୍ମନା ରାମମନୁସ୍ମରନ୍ତି ।
ପ୍ରବେପମାନା ପରିଶୁଷ୍କବକ୍ତ୍ରା ନଗୋତ୍ତମଂ ପୁଷ୍ପିତମାସସାଦ ୨୮ସ. ୧୭ ଶ୍ଳୋ.

(୪) ଛାପା ପୁସ୍ତକରେ ୧୯ ଏକୋନବିଂଶ ପୃଷ୍ଠା ପଢ଼ନ୍ତୁ ।

(୫) ହନୁମାନ ସୀତାଦେବୀଙ୍କୁ ରାତ୍ରିଶେଷ ଯାମରେ କେବଳ ଭେଟିଥିଲେ । କାରଣ ତା ପୂର୍ବରୁ ସୀତା ଭାବିଛନ୍ତି କି : ପ୍ରଭାତେ ଭକ୍ଷୟିଷ୍ୟନ୍ତି ରାକ୍ଷସ୍ୟୋମାଂ ନ ଶଂସୟଃ, ଇଦାନୀମେବ ମରଣଂ କେନୋପାଡେୟନ ଭବେତ୍ । ଇତି ଅଧ୍ୟାତ୍ମ ରାମାୟଣେ ସୁ.ବା.୨ ।

ପ୍ରତ୍ୟକ୍ଷତଃ ସୀତାଦେବୀଙ୍କସହ କଥା ହେବା ଉଚିତ ନୁହେଁ । ସେ ଏମାନଙ୍କ ନିକଟରୁ ଅନ୍ତର ହେଲେ ସମ୍ବାଦ ଜଣାଇ ସମାଶ୍ୱାସନାଦି ଦେବି । (୧) ସେ ପୁଣି ଆହୁରି ଭାବିଲେ ଯେ ମୁଁ ମନୁଷ୍ୟ ଶରୀରରେ ସଂସ୍କୃତ ଭାଷାରେ କହିବି । ପରନ୍ତୁ ମୁଁ ଦ୍ୱିଜାତି ସମ ସଂସ୍କୃତ ଭାଷାରେ କଥା କହିଲେ ସୀତା ମୋତେ ରାବଣ ଭାବି ଶଙ୍କା କରିବେ ପରା ! ତେବେ ବାନର ଶରୀରରେ ବିଶେଷ ଅଭିଭାଷଣ କିପରି କରିବି ? (୨) ଯାହାହେଉ ମାନୁଷ ବାକ୍ୟ କହିବି । ଜାନକୀ ତ ଚକିତ ଅଛନ୍ତି । ପୂର୍ବରୁ ରାକ୍ଷସୀମାନଙ୍କ ହେତୁରୁ ପରିତ୍ରସ୍ତା ଅଛନ୍ତି । ଏବେ ମଧ ମୋ କଥାରେ ତ୍ରାସ ପାଇବେ ପରା ! ରାକ୍ଷସ କିମ୍ବା ରାକ୍ଷସୀମାନେ ଏକଥା ଜାଣିଲେ ମୋତେ ଆକ୍ରମଣ କରିବେ, କଳହ ଜନ୍ମିବ, ଅତଏବ ଗୁପ୍ତ ଭାବରେ ରାମଙ୍କ ଗୁଣାନୁବର୍ଣ୍ଣନ କରିବି । ସୀତାଦେବୀ ମୋତେ ଦେଖି ଯେବେ ପ୍ରଶ୍ନ କରିବେ ତେବେ ବ୍ୟକ୍ତତଃ ସମସ୍ତ କଥା ଜଣାଇବି । ତଦା ମାରୁତି ରାମଙ୍କ ଜନ୍ମଠାରୁ ସୀତାଙ୍କ ଅନ୍ୱେଷଣ ପର୍ଯ୍ୟନ୍ତକ ଚରିତମାନ ସଂକ୍ଷେପତଃ ପାଠ କଲେ । ଏସ୍ଥଳରେ ଦାସେ ହନୁମାନଙ୍କର ଭାଷା ସମ୍ବନ୍ଧୀୟ କଥାମାନ ଯାହାକି ମୂଳରେ ମୀମାଂସିତ ହୋଇଅଛି, ସେ ସବୁ ତ ଲେଖି ନାହାନ୍ତି । କିନ୍ତୁ ହନୁମାନ ଝାଡ଼ବାଡ଼କୁ କହିଲା ପ୍ରାୟ କହିବି, ଏହା ଭାବି (୩) ଭ୍ରମର ରୂପର ପରିତ୍ୟାଗ ପୂର୍ବକ ମୌଳିକ କ୍ଷୁଦ୍ର ମର୍କଟ ରୂପରେ ଲୁଚି ରହି ରାମଙ୍କ ଆଜନ୍ମ ଚରିତମାନ ସଂକ୍ଷିପ୍ତ ଭାବରେ ପାଠ କଲେ ବୋଲି ଲେଖି ଅଛନ୍ତି । ଏହା ଅବଶ୍ୟ ମହର୍ଷିଙ୍କ ଚିତ୍ରଣର ସଦୃଶ କେବଳ । ଏ ସ୍ଥଳେ ମୂଳଗ୍ରନ୍ଥରେ ଇତଃପୂର୍ବେ ମାରୁତି ଯାହାକି ତର୍କଣା କରିଥିଲେ, ସୀତାଦେବୀ ସନ୍ଧ୍ୟା ବନ୍ଦନାର୍ଥ ନଦୀକୁ ଯିବେ ତଦା ସେ ତାହାଙ୍କୁ ରାମଚରିତ ଜଣାଇବେ, (୪) ଏକଥା ଲେଖା ନାହିଁ । ହନୁମାନ ପୂର୍ବୋକ୍ତ ଅଶୋକ ଶାଖାରେ କେବଳ ବସିଥିବା ଲେଖାଅଛି । କାରଣ ସନ୍ଧ୍ୟାବନ୍ଦନାର ସମୟ ହେବା ପୂର୍ବରୁ କେତେକ ରାତ୍ରି ଥାଉଁ ଥାଉଁ କେବଳ ମାରୁତି ସୀତାଦେବୀଙ୍କୁ ଭେଟି

---

(୧) ନିଶାଚରୀଣାଂ ପ୍ରତ୍ୟକ୍ଷଂ ଅନର୍ହଂ ଚାପି ଭାଷଣମ୍ — ୩୦ ସ.୧୧ ଶ୍ଳୋ. । × ×

(୨) ବାଚଂ ଚୋଦାହରିଷ୍ୟାମି ମାନୁଷୀମିହସଂସ୍କୃତାମ୍ ।
ଅବଶ୍ୟମେବ ବକ୍ତବ୍ୟଂ ମାନୁଷଂ ବାକ୍ୟମର୍ଥବତ୍ । ୩୦ ସ. ୧୭-୧୯ ଶ୍ଳୋ
ସଂସ୍କୃତାଂ ପ୍ରୟୋଗ ସୌଷ୍ଠବଲକ୍ଷଣସଂସ୍କାରଯୁକ୍ତାଂ । × × ଅତ୍ର ବାକ୍ୟସ୍ୟ ମାନୁଷତ୍ୱଂ କୋସଳଦେଶବର୍ତ୍ତି ମନୁଷ୍ୟସମ୍ବନ୍ଧିତ୍ୱଂ ବିବକ୍ଷିତଂ । ତାଦୃଶ ବାକ୍ୟସ୍ୟୈବ ଦେବୀ ପରିଚିତତ୍ୱାତ୍ ।
ଇତି ଗୋବିନ୍ଦରାଜଃ ।

(୩) ଝାଡ଼ବାଡ଼କୁ କହିଲା ପ୍ରାୟେକ କହିବି ।
ସମସ୍ୟା ପାଇଲେ ଏଥୁ ଓହ୍ଲାଇ ଆସିବି । ୨୨ ପୃ.

(୪) ସନ୍ଧ୍ୟାକାଳମନାଃ ଶ୍ୟାମା ଧ୍ରୁବମେଷ୍ୟତି ଜାନକୀ ।
ନଦୀମିମାଂ ଶୁଭଜଳାଂ ସନ୍ଧ୍ୟାର୍ଥେ ବରବର୍ଣ୍ଣିନୀ । ୧୪ ସ. ୪୯ ଶ୍ଳୋ

ବିବକ୍ଷିତ ଚରିତ ଜଣାଇ ଦେଇପାରି ଅଛନ୍ତି । (୧) ସୀତାଦେବୀ ହନୁମାନଙ୍କ ରୂପ ଦେଖି ବିସ୍ମିତ ଓ ମୋହିତ ଚିତ୍ତରେ ମନ୍ଦ ମନ୍ଦ ସ୍ୱରରେ ରାମାଦିଙ୍କୁ ଉଦ୍ଦେଶି ବିଳାପ କଲେ । ଫେର୍ ସେ ମାରୁତିଙ୍କ ବିନୀତ ରୂପ ଦେଖି ଏହାକି ମୋର ସ୍ୱପ୍ନ ଦର୍ଶନ ? ଅଥବା ସ୍ୱପ୍ନ ନୁହେ, ଇତ୍ୟାଦି ରୂପେ ଭାବନା କଲେ । (୨) ପୁଣି ରାମ କଥା ଶୁଣିବାରେ ସତୃଷ୍ଣା ରହିଲେ । ହନୁମାନ ଏ ପର୍ଯ୍ୟନ୍ତ ସୀତାଙ୍କୁ ସନ୍ଦେହତଃ ମାତ୍ର ସୀତା ବୋଲି ଜାଣିଥିଲେ । ସେହେତୁ ଫେର୍ ବିନୀତ ଭାବରେ ତାହାଙ୍କ ପରିଚୟ ଜିଜ୍ଞାସା କଲେ । ସେ ସୀତାଦେବୀଙ୍କୁ ବୋଇଲେ କି, ଆପଣଙ୍କର ସୁଲକ୍ଷଣାଦି ଦେଖି ମୁଁ ବିଶ୍ୱାସ କରୁଅଛି ଯେ ଆପଣ ରାମଙ୍କ ମହିଷୀ ହେବେ । ଆପଣ ଯଦି ଜନସ୍ଥାନରୁ ରାବଣ କର୍ତ୍ତୃକ ଅପହୃତା ସୀତା ଅଟନ୍ତି ତେବେ ପରିଚୟ କହନ୍ତୁ । (୩) ଏ ସ୍ଥଳେ ବଳରାମ ଦାସେ ମୌଳିକ ସଂବିଧାନର ଅନୁସରଣରେ (୪) ଲେଖିଅଛନ୍ତି କି ହନୁମାନ ନଦୀତୀରରେ ସାଧାରଣ ମର୍କଟ ରୂପରେ ସୀତାଙ୍କର ପରିଚୟ ଜିଜ୍ଞାସା କରିଥିଲେ । ଦାସଙ୍କର ଏହିକଥା ନିତାନ୍ତ ଅମୌଳିକ ନୁହେ । ପାଠକେ ! ଆଗେ ଦେଖି ଅଛନ୍ତି ହନୁମାନ ପ୍ରଥମତଃ ନଦୀତୀରରେ କେବଳ ସୀତାଙ୍କ ଦର୍ଶନ ନିର୍ଦ୍ଧାରିତ କରିଥିଲେ । ସେହି ପ୍ରମାଣକୁ ସ୍ଥିର କରି ଦାସେ ଲେଖିଯାଇ ଅଛନ୍ତି । କିନ୍ତୁ ଏଥି ମଧ୍ୟରେ ସ୍ଥାନେ ସ୍ଥାନେ ମାତ୍ର ଅସମୀଚୀନତା ରହି ଯାଇଅଛି । ଏଥିରେ ମାରୁତି ସୀତାଙ୍କୁ ପଚାରୁ ଅଛନ୍ତି, ଆପଣ ରାବଣ ପ୍ରତି

---

(୧) ଅନେନ ରାତ୍ରିଶେଷେଣ ଯଦି ନାଶ୍ୱାସ୍ୟତେ ମୟା
ସର୍ବଥା ନାସ୍ତି ସନ୍ଦେହଃ ପରିତ୍ୟକ୍ଷ୍ୟତି ଜୀବିତମ୍ । ୩୦ ସ. ୧୨ ଶ୍ଳୋ
ରାତି ବୋଧହୁଏ ଏ ରାତ୍ରିର ଚତୁର୍ଥ ଯାମରେ ମାରୁତି ସୀତାଙ୍କୁ ଭେଟିଥିଲେ, କାରଣ ତା ପୂର୍ବରୁ ସୀତା ଦେବୀ ଭାବି ଅଛନ୍ତି କି
ପ୍ରଭାତେ ଭକ୍ଷୟିଷ୍ୟନ୍ତି ରାକ୍ଷସ୍ୟୋ ମାଂ ନ ସଂଶୟମ୍ ।
ଇଦାନୀମେବ ମରଣଂ କେନୋପାୟେନ ମେ ଭବେତ୍ । ଇତି ଅଧ୍ୟାତ୍ମ ରାମାୟଣ ସୁ.କା. ୨ସ.

(୨) ସ୍ୱପ୍ନେ ମୟାୟଂ ବିକୃତୋହି ଦୃଷ୍ଟଃ – ଇତ୍ୟାଦି – ୩୨ସ. ୯.୮ ଶ୍ଳୋ

(୩) ରାବଣେନ ଜନସ୍ଥାନାଦ୍ ବଳାଦପହୃତା ଯଦି ।
ସୀତା ତ୍ୱମସି ଭଦ୍ରଂ ତେ ତନ୍ମମାଚକ୍ଷ୍ୱ ପୃଚ୍ଛତଃ । ୩୨ ସ. ୧୨ ଶ୍ଳୋ

(୪) ମାରୁତିଙ୍କ ସୀତା ଦର୍ଶନ ସ୍ଥଳେ ଦାସେ, ଅଧ୍ୟାତ୍ମ ରାମାୟଣକୁ ସମଧିକ ଅନୁସରିବା ଜଣାଯାଏ, ଦାସଙ୍କ ରାମାୟଣର ପରି ଅଧ୍ୟାତ୍ମରେ ଲେଖାଅଛି କି ଅଦୃଷ୍ଟ ରୂପ ମାରୁତିଙ୍କ ରାମକଥା ଶ୍ରବଣ କରି ସୀତା କହିଲେ ଯେ "ହେ ମହାତ୍ମା ମୋ ଆଗରେ ଦେଖାଦିଅ" "ସଦୃଶ୍ୟତାଂ ମହାଭାଗ ପ୍ରିୟବାଦୀ ମମାଗ୍ରତଃ । ସୁ. କା. ୨ସ.
ସୀତାଙ୍କ ଏହି କଥା ଶୁଣି ମାରୁତି କଳବିଙ୍କ ପ୍ରମାଣାଙ୍ଗରେ ଦେଖାଦେଲେ । ତଦା ସୀତା ଭାବିଲେ ଯେ ରାବଣ ମୋତେ ମୋହିବାକୁ ଏହି ରୂପରେ ଆସିଅଛି – କଳବିଙ୍କ ପ୍ରମାଣାଙ୍ଗୋ ରକ୍ତାସ୍ୟ ପୀତ ବସ୍ତ୍ରଧୃକ୍ । ନନାମ ଶନକୈଃ ସୀତାଂ ପ୍ରାଞ୍ଜଳିଃ ପୁରତଃସ୍ଥିତଃ । ମାଂ ମୋହୟିତୁ ମାୟାତୋ ମାୟୟା ବାନରାକୃତିଃ । ସୁ.କା ୩ ସର୍ଗ

ସାନୁରାଗା ହୋଇ ନାହାନ୍ତି କାହିଁକି ? (୧) ଏଭଳି କଥା ସେ ସୀତାଙ୍କୁ ପଚାରିବା ଅବିଧେୟ । ଏତାଦୃଶ ଧର୍ମନୀତି ସଂକ୍ରାନ୍ତ ନିଗୂଢ଼ ସ୍ଥଳମାନଙ୍କରେ ମୂଳ ଗ୍ରନ୍ଥର ଅବିକଳ ଅନୁକରଣ ନ କଲେ ଲେଖାରେ ଏପରି ଅନୁଚିତତା ଘଟିଯାଏ । ତଥାପି ବିଶ୍ୱାସ ହୁଏ, ଏହି ପଦ୍ୟଟି ଦାସଙ୍କର ନୁହେ, ଅନୁଲେଖକଙ୍କର ବିକ୍ଷିପ୍ତ ଚିତ୍ତ-ଜନିତ ପ୍ରକ୍ଷିପ୍ତ ବାକ୍ୟ ହେବ । କାରଣ ଅନ୍ୟାନ୍ୟ ପଦ୍ୟଗୁଡ଼ିକରେ ଠିକ ମୌଳିକତା ନିହିତ ଅଛି, ସୀମା ଅତିରିକ୍ତ ହୋଇନାହିଁ । ତାହାପରେ ସୀତା ଦେବୀ ହନୁମନ୍ତଙ୍କ ବଚନରେ ହର୍ଷ ପ୍ରାପ୍ତ ହୋଇ ନିଜର ଯାବତୀୟ ପରିଚୟ ପ୍ରଦାନ କଲେ । ମାରୁତି ସୀତାଙ୍କୁ ସାନ୍ତ୍ୱନା ଦେଇ ପୁଣି କହିଲେ, 'ଦେବି ! ମୁଁ ରାମଙ୍କ ଦୂତ ଅଟେ । ରାମ ଆପଣଙ୍କୁ କୁଶଳ ପ୍ରଶ୍ନ କରିଅଛନ୍ତି । ଲକ୍ଷ୍ମଣ ଶିରସା ପ୍ରଣାମ ଜଣାଇ ଅଛନ୍ତି ।' ସୀତା ବୋଇଲେ, 'ଏହି ଦୁରବସ୍ଥାରେ ମଧ ଅଦ୍ୟ ମୋର ପ୍ରାଣ ଧାରଣ ସଫଳ ହେଲା (୨) ପ୍ରାଣରେ ଥିଲେ ମନୁଷ୍ୟ ସମୟେ ଆନନ୍ଦ ଅନୁଭବ କରେ, ଏହି ଲୋକ ପ୍ରବାଦ ମିଥ୍ୟା ନୁହେ । ତଦା ହୃଦୟ ବିଶ୍ୱସ୍ତ ହେଲାରୁ ମାରୁତି କ୍ରମଶଃ ସୀତାଙ୍କ ନିକଟବର୍ତ୍ତୀ ହେଲେ । ତଥାପି ଜାନକୀ ଦେବୀ ତାହାଙ୍କୁ ରାବଣ ବୋଲି ମନେ ମନେ ସନ୍ଦେହ କରୁଥାଆନ୍ତି । ତଦା ହନୁମାନ ପ୍ରଣାମ କଲାରୁ ସୀତା ବୋଇଲେ, 'ତୁମେ ଯଦି ରାମଙ୍କ ଦୂତ ହୋଇଥାଅ, ତୁମର ସର୍ବଥା ମଙ୍ଗଳ ହେଉ । ପ୍ରିୟତମ ରାମଙ୍କ କଥାରେ ମୋର ଦୁଃଖ ଦୂର କର ।' ତଥାପି ସୀତା ଦେବୀ ଫେର୍ ନାନା ବିଚାରରେ ମାରୁତିଙ୍କ ପ୍ରତି ରାବଣ ଶଙ୍କା କଲେ । ପାବନୀ ରାମଙ୍କର ପାବନ ମହନୀୟ ଐଶ୍ୱର୍ଯ୍ୟାଦି ଗୁଣ ପ୍ରକାଶି ବୋଇଲେ, 'ମୁଁ ନିଶ୍ଚେ ରାମଦୂତ । ରାମ ନିଶ୍ଚେ ରାବଣକୁ ବିନିପାତ କରି ଆପଣଙ୍କୁ ନେବେ । ମୋ ପ୍ରତି ଅନ୍ୟଥା ଭାବନା କର ନାହିଁ ।' (୩) ହନୁମାନଙ୍କ ହୃଦୟ କନ୍ଦର-ନିସୃତ ରାମଙ୍କ ଏତାଦୃଶ ସୁବିସ୍ତୃତ ଗୁଣ-ପ୍ରଖ୍ୟାପନ-ପୀୟୂଷପ୍ରବାହ ଦାସଙ୍କ ରାମାୟଣରେ ପ୍ରବାହିତ ହୋଇପାରି ନାହିଁ । ତେତେବେଳେ ଜାନକୀ ସମାଶ୍ୱସ୍ତ ବିଶ୍ୱସ୍ତ ହୃଦୟରେ ପାବନିଙ୍କୁ ପଚାରିଲେ, 'ତୁମେ ରାମଙ୍କ ସଙ୍ଗେ କିପରି ସମବେତ ହେଲ ? ନରବାନରଙ୍କ ସମାଯୋଗ ବା କିପରି ହେଲା ? ତୁମେ ଯଦି

---

(୧) × × × × କିପାଇଁ ରାବଣେ ଯେ ନକଲ ତୁମ୍ଭେ ପ୍ରୀତି ।
କିଅବା ତୁମ୍ଭଙ୍କୁ କୋପ କଲା ଲଙ୍କାପତି । ×× ୨୪ପୃ.

(୨) କଲ୍ୟାଣୀ ବତ ଗାଥେୟଂ ଲୌକିକୀ ପ୍ରତିଭାତି ମାଂ ।
ଏତି ଜୀବନ୍ତମାନନ୍ଦୋ ନରଂ ବର୍ଷଶତାଦପି । ୩୪ ସ. ୬ ଶ୍ଳୋ
କଲ୍ୟାଣୀ ସତ୍ୟାର୍ଥା ମାଂ ପ୍ରତିଭାତି । ବର୍ଷ ଶତାଦପୀତ୍ୟନ୍ତେ ଇତିକରଣଂ ବୋଧ୍ୟଂ ।
ଇତି ଗୋବିନ୍ଦରାଜୀୟେ ।

(୩) ନାହମସ୍ମି ତଥା ଦେବି ଯଥା ମାମବଗଚ୍ଛସି ।
ବିଶଙ୍କା ତ୍ୟଜ୍ୟତାମେଷା ଶ୍ରଦ୍ଧସ୍ୱବଦତୋ ମମ । ୩୪ ସ. ୪୧ ଶ୍ଳୋ

ରାମ ଓ ଲକ୍ଷ୍ମଣଙ୍କୁ ଭଲଜାଣ ତେବେ ସେମାନଙ୍କର ରୂପ ସଂସ୍ଥାପନାର ବିଶେଷତ୍ୱ କହ ।' ହନୁମାନ ଏ ସ୍ଥଳେ ସୀତାଙ୍କୁ ସାନୁଜ ରାମଙ୍କର ଅନ୍ୟାନ୍ୟସାମାନ୍ୟ ଶାରୀରିକ (୧) ବୀରତ୍ୱ ଆଉ ବିଶେଷ ଲକ୍ଷଣମାନ ଜଣାଇ ଦେଲା ପରେ ରାମଙ୍କର ସୁଗ୍ରୀବଙ୍କ ସହ ମିଳନଠାରୁ ହନୁମାନଙ୍କର ସୀତା ଦର୍ଶନ ପର୍ଯ୍ୟନ୍ତ ଯାବତୀୟ ଚରିତ ଜଣାଇ ଦେଲେ ଏବଂ ନିଜର ଜନ୍ମକାଳୀନ ବୃତ୍ତାନ୍ତାଦି ଜଣାଇ ଦେଲେ । ଏସବୁ ଶୁଣି ସୀତାଦେବୀ ପରମ ଆନନ୍ଦିତା ହେଲେ ।

ଦାସଙ୍କ ରାମାୟଣରେ ମଧ ଏହିସବୁ ପରିଚୟ ପ୍ରଦାନର କ୍ରମ ଲେଖାଅଛି । କିନ୍ତୁ ସାନୁଜ ରାମଙ୍କର ମାରୁତି କଥିତ ଶାରୀରିକ ବୀରତ୍ୱାଦି ବିଶେଷ ଲକ୍ଷଣ ମାନ ଏଥିରେ ଉକ୍ତ ହୋଇ ନାହିଁ ।

ଏହା ପରେ ହନୁମାନ ପ୍ରତ୍ୟୟର ସୁଦୃଢ଼ୀକରଣାର୍ଥ ରାମଦତ୍ତ ଅଙ୍ଗୁରୀୟଟିକୁ ସୀତାଙ୍କୁ ପ୍ରଦାନ କଲେ । ପରନ୍ତୁ ସୀତାଦେବୀ ଆଗରୁ ମାରୁତିଙ୍କୁ କିଛି ବିଶ୍ୱାସ ଯୋଗ୍ୟ ନିଦର୍ଶନ ଦେଖାଇବା ପାଇଁ କହି ନାହାନ୍ତି । ହନୁମାନ ନିଜେ ସ୍ୱତଃ ପ୍ରଣୋଦିତ ହୋଇ ଅଙ୍ଗୁରୀୟଟିକୁ ପ୍ରଦାନ କରି ଅଛନ୍ତି । ସୀତାଦେବୀ ଅଙ୍ଗୁରୀୟଟିକୁ ଧରି ପରମ ହର୍ଷିତା ହେଲେ । ବଳରାମ ଦାସଙ୍କ ରାମାୟଣରେ ଏ ସ୍ଥଳରେ ସୀତାଦେବୀ ବିଶ୍ୱସନୀୟ ନିଦର୍ଶନ ପ୍ରଦର୍ଶନାର୍ଥ କହିଅଛନ୍ତି, ଅପିଚ ମୁଦ୍ରିକା ଦର୍ଶନରେ ଆଶଙ୍କା ଜନିତ କଥାମାନ କହିଅଛନ୍ତି । (୨) ଏହା ପରେ ଦାସେ ସୀତାଙ୍କ କୃତ ସନ୍ଦେହରେ ସନ୍ଦିଗ୍ଧ ବିଦଗ୍ଧ ହୃଦୟ ହନୁମାନଙ୍କ ମୁଖରେ ବିଶ୍ୱାସ ଜନନାର୍ଥ ଚିତ୍ରକୂଟରେ ସଂଘଟିତ ଗୈରିକ ତିଳକର ବିବରଣ ଏବଂ ତତ୍ର ମାଂସ ଶୁଖାଇଥିବା ସମୟେ କାକର ସମାକ୍ରମଣ-ମୂଳକ କଥାମାନ କହାଇ ଅଛନ୍ତି । ଏସବୁ ମୂଳଗ୍ରନ୍ଥରେ ଏ ସ୍ଥଳେ ଉକ୍ତ ନାହିଁ, ଅଧ୍ୟାତ୍ମ ରାମାୟଣରେ ମଧ ଉକ୍ତ ନାହିଁ । ସତ୍ୟ ତଥାପି ଅଳୀକ ନୁହେ, ତଥାଚ କହିବା ସୁଦ୍ଧା ଅପ୍ରାସଂଗିକ ନୁହେ ।

ମୂଳ ଗ୍ରନ୍ଥରେ ସୀତାଦେବୀ ଏହିପରି କିଛି ଆଶଙ୍କା କରି ନାହାନ୍ତି, ପ୍ରତ୍ୟୁତ ମାରୁତିଙ୍କୁ ସେଥିପାଇଁ ବହୁ ପ୍ରଶଂସା କରିଅଛନ୍ତି । (୩) ଅପିଚ ରାମଙ୍କର କୁଶଳ ପ୍ରଶ୍ନ ଆଉ ନିଜ ପ୍ରତି ରାମଙ୍କର ମନୋବୃତ୍ତି ପ୍ରଭୃତି ବିଷୟମାନ ତାହାଙ୍କୁ ସେ ପଚାରି ଅଛନ୍ତି ।

---

(୧) ୩୫ ସ. ୧୯, ୨୦ ଶ୍ଳୋକ ଦେଖନ୍ତୁ । ଏସ୍ଥଳେ ଲକ୍ଷ୍ମଣ ଦ୍ୱୈମାତୁର ବୋଲି ମଧ ଲେଖାଅଛି । ଯଥା – ଭ୍ରାତାଚାସ୍ୟ ଦ୍ୱୈମାତ୍ରଃ ସୌମିତ୍ରିରପରାଜିତଃ – ସୁମିତ୍ରାପତ୍ୟସ୍ୟ ଲକ୍ଷଣ ଦ୍ୱୈମାତୁରତ୍ୱଂ ଜନ୍ମ ପ୍ରଭୃତି ରାମବତ୍ କୌଶଲ୍ୟାୟା ସଂବର୍ଦ୍ଧିତତ୍ୱାତ୍ । ଇତି ଗୋବିନ୍ଦରାଜୀୟେ

(୨) ଛାପା ପୁସ୍ତକରେ ୨୬, ୨୭, ୨୮ ପୃଷ୍ଠାମାନ ଦେଖନ୍ତୁ ।

(୩) ୩୬ ସର୍ଗ, ୪/୬ ଶ୍ଳୋକ ଦେଖନ୍ତୁ ।

ଏ ସ୍ଥଳେ ଆଦିକବି ମହୋଦୟ ସୀତାଦେବୀଙ୍କୁ ସୁପ୍ରଧାନ ଗୁଣବତୀ ମତିମତୀ ଗୃହିଣୀ ଏବଂ ସମୁପଯୁକ୍ତା, ବ୍ୟବସ୍ଥାକୁଶଳା, ଶୀଳଶୀଳା, କ୍ଷତ୍ରିୟଧର୍ମାଭିଜ୍ଞା, ପ୍ରଜ୍ଞାବତୀ ମହିଷୀରୂପରେ ଚିତ୍ରଣ କରିଅଛନ୍ତି । ହନୁମାନ ପୁଣି ତେତିକିବେଳେ ଜାନକୀଙ୍କୁ ତଦୀୟ ପ୍ରାପ୍ତି ସକାଶେ ରାମଙ୍କ ଦୃଢ଼ବ୍ରତତା ତଥାଚ ଚିନ୍ତାସନ୍ତାନ – ସଦାଚିନ୍ତନତା ଜଣାଇଥିଲେ । ସୀତାଦେବୀ ତାହାଙ୍କ ମୁଖରୁ ନିଜ ପ୍ରତି ପ୍ରାଣପତିଙ୍କର ମନଃପ୍ରବୃତ୍ତିର ଏକତାନତା ଏବଂ ଶୋକାକୁଳ ଅବସ୍ଥିତି ଶୁଣି କହିଲେ କି, ହେ ପାବିନୀ ! ତୁମେ ତ ଅମୃତକୁ ବିଷରେ ମିଶାଇ ଦେଲ । (୧) ଆହା ! କି ହୃଦୟସ୍ପର୍ଶୀ ଭାବ, କି ପ୍ରଗାଢ଼ ପାବନ ଅନୁରକ୍ତି, କି ପବିତ୍ର ପ୍ରେମ, ଆହା ! କି ଗଭୀର ଆତ୍ମୀୟତା, ଆହା ! କି ବିଶୁଦ୍ଧ ଭକ୍ତି ! ଏହା କି ସୀତାଙ୍କ ଭଳି ସତୀଙ୍କ ବିନା ଅନ୍ୟ ସ୍ତ୍ରୀ ହୃଦୟରେ ସୁତରାଂ ଏପରି ଦୁରବସ୍ଥାରେ ଜନ୍ମିପାରେ ? କିମ୍ବା ତିଷ୍ଠିପାରେ ? ତାପରେ ମିଥିଳାଧିରାଜତନୟା ସୁନୟା ସୀତାଦେବୀ ରାମଦୂତଙ୍କୁ ରାବଣ ନିର୍ଦ୍ଦିଷ୍ଟ ଦୁଇମାସ ଅବଧି କଥା କହି ରାମଙ୍କର ଆନୟନାର୍ଥ ସାଦର ଅନୁରୋଧ କଲେ । ମାରୁତି ଜଣାଇଲେ, ଏକ୍ଷଣି ଶ୍ରୀରାମ ପ୍ରାପ୍ତି ସକାଶେ ମୋ ପୃଷ୍ଠରେ ଆରୋହଣ କରନ୍ତୁ । କିନ୍ତୁ ସୀତାଦେବୀ କାରଣ ପ୍ରଦର୍ଶନରେ ସେଥିରେ ଅସମ୍ମତ ହେଲେ । ଶ୍ରୀମାନ୍ ବଳରାମ ଦାସେ ମଧ ଏହାହିଁ ଲେଖିଅଛନ୍ତି । (୨)

ତେତେବେଳେ ହନୁମାନ୍ ନିଜର ତ୍ରିବିକ୍ରମ ପରାକ୍ରମ ଓ କାମରୂପର ପ୍ରକାଶନାର୍ଥ ମେରୁମନ୍ଦରସନ୍ଦୋହର ସୁନ୍ଦରଶରୀର ବଢ଼ାଇ ସଶୈଳବନକାନନା ସାଟପ୍ରାକାର ଭବନା ସୁଶୋଭନା ସମଗ୍ର ଲଙ୍କା ପୁରୀକୁ ମୁଁ ଉତ୍ତୋଳି ନେଇପାରେ ବୋଲି ଦେବୀଙ୍କୁ ଜଣାଇଲେ । ମାରୁତିଙ୍କର ଏହି ମହାକାୟତ୍ୱ ଗ୍ରହଣକୁ ବଳରାମ ଦାସେ ମଧ ଯଥାଯଥ ପ୍ରକାଶ କରିଅଛନ୍ତି । (୩)

ଏହାପରେ ହନୁମାନ ଜାନକୀଙ୍କୁ ସବିନୟେ ଜଣାଇଲେ ଆପଣଙ୍କର ସମସ୍ତ କଥା ରାଘବେନ୍ଦ୍ରଙ୍କ ଛାମୁରେ ନିବେଦିବି, ମୋତେ ଅଭିଜ୍ଞାନ ପ୍ରଦାନ କରନ୍ତୁ । (୪)

---

(୧) ଅମୃତଂ ବିଷସଂପୃକ୍ତଂ ତ୍ୱୟା ବାନର ! ଭାଷିତମ୍ ।
ଯଚ୍ଚ ନାନ୍ୟମନା ରାମୋ ଯଚ୍ଚ ଶୋକପରାୟଣଃ । ୩୭ସ. ୨ ଶ୍ଳୋ

ଯଚ୍ଚ ନାନ୍ୟମନା ଇତ୍ୟମୃତତ୍ୱେ ହେତୁଃ । ଯଚ୍ଚ ଶୋକପରାୟଣ ଇତି ବିଷସଂସୃଷ୍ଟତ୍ୱେ ହେତୁଃ ।

(୨) ଛାପା ପୁସ୍ତକରେ ୨୯ ପୃଷ୍ଠା ଦେଖନ୍ତୁ, କିନ୍ତୁ ଅଧ୍ୟାତ୍ମ ରାମାୟଣରେ ମାରୁତିଙ୍କର ଏହି ଉକ୍ତି ଲଙ୍କା ଦହନ ପରେ ଦ୍ୱିତୀୟବାର ଦର୍ଶନ ସ୍ଥଳେ ଲେଖାଅଛି । ସୁନ୍ଦରାକାଣ୍ଡ ପଞ୍ଚମ ସର୍ଗ ଦେଖନ୍ତୁ ।

(୩) ଛାପା ପୁସ୍ତକରେ ୨୯ ପୃଷ୍ଠା ପଢ଼ନ୍ତୁ ।

(୪) ଯଦି ନୋତ୍ସହସେ ଯାତୁଂ ମୟାସାର୍ଦ୍ଧମନିନ୍ଦିତେ ।
ଅଭିଜ୍ଞାନଂ ପ୍ରଯଚ୍ଛ ତ୍ୱଂ ଜାନୀୟାଦ୍ ରାଘବୋ ହି ତତ୍ । ୩୮ ସ. ୧୦ ଶ୍ଳୋ

ସୀତାଦେବୀ ଆଞ୍ଜନେୟଙ୍କୁ ଅଭିଜ୍ଞାନ ସ୍ୱରୂପ ପୁରା ଚିତ୍ରକୂଟରେ ସଂଘଟିତ କାକର ଦୁଷ୍ଟ ଚେଷ୍ଟାମୂଳକ ରହସ୍ୟ ସନ୍ଦେଶ ପ୍ରଦାନ କରି (୧) ରାମଙ୍କୁ ଶିରସା ବନ୍ଦନା ଜଣାଇଲେ, ଲକ୍ଷ୍ମଣ ଓ ସୁଗ୍ରୀବାଦିଙ୍କୁ କୁଶଳ ପ୍ରଶ୍ନ ଜଣାଇବାକୁ କହିଲେ, 'ଏହିଠାରେ ମୁଁ ଆଉ ଏକମାସ ମାତ୍ର ଜୀବିତ ରହିବି । ଏଥି ମଧ୍ୟରେ ଶରଣାଗତରକ୍ଷଣୋଦ୍ୟତ ରାମଚନ୍ଦ୍ର ମୋତେ ଉଦ୍ଧାର କରନ୍ତୁ ।' ସେ ଏହା କହି ନିଜର ମସ୍ତକସ୍ଥ ଚୂଡ଼ାମଣିକୁ କପିବୀରମଣିଙ୍କୁ ପ୍ରଦାନ କଲେ । (୨) ଏମଣି ସମ୍ବନ୍ଧେ ମତିମାନ୍ ବଳରାମ ଦାସେ ଲେଖିଅଛନ୍ତି, ଏହିଟିକୁ ବିବାହ ସମୟରେ ଦଶରଥ ସୀତାଙ୍କୁ ଦେଖୁଣି – ମଣି ସ୍ୱରୂପ ପ୍ରଦାନ କରିଥିଲେ । ଏହିଟି ସ୍ପଷ୍ଟତଃ ମୂଳ ଗ୍ରନ୍ଥରେ ଲେଖା ନାହିଁ ସତ୍ୟ, କିନ୍ତୁ ସୀତାଙ୍କ ଉକ୍ତିରେ ଏହାର ଅର୍ଥହିଁ ପ୍ରକାରାନ୍ତରରେ ସୂଚିତ ଅଛି । ସୀତା କହିଅଛନ୍ତି, ରାମଚନ୍ଦ୍ର ଏହି ମଣିଟିକୁ ଦେଖି ମୋତେ ଆଉ ମାତାଙ୍କୁ ଏବଂ ମହାରାଜ ଦଶରଥଙ୍କୁ ଯୁଗପଦ୍ ସ୍ମରଣ କରିବେ । ଏହି ବାକ୍ୟରେ ଜାନକୀଙ୍କର ବୈବାହିକ ସମୟର ଦାସଙ୍କ ପ୍ରକାଶିତ ଚରିତର ଅବିକଳ ସଦୃଶ ନ ହେଲେ ସୁଦ୍ଧା, ତାଦୃଶ ଘଟନାଟିଏ ସଂବଳିତ ଅଛି । ବଳରାମ ଦାସେ ଏ ସମ୍ବନ୍ଧେ ଯେଉଁଳି ଚରିତ ଲେଖିଅଛନ୍ତି, ତାହା କେବଳ ତାଙ୍କରି ଅଭିମତ ନୁହେ; ସେହି ଅଭିପ୍ରାୟ ଅନେକ ବିଦ୍ୱାନ୍‌ବ୍ୟକ୍ତିମାନେ ମଧ୍ୟ ପ୍ରକାଶ କରିଅଛନ୍ତି । ପାଠକଗଣ ମୌଳିକ ପାଠର ଗୋବିନ୍ଦରାଜୀୟ ପ୍ରଭୃତି ବ୍ୟାଖ୍ୟା ଗ୍ରନ୍ଥମାନ ଦେଖିଲେ ସ୍ପଷ୍ଟତଃ ବୁଝିପାରିବେ । (୩) ଏ ସ୍ଥଳରେ ପୁଣି ଦାସ ମହାଶୟ ସୀତାଙ୍କ ମୁଖରେ ଗୁପ୍ତ ସନ୍ଦେଶ ସ୍ୱରୂପ ମଧୁଶଯ୍ୟାରେ ଦୀପସାକ୍ଷୀ ମୂଳକ ରହସ୍ୟ ଘଟନାଟି ମଧ୍ୟ ପ୍ରକାଶ କରାଇଅଛନ୍ତି । ଏହା ମୂଳଗ୍ରନ୍ଥରେ ଉକ୍ତ ନଥିଲେ ସୁଦ୍ଧା ନିର୍ବ୍ୟଳିକ କେବଳ, ଏହା ପୁରଣାନ୍ତରରେ ଅବଶ୍ୟ ନିଗଦିତ ଥିବ ।

---

(୧) ଏହି ଘଟନାର ସୂଚନା ୩୮ ସର୍ଗର ୧୦ ଶ୍ଳୋକଠାରୁ ୩୮ ଶ୍ଳୋକ ପର୍ଯ୍ୟନ୍ତ ଲେଖାଅଛି ।

(୨) ୩୮ ସର୍ଗ ୬୭-୬୯ ଶ୍ଳୋ ।

(୩) ମଣିଂ ତୁ ଦୃଷ୍ଟ୍ୱା ରାମୋ ବୈ ତ୍ରୟାଣାଂ ସଂସ୍ମରିଷ୍ୟତି ।
ବୀରୋ ଜନନ୍ୟା ମମ ଚ ରାଜ୍ଞୋ ଦଶରଥସ୍ୟ ଚ । ୩୯ ସ. ୨ ଶ୍ଳୋ

ତ୍ରୟାଣାମିତି "ଅଧିଗର୍ଥ ଦୟେଷାଂ କର୍ମଣି" ଇତି ଷଷ୍ଠୀ । ବିବାହକାଳେ ଶିରୋମଣିଦାତୃତ୍ୱାଦ୍ ପିତ୍ରୋଃ ଗ୍ରହୀତୃତ୍ୱାଚ୍ଚ ମମ ସ୍ମରଣମିତି ଭାବଃ । ପାଣିଗ୍ରହଣୋତ୍ସବେ ମମ ଶ୍ୱଶୁରାଭ୍ୟାଂ ପ୍ରଥମଂ ଶିରୋଭୂଷଣତୟା ଏଷ ଦତ୍ତଃ । ଅତଃ ତ୍ରିନ୍ସ୍ମାନ୍ ଯୁଗପଦ୍ ସ୍ମରିଷ୍ୟତୀତ୍ୟର୍ଥଃ ଇତ୍ୟାହ କଶ୍ଚିଦ୍ ତଦନୁଚିତମ୍ । "ମଣିରତ୍ନ –ମିଦଂଦତ୍ତଂ ବୈଦେହ୍ୟାଃ ଶ୍ୱଶୁରେଣ ମେ । ବଧୂକାଳେ ତଥା ବଦ୍ଧମଧିକଂ ମୂର୍ଦ୍ଧ୍ନିଶୋଭତେ" । ଇତ୍ୟୁପରି ବକ୍ଷମାଣତ୍ୱାଦ୍ ବିବାହେ ରାମଜନନ୍ୟା ଅନାଗମନାଚ୍ଚ । ଇତି ଗୋବିନ୍ଦରାଜୀୟଟୀକାୟାମ୍ ।

ତ୍ରୟାଣାଂ ସଂସ୍ମରିଷ୍ୟତି ତ୍ରୟାଣାମିତି କର୍ମଣି ଷଷ୍ଠୀ ।
ପାଣିଗ୍ରହଣ କାଳେ ମମ ଜନନୀ ଇମାଂ ମଣିଂ ଦଶରଥ ସନ୍ନିଧୌ ଜନକହସ୍ତାଦାଦାୟ ଶିରୋଭୂଷଣତୟା ମହ୍ୟଂ ଦତ୍ତବତୀ । ଅତୋ ମମଜନନୀଂ ଦଶରଥଂ ଜନକଂ ମାଂ ଚ ସ୍ମରିଷ୍ୟତୀତ୍ୟର୍ଥଃ ଇତି ମହେଶ୍ୱର ଦୀକ୍ଷିତ ଟୀକାୟାମ୍ ।

ସୁତରାଂ ଏହି କ୍ରମ ସର୍ବତ୍ର ଲୌକିକାଚାରସିଦ୍ଧ । (୧) ହନୁମାନ ପ୍ରସ୍ଥାନୋଦ୍ୟତ ହେଲେ । ଫେର୍ ସୀତା ପୂର୍ବପ୍ରାୟ ସନ୍ଦେଶ ଜଣାଇବାପାଇଁ ହନୁମାନଙ୍କୁ ଅନୁରୋଧ କଲେ ଏବଂ କହିଲେ, 'ହେ ପାବନି ! ଯଦି ଇଚ୍ଛା କର , ତେବେ ମୋର ସୁଖପାଇଁ ଆଜିକ ନିଭୃତ ଦେଶରେ ଅତ୍ର ଅବସ୍ଥାନ କରି କାଲି ପ୍ରସ୍ଥାନ କର । (୨) ଫେର୍ ସୀତା ପାବନିଙ୍କୁ କହିଛନ୍ତି, 'ହେ ମାରୁତି ! ରାମଙ୍କୁ ମୋର ଅଭିଜ୍ଞାନ ମଣିଦେଇ କାକାସୁର ପ୍ରତି କ୍ଷିପ୍ତ ଇଷିକା ଶରର ମହିମା ଜଣାଇବ, ମୋ ଗଣ୍ଡରେ ଦତ୍ତ ମନଃଶିଳା ତିଳକର କଥା ଜଣାଇବ । ଏ ପର୍ଯ୍ୟନ୍ତ ଏହି ଚୂଡ଼ାମଣି ମୋତେ ରାମ ସାନ୍ନିଧ୍ୟର ସୁଖ ଦେଉଥିଲା । ଏକ୍ଷଣି ସେଟିକୁ ପଠାଇ ଦେଉଅଛି । ଏକ ମାସରୁ ଆଉ ଊର୍ଦ୍ଧ୍ୱ ଜୀବିତ ରହିପାରିବି ନାହିଁ ।' ତେତେବେଳେ ପୁଣି ମାରୁତି ଦେବୀଙ୍କୁ ରାମାଗମନର ଅବଶ୍ୟଂଭାବିତା ଜଣାଇ ସମାଶ୍ୱାସିତା କଲେ ।

ଅତଃପର ଏକଚତ୍ୱାରିଂଶ ସର୍ଗଠାରୁ ଅଷ୍ଟଚତ୍ୱାରିଂଶ ସର୍ଗ ପର୍ଯ୍ୟନ୍ତ ଆଞ୍ଜନେୟାହବ ପ୍ରକ୍ରିୟାର କ୍ରମମାନ ବର୍ଣ୍ଣିତ ଅଛି । ଲଙ୍କାରୁ ପ୍ରସ୍ଥାନୋନ୍ମୁଖ ହନୁମାନ ଭାବିଲେ, ବଳଦର୍ପିଷ୍ଟ ଅଶିଷ୍ଟ ଜନମାନଙ୍କ ପ୍ରତି ସମାଦି ତେତେ ଉପଯୁକ୍ତ ନୁହେ, ଏମାନଙ୍କ ପକ୍ଷେ ପରାକ୍ରମକୁ କେବଳ ମୁଁ ଭଲ ମଣେ । (୩) ଏହେତୁ ମୁଁ ଏକ୍ଷଣି ଅଶୋକ ବନକୁ ଧ୍ୱଂସି ସଶୋକ କରିବି । ରାବଣ ଯୁଦ୍ଧାର୍ଥେ ଆସିଲେ ଅନେକଙ୍କୁ ନିହତ କଲାପରେ ସୁଗ୍ରୀବଙ୍କଠାକୁ ଯିବି । ମାରୁତି କିଛି ରାତ୍ରି ଥାଉଁ ଥାଉଁ ଅଶୋକ ବନିକାକୁ ସଶୋକାପ୍ରାୟ ଧ୍ୱସ୍ତବ୍ୟସ୍ତ କରି ତଦୀୟ ତୋରଣୋପରି ଉପବିଷ୍ଟ ରହିଲେ । ରାକ୍ଷସୀମାନେ ନିଦ୍ରାରୁ ଉଠି ଦେଖିଲେ ଯେ ସମସ୍ତ ବନ ଧ୍ୱସ୍ତ ହୋଇଅଛି । କପିବୀର ତୋରଣରେ ବିରାଜମାନ ଅଛି । ତାପରେ ସେମାନେ ସୀତାଙ୍କୁ ପଚାରିଲେ (୪) 'ଏ କପି କିଏ ? ତୁମ ସଂଗେ କି ହେତୁ କି କଥା ହୋଉଥିଲା ?' (୫) ସୀତା କହିଲେ, 'ସେ କିଏ ମୁଁ ଜାଣେ ନାହିଁ । ତାକୁ ଦେଖି ମୁଁ ପରିତ୍ରସ୍ତା, ତୁମେମାନେ ଜାଣ, ସେ ମାୟାବି କିଏ ?' (୬) ରାକ୍ଷସୀମାନେ ଯାଇ ଏହି ଘଟନା ଲଙ୍କାଧିପତୀଙ୍କୁ ଜଣାଇଲେ ।

---

(୧) ଏହି ମଧୁଶଯ୍ୟା ବୃତ୍ତାନ୍ତ ଛାପା ପୁସ୍ତକରେ ୩୦ ପୃଷ୍ଠାରେ ଦେଖନ୍ତୁ ।

(୨) ଯଦିତ୍ୱଂ ମନ୍ୟସେ ବୀର ! ବସୈକାହମରିନ୍ଦମ ।
କସ୍ମିଣ୍ଚିତ୍ ସଂବୃତେ ଦେଶେ ବିଶ୍ରାନ୍ତୋଶ୍ୱୋଗମିଷ୍ୟସି । ୩୯ ସ.

(୩) ନ ସାମ ରକ୍ଷଃସୁ ଗୁଣାୟ କଳ୍ପତେ ନଦାନମର୍ଥୋପଚିତେଷୁ ଯୁଜ୍ୟତେ ।
ନ ଭେଦସାଧବଳଦର୍ପିତାଜନାଃ ପରାକ୍ରମସ୍ତେବ ମମୈବ ରୋଚତେ । ୪୧ ସ.

(୪) ତତୋ ଗତାୟାଂ ନିଦ୍ରାୟାଂ ରାକ୍ଷସ୍ୟୋ ବିକୃତାନନାଃ, ତଦ୍ ବନଂଦଦୃଶୁର୍ଭଗ୍ନଂ ୪୨ ସ. ୩ ଶ୍ଳୋ

(୫) କୋୟଂ କସ୍ୟ କୁତୋବାୟଂ କିଂନିମିତ୍ତମିହାଗତଃ । କଥଂ ତ୍ୱୟା ସହାନେନ ସଂବାଦ କୃତ ଇତ୍ୟୁତ ।
୪୨ ସ. ୬ ଶ୍ଳୋ

(୬) ଅହିରେବ ହ୍ୟହେଃ ପାଦାନ୍ ବିଜାନାତି ନସଂଶୟଃ
ଅହମପ୍ୟତିଭୀତାସ୍ମି ନୈବଂ ଜାନାମି କୋହ୍ୟୟମ୍ । ୪୨ସ. ୯ ଶ୍ଳୋ

ବଳରାମ ଦାସେ ମଧ ପ୍ରାୟ ଏହାହିଁ ଲେଖି ଅଛନ୍ତି, ପରନ୍ତୁ ତାଙ୍କର ମନୋଧାରଣାରେ ଅଶୋକ ଭଂଜନ କିଛି ରାତ୍ରି ଥାଉଁ ଥାଉଁ ସମ୍ପୂର୍ଣ୍ଣ ନୁହେ । ଏହି ହେତୁରୁ ସେ ଲେଖି ଅଛନ୍ତି, ସୀତା ଦେବୀ ପ୍ରତ୍ୟୁଷରୁ ନଦୀକୁ ଯାଇଥିଲେ । ହନୁମାନ୍ ତତ୍ର ତାହାଙ୍କୁ ଦେଖି ସମସ୍ତ ବକ୍ତବ୍ୟ ଜଣାଇଥିଲେ । (୧) ରାବଣ ଅଶୋକବନ ଭଂଜନ କଥା ଶୁଣିଲାକ୍ଷଣି ଅଶୀତି ସହସ୍ର କିଙ୍କରଗଣଙ୍କୁ ପ୍ରେରଣ କଲେ । (୨) ଏହି ଅଶୀତି ସହସ୍ର ପରିମାଣ ଦାସେ ଠିକ ଦେଇଅଛନ୍ତି । କିନ୍ତୁ (୩) ଏ ସ୍ଥଳେ ଦାସଙ୍କ ରାମାୟଣରେ ରାବଣ ବ୍ରହ୍ମେନ୍ଦ୍ରରୁଦ୍ରାଦି ତେତିଶିକୋଟି ଦେବତାମାନଙ୍କ ସହ ସଭାରେ ବସିଥିବା, ତାହାଙ୍କ କର୍ତ୍ତୃକ ମହାଦେବ ନର୍ତ୍ତନ କରଣାର୍ଥ ଅନୁରୁଦ୍ଧ ହେବା, ଅପ୍ସରାମାନଙ୍କ ନୃତ୍ୟପରେ ମହାଦେବ ଅଖଣ୍ଡତାଣ୍ଡବ ଆରମ୍ଭିବା, ରାବଣ ତହିଁରେ ମୋହିତ ହୋଇପଡ଼ିବା, ସେ ପୁଣି ଚେତନା ଲାଭ ପରେ ଅଶୋକବନିକାର ଦୁର୍ଘଟନା ସେମାନଙ୍କୁ ଜଣାଇବା ପ୍ରଭୃତି ଯାହା ଯାହା ଲେଖାଅଛି, (୪) ସେସବୁ ମୂଳଗ୍ରନ୍ଥରେ ଲେଖା ନାହିଁ । କିଙ୍କରଗଣ ହନୁମାନଙ୍କଦ୍ୱାରା ନିହତ ହେଲାରୁ ରାବଣ ପ୍ରହସ୍ତଙ୍କ ପୁତ୍ର ଜମ୍ବୁମାଳିକୁ ମାରୁତିସଂଯମନାର୍ଥ ପଠାଇଲେ । (୫) ସେ ତେଣୁ ଆସୁଁ ଆସୁଁ ହନୁମାନ ଏଣେ ରାମ ଓ ସୁଗ୍ରୀବଙ୍କ ମାହାତ୍ମ୍ୟ ଦ୍ୟୋତନ ପୂର୍ବକ ଆତ୍ମପରିଚୟ ଘୋଷଣାରେ ଚୈତ୍ୟପ୍ରାସାଦମାନ ଭଗ୍ନ କଲେ । (୬) ପ୍ରାସାଦଗତ ସ୍ତମ୍ଭ ଉତ୍‌ପାଟନ କରି ଶତାବଧି ଚୈତ୍ୟପାଳମାନଙ୍କୁ ନିହତ କଲେ । ସେହିକ୍ଷଣି ସଂଘର୍ଷଣଜନିତ ବହ୍ନି ସଂଯୋଗରେ ପ୍ରାସାଦମାନ ଦଗ୍ଧ ହେଲା । (୭)

ଅତଃପର ଚତୁଶ୍ଚତ୍ୱାରିଂଶ ସର୍ଗଠାରୁ ଚାରିଗୋଟି ସର୍ଗରେ ଉକ୍ତ ଅଛିକି ଜମ୍ବୁମାଳୀ, ଅମାତ୍ୟ ପୁତ୍ର ସପ୍ତଜଣ, ବିରୂପାକ୍ଷାଦି ପଞ୍ଚସେନାପତି ଏବଂ ଅକ୍ଷକୁମାର, ଏମାନେ କ୍ରମଶଃ ଯୁଦ୍ଧାର୍ଥେ ଆସି ମାରୁତିଙ୍କ ହସ୍ତରେ ପ୍ରାଣମରୁତ ଛାଡ଼ିଗଲେ । ଏମାନଙ୍କ ମଧ୍ୟରୁ ଅକ୍ଷକୁମାର ଯୁଦ୍ଧଖେଳାର ବର୍ଣ୍ଣନା ବିସ୍ତୃତ ଅଛି । ଏସ୍ଥଳେ ଦାସଙ୍କ ଲେଖାରେ ଟିକିଏ ଭ୍ରାନ୍ତି ଥିବା ଜଣାଯାଏ । ଏହି ଭ୍ରାନ୍ତି କି ଦାସଙ୍କର କିମ୍ବା ଅନୁଲେଖକଙ୍କର ? ଠିକ୍ ଜାଣି

---

(୧) ଛାପା ପୁସ୍ତକରେ ୩୨ ପୃଷ୍ଠା ପଢ଼ନ୍ତୁ ।

(୨) ତେଷାମଶୀତି ସାହସ୍ରଂ କିଂକରାଣାଂ ତରସ୍ୱିନାମ୍ ।
ନିର୍ଯଯୁର୍ଭବନାଦ୍ ତସ୍ମାଦ୍ କୂଟମୁଦ୍‌ଗରପାଣୟଃ । ୪୨ ସ. ୨୫ ଶ୍ଳୋ

(୩) ଛାପା ପୁସ୍ତକରେ ୩୭ ସପ୍ତତ୍ରିଂଶ ପୃଷ୍ଠା ଦେଖନ୍ତୁ ।

(୪) ଛାପା ପୁସ୍ତକରେ ୩୩, ୩୪ ପୃଷ୍ଠା ପଢ଼ନ୍ତୁ ।

(୫) ସଂଦିଷ୍ଟୋ ରାକ୍ଷସେନ୍ଦ୍ରେଣ ପ୍ରହସ୍ତସ୍ୟ ସୁତୋ ବଲୀ ।
ଜମ୍ବୁମାଲୀ ମହାଦଂଷ୍ଟ୍ରଃ ନିର୍ଜଗାମ ଧନୁର୍ଧରଃ । ୪୪ସ. ୧ ଶ୍ଳୋ

(୬) ୪୩ ସର୍ଗ ପାଠ କରନ୍ତୁ ।

(୭) ତତ୍ର ଚାଗ୍ନିଃ ସମଭବଦ୍ ପ୍ରାସାଦଶ୍ଚାପ୍ୟଦହ୍ୟତ । ୪୩ ସ. ୧୮ ଶ୍ଳୋ

ହେଉନାହିଁ । ଏଥିରେ ପ୍ରହସ୍ତ ଓ ଜମ୍ବୁମାଳି ଦୁହେଁ ଯୁଗପଦ୍ ଯୁଦ୍ଧାର୍ଥ ଆସିଥିବା ଲେଖାଅଛି । (୧) ତଥାଚ କିଙ୍କରଗଣ ଆଉ ଜମ୍ବୁମାଳି ଏ ଦୁହିଙ୍କ ମଧ୍ୟରେ ଶ୍ୟାଳକଗଣ ଯୁଦ୍ଧାର୍ଥ ଆସି ନିହତ ହେଲେ ବୋଲି ମଧ ଲେଖାଅଛି । ପରଂତୁ ଚୈତ୍ୟପାଳମାନଙ୍କ ନିଧନର କଥା ଲେଖାନାହିଁ । ବୋଧହୁଏ, ଅନୁମାନତଃ ବା ଆନୁମାନିକ ପ୍ରମାଣରେ ବିଶ୍ୱାସ କରିବାକୁ ହୁଏ, ଚୈତ୍ୟପାଳ ଏହି ପଦଟି ସର୍ବାଦୌ ଅନଭିଜ୍ଞ ଅନୁଲେଖକଙ୍କ ଲେଖାରେ ଶାଳା ଓ ଶାଳକ ହୋଇଯାଇଥାଇପାରେ । ସୁତରାଂ ମୂଳ ଗ୍ରନ୍ଥରେ ଶାଳକମାନଙ୍କର ଯୁଦ୍ଧାଗମନ କଥା ଅଦୌ ଉକ୍ତ ନାହିଁ । ବଳରାମ ଦାସଙ୍କ ରାମାୟଣରେ ମାରୁତି ସଂଗେ ସମର କରିବାପାଇଁ ପ୍ରଥମେ କିଙ୍କରଗଣ, ତାପରେ ଶାଳକଗଣ, ତାପରେ ପ୍ରଶସ୍ତ ଓ ଜମ୍ବୁମାଳି ଆସିଥିବା ଲେଖାଅଛି । ରାବଣ ପ୍ରହସ୍ତ ବା ପ୍ରଶସ୍ତ ଓ ଜମ୍ବୁମାଳିଙ୍କ ନିଧନ ଶୁଣି ସଭାର ପୂର୍ବୋକ୍ତ ନୃତ୍ୟ ବନ୍ଦ କରାଇ ଦେଲେ । ଏଥିରୁ ଜଣାଯାଉଛି, ଏ ପର୍ଯ୍ୟନ୍ତ ସଭାରେ ନୃତ୍ୟକ୍ରିୟା ଲାଗିଥିଲା । (୨) ତାପରେ ପଞ୍ଚସେନାପତିଙ୍କ ଅଭିଯାନ, ଏମାନଙ୍କ ନାମ ଏଥିରେ ଠିକ ମୌଳିକ ନୁହେ । ତାପରେ ଅକ୍ଷୟ କୁମାରଙ୍କ ଅଭିଯାନ, ମୂଳ ଗ୍ରନ୍ଥରେ ଏହାଙ୍କ ନାମ ଅକ୍ଷ । ରାବଣ ଅକ୍ଷକୁମାରଙ୍କ ନିଧନ ବାର୍ତ୍ତା ଶୁଣି ଦୁଃଖିତାନ୍ତଃକରଣରେ ସଭାସ୍ଥ ବ୍ରହ୍ମାଙ୍କୁ ନିଜର ଦୁଃଖ ଜଣାଇଲେ । ତାହାଙ୍କ ନାରୀ ମହଲରେ ହାଳହୋଳ କ୍ରନ୍ଦନ ରୋଳ ଉଠିବାରୁ ସଭାସ୍ଥ ଅପ୍ସରାମାନେ ସେମାନଙ୍କ ପ୍ରବୋଧନାର୍ଥ ଯାଇଥିଲେ ।

ଅଷ୍ଟଚତ୍ୱାରିଂଶ ସର୍ଗରେ ଇନ୍ଦ୍ରଜିତଙ୍କର ପରାକ୍ରମବିଭୂତିର ପ୍ରକାଶ ବିକଶିତ ହୋଇଅଛି । ଏହି ସନ୍ଦର୍ଭରେ ବଳରାମ ଦାସଙ୍କ ରାମାୟଣରେ ଲେଖାଅଛି କି ଇନ୍ଦ୍ରଜିତଙ୍କ ଆଗମନ ଜାଣି ମାରୁତି ପତ୍ରାନ୍ତରାଳରେ ଲୁଚ୍ଚାୟିତ ରହିଲେ । (୩) ଇନ୍ଦ୍ରଜିତ ତାହାଙ୍କୁ ବହୁ ଅନ୍ୱେଷଣ କଲେ । ତାପରେ ହନୁମାନ ଦେଖା ଦେଇ ସାଧାରଣ ମର୍କଟ ଚେଷ୍ଟା ଦେଖାଇଥିଲେ ବୋଲି ମଧ ଲେଖାଅଛି । ମୂଳଗ୍ରନ୍ଥରେ ମାରୁତିଙ୍କର ନିଲୟନ ଓ ମର୍କଟ ଚେଷ୍ଟା ପ୍ରଦର୍ଶନ ଉକ୍ତ ନାହିଁ । ତଥାପି ଏହି ଚେଷ୍ଟା ପ୍ରଦର୍ଶନ ହନୁମାନଙ୍କର ସ୍ୱାଭାବିକ ନହେଲେ ସୁଦ୍ଧା ସେହି ଜାତିର ସ୍ୱାଭାବିକ ବୋଲି କବି ଏ ସ୍ଥଳେ ପ୍ରକାଶ କରିଅଛନ୍ତି । ଏହି ମର୍କଟ ଚେଷ୍ଟା ଏ ସ୍ଥଳେ ମୂଳରେ ଲେଖା ନାହିଁ, ସତ୍ୟ, କିନ୍ତୁ

---

(୧) ଜମ୍ବୁମାଳି ପ୍ରଶସ୍ତ ଯେ ଏବେଙ୍କି ଅସୁର, ବୋଇଲେ କହ ହେ କାହିଁଗଲା ସେ ବାନର । ୪୦ ପୃ.

(୨) ଏ ସବୁ ଛାପା ପୁସ୍ତକରେ ୪୦, ୪୧, ୪୨ ପୃଷ୍ଠା ଦେଖନ୍ତୁ ।

(୩) ହନୁମାନ ଦ୍ରୋଣା ଖମ୍ଭର ଉପରେ ବସିଥିଲା ।
ପତ୍ର ଗୋଟିକ ଉହାଡ଼େ ଲୁଚିଣ ରହିଲା । ଇତ୍ୟାଦି ୪୮ ପୃ.

ଅନ୍ୟାନ୍ୟ ସ୍ଥଳେ (୧) ଲେଖା ଅଛି । ସେ ଯାହା ହେଉ ଏହି ଦୃଶ୍ୟର ଚିତ୍ରଣକୁ ଦାସେ ପ୍ରତ୍ୟକ୍ଷ ପ୍ରାୟ ଚିତ୍ରିତ କରିଅଛନ୍ତି । (୨) ମାରୁତିଙ୍କର ନିଲୟନକୁ ସୁଦ୍ଧା ଦାସ ମହାଶୟ ସହେତୁକ ମନେକରି ଲେଖିଅଛନ୍ତି । ହନୁମାନଙ୍କର ତାହା ଭୀତି ନିଲୟନ ନୁହେ । ଇନ୍ଦ୍ରଜିତଙ୍କର ଚାତୁର୍ଯ୍ୟ ଓ ଅକାତର୍ଯ କଳନାର୍ଥ ନିର୍ଭୀକ ହୃଦୟରେ ସେ ସାବହିତ ଥିଲେ । ଏହା ବୀରମାନଙ୍କର ଯୁଦ୍ଧ ପ୍ରକ୍ରିୟାର ମାୟିକ ହେଲେ ସୁଦ୍ଧା ପ୍ରତିଭଟ-ବିସ୍ମୟ-ଦାୟକ, ନିରବଦ୍ୟ-ଲକ୍ଷଣ କେବଳ ।

ମହାବୀର ଇନ୍ଦ୍ରଜିତ ହନୁମାନଙ୍କ ପ୍ରତି ସମସ୍ତ ଅସ୍ତ୍ରଶସ୍ତ୍ର ବ୍ୟର୍ଥ ହେଲାରୁ ତାହାଙ୍କୁ ଅବଧ୍ୟ ଜାଣି ପିତାମହଙ୍କ ପ୍ରଦତ୍ତ ଅସ୍ତ୍ରରେ ବଦ୍ଧ କଲେ । (୩) ତଦା ହନୁମାନ ପ୍ରଭୁଙ୍କ ପ୍ରଭାବରୁ ଆପଣା ପ୍ରତି ପିତାମହଙ୍କର ଅନୁଗ୍ରହ ଭାବନା କରି ବିଗତାତ୍ମା ବେଶରେ ନିଚେଷ୍ଟ ପଡ଼ି ରହିଲେ । ସେ ବ୍ରହ୍ମାସ୍ତ୍ରରେ ଆବଦ୍ଧ ରହି ସୁଦ୍ଧା ଭୀତ ବା ବିଚଳିତ ହେଲେ ନାହିଁ । ମୋର ଏହି ଗ୍ରହଣ ଗୁଣପ୍ରଦ ହେବ ବୋଲି ଭାବିଲେ । ରାକ୍ଷସମାନେ ତାହାଙ୍କୁ ଭର୍ତ୍ସନା ପୂର୍ବକ ଶଣ ରଜ୍ଜୁରେ ବାନ୍ଧିନେବାରୁ ଅସ୍ତ୍ରବନ୍ଧନରୁ ସେ ବିମୁକ୍ତ ହେଲେ । କାରଣ ଏତାଦୃଶ ଅସ୍ତ୍ରର ବନ୍ଧନ ଅନ୍ୟ ବନ୍ଧନକୁ ଅନୁବର୍ତ୍ତନ କରେ ନାହିଁ । (୪) ତଥାପି ହନୁମାନ ସେକ୍ଷଣି ନିଜର ଅସ୍ତ୍ରମୁକ୍ତି ଜାଣିପାରି ନାହାନ୍ତି । କିନ୍ତୁ ପରେ ତାହା ଜାଣି ପାରିଲେ (୫) । ରାକ୍ଷସମାନେ କାଷ୍ଠ ଲୋଷ୍ଟ୍ର ପ୍ରହାରରେ ତାହାଙ୍କୁ ରାବଣଙ୍କ ନିକଟକୁ ନେଲେ; ହନୁମାନ ଯେତେବେଳେ ରାବଣଙ୍କ ସଭାକୁ ନୀତ ହେଲେ, ତଦା ତତ୍ର ବ୍ରହ୍ମାଦି

---

(୧) ଆସ୍ଫୋଟୟାମାସ ଚୁଚୁମ୍ବ ପୁଚ୍ଛଂ ନନନ୍ଦ ଚିକ୍ରୀଡ଼ ଜଗୌ ଜଗାମ ।
ସ୍ତମ୍ଭାନରୋହନ୍ ନିପପାତ ଭୂମୌ ନିଦର୍ଶୟନ ସ୍ୱାଂ ପ୍ରକୃତିଂ କପୀନାମ୍ । ୧୦ ସ. ୫୪ ଶ୍ଳୋ

(୨) ଛାପା ପୁସ୍ତକରେ ୫୧ ପୃଷ୍ଠା ଦେଖନ୍ତୁ ।

(୩) ତତଃ ପୈତାମହଂ ବୀରଃ ସୋଽସ୍ତ୍ରମସ୍ତ୍ରବିଦାଂ ବରଃ ।
ସଂଦଧେ ସୁମହାତେଜାସ୍ତଂ ହରିପ୍ରବରଂ ପ୍ରତି । ୪୮ ସ. ୩୭ ଶ୍ଳୋ
ଅଧ୍ୟାତ୍ମରେ ମଧ୍ୟ ଏହାହିଁ ଲେଖାଅଛି । ତତୋ ବ୍ରହ୍ମାସ୍ତ୍ରମାଦାୟ ବଦ୍‌ଧ୍ୱା ବାନର ପୁଙ୍ଗବମ୍ । ନିନାୟ ନିକଟଂ ରାଜ୍ଞଃ ରାବଣସ୍ୟ ମହାବଳଃ । ସୁ.କା. ୩ସ.

(୪) ସ ବଦ୍ଧସ୍ତେନ ବଲ୍କେନ ବିମୁକ୍ତୋଽସ୍ତ୍ରେଣ ବୀର୍ଯ୍ୟବାନ୍ ।
ଅସ୍ତ୍ରବନ୍ଧଃ ସ ଚାନ୍ୟାଂହି ନ ବନ୍ଧମନୁବର୍ତ୍ତତେ । ୪୮ . ୪୯ ଶ୍ଳୋ

ଟୀକା :— ବଲ୍କେନ ତନ୍ତ୍ରନ୍ୟ ରଜ୍ଜ୍ୱୈବବଦ୍ଧଃ ଅସ୍ତ୍ରେଣ ବିମୁକ୍ତଃ । କୁତସ୍ତତ୍ରାହି ଅସ୍ତ୍ରବନ୍ଧୋ ମନ୍ତ୍ରବନ୍ଧଃ ଅନ୍ୟଂ ବନ୍ଧନଂ ନାନୁବର୍ତ୍ତତେ ଇତର ବନ୍ଧନ ସହ ନ ତିଷ୍ଠତି । ତସ୍ମିନ୍ ସତି ମନ୍ତ୍ରବନ୍ଧୋ ନଶ୍ୟତୀତ୍ୟର୍ଥଃ । ଇତି ମହେଶ୍ୱରଦୀକ୍ଷିତ ଟୀକାୟାମ୍ ।

ଅଧ୍ୟାତ୍ମରେ ମଧ୍ୟ ଏହାହିଁ ଲେଖାଅଛି, ଯଥା— ବ୍ରହ୍ମାସ୍ତ୍ରମେନଂ କ୍ଷଣମାତ୍ରସଂଗମଂ କୃତ୍ୱା ଗତଂ ବ୍ରହ୍ମବରେଣ ସତ୍ୱରମ୍ । ଜ୍ଞାତ୍ୱା ହନୁମାନପି ଫଲ୍ଗୁରଜ୍ଜୁଭିଃ ଧୃତୋ ଯଯୌ କାର୍ଯ୍ୟବିଶେଷଗୌରବାତ୍ । ସୁ.କା.୪ସ.

(୫) ଅସ୍ତ୍ରେଣ ହନୁମାନ୍ ମୁକ୍ତୋ ନାତ୍ମାନମବବୁଧ୍ୟତେ ।
କୃଷ୍ୟମାଣସ୍ତୁ ରକ୍ଷୋଭିଃ ତୈଶ୍ଚ ବନ୍ଧୈର୍ନିପୀଡ଼ିତଃ । ୪୮ ସ. ୫୨ ଶ୍ଳୋ

ଦେବତାମାନେ ଉପବିଷ୍ଟ ଥିଲେ, ଇତ୍ୟାଦି କଥା ଯାହାକି ବଳରାମ ଦାସେ ଲେଖି ଅଛନ୍ତି (୧) ତାହା ମୌଳିକ ନୁହେ; କିନ୍ତୁ ତଦା ତତ୍ର କୁଳଶୀଳ ବୃଦ୍ଧମାନେ ଉପବିଷ୍ଟ ଥିଲେ । (୨)

ବଳରାମ ଦାସେ ଲେଖିଅଛନ୍ତି କି ହନୁମାନ ମେଘନାଦ ପ୍ରଣୋଦିତ ନାଗପାଶରେ ଆବଦ୍ଧ ଥିଲେ । (୩) ଏହି ସନ୍ଦର୍ଭକୁ ପବନଙ୍କ କ୍ରୋଧରୁ ଦେବତାମାନେ ପାବନିକୁ ବର ପ୍ରଦାନ କରିଥିବା ପ୍ରଭୃତି କଥାମାନ ବ୍ରହ୍ମା ଇନ୍ଦ୍ରଙ୍କୁ କହିଲେ । ସେ ପୁଣି ତାଙ୍କୁ କହିଲେ ଯେ, ତେତେବେଳେ ମାରୁତି ସୂର୍ଯ୍ୟଙ୍କୁ (ଆକ୍ରମଣ) କରିଥିବାରୁ ଏବେ ପାଶରେ ଆବଦ୍ଧ ହେଲେ; ତଥାପି ଏହିକ୍ଷଣି ଦେଖିବେ, ହନୁମାନ ସମଗ୍ର ଲଙ୍କା ଦଗ୍ଧ କରିଯିବେ । (୪)

ଅତଃପର ମୂଳଗ୍ରନ୍ଥରେ ଊନପଞ୍ଚାଶାଦି ସର୍ଗ ତ୍ରୟରେ ହନୁମାନ ଏବଂ ରାବଣଙ୍କ ନାନା ପ୍ରକାର ପ୍ରଶ୍ନୋତ୍ତରମୂଳକ ଉକ୍ତିପ୍ରତ୍ୟୁକ୍ତିମାନ ବର୍ଣ୍ଣିତ ଅଛି । ହନୁମାନ ରାବଣଙ୍କର ଅଖଣ୍ଡୈଶ୍ୱର୍ଯ୍ୟ ଓ ଶୋଭାସମ୍ପତ୍ତିର ସହିତ ଅବସ୍ଥାନ ଦେଖି ଟିକିଏ ବିସ୍ମିତ ହେଲେ । ରାବଣ ପାବିନୀଙ୍କୁ ଦେଖି ପ୍ରଥମେ ସ୍ୱକୀୟ ଶାପଦାୟକ ନନ୍ଦୀ ବୋଲି ଭାବିଥିଲେ । (୫) ତାପରେ ପ୍ରହସ୍ତଙ୍କ ମୁଖରେ ତାହାଙ୍କୁ ପଚାରିଲେ କି, 'ତୁ କିଏ ? ଇନ୍ଦ୍ର କୁବେର ବା ଯମଙ୍କର ନୁହେତ ବରୁଣଙ୍କର ଅଥବା ବିଷ୍ଣୁଙ୍କର ଦୂତ କି ? ସତ୍ୟ କହ, ମୁକ୍ତ ହେବୁ । ବନରାଜି ଭାଙ୍ଗିଲୁ କାହିଁକି ? ମୋ ଲୋକଙ୍କୁ ମାରିଲୁ କାହିଁକି ? ତୁ ରୂପରେ ମାତ୍ର ବାନର ଦିଶୁଅଛୁ, ତେଜ ଓଜରେ ତ ବାନର ନୋହୁ ।' ହନୁମାନ କହିଲେ, 'ମୁଁ ଜାତିରେ ବାନର କେବଳ; ମୁଁ ଇନ୍ଦ୍ରାଦିଙ୍କ ଦୂତ ନୁହେ । ମୁଁ ତୁମକୁ ଦେଖିବା ପାଇଁ ବନରାଜି ଭାଙ୍ଗିଲି । ଆତ୍ମରକ୍ଷାର୍ଥ ଅସୁରଙ୍କୁ ନିହତ କଲି । ମୁଁ ଶ୍ରୀରାମଚନ୍ଦ୍ରଙ୍କର ଦୂତ । ରାଜକାର୍ଯ୍ୟରେ ଆସି ଅଛି । ମୋତେ ସୁରାସୁର କେହି ବନ୍ଧ କରି ପାରନ୍ତି । ପିତାମହଙ୍କ ଆଦେଶରେ ମୁଁ ବଦ୍ଧ ହୋଇଅଛି । (୬) ଏଣିକି ବ୍ରହ୍ମାସ୍ତ୍ର ବନ୍ଧନରୁ ମୁକ୍ତହୋଇ ସୁଦ୍ଧା କାର୍ଯ୍ୟ ଉଦ୍ଦେଶ୍ୟରେ ଅସୁରମାନଙ୍କ ପ୍ରହାର ସହି ଅଛି । (୭) ମୁଁ ସୁଗ୍ରୀବଙ୍କ ଠାରୁ

---

(୧) ଛାପା ପୁସ୍ତକରେ ୫୫ ପୃଷ୍ଠା ଦେଖନ୍ତୁ ।

(୨) ଅଥୋପବିଷ୍ଟାନ୍ କୁଳଶୀଳବୃଦ୍ଧାନ୍ ସମାଦିଶଦ୍ ତଂ ପ୍ରତିମନ୍ତ୍ରୀମୁଖ୍ୟାନ୍ । ୪୮ ସ. ୬୧ ଶ୍ଳୋ

(୩) ଇନ୍ଦ୍ରଜିତ ବୋଲେ ଏକେଣିକି ପଳାଇବ ।
ନାଗପାଶ ବନ୍ଧନ କେମନ୍ତେ ଫିଟାଇବ । ୫୨ ପୃ.

(୪) ଛାପା ପୁସ୍ତକରେ ୫୬ ପୃଷ୍ଠାଠାରୁ ୫୮ ପୃଷ୍ଠା ପର୍ଯ୍ୟନ୍ତ ପଢନ୍ତୁ ।

(୫) କିମେଷ ଭଗବାନ୍ନନ୍ଦୀ ଭବେଦ୍ ସାକ୍ଷାଦିହାଗତଃ ୫୦ସ. ୨ ଶ୍ଳୋ

(୬) ୫୦ ସର୍ଗ ପାଠ କରନ୍ତୁ ।

(୭) ବିମୁକ୍ତୋଽପ୍ୟହମସ୍ତ୍ରେଣ ରାକ୍ଷସୈସ୍ତ୍ୱଭି ପୀଡ଼ିତଃ ।
କେନଚିଦ୍ ରାଜକାର୍ଯ୍ୟେଣ ସଂପ୍ରାପ୍ତୋସ୍ମିତବାନ୍ତିକମ୍ । ୫୦ସ. ୧୮ ଶ୍ଳୋ

ଆସିଅଛି । ସୁଗ୍ରୀବ ତ ତୁମର ଭ୍ରାତା ହେବେ । ସେ ତୁମର କୁଶଳ ପଚାରି ଅଛନ୍ତି । (୧) ଏବଂ ସେ କହିଅଛନ୍ତି କି ଦାଶରଥି ରାମ ସୀତାଙ୍କୁ ହରାଇଲା ପରେ ମୋ ସହ ମିତ୍ରତା ସ୍ଥାପନ କରି ବାଳିକୁ ନିହତ କଲେ, ମୋତେ ରାଜା କଲେ । ତୁମେ ତ ବାଳିବୀରଙ୍କୁ ଭଲ ଜାଣ, ଆଉ କହିବି କଣ ? ଏକ୍ଷଣି ସୀତା ଅନ୍ୱେଷଣାର୍ଥ ଦୂତମାନେ ଯାଇଅଛନ୍ତି । ମୁଁ ହନୁମାନ ସମୁଦ୍ର ଲଂଘି ଆସି ତୁମ ଘରେ ସୀତାଙ୍କୁ ଦେଖିଅଛି ।' (୨) ହନୁମାନ ରାବଣଙ୍କୁ ଏତକ କହି ପରସ୍ତ୍ରୀ ହରଣ ଦୋଷମାନ ଅନେକଧା ବୁଝାଇ ଦେଲେ । ସେ ପୁଣି ତାଙ୍କୁ ବୋଇଲେ, ରାମଙ୍କ ଅପ୍ରିୟ କାର୍ଯ୍ୟ କରି ତ୍ରୈଲୋକରେ କେହି ତାହାଙ୍କ ଶରରୁ ମୁକ୍ତିପାଇ ପାରିବ ନାହିଁ । ଅତଏବ ସୀତାଙ୍କୁ ପ୍ରତ୍ୟର୍ପଣ କରିଦିଅ । (୩) ଏହି ସୀତାଦେବୀଙ୍କୁ ଲଙ୍କାବିନାଶିନୀ ତୁମର କାଳରାତ୍ରି ବୋଲି ସ୍ଥିର କର । (୪) ରାମ ଲଙ୍କାକୁ ଭସ୍ମସାତ୍ କରିବାପାଇଁ ମତେ ପ୍ରେରଣ କରିଅଛନ୍ତି । ତାଙ୍କ ସମ୍ମୁଖରେ କି ଦେବୀ କି ଦୈତ୍ୟ କି ଗନ୍ଧର୍ବ ଯକ୍ଷ ରାକ୍ଷସାଦି ବ୍ରହ୍ମାରୁଦ୍ରାଦି ମଧ୍ୟ ତିଷ୍ଠି ପାରିବେ ନାହିଁ । ରାବଣ ଏସବୁ ଶୁଣିଲା କ୍ଷଣି ରକ୍ତାକ୍ତ ଲୋଚନରେ କହିଲେ, 'ଏହି ବାନରକୁ ଶୀଘ୍ର ନିହତ କର ।' (୫)

ଓଡ଼ିଆ ରାମାୟଣରେ ସ୍ଥୂଳତଃ ଏହି କଥାମାନଙ୍କର ଅଭିପ୍ରାୟ କେବଳ ଲେଖାଅଛି । (୬) କିନ୍ତୁ ତତ୍ରତ୍ୟ ଚିତ୍ରଣର କ୍ରମ ଅନ୍ୟ ପ୍ରକାର । ମୂଳ ଗ୍ରନ୍ଥରେ ମାରୁତିଙ୍କର ରାବଣଙ୍କ ସହ କଥୋପକଥନ ଶିଷ୍ଟାଚାର କ୍ରମରେ, ଅପିଚ ଅନୁଦିତ ଭାବରେ ଚାଲିଅଛି । ବଳରାମ ଦାସେ ତାହାକୁ ଟିକିଏ କ୍ରୋଧର ଉତେଜନାଔଦ୍ଧତ୍ୟ ସହ ହନୁମାନଙ୍କ ମୁଖରେ ପ୍ରକାଶ କରାଇ ଅଛନ୍ତି । ମାରୁତିଙ୍କ ମୁଖରେ ବହୁ ବୀରବାଦ କୁହାଇ ତଦୀୟ ମହାବୀରତ୍ୱର ସମ୍ଭୃମ୍ଭଣ କରିଅଛନ୍ତି । ତଥାପି କଥାମାନ ଅସଂଗତ ହୋଇ ନାହିଁ । ଦାସେ ପୁଣି ହନୁମାନଙ୍କ ମୁଖରେ ପ୍ରକାଶ କରିଅଛନ୍ତି କି, ହେ ଲଙ୍କାପତି ! ଶ୍ରୀରାମଚନ୍ଦ୍ର ସ୍ୱୟଂ ତୋତେ କଷ୍ଟ ଦେଇ ନିହତ କରିବାପାଇଁ ସ୍ୱୀକାର କରି ଅଛନ୍ତି । ତାହା ନ ହେଲେ ତୁ ଏକ୍ଷଣି ଜଗତୀ ଉପରେ ଜଗତୀଶ୍ୱର ହୋଇ ବସିଥାଆନ୍ତୁ କି ? ଏହାପରେ ଲେଖାଅଛି, ରାବଣ ମାରୁତିଙ୍କୁ ବୋଇଲେ, ତୁ ତ ଏଡ଼େ ବଡ଼ ବଡ଼ପଣ କରୁଅଛୁ, ତେବେ ବନ୍ଧାରେ ପଡ଼ିଲୁ

(୧) ଭ୍ରାତୁଃ ଶୃଣୁ ସମାଦେଶଂ ସୁଗ୍ରୀବସ୍ୟ ମହାତ୍ମନଃ । ୫୧. ୩ ଶ୍ଳୋ
(୨) ଭ୍ରମତା ଚ ମୟାଦୃଷ୍ଟା ଗୃହେ ତେ ଜନକାତ୍ମଜା । ୫୧ସ. ୧୨ ଶ୍ଳୋ
(୩) ମନ୍ୟସ୍ୱ ନରଦେବାୟ ଜାନକୀ ପ୍ରତିଦୀୟତାଂ । ୫୧ସ. ୨୧ ଶ୍ଳୋ
(୪) ଯାଂ ସୀତେତ୍ୟଭିଜାନାସି ଯେୟଂ ତିଷ୍ଠତି ତେ ବଶେ
କାଳରାତ୍ରିତି ତାଂ ବିଦ୍ଧି ସର୍ବଲଙ୍କାବିନାଶିନୀମ୍ । ୫୧ସ. ୩୫ ଶ୍ଳୋ
(୫) ସସୌଷ୍ଠବୋପେତମଦୀନବାଦିନଃ କପେର୍ନିଶମ୍ୟାପ୍ରତିମୋଽପ୍ରିୟଂ ବଚଃ ।
ଦଶାନନଃ କୋପବିବୃତ୍ତଲୋଚନଃ ସମାଦିଶଦ୍ ତସ୍ୟ ବଧଂ ମହାକପେଃ । ୫୧ସ. ୪୬ ଶ୍ଳୋ ।
(୬) ଛାପା ପୁସ୍ତକରେ ୫୯-୬୨ ପୃଷ୍ଠା ପର୍ଯ୍ୟନ୍ତ ଦେଖନ୍ତୁ ।

କାହିଁକି ? ମାରୁତି ଏହି ଆକ୍ଷେପ ଶୁଣି ସ୍ୱକୀୟ ସୂର୍ଯକ୍ରମଣ ମୂଳକ ପ୍ରାକ୍ତନ କଥାମାନ ସଂକ୍ଷେପତଃ ପ୍ରକାଶ କରି ତାର ସମାଧାନ ଦେଇ ଅଛନ୍ତି । ମୂଳ ଗ୍ରନ୍ଥରେ ହନୁମାନ ରାବଣଙ୍କୁ ନିଜର ସୂର୍ଯାକ୍ରମଣାଦି କଥା କହି ନାହାନ୍ତି । 'ବ୍ରହ୍ମାଙ୍କ ଆଦେଶରେ ମୁଁ ଆବଦ୍ଧ ହେଲି ।' ଏହି ପ୍ରଧାନ କଥାତକ ମାତ୍ର କହିଅଛନ୍ତି । ଦ୍ୱିପଞ୍ଚାଶ ସର୍ଗରେ କ୍ରୋଧମୂର୍ଚ୍ଛିତ ରାବଣ ମାରୁତିଙ୍କ ଯଥାର୍ଥ ପୁନଃ ପୁନଃ ଆଦେଶ ଦେବା, ତଥାଚ ବିଭୀଷଣ ବହୁଧା ରାଜନୀତି ଓ ଧର୍ମନୀତି ପ୍ରଖ୍ୟାପନରେ ନିବାରଣ କରିଥିବାର କ୍ରମ ଉକ୍ତ ଅଛି । (୧) କିନ୍ତୁ ବଳରାମ ଦାସେ ବିଭୀଷଣଙ୍କ ନୀତି ବିକାଶନ ପୂର୍ବକ ନିବାରଣର ଦିଗ୍‌ଦର୍ଶନ ସହିତ ଲେଖି ଅଛନ୍ତି କି, ରାବଣଙ୍କ ଆଦେଶରେ ଅସୁରମାନେ ମାରୁତିଙ୍କୁ ଖଡ୍ଗ ପ୍ରଭୃତି ଶସ୍ତ୍ରରେ ପ୍ରହାର କଲେ, ତଥାପି ତାହାଙ୍କ ଶରୀର କିଞ୍ଚିଦପି ବିକ୍ଷତ ହେଲା ନାହିଁ । ଏ ସ୍ଥଳେ ଆଞ୍ଜେନେୟଙ୍କ ପ୍ରତି ଶସ୍ତ୍ର ପ୍ରହାରର କଥା ମୂଳ ଗ୍ରନ୍ଥରେ ଆଦୌ ଲେଖା ନାହିଁ । ତଥାପି ଦାସେ ଏହି ଶସ୍ତ୍ର ପ୍ରହାର ପ୍ରକ୍ରିୟାକୁ ସମଗ୍ର ଲଙ୍କା ନଗରୀରେ ଉଦ୍‌ଘୋଷିତ ହେଲା ପ୍ରାୟ ଆତତାୟୀଗଣଙ୍କ ବହୁଧା କଟୁକଟାକ୍ଷ କଟୂକ୍ତି ଜାଲରେ ଅତ୍ୟୁତ୍କଟ କରିଅଛନ୍ତି । ତାର ମଧ୍ୟେ ମଧ୍ୟେ ମାରୁତିଙ୍କର ନାନା ପ୍ରକାର ଉକ୍ତିକୁ ମଧ୍ୟ ମିଶାଇ ଅଛନ୍ତି । (୨) ଏହା ମଧ୍ୟରେ ଅନେକ ଅବାନ୍ତର କଥାମାନ ମଧ୍ୟ ଲେଖି ଅଛନ୍ତି । (୩) ଏସବୁ ଯେ କେବଳ ବଳରାମ ଦାସଙ୍କର ଲେଖା, ଏଥିରେ ସମ୍ପୂର୍ଣ୍ଣ ବିଶ୍ୱାସ ହେଉ ନାହିଁ । ଅନୁମିତ ହୁଏ ଅନେକ ଗୁଡ଼ାଏ ପଂକ୍ତି ଅନୁଲେଖକଙ୍କର ପ୍ରକ୍ଷିପ୍ତ ହୋଇଥାଇପାରେ । ମୂଳ ଗ୍ରନ୍ଥରେ ଲେଖାଅଛି କି, ଅସୁରମାନେ ହନୁମାନଙ୍କୁ ରଜ୍ଜୁ ରାଜିରେ ବନ୍ଧନ କଲାକ୍ଷଣି ପ୍ରଯୁକ୍ତ ବ୍ରହ୍ମାସ୍ତ୍ର ଶିଥିଳ ଓ ଅନ୍ତର୍ହିତ ହୋଇଗଲା; କିନ୍ତୁ ଏଥିରେ ଲେଖା ଅଛି, ଏ ପର୍ଯ୍ୟନ୍ତ ହନୁମାନ ଇନ୍ଦ୍ରଜିତଙ୍କ ନାଗପାଶରେ ବଦ୍ଧଥିଲେ । ଏ କ୍ଷଣି ରାବଣୀ ସେହି ଶସ୍ତ୍ରକୁ ବାହାର କରି ନେଲା । (୪) ମୂଳ ତ୍ରିପଞ୍ଚ ସର୍ଗରେ ଲେଖାଅଛି, ରାବଣ ବିଭୀଷଣଙ୍କ କଥା ରକ୍ଷା କରି

(୧) ଅଧ୍ୟାତ୍ମ ରାମାୟଣରେ ମଧ୍ୟ ଏହା ଲେଖାଅଛି । ଏଥିରେ ମାରୁତିଙ୍କ ପ୍ରତି ଶସ୍ତ୍ର ପ୍ରହାର ଉକ୍ତ ନାହିଁ ।
ନିବାରୟାମାସ ତତୋ ବିଭୀଷଣଂ ମହାସୁରଂ ସାୟୁଧମୁଦ୍ୟତଂ ବଧେ । ସୁ.କା. ୪ସ.

(୨) ମାରତିଙ୍କ ପ୍ରତି ନିଧନ ଚେଷ୍ଟାର ଶାଖା ପ୍ରଶାଖାଯୁକ୍ତ କାଣ୍ଡଟି ୬୭ ପୃଷ୍ଠାଠାରୁ ୬୯ ପୃଷ୍ଠା ପର୍ଯ୍ୟନ୍ତ ବଢ଼ିଅଛି ।

(୩) ଏ ସ୍ଥଳେ ରାବଣ ଇନ୍ଦ୍ରଜିତକୁ ଗୁପ୍ତ ଭାବରେ ଯାହା ହିଁ ନିଜର ନନ୍ଦୀ ଆଉ ଅନରଣ୍ୟ ରାଜାଙ୍କ ପ୍ରଦତ୍ତ ଶାପ ଏବଂ ରାମ କର୍ତ୍ତୃକ ତାଙ୍କି ନିଧନ ପ୍ରଭୃତି କଥାମାନ ଲେଖାଅଛି, ସେସବୁ ପୂର୍ବଉକ୍ତ ପଂକ୍ତି ସହ ଠିକ୍ ସୁସଂଲଗ୍ନ ରହି ନାହିଁ । ଏପରି ପଂକ୍ତିଗୁଡ଼ିକ ଅନୁଲେଖକଙ୍କର ପ୍ରକ୍ଷିପ୍ତ ବୋଲି ଅନୁମତି ହୁଏ । ୬୭,୬୮ପୃ.
ପିତା ପୁତ୍ରଙ୍କର ଏହି ଗୁପତ ଭାଳେଣି ।
ଆସ୍ଥାନର ଲୋକ କେହି ନ ପାରିଲେ ଜାଣି । ୬୮ପୃ.

(୪) ଛାପା ପୁସ୍ତକରେ ୬୪ ପୃଷ୍ଠା ପଢ଼ନ୍ତୁ ।

କହିଲେ ଯେ ବାନରମାନଙ୍କର ଲାଙ୍ଗୁଳଟି ଭୂଷଣ ଅଟେ । ତେବେ ଏହାର ଲାଙ୍ଗୁଳ ଦଗ୍ଧ କରନ୍ତୁ । (୧) କିନ୍ତୁ ବଳରାମ ଦାସେ କହି ଅଛନ୍ତି, ହନୁମାନ ନିଜେ ନିଜର ଋଷି ଶାପ ସିଦ୍ଧି, ମୃତ୍ୟୁଭେଦ, ଲାଙ୍ଗୁଳ ଦାହର କଥା ଅସୁରମାନଙ୍କୁ ଜଣାଇ ଦେଇଥିଲେ । (୨) ତାପରେ ମାରୁତିଙ୍କ ଲାଙ୍ଗୁଳ ଦାହର ଯୋଗାଡ଼ ଲାଗିଲା । ଏ ସ୍ଥଳେ ପୁଣି ଦାସେ କହିଅଛନ୍ତି, ରାକ୍ଷସମାନେ ଅଗଣିତ ବସ୍ତ୍ରରାଶି ଆଣି ଯୋଗାଇଲେ ସୁଦ୍ଧା ମାରୁତିଙ୍କ ବିପୁଳ ଲାଙ୍ଗୁଳର ନିଅଣ୍ଟ ହେଲା । ସେ ରାବଣଙ୍କର ଏହି ଅସାମର୍ଥ୍ୟ ଦେଖି ତାହାଙ୍କୁ ବହୁ ଆକ୍ଷେପ କଲେ । ତଦା ଗନ୍ତାଘରରୁ ସଞ୍ଚିତ ଉଚିତ ବସ୍ତ୍ରମାନ ଆନୀତ ହେଲା, ତଥାପି ପର୍ଯ୍ୟାପ୍ତ ହେଲା ନାହିଁ । ତେତେବେଳେ ରାଜାଦେଶରେ ନଗରବାସୀମାନଙ୍କର ଗୃହସଞ୍ଚିତ ଲୁଗାମାନ, ଦାଣ୍ଡଫେରତାମାନଙ୍କର ପରିହିତ ସୂକ୍ଷ୍ମକୂଳଠାରୁ ଜୀର୍ଣ୍ଣଶୀର୍ଣ୍ଣ ବସ୍ତ୍ର ପର୍ଯ୍ୟନ୍ତ ସମସ୍ତ ଢ଼ୁରିମାରି ଅଣାଗଲା, ରାଜାଙ୍କ ଚପରାଶିମାନେ ଦୋକାନମାନଙ୍କରୁ ଫେରତା କାପଡ଼ିଆମାନଙ୍କଠାରୁ ବଳପୂର୍ବକ ରାଶିରାଶି ବସ୍ତ୍ର ଆଣି ଯୋଗାଇଲେ, ସୁତରାଂ ଏଥିପାଇଁ ନଗର ମଧ୍ୟରେ ଘୋଷଣା ଦିଆଗଲା, ନାନା ଗୋଳମାଳ ଉଠିଲା, ନଗରିଯାକ ଏଥିପାଇଁ ହୁଲସ୍ଥୁଲ ହୋଇଗଲା, ଇତ୍ୟାଦି । ଏସବୁ କଥା ମୂଳ ଗ୍ରନ୍ଥରେ ଲେଖା ନାହିଁ । ଏତିକି ମାତ୍ର ଲେଖା ଅଛି, ଅସୁରମାନେ ଲାଙ୍ଗୁଳରେ ବସ୍ତ୍ର ବେଷ୍ଟନ କରୁଁ କରୁଁ ମାରୁତି ନିଜର ଶରୀର ବଢ଼ାଇଦେଲେ । (୩) ଏହି କଥାଟିକୁ ଧରି ଦାସ ମହାଶୟ ତଦନୁଗତ ଏହି କଥା ସବୁ କଳ୍ପନା କରିଅଛନ୍ତି । ଏହା ଅବଶ୍ୟ କେତେକ ଦୂର ସମ୍ଭାବ୍ୟ ହୋଇପାରେ । ଦାସେ ପୁଣି ଲେଖିଅଛନ୍ତି କି– ମାରୁତି ପ୍ରଥମେ ନିଜେ ନିଜର ମୃତ୍ୟୁଭେଦ କହିଦେଇ ପରେ ବିନାଶ ଶଙ୍କାରେ ବୈବସ୍ୱତ ସ୍ମରଣ କରି ରୋଦନ ପୂର୍ବକ କାତରୋକ୍ତି ପ୍ରକାଶ କଲେ । (୪) ତେତେବେଳେ ରାଜସଭାରେ ଉପବିଷ୍ଟ ପବନ ନିଜ ନନ୍ଦନଙ୍କ ଜୀବନ ରକ୍ଷା ନିମନ୍ତେ ରାବଣଙ୍କୁ ବିନୀତ ଅନୁରୋଧ କଲେ ଏବଂ କହିଲେ କି ହନୁମାନ ମୋର ପୁତ୍ର ଅଟନ୍ତି; ବାଳି ଆପଣଙ୍କ ମିତ୍ର ଥିବାରୁ ଏ ପୁଣି ଆପଣଙ୍କର ଭାଗିନେୟ ହେବେ । ଏହାଙ୍କୁ ରକ୍ଷା କରନ୍ତୁ । (୫) ରାବଣ ଆଉ ଇନ୍ଦ୍ରଜିତ ପବନଙ୍କ କଥା ଶୁଣି ଥଟ୍ଟାରେ ଛଳୋକ୍ତି ପ୍ରକାଶ କଲେ ଏବଂ କହିଲେ, ତୁମେ ସବୁ ଦେବତାମାନେ ସିନା ପେଟର ଏକ ପଟରେ ଏ କପଟ ରଖି ବିଦ୍ୱେଷ ଭିଆଣ କରିଅଛ । ଦାସେ ଏସବୁ କଥା କାହିଁରୁ

(୧) କପୀନାଂ କିଲ ଲାଙ୍ଗୁଳମିଷ୍ଟଂ ଭବତି ଭୂଷଣମ୍ ।
ତଦସ୍ୟ ଦୀପ୍ୟତାଂ ଶୀଘ୍ରଂ ତେନ ଦଗ୍ଧେନ ଗଚ୍ଛତୁ । ୫୩ ସ. ୩ ଶ୍ଳୋ.

(୨) ଛାପା ପୁସ୍ତକରେ ୬୯,୭୦ ପୃଷ୍ଠା ପଢ଼ନ୍ତୁ ।

(୩) ସଂବେଷ୍ଟ୍ୟମାନେ ଲାଙ୍ଗୁଳେ ବ୍ୟବର୍ଦ୍ଧତ ମହାକପିଃ, ୫୩ସ.

(୪) ହନୁମାନଙ୍କର ଏହି ଅଯଥା କାତରୋକ୍ତି ୭୦ ପୃଷ୍ଠାରେ ଦେଖନ୍ତୁ ।

(୫) ପବନଙ୍କର ଏହି ଅନୁରୋଧ କଥାମାନ ୭୩ ପୃଷ୍ଠାରେ ଦେଖନ୍ତୁ ।

ଆନୀତ କରି ଅଛନ୍ତି, କିମ୍ବା ଆଶୟାର୍ଥ ମୂଳକ ଆଳଙ୍କାରିକ କଳ୍ପନାରେ ଜଳ୍ପନା କରି ଅଛନ୍ତି ? ଏକ୍ଷଣି ଠିକ୍ ମିଂମାଶୀତ ହୋଇ ନ ପାରେ । ଏହାପରେ ମୌଳିକ କଥା ଏହି, ହନୁମାନ୍ ଭାବିଲେ ମୁଁ ଏହିକ୍ଷଣି ପାଶ ଛିନ୍ନ କରି ଫେର୍ ଏମାନଙ୍କ ନିଧନରେ ଲାଗିବି । (୧) ରାତ୍ରିରେ ଲଙ୍କା ଭଲ କରି ଦେଖିନାହିଁ । ବର୍ତ୍ତମାନ ସମ୍ୟକ୍ ପରିଦର୍ଶନ କରିବି ଇତ୍ୟାଦି । (୨) ତାପରେ ରାକ୍ଷସମାନେ ଶଙ୍ଖ ଭେର୍ଯ୍ୟାଦି ବାଦନ ପୂର୍ବକ ଆବଦ୍ଧ ହନୁମାନଙ୍କୁ ସମଗ୍ର ନଗରିଯାକ ବୁଲାଇଲେ । ଏହି କଥା କେହି ଜଣେ ରାକ୍ଷସୀ ସୀତାଦେବୀଙ୍କୁ ଜଣାଇଲା । ତଦା ଜାନକୀ ଦୁଃଖିତ ଅନ୍ତଃକରଣରେ ଅଗ୍ନିକୁ ଶରଣ କରି ଉପାସନା କଲେ ଏବଂ କହିଲେ, 'ହେ ପାବକ ! ଯଦି ମୋର ପତିଶୁଶ୍ରୁଷାରେ ମନୀଷା ଥାଏ, ଯଦି ମୋର ତପସ୍ୟାର ବଳ ଥାଏ, ଯଦିଚ ମୋର ଏକପତ୍ନିତ୍ୱ, ଯଦିଚ ମୋର ସଦ୍‌ବୃତ୍ତିଶୀଳସମ୍ପନ୍ନତା ଥାଏ, ଯଦି ଚ ସତ୍ୟ ସଙ୍ଗର ମୋ ପତିଙ୍କର ମୋ ପ୍ରତି ସମୁଦ୍ଧରଣ ଇଚ୍ଛା ଥାଏ, ତଥାଚ ଯଦି ମୋର ତାଦୃଶ ଭାଗ୍ୟ ଥାଏ, ତେବେ ଆପଣ ମାରୁତିଙ୍କଠାରେ ଶୀତଳ ହୁଅନ୍ତୁ । (୩) ସେକ୍ଷଣି  ହବ୍ୟ ବାହନ ଶୀତଳ ପ୍ରଦାନରେ ହନୁମାନଙ୍କୁ ପ୍ରଦକ୍ଷିଣ କରି ଜଳିଲେ । ପବନ ପୁଣି ପ୍ରାଲେୟାଚଳ ଶୀତଳତାରେ ବହିଲେ । ମାରୁତି ମନେ ମନେ ଭାବିଲେ, ଅଗ୍ନିତ ଖୁବ୍ ପ୍ରଜ୍ୱଳିତ ଅଛନ୍ତି, ମୋର ଜ୍ୱାଳା ନ ହୋଇ ପ୍ରତ୍ୟୁତ ଶୀତଳତା ବୋଧ ହେଉଅଛି କିପରି ଅଥବା ଶ୍ରୀରାମଙ୍କ ପ୍ରଭାବରୁ ଯେପରି ମୋତେ ମୈନାକ ଆନାକବର୍ଦ୍ଧିତ ହୋଇ ମୋର ସମ୍ଭାବନା କରିଥିଲେ, ଅଗ୍ନି ମଧ ସେପରି କରୁଅଛନ୍ତି; ଅଥବା ରାମଙ୍କ ଦୟାରୁ ଅପିଚ ସୀତାଙ୍କ ଶୁଭାଶିଷ ବଳରୁ ଆଉ ମୋ ଜନକଙ୍କ ବାତ୍ସଲ୍ୟାନୁପ୍ରାଣିତ-ଅକମ୍ପ-ଅନୁକମ୍ପା ବଶରୁ ପାବକ ମୋ ସମ୍ବନ୍ଧେ ନିଜର ଦାହିକାଶକ୍ତି ତ୍ୟାଗ କରି ଅଛନ୍ତି । (୪) ତାପରେ ମାରୁତି ଶରୀର ସଂକୋଚରେ (୫) ପାଶରୁ

---

(୧) ଛିତ୍ୱା ପାଶାନ୍ ସମୁତ୍ପତ୍ୟ ହନ୍ୟାମ୍ୟ ହମିମାନ୍ ପୁନଃ । ୫୩ସ. ୧୨ ଶ୍ଳୋ.

(୨) ରାତ୍ରୌ ନକ୍ଷହି ସୁଦୃଷ୍ଟା ମେ ଦୁର୍ଗକର୍ମବିଧାନତଃ ।
ଅବଶ୍ୟମେବ ଦ୍ରଷ୍ଟବ୍ୟା ମୟା ଲଙ୍କା ନିଶାକ୍ଷୟେ । ୫୩ସ. ୧୫ ଶ୍ଳୋ.

(୩) ଯଦ୍ୟସ୍ତି ପତି ଶୁଶ୍ରୁଷା ଯଦ୍ୟସ୍ତି ଚରିତଂ ତପଃ ଇତ୍ୟାଦି । ୫୩ସ. ୨୯,୩୨ ଶ୍ଳୋ
ଅଧ୍ୟାତ୍ମ ରାମାୟଣରେ ମଧ ଏ କଥା ସୂଚିତ ଅଛି, ଯଥା–
ବାୟୋଃ ପ୍ରିୟସଖିତ୍ୱାଚ୍ଚ ସୀତାୟା ପ୍ରାର୍ଥିତୋଽନଳଃ ।
ନ ଦଦାହ ହରେଃ ପୁଚ୍ଛଂ ସବଭୂବାତ୍ୟନ୍ତଶୀତଳଃ । ସୁ.କା.୪ସ.

(୪) ସୀତାୟାଶ୍ଚାନୃଶଂସ୍ୟେନ ତେଜସା ରାଘବସ୍ୟ ଚ ।
ପିତୁଶ୍ଚ ମମ ସଖ୍ୟେନ ନ ମାଂ ଦହତି ପାବକଃ । ୫୩ସ. ୩୮ ଶ୍ଳୋ.

(୫) ସୂକ୍ଷ୍ମୋ ବଭୂବ ବନ୍ଧେଭ୍ୟଃ ନିଃସୃତଃ ପୁନରପ୍ୟସୌ ।
ବଭୂବ ପର୍ବତାକାରସ୍ତତ ଉଦ୍‌ପ୍ଲୁତ୍ୟ ଗୋପୁରମ୍ । ସୁ.କା.୪ର୍ଥସ. –

ବିମୁକ୍ତ ହୋଇ ଫେର୍ ପର୍ବତାକାର ଧାରଣ ପୂର୍ବକ ତୋରଣ ଦ୍ୱାରରୁ କାଳାୟସପରିଷ୍କୃତ ପରିଘଟାଏ ଧରି ରକ୍ଷୀବର୍ଗଙ୍କୁ ନିସୂଦନରେ ଉପଗତ କଲେ । ତାପରେ ସେ ଲଙ୍କା ଦହନାର୍ଥ ଉଠିଲେ । (୧) ବଳରାମ ଦାସଙ୍କ ରାମାୟଣରେ ମାରୁତିଙ୍କ ପ୍ରତି ସୀତାଙ୍କର ସଦୟାନୁଷ୍ଠାନ ପ୍ରଭୃତିର କଥା ଏ ସ୍ଥଳେ ଲେଖା ନାହିଁ । କାରଣ ଏହାକୁ ସେ ଇତଃପୂର୍ବେ ଅନ୍ୟତ୍ର ଅନ୍ୟଥା ପ୍ରକାଶ କରି ଦେଇ ଅଛନ୍ତି । ଚତୁଃ ପଞ୍ଚାଶ ସର୍ଗରେ ବର୍ଣ୍ଣିତ ଅଛି କି ହନୁମାନ ଅଗ୍ନିଙ୍କ ତୃପ୍ତି ସକାଶେ ଗୃହାଦ୍‌ଗୃହୋପରି ଉପ୍ତିତ ହୋଇ ବିଭୀଷଣଙ୍କ ଗୃହ ଛଡ଼ା ପ୍ରହସ୍ତାଦି ସମସ୍ତ ବୀର (୨) ମାନଙ୍କ ଗୃହାବଳୀ ଦଗ୍ଧ କଲାପରେ ରାବଣଙ୍କ ନିବାସ ପ୍ରଦଗ୍ଧ କଲେ । ରୁଦ୍ର ତ୍ରିପୁର ଦଗ୍ଧ କଲା ସଦୃଶ ରୁଦ୍ର ରୂପୀ ମାରୁତି ସମଗ୍ର ଲଙ୍କା ଭସ୍ମସାତ୍ କରିଦେଲା ପରେ ତତ୍ରତ୍ୟ ଆବାଳବୃଦ୍ଧବନିତାମାନଙ୍କର ନାନା ପ୍ରକାର ଭାବନା ଓ କ୍ରନ୍ଦନର ରୋଳ ଉଠିଲା । ଦେବଗଣ ଆଉ ଗନ୍ଧର୍ବାଦିମାନେ ମାରୁତିଙ୍କ ପରାକ୍ରମ ଗାଥା ପାଠରେ ପରିତୁଷ୍ଟ ହେଲେ । (୩)

ବଳରାମ ଦାସେ ଲଙ୍କା ଦହନ ସନ୍ଦର୍ଭରେ କେତେଗୁଡ଼ିଏ ମୂଳାନୁକ୍ତ ଉଦ୍‌ବୃତ କଥା ଲେଖିଅଛନ୍ତି । ଏବଂ ମୌଳିକ ଘଟଣାମାନଙ୍କରୁ କେତେକ ତ୍ୟାଗ କରି ଦେଇଅଛନ୍ତି । ଏହାଙ୍କ ରାମାୟଣରେ ଲେଖାଅଛି, ଲଙ୍କା ଦାହ ସମୟେ ରାବଣ ଅଗ୍ନିଙ୍କ ପ୍ରତି ରୋଷ ପ୍ରକାଶ କଲାରୁ ସେ ନିଜର ନିର୍ବାଣ ସ୍ୱୀକାର କଲେ । ତଦା ପାବନି ଧ୍ୱଜପାଳରୁ ପାବକ ଜନ୍ମାଇଥିଲେ । ତେତିକିବେଳେ ବ୍ରହ୍ମା, ବହ୍ନି ପ୍ରଭୃତି ଦେବତାମାନଙ୍କୁ ହନୁମାନଙ୍କ ଅଂଗବିଶେଷରେ ପ୍ରତିଷ୍ଠିତ କରିଥିଲେ । ସେ ପୁଣି ଲେଖିଅଛନ୍ତି କି, ହନୁମାନଙ୍କର ଏହି କପୋଳାନଳ ପ୍ରଜ୍ୱଳନ ସମୟରେ ପବନପୁତ୍ରଙ୍କ ସାହାଯ୍ୟ କରଣାର୍ଥ ବହମାନ ହେଲାରୁ ରାବଣ ଅଭିମାନତଃ ତଦୀୟ ଜନ୍ମ ବୃତ୍ତାନ୍ତ ଉଦ୍‌ଘୋଷଣରେ ଦୋଷାରୋପଣ କଲେ । ତଦା ପବନ ରାବଣଙ୍କୁ ମାୟିକ ଆଶ୍ରୟରେ କହିଲେ, 'ଆପଣ କଣ ଜାଣୁ ନାହାନ୍ତି, ଆପଣଙ୍କ ହିତ ପାଇଁ ନିହିତ ଅଗ୍ନିକୁ ନିହତ କରିବାକୁ ମୁଁ ପ୍ରବଳ ବହୁଅଛି ।' ଏକଥାରେ ଭ୍ରଷ୍ଟମତି ରାବଣ ତୁଷ୍ଟ ହୋଇ ନେଦିଷ୍ଟକୁ ଯାଇ କହିଲେ, 'ହେଉ ତେବେ, ଆପଣ ନିଜର ଇଷ୍ଟପୁତ୍ର ମାରୁତିଙ୍କୁ ମଧୁମିଷ୍ଟ କଥାରେ ଘେନି ଆସି ମୋର କଷ୍ଟ ନଷ୍ଟ କର । ମୁଁ ତା'ର ଦୋଷ କ୍ଷମା କରି ଇନ୍ଦ୍ରଜିତ ସଙ୍ଗେ ମିତ୍ରତା ସ୍ଥାପନ କରାଇବି, ତାକୁ ଅନେକ ସୁଖ ସମ୍ପଦ ଦେବି । ମୁଁ ଇନ୍ଦ୍ରଜିତ ନାମରେ ଶପଥ କରି କହୁଅଛି ମାରୁତିକୁ ଅଯୋଧ୍ୟାରେ

---

(୧) ସ ତାନ୍ ନିହତ୍ୱା ରଣଚଣ୍ଡବିକ୍ରମଃ ସମୀକ୍ଷମାଣ ପୁନରେବ ଲଙ୍କାମ୍ ।
ପ୍ରଦୀପ୍ତ-ଲାଙ୍ଗୁଳ-କୃତାର୍ଚ୍ଚିମାଳୀ ପ୍ରକାଶିତାଦିତ୍ୟ ଇବାର୍ଚ୍ଚିମାଳୀ । ୫୩ସ.୪୪ଶ୍ଳୋ.

(୨) ଏ ସ୍ଥଳେ ରାବଣଙ୍କ ପ୍ରିୟ ମହାବୀରମାନଙ୍କର ଏକୋନତ୍ରିଂଶ ଗୋଟି ନାମ ପ୍ରଦତ୍ତ ଅଛି ।

(୩) ଦେବାଶ୍ଚ ସର୍ବେ ମୁନିପୁଙ୍ଗବାଶ୍ଚ ଗନ୍ଧର୍ବବିଦ୍ୟାଧରକିନ୍ନରାଶ୍ଚ ।
ଭୂତାନି ସର୍ବାଣି ମହାନ୍ତି ତତ୍ର ଜଗ୍ମୁଃ ପରାଂ ପ୍ରୀତିମତୁଲ୍ୟରୂପାମ୍ । ୫୪ସ. ୫୦ଶ୍ଳୋ ।

ନୃପତି କରିବି ।' ପବନ ରାବଣଙ୍କୁ ଉତ୍ତର ଦେଲେ, 'ପ୍ରଥମତଃ ଆପଣ ତ ଉପରୋଧ ରକ୍ଷା ନ କରି ଅନର୍ଥ ବିପ୍ରଳାପ ଜଳ୍ପନରେ ତାହାଙ୍କର ଅସନ୍ତୁଷ୍ଟ ଜନ୍ମାଇ ଦେଇଅଛନ୍ତି, ବର୍ତ୍ତମାନ ମୋ କଥାରେ ସେ ଶାନ୍ତ ହେଉ ନାହାନ୍ତି ଇତ୍ୟାଦି । (୧) ଏହାପରେ ରାବଣଙ୍କ ଅନୁରୋଧରେ ବ୍ରହ୍ମା ନିଜେ ଆସି ହନୁମାନଙ୍କୁ ଲଙ୍କାଦାହରୁ ନିବର୍ତ୍ତାଇ ଶୀଘ୍ର ରାମଙ୍କ ଛାମୁକୁ ଯିବାପାଇଁ ଆଦେଶ ଦେଲେ ।

ପଞ୍ଚପଞ୍ଚାଶ ସର୍ଗରେ ଲେଖାଅଛି ହନୁମାନ ନିଜର ଲାଙ୍ଗୁଳାଗ୍ନିକୁ ସମୁଦ୍ରରେ ନିର୍ବାପିତ କଲେ । (୨) ସେ ପରେ ପୁଣି ଭାବିଲେ, ସମଗ୍ର ଲଙ୍କା ନଗରୀ ତ ପରିଦଗ୍ଧ ହେଲା, ହାୟ, ଏଥିରେ ସୀତାଦେବୀ ମଧ ଦଗ୍ଧ ହେଲେ କି !! ସେ ଏହି ଚିନ୍ତାରେ ଆତ୍ମାକୁ ଧିକ୍କାର କଲେ, ପ୍ରାଣତ୍ୟାଗ କରିବାର ସଂକଳ୍ପ କଲେ; ଏ ସ୍ଥଳେ କ୍ରୋଧ ପରିତ୍ୟାଜ୍ୟ, ଏ ସମ୍ବନ୍ଧେ ଅନେକଗୁଡ଼ିଏ ପ୍ରମାଣ ମାରୁତିଙ୍କ ମୁଖରେ ଉକ୍ତ ଅଛି । ମାରୁତି ଏହି ଦୁଃଶ୍ଚିନ୍ତାରେ ଚିନ୍ତିତ ଅଛନ୍ତି । ସହସା ତାଙ୍କ ଶରୀରରେ ଶୁଭ ଶକୁନମାନ ପରିଦୃଷ୍ଟ ହେଲା । ସେ ଫେର୍ ଭାବିଲେ, ଅଥବା ଦେବୀ ନିଜର ତେଜୋବଳରେ ନିଜେ ରକ୍ଷିତା ଅଛନ୍ତି । (୩) ଅଗ୍ନିର ତେଜ ଅଗ୍ନିରେ କାର୍ଯ୍ୟକାରୀ ହୋଇ ନ ପାରେ । ରାମଙ୍କ ପ୍ରଭାବ ଓ ସୀତାଦେବୀଙ୍କ ସୁକୃତରୁ ଯେପରି ଅଗ୍ନି ମୋତେ ଦଗ୍ଧ କରିପାରି ନ ଥିଲେ, ସୀତାଙ୍କ ପ୍ରତି ସୁଦ୍ଧା ସେପରି ଅସମର୍ଥ ହୋଇ ଅଛନ୍ତି । ମାରୁତି ଏପରି ଚିନ୍ତାରେ ଦୋଦୁଲ୍ୟମାନମନସ୍କ ଅଛନ୍ତି । ଅଶରୀରିଣୀ ବାଣୀ ତାଙ୍କ କର୍ଣ୍ଣପଥାରୂଢ଼ ହେଲା (୪) । ତାହାର ଅର୍ଥ ଏହି, ସମଗ୍ର ଲଙ୍କା ଦଗ୍ଧ ହେଲା, ତଥାପି ସୀତା ଅକ୍ଷତ ଶରୀରା ଅଛନ୍ତି, ଆମ୍ଭେମାନେ ମନେ କରୁ ଏ ବଡ଼ ଅଦ୍‌ଭୁତ ବ୍ୟାପାର । ତଦା ମାରୁତି ଅସଂଦିଗ୍ଧ ଓ ସାନନ୍ଦମନରେ ସୀତାଦର୍ଶନାର୍ଥ ବାହାରିଲେ । ବଳରାମ ଦାସଙ୍କ ରାମାୟଣରେ ହନୁମାନ ସୀତାଙ୍କ ପ୍ରତି ଦହନ ଆଶଙ୍କାରେ ଯେତେ ଗୁଡ଼ାଏ ଭାବନା କରିଥିଲେ, ତାହାର ଲେଖା ଦେଖାଯାଏ ନାହିଁ । ପରନ୍ତୁ ସେ ଲେଖି ଅଛନ୍ତି, ହନୁମାନ ନିଜର ଲାଙ୍ଗୁଳସ୍ଥିତ ଅଗ୍ନିକୁ ଗର୍ଭସ୍ଥ କରି ଦେଇଥିଲେ । (୫) ଏହାର କାରଣ ଏହା ହିଁ ଅନୁମିତ ଯେ, ଦାସେ

---

(୧) ଛାପା ପୁସ୍ତକରେ ୭୬ ପୃଷ୍ଠା ଦେଖନ୍ତୁ ।

(୨) ଲଙ୍କାଂ ସମସ୍ତାଂ ସଂଦୀପ୍ୟ ଲାଙ୍ଗୁଳାଗ୍ନିଂ ମହାକପିଃ ।
ନିର୍ବାପୟାମାସ ତଦା ସମୁଦ୍ରେ ହରିପୁଂଗବଃ । ୫୫ସ. ୧୦ଶ୍ଳୋ
ତତ ଉଦ୍‌ପ୍ଲୁତ୍ୟ ଜଳଧୌ ହନୁମାନ୍ ମାରୁତାତ୍ମଜଃ ।
ଲାଙ୍ଗୂଳଂ ମଜୟିତ୍ୱାନ୍ତଃ ସ୍ୱସ୍ଥଚିତ୍ତୋବଭୂବ ସଃ । ଇତି ଅଧ୍ୟା, ରା.ସୁ.କା. ୪ସ ।

(୩) ଅଥ ବା ଚାରୁସର୍ବାଙ୍ଗୀ ରକ୍ଷିତା ସ୍ୱେନ ତେଜସା ।
ନ ନଶିଷ୍ୟତି କଲ୍ୟାଣୀ ନାଗ୍ନିରଗ୍ନୌ ପ୍ରବର୍ତ୍ତତେ ୫୫, ୨୩ ଶ୍ଳୋ.

(୪) ଦଗ୍ଧେୟଂ ନଗରୀ ସର୍ବାସାଟ୍ଟପ୍ରାକାରତୋରଣା,
ଜାନକୀ ନ ଚ ଦଗ୍ଧେତି ବିସ୍ମୟୋଽଦ୍ଭୁତମେବ ନଃ । ୫୫ସ. ୩୩ଶ୍ଳୋ.

(୫) ଛାପା ପୁସ୍ତକରେ ୮୦ ପୃଷ୍ଠା ଦେଖନ୍ତୁ ।

ପ୍ରଥମତଃ ଏହି ଅଗ୍ନିକୁ ହନୁମାନଙ୍କର କପାଳ ଜନିତତ୍ୱରୁ ଦୈହିକ ବୋଲି କହିଥିବାରୁ କାର୍ଯ୍ୟାବସାନରେ ତାହାକୁ ଗର୍ଭସ୍ଥ କରାଇ ଦେଇଅଛନ୍ତି ।

ଷଟ୍‌ପଞ୍ଚାଶ ସର୍ଗରେ ଲେଖାଅଛି, ହନୁମାନ ଫେର୍ ଅଶୋକ ବନରେ ସୀତା ଦେବୀଙ୍କୁ ଦର୍ଶନ କଲେ । ସୀତା ଦେବୀ, ମୋତେ ଏଠାରୁ ନେବା ପାଇଁ ଶୀଘ୍ର ନିରପାୟ ଉପାୟ କର୍ତ୍ତବ୍ୟ, ଏହା ଜଣାଇଲାରୁ ମାରୁତି ତାହାଙ୍କୁ ସମାଶ୍ୱାସନ ପୂର୍ବକ କହିଲେ, 'ଅବଶ୍ୟ ଅଚିରେ ଆପଣଙ୍କର ଶଲ୍ୟୋଦ୍ଧାର ହେବ ।' ତଦା ପାବନି ଉତ୍‌ପ୍ଲବନରେ ଅରିଷ୍ଟ ପର୍ବତରେ (୧) ଆରଢ଼ ହେଲେ । (୨) ଏ ସ୍ଥଳେ ଦୃଶ୍ୟ ବର୍ଣ୍ଣନା ସହ ମାରୁତିଙ୍କ ଉତ୍‌ପତନ ବେଗରେ ଅରିଷ୍ଟର ଅଧୋଗତିରିଷ୍ଟ ବର୍ଣ୍ଣିତ ଅଛି ।

ବଳରାମ ଦାସେ ଲେଖିଅଛନ୍ତି, ଅଶୋକ ବନରେ ରାକ୍ଷସୀମାନେ ଫେର୍ ହନୁମାନଙ୍କୁ ଦେଖି ଭୀତିରେ ଅସ୍ତବ୍ୟସ୍ତ ହେଲେ । ସୀତା ଦେବୀ ହନୁମାନଙ୍କୁ ପୂର୍ବଦତ୍ତ ସନ୍ଦେଶମାନ ଫେର୍ ସ୍ମରଣ କରାଇଦେଲେ । ହନୁମାନ ତ୍ରିଜଟାଙ୍କୁ କହିଲେ, ତୁମର ପିତା ମୋର ବଡ଼ ଉପଚିକୀର୍ଷା କରି ଅଛନ୍ତି, ମୁଁ ତାଙ୍କୁ ଲଙ୍କାରେ ନୃପତି କରାଇବି (୩) ଏ କଥାମାନ ମୂଳରେ ଲେଖା ନ ଥିଲେ ସୁଦ୍ଧା ବକ୍ତବ୍ୟ କେବଳ, ଦାସେ ପୁଣି କହିଛନ୍ତି, ହନୁମାନ ଜାନକୀଙ୍କଠାରୁ ବିଦାୟ ନେଇ ସୁବଳୟା ପର୍ବତରେ ଆରୋହଣ କଲେ । (୪)

ସେ ଅରିଷ୍ଟ ପର୍ବତର ନାମ ଦେଇ ନାହାନ୍ତି । ସେ ପୁଣି ଲେଖିଛନ୍ତି, ହନୁମାନ ସବୁ ପର୍ବତରେ ଭବିଷଦ୍ ଅବସ୍ଥାନ ପାଇଁ ଗୁପ୍ତ ସ୍ଥାନମାନ ନିର୍ଦ୍ଧାରିତ କଲେ । ସେହି ରାତ୍ରିରେ ସେହିଠାରେ ସୁଖେ ଅବସ୍ଥାନ କଲେ । ତତ୍ର ପ୍ରବାହିତା ଦେବନଦୀ ସମ୍ବନ୍ଧେ ସେ କହି ଅଛନ୍ତି କି, ଯେତେବେଳେ ଲଙ୍କା ନଗରୀ ପ୍ରତିଷ୍ଠିତା ହେଲା ତଦା ସମାଗତ ଦେବତାମାନେ ଏହି ନଦୀରେ ସ୍ନାନ କରିଥିଲେ । ସେହିଦିନଠାରୁ ଏହାର ନାମ ଦେବନଦୀ ହେଲା । ଏ ସ୍ଥଳେ ଦାସେ ଲେଖିଅଛନ୍ତି, ବ୍ରହ୍ମାଙ୍କ କର୍ତ୍ତୃକ ପ୍ରେରିତ ଅବାରିତକର୍ମା ବିଶ୍ୱକର୍ମା ଏକ ରାତ୍ରି ମଧ୍ୟରେ ସମଗ୍ର ଲଙ୍କା ନଗରିକୁ ପୁନଃ ନବୀକୃତା କଲେ ଏବଂ ରାବଣଙ୍କୁ ଅମୋଘ ଅମୋହ ମଣି ପ୍ରଭୃତିର ପ୍ରଦାନରେ ସନ୍ତୁଷ୍ଟ କଲେ । (୫) ଷଷ୍ଟପଞ୍ଚାଶ ସର୍ଗରେ

---

(୧) ଆରୁରୋହ ଗିରିଶ୍ରେଷ୍ଠମରିଷ୍ଟମରିମର୍ଦ୍ଦନଃ ୫୬ସ. ୯ ଶ୍ଳୋ.
ଏ ସ୍ଥଳେ ଅଧ୍ୟାତ୍ମ ରାମାୟଣରେ ପର୍ବତର ନାମ ଉକ୍ତ ନାହିଁ, ଯଥା : ଜଗାମ ପର୍ବତସ୍ୟାଗ୍ରଂ ଗନ୍ତୁଂ ପାରଂ ମହୋଦଧେଃ । ସୁ.କା. ୫ସ.

(୨) ଛାପା ପୁସ୍ତକରେ ୮୧ ପୃଷ୍ଠାରେ ତ୍ରିଜଟା ପ୍ରତି ମାରୁତିଙ୍କ ଉକ୍ତି ଦେଖନ୍ତୁ ।

(୩) ଛାପା ପୁସ୍ତକରେ ୮୨ ପୃଷ୍ଠା ଦେଖନ୍ତୁ ।

(୪) ଏହିଟି ପୂର୍ବେ ଲେଖା ଅଛି ।

(୫) ଛାପା ପୁସ୍ତକରେ ୮୩ ପୃଷ୍ଠାଠାରୁ ୮୭ ପୃଷ୍ଠା ପର୍ଯ୍ୟନ୍ତ ଦେଖନ୍ତୁ । ଏଥିରେ ପ୍ରୋକ୍ତ ମଣି ସମ୍ବନ୍ଧେ ଦେବତାମାନେ ରାବଣଙ୍କର ଅତ୍ୟନ୍ତ ବିଶିଷ୍ଟ କାଳର ଅନୁକୃତିକୁ ନାନା ପ୍ରକାର ବିଚାର କରି ଅଛନ୍ତି ।

ଲେଖାଅଛି, ମାରୁତି ବ୍ୟୋମମାର୍ଗରେ ସମୁଦ୍ରର ମଧ୍ୟଭାଗକୁ ଯାଇ ଗୌରାବାର୍ଥ ସୁନାଭ ପର୍ବତକୁ ସ୍ପର୍ଶ କଲେ, ତାପରେ ମହେନ୍ଦ୍ର ପର୍ବତ ଦୃଷ୍ଟ ହେଲାରୁ ଘୋର ଗର୍ଜନ କଲେ । ମାରୁତିଙ୍କ ଆନନ୍ଦ ସୂଚକ ସିଂହଗର୍ଜନ ଶୁଣି ସମୁଦ୍ରର ଉତ୍ତରତୀରସ୍ଥ ବୀରମାନେ ଉଦ୍‌ଗ୍ରୀବ ହେଲେ । ଜାମ୍ବବାନ ବୋଇଲେ, ଏହି ଗର୍ଜନ କହି ଦେଉଅଛି, ମାରୁତି କୃତକାର୍ଯ୍ୟ ହେଲେ । ହନୁମାନ ତତ୍ର ଉପଗତ ହୋଇ ସୀତାଙ୍କ ଦର୍ଶନ ଜଣାଇ ଦେଲାରୁ ବାନରବୀରମାନେ ଅମିତାନନ୍ଦତୁନ୍ଦିଳ-ହୃଦୟରେ ସିଂହନାଦ କରି ବୀରଚେଷ୍ଟାରେ ଉନ୍ମତ୍ତ ପ୍ରାୟ ହେଲେ ।

ବଳରାମ ଦାସେ ମାରୁତିଙ୍କ ପ୍ରତ୍ୟାଗମନ କ୍ରିୟାରେ ଲେଖି ଅଛନ୍ତି କି, ହନୁମାନଙ୍କୁ ବ୍ୟୋମସରଣୀରେ କୃତ ସିଂହନାଦ ଓ ହୃଷ୍ଟପୁଷ୍ଟ ଦେଖି ନଳ ବୋଇଲେ ଯେ ହନୁମାନ ଶଙ୍କା ରହିତ ହୃଦୟରେ ଲଙ୍କା ନଗରୀକୁ ଦଗ୍ଧ କରି ଆସୁଅଛନ୍ତି । ଏ ସ୍ଥଳେ ଏହି ଆଶଙ୍କା ହୁଏ ଯେ ଲଙ୍କା ଦାହର କଥା ନଳ ଜାଣିଲେ କିପରି ?

ଅତଃପର ଅଷ୍ଟପଞ୍ଚାଶଠାରୁ ତିନିଗୋଟି ସର୍ଗରେ ହନୁମାନ ପ୍ରଭୃତି ବାନର ବୀରମାନଙ୍କର ଆଳାପ ବର୍ଣ୍ଣିତ ଅଛି । ଜାମ୍ବବାନଙ୍କ ଜିଜ୍ଞାସାରେ ହନୁମାନ ଲଙ୍କାରେ ନିଜର ଆଚରିତ ଚରିତମାନ ଏବଂ ସୀତା ଦୁରବସ୍ଥା ଶୁଣିଲା କ୍ଷଣି, ଏକ୍ଷଣି ରାମଙ୍କ ବିନା ନିଜେ ନିଜେ ଯାଇ ରାବଣଙ୍କୁ ନିହତ କରିବା ପାଇଁ ନଳନୀଳାଦି ବୀରମାନେ ଅଲୌକିକ ପରାକ୍ରମ ପ୍ରକାଶ ପୂର୍ବକ ପ୍ରତିଜ୍ଞା କଲେ ଏବଂ କହିଲେ ସୀତାଙ୍କୁ ନ ଆଣି ଖାଲି ଦେଖି ଆସିଲୁ, ଏକଥା ଶ୍ରୀରାମଙ୍କ ଛାମୁରେ ଜଣାଇବା ଆମ୍ଭମାନଙ୍କ ପକ୍ଷେ କିଛି ଗୌରବର କାର୍ଯ୍ୟ ନୁହେଁ । (୧) ତଦା ଜାମ୍ବବାନ କହିଲେ ପ୍ରଭୁ ରାମଚନ୍ଦ୍ରଙ୍କର ଆଦେଶାନୁଯାୟୀ କାର୍ଯ୍ୟ କରିବା ଆମ୍ଭମାନଙ୍କର ସର୍ବଥା ଉଚିତ । ଏହି ଯେ ଦକ୍ଷିଣଦୂତ ବାନରବୀରମାନଙ୍କର ସ୍ୱତଃ ପ୍ରଣୋଦନରେ ରାବଣ ବଧାର୍ଥ ତାତ୍କାଳିକ ସ୍ୱୈର ପରାକ୍ରମ ପ୍ରକାଶର କ୍ରମ ଦାସଙ୍କ ରାମାୟଣରେ ଲେଖା ନାହିଁ । ଏହାପରେ ଏକଷଷ୍ଟିତମ ସର୍ଗଠାରୁ ତିନିଗୋଟି ସର୍ଗରେ ହନୁମାନ ପ୍ରଭୃତି ବୀରମାନେ ମଧୁବନରେ ଦଧିମୁଖାଦିଙ୍କୁ ପରାଭୂତ କରି ମଧୁପାନ କରିଥିବାର କଥାମାନ ଲେଖାଅଛି । କପି ବୀରମାନେ ଜାମ୍ବବାନଙ୍କ କଥାକୁ ଅନୁମୋଦନ କରି ରାମଦର୍ଶନାର୍ଥ ପ୍ରସ୍ଥାନରେ ଆକାଶକୁ ବିକାଶମାନ କଲେ । ସେମାନେ କ୍ରମଶଃ ସୁଗ୍ରୀବଙ୍କର ଦଧିମୁଖରକ୍ଷିତ ମଧୁବନ ନିକଟରେ ଉପଗତ ହେଲେ । (୨) ତତ୍ର ସହଯାତ୍ରୀ ମଧୁପିପାସୁ ବାନରବୀରମାନଙ୍କ ପ୍ରାର୍ଥନାରେ ଯୁବରାଜ ଅଙ୍ଗଦ ଅନୁମତି ଦେଲାରୁ

---

(୧) ଦୃଷ୍ଟ୍ୱା ଦେବୀ ନଚାନୀତା ଇତି ତତ୍ର ନିବେଦିତୁମ୍ ।
ନଯୁକ୍ତମିବ ପଶ୍ୟାମି ଭବଦ୍‌ଭିଃଃମିତବିକ୍ରମୈଃ । ୬୦ସ. ୨୦ ଶ୍ଳୋ.

(୨) ଅଧ୍ୟାତ୍ମରେ ମଧ୍ୟ ଏହିପରି କେବଳ ଉକ୍ତି ଅଛି । ଯଥା –
ଗଚ୍ଛନ୍ତୋ ଦଦୃଶୁର୍ବୀରାଃ ବନଂ ସୁଗ୍ରୀବରକ୍ଷିତମ୍ । ଇତ୍ୟାଦି । ସୁ.କା.୫ ସ. ।

ସମସ୍ତ ବୀରମାନେ ସେ ବନରେ ପ୍ରବେଶ କରି ବିପୁଳ ଫଳାଦି ଭକ୍ଷଣ ଓ ମଧୁପାନ କଲେ । ବନରକ୍ଷିମାନେ ସେମାନଙ୍କୁ ବହୁଧା ନିବାରଣ କରି ସୁଦ୍ଧା ବିତାଡ଼ିତ ହେଲେ । ହନୁମାନ ପ୍ରଭୃତି ବୀରମାନେ ତତ୍ର ଅପରିମିତ ଆନନ୍ଦର ସହିତ ଆମୋଦପ୍ରମୋଦରେ ମାତି ଯଥେଷ୍ଟ ମଧୁପାନରେ ଉନ୍ମତ୍ତ ହେଲେ । ନିଜେ ଦଧିମୁଖ ଆସି ନିବାରଣ କଲେ ସୁଦ୍ଧା କେହି ତାହାଙ୍କୁ ମାନିଲେନାହିଁ । ଏ ସ୍ଥଳେ ପୁଣି ଲେଖା ଅଛି, ଅଙ୍ଗଦାଦିମାନେ ମଧୁବନର ରକ୍ଷୀବର୍ଗଙ୍କୁ ବାନରପ୍ରକୃତିବଶରୁ ଜାନୁରେ ପ୍ରହାର ପୂର୍ବକ ଅପମାନବେଶ ପ୍ରଦର୍ଶନରେ ଅପମାନିତ ଓ ବିତାଡ଼ିତ କରିଥିଲେ । (୧) ତଦା ଦଧିମୁଖ ସୁଗ୍ରୀବଙ୍କ ଛାମୁକୁ ଯାଇ ଅଙ୍ଗଦାଦିଙ୍କ ପ୍ରତି ଅଭିଯୋଗ କଲେ ଏବଂ ନିଖିଳ ସୌନ୍ଦର୍ଯ୍ୟାଧାର ଆରାମର ଦୁରବସ୍ଥା ଜଣାଇଲେ । ସୁଗ୍ରୀବ ମନେକଲେ ହନୁମାନ ପ୍ରଭୃତି ଅବଶ୍ୟ କୃତକାର୍ଯ୍ୟ ହୋଇ ଅଛନ୍ତି, ତା ନ ହେଲେ ମୋର ମଧୁବନ ଧ୍ୱଂସ କରି ପାରନ୍ତେ ନାହିଁ । ସେ ପୁଣି ଏହି ଆନନ୍ଦର ସମ୍ବାଦ ତକ୍ଷଣେ ସାନୁଜରାମଚନ୍ଦ୍ରଙ୍କୁ ଜଣାଇଲେ ଏବଂ ଦଧିମୁଖଙ୍କୁ ଆଦେଶ ଦେଲେ ଯେ, ଯାଅ ସେମାନଙ୍କୁ ଶୀଘ୍ର ଏଠାକୁ ପଠାଇଦିଅ । ଆମ୍ଭେ ଏହି ଦୋଷକୁ କ୍ଷନ୍ତବ୍ୟ ମନେ କରି ସନ୍ତୋଷ ଲାଭ କରିଅଛୁଁ ।

ଏ ସ୍ଥଳେ ବଳରାମ ଦାସେ ଚରିତକୁ ଟିକିଏ ସଂକ୍ଷିପ୍ତ ଓ ଅନ୍ୟଥା କରି ଏହା ହିଁ ଲେଖି ଅଛନ୍ତି କି, ହନୁମାନ ସମୁଦ୍ର ତୀରରେ ବା ମହେନ୍ଦ୍ରରେ କେବଳ ଅଙ୍ଗଦଙ୍କୁ ମଧୁବନର ଫଳ ଓ ମଧୁ ପ୍ରାର୍ଥନା କରିଥିଲେ । (୨)

ସେ ପୁଣି କହିଅଛନ୍ତି, ଦଧିମୁଖ ସୁଗ୍ରୀବଙ୍କ ଛାମୁରେ ବନଭଙ୍ଗ ବାର୍ତ୍ତା ଜଣାଇବାକୁ ଯାଇ ସେହିଦିନ ତାହାଙ୍କ ଦର୍ଶନ ନ ପାଇ ସେହିଠାରେ  ରହିଗଲେ । (୩) କିନ୍ତୁ ମୂଳ ଗ୍ରନ୍ଥରେ ମଧୁବନ ସଂକ୍ରାନ୍ତ ଏ ସମସ୍ତ ଘଟନା ଏକ ଦିନ ମଧରେ ଘଟିଥିବା ଲେଖାଅଛି । ସେହିକ୍ଷଣି ଦଧିମୁଖ ସୁଗ୍ରୀବଙ୍କଠାରୁ ପ୍ରତ୍ୟାବୃତ୍ତ ହୋଇଥିଲେ । ରାମଦୂତମାନେ ମଧ

---

(୧) ତେଽପି ତୈର୍ବାନରୈର୍ଭୀମୈଃ ପ୍ରତିଷିଦ୍ଧାଦିଶୋରତାଃ ।
ଜାନୁଭିସ୍ତୁ ପ୍ରଘୃଷ୍ଟାଶ୍ଚ ଦେବମାର୍ଗଂ ପ୍ରଦର୍ଶିତା । ୬୨ସ. ୧୨ ଶ୍ଳୋ.
ଜାନୁଭିଃ ପ୍ରକୃଷ୍ଟାଃ, ଜାନୂନ୍ୟବଲମ୍ବ୍ୟ କୃଷ୍ଟା ଇତ୍ୟର୍ଥଃ । ଦେବମାର୍ଗଂ ଅପାନଦ୍ୱାରଂ । ଦେବଶବ୍ଦୋ ବାୟୁବାଚୀ ଉପନିଷଦି ବାୟୁଲୋକେ ଦେ଼ବଲୋକ ଶବ୍ଦ ପ୍ରୟୋଗାତ୍, ଦର୍ଶିତାଃ ଦର୍ଶନଂକାରିତାଃ ଦୃଶେରପସଂଖ୍ୟାନାତ୍ ଅଣି କର୍ତ୍ତୁଃ କର୍ମତ୍ୱଂ । ଣ୍ୟନ୍ତାତ୍ କର୍ତ୍ତୃଣ୍ଣକର୍ମଣଃ ଇତି ତସ୍ୟୈବାଭିଧେୟତ୍ୱଂ ଚ ଇତି ଗୋବିନ୍ଦରାଜୀୟଟୀକାୟାମ୍ ।

(୨) ଛାପା ପୁସ୍ତକରେ ୯୪ ପୃଷ୍ଠା  ପଢ଼ନ୍ତୁ । ଏଥିରେ ସମୁଦ୍ର ତୀରରୁ ମଧୁବନ ପର୍ଯ୍ୟନ୍ତ ଅଙ୍ଗଦାଦିଙ୍କର ପ୍ରସ୍ଥାନଚର୍ଯ୍ୟା ଦୁଇଗୋଟି ପଦ୍ୟରେ ମାତ୍ର ନିଃଶେଷ ହୋଇଅଛି ।

(୩) ୯୬ ପୃଷ୍ଠା ପଢ଼ନ୍ତୁ ।

ସେହିକ୍ଷଣି ରାମଦର୍ଶନାର୍ଥ ଯାଇଥିଲେ । ଅତଃପର ମୂଳଗ୍ରନ୍ଥରେ କାଣ୍ଡାବସାନ ପର୍ଯ୍ୟନ୍ତ ପାଞ୍ଚଗୋଟି ସର୍ଗରେ ଦକ୍ଷିଣଦୂତମାନଙ୍କର ରାମସମାଗମ ଆଉ ସୀତାସନ୍ଦେଶକଥନର କ୍ରମ ବର୍ଣ୍ଣିତ ଅଛି । ସୁଗ୍ରୀବ ଶ୍ରୀରାମଙ୍କୁ ସମାଗତ ଦକ୍ଷିଣଦୂତମାନଙ୍କର କାର୍ଯ୍ୟ ସାଫଲ୍ୟ ଜଣାଇ ଆଶ୍ୱାସିତ କରୁଅଛନ୍ତି, ଏ ସମୟରେ ସେମାନେ ଉପଗତ ହେଲେ । ହନୁମାନ ଶ୍ରୀରାମଙ୍କୁ ସୀତାଦେବୀ ପରିଦୃଷ୍ଟା ହୋଇ ଅଛନ୍ତି, ଜଣାଇଲେ । 'ସୀତା କିପରି ଅଛନ୍ତି ? ମୋ ପ୍ରତି ତାହାଙ୍କର ମନୋବୃତ୍ତି କିପରି ?' ଏହା ଶ୍ରୀରାମ ଜିଜ୍ଞାସା କରନ୍ତେ ଅଙ୍ଗଦାଦିମାନେ ହନୁମାନଙ୍କ ମୁଖକୁ ନିରୀକ୍ଷଣ କଲେ । ସେ ତଦା ରାମଚନ୍ଦ୍ରଙ୍କୁ ସେ ସମସ୍ତ ଗୋଚର କରାଇଲେ । ଏ ସ୍ଥଳେ ହନୁମାନ ରାମଚନ୍ଦ୍ରଙ୍କୁ ଚିତ୍ରକୂଟରେ ସୀତାଙ୍କ ଗଣ୍ଡଦେଶରେ ତାହାଙ୍କ କୃତ ତିଳକର କଥା ମଧ୍ୟ ଜଣାଇଲେ । (୧) ହନୁମାନ ଯେତେବେଳେ ରାମଙ୍କୁ ସୀତାପ୍ରଦତ୍ତ ମଣି ପ୍ରଦାନ କଲେ, ତେତେବେଳେ ରାମ ସୁଗ୍ରୀବଙ୍କୁ ସେହି ମଣିର ପରିଚୟ ଦେଇ ଅଛନ୍ତି କି, ଏହି ଅନର୍ଘ ମଣିଟିକୁ ପାଣିଗ୍ରହଣ ସମୟରେ ମୋର ଶ୍ୱଶୁର ସୀତାଙ୍କୁ ପ୍ରଦାନ କରିଥିଲେ । (୨) ତଥାଚ ପ୍ରଥମେ ଯଜ୍ଞରେ ପରିତୁଷ୍ଟ ଦେବେନ୍ଦ୍ର ମିଥିଳାଧିପଙ୍କୁ ପ୍ରଦାନ କରିଥିଲେ । ଏହାପରେ ହନୁମାନ ରାମଚନ୍ଦ୍ରଙ୍କୁ ସୀତାଙ୍କ କଥିତ କାକାସୁର ଚରିତ ମଧ୍ୟ ଜଣାଇଥିଲେ । ଏ ସ୍ଥଳେ ମୂଳ ସୁନ୍ଦରାକାଣ୍ଡ ସମାପ୍ତ ହୋଇଅଛି ।

ବଳରାମ ଦାସେ ମଧ୍ୟ ପ୍ରାୟଶଃ ଏହି କଥାମାନଙ୍କର ଅଭିପ୍ରାୟ କେବଳ ଲେଖିଅଛନ୍ତି । କିନ୍ତୁ ଦାସେ ଏ ସ୍ଥଳେ ଶ୍ରୀରାମଚନ୍ଦ୍ରଙ୍କର ବିସ୍ମୟ ଜନିତ ଧୈର୍ଯ୍ୟହୀନତାର ସଙ୍ଗେ ସଙ୍ଗେ ମାରୁତିଙ୍କର ପୁରୁଷକାର ପ୍ରକାଶର ଗୋଟିଏ ଚିତ୍ର ଅଙ୍କିତ କରି ଅଛନ୍ତି । (୩) ଏହି ଯେ ମାରୁତିଙ୍କର ଅନ୍ୟନ୍ୟସାମାନ୍ୟ ପୁରୁଷକାରର ଚିତ୍ରଣ, ସଙ୍ଗତ ହୋଇଅଛି । ମାତ୍ର ରାମଙ୍କର ଆକସ୍ମିକ ଅହେତୁକ ଧୈର୍ଯ୍ୟତିରୋଧାନ ତେତେ ସଂଗତ ବୋଧ ହେଉ

---

(୧) ମନଃଶୀଳାୟାସ୍ତିଲକୋ ଗଣ୍ଡପାର୍ଶ୍ୱେ ନିବେଶିତଃ ।
ତ୍ୱୟା ପ୍ରଣଷ୍ଟେ ତିଳକେ ତଂ କିଳ ସ୍ମର୍ତୁମର୍ହସି । ୬୫ସ. ୨୩ ଶ୍ଳୋ.

(୨) ମଣିରତ୍ନମିଦଂ ଦତ୍ତଂ ବୈଦେହ୍ୟାଃ ଶ୍ୱଶୁରେଣ ମେ ।
ବଧୂକାଲେ ଯଥା ବଦ୍ଧଂ ଅଧିକଂ ମୂର୍ଦ୍ଧ୍ନି ଶୋଭତେ । ୬୬ସ. ୪ ଶ୍ଳୋ.
ଅୟଂ ହି ଜଳସଂଭୂତଃ ମଣିଃ ସଜ୍ଜନ ପୂଜିତଃ ।
ଯଜ୍ଞେ ପରମତୁଷ୍ଟେନ ଦତ୍ତଃ ଶକ୍ରେଣ ଧୀମତା । ୬୬ସ. ୫ଶ୍ଳୋ.

(୩) ଏତେ ବୋଲି ଶ୍ରୀରାମ କୋଦଣ୍ଡ ତଳେ ଥୋଇ
ହୃଦୟରେ ଭାବି ଯେ ବିସ୍ମୟମନା ହୋଇ ।
ଶ୍ରୀରାମର ମନକୁ ଜାଣିଣ ହନୁମତ ।
ବୋଇଲା ଅଭରସା ହୋଇଲେ ରଘୁନାଥ, ଇତ୍ୟାଦି ୧୦୪ ପୃଷ୍ଠା ।

ନାହିଁ; କାରଣ ଏ ସ୍ଥଳେ କେତେକ ପଦ୍ୟ ଅନୁଲେଖକଙ୍କ ଲେଖାରେ ଉଠିଯାଇଅଛି । ରାମଙ୍କର ଏହି ବିସ୍ମୟ ଅମୌଳିକ ନୁହେଁ ।  ପାଠକ ପରେ ଦେଖିବେ ମୂଳକଥାକୁ ଅନୁସରି କେବଳ ଦାସେ ଏ ସ୍ଥଳେ ଲେଖିଅଛନ୍ତି । ଏହାପରେ ରାମଚନ୍ଦ୍ର ଲଙ୍କାନିବାସୀ ଅସୁରମାନଙ୍କର ଆଚାରବ୍ୟବହାର ଜିଜ୍ଞାସା କଲାରୁ ମାରୁତି ସେସବୁର ବିବରଣ ଜଣାଇ ଅଛନ୍ତି । (୧) ଅତଃପର ବଳରାମ ଦାସେ ମୂଳ ଲଙ୍କାକାଣ୍ଡରେ ନିହିତ କେତେକ ପାଠକୁ ସୁନ୍ଦରକାଣ୍ଡର ଅନ୍ତର୍ଭୁକ୍ତ କରିଅଛନ୍ତି । ଏହାଙ୍କର ସୁନ୍ଦରକାଣ୍ଡଠାରେ ପାଠ ସେତୁବନ୍ଧ ପରେ ଶ୍ରୀରାମଚନ୍ଦ୍ରଙ୍କର ସୁବଳ ପର୍ବତ ସମାରୋହଣ- ସମାରୋହ ପର୍ଯ୍ୟନ୍ତ ଚାଲିଅଛି ।

ବଳରାମ ଦାସଙ୍କଙ୍କ ମତେ ଅତଃପର ଶ୍ରୀରାମଚନ୍ଦ୍ର ଜାମ୍ବବନ୍ତଙ୍କ ନିର୍ଦ୍ଦିଷ୍ଟ ଶୁଭ ମୁହୂର୍ତ୍ତରେ ଲଙ୍କା ପ୍ରତି ଜୈତ୍ରଯାତ୍ରାର ଯୋଗାଡ଼ କଲେ । ସେ ସର୍ବଶୁଭରେ ମଙ୍ଗଳମୟୀ ସୀତାଦେବୀଙ୍କର ମଙ୍ଗଳାଧାର ରୂପକୁ ମନସା ଚିନ୍ତନ କରି ମଙ୍ଗଳାରୋପଣ ବିଧାନ ବଢ଼ାଇଥିଲେ । (୨)

ମୂଳ ଗ୍ରନ୍ଥର ଯୁଦ୍ଧକାଣ୍ଡର ପ୍ରଥମ ଓ ଦ୍ୱିତୀୟ ସର୍ଗରେ ଲେଖାଅଛି, ଅପାର ପାରାବାରକୁ ଗୋବତ୍ସପଦ ପ୍ରାୟ ଉଲ୍ଲଂଘିତ କରି ଲଙ୍କାରେ ନିଃଶଙ୍କାରେ ଅତିମାନୁଷ- ପୌରଷ ପ୍ରକାଶ ପୂର୍ବକ କୃତକାର୍ଯ୍ୟତା ସହ ନିରାତଙ୍କରେ ସମାଗତ ମହାବୀର ମାରୁତିଙ୍କୁ ଶ୍ରୀରାମଚନ୍ଦ୍ର ପ୍ରଶଂସା ପୂର୍ବକ ସମ୍ମାନିତ କଲାପରେ ସମୁଦ୍ରର ଦକ୍ଷିଣ ତୀରରେ କପିବାହିନୀ କିପରି ଉପଗତ ହେବେ ?, ଏହି ଚିନ୍ତାରେ ବିସ୍ମିତ ହୋଇଥିଲେ । ରାମ ଏପରି ଚିନ୍ତିତ ହେବାରୁ ସୁଗ୍ରୀବ ପୌରଷ ପ୍ରକାଶ ପୂର୍ବକ ତାହାଙ୍କୁ ପ୍ରବୋଧ ଦେଇଥିଲେ ଏବଂ କହିଥିଲେ କି, ହେ ରାମଚନ୍ଦ୍ର ! ସମୁଦ୍ରରେ ସେତୁବନ୍ଧନ କରି  ଯେପରି ଶତ୍ରୁ ବିନିପାତ କରିବୁଁ, ତା'ର ବିଚାର କରନ୍ତୁ । ବଳରାମ ଦାସେ ଇତଃପୂର୍ବେ ଶ୍ରୀରାମଙ୍କ ବିସ୍ମୟ ଆଉ ହନୁମାନଙ୍କର ରାମ ପ୍ରବୋଧନ ମୂଳକ ପୁରୁଷକାର ପ୍ରକାଶର କଥା ଯାହା ସୂଚନା କରିଅଛନ୍ତି, ଏହା ହିଁ ତାର ଅବଲମ୍ବନ । (୩)

---

(୧) ଛାପା ପୁସ୍ତକରେ ୧୦୫ ପୃଷ୍ଠା ଦେଖନ୍ତୁ ।

(୨) ଏହାର ପ୍ରଥମ ସର୍ଗରେ ଉତ୍ତମାଧମ ମଧ୍ୟମ ଭୃତ୍ୟମାନଙ୍କର ସମଧିକ ଲକ୍ଷଣ ଉକ୍ତ ଅଛି । ଏହା ଦାସଙ୍କ ରାମାୟଣରୁ ପାଠକେ ପାଇ ପାରିବେ ନାହିଁ ।
ଅଧ୍ୟାତ୍ମରେ ମଧ୍ୟ ରାମଙ୍କର ମାଲ୍ୟବନ୍ତରେ ଲଙ୍କା ପ୍ରତି ପ୍ରୟାଣଠାରେ ଲଙ୍କାକାଣ୍ଡର ଆରମ୍ଭ ହୋଇଅଛି ।

(୩) ଅଧ୍ୟାତ୍ମ ରାମାୟଣରେ ମଧ୍ୟ ରାମଙ୍କ ଏହି ଚିନ୍ତା ଉକ୍ତ ଅଛି । ଯଥା –
ସମୁଦ୍ରଂ ମନସାସ୍ମୃତ୍ୟା ସୀଦତୀବ ମନୋମମ. ଯୁ.କା. ୧ସ.

ତୃତୀୟ ସର୍ଗରେ ରାମଙ୍କ ଜିଜ୍ଞାସାରେ ପାବନି ଲଙ୍କାନଗରୀସ୍ଥ ଦୁର୍ଗପ୍ରାସାଦ ପ୍ରାକାରାଦିର ଆକାରପ୍ରକାରାଦିର ଲକ୍ଷଣ ଓ ସଂଖ୍ୟା ଜଣାଇଅଛନ୍ତି । ଏସ୍ଥଳେ ପୁଣି ସେ ପ୍ରଭୁଙ୍କୁ ସ୍ୱକୃତ ଲଙ୍କାଦାହର କଥା ମଧ୍ୟ ଗୋଚର କରାଇଅଛନ୍ତି । (୧)

ଚତୁର୍ଥ ଓ ପଞ୍ଚମ ସର୍ଗରେ ଶ୍ରୀରାମଚନ୍ଦ୍ରଙ୍କର ଲଙ୍କା ପ୍ରତି ଚୈତ୍ରଯାତ୍ରାର ବିଧାନ ବର୍ଣ୍ଣିତ ଅଛି । ରାମଚନ୍ଦ୍ର ମାରୁତିଙ୍କ ମୁଖରୁ ଲଙ୍କାର ପରିଚୟ ଶୁଣିଲା କ୍ଷଣି କେବଳ ଅଭିଯାନ କରିଥିଲେ । ରାମ ନୀଳାଦି ସେନାପତିମାନଙ୍କୁ ଅସଂଖ୍ୟ ବାନରବାହିନୀ ସହ ଅଗ୍ରତଃ ଆଉ କେତେକଙ୍କୁ ଆପଣାର ପଶ୍ଚାତ୍ ପ୍ରସ୍ଥାନ କରିବାପାଇଁ ଆଦେଶ ଦେଇଥିଲେ । ରାମ ଓ ଲକ୍ଷ୍ମଣ ଦୁହେଁ ଧୃତିମାନ ହନୁମାନ ଓ କନକାଙ୍ଗଦ ଅଙ୍ଗଦଙ୍କ ପୃଷ୍ଠରେ ଚନ୍ଦ୍ର ସୂର୍ଯ୍ୟ ପ୍ରାୟ ବିରାଜମାନ ହେଲେ । (୨) ସୁଗ୍ରୀବ ଉଦ୍‌ଗ୍ରୀବତାରେ ଶିବିକାରେ ପ୍ରସ୍ଥାନ କଲେ । ଶ୍ରୀମାନ ବଳରାମ ଦାସେ ମଧ୍ୟ ପ୍ରାୟ ଏହାହିଁ ଲେଖି ଅଛନ୍ତି ।

ରାମବାହିନୀ ଦ୍ରୁତଗତିରେ ପ୍ରୟାଣ କରି କ୍ରମଶଃ ଅବିଳମ୍ୱେ ସହ୍ୟାଦ୍ରି ଓ ମଳୟାଦ୍ରି ଅତିକ୍ରମ କଲେ । (୩) ଏସ୍ଥଳେ ଏହି ପର୍ବତମାନଙ୍କର ଦୃଶ୍ୟ ବର୍ଣ୍ଣନା ଲେଖାଅଛି । ସେମାନେ ଏକ ଦିବାରାତ୍ର ପ୍ରୟାଣ କଲାପରେ ମହେନ୍ଦ୍ର ପର୍ବତର ଉପକଣ୍ଠରେ ଯାଇ ଉପଗତ ହେଲେ । (୪) ରାମଚନ୍ଦ୍ର ସମୁଦ୍ରସୌନ୍ଦର୍ଯ୍ୟ ସଂଦର୍ଶନ କୁତୂହଳରେ ତାର

---

(୧) ଅଧ୍ୟାତ୍ମରେ ମଧ୍ୟ ଏ ସ୍ଥଳେ କେବଳ ମାରୁତି ନିଜର ଲଙ୍କାଦାହ କାର୍ଯ୍ୟ ରାମଙ୍କୁ ଜଣାଇ ଅଛନ୍ତି, ଯଥା – ଏବଂ ସ୍ଥିତେଽପି ଦେବେଶ ଶୃଣୁ ମେ ତତ୍ର ଚେଷ୍ଟିତମ୍, ଦଶାନନବଳୌଘସ୍ୟ ଚତୁର୍ଥାଂଶୋ ମୟାହତଃ । ଦଗ୍‌ଧ୍ୱାଲଙ୍କାଂପୁରୀଂ ସ୍ୱର୍ଣ୍ଣପ୍ରାକାରୋ ଧର୍ଷିତା ମୟା । – ଯୁ. କା. ୧ସ.

(୨) ଯାସ୍ୟାମି ବଳମଧ୍ୟେଽହଂ ବଳୌଘମଭିହର୍ଷୟନ୍
ଅଧିରୁହ୍ୟ ହନୁମନ୍ତମୈରାବତମିବେଶ୍ୱରଃ ।
ଅଙ୍ଗଦେନୈଷ ସଂଯାତୁ ଲକ୍ଷ୍ମଣଶ୍ଚାନ୍ତକୋପମଃ ।
ସାର୍ବଭୌମେନ ଭୂତେଶୋ ଦ୍ରବିଣାଧିପତିର୍ଯଥା । ୪ସ. ୧୯, ୨୦ ଶ୍ଳୋ

ଈଶ୍ୱର ଇନ୍ଦ୍ରଃ ସାର୍ବଭୌମେନ ଉତ୍ତର ଦିଗ୍‌ଗଜେନ ଭୂତେଶଃ ଯକ୍ଷେଶଃ ଦ୍ରବିଣାଧିପତିଃ ଧନାଧିପତିଃ କୁବେରଃ ।

(୩) ତତଃ ପାଦପସମ୍ବାଧଂ ନାନାମୃଗସମାଯୁତମ୍ ।
ସହ୍ୟପର୍ବତମାସାଦ୍ୟ ମଳୟଂଚ ମହୀଧରଂ । ୪ସ, ୭୨ ଶ୍ଳୋ
ତତଃ ଦିବାରାତ୍ରାନ୍ତେ ଇତି ଗୋବିନ୍ଦରାଜଃ ।

ତେ ସହ୍ୟଂ ସମତିକ୍ରମ୍ୟ ମଳୟଂ ଚ ତଥା ଗିରୀନ୍, ଆଯୟୁଶ୍ଚାନୁପୂର୍ବେଣ ସମୁଦ୍ରଂ ଭୀମନିସ୍ୱନମ୍ । ଅଧ୍ୟାତ୍ମ ରା. ଯୁ. କା. ୧ସ.

(୪) ସା ସ୍ମ ଯାତି ଦିବାରାତ୍ରଂ ମହତୀ ହରୀବାହିନୀ – ୪ସ. ୭୦ ଶ୍ଳୋ
ମହେନ୍ଦ୍ରମଥ ସଂପ୍ରାପ୍ୟ ରାମୋ ରାଜୀବଲୋଚନଃ
ଅଧ୍ୟାରୋହଦ୍ ମହାବାହୁଃ ଶିଖରଂ ଦ୍ରୁମଭୂଷିତମ୍ । ୪ସ. ୯୫ ଶ୍ଳୋ

ଅଥ ସହ୍ୟ ମଳୟାତିକ୍ରମଣାନନ୍ତରଂ । ସମୁଦ୍ର ଦର୍ଶନାୟ ମହେନ୍ଦ୍ରଶିଖରାରୋହଣ କୁତୂହଳାଦ୍ ମୁକ୍ତମ୍ । ଇତି ଗୋବିନ୍ଦରାଜଃ ।

ଶିଖୋରୋ ପରି ଆରୋହଣ କଲେ । ତତଃପର ସମୁଦ୍ର ବେଳାରେ ସୁଗ୍ରୀବଙ୍କ ଆଦେଶ କ୍ରମେ ସେନା ସନ୍ନିବେଶ କରାଗଲା । ଅସଂଖ୍ୟ ରାମବାହିନୀ ମଧ୍ୟରେ ଅନେକାନେକ ପ୍ରଧାନ ସେନାପତିମାନେ ବିଦ୍ୟମାନ ଥିଲେ ସୁଦ୍ଧା ନୀଳ ସେନାପତିଙ୍କ ନାମ ସର୍ବାପେକ୍ଷା ସୁପ୍ରଧାନତଃ ଉଲ୍ଲେଖ ଅଛି । ସର୍ବତ୍ର ସେନାପ୍ରେକ୍ଷଣ ସ୍ଥଳେ ରାମଚନ୍ଦ୍ର ନୀଳ ସେନାପତିଙ୍କର ତତ୍ତ୍ୱାବଧାନରେ କେବଳ ସେନାସଂପ୍ରେକ୍ଷଣ କରିଅଛନ୍ତି । ଅପିଚ ସମୁଦ୍ର ତୀରରେ ନୀଳଙ୍କଦ୍ୱାରା କେବଳ ସମଗ୍ର ଅନୀକିନୀସନ୍ଦୋହ ସନ୍ନିବେଶିତ ହୋଇଥିବା ଉକ୍ତ ଅଛି । (୧) ମହାଭାରତର କୌରବ ଅନୀକିନୀରେ ଅବନ୍ତୀ ଦେଶଗତ ବିନ୍ଦ ଓ ଅନୁବିନ୍ଦ ନାମକ ମହାବୀରଦ୍ୱୟଙ୍କ ନାମ ଯାଦୃଶ ସାଦରେ ଗୃହୀତ, ରାମାୟଣରେ ରାମବାହିନୀର ଗୋମତୀତୀରାୟାତ ମୈନ୍ଦ ଓ ଦ୍ୱିବିନ୍ଦ ମହାବୀରଦ୍ୱୟଙ୍କ ନାମ ତାଦୃଶ ଆଦରଣୀୟ । ଭାରତର ଅନେକ ସ୍ଥଳେ ଦେଖିବେ "ବିନ୍ଦାନୁବିନ୍ଦା ଚାବନ୍ତୌ" ଏହା ଯେପରି ପୁନଃପୁନ ଯୁଗପଦ୍ ଲେଖାଅଛି, ରାମାୟଣରେ ଦେଖିବେ ସେପରି ଅନେକତ୍ର "ମୈନ୍ଦଶ୍ଚଦ୍ୱିବିଦ ଶ୍ଚୋଭୌ", ଏହା ଲେଖାଅଛି । ଭାରତରେ ଯେପରି ଅନେକତ୍ର "ବିରାଟଂ ବାହିନୀ ପତିଂ" ଲେଖାଅଛି, ରାମାୟଣରେ ସେପରି ବହୁସ୍ଥଳେ "ପ୍ରହସ୍ତଂ ବାହିନୀପତିଂ"ଏହି ବାକ୍ୟ ଲେଖାଅଛି ।

ଶ୍ରୀରାମଚନ୍ଦ୍ରଙ୍କର ମାଲ୍ୟବନ୍ତଠାରୁ ସମୁଦ୍ରର ଉତ୍ତରତୀର ପର୍ଯ୍ୟନ୍ତ ଏହି ଲଙ୍କାଭିଯାନ ସମାରୋହକୁ ବଳରାମ ଦାସେ ନିରାଡ଼ମ୍ବରରେ ଅତି ସଂକ୍ଷିପ୍ତତଃ ନଅଗୋଟି ପଦ୍ୟରେ କେବଳ ସଂପୂର୍ଣ୍ଣ କରି ଦେଇଅଛନ୍ତି । (୨) ପଞ୍ଚମ ସର୍ଗରେ ଉକ୍ତ ଅଛି କି ରାମଚନ୍ଦ୍ର ସୀତାଙ୍କର ସ୍ନେହ ସୌନ୍ଦର୍ଯ୍ୟ ସ୍ମରଣରେ ବହୁବିଳାପ କରିଥିଲେ । ଷଷ୍ଠ ସର୍ଗରେ ଲେଖା ଅଛି କି ଆପେ ହନୁମାନଙ୍କ କୃତ ଉପଦ୍ରବରେ ଉଦ୍ୱେଜିତ ରାବଣ ଦୁଃଖ ଓ ଚିନ୍ତାରେ ବ୍ୟତିବ୍ୟସ୍ତ ହୋଇ ରାକ୍ଷସମାନଙ୍କ ସହ ଭାବିରକ୍ଷାସକାଶେ ଉପଯୁକ୍ତ ମନ୍ତ୍ରଣାକୁ କର୍ତ୍ତବ୍ୟତା ସ୍ଥିର କଲେ । ସପ୍ତମାଦି ସର୍ଗତ୍ରୟରେ ଲେଖାଅଛି କି, ରାକ୍ଷସ ବୀରମାନେ ଏକୈକଶଃ ନିଜ ନିଜର ବୀରତ୍ୱ ମହତ୍ତ୍ୱ ପ୍ରକାଶନରେ, ଅପିଚ ରାବଣଙ୍କର ତ୍ରୈଲୋକ୍ୟ ବିଜୟ ଗାଥା କୀର୍ତ୍ତନରେ ତଦୀୟ ଧୈର୍ଯ୍ୟ ସଂସ୍ଥାପନ ପୂର୍ବକ ଅଖଣ୍ଡ ପ୍ରରୋଚନାରେ ଯୁଦ୍ଧ ପ୍ରବୃତ୍ତିକୁ ବଢ଼ାଇଥିଲେ । କିନ୍ତୁ ବିଭୀଷଣ ଏସବୁ କଥା ଅଯଥା ମନେକରି ଶୀଘ୍ର ସୀତାଙ୍କ ପ୍ରତ୍ୟର୍ପଣାର୍ଥ

---

(୧) ସା ତୁ ନୀଳେନ ବିଧିବଦ୍ ସ୍ୱାରକ୍ଷା ସୁସମାହିତା ।
ସାଗରସ୍ୟୋ ଉରେତୀରେ ସାଧୁ ସା ବିନି ବେଶିତା । ୫ସ. ୧ ଶ୍ଳୋ
ସ୍ୱାରକ୍ଷା ଆସମନ୍ତାଦ୍ ରକ୍ଷନ୍ତୀତ୍ୟାରକ୍ଷାଃ ଶୋଭନାଃ ଆରକ୍ଷାଃ ଯସ୍ୟାଃ ସା ତଥୋକ୍ତା । ସୁସମାହିତା ନିରାକୁଳା, ଇତି ଗୋବିନ୍ଦରାଜଃ ।

(୨) ଛାପା ପୁସ୍ତକରେ ୧୦୭ ପୃଷ୍ଠା ପଢ଼ନ୍ତୁ ।

ବହୁ ନୈତିକ ବାକ୍ୟମାନଙ୍କରେ ଅଗ୍ରଜଙ୍କୁ ସାଦରେ ଅନୁରୋଧ କରିଥିଲେ । (୧) ତଥାପି ରାବଣ ବିଭୀଷଣଙ୍କ ବାକ୍ୟମାନ କର୍ଣ୍ଣଶଲ୍ୟ ମନେକରି ଗୃହାଭ୍ୟନ୍ତରକୁ ବାହାରିଗଲେ । ଦଶମ ସର୍ଗର ପାଠ ଏହି ଯେ ପରଦିନ ବିଭୀଷଣ ରାବଣଙ୍କ ଗୃହକୁ ଯାଇ କହିଲେ କି, ବର୍ତ୍ତମାନ ଯେ ଦୁର୍ନିମିତ୍ତମାନ ଦେଖାଯାଉଛି (୨) ଏହାର ପ୍ରାୟଶ୍ଚିତ୍ତ ସ୍ୱରୂପ ସୀତାଙ୍କୁ ପ୍ରତ୍ୟର୍ପଣ କଲେ ସର୍ବଥା ଆମ୍ଭମାନଙ୍କର ମଙ୍ଗଳ ହେବ । ମାତ୍ର ରାବଣ ଅଖର୍ବଗର୍ବ ପ୍ରକାଶ ପୂର୍ବକ ସେଥିରେ ଅସମ୍ମତ ହେଲେ ।

ଅତଃପର ମୂଳ ଏକାଦଶ ସର୍ଗଠାରୁ ପଞ୍ଚଦଶ ସର୍ଗ ପର୍ଯ୍ୟନ୍ତ ସର୍ଗ ପଞ୍ଚକରେ କୁମ୍ଭକର୍ଣ୍ଣ (୩) ବିଭୀଷଣ ପ୍ରହସ୍ତାଦି ବୀର ଓ ମନ୍ତ୍ରୀମାନଙ୍କ ସହ ମନ୍ତ୍ରଣା ସଭାରେ ଉପବିଷ୍ଟ ଲଙ୍କେଶ୍ୱରଙ୍କର ସମୁପଗତ ବିପଦର ମୀମାଂସାପୂର୍ବକ କର୍ତ୍ତବ୍ୟ ନିର୍ଦ୍ଧାରଣର କ୍ରମ ସବିସ୍ତର ବର୍ଣ୍ଣିତ ଅଛି । ରାବଣ ପ୍ରଥମତଃ ପ୍ରହସ୍ତଙ୍କୁ ଆଦେଶିଲେ କି, ଅତି ସାବଧାନତା ସହ ନଗରରକ୍ଷାର ବିଧାନ କର । ତାପରେ ସେ ସଭ୍ୟମାନଙ୍କୁ ପଚାରିଲେ କି, ଏକାକୀ ହନୁମାନ ଆସି ତ ଯାହା କରିଅଛି, ବର୍ତ୍ତମାନ ସବାହିନୀକ ସାନୁଜ ରାମ ଆସିଲେଣି, କି ନିରପାୟ ଉପାୟ କଲେ ସୀତା ପ୍ରତ୍ୟର୍ପଣ ବିନା ରାମନିରସନ କରାଯାଇପାରେ ? କୁମ୍ଭକର୍ଣ୍ଣ ସକ୍ରୋଧରେ କହିଲେ, ଆମ୍ଭମାନଙ୍କର ପରାମର୍ଶ ବିନା ଆପଣ ମହାବୀର ରାମଚନ୍ଦ୍ରଙ୍କର ସହିତ ବୈର ସ୍ଥାପନ କରି ଦୈବବଳରୁ କେବଳ ଜୀବିତ ଅଛନ୍ତି । (୪)

---

(୧) ପୁରା ଶରତ୍ସୂର୍ଯ୍ୟମରୀଚିସନ୍ନିଭାନ୍ ନବାଗ୍ରପୁଂଖାନ୍ ସୁଦୃଢ଼ାନ୍ ନୃପାତ୍ମଜଃ ।
ସୃଜତ୍ୟମୋଘାନ୍ ବିଶିଖାନ୍ ବଧାୟ ତେ ପ୍ରଦୀୟତାଂ ଦାଶରଥାୟ ମୈଥିଳୀ ।
ତ୍ୟଜାଶୁ କୋପଂ ସୁଖଧର୍ମନାଶନଂ ଭଜସ୍ୱ ଧର୍ମଂ ରତିକୀର୍ତ୍ତିବର୍ଦ୍ଧନମ୍ ।
ପ୍ରସୀଦ ଜୀବେମ ସପୁତ୍ରବାନ୍ଧବାଃ ପ୍ରଦୀୟତାଂ ଦାଶରଥାୟ ମୈଥିଳୀ ଇତ୍ୟାଦି । ୯ସ. ୨୨/ ୨୩ ଶ୍ଳୋ

(୨) ତଦେବଂ ପ୍ରସ୍ତୁତେ କାର୍ଯ୍ୟେ ପ୍ରାୟଶ୍ଚିତ୍ତମିଦଂ କ୍ଷମମ୍ ।
ରୋଚୟେ ଯଦି ବୈଦେହୀ ରାଘବାୟ ପ୍ରଦୀୟତାମ୍ । ୧୦ସ. ୨୨ ଶ୍ଳୋ

(୩) ଷଟ୍‌ମାସ ପର୍ଯ୍ୟନ୍ତ କୁମ୍ଭକର୍ଣ୍ଣ ସୁପ୍ତ ରହିବାର ସମୟ ଏହି ।
ଅୟଂ ହି ସୁପ୍ତଃ ଷଣ୍ମାସାନ୍ କୁମ୍ଭକର୍ଣ୍ଣୋ ମହାବଳଃ ।
ସର୍ବଶସ୍ତ୍ରଭୃତାଂ ମୁଖ୍ୟଃ ସ ଇଦାନୀମୁପସ୍ଥିତଃ । ୧୨ ସ. ୧୧ ଶ୍ଳୋ
କୁମ୍ଭକର୍ଣ୍ଣସ୍ୟ ସ୍ୱପ୍ନାଦ୍ ଉତ୍ଥାନମେବ ସୂଚୟତି । ଅୟମିତି । ଷଣ୍ମାସାନିତ୍ୟନ୍ତ ସଂଯୋଗେ ଦ୍ୱିତୀୟା । ଇଦାନୀଂ ସମୁପସ୍ଥିତଃ । ଅତଃ ପୂର୍ବଂ ନାବେଦୟମିତ୍ୟର୍ଥଃ । ଇତି ଗୋବିନ୍ଦରାଜୀୟଟୀକା ।

(୪) ଅଧ୍ୟାତ୍ମ ରାମାୟଣ ଯୁଦ୍ଧକାଣ୍ଡ ଦ୍ୱିତୀୟ ସର୍ଗରେ କୁମ୍ଭକର୍ଣ୍ଣଙ୍କ ଉକ୍ତିରେ ଏହି ଅଭିପ୍ରାୟ କେବଳ ଉକ୍ତ ଅଛି । ଯଥା—
ଆରବ୍ଧଂ ଯଦ୍ ତ୍ୱୟା କର୍ମ ସ୍ୱାତ୍ମନାଶାୟ କେବଳମ୍ ।
ନ ଦୃଷ୍ଟୋଽସି ତଦା ଭାଗ୍ୟାଦ୍ ତ୍ୱଂ ରାମେଣ ମହାତ୍ମନା ।
ଯଦି ପଶ୍ୟତି ରାମସ୍ତ୍ୱାଂ ଜୀବନ୍ନାୟାସି ରାବଣ ଇତ୍ୟାଦି ।

ନିର୍ଗତଜଳର ସେତୁବନ୍ଧନ ତୁଲ୍ୟ ଭୁକ୍ତବସ୍ତୁର ସଦସଦ୍ ବିଚାର ତୁଲ୍ୟ ବର୍ତ୍ତମାନ କର୍ତ୍ତବ୍ୟ ନିର୍ଦ୍ଧାରଣ କରିବାକୁ ଯାଉଅଛନ୍ତି । ଏହାପରେ ପୁଣି ସେହି କୁମ୍ଭକର୍ଣ୍ଣ, ମହାପାର୍ଶ୍ୱ ପ୍ରଭୃତି ବୀରମାନେ ରାମବିନାଶ ନିମନ୍ତେ ନିଜ ନିଜର ଅକ୍ଷୁଣ୍ଣ ସାମର୍ଥ୍ୟ ପ୍ରକାଶନ ପୂର୍ବକ ରାବଣଙ୍କୁ ସମୁତ୍ସାହିତ କଲେ । ପରଂତୁ ବିଭୀଷଣ ରାମଙ୍କର ଅଲୌକିକ ବୀରତ୍ୱର ପ୍ରଖ୍ୟାପନରେ ସୀତାଙ୍କର ପ୍ରତ୍ୟର୍ପଣ ଜଣାଇଲେ । ବିଭୀଷଣ ରାବଣଙ୍କୁ ଆଉ ସଭ୍ୟମାନଙ୍କୁ କେତେକ କଥା ବୁଝାଇ କହିଲା ପରେ ବୋଇଲେ କି, ଯାହା ହେବାର ହେଲାଣି ତ, ଏବେ ହେଲେ ଯେ ପର୍ଯ୍ୟନ୍ତ ନଖାୟୁଧ, ଦଂଷ୍ଟ୍ରାୟୁଧ ଅଗାଧସିନ୍ଧୁ ମେରୁମନ୍ଦରସହୋଦରକାୟ କପିବୀରମାନେ ଲଙ୍କା ବିଧ୍ୱସ୍ତ କରି ନାହାନ୍ତି, ତାଙ୍କର ମଧ୍ୟରେ ସୀତାଙ୍କର ପ୍ରତ୍ୟର୍ପଣ କରାଯାଉ । (୧) ବିଭୀଷଣଙ୍କ ବାଚନାରେ ପ୍ରହସ୍ତ ମନ୍ତ୍ରୀ ଅସଂତୁଷ୍ଟ ପ୍ରକାଶ କଲାରୁ ସେ ପୁଣି ବୋଇଲେ, ଆପଣମାନେ ପାନ-ସ୍ତ୍ରୀ-ମୃଗୟାଦି-ବ୍ୟସନାଭିଭୂତ, କ୍ଷୁଦ୍ର ପ୍ରକୃତିକ ରାଜାଙ୍କର ସାବହିତ୍ୱଥ ଅମିତ୍ର ଥାଇ ମିତ୍ରତୁଲ୍ୟ ନଟନ କରୁଅଛନ୍ତି । ଏତଦ୍‌ଦ୍ୱାରା ଅବଶ୍ୟ ରାକ୍ଷସରାଜଧାନୀର ବିନିପାତ ହେବ, ଇତ୍ୟାଦି (୨) କଥା ଭାବିବାକୁ ଥରେ ମନ ବଳାଉ ନାହାନ୍ତି । ତଦା ଇନ୍ଦ୍ରଜିତ ପୁଣି ବିଭୀଷଣଙ୍କୁ ବୋଇଲେ, 'କନିଷ୍ଠତାତ ! ଆପଣ ଏହି ଜନ୍ମଗ୍ରହଣ କରି ଏପରି କଣ ଭୀତପରି କହୁଅଛନ୍ତି ? ଅପିଚ ଅନ୍ୟମାନଙ୍କୁ ଭୀତ କରାଉଅଛନ୍ତି ।' ତେତେବେଳେ ବିଭୀଷଣ କହିଲେ, 'ବତ୍ସ ! ଅପରିଣତମନସ୍କ ବାଳକ, ଉଚିତ ମନ୍ତ୍ରଣା ଜଣାନାହିଁ, କାର୍ଯ୍ୟାକାର୍ଯ୍ୟ ବୁଝିପାର ନାହିଁ । ଦେଶକାଳାନୁଗତ କର୍ତ୍ତବ୍ୟ ଅବଧାରଣା କରିପାର ନାହିଁ । ମୁଁ ଭଲ କରି ଜାଣିଅଛି, ରାଘବଙ୍କ ଶରରୁ କେହି ମୁକ୍ତି ଲାଭ କରିପାରିବେ ନାହିଁ, ସୀତାଙ୍କୁ ପ୍ରତ୍ୟର୍ପଣ କରି ଆମ୍ଭେମାନେ ସୁଖରେ ରହିବା ।'

ଏହି ମନ୍ତ୍ରଣାସଭା ସଂକ୍ରାନ୍ତ ପଞ୍ଚମସର୍ଗବ୍ୟାପୀ ଚରିତତକ ଦାସଙ୍କ ରାମାୟଣରେ ପୃଥକ୍‌ତଃ ଆଦୌ ଗୃହୀତ ହୋଇନାହିଁ । ମାତ୍ର ଅନ୍ୟତ୍ର ଏହାର ସୂଚନା ଦିଆଯାଇଅଛି । ଏଥିରେ ଲେଖାଅଛି, ରାମଚନ୍ଦ୍ର ସମୁଦ୍ରତୀରରେ ପ୍ରବେଶିବା ମାତ୍ରେ ରାବଣଙ୍କ ଚାରମାନେ ଏହି ସଂବାଦ ଜଣାଇ ଦେଲେ । (୩) ଏ ସ୍ଥଳେ ଦାସେ ଅନାବଶ୍ୟକ ଆଉ ଅପ୍ରାସଙ୍ଗିକ କ୍ରମରେ ଦୂତମାନଙ୍କ ମୁଖରେ ରାବଣଙ୍କ ଛାମୁରେ ଶ୍ରୀରାମଚନ୍ଦ୍ରଙ୍କର

---

(୧) ଯାବନ୍ନ ଲଂକାଂ ସମଭିଦ୍ରବନ୍ତି ବଳୀମୁଖାଃ ପର୍ବତକୂଟଗୋତ୍ରାଃ ।
ଦଂଷ୍ଟ୍ରାୟୁଧାଶ୍ଚୈବ ନଖାୟୁଧାଶ୍ଚ ପ୍ରଦୀୟତାଂ ଦାଶରଥାୟ ମୈଥିଳୀ । ୧୪ସ. ୩ ଶ୍ଳୋ
ଅଧ୍ୟାତ୍ମ ରାମାୟଣ ଯୁଦ୍ଧକାଣ୍ଡ ଦ୍ୱିତୀୟ ସର୍ଗରେ ବିଭୀଷଣ ଉକ୍ତିରେ ଏହା ହିଁ ଲେଖାଅଛି ।

(୨) ୧୪ ସର୍ଗ – ୩ ଶ୍ଳୋକ ଦେଖନ୍ତୁ ।

(୩) ଛାପାରେ ୧୦୭ ପୃଷ୍ଠା ଦେଖନ୍ତୁ ।

ଜନ୍ମାବଧି ହନୁମାନଙ୍କ କର୍ତ୍ତୃକ ଲଙ୍କା ନଗରୀ ଦହନ ପର୍ଯ୍ୟନ୍ତକ ଯାବତୀୟ ରାମଚରିତର ଆମ୍ରେଡ଼ନ କରାଇ ଅଛନ୍ତି । ରାବଣଙ୍କର ଇତଃପୂର୍ବରୁ ପରିଜ୍ଞାତ ଏହି ଚରିତମାନ ଅସ୍ଥାନରେ ଅପୃଚ୍ଛପରିଭାଷଣରେ କାହିଁକି ଜଣାଇବାକୁ ହେବ ? ଏହାର ବିଚାର ସେ କରି ନାହାନ୍ତି । ରାବଣଙ୍କୁ ବାଳିନିଧନ ବାର୍ତ୍ତା ଜଣାଇବା ପାଇଁ ଏସବୁର ଉଲ୍ଲେଖ । ଏହା ସୁଦ୍ଧା କାରଣସ୍ୱରୂପ କୁହାଯାଇ ନ ପାରେ, କାରଣ ଏହା ପୂର୍ବରୁ ଲଙ୍କେଶ୍ୱର ହନୁମାନଙ୍କ ମୁଖରୁ ତାହା ଭଲକରି ଜାଣିପାରିଅଛନ୍ତି । ତଥାପି ରାବଣ ଏ ସ୍ଥଳେ ବାଳି ନିଧନରେ ସନ୍ଦେହ କରିଥିବା ମଧ ଦାସେ ଲେଖିଅଛନ୍ତି ଏବଂ (୧) ଏହା ଯେଉଁ ଦୂତ ଜଣାଇଥିଲା ତାହାର ମୁଣ୍ଡକାଟ ଆଦେଶ ଦେଇ ଅଛନ୍ତି । ଅତଏବ ଏ ସବୁର ଆମ୍ରେଡ଼ନ ଅସଂଗତ ଜଣାଯାଉଅଛି, ଅସ୍ଥାନିକ ଜଣାଯାଉଅଛି । ଦୂତର ମୁଣ୍ଡକାଟ ଆଦେଶ ଶୁଣି ନୀତିମାନ୍ ମତିମାନ୍ ବିଭୀଷଣ ଅନେକଧା ନୈତିକ ବାକ୍ୟମାନ ରାବଣଙ୍କୁ ବୁଝାଇ ଦଣ୍ଡର ପ୍ରତିଷେଧ କରିଅଛନ୍ତି । ଏସ୍ଥଳେ ବିଭୀଷଣ ପୁଣି ରାବଣଙ୍କୁ ଶ୍ରୀରାମଚନ୍ଦ୍ରଙ୍କର ବିଶ୍ୱାମିତ୍ର ସତ୍ରରକ୍ଷା, ସ୍ଥୂଳତାଟକାଦି ବଧ, ପର୍ଶୁରାମ ଗର୍ବ ଖର୍ବୀକରଣ ପ୍ରଭୃତି ବୀରଚରିତମାନ କହି ଆକ୍ଷେପ କରିଅଛନ୍ତି ଏବଂ ସୀତାଙ୍କ ପ୍ରତ୍ୟର୍ପଣ ସକାଶେ ଅନୁରୋଧ କରିଅଛନ୍ତି । କିନ୍ତୁ ରାବଣ ବିଭୀଷଣଙ୍କ କଥାରେ କ୍ରୁଦ୍ଧ ହୋଇ କହିଲେ, 'ମୁଁ କଦାଚ ସୀତାଙ୍କର ପ୍ରତ୍ୟର୍ପଣ କରିବି ନାହିଁ । ତୁମର ଯଦି ଇଚ୍ଛାହୁଏ, ଯାଅ ରାମଚରଣକୁ ଶରଣ କର ।' ତେତିକି ବେଳେ ଅସୁର ବୀରମାନେ ରାମଙ୍କ ନିଧନାର୍ଥ ବୀରବାଦରେ ପ୍ରତିଜ୍ଞା ପ୍ରକାଶ କଲାରୁ ଫେର୍ ବିଭୀଷଣ ଶ୍ରୀରାମଚନ୍ଦ୍ରଙ୍କର ଅନନ୍ୟସାମାନ୍ୟ ପୌରୁଷ ଘୋଷଣାରେ ସେମାନଙ୍କୁ ଆକ୍ଷେପ କଲେ । ରାବଣ ତାହା ଶୁଣି ବିଭୀଷଣଙ୍କୁ ପ୍ରହାର କର..ର୍ଥ ଉଠିଲେ ଏବଂ ମହୀରାବଣଙ୍କଦ୍ୱାରା ତାହାଙ୍କୁ ଲଙ୍କାଗଡ଼ରୁ ବିତାଡ଼ିତ କରିଦେଲେ । (୨) ମୂଳ ଦ୍ୱାଦଶ ସର୍ଗରେ ଲେଖା ଅଛି, କ୍ରୋଧାଭିଭୂତ ଅବିମୃଷ୍ୟକାରୀ ଲଙ୍କାଧିକାରୀ ରାବଣଙ୍କ କର୍ତ୍ତୃକ ବିଭୀଷଣ ଲଙ୍କାରୁ ବିଦୂରିତ ହେଲେ । କାଳପ୍ରେରିତ ରାବଣ ବିଭୀଷଣଙ୍କୁ 'ଜ୍ଞାତିମାନେ ଜ୍ଞାତିର ବିପଦରେ ହୃଷ୍ଟ ହୁଅନ୍ତି' (୩) ଇତ୍ୟାକାରକ କେତେକ କଟୂକଥା

---

(୧) ସତେକି ସେହି ବାଳିକି ମାଇଲାତ ପ୍ରଂସି ।
ଏକଥା ନୁହଇ ବୋଲି ଦଶାନନ ହସି । ଇତ୍ୟାଦି । ୧୦୮ ପୃ.

ଯଥାର୍ଥତଃ ଦାସେ ବାଳିନିଧନ ବାର୍ତ୍ତା ରାବଣଙ୍କୁ ଜଣାଇବାପାଇଁ, କେବଳ ଏସବୁ କଥାର ଉତ୍ଥାପନ କରିଥିବା ଜଣାଯାଏ ।

(୨) ଏସବୁ ୧୦୮ ପୃଷ୍ଠାଠାରୁ ୧୧୨ ପୃଷ୍ଠା ପର୍ଯ୍ୟନ୍ତ ଦେଖନ୍ତୁ ।

(୩) ହୃଷ୍ୟନ୍ତି ବ୍ୟସନେଷ୍ୱେତେ ଜ୍ଞାତୀନାଂ ଜ୍ଞାତୟଃ ସଦା । ୧୬ସ. ୩ ଶ୍ଳୋ

କହି କୁଳପାଂସଳ ବୋଲି ଧିକ୍କାର କରିଥିଲେ । (୧) ସେ ତାଙ୍କୁ ଲଙ୍କାରୁ ବାହାରିଯିବା ପାଇଁ ଅଧିକ ଆଉ କିଛି କହି ନାହାନ୍ତି । କିମ୍ବା ପ୍ରହାର କରି ନାହାନ୍ତି ।

ଏଭଳି ଚିତ୍ରଣ ମୂଳ ଗ୍ରନ୍ଥରେ ଏସ୍ଥଳେ ଦେଖାଯାଏ ନାହିଁ । ବିଭୀଷଣ ଅଗ୍ରଜଙ୍କ ମୁଖରୁ ଧିକ୍କାର ମାତ୍ର ଶୁଣି ଚାରି ମନ୍ତ୍ରୀମାନଙ୍କ ସହ ଆକାଶକୁ ଉତ୍ପତନ କରିଥିଲେ । (୨) ସେ ପୁଣି ଗଗନ ମାର୍ଗରେ ଅବସ୍ଥାନ କରି ଅଗ୍ରଜଙ୍କୁ କେତେକ ଉପଦେଶ ଦେଇଥିଲେ । ସେ ତଦା, 'ମୁଁ ଯାଉଅଛି', ଏହା କହି ଅଗ୍ରଜଙ୍କଠାରୁ ବିଦାୟ ନେଲେ । ସେ ପୁଣି ତାହାଙ୍କୁ କହିଥିଲେ କି, 'ହେ ରାଜନ୍ ! ସର୍ବତ୍ର ସର୍ବଦା ପ୍ରିୟବାଦୀ ମିଳିପାରନ୍ତି କିନ୍ତୁ ଅପ୍ରିୟ ପଥ୍ୟ କଥାର ବକ୍ତା ଓ ଶ୍ରୋତା ସର୍ବତ୍ର ସର୍ବଦା ଦୁର୍ଲ୍ଲଭ । ଆପଣ ଏହା ଜାଣନ୍ତି ନାହିଁ । ରାଜୈଶ୍ୱର୍ଯ୍ୟମତ୍ତ ସମାଜରେ ଏହାର ସଂଚାର ବିରଳ । ଗତାୟୁ ମୃତ୍ୟୁସନ୍ନିହିତ ଲୋକ ସୁହୃଜ୍ଜନ – ସଭା ଜନ-ଗଦିତ ହିତ କଥାମାନ ଶୁଣନ୍ତି ନାହିଁ ।' (୩) ସପ୍ତଦଶ ଓ ଅଷ୍ଟାଦଶ ସର୍ଗରେ ଶରଣପ୍ରାର୍ଥୀ ବିଭୀଷଣ ଗ୍ରାହ୍ୟ କି ଅଗ୍ରାହ୍ୟ ଏହାର ବିଚାର ପରେ ତାହାଙ୍କର ଶ୍ରୀରାମଦର୍ଶନ ପ୍ରାପ୍ତି ନିଗଦିତ ଅଛି । ପ୍ରଥମତଃ ସୁଗ୍ରୀବ ଗଗନାଗତ ବିଭୀଷଣଙ୍କୁ ସର୍ବସାଧାରଣ ଅସୁର ଜ୍ଞାନରେ ତାହାଙ୍କ ନିଧନାର୍ଥ ବାନରମାନଙ୍କୁ ଆଦେଶ ଦେଲେ । ବିଭୀଷଣ ସେକଥା ଶୁଣି ନିଜର ପରିଚୟ, ଆଉ ରାମଙ୍କ ଚରଣରେ ଶରଣାର୍ଥ ଆଗମନ ଜଣାଇଲେ । ତଦା ଲକ୍ଷ୍ମଣ, ସୁଗ୍ରୀବ ଶ୍ରୀରାମଙ୍କ ଛାମୁରେ ବିଭୀଷଣଙ୍କ ପ୍ରାର୍ଥନା ଜଣାଇଲେ ।

---

(୧) ଯୋଽନ୍ୟସ୍ତ୍ୱେବଂବିଧଂ ବ୍ରୂୟାଦ୍ ବାକ୍ୟ ମେତଦ୍ ନିଶାଚର ।
ଅସ୍ମିନ୍ ମୁହୂର୍ତ୍ତେ ନ ଭବେଦ୍ ତ୍ୱାଂତୁ ଧିକ୍ କୁଳପାଂସଳ । ଯୁ. କା. ୧୬ସ. ୧୫ ଶ୍ଳୋ
ଯୋଽନ୍ୟସ୍ତ୍ୱେବଂବିଧଂ ବ୍ରୂୟାଦ୍ ବାକ୍ୟମେତଦ୍ ନିଶାଚର, ହନ୍ମି ତଂ ତଦ୍‌କ୍ଷଣେନୈବ ଧିକ୍ ତ୍ୱାଂ ରକ୍ଷ କୁଳାଧମମ୍ ଇତ୍ୟ ଧାମ୍‌ରାମାୟଣେ । ଯୁ.କା. ୨ସ.
ଅନ୍ୟଃ ଅନୁବାଦନ୍ୟଃ ଏବଂବିଧଂ ଅତିପରୁଷଂ ବ୍ରୂୟାଦ୍ ବଦେତ୍ ଚେଦ୍ ଅସ୍ମିନ୍ ମୁହୂର୍ତ୍ତେ ନ ଭବେଦ୍ ବିନଶ୍ୟେଦ୍ ନାଶୟେୟମିତି ଯାବଦ୍ । ତ୍ୱାନ୍ତୁ ଭ୍ରାତାଭାସଂ ଧିକ୍‌ତ୍ୟକ୍ଷ୍ୟାମୀତ୍ୟର୍ଥଃ । କୁଳପାଂସନଂ ରାକ୍ଷସକୁଳାବଦ୍ୟକରଃ ।

ଅଧ୍ୟାତ୍ମ ରାମାୟଣରେ ମାତ୍ର ରାବଣ ପ୍ରହାରାର୍ଥ ଧାଇଁବା ଲେଖାଅଛି, ଯଥା– ହନ୍ତୁଂ ମାଂ ଗଦ୍‌ଗ ମାଦାୟ ପ୍ରାଦ୍ରବଦ୍ ରାକ୍ଷସାଧମଃ । ଯୁ.କା. ୩ସ.

(୨) ଇତ୍ୟୁକ୍ତଃ ପରୁଷଂ ବାକ୍ୟଂ ନ୍ୟାୟବାଦୀ ବିଭୀଷଣଃ ।
ଉତ୍‌ପପାତ ଗଦାପାଣିଃ ଚତୁର୍ଭିଃ ସହ ରାକ୍ଷସୈଃ । ୧୬ସ. ୧୬ ଶ୍ଳୋ

(୩) ସୁଲଭାଃ ପୁରୁଷା ରାଜନ୍ ସତତଂ ପ୍ରିୟବାଦିନଃ ।
ଅପ୍ରିୟସ୍ୟ ତୁ ପଥ୍ୟସ୍ୟ ବକ୍ତା ଶ୍ରୋତାଚ ଦୁର୍ଲଭଃ । ୧୬ସ. ୨୦ ଶ୍ଳୋ
ନିବାର୍ଯ୍ୟମାଣସ୍ୟ ମୟା ହିତୈଷିଣା ନରୋଚତେ ତେ ବଚନଂ ନିଶାଚର ।
ପରାନ୍ତ କାଳେ ବିଗତାୟୁଷୋ ନରା ହିତଂ ନ ଗୃହ୍ଣନ୍ତି ସୁହୃଦ୍‌ଭିରୀରିତମ୍ । ୧୬ସ.
ପରିତକାଳାଃ । ପରୀତଃ ପ୍ରତ୍ୟାସନ୍ନଃ କାଲୋ ମୃତ୍ୟୁ ଯେଷାଂ ତେ ତଥୋକ୍ତାଃ ।

ଶ୍ରୀରାମ ସୁଗ୍ରୀବ ଏବଂ ମାରୁତି ପ୍ରଭୃତିଙ୍କ ସହିତ ସେ ସମ୍ବନ୍ଧେ ବହୁ ମୀମାଂସା କରି କହିଲେ କି, ମୁଁ ଦାନବ ଯକ୍ଷ ରାକ୍ଷସ ପ୍ରଭୃତିଙ୍କୁ ଅଙ୍ଗୁଳିସ୍ଫୋଟ ମାତ୍ରେ ନିହତ କରିପାରେ, ତଥାପି ଶରଣାଗତଙ୍କ ରକ୍ଷା ମୋର ବ୍ରତର କର୍ତ୍ତବ୍ୟ । ଏସ୍ଥଳେ ରାମଚନ୍ଦ୍ର ଶରଣାଗତ ବ୍ୟକ୍ତି ରକ୍ଷା ସମ୍ବନ୍ଧେ କପୋତାଖ୍ୟାନ (୧) ପ୍ରଭୃତି ଅନେକ କଥା କହିଅଛନ୍ତି । ପରିଶେଷରେ ରାମ ଆଦେଶ ଦେଲେ, ସେ ବିଭୀଷଣ ହୁଅନ୍ତୁ ବା ରାବଣ ହୁଅନ୍ତୁ, ମୁଁ ତାଙ୍କୁ ଅଭୟ ପ୍ରଦାନ କଲି । ଏଠାକୁ ଘେନି ଆସ । (୨)

ଊନବିଂଶ ସର୍ଗରେ ଲେଖାଅଛି କି ବିଭୀଷଣ ରାମଙ୍କ ଜିଜ୍ଞାସାରେ ରାବଣଙ୍କ ମନୋଗତ ଭାବ ପର୍ଯ୍ୟନ୍ତ ଯାବତୀୟ ବିଷୟର ପରିଚୟ ଦେଲେ । ରାମଚନ୍ଦ୍ର ଶପଥପୂର୍ବକ (୩) ରାବଣ ନିଧନରେ ପ୍ରତିଜ୍ଞାକରି ବିଭୀଷଣଙ୍କୁ ଲଙ୍କାଧିପତ୍ୟ ପ୍ରଦାନ କରିବାକୁ କହିଲେ । ବିଭୀଷଣ ମଧ ସର୍ବରାକ୍ଷସ ସର୍ବବିନାଶର ପ୍ରତିଜ୍ଞା କଲେ । ରାମଚନ୍ଦ୍ର ସେକ୍ଷଣି ସମୁଦ୍ରରୁ ଜଳ ଅଣାଇ ସେଠାରେ ବିଭୀଷଣଙ୍କୁ ଲଙ୍କାଧିପତ୍ୟରେ ଅଭିଷିକ୍ତ କଲେ । ତେତେବେଳେ ହନୁମାନ ପ୍ରଭୃତି ସାଗର ଉତ୍ତରଣ ଉପାୟ ଜିଜ୍ଞାସା କଲାରୁ, ବିଭୀଷଣ କହିଲେ ଯେ ରାମଚନ୍ଦ୍ର ବିଭୀଷଣଙ୍କର ପ୍ରସାଦପ୍ରାର୍ଥୀ ହୁଅନ୍ତୁ । ତଦା ରାମଚନ୍ଦ୍ର, ଲକ୍ଷ୍ମଣ ଓ ସୁଗ୍ରୀବଙ୍କ ସହ ମନ୍ତ୍ରଣା କରି, ବରୁଣାନୁଗ୍ରହ ପ୍ରାପ୍ତି ନିମନ୍ତେ ଦର୍ଭଶୟନରେ ଶୟନ କଲେ ।

ବଳରାମ ଦାସେ ମଧ ପ୍ରାୟଶଃ ଏହା କହିଅଛନ୍ତି । ଏ ସ୍ଥଳେ ହନୁମାନ ରାମଙ୍କର ବିଭୀଷଣ ପରିଚୟ ମୂଳକ ଜିଜ୍ଞାସାରେ ନିଜର ପୂର୍ବାଚରିତ ଲଙ୍କାଗମନ, ଅଶୋକବନ ଭଂଜନ, ଅସୁର ପୁଙ୍ଗବଙ୍କ ସଂଗେ ନିଃଶଙ୍କ ସଂ୍ ୍ କଲାପରେ ଇନ୍ଦ୍ରଜିତ କର୍ତ୍ତୃକ ବନ୍ଧନ ଆଉ ଲଙ୍କା ଦହନାଦିର କଥା ଜଣାଇ ଅଛନ୍ତି । ମାରୁତି ଇତଃପୂର୍ବେ ଆତ୍ମଗୌରବକଥନ ବିକତ୍ଥନ ଭାବି ଏହା କହି ନ ଥିବାରୁ ଏ ସ୍ଥଳେ ପ୍ରସଙ୍ଗବଶତଃ ଜଣାଇ ଅଛନ୍ତି ।

---

(୧) ଶ୍ରୂୟତେହି କପୋତେନ ଶତ୍ରୁଃ ଶରଣମାଗତଃ ।
ଅର୍ଚ୍ଚିତଶ୍ଚ ଯଥାନ୍ୟାୟଂ ସ୍ୱୈଶ୍ଚ ମାଂସୈର୍ନିମନ୍ତ୍ରିତଃ । ଇତ୍ୟାଦି ୧୮ ସର୍ଗ ।

(୨) ଆନୟୈନଂ ହରିଶ୍ରେଷ୍ଠ ଦତ୍ତମସ୍ୟାଭୟଂ ମୟା ।
ବିଭୀଷଣୋ ବା ସୁଗ୍ରୀବ ! ଯଦି ବା ରାବଣଃ ସ୍ୱୟଂ । ୧୮ସ. ୩୫ ଶ୍ଳୋ

(୩) ଅହଂ ହତ୍ୱା ଦଶଗ୍ରୀବଂ ସପ୍ରହସ୍ତଂ ସବାନ୍ଧବଂ ।
ରାଜାନଂ ତ୍ୱାଂ କରିଷ୍ୟାମି ସତ୍ୟମେତଦ୍ ବ୍ରବିମି ତେ । ୧୯ସ. ୧୯ ଶ୍ଳୋ
ଅହତ୍ୱା ରାବଣଂ ସଂଖ୍ୟେ ସପୁତ୍ର ଜନବାହନଂ ।
ଅଯୋଧ୍ୟାଂ ନ ପ୍ରବେକ୍ଷାମି ତ୍ରିଭିସ୍ତୈର୍ଭ୍ରାତୃଭିଃ ଶପେ । ୧୯ସ. ୨୧ ଶ୍ଳୋ

ଦାସେ ଲେଖି ଅଛନ୍ତି ବିଭୀଷଣ ପ୍ରଥମତଃ ବିଶ୍ୱାସ ଜନନାର୍ଥ ଲକ୍ଷ୍ମଣଙ୍କ ନିକଟରେ ଏକାଧିକ ପ୍ରକାର ଶପଥ କରିଥିଲେ । ସେ କହିଲେ କି, ମୁଁ ଯଦି ଶ୍ରୀରାମଙ୍କ ପ୍ରତି ମାୟିକ ଥାଏ ତେବେ କଳି ଯୁଗରେ ନୃପତି ହେବି କିମ୍ବା ବହୁ କୁଟୁମ୍ବୀ ବ୍ରାହ୍ମଣ ହେବି ଇତ୍ୟାଦି । (୧)

ବାନରମାନେ ବିଭୀଷଣଙ୍କ କଳିରାଜତ୍ୱାଦି ମୂଳକ ଶପଥ ଶୁଣି ପରିହାସ ପୂର୍ବକ ତାହାଙ୍କୁ ମାୟାବୀ କହିଲେ । କିନ୍ତୁ ରାମଚନ୍ଦ୍ର ପ୍ରୋକ୍ତ ଶପଥର ଗୂଢ଼ାର୍ଥ ସେମାନଙ୍କୁ ବୁଝାଇଦେଲେ, ବିଭୀଷଣଙ୍କ ପ୍ରତି ପରିତୁଷ୍ଟ ହେଲେ । ଏହି ଯେ ଦାସଙ୍କ ରାମାୟଣରେ ବିଭୀଷଣ ଶପଥ କରଣର ଆମ୍ରେଡ଼ିତ ଭାବରେ ପଦ୍ୟଗୁଡ଼ିକ ଦେଖାଯାଏ, ସେଥି ମଧ୍ୟରୁ କେତେକ ପଦ୍ୟ ଅନୁଲେଖକଙ୍କ ପ୍ରକ୍ଷିପ୍ତ ଜଣାଯାଏ ।

ଏଥି ମଧ୍ୟରେ ପୁଣି ଶ୍ରୀରାମଙ୍କର ସୁଗ୍ରୀବ ଓ ବିଭୀଷଣଙ୍କପ୍ରତି ପ୍ରକୃତିବିରୁଦ୍ଧ ଗୋଟିଏ ଦୁର୍ଭାବର ଚିତ୍ରଣ ମଧ୍ୟ ଦେଖାଯାଉଅଛି । ଏହାକି ଦାସେ ଲେଖି ଅଛନ୍ତି ! କିମ୍ବା ଅନୁଲେଖକର ପ୍ରକ୍ଷିପ୍ତ ! ଠିକ ଜାଣି ହୋଉନାହିଁ । ମୂଳ ଗ୍ରନ୍ଥରେ ଶ୍ରୀରାମଚନ୍ଦ୍ରଙ୍କର ଏତାଦୃଶ ଦୁର୍ଭାବର ଚିତ୍ରଣ କୁତ୍ରାପି ନିହିତ ନାହିଁ । ସେହି ଦୁର୍ଭାବ ଏହି, ରାମ ଲକ୍ଷ୍ମଣଙ୍କୁ ଗୁପ୍ତତଃ କହିଲେ, ଭାଇ ଲକ୍ଷ୍ମଣ ଜାଣିଥାଅ, ସୁଗ୍ରୀବ ଓ ବିଭୀଷଣଙ୍କୁ ବିଶ୍ୱାସ କରିବ ନାହିଁ; କାରଣ ଏ ଦୁହେଁ ସହୋଦର ଭ୍ରାତାଙ୍କ ପ୍ରତି ଦୁର୍ଭାବ କରିଅଛନ୍ତି । ତଥାପି କାର୍ଯ୍ୟ ସାଧନାର୍ଥ ଏମାନଙ୍କୁ ଚନ୍ଦନ ଅପେକ୍ଷା ଶୀତଳ ବଚନ କହୁଥିବ, ମାତ୍ର ସେମାନଙ୍କ ସମ୍ବନ୍ଧେ ହୃଦୟକୁ କର୍ତରୀ ସଦୃଶ ରଖିଥିବ । (୨) ରାମଚନ୍ଦ୍ରଙ୍କ ଭଳି ମହାତ୍ମା ଯାହାଙ୍କୁ ଅଗ୍ନିସାକ୍ଷୀ ପୂର୍ବକ ମିତ୍ର ବୋଲି ଗ୍ରହଣ କରିଅଛନ୍ତି, ଅପିଚ ଯାହାଙ୍କଠାରୁ ବହୁ ଉପକାର ପାଇ ଅଛନ୍ତି, ତାଙ୍କ ପ୍ରତି ଏପରି କହିବେ, ଏହା କଦାଚ ସମ୍ଭବ ନୁହେ । ରାମଚନ୍ଦ୍ର ବିଭୀଷଣଙ୍କୁ ଲଙ୍କାଧିପତ୍ୟରେ ଅଭିଷିକ୍ତ କଲା ସ୍ଥଳେ ଦାସ ମହାଶୟ ଗୋଟିଏ ସୁନ୍ଦର ଆଶଙ୍କାର ଉତ୍ଥାପନ କରି ସମାଧାନ ଦେଇ ଅଛନ୍ତି । ଦାସେ ଲେଖି ଅଛନ୍ତି କି, ତେତେବେଳେ ରାମଙ୍କୁ ସୁଗ୍ରୀବ ପ୍ରଭୃତି ପ୍ରଶ୍ନ କଲେକି, 'ପ୍ରଭୋ ! ବର୍ତ୍ତମାନତ ଆପଣ ବିଭୀଷଣଙ୍କୁ ଲଙ୍କାର ଆଧିପତ୍ୟ ପ୍ରଦାନ କଲେ, ଏ କ୍ଷଣି ଯଦି ରାବଣ ମଧ୍ୟ ଆସି ଶରଣପ୍ରାର୍ଥୀ ହୁଅନ୍ତି, ତେବେ କଣ କରିବେ ?' ରାମ କହିଲେ ଭଲ ହେବ, ମୋର ଅଯୋଧ୍ୟା ରାଜ୍ୟ ତାହାଙ୍କୁ ପ୍ରଦାନ କରିବି । ମୁଁ ସର୍ବଦା ବନବାସୀ ରହିବି । (୩) ଅତଃପର ଦାସଙ୍କ ରାମାୟଣରେ ରାବଣଙ୍କର ଦୂତ ପ୍ରେରଣାଦି ମୂଳକ କେତେକ ପାଠ ଉଲଟ ପାଲଟ

(୧) ଛାପା ପୁସ୍ତକରେ ୧୧୭-୧୧୮ ପୃଷ୍ଠା ଦେଖନ୍ତୁ ।
ବିଭୀଷଣଙ୍କ ଶପଥର କଥା ଅଧ୍ୟାତ୍ମ ରାମାୟଣରେ ମଧ୍ୟ ଲେଖାନାହିଁ ।

(୨) ଛାପା ପୁସ୍ତକରେ ୧୨୦ ପୃଷ୍ଠା ଦେଖନ୍ତୁ ।

(୩) ୧୨୪ ପୃଷ୍ଠା ଦେଖନ୍ତୁ ।

ହୋଇ ଯାଇଥିବା ଜଣାଯାଏ । ପାଠକଗଣ ପ୍ରଥମତଃ ମୌଳିକ ଚରିତକୁ ମନନ କରି ନେଲେ ଦାସଙ୍କ ପାଠର ସ୍ଥାନ ବୈଷମ୍ୟ ବୁଝିପାରିବେ । ସୁତରାଂ ସ୍ଥାନେ ସ୍ଥାନେ ତହିଁ ଯେ ବିଷୟ ବୈଷମ୍ୟ ଅଛି, ତାହା ସୁଦ୍ଧା ବୁଝିପାରିବେ । (୧) ମୂଳ ବିଂଶ ସର୍ଗରେ ଲେଖାଅଛି, ରାବଣ ପ୍ରେରିତ ଶାର୍ଦ୍ଦୂଳ ନାମକ ଦୂତ ସମୁଦ୍ରର ଉତ୍ତର ତୀରବର୍ତ୍ତୀ ରାମବାହିନୀରୁ ସବୁକଥା ଶୁଣିଯାଇ ରାବଣଙ୍କୁ ଜଣାଇଲା, ତାପରେ ଶୁକ ରୂପଧାରୀ ଶୁକମନ୍ତ୍ରୀ ସୁଗ୍ରୀବକୁ ଜଣାଇଲେ ଯେ ରାବଣ କହିଅଛନ୍ତି, ତୁମେ ମୋର ଭ୍ରାତା ହେବ, ସୈନ୍ୟ ସହ କିଷ୍କିନ୍ଧାକୁ ପ୍ରତ୍ୟାବୃତ୍ତ ହୁଅ । (୨) ବାନରମାନେ ଶୁକକୁ ଧରି ପ୍ରହାର କଲେ କିନ୍ତୁ ପରେ ରାମାଦେଶରେ ପ୍ରହାରାଦି ନକରି କେବଳ ବନ୍ଧନରେ ରଖିଲେ ।

ଦାସଙ୍କ ରାମାୟଣରେ ରାବଣଙ୍କର ପ୍ରେରିତ ପ୍ରଥମ ଦୂତର କଥା ଯଥା ସ୍ଥାନରେ ଯଥାଯଥ ଲେଖାଅଛି । କିନ୍ତୁ ସେ କହନ୍ତି ଶୁକଙ୍କ ସହିତ ସାରଣ ମଧ ଆସିଥିଲେ । ସେ ଦୁହେଁ ରାବଣଙ୍କ ଆଦେଶ ବିଭୀଷଣଙ୍କୁ ଜଣାଇଲା ପରେ ଡେଣ୍ଟୁଆ ପକ୍ଷୀ ରୂପ ଧାରଣ କରି (୩) ସୈନ୍ୟ କଳନା କଲେ । ତାପରେ ସୁଗ୍ରୀବଙ୍କ ଛାମୁରେ ରାବଣଙ୍କ ଆଦେଶ ଜଣାଇଲା ବେଳେ ଅଙ୍ଗଦ ସେ ଦୁହିଙ୍କୁ ଆକାଶରେ ପ୍ରହାର କଲେ; ତଦା ସେ ଦୁହେଁ ଭୟରେ ଲଙ୍କାକୁ ପଳାୟନ କଲେ । କିନ୍ତୁ ମୂଳ ଗ୍ରନ୍ଥ ମତେ ଶୁକ ମନ୍ତ୍ରୀ ରାମଚନ୍ଦ୍ରଙ୍କର ସୁବେଳାରୋହଣ ପର୍ଯ୍ୟନ୍ତ ରାମବାହିନୀରେ ଆବଦ୍ଧ ଥିଲେ । ଅଧ୍ୟାତ୍ମ ରାମାୟଣାନୁସାରେ ମଧ ଶୁକ ତାବତ୍ ବଦ୍ଧ ଥିଲେ । (୪)

ମୂଳ ଗ୍ରନ୍ଥର ଏକବିଂଶତି ଓ ଦ୍ୱାବିଂଶତି ସର୍ଗରେ ରାମପ୍ରତି ସମୁଦ୍ରଙ୍କ ପ୍ରସାଦ ଆଉ ସାଗରରେ ସେତୁ ନିର୍ମାଣ ବର୍ଣ୍ଣିତ ଅଛି । ରାମଚନ୍ଦ୍ର ବରୁଣଙ୍କ ପ୍ରସାଦ ଅପେକ୍ଷାରେ ତ୍ରିରାତ୍ର ଦର୍ଭଶୟନରେ ଶୟନ କରି (୫) ନିୟମିତ ରହିଥିଲେ । ତାପରେ ସେ ବରୁଣଙ୍କ ଅଦର୍ଶନରୁ କ୍ରୁଦ୍ଧ ହୋଇ ବ୍ରହ୍ମଶର ପ୍ରୟୋଗରେ ଉଦ୍ୟତ ହେଲେ । ତଦା ସମୁଦ୍ର

---

(୧) ପାଠକ ଭଲକରି ପରିଶୀଳନ କରିବେ, ଛାପା ପୁସ୍ତକରେ ୧୨୯ ପୃଷ୍ଠାଠାରୁ ଦେଖିବେ ପୂର୍ବକଥିତ ବିଷୟର ଫେର୍ ଆମ୍ରେଡ଼ନ ହୋଇ ଅଛି । ସୁତରାଂ କେତେକ ପଦ୍ୟ ଅସଂଗତ ଜଣାଯାଉଅଛି ।

(୨) — ତଥାପି ମେ ଭ୍ରାତୃସମୋ ହରୀଶ । ୨୦ସ. ୧୦ ଶ୍ଳୋ
— କିଷ୍କିନ୍ଧାଂ ପ୍ରତିଗମ୍ୟତାଂ – ୨୦ସ. ୧୧ ଶ୍ଳୋ

(୩) ଶୁଣିଣ ଶୁକ ସାରଣ ଭୟରେ ପଳାଇଲେ,
ଡେଣ୍ଟୁଆ ଚଢ଼ାଇ ରୂପ ତକ୍ଷଣେ ଧଇଲେ । ୧୩୧ ପୃ.

(୪) ତତୋ ରାମାଜ୍ଞୟା ଧୃତ୍ୱା ଶୁକଂ ବଧ୍ୱାନ୍ୱରକ୍ଷୟଦ୍ । ଯୁ. କା. ୩ସ

(୫) ସ ତ୍ରିରାତ୍ରୋଷିତସ୍ତତ୍ର ନୟଜ୍ଞୋ ଧର୍ମବତ୍ସଳଃ ।
ଉପାସତ ତଦା ରାମଃ ସାଗରଂ ସରିତାଂପତିମ୍ । ୨୧ସ. ୧୦ ଶ୍ଳୋ

ଶ୍ରୀରାମଙ୍କ ଦର୍ଭଶୟନ ପ୍ରକ୍ରିୟା ଅଧ୍ୟାତ୍ମ ରାମାୟଣରେ ଦେଖାଯାଏ ନାହିଁ । କିନ୍ତୁ ରାମ ସମୁଦ୍ରଙ୍କ ଦର୍ଶନ ଅପେକ୍ଷାରେ ନିୟମିତ ଥିବା ଉକ୍ତ ଅଛି ।

ସଶରୀରରେ ଭୀତ ଭୀତ ଦେଖା ଦେଇ ରାମଙ୍କୁ ସ୍ତୁତି କଲେ । ରାମ କହିଲେ, ଏହି ଅମୋଘଶର କେଉଁଠି ନିକ୍ଷିପ୍ତ କରିବୁ । (୧) ସମୁଦ୍ର କହିଲେ, 'ହେ ରାମ ! ମୋର ଉତ୍ତରଭାଗରେ ଦ୍ରୁମ ନାମକ ଗୋଟିଏ ପୁଣ୍ୟସ୍ଥଳ ଅଛି । ତତ୍ର ପାପକର୍ମା ଦୁଷ୍ଟ ଆଭୀର ପ୍ରଭୃତି ଦସ୍ୟୁମାନେ ସତତ ଉପଦ୍ରବ କରୁଅଛନ୍ତି । ଆପଣ ସେ ପ୍ରଦେଶରେ ଏହି ଶର ନିକ୍ଷିପ୍ତ କରି ସେମାନଙ୍କୁ ନିହତ କରନ୍ତୁ ।' (୨) ସମୁଦ୍ର ପୁଣି ରାମଙ୍କୁ ଜଣାଇଲେ, ବିଶ୍ୱକର୍ମାଙ୍କର ତୁଲ୍ୟ ଗୁଣବିଶିଷ୍ଟ ପୁତ୍ର ନଳ ତାହାଙ୍କଠାରୁ ବର ପ୍ରାପ୍ତ ହୋଇଅଛନ୍ତି । ସେ ତ ଆପଣଙ୍କର ସେନାପତି ଅଛନ୍ତି, ତାହାଙ୍କଦ୍ୱାରା ସମୁଦ୍ରଜଳ ମଧ୍ୟରେ ସେତୁ ନିର୍ମାଣ କରନ୍ତୁ । (୩) ତଦା ଶ୍ରୀରାମାଦେଶରେ ନଳଙ୍କ ତତ୍ତ୍ୱାବଧାନରେ ବାନରମାନେ ଶତ ଯୋଜନ ଆୟତ ଦଶ ଯୋଜନ ବିସ୍ତାର ମହାସେତୁ ନିର୍ମାଣ ଆରମ୍ଭ କଲେ । (୪)

ପ୍ରଥମ ଦିବସରେ ଚତୁର୍ବିଂଶ ଯୋଜନ, ଦ୍ୱିତୀୟ ଦିବସରେ ବିଂଶତି ଯୋଜନ, ତୃତୀୟ ଦିବସରେ ଏକବିଂଶତି ଯୋଜନ, ଚତୁର୍ଥ ଦିବସରେ ଦ୍ୱାବିଂଶତି ଯୋଜନ ଏବଂ ପଞ୍ଚମ ଦିବସରେ ତ୍ରୟୋବିଂଶତି ଯୋଜନ ଏହିପରି ପଞ୍ଚଦିବସରେ ସମୁଦ୍ରର ଉତ୍ତର ତୀରରୁ ଲଙ୍କା ନଗରୀସ୍ଥ ସୁବେଳ ପର୍ବତ ପର୍ଯ୍ୟନ୍ତ ଶତଯୋଜନ ଆୟତନ ବିଶିଷ୍ଟ ମହାସେତୁ ନିର୍ମିତ ହୋଇଥିଲା । (୫) ଶ୍ରୀମାନ୍ ବଳରାମ ଦାସେ ରାମଙ୍କ ଦର୍ଭଶୟନ ଓ ସମୁଦ୍ର

---

(୧) ଅମୋଘୋୟଂ ମହାବାଣଃ କସ୍ମିନ ଦେଶେ ନିପାତ୍ୟତାମ୍, ୨୨ସ. ୩୦ ଶ୍ଳୋ

(୨) ୨୨ସ, ୩୨, ୩୩, ୩୪ ଶ୍ଳୋକ ଦେଖନ୍ତୁ । ଅଧ୍ୟାତ୍ମ ରାମାୟଣରେ ମଧ୍ୟ ଏହା ଉକ୍ତ ଅଛି । ଯଥା –
ରାମୋତ୍ତର ପ୍ରଦେଶେ ତୁ ଦ୍ରୁମକୁଲ୍ୟ ଇତିଶ୍ରୁତଃ, ପ୍ରଦେଶସ୍ତତ୍ର ବହବଃ ପାପାତ୍ମାନୋ ଦିବାନିଶମ୍ ।
ବାଧନ୍ତେ ମାଂ ରଘୁଶ୍ରେଷ୍ଠ ! ତତ୍ର ତେ ପାତ୍ୟତାଂ ଶରଃ । ଯୁ. କା. ୩ସ.

(୩) ଅୟଂ ସୌମ୍ୟ ନଳୋ ନାମ ତନୁଜୋ ବିଶ୍ୱକର୍ମଣଃ । ପିତ୍ରା ଦତ୍ତବରଃ ଶ୍ରୀମାନ୍ ପ୍ରତିମୋ ବିଶ୍ୱକର୍ମଣା । ଏଷ ସେତୁଂ ମହୋତ୍ସାହଃ କରୋତୁ ମୟି ବାନରଃ । ୨୨ସ, ୪୩, ୪୪ ଶ୍ଳୋ
ଦତ୍ତବରଃ ମତ୍ତୁଲ୍ୟଃ ପୁତ୍ରସ୍ତେ ଭବିଷ୍ୟତୀତି ମାତ୍ରେ ଦତ୍ତବରଃ । ଇତି ଗୋବିନ୍ଦରାଜଃ
ପିତ୍ରା ବିଶ୍ୱକର୍ମଣାଦତ୍ତବରଃ, ଆକାଶଜଳୋପରି ସ୍ଥାୟିଗମନଶୀଳ ବିମାନାଦି ନିର୍ମାଣାଦି ସର୍ବକର୍ମ କୁଶଳେନ ସଦୃଶା ସାମର୍ଥ୍ୟଃ । ଇତି ମହେଶ୍ୱର ଦୀକ୍ଷିତଃ

(୪) ଦଶ ଯୋଜନ ବିସ୍ତାରଂ ଶତ ଯୋଜନ ମାୟତମ୍ ।
ନଳଶ୍ଚକ୍ରେ ମହାସେତୁଂ ମଧ୍ୟେ ନଦନଦୀପତେଃ । ୨୨ସ. ୬୪ ଶ୍ଳୋ

(୫) କୃତାନି ପ୍ରଥମେନାହ୍ନା ଯୋଜନାନି ଚତୁର୍ଦଶ, ଦ୍ୱିତୀୟେନ ତଥାଚାହ୍ନା ଯୋଜନାନୀ ତୁ ବିଂଶତିଃ ।
ଅହ୍ନା ତୃତୀୟେନ ତଥା ଯୋଜନାନି କୃତାନି ତୁ । ତ୍ୱରମାଣୈର୍ମହାକାୟୈରେକବିଂଶତି ରେବଚ ।
ଚତୁର୍ଥେନ ତଥା ଚାହ୍ନା ଦ୍ୱାବିଂଶତି ରଥାପି ଚ । ପଞ୍ଚମେନ ତଥା ଚାହ୍ନା ପ୍ଲବଗୈଃ କ୍ଷିପ୍ର କାରିଭିଃ ।
ଯୋଜନାନି ତ୍ରୟୋବିଂଶତ୍ ସୁବେଳମଧିକୃତ୍ୟ ବୈ । ୨୨ସ. ୬୮ ଶ୍ଳୋ

ଅଧ୍ୟାତ୍ମ ରାମାୟଣରେ ମଧ୍ୟ ଦିବସ ପଞ୍ଚକରେ ଏହି ପରିମାଣାନୁ କ୍ରମରେ ସେତୁ ନିର୍ମିତ ହୋଇଥିବା ଲେଖାଅଛି । ଚତୁର୍ଥ ସର୍ଗ ଦେଖନ୍ତୁ । ସୁତରାଂ ଏଥିରେ ଉକ୍ତ ଅଛି କି ରାମଚନ୍ଦ୍ର ସେତୁ ଆରମ୍ଭଣ ସମୟରେ ରାମେଶ୍ୱର ମହାଦେବଙ୍କୁ ପ୍ରତିଷ୍ଠିତ କରି ପୂଜା କରିଥିଲେ । ଯଥା –
ସେତୁ ମାରଭମାଣସ୍ତୁ ତତ୍ର ରାମେଶ୍ୱରଂ ଶିବମ୍ ।
ସଂସ୍ଥାପ୍ୟ ପୂଜୟିତ୍ୱା ହ ରାମୋ ଲୋକହିତାୟ ଚ । – ୪ସ. ୧ ଶ୍ଳୋ

ପ୍ରସାଦ ଲାଭାଦିର କଥାମାନ ଠିକ୍ ଅବିକଳ ମୌଳିକ ମତରେ ଲେଖିଅଛନ୍ତି । (୧) କିନ୍ତୁ ସେ ସମୁଦ୍ର ଗଙ୍ଗା ଓ ଯମୁନାଙ୍କ ସହିତ ଶ୍ରୀରାମଙ୍କ ଛାମୁକୁ ଆସିଥିବା ଲେଖିଅଛନ୍ତି ଏବଂ ଲେଖିଅଛନ୍ତି ପୂର୍ବେ ଋଷିମାନଙ୍କ ପ୍ରଦତ୍ତ ଶାପ ହେତୁରୁ ନଳନିକ୍ଷିପ୍ତ ପଦାର୍ଥମାନ ଜଳରେ ବୁଡ଼େ ନାହିଁ । ସେହି ଶାପ ଏକ୍ଷଣି ରାମଙ୍କର ଉପକାର ହେବ । ଦାସେ ସମୁଦ୍ରଙ୍କ ପ୍ରଦର୍ଶିତ ସ୍ଥାନର ଦ୍ରୁମକୁଲ୍ୟା ନାମ ଦେଇ ନାହାନ୍ତି । ରାମ ସମୁଦ୍ରଙ୍କ ଅନୁରୋଧରେ ତତ୍ ଗର୍ଭସ୍ଥ ଦୁଷ୍ଟ ଦାନବମାନଙ୍କ ପ୍ରତି ସନ୍ଧିତ ବ୍ରହ୍ମଶର ନିକ୍ଷିପ୍ତ କରିଥିବା ସେ କହିଅଛନ୍ତି । ଏ ସ୍ଥଳେ ପୁଣି ଦାସେ ନଳଙ୍କ ଉତ୍ପତ୍ତିର ପୌରାଣିକ ଗାଥାରେ ଲେଖିଅଛନ୍ତି, ବିଚ୍ଛେଦ ନାମକ କପିଙ୍କ ଭାର୍ଯ୍ୟା ଇନ୍ଦୁମତୀଙ୍କ ଗର୍ଭରୁ ବିଶ୍ୱକର୍ମାଙ୍କ ଔରସରେ ନଳ ଉତ୍ପନ୍ନ ହୋଇଥିଲେ, ଇତ୍ୟାଦି (୨) ଏହାର କିଂଚିତ୍ ବ୍ୟବହିତ ପୂର୍ବେ ଦାସେ ପ୍ରକାଶ କରିଅଛନ୍ତି, ରାମଚନ୍ଦ୍ର ବିଭୀଷଣଙ୍କୁ ପଚାରିଲେ କି, ଏହିଠାରେ ଥାଇ ଅନୁମାନ କଲେ ଲଙ୍କାନଗରୀ କେଉଁଠାକୁ ସଳଖରେ ଥିବା ଜଣାଯାଏ । ତଦା ବିଭୀଷଣ ଲଙ୍କାନଗରୀର ଅବସ୍ଥାନ ବର୍ଣ୍ଣନା ଏବଂ ରାବଣଙ୍କର ପ୍ରାତ୍ୟାହିକ ରାଜନୀତି ବିଧାନ ପ୍ରଭୃତି ଜଣାଇଲେ । (୩)

ଏହି ପାଠତକରେ ବୈଷମ୍ୟ ବିଦ୍ୟମାନ ଥିଲେ ସୁଦ୍ଧା ଦାସେ ଏହିତକକୁ ସଂବିଧାନର ଅନୁସରଣରେ କେବଳ ଲେଖି ଅଛନ୍ତି ।

ଦାସଙ୍କ ରାମାୟଣରେ ଲେଖାଅଛି ସମଗ୍ର ସେତୁ ଚାରି ଦିନରେ ହୋଇଥିଲା । (୪) ପ୍ରଥମ ଦିବସରେ ଚତୁର୍ବିଂଶ ଯୋଜନ, ଦ୍ୱିତୀୟ ଦିବସରେ ଦ୍ୱାତ୍ରିଂଶ ଯୋଜନ, ତୃତୀୟ ଦିବସରେ ପଞ୍ଚାଶ ଯୋଜନ, ଏପରି ଦିବସ ତ୍ରୟରେ ଚତୁର୍ନବତି ଯୋଜନର ସେତୁ ନିର୍ମିତ ହେଲା । ଚାରି ଯୋଜନ ମାତ୍ର ଅବଶିଷ୍ଟ ଥିଲା । ପରଦିନ ହନୁମାନ ବିଶ୍ୱରୂପରେ ହସ୍ତମସ୍ତକପୁଚ୍ଛାଦିରେ ଅସଂଖ୍ୟ ପର୍ବତ ଆନୟନ କରୁଅଛନ୍ତି । ନଳ ପ୍ରମାଦତ ବାମହସ୍ତରେ ତାହା ସଂପାଦନ କରିଦେଲେ । ହନୁମାନ କ୍ରୁଦ୍ଧ ହୋଇଗଲାରୁ ସହସା ଚତୁର୍ଦ୍ଦିଗ ଅନ୍ଧକାର ସମାଚ୍ଛନ୍ନ ହୋଇଗଲା । ଦିବା ଦୁଇଘଡ଼ି ସମୟରେ ଏପରି ଆକସ୍ମିକ ଅସାମୟିକ ତମସ୍ତୋମର ଆବରଣ ଦେଖି ରାମଚନ୍ଦ୍ର ଜାମ୍ବବାନଙ୍କୁ କାରଣ ଜିଜ୍ଞାସା କଲେ । ସେ କହିଲେ କି, ହନୁମାନ ଅସଂଖ୍ୟ ପର୍ବତ ଧରି ଆସୁଥିବାରୁ ଚାରିଆଡ଼େ ଅନ୍ଧକାର ଘୋଟିଅଛି । (୫) କାରଣଟା କିଛି ସଂଗତ ଜଣାଯାଉନାହିଁ । ତାପରେ ରାମଚନ୍ଦ୍ର

---

(୧) ଛାପା ପୁସ୍ତକରେ ୧୩୩ଠାରୁ ୧୩୫ ପୃଷ୍ଠା ପର୍ଯ୍ୟନ୍ତ ପଢ଼ନ୍ତୁ ।
(୨) ଛାପା ପୁସ୍ତକରେ ୧୩୯ ପୃଷ୍ଠା ଦେଖନ୍ତୁ ।
(୩) ଛାପାରେ ୧୩୬, ୧୩୭ ପୃଷ୍ଠା ଦେଖନ୍ତୁ ।
(୪) ଛାପାରେ ୧୪୦ ପୃଷ୍ଠାଠାରୁ ପଢ଼ନ୍ତୁ ।
(୫) ପର୍ବତ ବହୁତ ହନୁ ଘେନି ଯେ ଆସଇ
ତେଣୁ କରି ଦିବସ ଯେ ଅନ୍ଧାର ଦିଶଇ । ୧୪୦ ପୃ.

କ୍ରୁଦ୍ଧ ହନୁମାନଙ୍କୁ ନଳଙ୍କ ବିନୀତ ଆଚରଣରେ ପ୍ରଶାନ୍ତ କରାଇ ଥିଲେ । ବଳରାମ ଦାସେ ସେତୁର ନିର୍ମାଣ ସମୟ ଓ କ୍ରମିକ ସଂଖ୍ୟାରେ ବୈଷମ୍ୟ ରଖି ସୁଦ୍ଧା ଦୀର୍ଘାଦିର ପରିମାଣକୁ ଠିକ ମୂଳାନୁମତ କେବଳ ଲେଖିଅଛନ୍ତି । (୧) ମୂଳ ତ୍ରୟୋବିଂଶ ଆଉ ଚତୁର୍ବିଂଶ ସର୍ଗରେ ଲେଖାଅଛି, ରାମଚନ୍ଦ୍ର ସୁବେଳରୁ ଲଙ୍କାର ସୌନ୍ଦର୍ଯ୍ୟ ଦର୍ଶନ କଲେ । ପ୍ରଧାନ ପ୍ରଧାନ ବାନରବୀରମାନଙ୍କୁ ଯଥା ସ୍ଥାନରେ ସନ୍ନିବେଶିତ କଲେ ଏବଂ ଇତଃପୂର୍ବରୁ ଆବଦ୍ଧ ରାବଣ ମନ୍ତ୍ରୀ ଶୁକକୁ ଉନ୍ମୁକ୍ତ କରିଦେଲେ । (୨) ଶୁକଯାଇ ରାବଣଙ୍କ କତିରେ ରାମବାହିନୀର ଯାବନ୍ତ ପରିଚୟ ଦେଲାପରେ ରାମାଦେଶ ଜଣାଇଲେ କି ସୀତାଙ୍କୁ ପ୍ରତ୍ୟର୍ପଣ କର, ନୁହେତ କାଲି ଯୁଦ୍ଧାର୍ଥ ସନ୍ନଦ୍ଧ ହୁଅ । (୩) ଏ ସ୍ଥଳେ ବଳରାମ ଦାସେ ଲେଖିଅଛନ୍ତି, ଆଗାମୀ ଦିବସରେ ଲଙ୍କା ପ୍ରତି ଜୈତ୍ରଯାତ୍ରା କରଣାର୍ଥ ଜାମ୍ବବାନ ରାମଚନ୍ଦ୍ରଙ୍କୁ ସୁମୁହୂର୍ତ୍ତ ଜଣାଇଲେ। ରାବଣ ଯେପରି ବଜ୍ରଶରରେ ନିର୍ମିତ ସେତୁର ଭଙ୍ଗ କରି ନ ପାରନ୍ତି ସେଥିପାଇଁ ରାମଙ୍କ ଆଦେଶରେ ମାରୁତି କେତେକ ବୀରମାନଙ୍କ ସହ ଠାଣି ଠିକଣା କରି ଜଗିରହିଲେ । (୪) ସେତୁର ନିର୍ମାଣାବସରରେ ଲେଖାଅଛି, ଗୋଟିଏ ନେପୁର ମୂଷା ରାମଙ୍କ ବନ୍ଧା କାର୍ଯ୍ୟରେ ସ୍ୱତଃ ପ୍ରଣୋଦିତ ହୋଇ ସେତୁର ବନ୍ଧୁର ସ୍ଥଳମାନଙ୍କର ସମୀକରଣାର୍ଥ ପୁନଃପୁନଃ ସମୁଦ୍ରବେଳାରୁ ଆନୀତ ବାଲୁକାରାଶି ତତ୍ର ନିକ୍ଷିପ୍ତ କରିଥିଲା । ଏହି କଥାଟି ମୂଳ ଗ୍ରନ୍ଥରେ ଲେଖା ନଥିଲେ ସୁଦ୍ଧା ଲୋକପ୍ରସିଦ୍ଧ ଅଛି । ଏସ୍ଥଳେ ରାମଚନ୍ଦ୍ର ସମୁଦ୍ର ତୀରରେ ଶ୍ରୀରାମେଶ୍ୱରଙ୍କୁ ପୂଜା କରିଥିବାର ପ୍ରମାଣ ଗୋଟିଏ ମାତ୍ର ପଦ୍ୟରେ ସୂଚିତ ଅଛି । ଏହି ପଦ୍ୟଟିକୁ

---

(୧) ଚାଳିଶ ଓସାର ଖାତଖଣା ନାହିଁ । ୧୩୯ ପୃ.
ବନ୍ଧର ଓସାର ଯେ ଅଟଇ ଦଶକୁଣ । ୧୪୦ ପୃ.
ସାତତାଳ ବହଳରେ ବନ୍ଧ ଯେ ପଡ଼ିଲା । ଶତ ଯୋଜନ ବନ୍ଧ ଯେ ହୋଇଲାକ ଦୀର୍ଘ, ସୁବଳୟ ବୋଲି ଲାଗିଅଛି ତହିଁ ଏକ । ବନ୍ଧର ମୁଣ୍ଡ ଯେ ପୁଣି ଲାଗେ ତହିଁ ଯାଇ – ୧୪୨ ପୃ.

(୨) ସୁବିଭକ୍ତାନି ସୈନ୍ୟାନି ଶୁକ ଏଷ ବିମୁଚ୍ୟତାମ୍ ।
ମୋଚୟାମାସ ତଂ ଦୂତଂ ଶୁକଂ ରାମସ୍ୟ ଶାସନ ତ୍ । ୨୪ସ. ୨୩, ୨୪ ଶ୍ଳୋ

ଅଧ୍ୟାତ୍ମ ରାମାୟଣରେ ମଧ ରାମ ସୁବେଳାଦ୍ରିରେ ପ୍ରବେଶିଲା ପରେ ଶୁକକୁ ମୁକ୍ତ କରିଥିବା ଲେଖାଅଛି, ଯଥା –
ଅସଂଖ୍ୟାତାଃ ସୁବେଳାଦ୍ରିଂ ରୁରୁଧୁଃ ପ୍ଲବଗୋତ୍ତମାଃ ××
ଏତସ୍ମିନ୍ନନ୍ତରେ ବଦ୍ଧୋ ମୁକ୍ତୋ ରାମେଣ ବୈ ଶୁକଃ । ଯୁ.କା. ୪ସ

(୩) ଅଧ୍ୟାତ୍ମରେ ମଧ ରାମ ଏହା ହିଁ କହିଅଛନ୍ତି, ଯଥା– ଶ୍ୱଃକାଲେ ନଗରୀଂ ଲଙ୍କାଂ ସପ୍ରାକାରାଂ ସତୋରଣାଂ, ରାକ୍ଷସଂ ଚ ବଳଂ ପଶ୍ୟ ଶରୈର୍ବିଧ୍ୱଂସିତଂ ମୟା । ଯୁ. କା. ୪ସ.

(୪) ଛାପାରେ ୧୪୩ ପୃଷ୍ଠା ଦେଖନ୍ତୁ ।

ନିଜେ ଦାସେ ଲେଖି ଅଛନ୍ତି କିମ୍ବା ଅନ୍ୟ କେହି ରାମେଶ୍ୱର-ଭକ୍ତ ଏହାର ଆଦିମ ପ୍ରମାଣ ଅଧ୍ୟାତ୍ମ ରାମାୟଣରୁ ପାଠ (୧) ଏ ସ୍ଥଳେ ମିଳାଇ ଅଛନ୍ତି, ଠିକ୍ କୁହାଯାଇ ନ ପାରେ । କାରଣ ''ରାମେଶ୍ୱର ବୋଲି ରାମଶଙ୍କର ପୂଜିଲେ । ଶିରରେ ପ୍ରସାଦ ଘେନି ମନେ ବିଚାରିଲେ'', ଏହି ପଦ୍ୟରେ କଥିତମତେ ସେ ମନରେ କଣ ବିଚାରିଲେ ? ତାହା ଏ ସ୍ଥଳେ ଆଉ ଲେଖା ହୋଇନାହିଁ । ଏହାପରେ ଶ୍ରୀରାମ ଓ ଲକ୍ଷ୍ମଣ ହନୁମାନ ଓ ଅଙ୍ଗଦଙ୍କ ପୃଷ୍ଠରେ ଆରୋହଣ କରି କପିବାହିନୀ ସହ ସେତୁ ଲଙ୍ଘନ ପୂର୍ବକ ସୁବେଳରେ ବିଜେ ହେଲେ । ଏ ସ୍ଥଳେ ଦାସଙ୍କ ସୁନ୍ଦର କାଣ୍ଡ ସଂପୂର୍ଣ୍ଣ ହୋଇ ଅଛି ।

ଅତଃପର ପଞ୍ଚବିଂଶ ସର୍ଗଠାରେ ଚାରିଗୋଟି ସର୍ଗରେ ଉକ୍ତ ଅଛିକି ରାବଣ ସ୍ୱୟଂ ରାମବାହିନୀର କଳନା କଲାପରେ ସାରଣଙ୍କ ମୁଖରୁ ବାନର ବୀରମାନଙ୍କର ମହତ୍ତମତା ଓ ଅସାଧାରଣ ପରାକ୍ରମଶାଳିତାର ପରିଚୟ ପାଇଥିଲେ । ତାପରେ ପୁନରପି ରାବଣଙ୍କ ଆଦେଶରେ ଶୁକ ଓ ସାରଣ ଦୁହେଁ ଶତ୍ରୁ ପକ୍ଷର ଅଭିସନ୍ଧିର ଅବଗମନାର୍ଥ ବାନର ରୂପରେ ରାମବାହିନୀରେ ପ୍ରବେଶ କଲେ । ବିଭୀଷଣ ସଜାତିତ୍ୱରୁ ସେହି ମାୟିକାର କାରଣ ଜାଣିପାରି ସେ ଦୁହିଁଙ୍କୁ ବନ୍ଧନରେ ଆବଦ୍ଧ କରାଇଲେ । ତଦା ରାମଚନ୍ଦ୍ର ଆଦେଶ ଦେଲେ, ଏ ଦୁହିଁଙ୍କୁ ଆମର ଯାବତୀୟ ସେନାସଂଘ ଭଲ କରି ଦେଖାଇ ଦେଇ ଆଗାମୀ କଲ୍ୟ ଯୁଦ୍ଧାର୍ଥ ପ୍ରସ୍ତୁତ ହେବାପାଇଁ ରାବଣଙ୍କଠାକୁ କହି ପଠାଇ ଦିଅ । ରାବଣ ସାରଣ ମୁଖରୁ ରାମଚନ୍ଦ୍ରଙ୍କର ସବିଶେଷ ସମ୍ବାଦ ଶୁଣି ସୁଦ୍ଧା ସେ ନିଜେ ପେର ରାମବାହିନୀଦିଦୃକ୍ଷାରେ ଶୁକ ଓ ସାରଣଙ୍କୁ ସଙ୍ଗେ ଧରି ମହୋଚ୍ଚ ପ୍ରାସାଦରେ ଆରୋହଣ କଲେ । ତେତେବେଳେ ସାରଣ ଲଙ୍କାଧିପତିଙ୍କୁ ରାମଚନ୍ଦ୍ରଙ୍କର ଯୂଥପତିମାନଙ୍କୁ ଏକୈକଶଃ ପ୍ରଦର୍ଶିତ କରି ସମ୍ୟକ୍ ଚିହ୍ନାଇଦେଇଥିଲେ । ଏହି ରାମବାହିନୀ ଦର୍ଶନ ସନ୍ଦର୍ଭ ମଧ୍ୟରେ ମାରୁତିଙ୍କର ଜନ୍ମମାତ୍ରେ ସୂର୍ଯ୍ୟ ଧର୍ଷଣାଦିର କ୍ରମ ଏବଂ ମହୌଘ ପର୍ଯ୍ୟନ୍ତ ବହୁ ସଂଖ୍ୟାମାନଙ୍କର ଗଣନାକ୍ରମ ବିବୃତ ଅଛି । ଏକୋନତ୍ରିଂଶ ଆଉ ତ୍ରିଂଶ ଏ ଉଭୟ ସର୍ଗରେ ବର୍ଣ୍ଣିତ ସଂକ୍ଷିପ୍ତ ଚରିତ ଏହି, ଲଙ୍କାଧିପତି ପେର ଶଙ୍କା ବହି ହୃଦୟରେ ରାମଚନ୍ଦ୍ରଙ୍କର ସେନା ପ୍ରଭୃତି ତତ୍ତ୍ୱ ନେବାପାଇଁ ଶାର୍ଦ୍ଦୂଳାଦିଚାରମାନଙ୍କୁ ପ୍ରେରଣ କରିଥିଲେ । ସେମାନେ ଆସି ତତ୍ର ତତ୍ତ୍ୱାନୁସନ୍ଧାନ କରୁଁ କରୁଁ ବିଭୀଷଣଙ୍କ ଆଦେଶରେ କପିବୀରମାନଙ୍କ ଦ୍ୱାରା ଧୃତ ହେଲେ । କିନ୍ତୁ ପରେ ରାମାଦେଶରେ ମୁକ୍ତି ଲାଭ କରି ରାବଣଙ୍କୁ ତତ୍ରତ୍ୟ

(୧) ସେତୁ ମାରଭମାଣସ୍ତୁ ତତ୍ର ରାମେଶ୍ୱରଂ ଶିବମ୍ ।
ସଂସ୍ଥାପ୍ୟ ପୂଜୟିତ୍ୱାହ ରାମୋ ଲେ କହିତାୟ ଚ ।
ଯୁ.କା.୪ସ. ୧ ଶ୍ଳୋ

ସମସ୍ତ ସମ୍ବାଦ ଜଣାଇଲେ । ସେମାନେ ତେତେବେଳେ ରାବଣଙ୍କୁ ଏହା ମଧ କହି ଅଛନ୍ତି, ରାମଚନ୍ଦ୍ର ସମ୍ପ୍ରତି ଗରୁଡ଼ ବ୍ୟୂହ ନିର୍ମାଣ କରି ଅଛନ୍ତି । (୧) କାଲି ଯୁଦ୍ଧକୁ ଆସିବେ । ବ୍ରହ୍ମାଦି (୨) ଦେବତାମାନଙ୍କର ଔରସରୁ ଜାତ ବିଶାଳ ଶାଳକାୟ ଅସଂଖ୍ୟ ବାନରବୀରଜାତ ତାହାଙ୍କ ସଙ୍ଗେ ସଙ୍ଗେ ଯୁଦ୍ଧାର୍ଥ ସନ୍ନଦ୍ଧ ଅଛନ୍ତି ଇତ୍ୟାଦି... । ବଳରାମ ଦାସେ ରାମଚନ୍ଦ୍ରଙ୍କର ସୁବେଳାଦ୍ରିରେ ଶିବିର ସନ୍ନିବେଶଠାରୁ ଲଙ୍କା କାଣ୍ଡର ଆରମ୍ଭ କରିଅଛନ୍ତି । ଦାସ ମହାଶୟ ରାବଣଙ୍କର ପ୍ରେରିତ ଦୂତ ମୁଖରେ ଶ୍ରୀରାମଚନ୍ଦ୍ରଙ୍କର ସୈନ୍ୟକଳନା ସଂକ୍ରାନ୍ତ ବିଷୟମାନ ନିଜ ଲେଖନୀର ସ୍ୱତନ୍ତ୍ରତା ସହିତ ପ୍ରକାଶ କରି ଅଛନ୍ତି । ରାବଣଙ୍କ ପ୍ରେରିତ ଶୁକ ସାରଣଙ୍କ ଦୌତ୍ୟରେ ମତିମାନ ବଳରାମ ଦାସେ ଦୋଷାରୋପଣ କରିଅଛନ୍ତି । ଏ ଲେଖି ଅଛନ୍ତି କି, ବାନର ରୂପଧାରୀ ଶଂସିତ ଦୂତଦୁହେଁ ରାମଙ୍କ ଆଦେଶରେ ଯେତେବେଳେ ନିଜ ନିଜର ରୂପ ଧାରଣ ପୂର୍ବକ ଆତ୍ମ ପରିଚୟ ପ୍ରଦାନ କଲେ, ତେତେବେଳେ ରାମଚନ୍ଦ୍ର ପ୍ରମାଣ ପ୍ରଦର୍ଶନ ପୂର୍ବକ କହିଲେ କି, ରାବଣ ଯାହା ଦୌତ୍ୟକର୍ମରେ ଦୂତଙ୍କୁ ନିଯୁକ୍ତ ନ କରି ମନ୍ତ୍ରିଦ୍ୱୟଙ୍କୁ ପ୍ରେରଣ କରି ଅଛନ୍ତି, ଏଥିରୁ ତାଙ୍କର ବୁଦ୍ଧିହୀନତା ସୁସ୍ପଷ୍ଟ ପ୍ରତୀତ ହୋଉଅଛି । ମୂଳ ଗ୍ରନ୍ଥରେ କେବଳ ଶୁକମନ୍ତ୍ରୀ ବନ୍ଧନରେ ଆବଦ୍ଧ ଥିବା ଲେଖାଅଛି । ମାତ୍ର ଦାସଙ୍କ ଲେଖାରେ ସାରଣ ମଧ ବନ୍ଧନରେ ଆବଦ୍ଧ ଥିଲେ । ସୁତରାଂ ଦାସେ ଲେଖି ଅଛନ୍ତି କି ଶୁକ ସାରଣ ଦୁହେଁ ହନୁମାନଙ୍କର ସଜୋର ଯୁଗପଦ୍ ନିକ୍ଷେପଣ ବେଗରେ ଲଙ୍କାଗଡ଼ର ମଧଭାଗରେ ଯାଇ ନିକ୍ଷିପ୍ତ ହେଲେ । (୩) ପରନ୍ତୁ ଏଥିପାଇଁ ରାମଙ୍କର ଆଦେଶ ହୋଇଥିବା ଲେଖା ନାହିଁ । ରାମାଦେଶ ବିନା ହନୁମାନ ଯେ ଏପରି ଔଦ୍ଧତ୍ୟ ଦେଖାଇଥିଲେ, ଏହା ସଙ୍ଗତ ନୁହେଁ; ବଳରାମ ଦାସେ ଅନ୍ୟାନ୍ୟ କେତେକ ସ୍ଥଳରେ ଯେପରି ବ୍ରହ୍ମାଦି ଦେବତାମାନଙ୍କୁ ରାବଣଙ୍କ ସଭାରେ ଉପବିଷ୍ଟ ରଖିଅଛନ୍ତି, ଏ ସ୍ଥଳେ ମଧ ସେଭଳି ଲେଖା ଲେଖିଅଛନ୍ତି । ଅଦ୍ୟାବଧି କେତେକ ସମୟଯାଏ ଲଙ୍କାରୁ ବହିର୍ଭୂତ ହେବା ନିମନ୍ତେ ରାବଣ ଦେବତାମାନଙ୍କୁ ଆଦେଶ କରିଥିଲେ । ରାବଣ ତଦା ବ୍ରହ୍ମାଦି ଦେବତାମାନଙ୍କୁ ପୁଣି କହିଲେ ଯେ, ମୁଁ ଯେତେବେଳେ ରାମ ଓ ଲକ୍ଷ୍ମଣଙ୍କୁ ଅପିଚ ଋକ୍ଷକପିନିବହକୁ ଆଉ ହନୁମନ୍ତ ବିଭୀଷଣାଦିଙ୍କୁ ନିହତ କରି ଅଯୋଧାରେ ଅଭିଷିକ୍ତ ହେବି, ତେତେବେଳେ ତୁମ୍ଭେମାନେ ଫେର୍ ଲଙ୍କାଗଡ଼କୁ ଆସିବ ।

---

(୧) ଗରୁଡ଼ବ୍ୟୂହମାସ୍ଥାୟ ସର୍ବତୋ ହରିଭିର୍ବୃତଃ ୨୯ସ. ୧୨ ଶ୍ଳୋ.

(୨) ଲେଖା ଅଛି... ଜାମ୍ବବାନ ବ୍ରହ୍ମାଙ୍କ ପୁତ୍ର, ସୁଷେଣ ଧର୍ମଙ୍କ ପୁତ୍ର, ଦଧିମୁଖ ଚନ୍ଦ୍ରଙ୍କ ପୁତ୍ର, ସୁମୁଖ ଓ ଦୁର୍ମୁଖ ମୃତ୍ୟୁଙ୍କ ପୁତ୍ର, ନୀଳ ଅଗ୍ନିଙ୍କ ପୁତ୍ର, ମୈନ୍ଦ ଓ ଦ୍ୱିବିଦ ଅଶ୍ୱିଙ୍କ ପୁତ୍ର, ଗଜ, ଗବାକ୍ଷ, ଗବୟ, ଶରଭ, ଗନ୍ଧମାଦନ ଏହି ପାଞ୍ଚ ଯମଙ୍କ ପୁତ୍ର ।

(୩) ତତକ୍ଷଣେ ତାହାଙ୍କର ଫେଡ଼ିଲେ ବନ୍ଧନ । ବାହୁଡ଼ନ୍ତି ବେନିମନ୍ତ୍ରି ଓଜଗ ମେଲିଣ ।
ହନୁମାନ ତାଙ୍କୁ ଯେ ଦେଲା ଫୋପାଡ଼ାଇ । ଲଙ୍କାଗଡ଼ ଭିତରେ ସେ ପଡ଼ିଲେକ ଯାଇ । ୯ପୃ.

ବର୍ତ୍ତମାନ ନିଜ ନିଜର ଭବନକୁ ପ୍ରସ୍ଥାନ କର । ଏସବୁ ମାନସିକ ଜଗତର ଆଳଂକାରିକ ରୂପକ ଲେଖା । ଏହାର ଆଂଶିକ ପ୍ରମାଣ ପୁରାଣାନ୍ତରରେ ମଧ୍ୟ ଦେଖାଯାଏ ।

ଦାସେ କହିଅଛନ୍ତି, ରାବଣ ଶୁକ ଓ ସାରଣଙ୍କ ମୁଖରୁ ରାମାଦିଙ୍କର ଆଉ ରାମ ବାହିନୀର ପ୍ରଶଂସାଯୁକ୍ତ ପରିଚୟ କଥାମାନ ଶୁଣି ଅସୂୟା ପ୍ରକାଶ କଲେ ଏବଂ ଅନାଦର ପ୍ରଦର୍ଶନ କଲେ । ଶୁକମନ୍ତ୍ରୀଙ୍କ ପ୍ରତି ରାବଣଙ୍କର ଏହି ଅନାଦର ଅସୂୟା ପ୍ରଦର୍ଶନାଦିର କଥା ବାଲ୍ମୀକି ରାମାୟଣରେ ଲେଖା ନାହିଁ, ସତ୍ୟ, ତଥାପି ଏହା ଅଳୀକ ନୁହେଁ । ଅଧ୍ୟାତ୍ମ ରାମାୟଣରେ ଠିକ୍ ଏହା ହିଁ ବର୍ଣ୍ଣିତ ଅଛି । (୧) ଶୁକ ସାରଣଙ୍କ କଥାରେ ରାବଣ ଅବିଶ୍ୱାସ କରି ଫେର୍ ଶାର୍ଦ୍ଦୂଳ ନାମକ ଦୈତ୍ୟକୁ ଦୌତ୍ୟ କର୍ମରେ ସମସ୍ତ ବୁଝିଆସିବାପାଇଁ ପଠାଇଥିଲେ । ଦାସ ମହାଶୟ ଶାର୍ଦ୍ଦୂଳ ଆଚରିତ ଚରିତକୁ ବଡ଼ ବିଚିତ୍ର କରି ଚିତ୍ରିତ କରି ଅଛନ୍ତି, ଏବଂ ଲେଖି ଅଛନ୍ତି କି, ଶାର୍ଦ୍ଦୂଳ ସୁବେଳ ଗିରିର ନିକଟସ୍ଥ ରାବଣଙ୍କ ଇନ୍ଦ୍ର ଉପବନ ନାମକ ରମଣୀୟ ଆରାମରେ ପ୍ରବିଷ୍ଟ ହେଲା (୨) ସେ ପୁଣି ପୂର୍ବେ ନାରଦଙ୍କଠାରୁ ଉପଦିଷ୍ଟ ବହୁ ଦୂରଦର୍ଶିତାସାଧକମନ୍ତ୍ରର ପାଠ ବଳରେ ଯାବତ ରାମବାହିନୀର କଳନା କଲା । ଏ ସ୍ଥଳେ ଶାର୍ଦ୍ଦୂଳର ଅଭିଜ୍ଞାତ ଏକାଧିକ ପ୍ରକାର ବଶ୍ୟଉଚ୍ଚାଟନାଦି ତନ୍ତ୍ରକ୍ରିୟା କଳାପ ମଧ୍ୟ ଲେଖାଅଛି । ଶାର୍ଦ୍ଦୂଳ ନିଜର ଆଖିରେ ମାନ୍ତ୍ରିକ ଅଞ୍ଜନ ମାଖି ଚାହିଁଦେଲା ଯେ ରାମଙ୍କର ଅସଂଖ୍ୟ ବାହିନୀ ବହୁଦୂର ଦେଶ ପର୍ଯ୍ୟନ୍ତ ସୁବିସ୍ତୃତ ରହିଅଛି । ସେହି ବିଚିତ୍ର ଦୃଷ୍ଟିରେ ଯୁଗପଦ୍ ଦେଖାଗଲା ଯେ, ସମୁଦ୍ରର ଦକ୍ଷିଣ ତୀର ବା ସୁବଳୟା ପର୍ବତଠାରୁ ଉତ୍ତର ଦିଗରେ ମାଲ୍ୟବନ୍ତ ପର୍ବତ ଓ ବିନ୍ଧ୍ୟପର୍ବତ ପର୍ଯ୍ୟନ୍ତ, ତୁଙ୍ଗଭଦ୍ରା ଗୋଦାବରୀ ଓ କୃଷ୍ଣବେଣୀ ନଦୀ ପର୍ଯ୍ୟନ୍ତ, କିଷ୍କିନ୍ଧା ମାରବାଡ଼ ମରହଟ୍ଟ ଓ ଉତ୍ତରକାଞ୍ଚି ପର୍ଯ୍ୟନ୍ତ, ପଶ୍ଚିମରେ କାନ୍ୟକୁବ୍ଜ ଓ ଗୁଜୁରାଟ ପର୍ଯ୍ୟନ୍ତ ରାମଚନ୍ଦ୍ରଙ୍କର ସଂକଳିତ ଅକଳିତ ସେନାସମବାୟ ବ୍ୟାପୀ ରହିଅଛନ୍ତି । ଏସବୁକୁ ଦାସ ମହାଶୟ ଅତ୍ୟୁକ୍ତିରେ ଅତିରଞ୍ଜିତ କରିଅଛନ୍ତି । ଇତଃପୂର୍ବେ ସୁଗ୍ରୀବଙ୍କ ଆଦେଶରେ ବାନର ସେନାମାନେ ଯେଉଁ ଯେଉଁ ସ୍ଥାନମାନଙ୍କରୁ ଆସିଥିବାର କଥାମାନ ଦାସେ ଲେଖିଅଛନ୍ତି, ସେ ପୁଣି ସେହି ସେହି କଳ୍ପିତ ସ୍ଥାନମାନ ମନେ ରଖି ଫେର୍ ଏହିଠାରେ ତାର ଉଲ୍ଲେଖ କରିଅଛନ୍ତି । ଏହାପରେ ପ୍ରୋକ୍ତ ଆରାମରୁ ପ୍ରତ୍ୟାବୃତ୍ତ ଶାର୍ଦ୍ଦୂଳ ରାବଣଙ୍କୁ ଏହି ସମ୍ବାଦ

---

(୧) ଅଧ୍ୟାତ୍ମ- ରା.ଯୁ.କା. ପଞ୍ଚମ ସର୍ଗ ପାଠ କରନ୍ତୁ । ଏଥିରେ ପୁଣି ଶୁକମନ୍ତ୍ରୀ ପୂର୍ବେ ବ୍ରାହ୍ମଣ ଥିବା, ବଜ୍ରଦଂଷ୍ଟ୍ର ନାମକ ଅସୁରର ମାୟିକ ଆଚରଣରେ ଶୁକ ଅକାରଣତଃ ଅଗସ୍ତ୍ୟଙ୍କ ଶାପରେ ଅଭିଶପ୍ତ ହୋଇ ରାବଣଙ୍କ ମନ୍ତ୍ରିତ୍ୱ ସ୍ୱୀକାର କରିଥିବ ପ୍ରଭୃତି କଥାମାନ ମଧ୍ୟ ଏ ସ୍ଥଳେ ଲେଖା ଅଛି ।

(୨) ଦାସେ ଏହି ଇନ୍ଦ୍ର ଉପବନର କଥା ଅନେକତ୍ର ଲେଖିଅଛନ୍ତି ।

ଜଣାଇଥିବା ସ୍ଥଳେ ସୁଦ୍ଧା ଫେର୍ ଏହି ସ୍ଥାନମାନଙ୍କର ନାମାବଳୀ ଉଲ୍ଲେଖ କରିଅଛନ୍ତି । ଏସବୁ କଳ୍ପିତ ହେଉ ଅଥବା ଯଥାର୍ଥ ହେଉ, କଥିତ କଥାର ପୁନଃପୁନ ଆମ୍ରେଡ଼ନ ଦ୍ୱାରା ପାଠ ବଢ଼ାଇନେବା ସର୍ବଥା ଅନାବଶ୍ୟକ । ଅତଃପର ଏକତ୍ରିଂଶ ସର୍ଗଠାରୁ ଚାରିଗୋଟି ସର୍ଗରେ ଲେଖାଅଛି, ରାବଣ ସୀତାଙ୍କ ଛାମୁରେ ବିଚ୍ଛିନ୍ନ ମାୟିକ ରାମମସ୍ତକ ପ୍ରଦର୍ଶନ କଲେ, କିନ୍ତୁ ଜାନକୀଦେବୀ ସରମାଙ୍କ ମୁଖରୁ ସେହି ମାୟିକ ଘଟନାର ଅଳୀକତା ଉପଲବ୍ଧ କରି ପାରିଥିଲେ । ରାବଣ ମନ୍ତ୍ରୀମାନଙ୍କରସହ ମନ୍ତ୍ରଣା କଲା ପରେ ମାୟାବୀପ୍ରବର ବିଦ୍ୟୁଦ୍‌ଜିହ୍ୱଦ୍ୱାରା ରାମଙ୍କ ବିଚ୍ଛିନ୍ନ ମସ୍ତକ ଏବଂ ଧନୁ ଓ ଶର କଳ୍ପିତ କଲେ । ତାହା ନେଇ ସୀତାଙ୍କ ଛାମୁରେ ପ୍ରଦର୍ଶିତ କଲେ । ସୀତା ଦେଖି ବହୁ ବିଳାପ କରିଅଛନ୍ତି । ଏ ସମୟେ ମନ୍ତ୍ରୀମାନଙ୍କ ଆହ୍ୱାନରେ ରାବଣ ବାହାରି ଯିବାରୁ ତାହାଙ୍କ ସଙ୍ଗେ ସଙ୍ଗେ ସେହି ମାୟିକ ମସ୍ତକାଦି ଅନ୍ତର୍ହିତ ହୋଇଗଲା । ସରମା ସେ କ୍ଷଣି ସୀତାଙ୍କୁ ଜଣାଇଲେ 'ଏସବୁ ଚରିତ (୧) ମୁଁ ଦେଖି ଆସିଅଛି, ସାନୁଜରାମ ଆନନ୍ଦରେ ବିରାଜମାନ ଅଛନ୍ତି', ସରମା ଏପରି କହୁଅଛି, ତେଣେ ରାମବାହିନୀରୁ ଆନନ୍ଦ କୋଳାହଳ ଆଉ ସାମରିକ ବାଦ୍ୟଧ୍ୱନି ଶୁଭିଲା । ତେତିକିବେଳେ ପୁଣି ସରମା ସୀତାଙ୍କ ଆଦେଶରେ ଯାଇ ରାବଣଙ୍କ ପ୍ରବୃତ୍ତି ବୁଝିଆସି ଜଣାଇଲେ ଯେ ରାବଣଙ୍କ ଜନନୀ ରାମଙ୍କର ଅମାନୁଷିକ କାର୍ଯ୍ୟମାନ କହି ଆପଣଙ୍କର ପ୍ରତ୍ୟର୍ପଣ ଲାଗି ଅନେକଧା ଅନୁରୋଧ କଲେ, କିନ୍ତୁ ସେ ଦୁଷ୍ଟମତି ସ୍ୱୀକାର କଲା ନାହିଁ । (୨)

ବଳରାମ ଦାସେ ଏହି ସାମୟିକ ମସ୍ତକ ପ୍ରଦର୍ଶନର ଘଟନାକୁ ଅନେକଗୁଡ଼ିଏ ପାଠର ବ୍ୟବଧାନରେ ନିହିତ କରିଅଛନ୍ତି । ଏହା ପୂର୍ବରୁ ରାମଙ୍କର ପ୍ରଥମ ଦିବସର ଯୁଦ୍ଧ ପ୍ରକ୍ରିୟାର ବର୍ଣ୍ଣନାମାନ ବିବୃତ କରି ଅଛନ୍ତି । ମୂଳ ଗ୍ରନ୍ଥରେ ଆଗେ ରାମଙ୍କ ମାୟାମୁଣ୍ଡ ପ୍ରଦର୍ଶନ ତାପରେ ପ୍ରଥମ ଦିବସର ଯୁଦ୍ଧ ପ୍ରକ୍ରିୟା; ଦାସଙ୍କ ରାମାୟଣରେ ଆଗେ ପ୍ରଥମ ଦିବସର ଯୁଦ୍ଧ ପ୍ରକ୍ରିୟା, ତାପରେ ମାୟିକ ରାମ ମସ୍ତକ ପ୍ରଦର୍ଶନ ଲେଖାଅଛି ।

ଦାସେ ପୁଣି ଲେଖିଅଛନ୍ତି, ଲଙ୍କାଧିପତି ଶଙ୍କାରହିତ ହୃଦୟରେ ରାକ୍ଷସବୀରମାନଙ୍କୁ ସମାଦର ଆଉ ପ୍ରଶଂସାବାଦ ପୂର୍ବକ ଆଦେଶ କଲେ ଯେ ବର୍ତ୍ତମାନ ଘୋର ବିପଦ ଘଟିଅଛି । ଆପଣମାନଙ୍କୁ ଏହାର ପ୍ରତିକାର କରିବାକୁ ହେବ । ତାପରେ ସେ ମନ୍ତ୍ରଣା ସଭାରେ ନିର୍ଦ୍ଧାରିତ କଲେ ଯେ ଆମ୍ଭେମାନେ ଆଗେ ଯୁଦ୍ଧକୁ ଯିବା ନାହିଁ । ଗଡ଼ର ଚତୁର୍ଦ୍ୱାର ବନ୍ଦ କରାଯିବ, ସନ୍ନଦ୍ଧ ମହାବୀରପୁରୁଷମାନେ ଅସଂଖ୍ୟ ସେନାସହ ତତ୍ର ସାବଧାନ

(୧) ଇୟଂ ପ୍ରଯୁକ୍ତାରୌଦ୍ରେଣ ମାୟା ମାୟାବିନା ତ୍ୱୟି । ୩୩ସ. ୧୪ଶ୍ଳୋ.

(୨) ମୂଳ ଗ୍ରନ୍ଥରେ ଅନେକତ୍ର ଲେଖାଅଛି, ରାବଣଙ୍କୁ ବିଶେଷତଃ ତାହାଙ୍କ ଜନନୀ, ମନ୍ଦୋଦରୀ ବିଭୀଷଣ, ମାଲ୍ୟବାନ ପ୍ରଭୃତି ସୀତାଙ୍କ ପ୍ରତ୍ୟର୍ପଣ ଲାଗି ଏକାଧିକବାର ଉପଦେଶ ଦେଇଥିଲେ ।

ରହିବେ । ଏହା ହେଲେ ଶତ୍ରୁ ପକ୍ଷ କେତେକ ଦିନ ମାତ୍ର ଅପେକ୍ଷାରେ ରହି ତାପରେ ବାହାରିଯିବେ । (୧) ରାବଣ ସମଗ୍ର ଚତୁରଙ୍ଗ-ବାହିନୀକୁ ଚତୁର୍ଦ୍ଧା ବିଭକ୍ତ କରି ଚତୁର୍ଦ୍ବାରରେ ସନ୍ନଦ୍ଧ ରଖାଇ ଅଛନ୍ତି । ରାମଚନ୍ଦ୍ର ଏହାର ସମ୍ବାଦ ପାଇ ବିଭୀଷଣଙ୍କୁ କାରଣ ଜିଜ୍ଞାସା କଲେ । ସେ କହିଲେ ଏହାର କାରଣ ଆଉ କିଛି ନୁହେଁ, ରାବଣ ଆପଣଙ୍କ ସଙ୍ଗେ ସଙ୍ଗର କରିବାପାଇଁ ଭୀତ ହୋଇ ଏହି ଭିଆଣ କରିଅଛନ୍ତି । (୨) ତାପରେ ରାମଚନ୍ଦ୍ର ସୁଗ୍ରୀବାଦିଙ୍କୁ ରାବଣଙ୍କର ଚତୁର୍ଦ୍ୱାରସ୍ଥିତ ବୀରମାନଙ୍କର ପ୍ରତିଭଟ ସ୍ୱରୂପ ନିଯୁକ୍ତ କଲେ । (୩)

ବଳରାମ ଦାସେ ଯୁଦ୍ଧ ବାଦ୍ୟମାନଙ୍କ ମଧ୍ୟରେ ରାମତାଳିକୁ ଅତି ପ୍ରଶସ୍ତ କରିଅଛନ୍ତି । (୪) ଏହା କାଂସ୍ୟ ନିର୍ମିତ ବାଦ୍ୟ । ଏହି ବାଦ୍ୟକୁ ବାନରମାନେ ସୁବେଳରେ କେବଳ ତୟାର କରାଇଥିଲେ । ଏହାଛଡ଼ା ରାମବାହିନୀରେ ଦୋକାଠି, କଂସାଳ, ଝାଞ୍ଜ, ମର୍ଦ୍ଦଳ, ଘଣ୍ଟା, ଦମା, ଦମାଲୁ, ଢୋଲ, ଟମକ, ନିସାଣ, ଦାଉଣ୍ଡି, ଦୋସରି, କଢ଼ା, ଘୁମୁରା, ଢେମ୍ପା ବା ଢାମ୍ପ, ଚାଙ୍ଗୁ, କୁଣ୍ଡଳି, ତୁରି, ଭେରୀ, ମହୁରି, ବିଜିଘୋଷ, ଶଙ୍ଖ ପ୍ରଭୃତି ବହୁବିଧ ବାଦ୍ୟମାନ ନିନାଦିତ ହେଉଥିଲା । ଦାସ ମହାଶୟ ବାନର ବୀରମାନଙ୍କର ସାମରିକ ବେଶରେ ସାଜସଜ୍ଜା ବିଧାନକୁ ପ୍ରାୟ ପାଞ୍ଚଗୋଟି ପୃଷ୍ଠାରେ ସବିସ୍ତର ବର୍ଣ୍ଣନା କରିଅଛନ୍ତି । (୫) ଏଥିମଧ୍ୟରେ ବୀରମାନଙ୍କର ବିଶେଷତଃ କେଶବନ୍ଧନ ପରିପାଟୀ ବର୍ଣ୍ଣିତ ଅଛି । ଓଡ଼ିଆରେ ସୌଖିନ ପୁରୁଷମାନଙ୍କର କେଶବନ୍ଧନରକ୍ରମ ପ୍ରାଚୀନକାଳରୁ ରମଣୀୟ ଥିଲା । ଆଜିକାଲିର ଯାବନିକ ମୁଣ୍ଡନ ରୀତି ଏହି କବିଙ୍କ ସମୟରେ ନଥିଲା । ଅତଏବ ଏ ମହାଶୟ ପ୍ରାଚୀନ କେଶ ପ୍ରସାଧନକୁ ବର୍ଣ୍ଣିଯାଇ ଅଛନ୍ତି ।

ରାମଚନ୍ଦ୍ରଙ୍କର ସହାୟଭୂତ ବାନର ବୀର ବାହିନୀର କ୍ରମିକ ସେନାସମାଗମରେ ବଳରାମ ଦାସଙ୍କର ଏପରି ଧାରଣା ଥିଲା ଯେ, ଏ ପର୍ଯ୍ୟନ୍ତ ଅର୍ଥାତ୍ ପ୍ରଥମ ଦିବସର ଯୁଦ୍ଧ ପର୍ଯ୍ୟନ୍ତ ରାମଙ୍କର କପିସେନାମାନେ ସମ୍ପୂର୍ଣ୍ଣତଃ ଆହୁରି ସମାବେଶିତ ହୋଇ ନ ଥିଲେ । ଆହୁରି ସେମାନେ ନାନା ସ୍ଥାନରୁ କ୍ରମଶଃ ଦୈନନ୍ଦିନ ଆଗମନ କରୁଥିଲେ ।

---

(୧) ଛାପା ପୁସ୍ତକରେ ୧୮, ୧୯ ପୃଷ୍ଠା ଦେଖନ୍ତୁ ।

(୨) ଛାପାରେ ୨୧ ପୃଷ୍ଠା ଦେଖନ୍ତୁ

(୩) ପୂର୍ବଦ୍ୱାରରେ – ପ୍ରହସ୍ତ – ସୁଗ୍ରୀବ
ଦକ୍ଷିଣରେ – ପାରାଗ ଓ ମହୋଦର – ଅଙ୍ଗଦ
ପଶ୍ଚିମରେ – ଇନ୍ଦ୍ରଜିତ – ମାରୁତି
ଉତ୍ତର ଦ୍ୱାରରେ – ରାବଣ – ଶ୍ରୀରାମ

(୪) ଛାପାପୁସ୍ତକ ୨୨ ପୃଷ୍ଠା ପାଠ କରନ୍ତୁ ।

(୫) ଛାପାରେ ୨୨ ପୃଷ୍ଠାଠାରୁ ୨୬ ପୃଷ୍ଠା ପର୍ଯ୍ୟନ୍ତ ଯୁଦ୍ଧ ବେଶ ବର୍ଣ୍ଣନା ଦେଖନ୍ତୁ ।

ଅତଏବ ଏ ସ୍ଥଳେ ରାମଙ୍କ ମୁଖରେ କୁହାଇ ଅଛନ୍ତି ଯେ ବର୍ତ୍ତମାନ ଯେତେକ ସେନା ସମୁଦ୍ର ପାର ହୋଇ ଆସିଛନ୍ତି, ସେମାନେ ଯାଇ ଲଙ୍କାର ଚତୁର୍ଦ୍ୱାର ବେଷ୍ଟନ କରନ୍ତୁ । ଏଣିକି ଯେତେ ସେନା ଆସିବେ ଏ ସ୍ଥଳେ ସେମାନେ ରହନ୍ତୁ, ଇତ୍ୟାଦି । (୧)

ରାମଚନ୍ଦ୍ର ସୁବେଳଗିରୀ ମୂଦ୍ଧାଙ୍ଗଣକୁ ଯାତ୍ରା କରିବା ପୂର୍ବରୁ ବାନରରାଜ ସଂହତଗ୍ରୀବ ସୁଗ୍ରୀବଙ୍କୁ ଏହି ଯୁଦ୍ଧ ଜୟର ଏକମାତ୍ର ପ୍ରଧାନ କାରଣ ମନେ କରି ନିଜର ଅନୁଭୂତ ଦୁଃଖର ପ୍ରକାଶ ପୂର୍ବକ କହିଅଛନ୍ତି କି ଆପଣ ସୂର୍ଯ୍ୟବଂଶକୁ ରକ୍ଷା କରିବେ । ଏହି କଥା ମୂଳଗ୍ରନ୍ଥରେ ଏ ସ୍ଥଳେ ଉକ୍ତ ନ ଥିଲେ ସୁଦ୍ଧା ପ୍ରକାଶକରଣ ଅସଂଗତ ବା ଅସମୀଚୀନ ନୁହେଁ ।

ବଳରାମ ଦାସେ ଅନେକ ସ୍ଥଳରେ ଯୁଦ୍ଧର ଗୀତଗାନକୁ ସମଧିକତଃ କନଡ଼ା ରାଗରେ ଆଉ ଯୁଦ୍ଧର ବାଦ୍ୟବାଦନକୁ ଚାମୁଣ୍ଡା ଛାନ୍ଦରେ ଯୋଗାଇ ଅଛନ୍ତି । (୨) ଦାସେ ଲେଖିଅଛନ୍ତି, ଶ୍ରୀରାମଚନ୍ଦ୍ର ଆହବିକ ବୀରବେଶରେ ସୀତା ଦେବୀଙ୍କର ଅମ୍ଳାନ ଶାଟିକା ଏବଂ ମସ୍ତକର ଅଳଙ୍କାର ମଣିଗୁଟିକା ଗୋଟିକୁ ଧାରଣ କରିଥିଲେ । (୩) ଏହା ମୂଳ ଗ୍ରନ୍ଥରେ ଉକ୍ତ ଥିବା ଜଣାଯାଏନାହିଁ । ତଥାପି  ଶ୍ରୀରାମଙ୍କର ସୀତାଙ୍କ ପ୍ରତି ପ୍ରେମାତିଶଯ୍ୟରୁ ଦାସେ ଏଭଳି ଚିତ୍ରଣ କରିଅଛନ୍ତି । ଏ ମହାଶୟ ବୀର ବେଶରେ ସାଜସଜ୍ଜା ଆହବିକ ପ୍ରୟାଣ ସମାରୋହକୁ ମୂଳ ଅପେକ୍ଷା ବଡ଼ ସୁନ୍ଦର ସୁବିସ୍ତୃତ ବର୍ଣ୍ଣି ଅଛନ୍ତି । ଦାସେ ଲେଖିଅଛନ୍ତି କି ଯେତେବେଳେ ରାମବାହିନୀ ଯାଇ ଲଙ୍କାର ଚାରିଦ୍ୱାର ରନ୍ଧିଦେଲେ ତେତେବେଳେ ରାବଣ ନିରୁପାୟତଃ ଦୁଃଖ ପ୍ରକାଶ କରି ମାୟିକ ରାମମୁଣ୍ଡ ପ୍ରଦର୍ଶନ କାଣ୍ଡ ଆରମ୍ଭ କଲେ । ଦାସେ ଲେଖି ଅଛନ୍ତି, ସେକ୍ଷଣି ରାବଣ ଦୁଇଟା ରାକ୍ଷସର ମୁଣ୍ଡ ହାଣି ସେ ଦୁଇଟାକୁ ରାମ ଓ ଲକ୍ଷ୍ମଣଙ୍କର ମସ୍ତକ ସଦୃଶ କଲେ । ସେ ପୁଣି ଆପଣାର ଧନୁକୁ ରାମଙ୍କ ଧନୁ ସଦୃଶ କରି ତହିଁରେ ତାକୁ ନିଜେ ଭାର ସ୍ୱରୂପ ବହନ କଲାପରେ ବିଦ୍ୟୁଜ୍ଜିହ୍ୱଙ୍କୁ ଦେଲେ । (୪)

ଦାସେ ଏ ସ୍ଥଳେ ସୀତାଙ୍କ ବିଳପନରେ ତାହାଙ୍କର ଯାହାକି ଅକଥନୀୟ ସେଭଳି ଦୁଇକଥା ଶୋକାବେଗବଶରେ କୁହାଇ ଦେଇଅଛନ୍ତି । ରାମଙ୍କୁ ଲକ୍ଷ୍ୟ କରି ଏଭଳି କଥା ସୀତାଙ୍କ ମୁଖରେ କଦାପି ସୁନ୍ଦର ନୁହେଁ । ସୀତାଦେବୀ ରାମଙ୍କର ଅନନ୍ୟସାମାନ୍ୟ

---

(୧)

(୨) କନଡ଼ା ରାଗରେ କେହୁ କରଇ ଆଳାପ, କଟି ଘଣ୍ଟି ଘାଗୁଡ଼ି ଯେ ମୁଖରାବ ଧାପ ।
ଟମକ ଧ୍ୱନି ଶୁଭିଲା ହୋଇ ବିକରାଳ, ଚାମୁଣ୍ଡା ଛନ୍ଦରେ ତହିଁ ବାଜିଲା ମର୍ଦ୍ଦଳ । ୨୮, ୨୯ ପୃଷ୍ଠା

(୩) ଛାପାରେ ୩୦ ପୃଷ୍ଠା ଦେଖନ୍ତୁ ।

(୪) ରାମ ଲକ୍ଷ୍ମଣ ସଂଗାତେ ଘେନି ବେନି ଶିର । କୋଦଣ୍ଡରେ ତାହା ମୁହିଁ କରିଥିବି ଭାର । XXX ଇତ୍ୟାଦି ।

ବୀରତ୍ୱର ପ୍ରଭାବ ଭଲ କରି ଜାଣିଥିଲେ । ସେସବୁ ଜାଣି ଜାଣି ଏଭଳି ତାଙ୍କର ଅସାମର୍ଥ୍ୟ ଦ୍ୟୋତକ କଥା କହିଥିବେ ? କଥଂଚିତ୍ ବିଶ୍ୱସନୀୟ ନୁହେଁ । (୧) ଦାସେ ପୁଣି ଲେଖିଅଛନ୍ତି, ମନ୍ତ୍ରୀ ପ୍ରେଷିତ ଦୂତ ଆସି ରାବଣଙ୍କୁ ସେଠାରୁ ଶୀଘ୍ର ପ୍ରତ୍ୟାବୃତ୍ତ ହେବା ପାଇଁ ଯାହା କହିଥିଲା, ସୀତା ତାହା ଶୁଣିପାରି ଦର୍ଶିତ ଘଟନା ମିଥ୍ୟା ଜାଣି ଶୋକ ତ୍ୟାଗ କରିଥିଲେ ।

ଦାସେ ଏ ସ୍ଥଳେ ସରମାଙ୍କ କଥା ଲେଖିନାହାନ୍ତି । କିନ୍ତୁ ସରମାଙ୍କ ସ୍ଥାନରେ ପ୍ରଭଞ୍ଜନା ନାମ୍ନୀ ଦଇତୁଣୀକୁ ସୀତାଙ୍କ ସଙ୍ଗାତୁଣୀ କରି ତା ମୁଖରେ ରାବଣଙ୍କ ମାୟିକ କୌଶଳର ମୀମାଂସା କରାଇଅଛନ୍ତି । ଏ ସ୍ଥଳେ ପୁଣି ଦାସେ ସ୍ତ୍ରୀମାନଙ୍କ ସମ୍ବନ୍ଧେ ଯେତେଗୁଡ଼ିଏ କଥା ସୀତାଙ୍କ ମୁଖରେ କୁହାଇ ସେସବୁ ତାହାଙ୍କର ସୌନ୍ଦର୍ଯ୍ୟ ସୌଭାଗ୍ୟର ଲକ୍ଷଣ ସ୍ୱରୂପ ବର୍ଣ୍ଣନା କରି ଅଛନ୍ତି, ସେସବୁଗୁଡ଼ିକ ମୌଳିକ ଆଦର୍ଶର ଅନୁଗତ କେବଳ । ମୂଳ ଗ୍ରନ୍ଥର ପଞ୍ଚତ୍ରିଂଶ ସର୍ଗଠାରୁ ଏକଚତ୍ୱାରିଂଶ ସର୍ଗାନ୍ତ ପର୍ଯ୍ୟନ୍ତ ରାମଚନ୍ଦ୍ରଙ୍କର ରାବଣଙ୍କ ପ୍ରତି ସୁବେଳାଦ୍ରିଠାରୁ କୃତ ପ୍ରଥମ ଅଭିଯାନର ପୂର୍ବେ ଉଭୟ ପକ୍ଷରେ ଯେଯେ ଚର୍ଯ୍ୟାମାନ ଘଟିଥିଲା, ସେସବୁର ସବିସ୍ତର ବର୍ଣ୍ଣନା ଲେଖାଅଛି । ରାବଣ ବୀରମାନଙ୍କୁ ସଂଗ୍ରାମାର୍ଥ ସତ୍ୱର କରାଇବାର ଦେଖି ତାହାଙ୍କ ମାତାମହ ବୟୋବୃଦ୍ଧ ଜ୍ଞାନବୃଦ୍ଧ ବୁଦ୍ଧିମାନ୍ ମାଲ୍ୟବାନ୍ ଫେର୍ ରାବଣଙ୍କୁ ବହୁଧା ଧର୍ମାଧର୍ମ ବୁଝାଇ ସୀତାପ୍ରତ୍ୟର୍ପଣପୂର୍ବକ ସନ୍ଧି କରିବାକୁ କହିଲେ । (୨)

କିନ୍ତୁ ରାବଣ ତାଙ୍କୁ କହିଲେ, ମୁଁ ଭାଙ୍ଗିଯିବି ପଛେ ଲଇଁବି ନାହିଁ । ଏହା ମୋର ଏବଂ ମୋ ସଦୃଶ ପ୍ରଜ୍ଞାବନ୍ତ ଅଭିମାନବନ୍ତ ବୀର ପୁରୁଷର ସ୍ୱଭାବସିଦ୍ଧ ଗୁଣ । (୩) ତାପରେ ଦାସେ ଲଙ୍କାର ପୂର୍ବାଦି ଦ୍ୱାରମାନଙ୍କରେ ପ୍ରହସ୍ତାଦିଙ୍କୁ ଯୁଦ୍ଧାର୍ଥ ସନ୍ନଦ୍ଧ ଲଗାଇଲେ । ତେଣେ ରାମଚନ୍ଦ୍ର ଲକ୍ଷ୍ମଣ, ବିଭୀଷଣ, ସୁଗ୍ରୀବାଦିଙ୍କୁ ସଙ୍ଗେ ଧରି ଅପ୍ରଧୃଷ୍ୟ ଲଙ୍କାଦୁର୍ଗ ମଧ୍ୟରେ କିପରି ପ୍ରବେଶ କରିପାରିବୁଁ, ଏହାର ବିଚାର କରିବାକୁ ଲାଗିଲେ । ବିଭୀଷଣ କହିଲେ ମୋର ମନ୍ତ୍ରୀମାନେ ଏକ୍ଷଣି ଯାଇ ଶତ୍ରୁପକ୍ଷର ସମସ୍ତ ପ୍ରବୃତ୍ତି ଦେଖି ଆସିଅଛନ୍ତି ।

---

(୧) ଏବେ ଆସି ଅସୁରଙ୍କ ହାତେ ପ୍ରାଣ ଦେଲୁ । ମୋର ଛାର ପାଇଁ ଧାଇଁ ଏଥକୁ ଅଇଲୁ ।
× × ଅଯୋଧ୍ୟା ନଗ୍ରେ ଅଛନ୍ତି ମୋର ବନ୍ଧୁବର୍ଗେ । ସେ ଆଶା ଛାଡ଼ିଣ ତୁମ୍ଭେ ଚଳିଲ କୁମାର୍ଗେ ।
ଦଇତଙ୍କ ମାୟା ତୁମ୍ଭେ ଜାଣି ନ ପାରିଲ, ବାଳି ମର୍କଟ ମାରିବା ପ୍ରାୟେକ ବୁଝିଲ ।

(୨) ତଦ୍ ମହ୍ୟଂ ରୋଚତେ ସନ୍ଧିଃ ସହ ରାମେଣ ରାବଣ ।
ଯଦର୍ଥମଭିଯୁକ୍ତାଃସି ସ୍ୱଃ ସୀତା ତସ୍ମୈ ପ୍ରଦୀୟତାଂ । ୩୫ସ. ୧୦ ଶ୍ଳୋ.

(୩) ଅଧ୍ୟାତ୍ମ ରାମାୟଣ ଯୁ.କା. ୩ ସର୍ଗରେ ମଧ୍ୟ ଏହା ଉକ୍ତ ଅଛି ।
ଦ୍ୱିଧା ଭିଦ୍ୟେୟମପ୍ୟେବଂ ନ ନମେୟଂତୁ କସ୍ୟଚିତ୍ ।
ଏଷ ମେ ସହଜୋ ଦୋଷଃ ସ୍ୱଭାବୋ ଦୁରତିକ୍ରମଃ । ୩୬ସ. ୧୧ଶ୍ଳୋ.

ଆପଣ ଭୟ କରନ୍ତୁ ନାହିଁ, ବ୍ୟୂହ ରଚନା କରନ୍ତୁ । ଅବଶ୍ୟ ଆପଣ ସବଳଗଣ ସହ ରାବଣଙ୍କୁ ଧ୍ୱସ୍ତ କରି ପାରିବେ । ତଦା ରାମଚନ୍ଦ୍ର ଲଙ୍କାର ପୂର୍ବାଦିଦ୍ୱାରରକ୍ଷକ ବୀରମାନଙ୍କ ପ୍ରତିଭଟ ସ୍ୱରୂପ ନୀଳ ପ୍ରଭୃତିଙ୍କୁ ନିର୍ଦ୍ଧାରିତ କଲେ ଏବଂ ଆଦେଶ ଦେଲେ ଯେ ସୁଗ୍ରୀବ ପ୍ରଭୃତି ବାନରବୀରମାନେ ବାନରରୂପରେ କେବଳ ଯୁଦ୍ଧ କରନ୍ତୁ । କେହିହେଲେ ମନୁଷ୍ୟାଦିର ରୂପ ଧାରଣ କରନ୍ତୁ ନାହିଁ । ମୁଁ ଆଉ ଲକ୍ଷ୍ମଣ ଏବଂ ନିଜର ମନ୍ତ୍ରୀ ଚତୁଷ୍ଟୟଙ୍କ ସହିତ ବିଭୀଷଣ, ଏହିପରି ସାତଜଣ ମାତ୍ର ମନୁଷ୍ୟ ରୂପରେ ଯୁଦ୍ଧ କରିବୁଁ । (୧) ତାପରେ ରାମଚନ୍ଦ୍ର ସେହି ରାତ୍ରିରେ ସୁବେଳ ଶିଖରରୁ ଲଙ୍କାଗଡ଼ର ସମ୍ୟକ୍ ପରିଦର୍ଶନ କଲେ । ଏ ସ୍ଥଳେ ଲଙ୍କାପୁରିର ବର୍ଣ୍ଣନା ଲେଖା ଅଛି । (୨)

ସେହି ରାତ୍ରିରେ ଯୁଦ୍ଧାର୍ଥ ଉଦ୍‌ଗ୍ରୀବ ସୁଗ୍ରୀବ ରାମଙ୍କ ଅଜ୍ଞାତସାରରେ ସୁବେଳରୁ ଲଙ୍କାର ଗୋପୁରକୁ ଲମ୍ଫମାରିଗଲେ । ତତ୍ର ସେ ଏକ ମୁହୂର୍ତ୍ତ ମାତ୍ର ଅବସ୍ଥାନ କରି ରାବଣଙ୍କୁ ଅନେକଧା ଭର୍ତ୍ସନା କଲାପରେ ସହସା ତଦୀୟ ମୁକୁଟ ଟାଣି ଆଣି ତାଙ୍କୁ ଭୂପୃଷ୍ଠରେ ନିପାତିତ କଲେ । (୩) ତଦା ପୁଣି ସେ ଦୁହେଁ ନିଜେ ଯୁଦ୍ଧରେ ମାତିଲେ । ପ୍ରିୟ ପାଠକ ମହାଶୟ ! ଏ ସ୍ଥଳେ ବାହୁଯୁଦ୍ଧର କେତେକ ବିବରଣ ଦେବା ଆବଶ୍ୟକ ମନେ କରୁଅଛୁଁ । ବୀରମାନଙ୍କର ଯୁଦ୍ଧ ପ୍ରକ୍ରିୟା ପ୍ରାୟଶଃ ତ୍ରିବିଧ । ବାହୁଯୁଦ୍ଧ, ଦ୍ୱନ୍ଦ୍ୱ ଯୁଦ୍ଧ ଓ ସଂକୁଳଯୁଦ୍ଧ ବା ତୁମୁଳ ଯୁଦ୍ଧ । ବାହୁ ଯୁଦ୍ଧରେ ଭଟ ପ୍ରତିଭଟ ଦୁହେଁ ଅନ୍ୟୋନ୍ୟତଃ ମୁଷ୍ଟି ବୃଷ୍ଟି, ତଳ ପ୍ରହାର, ଅରତିଘାତ ଅର୍ଥାତ୍ ନିଷନିଷ୍ପ ମୁଷ୍ଟିଯୁକ୍ତ ପ୍ରକୋଷ୍ଠ ପ୍ରହାର, କରାଗ୍ରାଘାତ, ପାଦ ପ୍ରହାର, ଅକୁଣ୍ଠ ଆଣ୍ଠୁ ପ୍ରହାର ଓ କଫୋଣିଘାତ କରନ୍ତି । ବାହୁଯୁଦ୍ଧର ପ୍ରାରମ୍ଭରେ ଉଭୟ ବୀରଙ୍କର ଅନ୍ୟୋନ୍ୟ ଦୃଢ଼ ପରିରମ୍ଭଣ ହୋଇଥାଏ । ଏପରି ପ୍ରଗାଢ଼ ଭିଡ଼ାଭିଡ଼ି ହୁଏ ଯେ ଉଡ଼ାଏ ପାଦକ୍ରମର ବିନା ବୀର ହୃଦୟ ନିରୁଦ୍ଧଚେଷ୍ଟ ଓ ନିସ୍ପନ୍ଦ ହୁଅନ୍ତି । ତା'ପରେ ପରସ୍ପର ତ୍ୟାଗରେ ଦୁହେଁ ବୃକ୍ଷ ପ୍ରାୟ କେବଳ ଦଣ୍ଡାୟମାନ ରହନ୍ତି । ଉଭୟେ ଥରେ ଥରେ ପଶ୍ଚାଦ୍‌ପଦବିନ୍ୟାସ ପୂର୍ବକ ଫେର୍ ଯୁଦ୍ଧାର୍ଥ ଅବସର ପ୍ରତୀକ୍ଷା କରନ୍ତି । ଭକ୍ଷ୍ୟ ଦ୍ରବ୍ୟକୁ ମାର୍ଜାରଦ୍ୱୟ ଗ୍ରହଣ ଲାଳସାରେ ଦତ୍ତାବଧାନ ହୋଇ ନିଶ୍ଚଳତାରେ

---

(୧) ନ ଚୈବ ମାନୁଷଂ ରୂପଂ କାର୍ଯ୍ୟଂ ହରିଭିରାହବେ ।
ଏଷା ଭବତୁ ସଂଜ୍ଞା ନୋ ଯୁଦ୍ଧେଽସ୍ମିନ୍ ବାନରେ ବଳେ ।
ବୟଂ ତୁ ମାନୁଷେଣୈବ ସପ୍ତ ଯୋତ୍ସ୍ୟାମହେ ପରାନ୍ ।
ଅହମେବ ସହ ଭ୍ରାତା ଲକ୍ଷ୍ମଣେନ ମହୌଜସା ।
ଆତ୍ମନା ପଞ୍ଚମଶ୍ଚାୟଂ ସଖା ମମ ବିଭୀଷଣଃ । ୩୭ସ.୩୩, ୩୫ ଶ୍ଳୋ.

(୨) ୩ଟି ସର୍ଗରେ ଲଙ୍କାପୁରିର ବର୍ଣ୍ଣନା ଦେଖନ୍ତୁ ।

(୩) ଇତ୍ୟୁକ୍ତ୍ୱା ସହସୋତ୍ପତ୍ୟ ପୁପ୍ଲୁବେ ତସ୍ୟ ଚୋପରି ।
ଆକୃଷ୍ୟ ମୁକୁଟଂ ଚିତ୍ରଂ ପାତୟିତ୍ୱା ପତଦ୍ ଭୁବି । ୪୦ସ. ୧୧ଶ୍ଳୋ.

ରହିଲା ପ୍ରାୟ ସେମାନେ ଠିଆ ରହନ୍ତି । ସେମାନେ ମଧ୍ୟେ ମଧ୍ୟେ ମଣ୍ଡଳାକାର ପରିଭ୍ରମଣ କରି ଥାଆନ୍ତି । ବୀରଦ୍ୱୟ ସବ୍ୟ ଅପସବ୍ୟ ସବ୍ୟାସବ୍ୟ ଏବଂ ଅର୍ଦ୍ଧଭ୍ରମଣ ରୂପକ ମଣ୍ଡଳମାନ ଆଚରଣ କରନ୍ତି, କେତେବେଳେ ଗୋମୂତ୍ରାକାର ସଂକ୍ରମଣ କରନ୍ତି, କେତେବେଳେ ଗତ ଓ ପ୍ରତ୍ୟାଗତ ଉପସର୍ପଣ କରନ୍ତି ଏବଂ ଅପସର୍ପଣ କରନ୍ତି । ସେ ଦୁହେଁ ପୁଣି କେତେବେଳେ ତୀର୍ଯ୍ୟକ ଗତି, କେତେବେଳେ ବକ୍ରଗତି, କେତେବେଳେ ସ୍ଥାନଚଳନଦ୍ୱାରା ପ୍ରତିଭଟ ପ୍ରହାରର ବ୍ୟର୍ଥକରଣ, କେତେବେଳେ ପ୍ରତିପ୍ରୟୋଗ ଦ୍ୱାରା ପ୍ରତିଭଟର ଆଘାତର ପରିହରଣକରଣ ଆଚରନ୍ତି । ବାହୁଯୋଦ୍ଧା କେତେବେଳେ ପରିଧାବନ, କେତେବେଳେ ଅଭିଦ୍ରବଣ, କେତେବେଳେ ନମନ ପୂର୍ବକ ଗମନ, କେତେବେଳେ ମଣ୍ଡୁକଗତି କରି ପ୍ରତିଭଟର ଆକ୍ରମଣ କରନ୍ତି । ବାହୁଯୋଦ୍ଧା କେତେବେଳେ ପ୍ରତିଯୋଦ୍ଧାର ଅଭିସନ୍ଧି ଅପେକ୍ଷାରେ ସ୍ୱସ୍ଥାନରେ ଚକାମାଡ଼ି ଅବସ୍ଥାନ କରନ୍ତି । ସେ ପୁଣି କେତେବେଳେ ପରାଙ୍ମୁଖଗମନ, କେତେବେଳେ ପଶ୍ଚାଦ୍‌ଚଳନ, କେତେବେଳେ ଅବସର ପାଇ ପ୍ରତିଭଟର ଜିଘୃକ୍ଷାରେ ଶରୀର ସଂକୋଚନ ପୂର୍ବକ ବିନମନ ସଂକ୍ରମଣ କରି ଥାଆନ୍ତି । ନିଯୁଦ୍ଧସାଧନସିଦ୍ଧ ପ୍ରସିଦ୍ଧ ବୀର କେତେବେଳେ ପ୍ରତିଯୋଧିକୁ ପାଦରେ ପ୍ରହାରିବା ପାଇଁ ଅଧୋମୁଖରେ ଲମ୍ଫ ମାରନ୍ତି, କେତେବେଳେ ପୁଣି ପ୍ରତିଭଟର ବାହୁ ଗ୍ରହଣାର୍ଥ ଆପଣାର ବାହୁ ପ୍ରସାରଣ କରନ୍ତି ଏବଂ କେତେବେଳେ ପ୍ରତିଯୋଧିକୁ ସ୍ୱ ପ୍ରହରଣରୁ ବଞ୍ଚିତ କରିବା ପାଇଁ ନିଜ ବାହୁଦ୍ୱୟର ଅପକ୍ଷେପଣ କରନ୍ତି, ନିଯୁଦ୍ଧ ବୀରଦ୍ୱୟ ଅନ୍ୟୋନ୍ୟ ବାହୁ ବେଷ୍ଟିତ ରହି ନିମ୍ନ ଭାଗରେ ପଡ଼ନ୍ତି, ଗଡ଼ନ୍ତି, ପୁଣି ଦେହଲାଘବ ବଶରୁ ଥରେ ଥରେ ଭୂତଳରୁ ଉତ୍‌ପତନ କରନ୍ତି । ସେମାନେ ଥରେ ଥରେ ଶ୍ରମବଶରୁ କ୍ଷଣକ ନୀରବତାରେ ନିଃଶ୍ୱାସ ମାରି ଫେର୍ ଅନ୍ୟୋନ୍ୟ ଆଶ୍ଳେଷରେ ଋପ୍ତନ କରନ୍ତି । ସେ ଦୁହେଁ ଅନେକ ସମୟ ଯୁଝିଲା ପରେ ମଣ୍ଡଳାକାରରେ ସଂକ୍ରମଣ କରି ଫେର୍ ଏକକୁ ଅପର ବାହୁପାଶରେ ନିବିଡ଼ତର ଆବଦ୍ଧ କରନ୍ତି । ସେହି ବୀରଦ୍ୱୟ ବହୁ ପ୍ରହାରପୀଡ଼ିତ ଖରତର ନଖର ବିକ୍ଷତ ହୋଇ ସୁଦ୍ଧା ଜଣକୁ ଜଣେ ଗଜକୁ ସିଂହ ପ୍ରାୟ ଆକ୍ରମଣ କରୁଥାଆନ୍ତି । ଅଭ୍ୟାସ ଓ ଶକ୍ତି ଯୋଗରୁ ଅନ୍ୟୋନ୍ୟ ସଂଯୁକ୍ତ ରହି ସୁଦ୍ଧା କୌଶଳରେ ଉନ୍ମୁକ୍ତ ହୋଇ ପାରନ୍ତି । ସେ ଦୁହେଁ ଅନ୍ୟୋନ୍ୟତଃ ବକ୍ଷସ୍ଥଳର ସଂଯୋଗ ଓ ସଂପୀଡ଼ନ କରି ଧରଣୀ ପୃଷ୍ଠରେ ପଡ଼ନ୍ତି ଏବଂ ଏକକୁ ଅପର ଉତ୍ତୋଳିନେଇ ଆକାଶକୁ ନିକ୍ଷେପିତ କରନ୍ତି । ବାନରାଧିପ ସଂହତଗ୍ରୀବ ସୁଗ୍ରୀବ ରାବଣଙ୍କସହ ନିଯୁଦ୍ଧ ଚର୍ଯ୍ୟାଚାତୁର୍ଯ୍ୟମାନ ପ୍ରକାଶ କରି କ୍ଷଣକ ପରେ ଯୁଦ୍ଧକୀର୍ତ୍ତିସହ ଶ୍ରୀରାମଙ୍କ ଛାମୁରେ ଆସି ଉପଗତ ହେଲେ । ରାମ ତାହାଙ୍କୁ କହିଲେ, 'ସଖେ ! ଏପରି ସାହସିକ କାର୍ଯ୍ୟ କେବେ ଆଉ କରନ୍ତୁ ନାହିଁ । ଆପଣଙ୍କର ଯଦି ଏଥିରେ କଣ ନା କଣ ହୋଇଯାଏ, ତେବେ ଆପଣଙ୍କ ବିନା ମୋର ପ୍ରିୟତମା ସୀତାଙ୍କଠାରେ ପ୍ରାଣାଧିକ ଲକ୍ଷ୍ମଣ ଓ ଭରତାଦିଙ୍କଠାରେ କି ପ୍ରୟୋଜନ !

ତଥାଚ ମୋର ପ୍ରାଣ ଧାରଣରେ ବା କି ପ୍ରୟୋଜନ ! ସୁଗ୍ରୀବ କହିଲେ, ନା ସେପରି କହନ୍ତୁ ନାହିଁ । ମୁଁ ଭାବିଥିଲି, ଆପଣ ଯଦି ଏଠାକୁ ନ ଆସନ୍ତି, ତେବେ ମୁଁ ନିଜେ ରାବଣଙ୍କୁ ନିହତ କରି ବିଭୀଷଣଙ୍କୁ ଲଙ୍କାରେ ଅଭିଷିକ୍ତ କରି ଜାନକୀଦେବୀଙ୍କୁ ଆଣିବି ଏବଂ ଭରତଙ୍କୁ ଅଯୋଧ୍ୟାରେ ଅଭିଷିକ୍ତ କଲାପରେ ନିଜର ପ୍ରାଣ ତ୍ୟାଗ କରିବି ।'

ଏହାପରେ ଲେଖାଅଛି, ଲକ୍ଷ୍ମଣ ସେନାମାନଙ୍କର ବ୍ୟୂହ ରଚନା କଲେ । ଶ୍ରୀରାମଙ୍କ ସହ ସମଗ୍ର ବାନରବାହିନୀ ଯାଇ ଲଙ୍କାର ଉତ୍ତରାଦି ଦ୍ୱାରମାନ ଅବରୁଦ୍ଧ କଲେ । ଏ ସ୍ଥଳରେ ଉକ୍ତ ଅଛି, ହରିବାହିନୀରେ କେବଳ ଯୂଥପତିମାନଙ୍କ ସଂଖ୍ୟା ଷଟ୍‌ତ୍ରିଂଶଦ୍ କୋଟି ଥିଲା । (୧) ରାମଚନ୍ଦ୍ର ଏମାନଙ୍କ ସହ ଶତ୍ରୁଦୁର୍ଗରେ ସେନା ସନ୍ନିବେଶ କଲାପରେ ସ୍ୱକୀୟ ସ୍ୱାଭାବିକ ଅମିତ ଦୟାମୟତ୍ୱ ଓ କ୍ଷମାମୟତ୍ୱର ପ୍ରକାଶାର୍ଥ ପରେ ଅଙ୍ଗଦଙ୍କୁ ଦୂତ ସ୍ୱରୂପ ରାବଣଙ୍କଠାକୁ ପଠାଇଥିଲେ । ବଦ୍ଧାଙ୍ଗଦ ଅଙ୍ଗଦ ବୀର ରାମାଦେଶରେ ଆସୁରସଭା ପ୍ରବେଶରେ ରାବଣଙ୍କୁ ତଦୀୟ ଅନ୍ୟାୟ କାର୍ଯ୍ୟ ବୁଝାଇଦେଇ ସୀତା ପ୍ରଦାନ ପୂର୍ବକ ଶ୍ରୀରାମଙ୍କୁ ଶରଣ କରିବାପାଇଁ ଜଣାଇଲେ । ରାବଣ ତଦା କ୍ରୁଦ୍ଧ ହେଲାରୁ ଅଙ୍ଗଦ ତଦୀୟ ନେଦିଷ୍ଟ-ଇଷ୍ଟ-ଇଷ୍ଟକ-ପ୍ରାସାଦର (୨) ପ୍ରକୃଷ୍ଟ ଶିଖର ଭଗ୍ନ କରି ବୀରନାଦ ପୁରଃସର ବ୍ୟୋମସରଣୀରେ ଆସି ରାମଙ୍କ ଛାମୁରେ ଚଳିତ ବୃତ୍ତାନ୍ତ ନିବେଦନ କଲେ । ବଳରାମ ଦାସେ ଏହାର ଅନୁକରଣରେ ଲେଖି ଅଛନ୍ତି କି, ଏଣେ ଯୁଦ୍ଧର ଆରମ୍ଭ ଲାଗିଅଛି, ବାନର ବୀରଗଣ ଗଡ଼ ପ୍ରାଚୀର ଚତୁର୍ଦ୍ଦିଗରେ ବେଢ଼ି ଆକ୍ରମଣ କରୁଅଛନ୍ତି । ଏହି ସମୟରେ ଲଙ୍କାଧିପତି ଶଙ୍କାକୁଳିତ ମନରେ ରାମଙ୍କର ବଳବୀର୍ଯ୍ୟାଦି ପ୍ରବୃତ୍ତି ଆଉ ସେନାସନ୍ନାହରୀତି ପ୍ରଭୃତି ପରିଦର୍ଶନ ନିମନ୍ତେ ପୁଷ୍ପକବିମାନରେ ଆରୋହଣ କଲେ । ସେ ପୁଣି ଆକାଶରୁ ଅବକାଶ ପାଇ ରାମାଦିଙ୍କର ରଣ ବିଳାସ ଦେଖୁଅଛନ୍ତି ।

---

(୧) ବାନରାଣାଂ ତୁ ଷଟ୍ ତ୍ରିଂଶଦ୍ କୋଟ୍ୟଃ ପ୍ରଖ୍ୟାତ ଯୂଥପାଃ । ୪୧. ୪୧ ଶ୍ଳୋ. ଅଧ୍ୟାତ୍ମ ରାମାୟଣରେ ମଧ୍ୟ ଏପରି କେତେକ ସଂଖ୍ୟା ଧାର୍ଯ୍ୟ ହୋଇଅଛି । କିନ୍ତୁ ତାହା ସୁଗ୍ରୀବଙ୍କର ମନ୍ତ୍ରୀମାନଙ୍କର ଅଧୀନ ବଳୌଘର ସଂଖ୍ୟା, ତଥାପି ଏପରି ଏହି ପ୍ରମାଣକୁ ଧରି ଅନ୍ୟାନ୍ୟ ସେନାମାନଙ୍କର ଅନୁମିତ ସଂଖ୍ୟା ଧାର୍ଯ୍ୟ କରାଯାଇପାରେ । ପରନ୍ତୁ ସମୁଦ୍ରବେଳାଗତ ବାଲୁକାରାଶିର ସଂଖ୍ୟା ଯେପରି ବୁଦ୍ଧିର ଅଗମ୍ୟ ଓ ଅତୀତ, ରାମଙ୍କ ହରିବାହିନୀର ସୈନିକ ସଂଖ୍ୟା ନିର୍ଦ୍ଧାରଣ ମଧ୍ୟ ତାଦୃଶ ।
ଏଷାଂ କୋଟିସହସ୍ରାଣାଂ ନବ ପଞ୍ଚ ଚ ସପ୍ତ ଚ, ତଥା ଶଙ୍ଖସହସ୍ରାଣି ତଥା ବୃନ୍ଦ ଶତାନିଚ । ସୁଗ୍ରୀବ ସଚିବାନାଂ ତେବଳମେତଦ୍ ପ୍ରକୀର୍ତ୍ତିତମ୍, ଅନ୍ୟେଷାଂ ତୁ ବଳଂ ନାହଂ ବକ୍ତୁଂ ଶକ୍ତୋଽସ୍ମି ରାବଣ । ଯୁ.କା.୪ସ

(୨) ଭଂକ୍ତ୍ୱା ପ୍ରାସାଦଶିଖରଂ ନାମ ବିଶ୍ରାବ୍ୟ ଚାତ୍ମନଃ ।
ବିନଦ୍ୟ ସୁମହାନାଦଂ ଉତ୍ପପାତ ବିହାୟସ । ୪୧ସ. ୯୦ ଶ୍ଳୋ.

ବିଭୀଷଣ ରାମଙ୍କୁ ରାବଣଙ୍କୁ ଦେଖାଇଦେଲେ । ତଦା ରାମଚନ୍ଦ୍ର ଗୋଟିଏ ଅମୋଘ ଉତ୍‌ଶିଖ ବିଶିଖର ପ୍ରହାରରେ ରାବଣଙ୍କର ଛତ୍ର ପତାକାଦିକୁ ବିଚ୍ଛିନ୍ନ କରି ପକାଇଦେଲେ । ରାବଣ ଅରୁଦ୍ଧବେଗ କ୍ରୁଦ୍ଧ ହୋଇ ଯାଇ ବିଭୀଷଣଙ୍କ ଲକ୍ଷରେ ଭୀଷଣ ଗଦା ନିକ୍ଷେପ କଲେ; କିନ୍ତୁ ତାର କିଛି ଫଳ ହେଲା ନାହିଁ । ଆସୁଁ ଆସୁଁ ସେହି ପବନଦତ୍ତ ଗଦାଟିକୁ ପବନାତ୍ମଜ ଉତ୍‌ଲମ୍ଫନରେ ଅର୍ଦ୍ଧଗଗନ ସରଣୀରୁ ଆତ୍ମସାତ୍ କରଣାର୍ଥ ଧରି ବାହାରି ଗଲେ । ଅତ୍ର ବର୍ଣ୍ଣିତ ରାବଣଙ୍କ ଛତ୍ରାଦି ବିଭଙ୍ଗ କଥାକୁ ଦାସ ମହାଶୟ ଅଧ୍ୟାତ୍ମ ରାମାୟଣର ଅନୁସରଣରେ ଲେଖିଅଛନ୍ତି । (୧)

ଦାସେ ପୁଣି ଏ ସ୍ଥଳେ ଗୋଟିଏ ବିଚିତ୍ର ସୃଷ୍ଟିର ଭିଆଣ କରିଅଛନ୍ତି । ବୋଧହୁଏ ଏଟା କାଳ୍ପନିକ ହୋଇଥିବ । ଏ ଲେଖିଛନ୍ତି କି, ରାମଚନ୍ଦ୍ର ରାବଣଙ୍କର ଯେଉଁ ଛତ୍ରଗୁଡ଼ିକୁ କାଟି ଭୂତଳରେ ନିପାତିତ କରିଥିଲେ ସେଗୁଡ଼ିକୁ ପୁଣି ବ୍ରହ୍ମା ପତନମାତ୍ରେ ସଜୀବ ପ୍ରାୟ କରିଦେଇ ଜଗତରେ ଶିଳୀନ୍ଧ୍ର ବା ଛତ୍ରକ ରୂପରେ ସେଥିରୁ କେତେକ ପର୍ବତମାନଙ୍କରେ କେତେକ ଭୂପୃଷ୍ଠରେ ଚିରକାଳ ରହି ରାମଙ୍କର ଯଶୋରାଶି ସୂଚନା କରୁଅଛନ୍ତି । ସେ ସବୁ ଛତ୍ରରୁ ଉତ୍ପନ୍ନ ଥିବାରୁ ଛତୁ ନାମରେ ତଥାଚ ରାବଣଛତ୍ର ନାମରେ ଲୋକରେ ଅଭିହିତ ହେଉଅଛି । କଥାଟା ପୌରାଣିକ ହେଉ ବା କାଳ୍ପନିକ ହେଉ, ଅଳୀକ ହେଉ ବା ନିର୍ବ୍ୟଳୀକ ହେଉ, ଦାସ ମହାଶୟଙ୍କ ସଙ୍ଗତ କଳ୍ପନାନୁସାରେ କଥାଟି (୨) ଲୋକବାଦରେ ଅଦ୍ୟାପି ପ୍ରସିଦ୍ଧ ରହିଅଛି । ଅତଃପର ଦାସେ ଅଙ୍ଗଦଙ୍କର ଦୌତ୍ୟ କୃତ୍ୟର ଚିତ୍ର ଦେଇ ଅଛନ୍ତି । (୩) ଏଥିରେ ମୂଳଗ୍ରନ୍ଥ ଅପେକ୍ଷା କିଛି ବୈଷମ୍ୟ ନିହିତ ଅଛି, ତଥାପି କବିଙ୍କର ବାକ୍‌ଚାତୁର୍ଯ୍ୟର ନିପୁଣତା ମଧ୍ୟ ପ୍ରକାଶ ପାଉଅଛି । ଅଙ୍ଗଦ ରାବଣଙ୍କୁ କଥାପ୍ରସ୍ତାବରେ କହିଲେ, ମୁଁ ତୁମର ପରି ଅନେକଗୁଡ଼ା ରାବଣଙ୍କୁ ଜାଣିଛି । ରାବଣ ବୋଇଲେ, 'ଆଚ୍ଛା ! କେଉଁ କେଉଁ ରାବଣଙ୍କୁ ତୁମେ ଜାଣିଅଛ ? କହତ ଦେଖି ।' ଅଙ୍ଗଦ କହିଲେ, 'ଏକ ରାବଣ କାର୍ତବୀର୍ଯ୍ୟ ସହସ୍ରାର୍ଜୁନଙ୍କ ଦ୍ୱାରା ଖଣ୍ଡିତଗର୍ବ ଓ ଦଣ୍ଡିତ ହୋଇଥିଲେ; ଉଦ୍ଦଣ୍ଡ ରାବଣଙ୍କୁ ଯେଉଁ ସହସ୍ରାର୍ଜୁନ ଦଣ୍ଡ ଦାନରେ ଲଣ୍ଡଭଣ୍ଡ କରିଥିଲେ ଜାଣିଅଛ ତ ? ସେହି ଅଖଣ୍ଡ ଗର୍ବ, ପାରାବାରପାରଶ୍ୱଧିକସମଧିକ ବ୍ରହ୍ମକ୍ଷାତ୍ରସତ୍ତ୍ୱ ରାମଙ୍କୁ ରାମଚନ୍ଦ୍ର ନିରସ୍ତ-ଗର୍ବ ଓ ପରାସ୍ତ କରି ଅଛନ୍ତି । ଏତ ଗଲା ଏକ

(୧) ଅଧ୍ୟାତ୍ମ ରାମାୟଣ ଯୁଦ୍ଧକାଣ୍ଡ ପଞ୍ଚମସର୍ଗ ପାଠ କରନ୍ତୁ ଦେଖିବେ ଠିକ୍ ଏହା ହିଁ ଲେଖାଅଛି, ଯଥା-ଶଶାଙ୍କାର୍ଦ୍ଧନିଭେନୈବ ବାଣେନୈକେନ ରାଘବଃ । ଶ୍ୱେତଛତ୍ରସହସ୍ରାଣି କିରୀଟଦଶକଂ ତଥା । ଚିଚ୍ଛେଦ ନିମିଷାର୍ଦ୍ଧେନ ତଦଦ୍ଭୁତମିବାଭବତ୍ । ଇତ୍ୟାଦି ।

(୨) ଛାପା ପୁସ୍ତକରେ ୪୫ ପୃଷ୍ଠା ଦେଖନ୍ତୁ ।

(୩) ଛାପା ପୁସ୍ତକରେ ୪୯-୫୨ ପୃଷ୍ଠାଯାଏ ପଢ଼ନ୍ତୁ ।

ରାବଣଙ୍କ କଥା; ଦ୍ୱିତୀୟ ରାବଣ ମଦ୍‌ପିତା ବଳିପ୍ରବର ବାଳିଙ୍କ ସଙ୍ଗେ ଭୁଜଦର୍ପକଣ୍ଡୁକରାଳତାରେ ଆହବାମୋଦ କରିବାକୁ ଯାଇ ଆବଦ୍ଧ ଓ ଅପମାନିତ ହୋଇଥିଲେ; ତୃତୀୟ ରାବଣ ନିଜର ଦୋର୍ଦଣ୍ଡ-କଣ୍ଡୁ ଖଣ୍ଡନ ପାଇଁ କୈଳାସ ଉତ୍ତୋଳିବାକୁ ଯାଇ ସେହି ପର୍ବତର ଆଘାତରେ ମୁମୂର୍ଷୁ ହୋଇ ପଡ଼ିଥିଲେ; ଘୋର ଅନର୍ଥ ମୂଳକ ଚତୁର୍ଥ ରାବଣ ଚୌର୍ଯ୍ୟକୁ ପୁରୁଷାର୍ଥ ମଣି ଭୀତ ଭୀତ ହୃଦୟରେ ଅବିନୀତ ଭିକ୍ଷୁ ବେଶ ଅଭିନୀତ କରି ତଦୀୟ କାଳରାତ୍ରି ଜନକପୁତ୍ରୀଙ୍କୁ ବଳେ ହରି ନେଲେ; ଜନ୍ମତଃ ପଞ୍ଚମ ନୋହି ସୁଦ୍ଧା ପଞ୍ଚମାଚାର ବିଶିଷ୍ଟ ପଞ୍ଚମ ରାବଣ ଶିଷ୍ଟ ପ୍ରକୃଷ୍ଟ ଅନରଣ୍ୟ ରାଜାଙ୍କର ଅନିଷ୍ଟ ସାଧନକୁ ଅଭୀଷ୍ଟ କରି ବ୍ରହ୍ମଣାମୂଳକ ଶାପରେ ଅଭିଭୂତ ହେଲେ; ଷଷ୍ଠ ରାବଣ ଧୃଷ୍ଟ ଗରିଷ୍ଠତାରୁ ବେଦମୟୀ ବେଦମତିଙ୍କର ଧର୍ଷଣରୁ ଶାପଗ୍ରସ୍ତ ହୋଇ ପଡ଼ିଲେ; ଯେ କି ସପ୍ତମ ରାବଣ ସେ ଦୁର୍ମତି-ମତ୍ତମତାରେ ଓ ମମତାରେ ଅଗ୍ରଜ କୁବେରଙ୍କ ଅଭିଶାପରେ ନିତାନ୍ତ କଳୁଷିତ ହେଲା, ସ୍ୱକୀୟ ଅନୁଜ ବିଭୀଷଣ ତାହାକୁ ପରିତ୍ୟାଗ କରିଅଛନ୍ତି । ଏହିପରି ଗୁଣାନୁଗତ ରାବଣ ସଂଖ୍ୟା ଆଉ କେତେ ଅବା ଶୁଣିବ !' ଏସବୁ ଦାସେ ମହାଶୟଙ୍କର କଳ୍ପନାର ଚାତୁର୍ଯ୍ୟଯୁକ୍ତ ବଚନଭଙ୍ଗୀରେ ଅନୁପ୍ରାଣିତ । ଅଙ୍ଗଦ ପୁଣି ରାବଣଙ୍କୁ କହିଥିଲେ ଯେ, ତୁମକୁ ପ୍ରଭୁ ରାମଚନ୍ଦ୍ର ସ୍ୱୟଂ ନିହତ କରିବା ପାଇଁ ପ୍ରତିଜ୍ଞା କରି ଅଛନ୍ତି । ତା' ନ ହେଲେ ଏ କ୍ଷଣି ତୁମର ମସ୍ତକାବଳିକୁ ଉତ୍ପାଟନ କରି ଥାଆନ୍ତି । ଅଙ୍ଗଦ ତାପରେ ରାବଣାଧିଷ୍ଠିତ ସୁପ୍ରତିଷ୍ଠିତ ରତ୍ନବେଷ୍ଟିତ ପ୍ରାସାଦର (୧) ଶିଖର ଭାଗଟାକୁ ଧରି ଆସି ରାମଙ୍କୁ ସମଗ୍ର କଥା ଜଣାଇଲେ । ରାମଚନ୍ଦ୍ର ପୁଣି ସୁଗ୍ରୀବଙ୍କୁ ସେ ସବୁ ଜଣାଇଥିଲେ । ଅତଃପର ମୂଳଗ୍ରନ୍ଥରେ ତ୍ରିଚତ୍ୱାରିଂଶ ସର୍ଗଠାରୁ ଚାରିଗୋଟି ସର୍ଗରେ ପ୍ରଥମ ଦିବସର ଯୁଦ୍ଧକ୍ରମମାନ ଲେଖାଅଛି । ଏହା ହିଁ ରାମ ରାବଣ ଶତ୍ରୁତାର ଲଙ୍କାରେ ଘଟିତ ପ୍ରଥମ ଯୁଦ୍ଧ । ପ୍ରଥମ ଦିବସର ଯୁଦ୍ଧ ଦିବସଠାରୁ ପ୍ରାୟ ଅର୍ଦ୍ଧରାତ୍ର ପର୍ଯ୍ୟନ୍ତ ଲାଗିଥିଲା । (୨) ନିବିଡ଼ ଅନ୍ଧକାର ମଧ୍ୟରେ କପି ରାକ୍ଷସମାନେ ଚିହ୍ନାଚିହ୍ନି ପରେ ପ୍ରହାର କରୁଥିଲେ । ସେହି ରାତ୍ରିର ଦାରୁଣ ତମତସ୍କର ରାତ୍ରିଂଚରମାନେ ମଧ୍ୟ ମୋହିତ ହୋଇଥିଲେ । (୩) ଏଥିରେ ନରମାଂସାଦ ନିଷାଦ ସଦୃଶ ଅସୁରମାନେ କେତେକ ବାନରଙ୍କୁ ଖାଇଯିବା ଅସମ୍ଭବ ନୁହେଁ । କିନ୍ତୁ

(୧) ଉପର ରତ୍ନଚାଳ ଘେନି ଉଡ଼ିଗଲା । ଗଗନ ପଥରେ ବୀର ତହୁଁ ବିକ୍ରମିଲା । ୫୨ ପୃ.

(୨) ଯୁଧ୍ୟତାମେବ ତେଷାଂ ତୁ ତଦା ବାନରରକ୍ଷସାଂ ।
ରବିରସ୍ତଂ ଗତୋରାତ୍ରିଂ ପ୍ରବୃତ୍ତା ପ୍ରାଣହାରିଣୀ । ୪୪ସ. ୧୦ଶ୍ଳୋ.

(୩) ରାକ୍ଷସୋଽସୀତି ହରୟଃ ହରିଶ୍ଚାସୀତି ରାକ୍ଷସାଃ ।
ଅନ୍ୟୋନ୍ୟଂ ସମରେ ଜଘ୍ନୁଃ ତସ୍ମିନ୍ ତମସି ଦାରୁଣେ । ୪୪ସ. ।

ଲେଖାଅଛି, କଳାଙ୍ଗ ମହାଶୟ ଗୋଲାଙ୍ଗୁଳ କପିମାନେ ମଧ ଅମେଧ ରାକ୍ଷସଙ୍କୁ ଖାଇଗଲେ । (୧)

ଏହି ଯୁଦ୍ଧରେ ଅଙ୍ଗଦଙ୍କ ଦ୍ୱାରା ଇନ୍ଦ୍ରଜିତ ହତାଶ୍ୱ ଓ ହତସାରଥି ହୋଇ ଆକାଶରେ ଅନ୍ତର୍ହିତ ହେଲେ । ପରେ କୂଟଯୋଧି ଇନ୍ଦ୍ରଜିତ ରାମ ଓ ଲକ୍ଷ୍ମଣଙ୍କୁ ପ୍ରକାଶତଃ କିଛି କରି ନ ପାରି ମାୟାବଳରେ ନାଗପାଶ ଶରରେ ଆବଦ୍ଧ କଲେ ।(୨) ଯେ କି ଈଷଦ୍ ଭ୍ରୂଭଙ୍ଗମାତ୍ରରେ ନିଖିଳ ଜଗଦ୍‌ସଂହାର କରଣରେ ସମର୍ଥ, ସେହି ସର୍ବେଶ୍ୱର ଶ୍ରୀରାମଚନ୍ଦ୍ର ଇନ୍ଦ୍ରଜିତଙ୍କ ପ୍ରଯୋକ୍ତ ନାଗପାଶ ବନ୍ଧନରେ ଆବଦ୍ଧ ହେବାର କାରଣ କଣ ? ଏହା ଅବଶ୍ୟ ଅଭିଜ୍ଞ ହୃଦୟରେ ଜନ୍ମିପାରେ । ଏହାର ସମାଧାନ ଏହି, ସତ୍ୟ ସଂକଳ୍ପ ଜଗଦୀଶ୍ୱର ରାମଚନ୍ଦ୍ର ସ୍ୱମର୍ଯ୍ୟାଦା  ରୂପକ ବ୍ରହ୍ମାଙ୍କ ପ୍ରଦତ୍ତ ବରଦାନର ପାଳନ ଏବଂ ତାହାଙ୍କର ଗୌରବ ରକ୍ଷା ନିମନ୍ତେ ଏହି କଷ୍ଟ ସ୍ୱୀକାର କରିଥିଲେ । ତେତେବେଳେ ରାମଙ୍କ ଆଦେଶରେ ନୀଳ, ଅଙ୍ଗଦ ପ୍ରଭୃତି ବୀରମାନେ ଇନ୍ଦ୍ରଜିତଙ୍କୁ ଗଗନମାର୍ଗରେ ବହୁ ଅନ୍ୱେଷଣ କରିଥିଲେ । କିନ୍ତୁ ସେ ମାୟାବୀ ମାୟାବଳରେ ତତ୍ର ଲୁକ୍କାୟିତ ରହି ଶ୍ରାବଣଧାରା ପ୍ରତିମ ବାଣଧାରାରେ ରାମ ଓ ଲକ୍ଷ୍ମଣଙ୍କୁ ନିତାନ୍ତ ପୀଡ଼ିତ କରି ପକାଇଲେ । ସେ ଦୁହେଁ ମେଘନାଦଙ୍କ ନାରାଚ, ଅର୍ଦ୍ଧନାରାଚ, ଅଥଳିକ, ବସ୍ତଦନ୍ତ, ସିଂହଦଂଷ୍ଟ୍ର ପ୍ରଭୃତି ଶରଜାଳରେ ଏକାନ୍ତ ବିଦ୍ଧ ଓ ପୀଡ଼ିତ ହୋଇ ଧରଣୀପୃଷ୍ଠରେ ନିପତିତ ହେଲେ । ତାହା ଦେଖି ସୁଗ୍ରୀବ ବିଭୀଷଣାଦିମାନେ ଘୋର ଦୁଃଖ ପ୍ରକାଶ କଲେ । ଦେଖୁଁ ଦେଖୁଁ ମେଘନାଦ ମେଘନାଦ ସଦୃଶ ବୀରନାଦରେ ସୁଗ୍ରୀବ, ମାରୁତି ପ୍ରଭୃତିଙ୍କୁ ମଧ ଶରାଘାତରେ ନିତାନ୍ତ ନିପୀଡ଼ିତ କରି ପକାଇଲେ । ତେତେବେଳେ ପୁଣି ରାବଣି ରଘୁମଣିଦ୍ୱୟଙ୍କୁ ନିହତ ମଣି ମହୋଲ୍ଲାସ ସୂଚକ ବୀରବାଦରେ ଅସୁରମାନଙ୍କୁ ହସାଇ ହସାଇ ନିଜ ଭୁବନରେ ପ୍ରବେଶ କଲେ । ସେ ପୁଣି ରାବଣଙ୍କୁ ଜଣାଇଲେ ଯେ ରାମ ଲକ୍ଷ୍ମଣ ଦୁହେଁ ନିହତ ହେଲେ । ଏଣେ ବିଭୀଷଣ ହସ୍ତରେ ଅସୁରମାୟା-ନିବାରକ ଶୋକ-ନିସ୍ତାରକ ମନ୍ତ୍ରରେ (୩) ଅଭିମନ୍ତ୍ରିତ ଜଳଧରି ସୁଗ୍ରୀବଙ୍କ ନେତ୍ର ସଂମାର୍ଜିତ କଲେ ଏବଂ ତାହାଙ୍କୁ ଆଶ୍ୱାସିତ

---

(୧) ଗୋଲାଙ୍ଗୂଳା ମହାକାୟ ସ୍ତମସା ତୁଲ୍ୟବର୍ଚ୍ଚସଃ ।
ସଂପରିଷ୍ୱଜ୍ୟ ବାହୁଭ୍ୟାଂ ଭକ୍ଷୟନ୍ ରଜନୀଚରାନ୍ । ୪୪ସ. ୨୮ ଶ୍ଲୋ.
ଭକ୍ଷୟନ୍ = ଅଭକ୍ଷୟନ୍ ।

(୨) ତୌ ତେନ ପୁରୁଷବ୍ୟାଘ୍ରୌ କ୍ରୁଦ୍ଧେନାଶୀବିଷୈଃ ଶରୈଃ ।
ସହସା ନିହତୌ ବୀରୌ ତଦା ପ୍ରେକ୍ଷନ୍ତ ବାନରାଃ । ୪୪ସ. ୪୧ଶ୍ଲୋ.

(୩) ତତଃ ସଲିଳମାଦାୟ ବିଦ୍ୟାୟା ପରିଜପ୍ୟ ଚ ।
ସୁଗ୍ରୀବନେତ୍ରେ ଧର୍ମାତ୍ମା ପ୍ରମମାର୍ଜ ବିଭୀଷଣଃ । ୪୬ସ. ୩୭ଶ୍ଲୋ.
ବିଦ୍ୟାୟା = ଶୋକ ନିବାରକ ବିଦ୍ୟାୟା ।

କଳାପରେ ଅନ୍ୟମାନଙ୍କୁ ଆଶ୍ୱାସିତ କରିବାପାଇଁ ସମୁତ୍ସାହିତ କଲେ । ଦାସଙ୍କ ରାମାୟଣରେ ଉକ୍ତ ପ୍ରଥମ ଦିବସର ଯୁଦ୍ଧରେ ରଣ କ୍ଷେତ୍ରରେ ଉଭୟ ପକ୍ଷର ଅବସ୍ଥାନ କ୍ରମ ଏହି । ଆଗେ ପ୍ରାଚୀରର ଉଭୟ ପାର୍ଶ୍ୱରେ ଉଭୟ ବଳ ରହିଥିଲେ, ଅସୁରମାନେ ପର୍ବତାକାର ପ୍ରାକାରର ଅପର ପାର୍ଶ୍ୱରୁ ବାନରବାହିନୀକୁ ଅସ୍ତ୍ରଶସ୍ତ୍ର ପ୍ରହାର କରୁଥିଲେ । ତା'ପରେ କପିବୀରମାନେ ଘୋର ଧାପରେ ଦ୍ୱାର ଭାଙ୍ଗି ପାଚେରି ଡେଇଁ ଦୁର୍ଗ ଭିତରେ ପଶିଲେ । ଉଭୟ ପକ୍ଷର ସଂଯୋଗରେ ଘୋର ଯୁଦ୍ଧ ଆରମ୍ଭ ହେଲା । ରାବଣ ଏହା ଜାଣି ଯୁଦ୍ଧାର୍ଥ ଇନ୍ଦ୍ରଜିତ ଆଉ ପ୍ରହସ୍ତଙ୍କୁ ପଠାଇଲେ । ତଦା ଇନ୍ଦ୍ରଜିତ ଆଉ ହନୁମାନଙ୍କର ଯୁଦ୍ଧ ଲାଗିଲା । ଦାସେ ପୁଣି ଲେଖିଛନ୍ତି, ଇତଃପୂର୍ବେ ରାବଣ ବିଭୀଷଣଙ୍କ ପ୍ରତି ଯେଉଁ ଗଦାଟିକୁ ନିକ୍ଷିପ୍ତ କରିଥିଲେ, ତଥାଚ ଯାହାକୁ ପୁଣି ହନୁମାନ ମଧ୍ ଆକାଶରୁ ଘେନିଯାଇଥିଲେ, ସେ ଗଦାଟିକୁ ଏକ୍ଷଣି ଇନ୍ଦ୍ରଜିତ ଶର ପ୍ରହାରରେ ଦ୍ୱିଖଣ୍ଡ କରିଦେଲେ । ତାପରେ ଏକ ଖଣ୍ଡ ମାରୁତି ଅପର ଖଣ୍ଡ ଇନ୍ଦ୍ରଜିତ ଧରିନେଇ ପରସ୍ପର ପ୍ରତି ପ୍ରହାର କଲେ । ତଦା ଗଦାର ଉଭୟ ଖଣ୍ଡ ଏକାଠି ମିଳିତ ହୋଇ ପୂର୍ଣ୍ଣାଙ୍ଗ ହୋଇଗଲା । ସେଟି ପୁଣି ସେ କ୍ଷଣି ବ୍ରହ୍ମାଙ୍କ ନିକଟକୁ ଚାଲିଗଲା । ବ୍ରହ୍ମା ପୁଣି ତାକୁ ନେଇ ପବନଙ୍କୁ ଦେଇ ପକାଇଲେ । (୧) ଏହି ତ ବଡ଼ କୁତୂହଳର କଥା, ପବନ ତେତେବେଳେ ନିଜର ଗଦାକୁ ପାଇ ଭାବିଲେ, ଏଣିକି ରାବଣଙ୍କର ସୌଭାଗ୍ୟଶ୍ରୀ ସହ ବିଜୟଶ୍ରୀ ତୁଟିଲା, ତାଙ୍କର ବିପଦ ସମୟ ଆସି ଉପଗତ ହେଲା । ତାହା ନ ହେଲେ ଏହି ଗଦାକୁ ସେ ଅକାରଣେ ତ୍ୟାଗ କରି ଥାଆନ୍ତେ ? ତା ପରେ ପ୍ରହସ୍ତଙ୍କ ସହିତ ସୁଗ୍ରୀବଙ୍କର କିଛି ମାତ୍ର ଯୁଦ୍ଧ ହେଲା । ଏ ପର୍ଯ୍ୟନ୍ତ ଉଭୟ ପକ୍ଷରୁ କୌଣସି ମହାବୀରଦ୍ୱୟଙ୍କ କ୍ରାମିକ ଯୁଦ୍ଧ ଏଥିରେ ଉକ୍ତ ହୋଇ ନାହିଁ । କେବଳ ଫିଟାଫୁଟା ଯୁଦ୍ଧରେ ଉଭୟ ବଳ ମିଶି ପିଟାପିଟି ଧରାଧରି ଦଳାଦଳି ହେବା, ଅପିଚ ବାନରମାନେ ଲଙ୍କାଗଡ଼କୁ ଅସ୍ତବ୍ୟସ୍ତ ଧ୍ୱସ୍ତ କରିଥିବା ହିଁ ବର୍ଣ୍ଣିତ ଅଛି । ଏହାର ଯୁଦ୍ଧ ପ୍ରକ୍ରିୟା ମୌଳିକ କ୍ରମ ଅପେକ୍ଷା ଅନ୍ୟ ପ୍ରକାର । ଏହି ଯେ ପ୍ରଥମ ଯୁଦ୍ଧ, ଏଥିରେ ପ୍ରଥମତଃ କପିମାନେ ଅସୁରମାନଙ୍କ ଘରେ ଘରେ ପଶି ଘରଦ୍ୱାର ଭାଙ୍ଗିରୁଜି ସେମାନଙ୍କୁ ପ୍ରହାର କରିବା ହିଁ ବର୍ଣ୍ଣିତ ଅଛି । ଏହାପରେ ଲେଖାଅଛି କି, ଇନ୍ଦ୍ରଜିତ ହରିବୀରମାନଙ୍କ ସପ୍ରହାର ସମାକ୍ରମଣରେ ସସବ୍ୟସ୍ତ ହୋଇ ନିଜର ଦୈବଲବ୍ଧ ଦେବଦଳନ ରଥକୁ ସ୍ମରଣ କଲେ । ସେହି ଦିଗ୍‌ଦହନ ଚିରାଳ ଅସାରଥିକ (୨) ମନ୍ତ୍ରବାହକ ସ୍ୟନ୍ଦନଟି ଆସି ତାଙ୍କ ନିକଟରେ ଉପଗତ ହେଲା । ଏ ରଥର ନାମ ମୂଳ

(୧) ଦୁଇ ଖଣ୍ଡ ଭେଟ ଯେ ହେଲା ଅଧ ବାଟେ ।
ଏକ ଖଣ୍ଡ ହୋଇ ଗଲେ ବିଧାତା ନିକଟେ । ଇତ୍ୟାଦି

(୨) ସହସ୍ରେକ ଅଶ୍ୱ ଯୋଚା ଅଛି ସେହି ଯାନେ ।
ମନ୍ତ୍ରେଣ ଚଳଇ ସେହି ସାରଥି ବିହୁନେ । ୫୮ ପୃ.

ଗ୍ରନ୍ଥରେ ଦେଖାଯାଏ ନାହିଁ । ତଥାପି ବିଶ୍ୱାସ ହୁଏ ଦାସେ ପୁରାଣାନ୍ତରରୁ ଏହାର ପରିଚୟ ପାଇଥିବେ । କେବଳ ଏହି ସ୍ଥଳରେ ନୁହେଁ, ପ୍ରାୟ ସର୍ବତ୍ର ଦାସ ମହାଶୟ କେତେଗୁଡ଼ିଏ କଳ୍ପିତ ନାମରେ ଉଭୟ ପକ୍ଷର କେତେକ ବୀରଙ୍କୁ ନାମିତ କରିଅଛନ୍ତି । ଦାସଙ୍କ ମତରେ ପ୍ରଥମ ଦିବସର ସଂଗ୍ରାମରେ ରାବଣିକ ସେନାଧକ୍ଷ ବଜ୍ରଧୃଷ୍ଟ, ଦୁର୍ଦ୍ଧଷ, ଧୂମ୍ରାକ୍ଷ ନାମକ ବୀରମାନେ ନିହତ ହୋଇଥିଲେ । (୧) ଦାସେ ଏହିଠାରେ ପ୍ରଥମ ଦିବସାହବକୁ ଦିବସାବସାନରେ ଅବସନ୍ନ କରିଅଛନ୍ତି । (୨) ରାମବାହିନୀରେ ଯୋଦ୍ଧା ବାହର କରଣ ନିମନ୍ତେ ଗଗନ ସରଣୀରେ ଉଦ୍ଘୋଷ ଦିଆଯାଉଥିଲା, କାରଣ ସେ ରଣାଙ୍ଗଣ ବହୁଦୂର ସୁବିସ୍ତୃତ ଥିଲା । ସେଥିରେ କିଏ କେଉଁ ଦିଗରେ କାହା ସଙ୍ଗେ ଯୁଦ୍ଧ କରୁଥିଲେ, ତାହାର ତତ୍ତ୍ୱ ଦେବା ଅପିଚ ପ୍ରବର୍ତ୍ତାଇବା ଆଉ ନିବର୍ତ୍ତାଇବା ଟିକିଏ ସମୟ ସାପେକ୍ଷ ହୋଉଥିଲା । ରାମାୟଣ ଯୁଦ୍ଧକ୍ଷେତ୍ର ଭାରତଯୁଦ୍ଧକ୍ଷେତ୍ର ଅପେକ୍ଷା କିଛି ନ୍ୟୁନ ନଥିଲା । ପ୍ରଥମ ଯୁଦ୍ଧବିହାର ରାମାଦେଶରେ ଶତବଳୀ ବୀରଙ୍କଦ୍ୱାରା ସମାସାଧିତ ହୋଇଥିଲା । ଦାସଙ୍କର ଏହି ପ୍ରଥମ ଦିବସର ଯୁଦ୍ଧ ବିବରଣରେ ଯେ ବୈଷମ୍ୟ ଦେଖାଯାଏ, ତାହା ଅଧ୍ୟାତ୍ମ ରାମାୟଣିକ ଚିତ୍ରଣର ଅନୁମତ ସୁଦ୍ଧା ହୋଇ ନାହିଁ । (୩) ତେବେ ଦାସେ ଏତାଦୃଶ ବିସଦୃଶ ଚିତ୍ରଣ ପାଇଁ କେଉଁ ପୌରାଣିକ ସଂବିଧାନକୁ ଅନୁସରଣ କରିଅଛନ୍ତି ? ଜଣାଯାଉ ନାହିଁ; ତଥାପି ଅନୁସନ୍ଧେୟ ।

ଏହାପରେ ପାଠକଗଣ ! ମୂଳଗ୍ରନ୍ଥରେ ଉକ୍ତ ଇନ୍ଦ୍ରଜିତଙ୍କ ନାଗପାଶରେ ଆବଦ୍ଧ ରାମଲକ୍ଷ୍ମଣଙ୍କର କିପରି ସ୍ୱାସ୍ଥ୍ୟ ଲାଭ ହେଲା, ତାର ବିବରଣ ଅନୁସରଣ କରନ୍ତୁ । ଏତତ୍ ସଂକ୍ରାନ୍ତ ଯାବତୀୟ କଥା ସପ୍ତଚତ୍ୱାରିଂଶ ସର୍ଗଠାରୁ ପଞ୍ଚାଶସର୍ଗ ଯାଏ ବିବୃତ ଅଛି । ସାନୁଜ ରାମଚନ୍ଦ୍ର ସମରାଙ୍ଗଣ ମଧ୍ୟରେ ଅଚେତନ ପଡ଼ି ରହିଲାରୁ କପି ବୀରମାନେ ସାଶ୍ରୁନେତ୍ରରେ ଚତୁର୍ଦ୍ଦିଗରେ ବେଢ଼ି ରହିଲେ । ତେଣେ ରାବଣ ସେ ଦୁହିଙ୍କୁ ମୃତ ଜାଣି ସୀତାଙ୍କୁ ଆଣି ଦେଖାଇବାପାଇଁ ଆଦେଶ ଦେଲେ । ତ୍ରିଜଟାସନାଥା ସୀତାଦେବୀ ପୁଷ୍ପକ ବିମାନରେ ଯୁଦ୍ଧଭୂମିକୁ ଆନୀତ ହେଲେ । ସେ ଶରତଳ୍ପଗତ ମୃତକଳ୍ପ ରାମଲକ୍ଷ୍ମଣଙ୍କୁ

(୧) ୬୦ ପୃଷ୍ଠା ପଢ଼ନ୍ତୁ ।

(୨) ଏସ୍ଥଳେ ଯୁଦ୍ଧକାଣ୍ଡର ପ୍ରଥମ ଭଣିତି ପଦ୍ୟ ଦିଆଯାଇଅଛି – ସୂର୍ଯ୍ୟଙ୍କର ଅସ୍ତକାଳ ଆସିଣ ହୋଇଲା, ରହୁ ଆଜ ସମର ଶ୍ରୀରାମ ବୋଇଲା । ସନ୍ଧ୍ୟା ସୁମରିବା ସୁବଳୟକୁ ଯେ ଯିବା, ଏକାଦିନକରେ କି ଏ ସବୁଙ୍କୁ ମାରିବା । ୬୧ ପୃ.

(୩) ଏ ସ୍ଥଳେ ଅଧ୍ୟାତ୍ମ ରାମାୟଣରେ ମଧ ବୈଷମ୍ୟ ଦେଖାଯାଏ । ଅଧ୍ୟାତ୍ମ ରାମାୟଣ ଯୁଦ୍ଧକାଣ୍ଡ ପଞ୍ଚମସର୍ଗରେ ବର୍ଣ୍ଣିତ ପ୍ରଥମଦିବସର ଯୁଦ୍ଧରେ ବାଲ୍ମୀକୀୟ ମତ ଅପେକ୍ଷା ନିହିତ ବୈଷମ୍ୟ ଏହି – ଇନ୍ଦ୍ରଜିତ ବାନରମାନଙ୍କୁ କେବଳ ଶରଜାଳରେ ମୁମୂର୍ଷୁ କରି ପକାଇଲାରୁ ରାମଚନ୍ଦ୍ର ମାରୁତିଙ୍କ ଦ୍ୱାରା ଦ୍ରୋଣଗିରିରୁ ଔଷଧ ଆନୀତ କରିଥିଲେ । ଅଧ୍ୟାତ୍ମ ରାମାୟଣକାର ରାମଙ୍କର ମାନବ ଲୀଳାରେ ସଂପୂର୍ଣ୍ଣ ପରମେଶ୍ୱରତ୍ୱ ପ୍ରକାଶ କରିଥିବାରୁ ବୋଧହୁଏ ଏ ରାମଙ୍କୁ ନାଗପାଶରେ ଅଭିଭୂତ କରାଇ ନାହାନ୍ତି ।

ଦେଖି ନିହତ ଭାବି ଅମିତ ବିଳାପ କଲେ । ଏ ସ୍ଥଳେ ଜାନକୀ ନିଜର ଆବୟବିକ ନିରାମୟ ସୁଲକ୍ଷଣମାନ ଦେଖି ବୈଧବ୍ୟରେ ସନ୍ଦେହ କରିଅଛନ୍ତି । ଅତ୍ରତ୍ୟ ସୌଭାଗ୍ୟବତୀଙ୍କ ସୁଲକ୍ଷଣମାନ ଅନୁସରି କେବଳ ବଳରାମ ଦାସେ ଇତଃ ପୂର୍ବେ ଅନ୍ୟ ସ୍ଥାନରେ ପ୍ରକାଶ କରିଅଛନ୍ତି । ତଦା ତ୍ରିଜଟା ସୀତାଙ୍କୁ ସମାଶ୍ୱାସିତ କରି କହିଲେ, ଆପଣ ବିଧବା ହୋଇ ନାହାନ୍ତି, ରାମଚନ୍ଦ୍ର ମୃତ ହୋଇ ନାହାନ୍ତି । ତାହା ହେଲେ ଏହି ଦେବଯାନ ଆପଣଙ୍କୁ ବହନ କରନ୍ତା ନାହିଁ । ଏଥିଦ୍ୱାରା ତ୍ରିଜଟାଙ୍କର ସଂପୂର୍ଣ୍ଣ ବିଦ୍ୱତ୍ତା ପ୍ରକାଶ ପାଉଅଛି । ତ୍ରିଜଟା ରାମଙ୍କର ଆହୁରି କେବଳ ସୁଦୃଶ୍ୟମାନ ସୁଲକ୍ଷଣମାନ ଦେଖାଇ ସୀତାଙ୍କୁ ପ୍ରକୃତିସମ୍ପନ୍ନା କରିଅଛନ୍ତି । (୧) ହନୁମଦ୍, ସୁଗ୍ରୀବ ପ୍ରଭୃତି ବୀରମାନେ ନିତାନ୍ତ ଦୁଃଖକ୍ଳାନ୍ତ ମନରେ ରାମଙ୍କୁ ବେଢ଼ି ବସିଅଛନ୍ତି, ରାମ ଟିକିଏ ସଚେତ ହେଲେ, ସେ ପୁଣି ଲକ୍ଷ୍ମଣଙ୍କୁ ଗାଢ଼ ପୀଡ଼ିତ ଦେଖି ବହୁଦୁଃଖଶୋକ ପ୍ରକାଶ କଲେ, ତଦୀୟ ସୁଗୁଣର ବିଳପନରେ ନିଜ ପ୍ରାଣ ବିସର୍ଜନ ସଂକଳ୍ପ କଲେ । (୨) ସେ ପୁଣି ସୁଗ୍ରୀବଙ୍କୁ କୃତଜ୍ଞ ସହ ଦୁଃସହ ଦୁଖାବେଗରେ କହିଲେ କି, ଆପଣମାନେ ପ୍ରାଣପଣେ ଯଥେଷ୍ଟ ଉପକାର କରି ସଂପୂର୍ଣ୍ଣ ବନ୍ଧୁତା ଦେଖାଇ ଅଛନ୍ତି, କିନ୍ତୁ ଦୈବଦୁର୍ବିପାକରୁ ମୁଁ ଏପରି ଦୁରବସ୍ଥ ହେଲି । ବର୍ତ୍ତମାନ ମୁଁ ଆଦେଶ ଦେଉଅଛି, ଆପଣମାନେ ନିଜ ନିଜ ସ୍ଥାନକୁ ପ୍ରସ୍ଥାନ କରନ୍ତୁ । ରାମଙ୍କ ମୁଖରୁ ଏତାଦୃଶ୍ୟ ହତାଶାର କଥାଶୁଣି ସମସ୍ତ ବାନର କ୍ରନ୍ଦନ କଲେ । ଏସମୟରେ ବିଭୀଷଣ ତେଣୁ ସେନାମାନଙ୍କୁ ସୁସ୍ଥିର କରି ରାମଙ୍କ ଛାମୁକୁ ଗଦାପାଣିରେ ଧାଇଁ ଆସୁଅଛନ୍ତି, ବାନରମାନେ ତାହାଙ୍କୁ ଦେଖି ଇନ୍ଦ୍ରଜିତ ଭାବି ଇତସ୍ତତ ଧାବମାନ ହେଲେ । ସୁଗ୍ରୀବ ପଚାରିଲେ, ସେନାମାନେ ଏପରି ଦୁରବସ୍ଥ ହୋଉ ଅଛନ୍ତି କାହିଁକି ? ଅଙ୍ଗଦ କହିଲେ, ଆପଣ ଦେଖୁ ନାହାନ୍ତି, ରାମଲକ୍ଷ୍ମଣ ଶରତଳ୍ପରେ କିପରି ଦୁରବସ୍ଥ ପଡ଼ି ରହିଛନ୍ତି । ସୁଗ୍ରୀବ କହିଲେ, ମୁଁ ତାହା କହୁନାହିଁ । ଏଣେ ସେନାମାନେ ଭୟତ୍ରସ୍ତ ହୋଇ ପଳାଉ ଅଛନ୍ତି କାହିଁକି ? ବିଭୀଷଣ ନିକଟକୁ ଆସି ସୁଗ୍ରୀବଙ୍କୁ ସଂବର୍ଦ୍ଧନା କଲେ । ସୁଗ୍ରୀବ ତଦା ଜାମ୍ବବାନଙ୍କୁ କହିଲେ, ସେମାନେ ଦୂରରୁ ବିଭୀଷଣଙ୍କୁ ଦେଖି ଇନ୍ଦ୍ରଜିତ ଆଗମନ ଭାବି ଭୟରେ ସସବ୍ୟସ୍ତ ହେଉଅଛନ୍ତି, ସେମାନଙ୍କୁ ସୁସ୍ଥିର କରାଅ । ବିଭୀଷଣ ଜଳହସ୍ତରେ ରାମ ଓ ଲକ୍ଷ୍ମଣଙ୍କର ନେତ୍ର ସମ୍ମାର୍ଜନା କରି ବିଳାପତଃ ରୋଦନ କଲେ । (୩) ସୁଗ୍ରୀବ ବିଭୀଷଣଙ୍କୁ

(୧) ନିସଂଜ୍ଞାଦପ୍ୟଭାବେତୌ ନୈବ ଲକ୍ଷ୍ମୀର୍ବିଯୁଜ୍ୟତେ ।
ପ୍ରାୟେଣ ଗତସତ୍ୱାନାଂ ପୁରୁଷାଣାଂ ଗତାୟୁଷାମ୍ ।
ଦୃଶ୍ୟମାନେଷୁ ବକ୍ତ୍ରେଷୁ ପରଂ ଭବତି ବୈକୃତମ୍ । ୪୮ ସ. ୩୧ ଶ୍ଳୋ

(୨) ××× ପରିତ୍ୟକ୍ଷ୍ୟାମ୍ୟହଂ ପ୍ରାଣାନ୍ ବାନରାଣାଂ ତୁ ପଶ୍ୟତାମ୍ । ୪୮ ସ.

(୩) ଜୀବନ୍ତଦ୍ୟ ବିପନ୍ନୋଽସ୍ମି ନଷ୍ଟରାଜ୍ୟମନୋରଥଃ ।
ପ୍ରାପ୍ତପ୍ରତିଜ୍ଞଶ୍ଚ ରିପୁଃ ସକାମୋ ରାବାଣଃ କୃତଃ । ୫୦ ସ. ୧୯ ଶ୍ଳୋ

ଆଶ୍ୱସ୍ତ କରି କହିଲେ (୧) ରାମ ଲକ୍ଷ୍ମଣ ଦୁହେଁ ଅବଶ୍ୟ ମୋହ ତ୍ୟାଗ କରି ସମରରେ ସଗଣ ରାବଣକୁ ନିହତ କରିବେ । ସେ ପୁଣି ସେକ୍ଷଣି ଶ୍ୱଶୁର ସୁଷେଣଙ୍କୁ କହିଲେ, ଆପଣ ରାମ ଲକ୍ଷ୍ମଣ ଦୁଇ ଭାଇଙ୍କୁ ସଙ୍ଗେ ନେଇ କିଷ୍କିନ୍ଧାକୁ ଯାଅନ୍ତୁ । ମୁଁ ସପୁତ୍ରବଳବାହନ ରାବଣକୁ ନିହତ କରି ସୀତାଙ୍କୁ ଧରି ଆସିବି । (୨) ସୁଷେଣ କହିଲେ, ଦେବାସୁର ଯୁଦ୍ଧରେ ମୃତ ଦେବତାମାନଙ୍କୁ ଉଜ୍ଜୀବିତ କରିବାପାଇଁ ବୃହସ୍ପତି ଯେଉଁ ଔଷଧମାନ ପ୍ରୟୋଗ କରନ୍ତି, ସେସବୁ କ୍ଷୀରୋଦନିକଟରୁ ଆଣିବାପାଇଁ ଶୀଘ୍ର ପବନବେଗୀ ବାନରମାନେ ଯାଆନ୍ତୁ ଏବଂ କ୍ଷୀରୋଦ ତୀରସ୍ଥ ଚନ୍ଦ୍ରପର୍ବତ ଓ ଦ୍ରୋଣପର୍ବତ ସ୍ଥିତ ପରମୌଷଧିମାନ ଆଣିବାପାଇଁ ବାୟୁସତ୍ତ୍ୱ ହନୁମାନ ଶୀଘ୍ର ପ୍ରସ୍ଥାନ କରନ୍ତୁ । ସୁଷେଣ ଏହା କହୁଅଛନ୍ତି, ଏପରି ସମୟରେ ଘୋର ପବମାନ ବହମାନ ହେଲା, ନାଗମାନଙ୍କର ଇତସ୍ତତ ପଳାୟନାଦି ଭୟଙ୍କର ଦୃଶ୍ୟମାନ ଦେଖାଗଲା । ତାର ଅବ୍ୟବହିତ ପରେ ସହସା ଜ୍ୱଳନ୍ତପାବକ-ସଂକାଶ ବିକାଶମାନ ବୈନତେୟ ଆକାଶରୁ ଖସିଆସି ସନ୍ନିହିତ ହେଲେ । (୩) ଗରୁଡ଼ ନିଜ ହସ୍ତରେ ମୁଖମାର୍ଜନ କରି ରାମ ଓ ଲକ୍ଷ୍ମଣଙ୍କୁ ଆଶ୍ୱସ୍ତ କଲେ । ସେହିକ୍ଷଣି ସେ ଦୁହିଙ୍କର ସମସ୍ତ ବ୍ରଣବ୍ୟଥା ବିଦୂରିତ ହେଲା । ପୂର୍ବଅପେକ୍ଷା ତେଜ, ଓଜ, ବଳ ଓ ଉତ୍ସାହ ପରିବର୍ଦ୍ଧିତ ହେଲା । ବୁଦ୍ଧି ସ୍ମୃତି ମଧ୍ୟ ଦ୍ୱିଗୁଣିତ ହେଲା । ଗରୁଡ଼ ସେ ଦୁହିଁଙ୍କୁ ଭକ୍ତି ଓ ଶ୍ରଦ୍ଧାର ସହିତ ସମାଲିଙ୍ଗନ କଲେ । ରାମ ଗରୁଡ଼କୁ ଜିଜ୍ଞାସା କଲେ, 'ଆପଣ କିଏ ? ମୁଁ ମନେକରେ ଯେପରି ତାତ ଦଶରଥ ପିତାମହ ଅଜଙ୍କ ଦର୍ଶନରେ ମୋର ହୃଦୟ ସୁପ୍ରସନ୍ନ ହୋଇଅଛି ।' ଗରୁଡ଼ କହିଲେ, 'ହେ କାକୁତ୍ସ୍ଥ ପ୍ରବର ! ମୁଁ ଆପଣଙ୍କର ବହିଶ୍ଚର ପ୍ରାଣ ଏବଂ ସଖା ଗରୁତ୍ମାନ ଅଟେ; ଆପଣଙ୍କର ଦୁରବସ୍ଥା ଶୁଣି ସାହାଯ୍ୟାର୍ଥ ସହସା ଉପଗତ ହେଲି । ରାକ୍ଷସମାନେ ଯେପରି କୂଟଯୋଧୀ ସେପରି ବଡ଼ ମାୟାବୀ ଅଟନ୍ତି । ଏଣିକି ଆପଣଙ୍କୁ ଅତି ସାବଧାନ ରହିବାକୁ ହେବ । ଆପଣ ଅବଶ୍ୟ ଅବିଳମ୍ୱେ ସପୁତ୍ରବାନ୍ଧବ ରାବଣକୁ ନିହତ କରି ସୀତାଙ୍କୁ ପାଇବେ, ଆଦେଶ ଦିଅନ୍ତୁ, ମୁଁ ଯାଉଅଛି । ତଦା ସେହି ଭୟଙ୍କର ଅର୍ଦ୍ଧରାତ୍ର ସମୟରେ ବାନରମାନେ

---

(୧) ଗରୁଡ଼ାଧିଷ୍ଠିତାବେତାବୁଭୌ ରାଘବଲକ୍ଷ୍ମଣୌ ।
ତ୍ୟକ୍ତ୍ୱା ମୋହଂ ବଧିଷ୍ୟେତେ ସଗଣଂ ରାବଣଂ ରଣେ । ୫୦ ସ. ୨୨ ଶ୍ଳୋ
ଇୟଂରୁଜା ଅନୟୋରାତ୍ୟାନ୍ତିକ ହାନିକର ନ ଭବତି, କିନ୍ତୁ ମୋହମାତ୍ର କାରଣ ଇତ୍ୟର୍ଥଃ ।

(୨) ଗଚ୍ଛ ତ୍ୱଂ ଭ୍ରାତରୌ ଗୃହ୍ୟ କିଷ୍କିନ୍ଧାଂ ରାମଲକ୍ଷ୍ମଣୌ ।
ଅହଂ ତୁ ରାବଣଂ ହତ୍ୱା ସପୁତ୍ରଂ ସହବାନ୍ଧବଂ ।
ମୈଥିଳୀମାନୟିଷ୍ୟାମି ଶକ୍ରୋ ନଷ୍ଟାମିବ ଶ୍ରିୟମ୍ । ୫୦ ସ. ୨୫ ଶ୍ଳୋ

(୩) ତତୋ ମୁହୂର୍ତ୍ତାଦ୍ ଗରୁଡ଼ଂ ବୈନତେୟଂ ମହାବଳମ୍ ।
ବାନରା ଦଦୃଶୁଃ ସର୍ବେ ଜ୍ୱଳନ୍ତମିବ ପାବକମ୍ । ୫୦ ସ. ୩୬ଶ୍ଳୋ

ଅଭୂତପୂର୍ବ ଉତ୍ସାହ ସହକାରେ ଘୋର ଗର୍ଜନ ତର୍ଜନ ପୂର୍ବକ ଲଙ୍କାଗଡ଼ର ଚତୁର୍ଦ୍ୱାର ଅବରୁଦ୍ଧ କଲେ । (୧) ଏ ସ୍ଥଳେ ଅଧ୍ୟାତ୍ମରାମାୟଣକାର ରାମଙ୍କର ଈଶ୍ୱରତ୍ୱ ଓ ସର୍ବକର୍ତ୍ତୃତ୍ୱର ଭଙ୍ଗ ଆଶଙ୍କାରେ ବୋଧ ହୁଏ ତାହାଙ୍କୁ ନାଗପାଶରେ ଆବଦ୍ଧ ନ ରଖି ବାନରବାହିନୀକୁ କେବଳ ଇନ୍ଦ୍ରଜିତ ବ୍ରହ୍ମାସ୍ତ୍ରରେ ଆବଦ୍ଧ କରିଥିବା ଲେଖିଅଛନ୍ତି । କିନ୍ତୁ ଆଦିକବି ମହୋଦୟ ରାମଙ୍କୁ ନାଗପାଶରେ ଆବଦ୍ଧ ରଖି ସୁଦ୍ଧା ସ୍ୱୟମାଗତ ଗରୁଡ଼ଙ୍କର ତଦାଜ୍ଞାକାରିତ୍ୱ ଓ ତତ୍ସେବକତ୍ୱରୁ ଶ୍ରୀରାମଙ୍କର ଐଶ୍ୱରିକ ସତ୍ତା ବଢ଼ାଇ ଅଛନ୍ତି, ମାତ୍ର ବଳରାମ ଦାସେ ଏ ସ୍ଥଳରେ ଏହି ଉଭୟ ମତକୁ ତ୍ୟାଗ କରିଅଛନ୍ତି ।

ଦାସଙ୍କ ରାମାୟଣରେ ଲେଖାଅଛି କି ପ୍ରଥମ ଦିବସର ଯୁଦ୍ଧାବସନାରେ ଶ୍ରୀ ରାମାଦି ଯାଇ ସୁବେଳ ପର୍ବତରେ ପ୍ରବିଷ୍ଟ ଓ ଉପବିଷ୍ଟ ହେଲେ । ତେତେବେଳେ ସୁଷେଣଙ୍କ ମୁଖରେ ଉକ୍ତ ଅଛି ଯେ ସେହି ଦିନ ମଧ୍ୟ ନବାଗତ କେତେକ ବାନରସେନା ସୁବେଳରେ ଉପଗତ ହୋଇଥିଲେ । ସେ ପୁଣି ରାମଙ୍କୁ ଜଣାଇ ଥିଲେ ଯେ ଏହିପରି ପ୍ରତ୍ୟହ ନବ ନବ ବାନର ସେନା ନାନା ସ୍ଥାନରୁ ଆସୁଥିବେ । ଏଥିରୁ ସ୍ପଷ୍ଟ ଜଣାଯାଉଛି ସମଗ୍ର ରାମବାହିନୀ ଯୁଗପଦ୍ ସମାବିଷ୍ଟ ହୋଇ ନ ଥିଲେ; ପ୍ରତ୍ୟହ କ୍ରମଶଃ ଅସଂଖ୍ୟ ସେନା ଆସି ମୂଳବାହିନୀରେ ମିଶୁଥିଲେ । ଏ ସ୍ଥଳେ ପୁଣି ଦାସେ ପ୍ରାତ୍ୟହିକ ଆଗମିଷ୍ୟମାଣ ସେନାର ଅବଗମାର୍ଥ ଆଉ ଗୋଟିଏ କୌତୁକାବହ କାରଣ ଲଗାଇ ଅଛନ୍ତି । କେଉଁ ଦିନ କେତେ ସେନା ଆସିଲେ, ତାହାର ପରିଦର୍ଶନ ଆଉ ପରିଗଣନର ବିନା ସୁଷେଣ ନିଜର ମନ୍ତ୍ର ପୁସ୍ତକ ଧରି ଅବଲୋକନ ମାତ୍ରେ ତାହା ରାମଙ୍କୁ ଠିକ୍ ଜଣାଇ ଦେଉଥିଲେ । (୨)

ବଳରାମ ଦାସେ ପ୍ରଥମ ଦିବସର ଯୁଦ୍ଧର ପାଠତକକୁ ମୂଳ ଅପେକ୍ଷା ଅନ୍ୟ ପ୍ରକାର ଏବଂ ଅଳ୍ପପ୍ରସର କରି ସୁଦ୍ଧା ସେଥି ମଧ୍ୟରେ ଅମୌଳିକ ଅନ୍ୟାନ୍ୟ ଅବାନ୍ତର କେତେଗୁଡ଼ିଏ ଆନୁଷଙ୍ଗିକ କଥା ଭରତି କରିଅଛନ୍ତି । ଏ ସ୍ଥଳେ ସେ ପୁଣି ରାବଣଙ୍କ ପ୍ରତି ଶ୍ରୀରାମଚନ୍ଦ୍ରଙ୍କର ଅନନ୍ୟସାଧାରଣ ସହିଷ୍ଣୁତା ଦେଖାଇ ଅଛନ୍ତି । ପ୍ରଥମାହବର ଦିବସର ରାତ୍ରିରେ ରାମଚନ୍ଦ୍ର ବୋଇଲେକି, ମୁଁ ଧର୍ମମାର୍ଗ ଲଂଘିବି ନାହିଁ, ମୁଁ ରାବଣଙ୍କ ସଂଗେ

---

(୧) ତେଷ୍ୟାଂ ସୁଭୀମସ୍ତୁମୁଲୋ ନିନାଦଃ, ବଭୂବ ଶାଖାମୃଗଯୂଥପାନାମ୍ ।
କ୍ଷୟେ ନିଦାଘସ୍ୟ ଯଥା ଘନାନାଂ ନାଦ ସୁଭୀମୋ ନଦତାଂ ନିଶୀଥେ । ୫୦ ସ.

(୨) ଯେବଣ ମନ୍ତ୍ରପୋଥି ଅଛଇ ମୋର ହାଥେ
ଏହାର ଯେ କଳି ମୁ ଜାଣଇ ରଘୁନାଥେ ।
ବେଦରୁ ତ ବ୍ରହ୍ମା ଏହି ମନ୍ତ୍ରକୁ କାଢ଼ିଲା
ରାମାୟଣ ଚରିତ ଏ ମନ୍ତ୍ରରେ ରଖିଲା ।
ତୋହର ଚରିତ ଏହି ପୁସ୍ତକରେ ଅଛି ।
ଶୁଣି ହରଷ ହୋଇଲେ ପ୍ରଭୁ ରଘୁବଚ୍ଛି । ୬୨ ପୃ.

କଳି କରିବାକୁ ଆଗେ ପ୍ରସ୍ତୁତ ହୋଇ ନାହିଁ । ସେ କେବଳ ଅଲଂଘ୍ୟ ଧର୍ମକର୍ମକୁ ଲଂଘି ମୋ ସଂଗେ ବିବାଦ କରିଅଛି । ତଥାପି କାଲି ହନୁମାନ ଯାଇ ତାକୁ କହନ୍ତୁ, ଏବେ ହେଲେ ସେ ସୀତାଙ୍କୁ ପ୍ରତ୍ୟର୍ପଣ କରୁ । ମୁଁ ଚାଲିଯିବି । ସେ ଇତଃପୂର୍ବେ ମୋ ପ୍ରତି ଯେ ଅପରାଧ କରିଅଛି ମୁଁ ତାର କ୍ଷମାଦାନ କରୁଅଛି । (୧)

ଦାସେ ପୁଣି ଏସ୍ଥଳେ ରାବଣଙ୍କର ଅବିଚାର ମୂଳକ ପଶ୍ଚାତ୍ତାପର ଅନେକଗୁଡ଼ିଏ କଥା ଲେଖିଅଛନ୍ତି । ପ୍ରଥମ ଦିବସ ଯୁଦ୍ଧରେ ତାହାଙ୍କର ପ୍ରଧାନ ସେନାପତି ପ୍ରହସ୍ତ, ବଜ୍ରଧୃଷ୍ଟ, ଦୁର୍ଦ୍ଧର୍ଷ, ଯୂପାକ୍ଷ ନାମକ ଚାରିଜଣ ମହାବୀର ପଞ୍ଚତ୍ୱ ଲାଭ କରିଯାଇଥିବାରୁ ସେ ସେମାନଙ୍କର ଗୁଣଗଣ ବାହୁନି ଅଛନ୍ତି । (୨)

ଏ ସମୟରେ ଇନ୍ଦ୍ରଜିତ ଆସି ଉପଗତ ହେଲେ । ତାହାଙ୍କୁ ରାବଣ ବିରସ ମୁଖରେ ତଦୀୟ ସମର ଅପାରଗତ୍ୱ ସୂଚକ କେତେକ କଥା କହିଲା ପରେ ବୋଇଲେ ଯେ, ମୁଁ ନିଜେ ସମର ଭୂମିରେ ଅଗ୍ରଯାୟୀ ନ ହେବାରୁ, ଅପିଚ ତୁମର ଅବହେଳାରୁ ପ୍ରଧାନ ସେନାପତି ଚତୁଷ୍ଟୟ ନିହତ ହୋଇଗଲେ । ଛାର ବାନର ଓ ଭଲ୍ଲୁକମୁଖା ଭଲ୍ଲୁକଗୁଡ଼ାଏ ଅବସର ଉଣ୍ଡି ଗଡ଼ ମଧରେ ରୁଣ୍ଡୀଭୂତ ହୋଇ ନାନା ଉପଦ୍ରବରେ ସବୁ ଲଣ୍ଡଭଣ୍ଡ କରି ବେଳ ବୁଡ଼ିଲା କ୍ଷଣି ତରତରରେ କେଡ଼େ ତରକାତରିକି ବାହାରି ଗଲେ (୩) ଆଚ୍ଛା ହେଉ, କାଲି ମୁଁ ନିଜେ ଯୁଦ୍ଧପ୍ରାଙ୍ଗଣକୁ ଯିବି ।'

ଯୁଦ୍ଧର ଦ୍ୱିତୀୟ ଦିବସରେ ତେଣେ ରାବଣ ଯୁଦ୍ଧାର୍ଥ ସଂନଦ୍ଧ ହୋଉ ଅଛନ୍ତି । ଏଣେ ରାମଚନ୍ଦ୍ର ହନୁମାନଙ୍କୁ ତାହାଙ୍କ କତିକୁ ପଠାଉ ଅଛନ୍ତି । ରାମଚନ୍ଦ୍ରଙ୍କ ଯେଉଁ ସବୁର୍ଣ୍ଣଶିଖ ବିଶିଖଟି ବାଳି ପ୍ରଭୃତିଙ୍କର ପ୍ରାଣନାଶକ, ସେ ସେହିଟିକୁ ମାରୁତିଙ୍କ ହସ୍ତରେ ଦେଇ କହିଲେ, ଏହି ଶରଟିକୁ ରାବଣକୁ ଦେଖାଇ କହିବ, 'ଏହାର ପ୍ରହାରରେ ନିହାରପାତରେ ପଙ୍କଜ ପ୍ରାୟ ଖର, ଦୂଷଣ, ତାଟକା ଆଉ ଅଲୌକିକ ବୀର ବାଳି ପ୍ରାପ୍ତସଂହାର ହୋଇଅଛି । ତୁମେ ଏକ୍ଷଣି ସୀତାଙ୍କୁ ସମର୍ପଣ ନ କଲେ ବାଳିଙ୍କ ଅବସ୍ଥାକୁ ପ୍ରାପ୍ତ ହେବ ।' ତାପରେ ପୁଣି ରାମଚନ୍ଦ୍ର ସୁଷେଣଙ୍କ ହସ୍ତରେ ଆଜ୍ଞାପତ୍ର ଲେଖାଇ ପାବନିଙ୍କ ହସ୍ତରେ ଦେଲେ । ପାବନି ସେକ୍ଷଣି ଶ୍ରୀରାମଙ୍କ ଦତ୍ତ ଶ୍ରୀମୁଖ ମସ୍ତକସ୍ଥ କରି ରାବଣଙ୍କଠାକୁ ଗଲେ । ଏସ୍ଥଳେ ବଳରାମ ଦାସେ ଆଞ୍ଜନେୟଙ୍କୁ ଗୋଟିଏ କପିପୌଚ୍ଛିକ ବିଚିତ୍ର ଉଚ୍ଚାସନ ପ୍ରଦାନ କରି ଅଛନ୍ତି । ହନୁମାନ ଯାଇ ଦେଖିଲେ ଯେ ଲଙ୍କାଧିପତି ଗୋଟିଏ ଉଚ୍ଚ ଆସନରେ ବସି ଅଛନ୍ତି । ସେ ମନେ ଭାବିଲେ, ଏ ତ ମୋତେ ବସିବାକୁ ଆସନ ଦେଲା ନାହିଁ । ମୁଁ

---

(୧) ଛାପା ପୁସ୍ତକରେ ୬୩ ପୃଷ୍ଠା ଦେଖନ୍ତୁ ।
(୨) ଛାପା ପୁସ୍ତକରେ ୬୪ ପୃଷ୍ଠା ଦେଖନ୍ତୁ ।
(୩) ଛାପା ପୁସ୍ତକରେ ୬୫ ପୃଷ୍ଠା ପଢ଼ନ୍ତୁ ।

ପୁଣି ଶ୍ରୀରାମଙ୍କ ଦୂତ, ହେଉ ତେବେ, ମୋର ବିପୁଳତର ସୁଦୀର୍ଘାୟତ ସ୍ୱଚ୍ଛ ପୁଚ୍ଛଟିକୁ ଗୋଟାଏ ସମୁଚ୍ଚ ଆସନରେ ପରିଣତ କରିବି । ସେ ତାହାହିଁ କରି ତହିଁରେ ଉପବିଷ୍ଟ ହେଲେ ଏବଂ ରାବଣଙ୍କୁ କହିଲେ, 'ହେ ଲଙ୍କାଧିପ ! ତୁମକୁ ଦୟାନିଧି ଦାଶରଥି ସୁଦୟା କରିଅଛନ୍ତି, ଏହି ଆଦେଶ ପତ୍ର ଦେଇ ଅଛନ୍ତି, ଏହାକୁ ଗ୍ରହଣ କର ।' ତଦା ଦୁରହଂକାର-ଗ୍ରନ୍ଥିଳ-ହୃଦୟ ରାବଣ କ୍ରୋଧକଳୁଷିତ ମନରେ ମାରୁତିଙ୍କୁ ଟିକିଏ ଥଟା କରି କଥାଟାଏ କହିଲେ, ପତ୍ରଟାକୁ ତୁମେ କେବଳ ପାଠକର । ହନୁମାନ ଅନତ୍ୟୁଚ୍ଚ ଅନତି ଲଘୁ ସ୍ୱରରେ ସେହି ପତ୍ରଟିକୁ ସୁସ୍ପଷ୍ଟ ପାଠ କଲେ । ସେହି ପତ୍ରରେ ଅନ୍ୟାନ୍ୟ କଥା ପୂର୍ବରୁ ଲେଖାଥିଲା କି, ଶ୍ରୀରାମଚନ୍ଦ୍ର ନିଖିଳ ବ୍ରହ୍ମାଣ୍ଡର ସୃଷ୍ଟିସ୍ଥିତିପ୍ରଳୟକର୍ତ୍ତା । ଆବ୍ରହ୍ମସ୍ତମ୍ବ ପର୍ଯ୍ୟନ୍ତ ସମସ୍ତଙ୍କର ସୁଖଦୁଃଖ ବିଧାତା, ମୀନାଦି ଅବତାରକର୍ତ୍ତା ଏବଂ ଶୌର୍ଯ୍ୟସୌନ୍ଦର୍ଯ୍ୟଦୟାଦାକ୍ଷିଣ୍ୟାଦି ନିଖିଳ ସଦ୍‌ଗୁଣରାଶିର ଆସ୍ପଦ ଅଟନ୍ତି । (୧)

ଏସବୁ ଯଥାର୍ଥ ହେଲେ ସୁଦ୍ଧା ମୂଳଗ୍ରନ୍ଥରେ ରାମଙ୍କର ଏତାଦୃଶ ଆତ୍ମଗୁଣଗାନ କୁତ୍ରାପି ଦେଖାଯାଏ ନାହିଁ । ଧୀରୋଦାତ୍ତ ଚୂଡ଼ାମଣି ରଘୁମଣିଙ୍କ ମୁଖରେ ଆତ୍ମବକ୍ତବ୍ୟ ବୋଲି ଦାସେ କିପରି ବିଶ୍ୱାସ କଲେ, ବୁଝି ନ ପାରୁଁ ! ଏହି କଥା ଭଙ୍ଗ୍ୟନ୍ତରରେ କିମ୍ବା ଅନ୍ୟ ମୁଖରେ ପ୍ରକାଶ କରାଇଥିଲେ ସୁସଂଗତ ହୋଇ ଥାଆନ୍ତା । ରାବଣ ମାରୁତିଙ୍କ ମୁଖରୁ ପତ୍ରସ୍ଥ କଥାମାନ ଶୁଣି ସ୍ୱକୀୟ ପୂର୍ବବଂଶୀୟ ପୁରୁଷମାନଙ୍କର ତଥାଚ ନିଜର ଅଖଣ୍ଡାଖଣ୍ଡଳାଧିପତ୍ୟ ଅନବଦ୍ୟ ମହତ୍ତ୍ୱ ବୀରତ୍ୱାଦି ବଖାଣି ରାମ ଆଉ ବାନରମାନଙ୍କୁ ନିନ୍ଦା କଲେ । ପାବନି ମଧ ଛଳୋକ୍ତିର ସହକାରେ ରାମଦତ୍ତ ବିଶିଖ ଓ ତଦାଦିଷ୍ଟ ବଚନମାନ ପ୍ରକାଶ କଲେ । ତଥାପି ରାବଣ ସେ କଥାରେ ଭ୍ରୂକ୍ଷେପ ନକରି ସବାହିନୀକ ରାମଙ୍କ ପ୍ରତି ଅବିଜ୍ଞେୟତା ପ୍ରକାଶ ପୂର୍ବକ ଯୁଦ୍ଧାର୍ଥ ସନ୍ନଦ୍ଧ ହେବାକୁ କହିଲେ । (୨) ପାବନିଙ୍କର ଏହି ଦୌତ୍ୟ ବିଧାନ ବାଲ୍ମିକୀୟ ଏବଂ ଅଧ୍ୟାତ୍ମ ରାମାୟଣରେ ମଧ ନିଗଦିତ ହୋଇନାହିଁ । ଦାସେ ଏହାର ପ୍ରମାଣ କେଉଁ ପୁରାଣରୁ ପାଇ ଅଛନ୍ତି ? କେତେଦୂର କଳ୍ପନା ପ୍ରସୂତ ଜଳ୍ପନାରେ ଏହାକୁ ଅନୁପ୍ରାଣିତ ଓ ପରିବର୍ଦ୍ଧିତ କରି ଅଛନ୍ତି ? ଅନୁସନ୍ଧେୟ ।

ଅତଃପର ମୂଳଗ୍ରନ୍ଥର ଏକପଞ୍ଚାଶ ସର୍ଗଠାରୁ ଏକୋନଷଷ୍ଟିତମ ସର୍ଗ ପର୍ଯ୍ୟନ୍ତ ଯଥାକ୍ରମେ ରାବଣଙ୍କର ଧୂମ୍ରାକ୍ଷକୁ ଆଦିକରି ପ୍ରହସ୍ତ ପର୍ଯ୍ୟନ୍ତ ସେନାପତିମାନଙ୍କର ଯୁଦ୍ଧ ଏବଂ ପଞ୍ଚତ୍ୱ ପ୍ରାପ୍ତିର କ୍ରମମାନ ବର୍ଣ୍ଣିତ ଅଛି । କିନ୍ତୁ ଏହି ଚାରି ସେନାପତିମାନଙ୍କର ଯୁଦ୍ଧ ଦିବସର ପ୍ରମାଣ ଏଥି ମଧରେ ଲେଖାନାହିଁ । ପ୍ରାଥମିକ ଯୁଦ୍ଧ ଦିବସର ଅର୍ଦ୍ଧରାତ୍ରରେ ଉଜ୍ଜୀବିତ ବାନର ବାହିନୀର ସହସା ଆକସ୍ମିକ ଆକ୍ରମଣ ଦେଖି ଲଙ୍କାଧିପତି ବିସ୍ମିତ

(୧) ଛାପା ପୁସ୍ତକରେ ୬୭, ୬୮ ପୃଷ୍ଠା ପଢ଼ନ୍ତୁ ।

(୨) ଛାପା ପୁସ୍ତକରେ ୬୯, ୭୦ ପୃଷ୍ଠା ପଢ଼ନ୍ତୁ ।

ଆଉ ଚିନ୍ତିତ ମନରେ ଶତ୍ରୁଶାତନାର୍ଥ ଧୂମ୍ରାକ୍ଷ ସେନାପତିଙ୍କୁ ପଠାଇଥିଲେ । ବୋଧହୁଏ ଧୂମ୍ରାକ୍ଷଙ୍କ ଆହବିକ ସମ୍ମର୍ଦ ପରଦିନ ପ୍ରାତଃ କାଳରୁ ପ୍ରଗାଢ଼ ହୋଇଥିଲା । ରାବଣଙ୍କର ପ୍ରୋକ୍ତ ସେନାପତି ଗଡ଼ର ପଶ୍ଚିମ ଦ୍ୱାରରେ ମାରୁତିଙ୍କ ସଙ୍ଗେ ଅନେକ ସମୟ ଘୋର ସମର କରି ପ୍ରେତରାଜ୍ୟକୁ ପ୍ରସ୍ଥାନ କଲେ । ତାପର ଦିନ ରାବଣାଦେଶରେ ବଜ୍ରଦ୍ରଂଷ୍ଟ ଦକ୍ଷିଣ ଦ୍ୱାରରେ ଅଙ୍ଗଦଙ୍କର ସହ ବହୁ ସମୟ ବ୍ୟାପୀ ଯୁଦ୍ଧରେ ମାତି ତାହାଙ୍କୁ ପୁଷ୍ପିତ-ପଳାଶ-ପଲାଶି ସଦୃଶ ରକ୍ତାକ୍ତତାରେ ଅରୁଣାୟମାନ କରି ପରିଶେଷରେ ଅଙ୍ଗଦଙ୍କ ଖଡ୍ଗ ପ୍ରହାରରେ ବିଚ୍ଛିନ୍ନ-ମସ୍ତକ ହେଲେ । ତା ପରଦିନ ଅକମ୍ପନଙ୍କ ଦତ୍ତ ପରାଭବରେ ହରି-ବାହିନୀ ସକମ୍ପନ ହୋଇ ପଡ଼ିଲେ । ମାରୁତି ବାନରମାନଙ୍କ ଦୁରବସ୍ଥା ଲୋକନରେ ନିତାନ୍ତ କ୍ରୁଦ୍ଧ ହୋଇ ନମୁଚିକ-ପୁରନ୍ଦର ପ୍ରାୟ ନିସତ୍ୱ ଅକମ୍ପନ ସେନାନାୟକଙ୍କୁ ନିରନୁକମ୍ପତାରେ ନିହତ କଲେ ।

X X X X X

(ପ୍ରାୟ ୭୨ ସର୍ଗର ମୂଳପାଠ ଓ ବଳରାମ ଦାସଙ୍କ ରାମାୟଣର ତୁଳନାତ୍ମକ ଆଲୋଚନା ଉପଲବ୍ଧ ନୁହେ ।)

ଏ ସ୍ଥଳେ ବଳରାମ ଦାସ ମହାଶୟ ନିଜର ଲେଖାକୁ ମୂଳପାଠର ଅନୁଗତ କରିଅଛନ୍ତି । କେବଳ ଏତିକି ମାତ୍ର ନୁହେଁ, ଟୀକାକାରମାନେ ଅତ୍ରତ୍ୟ ମୌଳିକ ପାଠର ଯେ ଯେ ଅଭିପ୍ରାୟ ବ୍ୟକ୍ତ କରିଅଛନ୍ତି, ତାହାକୁ ସୁଦ୍ଧା ଦାସ ମହାଶୟ ଅନୁସରଣ କରଅଛନ୍ତି । ବ୍ରହ୍ମାଙ୍କ ସହିତ ରାମଚନ୍ଦ୍ରଙ୍କର ଯେ ମାନୁଷ-ଅମାନୁଷ ବିଚାରମୂଳକ ଆଳାପ ତାହାକୁ ଦାସେ ଟୀକାକାରଙ୍କ ମତାନୁସାରେ ଲେଖିଅଛନ୍ତି । ପାଠକଗଣ ଅତ୍ରତ୍ୟ ଦାସଙ୍କ ପାଠତକ ଧରି ମୌଳିକ ପାଠର ଟୀକା ପଂକ୍ତିମାନ ସହ ମିଳାଇ ନେଲେ ଅନେକତ୍ର ଭାବସାଦୃଶ୍ୟ ଉପଲବ୍ଧି କରିପାରିବେ ।

ଏହାପରେ ସ୍ୱୟଂ ପାବକ ପବିତ୍ରତମା ସୀତା ଦେବୀଙ୍କୁ ଅଙ୍କେ ଧରି ଆବିର୍ଭୂତ ହେଲେ । ସେ ରାମଙ୍କୁ କହିଲେ, ହେ ରାମଚନ୍ଦ୍ର ! ଜାନକୀ ଦେବୀ ସର୍ବଥା ପବିତ୍ରତମା ଅଟନ୍ତି, ତାହାଙ୍କର ମନୋନେତ୍ରାଦିସ୍ୱପ୍ନରେ ସୁଦ୍ଧା ଆପଣଙ୍କ ଛଡ଼ା ଅନ୍ୟତ୍ର ଆସକ୍ତି ପାଇନାହିଁ । ଆପଣ ଏହାକୁ ଉପେକ୍ଷା କରୁଛନ୍ତି କିପରି ? (୧) ରାମ କହିଲେ, ହେ ହବ୍ୟବାହ ! ମୂର୍ଖ-ସଂସାର ସମୟେ ନିନ୍ଦା କରିପାରେ, ଏହି ଭୟରେ ସୀତାଙ୍କୁ ଉପେକ୍ଷା କରିଅଛି । ତାପରେ ରାମଚନ୍ଦ୍ର ସୀତା ଦେବୀଙ୍କର ଅପ୍ରଧୃଷ୍ୟତାଦିର ମହିମା ପ୍ରକାଶନ

(୧) ଏ ସ୍ଥଳେ ଅଧ୍ୟାତ୍ମରାମାୟଣକାର କହିଛନ୍ତି କି ରାମଚନ୍ଦ୍ର ଆଗେ ସୀତାଙ୍କ ରୂପକୁ ଅଗ୍ନିରେ ନିହିତ କରାଇଥିଲେ । ଏବେ ନିଜେ ପାବକ ତାହା ତାହାଙ୍କୁ ସ୍ମରଣ କରାଇଦେଲେ । ଯଥା :—
ପ୍ରୋବାଚ ସାକ୍ଷୀ ଜଗତାଂ ରଘୁତ୍ତମଂ ପ୍ରପନ୍ନସର୍ବାର୍ତ୍ତିହରଂ ହୁତାଶନଃ ।
ଗୃହାଣ ଦେବୀଂ ରଘୁନାଥ ! ଜାନକୀଂ ପୁରା ତ୍ୱୟା ମୟ୍ୟବରୋପିତାଂ ବନେ । ଯୁ.କା. ୧୩ ସ.

ପୂର୍ବକ ତାହାଙ୍କୁ ସାଦରେ ଗ୍ରହଣ କଲେ । ତଦା ମହାଦେବ ରାମଙ୍କୁ କହିଲେ, ହେ ଦାଶରଥେ ! ଦେଖନ୍ତୁ ଆପଣଙ୍କ ପିତା ଦଶରଥ ବିମାନସ୍ଥ ରହି ଆପଣଙ୍କୁ ନିରୀକ୍ଷଣ କରୁଛନ୍ତି । ତଦା ରାମ ଲକ୍ଷ୍ମଣ ଦୁହେଁ ପିତାଙ୍କୁ ଶିରସା ପ୍ରଣାମ କଲାରୁ ଦଶରଥ ପୁତ୍ରଦ୍ୱୟଙ୍କୁ ସାଦରେ ଅଙ୍କରେ ଧରି ଗାତ୍ର-ଆଲିଙ୍ଗନ କଲେ । (୧) ନିଜର ସୁଖାନୁଭୂତି ସୂଚନା ପୂର୍ବକ ବ୍ରହ୍ମା ପ୍ରିୟତର ବଚନମାନଙ୍କରେ ଅଯୋଧ୍ୟା ପ୍ରତ୍ୟାବୃତ୍ତି ନିମନ୍ତେ ଅନୁରୋଧ କଲେ ଏବଂ ସୀତାଙ୍କୁ ବହୁଧା ଉପଦେଶ ପ୍ରଦାନ କଲେ ।

ଏ ସ୍ଥଳେ ଦାସେ ପୁଣି ଲେଖି ଅଛନ୍ତି, ଶ୍ରୀରାମଙ୍କ ପ୍ରତି ଦେବଗଣଙ୍କ କୃତ ପ୍ରଣାମ ପରଂପରା ଦେଖି ଦଶରଥ ମଧ ମସ୍ତକ-ନ୍ୟସ୍ତ ହେଲାରୁ ଶ୍ରୀରାମ ଧାଇଁ ଯାଇଁ ଏହା କର୍ତ୍ତବ୍ୟ ନୁହେଁ ବୋଲି ଦଶରଥଙ୍କୁ ନିଷେଧ କଲେ । (୨) ଶ୍ରୀମଦ୍ ଭାଗବତରେ ଶ୍ରୀକୃଷ୍ଣଙ୍କର ଭଗବତ୍ତାର ପ୍ରକାଶ ସ୍ଥଳେ ବାସୁଦେବାଦିଙ୍କ ପ୍ରଣାମ ଏବଂ କପିଳ ଦେବଙ୍କର ପରମେଶ୍ୱରତ୍ୱ ପ୍ରକାଶ ସ୍ଥଳେ ଦେବହୂତିଙ୍କର ପ୍ରଣାମ ଯାଦୃଶ ସୁସଙ୍ଗତ ଓ ସମୀଚୀନ ଅତ୍ରତ୍ୟ ରାମଙ୍କ ପ୍ରତି ଇନ୍ଦ୍ରାଦି ଦେବଗଣ ସହ ସ୍ୱର୍ଗୀୟ ଦଶରଥଙ୍କର ପ୍ରଣତି ବିନତି ମଧ ତାଦୃଶ ବିଧି ବିହିତ ।

ଏହାପରେ ରାମ ଇନ୍ଦ୍ରଙ୍କୁ କହିଲେ, ଆପଣ ଯଦି ମୋ ପ୍ରତି ପ୍ରସନ୍ନ ଅଛନ୍ତି, ତେବେ ଏହି ଯେ ଋକ୍ଷବାନରାଦି ବୀରମାନେ ମୋ ନିମନ୍ତେ ପ୍ରାଣ ହରାଇ ଅଛନ୍ତି ସେମାନେ ଯେପରି ଉଜ୍ଜୀବିତତ୍ୱରେ ନିରୁଜ ଓ ନିର୍ବ୍ରଣ ହେବେ ତାହାର ଉପାୟ କରନ୍ତୁ । (୩) ଆପଣ ଏମାନଙ୍କ ପ୍ରତି ଏପରି ସଦୟ ରହନ୍ତୁ ଯେ ଏମାନଙ୍କ ପାଇଁ

---

(୧) ହର୍ଷେଣ ମହତାଽଽବିଷ୍ଟଃ ବିମାନସ୍ଥୋ ମହୀପତିଃ । ××
ଆରୋପ୍ୟାଙ୍କେ ମହାବାହୁଃ ବରାସନଗତଃ ପ୍ରଭୁଃ
ବାହୁଭ୍ୟାଂ ସଂପରିଷ୍ୱଜ୍ୟ ତତୋ ବାକ୍ୟମୁବାଚ ହ । ଇତ୍ୟାଦି ୧୨୨
× × × ପୁତ୍ରନ୍ତ କୋଳେ ଧରି ମୁଖେ ଚୁମ୍ବ ଦେଲା ।
ରାମକୁ ଅନାଇଁ ଅନେକ ଚାଟୁ ସେ କହିଲା । ଇତ୍ୟାଦି ୩୬୭ ପୃ.

(୨) ଦେବତାଙ୍କ ପ୍ରଣାମ ଦେଖିଣ ଦଶରଥ
ସେହି ଶିରେ ନେଇଣ ଯୋଡ଼ଇ ବେନିହସ୍ତ ।
ଧାଇଁଣ ଶ୍ରୀରାମ ଯେ ପିତାଙ୍କୁ କୋଳ କଲେ
ଭୋ ତାତ ! ଏହା କିମ୍ପାଇଁ କରିବୁ ବୋଇଲେ । ୩୬୮ ପୃ.

(୩) ମମହେତୋ ପରାକ୍ରାନ୍ତ ଯେ ଗତା ଯମସାଦନମ୍
ତେ ସର୍ବେ ଜୀବିତଂ ପ୍ରାପ୍ୟ ସମୁତ୍ତିଷ୍ଠନ୍ତୁ ବାନରାଃ ।
× × × × ×
ଅକାଳେ ଚାପି ପୁଷ୍ପାଣି ମୂଳାନିଚ ଫଳାନିଚ
ନଦ୍ୟଶ୍ଚ ବିମଳାସ୍ତତ୍ର ତିଷ୍ଠେୟୁର୍ଯତ୍ର ବାନରାଃ । ୧୨୩ ସର୍ଗ
ବଳରାମ ଦାସଙ୍କ ରାମାୟଣ – ୩୭୦ ପୃଷ୍ଠାରେ ଦେଖନ୍ତୁ ଏହ ହିଁ ଲେଖାଅଛି ।

ନଦୀମାନ ଏବଂ କାନନମାନ ଜଳ ଓ ଫଳ ସମ୍ଭାରରେ ସମ୍ପନ୍ନ ରହୁ । ଦେବେନ୍ଦ୍ର ରାମଚନ୍ଦ୍ରଙ୍କର ଅଭିଳଷିତ ବର ପ୍ରାର୍ଥନାକୁ ତଥାସ୍ତୁ କହି ଅମୃତ ବର୍ଷଣଦ୍ୱାରା ସଂପୂର୍ଣ୍ଣ ଫଳବତୀ କଲେ । ଦାସ ମହାଶୟ ମଧ୍ୟ ଏହି କଥାମାନ ପ୍ରକାଶ କରିଅଛନ୍ତି । କିନ୍ତୁ ଏଥି ମଧ୍ୟରେ କେତେକ ପଦ ମାତ୍ର ଅନୁଲେଖକଙ୍କର ପ୍ରକ୍ଷିପ୍ତ ପରି ଅନୁମିତ ହୁଏ ।

ଏହାପରେ ଦାସଙ୍କ ରାମାୟଣରେ ଲେଖା ଅଛିକି ରାମଚନ୍ଦ୍ର ବ୍ରହ୍ମାଙ୍କୁ ଅନୁରୋଧ କଲେ ଯେ ଆପଣ ଦେବ ଗନ୍ଧର୍ବାଦି ଗଣଙ୍କୁ ନିଜର ସମଭିବ୍ୟାହାରରେ ନେଇ ଅଯୋଧ୍ୟାରେ ସୀତାଙ୍କ ସହିତ ମୋର ଅଭିଷେକ ମହୋତ୍ସବକୁ ସଂପନ୍ନ କରାଇବେ । ତାହା ନ ହେଲେ ସମଗ୍ର ଜମ୍ବୁଦ୍ୱୀପ-ନିବାସୀମାନେ ଜାନକୀଙ୍କୁ ନିର୍ଦ୍ଦୋଷା ବୋଲି ସ୍ୱୀକାର କରିବେ ନାହିଁ । ବ୍ରହ୍ମାଙ୍କ ପ୍ରତି ରାମଙ୍କର ଏତାଦୃଶ କୃତ ପ୍ରାର୍ଥନାର ବ୍ୟକ୍ତୀକରଣ କଥଂଚିତ୍ ସଙ୍ଗତ ଜଣାଯାଏ ନାହିଁ । ରାମଚନ୍ଦ୍ର ଏଥିପାଇଁ ବ୍ରହ୍ମାଙ୍କୁ କାହିଁକି ବା ଅନୁରୋଧ କରିବେ ? ରାମଙ୍କ ଅଭିଷେକ ସମୟରେ ବ୍ରହ୍ମାଦି ଦେବଗଣ, ଅଗସ୍ତ୍ୟ ପ୍ରମୁଖ ମହର୍ଷିଗଣ ଓ ସିଦ୍ଧଗନ୍ଧର୍ବାଦି ଗଣମାନେ ସ୍ୱତଃ ପ୍ରଣୋଦିତ ହୋଇ ଅଯୋଧ୍ୟାରେ ଉପଗତ ହେବାପାଇଁ ବହୁଦିନରୁ ଉତ୍କଣ୍ଠିତ ଥିଲେ ।

ବ୍ରହ୍ମାଙ୍କ ପ୍ରତି ରାମଙ୍କର ଯୁକ୍ତିବିରୋଧ ଅନୁରୋଧର ଉକ୍ତି ମଧ୍ୟରେ ପୁଣି ଲେଖା ଅଛି କି ରାମଚନ୍ଦ୍ର ଅଭିଷେକାନ୍ତର ନିଜର ପାନ-ଭୋଜନ-ବସ୍ତ୍ର-ପରିଧାନ-ତାମ୍ବୁଲ-ମାଲ୍ୟ-ଉପାନହସମର୍ପଣ ପ୍ରଭୃତି ଯାବତୀୟ ରାଜନିଯୋଗମାନ କେବଳ ବ୍ରାହ୍ମଣ ପରିଚାରମାନଙ୍କ ଦ୍ୱାରା ସାଧିତ କରିବା ପାଇଁ ଇଚ୍ଛା ପ୍ରକାଶ କଲେ ଏବଂ ଏହାର କାରଣ ସ୍ୱରୂପ କହିଥିଲେ ଯେ, ମୁଁ ଯଦି ନାରାୟଣଙ୍କ ଅବତାର, ତେବେ ବ୍ରାହ୍ମଣମାନେ ମୋର ସେବା କାହିଁକି ନ କରିବେ ? (୧) ତେତେବେଳେ ବ୍ରହ୍ମା ପୁଣି ଏହି ଉକ୍ତିର ଉଚିତତା ଓ ସମୀଚୀନତା

(୧) ପ୍ରଧାନ ସେବକ ମୋର ହୋଇବେ ବ୍ରାହ୍ମଣ
ତେବେ ପ୍ରତେ ଯିବେ ଜମ୍ବୁଦ୍ୱୀପ ଲୋକେ ଜାଣ ।
ଶୁଦ୍ର ବୈଶ୍ୟ ନ ଛୁଇଁବେ ନ ଛୁଇଁବ କ୍ଷତ୍ରି
ତେବେ ସିନା ରାଜପଣ ହୋଇବ ଧରିତ୍ରୀ ।
ବିଡ଼ିଆ ଲାଗି ଯେ କରାଇବ ଦ୍ୱିଜବର
ବ୍ରାହ୍ମଣ ବେଶକୁ ସଜାଇବ ଯେ ମୋହର ।
ବ୍ରାହ୍ମଣ ମୋ ପାଯେ ପଡ଼ି ସେବିବାକୁ ମୋତେ
ବ୍ରାହ୍ମଣ ମୋ ସେବା କରିବାକୁ ଅନବ୍ରତେ ।
ମୋ ପାଦରେ ବ୍ରାହ୍ମଣ କଠାଉ ନେଇ ଦେବ
ନାନା ବିଧିବିଧାନ ବ୍ରାହ୍ମଣ କରାଇବ ।
ମୁହିଁ ଯେବେ ନାରାୟଣ ଅଛି ଅବତରୀ
କିଂପା ବ୍ରାହ୍ମଣ ମୋତେ ନଥିବ ସେବା କରି । ଇତ୍ୟାଦି ୩୭୨ ପୃ.

ସ୍ୱୀକାର କରି ନାରାୟଣଙ୍କର ବାମନାବତାରରେ ନିଜେ ଆପଣାର କମଣ୍ଡଳୁ ଜଳରେ ତଦୀୟ ପାଦ ପ୍ରକ୍ଷାଳନ କରିଥିବା ଏବଂ ସେହି ପାଦୋଦକକୁ ମହାଦେବ ସ୍ୱୀୟ ମସ୍ତକରେ ଧାରଣ କରିଥିବା କହିଅଛନ୍ତି ।

ଏହି ପୌରାଣିକ ଚରିତ-ସଂବଳିତ କବି-କଳ୍ପିତ ଚରିତ ସନ୍ଦର୍ଭଟି ଭକ୍ତିଗର୍ଭକ ଅଟେ । କବି ମହାଶୟ ତତ୍‌ସାମୟିକ ସ୍ଥାନୀୟ ରାଜନୀତି ଓ ରାଜଭକ୍ତିର ଅନୁସରଣରେ ଏହି ଚରିତ ସନ୍ଦର୍ଭକୁ ସଂଗଠିତ କରିଅଛନ୍ତି । (୧) ରାମଚନ୍ଦ୍ରଙ୍କୁ ସ୍ୱୟଂ ନାରାୟଣ ମନେକରି ବ୍ରାହ୍ମଣମାନେ ତଦୀୟ ପାଦ ସମ୍ବାହନ ପର୍ଯ୍ୟନ୍ତ ଯାବତୀୟ ସେବା ଶୁଶ୍ରୂଷା କରିବା କୌଣସି ମତେ ଅନୁଚିତ ବା ଅସଙ୍ଗତ ନୁହେଁ; ପ୍ରତ୍ୟୁତ ତାହାହିଁ ସର୍ବଥା କର୍ତ୍ତବ୍ୟ । କିନ୍ତୁ ରାମାୟଣରେ ମାନବାକୃତି ରାମଙ୍କର ଚରିତ୍ର ଚିତ୍ରଣ ଯାଦୃଶ ଧରଣରେ କରାଯାଇଅଛି ତାକୁ ଅନୁସରି ବିଚାର କଲେ, ଅପିଚ ନାନା ସ୍ଥାନରେ ନିହିତ ବ୍ରାହ୍ମଣମାନଙ୍କ ପ୍ରତି ରାମଚନ୍ଦ୍ରଙ୍କର ପ୍ରଗାଢ଼ ଭକ୍ତି ସୂଚକ କଣ୍ଠୋକ୍ତିମାନ ବିଚାର କରିଗଲେ ରାମଙ୍କ ମୁଖରେ ପୁଣି ଏହି ଉକ୍ତିମାନ ଶୋଭାବହ ବୋଧହୁଏ ନାହିଁ ।

ଅତଃପର ଚତୁର୍ବିଂଶତ୍ୟୁତ୍ତର ଶତତମ ସର୍ଗଠାରୁ ତିନିଗୋଟି ସର୍ଗରେ ଶ୍ରୀରାମଙ୍କର ଲଙ୍କା ନଗରୀରୁ ପ୍ରତ୍ୟାବୃତ୍ତିର ପୂର୍ବେ ବିଭୀଷଣଙ୍କକୃତ ସତ୍‌କାରାଦି ଚର୍ଯ୍ୟାମାନ ବର୍ଣ୍ଣିତ ଅଛି । ଯେଉଁ ଦିନ ସୀତାଙ୍କ ଅଗ୍ନି ପରୀକ୍ଷା ହେଲା, ସେହି ରାତ୍ରିର (୨) ଅବସାନ ପରେ ବିଭୀଷଣ ଶ୍ରୀରାମଚନ୍ଦ୍ରଙ୍କର ରାଜାଧିରାଜସତ୍‌କାର କରଣାର୍ଥ ମଙ୍ଗଳ ସ୍ନାନ (୩) ଓ ଅଳଂକରଣାଦିର ଉପକରଣମାନ ଆଣି ଉପସ୍ଥାପିତ କଲେ ଏବଂ ରାମଙ୍କୁ ଜଣାଇଲେ, ପ୍ରଭୋ ! ମତ୍‌ପ୍ରତି ସୁଦୟା କରି ଅଦ୍ୟ ଦିବ୍ୟସ୍ନାନାର୍ଥ ବିଜୟ କରନ୍ତୁ । ଶ୍ରୀରାମ କହିଲେ, ସଖେ ! ବିଭୀଷଣ ! ସୁଗ୍ରୀବ ବଡ଼ ସୁଖଭୋଗୀ, ସେ ମୋରପାଇଁ ବହୁ ଦୁଃଖ ଭୋଗ କରିଅଛନ୍ତି । ଆପଣ ତାହାଙ୍କୁ ଉପଚାର କରନ୍ତୁ । ମୁଁ ଅବିଳମ୍ବେ ଅଯୋଧ୍ୟାକୁ ଯିବାର କେବଳ ଚାହେଁ । ଭରତଙ୍କୁ ଦେଖିବା ଅପେକ୍ଷା ଏ ସବୁ ମୋ ପକ୍ଷେ ବହୁମତ ନୁହେଁ । ଅଯୋଧ୍ୟା ବହୁଦୂର ପନ୍ଥାରେ ବିଦ୍ୟମାନ । ଏ ହେତୁ ଶୀଘ୍ର ଏଠାରୁ ମୋର ପ୍ରସ୍ଥାନ

---

(୧) ବଳରାମ ଦାସଙ୍କ ନିର୍ଦ୍ଧାରିତ ଏହି ନିଯୋଗି – ବ୍ରାହ୍ମଣମାନେ କେବଳ ତାତ୍କାଳିକ ସବ୍ରହ୍ମଣ୍ୟ-ମୂର୍ଦ୍ଧାଭିଷିକ୍ତ ମହାରାଜମାନଙ୍କର ସେବା ନିଯୋଗ କରୁଥିଲେ । ଅଦ୍ୟାପି ସେହି କ୍ରମ ଅନେକ ରାଜବଂଶରେ ପ୍ରଚଳିତ ଅଛି । କେତେକ ସ୍ଥଳେ ପୁଣି ତାହା ବୈଲକ୍ଷଣ୍ୟ ପ୍ରାପ୍ତ ହୋଇଅଛି ।

(୨) ତାଂ ରାତ୍ରିମୁଷିତଂ ରାମଂ ସୁଖୋଦିତମରିନ୍ଦମମ୍ ।
ଅବ୍ରବୀତ୍ ପ୍ରାଞ୍ଜଳିର୍ବାକ୍ୟଂ ଜୟଂ ପୃଷ୍ଟ୍ୱା ବିଭୀଷଣଃ । (୧୨୪ ସର୍ଗ - ୧ମ ଶ୍ଳୋ)
ତାଂ ରାତ୍ରିଂ ଯସ୍ମିନ୍ ଦିବେ ବ୍ରହ୍ମାଦୟୋ ନିର୍ଜଗ୍ମୁଃ ତାଂରାତ୍ରିମିତ୍ୟର୍ଥଃ ।

(୩) ନମେ ସ୍ନାନଂ ବହୁମତଂ ବସ୍ତ୍ରାଣ୍ୟାଭରଣାନି ଚ । (୧୨୪ ସର୍ଗ)

କର୍ତ୍ତବ୍ୟ । ବିଭୀଷଣ ଜଣାଇଲେ, ପ୍ରଭୋ ରାଘବେନ୍ଦ୍ର ! ସାନୁଗ-ସହଯାତ୍ରୀ ଆପଣଙ୍କୁ ଏକମାତ୍ର ଦିବସରେ ମୁଁ ପୁଷ୍ପକ ଦ୍ୱାରା ଅଯୋଧ୍ୟାରେ ଉପଗତ କରାଇବି । ମୋ ପ୍ରତି ଆପଣଙ୍କର ଯଦି ସୁଦୟା ଅଛି, ମୋର ଗୁଣ ଯଦି ଆପଣ ସ୍ମରଣରେ ରଖିଅଛନ୍ତି, ଅପିଚ ମୋ ପ୍ରତି ଯଦି ସେହି ସୌହାର୍ଦ୍ଦ୍ୟ ରଖିଅଛନ୍ତି, ତେବେ ଆପଣ ମୋର ଏହି ସୁବିନୀତ ପ୍ରାର୍ଥନା ଗ୍ରହଣରେ ଅନ୍ତତଃ ଆଜକ ହେଲେ ଆପଣ ସଭାର୍ଯ ସହୋଦର ଏଠାରେ ଅବସ୍ଥାନ କରି ମୋର ସେବା ଗ୍ରହଣ କରନ୍ତୁ । (୧) ରାମ କହିଲେ, ଲଙ୍କେଶ୍ୱର ! ଆପଣଙ୍କ ପ୍ରତି ମୋର ସମ୍ପୂର୍ଣ୍ଣ ସୌହାର୍ଦ୍ଦ୍ୟ କେବେ ହ୍ରାସ ପାଇବାର ନୁହେ । ଆପଣଙ୍କ ଦ୍ୱାରା ମୁଁ ସଂପୂର୍ଣ୍ଣ ପୂଜିତ ହୋଇଅଛି । ସର୍ବାତ୍ମାର ସହିତ ଆପଣଙ୍କ କଥା ରକ୍ଷା କରିବାରେ ମୋର ଇଚ୍ଛା, କିନ୍ତୁ ଭରତଙ୍କୁ ଦେଖିବା ପାଇଁ ମୁ ଚଞ୍ଚଳ ଓ ବ୍ୟସ୍ତ । ଚତୁର୍ଦ୍ଦଶ ବର୍ଷ ସମାପ୍ତିର ଅବ୍ୟବହିତ ପରଦିନ ସେ ମୋତେ ନ ଦେଖିଲେ ନିଶ୍ଚେ ପ୍ରାଣତ୍ୟାଗ କରିବାକୁ କହିଅଛନ୍ତି । (୨) ତଥାଚ ଗୁରୁଜନଙ୍କୁ ଆଉ ସନ୍ତାନ ନିର୍ବିଶେଷ ପୌରବର୍ଗଙ୍କୁ ଦେଖିବା ପାଇଁ ମୁଁ ବଡ଼ ଉତ୍‌କଣ୍ଠିତ ଅଛି । ହେ ରାକ୍ଷସେଶ୍ୱର ! ଅଭିମାନ ତ୍ୟାଗ କରି ବିମାନ ଶୀଘ୍ର ଉପସ୍ଥାପିତ କର । ମୋ ପ୍ରତି ମନରେ ଅତୋଷ ଓ ଅତୃପ୍ତି ରଖ ନାହିଁ । ମୁଁ ଆପଣଙ୍କ ଦ୍ୱାରା ସମ୍ୟକ୍ ପୂଜିତ ହୋଇଅଛି । ଏହା ମୁଁ ହୃଦୟର ସହିତ କହୁଅଛି । (୩) ସାନନ୍ଦେ ମୋତେ ଆଦେଶ ଦିଅ, ମୁଁ ଅଯୋଧ୍ୟାକୁ ପ୍ରସ୍ଥାନ କରିବି । ତଦା ବିଭୀଷଣ ସତ୍ୱରଣ ପୁଷ୍ପକ ବିମାନ ଆଣି ଉପସ୍ଥାପିତ କଲେ ।

ଶ୍ରୀମାନ ବଳରାମ ଦାସେ ମଧ୍ୟ ଏହାହିଁ ଲେଖିଅଛନ୍ତି, କିନ୍ତୁ ଏ ସ୍ଥଳରୁ କେତେକ ପାଠ ଅନୁଲେଖକମାନଙ୍କର ପ୍ରମାଦବଶରୁ କିମ୍ବା ଦୁର୍ବିଚାର ବଶରୁ ବିଲୋମ

---

(୧) ଅହ୍ନାତ୍ତ୍ୱାଂ ପ୍ରାପୟିଷ୍ୟାମି ତାଂ ପୁରୀଂ ପାର୍ଥିବାତ୍ମଜ
ପୁଷ୍ପକଂ ନାମ ଭଦ୍ରଂ ତେ ବିମାନଂ ସୂର୍ଯ୍ୟସଂନିଭମ୍
ମମ ଭ୍ରାତୁଃ କୁବେରସ୍ୟ ରାବଣେନ ହୃତଂ ବଳାତ୍ । (୧୨୪ ସର୍ଗ)

ଏ ସ୍ଥଳେ ବାଲ୍ମୀକିଙ୍କ ମତରେ ଦିନ ସଂଖ୍ୟା ନିର୍ଦ୍ଧାରିତ ନାହିଁ, କିନ୍ତୁ ଅଧ୍ୟାତ୍ମ ରାମାୟଣରେ ଏକ ଦିବସ ବୋଲି ଲେଖାଅଛି । ଯଥା -

ମଙ୍ଗଳସ୍ନାନମଦ୍ୟ ତ୍ୱଂ କୁରୁ ସୀତାସମନ୍ୱିତଃ
ଅଳଂକୃତ୍ୟ ସହ ଭ୍ରାତା ଶ୍ୱୋ ଗମିଷ୍ୟାମହେ ବୟଂ । ଯୁ: କା ୧୩ସ.

(୨) ଚତୁର୍ଦ୍ଦଶେ ହି ସଂପୂର୍ଣ୍ଣେ ବର୍ଷେଽହନି ରଘୁତ୍ତମ !
ନ ଦ୍ରକ୍ଷ୍ୟାମି ଯଦି ତ୍ୱାଂ ହି ପ୍ରବେକ୍ଷ୍ୟାମି ହୁତାଶନମ୍ । ଅଯୋଧ୍ୟା କାଣ୍ଡ

(୩) ଅନୁଜାନୀହି ମାଂ ସୌମ୍ୟ ପୂଜିତୋଽସ୍ମି ବିଭୀଷଣ ।
ମନ୍ୟୁର୍ନ ଖଳୁ କର୍ତ୍ତବ୍ୟଃ ତ୍ୱରିତଂ ତ୍ୱାଂ ଚାନୁମାନୟେ । ୧୨୪ ସ.
ଉପସ୍ଥାପୟ ମେ କ୍ଷିପ୍ରଂ ବିମାନଂ ରାକ୍ଷସେଶ୍ୱର ।

ହୋଇଯାଇଅଛି । (୧) ବହୁଦୂର ପନ୍ଥାରେ ସ୍ଥିତ ଅଯୋଧ୍ୟା-ସମାଗମ ବହୁଦିନ ପ୍ରୟାସ-ସାଧ୍ୟ । ରାମଙ୍କର ଏହି ଉକ୍ତି ଶୁଣି ବିଭୀଷଣ ପୁଷ୍ପକାଦିର କଥା ଯାହା ଜଣାଇଥିଲେ ସେ ସବୁ ସମାଲୋଚ୍ୟମାନ ରାମାୟଣରେ ଟିକିଏ ବ୍ୟବଧାନରେ ଲେଖାଅଛି । ବିଶ୍ୱାସ ହୁଏ, ଦାସେ ଏ କଥାମାନ ଅବଶ୍ୟ ଯଥାସ୍ଥାନରେ ଲେଖିଥିଲେ, ତାକୁ ଅନୁଲେଖକ ଓଲଟ ପାଲଟ କରି ଦେଇ ଅଛନ୍ତି । ସୁତରାଂ ଏ ସ୍ଥଳେ ପୁଣି ଲେଖାଅଛି, ରାମ ବିଭୀଷଣଙ୍କୁ ପଚାରିଲେ ଯେ ଚତୁର୍ଦ୍ଦଶ ବର୍ଷ ସମୟ ପାଦଚାରରେ ବୁଲି ବୁଲି କ୍ଳାନ୍ତ ହୋଇଅଛୁ । ଏବେ ପଦବ୍ରଜ କଷ୍ଟକର ବୋଧହୁଏ । ସୁଖରେ ପ୍ରସ୍ଥାନ କରିବାପାଇଁ କିଛି ଉପାୟ ଅଛି କି ? (୨) ମୂଳଗ୍ରନ୍ଥ ମତେ ରାମଚନ୍ଦ୍ର ପୁଷ୍ପକ ବିମାନ କିମ୍ବା ଅନ୍ୟ ପ୍ରକାର ଶୀଘ୍ରଗାମୀ ଯାନବାହନ ନିମନ୍ତେ ବିଭୀଷଣଙ୍କୁ କିଛି କହି ନାହାନ୍ତି । ବିଭୀଷଣ କେବଳ ସ୍ୱତଃ ପ୍ରଣୋଦିତ ହୋଇ ପୁଷ୍ପକ ବିମାନରେ ବିଜୟ କରିବାପାଇଁ ରାମଙ୍କୁ ନିବେଦନ କରିଅଛନ୍ତି । ଅତଃପର ବିଭୀଷଣ ରାମଙ୍କ ଆଦେଶାନୁସାରେ ସୁଗ୍ରୀବାଦି ବାନରର୍ଷଭ ଆଉ କପିଋକ୍ଷ ସୈନିକବର୍ଗଙ୍କୁ ଯଥୋଚିତ ସତ୍‌କାର କଲେ । ରାମଚନ୍ଦ୍ର ସୀତାଦେବୀଙ୍କୁ ସ୍ୱାଙ୍କରେ ସମାସୀନ ରଖି ଲକ୍ଷ୍ମଣଙ୍କ ସହ ପୁଷ୍ପକରେ ଉପବିଷ୍ଟ ହେଲେ । ରାମ ବିମାନରେ ସମ୍ମାନ ସହ ଉପବେଶନ କଲାପରେ ବାନରବୀରମାନଙ୍କୁ କହିଲେ, 'ହେ ବୀରବୃନ୍ଦ ! ହେ ମିତ୍ର ସୁଗ୍ରୀବ ! ହେ ବିଭୀଷଣ ! ଆପଣମାନେ ମୋର ଯଥେଷ୍ଟ ମିତ୍ରକାର୍ଯ୍ୟ କରିଅଛନ୍ତି, ବର୍ତ୍ତମାନ ଆଦର ଓ ଆନନ୍ଦର ସହିତ ଅନୁଜ୍ଞା ଦେଉଅଛି, ଯଥେଚ୍ଛ ପ୍ରସ୍ଥାନ କରନ୍ତୁ । ହେ କପିରାଜ ! ସୁଗ୍ରୀବ ! ଆପଣ ସୈନ୍ୟ ସମଭିବ୍ୟାହାରରେ କିଷ୍କିନ୍ଧାକୁ ପ୍ରୟାଣ କରନ୍ତୁ । ହେ ଲଙ୍କେଶ୍ୱର ! ଆପଣ ସୁଖେ ସ୍ୱରାଜ୍ୟରେ ରହନ୍ତୁ ।' ତେତେବେଳେ ସମଗ୍ର ବାନରାଦିମାନେ ଶ୍ରୀରାମଙ୍କୁ ଜଣାଇଲେ, 'ହେ ମହାପ୍ରଭୋ ରାଘବେନ୍ଦ୍ର ! ଆପଣ ଆମ୍ଭମାନଙ୍କୁ ସଙ୍ଗେ ଧରି ଅଯୋଧ୍ୟାକୁ ନିଅନ୍ତୁ । ଆମ୍ଭେମାନେ ଭବଦୀୟ ଅଭିଷେକ ମହୋତ୍ସବର ଏକାନ୍ତ ଦିଦୃକ୍ଷୁ ଅଛୁଁ । ଅକ୍ଷ- ଧାରଣ ସଫଳ କରିବୁଁ । କୌଶଲ୍ୟାଦିଙ୍କୁ ଅଭିବାଦନ କରିବୁଁ । ଫେର୍ ଅଚିରେ ସ୍ୱସ୍ୱ ଗୃହକୁ ଫେରି ଆସିବୁଁ । ରାମ ଅନୁଗତଜନମାନଙ୍କ ବଚନକୁ ଅନୁମୋଦନ କଲେ । ସୁଗ୍ରୀବ ବାନରମାନଙ୍କ ସହ ଆଉ ବିଷୀଷଣ ମନ୍ତ୍ରୀମାନଙ୍କ ସହ ପୁଷ୍ପକରେ ଆରୋହଣ କଲେ । (୩) ବିମାନରାଜ ଗଗନମାର୍ଗରେ ବିରାଜମାନ ପରେ ବିରାଜଗତିରେ

---

(୧) (ଛାପା ପୁସ୍ତକରେ ୩୭୩ ପୃଷ୍ଠାଠାରୁ ପଢ଼ିଯାଆନ୍ତୁ)

(୨) × × ଏଥକୁ ଉପାୟ କିସ ଅଛି ବିଭୀଷଣ !
କହ ମନରୁ ସଂଶୟ ଫିଟୁ ଯେ ବହନ । ୩୭୪ ପୃ.

(୩) ତେ ସର୍ବେ ବାନରର୍କ୍ଷାଶ୍ଚ ରାକ୍ଷସାଶ୍ଚ ମହାବଳାଃ ।
ଯଥାସୁଖମସଂବାଧଂ ଦିବ୍ୟେ ତସ୍ମିନ୍ନୁପାବିଶନ୍ । (୧୨୫ସ. ୨୮ ଶ୍ଳୋ)
ଯଥାସୁଖମସଂବାଧମିତି ପଦଦ୍ୱୟେନ ଦିବ୍ୟସ୍ୟ ପୁଷ୍ପକସ୍ୟ ଅପେକ୍ଷିତାବକାଶପ୍ରବନ୍ଧଂ ଗମ୍ୟତେ ।

ଯାଉଁ ଯାଉଁ ରାମଚନ୍ଦ୍ର ସୀତାଦେବୀଙ୍କୁ ହସ୍ତ ନିର୍ଦ୍ଦେଶ ପୂର୍ବକ ପୂର୍ବପରିଚିତ ସ୍ଥଳମାନ ଚିହ୍ନାଇ ଦେଇଅଛନ୍ତି ।

ମୂଳ ଗ୍ରନ୍ଥର ଅତ୍ରତ୍ୟ ବର୍ଣ୍ଣନାନୁସାରେ ରାମଚନ୍ଦ୍ର ସମୁଦ୍ର ତୀରରେ ରାମେଶ୍ୱର ମହାଦେବ ମୂର୍ତ୍ତି ପ୍ରତିଷ୍ଠିତ କରିଥିବା ସ୍ପଷ୍ଟତଃ ପାଠକମାନଙ୍କର ହୃଦୟଙ୍ଗମ ହୋଇପାରେ ନାହିଁ । ପରନ୍ତୁ ମହର୍ଷି ବାଲ୍ମୀକି ସେକଥାକୁ ସେତୁବନ୍ଧନ ସମୟରେ ଘଟିଥିଲା ବୋଲି ସୂଚନା କରିଦେଇଅଛନ୍ତି । ବିମାନସ୍ଥ ରାମଚନ୍ଦ୍ର ସୀତାଙ୍କୁ ସେତୁ ପ୍ରଦର୍ଶନ କରିବା ସ୍ଥଳେ କହିଅଛନ୍ତି କି, ହେ ଜାନକି ! ଏଇ ଦେଖ, ଏହିଠାରେ ମହାଦେବ ପୂର୍ବେ ମତେ ଅନୁଗ୍ରହ କରିଅଛନ୍ତି (୧) ଅତ୍ରତ୍ୟ ପ୍ରମାଣ ବଚନର ବ୍ୟାଖ୍ୟାନାବସରରେ କେହି କେହି

---

(୧) ଅତ୍ର ପୂର୍ବଂ ମହାଦେବ ପ୍ରସାଦମକରୋତ ପ୍ରଭୁଃ । ୧୨୬ସ. ୧୬ ଶ୍ଳୋ

× × × × × × × × ×

ନନୁ ପୁରାଣାନ୍ତରାନୁସାରାତ୍ ତଦର୍ଥପରତ୍ୱଂ ଯୁକ୍ତମ୍ ! ତଥାହି କୂର୍ମ ପୁରାଣେ -

ସେତୁ ମଧ୍ୟେ ମହାଦେବମୀଶାନଂ କୃତ୍ତିବାସସମ୍
ସ୍ଥାପୟାମାସ ବୈ ଲିଙ୍ଗମ୍ ପୂଜୟାମାସ ରାଘବଃ
ତସ୍ୟ ଦେବୋ ମହାଦେବଃପାର୍ବତ୍ୟା ସହ ଶଙ୍କରଃ
ପ୍ରତ୍ୟକ୍ଷମେବ ଭଗବାନ୍ ଦତ୍ତବାନ୍ ବରମୁତ୍ତମଂ ॥

ଯେ ତ୍ୱୟା ସ୍ଥାପିତଂ ଲିଙ୍ଗଂ ଦ୍ରକ୍ଷନ୍ତୀହ ଦ୍ୱିଜାତୟଃ
ମହାପାତକ ସଂଯୁକ୍ତାସ୍ତେଷାଂ ପାପଂ ବିନଶ୍ୟତି ।
ଅନ୍ୟାନି ଚୈ ପାପାନି ତୀରେ ତତ୍ର ମହୋଦଧେଃ
ଦର୍ଶନାଦେବ ଲିଙ୍ଗସ୍ୟ ନାଶଂ ଯାନ୍ତି ନ ସଂଶୟଃ ।
ଯାବଦ୍ ସ୍ଥାସ୍ୟନ୍ତି ତରବଃ ଯାବଦେବଚ ମେଦିନୀ
ଯାବଦ୍ ସେତୁଶ୍ଚ ତାବଚ୍ଚ ସ୍ଥାସ୍ୟାମ୍ୟତ୍ରା ତିରୋହିତଃ ।
ସ୍ନାନଂ ଦାନଂ ଜପଃ ଶ୍ରାଦ୍ଧଂ ଭବିଷ୍ୟତ୍ୟକ୍ଷୟଂତତଃ
ସ୍ମରଣାଦେବ ଲିଙ୍ଗସ୍ୟ ହୀନପାପଂ ପ୍ରଣଶ୍ୟତି
ଇତ୍ୟୁକ୍ତ୍ୱା ଭଗବାନ୍ ବାତଂ ପରିଷ୍ୱଜ୍ୟ ଚ ରାଘବଂ
ସନନ୍ଦୀ ସଗଣୋ ରଦ୍ରଃ ତତ୍ରୈବାନ୍ତରଧୀୟତ, ଇତି
ପଦ୍ମ ପୁରାଣେଽପି —
ରାମଃ ପୁଷ୍ପକାଦବରହ୍ୟ ମହାଦେବଂ ପ୍ରତିଷ୍ଠାପିତବାନ୍ ସୋଽସ୍ମି
ପ୍ରସନ୍ନୋଽଭୂତ୍ ଇତ୍ୟୁଚ୍ୟତେ ।
ଏତାଦୃଶ ପୁରାଣବଚନାନୁସାରେଣାୟଂ ଶ୍ଳୋକଃଲିଙ୍ଗ ପ୍ରତିଷ୍ଠାଂବୋଧୟତୀତି

ଇତି ଗୋବିନ୍ଦରାଜୀୟେ

ପୂର୍ବଂ ସେତୁବନ୍ଧନାତ୍ ପୂର୍ବଂ ବିଭୁ ମିହାଦେବଃ ମମ ପ୍ରସାଦମକରୋତ୍ । ମତ୍ ସ୍ଥାପିତତ୍ୱେନାତ୍ର ସ୍ଥିତୋଽଭୂତ୍ । ସେତୋ ନିର୍ବିଘ୍ନତାସିଦ୍ଧ୍ୟୈ ସନ୍ତ୍ର ପ୍ରସାଦାନନ୍ତରଂ ଶିବସ୍ଥାପନଂ ରାମେଣ କୃତମିତି ଗମ୍ୟତେ ଇତି ମହେଶ୍ୱର ଦୀକ୍ଷିତଃ ।

ବ୍ୟାଖ୍ୟାନକର୍ତ୍ତା ମଧ ପ୍ରକୃତ ଆଖ୍ୟାନର ଅନୁସରଣରେ ବ୍ୟାଖ୍ୟାନ କରିନାହାନ୍ତି, ବାକ୍ୟସ୍ଥ ମହାଦେବ ପଦକୁ ଧରି ବ୍ୟାଖ୍ୟାନକର୍ତ୍ତା ଦିଗ୍‌ଭ୍ରାନ୍ତ ପ୍ରାୟ ହୋଇ, ଅପିଚ ବାଲ୍ମୀକି ଏହି ଘଟନାଟିକୁ ସେତୁବନ୍ଧନ ସମୟରେ ଘଟିଥିବାର କହିଥିବାରୁ ମହାଦେବ ପଦର ଅର୍ଥ ବରୁଣ ଦେବ କରି ନେଇଁ ଯୁକ୍ତିର ମିଳନାର୍ଥ ନାନା କଥା ପ୍ରକାଶ କରିଅଛନ୍ତି । ତଥାପି କେତେକ ବ୍ୟାଖ୍ୟାନକର୍ତ୍ତା ପୁରାଣାନ୍ତରର ମତକୁ ଅନୁସରି ସେହି ମହାଦେବ ପଦର ଅର୍ଥ ଠିକ୍ ମହାଦେବ ଶମ୍ଭୁ କରି ଶ୍ରୀରାମଚନ୍ଦ୍ର ତତ୍ର ରାମେଶ୍ୱର ମହାଦେବଙ୍କୁ ପ୍ରତିଷ୍ଠିତ କରିଥିବା ମଧ ଲେଖିଅଛନ୍ତି (୧) ପରନ୍ତୁ ଏକଥା ଦାସଙ୍କ ରାମାୟଣରେ ଏ ସ୍ଥଳେ ଲେଖାଥିବା ଦେଖାଯାଏ ନାହିଁ । ଯେତେବେଳେ ପୁଷ୍ପକବିମାନ ଠିକ୍ କିଷ୍କିନ୍ଧାନଗରୀର ସମାନରେ ଉପଗତ ହେଲା, ତଦା ରାମଚନ୍ଦ୍ର ସୀତାଙ୍କୁ କହିଲେ, ପ୍ରିୟ ଏଇ ଦେଖ, ସୁଗ୍ରୀବ ରାଜାଙ୍କର କିଷ୍କିନ୍ଧା ନଗରୀ ଏହି । ସୀତା କହିଲେ, ଆର୍ଯ୍ୟପୁତ୍ର ! ଏଠାରେ ବିମାନ ରଖନ୍ତୁ, ମୁଁ କପିରାଜଙ୍କର ଏବଂ ଅନ୍ୟାନ୍ୟ ବାନରର୍ଷଭମାନଙ୍କର ପତ୍ନୀମାନଙ୍କ ସହ ଅଯୋଧ୍ୟାକୁ ଯିବାର ଇଚ୍ଛା କରେ (୨) । ତଦା ଶ୍ରୀରାମ ବାନରପୁଙ୍ଗବଗଣ ଏବଂ ସୁଗ୍ରୀବଙ୍କୁ ଆଦେଶ ଦେଲେ, ଆପଣମାନେ ଯାଆନ୍ତୁ, ଶୀଘ୍ର ନିଜ ନିଜ କଳତ୍ରମାନଙ୍କୁ ସମଭିବ୍ୟାହାରରେ ଆଣି ସୀତାଙ୍କ ଆନନ୍ଦ ପରିବର୍ଦ୍ଧିତ କରନ୍ତୁ । (୩)

ସେହିକ୍ଷଣି ତାରାଦେବୀଙ୍କ ଆଦେଶରେ ସମସ୍ତ ବାନରସ୍ତ୍ରୀମାନେ ବେଶଭୂଷା ସହ ଆସି ବିମାନରେ ଉପବେଶନ କଲେ, ପୁଷ୍ପକ ପୂର୍ବପ୍ରାୟ ଗତି କଲା ।

କିନ୍ତୁ ଏହି ଯେ ସୁଗ୍ରୀବ - ସ୍ତ୍ରୀସମାଜ ପ୍ରତି ସୀତାଦେବୀଙ୍କର ସୁଦୟା ପୂର୍ବକ ସୁଖ-ସନ୍ତୋଷ-ସହାନୁଭୂତି ଏବଂ ସହାବସ୍ଥାନର କଥାମାନ, ଏସବୁ ଦାସଙ୍କ ରାମାୟଣରେ ଲେଖାଥିବା ଦେଖାଯାଏ ନାହିଁ । ସୁତରାଂ ଏଥିରେ ସୀତାଙ୍କ ପ୍ରତି ରାମଙ୍କ ପ୍ରଦର୍ଶିତ ପୂର୍ବ ପରିଚିତ ସ୍ଥାନମାନଙ୍କର ଯେ ନାମଧାମାଦି ବିବରଣମାନ ନିଆଯାଇଅଛି, ସେଥିରୁ ସମଧିକ କବିଙ୍କ କଳ୍ପନା ପ୍ରସୂତ ଆଉ ଅନୁଭୂତିର ଅନୁଗତ ।-(୪)

---

(୧) ଏହି ବିଷୟଟି ଅଧ୍ୟାତ୍ମ ରାମାୟଣରେ ଯଥା ସ୍ଥାନରେ ସ୍ପଷ୍ଟତଃ ପ୍ରକାଶିତ ଅଛି –
ଅତ୍ର ରାମେଶ୍ୱରୋଦେବଃ ମୟା ଶମ୍ଭୁଃ ପ୍ରତିଷ୍ଠିତଃ । ଯୁ.କା. ୧୪ସର୍ଗ

(୨) ସୁଗ୍ରୀବପ୍ରିୟଭାର୍ଯ୍ୟାଭିଃ ତାରାପ୍ରମୁଖତୋ ନୃପ
ଅନ୍ୟେଷାଂ ବାନରେନ୍ଦ୍ରାଣାଂ ସ୍ତ୍ରୀଭିଃ ପରିବୃତା ହ୍ୟହମ୍ ।
ଗନ୍ତୁମିଚ୍ଛାମ୍ୟଯୋଧ୍ୟାୟାଂ ରାଜଧାନୀଂ ତ୍ୱୟା ସହ । ୧୨୬ସ. ୨୫ ଶ୍ଳୋ.

(୩) ୧୨୬ ସର୍ଗ. ୨୮ ଶ୍ଳୋ. ଦେଖନ୍ତୁ ।

(୪) ଛାପା ପୁସ୍ତକରେ ୩୭୭/୩୭୮ ପୃ. ଦେଖନ୍ତୁ । ଏବଂ ୩୭୯ ମଧ ଦେଖନ୍ତୁ । ଏସବୁ ଅଧ୍ୟାତ୍ମ ରାମାୟଣରେ ମଧ ଲେଖାଅଛି ।

ଅତଃପର ସପ୍ତବିଂଶତ୍ୟୁତ୍ତରଶତତମ ସର୍ଗଠାରୁ ତିନିଗୋଟି ସର୍ଗରେ ଶ୍ରୀରାମଚନ୍ଦ୍ରଙ୍କର ଭରଦ୍ୱାଜାଶ୍ରମ ପ୍ରବେଶରେ ପ୍ରଥମତଃ ହନୁମାନଙ୍କ ମୁଖରେ ଭରତାଦିଙ୍କ ପ୍ରତି ଶୁଭାଗମନର ସମ୍ବାଦ ପ୍ରେରଣ ପ୍ରଭୃତି କଥା ବର୍ଣ୍ଣିତ ଅଛି । ଯେଉଁଦିନ ଠିକ୍ ରାମଙ୍କ ବନବାସର ନିର୍ଦ୍ଦିଷ୍ଟ ସମୟ ଅବସନ୍ନ ହେଲା, ସେହିଦିନ କେବଳ ଫେର୍ ସେ ଯାଇ ଭରଦ୍ୱାଜଙ୍କୁ ଦର୍ଶନ କଲେ । (୧)

ଅନ୍ୟୋନ୍ୟତଃ ଯାବତୀୟ କୁଶଳ ସମ୍ବାଦାଦିର ଆଳାପ କଳାପରେ ଭରଦ୍ୱାଜ ରାମଙ୍କୁ କହିଲେ, ଆପଣ ଆଜକ ଏଠାରେ ଅବସ୍ଥାନ କରି କାଲି ଅଯୋଧ୍ୟାକୁ ପ୍ରସ୍ଥାନ କରିବେ । (୨)

ଶ୍ରୀରାମ ଋଷିଙ୍କ ଆଦେଶ ସ୍ୱୀକାର ପୂର୍ବକ ତାହାଙ୍କୁ ଜଣାଇଲେ ଯେ ଭଗବନ୍ ମହର୍ଷେ ! ଆପଣ ବାନରମାନଙ୍କୁ ଏହିପରି ସୁଦୟା କରନ୍ତୁ ଯେ ଅସମୟରେ ସୁଦ୍ଧା ଏହିଠାରୁ ମଧୁସ୍ରବ ଅମୃତକଳ୍ପ ଫଳ ଉଭୟ ପାର୍ଶ୍ୱରେ ପରିପୂର୍ଣ୍ଣ ରହନ୍ତୁ । ତଦା ଭରଦ୍ୱାଜ 'ତଥାସ୍ତୁ' କହିଲାରୁ ବୃକ୍ଷମାନେ କଳ୍ପବୃକ୍ଷପ୍ରାୟ ପୁଷ୍ପ-ଫଳ – ସଂପଦ – ସମୃଦ୍ଧିରେ ବିରାଜମାନ ହେଲେ, ବାନରମାନେ ଆନନ୍ଦାତିଶୟରେ ଦେବଦୁର୍ଲ୍ଲଭ ଦିବ୍ୟଫଳ ଭୋଜନ ଆଉ ମଧୁପାନରେ ଆପଣାକୁ ଦେବତା ତୁଲ୍ୟ ମନେକଲେ ।

ତା'ପରେ ରାମଚନ୍ଦ୍ର ମାରୁତିଙ୍କୁ ଆଦେଶ ଦେଲେ କି, ପାବନି ! ତୁମେ ଏକ୍ଷଣି ଯାଇ ଭରତଙ୍କୁ ଆମ୍ଭମାନଙ୍କର ଆମୂଳାନ୍ତ ବିଜୟସନ୍ଦେଶ ଆଉ ଶୁଭାଗମନ ଜଣାଇବ ଏବଂ ତତ୍ରତ୍ୟ ଶୁଭ ସମ୍ବାଦ ଧରି, ତଥାଚ ଭରତଙ୍କର ହୃଦୟାଶୟ ବୁଝି ଅବିଳମ୍ବେ ପ୍ରତ୍ୟାବୃତ୍ତ ହେବ, ତୁମେ ପୁଣି ଗଲାବେଳେ ଶୃଙ୍ଗବେରପୁରବାଟେ ପ୍ରସ୍ଥାନ କରି ମଦୀୟ ମିତ୍ର ନିଷାଦରାଜ ଗୁହଙ୍କୁ ମଧ ମୋର ଶୁଭାଗମନ ଜଣାଇଦେବ ।

ଭରତ ମନୁଷ୍ୟାକୃତି (୩) ହନୁମାନଙ୍କ ମୁଖରୁ ଶ୍ରୀରାମଚନ୍ଦ୍ରଙ୍କର ଶୁଭାଗମନ ସନ୍ଦେଶ ଶ୍ରବଣ କରି ଅପରିମିତାନନ୍ଦରେ ଏକାବେଳକେ ବିମୁଗ୍ଧ ହୋଇଗଲେ । ଏହି

---

(୧) ପୂର୍ଣ୍ଣେ ଚତୁର୍ଦ୍ଦଶେ ବର୍ଷେ ପଞ୍ଚମ୍ୟାଂ ଲକ୍ଷ୍ମଣାଗ୍ରଜଃ
ଭରଦ୍ୱାଜାଶ୍ରମଂ ପ୍ରାପ୍ୟ ବବନ୍ଦେ ପ୍ରଣତୋ ମୁନିମ୍ । ୧୨୭ସ. ୧ ଶ୍ଳୋ.
ପୂର୍ଣ୍ଣେ ଚତୁର୍ଦ୍ଦଶେ ବର୍ଷେ ପଞ୍ଚମ୍ୟାଂ ରଘୁନନ୍ଦନଃ
ଭରଦ୍ୱାଜ ମୁନିଂ ଦୃଷ୍ଟ୍ୱା ବବନ୍ଦେ ସାନୁଜଃ ପ୍ରଭୁଃ । ଆଧ୍ୟାତ୍ମ ରା.ଯୁ.କା.୧୪ସ.

(୨) ୧୨୭ ସର୍ଗ ୧୯ ଶ୍ଳୋକଠାରୁ ଦେଖନ୍ତୁ ।

(୩) ହନୁମାନ ମନୁଷ୍ୟ ରୂପରେ ଭରତଙ୍କଠାକୁ ଯାଇଥିଲେ ।
ଇତି ପ୍ରତିସମାଦିଷ୍ଟୋ ହନୁମାନ୍ ମାରୁତାତ୍ମଜଃ ।
ମାନୁଷଂ ଧାରୟନ୍ ରୂପଂ ଅଯୋଧ୍ୟାଂ ତ୍ୱରିତୋ ଯଯୌ, ୧୨୮ସ. ୧୯ ଶ୍ଳୋ.. ଅଧ୍ୟାତ୍ମ ଅଧ୍ୟାତ୍ମ
ଅଧ୍ୟାତ୍ମ ରାମାୟଣରେ ମଧ ଏହା ହିଁ ଉକ୍ତ ଅଛି ।

ଅଖଣ୍ଡାନନ୍ଦସନ୍ଦୋହ ତାହାଙ୍କୁ କ୍ଷଣକାଳ ବାହ୍ୟଜ୍ଞାନଶୂନ୍ୟ କଲା । ସେ ପରେ ପାବନିଙ୍କୁ ବିବିଧ ମହାର୍ହ ପୁରସ୍କାର ଦାନରେ ସଂପୂର୍ଣ୍ଣ ସମ୍ମାନିତ କଲେ । ତେତିକିବେଳେ ଭରତ ମାରୁତିଙ୍କୁ ଜିଜ୍ଞାସା କରିଥିଲେ, ମହାଶୟ ! ନର ଓ ବାନରମାନଙ୍କର ଏପରି ଘନିଷ୍ଠତାଜନକ ସମାଗମ କିପରି ଘଟିଲା ? ପାବନି ତଦା ଭରତଙ୍କୁ ଯାବତୀୟ ବିଷୟ ବୁଝାଇ କହିଲେ, ଏହିଠାରେ ମାରୁତି ଭରତଙ୍କୁ ତଦୀୟ ଚିତ୍ରକୂଟପ୍ରତ୍ୟାବୃତ୍ତିଠାରୁ ରାମଙ୍କ ପ୍ରତ୍ୟାଗମନ ପର୍ଯ୍ୟନ୍ତକ ଯାବତୀୟ ରାମାୟଣିକ ଘଟଣାମାନ ସମାସତଃ ଜଣାଇ ଦେଇଅଛନ୍ତି ।

ବଳରାମ ଦାସେ ମଧ ନିଜର ରାମାୟଣର ଏହି ସନ୍ଦର୍ଭରେ ପ୍ରାୟଶଃ ଏହି କଥାମାନ କେବଳ ଲେଖିଅଛନ୍ତି; ତଥାପି ସେ ପୁରାଣାନ୍ତରରୁ ଆନୀତ ଆଉ କେତେକ ଉଦ୍‌ବୃତ୍ତ କଥା ଏ ସ୍ଥଳେ ନିହିତ କରିଅଛନ୍ତି ।

ଦାସେ ଲେଖିଅଛନ୍ତି, ରାମ ଭରଦ୍ୱାଜଙ୍କୁ ନିଜର ରାବଣବଧାଦି ବିଜୟ ବୃତ୍ତାନ୍ତ ଜଣାଉଅଛନ୍ତି, ତେତିକିବେଳେ ମାରୁତି ମନେମନେ ଟିକିଏ ଗର୍ବର ସହିତ ଭାବିଲେ କି ମୋ ହେତୁରୁ କେବଳ ଶ୍ରୀରାମ ବିଜୟଲକ୍ଷ୍ମୀ ସହ ଲକ୍ଷ୍ମୀରୂପା ସୀତାଙ୍କୁ ପୁନଃପ୍ରାପ୍ତ ହୋଇଅଛନ୍ତି ଇତ୍ୟାଦି (୧)

ହନୁମାନଙ୍କର ଏହି ଅହଙ୍କାର - କଳୁଷିତ ଭାବକୁ ହୃଦୟରୁ ବିଦୂରିତ କରିଦେବା ପାଇଁ ଅନ୍ତର୍ଯ୍ୟାମୀ ରାମଚନ୍ଦ୍ର ତାହାଙ୍କୁ କହିଲେ, କିହେ ଆଞ୍ଜନେୟ ! ତୁମେ ଅନେକ ସମୟ ଅକ୍ଲାନ୍ତ ଯୁଦ୍ଧ କରି ମନୋମତ ଆହାର ବିନା ଶ୍ରାନ୍ତ ଓ କ୍ଲାନ୍ତ ହୋଇ ପଡ଼ିଅଛ । ଏହି ଯେ ଦେଖାଯାଉଅଛି ସୁପକ୍ୱ ଫଳପୂର୍ଣ୍ଣ-କାନନ, ତୁମେ ତତ୍ର ଏହି ରାତ୍ରିରେ ଯଥେଷ୍ଟ ଆହାର କରି ବିଶ୍ରାମ କର, କାଲି ପ୍ରତ୍ୟୁଷରୁ ଆସି ପ୍ରତୋଷରେ ମୋତେ ଦେଖାଦେବ । ଦ୍ୱାପରାଦ୍ୟ ମଲ୍ଲ ମାରୁତି ଅଦ୍ୱାପର ମନରେ ସନ୍ତୋଷର ସହିତ ରାମ ନିର୍ଦ୍ଦିଷ୍ଟ କାନନକୁ ପ୍ରସ୍ଥାନ କଲେ ।

ଏ ସ୍ଥଳରେ ପୁଣି ଦାସ ମହାଶୟ ପୂର୍ବ ଚରିତର ଆନୁଷଙ୍ଗିକ ସ୍ୱରୂପ ଦୁରତିକ୍ରମଣୀୟ ବିଷ୍ଣୁମାୟାରେ ମହାଦେବ ମୋହିତ ହୋଇଥିବାର ଚରିତ ମିଳାଇ ଅଛନ୍ତି । ବୈଷ୍ଣବୀ ମାୟାରେ ବିମୋହିତ ପାବନି ସେହି ଫଳପୂର୍ଣ୍ଣ କାନନରେ ଉପଗତ ହୋଇ ଦେଖିଲେ ଯେ ତତ୍ରତ୍ୟ ସର୍ବବିଧ ଜନ୍ତୁମାନେ ସେହି ବନ ପରିତ୍ୟାଗ କରି ଅନ୍ୟତ୍ର ବାହାରିଯାଉଅଛନ୍ତି । ହନୁମାନ ସେମାନଙ୍କୁ ବନ ପରିତ୍ୟାଗର କାରଣ ଜିଜ୍ଞାସା କଲେ । ସେମାନେ କହିଲେ, ଅଷ୍ଟକ ନାମକ ଏକଜଣ ମହାବୀର ବର୍ଷକ ମଧରେ ଏକରାତ୍ରି ମାତ୍ର ଏ ବନକୁ ଆସନ୍ତି, ଯାହାକୁ ଦେଖନ୍ତି ତାହାକୁ ଖାଇଯାନ୍ତି । ଆଜି ତାହାଙ୍କର ପାଳି ପଡ଼ିଅଛି ।

---

(୧) ଛାପା ପୁସ୍ତକରେ ୩୮୦, ୩୮୧ ପୃଷ୍ଠା ପଢ଼ନ୍ତୁ ।

ଅତଏବ ଆମ୍ଭେମାନେ ଆଜକ ପାଇଁ ଏହି ସ୍ଥାନ ପରିତ୍ୟାଗ କରି ପଳାଇ ଯାଉଅଛୁଁ । ତେତେବେଳେ ହନୁମାନ ସେମାନଙ୍କୁ ବହୁ ପ୍ରତିଜ୍ଞାର ସହିତ ଅଭୟ ଦେଇ ବଳେ ଟାଣିଟୁଣି ରଖିଲେ । ନିଶୀଥ ସମୟରେ ସେହି ଅଷ୍ଟକ ମହାବୀର ଆସି ତତ୍ର ପହଞ୍ଚିଲେ । ହନୁମାନଙ୍କ ସହିତ ତାଙ୍କର ଘୋର ଯୁଦ୍ଧ ସମର୍ଦ୍ଧ ଘଟିଲା । ପରିଶେଷରେ ଅଷ୍ଟକବୀର ମାରୁତିଙ୍କୁ ଗଳାଧଃକୃତ କରିବାକୁ ସଚେଷ୍ଟ ହେଲେ । ନିହତଜ୍ଞାନ ମାରୁତି ତଦା ରାମନାମ ଗାନ ପୂର୍ବକ "ହେ ରାମ ରକ୍ଷାକର" କହିବାକୁ ଲାଗିଲେ । ଅଷ୍ଟକ ରାମନାମ ଶ୍ରବଣ କଲାମାତ୍ରେ ହନୁମାନଙ୍କୁ ତ୍ୟାଗ କରି ନିଜର ପରିଚୟ ଦେଲେ । ସେ ମାରୁତିଙ୍କୁ କହିଲେ କି, ମୁଁ ବଳି ରାଜାଙ୍କର ମହାବୀର ମଲ୍ଲ । ରାମ ଯଦା ବାମନାବତାରରେ ବଳିଙ୍କୁ ପାତାଳରେ ଚାପିଲେ, ତେତେବେଳେ ମୁଁ ସେ ପାଦକୁ ଆକ୍ରମଣ କରିଥିଲି । ବାମନ ଦେବ ମୋତେ ନିକ୍ଷିପ୍ତ କରି ଦେଲାରୁ ମୁଁ ଏଠାକୁ ଆସି ପଡ଼ିଅଛି ଇତ୍ୟାଦି । ତେତେବେଳେ ଆଞ୍ଜନେୟ ଏହି ଘଟଣାଟିକୁ ନିଜକୃତ ଅପରାଧର ରାମନିର୍ଦ୍ଦିଷ୍ଟ ପ୍ରାୟଶ୍ଚିତ ବୋଲି ଜାଣିପାରି ଶ୍ରୀରାମଙ୍କ ଛାମୁରେ ଏହାର ଆମୂଳାନ୍ତ ବିବରଣୀ ନିବେଦନ ପୂର୍ବକ କ୍ଷମା ପ୍ରାର୍ଥନା କଲେ । (୧)

ମୂଳଗ୍ରନ୍ଥରେ ଯେପରି ମାରୁତି ମାନୁଷରୂପରେ ଭରତଙ୍କଠାକୁ ଯାଇଥିବାର ଉକ୍ତ ଅଛି, ଦାସେ ତାହା ବ୍ୟକ୍ତ କରି ନାହାନ୍ତି; ପରନ୍ତୁ ସେ କହିଛନ୍ତି କି ହନୁମାନ ଅଯୋଧ୍ୟାକୁ ଯାଇ ଦେଖିଲେ ଯେ ନିଷାଦାଧିପତି ଗୁହ ଏବଂ ଭରତ ରାମଙ୍କର ଲଙ୍କାଯୁଦ୍ଧରେ ସାହାଯ୍ୟ କରଣାର୍ଥ ତତ୍ର ପ୍ରୟାଣ କରିବା ପାଇଁ ଅସଂଖ୍ୟ ସୈନ୍ୟ ସାମନ୍ତଙ୍କୁ ଆମନ୍ତ୍ରି ଆଣିଅଛନ୍ତି । (୨)

ଏ ସ୍ଥଳରେ ସୈନ୍ୟ ସମାବେଶର କାରଣ ପୁଣି ସ୍ପଷ୍ଟ ଲେଖା ଅଛିକି, ଯେଉଁଦିନ ରାତିରେ ଭରତ ଔଷଧ-ଶୃଙ୍ଗ-ମସ୍ତକ ମାରୁତିଙ୍କ ମୁଖରୁ ଲଙ୍କାସ୍ଥ ରାମଲକ୍ଷ୍ମଣଙ୍କର ବାର୍ତ୍ତା ଶୁଣିଲେ, ସେହିଦିନଠାରୁ ଲଙ୍କାପ୍ରୟାଣ ନିମନ୍ତେ ସୈନ୍ୟସାମନ୍ତ ସମୂହ ଯୋଗାଡ଼ି ଅଛନ୍ତି । (୩)

ଭରତଙ୍କର ରାମ ସାହାଯ୍ୟାର୍ଥ ସୈନ୍ୟ ସମାବେଶନର କଥା ମୂଳ ଗ୍ରନ୍ଥରେ ଲେଖା ନାହିଁ । ଅଧ୍ୟାତ୍ମ ରାମାୟଣରେ ମଧ୍ୟ ଏହା ପୃଥକ୍‌ତଃ ସୁସ୍ପଷ୍ଟ ଲେଖା ନାହିଁ; କିନ୍ତୁ

---

(୧) ଏହି ସାନୁଷଙ୍ଗିକ ଘଟନାର ଯାବତୀୟ କଥାମାନ ଛାପା ପୁସ୍ତକରେ ୩୮୦ ପୃଷ୍ଠାଠାରୁ ୩୮୮ ପୃଷ୍ଠା ପର୍ଯ୍ୟନ୍ତ ଲେଖାଅଛି ଦେଖନ୍ତୁ ।

(୨) ଲକ୍ଷେକ ନୃପତି ତହିଁଛନ୍ତି ରୁଣ ହୋଇ ।
ଭରତ ସେମାନଙ୍କୁ ଯେ ଆଣିଛି ଡକାଇ । ଇତ୍ୟାଦି ୩୮୯ ପୃ.

(୩) ଔଷଧ ଶୃଙ୍ଗ ମସ୍ତକ ହନୁମାନ ଏବଂ ଭରତଙ୍କ ମିଳନ ମୂଳକ ପୂର୍ବତନ ଚରିତର କଥାମାନ ଛାପା ପୁସ୍ତକରେ ଦେଖିବେ । ୩୯୦ ପୃଷ୍ଠାଠାରୁ ୩୯୨ ପୃଷ୍ଠାଯାଏ ଆମ୍ରେଡ଼ିତ ହୋଇଅଛି ।

ବିଜୟ-ସମ୍ବାଦବାହକ ମାରୁତିଙ୍କର ପ୍ରବେଶ ସମୟକୁ ଅଯୋଧ୍ୟାରେ କେତେଗୁଡ଼ିଏ ରାଜାମାନେ ସମାଗତ ଥିଲେ, ଏହା ଲେଖାଅଛି । ଏଥିରୁ ଅନୁମିତ ହୁଏ ଯେ ଭରତ ତତ୍‌ପୂର୍ବରୁ ଲଙ୍କା ପ୍ରୟାଣ ନିମନ୍ତେ ରାଜାମାନଙ୍କୁ ଡକାଇ ଅଣାଇଥିଲେ । (୧)

ଏହି ବିଷୟର ସୁସ୍ପଷ୍ଟ ପ୍ରମାଣମାନ ନାଟକାଦିରୁ ମିଳୁଅଛି । ସୁତରାଂ ବିଶ୍ୱାସ ହୁଏ, ଏକଥା ପୁରାଣାନ୍ତରରେ ମଧ୍ୟ ଉକ୍ତ ଅଛି ।

ଏହି କାଣ୍ଡର ସର୍ବାନ୍ତିମ ସର୍ଗଦ୍ୱୟରେ ବର୍ଣ୍ଣିତ କଥା ଏହି, ଭରତ ରାମଙ୍କ ଶୁଭାଗମନ ଉଦ୍ଦେଶ୍ୟରେ ଦେବମନ୍ଦିରାଦିରେ ସେବାବୈଭବ ଚଳାଇବା ଏବଂ ସମଗ୍ର ନଗରୀ ବିଶେଷତଃ ଶୃଙ୍ଗାଟକ ଓ ଚୈତ୍ୟସ୍ଥଳମାନ ସମ୍ୟକ୍ ଅଳଂକୃତ କରିବା ତଥାଚ ଶ୍ରୀରାମଙ୍କ ଅଭ୍ୟୁପଗମନାର୍ଥ ବ୍ରାହ୍ମଣାଦି ଚତୁର୍ବିଧ ପୌରବର୍ଗ ଆଉ ଅନ୍ତଃପୁରବାସୀମାନେ ମହାସମାରୋହରେ ପ୍ରସ୍ଥାନ କରିବାପାଇଁ ଆଦେଶ ଦେଲେ । ସେ ନିଜେ ରାମଙ୍କ ପାଦୁକା ଦ୍ୱୟକୁ ମସ୍ତକରେ ଧରି, ସମସ୍ତ ପ୍ରକାର ରାଜୋପକରଣମାନ ସେହି ପାଦୁକା ଦ୍ୱୟକୁ ଖଟାଇ ରାମ ଦର୍ଶନାର୍ଥ ବାହାରିଲେ । ଭରତ ଦୂରତଃ ବିମାନ ଦେଖି ରାମଚରଣ ଉଦ୍ଦେଶ୍ୟରେ ଧରଣୀରେ ସାଷ୍ଟାଙ୍ଗ ପ୍ରଣାମ କଲେ । ରାମ ବିମାନକୁ ତତ୍ର ଭୂତଳରେ ଅବତୀର୍ଣ୍ଣ ହେବାକୁ ଆଦେଶିଲେ । (୨)

ରାମ ଭରତଙ୍କୁ ସାଦରାନନ୍ଦରେ ଉତ୍ତୋଳି ଆଲିଙ୍ଗନ କଲେ । ଭରତ ସୀତାଙ୍କୁ ପ୍ରଣାମ କରି ଲକ୍ଷ୍ମଣଙ୍କଦ୍ୱାରା ଆଲିଙ୍ଗନାଦିଦ୍ୱାରା ଗୌରବାନ୍ୱିତ ହେଲେ । ତେତେବେଳେ କାମରୂପୀ ବାନରବୀରମାନେ ମନୁଷ୍ୟ ରୂପ ଧାରଣ ପୂର୍ବକ (୩) ଭରତଙ୍କର କୁଶଳ ଜିଜ୍ଞାସା କଲେ । ଅଧ୍ୟାତ୍ମ ରାମାୟଣରେ ମଧ୍ୟ ଏହା ହିଁ ଉକ୍ତ ଅଛି, ଯଥା- ତତୋ ରାମଃ

---

(୧) ଭରତ ଆଦେଶ କରିଅଛନ୍ତି କି × ×
ବ୍ରାହ୍ମଣାଶ୍ଚ ତଥା ପୌରା ରାଜାନୋ ଯେ ସମାଗତାଃ
ନିର୍ଯ୍ୟାନ୍ତୁ ରାଘବସ୍ୟାଦ୍ୟ ଦ୍ରଷ୍ଟୁଂ ଶଶିନିଭାନନମ୍ ।
ଆଧ୍ୟାତ୍ମରାମାୟଣ ଯୁ.କା. ୧୪ ସର୍ଗ

(୨) ତତୋ ରାମାଭ୍ୟନୁଜ୍ଞାତଂ ତଦ୍‌ବିମାନମନୁତ୍ତମମ୍
ହଂସଯୁକ୍ତଂ ମହାବେଗଂ ନିଷ୍ପପାତ ମହୀତଳମ୍ । ୧୩୦ସ. ୩୮ଶ୍ଳୋ.

(୩) ତେ କୃତ୍ୱା ମାନୁଷଂ ରୂପଂ ବାନରାଃ କାମରୂପିଣଃ ।
କୁଶଳଂ ପର୍ଯ୍ୟପୃଚ୍ଛଂସ୍ତେ ପ୍ରହୃଷ୍ଟା ଭରତଂ ତଦା । ୧୩୦ସ. ୪୫ଶ୍ଳୋ.

ଅଧ୍ୟାତ୍ମ ରାମାୟଣରେ ମଧ୍ୟ ଏହି ଉକ୍ତ ଅଛି । ଯୁ.କା. ୧୪ ସର୍ଗ ଦେଖନ୍ତୁ ।
ସର୍ବେ ତେ ମାନୁଷଂ ରୂପଂ କୃତ୍ୱା ଭରତମାଦତୋଃ
ପପ୍ରଚ୍ଛୁଃ କୁଶଳଂ ସୌମ୍ୟାଃ ପ୍ରହୃଷ୍ଟାଶ୍ଚ ପ୍ଲବଙ୍ଗମାଃ ।

ପ୍ରହୃଷ୍ଟାତ୍ମା ଇତ୍ୟାଦି । ଭରତଙ୍କୁ ନୀଳ ମଧକୁଶଳାଦି ପ୍ରଶ୍ନ କରିଥିଲେ । ଶତ୍ରୁଘ୍ନ ଶ୍ରୀରାମାଦିଙ୍କର ଚରଣ ବନ୍ଦନ କଲାପରେ ରାମଚନ୍ଦ୍ର ମାତାମାନଙ୍କର ପାଦାଭିବନ୍ଦନାଦି କଲେ । ତେତିକିବେଳେ ଭରତ ରାମପ୍ରଦତ୍ତ ପାଦୁକାଦ୍ୱୟକୁ ତଦୀୟ ଚରଣଯୁଗଳରେ ସଂଯୋଜିତ କରି (୧) ନିଜର ବକ୍ତବ୍ୟ ଜଣାଇଦେଲେ । ରାମ ଭରତଙ୍କୁ ସାଦରେ ଅଙ୍କେ ଧରି ପେର୍ ପୁଷ୍ପକରେ ସପରିକର ଉପବିଷ୍ଟ ହେଲାରୁ କ୍ଷଣକ ମାତ୍ରେ ଦେବଯାନ ଯାଇ ନନ୍ଦିଗ୍ରାମରେ ଉପଗତ ହେଲା । (୨)

ରାମଚନ୍ଦ୍ର ଦେବଯାନରୁ ଅବତୀର୍ଣ୍ଣ ହୋଇ ପୁରୋହିତ ପ୍ରଭୃତିଙ୍କୁ ଯଥାବିଧି ବନ୍ଦନାଦି କଲେ ଏବଂ ପୁଷ୍ପକକୁ ଆଦେଶ ଦେଲେ ଯେ, ହେ ପୁଷ୍ପକଯାନ ! ମୁଁ ଅନୁଜ୍ଞା ଦେଉଅଛି ଯାଅ, ଆଜିଠାରୁ ତୁମେ ବୈଶ୍ରବଣଙ୍କୁ ବହନ କର । (୩)

ସେ କ୍ଷଣି ସେ ଦେବଯାନ ରାମାଦେଶରେ ଉତ୍ତରଦିଗକୁ ପ୍ରସ୍ଥାନ କଲା ।

ଆନନ୍ଦମନା ଭରତ ବଦ୍ଧାଞ୍ଜଳି ହସ୍ତରେ ଶ୍ରୀରାମଙ୍କୁ ଜଣାଇଲେ, ପ୍ରଭୋ ! ଏ କ୍ଷଣି ସିଂହାସନରେ ଅଭିଷିକ୍ତ ହୁଅନ୍ତୁ । ରାମ ପ୍ରହୃଷ୍ଟ ମନରେ ଅନୁଜଙ୍କ ଅନୁରୋଧ ସ୍ୱୀକାର କରି ସୁଗ୍ରୀବାଦି ଓ ବିଭୀଷଣାଦିଙ୍କର ସ୍ନାନ ବିଧାନ ଓ ପ୍ରସାଧନାଦି କାର୍ଯ୍ୟ ନିଷ୍ପନ୍ନ କରାଇ ସେମାନଙ୍କୁ ବହୁବିଧ ଅଳଙ୍କାରମାନଙ୍କରେ ଅଳଂକୃତ କଲେ । କୌଶଲ୍ୟା ଦେବୀ ଆନନ୍ଦାତିଶଯ୍ୟରେ ବାନରପତ୍ନୀମାନଙ୍କର ପ୍ରସାଧନାଦି କାର୍ଯ୍ୟ ସମ୍ପାଦନ କରାଇଲେ । (୪) ସୁସ୍ନାନ, ସୁଅଳଂକୃତ ସସୀତ ରାମଭଦ୍ର ଛତ୍ରଚାମରାଦି ସର୍ବୋ-ପକରଣ–ହସ୍ତ ଭରତ ଲକ୍ଷ୍ମଣାଦି ଆଉ ସୁଗ୍ରୀବ ବିଭୀଷଣାଦିଙ୍କୁ ତଥାଚ ପୁରୋହିତ ପ୍ରଭୃତିଙ୍କୁ ସଙ୍ଗେ ଧରି ସୁମନ୍ତ୍ର ଆନୀତ ରଥରେ ଆରୋହଣ କଲେ । ତେତେବେଳେ

---

(୧) ଅଧ୍ୟାତ୍ମରେ ମଧ ଏହା ଉକ୍ତ ଅଛି, ଯଥା – ଭରତଃ ପାଦୁକେ ତେ ତୁ ରାଘବସ୍ୟ ସୁପୂଜିତେ, ଯୋଜୟାମାସ ରାମସ୍ୟ ପାଦୟୋର୍ଭକ୍ତି ସଂଯୁତଃ । ୧୪ ସ.

(୨) ତତଃ ପ୍ରହର୍ଷାଦ୍ ଭରତମଙ୍କମାରୋପ୍ୟ ରାଘବଃ, ଯଯୌତେନ ବିମାନେନ ସସୈନ୍ୟୋ ଭରତାଶ୍ରମମ୍ । ୧୩୦ ସ.

(୩) ବହ ବୈଶ୍ରବଣଂ ଦେବଂ ଅନୁଜାନାମି ଗମ୍ୟତାମ୍
ତତୋ ରାମାଭ୍ୟନୁଜ୍ଞାତଂ ତଦ୍ ବିମାନମନୁତ୍ତମମ୍
ଉତ୍ତରାଂ ଦିଶମୁଦ୍ଦିଶ୍ୟ ଜଗାମ ଧନଦାଳୟମ୍ । ୧୩୦ସ. ୬୧ଶ୍ଳୋ
ଅବରୁହ୍ୟ ତଦା ରାମଃ ବିମାନାଗ୍ରାତ୍ ମହୀତଳମ୍
ଅବ୍ରବୀଦ୍ ପୁଷ୍ପକଂ ଦେବଃ ଗଚ୍ଛ ବୈଶ୍ରବଣଂ ବହ । ଅଧ୍ୟାତ୍ମ ଯୁ.କା.୧୩ ଶ୍ଳୋ.

(୪) ତତୋ ବାନରପତ୍ନୀନାଂ ସର୍ବାସାମେବ ଶୋଭନମ୍ ।
ଚକାର ଯତ୍ନାଦ୍ କୌଶଲ୍ୟା ପ୍ରହୃଷ୍ଟା ପୁତ୍ରବତ୍ସଳା ୧୩୧ସ. ୧୮ ଶ୍ଳୋ.

ଅନ୍ୟାନ୍ୟ ବାନର ବୀରମାନେ ମନୁଷ୍ୟ ରୂପରେ ମତ୍ତମାତଙ୍ଗ ନିବହରେ ଆରୂଢ଼ ହେଲେ । (୧) ଦେବର୍ଷିଗଣ ଏବଂ ଦେବବୃନ୍ଦ ଅମିତାନନ୍ଦ – ସନ୍ଦୋହ – ଅନୁଭବରେ ରାମଚନ୍ଦ୍ରଙ୍କର ଜୟ ସୂଚକ ସୁମଧୁର ମଙ୍ଗଳ ଧ୍ୱନିରେ ଦେବସରଣୀକୁ ମୁଖରିତ କଲେ । (୨) ରାମଚନ୍ଦ୍ର ପଞ୍ଚଘୋଷ ପୁରଃସର ମହାସମାରୋହରେ ନଗର ଭ୍ରମଣ ପୂର୍ବକ ଅଯୋଧ୍ୟା ରାଜଭବନରେ ଉପଗତ ହେଲେ ।

ପରଦିନ ପ୍ରତ୍ୟୁଷରୁ ବାୟୁ-ଗାମୀ ଅଙ୍ଗଦ, ବାୟୁପୁତ୍ର ହନୁମାନ ପ୍ରମୁଖ ବୀରମାନଙ୍କ କର୍ତ୍ତୃକ କନକ-କୁମ୍ଭମାନଙ୍କରେ ଚତୁଃସମୁଦ୍ର ତଥାଚ ଶତସଂଖ୍ୟକ ନଦନଦୀମାନଙ୍କରୁ ଜଳ ଆନୀତ ହେଲା । ମହର୍ଷି ବଶିଷ୍ଠ ଋତ୍ୱିକଗଣଙ୍କ ସହ ରାମଙ୍କର ଅଭିଷେଚନିକ କ୍ରିୟା ସୁସମ୍ପନ୍ନ କରି ତାହାଙ୍କୁ ବ୍ରହ୍ମ-ନିର୍ମିତ କିରୀଟ ପ୍ରଦାନ କଲେ । ବ୍ରହ୍ମାଦି ଦେବଗଣ ରାମଚନ୍ଦ୍ରଙ୍କର ରାଜ୍ୟାଭିଷେକ ମହୋତ୍ସବ ଦିଦୃକ୍ଷାରେ ବ୍ୟୋମ ସରଣୀରେ ଉପଗତ ଅଛନ୍ତି । ଗନ୍ଧର୍ବ ଯକ୍ଷ କିନ୍ନରକିଂପୁରୁଷାଦିମାନେ ସଂଗୀତନର୍ତ୍ତନାମୋଦରେ ଉନ୍ମତ୍ତ ଅଛନ୍ତି । ତେତିକିବେଳେ ଦେବାନନ୍ଦସୂଚକ ଦ୍ରୁମଦ୍ରୁମାୟମାନ ଦେବଦୁନ୍ଦୁଭିମାନ ନିନାଦିତ ହେଲା । ବାୟୁଦେବ ଦେବରାଜଙ୍କ ଆଦେଶରେ ଶ୍ରୀରାମଙ୍କୁ କାଞ୍ଚନମୟୀ ଶତପଦ୍ମମାଳା ଏବଂ ରତ୍ନମୟୀ ହାର ପ୍ରଦାନ କଲେ । ରାମଚନ୍ଦ୍ର ଅମିତ ଧନ-କନକ-ରତ୍ନାଦି ଦ୍ୱାରା ବ୍ରାହ୍ମଣମାନଙ୍କୁ ସତ୍କୃତ କଲାପରେ ବହୁମୂଲ୍ୟ ଅଳଙ୍କାରାଦିଦ୍ୱାରା ସୁଗ୍ରୀବାଦି ଆଉ ବିଭୀଷଣାଦିଙ୍କୁ ସମ୍ମାନିତ କଲେ । ସୀତା ଦେବୀ ପ୍ରଥମେ ହନୁମାନଙ୍କୁ ଶ୍ରୀରାମଦତ୍ତ ହାରଟିକୁ ପ୍ରଦାନ କରି ପୁନରପି ନିଜର କଣ୍ଠଦେଶରୁ ଆଉ ଗୋଟିଏ ସର୍ବୋତ୍ତମ କନକରତ୍ନହାର ବାହାର କରି ମାରୁତିଙ୍କୁ ଦେବା ଅଭିଳାଷରେ ରାମଙ୍କ ପ୍ରତି ନିରୀକ୍ଷଣ କରି ରହିଲେ । ରାମ ସୀତାଙ୍କ ହୃଦୟାଶୟ ବୁଝିପାରି ସ୍ୱୀକାର କଲାରୁ ଜାନକୀ ସେହି ହାରଟିକୁ ମଧ୍ୟ ପାବନିଙ୍କ ଗଳଦେଶରେ ବିଲମ୍ବିତ କରିଦେଲେ । ଅଭିଷେକ ମହୋତ୍ସବର ସମାପନାନ୍ତର ସୁଗ୍ରୀବାଦି ବାନରଗଣ ଏବଂ ବିଭୀଷଣାଦି ରକ୍ଷୋଗଣ ରାମଙ୍କ ଆଦେଶ ଲଭି ନିଜ ନିଜ ସ୍ଥାନକୁ ପ୍ରସ୍ଥାନ କଲେ । ତାପରେ ପୁଣି ରାମଚନ୍ଦ୍ର ଯୌବରାଜ୍ୟରେ ଅଭିଷିକ୍ତ ହେବା ପାଇଁ

---

(୧) ଅଧ୍ୟାତ୍ମରେ ମଧ୍ୟ ଏହି କଥା ଲେଖାଅଛି । ଯୁ.କା. ୧୫ ସର୍ଗ
ନବନାଗସହସ୍ରାଣି ଯଯୁରାସ୍ଥାୟ ବାନରାଃ
ମାନୁଷବିଗ୍ରହଂ କୃତ୍ୱା ସର୍ବାଭରଣଭୂଷିତାଃ- ୧୩୧ସ. ୩୨ ଶ୍ଳୋ.
ମାନୁଷଂ ରୂପମାସ୍ଥାୟ ବାନରା ଗଜବାହନାଃ
ଇତି ଅଧ୍ୟାତ୍ମରାମାୟଣ ଯୁ.କା. ୧୫ ସର୍ଗ

(୨) ଋଷିସଂଘୈସ୍ତଦାଽଽକାଶେ ଦେବୈଶ୍ଚ ସମରୁଦ୍‌ଗଣୈଃ
ସ୍ତୂୟମାନସ୍ୟ ରାମସ୍ୟ ଶୁଶ୍ରୁବେ ମଧୁରଧ୍ୱନିଃ । ୧୩୧ସ. ୩୦ ଶ୍ଳୋ.
ରାମସ୍ୟ ମଧୁରଧ୍ୱନିଃ ରାବଣନିରସନାଦ୍ୟବଦାନ କଥନ ଧ୍ୱନିଃ ।

ଲକ୍ଷ୍ମଣ ଅସ୍ୱୀକୃତ ହେଲାରୁ ଆନନ୍ଦଭରିତ ହୃଦୟରେ ଭରତଙ୍କୁ ସେ ଯୁବରାଜ କରି ସମାରୋହ ସହିତ ଅଭିଷିକ୍ତ କଲେ ।

ବଳରାମ ଦାଏ଼ ନିଜ ରାମାୟଣରେ ଏହି ଘଟନାମାନଙ୍କୁ କେତେକ ଉଦ୍‌ବୃତ୍ତ କଥାର ମିଳନରେ ସୁବିସ୍ତୃତ କରି ଲେଖିଯାଇଅଛନ୍ତି । ତାହାଙ୍କର ଅତ୍ରତ୍ୟ ଆଉ କେତେକ ଆନୁଷାଙ୍ଗିକ ଚରିତ ମୂଳଗ୍ରନ୍ଥରେ ନିର୍ଦ୍ଧାରିତ ନ ଥିଲେ ସୁଦ୍ଧା ସେ ଆପଣାର ବିବେକ ଓ ବିଚାରାନୁସାରେ ନିର୍ଦ୍ଦେଶିତ କରିଦେଇଅଛନ୍ତି । ପୁଷ୍ପକ ବିମାନ ଯେତେବେଳେ ଶୃଙ୍ଗବେର ପୁରର ନିକଟସ୍ଥ ହେଲା ତେତେବେଳେ ଦାସେ ଲେଖିଅଛନ୍ତି କି, ରାମଚନ୍ଦ୍ର ଅଙ୍ଗଦଙ୍କ ମୁଖରେ ମିତ୍ରଙ୍କଠାକୁ ସମ୍ବାଦ ଦେଲେ ଯେ ମୁଁ ଯାଉଅଛି, ଆପଣ ଶୀଘ୍ର ଅଯୋଧ୍ୟାକୁ ଆସନ୍ତୁ । ଏହି ସମ୍ବାଦର ପ୍ରେରଣ ମୂଳାନୁକ୍ତ ହେଲେ ହେଁ ଅସଙ୍ଗତ ନୁହେଁ ।

ମୂଳଗ୍ରନ୍ଥରେ ଲେଖାଅଛି କି ରାମଦର୍ଶନରେ ଏକାନ୍ତ ଉଦ୍‌ଗ୍ରୀବ ଭରତ ଅନୁଗାମୀଙ୍କ ସହ ରାମଙ୍କୁ ପଦବ୍ରଜରେ ମଧ୍ୟ ମାର୍ଗରେ ଭେଟିବାରୁ ଶ୍ରୀରାମ ବିହିତ ଶିଷ୍ଟାଚାରାଦି ପରେ ସେମାନଙ୍କୁ ପୁଷ୍ପକରେ ବସାଇ ନନ୍ଦିଗ୍ରାମରେ ଆସି ଅବତୀର୍ଣ୍ଣ ହେଲେ । (୧) କିନ୍ତୁ ଦାସେ ଲେଖିଅଛନ୍ତି ପୁଷ୍ପକଯାନ ଏକାବେଳକେ ନନ୍ଦିଗ୍ରାମରେ କେବଳ ଅବତୀର୍ଣ୍ଣ ହେବାରୁ ସେହିଠାରେ ଭରତାଦିଙ୍କର ମିଳନ ହେଲା । (୨)

ଏ ସ୍ଥଳରେ ପୁଣି ଦାସେ ଲେଖିଅଛନ୍ତି, ଶ୍ରୀରାମଙ୍କ ଦତ୍ତ ପରିଚୟରେ ଭରତ ସୁଗ୍ରୀବ, ଜାମ୍ବବାନ, ସୁଷେଣ ଓ ହନୁମାନଙ୍କର ପିତା କେଶରୀଙ୍କୁ ପ୍ରଣାମ କରିଥିଲେ । ଏମାନଙ୍କ ପ୍ରତି ଭରତଙ୍କ ପ୍ରଣାମ ମୂଳଗ୍ରନ୍ଥରେ ଲେଖା ନାହିଁ ସତ୍ୟ, ତଥାପି ଏହା ଲୌକିକ ବିଶିଷ୍ଟ ଶିଷ୍ଟାଚାରର ବିରୁଦ୍ଧ ନୁହେଁ, ପ୍ରତ୍ୟୁତ ପ୍ରସିଦ୍ଧ ଅଟେ । ପରନ୍ତୁ ଏତାଦୃଶ ବିଶିଷ୍ଟ ଶିଷ୍ଟାଚାର ମଧ୍ୟରେ ଦାସେ କେଜାଣି କାହିଁକି ଅବା ଭରତଙ୍କ ପ୍ରତି ଲକ୍ଷ୍ମଣଙ୍କର ପ୍ରଣାମ କହି ନାହାନ୍ତି; କେବଳ ଅନ୍ୟୋନ୍ୟ ଆଲିଙ୍ଗନରେ ମାତ୍ର ସେ ଦୁହିଁଙ୍କର ଶିଷ୍ଟାଚାରକୁ ସମ୍ପନ୍ନ କରିଦେଇଅଛନ୍ତି । (୩) ଅନୁମାନ କରାଯାଇପାରେ, ଶ୍ରୀମାନ୍ ବଳରାମ ଦାସେ ଭରତ ଯେ ଲକ୍ଷ୍ମଣଙ୍କ ଅପେକ୍ଷା ସର୍ବଥା ବୟୋଜ୍ୟେଷ୍ଠ, ଏହା କି ସମ୍ୟକ୍ ହୃଦୟଙ୍ଗମ କରିପାରି ନଥିଲେ । ସେ ଦୁହେଁ ସମାନ ବୟସ୍କ, ତାହାଙ୍କର ଭ୍ରାନ୍ତ ଧାରଣା ଥିଲା । ମୂଳଗ୍ରନ୍ଥରେ ଯେପରି ରାମଚନ୍ଦ୍ର ନନ୍ଦିଗ୍ରାମରେ ଉପଗତ ହେଲା ପରେ ପୁଷ୍ପକଯାନକୁ ବୈଶ୍ରବଣଙ୍କଠାକୁ ଯିବାପାଇଁ ଆଦେଶ କରିଅଛନ୍ତି, ଦାସେ ମଧ୍ୟ ତାହା କହୁଅଛନ୍ତି । କିନ୍ତୁ ସେହି ଦେବଯାନ ଯିବାର ପରମୁହୂର୍ତ୍ତରେ

(୧) ଅଧ୍ୟାତ୍ମ ରାମାୟଣରେ ମଧ୍ୟ ଏହି କ୍ରମ ଉକ୍ତ ଅଛି ।
ଯଥା – ଆରୁରୋହ ବିମାନଂ ତଦ୍ ଭରତଃ ସାନୁଜସ୍ତଦା ଇତ୍ୟାଦି ଯୁ.କା. ୧୪ ସର୍ଗ ।

(୨) ଛାପା ପୁସ୍ତକରେ ୩୯୫ ପୃଷ୍ଠା ପଢ଼ନ୍ତୁ ।

(୩) ଛାପା ପୁସ୍ତକରେ ୩୯୬ ପୃଷ୍ଠା ପଢ଼ନ୍ତୁ ।

ଫେର୍ କୁବେରଙ୍କ ଆଦେଶରେ ଶ୍ରୀରାମ ସେବାର୍ଥ ପ୍ରତ୍ୟାବୃତ୍ତ ହୋଇଥିବା ମଧ ସେ ଲେଖି ଅଛନ୍ତି । (୧) ପୁଷ୍ପକଯାନର ଶ୍ରୀରାମଙ୍କ ପ୍ରତି ତାତ୍କାଳିକ ପ୍ରତ୍ୟାବୃତ୍ତି ଏ ସ୍ଥଳେ ମୂଳଗ୍ରନ୍ଥରେ ସୂଚିତ ନଥିଲେ ସୁଦ୍ଧା, ଯଥାର୍ଥ, କେବଳ ଏକଥା ଉତ୍ତରତ୍ର ଉତ୍ତରକାଣ୍ଡରେ ସୁସ୍ପଷ୍ଟ ପ୍ରତିପାଦିତ ଅଛି ।

ଏହାପରେ ଏହି ରାମାୟଣରେ କେତକ ଅସଙ୍ଗତ କଥାରେ ଭରତଙ୍କ ପ୍ରତି ଆରୋପିତ ମିଥ୍ୟା କଳଙ୍କର ଚିତ୍ର ଗୋଟିଏ ଚିତ୍ରିତ ଅଛି । ଏହା କି ଦାସେ କାହିଁରୁ କିଅବା ଦେଖି ଲେଖଅଛନ୍ତି ? କିମ୍ବା କେହି ଅନୁଲେଖକ ପ୍ରକ୍ଷିପ୍ତ କରିଅଛନ୍ତି ? ଠିକ୍ କୁହାଯାଇ ନପାରେ । ତାପର କଥାଟା ଏହି, ରାମ ଭରତଙ୍କୁ ଆଦେଶ ଦେଲେ ଯେ ବାନରମାନଙ୍କୁ ଉତ୍ତମ ଫଳ ମୂଳାଦିର ଆହାର ଯୋଗାଇ ଦିଅ । ତଦା ପୁଣି ଭରତଙ୍କ ଆଦେଶରେ ରାଜପୁରୁଷମାନେ ନଗରୀସ୍ଥ ଯାବତୀୟ ବଗିଚାମାନଙ୍କରୁ ସୁପକ୍ୱ ଫଳମାନ ଆହରଣ କରାଇଲେ । ଅନେକ ପ୍ରଜା ରାମଙ୍କ ଆଦେଶ ଜାଣି ସ୍ୱତଃ ପ୍ରଣୋଦିତ ହୋଇ ବହୁ ସୁଖାଦ୍ୟ ଫଳମୂଳାଦି ଆଣି ଦେଉଥିଲେ ।

କିନ୍ତୁ ଏକଜଣ ନଗରବାସୀ ମାତ୍ର ଏହି ଆଦେଶରେ ବିରକ୍ତ ହୋଇ ରାଜପୁରୁଷମାନେ ଆପଣାର ବଗିଚାକୁ ବଳପୂର୍ବକ ଲୁଟ୍‌ପାଟ କରି ନେଲେ ବୋଲି ରାଜଦ୍ୱାରରେ ହୁରୀ କଲା । ସେ ପୁଣି ଭରତଙ୍କୁ ଆଉ ରାମଙ୍କୁ ମଧ ଭର୍ତ୍ସନା କଲା । (୨) ତଦା ରାମଚନ୍ଦ୍ର ସେହି ଲୋକ ମୁଖରୁ ଭରତଙ୍କ ପ୍ରତି ଏକାନ୍ତ ଆକ୍ଷେପର ଉକ୍ତିମାନ ଶୁଣି ତାର ସତ୍ୟାସତ୍ୟତା ବଶିଷ୍ଠଙ୍କୁ ଜିଜ୍ଞାସା କଲେ । ରାମ ବଶିଷ୍ଠଙ୍କ ମୁଖରୁ ଭରତଙ୍କର ଅମାୟିକ ସୁସଂଯତ ବ୍ୟବହାର ଓ ସୁଗୁଣମାନ ଶୁଣି ସେହି ମିଥ୍ୟାବାଦୀ ବିନିନ୍ଦୁକକୁ ସେଠାରୁ ବିଦୂରିତ କରାଇଦେଲେ । ଏହାପରେ ପୁଣି ଭରତ ସେହି ଦୁଷ୍ଟାଚରଣ ଗୁହାରିଆକୁ ରାଜ୍ୟରୁ ବିତାଡ଼ିତ କରି ଶାପ ସ୍ୱରୂପ କହିଲେ କି, ଏତାଦୃଶ ପ୍ରଜାମାନେ କଳିକାଳରେ ଦୁଷ୍ଟ ଅଶିଷ୍ଟ ରାଜାମାନଙ୍କ ଠାରୁ ବହୁକଷ୍ଟ ପାଇ ବିନାକାରଣ ବାରଣରେ ନିତାନ୍ତ ଦଣ୍ଡିତ ହେବେ ଇତ୍ୟାଦି । ଏ ସବୁର ଲେଖକ ନିଜେ କବି ହୁଅନ୍ତୁ ବା ଅନ୍ୟ କେହି ଅନୁଲେଖକ ହୁଅନ୍ତୁ, ବୋଧହୁଏ, ଏ ସ୍ଥଳରେ ସେ ଦୁଷ୍ଟରାଜା ଏବଂ ପ୍ରଜାମାନଙ୍କର

(୧) ଛାପା ପୁସ୍ତକରେ ୩୯୮ ପୃଷ୍ଠା ଦେଖନ୍ତୁ ।

(୨) ଏହା ଦେଖି ଜଣେ ତହୁଁ ନପାରିଲା ସହି
ବୋବାଳି ବୋବାଳି ସିଂହ ଦ୍ୱାରେ ଗଲା ଧାଇଁ xx
ରାଗ ହୋଇ ସେ ତହୁଁ ପଶ୍ଚିମ ଦ୍ୱାରେ ମିଳି
ରାମଙ୍କୁ ଶୁଣାଇଁ ସେହୁ ବହୁ ଦେଲା ଗାଳି xxx
ମିଛେ ଶିରେ ଜଟା ବାନ୍ଧି ତପସ୍ୱୀ ବୋଲାଏ
ଦିବସରେ ଫଳମୂଳ ରାତ୍ରେ ଅନ୍ନ ଖାଏ । ଇତ୍ୟାଦି ୪୦୨ ପୃଷ୍ଠା

ଅଶିଷ୍ଟାଚାର ଚରିତ୍ର ଚିତ୍ରିତ ରଖିବାର ଅଭିପ୍ରାୟରେ ଏସବୁ କଥାର ଉତ୍‌ଥାପନ କରିଅଛନ୍ତି । ଏହାପରେ ଦାସେ ଲେଖି ଅଛନ୍ତି କି, ଶ୍ରୀରାମାଦିମାନେ ଅଭିଷେକ ପର୍ଯ୍ୟନ୍ତ କେତେ ଦିନ ନନ୍ଦିଗ୍ରାମରେ କେବଳ ଅବସ୍ଥାନ କରିଥିଲେ । ରାମଚନ୍ଦ୍ର ଏକଦିନ ନଗର ଭ୍ରମଣାର୍ଥ ଆସି ଅଯୋଧ୍ୟାର ଅପ୍ରତିଷ୍ଠିତ ରାଜପ୍ରାସାଦରେ ହଠାତ୍ ଉପବିଷ୍ଟ ହେଲାରୁ ଭରତ ଶଙ୍କାଭରିତ ହୃଦୟରେ କହିଲେ, ପ୍ରଭୋ ! ଆପଣ ଏହି ଜନନିବାସଶୂନ୍ୟ ଅପ୍ରତିଷ୍ଠିତ ଗୃହକୁ କାହିଁକି ଆସିଲେ । (୧)

ରାମ କହିଲେ, ଭାଇ ଭରତ ! ଏପରି ଦୁଃଶଙ୍କା କରନାହିଁ । ଏହି ଯେ ମୋର ସହଗାମୀ ସୁଗ୍ରୀବ, ବିଭୀଷଣ, ହନୁମାନ ପ୍ରଭୃତିଙ୍କୁ ଦେଖୁଅଛୁ, ଏମାନଙ୍କର ପବିତ୍ର ମାହାତ୍ମ୍ୟ ତୁମେ ଜାଣନାହିଁ । ଏମାନେ ପରମଭାଗବତ ଅଟନ୍ତି । ଏମାନଙ୍କ ପାଦ ରେଣୁରେ ଏ ଯାବତୀୟ ଗୃହ ପବିତ୍ରୀକୃତ ହୋଇଅଛି । ଏମାନଙ୍କ ତୁଳନାରେ ଦେବତାମାନେ ମଧ୍ୟ ସମାନ ନୁହନ୍ତି ଇତ୍ୟାଦି । (୨) ବଳରାମ ଦାସ ମହାଶୟ – ''ତୀର୍ଥୀ କୁର୍ବନ୍ତି ତୀର୍ଥାନି ସ୍ୱାନ୍ତଃସ୍ଥେନଗଦାଭୃତା'' – ଏହି ଭାଗବତୀୟ ଭାବରେ ଅନୁଭାବିତ ହୋଇ ସୁଗ୍ରୀବ ବିଭୀଷଣାଦି ଭଗବତଭକ୍ତମାନଙ୍କର ତଦେକତାନତ୍ୱାଦି ଭକ୍ତିନିଷ୍ଠା – ଗରିଷ୍ଠତ୍ୱର ସୁମହତ ମହିମାର ପ୍ରଦ୍ୟୋତନାର୍ଥ ଏହି ବିଷୟର ଅବତାରଣା କରିଅଛନ୍ତି ।

ଏ ସ୍ଥଳରେ ଦାସେ ପ୍ରକାଶ କରିଅଛନ୍ତି କି ରାମଚନ୍ଦ୍ର ଯେଉଁଦିନ ନନ୍ଦିଗ୍ରାମରୁ ମହାସମାରୋହରେ ଅଯୋଧ୍ୟା ନଗରୀକୁ ଯାତ୍ରା କଲେ, ସେହି ଦିବସର ପୂର୍ବୁଆରରେ ବଶିଷ୍ଠ ପ୍ରଭୃତି ମହର୍ଷିମାନଙ୍କର ପୁତ୍ରମାନେ ସୁଖାସନରେ ବିରାଜମାନ ରାମଚନ୍ଦ୍ରଙ୍କୁ ପାଦଚାରରେ ପଦେ ପଦେ ଅନୁଗମନ କରି ବ୍ୟଜନାଦି ହସ୍ତରେ ସେବା ଶୁଶ୍ରୂଷା କରୁଥିଲେ । ରାଜାଙ୍କ ପ୍ରତି ବ୍ରହ୍ମନିଷ୍ଠ ବ୍ରହ୍ମସନ୍ତାନମାନଙ୍କର ଏତାଦୃଶ ଦାସସେବା ଶିଷ୍ଟାଚାର ବିରୁଦ୍ଧ ଜଣାଯାଏ । ତପୋନିଷ୍ଠ ବ୍ରହ୍ମଣ୍ୟଗରିଷ୍ଠ ବ୍ରାହ୍ମଣମାନଙ୍କ ହସ୍ତରେ ଏଭଳି ସେବା ଶୁଶ୍ରୂଷା କରାଇନେବାପାଇଁ କଥଂଚିତ୍ ସମ୍ମତ ହୋଇ ନଥିବେ । ତଥାପି ଦାସେ ଏ ସ୍ଥଳେ ଯାନସ୍ଥ ରାମଙ୍କୁ ରଥସ୍ଥ ସ୍ୱୟଂ ଶ୍ରୀ ଜଗନ୍ନାଥ ମନେ କରିଥିବାରୁ ଏପରି ସେବା ବୈଭବକୁ ସୁବ୍ରାହ୍ମଣମାନଙ୍କ କର୍ତ୍ତୃକ ସମ୍ପାଦିତ କରାଇ

---

(୧) କିପାଁ ଆହେ ରଘୁନାଥ ଅବେଭାର କଲ
ଅପ୍ରତିଷ୍ଠା ନଗରକୁ କିପାଇଁ ଅଇଲ ।
ଚଉଦ ବରଷ ହେଲା ଏଥେ ନାହି ଜନ
ଏହି ନଗର ଗୋଟାକ ହୋଇଥିଲା ଶୂନ୍ୟ ।
ପ୍ରେତ ପିଶାଚ ଯେ ତହିଁ ବାସ କରୁଥିଲେ
ଅଗମ୍ୟ ଦେଖି ବ୍ରହ୍ମଦଇତେ ରହିଲେ । ୪୦୫ ପୃଷ୍ଠା

(୨) ଏସବୁ ଛାପା ପୁସ୍ତକରେ ୪୦୫ ପୃଷ୍ଠାରୁ ୪୦୭ ପୃଷ୍ଠା ପର୍ଯ୍ୟନ୍ତ ଦେଖନ୍ତୁ ।

ଅଛନ୍ତି କି ? (୧) ଏହି ଯେ ରାମଚନ୍ଦ୍ରଙ୍କର ଅଭିଷେକ ମହୋତ୍ସବର ମହାସମାରୋହର ବର୍ଣ୍ଣନା, ଏହାକୁ ଦାସ ମହାଶୟ ବଡ଼ ସୁନ୍ଦର ଆଉ ଅତି ବିସ୍ତୃତ କରି ବର୍ଣ୍ଣି ଅଛନ୍ତି । ଏହି ପାଠତକ ପଢ଼ି ନେଲେ ତାହାଙ୍କର ହୃଦୟର ଏତଦ୍‌ମୂଳକ ଅମିତଆନନ୍ଦର ପ୍ରବାହ ଖୁବ୍ ଜୋରରେ ପ୍ରବାହିତ ହୋଇଥିବା ଏବଂ ରାମଙ୍କ ପ୍ରତି ତାହାଙ୍କର ଯେ ଅନନ୍ୟବୃତ୍ତିକ ଅକ୍ଷୁଣ୍ଣ ପ୍ରଗାଢ଼ ଭକ୍ତି ଉଦ୍‌ବେଳିତ ହୋଇଥିବା ସୁସ୍ପଷ୍ଟ ଜଣାଯାଉଅଛି ।

ମତିମାନ୍, ସ୍ମୃତିମାନ୍ ବଳରାମ ଦାସ ମହାଶୟ ଇତଃପୂର୍ବେ ଆରଣ୍ୟକ କାଣ୍ଡରେ ଅଗସ୍ତି ଏବଂ ମାର୍କଣ୍ଡେୟଙ୍କ ସମ୍ବାଦରେ ମାର୍କଣ୍ଡେୟ ଶ୍ରୀରାମଙ୍କ ପରମେଶ୍ୱରତ୍ୱରେ ଭ୍ରାନ୍ତି କରି ଅଗସ୍ତିଙ୍କୁ ଯାହା କିଛି କହିଥିଲେ, ତଥାଚ ଅଗସ୍ତି ପୁଣି ତାହାଙ୍କ ସେହି ଭ୍ରାନ୍ତିର ନିରସନାର୍ଥ ଯାହା କିଛି କହିଥିଲେ, ସେହି କଥାକୁ ସପ୍ରମାଣ ଆଉ ପ୍ରତ୍ୟକ୍ଷ କରାଇ ଦେବାପାଇଁ ଏ ସ୍ଥଳରେ ସେହି ଋଷିଦ୍ୱୟଙ୍କର ସଂଳାପନରେ ରାମଙ୍କର ସୃଷ୍ଟି-ସ୍ଥିତି-ପ୍ରଳୟକାରୀ – ଆଦି ପୁରୁଷତ୍ୱକୁ ସିଦ୍ଧାନ୍ତିତ କରିଦେଇଅଛନ୍ତି ଏବଂ ରାମଚନ୍ଦ୍ରଙ୍କର ମୁଖରେ ମଧ୍ୟ ନିଜର ପରମେଶ୍ୱରତ୍ୱ ଆଉ ଜଗତ୍କାଳକର୍ତ୍ତୃତ୍ୱ ପ୍ରକାଶ କରାଇ ଦେଇଅଛନ୍ତି । (୨)

ଏଥିରେ ପୁଣି ଲେଖାଅଛି, ରାମଚନ୍ଦ୍ର ଅଭିଷେକାନ୍ତର ସୁଗ୍ରୀବ, ବିଭୀଷଣ, ମାରୁତି ପ୍ରଭୃତିଙ୍କୁ ମୂଲାନୁମତ ବସ୍ତ୍ରାଳଂକରଣାଦିରେ ଯଥୋଚିତ ସତ୍‌କୃତ କଲାପରେ ଜାମ୍ବବାନଙ୍କୁ କହିଲେ, 'ହେ ଜାମ୍ବବାନ ! ତୁମେ ଯାଇ ପାତାଳରେ ରାଜା ହୋଇଥାଅ । ତମ ହୃଦୟର

---

× × × ×

(୧) ନନ୍ଦିଗ୍ରାମ ତେଜିଣ ଏ ଗଲେ ଦେବରାୟେ ।
ବାଟରେ ଆସି ଦର୍ଶନ କଲେ ଦେବତାୟେ × ×
ସୁଖାସନରେ ବିଜୟେ କରି ସେ ଅଛନ୍ତି ।
ଅଯୋଧ୍ୟାର ଲୋକଙ୍କୁ ସେ ନିରେଖି ଚାହାନ୍ତି ।
ଜାବାଳି ତନୟ ପୁଣି ବିଡ଼ିଲାଗି କରି ।
ସଂଶୟ କଥା ରାମ ଯେ ତାହାକୁ ପଚାରି ।
କାଶପ୍ୟଙ୍କର ତନୟ ବାମଦେବ ଶିଷ୍ୟ ।
ସେମାନେ ଧରିଛନ୍ତି ରାମଙ୍କର ପାଶ ।
ବିଶିଷ୍ଟଙ୍କ ପୁତ୍ରମାନେ ବିଞ୍ଚନ୍ତି ବିଞ୍ଚଣୀ ।
ସମ୍ବରବେ କଟକରେ ପଶି ରଘୁମଣି ।
ବାହୁଡ଼ା ବିଜୟେ କି ଗୁଣ୍ଡିଚା ରଥ ଚଳି
ହେକୁ ହେକୁ ରଥରେ ବିଜୟେ ବନମାଳୀ ।
ତେସନ ପ୍ରକାରେ ତ ଦିଶନ୍ତି ରାମରାୟେ
ସ୍ୱର୍ଗେ ଦୁନ୍ଦୁଭି ବଜାନ୍ତି ହର୍ଷେ ଦେବତାଏ । ଇତ୍ୟାଦି ।
୪୧୩ ପୃଷ୍ଠା - ୪୧୫ ପୃଷ୍ଠା ପଢ଼ନ୍ତୁ ପର୍ଯ୍ୟନ୍ତ ।

(୨) ଛାପା ପୁସ୍ତକରେ ୪୨୧-୪୨୨ ପୃଷ୍ଠା ପଢ଼ନ୍ତୁ ।

କଥା ମୁଁ ଜାଣି ପାରିଅଛି । ସମୟେ ତୁମେ ମୋ ସଙ୍ଗେ ସଙ୍ଗର ସମର କରି ପରିତୁଷ୍ଟି ଲାଭ କରିପାରିବ ।' ଇତ୍ୟାଦି । (୧) ତେତେବେଳେ ରାମ ପୁଣି ତାହାଙ୍କୁ ପୁରାଣାନ୍ତରରେ ବର୍ଣ୍ଣିତ କୃଷ୍ଣାବତାରରେ ସଂଘଟନୀୟ ଜାମ୍ବବତୀହରଣମୂଳକ ଭାବି ଘଟଣାମାନ ମଧ କହିଅଛନ୍ତି । ରାମଚନ୍ଦ୍ର ମାରୁତିଙ୍କୁ ଚାହିଁ ମହୌଷଧି ଆନୟନ ସମୟରେ ତଦୀୟ ଅଭିଳଷିତ ବ୍ରହ୍ମତ୍ୱକୁ ସମୟେ ତାଙ୍କୁ ପ୍ରଦାନ କରିବାକୁ କହିଅଛନ୍ତି ଏବଂ ଗହନ କାନନରେ ଯେଉଁ ଋଷିମାନେ ରାମଙ୍କ କାମକମନୀୟ ରୂପ ଦେଖି ସ୍ତ୍ରୀତ୍ୱ ଅଭିଳାଷ କରିଥିଲେ, ସେ ସେମାନଙ୍କୁ ଗୋପ ସ୍ତ୍ରୀ ରୂପରେ ନିଜର କ୍ରୀଡ଼ାସୁଖ ବୈଭବ ଅନୁଭବ କରିବାପାଇଁ ବରପ୍ରଦାନ କରିଅଛନ୍ତି । ଦାସ ମହାଶୟ ଏହି କାଣ୍ଡର ସର୍ବାବସାନରେ ଲେଖିଅଛନ୍ତି କି ଶ୍ରୀରାମ ଆଦେଶ କଲେ, ସମସ୍ତ ବନ୍ଧୁବର୍ଗ ଏକତ୍ର ବସି ଭୋଜନ କରିବୁଁ । ସୀତାଦେବୀ ସ୍ୱୟଂ ଅନ୍ନବ୍ୟଞ୍ଜନାଦି ପାକକରି ପର୍ଯ୍ୟାପ୍ତ ରୂପେ ସୁଖାଦ୍ୟମାନ ଯୋଗାଇ ସମସ୍ତଙ୍କୁ ପରିତୁଷ୍ଟ କରିବେ । ସୀତାଦେବୀ ପତିଙ୍କ ଆଦେଶ ଅନୁସାରେ ପାକ ସମ୍ପନ୍ନ କରି ପତିଙ୍କ ଛାମୁରେ ଜଣାଇଲେ । ରାମଚନ୍ଦ୍ର ଯାବତୀୟ ବନ୍ଧୁବର୍ଗଙ୍କ ସହ ଭୋଜନାର୍ଥ ଉପବେଶନ କଲେ । ସୀତାଦେବୀ ନିଜର ମାୟିକ ଶକ୍ତି ବଳରେ ନିଜ ଦେହରୁ ସ୍ୱସ୍ୱରୂପ ବିଶିଷ୍ଟା ଏକଲକ୍ଷ ଯୁବତୀଙ୍କୁ ଆବିର୍ଭୂତ କରି ପରିବେଷଣ ଆରମ୍ଭ କଲେ । ତଦା ରାମଙ୍କ ବନ୍ଧୁବର୍ଗ ଆଦିଶକ୍ତିଙ୍କ ମାୟାରେ ବିମୋହିତ ହୋଇ ଏକୈକଶଃ ମନେକଲେ ଯେ, ସୀତାଦେବୀ ମତେ କେବଳ ସୁଭକ୍ଷ ଭୋଜ୍ୟାଦି ପ୍ରଦାନ କରୁଅଛନ୍ତି; ମୁଁ ସୁଖରେ ଭୋଜନ କରୁଅଛି । (୨) ପ୍ରିୟ ପାଠକଗଣ ! ଏହି ସମାଲୋଚ୍ୟମାନ ରାମାୟଣର ଉତ୍ତରକାଣ୍ଡର ପାଠାବଳୀ ପରିଶୀଳନ କରିନେଲେ ସୁସ୍ପଷ୍ଟ ଜାଣି ପାରିବେ ଯେ ବଳରାମ ଦାସ ମହାଶୟ ମୂଳଗ୍ରନ୍ଥକୁ କିଦୃଶ ଅନୁସରଣ କରି ନିଜର ରାମାୟଣକୁ ଅନୁବାଦିତ କରିଅଛନ୍ତି ଏବଂ ନିଜର ଅନୁବାଦନରେ

---

(୧) ବୋଇଲେ ରାଜା ତୁମ୍ଭେ ହୁଅସି ପାତାଳେ
ମନାସିଛ ରାବଣକୁ ମାରିବାର ବେଳେ ।
ଅପୂର୍ବ ସମର ମୋର ଦେଖିଲ ନୟନେ
ଏହାଙ୍କ ସଙ୍ଗେ ଯୁଝିବି ମନାସିଲ ମନେ । ଇତ୍ୟାଦି
ତୁମ୍ଭର ହୃଦୟ କଥା ଅଛି ମୁହିଁ ଜାଣି
ତୁମ୍ଭର ମୋହର ଯୁଦ୍ଧ ହୋଇବାକ ପୁଣି । ଇତ୍ୟାଦି ୪୨୭ ପୃଷ୍ଠା

(୨) ମାୟାରୂପ ବିସ୍ତାର ଯେ ଦେବୀ ତହିଁ କଲେ
ଏକ ହୋଇ ଅନେକ ରୂପ ସେ ହୋଇଲେ ।
ନିଜ ଶରୀରୁ ବାହାର କଲେ ଲକ୍ଷେ କନ୍ୟା
ନୃପତିମାନଙ୍କୁ ପରଷୁ ଅଛନ୍ତି କିନା । × × × ×
କେହି ନ ଜାଣନ୍ତି ତହିଁ ଜାନକୀର ମାୟା ।
ସବୁଙ୍କର ଛାମୁରେ ଦିଶଇ ସୀତା କାୟା ଇତ୍ୟାଦି । ୪୩୦ ପୃ.

କେତେଦୂର ଅତିରିକ୍ତ କଥାମାନଙ୍କର ସଂଯୋଗ ଆଉ ମୌଳିକ କଥାମାନଙ୍କର ବିଯୋଗ କରିଅଛନ୍ତି ।

ମୂଳଗ୍ରନ୍ଥର ଉତ୍ତରକାଣ୍ଡର ପ୍ରାରମ୍ଭରୁ ତୃତୀୟାଧ୍ୟାୟ ବା ସର୍ଗର ଶେଷ ପର୍ଯ୍ୟନ୍ତ ରାମ ଯେପରି ଅଗସ୍ତ୍ୟଙ୍କ ମୁଖରୁ ଇନ୍ଦ୍ରଜିତଙ୍କର ଦୁର୍ଜ୍ଜେୟତ୍ୱାଦି ମହିମା ଶ୍ରବଣ କରି ତାହାର କାରଣ ଜିଜ୍ଞାସା କଲାରୁ, ଅଗସ୍ତ୍ୟ ମହର୍ଷି ତଜ୍ଜନକ ରାବଣ ପ୍ରଭୃତିଙ୍କର ଜନ୍ମର ବିବକ୍ଷାର ଆନୁଷଙ୍ଗିକ ଚରିତ ସ୍ୱରୂପ ତୃଣବିନ୍ଦୁ ରାଜର୍ଷିକନ୍ୟାଙ୍କ ଗର୍ଭରୁ ପୁଲସ୍ତ୍ୟଙ୍କ ଔରସରେ ଜାତ କୁବେରଙ୍କ ଚରିତ କହିଅଛନ୍ତି । ଦାସଙ୍କ ରାମାୟଣରେ ମଧ୍ୟ ସ୍ଥୂଳତଃ ତାହାହିଁ ଉକ୍ତ ଅଛି ।

ଦାସଙ୍କ ରାମାୟଣରେ ଦେଖିବେ, ରାମ କୁବେରଙ୍କ ଚରିତ ଶୁଣି ଫେର୍ ପ୍ରଶ୍ନ କରିଅଛନ୍ତି କି, ରାବଣ ପୁଲସ୍ତ୍ୟଙ୍କ ନାତି କିପରି ? ଏବଂ ବିଷ୍ଣୁ ପୂର୍ବେ ରାକ୍ଷସମାନଙ୍କୁ ଲଙ୍କା ରାଜ୍ୟରୁ ତଡ଼ିଦେଲେ କାହିଁକି ? କିନ୍ତୁ (୧) ଏହି ପ୍ରଶ୍ନର ପାଠତକ ମୂଳ ଚତୁର୍ଥାଧ୍ୟାୟର ପ୍ରାରମ୍ଭରେ ଦେଖିବେ ଟିକିଏ ଭିନ୍ନ ପ୍ରକାର ଉକ୍ତ ଅଛି । ରାମଙ୍କର ଏହି ପ୍ରଶ୍ନର ଉତ୍ତରରେ ଅଗସ୍ତ୍ୟ ଯାହା ଯାହା କହି ଅଛନ୍ତି, ତାହା ବଳରାମ ଦାସଙ୍କ ରାମାୟଣରେ ପ୍ରାରମ୍ଭରୁ ଯଥାଯଥ ଦେଖାଯାଉ ନାହିଁ । କାରଣ ସେଥିରୁ କେତକ ପାଠ ଅନୁଲେଖକଙ୍କ ଅତ୍ୟାଚାରରେ ପଡ଼ି ଛାଡ଼ ହୋଇ ଯାଇଅଛି । ପାଠକଗଣ ! ଏହି ପାଠତକକୁ ମୌଳିକ ପାଠର ସହିତ ମିଳାଇ ନେଲେ ଏହାର ସତ୍ୟତା ଉପଲବ୍ଧ କରିପାରିବେ । ସେ ଯାହା ହେଉ, ଅତଃପର ହେତି ପ୍ରହେତିଙ୍କ ଚରିତଠାରୁ ଦାସଙ୍କ ରାମାୟଣର ପାଠ ମୂଳାନୁମତ ଚାଲିଅଛି ।

ଏହି ରାମାୟଣରେ ଦେଖିବେ ପ୍ରଥମତଃ ରାମଚନ୍ଦ୍ର ଅଗସ୍ତିଙ୍କୁ ଇନ୍ଦ୍ରଜିତଙ୍କର ଦୁର୍ଜ୍ଜେୟତ୍ୱାଦିର କାରଣ ପ୍ରଶ୍ନ କଲାରୁ ମୁନି ତଦୁତ୍ତର ସ୍ୱରୂପ ରାବଣଙ୍କ କଥା କହିଥିବାର ଲେଖାଅଛି । (୨) ତେବେ ଏହା ଦେଖି ଅବଶ୍ୟ ପାଠକଙ୍କର ମନେହେବ ଯେ ପ୍ରଶ୍ନର

---

(୧) ପୌଲସ୍ତିଙ୍କ ଅଂଶେ ଜାତ ଅଟେ ଧନପତି
ରାବଣ କେସନେ ହେଲା ପୌଲସ୍ତିର ନାତି ।
ବିଷ୍ଣୁ କିପାଁ ଦଇତଙ୍କୁ ଏଡ଼େ କୋପ କଲେ
କିସ ଅର୍ଥେ ଦଇତ ବଳକୁ ନିବାରିଲେ । ୯ ପୃଷ୍ଠା

(୨) କେବଣ ବିଧାନେ ସେହି ହୋଇଲାକ ଜାତ
ଇନ୍ଦ୍ରକୁ କେସନେ ପୁଣି ଜିଣିଲା ଦଇତ ।
ମୁନି ବୋଇଲେ ଭୋ ରାମ ! ଶୁଣ ଏକମନେ
ରାବଣର ଉତପତି ଯେବଣ ବିଧାନେ । ୬ ପୃଷ୍ଠା

ଉତ୍ତର ଠିକ୍ ହେଲା ନାହିଁ । କିନ୍ତୁ ବଳରାମ ଦାସେ ଆଗରୁ ଏପରି ଅସଂଲଗ୍ନ ପାଠ ଲେଖି ନାହାନ୍ତି । ଅତ୍ରତ୍ୟ ପାଠ ଅନୁଲେଖକଙ୍କଦ୍ୱାରା ବିକୃତ ଓ ବିଚ୍ଛିନ୍ନ ହୋଇ ଯାଇଅଛି । ମୂଳଗ୍ରନ୍ଥର ପ୍ରଥମାଧ୍ୟାୟ ଶେଷରେ ମଧ ଦେଖିବେ ରାମଚନ୍ଦ୍ର ଶଂସିତ ପ୍ରଶ୍ନ କଲାରୁ (୧) ଅଗସ୍ତି ଦ୍ୱିତୀୟାଧ୍ୟାୟ ପ୍ରାରମ୍ଭରୁ ରାମଚନ୍ଦ୍ରଙ୍କୁ କହିଅଛନ୍ତି କି, ହେ ରାମ ! ଇନ୍ଦ୍ରଜିତଙ୍କର ଚରିତ କହିବାକୁ ଯାଇ ପ୍ରଥମତଃ ତଜ୍ଜନକ ରାବଣଙ୍କର ଜନ୍ମାଦି ବୃତ୍ତାନ୍ତ କହୁଅଛୁଁ, ଶ୍ରବଣ କରନ୍ତୁ । (୨) ବଳରାମ ଦାସେ ମଧ ଏ ସ୍ଥଳେ ପ୍ରୋକ୍ତ ପ୍ରଶ୍ନର ପରେ ଏତାଦୃଶ କ୍ରମରେ କେବଳ ରାବଣ ଚରିତର ଅବତରଣିକା ସହ "ରାବଣି ଚରିତ କହୁଅଛୁ ଶୁଣ" ବୋଲି ଲେଖିଥିବେ । ତାହା ପୁଣି ଅନୁଲେଖକଙ୍କଦ୍ୱାରା ବିକୃତ ଓ ବିଚ୍ଛିନ୍ନ ହୋଇ ଯାଇଅଛି । (୩) ଶ୍ରୀମାନ ବଳରାମ ଦାସେ ମୂଳରାମାୟଣ ଗ୍ରନ୍ଥର ସଂପୂର୍ଣ୍ଣ ଅନୁସରଣରେ କେବଳ ନିଜର ରାମାୟଣ ଅନୁବାଦିତ କରିଅଛନ୍ତି । ତଦୁକ୍ତ ପ୍ରଧାନ ପ୍ରଧାନ ଘଟନାମାନଙ୍କୁ କୁତ୍ରାପି ତ୍ୟାଗ ନକରି ପୁରାଣାନ୍ତରିତ କେତକ ଅତିରିକ୍ତ କଥାକୁ ସାଙ୍ଗତ୍ୱ – ସଂଲଗ୍ନତାସହ ଯଥାସ୍ଥାନମାନଙ୍କରେ ସଂଯୋଗ କରିଅଛନ୍ତି । ତଥାପି କେତକ ସ୍ଥଳରେ ଅନୁଲେଖକ ଆଉ ଛାପାକାରଙ୍କର ଅନଭିଜ୍ଞତା ଆଉ ଅସାବଧାନତା ଯୋଗୁଁ ପାଠ ଅପାର୍ଥ ହୋଇଯାଇଅଛି । ଏହାର ଦୃଷ୍ଟାନ୍ତ ସ୍ୱରୂପ ଏହି କାଣ୍ଡର ଗୋଟିଏ ମାତ୍ର ଷଷ୍ଠ ପୃଷ୍ଠାଟି ଧରି ପାଠକ ମୌଳିକ ଶ୍ଳୋକମାନଙ୍କ ସହ ମିଳାଇ ନିଅନ୍ତୁ; ଏ କଥାର ସତ୍ୟତା ଉପଲବ୍ଧ କରିପାରିବେ ଏବଂ କବି ମହୋଦୟ ଏଥି ମଧରେ ନିଜର ଅତିରିକ୍ତ କଥା କିଭଳି କ୍ରମରେ ଯୋଗ କରିଅଛନ୍ତି,

---

(୧) କଥଂ ସ ରକ୍ଷଃ ପ୍ରବରୋ ମହାବଳଃ (ଇନ୍ଦ୍ରଜିତ୍)
ମହାହବେ ଚଣ୍ଡବଳୋଽତି ଶୌର୍ଯ୍ୟଃ ।
କଥଂ ଚ ସର୍ବାଭ୍ୟଧିକଃ ପରାକ୍ରମେ
କୁରୁ ପ୍ରସାଦଂ ବଦ କୁମ୍ଭଯୋନେ ।

(୨) ଶୃଣୁ ରାମ ଯଥାବୃତ୍ତଂ ତସ୍ୟ ତେଜୋ ବଳଂ ମହତ
ଜଘାନ ଚ ରିପୂନ୍ ଯୁଦ୍ଧେ ଯଥା ବଧ୍ୟଶ୍ଚ ଶତ୍ରୁଭିଃ ।
ଅହଂ ତେ ରାବଣସ୍ୟାଦ୍ୟ କୁଳଂ ଜନ୍ମଚ ରାଘବ
ବର ପ୍ରଦାନଂଚ ତଥା ତସ୍ମୈ ତତ୍ତ୍ୱଂ ବ୍ରବୀମିତେ ।

(୩) ମୁନି ବୋଇଲେ ହୋ ରାମ ! ଶୁଣ ଏକ ମନେ
ରାବଣିର ଉତପତି ଯେବଣ ବିଧାନେ । ୬ ପୃଷ୍ଠା

ଏ ସ୍ଥଳେ ଅନୁଲେଖକଙ୍କ ଲେଖାରେ ରାବଣପଦ ରାବଣି ହୋଇଅଛି ଏବଂ ଆଗରୁ କେତେକ ପଦ୍ଧକ୍ତି ବିଚ୍ଛିନ୍ନ ହୋଇଯାଇଅଛି ।

ତାହା କିଛି ବୁଝି ପାରିବେ । (୧) ଏହାପରେ ରାବଣଙ୍କର ପୂର୍ବବଂଶ ସମ୍ବନ୍ଧେ ମୂଳଗ୍ରନ୍ଥରେ ଲେଖାଅଛି କି, କାଳଭଗିନୀଙ୍କ ଗର୍ଭରୁ ହେତିଙ୍କ ଔରସରେ ବିଦ୍ୟୁଦ୍‌କେଶ ଜନ୍ମ ଗ୍ରହଣ କରିଥିଲେ । ତାହାଙ୍କ ଔରସରେ ସନ୍ଧ୍ୟା ତନୟାଙ୍କ ଗର୍ଭରୁ ସୁକେଶ ନାମକ ସନ୍ତାନ ଜନ୍ମିଥିଲେ । ସୁକେଶ ହର ଓ ପାର୍ବତୀଙ୍କ ପ୍ରସାଦରୁ ଚିରାୟୁ ଆଉ ଇନ୍ଦ୍ରକଳ୍ପ

---

(୧) ପୁରା କୃତଯୁଗେ ରାମ ପ୍ରଜାପତିସୁତଃ ପ୍ରଭୁଃ
ପୁଲସ୍ତ୍ୟୋ ନାମ ବ୍ରହ୍ମର୍ଷିଃ ସାକ୍ଷାଦିବ ପିତାମହଃ ।୪।
ନାନୁକୀର୍ତ୍ତ୍ୟା ଗୁଣାସ୍ତସ୍ୟ ଧର୍ମତଃ ଶୀଳତସ୍ତଥା
ପ୍ରଜାପତେଃ ପୁତ୍ର ଇତି ଶକ୍ୟଂ ବକ୍ତୁଂ ହି ନାମତଃ ।୫। × ×
ସ ତୁ ଧର୍ମପ୍ରସଙ୍ଗେନ ମେରୋଃ ପାର୍ଶ୍ୱେ ମହାଗୀରେଃ । ୨ସ. ୪ ଶ୍ଳୋ
ଅନେକ ଯୁଗର ଅନ୍ତେ ସତ୍ୟ ଯୁଗ ଥିଲା । ବ୍ରହ୍ମାର ତହୁଁ ଯେ ଜାତ ପୁଲସ୍ତି ହୋଇଲା ।
ସୁନ୍ଦର ସୁକୁମାର ପର୍ବତକାୟା ଘେନି । ତାହାକୁ କି ପଟାନ୍ତର ପ୍ରଚଣ୍ଡ ବହନି ।
ତ୍ରେତା ଯୁଗେ ସେ ମୁନି ଅନେକ ତପକଲା । ତପିଙ୍କର ମଧରେ ସେ ଉତ୍ତମ ହୋଇଲା ।
କେବଣ ହିଁ ଦିନେ ସେହି ମେରୁ ପୃଷ୍ଠେ ମିଳି । ତହିଁ ଭେଟିଲା ତିରିଣ ରାଜ ତପଶାଳୀ ।
ତୃଣବିନ୍ଦୋସ୍ତୁ ରାଜର୍ଷେସ୍ତନୟା ନ ଶୃଣୋତି ତଦ୍
ଗତ୍ୱା ଽଽଶ୍ରମପଦଂ ତତ୍ର ବିଚଚାର ସୁନିର୍ଭୟା ।୧୩।
ନ ଚାପଶ୍ୟତ୍ସଖୀସ୍ତତ୍ର କାଂଚିଦଭ୍ୟାଗତାଂ ସଖୀମ୍ ।୧୪।
ଏତସ୍ମିନ୍ନେବ କାଳେତୁ ପ୍ରାଜାପତ୍ୟୋ ମହାନ୍ ଋଷିଃ
ସ୍ୱାଧ୍ୟାୟମକରୋଦ୍ ତତ୍ର ତପସା ଦ୍ୟୋତିତ ପ୍ରଭଃ ।୧୫।
ସାତୁ ବେଦଧ୍ୱନିଂ ଶ୍ରୁତ୍ୱା ଦୃଷ୍ଟ୍ୱା ଚୈବ ତପୋଧନମ୍
ଅଭବଦ୍ ପାଣ୍ଡୁଦେହା ସା ସୁବ୍ୟଞ୍ଜିତଶରୀରଜା ।୧୬।
ବଭୂବ ଚ ସମୁଦ୍‌ବିଗ୍ନା ଦୃଷ୍ଟ୍ୱା ତଦ୍ ରୂପମାତ୍ମନଃ
ଇଦଂ ମେ କିଂ ତ୍ୱିତିଜ୍ଞାତ୍ୱା ପିତୁର୍ଗତ୍ୱାଽଶ୍ରତଃସ୍ଥିତା ।୧୭।
ସେଦିନ ତିରିଣ ରାଜନ ନନ୍ଦିନୀ ତଥିଲା । ମୁନିର ଶାପ ଥିବାର ସେ ଜାଣି ନଥିଲା ।
ଅଜ୍ଞାନେ ସୁନ୍ଦରୀ ଯେ ଅଇଲା କେଳିକରି । ଦେଖିଲାକ ଧ୍ୟାନରେ ବିଜୟେ ତପଚାରୀ ।
ସୁସ୍ୱର ଧ୍ୱନି ଶୁଣିଣ କାମେ ବଶଗଲା । ମଦନ ଉନମତ୍ତେ ଶରୀର ରୋମାଞ୍ଚିଲା ।
ମୁନିର ଶାପେ ଯେ ହୋଇଲା ଗର୍ଭବାସ । ଛନ ଛନ ମନ ତାର ଖର ଯେ ନିଃଶ୍ୱାସ ।
ପାଣ୍ଡୁର ବର୍ଣ୍ଣ ତା ଅଙ୍ଗ ଦିଶିଲାକ ତହୁଁ । ସୁନ୍ଦରୀ ଯେ ଚେଷ୍ଟାମାନ ମଣିଲାକ ତହୁଁ ।
ମନେ ବିଚାରଇ ଯେ ହୋଇଲି ମୁହିଁ ଦୋଷୀ । ଅଦଭୁତେ ଗର୍ଭ ମୋର ହୋଇଲାକ ଆସି ।
କିସ ବୋଲି ମୁଁ କହିବି ସଖୀଙ୍କର ଆଗେ । ମାତା ଶୁଣି ଗାଳି ଦେବେ ମୋତେ ବଇରାଗେ ।
ଏତେ ଭାବି ବାଳା ନିଜ ଆଶ୍ରମକୁ ଗଲା । ପିତାମାତାଙ୍କର ଯେ ଛାମୁରେ ଜଣାଇଲା । ଇତ୍ୟାଦି ।
କିନ୍ତୁ ଏଥି ମଧରେ
ସୁମେରୁ ଶିଖରେ ଯେ ବହଇ ସୁରାସୁରୀ । ବିବିଧ ସ୍ୱାଦୁଫଳ ପାଚିଣ ଅଛି ପୁରି ।
ବହଇ ସୁରାସୁରୀ – ଏ ପଦଟି ଅପାର୍ଥ ହୋଇଯାଇଅଛି । ଇତ୍ୟାଦି ।

ପରାକ୍ରମୀ ଥିଲେ । ଏହି ସୁକେଶଙ୍କ ଔରସରୁ ଗ୍ରାମଣୀ ନାମକ ଗନ୍ଧର୍ବଙ୍କ କନ୍ୟା ଦେବବତୀଙ୍କ ଗର୍ଭରୁ ମାଳୀ, ସୁମାଳୀ ଓ ମାଲ୍ୟବନ୍ତ ନାମକ ତିନିଗୋଟି ପୁତ୍ର ଜନ୍ମଗ୍ରହଣ କରିଥିଲେ । ପରଂତୁ ହେତିଙ୍କ ଭ୍ରାତା ଯେ ପ୍ରହେତି ସେ ଧର୍ମପ୍ରାଣତାରେ ଦାର ଗ୍ରହଣ ନକରି ବାନପ୍ରସ୍ଥ ଅବଲମ୍ବନ କରିଥିଲେ । (୧)

ଦାସଙ୍କ ରାମାୟଣରେ ମଧ୍ୟ ରାବଣଙ୍କ ପୂର୍ବପୁରୁଷ ସମ୍ବନ୍ଧେ ପ୍ରାୟଶଃ ଏହାହିଁ ଲେଖାଅଛି । କିନ୍ତୁ ଅନେକତ୍ର ପାଠର କିଂଚିତ୍ ଅନ୍ୟଥାକରଣ ଦେଖାଯାଉଅଛି । ବିଶ୍ୱାସ ହୁଏ, ଦାସଙ୍କର ମୂଳାନୁମତ ଲେଖାକୁ ଅନୁଲେଖକମାନେ ଅନଭିଜ୍ଞତା ଯୋଗୁଁ ଏପରି ଅନ୍ୟଥାକୃତିରେ ପରିଣତ କରି ଅଛନ୍ତି । (୨)

ମୂଳ ଗ୍ରନ୍ଥରେ ଲେଖାଅଛି କି ହେତିଙ୍କ ପୁତ୍ର ବିଦ୍ୟୁତ୍‌କେଶ ସନ୍ଧ୍ୟା ତନୟାକୁ ବିବାହ କରିଥିଲେ । (୩) କିନ୍ତୁ ଏହି ରାମାୟଣରେ ତାହା ଅନ୍ୟଥା ପ୍ରତିପାଦିତ ଅଛି । (୪) ଦାସଙ୍କ ରାମାୟଣରେ ଦେଖିବେ, ବିଦ୍ୟୁତ୍‌କେଶଙ୍କ ପୁତ୍ର ସୁକେଶଙ୍କର ନାମ ସୁକେଶୀ ହୋଇଅଛି ଏବଂ ତତ୍‌ସଂକ୍ରାନ୍ତ ଚରିତ ମୂଳକ ପଦ୍ୟମାନ ଅନେକତ୍ର ଭିନ୍ନାର୍ଥରେ ସଂବଳିତ ହୋଇଯାଇ ଅଛି; ଅପିଚ ସ୍ଥାନେ ସ୍ଥାନେ ଅପାର୍ଥ ମଧ ହୋଇପଡ଼ିଅଛି । (୫) ଏଥିରେ ପୁଣି ଲେଖାଅଛି ଏହି ସୁକେଶ ବିଶ୍ୱାବସୁ ଗନ୍ଧର୍ବଙ୍କ

---

(୧) ପ୍ରହେତିର୍ଧାର୍ମିକସ୍ତତ୍ର ତପୋବନଗତସ୍ତଦା । ୪ ସର୍ଗ

(୨) ହେତି ପ୍ରହେତି ବୋଲିଣ ତାଙ୍କ ନାମ ହେଲା
ପ୍ରହେତି ମହାତ୍ମା ଦାର ଗ୍ରହଣ ନକଲା ।
ଧର୍ମ ଆଶ୍ରିତେ ରହି ସେ ହୋଇଲା ତ୍ରିଦୀବୀ
କାଳେ ପ୍ରାପତ ତାକୁ ହୋଇଲା ପୁରଦେବୀ । ୧୦ ପୃଷ୍ଠା

ଏ ସ୍ଥଳେ ପୁରଦେବୀ ପଦଟି ସାନ୍ୱୟ ଓ ସାର୍ଥକ ଜଣାଯାଉ ନାହିଁ, ଇତ୍ୟାଦି ।

(୩) ସନ୍ଧ୍ୟାୟାସ୍ତନୟା ସୋଽଥ ସନ୍ଧ୍ୟାତୁଲ୍ୟାଂ ପ୍ରଭାବତଃ
ବରୟାମାସ ପୁତ୍ରାର୍ଥଂ ହେତି ରାକ୍ଷସପୁଙ୍ଗବଃ – ୪ର୍ଥ ଶ୍ଳୋକ ୨୧ ସର୍ଗ
ସନ୍ଧ୍ୟାୟାସ୍ତନୟାଂ ଲବ୍ଧ୍ୱା ବିଦ୍ୟୁତ୍‌କେଶୋ ନିଶାଚରଃ
ରମତେ ସ ତୟାସାର୍ଦ୍ଧଂ ପୌଲୋମ୍ୟା ମଘବାନିବ – ୪ ସର୍ଗ ୨୩ ଶ୍ଳୋ

(୪) ବିଦ୍ୟୁତକେଶ ନାମେ ହୋଇଲା ବିଦ୍ୟମାନ
ବିଦ୍ୟୁତ ତେଜ ଦିନେ ଦିଶଇ ତା ବଦନ ।
ଶାଳବେଣୁକର ଦୁହିତାକୁ ବିଭା ହେଲା
ବରକୁ ହି କନ୍ୟା, କନ୍ୟାକୁ ହି ବର ଘଟିଲା । ୧୦ ପୃଷ୍ଠା

(୫) ଇନ୍ଦ୍ରସରିସମ ତାକୁ ପରୀକ୍ଷା ଯେ କଲେ
ସଦାଶିବ ବର ପାଇ ଧୂମକେତୁ ହେଲେ । ୧୧ ପୃଷ୍ଠା
ଏହାର ଠିକ୍ ସଂଗତାର୍ଥତା ରହିନାହିଁ । ଅନୁଲେଖକ ଆଉ ଛାପାକାରଙ୍କର ଦୁର୍ବିଚାରରେ ଏଭଳି ଅପାର୍ଥ ହୋଇ ଯାଇଅଛି ।

ଦୁହିତା ଦେବବତୀଙ୍କୁ ବିବାହ କରିଥିଲେ; ମାତ୍ର ଏହା ଠିକ୍ ନୁହେଁ । ମୂଳ ଗ୍ରନ୍ଥରେ ଏହି କନ୍ୟାଙ୍କ ନାମ ଦେବବତୀ ଏବଂ ତାହାଙ୍କ ପିତାଙ୍କ ନାମ ଗ୍ରାମଣୀ ଲେଖାଅଛି । ସୁତରାଂ ଏହି ଗ୍ରାମଣୀ ଗନ୍ଧର୍ବ ବିଶ୍ୱାବସୁଙ୍କ ସଦୃଶ ଥିଲେ ବୋଲି ଲେଖା ଥିବାରୁ ସ୍ୱୟଂ ଦାସେ କିମ୍ବା ଅନୁଲେଖକମାନେ ଗ୍ରାମଣୀ ନାମକୁ ବିଶ୍ୱାବସୁ କରିଦେଇଅଛନ୍ତି । (୧)

ଶ୍ରୀମାନ ସାରଳା ଦାସେ ଯେପରି ନିଜର ମହାଭରତର ଅନେକ ସ୍ଥଳରେ ରାକ୍ଷସ ଜାତିର ସଦ୍ୟୋଜାତ ଗର୍ଭରୁ ସଦ୍ୟଃପ୍ରସୂତ ସନ୍ତାନର ନାମ ସଇନ୍ଦୁ କରିଅଛନ୍ତି, ବଳରାମ ଦାସେ ମଧ ତଦନୁଗତିରେ କେତେକ ସ୍ଥଳେ ତାହାହିଁ ଲେଖିଅଛନ୍ତି । (୨)

ପୁରାକାଳରେ ସୁଦ୍ଧା ଲଙ୍କା ନଗରୀରେ ଅସୁରମାନେ ନିବାସ କରୁଥିଲେ । ସମୟେ ବିଷ୍ଣୁ ସେମାନଙ୍କୁ ସେଠାରୁ ତଡ଼ି ଦେଲେ । ଏହି ପ୍ରସ୍ତାବରେ ପ୍ରଶ୍ନ ହେଲାରୁ ମୂଳଗ୍ରନ୍ଥରେ ଯେପରି କୁବେର ଓ ରାବଣଙ୍କର ଚରିତ ମଧରେ ମାଳୀ (୩) ପ୍ରଭୃତି ଏବଂ ସେମାନଙ୍କର ପୂର୍ବପୁରୁଷମାନଙ୍କର କଥା ଉତ୍ଥାପିତ ହୋଇଅଛି, ଏହି ରାମାୟଣରେ ସୁଦ୍ଧା ତାହାହିଁ ସବିସ୍ତର ବର୍ଣ୍ଣିତ ଅଛି । ଏ ପର୍ଯ୍ୟନ୍ତ ମାଳୀ ପ୍ରଭୃତିଙ୍କୁ ବିଷ୍ଣୁ ନିହତ କରିଥିବାର ଚରିତମାନ ଉକ୍ତ ହୋଇଅଛି । ବଳରାମ ଦାସଙ୍କ ରାମାୟଣର କେତକ ସ୍ଥଳରେ ସୁମାଳିଙ୍କ ଦୁହିତା, ଅପିଚ ରାବଣାଦିଙ୍କର ମାତାଙ୍କ ନାମ 'ନିକଷା' ଆଉ କେତେକ ସ୍ଥଳରେ 'ନୈକେଶୀ' ହୋଇଅଛି । କିନ୍ତୁ ଏହାଙ୍କର ନାମ ମୂଳଗ୍ରନ୍ଥରେ କୈକସୀ ଲେଖାଅଛି । (୪) ବୋଧହୁଏ

---

(୧) ଛାପା ଓଡ଼ିଆ ରାମାୟଣର ୧୧ ପୃଷ୍ଠା ପଢ଼ନ୍ତୁ ।
ସୁକେଶଂ ରାକ୍ଷସଂ ଦୃଷ୍ଟ୍ୱା ବରଲବ୍ଧଂ ଚ ରାଘବ
ଗ୍ରାମଣୀର୍ନାମ ଗନ୍ଧର୍ବୋ ବିଶ୍ୱାବସୁ ସମପ୍ରଭଃ ।
ତସ୍ୟ ଦେବବତୀ ନାମ ଦ୍ୱିତୀୟା ଶ୍ରୀରିବାତ୍ମଜା ।
ତାଂ ସୁକେଶାୟ ଧର୍ମେଣ ଦଦୌ ରକ୍ଷଃ ଶ୍ରିୟଂ ଯଥା । ୫ମ ସର୍ଗ

(୨) ପାର୍ବତୀ ବୋଇଲେ ସେ ଅସୁରୀ ଚଣ୍ଡାଳୁଣୀ
ପ୍ରସବିବ ପୁତ୍ର କେସନେ ମୂର୍ଚ୍ଛିଲା ତରୁଣୀ ।
ଅଟୁଁ ତୁ ରାକ୍ଷାସୁଣୀ ନୋହିବ ଗର୍ଭବାସ
ସଇନ୍ଦୁ ପାତ ନ କରି ଉପୁଜାଅ ଶିଷ୍ୟ ୧୦ ପୃଷ୍ଠା

ଏହାର ସଂସ୍କୃତ ପ୍ରମାଣ

ଉମୟାପି ବରୋଦତ୍ତଃ ରାକ୍ଷସୀନା ନୃପାତ୍ମଜ
ସଦ୍ୟୋପଲଛି ଗର୍ଭସ୍ୟ ପ୍ରସୂତିଃ ସଦ୍ୟ ଏବ ଚ ।
ସଦ୍ୟଭବ ବୟଃ ପ୍ରାପ୍ତିଃ ମାତୁରେବ ବୟସଙ୍କରଣଂ - ୧.୪ର୍ଥ ସର୍ଗ

(୩) ମାଳିର ନାମ ମୂଳଗ୍ରନ୍ଥରେ ମାଲ୍ୟବାନ ହୋଇଅଛି । ଯଥା - ଜ୍ୟେଷ୍ଠଃ ସ ମାଲ୍ୟବାନ୍ ।

(୪) ସୁକେଶୀ ନାମ ନାମ୍ନାହଂ ଶେଷଂତ୍ୱଂ ଜ୍ଞାତୁମର୍ହସି । ୭ ସର୍ଗ ୨୦ ଶ୍ଳୋ
ଅଧାତ୍ମ ରାମାୟଣରେ ଏହାଙ୍କ ନାମ କୈକଶୀ ଲେଖାଅଛି । ୧ମ ସର୍ଗ ଦେଖନ୍ତୁ ।

ଦାସେ ମଧ କୈକସୀ କେବଳ ଲେଖିଥିଲେ । କୈକସୀ ପଦଟି କ୍ରମଶଃ ଅନୁଲେଖକଙ୍କ ଲେଖାରେ ନୈକେଶୀ, ନୌକଶୀ ହୋଇଯାଇଅଛି । ବଳରାମ ଦାସେ ଯେପରି ନୈକଶୀଙ୍କ ଗର୍ଭରୁ ରାବଣଙ୍କର ସଇନ୍ଦୁ ସନ୍ତାନତ୍ୱ ବା ରମଣର ଅବ୍ୟବହିତ ପରେ ସଦ୍ୟଃ ପ୍ରସୂତତ୍ୱ କହିଅଛନ୍ତି, (୧) ମୂଳଗ୍ରନ୍ଥରେ ସେପରି ନୁହେଁ । ତହିଁରେ ପ୍ରାକୃତିକ ନିୟମାନୁସାରେ ଯଥା ସମୟରେ କେବଳ ମାତୃଗର୍ଭରୁ ରାବଣାଦିଙ୍କର ଉତ୍ପତ୍ତି ଉକ୍ତ ଅଛି । (୨) ତଥାପି ଦାସଙ୍କର ଏହି ଯେ ସଦଃ ପ୍ରସୂତିର ପ୍ରତିପାଦନ ଏକାନ୍ତ ଅସମୀଚୀନ ବା ଅସଂଗତ ନୁହେଁ । କାରଣ ଇତଃପୂର୍ବେ ସୁକେଶଙ୍କ ଜନ୍ମସ୍ଥଳରେ ପାର୍ବତୀ ଦେବୀ ଅସୁରୀ ପ୍ରତି ଯେ ବରପ୍ରଦାନ କରିଅଛନ୍ତି, ତଦ୍‌ଦ୍ୱାରା ରାକ୍ଷସ ଜାତିର ସଦ୍ୟଃପ୍ରସୂତି ପ୍ରତିପାଦିତ କରାଯାଇଅଛି । ତଥାଚ ରାମାୟଣ ଏବଂ ପୁରାଣାନ୍ତରମାନଙ୍କରେ ମଧ ରାବଣଙ୍କର ଜନ୍ମ ମାତ୍ରେ ବୟଃପ୍ରାପ୍ତି ଆଉ ଜଗଦ୍ ରାବଣ-ରାବ-ଜନକତ୍ୱ ଉକ୍ତ ଅଛି । ଦାସ ମହାଶୟ ଶଂସିତ କାରଣକୁ ଧରି ବିଭୀଷଣାଦିଙ୍କର ଜନ୍ମ ମଧ ତାଦୃଶ କେବଳ କହିଅଛନ୍ତି । ନୌକେଶୀ ଚାରି ମାସରେ ଚାରିଗୋଟି ସନ୍ତାନ ପ୍ରସବ କରିଥିବାର କଥାକୁ ସେ ସ୍ପଷ୍ଟତଃ ଲେଖିଯାଇ ଅଛନ୍ତି । (୩) ମାତ୍ର ମୂଳ ଗ୍ରନ୍ଥରେ ଏମାନଙ୍କର ଉତ୍ପତ୍ତିର କ୍ରମ ଠିକ୍ ଏହିପରି ଉକ୍ତ ନାହିଁ । (୪)

ଏହାପରେ ମୂଳଗ୍ରନ୍ଥରେ ଏହି ନବମ ସର୍ଗର ଅନ୍ତରେ ଦେଖିବେ ସମୟେ କୁବେର ପିତା ବିଶ୍ରବାଙ୍କ ପାଦବନ୍ଦନାର୍ଥ ଦେବବୈଭବରେ ପୁଷ୍ପକାରୋହଣ ପୂର୍ବକ ତତ୍ର ଉପଗତ ହୋଇଥିଲେ । ତଦା ତାହାଙ୍କୁ ରାବଣଙ୍କ ମାତା ଦେଖି ଅପିଚ ନିଜର ପୁତ୍ର ତାଦୃଶ

---

(୧) ଅସ୍ତ ହେଲା ବୋଲିଣ ବୋଇଲେ ତପଚାରୀ
ନଉକେଶୀ ସଙ୍ଗରେ ରମଣ ଭୋଗକରି ।
ତତକ୍ଷଣେ ପୁତ୍ରେକ ହୋଇଲା ତହୁଁ ପାତ
ଥରହର ହୋଇଣ ଯେ କମ୍ପିଲା ଜଗତ । ୧୭ ପୃ.

(୨) ଏବମୁକ୍ତ୍ୱା ତୁ ସା କନ୍ୟା ରାମ କାଳେନ କେନଚିତ୍
ଜନୟାମାସ ବୀଭତ୍ସଂ ରକ୍ଷୋରୂପଂ ସୁଦାରୁଣମ୍
ଦଶଶୀର୍ଷଂ ମହାଦଂଷ୍ଟ୍ରଂ ନୀଳାଞ୍ଜନ ଚ ୟୋପମମ୍ ୯ ସର୍ଗ ୨୭ ଶ୍ଳୋ

(୩) ପୁଣି ହିଁ ପୁତ୍ରେକ ପ୍ରସବିଲା ସେହି ନାରୀ
ଦେଖିଣ ସନ୍ତୋଷ ଯେ ହୋଇଲେ ତପଚାରୀ ।
ବିଭୀଷଣ ନାମ ଗୋଟି ତାହାକୁ ହିଁ ଦେଲେ
ଚାରି ମାସେ ଚାରି ଗୋଟି ଗର୍ଭ ଉପୁଜିଲେ ।
ମାସକେ ସୁନ୍ଦରୀ ଯେ ହୁଅଇ ରଜୋବତୀ
ଶୁଦ୍ଧ ସ୍ନାନ ଦିନେ ମୁନି କରନ୍ତି ଯେ ରତି । ଇତ୍ୟାଦି ୧୮ ପୃଷ୍ଠା

(୪) ମୂଳ ଗ୍ରନ୍ଥରେ ଉ.କା. ନବମ ସର୍ଗ ଦେଖନ୍ତୁ ।

ଐଶ୍ୱର୍ଯ୍ୟଶାଳୀ ନ ହେବାରୁ ବହୁ ଦୁଃଖ ପ୍ରକାଶ କରି (୧) ଥିଲେ ଏବଂ ସେଥିପାଇଁ ସଯତ୍ନ ହୁଅ ବୋଲି ପୁତ୍ରଙ୍କୁ ଅନୁରୋଧ କରିଥିଲେ । କିନ୍ତୁ ବଳରାମ ଦାସେ ଏ ସ୍ଥଳେ ଏତତ୍ ସମ୍ବନ୍ଧୀୟ ଚରିତକୁ ନାନା ପ୍ରକାର ଅବାନ୍ତର କଥାରେ ପଲ୍ଲବିତ କରିଅଛନ୍ତି ଏବଂ ଏଥିମଧ୍ୟରେ ବିଶ୍ରବାଋଷି ନିଜର ଅସୁର-ସ୍ତ୍ରୀ ବିବାହ ଆଉ ଦୁଷ୍ଟ-ଚେଷ୍ଟ ରାବଣାଦି ଜନନ କଥା ଭାବି ବଡ଼ ଅନୁତପ୍ତ ହୋଇଥିବା ଲେଖିଅଛନ୍ତି । ମୂଳ ରାମାୟଣରେ ଅନୁକ୍ତ ଋଷିଙ୍କର ଏହି ଅନୁତାପାଦିର କଥାମାନ ବୋଧହୁଏ ବଳରାମ ଦାସ ମହାଶୟ ପୁରାଣାନ୍ତରକୁ ଅନୁସରି ଲେଖି ଅଛନ୍ତି; ଏସବୁ ତାହାଙ୍କର ବୃଥା – କଳ୍ପିତ ନୁହେ ।

ମୂଳ ଉତ୍ତର କାଣ୍ଡ ଦଶମ ସର୍ଗରେ ଲେଖାଅଛି, କୁବେରଙ୍କ ଦେବସଂପତ୍ତି ଦର୍ଶନରେ ବିମନାୟମାନା ମାତାଙ୍କର ପ୍ରରୋଚନାରେ ସାନୁଜଦ୍ୱୟ ରାବଣ × × × ତପସ୍ୟା ବଳରେ ବ୍ରହ୍ମାଙ୍କ ପ୍ରସାଦରୁ ଯଥାଭିଳଷିତ ବରପ୍ରାପ୍ତ ହେଲେ । କିନ୍ତୁ ବଳରାମ ଦାସଙ୍କର ରାମାୟଣରେ ମୌଳିକ ନବମାଧ୍ୟାୟର ପାଠର ଅନୁବାଦନର ପରେ ଲେଖାଅଛିକି କୁମ୍ଭକର୍ଣ୍ଣ ସୁବଳ (ସୁବେଳ) ପର୍ବତର ଶିଖକୁ ଯାତ୍ରା କଲେ । ସେ ସମୟରେ ସ୍ୱର୍ଗର ଦେବପୁରୀ ଦେଖି ପ୍ରଲୋଲୁପତା ସହ ହରିଚନ୍ଦନାଦି ଭୂଷିତ ନନ୍ଦନ କାନନରେ ପ୍ରବେଶକରି ବନବୈଭବ ସବୁ ଉଜାଡ଼ କରିଗଲେ ଏବଂ ନିଷେଧକାରୀ ଦେବଗନ୍ଧର୍ବାଦିଙ୍କୁ ନିହତ କଲାପରେ ଦେବେନ୍ଦ୍ରଙ୍କୁ ପରାସ୍ତ କରିପକାଇଲେ । (୨)

ଏ ସବୁକଥା ମୂଳଗ୍ରନ୍ଥରେ ଏ ସ୍ଥଳରେ ଲେଖା ନାହିଁ । ସୁତରାଂ ସୁବଳ ପର୍ବତର ଶିଖରରେ ଦେବପୁରୀର ଅସ୍ତିତ୍ୱ ସମ୍ଭବ ବୋଧ ହୋଉନାହିଁ । ଅତ୍ରତ୍ୟ ଦାସଙ୍କ ଲିଖିତ ପାଠତକ ଅଂଶତଃ ଅନୁଲେଖକଙ୍କଦ୍ୱାରା ବିକୃତଭାବାପନ୍ନ ହୋଇଯାଇଥିବା ଅନୁମିତ ହୋଉଅଛି ।

ଏହାପରେ ପୁଣି ଏଥିରେ ଲେଖାଅଛି, ସେହି ସୁବଳ ପର୍ବତର ନଳ ବାଟେ ସେହି ଦିନ କେବଳ ରାବଣ ପାତଳପୁରକୁ ଯାଇଥିଲେ, ଇତ୍ୟାଦି । (୩)

---

(୧) ଛାପା ପୁସ୍ତକରେ ୧୮ ପୃଷ୍ଠାର ଅପର ଭାଗଠାରୁ ୨୧ ପୃଷ୍ଠା ପର୍ଯ୍ୟନ୍ତ ପଢ଼ି ନିଅନ୍ତୁ । ଏସବୁ କଥା ବୁଝିପାରିବେ ।

(୨) ଘରୁ ବାହାର ହୋଇଲା କୁମ୍ଭକର୍ଣ୍ଣବୀର । ଯାଇ ମିଳିଲା ସୁବଳ ଗିରିର ଉପର ।
ଦେଖି ଅମରାବତୀ ପୁର ବିଚ୍ଛେପନ । ବାରି ନ ପାରଇ ଯେ ଦିଶଇ ଛନ ଛନ । ଇତ୍ୟାଦି (୨୧ ପୃ.) ।

(୩) ଯେଉଁ ଦିନେ କୁମ୍ଭକର୍ଣ୍ଣ ସ୍ୱର୍ଗକୁ ହିଁ ଗଲା
ସେହି ଦିନ ଯେ ଦଶଗ୍ରୀବା ପାତାଳେ ପଶିଲା ।
ସୁବଳୟା ଗିରିପାଶେ ଅଛଇ ବିବର
ଦେଖିବ ବୋଲି ସେ ବାଟେ ଗଲାକ କୁମର । ୨୩ ପୃଷ୍ଠା

ରାବଣ ବିବର ଦେଇ ପାତାଳରେ ପ୍ରବେଶକରି ଦେଖିଲେ ଯେ ତତ୍ରତ୍ୟ ରାକ୍ଷସବୀରମାନେ ସତତ ଯୁଦ୍ଧସନ୍ନାହରେ ସନ୍ନଦ୍ଧ ଅଛନ୍ତି । ରାବଣ ତଦା ସେମାନଙ୍କୁ ଏହି ଅସ୍ଥାନସନ୍ନାହର କାରଣ ଜିଜ୍ଞାସା କଲାରୁ ସେମାନେ କହିଲେ, ବିଷ୍ଣୁଙ୍କ ଭୟରେ ଆମ୍ଭେମାନେ ଅନବରତ ଏପରି ସନ୍ନଦ୍ଧ ରହୁଁ । ରାବଣ କହିଲେ, ସେହି ରାକ୍ଷସ ଜାତିର ଶତ୍ରୁ ବିଷ୍ଣୁଦେବ ତ ବର୍ତ୍ତମାନ ସନ୍ନିହିତ ନାହାନ୍ତି; ଏହେତୁ ତୁମ୍ଭମାନଙ୍କର ଏହି ସନ୍ନହନ ଅନାବଶ୍ୟକ କେବଳ । ପାତାଳବାସୀ ଦୈତ୍ୟମାନେ କହିଲେ, ତୁମେ କି ବିଷ୍ଣୁଙ୍କ ମାୟା ଜାଣନାହିଁ । ସେପରା ସମୟେ କାଷ୍ଠ ମଧରୁ ସହସା ଆବିର୍ଭୂତ ହୋଇ ହିରଣ୍ୟକଶିପକୁ ବିଦାରି ଥିଲେ । ଆଉ ସମୟେ ସେ ବାମନ ରୂପରେ ବଳିଙ୍କର ସର୍ବନାଶ କରିଥିଲେ । ସେହି ବିଷ୍ଣୁ ପୁଣି ମାଳୀ ଓ ମାଲ୍ୟବନ୍ତଙ୍କୁ ନିହତ କରିଦେଲାରୁ ତାହାଙ୍କ ଭ୍ରାତା ସୁମାଳୀ ନିତାନ୍ତ ଭୟଭୀତତାରେ ନିଜର ଲଙ୍କାରାଜ୍ୟ ତ୍ୟାଗକରି ପାତାଳ ପୁରକୁ ବାହାରି ଆସିଅଛନ୍ତି । ତେତିକିବେଳେ ପାତାଳସ୍ଥ ସେହି ରାକ୍ଷସମାନେ ରାବଣଙ୍କୁ ଏହି ଘଟନାମାନଙ୍କର ଆମୂଳାନ୍ତ ସଂକ୍ଷିପ୍ତ ବିବରଣମାନ ଜଣାଇଲାପରେ ଫେର୍ କହିଲେକି ଯେଉଁ ସୁମାଳୀ ବିଷ୍ଣୁଙ୍କ ଭୟରେ ପାତାଳରେ ଲୁଚିରହି ଥିଲେ, ସେ ପୁଣି ନିଜର ଦୁହିତା ନିକଷାଙ୍କୁ ସଙ୍ଗେ ନେଇ ବିଶ୍ରବା ଋଷିଙ୍କୁ ପ୍ରଦାନ କରିଅଛନ୍ତି । ନିକଷାଙ୍କର ସନ୍ତାନସନ୍ତତି ଉତ୍ପନ୍ନ ହେଲେ ଆମ୍ଭେମାନେ ଫେର୍ ଆମ୍ଭମାନଙ୍କର ଲଙ୍କାରାଜ୍ୟ ପାଇପାରିବୁଁ । ରାବଣ ଏକଥାମାନ ଶୁଣିଲାକ୍ଷଣି ସେମାନଙ୍କୁ ନିଜର ପରିଚୟ ପ୍ରଦାନ କଲେ ଏବଂ ସେମାନଙ୍କ ସହିତ ସୁମାଳିଙ୍କୁ ଦର୍ଶନ କଲା ପରେ ପାତାଳରୁ ବହିର୍ଗତ ହୋଇ ପିତାମାତାଙ୍କ କତିରେ ଉପଗତ ହେଲେ ।

ଏହାପରେ ଏଥିରେ ଲେଖାଅଛି କି ଯେଉଁ ସମୟରେ କୁମ୍ଭକର୍ଣ୍ଣ ସ୍ୱର୍ଗପୁରକୁ, ରାବଣ ପାତାଳପୁରକୁ ଯାତ୍ରା କରିଥିଲେ, ତଦା ବିଭୀଷଣ ମର୍ତ୍ତ୍ୟ ପୁରରେ ଭ୍ରମଣ କରୁ କରୁ ଏକଦା ସୁବଳ ପର୍ବତରେ ଉପଗତ ହୋଇ ନିରୀକ୍ଷଣ କଲେ ଯେ ଅତି ରମଣୀୟା ଲଙ୍କା ନଗରୀ ଦେଦୀପ୍ୟମାନା ଦିଶୁଅଛି । ତତ୍ର ସେ ପ୍ରସ୍ଥାନ କରି ତତ୍ରତ୍ୟ ଯକ୍ଷମାନଙ୍କ ସହ ଆହବରେ ମାତିଥିଲେ । (୧) ସମୟେ ବିଜିଗୀଷୁ ରାବଣାଦି ଭାତୃତ୍ରୟ ଏକତ୍ରିତ ହୋଇ ପରସ୍ପର ନିଜାଚରିତ ଚରିତ ବିଜ୍ଞାପନ ପରେ ତପସ୍ୟା କରଣାର୍ଥ କୃତସଂକଳ୍ପ ହେଲେ । ମୂଳଗ୍ରନ୍ଥ ସହିତ ରାବଣାଦିଙ୍କର ବୈଭବ ଦର୍ଶନ ଏବଂ ତାଦୃଶ ଐଶ୍ୱର୍ଯ୍ୟ ପ୍ରାପ୍ତି ନିମନ୍ତେ ତପସ୍ୟା କରଣାର୍ଥ ପ୍ରସ୍ଥାନ, ଏହି ଉଭୟ ଘଟନାର ମଧରେ ଦାସଙ୍କ ରାମାୟଣରେ ସେମାନଙ୍କର ପାତାଳାଦିପୁର ତ୍ରୟରେ ଯେ ଯେ ବୈଜୟିକୀ କ୍ରିୟାମାନ ସବିସ୍ତର ବର୍ଣ୍ଣିତ

(୧) ରାବଣ ପାତାଳେ ଗଲା ସ୍ୱର୍ଗେ କୁମ୍ଭକର୍ଣ୍ଣ,
ମର୍ତ୍ତ୍ୟ ମଣ୍ଡଳେ ଭ୍ରମିଲା ସେ ଯେ ବିଭୀଷଣ ।
ସୁବଳୟା ପର୍ବତରେ ମିଳିଲା ସେ ଯାଇ । × × ×
ଲଙ୍କା ଭୁବନରେ ଯାଇ ପ୍ରବେଶ ହୋଇଲା,
ଯକ୍ଷଙ୍କ ସଙ୍ଗତରେ ତାର କଳିଗୋଳ ହେଲା । ଇତ୍ୟାଦି

ଅଛି, ସେ ସବୁ ମୂଳଗ୍ରନ୍ଥରେ ଏସ୍ଥଳରେ ଲେଖାନାହିଁ । (୧) ତଥାପି ବିଶ୍ୱାସ ହୁଏ, ପୌରାଣିକଚରିତବେତ୍ତା ବଳରାମ ଦାସ ମହାଶୟ ଏ ସବୁର ପ୍ରମାଣ ପୁରାଣାନ୍ତରରୁ ପାଇ ଏ ସ୍ଥଳରେ ବିବୃତ କରି ଅଛନ୍ତି ।

ଅତଃପର ମୂଳଗ୍ରନ୍ଥରେ ଲେଖା ଅଛି, (୨) ରାବଣାଦି ଭ୍ରାତୃତ୍ରୟ ତପସ୍ୟା କରଣାର୍ଥ ଗୋକର୍ଣ୍ଣାଶ୍ରମକୁ ପ୍ରସ୍ଥାନ କଲେ । ବଳରାମ ଦାସେ ଏହି ଗୋକର୍ଣ୍ଣ ନାମକୁ ଧରି ସେମାନଙ୍କର ତପସ୍ୟାର ସ୍ଥାନ ଉତ୍କଳ ଦେଶରେ ନିର୍ବାଚିତ କରିଅଛନ୍ତି । କିନ୍ତୁ ଏହା କି ଉତ୍କଳରେ ପ୍ରତିଷ୍ଠିତ ଗୋକର୍ଣ୍ଣ ? ଅଥବା ଭାରତ ବର୍ଷର ଦକ୍ଷିଣାଶାରେ ଶ୍ରୀ ରାମେଶ୍ୱର ନିକଟରେ ବା ତ୍ରାଭାନ୍‌କୂର ସାମ୍ରାଜ୍ୟରେ ପ୍ରତିଷ୍ଠିତ ଗୋକର୍ଣ୍ଣ ? ସ୍ଥିରତଃ କୁହାଯାଇ ନପାରେ; କାରଣ ଏହି ଗୋକାର୍ଣ୍ଣାଶ୍ରମ ସମ୍ବନ୍ଧେ ବାଲ୍ମୀକିକୃତ ରାମାୟଣରେ କିମ୍ବା ଅଧ୍ୟାତ୍ମରାମାୟଣାଦିରେ କିଛି ସବିଶେଷ ବିବରଣ ଦିଆଯାଇ ନାହିଁ । ଯେତେ ଦୂର ସମ୍ଭବ, ଏହା ଦକ୍ଷିଣ ଭାରତରେ ବିଦ୍ୟମାନ ଗୋକର୍ଣ୍ଣ ହୋଇଥାଇପାରେ । ତଥାପି କହିବାକୁ ହେବ ଯେ ଦାସଙ୍କର ଏହି ସ୍ଥାନ ନିର୍ବାଚନ ଯଥାର୍ଥ ହେଉ କିମ୍ବା ସ୍ୱଦେଶାନୁରାଗ ମୂଳକ କଳ୍ପନା-ପ୍ରସୂତ ହେଉ, ଏତତ୍ ସଂକ୍ରାନ୍ତ ପଦ୍ୟମାନଙ୍କରୁ କବିଙ୍କର ସ୍ୱଦେଶ ପ୍ରତି ଗୌରବାବହ ଆସ୍ଥା ଏବଂ କଥଂଚିତ୍ ଭୌଗଳିକ ଜ୍ଞାନ-ସମ୍ପନ୍ନତା ଜଣାଯାଉଅଛି । ବଳରାମ ଦାସେ ଲଙ୍କା ନଗରୀକୁ ଇଦାନୀଂତନ ସମଭିହିତ ସିଲୋନ ନାମକ ଦେଶ ବୋଲି, ସମଗ୍ର ଏସିଆ ମହାଦେଶକୁ ଜମ୍ବୁଦ୍ୱୀପ ବୋଲି ଅପିଚ ତତ୍ର ଆସେତୁ ହିମାଳୟବ୍ୟାପୀ ମହାଭୂଖଣ୍ଡକୁ ଭାରତଖଣ୍ଡ ବୋଲି ସମ୍ୟକ୍ ଅବଗତ ଥିଲେ । (୩) ଦାସଙ୍କର ଏହି

---

(୧) ଏସବୁ କଥା ଅଧ୍ୟାତ୍ମ ରାମାୟଣରେ ମଧ୍ୟ ଉକ୍ତ ନାହିଁ ।

(୨) ଇତ୍ୟୁକ୍ତ୍ୱା ମାତରଂ ରାମଃ ଦଶଗ୍ରୀବଃ ସହାନୁଜଃ
ଅଗଚ୍ଛଦର୍ଥ ସିଦ୍ଧ୍ୟର୍ଥଂ ଗୋକର୍ଣ୍ଣଂ ନାମଚାଶ୍ରମମ୍ । ୯ସ. ୪୪ ଶ୍ଳୋ
ଇତ୍ୟୁକ୍ତ୍ୱା ଦୁଷ୍କରଂ କର୍ତ୍ତୁଂ ତପଶ୍ଚ ଦଶକନ୍ଧରଃ
ଆଗମତ୍ ଫଳ ସିଦ୍ଧ୍ୟର୍ଥଂ ଗୋଂକର୍ଣ୍ଣଂ ତୁ ସହାନୁଜଃ । ଇତି ଅଧ୍ୟାତ୍ମ ରାମାୟଣେ - ଉ.କା ୨ ସର୍ଗ

(୩) ଦଶଗ୍ରୀବ ସଙ୍ଗେ ଅଛନ୍ତି ଭାଇବେନି ।
ତପ କରି ଗଲେ ମନେ ଅଭିମାନ ଘେନି ।
ସମୁଦ୍ର ପାର ହୋଇ ଜମ୍ବୁଦ୍ୱୀପ ଗଲେ ।
ଭାରତଖଣ୍ଡ ଉତ୍କଳ ଦେଶରେ ମିଳିଲେ ।
ବିରୋଜା ନାମେଣ ଯେ ଅଟଇ ଏକକ୍ଷେତ୍ର ।
ବ୍ରହ୍ମାର ନାଭି ସ୍ଥାନ ସେ ଅଟଇ ପବିତ୍ର ।
ଗୋକର୍ଣ୍ଣ ତୀର୍ଥ ବୋଲି ଅଛଇ ଏକ କୁଣ୍ଡ ।
ତହିଁ ସ୍ନାନ କଲେ ଯେ ନଲାଗଇ ଯମଦଣ୍ଡ ।
ସେ ତୀର୍ଥେ ମିଳିଲେ ଦଶଗ୍ରୀବ ତିନି ଭାଇ ।
ତହିଁ ତପ କଲେ ପୂର୍ବଜନ୍ମ ତପ ପାଇ । ଇତ୍ୟାଦି

ଗୋକର୍ଣ୍ଣ ନିର୍ବାଚନ ମତକୁ ମହାକବି ଉପେନ୍ଦ୍ରଭଞ୍ଜ ମହାଶୟ ମଧ୍ୟ ଅବିକଳ ଅନୁବୃତ୍ତ କରିଅଛନ୍ତି । ସେ ପୁଣି ନିଜର ବୈଦେହୀଶ ବିଳାସ କାବ୍ୟର ପ୍ରଥମ ସର୍ଗରେ ରାବଣ ଏହି ବିରଜାମଣ୍ଡଳରେ ଅଖଣ୍ଡ ସିଦ୍ଧି ଲାଭ କରିଥିବାର କହିଅଛନ୍ତି । ରାବଣଙ୍କର ତପଃକରଣ ପରିପାଟୀରେ ମୂଳ ଅପେକ୍ଷା ଦାସଙ୍କ ରାମାୟଣରେ ଶାରୀରିକ ବିଜ୍ଞାନ ମତରେ ଗୋଟିଏ ଅତିରିକ୍ତ କ୍ରମ ଦେଖାଯାଉ ଅଛି । ଦାସେ ଏ ସ୍ଥଳେ କହିଅଛନ୍ତି କି ତପଃସମାଧିରେ ସମାସୀନ ରାବଣ ନିଜର ମସ୍ତକ ଆଉ ବାହୁକୁ ବୀଣା ବାଦ୍ୟଯନ୍ତ୍ରପ୍ରାୟ କଳ୍ପି ତଦ୍ଦ୍ୱାରା ବ୍ରହ୍ମସ୍ତୁତି ରୂପକ ସାମଗାନ ଆରମ୍ଭ କରିଥିଲେ । (୧) ଦାସଙ୍କର ପ୍ରଦର୍ଶିତ ଏହି ଆଳଙ୍କାରିକ ଉପନ୍ୟାସକ୍ରମକୁ ତାହାଙ୍କ ପରବର୍ତ୍ତୀ ଉପେନ୍ଦ୍ର ଭଞ୍ଜେ ମଧ୍ୟ ବୈଦେହୀଶ ବିଳାସର ପ୍ରଥମ ସର୍ଗରେ ବର୍ଣ୍ଣନା କରିଅଛନ୍ତି ।

ଅତଃପର ତପସ୍ୟା-ତତ୍ପର ରାବଣାଦିଙ୍କର ବରପ୍ରାପ୍ତିର ବିବରଣମାନ ଦଶମ ସର୍ଗରେ ଯାହା ଯାହା ବର୍ଣ୍ଣିତ ଅଛି, ବଳରାମ ଦାସେ ମଧ୍ୟ ତାହାହିଁ ଏକୈକଶଃ ଲେଖିଯାଇ ଅଛନ୍ତି । କିନ୍ତୁ ଏଥି ମଧ୍ୟରେ ଦାସଙ୍କ ଲିଖିତ ସୀତାହରଣରେ ରାବଣ ମରଣାଦିର କଥାମାନ ମୂଳଗ୍ରନ୍ଥରେ ଏସ୍ଥଳରେ ସୂଚିତ ନାହିଁ । ତଥାପି ଏହା ପୁରାଣାନ୍ତରମାନଙ୍କରେ, ଅପିଚ ଲୋକ-ବିଶ୍ରୁତିରେ ସର୍ବଥା ପ୍ରସିଦ୍ଧ । ଅତଏବ ଦାସେ ସେହି କଥାଗୁଡ଼ିକୁ ଯଥାସ୍ଥାନରେ ଯୋଗ କରି ଦେଇଅଛନ୍ତି । (୨) ତଥାଚ ତେତିକି ବେଳେ ପୁଣି ବ୍ରହ୍ମା ରାବଣଙ୍କୁ ସମନ୍ତ ବ୍ରହ୍ମଶକ୍ତି ପ୍ରଦାନ କରିବାର ମଧ୍ୟ ସେ ଲେଖି ଅଛନ୍ତି । ରାବଣ ପ୍ରତି ବ୍ରହ୍ମଶକ୍ତିଦାନ

---

(୧) ଏମନ୍ତେ ସେ ନବଶିର ଦେଇ ହୋମ କଲା
ଆପଣାର ରୁଧିରରେ ଘୃତ ମିଶାଇଲା ।
ମୋଡ଼ିଲା ମୁଣ୍ଡକୁ କାଢ଼ିଲାକ ଏକ ମୁଣ୍ଡ
ବାମକରେ ଛିନାଇଣ କଲା ଖଣ୍ଡ ଖଣ୍ଡ ।
ହସ୍ତକୁ ପାତି ଦକ୍ଷିଣ କରେ ତାହା ଘେନି ।
ପୁଣି ତାହାକୁ ରଖିଲା ଦେଖାଇ ତର୍ଜନୀ ।
ଭୁଜେ ଭୁଜ ଦେଇ ବସାଇଲା ତାଳମାନ ।
ସାମବେଦ ଉର୍ଚ୍ଚାରି ଯେ ଗାନ୍ଧାର ଗାୟନ ।
ଆଗ ଆଠ ମୁଣ୍ଡ ଯେ ଅଗ୍ନିରେ ପଡ଼ିଜଳି ।
ଅନ୍ତଗୁଣ ଛନ୍ଦେ ଭୁଜେ ଗୁନ୍ଥିଅଛି ମାଳୀ । ଇତ୍ୟାଦି ୨୬ ପୃ.

ଦାସଙ୍କ ବର୍ଣ୍ଣିତ ରାବଣଙ୍କ ତପଃକରଣରେ ଏହି ଯେ କ୍ରମ ମୂଳ ଗ୍ରନ୍ଥରେ ମଧ୍ୟ ଏହାର ସୂଚନା ଅଛି । ଯଥା ବ୍ରହ୍ମା ରାବଣଙ୍କୁ କହୁଛନ୍ତି କି –

ହୁତାନି ଯାନି ଶୀର୍ଷାଣି ପୂର୍ବମଗ୍ନୌ ତ୍ୱୟାନଘ
ପୁନସ୍ତାନି ଭବିଷ୍ୟନ୍ତି ତଥୈବ ତବ ରାକ୍ଷସ । ୧୦ସ. ୨୧ ଶ୍ଳୋ

(୨) ଛାପା ପୁସ୍ତକରେ ୨୭ ପୃଷ୍ଠା ପଢ଼ନ୍ତୁ ।

ମୂଳଗ୍ରନ୍ଥର ଏସ୍ଥଳରେ ଲେଖା ନଥିଲେ ସୁଦ୍ଧା ଅନ୍ୟତ୍ର ଉକ୍ତ ଅଛି । ବିଭୀଷଣଙ୍କ ବର ପ୍ରଦାନରେ ବ୍ରହ୍ମା ତାହାଙ୍କୁ ଯେପରି ସ୍ୱତଃ ପ୍ରଣୋଦିତ ହୋଇ ସଂତୋଷାତିଶଯ୍ୟରେ ଅମରତ୍ୱ ପ୍ରଦାନ କରିଥିଲେ, (୧) ତାହା ଦାସଙ୍କ ରାମାୟଣରେ ଏ ସ୍ଥଳେ ଲେଖାଥିବା ଦେଖାଯାଉ ନାହିଁ । (୨) ବିଶ୍ୱାସ ହୁଏ ଏତଦ୍ ସଂକ୍ରାନ୍ତ ଗୋଟିଏ ଦୁଇଟି ପଦ୍ୟ ଅନୁଲେଖକଙ୍କ ଲେଖାରେ ଏଠାରୁ ଉଠି ଯାଇଅଛି । ଦାସ ମହାଶୟ ଅତ୍ରତ୍ୟ ପ୍ରତ୍ୟେକ ବିଷୟକୁ ଗୋଟିକ ପରେ ଅନ୍ୟଟିକୁ ନିଜର ରାମାୟଣରେ ନିହିତ କରି ଏହି ସୁପ୍ରସିଦ୍ଧ କଥାକୁ ତ୍ୟାଗ କରିବେ କାହିଁକି ? ସୁତରାଂ ବିଭୀଷଣ ଅମର ଥିଲେ, ଏକଥାକୁ ସେ ସ୍ୱୟଂ ଅପରତ୍ର ବହୁସ୍ଥଳେ ପ୍ରକାଶ କରି ଯଥାସ୍ଥାନରେ ପ୍ରକାଶ ନ କରିବେ ବା କାହିଁକି ?

କୁମ୍ଭକର୍ଣ୍ଣଙ୍କର ଯେ ସୌପ୍ତିକସୁଖ-ସୁବରପ୍ରାପ୍ତିତାର ଆଂଶିକ ବିବରଣମାନ ଠିକ୍ ନିର୍ଦ୍ଧାରିତ କରିନେବା ତେତେ ସହଜ ବ୍ୟାପାର ନୁହେ । ଏ ସମ୍ବନ୍ଧେ ମୂଳ ଗ୍ରନ୍ଥାଦିର ନାନା ସ୍ଥାନରେ ଉକ୍ତବାକ୍ୟମାନଙ୍କର ଅର୍ଥରେ ବୈଷମ୍ୟସହ ସମୟର ତାରତମ୍ୟ ଜଣାଯାଏ । ଏ ସ୍ଥଳେ ମଧ୍ୟ ସ୍ୱୟଂ କୁମ୍ଭକର୍ଣ୍ଣଙ୍କର କଣ୍ଠୋକ୍ତିରେ ସମୟର ପରିମାଣ ଠିକ୍ ନିର୍ଦ୍ଧାରିତ ହୋଇନାହିଁ । (୩) ଏ ସ୍ଥଳେ କୁମ୍ଭକର୍ଣ୍ଣ ବ୍ରହ୍ମାଙ୍କୁ କହିଅଛନ୍ତି, ମୁଁ ଅନେକବର୍ଷ ସୁସୁପ୍ତ ରହିବାକୁ ଇଚ୍ଛା କରେଁ । ବଳରାମ ଦାସେ ମଧ୍ୟ ଏହି ମୌଳିକ ବାକ୍ୟର ଅନୁଗତିରେ ସମୟର ଅନିର୍ଦ୍ଦିଷ୍ଟତା ସହ ତଦୀୟ ବର ପ୍ରାର୍ଥନା ପ୍ରକାଶ କରିଅଛନ୍ତି । (୪) କିନ୍ତୁ ଏ ବିଷୟଟି ଅଧ୍ୟାତ୍ମ ରାମାୟଣରେ ସମୟ ନିର୍ଦ୍ଧାରଣ ସହ ଅପେକ୍ଷାକୃତ ଟିକିଏ ସ୍ପଷ୍ଟ ଭାବରେ ପ୍ରକାଶିତ ଅଛି । ସେଥିରେ ଲେଖାଅଛି କି କୁମ୍ଭକର୍ଣ୍ଣ ବରାବର ଛଅମାସ ଶୋଇଲା ପରେ ଏକଦିନ ମାତ୍ର ଭୋଜନାର୍ଥ ଜାଗରୂକ ହେବେ । (୫) ମୂଳ ଏକାଦଶ ସର୍ଗରେ

---

(୧) ଯସ୍ମାଦ୍ ରାକ୍ଷସଯୋନୌ ତେ ଜାତସ୍ୟାମିତ୍ର ନାଶନ
ନାଧର୍ମେ ଜାୟତେ ବୁଦ୍ଧିଃ ଅମରତ୍ୱଂ ଦଦାମି ତେ । ଉ.କା. ୧୦ସ. ୩୨ ଶ୍ଳୋ

(୨) ଛାପା ପୁସ୍ତକରେ ୨୮ ପୃଷ୍ଠା ପଢ଼ନ୍ତୁ ଜାଣିବେ ।

(୩) ସ୍ୱପ୍ତୁଂ ବର୍ଷାଣ୍ୟନେକାନି ଦେବଦେବ ମମେପ୍ସିତମ୍
ଏବମସ୍ତିତି ତଂ ପ୍ରାହ ଦେବୋ ହୃଷ୍ଟା ଦିବୌକସଃ । ୧୦ସ. ୪୪ ଶ୍ଳୋ

(୪) ଯେବେତୁ ପ୍ରସନ୍ନ ମୋତେ ହୋଇଲୁ ଗୋସାଇଁ
ଦିଅସି ବର ଯେ ମୁଁ ନିଶ୍ଚୟ ଶୋଇ ଥାଇ ।
ନିଦ୍ରା ହସି ପ୍ରୀତି ମୋତେ ନ ରୁଚଇ ଆନ
ଅସ୍ତୁ ହେଉ ବୋଇଲେ ଯେ ଚତୁରବଦନ । ୨୮ ପୃ.

(୫) ସ୍ୱପ୍ସ୍ୟାମି ଦେବ ଷଣ୍ମାସାନ୍ ଦିନମେକଂ ତୁ ଭୋଜନମ୍
ଏବମସ୍ତିତି ତଂ ପ୍ରାହ ବ୍ରହ୍ମା ହୃଷ୍ଟା ଦିବୌକସଃ ଅଧ୍ୟାତ୍ମ । ରା ଉ.କା. ୨ ସର୍ଗ
ତତ୍ର ନିଦ୍ରାଂ ସମାବିଷ୍ଟଃ କୁମ୍ଭକର୍ଣ୍ଣୋ ନିଶାଚରଃ ।
ବହୁନ୍ୟବ୍ଦସହସ୍ରାଣି ଶୟାନୋ ନ ପ୍ରବୁଧ୍ୟତେ । ଉ.କା ୧୩ସ. ୮ ଶ୍ଳୋ

ପ୍ରାରମ୍ଭରୁ ଲେଖାଅଛି, ସୁମାଳୀ ରାବଣ କୁମ୍ଭକର୍ଣ୍ଣାଦିଙ୍କୁ ବରପ୍ରାପ୍ତ ଜାଣିପାରି ନିଜେ ନିର୍ଭୟତଃ ପରିଚର-ପରିକରମାନଙ୍କ ସହ ସେମାନଙ୍କଠାକୁ ଆସିବାପାଇଁ ପାତାଳରୁ ବହିର୍ଗତ ହେଲେ । (୧) ଦାସେ ମଧ୍ୟ ଅତ୍ରତ୍ୟ କଥାମାନ ଠିକ୍ ମୂଳାନୁଗତିରେ ଟିକିଏ ପଲ୍ଲବିତ କରିଅଛନ୍ତି । କିନ୍ତୁ ଏ କହନ୍ତି କି ରାବଣ ବରପ୍ରାପ୍ତି ପରେ ତମାଳବନରେ ଅବସ୍ଥାନ କରି ବିଭୀଷଣଙ୍କଦ୍ୱାରା ସୁମାଳିଙ୍କୁ ପାତାଳ ପୁରରୁ ଅଣାଇଲେ । (୨) ଦାସଙ୍କ ନିର୍ଦ୍ଦିଷ୍ଟ ଏହି ଯେ ରାବଣାଦିଙ୍କ ଅବସ୍ଥାନର ତମାଳବନ ସ୍ଥାନର କଥା, ମୂଳଗ୍ରନ୍ଥାନୁମତ କେବଳ । ସେଥିରେ ଲେଖା ଅଛି, ରାବଣାଦିମାନେ ବରପ୍ରାପ୍ତି ପରେ ଶ୍ଲେଷ୍ମାତକ ବନରେ ଯାଇ ଅବସ୍ଥାନ କଲେ । (୩) ସେହି ଶ୍ଲେଷ୍ମାତକ ଶବ୍ଦର ଅର୍ଥକୁ ଦାସେ ତମାଳ କରିଅଛନ୍ତି । କିମ୍ବା ସେ ତାହାର ଯଥାର୍ଥାଭିଧାନକୁ ବିଧାନ କରିଥିଲେ, ତାକୁ ଅନୁଲେଖକ ବୁଝିନପାରି ତମାଳ କରିଅଛନ୍ତି ।

ଅତଃପର ରାବଣାଦିଙ୍କର ବରପ୍ରାପ୍ତି ସଂଗେ ସଂଗେ ଲଙ୍କାରାଜ୍ୟ ପ୍ରାପ୍ତିର ପରେ କଳତ୍ର ପ୍ରାପ୍ତିର କଥା ମୂଳଗ୍ରନ୍ଥ ଦ୍ୱାଦଶ ସର୍ଗରେ ଉକ୍ତ ଅଛି । ମାୟାମୟ ମୟଦୈତ୍ୟ ନିଜର ଦୁହିତା ମନ୍ଦୋଦରୀଙ୍କ ସହିତ କାନନବିହାରରେ ଥିଲେ । ଏକଦିନ ରାବଣ ଦିଷ୍ଟତଃ ସ୍ୱେଷ୍ଟ ମୃଗୟା ଉଦ୍ଦେଶ୍ୟରେ ବନଯାତ୍ରା କରି ତାହାଙ୍କୁ ଭେଟିଲେ । ତଦା ଉଭୟଙ୍କର ଅଭୟଙ୍କର ମିଳନର ଆଳାପନାଦିର ପରେ ରାବଣ ମୟଙ୍କର ସନ୍ତୋଷମୟ ସମ୍ମତି କ୍ରମରେ ତତ୍ରୈବ ଅଗ୍ନି-ସ୍ଥାପନ ପୂର୍ବକ ଅପୂର୍ବ ସୁନ୍ଦରୀ ତଦାତ୍ମଜା ମନ୍ଦୋଦରୀଙ୍କର ପାଣିଗ୍ରହଣ କଲେ । ଦାସେ ମଧ୍ୟ ବୈବାହିକ ସମାରୋହ ସହିତ ଏହିକଥା ଲଙ୍କା ନଗରୀରେ ସଂଘଟିତ ହୋଇଥିବା କହିଅଛନ୍ତି । (୪) ପରନ୍ତୁ ସେ କୁମ୍ଭକର୍ଣ୍ଣଙ୍କ କଳତ୍ର ନାମ ଆଉ ବିଭୀଷଣଙ୍କର ଶ୍ୱଶୁରାଦିଙ୍କର ନାମଧାମକୁ ଅନ୍ୟଥା ଲେଖିଥିବା ଦେଖାଯାଏ । ମୂଳଗ୍ରନ୍ଥରେ କୁମ୍ଭକର୍ଣ୍ଣଙ୍କ ଭାର୍ଯ୍ୟାର ନାମ ବଜ୍ରଜ୍ୱାଳା । (୫) ଦାସେ ତାକୁ ବିଡ଼ୋଜାନାମରେ ଅଭିହିତ କରିଅଛନ୍ତି । କିମ୍ବା ଅନୁଲେଖକଙ୍କ ଲେଖାରେ ସେହି ପ୍ରକୃତ ନାମଟି ବିକୃତାକୃତି ପ୍ରାପ୍ତ ହୋଇ ଏହି ଆକୃତି ପାଇଅଛି ?

---

(୧) ସୁମାଳୀ ବରଲବ୍ଧାଂସ୍ତାନ୍ ଜ୍ଞାତ୍ୱା ଚୈତାନ୍ ନିଶାଚରାନ୍ ।
ଉଦତିଷ୍ଠତ୍ ଭୟଂ ତ୍ୟକ୍ତ୍ୱା ସାନୁଗଃ ସ ରସାତଳାତ୍ । ୧୧ସ.

(୨) ଛାପା ପୁସ୍ତକରେ ୨୯/୩୦ ପୃଷ୍ଠା ପଢ଼ନ୍ତୁ ।

(୩) ଏବଂ ଲବ୍ଧବରାଃ ସର୍ବେ ଭ୍ରାତରୋ ଦୀପ୍ତତେଜସଃ ।
ଶ୍ଲେଷ୍ମାତକ ବନଂ ଗତ୍ୱା ତତ୍ର ତେ ନ୍ୟବସନ୍ ସୁଖମ୍ ୧୦ ସର୍ଗାନ୍ତ

(୪) ଛାପା ପୁସ୍ତକରେ ୩୫ ପୃଷ୍ଠାରୁ ପଢ଼ି ନିଅନ୍ତୁ ।

(୫) ବୈରୋଚନସ୍ୟ ଦୌହିତ୍ରୀଂ ବଜ୍ରଜ୍ୱାଳାଂ ତୁ ନାମତଃ
ତାଂ ଭାର୍ଯ୍ୟାଂ କୁମ୍ଭକର୍ଣ୍ଣସ୍ୟ ରାବଣଃ ସମୁଦାବହତ୍ । ୧୨ସ. ୨୨ ଶ୍ଲୋ

ମୂଳଗ୍ରନ୍ଥରେ ଦେଖିବେ ଗନ୍ଧର୍ବରାଜ ଶୈକୂଷଙ୍କ ସୁତା ସୁରମାଙ୍କୁ ବିଭୀଷଣ ବିବାହ କରିଥିଲେ । (୧) ଦାସଙ୍କ ରାମାୟଣରେ ଏହି ନାମାଧାମାଦିର ଅନ୍ୟଥାକରଣ ହୋଇ ଯାଇଅଛି । (୨) ଅପିଚ ମୂଳରେ ଏ ସବୁର ଆଗେ ଯାହାକି ସୂର୍ପଣଖାଙ୍କୁ (୩) ଦାନବେନ୍ଦ୍ର ବିଦ୍ୟୁଜ୍ଜିହ୍ୱଙ୍କୁ ପ୍ରଦାନ କରିଥିବାର କଥା ସୂଚିତ ଅଛି, ତାହା ଏଥିରେ ଏ ସ୍ଥଳେ ଲେଖାଥିବା ଦେଖାଯାଏ ନାହିଁ । ହୁଏତ ଏହିଠାରୁ କେତକ ପଦ୍ୟ ଅନୁଲେଖକଙ୍କ ଲେଖାରେ ଉଠିଯାଇଥାଇ ପାରେ ।

ଅତଃପର ମୌଳିକ ତ୍ରୟୋଦଶ ସର୍ଗରେ କୁମ୍ଭକର୍ଣ୍ଣଙ୍କର ଶୟନାଗାର ନିର୍ମାଣାଦି ଏବଂ କୁବେରଙ୍କର ରାବଣ ଦୁଷ୍ଟଚେଷ୍ଟା ନିବାରଣାର୍ଥ ଦୂତ ପ୍ରେରଣାଦିର କଥାମାନ ଉକ୍ତ ଅଛି । ଏହି ରାମାୟଣରେ ମଧ ସେ ସବୁ ଠିକ୍ ମୂଳାନୁମତ କେବଳ ଉକ୍ତ ଅଛି । କିନ୍ତୁ ମୂଳ ଗ୍ରନ୍ଥରେ ନିର୍ଦ୍ଧାରିତ ପ୍ରୋକ୍ତ ସୌପ୍ତିକ ମନ୍ଦିରର ଆୟତନ ଦାସଙ୍କ କଳ୍ପନାରେ ନ୍ୟୁନତା ପ୍ରାପ୍ତି ହେତୁରୁ ଅତିଶୟୋକ୍ତିରେ ଅନୁପ୍ରାଣିତ ହୋଇ ନାହିଁ । (୪)

ମୂଳଗ୍ରନ୍ଥର ଚତୁର୍ଦ୍ଦଶ ଓ ପଞ୍ଚଦଶ ସର୍ଗଦ୍ୱୟରେ ରାବଣଙ୍କର କୈଳାସ ପ୍ରତି ଅଭିଯାନ ଏବଂ ଯୁଦ୍ଧକରଣପୁରଃସର ପୁଷ୍ପକ ଆନୟନର କ୍ରମ ବର୍ଣ୍ଣିତ ଅଛି । ଏଥିଦ୍ୱାରା ''ଉପଦେଶୋହି ମୂର୍ଖାଣାଂ (ଦୁଷ୍ଟାନାଂ) ପ୍ରକୋପାୟ ନଃ ଶାନ୍ତୟେ'' ଏହି ନୀତି ସୁସ୍ପଷ୍ଟତଃ ଅଭିବ୍ୟକ୍ତ ହୋଉଅଛି । ଏ ସବୁ ଦାସଙ୍କ ରାମାୟଣରେ ପ୍ରାୟଶଃ ମୂଳାନୁମତ କେବଳ

---

(୧) ଗନ୍ଧର୍ବରାଜସ୍ୟ ସୁତାଂ ଶୈକୂଷସ୍ୟ ମହାତ୍ମନଃ
ସରମାଂ ନାମ ଧର୍ମଜ୍ଞାଂ ଲେଭେ ଭାର୍ଯ୍ୟାଂ ବିଭୀଷଣଃ ।

(୨) ସମିଧ ଦେଶରେ ଥିଲା ଏକଇ ଅସୁର । ଭୀଷ୍ମପ୍ରଭ ନାମରେ ପ୍ରତାପୀ ତିନିପୁର ।
ତାହାର ଦୁଲାଳୀ ଯେ ସରମାନାମେ ବାଳୀ । ବିଭୀଷଣଙ୍କୁ ସେ ବିଭା ଦେଲା ମନେ ଭାଳି ।
ରାବଣ ମନ୍ଦୋଦରୀ କୁମ୍ଭକର୍ଣ୍ଣ ବିଡ଼ୋଜା । ସରମା ନାମେ କନ୍ୟା ବିଭୀଷଣ ଭାରିଯା ୩୭ ପୃ.

(୩) ସ୍ୱସାରଂ କାଳକେୟାୟ ଦାନବେନ୍ଦ୍ରାୟ ରାକ୍ଷସୀମ୍
ଦଦୌ ସୂର୍ପଣଖାଂ ନାମ ବିଦ୍ୟୁଜ୍ଜିହ୍ୱାୟ ନାମତଃ । ୧୨ସର୍ଗ ୨ ଶ୍ଳୋ

(୪) ବିସ୍ତୀର୍ଣ୍ଣଂ ଯୋଜନଂ ଶୁଭ୍ରଂ ତତୋ ଦ୍ୱିଗୁଣମାୟତମ୍
ଦର୍ଶନୀୟଂ ନିରାବାଧଂ କୁମ୍ଭକର୍ଣ୍ଣସ୍ୟ (ଶୟନାଗାରଂ) ଚକ୍ରିରେ ୧୩ସ.

ପାଞ୍ଚଶ ହାତ ଲମ୍ବ ଦୁଇଶ ହାତ ପ୍ରତି
ସୁବର୍ଣ୍ଣମୟପୁର ଦ୍ୱିତୀୟ ବାରସ୍ୱତୀ । ଇତ୍ୟାଦି ପୃ. ୩୭

ଇତଃ ପୂର୍ବେ ଉକ୍ତ ଅଛି କି ସମଗ୍ର ଲଙ୍କା ନଗରୀ ତ୍ରିଂଶଦ୍ ଯୋଜନ ଆୟତ । ସେଥିରେ ଏକମାତ୍ର କୁମ୍ଭକର୍ଣ୍ଣଙ୍କର ଶୟନାଳୟ ପ୍ରାୟଶଃ ଦୁଇ ଯୋଜନ ବ୍ୟାପୀ ହେବା କେତେ ଦୂର ସମ୍ଭବ ? ବୋଧହୁଏ ଏହି ପାରିଭାଷିକ ପରିମାଣର କ୍ରମ ଅନ୍ୟପ୍ରକାର ।
''ଶୂନ୍ୟାସୀ ନଗରୀ ଲଙ୍କା ତ୍ରିଂଶଦ୍ ଯୋଜନ ମାୟତା ୧୧ସ. ୪୭ ଶ୍ଳୋ

ମାତ୍ର । ଏଥିରେ ଦାସେ ଅବୀରଙ୍କ ତୁଲ୍ୟ କୁବେରଙ୍କର ଯେ ନିତାନ୍ତ କାତରୋକ୍ତି ପ୍ରକାଶ କରିଛନ୍ତି, ତାହା ମୂଳରେ ଉକ୍ତ ନାହିଁ । (୧)

ଅଭିଜ୍ଞ ପାଠକଗଣ ! ଏ ପର୍ଯ୍ୟନ୍ତ ଆପଣମାନେ ଦେଖି ଆସୁଅଛନ୍ତି, ରାବଣାଦିଙ୍କର ଜନନ, ଲଙ୍କା ଆକ୍ରମଣ, କଳତ୍ର ଗ୍ରହଣ, ପୁଷ୍ପକ ଯାନାପହରଣାଦି ବୃତ୍ତାନ୍ତମାନ ମହାକବି ବଳରାମ ଦାସ ମହୋଦୟ ମୂଳଗ୍ରନ୍ଥକୁ ସଂପୂର୍ଣ୍ଣତଃ ଅନୁକରି କେବଳ ଏକୈକଶଃ ତତ୍ରତ୍ୟ ବିଷୟମାନଙ୍କୁ ମୂଳାନୁକ୍ରମରେ ଅନୁବାଦ କରିଯାଇଅଛନ୍ତି; ତଥାପି ସେ ମହାଶୟ ନିଜର ଅନୁବାଦନପାଇଁ କେବଳ ମୌଳିକ ଶ୍ଳୋକାନୁକ୍ରମଣିକାର ଶୈଳୀ ବା ରୀତିରେ ଆବଦ୍ଧ ନ ରହି ନିର୍ବାଧ ଓ ସ୍ୱଚ୍ଛନ୍ଦ ଭାବରେ ସ୍ୱକୀୟ କବନଧୋରଣୀର ଆବେଗରେ କେବଳ ଚାଲି ଅଛନ୍ତି । ତତ୍ରାପି ସ୍ଥାନେ ସ୍ଥାନେ ଆବଶ୍ୟକୀୟ ମତେ ବୈଷୟିକ ସଂଯୋଗ ଓ ବିଯୋଗକୁ ମଧ୍ୟ ଆଦରି ଅଛନ୍ତି । ମୌଳିକ ବିଷୟର ବିଯୋଗ ଅପେକ୍ଷା ପୁରାଣାନ୍ତରୀଣ ଅତିରିକ୍ତ ବିଷୟର ସଂଯୋଗକୁ ସମଧିକତଃ ଅବଲମ୍ବନ କରିଅଛନ୍ତି ।

ମୂଳ ଷୋଡ଼ଶ ସର୍ଗର ସଂକ୍ଷିପ୍ତ କଥା ଏହି, ଅଳକାରୁ ବା କୁବେର ବିଜୟରୁ ପ୍ରତ୍ୟାବୃତ୍ତ ରାବଣ ଶିବଶିବାଙ୍କ ସୁଖ ବିହାରର ସଦନୀଭୂତ ଓ କାର୍ତ୍ତିକେୟଙ୍କ ପ୍ରସୂତି ମନ୍ଦିର ଶରବଣରେ ସ୍ଥିତ ପର୍ବତୋପରି ସମାରୂଢ଼ ହୋଇ ନନ୍ଦିଙ୍କଠାରୁ ଶାପ ପ୍ରାପ୍ତ ହେଲେ । ସେ ପୁଣି ସେହି ପର୍ବତକୁ ଉତ୍ତୋଳିତ କରିବାକୁ ଯାଇ ଦବି ଯାଇଥିଲେ । ମାତ୍ର ପରେ ତପସ୍ୟାରେ ମହାଦେବଙ୍କୁ ପ୍ରସନ୍ନ କରିପାରି ବରପ୍ରାପ୍ତ ହେଲେ । ଦାସେ ରାବଣଙ୍କର ଏହି ଶରବଣ ପ୍ରୟାଣକୁ ସମୟର କିଂଚିଦ୍ ବ୍ୟବଧାନରେ ଗୃହୀତ କରିଅଛନ୍ତି । (୨) ଏହି ଚରିତ ସନ୍ନିଧାନରେ ଏ ମହାଶୟ ଶରବଣକୁ ସ୍କନ୍ଦବନନାମରେ ମଧ୍ୟ ସମାଖ୍ୟାତ କରିଅଛନ୍ତି । ଶରବଣର ଏହି ଅନ୍ୟ ନାମକୁ ପୁରା ସଂସ୍କୃତ ସାହିତ୍ୟର ଅନନ୍ୟସାମାନ୍ୟ ସ୍ଥପତି ଶ୍ରୀମାନ୍ କାଳିଦାସ ମହୋଦୟ ସ୍କନ୍ଦାଦି ପୁରାଣରୁ ସଂଗୃହୀତ କରି ନିଜର ବିକ୍ରମୋର୍ବଶୀୟ ନାଟକରେ (୩) ପ୍ରକାଶିତ କରିଦେଇଅଛନ୍ତି ।

କିନ୍ତୁ ଦାସଙ୍କର ଏହି ଶାସ୍ତ୍ରୀୟ ନାମଟିକୁ ଅନୁଲେଖକ ଓ ଛାପାକାର ମହାଶୟମାନେ ଅସ୍କନ୍ଦ ନାମରେ ପରିଣତ କରି ଅପାର୍ଥ କରି ପକାଇ ଅଛନ୍ତି । (୪) ଏ ସ୍ଥଳେ ପୁଣି ଦାସଙ୍କର ବ୍ରହ୍ମପୁରାଣ ଅଭିଜ୍ଞତାର ଗୋଟିଏ ପ୍ରମାଣ ଦେଖାଯାଉଅଛି । ସେ କହିଅଛନ୍ତି

---

(୧) ଛାପା ପୁସ୍ତକରେ ୪୪ ପୃଷ୍ଠା ଦେଖନ୍ତୁ ।

(୨) ଛାପା ପୁସ୍ତକରେ ୪୫ ପୃଷ୍ଠା ପଢ଼ନ୍ତୁ ।

(୩) ବିକ୍ର ମୋର୍ବଶୀୟ ନାଟକର ଚତୁର୍ଥ ଅଙ୍କ ଦେଖନ୍ତୁ ।

(୪) ଅସ୍କନ୍ଦ ବନ ବୋଲିଣ ନାମ ଯେ ତାହାର
ପାର୍ବତୀଙ୍କୁ ଘେନି ତହିଁ ରମଇ ଶଙ୍କର । ୪୫ ପୃ.

କି ଏହି ସ୍କନ୍ଦବନର ଅନ୍ୟତର ନାମ ଭୀଷ୍ମସର୍ଶ ବା ଭୀଷ୍ମସ୍ୱର୍ଗ । (୧) ଏହି ନାମତ ମୂଳଗ୍ରନ୍ଥରେ ଉକ୍ତ ନାହିଁ; ତେବେ କବି ମହୋଦୟ ଅବଶ୍ୟ ଅନ୍ୟାନ୍ୟ ପୁରଣମାନଙ୍କ ପଠନ ଶ୍ରବଣ ବଳରୁ ଏହିଟିକୁ ଅବଗତ ହୋଇ ଅଭିହିତ କରିଅଛନ୍ତି । ଯେତେତ୍ଵର ସମ୍ଭବ, ଏ ବନର ଭୀଷ୍ମସର୍ଶ ନାମ ଅପେକ୍ଷା ଭୀଷ୍ମସ୍ୱର୍ଗ ନାମଟି ସଂଗତ ଓ ସାର୍ଥକ ଜଣାଯାଉଅଛି । କାରଣ, ଏହି ବନରେ ଅନ୍ୟ କେହି ନବାଗତ ପ୍ରାଣୀ ପ୍ରବେଶ କଲାମାତ୍ରେ ହରପାର୍ବତୀଙ୍କ ଶାପଯୋଗୁଁ ଭୟଙ୍କର ଅବସ୍ଥାପନ୍ନ ହୁଅନ୍ତି, ଏକଥା ପୁରାଣାଦିରେ ବର୍ଣ୍ଣିତ ଅଛି ।

ଦାସଙ୍କ ରାମାୟଣରେ ଏହି କଥାନକରେ ଦେଖିବେ, ରାବଣ ତେତିକି ବେଳେ କେବଳ ତତ୍ର ବଂଭ୍ରମ୍ୟମାଣ ମାରୀଚଙ୍କୁ ଦେଖି ତଦୀୟ ପରିଚୟ ପ୍ରାପ୍ତି ପୂର୍ବକ ତାହାଙ୍କୁ ଆତ୍ମୀୟ ବନ୍ଧୁ କରି ନେଇଥିଲେ, ଏହା ଲେଖାଅଛି; କିନ୍ତୁ ମୂଳଗ୍ରନ୍ଥମତେ ମାରୀଚ ତତ୍‌ପୂର୍ବରୁ ଦଶାସ୍ୟଙ୍କ ସଂଗେ ବୟସ୍ୟ ରୂପେ ସମବେତ ରହି ତଦା ପୁଷ୍ପକଯାନସହ ଆସିଥିଲେ । (୨) ଏହି ବୈଶ୍ରବଣିକ ଯୁଦ୍ଧରେ ପୁଣି ସେ ଅନେକ ବଦ୍ଧ-ପରିକର ଯକ୍ଷଙ୍କୁ ନିପାତ କରିଥିଲେ । (୩) ଏହି ଯେ ମାରୀଚ ଆଗୁଁ ରାବଣଙ୍କର ମନ୍ତ୍ରୀ ଥିଲେ, ହୁଏତ ସେ ମାୟାବୀ ମାରୀଚଠାରୁ ଅନ୍ୟତର ହୋଇପାରନ୍ତି । ଦାସଙ୍କ କଥିତ ମାରୀଚ ଦ୍ୱିତୀୟ ମାରୀଚ ହେଲେ, କଥା ମୂଳାନୁମତ ଯଥାଯଥ ହେଲା । ନୁହେତ ଦାସେ ବୈଷମ୍ୟ ନିହିତ କରିଅଛନ୍ତି, ଏହାହିଁ କହିବାକୁ ହେବ ।

ଏ ସ୍ଥଳରେ ମୂଳ ଗ୍ରନ୍ଥରେ ଲେଖାଅଛି, ରାବଣ କୈଳାସ ଉତ୍ତୋଳନ କରିବା ସମୟେ ସେହି ମହାଚଳର ଆଘାତ ପାଇ ଘୋର ରାବ କଲାରୁ ଶଙ୍କର ତାହାଙ୍କୁ ରାବଣ ନାମରେ ଅଭିହିତ କରିଥିଲେ । (୪) ଦାସ ମହାଶୟ ମଧ୍ୟ ଦଶାନନଙ୍କର ଏହି ନାମ

---

(୧) ଭୀଷ୍ମସ୍ୱର୍ଗ ବୋଲି ଯେ ଅଛଇ ନାମ ତାର
ତପଃଶାଳୀ ସ୍ଥାନ ସେହି ସଂସାରୁ ବାହାର । ୪୫ ପୃଷ୍ଠା

(୨) ତତସ୍ତୁ ଶଚିବୈଃ ସାର୍ଦ୍ଧଂ ଷଡ୍‌ଭିର୍ନିତ୍ୟ ବଳୋତ୍କଟୈଃ
ମହୋଦରପ୍ରହସ୍ତାଭ୍ୟାଂ ମାରୀଚଶୁକସାରଣୈଃ ।
ଧୂମ୍ରାକ୍ଷେଣ ଚ ବୀରେଣ ନିତ୍ୟଂ ସମରଗର୍ଦ୍ଧିନା ।
ସଂବୃତଃ ପ୍ରଯଯୌ ଶ୍ରୀମାନ୍ କ୍ରୋଧାଲ୍ଲୋକାନ୍ ଦହନ୍ନିବ । ୧୪ସ. ୧୨ ଶ୍ଳୋ

(୩) କ୍ରୁଦ୍ଧେନ ଚ ତଦାରାମ ! ମାରୀଚେନ ଦୁରାତ୍ମନା
ନିମେଷାନ୍ତରମାତ୍ରେଣ ଦ୍ୱେ ସହସ୍ରେ ନିପାତିତେ । ୧୫ସ. ୫ ଶ୍ଳୋ

(୪) ପ୍ରୀତୋଽସ୍ମି ତବ ବୀର୍ଯ୍ୟାଚ୍ଚ ଶୌର୍ଯ୍ୟାଚ୍ଚ ଦଶାନନ !
ରାବଣ ବଦନାଦ୍ ମୁକ୍ତଃ ସ୍ୱରଃ ପରମ ଦାରୁଣଃ ।
ଯସ୍ମାଦ୍ ଲୋକତ୍ରୟଂ ତ୍ୱେତଦ୍ ରାବିତଂ ଭୟମାଗତମ୍
ତସ୍ମାଦ୍ – ତ୍ୱଂ ରାବଣୋନାମ ନାମ୍ନା ବୀର ! ଭବିଷ୍ୟସି । ୧୬ସ.

କରଣର କଥା ଏ ସ୍ଥଳେ ଲେଖିଅଛନ୍ତି । (୧) ମୂଳଗ୍ରନ୍ଥର ଯେ ଯେ ସ୍ଥଳରେ ଏତାଦୃଶ କ୍ଷୁଦ୍ର କିମ୍ୱା ମହତ୍ ଘଟଣାର ବିବରଣ ଉକ୍ତ ଅଛି ତାକୁ ଦାସେ ଠିକ୍ ସେହି ସ୍ଥଳରେ ମୌଳିକ କ୍ରମରେ ନିଜର ଅନୁବାଦନରେ ଦେଇଯାଇଥିବାରୁ ସମ୍ପୂର୍ଣ୍ଣ ବିଶ୍ୱାସ ହୁଏ, ସେ ମହୋଦୟ ମୂଳଗ୍ରନ୍ଥକୁ ସମ୍ମୁଖରେ ରଖି କିମ୍ୱା ମୌଳିକ ଧାରାବାହିକ ଅକ୍ଷୁଣ୍ଣ ଚରିତ ପ୍ରଣାଳୀକୁ ସ୍ମୃତିମତିମତ୍ତାବଳରେ ଜ୍ଞାନର ସମ୍ମୁଖରେ ରଖି ଏହି ମହାଗ୍ରନ୍ଥର ଅନୁବାଦନ କରିଯାଇଅଛନ୍ତି ।

କିନ୍ତୁ ସ୍ଥାନେ ସ୍ଥାନେ ଯେ ଯେ ବିଷୟର ବିବରଣମାନ ଛାଡ଼ ହୋଇ ଯାଇଅଛି, ବୋଧହୁଏ ସେସବୁର ସମଧିକ ପରକାଳରେ ଦୁଃସ୍ଥାନସ୍ଥିତି ଯୋଗରୁ ଅନଭିଜ୍ଞ ଅନୁଲେଖକ ମାନଙ୍କର ମତିଦୁର୍ବିଧତାବଶରୁ କେବଳ ଘଟିଅଛି । ଏଇ ଦେଖନ୍ତୁ, ଏ ସ୍ଥଳରେ ମହାଦେବ ରାବଣଙ୍କ ପ୍ରତି ପ୍ରସନ୍ନତା ପ୍ରକାଶ କରି ନିଜର ଚନ୍ଦ୍ରହାସ ନାମକ ଖଡ୍ଗକୁ ପ୍ରଦାନ କରିଥିବାର କଥା ଯାହାକି ମୂଳ ଗ୍ରନ୍ଥରେ ଲେଖାଅଛି, (୨) ତାହା ଏ ସ୍ଥଳେ ଦାସଙ୍କ ରାମାୟଣରେ ଲେଖାଥିବାର ଦେଖାଯାଉନାହିଁ ।

ମୂଳ ସପ୍ତଦଶ ସର୍ଗରେ ଦେଖିବେ, ରାବଣ ମର୍ତ୍ତ୍ୟଲୋକରେ ସଂଚାର କରୁଁ କରୁଁ ସମୟେ ବେଦମୟୀ ବେଦମତୀ କନ୍ୟାକୁ ଦେଖି ବଳେ ଧର୍ଷଣ କଲେ । ସେ ଦେବୀ ପୁଣି ପରେ ସୀତା ରୂପରେ ଆବିର୍ଭୂତା ହେଲେ । ଇତ୍ୟାକାରକ ତତ୍‌ସଂକ୍ରାନ୍ତ କଥାମାନ ଉକ୍ତ ଅଛି । (୩) ଦାସ ମହାଶୟ ମଧ ତାହାହିଁ ଲେଖିଅଛନ୍ତି; ସେ ପୁଣି ସ୍ୱଦେଶ ପ୍ରେମିକତାରୁ ନିଜର ମାତୃଭୂମିକୁ ଦେବୀଙ୍କର ଅଧିଷ୍ଠାନ ଯୋଗୁଁ ତାଦୃଶ୍ୟ ମହାତ୍ମ୍ୟବତୀ ଓ ଶୁଭଂକରୀ ବୋଲି ସୁପ୍ରଥିତ କରିବାପାଇଁ ଇଚ୍ଛାପୂର୍ବକ ଦେବୀଙ୍କର ଅଧ୍ୟୁଷିତ ସ୍ଥାନର ପ୍ରକାଶନର ବୈଷମ୍ୟ ନିହିତ କରିଅଛନ୍ତି । (୪) ସେ ପୁଣି ସେହି ଦେବୀଙ୍କର ଅଲୌକିକ ସୌନ୍ଦର୍ଯ୍ୟ ବର୍ଣ୍ଣନାରେ କଣ୍ଡୂଳ-ରସନ ହୋଇ ତାହାଙ୍କର ଅମୌଳିକ ହେଲେ ସୁଦ୍ଧା କବି

---

(୧) ରାବଯେ ଛାଡ଼ିଲୁ ତୁହି ମହାଉୟ ପାଇ
ରାବଣ ନାମକୁ ତୋତେ ଦେଲି ଇଙ୍କାସାଇଁ । ୪୮ ପୃ.

(୨) ଏବ ମୁକ୍ତସ୍ତଦାତେନ ରାବଣେନ ସଶଙ୍କରଃ
ଦଦୌ ଖଡ୍ଗ ମହାଦୀପ୍ତଂ ଚନ୍ଦ୍ରହାସମିତି ଶ୍ରୁତମ୍ । ୧୬ ସର୍ଗ

(୩) ହିମବଦ୍ ବନମାସାଦ୍ୟ ପରିଚକ୍ରାମ ରାବଣଃ
ତତ୍ରାପଶ୍ୟଦ୍ ସ ବୈ କନ୍ୟାଂ (ବେଦମତୀଂ) କୃଷ୍ଣାଜିନଜଟାଧରାମ୍ । ୧୭ସ. ୨ ଶ୍ଳୋ

(୪) ଯା ଅନ୍ତେଣ ନାୟିକା ଏ ଭେଟିଲାକ ବାଟେ
ଦକ୍ଷିଣ ଲବଣ ସିନ୍ଧୁ ଉତ୍ତର ଯେ ତଟେ ।
ବସିଣ ସେ ଜପକରୁ ଅଛଇ ସୁନ୍ଦରୀ
ତ୍ରୈଲୋକ୍ୟ ତାହାକୁ ପଟାନ୍ତର ନାହିଁ ନାରୀ । ୪୯ପୃ.

ସାମୟିକ ବେଶଭୂଷାର ବର୍ଣ୍ଣନାକୁ ଟିକିଏ ବିସ୍ତୃତ ଭାବରେ ଲେଖିଯାଇ ଅଛନ୍ତି । ତାହାଙ୍କର ସେହି ସଂଯତ-ସଂକ୍ଷିପ୍ତ-ପ୍ରଶସ୍ତ ରୂପବର୍ଣ୍ଣନାର ଚାତୁରୀ ଖୁବ୍ ହୃଦୟସ୍ପର୍ଶୀ ହୋଇଅଛି । (୧)

ଦାସ ମହାଶୟ ବେଦମତୀଙ୍କର ନାମଧାମାଦିର ବିବରଣ ସୁଦ୍ଧା ଠିକ୍ ମୌଳିକ କ୍ରମାନୁସାରେ ଦେଇଅଛନ୍ତି । ପାଠକ ଅତ୍ରତ୍ୟ ଟିପ୍ପଣୀରେ ପ୍ରଦତ୍ତ ଦୁଇଗୋଟି ମାତ୍ର ଶ୍ଳୋକ ଆଉ ତାର ଅନୁବାଦ ପରିଶୀଳନ କରି ଦେଖନ୍ତୁ, କି ଭଳିଆ ଅବିକଳ ଚିତ୍ରଣ ବୁଝିପାରିବେ । (୨)

ମୂଳ ଗ୍ରନ୍ଥରେ ଲେଖାଅଛି, ଦୁଷ୍ଟଚେଷ୍ଟ ରାବଣ ବେଦମତୀଙ୍କର କେଶାକର୍ଷଣ ମାତ୍ର କରିଥିଲେ । ଦାସଙ୍କ ରାମାୟଣରେ ସ୍ଥାନେ ସ୍ଥାନେ ତାହାହିଁ ଲେଖାଅଛି । ପରଂତୁ ତତ୍ରୈବ ଆଉ ଏକ ସ୍ଥାନରେ ଲେଖାଅଛି କି ରାବଣ ତାହାଙ୍କୁ ବଳେ ଆଲିଙ୍ଗନାଦି କରିଥିଲେ । (୩) ବିଶ୍ୱାସ ହୁଏ, ଏହା ଦାସେ ଲେଖି ନାହାନ୍ତି । ଅନୁଲେଖକ

---

(୧) ଭାଷା ସଂବିଧାନ ସ୍ଥଳେ ଏହି ରୂପକ ବର୍ଣ୍ଣନା ପ୍ରଦତ୍ତ ହେବ ।

(୨) (ମୂ) କୁଶଧ୍ୱଜୋ ନାମ ପିତା ବହ୍ମର୍ଷିରତୁଳପ୍ରଭଃ ।
ତସ୍ୟାହଂ କୁର୍ବତୋ ନିତ୍ୟଂ ବେଦାଭ୍ୟାସଂ ମହାତ୍ମନଃ ।
ସଂଭୂତା ବାଙ୍ମୟୀ କନ୍ୟା ନାମ୍ନା ବେଦବତୀ ସ୍ମୃତା । ୧୭ ସର୍ଗ

(ଅନୁ) କୁଶଧ୍ୱଜ ଋଷିର ମୁଁ ଅଟଇ ଦୁହିତା
ବେଦମତୀ ନାମ ମୋର କଲା ହାଦେ ପିତା ।
ବେଦ ଅଧ୍ୟୟନରୁ ମୁ ହୋଇଲି ଯେ ଜାତ
ତେଣୁ ବେଦମତୀ ବୋଲି ବୋଇଲେ ସମସ୍ତ ।

(ମୂ) ଶମ୍ଭୁର୍ନାମ ତତୋ ରାଜା ଦୈତ୍ୟାନାଂ କୁପିତୋଽଭବତ୍
ତେନ ରାତ୍ରୌ ଶୟାନୋ ମେ ପିତା ପାପେନ ହିଂସିତଃ । ୧୭ ସ.

(ଅନୁ) ଶମ୍ଭୁ ନାମେଣ ଯେ ଏକ ଅସୁର ଅଇଲା
ରାତ୍ରିକାଳେ ମୋହର ପିତାକୁ ମାରିଗଲା । ୫୦ ପୃ.

(୩) ଶୁଣିଣ ସେ ଦଶଗ୍ରୀବ ଧାଇଁଲାକ କୋପେ ।
ବେଦମତୀ କି ଯେ କୋଳ କଲା ଯାଇ ଧାପେ ।
ହିଆରେ ହିଆ ଭିଡ଼ି ମୁଖେ ଚୁମ୍ବ ଦେଲା ।
ଚନ୍ଦନ ବୃକ୍ଷରେ କାଳ ସର୍ପ କି ବେଢ଼ିଲା ।
ଅସୁଖ ପାଇଲା ସେ ଶରଦ ଚନ୍ଦ୍ରମୁଖୀ ।
ପାଶେ ବନ୍ଧନ ହେଲା କିସେ ଚକୋର ପକ୍ଷୀ ।
କୋପେଣ ସୁନ୍ଦରୀ ଯେ ବୋଇଲା ମୋତେ ଛାଡ଼
ଲୋଭ କରିଣ ତୁ ହାଦେ ଅମତା ନ ମାଡ଼ ।

ରାବଣଙ୍କର ପ୍ରକୃତିସିଦ୍ଧ ଦୌରାତ୍ମ୍ୟ ଜାଣିଥିବାରୁ ଏ ସ୍ଥଳେ ସୁଦ୍ଧା ସେଭଳି କେତେକ କଥା ଯୋଗ କରିଦେଇ ଅଛନ୍ତି । ବ୍ରହ୍ମପୁରାଣବେତ୍ତା ବଳରାମ ଦାସ ମହାଶୟ ପୁରାଣାନ୍ତରରୁ ଆନୀତ ବେଦମତୀଙ୍କର ଭବିଷ୍ୟମାଣ ସୀତା ରୂପରେ ଆବିର୍ଭାବ ଚରିତକୁ ପୂର୍ବାପର କଥାର ସଂଲଗ୍ନତାସହ ଏ ସ୍ଥଳରେ ସଂଯୋଗ କରିଅଛନ୍ତି । ଏହାର ସଂକ୍ଷିପ୍ତ ବିବରଣ ଏହି, ବେଦମତୀ ଧର୍ଷଣ ପରେ ରାବଣ ଏକଦିନ (ଜନକ ରାଜଙ୍କ ଯାଗଶାଳାରୁ ପ୍ରତ୍ୟାବୃତ୍ତ ହେଲାପରେ) ପୂର୍ବୋକ୍ତ ବେଦମତୀଙ୍କ ଆଶ୍ରମକୁ ଯାଇ ଦେଖିଲେ ଯେ ଦେବୀଙ୍କର ପ୍ରାଣଶୂନ୍ୟ ଶରୀର ଅଗ୍ନି ମଧ୍ୟରେ ଦେଦୀପ୍ୟମାନ ରହିଅଛି । ସେ ସେହି ଶରୀରକୁ ଧରି ଲଙ୍କାରେ ଉପଗତ ହେଲେ । ମନ୍ଦୋଦରୀଙ୍କୁ କହିଲେ, ଏହି ଶରୀରର ମାଂସରେ ବ୍ୟଞ୍ଜନ ସାଧିତ କର । ମନ୍ଦୋଦରୀ ତାର ଯୋଗାଡ଼ କରୁଅଛନ୍ତି, ଇତ୍ୟବସରରେ ଦେବର୍ଷି ନାରଦ ତତ୍ର ସମାଗତ ହେଲେ । ସେ ପୁଣି ମନ୍ଦୋଦରୀଙ୍କୁ କହିଲେ, ଏହି ଶରୀରକୁ ରନ୍ଧନ କର ନାହିଁ, ଏହାଦ୍ୱାରା ଦେବକାର୍ଯ୍ୟ ସାଧିତ ହେବ । ଅନ୍ୟ ମାଂସ ରନ୍ଧନକରି ଏହି ମାଂସ ବ୍ୟପଦେଶରେ ରାବଣଙ୍କର ସଂତର୍ପଣ କର । ଏହି ଶରୀର ନେଇ ସମୁଦ୍ରରେ ଭସାଇ ଦିଅ । ମନ୍ଦୋଦରୀ ତାହା ହିଁ କଲେ । ସମୟେ ଯେଉଁ ପେଟିକାଟିରେ ବେଦମତୀଙ୍କ ଶରୀର ସମୁଦ୍ରରେ ଭାସିଆସି ଅନ୍ତର୍ଭୂମିସ୍ଥ ଜଳପ୍ରବାହଯୋଗେ ଭୂଗର୍ଭସ୍ଥ ହୋଇଥିଲା, ସେହି ପେଟିକାରୁ କେବଳ ଜନକରାଜାଙ୍କ ମଖଶାଳା କର୍ଷଣ ସମୟେ ସୀତା ଦେବୀଙ୍କର ଆବିର୍ଭାବ ହୋଇଥିଲା । ସେହି ପେଟିକାଟି କାଟିବାରୁ ବେଦମତୀ କେବଳ ତହିଁରୁ ସୀତା ସ୍ୱରୂପରେ ଆବିର୍ଭୂତା ହୋଇଥିଲେ ।

ଏହି ସନ୍ଦର୍ଭରେ ଦାସେ ପୁଣି ସ୍ୱଦେଶ-ମହତ୍ତ୍ୱ ସୂଚନାର୍ଥ ପୂର୍ବେ ଯେପରି ବେଦମତୀଙ୍କର ଅଧିଷ୍ଠାନ ସ୍ଥାନ ଉତ୍କଳ ବୋଲି ସୂଚିତ କରିଅଛନ୍ତି, ଏ ସ୍ଥଳେ ମଧ୍ୟ ତାହାହିଁ ଅଭିବ୍ୟକ୍ତ କରିଅଛନ୍ତି । ବେଦମତୀଙ୍କର ଶରୀର ସମୁଦ୍ରରେ ଭାସି ଆସିଥିଲା, ଏହ କଥାକୁ ଧରି ଦାସେ ଲେଖିଅଛନ୍ତି କି, ଜନକରାଜାଙ୍କର ମଖଶାଳା ଦକ୍ଷିଣ ସମୁଦ୍ର

---

ଏକି ମହାତ୍ମା ସ୍ୱଭାବ ଅଟଇ ତୋହର
ଆମ୍ଭେ ଯେ ଅବଳା ସ୍ତିରୀ ତୁ ପୁରୁଷବର ।
ଏତେକ ମୋହର ଦେହ ହୋଇଲାଣି ପ୍ରାସ
ଏହିକ୍ଷଣି ଉଡ଼ିଯିବ ମୋହର ସାହସ ।
ଛାଡ଼ ଛାଡ଼ ସୁସ୍ଥ ହୋଇ ମୁହିଁ ଯେ କହଇ
ମୋହର ଯେ ପୁଣ୍ୟ ଦେହ ଅବଶ୍ୟ ଛାଡ଼ିବଇ । ଇତ୍ୟାଦି ୫୨ ପୃଷ୍ଠା
ଏହି ରାମାୟଣରେ ସର୍ବତ୍ର ବେଦମତୀ ପଦ ବେଦବତୀ ହୋଇଅଛି ।

ତୀରରେ ପ୍ରତିଷ୍ଠିତ ଥିଲା, ଇତ୍ୟାଦି (୧) କିନ୍ତୁ ମିଥିଳାରୁ ତ ମୈଥିଳୀଙ୍କର ଆବିର୍ଭାବ, ମିଥିଳାର ଅବସ୍ଥାନ ଦକ୍ଷିଣ ସମୁଦ୍ର ତୀରରେ ନୁହେ ତ, ତେବେ ଦାସଙ୍କର ଏହି ସ୍ଥାନ ନିର୍ଦ୍ଦେଶ ସୁସଂଗତ ବୋଧହୁଏ କି ?

ମୂଳ ଅଷ୍ଟାଦଶ ସର୍ଗରେ ବେଦମତୀଙ୍କ ଧର୍ଷଣ ପରେ ରାବଣଙ୍କ କର୍ତ୍ତୃକ ମରୁତ୍ତ ରାଜାଙ୍କର ଯାଗଧର୍ଷଣର କ୍ରମ ଯାଦୃଶ ଉକ୍ତ ଅଛି, ଏହି ରାମାୟଣରେ ମଧ୍ୟ ସେହିପରି। ସେହି ମାରୁତ୍ତିକ ଯାଗରେ ବୃହସ୍ପତିଙ୍କ ଭ୍ରାତା ସମ୍ବର୍ତ୍ତକ ପୁରୋହିତ ଥିଲେ। ଦାସେ ମଧ୍ୟ ଏଥିରେ ସେହି ନାମ କେବଳ ସଂଗୃହୀତ କରିଥିଲେ। ମାତ୍ର ଅନୁଲେଖକ ତଥାଚ ଛାପାକାର ସେହି ସମ୍ବର୍ତ୍ତକ ଶବ୍ଦକୁ ସୁମନ୍ତକ କରି ଦେଇ ଅଛନ୍ତି (୨)। ପରନ୍ତୁ ମୂଳଗ୍ରନ୍ଥରେ ଯେପରି ପବିତ୍ର ସତ୍ରରେ ଆହୂତି ନିମିତ୍ତ ସମବେତ ପୁରୁହୂତ ଆଦି ଦେବଗଣ ତତ୍ରାଗତ ରାବଣଙ୍କ ଭୟରେ ମୟୂର, କାକ, ହଂସାଦି ରୂପ ଧାରଣ ପୂର୍ବକ ସେଠାରୁ ଅନ୍ତର୍ହିତ ହୋଇ ରାବଣ ନିର୍ଗତ ହେଲା ପରେ ଫେର୍ ସ୍ୱ ସ୍ୱ ରୂପଧାରଣରେ ମୟୂରାଦିଙ୍କୁ ବର ପ୍ରଦାନ କରିଥିଲେ ବୋଲି ଲେଖା ଅଛି, ସେ ସବୁ ଦାସଙ୍କ ରାମାୟଣରେ ଲେଖାଥିବା ଦେଖାଯାଏ ନାହିଁ।

ଏହାପରେ ମୂଳ ଊନବିଂଶ ସର୍ଗରେ ଉକ୍ତ ଅଯୋଧ୍ୟାଧିପତି ଅନରଣ୍ୟଙ୍କ ପ୍ରତି ରାବଣଙ୍କକୃତ ଅତ୍ୟାହିତ ଅତ୍ୟାଚାରର କଥା ମଧ୍ୟ ଦାସେ ମୂଳାନୁକରଣରେ କେବଳ ପ୍ରକାଶ କରିଅଛନ୍ତି। ମାତ୍ର ଏଥି ମଧ୍ୟରେ ଅନରଣ୍ୟଙ୍କ ପୂର୍ବବଂଶମାନଙ୍କ ଗଣନାମୂଳକ ଯାହାକିଛି ଅତିରିକ୍ତ କଥା ସେ ଲେଖିଅଛନ୍ତି, ତାହା ମୂଳ ଗ୍ରନ୍ଥରେ ଏସ୍ଥଳେ ଲେଖାନାହିଁ। ତାହାଙ୍କର ସେହି ପୁରାତନ ରାଜାମାନଙ୍କର ସଂଖ୍ୟା ନିର୍ଦ୍ଦେଶ ଯଥାର୍ଥ କି ନୁହେଁ, ଠିକ୍ କୁହାଯାଇ ନପାରେ।

ଏ ପର୍ଯ୍ୟନ୍ତ ମୂଳ ଗ୍ରନ୍ଥରେ ନିଗଦିତ ବିଷୟାବଳୀ ଦାସଙ୍କ ରାମାୟଣରେ ଠିକ୍ କ୍ରମାନୁଗତ ଲେଖାଅଛି। ଏହାପରେ ଏକୋନବିଂଶ ଆଉ ବିଂଶ ଏହି ଉଭୟ ସର୍ଗର

---

(୧) × × × × × ×
ଶୁଣିତା ଋଷିମାନେ ଯେ ଆନନ୍ଦ ହୋଇଲେ।
ଦକ୍ଷିଣସିନ୍ଧୁର ତୀରେ ଯାଗ ଆରମ୍ଭିଲେ।
ଇଙ୍ଗଳରେ ଭୂମିକି ଶୋଧନ୍ତେ ମୁନିବର
ଏସନ ବେଳେ ଅଇଲା ବିଶ୍ରବାକୁମର। ଇତ୍ୟାଦି ୫୨ ପୃ.

(୨) ସଂବର୍ତୋ ନାମ ବ୍ରହ୍ମର୍ଷିଃ ଭ୍ରାତା ସାକ୍ଷାଦ୍ ବୃହସ୍ପତେଃ
ଯାଜୟାମାସ ଧର୍ମଜ୍ଞଃ ସର୍ବୈର୍ଦେବଗଣୈର୍ବୃତଃ ୧୮ ସ. ୩ ଶ୍ଳୋ
ବୃହସ୍ପତିଙ୍କ ଭାଇ ଯେ ସୁମନ୍ତକ ଋଷି
ଯାଗରେ ଆଚାର୍ଯ୍ୟ ହୋଇ ଅଛନ୍ତି ସେ ବସି। ୫୪ ପୃ.

ଅନୁଗତ ପାଠ ମଧ୍ୟରେ ଏଥିରେ ଅଧିକତଃ ଅଧ୍ୟାତ୍ମ ରାମାୟଣର ଅନୁସରଣରେ ମାହିଷ୍ମତୀପତି ସହସ୍ରାର୍ଜ୍ଜୁନ ଏବଂ ମହାବଳ ବାଳିଙ୍କଦ୍ୱାରା ରାବଣଙ୍କର ପରାଭୂତି ପ୍ରାପ୍ତିର ବିବରଣମାନ ଦିଆଯାଇଅଛି । (୧)

ଦାସେ ଲେଖିଅଛନ୍ତି, ଯୁଦ୍ଧ-ଦୁର୍ମଦ ରାବଣ ଏକଦା ହୈହୟାଧିପ ସହସ୍ରାର୍ଜ୍ଜୁନଙ୍କ ସହ ଆହବିକ ଖେଳା କରିବାକୁ ଯାଇ କରାକୁଟୁମ୍ବୀକୃତ ରୂପେ ଆବଦ୍ଧ ରହିଲେ । ମାହୀଷ୍ମତିପତି ପଂକ୍ତିଗ୍ରୀବଙ୍କ ପ୍ରଭୃତ ଅତ୍ୟାଚାର ବିଚାରରେ ପରିକୁପିତ ହୋଇ ତାହାଙ୍କୁ ହାଣିମାରି, ମୋଡ଼ିମାଡ଼ି, କୋଡ଼ି ଫାଡ଼ି, ତାଡ଼ି ପୋଡ଼ି କୁଢ଼ାଇ ସୁଦ୍ଧା ପ୍ରାଣରେ ନିହତ କରିପାରିଲେ ନାହିଁ । ଢନ୍ନଦିନ ପରେ ପିତା ମହାବିଷ୍ଟ ଇଷ୍ଟଚେଷ୍ଟ ପୁଲସ୍ତ୍ୟ ମହର୍ଷି ଆସି ନାନା କଥାରେ କାର୍ତ୍ତବୀର୍ଯ୍ୟଙ୍କୁ ପ୍ରସନ୍ନ କରି ରାବଣଙ୍କୁ ମୁକୁଳାଇ ନେଲେ । (୨) ତଥାପି ରାବଣ ଅନ୍ୟ ସମୟେ ବାଳିଙ୍କୁ ଆକ୍ରମଣ କରିବାକୁ ଯାଇ ବୈଦିକ କ୍ରିୟାନୁଷ୍ଠାନତତ୍ପର କୀଶପ୍ରବରଙ୍କଦ୍ୱାରା ଅବହେଳନା କ୍ରମେ ଆପେ କକ୍ଷରେ ଆବଦ୍ଧ ରହି ପରେ ଅଙ୍ଗଦଙ୍କ କ୍ରୀଡ଼ା ପୁଉଳିକା ସ୍ୱରୂପ କାରାକକ୍ଷରେ ଆବଦ୍ଧ ରହିଲେ । ଏପରି କଷ୍ଟ ଅବସ୍ଥାରେ ତାହାଙ୍କର କେତେକ ସମୟ ଅତୀତ ହେଲାପରେ ବ୍ରହ୍ମା ଆସି ତାହାଙ୍କୁ କାରାମୁକ୍ତ କରି ବାଳିଙ୍କ ସହ ମିତ୍ରତା ସୂତ୍ରରେ ଆବଦ୍ଧ ରଖିଲେ । (୩)

ବିଂଶାଦି ସର୍ଗତ୍ରୟର ଚରିତ ଯାହାକି ରାବଣ ନାରଦଙ୍କ ବଚନରେ ମନୁଷ୍ୟମାନଙ୍କ ସହ ଆହବିକ କ୍ରିୟା ତ୍ୟାଗ କରି ଯମଙ୍କ ସହ ଯୁଦ୍ଧାର୍ଥ ଉଦ୍‌ଯୁକ୍ତ ହୋଇଥିଲେ, ତତ୍‌ସଂଯୁକ୍ତ କଥାମାନଙ୍କୁ ଦାସେ ସ୍ଥୂଳତଃ ମାତ୍ର ଅନୁସରି ଲେଖିଅଛନ୍ତି । ଏଥିମଧ୍ୟରେ ନାରଦ ରାବଣଙ୍କୁ ମନୁଷ୍ୟମାନଙ୍କର ଯତ୍‌କିଞ୍ଚିତ୍ ବୀରତ୍ୱ, ଅନୁନ୍ନତ ଦୁରବସ୍ଥାମାନ ୮୮ରି ସବିସ୍ତର ବୁଝାଇ

---

(୧) ଅଧ୍ୟାତ୍ମ ରାମାୟଣ ଉତ୍ତରାକାଣ୍ଡ ଦ୍ୱିତୀୟ ସର୍ଗରେ ଦେଖିବେ ଏହି ଘଟନାଦ୍ୱୟ ଉକ୍ତ ଅଛି । ଏ ଉଭୟ ଘଟନା ବାଲ୍ମିକୀୟ ରାମାୟଣରେ ଏ ସ୍ଥଳେ ଲେଖା ନାହିଁ । ବାଲ୍ମୀକୀୟ ରାମାୟଣର ଏକତ୍ରିଂଶ ଓ ଦ୍ୱାତ୍ରିଂଶ ସର୍ଗରେ ରାବଣ ଓ ସହସ୍ରାର୍ଜ୍ଜୁନଙ୍କ ଏହି ଯୁଦ୍ଧ ସଂବିଧାନର ବିବରଣ ମାନ ଲେଖା ଅଛି । ଏହାପରେ ତ୍ରୟତ୍ରିଂଶ ସର୍ଗରେ ପୁଲସ୍ତ୍ୟଙ୍କ କର୍ତ୍ତୃକ ରାବଣଙ୍କ ମୁକ୍ତିକ୍ରମବର୍ଣ୍ଣିତ ଅଛି । ଚତୁଃତ୍ରିଂଶ ସର୍ଗରେ ରାବଣ ବାଳିଙ୍କ ସହ ଯୁଦ୍ଧାର୍ଥ ଯାଇ କରାବଦ୍ଧ ହେବାର କଥାମାନ ଲେଖାଅଛି ।

(୨) ଛାପା ପୁସ୍ତକରେ ୫୬-୬୦ ପୃଷ୍ଠା ପର୍ଯ୍ୟନ୍ତ ପଢ଼ନ୍ତୁ ।
ତେନ ବଦ୍ଧୋ ଦଶଗ୍ରୀବଃ ପୁଲସ୍ତ୍ୟେନ ବିମୋଚିତଃ । ଅ: ରା: ଉ: କା: ୨ ସ

(୩) ଛାପା ପୁସ୍ତକରେ ୬୧-୬୨ ପୃଷ୍ଠା ପଢ଼ନ୍ତୁ । କିନ୍ତୁ ଅଧ୍ୟାତ୍ମ ରାମାୟଣରେ ଲେଖାଅଛି, ରାବଣ ବାଳିଙ୍କ କରାଗାରରେ ତିନିବର୍ଷ ଆବଦ୍ଧ ଥିଲେ । ଯଥା -
ଏବଂ ବର୍ଷତ୍ରୟଂ ତତ୍ର ମାବଣୋ ଲୋକରାବଣଃ ।
ତତଃ ପିତାମହେନୈବ ଯାଚ୍ଞା କୃତ୍ୱା ସ ମୋଚିତଃ । ଉ: କା: ୨ସ

ଅଛନ୍ତି ତାହା ଦାସେ ଉଲ୍ଲେଖ କରି ନାହାନ୍ତି । ନାରଦଙ୍କ ବଚନରେ ରାବଣ ମନୁଷ୍ୟମାନଙ୍କ ସହ ଯୁଦ୍ଧ ତ୍ୟାଗ କରି, ଯମଙ୍କ ସହ ଯୁଝିବାକୁ ଗଲେ । ଏହି ମୂଳ ସାରାଂଶ କଥାତକ ମାତ୍ର ସେ ଅନୁସରି ଅଛନ୍ତି । ଯମରାଷ୍ଟ୍ରରେ ସ୍ୱକୃତ ସୁକୃତ ଓ ଦୁଷ୍କୃତ ଭୋଗୀ ପ୍ରାଣୀମାନଙ୍କର ଯେତେଗୁଡ଼ିଏ ଦୃଶ୍ୟ ରାବଣ ଦେଖିଥିଲେ ଦାସେ ସେସବୁ ଅନାବଶ୍ୟକ ଭାବି ଚିତ୍ରିତ କରି ନାହାଁନ୍ତି; ଅପିଚ ରାବଣଙ୍କ ସହିତ ଯମଭଟମାନଙ୍କର ମଠ ଭାବିତ ଯେ ଯେ ଯୁଦ୍ଧାଚରଣମାନ ମୂଳଗ୍ରନ୍ଥରେ ପ୍ରତିପାଦିତ, ସେସବୁ ସୁଦ୍ଧା ଦାସେ ଇଚ୍ଛା ପୂର୍ବକ ତ୍ୟାଗ କରିଅଛନ୍ତି । ଦାସେ ଲେଖିଅଛନ୍ତି କି, ରାବଣ ଯମ ରାଜ୍ୟରେ ପ୍ରବେଶ କରି ସହସା ଯମଙ୍କ ସହ ଯୁଦ୍ଧ କଲେ । ସେ ମହାଶୟ ଏହି ଆହବିକ ଘଟନାର ପ୍ରତ୍ୟେକ ଅଂଶର ପଲ୍ଲବନ କରିନାହାନ୍ତି । ତଥାପି ପ୍ରଧାନ ପ୍ରଧାନ ଅଂଶମାନ ତ୍ୟାଗ କରି ନାହାଁନ୍ତି । ମୂଳଗ୍ରନ୍ଥରେ ଯେପରି ଲେଖା ଅଛି କି, ସପ୍ତରାତ୍ରି ପର୍ଯ୍ୟନ୍ତ ଯମ ରାବଣଙ୍କ ସହ ଯୁଦ୍ଧ କରି ସୁଦ୍ଧା ଭଗ୍ନଗଦା ପରାଜିତ ହୋଇ ନଥିଲେ, ରାବଣ ପ୍ରତି ନିଜର ପ୍ରଣୋଦନାର୍ଥ ମୃତ୍ୟୁ ଯେପରି ଯମଙ୍କୁ ଅନୁରୋଧ କରିଥିଲେ, ପରେ ଯମରାଜ ମୃତ୍ୟୁଙ୍କ ଅନୁରୋଧ ପ୍ରତିଷେଧ କରି ନିଜେ କାଳଦଣ୍ଡ ହସ୍ତରେ ଯେପରି ଉଦ୍ୟତ ହୋଇଥିଲେ, ତଥାଚ ସେ ପୁଣି ବ୍ରହ୍ମାଙ୍କ ଆଦେଶ ରକ୍ଷା କରି କାଳଦଣ୍ଡ ସୁଦ୍ଧା ଯେପରି ରାବଣଙ୍କ ପ୍ରତି ପ୍ରୟୋଗ ନ କରିବାପାଇଁ ବାଧ ହୋଇଥିଲେ ଏସବୁ ପ୍ରଧାନ ବିଷୟମାନ ଦାସ ମହାଶୟ ଠିକ୍ ମୂଳାନୁମତ ଲେଖିଅଛନ୍ତି । (୧)

---

(୧)(କ) ନାନା ପ୍ରହରଣୈରେବଂ ଯମେଣାମିତ୍ରକର୍ଷିଣା
ସପ୍ତରାତ୍ରଂ କୃତଃ ସଂଖ୍ୟେ ନ ଭଗ୍ନୋଽପି ବିଶେପି ବା । ୨୨ସ. ୧୯ ଶ୍ଳୋ.
ଏମନ୍ତ ସାତରାତ୍ରି ସାତ ଦିବସ ଯୁଦ୍ଧ । କେହି କାହାକୁ ଯେ କରି ନ ପାରିଲେ ବଧ ॥୬୪ପୃ.

(ଖ) ମୃତ୍ୟୁସ୍ତୁ ପରମ କ୍ରୋଧ ବୈବସ୍ୱତ ଯଥାବ୍ରୁତୀତ୍ ।
ମୁଞ୍ଚ ମାଂ ଦେବ ! କ୍ଷୀପ୍ରଂ ତଂ ନିହନ୍ମି ସମରେ ରିପୁମ୍ । ୨୨ସ. ୨୭ ଶ୍ଳୋ. ।
ଖଳଖଳ ହୋଇ ଦେହୁ ବହଇ ରକତ । ମୃତ୍ୟୁ ବୋଇଲା ଶୁଣହୋ ଆଦିତ୍ୟର ସୁତ ।
ମୋତେ ପେଷ ମୁହିଁ ଯେ ରାବଣକୁ ମାରଇ । ତ୍ରିଦଶ ଦେବତାଙ୍କର କଷ୍ଟ ଯେ ସାରଇ । ୬୭ ପୃ.

(ଗ) ଅବ୍ରବୀଦ୍ ତତ୍ର ତଂ ମୃତ୍ୟୁଂ ସ୍ୱୟମେନଂ ନିହନ୍ମ୍ୟହମ୍ ।
ତତଃ ସଂରକ୍ତ ନୟନଃ କ୍ରୁଦ୍ଧୋ ବୈବସ୍ୱତଃ ପ୍ରଭୁଃ ।
କାଳଦଣ୍ଡମମୋଘଂତୁ ତୋଳୟାମାସ ପାଣିନା । ୨୨ସ : ୩୨/୩୩ ଶ୍ଳୋ.
ମୃତ୍ୟୁ ଦେବତା ବଚନେ ବୋଲେ ଜନ୍ତୁରାଣ । ସାମାନ୍ୟ ଯୋଦ୍ଧା ନୁହଁଇ ଏ ଲଙ୍କା ରାବଣ ।
ତୁ ରହିଥାଅ ମୁହିଁ ଯେ ଏହାକୁ ମାରଇ । ଚଉଦ ଭୁବନର ଯେ ଉତ୍ପାତ ସାରଇ ।
ଏତେ ବୋଲି କାଳଦଣ୍ଡ ଧରେ ଜନ୍ତୁପତି । ରାବଣ କରେ ଧଇଲା ବ୍ରହ୍ମ ଯେ ଶକତି ।୬୭ ପୃ.

(ଘ) ଯମଂ ପିତାମହଃ ସାକ୍ଷାଦ୍ ଦର୍ଶୟିତ୍ୱେଦମବ୍ରବୀଦ୍
ବୈବସ୍ୱତ ମହାବାହୋ ! ନଖଲ୍ୱାତୁଲବିକ୍ରମ

ପାଠକେ ! ଉତ୍ତରକାଣ୍ଡରେ ଏ ପର୍ଯ୍ୟନ୍ତ ବିଷୟମାନ ଯେପରି ସରଳତଃ ଗୋଟିକ ପରେ ଗୋଟିଏ ଅମିଶ୍ରିତ ରୂପେ ଉକ୍ତ ଅଛି, ଅତଃପର ସେପରି ନୁହେଁ । ଏହିଠାରୁ ଦେଖିବେ ଅନେକ ଆଡୁ ଅନେକ ବିଷୟର ସଂକୁଳତା ଯୋଗୁ ପାଠାବଗମନ ଜଟିଳ ବୋଧହୁଏ । ଏହି ହେତୁରୁ ବୋଧହୁଏ ଅଧ୍ୟାତ୍ମ ରାମାୟଣଦ୍ୱାରା ଏହିଠାରୁ ରାବଣଙ୍କର ପାତାଳ ବିଜୟାଦିର କେତେକ ଜଟିଳତାଯୁକ୍ତ ବିଷୟ ସେଥିରେ ନିହିତ କରି ନାହାନ୍ତି । ଅଧ୍ୟାତ୍ମ ରାମାୟଣରେ ଉତ୍ତର କାଣ୍ଡର ଦ୍ୱିତୀୟ ସର୍ଗାନ୍ତ ପର୍ଯ୍ୟନ୍ତ କେବଳ ରାବଣଙ୍କର ସାଧାସିଧା ଚରିତାବଳୀ ଉକ୍ତ ଅଛି । ତତଃପର ବାଳି ସୁଗ୍ରୀବ ପ୍ରଭୃତିଙ୍କ କଥା ଗୃହୀତ ହୋଇଅଛି । ବାଲ୍ମୀକୀୟ ରାମାୟଣରେ ଅତଃପର ଉକ୍ତ ରାବଣଙ୍କର ପାତାଳ ବିଜୟାଦିର ଯେ ଚରିତାବଳୀ, ତାର ଅନୁବାଦନକୁ ବଳରାମ ଦାସ ମହାଶୟ ଟିକିଏ ସଂଯତ ଓ ସଂକ୍ଷିପ୍ତ ଭାବରେ କରିଯାଇ ଅଛନ୍ତି । ସେ ପୁଣି ଏଥି ମଧ୍ୟରୁ ଯାହା ଯାହାକି ଅନୁବାଦନର ଅନାବଶ୍ୟକ ବୁଝି ଅଛନ୍ତି, ସେଭଳି କେତେକ ବିଷୟ ତ୍ୟାଗ ସୁଦ୍ଧା କରି ଅଛନ୍ତି । ସତ୍ୟ ମାତ୍ର, ଅନୁଲେଖକମାନେ ସେମାନଙ୍କର ସହଜେ ଅବୋଧ ଏହି ସଂମିଶ୍ରିତ ଜଟିଳ ଚରିତାବଳୀ ମଧ୍ୟରେ ସୁଗମ୍ୟ ମାର୍ଗ ପାଇ ନ ପାରି ଅନେକଧା ଅତ୍ୟାଚାର କରି ଯାଇଅଛନ୍ତି ।

ତ୍ରୟୋବିଂଶ ସର୍ଗରେ ଲେଖାଅଛି ରାବଣ ବାସୁକିପାଳିତା ଅନ୍ୟୋନ୍ୟ-କଳିତା ଭୋଗବତୀପୁରକୁ ଆୟତ୍ତ କଲାପରେ ନିବାତକବଚମାନଙ୍କ ରାଜଧାନୀ ବୀରନିଧାନି ମଣିମତୀ ପୁରିରେ ଜିଗୀଷାରେ ପ୍ରବେଶ କଲେ । (୧) ବଳରାମ ଦାସେ ମଧ ଏହା ହିଁ ଲେଖିଅଛନ୍ତି; କିନ୍ତୁ ଏହାଙ୍କ ଲେଖା ମଣିମତୀ ପଦଟିକୁ ଅନୁଲେଖକେ ମଣିଦ୍ୟୁତି କରି

---

ପ୍ରହର୍ତବ୍ୟ ସ୍ତ୍ୱୟୈ ତେନ ଦଣ୍ଡେନାୟଂ ନିଶାଚରଃ ୨୨ସ, ୩୮, ୩୯ ଶ୍ଳୋ.
ସୁରଗଣେ ଭୟେ ଯେ କମ୍ପନ୍ତି ଥର ହର । ଦୁହିଁଙ୍କ ଭିତରେ ପଶିଲେ କୁଶଧର ।
ଯମକୁ ବୋଇଲେ ତୁହି କାଳଦଣ୍ଡ ଛାଡ଼ । ଶସ୍ତ୍ରଙ୍କ ମଧ୍ୟରେ ଏହି ଅଟଇ ଯୋଗାଡ଼ ।
ରାବଣକୁ ପୁଣି ବର ଦେଇ ଅଛି ମୁହିଁ । ଦେବ ଦାନବ ହାତରେ ମୃତ୍ୟୁ ତାକୁ ନାହିଁ । ୬୫ ପୃ.
ପାଠକ ମହାଶୟ ! ଅତ୍ରତ୍ୟ ଶ୍ଳୋକ ଏବଂ ଅନୁବାଦିତ ପଂକ୍ତିଗୁଡ଼ିକୁ ଅଭିନିବେଶ ପୂର୍ବକ ପରିଶୀଳନ କରନ୍ତୁ । ମତିମାନ୍ ବଳରାମ ଦାସେ ମୂଳ ଗ୍ରନ୍ଥକୁ କିଦୃଶ ଧରଣରେ ଅନୁସରି ମୂଳାନୁମତ ଅନୁବାଦ କରି ଅଛନ୍ତି ବୁଝି ପାରିବେ ।

(୧) ସ ତୁ ଭୋଗବତୀ ଗତ୍ୱା ପୁରୀଂ ବାସୁକି ପାଳିତାମ୍
ସ୍ଥାପ୍ୟନାଗାନ୍ ବଶେ କୃତ୍ୱା ଯଯୌ ମଣିମତୀଂ ପୁରି । ୨୩ ସ. ୫ ଶ୍ଳୋ.
ବାସୁକି ରାଜାକୁ ଯେ ଜିଣିଲା ଲଙ୍କସାଇଁ
ସଂଗ୍ରାମ କରିବାକୁ ଯେ କ୍ଷତ୍ରି ଲୋଡ଼ା ଥାଇ ।
ଯାଆନ୍ତେ ସେ ମଣିଦୃତି (ମଣିମତୀ) ପୁରକୁ ପାଇଲା
ନିବାତକବଚ ରାଜା ଛାମୁରେ ମିଳିଲା । ୬୬ ପୃ.

ଦେଇଅଛନ୍ତି । ରାବଣ ଏକ ବର୍ଷ ପର୍ଯ୍ୟନ୍ତ ନିବାତକବଚମାନଙ୍କ ସହ ଘୋର ଯୁଦ୍ଧ କରି ସୁଦ୍ଧା ବିଜୟଲକ୍ଷ୍ମୀ ପ୍ରାପ୍ତି ବିନା ସେଠାରୁ ପ୍ରତ୍ୟାବୃତ୍ତ ହୋଇଥିଲେ । ଏହା ମୂଳ ଆଉ ଦାସଙ୍କ ରାମାୟଣରେ ମଧ୍ୟ ଲେଖାଅଛି । (୧) ମୂଳ ଗ୍ରନ୍ଥ ଦେଖିବେ ରାବଣ ମଣିମତୀ ପୁରିରୁ ବରୁଣ ପୁରିକୁ ଯିବା ବାଟରେ ଅଶ୍ମ ନଗରୀରେ (୨) କାଳକେୟମାନଙ୍କୁ ଦମିତ ଓ ନିହତ କରିଥିଲେ, ମାତ୍ର ଦାସେ କାଳକେୟମାନଙ୍କର ଏହି ପରାଭୂତି କଥା ଲେଖି ନାହାନ୍ତି । ମୂଳମତେ ରାବଣ ବରୁଣ ପୁତ୍ରମାନଙ୍କୁ ପରାସ୍ତ କଲାପରେ ବରୁଣଙ୍କୁ ଯୁଦ୍ଧାର୍ଥ ଆହ୍ୱାନ କରିଥିଲେ । ତଦା ବରୁଣମନ୍ତ୍ରୀ ପ୍ରହାସ କହିଲେ, ହେ ଦଶଗ୍ରୀବ ! ବର୍ତ୍ତମାନ ବରୁଣ ବ୍ରହ୍ମାଙ୍କଠାକୁ ଯାଇଅଛନ୍ତି, ଆପଣ ତାଙ୍କ ପୁତ୍ରମାନଙ୍କୁ ପରାସ୍ତ କରି ବିଜୟୀ ହୋଇଅଛନ୍ତି । ରାବଣ ଏହାଶୁଣି ସେଠାରୁ ପ୍ରତ୍ୟାବୃତ୍ତ ହେଲେ । (୩) କିନ୍ତୁ ଦାସେ ଲେଖିଛନ୍ତି ରାବଣ ପ୍ରବେଶ ମାତ୍ରେ ବରୁଣଙ୍କ ସହ ଭୟଙ୍କର ସଂଗ୍ରାମ କଲେ । ପରେ ବରୁଣ ପରାଜୟ ସ୍ୱୀକାର କରି ସ୍ୱକୀୟ ଦେବଦୁର୍ଲ୍ଲଭ ବିବିଧ ରତ୍ନବର୍ଷୀ କନକମୟ ରାଜଦଣ୍ଡ ରାବଣଙ୍କୁ ପ୍ରଦାନ କଲେ । (୪)

ପାଠକଗଣ ! ମୂଳ ଚତୁର୍ବିଂଶ, ପଞ୍ଚବିଂଶ ଓ ଷଡ଼୍‌ବିଂଶ ଏହି ସର୍ଗତ୍ରୟରେ ବର୍ଣ୍ଣିତ ଚରିତମାନ ବଳରାମଦାସେ ମୂଳାନୁମତ ଅନୁବାଦିତ କେବଳ କରିଥିଲେ । କିନ୍ତୁ ଦାସଙ୍କର ଏହି ପାଠତକ ଅନୁଲେଖକମାନଙ୍କଦ୍ୱାରା ଅନେକତ୍ର ପୂର୍ବାପର କଥାରେ ମିଳାମିଶା, ଘାଣ୍ଟଚକଟ, ଉଲଟ, ପାଲଟ, ବିଚ୍ଛେଦ, ବିଯୋଜନାଦିଦ୍ୱାରା ବିଲୋମ ହୋଇଯାଇଅଛି । ମୂଳଗ୍ରନ୍ଥକୁ ଧରି ଏସବୁର ପରିଶୀଳନ କରିନେବା ବଡ଼ ଅସାଧ୍ୟ ବ୍ୟାପାର ହୋଇଅଛି । ଏହି ପାଠତକ ଛପା ପୁସ୍ତକରେ ଦେଖିନେବେ, ଏକସପ୍ତତିତମ ୭୧ ପୃଷ୍ଠାଠାରୁ

---

(୧) ତେଷାଂତୁ ଯୁଧ୍ୟମାନାନାଂ ସାଗ୍ରଃ ସମ୍ବତ୍ସରୋ ଗତଃ
ନ ଚାନ୍ୟତରସ୍ତତ୍ର ବିଜୟୋଽବା କ୍ଷୟୋଽପି ବା ୨୩ସ. ୮ ଶ୍ଳୋ.
ରାତ୍ରି ଦିବସ ଯେ କ୍ଷଣେ ନାହିଁ ନା ବିଶ୍ରାମ, ଦେବଙ୍କୁ ଦୁର୍ଲ୍ଲଭ ସେ ଯେ ଅପୂର୍ବ ସଂଗ୍ରାମ ।
ରାବଣ ବିଚାରେ ଏଥି ନାହିଁ ମୋର ଜୟ, ଏତେ ବୋଲି ରଥ ବାହୁଡ଼ାଇ ଲଙ୍କରାୟ । ୬୭ପୃ.

(୨) ତତୋଽଶ୍ମ ନଗରଂ ନାମ କାଳକେୟୈର୍ଭିରକ୍ଷିତମ୍
ଗତ୍ୱା ତୁ କାଳକେୟାଂଶ୍ଚ ହତ୍ୱା ତତ୍ର ବଳୋତ୍କଟମ୍ ୨୩ ସ. ୧୬ ଶ୍ଳୋ.

(୩) ୨୩ ସର୍ଗ ୪୯/୫୦ ଶ୍ଳୋକ ଦେଖନ୍ତୁ ।

(୪) ଛାପାରେ ୬୯ ପୃଷ୍ଠା ଦେଖନ୍ତୁ । କିନ୍ତୁ ଏଥିରେ ଲେଖାଅଛି ରାବଣ ବରୁଣଙ୍କଠାରୁ ରାଜଦଣ୍ଡ ପାଇ ପାତାଳରୁ ଲଙ୍କାପୁରକୁ ପ୍ରତ୍ୟାବୃତ୍ତ ହେଲେ । ସେ ପୁଣି ଫେରି କେତେକ ଦିନ ପରେ ପାତାଳକୁ ଯାତ୍ରା କଲେ । ମାତ୍ର ମୂଳଗ୍ରନ୍ଥମତେ ରାବଣ ବରୁଣପୁରୀ ଜୟ ପରେ ଲଙ୍କାକୁ ବାହାରି ଆସି ନାହାନ୍ତି ।
ଜୟଶଂଖ ବଜାଇ ଯେ ବାହୁଡ଼ାଇ ରଥ । ସମୁଦ୍ର ଭିତରୁ ଯେ ବାହାରି ଦଶମାଥ । ଇତ୍ୟାଦି ପୃଷ୍ଠା ୭୦ ।

ସପ୍ତାଶୀତିତମ ୮୭ ପୃଷ୍ଠା ପର୍ଯ୍ୟନ୍ତ ନିହିତ ଅଛି । ଏହାର ସର୍ଗାବସାନରେ କବିଙ୍କର ଭଣତି ପଦ୍ୟ ମଧ୍ୟ ଦିଆଯାଇଅଛି ।

ଚତୁର୍ବିଂଶ ସର୍ଗର ୬୬ ଷଟ୍‌ଷଷ୍ଠୀତମ ଶ୍ଳୋକ ପର୍ଯ୍ୟନ୍ତ ଉକ୍ତ ଅଛି କି ରାବଣ ଫେର୍ ପୂର୍ବୋକ୍ତ ଅଶ୍ମନଗର ବାଟେ ବଳିଙ୍କ ସଦନରେ ପ୍ରବିଷ୍ଟ ହେଲେ । ସେ ବଳିଙ୍କ ସହ ସ୍ନେହାଳାପ କଲାପରେ ତାହାଙ୍କ ଦ୍ୱାରପାଳସ୍ୱରୂପୀ ବିଷ୍ଣୁଙ୍କ ସହ ଯୁଦ୍ଧାର୍ଥେ ଆସି ସେଠାରେ ଫେର୍ ତାହାଙ୍କୁ ଦେଖିବାକୁ ନପାଇ ସେଠାରୁ ପ୍ରତ୍ୟାବୃତ୍ତ ହେଲେ । ତାପରେ ରାବଣ ସୂର୍ଯ୍ୟଲୋକଜିଗୀଷାରେ ଜିଗମିଷୁ ହୋଇ ମେରୁ ପର୍ବତୋପରି ପ୍ରବେଶ କରିଥିବା ଏବଂ ଚନ୍ଦ୍ରଲୋକ ପ୍ରତି ଯୁଯୁତ୍ସୁ ହେବା ପ୍ରଭୃତି କଥାମାନ ସବିସ୍ତର ଲେଖାଅଛି । (୧) ରାବଣ ସୋମଲୋକକୁ ବ୍ୟୋମମାର୍ଗରେ ଯାଉଁ ଯାଉଁ ନିମ୍ନରେ ପ୍ରଦତ୍ତ ଏହି ତିନିଗୋଟି ଦୃଶ୍ୟ ଦେଖିଥିଲେ ଏବଂ ସେମାନଙ୍କର ପରିଚୟ ତତ୍ର ଦୃଷ୍ଟ ପର୍ବତ ନାମକ ଋଷିଙ୍କଠାରୁ ପାଇଥିଲେ । ଏହି ସଂକ୍ରାନ୍ତ କଥାମାନ ଏହି ସର୍ଗରେ ସବିସ୍ତର ଉକ୍ତ ଅଛି ।

ପ୍ରଥମ ଦୃଶ୍ୟ – ଅପ୍ସରାମାନଙ୍କ କର୍ତ୍ତୃକ ସମାଲିଙ୍ଗିତ ଓ ପରିଚୁମ୍ବିତ ଏକଜଣ ପୁରୁଷ ବ୍ୟୋମଯାନରେ ଯାଉଅଛନ୍ତି ।

ଦ୍ୱିତୀୟ ଦୃଶ୍ୟ – ଏକଜଣ ସୌଖିନ ପୁରୁଷ ପ୍ରଭାମଣ୍ଡଳ ମଣ୍ଡିତ ରଥରେ ଗୀତବାଦିତ୍ର ଆମୋଦ ସହ ପ୍ରସ୍ଥାନ କରୁଅଛନ୍ତି ।

ତୃତୀୟ ଦୃଶ୍ୟ – ଆଉ ଏକଜଣ ଭାସ୍ୱର ମହାପୁରୁଷ ବ୍ୟୋମଯାନରେ ବିହାର କରୁଅଛନ୍ତି ।

ଏ ସ୍ଥଳେ ବଳରାମ ଦାସଙ୍କ ରାମାୟଣ ଦେଖିବେ, ରାବଣଙ୍କର ବଳିସଦନ ପ୍ରବେଶ ବୃତାନ୍ତଟି ସଂକ୍ଷେପତଃ ମୂଳାନୁମତ ଲେଖାଅଛି । ଏଥିରେ ରାବଣ ସୂର୍ଯ୍ୟଲୋକ ଜୟାର୍ଥ ପ୍ରସ୍ଥାନ କରିଥିବାର କଥାମାନ ଲେଖାଥିବା ଦେଖାଯାଏ ନାହିଁ । କିନ୍ତୁ ବହୁ ବ୍ୟବଧାନରେ ରାବଣଙ୍କର ଚନ୍ଦ୍ରଲୋକ ଜିଗୀଷାର କଥାମାନ ଲେଖା ଅଛି । ଅତଏବ ବୋଧହୁଏ ଏଥିରୁ କେତେକ ପାଠ ଅନୁଲେଖକ – ଅତ୍ୟାଚାରରେ ବିଚ୍ଛିନ୍ନ ହୋଇଯାଇଅଛି । ଅଥଚ ମୂଳରେ ଉକ୍ତ ଶଂସିତ ବ୍ୟୋମମାର୍ଗରେ ରାବଣଙ୍କ ପରିଦୃଷ୍ଟ ଦୃଶ୍ୟତ୍ରୟର କଥା ଏକତ୍ର ଯଥାଯଥ ଅକ୍ଷୁଣ୍ଣତଃ ଏଥିରେ ଦେଖାଯାଏ ନାହିଁ । କିନ୍ତୁ ଏ ସ୍ଥଳେ ଲେଖା ଅଛି କି ରାବଣ ପାତାଳପୁରରେ ଭ୍ରମୁ ଭ୍ରମୁ ତତ୍ରତ୍ୟ ଗୋଟିଏ ପର୍ବତୋପରି ଅପ୍ସରାମାନଙ୍କ ସହ

(୧) ଅଥ ସଂଚିଂତ୍ୟ ପୌଲସ୍ତ୍ୟଃ ସୂର୍ଯଲୋକଂ ଜଗାମହ । ୨୪ ସର୍ଗ
ଅଥ ସଂଚିଂତ୍ୟ ପୌଲସ୍ତ୍ୟଃ ସୋମଲୋକଂ ଜଗାମହ । ୨୪ ସର୍ଗ

ବିକ୍ରୀଡ଼ିତ ଏକ ଦିବ୍ୟ ପୁରୁଷକୁ ଦେଖିଥିଲେ । (୧) ଏଥିରେ ପୁଣି ଦେଖିବେ, ରାବଣଙ୍କର ଜିଜ୍ଞାସାର ଉତ୍ତର ସ୍ୱରୂପ ସେହି ସ୍ୱୈଣ ଦିବ୍ୟପୁରୁଷଙ୍କ ମୁଖରେ ଉକ୍ତ ସ୍ତ୍ରୀସମ୍ଭୋଗ ସଂକ୍ରାନ୍ତ ଷାଠିଏଗୋଟି ପଦ୍ୟ ଅଯୌକ୍ତିକ ଓ ଅମୌଳିକ ମତରେ ଲେଖାଅଛି । ଏହି କାମକିଙ୍କର – ପଠନୀୟ ସ୍ୱୈଣ ସ୍ତୋତ୍ରର ପଦ୍ୟଗୁଡ଼ିକ ବଳରାମ ଦାସେ ଲେଖିଅଛନ୍ତି, ଆଦୌ ବିଶ୍ୱାସ ହୁଏ ନାହିଁ । କେହି ସ୍ୱୈଣ କୌତୁକୀ ଅନୁଲେଖକ ତୁଣ୍ଡ-କଣ୍ଡୁ ଖଣ୍ଡନାର୍ଥେ ମଧ୍ୟ ପରିପଠନ ପୂର୍ବକ ଏଗୁଡ଼ିକୁ ଏଥିରେ ନିହିତ କରି ଦେଇଅଛନ୍ତି । (୨)

ରାବଣ ପୂର୍ବୋକ୍ତ ଦୃଶ୍ୟତ୍ରୟ ଦେଖି ପର୍ବତ ଋଷିଙ୍କୁ ପଚାରିଲେ, ଏହି ଯେ ରାଜାମାନେ ଯାଉ ଅଛନ୍ତି, କେହି ହେଲେ ମୋ ସଙ୍ଗେ ଯୁଦ୍ଧ କରିବେ କି ? ଋଷି କହିଲେ, ଏମାନେ ଯୁଦ୍ଧପ୍ରାର୍ଥୀ ନୁହନ୍ତି, ସ୍ୱର୍ଗ ପ୍ରାର୍ଥୀ ଅଟନ୍ତି । ତୁମ୍ଭର ଯଦି ଯୁଦ୍ଧ କରଣରେ ଇଚ୍ଛା ଥାଏ ତେବେ ସପ୍ତଦ୍ୱିପୈକ ବୀର ମାନ୍ଧାତାଙ୍କ ସହ ଯୁଦ୍ଧ କରିପାର । ରାବଣ ପଚାରିଲେ, ସେ ବର୍ତ୍ତମାନ  କେଉଁଠି ଅଛନ୍ତି ? ଋଷି କହିଲେ, ସେ ଏ କ୍ଷଣି ସ୍ୱର୍ଗକୁ ଯାଉ ଅଛନ୍ତି । ରାବଣ  ତଦା  ମାନ୍ଧାତାଙ୍କ ନିକଟକୁ ଯାଇ ଯୁଦ୍ଧ ପ୍ରାର୍ଥୀ ହେଲେ ।

ମୂଳଗ୍ରନ୍ଥ ମତରେ ରାବଣ ସ୍ୱର୍ଗ-ଜିଗମିଷୁ ମାନ୍ଧାତାଙ୍କୁ  ବ୍ୟୋମମାର୍ଗରେ ଯୁଦ୍ଧ ପ୍ରାର୍ଥନା କରିଥିଲେ । କିନ୍ତୁ ଦାସେ ଲେଖିଅଛନ୍ତି ସେ ତାହାଙ୍କୁ ଅଯୋଧ୍ୟାରେ ଭେଟି ଯୁଦ୍ଧ ମାଗିଥିଲେ । ଏ ସ୍ଥଳେ ପୁଣି ଦାସେ ଯୌବନାଶ୍ୱ ମାନ୍ଧାତାଙ୍କର ଉତ୍ପତ୍ତି ପ୍ରକୃତିମୂଳକ ମୂଳାନୁକ୍ତ ଅନେକ ଗୁଡ଼ିଏ ବୃତାନ୍ତ ଲେଖିଅଛନ୍ତି । ତଥାପି ଏହି କଥାମାନଙ୍କର ପରିଶେଷରେ ସେ ଉଭୟଙ୍କର ଲୋକଭୟଙ୍କର ଯୁଦ୍ଧ ମୂଳ ଗ୍ରନ୍ଥରେ ଯେପରି ପୁଲସ୍ତ୍ୟ ଓ ଗାଲବଙ୍କର ଦ୍ୱାରା ନିବାରିତ ହୋଇଥିଲା, ଦାସେ ମଧ୍ୟ ପ୍ରାୟଶଃ ତାହା ହିଁ କରିଅଛନ୍ତି । (୩)

ମୂଳଗ୍ରନ୍ଥ ମତରେ ମାନ୍ଧାତା ଓ ରାବଣଙ୍କର ଯୁଦ୍ଧ ବ୍ୟୋମ ମାର୍ଗରେ ଘଟିଥିବାରୁ ତନ୍ନିବୃତ୍ତି ପରେ ରାବଣ ପୂର୍ବବତ୍ ବାୟୁପଥରେ ସଂଚାର କରିଥିଲେ ଇତ୍ୟାଦି କଥା ମାନ ଲେଖାଅଛି । ମାତ୍ର ଦାସଙ୍କ ରାମାୟଣରେ ତଦା ରାବଣ  ଅଯୋଧ୍ୟାକୁ ପ୍ରତ୍ୟାବୃତ୍ତ

(୧) ପାତାଳପୁରେ ଏକା ବୁଲଇ ଲଙ୍କେଶ୍ୱର,
ଯାଅନ୍ତେଣ ଦେଖିଲା ଏକଇ ଗିରିବର ।
ଦିବ୍ୟ ପୁରୁଷେ ତହିଁ ଅପ୍ସରାଙ୍କୁ ଘେନି,
ଭୋଗ କରୁଅଛି କାମକଳାମାନ ଜାଣି । ୭୨ ପୃ.

(୨) ଛାପା ପୁସ୍ତକରେ ୭୨/୭୩/୭୪ ପୃଷ୍ଠାମାନ ପଢ଼ନ୍ତୁ ।

(୩) ପୁଲସ୍ତ୍ୟୋଗାଲବଶ୍ଚୈବ ବାରୟାମାସ ତଂ ନୃପମ୍ । ସୋପାଲମ୍ଭୈଶ୍ଚ ବିବିଧୈର୍ବାକ୍ୟୈ ରାକ୍ଷସସତ୍ତମମ୍ । ୨୪ସର୍ଗ
ଶୁଣିଣ ପଉଳସ୍ତି ଋଷି ଅଯୋଧ୍ୟାକୁ ଗଲେ, ଦୁଇ ବୀରଙ୍କର ଯୁଦ୍ଧ ମଝିରେ ପଶିଲେ । ନିୟମ କରାଇଣ ସେ ବୁଝାଇଲେ କହି । ୭୬ ପୃଷ୍ଠା ।

ହୋଇଥିଲେ, ଏହା ଲେଖାଅଛି । ସୁତରାଂ ଏହାର ଅବ୍ୟବହିତ ପରେ କେତେକ ପାଠ ଅନ୍ୟଥାକୃତ ଓ ବିଯୁକ୍ତ ସୁଦ୍ଧା ହୋଇଯାଇଅଛି । (୧) ସେହି ଚତୁର୍ବିଂଶ ସର୍ଗରେ ଦେଖିବେ ଇତଃପର ରାବଣ ମାନ୍ଧାତାଙ୍କ ସଙ୍ଗେ ମୈତ୍ରୀ ସ୍ଥାପନ କଲାପରେ କ୍ରମଶଃ ବାୟୁପଥମାନ ଅତିକ୍ରମ କରି ଚନ୍ଦ୍ରମଣ୍ଡଳରେ ଉପଗତ ହେଲେ । ତତ୍ର ଅନ୍ତେ ଶୈତ୍ୟ ତଥାଚ ଅଗ୍ନିଜ୍ୱାଳାର ଅସହ୍ୟ ତେଜଃପୁଞ୍ଜ ସହି ନ ପାରି ମନ୍ତ୍ରୀମାନେ ରାବଣଙ୍କୁ ସେହିଠାରୁ ପ୍ରତ୍ୟାବୃତ୍ତ ହେବା ପାଇଁ ବିନୀତ ଅନୁରୋଧ କଲେ । କିନ୍ତୁ ରାବଣ ସସାଧ୍ୱସ ହୃଦୟରେ ଅମୋଘ ବିଶିଖ ପ୍ରୟୋଗଦ୍ୱାରା ଅଗ୍ନି ମୟୂଖାଦିର ଅସହ୍ୟ ବାଧା ପ୍ରଶମିତ କରିବାପାଇଁ ସଚେଷ୍ଟ ହେଲେ । ସେକ୍ଷଣି ତତ୍ର ବ୍ରହ୍ମା ଆବିର୍ଭୂତ ହୋଇ ଚନ୍ଦ୍ରଙ୍କୁ ଆକ୍ରମଣ କର ନାହିଁ ବୋଲି ନାନା କଥାରେ ରାବଣଙ୍କୁ ବୁଝାଇ ଶୁଝାଇ ନିବର୍ତ୍ତାଇଲେ । ଏତିକିବେଳେ ବ୍ରହ୍ମା ପୁଣି ରାବଣଙ୍କୁ ମୃତ୍ୟୁ ଭୟ ବିନାଶନ ମନ୍ତ୍ର ଓ ସ୍ତୋତ୍ର ପ୍ରଦାନ କରିଥିଲେ । (୨) ସେହି ଦୁଷ୍ଟଚେଷ୍ଟ ସ୍ୱୈଣ-ଗରିଷ୍ଠ ରାବଣ ତେଣୁ ସ୍ୱଦେଶକୁ ଫେରିଲାବେଳେ ମଧ୍ୟ ମାର୍ଗରେ ଅନେକ ଯକ୍ଷ-ରାକ୍ଷସ-ଗନ୍ଧର୍ବାଦି ଓ ରାଜରଷିମାନଙ୍କୁ ନିହତ ଓ ପରାସ୍ତ କରି ଯୁବତୀମାନଙ୍କୁ ବଳେ ଅପହରଣ କରି ଆଣିଥିଲେ । ସେ ଘରେ ଆସି ପହୁଞ୍ଚିଲା କ୍ଷଣି ବିଧବା ସୂର୍ପଣଖା କ୍ରନ୍ଦନ ପୂର୍ବକ ନିନ୍ଦା ବର୍ଷଣ କଲେ । କାରଣ ଇତଃପୂର୍ବେ ରାବଣ କାଳକେୟ ବିଦ୍ରାବଣ ସମୟେ ଅଜ୍ଞାନତଃ ସେମାନଙ୍କ ସଙ୍ଗେ ନିଜର ଭଗିନୀପତିଙ୍କୁ ମଧ୍ୟ ନିପାତିତ କରି ଦେଇଅଛନ୍ତି । ତେତେବେଳେ ରାବଣ ଭଗିନୀ ସୂର୍ପଣଖାଙ୍କୁ କଥଂଚିତ୍ ସାନ୍ତ୍ୱନା ପ୍ରଦାନ କରି ଦଣ୍ଡକାରଣ୍ୟ ନିବାସୀ ଖରାସୁରଙ୍କ ନିକଟକୁ ପଠାଇ ଦେଲେ ।

ବଳରାମ ଦାସଙ୍କ ରାମାୟଣରେ ଦେଖିବେ, ରାବଣ ତ ମାନ୍ଧାତାଙ୍କ ଯୁଦ୍ଧ ନିବୃତ୍ତି ପରେ ଲଙ୍କାକୁ ବାହାରି ଆସିଥିଲେ । ସେ ତତ୍ର କେତେକ ଦିନ ଅବସ୍ଥାନ କଲାପରେ ଫେର୍ ଦିଗ୍‌ବିଜୟାର୍ଥ ପ୍ରୟାଣ କରି ସପତମପୁରରେ ପ୍ରବେଶ କଲେ । ଏହା ଲେଖା ଅଛି (୩) ଏ ସ୍ଥଳେ ପାଠ ଅଶୁଦ୍ଧ ଓ ଛାଡ଼ ହୋଇଯାଇଅଛି । ଦାସ ମହାଶୟ ମୂଳ ଗ୍ରନ୍ଥରେ ଉକ୍ତ ରାବଣଙ୍କର ଚନ୍ଦ୍ରମଣ୍ଡଳ ଆକ୍ରମଣର କଥା ଯଥାଯଥ କେବଳ ଲେଖିଥିଲେ । ତାକୁ ଅନୁଲେଖକମାନେ ଇତସ୍ତତଃ କ୍ଷତବିକ୍ଷତ ଓ ବିକୃତ କରି ଦେଇଛନ୍ତି । ପାଠକ ! ଏହାର ଉତ୍ତରୋତ୍ତରତଃ ଦେଖି ନେବେ ମୌଳିକ ଚନ୍ଦ୍ରମଣ୍ଡଳୀୟ ବର୍ଣ୍ଣନା ପ୍ରଭୃତି ଲେଖାଅଛି । ମୂଳଗ୍ରନ୍ଥରେ ଯେପରି ତତ୍ରାଗତ ପିତାମହ ରାବଣଙ୍କୁ ସୋମାକ୍ରମଣରୁ ନିବୃତ୍ତ ଓ ପ୍ରଶମିତ

(୧) ଏଥୁଅନନ୍ତରେ ପୁଣି ଦଶାନନ ରାୟେ, ନିଜଲଙ୍କା ଦେଶରେ ପ୍ରବେଶ ଯାଇହୁଏ ।
ଅଇଲାକ ଜିଣି ମାନଧାତା ପ୍ରାୟ କ୍ଷତ୍ରି, ଶୁଣିଣ ସକଳ ଲୋକ ସନ୍ତୋଷ ହୁଅନ୍ତି । ୭୬ପୃ.

(୨) ୨୪ ସର୍ଗର ମଧ୍ୟରେ ଏହି ସମସ୍ତ ସ୍ତୋତ୍ର ଲେଖାଅଛି ।

(୩) ବନଗିରି ଦେଶଯେ ବିପିନ ଜିଣିଗଲା । ସପତମ ପୁରେ ଅନ୍ତଃପୁରେକ ଦେଖିଲା ଇତ୍ୟାଦି ।
ଏହା ସପତମ ପୁର ନୁହେଁ ସୋମପୁର ବା ତଦର୍ଥବୋଧକ ଅନ୍ୟ ପଦ ଅଟେ । ପୃ.୭୭

କରି ମୃତ୍ୟୁଞ୍ଜୟ ସ୍ତୋତ୍ର ପ୍ରଦାନ କରିଥିଲେ ବୋଲି ଲେଖାଅଛି, ଏଥିରେ ମଧ ସେହିପରି ଈଶ୍ୱରଙ୍କର ଅଷ୍ଟୋତ୍ତରଶତନାମ ସ୍ତୋତ୍ର ପ୍ରଦାନ କରିଥିବା ପ୍ରଭୃତି ପୁରାଣାନ୍ତରିତ ମିଶ୍ରିତ କଥାମାନ ଲେଖାଅଛି ।

ଏହାପରେ ଏଥିର ମୂଳରେ ଅତ୍ରୈବ ଅନୁକ୍ତ ଗୋଟିଏ ଘଟଣାର କଥା ଲେଖାଅଛି । ତାର ସାମାସିକ ଆଂଶିକ ବିବରଣ ଏହି । ଚନ୍ଦ୍ରଲୋକରୁ ପ୍ରତ୍ୟାବୃତ୍ତ ରାବଣ ପଶ୍ଚିମ ସମୁଦ୍ର କୂଳରେ ପର୍ଯ୍ୟଙ୍କୋପରି ଉପବିଷ୍ଟ ଜଣେ ଦେଦୀପ୍ୟମାନ ମହାପୁରୁଷଙ୍କୁ ଦେଖି ଯୁଯୁତ୍ସା ପ୍ରକାଶ କଲାରୁ ସେ ନିଜର ଚକ୍ର ନିକ୍ଷିପ୍ତ କରିଦେଲେ । ରାବଣ ସହସା ବିମୋହିତ ହୋଇପଡ଼ି ପରେ ମନ୍ତ୍ରିମାନଙ୍କ ମୁଖରୁ ଶୁଣିଲେ ଯେ ସେ ମହାପୁରୁଷ ପାତାଳକୁ ବାହାରିଗଲେ । ରାବଣ ଫେର୍ ପାତାଳରେ ଉପଗତ ହୋଇ ଏକ ମଣିମୟ ମନ୍ଦିରରେ ସଶଙ୍ଖଚକ୍ର ସଲକ୍ଷ୍ମୀକ ହରିଙ୍କୁ ଦେଖି ଲକ୍ଷ୍ମୀଙ୍କ ଧର୍ଷଣରେ ଉଦ୍ୟତ ହେଲାରୁ ତଦା ଶ୍ରୀହରି ଏପରି ଦୃଷ୍ଟିରେ ଚାହିଁଦେଲେ ଯେ ରାବଣ ଏକାନ୍ତ ଚେତନାଶୂନ୍ୟତାରେ ପଡ଼ି ରହିଲେ ।

ରାବଣଙ୍କୁ ଚେତନା ପ୍ରାପ୍ତି ପରେ ଶ୍ରୀହରି ଆଶ୍ୱାସନା ପୂର୍ବକ ଆଦେଶ ଦେଲେ କି 'ରାକ୍ଷସେଶ୍ୱର ! ତୁମେ ସେହିଠାରେ ରହନାହିଁ' ରାବଣ ସେହିକ୍ଷଣି ସେଠାରୁ ବାହାରି ଆସିଲେ ଇତ୍ୟାଦି । (୧) ଏହି କଥାମାନ ମୂଳ ପଞ୍ଚତ୍ରିଂଶ ସର୍ଗର ପୂର୍ବାର୍ଦ୍ଧରେ ଉକ୍ତ ଅଛି । ଏଥିରେ ପୁଣି ଦେଖିବେ ରାବଣଙ୍କର ଭଗିନୀପତିବିଯୋଗବାର୍ତ୍ତାର ଶ୍ରବଣକ୍ରମ ଟିକିଏ ଭିନ୍ନ ପ୍ରକାର ଲେଖାଅଛି । ବିଧବା ସୂର୍ପଣଖା ଆସି ଅନୁରୋଧ କଲାରୁ ରାବଣ ସମାନୀତ ଯକ୍ଷରକ୍ଷାଦିଙ୍କ ଯୁବତୀନିଚୟଙ୍କୁ ଛାଡ଼ି ଦେଲେ ବୋଲି ମଧ ଲେଖା ଅଛି । କିନ୍ତୁ ମୂଳ ଗ୍ରନ୍ଥର ପଞ୍ଚବିଂଶ ସର୍ଗରୁ ଜଣାଯାଏ, ଆନୀତ ଯୁବତୀମାନଙ୍କୁ ରାବଣ ଛାଡ଼ି ନ ଥିଲେ । ତଦା ବିଭୀଷଣ ପରସ୍ତ୍ରୀ ହରଣ ନିତାନ୍ତ ଗର୍ହିତ ବୋଲି ଭର୍ତ୍ସନା କରିଥିଲେ ସୁଦ୍ଧା ସ୍ତ୍ରୈଣଗୁଣୀ ରାବଣ ସେଥିରେ ବିମୁଖ ହୋଇ ନ ଥିଲେ ।

ପଞ୍ଚବିଂଶ ଓ ଷଟ୍‌ବିଂଶ ସର୍ଗର ଉକ୍ତ କଥା ଏହି । ରାବଣଙ୍କର ଅନ୍ୟତମା ଭଗିନୀ କୁମ୍ଭୀନସୀଙ୍କୁ ତଦୀୟ ଅନୁପସ୍ଥିତି ଓ ଅଜ୍ଞାତସାରରେ ମଧୁ ନାମକ ଦୈତ୍ୟ ହରି ନେବାରୁ ରାବଣ ତାହାଙ୍କ ପ୍ରତି ଅଭିଯାନ କଲେ । ପରନ୍ତୁ ସେ ଭଗିନୀଙ୍କର ସମ୍ମତିରେ ମଧୁଦୈତ୍ୟ ପ୍ରତି ସନ୍ତୁଷ୍ଟ ପ୍ରକାଶ କରି ତାହାଙ୍କ ସହ ସ୍ୱର୍ଗ ଜିଗୀଷାରେ ପ୍ରସ୍ଥାନ କଲେ । ଲଙ୍କାଧିପ ପଥ ମଧ୍ୟରେ ଦେଖିଲେ ଦିବ୍ୟ ସ୍ତ୍ରୀମାନଙ୍କଦ୍ୱାରା ପରିବୃତା ଆଉ ପରିସେବିତା ସମଳଂକୃତା

---

(୧) ୭୮, ୭୯ ପୃଷ୍ଠା ପଢ଼ନ୍ତୁ ।

ରମ୍ଭା ବ୍ରହ୍ମାଙ୍କ ସମ୍ମତିକ୍ରମେ ନଳକୂବରଙ୍କ ପ୍ରତି ଅଭିସାର କରୁଅଛନ୍ତି । ରାବଣ ତାହାଙ୍କୁ ବଳାତ୍କାରରେ ଆକ୍ରମଣ କଲେ । ରମ୍ଭା ତାହାଙ୍କୁ ବହୁଧା ବୁଝାଇଲେ ସୁଦ୍ଧା ସେ ବୁଝିଲେ ନାହିଁ । ରମ୍ଭା ରାବଣଙ୍କର ସମାକ୍ରମଣରେ ବିବଶା ହୋଇପଡ଼ିଲେ । ସେ ପରେ ଚେତନା ପାଇ ନଳକୂବରଙ୍କୁ ରାବଣକୃତ ଅତ୍ୟାଚାର ନିବେଦନ କଲେ । ତଦା ନଳକୂବର ରାବଣଙ୍କୁ ଶାପ ଦେଲେ ଯେ ଆଜଠାରୁ ରାବଣ ଫେର୍ ଯଦି ବଳାତ୍କାରରେ ପରସ୍ତ୍ରୀ ହରଣ କରନ୍ତି ତେବେ ତଦୀୟ ମସ୍ତକ ନିଶ୍ଚେ ଶତଧା ବିଦୀର୍ଣ୍ଣ ହେବ । (୧) ସ୍ୱର୍ଗ ଜିଗୀଷୁ ରାବଣଙ୍କର ମଧ ମାର୍ଗରେ ସଂଘଟିତ ଏହି ରମ୍ଭାଧର୍ଷଣମୂଳକ ଚରିତତତକକୁ ଦାସ ମହାଶୟ ପ୍ରାୟଶଃ ମୂଳାନୁମତ ଲେଖି ଅଛନ୍ତି । ଏଥିମଧରେ ଦାସେ ଯାହା କିଛି ଯୋଗ ବିଯୋଗ କରିଅଛନ୍ତି, ତଦ୍‌ଦ୍ୱାରା ମୌଳିକ ଚାରିତ୍ରିକ ସୌନ୍ଦର୍ଯ୍ୟର ହ୍ରାସ ଘଟିନାହିଁ । ପ୍ରତ୍ୟୁତ ସ୍ଥାନେ ସ୍ଥାନେ ବର୍ଣ୍ଣନା-ଲାଳିତ୍ୟ ସାମୁଦାୟିକ-ଚରିତ-ସଂସ୍ଥାନ- ଶୋଭାକୁ ପରିପୁଷ୍ଟ କରିଅଛି । (୨)

ସପ୍ତବିଂଶ ସର୍ଗଠାରୁ ତିନିଗୋଟି ସର୍ଗରେ ରାବଣଙ୍କର ସ୍ୱର୍ଗରାଜ୍ୟବିଜୟର ବିବରଣମାନ ଦିଆଯାଇଅଛି । ଏହାର ପରିଶେଷରେ ଲେଖା ଅଛି କି ରାବଣି ମେଘନାଦ ଦେବଗଣଙ୍କର  ମଧ ଦୁରଧିଗମ୍ୟ ଇନ୍ଦ୍ରଜାଲ ବିସ୍ତାର କରି ସହସ୍ରାକ୍ଷଙ୍କ ଅଜ୍ଞାତ ମାୟିକ-ଯୁଦ୍ଧ କୌଶଳରେ ତାହାଙ୍କୁ ବାନ୍ଧି ଘେନି ଆସିଥିଲେ । (୩)

ଏହି (ଦେବଦାନବ) ସୁରାସୁର ଯୁଦ୍ଧ ସନ୍ନିଧାନ ବିବରଣମାନଙ୍କୁ ଦାସେ କିଛି ହିଁ ତ୍ୟାଗ କରି ନାହାନ୍ତି । ଏହି ଅଧାୟତ୍ରୟପାଠର ଅନୁବାଦନକୁ କବି ମହୋଦୟ ଠିକ୍ ମୂଳାନୁମତ କରିଅଛନ୍ତି । (୪)

ମୂଳରେ ଯେପରି ଦେବେନ୍ଦ୍ର ଅସୁରମାନଙ୍କ କର୍ତ୍ତୃକ ଆକ୍ରାନ୍ତ ଓ ପୀଡ଼ିତ ହୋଇ ନାରାୟଣଙ୍କୁ ପ୍ରଥମତଃ ଅସୁରମାନେ ଗୁହାରି କରିବା ଲେଖାଅଛି, ଦାସେ ମଧ ଠିକ୍ ତାହା ହିଁ ଲେଖିଅଛନ୍ତି । ମୂଳଗ୍ରନ୍ଥ ମତରେ ଯେପରି ବିଭୀଷଣ ମାତ୍ର ଲଙ୍କାରେ ଅବସ୍ଥାନ

---

(୧) ତସ୍ୟ ତତ୍‌କର୍ମ ବିଜ୍ଞାୟ ତଦା ବୈଶ୍ରବଣାତ୍ମଜଃ
ମୁହୂର୍ତ୍ତାଦ୍ ରୋଷମାଣାକ୍ଷଃ ତୋୟଂ ଜଗ୍ରାହ ପାଣିନା ।
ଗୃହୀତ୍ୱା ସଲିଳଂ ଦିବ୍ୟଂ ଉପସ୍ପୃଶ୍ୟ ଯଥାବିଧି
ଉସସର୍ଜ ତଦା ଶାପଂ ରାକ୍ଷସେନ୍ଦ୍ରାୟ ଦାରୁଣମ୍ । ଇତ୍ୟାଦି ।

(୨) ୮୩, ୮୪ ପୃଷ୍ଠାରେ ଦେଖିବେ ରମ୍ଭା ରୂପ ବର୍ଣ୍ଣନା ଖୁବ୍ ମନୋହର

(୩) ଅଥ ସବଳବୃତଃ ସବାହନଃ ତ୍ରିଦଶପତିଂ ପରିଗୃହ୍ୟ ରାବଣିଃ ।
ସ୍ୱଭବନମୁପଗମ୍ୟ ରାକ୍ଷସଃ ମୁଦିତମନା ବିସସର୍ଜ ରାକ୍ଷସାନ୍ । ୨୯ ସ. ୪୧ ଶ୍ଳୋ.

(୪) ଛାପା ପୁସ୍ତକରେ ୮୮ ପୃଷ୍ଠା ଠାରୁ ୯୬ ପୃଷ୍ଠା ପର୍ଯ୍ୟନ୍ତ ଏସବୁ ଲେଖାଅଛି ।

କରିଥିଲେ, କୁମ୍ଭକର୍ଣ୍ଣ ସୁଦ୍ଧା ଇନ୍ଦ୍ରଜୟାର୍ଥ ଏହି ଅଭିଯାନରେ ସ୍ୱର୍ଗକୁ ପ୍ରସ୍ଥାନ କରିଥିଲେ, ଦାସଙ୍କ ରାମାୟଣରେ ମଧ୍ୟ ତାହା ହିଁ ଲେଖା ଅଛି ।

ଏହା ପରେ ତ୍ରିଂଶ ସର୍ଗରେ ଲେଖାଅଛି, ଆପେ ବ୍ରହ୍ମା ଲଙ୍କାକୁ ଯାଇ ରାବଣଙ୍କଠାରୁ ଇନ୍ଦ୍ରଙ୍କୁ ମୁକୁଳାଇ ଆଣିଲେ, ଯାଗାଗ୍ନିରୁ ରଥ ବାହାର କରି ତଦାରୋହଣରେ ସର୍ବ-ବିଜେତା ହେବାପାଇଁ ଇନ୍ଦ୍ରଜିତଙ୍କୁ ବର ପ୍ରଦାନ କଲେ ଏବଂ ସର୍ବ ସମକ୍ଷରେ କହିଲେ ପୁରା ଇନ୍ଦ୍ର ସତୀପ୍ରବରା ଅହଲ୍ୟାଙ୍କୁ ହରଣ କରିଥିବାରୁ ସମ୍ପ୍ରତି ତାହାର ପ୍ରତିଫଳ ସ୍ୱରୂପ ଏହି ଦୁରବସ୍ଥା ପାଇ ବନ୍ଦୀ ରହିଲେ, ତଥାଚ ଏହି ସର୍ଗରେ ପୁଣି ଦେବେନ୍ଦ୍ର ଯାଗାନୁଷ୍ଠାନ କରିଥିବା ପ୍ରଭୃତି କଥାମାନ ମଧ୍ୟ ଉକ୍ତ ଅଛି ।

ଏ ସ୍ଥଳେ ବଳରାମ ଦାସଙ୍କ ରାମାୟଣରେ ଦେଖିବେ ଏହି ଶଂସିତ ବିଷୟମାନ ଠିକ୍ ଯଥାଯଥ ଲେଖାଅଛି । ସୁତରାଂ ଅତିରିକ୍ତତଃ ଦାସ ମହାଶୟ ଏ ସ୍ଥଳରେ ନିମ୍ନରେ ପ୍ରଦତ୍ତ ଦୁଇଗୋଟି ବିଷୟର ଆର୍ଷପ୍ରମାଣ ପୁରାଣାନ୍ତରମାନଙ୍କରେ କୌଣସି ପ୍ରକାରେ ପ୍ରକାଶିତ ଥିବା ଆନୁମାନିକ ଜଣାଯାଉଅଛି । ପୁରାଣାନ୍ତରରେ ପ୍ରକାଶିତ ଏହାର ସୂକ୍ଷ୍ମ ପ୍ରମାଣକୁ ଦାସ ମହାଶୟ ଧରିନେଇ ଏ ସ୍ଥଳରେ ତାକୁ ଆଳଂକାରିକ କ୍ରମରେ ବିବୃତ କରିଅଛନ୍ତି । ଅତ୍ରତ୍ୟ ଦ୍ୱିତୀୟ ବିଷୟର ବିଚାର କରି ନେଲେ ବିଶ୍ୱାସ ହୁଏ ଏହା ଅବଶ୍ୟ କୌଣସି ପୁରାଣାଦିରେ ପ୍ରକାଶିତ ଅଛି । ଦାସ ମହାଶୟ ବହୁ ପୌରାଣିକ ଚରିତ-ବେତ୍ତା ଥିଲେ ବୋଲି ଏହି ପୌରାଣିକ କଥାନକ ଦ୍ୱୟକୁ ନିଜର ରାମାୟଣରେ ଯଥା ସ୍ଥାନରେ ସନ୍ନିବେଶିତ କରିଯାଇଛନ୍ତି ।

ଅତ୍ରତ୍ୟ ପ୍ରଥମ ବିଷୟ ଏହି ଯେ ବ୍ରହ୍ମା ଇନ୍ଦ୍ରଙ୍କୁ ବନ୍ଧନରୁ ମୁକ୍ତ କରି ନେଲାବେଳେ ରାବଣ ତାହାଙ୍କୁ କହିଲେ କି, 'ଭୋ ପିତାମହ ! ମୁଁ ଦେବେନ୍ଦ୍ରଙ୍କୁ ନିହତ କରିବାପାଇଁ କେବଳ ବାନ୍ଧି ଆଣିଥିଲି । କିନ୍ତୁ ଆପଣଙ୍କର ଆଦେଶ ଗ୍ରହଣ କରି ଏକ୍ଷଣି ତାଙ୍କୁ ଛାଡ଼ି ଦେଉଅଛି । ଅତଏବ ସର୍ବଥା ମୋର କଥା ରକ୍ଷା କରିବାପାଇଁ ଆପଣ ସଦୟ ମୋ ପ୍ରତି ସୁପ୍ରସାଦ ପ୍ରକାଶ କରନ୍ତୁ । ମୁଁ ଏହି ବର ପ୍ରାର୍ଥନା କରୁଅଛି । ତାହା ସଫଳ କରନ୍ତୁ । ମୁଁ ଆପଣଙ୍କର ପୁତ୍ର, ମୋ ପ୍ରତି ମାୟା ନ ରଖି ମୋ ମନୋରଥ ସଫଳ କରନ୍ତୁ । ଆଜିଠାରୁ ବୈଶ୍ୱାନର ମୋର ବଶ୍ୟ ନରପ୍ରାୟ ସମୁଜ୍ଜ୍ୱଳକାରି ବସ୍ତ୍ରଧାବକ ହୁଅନ୍ତୁ, ଚନ୍ଦ୍ରମା ପ୍ରତ୍ୟହ ମୋର ଭକ୍ଷ୍ୟ ପାଚକ ହୁଅନ୍ତୁ, ଆପଣ ମଧ୍ୟ ବ୍ରାହ୍ମୀ ବେଳାରେ ବ୍ରହ୍ମଗାନ କରି ମୋତେ ସନ୍ତୁଷ୍ଟ କରୁଥାଆନ୍ତୁ । ତଥାଚ ଇନ୍ଦ୍ର ମୋର ଦ୍ୱାରପାଳକ, ବୃହସ୍ପତି ତିଥିବାରାଦି ବିଜ୍ଞାପକ, ଜ୍ୟୋତିଷିକ, ପବନ ବ୍ୟଜନାଦିଚାଳକ, ଆଉ ନାରଦ ବୀଣାବାଦକ ହୁଅନ୍ତୁ । ଦେବ ଦେବ ତ୍ରିପୁରାରି ଅପ୍ସରାଗଣ ପ୍ରଭୃତିଙ୍କ ସହ ମୋ ସମ୍ମୁଖରେ ସଙ୍ଗିତାଳାପ କରନ୍ତୁ ।

ଦେବ-ଗନ୍ଧର୍ବ-ଯକ୍ଷ-ବିଦ୍ୟାଧରାଦିମାନେ ଲଙ୍କାରେ ମୋର ଆଜ୍ଞାକାରି ରହନ୍ତୁ । ମୁଁ ଯେତେବେଳେ ଯେଉଁ ପଦାର୍ଥ ଇଚ୍ଛା କରିବି ତେତେବେଳେ ସମ୍ପୂନ୍ନ ହୋଉ । ତ୍ରୈଲୋକ୍ୟରେ ମୋର ସମାନ ବୀର କେହି ହୋଇ ନ ପାରନ୍ତୁ । ମୋତେ ଆପଣ ତ୍ରୈଲୋକ୍ୟ-ବିଜୟୀ ରଖନ୍ତୁ ।' ବ୍ରହ୍ମା ରାବଣଙ୍କ ମୁଖରୁ ଏସବୁ ଶୁଣି ତଥାସ୍ତୁ ବୋଲି ଆଦେଶ ଦେଲେ । (୧)

ଅତ୍ରତ୍ୟ ଦ୍ୱିତୀୟ ବିଷୟ ଏହି ଯେ ବ୍ରହ୍ମା ଇନ୍ଦ୍ରଙ୍କୁ ବନ୍ଧନରୁ ମୁକ୍ତ କଲା ପରେ ବିଭୀଷଣଙ୍କୁ ଗୋପନରେ କହିଲେ, 'ହେ ବିଭୀଷଣ ! ତୁମର ଅଗ୍ରଜ ଭ୍ରାତା ଦେବେନ୍ଦ୍ରଙ୍କ ଭବନରୁ ସମସ୍ତ ପଦାର୍ଥ ଲୁଟମାର କରି ଘେନି ଆସିଲେ । ସେ ସମସ୍ତ ଅପହୃତ ପଦାର୍ଥ-ନିଚୟରେ ମୋର ଚିରସମାରାଧିତ ଅନନ୍ତ ପୁରୁଷୋତ୍ତମ ପ୍ରତିମା ଅଛନ୍ତି । ମୁଁ ପୂର୍ବେ ପ୍ରସନ୍ନ ହୋଇ ତାହା ଇନ୍ଦ୍ରଙ୍କୁ ଦେଇଥିଲି । ଏହା ଅତି ଗୋପନୀୟ କଥା; ତୁମେ ମୋର ବିଶ୍ୱସ୍ତ ବୋଲି କହୁଅଛି । ଇନ୍ଦ୍ର ସେହି ପଦ୍ମନାଭ ପ୍ରତିମାକୁ ପ୍ରତ୍ୟହ ପୂଜା କରିବାରୁ କେବଳ ଅମରାବତୀରେ ସୁଖରେ ବିଳସୁ ଅଛନ୍ତି । ବର୍ତ୍ତମାନ ରାବଣ ଦେବତାମାନଙ୍କୁ ପରାସ୍ତ କରି ସେହି ଦେବତା ପ୍ରତିମାକୁ ଘେନି ଆସି ଗୃହରେ ରଖିଅଛନ୍ତି । ତୁମେ ଏଣିକି ସେ ଦେବତାଙ୍କୁ ନିତ୍ୟ ସେବା କର, ଅମରତ୍ୱ ଲାଭ କରି ସମୟେ ଏହି ଲଙ୍କା ରାଜ୍ୟରେ ରାଜା ହେବ । ସେହି ଅନନ୍ତଶୟନ ମୂର୍ତ୍ତିକୁ ତୁମେ ପ୍ରତ୍ୟହ ସେବା କଲେ ନିଶ୍ଚେ ସ୍ୱୟଂ ବିଷ୍ଣୁଙ୍କୁ ପ୍ରତ୍ୟକ୍ଷ ଦେଖିପାରିବ । ତୁମେ କେତେକ ସମୟ ସେହି ଦେବତାଙ୍କୁ ସେବା କଲାପରେ ସ୍ୱୟଂ ବିଷ୍ଣୁ ରାମ ରୂପରେ ଏହି ଲଙ୍କା ନଗରୀକୁ ଆସିବେ । ତେତେବେଳେ ସେ ତୁମକୁ ଏହି ଦେବପ୍ରତିମାକୁ ଦେବାପାଇଁ ଅନୁରୋଧ କରିବେ । ତୁମେ ତାହାଙ୍କୁ ସାଦରେ ଏହା ସମର୍ପଣ କରିବ । ରାମ ଏହି ଦେବ ପ୍ରତିମାକୁ ନେଇ ଜମ୍ବୁଦ୍ୱୀପରେ ଶ୍ରୀପୁରୁଷୋତ୍ତମ କ୍ଷେତ୍ରରେ କଳ୍ପବଟ ତଳେ ପ୍ରତିଷ୍ଠିତ ରଖିବେ । ହେ ବିଭୀଷଣ ! ଏକଥା ତୁମେ କଦାପି ରାବଣଙ୍କୁ କହ ନାହିଁ । ତୁମେ ଏହି କ୍ଷଣି ତାହାଙ୍କ ଅଜ୍ଞାତରେ ସେ ଦେବ ପ୍ରତିମାକୁ ନେଇ ତୁମର ଦେବାର୍ଚ୍ଚନ ମନ୍ଦିରରେ ରଖିଥାଅ, ଇତ୍ୟାଦି । (୨)

ମୂଳ ଗ୍ରନ୍ଥର ଏକତ୍ରିଂଶ ଓ ଦ୍ୱାତ୍ରିଂଶ ସର୍ଗରେ ରାବଣ ଓ ସହସ୍ରାର୍ଜ୍ଜୁନଙ୍କ ଯୁଦ୍ଧ ବିଧାନର କଥାମାନ ଲେଖାଅଛି । ଏହି ସବୁର ଅନୁବାଦନ ବଳରାମ ଦାସ ଇତିପୂର୍ବରୁ ପ୍ରକାଶ କରି ଦେଇଅଛନ୍ତି । (୩)

---

(୧) ଶୁଣିଣ ବିଧାତା ଯେ ବୋଇଲା ଅସ୍ତୁ ହେଉ
ବ୍ରହ୍ମାଣ୍ଡ ଭିତରେ ତତେ ଜିଣନ୍ତା କେ ନୋହୁ । ୯୮ପୃ.

(୨) ରାବଣ ନଜାଣିବ ତା ନିଅସି ଗୁପତେ ।
ଦେବାର୍ଚ୍ଚନ ମନ୍ଦିରେ ଥୋଇବୁ ଶୁଦ୍ଧପୂତେ । ୯୯ପୃ.

(୩) ଛାପା ପୁସ୍ତକରେ ୫୬ ପୃଷ୍ଠାଠାରୁ ୬୦ ପୃଷ୍ଠାଯାଏ ଏହା ଦେଖିବେ ।

ପାଠକ ମହାଶୟ ! ସେହି ପାଠତକ ମୂଳସହ ମିଳାଇ ଦେଖନ୍ତୁ; ସେସବୁ ସ୍ଥୂଳତଃ ମୂଳାନୁମତ କେବଳ । ମୂଳଗ୍ରନ୍ଥରେ ଲେଖାଅଛି ରାବଣ ପ୍ରଥମେ ମାହିଷ୍ମତୀକୁ ଯାଇ ତତ୍ର ସହସ୍ରାର୍ଜ୍ଜୁନଙ୍କ ଅନବସ୍ଥିତି ଜାଣି (୧) ବିନ୍ଧ୍ୟାଚଳ ଦେଇ ନର୍ମଦା ତୀରକୁ ଯାଇଥିଲେ ।

ବଳରାମ ଦାସେ ଅତ୍ର ଏହି ଆନୁସଙ୍ଗିକ ବିନ୍ଧ୍ୟାଚଳ ମାତ୍ର ଉଲ୍ଲେଖ କରି ନାହାନ୍ତି । କିନ୍ତୁ ଦାସେ ଯେପରି ରାବଣ ନର୍ମଦା ତୀରରେ ମହାଦେବଙ୍କୁ ପୂଜା କରିଥିଲେ (୨) ଇତ୍ୟାଦି କଥା ସଂକ୍ଷେପତଃ କହିଅଛନ୍ତି, ସେସବୁ ମୂଳରେ ସବିସ୍ତର ଲେଖାଅଛି । (୩)

ପରନ୍ତୁ ମୂଳ ଗ୍ରନ୍ଥରେ ଉକ୍ତ ରାବଣଙ୍କର ସହଯାତ୍ରୀ ଜାମ୍ବୁନଦମୟ ଲିଙ୍ଗଙ୍କ କଥା ମାତ୍ର ଦାସେ ପ୍ରକାଶ କରିନାହାନ୍ତି । (୪)

ଏହାପରେ ତ୍ରୟତ୍ରିଂଶ ସର୍ଗରେ ପୁଲସ୍ତ୍ୟଙ୍କ କର୍ତ୍ତୃକ ରାବଣଙ୍କର ବନ୍ଧନମୁକ୍ତିର ବିବରଣ ଉକ୍ତ ଅଛି । ଏହା ସୁଦ୍ଧା ଦାସେ ସଂକ୍ଷେପତଃ ପୂର୍ବୋକ୍ତ କଥାର ସଙ୍ଗେ ଲେଖି ଦେଇ ଅଛନ୍ତି । ଅତଃପର ଚତୁସ୍ତ୍ରିଂଶ ସର୍ଗରେ ବର୍ଣ୍ଣିତ କଥାର ସାର ଅଂଶ ଏହି ଯେ ରାବଣ ବାଳିଙ୍କ ସହ ଯୁଦ୍ଧକରଣାର୍ଥ ଯାଇ ଆଗେ ତଦୀୟ କକ୍ଷ ଓ କାରାକକ୍ଷରେ ବଦ୍ଧ ହେଲାପରେ ବ୍ରହ୍ମାଙ୍କ ଆଦେଶମତେ ତଦୀୟ ସଖ୍ୟରେ ଆବଦ୍ଧ ରହିଲେ । ଏହି କଥାମାନଙ୍କୁ ବଳରାମ ଦାସେ ଇତିପୂର୍ବରୁ (୫) ସଂକ୍ଷେପତଃ ଲେଖିଦେଇ ଅଛନ୍ତି । ଘଟଣାମାନଙ୍କର ଉଲ୍ଲେଖନରେ ଏହି ଯେ ସ୍ଥାନ ପରିବର୍ତ୍ତନ, ଏହା ବଳରାମ ଦାସେ କେବଳ କରିଅଛନ୍ତି, ଏହା କୁହାଯାଇନପାରେ । ଅନେକେ ଅବଶ୍ୟ ଦେଖିଥିବେ, ମନନ ପୂର୍ବକ ହୃଦୟଙ୍ଗମ କରି ରଖିଥିବେ, ମୂଳଗ୍ରନ୍ଥମାନଙ୍କର କେତେକ ଆଦର୍ଶରେ ମଧ କେତେକ କଥାସନ୍ନିଧାନମାନଙ୍କର ଅବସ୍ଥାନରେ ସ୍ଥାନ – ପ୍ରଭେଦ ହୋଇଥିବା ଦେଖାଯାଏ । ଶ୍ରୀମଦ୍ ଭାଗବତ ଓ ରାମାୟଣାଦି ଗ୍ରନ୍ଥମାନଙ୍କରେ ଭିନ୍ନ ଭିନ୍ନ ପୂର୍ବାଚାର୍ଯ୍ୟମାନଙ୍କର ମତାନୁସାରେ ଏହିପରି ସ୍ଥାନ ପରିବର୍ତ୍ତନ ଅନେକତ୍ର ପ୍ରତ୍ୟକ୍ଷ ଦେଖାଯାଉଅଛି । ସେମାନେ ବୋଧହୁଏ

---

(୧) ପଶ୍ୟମାନସ୍ତତୋ ବିନ୍ଧ୍ୟଂ ରାବଣୋ ନର୍ମଦାଂ ଯଯୌ । ୩୧ ସ. ୧୮ ଶ୍ଳୋ

(୨) ରାବଣ ଯେ ଶଙ୍କରଙ୍କୁ ତହିଁ ପୂଜୁଥିଲା,
ନର୍ମଦା ନଦୀ ଯେ ପୁଣି ତହିଁ କି ବଢ଼ିଲା । ୫୭ପୃ.

(୩) ଅହମପ୍ୟତ୍ର ପୁଳିନେ ଶରଦିନ୍ଦୁସମପ୍ରଭେ
ପୁଷ୍ପୋପହାରଂ ଶନକୈଃ କରିଷ୍ୟାମି ହ୍ୟୁମାପତେଃ । ୩୧/୩୪ ଶ୍ଳୋ.
ଲିଙ୍ଗନ୍ତୁ ପୂଜୟେଦ୍ ରକ୍ଷୋ ରାବଣୋ ଲୋକରାବଣଃ । ୩୧/୪୩ ଶ୍ଳୋ.

(୪) ଯତ୍ର ଯତ୍ର ଚ ଯାତି ସ୍ମ ରାବଣୋ ରାକ୍ଷସେଶ୍ୱରଃ;
ଜାମ୍ବୁନଦ ମୟଂ ଲିଙ୍ଗଂ ତତ୍ର ତତ୍ର ସ୍ମ ନୀୟତେ । ୩୧ ସ. ୪୨ ଶ୍ଳୋ

(୫) ଛାପା ପୁସ୍ତକରେ ୬୧/୬୨ ପୃଷ୍ଠା ଦେଖନ୍ତୁ ।

ଘଟଣାମାନଙ୍କର ସମସାମୟିକତା ଧରି ନିଜ ନିଜର ବିଚାର ଅନୁସାରେ ଏପରି କରିଥାଆନ୍ତି । ଆଉ କେତେକ ସ୍ଥଳେ ମୂଳ ଗ୍ରନ୍ଥମାନଙ୍କରେ ଅଧ୍ୟାୟ ବିଭାଜନରେ ସୁଦ୍ଧା ସ୍ଥାନପ୍ରଭେଦ ଦେଖାଯାଇଥାଏ । ଆଉ କେତେକ ସ୍ଥାନରେ ପୂର୍ବାପର ଅଧ୍ୟାୟ ବା ସର୍ଗଦ୍ୱୟ ମଧ୍ୟରେ କେତେକ ପାଠ ପ୍ରକ୍ଷିପ୍ତ ହୋଇଥାଏ ।

ମୂଳ ତ୍ରିଂଶ ସର୍ଗର ପ୍ରାରମ୍ଭରୁ ପ୍ରାୟ ଅର୍ଦ୍ଧଭାଗ ପର୍ଯ୍ୟନ୍ତ ଲେଖା ଅଛି କି, ରାବଣ ଏକଦା ପଶ୍ଚିମ ସମୁଦ୍ରବର୍ତ୍ତୀ ଦ୍ୱୀପରେ ଏକ ଜଣ ମହାପ୍ରତାପୀ ମହାପୁରୁଷଙ୍କୁ ଦେଖି ଯୁଦ୍ଧ ପ୍ରାର୍ଥନା ହୋଇ ତଦୀୟ ମୁଷ୍ଟ୍ୟାଘାତରେ ମୋହିତ ହୋଇ ପଡ଼ିଲେ । ସେ ମହାପୁରୁଷ ପାତାଳପୁରକୁ ବାହାରି ଯିବାରୁ ରାବଣ ମଧ ଚେତନା ପ୍ରାପ୍ତ ପରେ ତତ୍ର ଉପଗତ ହୋଇ ସସ୍ତ୍ରୀକ ଭୁଜଗଶାୟୀ ମହାପୁରୁଷଙ୍କୁ ଦେଖି ଲକ୍ଷ୍ମୀଙ୍କ ଧର୍ଷଣକାମୀ ହେଲାରୁ ସେହି ସୁପ୍ତମହାପୁରୁଷ ଏପରି ଦୃଷ୍ଟିପାତ କଲେ ଯେ ତତ୍‌କ୍ଷଣାତ୍ ରାବଣ ମୋହିତ ହୋଇ ପଡ଼ିଲେ । ତେତେବେଳେ ରାବଣ ସେ ମହାପୁରୁଷଙ୍କ ଶରୀରରେ ଦେବଦାନବାଦି ଗ୍ରହନକ୍ଷତ୍ରାଦି ସ୍ଥାବରଜଙ୍ଗମାତ୍ମକ ଜଗଜ୍ଜାଳ ଦେଖିବାକୁ ପାଇଲେ ଏବଂ ଲଜ୍ଜିତ ହୋଇ ସେଠାରୁ ବାହାରି ଆସିଲେ । ଏ ସ୍ଥଳେ ପୁଣି ଅଗସ୍ତି ରାମଙ୍କ ଜିଜ୍ଞାସାରେ ସେହି ମହାପୁରୁଷ ସ୍ୱୟଂ ନାରାୟଣ ଏବଂ ତତ୍ରତ୍ୟ ପାରିଷଦଗଣ, ଦେବଗଣ ବୋଲି କହିଅଛନ୍ତି । ପାଠକ ମହାଶୟ, ବୁଝି ରଖନ୍ତୁ ଏହି ସର୍ଗର ଅର୍ଦ୍ଧଭାଗରେ ଏହି ଚରିତ ଲେଖାଅଛି । ଏହାର ପୂର୍ବାର୍ଦ୍ଧର ଚରିତକୁ ବଳରାମ ଦାସେ ମୌଳିକ ଆଦର୍ଶର ପାଠଭେଦ ଅନୁସାରେ ଇତଃ ପୂର୍ବରୁ ଅନ୍ୟ ସ୍ଥାନରେ ଯେ କୌଣସି ପ୍ରକାରେ ପ୍ରକାଶ କରିଦେଇଅଛନ୍ତି । (୧)

ଦାସଙ୍କ ରାମାୟଣରେ ବ୍ରହ୍ମାଙ୍କ କର୍ତ୍ତୃକ ଇନ୍ଦ୍ରଙ୍କ ବନ୍ଧନମୁକ୍ତିର ପାଠ ଏବଂ ତତ୍‌ପରବର୍ତ୍ତୀ ହନୁମାନଙ୍କ ପିତା କେଶରୀ ବାନରଙ୍କ ଚରିତ ମୂଳକ ପାଠ, ଏ ଉଭୟ ପାଠ ମଧ୍ୟରେ ରାବଣଙ୍କ ଐଶ୍ୱର୍ଯ୍ୟ ବର୍ଣ୍ଣନାର କେତେକ ପାଠ ଯାହା ଅଧିକା ରହିଅଛି, ତେତେକ କବି ମହୋଦୟ ରାବଣଙ୍କର ପୌରୁଷାଧିକ୍ୟ ପ୍ରଖ୍ୟାପନାର୍ଥ ଲେଖିଅଛନ୍ତି । (୨) ଏହା ଏ ସ୍ଥଳେ ମୂଳରେ ଲେଖା ଥିଲେ ସୁଦ୍ଧା ଅଳୀକ ନୁହେଁ ।

ଏହାପରେ ଏହି ରାମାୟଣରେ ହନୁମାନଙ୍କ ଜନ୍ମାଦି ବିବରଣ ବିଭୀଷଣଙ୍କ ଜିଜ୍ଞାସାରେ ଅଗସ୍ତି କହୁ ଅଛନ୍ତି । ଏହି ପ୍ରଶ୍ନର କ୍ରମ ଏବଂ ପ୍ରଶ୍ନକର୍ତ୍ତା ମୂଳ ଅପେକ୍ଷା ଏଥିରେ ଭିନ୍ନ ପ୍ରକାର, (୩) ମୂଳ ଗ୍ରନ୍ଥରେ ଦେଖିବେ । ଶ୍ରୀରାମ ପ୍ରଶ୍ନ କଲେ ଯେ

---

(୧) ଛାପା ପୁସ୍ତକରେ ୭୮, ୭୯ ପୃଷ୍ଠା ପଢ଼ନ୍ତୁ, ରାବଣଙ୍କ ଚନ୍ଦ୍ରଲୋକ ପ୍ରତ୍ୟାବୃତ୍ତି ପରେ ଏକଥା ଲେଖାଅଛି ।

(୨) ଛାପା ପୁସ୍ତକରେ ୯୯, ୧୦୦, ଏ ଦୁଇ ପୃଷ୍ଠା ପଢ଼ନ୍ତୁ ।

(୩) ଛାପାରେ ୧୦୧ ପୃଷ୍ଠା ଦେଖନ୍ତୁ ।

ଏଡ଼େବଡ଼ ବଳବାନ୍ ହନୁମାନ୍ ବାଳି ଓ ସୁଗ୍ରୀବ ପ୍ରଭୃତିଙ୍କୁ ନିହତ ନ କଲେ କିପରି ? ତଦା ଅଗସ୍ତି ଏହାର କାରଣ ସହ ବାଳି, ସୁଗ୍ରୀବ, ହନୁମାନଙ୍କର ଚରିତ ସମ୍ବିଧାନ ଏକତ୍ର କହି ଅଛନ୍ତି । ମୂଳ ପଞ୍ଚତ୍ରିଂଶ ସର୍ଗର ଉତ୍ତରାର୍ଦ୍ଧ ଭାଗରେ ହନୁମାନଙ୍କର ଜନ୍ମ, ଜନ୍ମର ଅବ୍ୟବହିତ ପରେ ସୂର୍ଯ୍ୟ ଧର୍ଷଣ, ରାହୁ ଆକ୍ରମଣ ଓ ଐରାବତ ଆକ୍ରମଣର ବିବରଣ ପରେ ଲେଖାଅଛି କି ଇନ୍ଦ୍ର ଆସି ରାହୁଙ୍କ ପ୍ରାର୍ଥନାରେ ତାହାଙ୍କୁ ବଜ୍ରରେ ଆହତ କଲେ । ତଦା ପୁତ୍ର ବାତ୍ସଲ୍ୟରୁ ପବନ କ୍ରୁଦ୍ଧ ହୋଇ ଦେବଗଣଙ୍କୁ ହତଚେଷ୍ଟ କରିପକାଇଲାରୁ ସ୍ୱୟଂ ବ୍ରହ୍ମା ଆସି ପବନଙ୍କ ନିକଟରେ ଉପଗତ ହେଲେ । ଏ ସ୍ଥଳରେ ଛାପା ପୁସ୍ତକରେ ପଞ୍ଚତ୍ରିଂଶ ସର୍ଗର ସମାପ୍ତି ଆଉ ଷଟ୍ ତ୍ରିଂଶ ସର୍ଗର ପ୍ରାରମ୍ଭ ହୋଇଅଛି । ପଞ୍ଚତ୍ରିଂଶସର୍ଗର ଉତ୍ତରାର୍ଦ୍ଧର ପାବନେୟ ଚରିତଠାରୁ କେବଳ ଶ୍ଳୋକମାନଙ୍କର ଏପରି ସଂଖ୍ୟାତ୍ମକ ନମ୍ବର ଦିଆଯାଇଅଛି ଏହାର ପୂର୍ବବର୍ତ୍ତୀ ତଥାଚ ଚତୁସ୍ତ୍ରିଂଶ ସର୍ଗର ପରବର୍ତ୍ତୀ ଭାଗରେ ଶ୍ଳୋକମାନଙ୍କ ନମ୍ବର ଦିଆଯାଇ ନାହିଁ, ସେସବୁ ଏକବାହିଆ ଚାଲିଅଛି । ସେଥିରେ ପୂର୍ବୋକ୍ତ ରାବଣଙ୍କ ମହାପୁରୁଷ ଆକ୍ରମଣାଦିର କଥା ଲେଖାଅଛି । ଅତଏବ, ବିଶ୍ୱାସ ହୁଏ, ଏହି କଥାମାନଙ୍କର ପାଠତକ ଅତ୍ର ପ୍ରକ୍ଷିପ୍ତ ରହିଅଛି । (୧)

ଷଟତ୍ରିଂଶ ସର୍ଗର ପ୍ରାରମ୍ଭରୁ ଲେଖାଅଛି କି, ବ୍ରହ୍ମା ପବନଙ୍କୁ ଗୋଟିଏ ପଦକ, ପଦ୍ମମାଳା ଆଉ ସୂର୍ଯ୍ୟ ସର୍ବଶାସ୍ତ୍ରଜ୍ଞାନ ପ୍ରଦାନ କଲେ । ତଦା ଅନ୍ୟାନ୍ୟ ଦେବତାମାନେ ମଧ୍ୟ ମାରୁତିଙ୍କୁ ପରିତୁଷ୍ଟ ହୃଦୟରେ ନାନାବିଧ ବର ପ୍ରଦାନ କଲେ । ପୂର୍ବ ପ୍ରଶ୍ନର ଏହା ପରେ ଉତ୍ତରରେ ଅଗସ୍ତି କହିଛନ୍ତି, ହନୁମାନ ଋଷି ଶାପରୁ ନିଜର ଅଲୌକିକ ବଳକୁ ନିଜେ ପାଶୋରି ଦେଇଥିବାରୁ ପ୍ରଥମେ ଋକ୍ଷ-ରାଜ ବାନର ତାହାପରେ ତତ୍‌ପୁତ୍ର ବାଳି ଓ ସୁଗ୍ରୀବ ଦୁହେଁ ବାନରମାନଙ୍କ ମଧ୍ୟରେ ରାଜା ହୋଇ ପାରିଲେ । ଏ ସ୍ଥଳେ ଅଗସ୍ତି ହନୁମାନଙ୍କ ମହିମାର ଅନେକ କଥା ମଧ୍ୟ ରାଜାଙ୍କୁ କହିଅଛନ୍ତି ।

ଏତିକିବେଳେ ରାମ ପଚାରିଲେ, 'ବାଳିଙ୍କର ପିତା ତ ଋକ୍ଷରାଜା ତେବେ ମାତା କିଏ ?' ଅଗସ୍ତି କହିଲେ, 'ଏକଦା ବ୍ରହ୍ମାଙ୍କ ମୁଖରୁ ଗୋଟିଏ ବାନର ସମ୍ଭୂତ ହୋଇଥିଲେ, ତାହାଙ୍କର ନାମ ଋକ୍ଷରାଜ । ସେ ପୁଣି ସମୟେ ମେରୁ ପର୍ବତ ଉପକଣ୍ଠସ୍ଥ ସରୋବରରେ ପ୍ରବେଶ କଲାକ୍ଷଣି ଦୈବଗତ୍ୟା ସ୍ତ୍ରୀ ରୂପରେ ପରିଣତ ହୋଇପଡ଼ିଲେ । ସେ ତତ୍ର ଭ୍ରମଣ କରୁ କରୁ ଏକଦା ଇନ୍ଦ୍ର ଏବଂ ସୂର୍ଯ୍ୟ ତଦୀୟ କମନୀୟତର ସୌନ୍ଦର୍ଯ୍ୟାତିଶଯ୍ୟ ଦେଖି ସ୍ଖଳିତ ରେତ ହୋଇଗଲେ । ସେହି ସ୍ତ୍ରୀ ସେହି ଅମୋଘ ରେତଃ ପ୍ରଭାବରୁ ପର୍ଯ୍ୟାୟକ୍ରମେ ଦୁଇଟି ସୁସନ୍ତାନ ପ୍ରସବ କଲେ । (୨) ପୁଣି ତାର ପର ଦିବସରେ

(୧) ଏସବୁ ଏହି ସର୍ଗରେ ୫୪ ଚତୁଃପଞ୍ଚାଶ ଶ୍ଳୋକ ପର୍ଯ୍ୟନ୍ତ କେବଳ ଉକ୍ତ ଅଛି ।

(୨) ଉକ୍ତ ଅଛି ଇନ୍ଦ୍ରଙ୍କ ରେତ ସେହି ସ୍ତ୍ରୀଙ୍କର ବାଳ ପ୍ରଦେଶରେ ଏବଂ ସୂର୍ଯ୍ୟ ରେତ କଣ୍ଠ ପ୍ରଦେଶରେ ପତିତ ହୋଇଥିଲା ।

ସେହି ଯୁବତୀଟି ଫେର୍ ପୁରୁଷ ହୋଇଗଲେ । ତେତେବେଳେ ସେ ନିଜର ପୁତ୍ରଦ୍ୱୟଙ୍କୁ ସଙ୍ଗେ ଧରି ବ୍ରହ୍ମାଙ୍କ ଛାମୁରେ ଉପଗତ ହେଲେ । ବ୍ରହ୍ମା ସଦୟ ମନେ ଋକ୍ଷରାଜଙ୍କ ପୁତ୍ରଙ୍କୁ କିଷ୍କିନ୍ଧା ରାଜ୍ୟରେ ଅଭିଷିକ୍ତ କରାଇଲେ । ଅତଏବ ବାଳି ଓ ସୁଗ୍ରୀବ ଏ ଦୁହିଁଙ୍କର ଏକମାତ୍ର ଋକ୍ଷରାଜ କେବଳ ପିତା ଓ ମାତା ଉଭୟ ଅଟନ୍ତି । (୧)

ଏହି କଥାମାନଙ୍କର ପରେ କି ହେତୁରୁ ସୀତାଦେବୀ ରାବଣଙ୍କ କର୍ତ୍ତୃକ ଅପହୃତ ହେଲେ ? ଏହାର କାରଣରେ ଅଗସ୍ତି କହି ଅଛନ୍ତି କି, ଏକଦା ରାବଣ ସନତ୍ କୁମାରଙ୍କୁ ପଚାରିଲେ, ଦେବତାମାନେ କାହା ବଳରେ ଅମର ରହି ସମସ୍ତଙ୍କୁ ଜୟ କରିପାରନ୍ତି ? ମୁଁ କିପରି ବା ସେମାନଙ୍କୁ ଯୁଦ୍ଧ କରିବାକୁ ପାରିବି ? ମୁନି କହିଲେ, ଦେବତାମାନେ ସର୍ବଲୋକେଶ୍ୱର ଶ୍ରୀମନ୍ନାରାୟଣଙ୍କ ସମାଶ୍ରୟରେ ଏତେ ଉନ୍ନତ ହୋଇଅଛନ୍ତି ।' 'ସେହି ନାରାୟଣ କେଉଁଠି ଅଛନ୍ତି ?' ଏହା ରାବଣ ଜିଜ୍ଞାସା କଲାରୁ ସନତ୍ କୁମାର ତେତେବେଳେ ନାରାୟଣଙ୍କର ସର୍ବବ୍ୟାପିତ୍ୱ, ସର୍ବଜ୍ଞାତୃତ୍ୱାଦିର ମହିମା ସମ୍ବନ୍ଧେ ଅନେକ କହି ବୋଇଲେ କି, ସେ ମହାପ୍ରଭୁ କ୍ରୋଧ ସ୍ୱରୂପ, ସଂଗ୍ରାମ ଲକ୍ଷ୍ମୀ ତାହାଙ୍କ ଦେହାଶ୍ରିତା ଅଟନ୍ତି । ସୁରାସୁର ଦାନବପନ୍ନଗାଦି କେହିହେଲେ ତାହାଙ୍କୁ ଦେଖିବାକୁ ସମର୍ଥ ନୁହନ୍ତି, ଇତ୍ୟାଦି । (୨)

ଏହାପରେ ପୁଣି ଋଷି ରାବଣଙ୍କୁ କହିଛନ୍ତି କି, ହେ ରାକ୍ଷସେଶ୍ୱର ! ତୁମେ ଯଦି ସେହି ନାରାୟଣଙ୍କୁ ଦେଖିବାର ଇଚ୍ଛା କର ତେବେ ଅପେକ୍ଷା କର, ତ୍ରେତାଯୁଗ ମୁଖରେ ସେ ରାମ ରୂପରେ ଅବତୀର୍ଣ୍ଣ ହେବେ । ସଦାର ସହୋଦର ବନରେ ଭ୍ରମଣ କରିବେ ଇତ୍ୟାଦି । ରାବଣ ସେହିଦିନଠାରୁ ରାମଙ୍କ ସହ ଯୁଦ୍ଧ କରିବା ଅପେକ୍ଷାରେ ଥିଲେ । ଅତଏବ କେବଳ ସେ ସୀତାଙ୍କୁ ହରଣ କରି ନେଇଥିଲେ ' ଏହାପରେ ପୁଣି ଏହି ସର୍ଗରେ ଲେଖାଅଛି, ଏକଦା ରାବଣ ନାରଦଙ୍କୁ ଦେଖି ପଚାରିଲେ ଯେ ସମଗ୍ର ବ୍ରହ୍ମାଣ୍ଡ ମଧ୍ୟରେ ଆଉ କିଏ ବଳବାନ୍ ଅଛନ୍ତି ? ମୁଁ ତାଙ୍କ ସହ ଯୁଦ୍ଧ କରିବି । ନାରଦ କହିଲେ, ଶ୍ୱେତଦ୍ୱୀପରେ ମହାବୀରମାନେ ଅଛନ୍ତି । ସେମାନେ ଈଶ୍ୱର ସେବା କରି ସମୁତ୍କୃଷ୍ଟ ସ୍ଥାନରେ ସମୁନ୍ନତ ହୋଇ ଅଛନ୍ତି । ଯୁଯୁତ୍ସୁ ରାବଣ ତଦା ଶ୍ୱେତଦ୍ୱୀପ ପ୍ରସ୍ଥାନ କଲେ । ସେହି ସ୍ଥାନର ମହିମାରୁ ରାବଣଙ୍କ ସହଯାତ୍ରୀ କେହି ରାକ୍ଷସ ବା ପୁଷ୍ପକଯାନ ସୁଦ୍ଧା ତତ୍ର ଅବସ୍ଥାନ କରିପାରିଲେ ନାହିଁ । ତଥାପି ଏକାକୀ ରାବଣ ବଳେ ତାହା ଭିତରେ ପ୍ରବେଶ

---

(୧) ବାଳିସୁଗ୍ରୀବୟୋରେଷ ଏଷ ଚାର୍କ୍ଷରଜଃ ପିତା ।
ଜନନୀ ଚୈଷତୁ ହରିରିତ୍ୟେତଦ୍‌ଭଦ୍ରମସ୍ତୁତେ । ୩୬ ସର୍ଗ

(୨) ... କ୍ରୋଧୋପି ଦେବସ୍ୟ ବରେଣ ତୁଲ୍ୟଃ । ୩୬ ସ.
ସଂଗ୍ରାମରୂପିଣୀ ଲକ୍ଷ୍ମୀଃ ଦେହମାବୃତ୍ୟ ତିଷ୍ଠତି ।
ସଶକ୍ୟୋ ନସୁରେଦ୍ରଂଷ୍ଟୁଂ ନାସୁରେର୍ନଚ ପନ୍ନଗୈଃ । ଇତ୍ୟାଦି ୩୬ସର୍ଗ ।

କରି ପ୍ରଥମତଃ ଗୋଟିଏ ସ୍ତ୍ରୀ ବ୍ୟକ୍ତିଙ୍କୁ ଦେଖିଲେ । ସେହି ସ୍ତ୍ରୀଲୋକ ରାବଣଙ୍କୁ ପଚାରିଲେ, 'ତୁମ୍ଭେ କିଏ ? ଏଠାକୁ କାହିଁକି ଆସିଅଛ ?' ଇତ୍ୟାଦି । ରାବଣ ଟିକିଏ ରୋଷାରକ୍ତ ଲୋଚନରେ କହିଲେ, ମୁଁ ବିଶ୍ରବାଙ୍କ ପୁତ୍ର । ଏଠାକୁ ଯୁଦ୍ଧାର୍ଥ ଆସିଅଛି । ତେତିକିବେଳେ ଅନେକ ଗୁଡ଼ିଏ ଯୁବତୀ ତତ୍ର ସମବେତ ହୋଇଗଲେ । ଏକ ଜଣ ରାବଣଙ୍କୁ କୀଟ ପ୍ରାୟ ମଣି ଭର୍ସନା ସହ ହସ୍ତରେ ଧରି କନ୍ଦୁକ ପ୍ରାୟ ଇତସ୍ତତ ନିକ୍ଷିପ୍ତ କଲେ । ପରିଶେଷରେ ଆଉ ଏକ ଜଣ ସ୍ତ୍ରୀ ରାବଣଙ୍କୁ ସମୁଦ୍ର ମଧ୍ୟରେ ନିକ୍ଷିପ୍ତ କରିଦେଲେ । ରାବଣ ନିତାନ୍ତ ବ୍ରୀଡ଼ିତ ହୃଦୟରେ ତାର ଦକ୍ଷିଣ ତୀରରେ ଯାଇ ଭାବିଲେ, ଏପରି ବଳବାନମାନଙ୍କ ସହ କଦାପି ଯୁଦ୍ଧ କର୍ତ୍ତବ୍ୟ ନୁହେଁ; ସନ୍ଧି କରିବା ହିଁ ବିଧେୟ । ରାବଣ ତେଣୁ ଆସୁ ଆସୁ ସନତ୍‌କୁମାରଙ୍କୁ ଦେଖି ଶ୍ୱେତଦ୍ୱୀପ ନିବାସୀମାନଙ୍କର ଗୁଣଗ୍ରାମାଦିର ପରିଚୟ ପୃଚ୍ଛା କରିଥିଲେ ଏବଂ ଋଷିଙ୍କ ମୁଖରୁ ନାରାୟଣଙ୍କ ମହିମା ଆଉ ତତ୍ କୃପାପାତ୍ର ଶ୍ୱେତଦ୍ୱୀପ ନିବାସୀ ମାନଙ୍କର ଓ ଶ୍ୱେତଦ୍ୱୀପର ପ୍ରଭାବର କଥାମାନ ଶୁଣି ଲଙ୍କା ନଗରୀକୁ ପ୍ରତ୍ୟାବୃତ୍ତ ହୋଇଥିଲେ । ଏହି ସର୍ଗରେ ପୁଣି ଲେଖାଅଛି, ଏକଦା ନାରଦ ବ୍ରହ୍ମାଙ୍କ ଛାମୁରେ ରାବଣଙ୍କର ଶ୍ୱେତଦ୍ୱୀପରେ ସଂଘଟିତ ପରାଭବର କଥା ଜଣାଇଲେ । ବ୍ରହ୍ମା ତେତେବେଳେ ନାରଦଙ୍କୁ କହିଲେ ଯେ ଏହି ରାବଣ ପୁରା ହିରଣ୍ୟକଶିପୁ ଥିଲେ । ନାରାୟଣ ନୃସିଂହ ରୂପରେ ତାଙ୍କୁ ବିଦାରିତ କରିଥିଲେ । ସେହି ହିରଣ୍ୟକଶିପୁ କେବଳ ବର୍ତ୍ତମାନ ରାବଣ ରୂପରେ ଜନ୍ମି ଅଛନ୍ତି ଇତ୍ୟାଦି । ଏହିକଥାମାନ ଅଗସ୍ତି ସମୟେ ନାରଦଙ୍କ ମୁଖରୁ ଶୁଣିଥିଲେ ବୋଲି ରାମଚନ୍ଦ୍ରଙ୍କୁ ଜଣାଇଲେ । ଏ ସ୍ଥଳେ ପୁଣି ଅଗସ୍ତି ମହର୍ଷି ରାମଚନ୍ଦ୍ର ସ୍ୱୟଂ ନାରାୟଣ ବୋଲି ଅନେକ କଥା ତାହାଙ୍କୁ ଜଣାଇଲା ପରେ ଋଷିମାନଙ୍କ ସହ ସ୍ୱାଶ୍ରମକୁ ପ୍ରସ୍ଥାନ କରିବାପାଇଁ ରାମଙ୍କର ଅନୁମତି ମାଗି ଅଛନ୍ତି । ତେତିକିବେଳେ ରାମ ଅଗସ୍ତ୍ୟଙ୍କୁ ଜଣାଇ ଅଛନ୍ତି କି ମୁଁ ଅଶ୍ୱମେଧ ଯାଗ କରିବାରେ ଇଚ୍ଛୁକ ଅଛି । ଆପଣମାନେ ସେଥିରେ ସୁଦୟା ପୂର୍ବକ ଯୋଗ ଦେଇ ମୋତେ କୃତକୃତ୍ୟ କରିବେ । ରାମଙ୍କ ଏହି ପ୍ରାର୍ଥନାରେ ଅଗସ୍ତ୍ୟାଦି ଋଷିବୃନ୍ଦ ସମ୍ମତି ପ୍ରକାଶ କରି ନିଜ ନିଜ ଆଶ୍ରମକୁ ପ୍ରତ୍ୟାବୃତ୍ତ ହେଲେ ।

ପାଠକ ମହାଶୟ ! ସଂସ୍କୃତ ଛାପା ପୁସ୍ତକମାନଙ୍କରେ ଦେଖି ପରିଶୀଳନ କରି ନେବେ । ଏହି ସର୍ଗରେ ହନୁମାନଙ୍କର ଜନ୍ମାଦି ବୃତ୍ତାନ୍ତ ପରେ ବାଳି ସୁଗ୍ରୀବ ଜନ୍ମ ଚରିତ, ସୀତା ହରଣ ମୂଳକ ଚରିତ ଏବଂ ଶ୍ୱେତଦ୍ୱୀପରେ ରାବଣଙ୍କ ପରାଭୂତିର ଚରିତର ପାଠତକ ପ୍ରକ୍ଷିପ୍ତ ଜଣାଯାଏ । କାରଣ ମାରୁତିଚରିତାନ୍ତ ପର୍ଯ୍ୟନ୍ତ ଶ୍ଳୋକମାନଙ୍କର ୫୪ ଚତୁଃପଞ୍ଚାଶ ସଂଖ୍ୟା ନମ୍ବର ଦିଆଯାଇଛି । ତାପରେ ସଂଖ୍ୟାତ୍ମକ ଅଙ୍କ ବିନା ଅତି ବହୁତ ଗୁଡ଼ାଏ ପାଠ ଏକ ଧାଡ଼ିଆ ଲେଖଯାଇ ଏହି ସୁଦୀର୍ଘତମ ଅଧ୍ୟାୟର ସର୍ବାନ୍ତିମ

ଭାଗରେ ଅଗସ୍ତି ଅନୁମତି ମାଗି ଯିବା ସ୍ଥଳେ ଫେର୍ ଶ୍ଲୋକ ସଂଖ୍ୟା ନମ୍ବ ପଞ୍ଚପଞ୍ଚାଶ ୫୫ଠାରୁ ଷଟ୍‌ଷଷ୍ଟି ୬୬ ପର୍ଯ୍ୟନ୍ତ ଦିଆଯାଇ ସର୍ଗାବସାନ ହୋଇଅଛି । ଏହି ଚତୁଃପଞ୍ଚାଶ ୫୪ ଓ ପଞ୍ଚପଞ୍ଚାଶ ୫୫ ଶ୍ଲୋକଦ୍ୱୟ ମଧ୍ୟରେ ପୂର୍ବ ସଂଶିତ ଚରିତ ତ୍ରୟର ପାଠତକ ରହିଅଛି । (୧)

ଏଥିମଧ୍ୟରୁ ସୀତାହରଣ – କାରଣ ମୂଳକ ପାଠତକ ଅଧ୍ୟାତ୍ମ ରାମାୟଣ ଉତ୍ତରକାଣ୍ଡ ତୃତୀୟ ସର୍ଗରୁ ଶ୍ୱେତ ଦ୍ୱୀପରେ ରାବଣ ପରାଭୂତ ଏବଂ ହନୁମାନଙ୍କ ଜନ୍ମାଦିଚରିତତକ ବଳରାମ ଦାସଙ୍କ ରାମାୟଣରେ ଯଥା ସ୍ଥାନରେ ସଂକ୍ଷେପତଃ ମୂଳାନୁମତ ଲେଖାଅଛି । (୨)

ବାଳୀ ଓ ସୁଗ୍ରୀବଙ୍କ ଜନ୍ମାଦି ସମ୍ବନ୍ଧେ ମୂଳରେ ଯେ ଯେ ବିଷୟ ଲେଖାଅଛି ଏଥିରେ ସେ ସବୁ ଏ ସ୍ଥଳେ କିଛି ହିଁ ଲେଖା ନାହିଁ । ଦାସେ ବାଳୀ ସୁଗ୍ରୀବଙ୍କ ପିତାଙ୍କୁ ଖଡ୍‌ଗ ନାମରେ ଅଭିହିତ କରି ସେମାନଙ୍କ ସମ୍ବନ୍ଧେ ଛଅଗୋଟି ପଦ ମାତ୍ର ଲେଖିଅଛନ୍ତି । (୩) କାରଣ ଦାସ ମହାଶୟ ଇତଃପୂର୍ବେ କିଷ୍କିନ୍ଧା କାଣ୍ଡରେ ସୁଗ୍ରୀବ-ରାମ-ସମ୍ବାଦ ସ୍ଥଳେ ବାଳୀ ଓ ସୁଗ୍ରୀବଙ୍କ ଜନ୍ମ ବୃତ୍ତାନ୍ତ ମୂଳକ ସାଙ୍ଗୋପାଙ୍ଗ କଥାମାନ ପ୍ରକାଶ କରି ଦେଇଛନ୍ତି । (୪)

ମୂଳ ଗ୍ରନ୍ଥରେ ଯେପରି ଅଗସ୍ତି ମହର୍ଷି ଶ୍ରୀରାମଙ୍କୁ ହନୁମାନ ଏବଂ ବାଳୀ ଓ ସୁଗ୍ରୀବଙ୍କ ବିବରଣ ଓ ଜନ୍ମାଦିର କଥାମାନ କହିଲା ପରେ ବିଦାୟ ନେଇ ଋଷି ସମାଜ ସହ ସ୍ୱାଶ୍ରମକୁ ପ୍ରସ୍ଥାନ କରିଥିବା ଉକ୍ତ ଅଛି, ଏଥିରେ ମଧ୍ୟ ତାହା ହିଁ ଲେଖା ଅଛି । କିନ୍ତୁ ମଧ୍ୟରେ ଦାସେ ବିଶିଷ୍ଟ ଶିଷ୍ଟାଚାରତଃ ଅଗସ୍ତିଙ୍କ ପ୍ରତି ରାବଣଙ୍କର ଅଭ୍ୟାଗମନ ପ୍ରକ୍ରିୟାଦିର କଥାକୁ ଅଧିକତଃ ଲେଖିଅଛନ୍ତି । (୫)

ମୂଳଗ୍ରନ୍ଥର ସପ୍ତତ୍ରିଂଶ ସର୍ଗରେ ଶ୍ରୀରାମଙ୍କ ଅଭିନବ ରାଜତ୍ୱର ସୁଖସଂସ୍ଥାନ ବର୍ଣ୍ଣିତ ଅଛି । ଏହାପରେ ସର୍ଗ ତ୍ରୟରେ ପ୍ରତିପାଦିତ ବିଷୟମାନ ଏହି, ଆଗେ ରାମଚନ୍ଦ୍ର

---

(୧) ଛାପା ପୁସ୍ତକରେ ୧୦୧-୧୦୫ ପୃଷ୍ଠା ପର୍ଯ୍ୟନ୍ତ ପଢ଼ନ୍ତୁ । ଏଥିରେ ଅନେକ ବିଷୟ ଦାସେ କିଷ୍କିନ୍ଧାକାଣ୍ଡରେ ହନୁମାନଙ୍କର ରାମଦର୍ଶନ ସ୍ଥଳେ ପ୍ରକାଶିତ କରିଥିବାରୁ ଏ ସ୍ଥଳେ ଚରିତକୁ ସଂକ୍ଷିପ୍ତ କରିଛନ୍ତି ।

(୨) ଛାପାରେ ୧୦୫ ପୃଷ୍ଠା ଦେଖନ୍ତୁ ।

(୩) ଏହି ଚରିତ ତ୍ରୟ ଅଧ୍ୟାତ୍ମ ରାମାୟଣ ଉତ୍ତରକାଣ୍ଡ ତୃତୀୟ ଓ ଚତୁର୍ଥ ସର୍ଗରେ ଲେଖା ଅଛି ।

(୪) ଛାପା ପୁସ୍ତକ କିଷ୍କିନ୍ଧାକାଣ୍ଡ ୧୯ ପୃଷ୍ଠାଠାରୁ ୨୯ ପୃଷ୍ଠାଯାଏ ଦେଖନ୍ତୁ ।

(୫) ଛାପା ପୁସ୍ତପରେ ୧୦୫ ପୃଷ୍ଠା ଦେଖନ୍ତୁ ।

ପିତୃକଳ୍ପ ଜନକ ରାଜରଷିଙ୍କୁ ସ୍ୱରାଜ୍ୟକୁ ଯିବାପାଇଁ ସବିନୟେ ଜଣାଇଲାବେଳେ ଯେ ଯେ ଅନର୍ଘରତ୍ନମାନ ସମର୍ପଣ କରିଥିଲେ, ସେସବୁ ନିଜ ଦୁହିତା ସୀତା ଦେବୀଙ୍କୁ ପ୍ରତ୍ୟର୍ପଣ କରିବାପାଇଁ ଆଦେଶ ଦେଲେ । (୧)

ତାପରେ ରାମଚନ୍ଦ୍ର ଯଥାକ୍ରମେ କେକୟରାଜ, କାଶୀରାଜ ଏବଂ ଯୁଦ୍ଧ ସାହାଯ୍ୟାର୍ଥେ ସମାଗତ ତ୍ରିଂଶତ (୨) ରାଜସମାଜଙ୍କୁ ସ୍ୱଦେଶ ପ୍ରତ୍ୟାବୃତ୍ତ୍ୟର୍ଥ ବିଦାୟ ଦେଲେ । ଯୁଦ୍ଧ ସାହାଯ୍ୟାର୍ଥ ଆଗତ ପୃଥିବୀପତିମାନେ ଅଯୋଧ୍ୟାରୁ ପ୍ରତ୍ୟାବୃତ୍ତ ହେବା ସମୟେ ଶ୍ରୀରାମଚନ୍ଦ୍ରଙ୍କର ଲୋକୋତ୍ତର ସୁଗୁଣଗ୍ରାମ ଅନୁଚିନ୍ତା କରି କରି ଯାଇଥିଲେ । ସେମାନେ ସ୍ୱ ସ୍ୱ ଦେଶରେ ଉପଗତ ହେଲା ପରେ ଶ୍ରୀରାମଙ୍କ ଛାମୁକୁ ଯେ ଯେ ଧନରତ୍ନ ରାଶି ଓ ହସ୍ତୀ ପ୍ରଭୃତି ଉପହାର ସ୍ୱରୂପ ପଠାଇ ଦେଇଥିଲେ, ଶ୍ରୀରାମ ସେସବୁ ସୁଗ୍ରୀବ, ବିଭୀଷଣ ପ୍ରଭୃତିଙ୍କୁ ବାଣ୍ଟିକୁଣ୍ଟି ପ୍ରଦାନ କରିଦେଲେ । ତତ୍ର ଦେବଦୁର୍ଲ୍ଲଭ ନାନା ସୁଖସମ୍ଭୋଗରେ ଅଭିଷେକାନନ୍ତର ଦୁଇ ମାସ ଅତୀତ ହେଲା ପରେ (୩) ଶ୍ରୀରାମଚନ୍ଦ୍ରେ, ସୁଗ୍ରୀବ, ବିଭୀଷଣ ଓ ହନୁମାନ ପ୍ରଭୃତିଙ୍କୁ ବହୁବିଧ ପୁରସ୍କାର ପ୍ରଦାନ ପୂର୍ବକ ସ୍ୱସ୍ୱ ସ୍ଥାନକୁ ଯିବାପାଇଁ ଆଦେଶ ଦେଲେ । ରାମ ବିଶେଷତଃ ମାରୁତିଙ୍କୁ ଚିରାୟୁଷତା ବର ପ୍ରଦାନ କରିଥିଲେ । (୪)

ଶ୍ରୀମାନ୍ ବଳରାମ ଦାସେ ମଧ୍ୟ ସ୍ଥୂଳତଃ ଠିକ୍ ଏହା ହିଁ ଲେଖି ଅଛନ୍ତି । (୫)

କିନ୍ତୁ ସୀତା ଦେବୀଙ୍କୁ ଜନକପ୍ରଦତ୍ତ ରତ୍ନାଦିର କଥା ଏଥିରେ ଲେଖାଥିବା ଦେଖାଯାଏ ନାହିଁ । ମୂଳଗ୍ରନ୍ଥରେ ଜନକଙ୍କ ସଙ୍ଗେ ଭରତ ଅନୁଗମନ କରିଥିବା ଲେଖା ଅଛି, କିନ୍ତୁ ଦାସେ ଯାହାକି ରାମଚନ୍ଦ୍ର କେତେଦୂର ଅନୁଗମନ କରିଥିବା କହିଛନ୍ତି ତାହା ଆଭିଜାତ୍ୟ ଗୌରବସୂଚକ ।

---

(୧) ଯାନ୍ୟେତାନି ତୁ ରତ୍ନାନି ମଦର୍ଥଂ ସଂଚିତାନି ବୈ ।
ଦୁହିତ୍ରେ ତାନ୍ୟହଂ ରାଜନ୍ ସର୍ବାଣ୍ୟେବ ଦଦାମି ବୈ । ୩୮ ସ. ୭ ଶ୍ଳୋ.

(୨) ବିସୃଜ୍ୟ ତଂ କାଶୀପତିଂ ତ୍ରିଶତଂ ପୃଥିବୀପତିନ୍ ।
ପ୍ରହସନ୍ ରାଘବୋ ବାକ୍ୟଂ ଉବାଚ ମଧୁରାକ୍ଷରମ୍ । ୩୮ସ. ୨୨ଶ୍ଳୋ.

(୩) ଏବଂ ତେଷାଂ ଯଯୌ ମାସୋ ଦ୍ୱିତୀୟଃ ଶିଶିରଃ ସୁଖଂ ।
ବାନରାଣାଂ ଚ ହୃଷ୍ଟାନାଂ ରାକ୍ଷସାନାଂ ଚ ସର୍ବଶଃ । ୩୯ସ. ୨୨ ଶ୍ଳୋ.

(୪) ଲୋକାହି ଯାବତ୍ ସ୍ଥାସ୍ୟନ୍ତି ଯାବତ୍ ସ୍ଥାସ୍ୟତି ମେ କଥା ।
ଚରିଷ୍ୟତି କଥା ଯାବତ୍ ଏଷା ଲୋକେ ଚ ମାମିକା ।
ତାବତ୍ ଶରୀରେ ବସ୍ୟନ୍ତି ପ୍ରାଣାସ୍ତବ ନ ସଂଶୟଃ । ୪୦ସ.

(୫) ଛାପା ପୁସ୍ତକରେ ୧୦୬ ପୃଷ୍ଠାଠାରୁ ୧୧୮ ପୃଷ୍ଠା ପର୍ଯ୍ୟନ୍ତ ଦେଖି ନିଅନ୍ତୁ ।

ମୂଳରେ ଯୁଦ୍ଧ ସାହାଯ୍ୟାର୍ଥ ଆଗତ ନୃପତିମାନଙ୍କର ସଂଖ୍ୟା ତ୍ରିଶତ ବୋଲି ଲେଖାଅଛି । ମାତ୍ର ଦାସେ ସହସ୍ରାଧିକ ବୋଲି ଟିକିଏ ଅତ୍ୟୁକ୍ତି ପ୍ରକାଶ କରିଅଛନ୍ତି । ସେମାନଙ୍କ ପ୍ରେରିତ ଉପହାରନିଚୟର କଥା କହି ନାହାନ୍ତି । ଏ ମହାଶୟ ଏ ସ୍ଥଳେ ମୂଳରେ ଅନୁକ୍ତ ଗୋଟିଏ ବୃତ୍ତ ଚରିତ ଲେଖିଅଛନ୍ତି । ତାହାର ସଂକ୍ଷିପ୍ତ ବିବରଣ ଏହି, ଦିନେ ରାଜସଭାରେ ବଶିଷ୍ଠ କହିଲେ କି ପର୍ଶୁରାମ ନାମରେ ଏକ ଜଣ ରାଜା ଥିଲେ । ସେ ରାଜବର୍ଗଙ୍କଠାରୁ କିଛି କର ଗ୍ରହଣ ନ କରି କେବଳ ମୁଷ୍ଟିଭିକ୍ଷାରେ ଆତ୍ମକୁ ଏବଂ ପରିବାର-ପରିଚରବର୍ଗଙ୍କୁ ପରିପୋଷଣ କରୁଥିଲେ । ସେ ଏକ ଦିନ ଭିକ୍ଷାର୍ଥ ଏକ ଗୃହସ୍ଥଙ୍କ ଦ୍ୱାରରେ ଉପଗତ ହୋଇ ଡାକ ଦେଲେ, ମାତ୍ର ସେ ଘରର ଗୃହିଣୀ ଗୃହ କାର୍ଯ୍ୟ ଧନ୍ଦାରେ ବ୍ୟସ୍ତ ରହି ଏହାଙ୍କ ଡାକ କର୍ଣ୍ଣଗୋଚର କରି ପାରିଲେ ନାହିଁ । ମାତ୍ର ସେ କ୍ଷଣକ ପରେ ପଡ଼ୋଶିଙ୍କ ମୁଖରୁ ତଦାଗମନ ବାର୍ତ୍ତା ଶୁଣି କହିଲେ, ଯଦି ପର୍ଶୁରାମ ଆସି ଅଛନ୍ତି, ତେବେ ଜାନୁଘଣ୍ଟ ବାନ୍ଧି ନାହାନ୍ତି କାହିଁକି ? ଆମ୍ଭେମାନେ ତ କୁଳସ୍ତ୍ରୀ, ପୁର ମଧ୍ୟରେ ହିଁ ଘଣ୍ଟା ଶବ୍ଦ ନ ଶୁଣିଲେ ସେ ମହାତ୍ମାଙ୍କ ଆଗମନ କିପରି ଜାଣିପାରିବୁଁ । ପର୍ଶୁରାମ ଏକଥା ଶୁଣି ତାର ପର ଦିବସରୁ ଜାନୁରେ ଘଣ୍ଟା ବାନ୍ଧି ଭିକ୍ଷାର୍ଥ ଯିବାର ସ୍ଥିର କଲେ । ତଦବଧି ତାହାଙ୍କ ନାମ ଜାନୁଘଣ୍ଟ ପର୍ଶୁରାମ ହେଲା । ମହର୍ଷି ବଶିଷ୍ଠ ପ୍ରୋକ୍ତ ଜାନୁଘଣ୍ଟ ପର୍ଶୁରାମଙ୍କ କଥା ମୂଳରେ ଅନୁକ୍ତ ହେଲେ ହେଁ ଲୋକପ୍ରସିଦ୍ଧ ଅଟେ । ବଶିଷ୍ଠ ପୁଣି ଏହିତକ କହିଲା ପରେ ଶ୍ରୀରାମଙ୍କ ନିକଟରେ ବେଣୁରାଜା, ଶିବିରାଜା, ହରିଶ୍ଚନ୍ଦ୍ର ଓ ବଳିରାଜାଙ୍କର ଦାନଶୌଣ୍ଡତା ମଧ୍ୟ ସୂଚନା କରି ଅଛନ୍ତି । ଏଥି ମଧ୍ୟରେ ପୁଣି ପାଠକ ଦେଖିବେ ରାମଚନ୍ଦ୍ର ସୀତାଙ୍କ ସୋହାଗରେ ବଗିଚା ମଧ୍ୟରେ ତାଦୃଶ ଆଦର ଶୂନ୍ୟ ଉଆଉ, ମହୁଲ, କେରନ୍ଦା ପ୍ରଭୃତି ବୃକ୍ଷମାନ ମଧ୍ୟ ଆରୋପଣ କରିଥିଲେ ବୋଲି କେତେକ ପାଠ ଲେଖାଅଛି । (୧) ବୋଧହୁଏ ଏଗୁଡ଼ିକ କୌଣସି ଅନୁଲେଖକଙ୍କର ଖେଳଖିଆଲର ଉପକରଣ ।

ମୂଳ ଏକଚତ୍ୱାରିଂଶ ସର୍ଗରେ ରାମଚନ୍ଦ୍ର ପୁଷ୍ପକ ବିମାନକୁ ପଠାଇ ଦେଇଥିବାର କଥାମାନ ଲେଖାଅଛି । ରାମ କୁବେରଙ୍କଠାକୁ ପୁଷ୍ପକଯାନ ପଠାଇ ଦେଲାରୁ କୁବେର ଫେର୍ ତାକୁ ରାମଙ୍କଠାକୁ ପଠାଇ ଦେଇ କହିଥିଲେ କି ଶ୍ରୀରାମ ଯେତେ ସମୟ ଧରଣୀ ପୃଷ୍ଠରେ ବିରାଜମାନ ଥିବେ ତୁ ସେଇ ପ୍ରଭୁଙ୍କୁ ବହନ କରୁଥାଅ । ଶ୍ରୀମାନ ବଳରାମ ଦାସେ ମଧ୍ୟ ଏହା ହିଁ ଲେଖିଅଛନ୍ତି । (୨)

---

(୧) ଛାପାରେ ୧୨୦ ପୃଷ୍ଠା ପଢ଼ନ୍ତୁ ।

(୨) କୁବେର ବୋଇଲା ତୁ ଅଇଲୁ କିସ ପାଇଁ, ଅସୁରକୁ ବହି ପାପେ ଲିପ୍ତ ତୋର ଦେହି । ୧୧୯ପୃ.

ଅଧ୍ୟାତ୍ମ ରାମାୟଣରେ ମଧ୍ୟ ଏହା ହିଁ ଉକ୍ତ ଅଛି (୧) ଦ୍ୱିଚତ୍ୱାରିଂଶ ସର୍ଗରେ ବର୍ଣ୍ଣିତ କଥା ଏହି, ରାମଚନ୍ଦ୍ର ବହୁବର୍ଷ ରାଜତ୍ୱ କଲା ପରେ ଏକଦିନ ସୀତାଙ୍କ ସହ ଅଶୋକ ବନ ବିହାର କରୁଅଛନ୍ତି । ରାମ ପୁଣି ଜାଣି ପାରିଲେ ଯେ ସୀତା ଅନ୍ତଃସତ୍ତ୍ୱା ହୋଇଅଛନ୍ତି । ରାମ ସୀତାଙ୍କୁ ପଚାରିଲେ ଯେ ତୁମର ବର୍ତ୍ତମାନ କି ଇଚ୍ଛା ହେଉଅଛି ? ସୀତା କହିଲେ ମୋର ଇଚ୍ଛା ହୁଏ, ଗଙ୍ଗା ତୀରବର୍ତ୍ତୀ ସେହି ପବିତ୍ର ଋଷ୍ୟାଶ୍ରମମାନ ଥରେ  ଦେଖି ଏକ ରାତ୍ର ତତ୍ର ଅବସ୍ଥାନ କରିବି (୨) ଏସବୁ ମୂଳରେ ତ୍ରୟସ୍ତ୍ରିଂଶ ଗୋଟି ଶ୍ଳୋକରେ ମାତ୍ର ଲେଖାଅଛି । ଏହାକୁ ଦାସ ମହାଶୟ ଯଥାଯଥ ଟିକିଏ ପଲ୍ଲବିତ କରିଅଛନ୍ତି । ଦାସେ ଲେଖିଅଛନ୍ତି ସୀତାରାମ ଦୁହିଁଙ୍କର ଦଶ ସହସ୍ର ବର୍ଷ ସୁଖାବସ୍ଥାନ ପରେ ସୀତାଦେବୀ ଅନ୍ତଃସତ୍ତ୍ୱା ହେଲେ । (୩)

ଏହି ବର୍ଷ ପରିମାଣର ପ୍ରମାଣ ଅଧ୍ୟାତ୍ମ ରାମାୟଣରେ ମଧ୍ୟ ଲେଖାଅଛି । (୪)

ତେତେବେଳେ ସେ ଉଭୟଙ୍କ ପ୍ରତି ଉଭୟଙ୍କର ସମାଦର ଓ ପ୍ରେମ ପ୍ରକାଶର ଆଉ ସୀମା ରହିଲା ନାହିଁ । ଦୁହେଁ ଦୁହିଁଙ୍କର ହୃଦୟରେ ସନ୍ତତ ସଂପୂର୍ଣ୍ଣ ପ୍ରତିବିମ୍ବିତ ରହିଲେ । ରାମଚନ୍ଦ୍ର ବହୁ ଧନରତ୍ନମାନ ସୀତାଙ୍କ ଅନ୍ତଃପୁରକୁ ପଠାଇଲେ । ସୀତା ଦେବୀ ଅନେକଙ୍କୁ ଅନେକ ପ୍ରକାର ପଦାର୍ଥ ପ୍ରଦାନ କଲେ । ବ୍ରାହ୍ମଣମାନଙ୍କୁ ଅଗ୍ରହାରମାନ ପ୍ରଦାନ କଲେ । ରାଜଦାଣ୍ଡରେ ସୁବର୍ଣ୍ଣ ବୃଷ୍ଟି କରାଇଲେ । ପ୍ରତ୍ୟେକ ପ୍ରଦେଶରେ ସତ୍ରମାନ ବସାଇଲେ । ଦିନକୁଦିନ ଅଯୋଧ୍ୟା ସ୍ୱର୍ଗ ଅପେକ୍ଷା ଅତି କମନୀୟ ଓ ଆଦରଣୀୟ ହୋଇ ଉଠିଲା । ଏପରି ରାମ ଦଶ ସହସ୍ର ବର୍ଷ ସୁଖ ଭୋଗ କଲାପରେ ଦେବତାମାନେ ରାମ ଯେପରି ସ୍ୱର୍ଗକୁ ଆସନ୍ତି, ତାର ବିଚାର କଲେ । (୫)

ଏହିଠାରୁ ତ୍ରିପଞ୍ଚାଶ ସର୍ଗ ପର୍ଯ୍ୟନ୍ତ ଦଶଗୋଟି ସର୍ଗରେ ରାମ ସୀତାଙ୍କ ଅପବାଦର କଥା ଶୁଣି ପ୍ରଜାରଞ୍ଜନାର୍ଥ ତାହାଙ୍କ ତ୍ୟାଗ ସ୍ଥିର କରି ଦୁଃଖିତ ହେବା, ରାମାଦେଶରେ ଲକ୍ଷ୍ମଣ ବନବିହାର ବ୍ୟପଦେଶରେ ସୀତାଙ୍କୁ ଗଙ୍ଗାତୀରସ୍ଥ କାନନରେ ଛାଡ଼ି ଫେର୍

---

(୧) ଅଧ୍ୟାତ୍ମ ରାମାୟଣ ଉତ୍ତର କାଣ୍ଡ ଚତୁର୍ଥ ସର୍ଗ ଦେଖନ୍ତୁ ।

(୨) ତପୋବନାନୀ ପୁଣ୍ୟାନି ଦ୍ରଷ୍ଟୁମିଚ୍ଛାମି ରାଘବ ।
ଅପ୍ୟେକ ରାତ୍ରିଂ କାକୁତ୍ସ୍ଥ ! ନିବସେୟଂ ତପୋବନେ । ୪୨ସର୍ଗ

(୩) ଏବେ ପୁଣି ଅଯୋଧ୍ୟାରେ ରାଜପଣ କଲେ । ଆଜକୁ ଦଶ ସହସ୍ର ବରଷ ରହିଲେ । ୧୨୫ ପୃଷ୍ଠା

(୪) ଦଶବର୍ଷ ସହସ୍ରାଣି ମାୟାମାନୁଷବିଗ୍ରହଃ ।
ଚକାର ରାଜ୍ୟଂ ବିଧିବଦ୍ ଲୋକବନ୍ଦ୍ୟପଦାମ୍ବୁଜଃ, ଅ.ରା.ଉ.ର. ୪ ସର୍ଗ ।

(୫) ଦେବତାମାନଙ୍କର ଏହି ବିଚାର କଥା ଅଧ୍ୟାତ୍ମ ରାମାୟଣ ଉତ୍ତରକାଣ୍ଡ ଚତୁର୍ଥ ସର୍ଗରେ ଅନ୍ୟ ପ୍ରକାର ଉକ୍ତ ଅଛି । ଅର୍ଥାତ୍ ଦେବତାମାନେ ପ୍ରଥମତଃ  ସ୍ୱର୍ଗକୁ ବାହାରି ଆସିବା ପାଇଁ ସୀତା ଦେବୀଙ୍କୁ ଅନୁରୋଧ କରିଥିଲେ । ସୀତାଦେବୀ ତାହା ଶ୍ରୀରାମଙ୍କୁ ଜଣାଇଥିଲେ ।

ଅଯୋଧ୍ୟା ପ୍ରତ୍ୟାବୃତ୍ତ ହୋଇଥିବା ପ୍ରଭୃତି ଘଟଣାମାନ ବର୍ଣ୍ଣିତ ଅଛି । ରାମ ଏକ ଦିନ ସଭା ମଧ୍ୟରେ ନିଜର ଗୁଣାପଗୁଣ ସମ୍ବନ୍ଧେ ଜିଜ୍ଞାସୁ ହୋଇ ଭଦ୍ର ନାମକ ବ୍ୟକ୍ତି ମୁଖରୁ ସୀତାଙ୍କ ସମ୍ବନ୍ଧେ କିଛି ଲୋକାପବାଦର କଥା ଶୁଣିଲେ । ଦାସେ ଏ କଥାକୁ ଟିକିଏ ବଢ଼ାଇ ସୁଦ୍ଧା ଯଥାଯଥ ଲେଖିଅଛନ୍ତି । (୧)

ତାପରେ ରାମଚନ୍ଦ୍ର ଭରତ ଓ ଲକ୍ଷ୍ମଣାଦିଙ୍କୁ ଡକାଇ ଅଣାଇ ବିଷଣ୍ଣ ବଦନରେ ଦୁଃଖ ପ୍ରକାଶ କଲେ । ଭରତାଦି ରାମଙ୍କ ଆକସ୍ମିକ ଦୁଃଖରେ ବିସ୍ମିତ ଓ ଚିନ୍ତିତ ହେଲେ । ରାମ ଭରତାଦିଙ୍କୁ ସୀତାଙ୍କ ଅପବାଦର କଥା ଜଣାଇଲେ, ଏବଂ ଲକ୍ଷ୍ମଣଙ୍କୁ ଆଦେଶ ଦେଲେ ଯେ କାଲି ତୁମେ ସୀତାଙ୍କୁ ନେଇ ଗଙ୍ଗାତୀରରେ ଛାଡ଼ି ଆସିବ । ଦାସେ ମଧ୍ୟ ଠିକ୍ ଏହା ଲେଖିଅଛନ୍ତି । ପରଦିନ ଲକ୍ଷ୍ମଣ ସୀତାଦେବୀଙ୍କୁ ଗଙ୍ଗାତୀରକୁ ଯିବାପାଇଁ ଜଣାଇବାରୁ ସେ ନିତ୍ୟକୃତ୍ୟ ସାରି ଉଦ୍ୟତ ହେଲେ । କିନ୍ତୁ ଭିତର ପାପ କଥା ସେ ଆଦୌ ଜାଣି ନାହାନ୍ତି । ଦାସେ ଏ ସ୍ଥଳରେ ଲୋକାଚାର ପଦ୍ଧତି ବା ପରମ୍ପରାକୁ ଅନୁସରି ସୀତା ଶ୍ୱଶ୍ରୁମାନଙ୍କୁ ଜଣାଇ ବିଦାୟ ନେବା ଆଉ କୌଶଲ୍ୟାଦିମାନେ ତାହାଙ୍କୁ ଉପଦେଶତଃ ଯେ ପ୍ରକାର ନାସ୍ତି କଥା କହିଥିବାର ଲେଖି ଅଛନ୍ତି, ସେସବୁ ମୂଳରେ ନାହିଁ । (୨) ସୀତା ଦେବୀ ରାମଙ୍କ ଆଦେଶରେ ଲକ୍ଷ୍ମଣଙ୍କ ସହିତ ଗଙ୍ଗାତୀରବର୍ତ୍ତୀ କାନନକୁ ଯିବାକୁ ବାହାରିଲାବେଳେ ବଳରାମ ଦାସେ ସାଦୃଶ୍ୟ ଦେଖାଇ କହିଅଛନ୍ତି କି ସୀତାଙ୍କ ଏହି ପ୍ରସ୍ଥାନ ସୁଭଦ୍ରା ଦେବୀ ବାଲିଖଣ୍ଡିକୁ ଗଲାପରି ବୋଧ ହେଲା । (୩) ତେବେ ବାଲିଖଣ୍ଡି କଣ ? ତାର ସାଦୃଶ୍ୟ କିପରି ସମ୍ୟକ୍ ଚିନ୍ତନୀୟ । ଲକ୍ଷ୍ମଣ ଗଙ୍ଗାତୀରରେ ଅପର ପାରରେ ଉପଗତ ହେଲା କ୍ଷଣି କ୍ରନ୍ଦନ କରିବାକୁ ଲାଗିଲେ । ପ୍ରଥମେ ଲକ୍ଷ୍ମଣ ହାତ ଯୋଡ଼ି ସାଶ୍ରୁ ମୁଖରେ ସୀତାଙ୍କୁ କହିଲେ, ମୁଁ ଯାହା ବର୍ତ୍ତମାନ ଏହି ଲୋକଗର୍ହିତ କାର୍ଯ୍ୟରେ ନିଯୋଜ୍ୟ ହୋଇଅଛି, ଏକ୍ଷଣି ମୋର ମରଣ ଶ୍ରେୟସ୍କର । (୪)

ତା'ପରେ ସୀତା ଉଦ୍‌ବିଗ୍ନ ମନରେ ଶପଥ ଦେବାରୁ ଲକ୍ଷଣ ସମସ୍ତ ଫିଟାଇ କହିବା ଅବାଚ୍ୟ ମନେ କରି, ସଙ୍କେତତଃ ଜନାପବାଦ ଏତିକି ମାତ୍ର ତାହାଙ୍କୁ ଜଣାଇଲେ, ଏବଂ ଦଶରଥଙ୍କ ମିତ୍ର ବାଲ୍ମୀକିଙ୍କ ଆଶ୍ରମରେ ରହିବାକୁ ଅନୁରୋଧ କଲେ । ସୀତା

---

(୧) ଯହୁଁ ପୁଣି ଏ କଥା କହିଲେ ରାବଣାରି
ଭଦ୍ର ତାର ଛାମୁରେ ହୋଇଲା ଆଗୁସାରି । ଇତ୍ୟାଦି ୧୨୭ ପୃ.

(୨) ଛାପାରେ ୧୩୧, ୧୩୨ ପୃଷ୍ଠା ପଢ଼ନ୍ତୁ ।

(୩) ସୁଭଦ୍ରା ଦେବୀ ଜେହ୍ନେ ବାଲିଖଣ୍ଡିକି ଯାଇ
ତେସନକ ସଜାତ ଦିଶଇ ବଇଦେହି । ୧୩୩ ପୃ.

(୪) ଶ୍ରେୟୋହି ମରଣଂ ମେଽଦ୍ୟ ମୃତ୍ୟୋର୍ବା ଯତ୍‌ପରଂ ଭବେତ୍ ।
ନଚାସ୍ମିନ୍ନୀଦୃଶେ କାର୍ଯ୍ୟେ ନିଯୋଜ୍ୟୋ ଲୋକନିନ୍ଦିତେ, ୪୭ ସ. ।

ରାମକୃତ ପ୍ରତ୍ୟାଖ୍ୟାନର କଥା ଶୁଣି ମୂର୍ଚ୍ଛିତା ହୋଇ ପଡ଼ିଲେ । କ୍ଷଣକ ପରେ ସେ କଥଂ-ଚିତ୍ ହୃଦୟ ଧରି ଲକ୍ଷ୍ମଣଙ୍କୁ ନିଜର ଦୁଃଖ ଏବଂ ଅରକ୍ଷତା ସମ୍ବନ୍ଧେ ଛ ଗୋଟି ଶ୍ଳୋକ ମାତ୍ର କହି ଅଛନ୍ତି (୧) ସତ୍ୟ, ମାତ୍ର ଏହି ଯେ ଲକ୍ଷ୍ମଣଙ୍କ ପ୍ରତି ସୀତାଙ୍କ ଦୁଃଖୋକ୍ତି, ଏହାକୁ ଦାସେ ନାନା କଥାରେ ପଲ୍ଲବିତ କରି ଅଛନ୍ତି ଅପିଚ ଶିଷ୍ଟାଚାର ମତେ ଅନେକଗୁଡ଼ିଏ କଥା ଏଥିରେ ମିଶାଇ ଅଛନ୍ତି । ସେ ପୁଣି ସୀତାଙ୍କ ମୁଖରେ ମୁଁ ଅନ୍ତଃସତ୍ତ୍ୱା ଅଛି, ଏହା ପ୍ରକାଶ କରାଇ ନଗରକୁ ଯେ କହି ପଠାଇଅଛନ୍ତି, ତାହା ଆଦୌ ସମୀଚୀନ ବୋଧ ହୁଏ ନାହିଁ । ସେ ଯାହାହେଉ ଏ ସ୍ଥଳେ କବି ମହାଶୟ ସୀତାଙ୍କର ଦୁଃଖ କହି ତାକୁ ହୃଦୟସ୍ପର୍ଶୀ ଭାଷାରେ ପ୍ରକାଶ କରିଅଛନ୍ତି । (୨)

ଲକ୍ଷ୍ମଣ ସୀତାଙ୍କ କାତରୋକ୍ତି ଶୁଣି ନ ପାରି ନମସ୍କାର କରି ସେଠାରୁ ପ୍ରତ୍ୟାବୃତ୍ତ ହେଲାପରେ ମହର୍ଷି ବାଲ୍ମୀକି ଆସି ସୀତାଙ୍କୁ ନିଜର ଆଶ୍ରମକୁ ଘେନି ଗଲେ । ଲକ୍ଷ୍ମଣ ତେଣୁ ଆସୁ ଆସୁ ମାର୍ଗରେ ସୀତାଙ୍କ ସମ୍ବନ୍ଧେ ବହୁ ଅନୁଶୋଚନା କଲେ । ତେତେବେଳେ ସୁମନ୍ତ୍ର ଲକ୍ଷ୍ମଣଙ୍କୁ ବୋଇଲେ ତୁମେ ଏପରି ଶୋଚନା କର ନାହିଁ । ଏହି ଦୁର୍ଘଟଣା ଅବଶ୍ୟଂ ଭାବି ଥିଲା, ବର୍ତ୍ତମାନ ଘଟିଗଲା । ଏହା ମୁଁ ପୂର୍ବରୁ ଜାଣିଶୁଣି ଅଛି । ତଦା ଲକ୍ଷ୍ମଣ ଜିଜ୍ଞାସା କଲେ, ତୁମେ ଏ ସମ୍ବନ୍ଧେ ପୂର୍ବରୁ କଣ ଜାଣିଅଛ ? ସୁମନ୍ତ୍ର ବୋଇଲେ ପୁରା ମୁଁ ଦଶରଥଙ୍କ ସହ ବଶିଷ୍ଠାଶ୍ରମକୁ ଯାଇଥିଲି । ତତ୍ରାଗତ ଦୁର୍ବାସାଙ୍କୁ ଦଶରଥ ନିଜ ବଂଶର ଭବିଷ୍ୟମାଣ ସମବସ୍ଥାର ପ୍ରଶ୍ନକଲେ । ସେ କହିଲେ କି, ପୂର୍ବ କାଳରେ ଅସୁରମାନେ ଦେବତାମାନଙ୍କଦ୍ୱାରା ଦଣ୍ଡିତ ହୋଇ ଭୃଗୁ ମହର୍ଷିଙ୍କ ଧର୍ମପତ୍ନୀଙ୍କୁ ଶରଣ କଲେ । ଭୃଗୁପତ୍ନୀ ଅସୁରମାନଙ୍କୁ ସୁସ୍ଥ ରଖିବାରୁ ନାରାୟଣ ତାହାଙ୍କ ମସ୍ତକକୁ ଚକ୍ରରେ ଛେଦନ କରିଦେଲେ । ତଦା ଭୃଗୁ କୁପିତ ହୋଇ (୩) ବିଷ୍ଣୁଙ୍କୁ ଶାପ ଦେଲେ ଯେ ତୁମେ ମନୁଷ୍ୟ ଜନ୍ମ ପାଇବ । ତୁମର ପୁଣି ବହୁବାର୍ଷିକ ପତ୍ନୀ ବିଯୋଗ ହେବ ଇତ୍ୟାଦି ।

ଦାସଙ୍କ ରାମାୟଣରେ ଲକ୍ଷ୍ମଣଙ୍କ ମୁଖରେ ସୀତାଙ୍କ ଗୁଣାନୁବାଦନଟି ନୈତିକାନୁସାରେ (୪) ଟିକିଏ ବିସ୍ତୃତ ଭାବରେ ଅନ୍ୟଥା କ୍ରମରେ ପ୍ରତିପାଦିତ ଅଛି । ସୁମନ୍ତ୍ରଙ୍କ ପୂର୍ବକାଳରୁ ପରିଶ୍ରୁତ ସୀତାଙ୍କ ଭବିଷ୍ୟମାଣ ଦୁର୍ଘଟଣାର ବିବରଣ ମୂଳ ଗ୍ରନ୍ଥରେ ଯେପରି ଆମୂଳାନ୍ତ ସୁସ୍ପଷ୍ଟ ଲେଖା ଅଛି, ଏଥିରେ ସେପରି ନୁହେଁ । ଏଥିରେ ଲେଖାଅଛି କି, ପୂର୍ବେ ବଶିଷ୍ଠଙ୍କ ମୁଖରୁ ଦଶରଥ ଏବଂ ସୁମନ୍ତ୍ର ଶୁଣିଥିଲେ ଯେ, ସୀତାଦେବୀ ଏପରି ଦୁର୍ଘଟଣାରେ ପଡ଼ି ପରେ ଭୂଗର୍ଭସ୍ଥ ହେବେ ।

---

(୧) ୪୮ ସର୍ଗରେ ଦେଖନ୍ତୁ ।
(୨) ଛାପାରେ ୧୩୫, ୨୩୬ ପୃଷ୍ଠା ଦେଖନ୍ତୁ ।
(୩) ୫୧ ସର୍ଗ ଦେଖନ୍ତୁ ।
(୪) ଛାପାରେ ୧୪୧ ପୃଷ୍ଠା ପଢ଼ନ୍ତୁ ।

ଲକ୍ଷ୍ମଣ ଗଙ୍ଗାତୀରରୁ ସୁମନ୍ତ୍ର ସହ ପ୍ରସ୍ଥାନ କରି ପ୍ରଥମଦିନ ଗୋମତୀ ତୀରରେ ଅବସ୍ଥାନ କଲେ । ତା'ର ପରଦିନ ମଧ୍ୟାହ୍ନ ସମୟରେ ଅଯୋଧ୍ୟାରେ ଆସି ଉପଗତ ହେଲେ । ଲକ୍ଷ୍ମଣ ରାମଙ୍କୁ ନିତାନ୍ତ ଦୁଃଖିତ ଦେଖି ନାନା କଥାରେ ପ୍ରବୋଧ ଦେଇଅଛନ୍ତି । କିନ୍ତୁ ଦାସେ ଲେଖିଅଛନ୍ତି କି ଲକ୍ଷ୍ମଣ ଆସି ରାମଙ୍କ ଛାମୁରେ ସୀତାଙ୍କ ନିର୍ବାସନକୁ ଅନୁମୋଦନ କରିଥିଲେ । ମାତ୍ର ସୀତା ନିର୍ବାସନ ଲକ୍ଷ୍ମଣଙ୍କ ପକ୍ଷେ କଦାଚ ଅନୁମୋଦନୀୟ ନୁହେଁ । (୧)

ମୂଳ ଗ୍ରନ୍ଥରେ ଦେଖିବେ ତେତେବେଳେ ଲକ୍ଷ୍ମଣ ସଂସାରର ଅନିତ୍ୟତ୍ୱ, ସତ୍ ପୁରୁଷର ଅନାସକ୍ତତ୍ୱାଦି ସମ୍ବନ୍ଧେ ସାତଗୋଟି ଶ୍ଳୋକରେ ମାତ୍ର ରାମଚନ୍ଦ୍ରଙ୍କୁ ଆଶ୍ୱାସନା ପ୍ରଦାନ କରିଥିଲେ । (୨) କିନ୍ତୁ ଦାସେ ଏହାକୁ ପଲ୍ଲବିତ କରିବାକୁ ଯାଇ ନାଗ ଆଉ ନାନା କଥା ଲେଖିଅଛନ୍ତି । ଏଥିମଧ୍ୟରୁ କେତେକ ଅସଂଗତ ଓ ଅସମ୍ଭବ ମଧ୍ୟ ବୋଧହୁଏ । (୩)

ଏସବୁ ବଳରାମ ଦାସେ ଲେଖିଅଛନ୍ତି କି ? କିମ୍ବା ଅନୁଲେଖକ କେହି ମଧ୍ୟେ ମଧ୍ୟେ କିଛି ଲିପିଲାସ୍ୟ ଆରମ୍ଭ କରିଛନ୍ତି, ସ୍ଥିରତଃ କହି ନ ପାରୁଁ । ଏହାପରେ ପୁଣି ଏଥିରେ ଲେଖା ଅଛି, ତେତେବେଳେ ରାମଚନ୍ଦ୍ର କନକ ସୀତା ପ୍ରତିମା ନିର୍ମାଣାର୍ଥେ ଆଦେଶ କଲେ ଏବଂ ତଦନୁସାରେ ତାହା ନିର୍ମିତ ହେଲା । (୪) ବୋଧହୁଏ ଦାସେ ସୀତାଙ୍କ ପ୍ରତି ରାମଙ୍କ ବିଯୋଗ – ଅସହିଷ୍ଣୁତା ଓ ଅକୃତିମାସକ୍ତି ଦ୍ୟୋତନାର୍ଥ ନିର୍ବାସନ ଅବ୍ୟବହିତ ପରେ ତଦୀୟ ମୂର୍ତ୍ତିଦର୍ଶନରେ ଆଶ୍ୱସ୍ତିକରଣାର୍ଥ ଏ ସ୍ଥଳେ ଏହି ଚିତ୍ର ଦେଇଅଛନ୍ତି । ଏ ସ୍ଥଳେ ସୁବର୍ଣ୍ଣ ସୀତା ନିର୍ମାଣର କଥା ମୂଳରେ ଲେଖା ନାହିଁ । (ଅନ୍ୟତ୍ର ଲେଖାଅଛି)

ଅଧ୍ୟାତ୍ମ ରାମାୟଣରେ ମଧ୍ୟ ସ୍ୱର୍ଣ୍ଣସୀତା ନିର୍ମାଣ ରାମଙ୍କ ଅଶ୍ୱମେଧାନୁଷ୍ଠାନ ସମୟେ ଉକ୍ତ ଅଛି । (୫)

ଏ ସମ୍ବନ୍ଧେ ପୁଣି ଦାସେ ଲେଖିଅଛନ୍ତି, ସୀତା ଦେବୀଙ୍କର ସମସ୍ତ ଆଭରଣାଦି ସେହି ପ୍ରତିମାରେ ଦେଇ ସେ ପ୍ରତିମାଙ୍କୁ ସାକ୍ଷାତ୍ ସ୍ୱୟଂ ସୀତା ଭାବି ପୂର୍ବବତ୍ ସ୍ନାନ

---

(୧) ସର୍ବେ କ୍ଷୟାନ୍ତା ନିଚୟାଃ ପତନାନ୍ତାଃ ସମୁଚ୍ଛ୍ରୟାଃ ।
ସଂଯୋଗାବିପ୍ରଯୋଗାନ୍ତା ମରଣାନ୍ତଂ ହି ଜୀବିତମ୍ ।
ତସ୍ମାତ୍ ପୁତ୍ରେଷୁ ଦାରେଷୁ ମିତ୍ରେଷୁ ଚ ଧନେଷୁ ଚ ।
ନାତିପ୍ରସଙ୍ଗଃ କର୍ତ୍ତବ୍ୟଃ ବିପ୍ରଯୋଗୋ ହି ତୈ ର୍ଧ୍ରୁବମ୍ । ଇତ୍ୟାଦି ୫୨ ସର୍ଗ

(୨) ୧୪୩, ୧୪୪ ପୃଷ୍ଠାରେ ଦେଖିବେ ସୀତାଙ୍କ ସମ୍ବନ୍ଧେ ଲକ୍ଷ୍ମଣଙ୍କ ମୁଖରେ ଯାହା କୁହାଯାଇଛି ତାହା କଥଂଚିତ୍ ଲକ୍ଷ୍ମଣଙ୍କର କଥନୀୟ ନୁହେଁ ।

(୩) ଛାପାରେ ୧୪୪, ୧୪୫ ପୃଷ୍ଠା ପଢ଼ନ୍ତୁ ।

(୪) ଛାପାରେ ୧୪୬ ପୃଷ୍ଠାରୁ ୧୪୯ ପୃଷ୍ଠା ପର୍ଯ୍ୟନ୍ତ ପଢ଼ନ୍ତୁ ।

(୫) ଯଜ୍ଞାନ୍ ସ୍ୱର୍ଣ୍ଣମୟୀଂ ସୀତାଂ ବିଧାୟ ବିପୁଳଦ୍ୟୁତିଃ । ଅଧ୍ୟାତ୍ମ ରାମାୟଣ ଉ.କା.୬ସର୍ଗ ।

ଭୋଜନ ଶୟନାଦି ସମସ୍ତ ରାଜୋପଚାରମାନ ଅଖଣ୍ଡିତଃ ତହିଁରେ ଚଳାଇଲେ । ପରନ୍ତୁ ସୀତାଙ୍କ ଭଗିନୀତ୍ରୟଙ୍କୁ ଛାଡ଼ି ଶ୍ୱଶ୍ରୁ ପ୍ରଭୃତି ଅନ୍ତଃପୁରସ୍ଥ ସ୍ତ୍ରୀସମାଜ ଏପରିକି ଦାସୀ ପର୍ଯ୍ୟନ୍ତ ସମସ୍ତେ ସୀତା ଦେବୀଙ୍କ ତାତ୍କାଳିକ ଅବାଧ ଆଚରଣମାନ ବଖାଣି ନାନା ପ୍ରକାର ନିନ୍ଦା ରଚନା କରିଥିବାର ଯାହା ଲେଖା ଅଛି, ସେସବୁ ଅସମୀଚୀନ ବୋଧହୁଏ । ଅନୁମିତ ହୁଏ ଯେ, ସେସବୁ ଦାସଙ୍କର ଲେଖା ନୁହେଁ । ଅନୁଲେଖକଙ୍କର ଗୁଞ୍ଜା କଥା ହୋଇଥିବ । କାରଣ ଦାସେ ଲେଖିଛନ୍ତି କି ପୁରୁଷୋତ୍ତମରେ ଲକ୍ଷ୍ମୀଦେବୀଙ୍କୁ ଅର୍ଚ୍ଚନା କଲା ପରି ଏହି ସୀତା ପ୍ରତିମାକୁ ବଶିଷ୍ଠାଦି ମଧ ପୂଜା କରୁଥିଲେ । (୧) ତ୍ରିପଞ୍ଚାଶ ଓ ଚତୁଃପଞ୍ଚାଶ ସର୍ଗରେ ଲକ୍ଷ୍ମଣଙ୍କୁ ରାମଚନ୍ଦ୍ର ରାଜକାର୍ଯ୍ୟର ପର୍ଯ୍ୟବେକ୍ଷଣା ଭାବରେ ରାଜାଙ୍କ ଦୋଷ ଦର୍ଶାଇ ନୃଗରାଜ ଉପାଖ୍ୟାନ କହି ଅଛନ୍ତି । ରାମ କହିଅଛନ୍ତି କି, ନୃଗରାଜ କାର୍ଯ୍ୟାର୍ଥିମାନଙ୍କର କାର୍ଯ୍ୟଦର୍ଶନରେ ତ୍ରୁଟି କଲାରୁ ଶାପବଶତଃ କୃକଲାସ ହେଲେ । (୨) ସେ ପୁଣି କେତେକ କାଳ ପରେ ଶ୍ରୀକୃଷ୍ଣ ଯୋଗୁ ଏ ଦୁର୍ଗତିରୁ ମୁକ୍ତି ଲାଭ କରିଥିଲେ । ମୌଳିକ ଏହି କୃକଲାସୀକରଣ କଥା ଏହାର ଭାଗବତୀୟ ବିବରଣ ଅପେକ୍ଷା ଭିନ୍ନ ପ୍ରକାର ହୋଇଅଛି । ନୃଗରାଜ ନିଜର ଶାପ ବୃତ୍ତାନ୍ତ ଶୁଣିପାରି ପୁତ୍ରଙ୍କୁ ରାଜ୍ୟରେ ଅଭିଷିକ୍ତ କରାଇ ଗୋଟିଏ କାନନସଂକୁଳ ବିବର ନିର୍ମିତ କରାଇଲେ । ସେ ସ୍ୱତଃ ଯାଇ ବିଳରେ ନିବାସ କଲେ । (୩)

ଦାସେ ଲେଖିଅଛନ୍ତି କି ଏକ ଦିନ ରାମଚନ୍ଦ୍ର ଲକ୍ଷ୍ମଣଙ୍କୁ କହିଲେ କି, ମୁଁ ତାରାଙ୍କ ଶାପରୁ ସୀତା ବିଯୁକ୍ତ ହେଲି । (୪) ମହତଜନମାନେ ଯାହା କହନ୍ତି ତାହା ଅବଶ୍ୟ ଘଟେ । ଏହି ପ୍ରସ୍ତାବରେ ସେ ପୁଣି ନୃଗରାଜଙ୍କ ଚରିତ କହିଅଛନ୍ତି । ଏଥିରେ ଶ୍ରୀମଦ୍ ଭାଗବତରେ ଉକ୍ତ ବ୍ରାହ୍ମଣଙ୍କୁ ଦତ୍ତଗାଭୀକୁ ନୃଗରାଜ ଫେର୍ ଅଜ୍ଞାନତଃ (୫) ଅନ୍ୟ ବ୍ରାହ୍ମଣଙ୍କୁ ଦାନ ଦେଇଥିବା ଦୋଷରେ ଲିପ୍ତ ହେଲେ ବୋଲି ଲେଖାଅଛି । ଏଥିରେ ଏହି ଚରିତର ସଂଘଟନାକ୍ରମ ମୂଳ ଅପେକ୍ଷା ଯେପରି ଭିନ୍ନ ପ୍ରକାର, ସେପରି ଅତି ସଂକ୍ଷିପ୍ତ ହୋଇଅଛି । ଏପରିକି ଆଠଗୋଟି ପଦ୍ୟ ବା ଷୋଡ଼ଶପଂକ୍ତିରେ ସମଗ୍ର ଚରିତର ବିବରଣ ଶେଷ ହୋଇଅଛି ।

---

(୧) ଯେହ୍ନେ ଲକ୍ଷ୍ମୀଙ୍କି ପୁରୁଷୋତ୍ତମ ଆରାଧନ୍ତି । ତେସନ ପ୍ରକାରେ ଜନେ ସେବାକୁ କରନ୍ତି ।
ବଶିଷ୍ଠ ଜୀବନ୍ୟାସ କରିଛନ୍ତି ଯାହା, ବାମଦେବ ମୁନି ନିତି ପୂଜନ୍ତିଟି ତାହା ।
ଦେବାର୍ଚ୍ଚନ ପୁର ପ୍ରାୟ ସୀତାଙ୍କର ପୁର, ଧୂପ ଦୀପ ଦେଇ ଯେ ପୂଜନ୍ତି ଦ୍ୱିଜବର । ଇତ୍ୟାଦି ୧୪୯ ପୃ.

(୨) ପୌରକାର୍ଯ୍ୟାଣି ଯୋ ରାଜା ନ କରୋତି ଦିନେ ଦିନେ ।
ସଂବୃତେ ନରକେ ଘୋରେ ପତିତେ ନାତ୍ର ସଂଶୟଃ ।
(କ) କାର୍ଯ୍ୟାର୍ଥିନାଂ ବିମର୍ଦୋ ହି ରାଜ୍ଞାଂ ଦୋଷାୟ କଳ୍ପତେ । ୫୩ ସର୍ଗ

(୩) ଶ୍ୱଭ୍ରଂ ଜଗାମ ସୁକୃତଂ ବାସାୟ ପୁରୁଷର୍ଷଭଃ । ୫୪ସ.

(୪) ତେଣୁ ସେ ଜାନକୀ ମୋର ସନ୍ନିଧିରୁ ଗଲା
ତାରା ମହାସତୀ ଶାପ ମୋତାରେ ପଡ଼ିଲା । ୧୫୦ ପୃ.

(୫) ଗୋରୁ ଘେନି ଦ୍ୱିଜ ବେନି ସିଂହଦ୍ୱାରେ ମିଳି ।
ରାଜା ଲୁଚିଲା ଯେ ଶାପକୁ ଭୟ କରି । (୧୫୦ପୃ.)

ଅତଃପର ମୂଳରେ ତିନିଗୋଟି ସର୍ଗରେ ନିମି ଓ ବଶିଷ୍ଠ ଏ ଦୁହିଁଙ୍କ ଅନ୍ୟୋନ୍ୟ ପ୍ରଦତ୍ତ ଶାପ ଏବଂ ମୁକ୍ତିର ବିବରଣମାନ ଲେଖାଅଛି । ନିମିରାଜା ପଞ୍ଚସହସ୍ର ବର୍ଷ ବ୍ୟାପୀ ଯାଗ କରଣାର୍ଥ ପ୍ରଥମେ ବଶିଷ୍ଠଙ୍କୁ ବରଣ କଲେ । ସେ ତାଙ୍କୁ କହିଲେ, ମୁଁ ଇତି ପୂର୍ବେ ଇନ୍ଦ୍ରଙ୍କଦ୍ୱାରା ବରିତ ଅଛି । ଆଗେ ତାଙ୍କ ଯାଗ ସମାପ୍ତ କରି ପରେ ଆପଣଙ୍କର ଯାଗାନୁଷ୍ଠାନ କରିବି । ତା ଶୁଣି ନିମି ଗୌତମଙ୍କଦ୍ୱାରା ନିଜ ସଂକଳ୍ପିତ ଯାଗ ନିର୍ବାହ କରିଦେଲେ । ତାପରେ ତେଣୁ ବଶିଷ୍ଠ ଆସି ନିଜକୁ ଅପମାନିତ ମନେକରି କ୍ରୋଧରେ ରାଜାଙ୍କୁ ଶାପ ଦେଲେ କି, ହେ ରାଜା ! ତୁମର ଶରୀର ଚେତନାଶୂନ୍ୟ ହେଉ । ନିମି ମଧ ବଶିଷ୍ଠଙ୍କୁ ସେହି ଶାପ ଦେଲେ । ତଦା ବାୟୁଭୂତ ବଶିଷ୍ଠ ବ୍ରହ୍ମାଙ୍କୁ ନିଜର ଦୁରବସ୍ଥା ଜଣାଇଲେ । ସେ ତାଙ୍କୁ କହିଲେ, ତୁମେ ମିତ୍ରାବରୁଣଙ୍କ ତେଜରେ ପ୍ରବେଶ କର, ଫେର୍ ଅଯୋନିଜ ହେବ । ବଶିଷ୍ଠ ବରୁଣାଳୟକୁ ଯାଇଅଛନ୍ତି । ତେତିକିବେଳେ ଉର୍ବଶୀ ତତ୍ର ଉପଗତ ହେଲେ । ବରୁଣ ଉର୍ବଶୀଙ୍କୁ ସଙ୍ଗମାର୍ଥ ଆହ୍ୱାନ କଲେ । ସେ କହିଲେ ମୁଁ ଆଗେ ମିତ୍ରଙ୍କର ନିମନ୍ତ୍ରିତ ଅଛି । ଆଗେ ସେଠାକୁ ଯାଇ ଆସିବି, କିନ୍ତୁ ମୋର ଭାବ ଆପଣଙ୍କଠାରେ ରହିଲା । ବରୁଣ କହିଲେ, ତେବେ ଏହି ଅମୋଘ ରେତ ଏହି କଳଶରେ ରଖିଅଛୁଁ । ସମୟେ ଦର୍କାର କରିବ । ଉର୍ବଶୀ ମିତ୍ରଙ୍କଠାକୁ ଗଲେ, କିନ୍ତୁ ବିଳମ୍ବ ବଶରୁ ସେ ତାଙ୍କୁ ଶାପ ଦେଲେ ଯେ ତୁମେ ମନୁଷ୍ୟ ଶରୀରରେ ପୁରୁରବାଙ୍କୁ ଭର୍ତ୍ତା କର । କୁମ୍ଭରେ ସେ ମହାତ୍ମା ଦୁହିଙ୍କର ଯେଉଁ ଅମୋଘ ରେତ ସଞ୍ଚିତ ଥିଲା ତହିଁରୁ ପ୍ରଥମେ ଅଗସ୍ତ୍ୟ ଜାତ ହେଲେ, ତାପରେ ବଶିଷ୍ଠ ଜନ୍ମିଲେ । ଅତଏବ ଏ ଦୁହେଁ ମୈତ୍ର-ବରୁଣି ନାମରେ ଅଭିହିତ ହେଲେ । ଏତ ହେଲା ବଶିଷ୍ଠଙ୍କ ପୁନର୍ଦେହ ପ୍ରାପ୍ତି, ତା'ପରେ ନିମିଙ୍କ ଦେହ ପ୍ରାପ୍ତିର କଥା । ନିମିଙ୍କ ଚେତନାକୁ ଦେବତାମାନେ ବର ପ୍ରଦାନ କଲାରୁ ତାହା ପ୍ରାଣୀମାନଙ୍କ ନେତ୍ରରେ ବାୟୁଭୂତ ହୋଇ ରହିଲା । ତାହାଙ୍କ ଶରୀରକୁ ପୁଣି ବ୍ରାହ୍ମଣମାନେ ସଯତ୍ନରେ ରଖିଥିଲେ । ପରେ ଅରଣିଦ୍ୱାରା ତାକୁ ମନ୍ଥନ କଲାରୁ ତହିଁରୁ ମିଥି ଜାତ ହେଲେ । ମଥନରୁ ମିଥି, ଜନନତ୍ୱରୁ ଜନକ ଏବଂ ବିଦେହତ୍ୱରୁ ବୈଦେହ ଏପରି ତିନିଗୋଟି ନାମରେ ସେ ଅଭିହିତ ହେଲେ । (୧)

ବଳରାମ ଦାସେ ଏହି ଚରିତର ସ୍ଥୂଳ କଥାଟାକୁ ମାତ୍ର ଧରି ନିତାନ୍ତ ସଂକ୍ଷିପ୍ତ ଓ ଭିନ୍ନ ପ୍ରକାର ଲେଖିଅଛନ୍ତି । ଏପରିକି ଏହାର ଯାବତୀୟ କଥାକୁ ଅନଧିକ ଏକ ପୃଷ୍ଠାରେ ମାତ୍ର ପରିସମାପ୍ତ କରିଅଛନ୍ତି । (୨) ଦାସେ ବଶିଷ୍ଠ ଓ ନିମିଙ୍କର ଶାପକ୍ରମକୁ ମଧ ସମ୍ପୂର୍ଣ୍ଣ ଭିନ୍ନ ପ୍ରକାର କରି ଅଛନ୍ତି, ଏବଂ ଲେଖିଛନ୍ତି କି ବଶିଷ୍ଠ ଉର୍ବଶୀଙ୍କ ଗର୍ଭରୁ ଜନ୍ମିଥିଲେ ।

---

(୧) ମଥନାଦ୍ ମିଥିରିତ୍ୟାହୁଃ ଜନନାଦ୍ ଜନକୋଽଭବତ୍ ।
ଯସ୍ମାଦ୍ ବିଦେହାଦ୍ ସମ୍ଭୂତଃ ବୈଦେହସ୍ତୁତତଃ ସ୍ମୃତଃ । ୫୭ସ.

(୨) ଛାପା ପୁସ୍ତକରେ ୧୫୧ ପୃଷ୍ଠା ଦେଖନ୍ତୁ ।

ଲକ୍ଷ୍ମଣ ପଚାରିଲେ କି ନିମି ରାଜା ତ ଧର୍ମ ଦୀକ୍ଷିତ ଥିଲେ, ତେବେ ସେ ବଶିଷ୍ଠଙ୍କୁ କ୍ଷମା କଲେ ନାହିଁ କାହିଁକି ? ରାମ କହିଲେ କି, ସମସ୍ତଙ୍କଠି ସହିଷ୍ଣୁତା ଥାଏ ନାହିଁ, ଏ ହେତୁ ଯଯାତିଙ୍କୁ ଆଉ ଯଯାତି ପୁତ୍ରମାନଙ୍କୁ ଶାପ ଦେଇଥିଲେ । ସେ ଏହା ବୋଲି ଦୁଇ ଗୋଟି ସର୍ଗରେ ଯଯାତିଙ୍କ ଜରା ପ୍ରାପ୍ତି ପ୍ରଭୃତି ବିବରଣକୁ ଲକ୍ଷ୍ମଣଙ୍କୁ କହିଅଛନ୍ତି । (୧)

ଦାସେ ଏହି ସାଙ୍ଗୋପାଙ୍ଗ କଥାନକ (ଯଯାତି ନିଜର ବୃଦ୍ଧାବସ୍ଥା ପୁତ୍ରକୁ ଦେଇଥିଲେ ବୋଲି) ମଧ୍ୟରୁ କଥାର ଉଦ୍‌ଥାପନ କରି ଆଠଗୋଟି ପଦ ମଧ୍ୟରେ ମାତ୍ର ନିତାନ୍ତ ସଂକ୍ଷିପ୍ତତାରେ ଲେଖିଅଛନ୍ତି । ଯଯାତି ଯେ କି ହେତୁରୁ ବୃଦ୍ଧାବସ୍ଥା ପାଇଥିଲେ, ତାହା ଆଦୌ କହି ନାହାନ୍ତି । କିନ୍ତୁ ପରିଶେଷରେ ଯଯାତି ପୁତ୍ରମାନଙ୍କୁ ଶାପ ଦେବାରୁ ସେମାନେ ଯେପରି ରାଜ୍ୟ ପାଇ ପାରିଲେ ନାହିଁ, ମୁଁ ସେ ପରି ତାରାଙ୍କ ଶାପରୁ ସୀତାଙ୍କୁ ଭୋଗ କରି ପାରିଲି ନାହିଁ ବୋଲିବା କଥାକୁ ପୂର୍ବ କଥାରେ ସଂଲଗ୍ନ କରି ଅଛନ୍ତି । (୨)

ଅତଃପର ଷଷ୍ଟିତମ ସର୍ଗରେ ରାମଙ୍କ ଛାମୁରେ ଗୋଟିଏ ଶ୍ୱାନର ଅଭିଯୋଗମୂଳକ ଚରିତ ପରେ (୩) ଯମୁନା ତୀର ନିବାସୀ ଋଷିମାନଙ୍କ ସମାଗମନର କଥା ଲେଖାଅଛି । ଏକଦିନ ଗୋଟାଏ ଶ୍ୱାନ ରାମଙ୍କ ଧର୍ମାଧିକରଣରେ ଗୁହାରି କଲା କି (୪) ମୁଁ ରାଜମାର୍ଗରେ ଯାଉଁ ଯାଉଁ ସର୍ବାର୍ଥସିଦ୍ଧି ନାମକ ବ୍ରାହ୍ମଣ ମୋତେ ବିନା ଦୋଷରେ ପ୍ରହାରରେ ବିକଳାଙ୍ଗ କରି ପକାଇଅଛି, ରାମ ସେ ବ୍ରାହ୍ମଣଙ୍କୁ ଡକାଇ ପ୍ରଶ୍ନ କଲାରୁ ସେ ଦୋଷ ସ୍ୱୀକାର କଲେ । ତେବେ ବ୍ରାହ୍ମଣଙ୍କୁ କି ଅବା ଦଣ୍ଡ ଦିଆଯାଇପାରେ ? ରାମ ସଭାସ୍ଥ ପଣ୍ଡିତମାନଙ୍କ ସହ ଏହାର ମୀମାଂସା କଲେ । ତେତିକିବେଳେ କୁକୁର କହିଲା, ପ୍ରଭୋ ! ମୋ ପ୍ରତି ଯଦି ଆପଣଙ୍କର ଦୟା ହେଲା, ତେବେ ଏହି ବ୍ରାହ୍ମଣଙ୍କୁ କୁଳପତିତ୍ୱରେ ନିଯୁକ୍ତ କରି ଅଧିକାର ଦିଅନ୍ତୁ । ଏଥିପାଇଁ ଏହା ହିଁ ଏହାଙ୍କର ଦଣ୍ଡ । ରାମ ତଦା ସେହି ବ୍ରାହ୍ମଣଙ୍କୁ ହସ୍ତୀପୃଷ୍ଠରେ ବସାଇ ସେହି ଅଧିକାର ପ୍ରଦାନ କଲେ । ଏହା ଦେଖି ସଭ୍ୟବର୍ଗ ବଡ଼ ବିସ୍ମିତ ହେଲେ । ରାମ କହିଲେ, ହେ ସଭ୍ୟବର୍ଗ ! ଆପଣମାନେ ଏହା ବୁଝନ୍ତି ନାହିଁ, ସାରମେୟ ଧର୍ମସାର ବୁଝି ଅଛି । ଏହି ଅଧିକାର

**(ଏହାର ପରବର୍ତ୍ତୀ ପାଣ୍ଡୁଲିପି ଆଉ ଉପଲବ୍‌ଧ ନୁହେଁ ।)**



---

(୧) ୫୮, ୫୯ ସର୍ଗ ଦ୍ୱୟ ପଢ଼ନ୍ତୁ ।

(୨) ଶୁଣିଲୁଟି କି ଲକ୍ଷ୍ମଣ ଶାପର ବ୍ୟବସ୍ଥା ।
ତାରା ଶାପରେ ମୋତେ ଅଭୋଗ ହେଲା ସୀତା । ୧୫୨ ପୃ.

(୩) ମୂଳ ଗ୍ରନ୍ଥ ଓ ଛାପା ପୁସ୍ତକ ପାଠରୁ ଜଣାଯାଏ, ଏହି କୁକୁରାଭିଯୋଗ ମୂଳପୁସ୍ତକରେ ତ ପ୍ରକ୍ଷିପ୍ତ ଅଟେ ।

(୪) ଏ ସ୍ଥଳେ ରାଜା ପ୍ରଜାମାନଙ୍କର କର୍ତ୍ତାହର୍ତ୍ତାପାତା ଓ ଦୈବବିଧାତା ଅଟନ୍ତି ବୋଲି କେତେଗୁଡ଼ିଏ ରାଜନୀତି ଉକ୍ତ ଅଛି ।

# ସମୟ ସନ୍ନିଧାନ

**[ ସମୟ ସଂବିଧାନ ଲେଖାଯାଇଥିବା ଖାତାର ପ୍ରଥମ ଓ ଶେଷ କେତେକ ପୃଷ୍ଠା ଛିଣ୍ଡି ଯାଇଛି । ]**

x x x x x x x x x x x x x x x x

ତାର ପରଦିବସରେ ପୁଷ୍ୟ ନକ୍ଷତ୍ରରେ ଭରତ ଜାତ । ତାର ପର ଦିବସରେ ଅଶ୍ଳେଷା ନକ୍ଷତ୍ରରେ ଲକ୍ଷ୍ମଣ ଓ ଶତ୍ରୁଘ୍ନ ଜାତ ହୋଇଥିଲେ । ଏ କ୍ରମରେ କେବଳ ବାଲ୍ମୀକି ରାମାୟଣରେ, ଅନ୍ୟାନ୍ୟ ଦୌର୍ବାସାଦି ରାମାୟଣମାନଙ୍କରେ ମଧ୍ୟ ଏବଂ ରାମାୟଣାର୍ଥର ଉପବୃଂହକ ଗ୍ରନ୍ଥମାନଙ୍କରେ ସୁଦ୍ଧା ଅଭିହିତ ଥିବାରୁ ଦଶରଥଙ୍କର ପୁତ୍ର ଚତୁଷ୍ଟୟଙ୍କ ମଧ୍ୟରେ ସର୍ବଜ୍ୟେଷ୍ଠ ରାମଚନ୍ଦ୍ର, ତଦନୁଜାତ ଭରତ ଲକ୍ଷ୍ମଣଙ୍କ ଅପେକ୍ଷା ଜ୍ୟେଷ୍ଠ ଅଟନ୍ତି । ଅତଃପର ଏକକାଳରେ ଜାତ ହେଲେ ହେଁ ଲକ୍ଷ୍ମଣ ଶତ୍ରୁଘ୍ନ ଦୁହିଁଙ୍କ ମଧ୍ୟେ କେତେକ କ୍ଷଣମାତ୍ର ପୂର୍ବରୁ ଜାତ ଶତ୍ରୁଘ୍ନଙ୍କ ଅପେକ୍ଷା ଲକ୍ଷ୍ମଣ କେବଳ ଜ୍ୟେଷ୍ଠ । କାରଣ, ଗର୍ଭଧାରଣରେ ପ୍ରଥମ ପତିତ ବୀର୍ଯ୍ୟଦ୍ୱାରା ଜନନରେ ପଶ୍ଚାଦ୍‌ପାତୀ ଶିଶୁ ଉତ୍ପାଦିତ ହୁଏ । ଏହା ଶାରୀରିକ ଶାସ୍ତ୍ରରେ ଆତ୍ରେୟାଦି ମହର୍ଷିମାନଙ୍କ କର୍ତ୍ତୃକ ଅଭିହିତ ଅଛି । ଅତଏବ ସର୍ବକନିଷ୍ଠ ଶତ୍ରୁଘ୍ନ ଏହା ନିଶ୍ଚୟ ।*

## ପ୍ରଥମ ଯୁକ୍ତି ବିରୁଦ୍ଧ ବିଚାର

ଏପରି ହେଲେ ଲକ୍ଷ୍ମଣଙ୍କ ପ୍ରତି ଭରତଙ୍କର ଅଭିବାଦନ ଉଚିତ ନୁହଇ । ତଥାଚ ଭରତଙ୍କ ଅପେକ୍ଷା ପୂର୍ବରୁ ଲକ୍ଷ୍ମଣଙ୍କୁ ଉଦ୍ଦେଶ କରି ଜନକସୁତା ଉର୍ମିଳାଙ୍କ ପ୍ରଦାନ ମଧ୍ୟ ଘଟି ନପାରେ । ଏହି ଆକାଙ୍କ୍ଷାରେ କହୁଅଛୁଁ ଭରତଙ୍କ ଦ୍ୱାରା ଲକ୍ଷ୍ମଣ ଅଭିବାଦିତ ହୋଇ ନାହାନ୍ତି, କିନ୍ତୁ ଆଲିଙ୍ଗନ ଓ କୁଶଳ ପ୍ରଶ୍ନାଦିଦ୍ୱାରା ବହୁକାଳପରେ ପରିଦୃଷ୍ଟ ଲକ୍ଷ୍ମଣ ସତ୍‌କୃତ କେବଳ ହୋଇଅଛନ୍ତି ।

''ଅଙ୍କେ ଭରତମାରୁପ୍ୟ'' ଏହି ଶ୍ଳୋକର ଅର୍ଥ ବର୍ଣ୍ଣନା କରୁଅଛୁଁ ।

---

* ଗର୍ଭଧାରଣେ ପ୍ରଥମଂ ପତିତେନ ବୀର୍ଯ୍ୟେଣ ଜନନେ ପଶ୍ଚାଦ୍‌ପାତୀ ଶିଶୁଃ ଉତ୍ପଦ୍ୟତେ, ଗର୍ଭଧାରଣେ ପଶ୍ଚାଦ୍ ପତିତେନ ବୀର୍ଯ୍ୟେଣ ଜନନେ ପୂର୍ବପାତୀ ଶିଶୁ ରତ୍ପଦ୍ୟତେ ।

ଅଙ୍କେ ଭରତମାରୁପ୍ୟ ମୁଦିତଃ ପରିଷସ୍ୱଜେ
ତତୋ ଲକ୍ଷ୍ମଣମାସାଦ୍ୟ ବୈଦେହିଂଚ ପରଂତପଃ
ଅଭିବାଦ୍ୟ ତତଃ ପ୍ରୀତୋ ଭରତୋନାମ ଚାବ୍ରବୀତ୍ ॥

ଏ ସ୍ଥଳେ ଭରତ ଆଲିଙ୍ଗନ କୁଶଳ ପ୍ରଶ୍ନାଦି ବହୁ ସତ୍କାରଦ୍ୱାରା ଲକ୍ଷ୍ମଣଙ୍କୁ ସମ୍ପ୍ରାପ୍ତ ହୋଇ ତଦନନ୍ତର ବୈଦେହୀଙ୍କୁ ପୁଣି ଅଭିବାଦନ କରି (ସ୍ୱନାମ ଚାବ୍ରବୀତା) ଶାସ୍ତ୍ରାନୁମତେ ପ୍ରବରୋଚ୍ଚାରଣ ପୂର୍ବକ ସ୍ୱନାମ କୀର୍ତ୍ତନ ମଧ କଲେ, ଏହାହିଁ ତାହାର ଅଭିପ୍ରାୟ ।

ଏପରି ଅର୍ଥ ହୋଉଥିବା ସ୍ଥଳେ ଭରତ ଲକ୍ଷ୍ମଣଙ୍କୁ ଅଭିବାଦନ କଲେ, ଏହା କେହି ହେଲେ କିପରି ବା ଉହା କରିପାରିବେ ।

ଯଦି କେହି ପ୍ରଶ୍ନ କରନ୍ତି ଏପରି ଅର୍ଥ କରିଯିବାପାଇଁ କି ପ୍ରମାଣ ଅଛି ? ତେବେ ବୋଲୁଁ, ଏହା ସେମାନେ କହି ନ ପାରନ୍ତି । ଅନ୍ୟଥା ହେଲେ ଅର୍ଥାତ୍ ବୟୋନିର୍ଣ୍ଣାୟକ ଜନନକ୍ରମର ବିରୁଦ୍ଧ ଅର୍ଥ କଲେ ବାଲ୍ମୀକି ମହର୍ଷିଙ୍କର ଉକ୍ତି ଉନ୍ମତ୍ତ ପ୍ରଳାପପ୍ରାୟ ହୋଇପଡ଼ିବ । ତାଙ୍କରି ପୂର୍ବାପର ଉକ୍ତି ମଧରେ ଦୋଷାପତ୍ତି ଘଟିବ । ସୁତରାଂ ଏହି ଘଟସ୍ଥଳେ କେବଳ ତତ୍ତ୍ୱ ସଂଗ୍ରହ ରାମାୟଣ ପ୍ରଭୃତି ରାମାୟଣମାନଙ୍କରେ ଉକ୍ତ ଅର୍ଥର ବିରୋଧ ଘଟିବ । x x x x ଯଥା– ତତ୍ତ୍ୱସଂଗ୍ରହ ରାମାୟଣ ଯୁଦ୍ଧକାଣ୍ଡେ ୩୮ ସର୍ଗ ।

ବବନ୍ଦେ ଭରତୋ x ତ୍ରା ବୈଦେହୀଂ ଚ ମୁର୍ହୁମୁହୁଃ
ରାମେଣାପି ପରିଷ୍ୱକ୍ତୋ ଲକ୍ଷ୍ମଣେନାଭିବାଦିତଃ ॥

ଏ ସ୍ଥଳେ ''ଲକ୍ଷ୍ମଣେନାଭିବାଦିତଃ'' ଲକ୍ଷ୍ମଣଙ୍କ ଦ୍ୱାରା ଅଭିବାଦିତ ହେଲେ, ଏହି କଣ୍ଠୋକ୍ତି ଦ୍ୱାରା ଭରତଙ୍କୁ ଲକ୍ଷ୍ମଣ କେବଳ ଅଭିବାଦନ କରିଥିବାର ଅର୍ଥ ଉପଲବ୍ଧ ହୁଏ । ଏତାଦୃଶ କ୍ରମରେ ଅନ୍ୟାନ୍ୟ ଗ୍ରନ୍ଥମାନଙ୍କରେ ମଧ ଏହି ଅର୍ଥ କେବଳ ଉକ୍ତ ଅଛି, ଦେଖିବେ । ଅପିଚ ଇତଃପୂର୍ବେ ଉଦାହୃତ ଅଯୋଧାକାଣ୍ଡୀୟ ଶ୍ଳୋକର ଅର୍ଥ ମଧ ଏହାହି, କହିବାକୁ ହେବ ।

ଇତି ତଥାହି ଲୋକସମାକୃଷ୍ଟଃ ପାଦେଷ୍ୱଦ୍ୟ ପ୍ରସାଦୟନ୍
ରାମସ୍ୟ ନିପତିଷ୍ୟାମି ସୀତାୟା ଲକ୍ଷ୍ମଣସ୍ୟ ବା ॥

ଏ ସ୍ଥଳେ ''ଲକ୍ଷ୍ମଣସ୍ୟ'' ଏହି ପଦରେ ଦ୍ୱିତୀୟା ଅର୍ଥରେ ଷଷ୍ଠୀ ହୋଇଅଛି । (ଲକ୍ଷ୍ମଣମିତ୍ୟର୍ଥଃ) ଲକ୍ଷ୍ମଣଙ୍କୁ – ଏପରି ଅର୍ଥ କରିବାକୁ ହେବ । ତେବେ ତାପରେ ଏପରି ଅର୍ଥ କରିବାକୁ ହେବ ଯେ ଲକ୍ଷ୍ମଣଙ୍କୁ ପ୍ରସାଦିତ କରି ଅର୍ଥାତ୍ ପ୍ରୀତିଯୁକ୍ତ ବଚନମାନଙ୍କରେ ଅନୁରଂଜିତ କରି ରାମଙ୍କର ଓ ସୀତାଙ୍କର ପାଦରେ ପ୍ରଣିପାତ କରିବି । ଏହାହି ଅବିରୁଦ୍ଧ ଅନ୍ୱୟାର୍ଥ ।

ତଥାପି ଏହି ବାକ୍ୟର ଦ୍ୱିତୀୟ ପ୍ରକାର ଅର୍ଥ ବୋଲୁଅଛୁଁ । ଲକ୍ଷ୍ମଣ ମନସା ଭାବିନେଲେ ଯେ "ରାମସ୍ୟ ସୀତାୟାଶ୍ଚ ପାଦେ ନିପତିଷ୍ୟାମି", ଜ୍ୟେଷ୍ଠାଭିବାଦନ ବୈଧ ଥିବାରୁ ରାମସୀତା ଦୁହିଁଙ୍କର ପାଦରେ ପ୍ରଣାମ କରିବି; କିନ୍ତୁ ବକ୍ଷମାଣ ଅର୍ଥକୁ ମନରେ ଏପରି ନିଶ୍ଚୟ କରି କହିଥିଲେ । ତଥାହି, "ଲୁବ୍ଧମର୍ଥେନ ଗୃହ୍ଣୀୟାତ୍ ସ୍ତବ୍ଧମଞ୍ଜଳିକର୍ମଣା" ଅର୍ଥାତ୍ ଲୁବ୍ଧଙ୍କୁ ଅର୍ଥଦ୍ୱାରା ଏବଂ ସ୍ତବ୍ଧଙ୍କୁ ହାତଯୋଡ଼ି ଆୟତ୍ତ କରିବ । ଏପରି ଶାସ୍ତ୍ରୀୟ ନିୟମ ଥିବାରୁ, ମଦୀୟ x x x x ସ୍ମରଣ କରି ମୁ ନିର୍ଦ୍ଦୁଷ୍ଟ ଥିଲେ ସୁଦ୍ଧା ମୋ ପ୍ରତି ଯଦି ରାମଚନ୍ଦ୍ର କୁପିତ ହୁଅନ୍ତି ତେବେ ଅଭିବାଦନଦ୍ୱାରା କେବଳ ସେହି ଭକ୍ତପରାଧୀନ ପ୍ରଭୁଙ୍କୁ ସ୍ୱବଶ କରିବି; ଏହାହି ତାତ୍ପର୍ଯ୍ୟାର୍ଥ ।

ଯଦି ଲକ୍ଷ୍ମଣ କୈକେୟୀଙ୍କର ଦୁର୍ବଚନମାନ ଉଦ୍‌ଘାଟନ କରି ପୂର୍ବ ଦ୍ୱେଷକୁ ସ୍ମରଣ କରାଇବେ ତେବେ ତାଙ୍କୁ ପ୍ରସାଦନ କରି ହସ୍ତଚିବୁକାଦି ସ୍ପର୍ଶନଦ୍ୱାରା ଲକ୍ଷ୍ମଣଙ୍କୁ ଅନୁରଂଜନ କରିବା (ବି) ଅଥବା ଲକ୍ଷ୍ମଣଙ୍କର ପାଦରେ ମଧ ପଡ଼ିବି, ତାହାଙ୍କୁ ନମସ୍କାରାଦି ମଧ କରିବି, ଏହାହି ଅର୍ଥ । ଏ ସ୍ଥଳେ ବା, କିମ୍ବା, ଅବା, ବାକ୍ୟ ପ୍ରୟୋଗ ଦ୍ୱାରା ସର୍ବଶାସ୍ତ୍ରାର୍ଥନିଷିଦ୍ଧ କନିଷ୍ଠାଭିବନ୍ଦନ ମଧ କରି ଲକ୍ଷ୍ମଣଙ୍କ ପ୍ରତି ଅନୁନୟ କରିବି, ଏପରି ଅର୍ଥ ସୂଚିତ ହୋଉଅଛି । ଏଥିଦ୍ୱାରା ଭରତଙ୍କର ଶ୍ରୀରାମ ପ୍ରସାଦ ସଂପାଦାନ ବିଷୟରେ ସମଧିକ ଆସକ୍ତି କେବଳ ପ୍ରଦର୍ଶିତ ହୋଇଥିବା ଜଣାଯାଉଅଛି । କିନ୍ତୁ ଭରତଙ୍କର ଲକ୍ଷ୍ମଣଙ୍କ ପ୍ରତି ଅଭିବନ୍ଦନ ବିଧି ପ୍ରକାଶିତ ହୋଉନାହିଁ ।

ଏତାଦୃଶ ଭାବରେ ବକ୍ତାଙ୍କର ହୃଦୟସ୍ଥ ନିଗୂଢ଼ାଭିପ୍ରାୟ ବ୍ୟଞ୍ଜନା । ଅନେକ ପ୍ରମାଣ ବାକ୍ୟ ଅନ୍ୟାନ୍ୟ ଶାସ୍ତ୍ରମାନଙ୍କରେ ମଧ ଦେଖାଯାଉ ।

ସେ ବାକ୍ୟଗୁଡ଼ିକର ସର୍ବସାଧାରଣରେ ଅଭିଜ୍ଞେୟ ବାହ୍ୟଅର୍ଥ ସାମାନ୍ୟତଃ ଏକପ୍ରକାର ଏବଂ ନିଗୂଢ଼ ବିଶେଷାର୍ଥ ସେଥିରେ ଅନ୍ତର୍ହିତ ଥାଏ । ଯେପରିକି –

(୧) ବୃଦ୍ଧୌଚ ମାତା ପିତରୌ ସ୍ୱାଧୀଭାର୍ଯ୍ୟା ସୁତଃ ଶିଶୁଃ
ଅପ୍ୟକାର୍ଯ୍ୟ ଶତଂକୃତ୍ୱା ଭର୍ତ୍ତବ୍ୟା ମନୁରବ୍ରବୀତ୍ ।

ଇତି ମନୁସ୍ମୃତୌ ଭୃଗୁବଚନମ୍

ଏହାର ବାହ୍ୟ ଅର୍ଥ ଏହି ଯେ ମାତା ପିତା ବୃଦ୍ଧ, ଭାର୍ଯ୍ୟା ସତୀ ପତିବ୍ରତା, ସନ୍ତାନଟି ଶିଶୁ – ଏପରି ଅବସ୍ଥାରେ ମନୁଷ୍ୟ ଶତ ଅକାର୍ଯ୍ୟ କରି ସୁଦ୍ଧା ସେମାନଙ୍କୁ ପାଳନ କରିବେ । ତଥାପି ଏହାଦ୍ୱାରା ବ୍ରହ୍ମହତ୍ୟାଦି ଶତଶତ ପାତକ କରି ପତିମାତା ପ୍ରଭୃତିଙ୍କୁ ପାଳନ କିରବ ବୋଲି x x x ଭୃଗୁଙ୍କ ପ୍ରଦର୍ଶିତ ବିଧି ନୁହେ ।

ଏହି ବଚନର ତାଦୃଶ ଅଭିପ୍ରାୟ ଆଦୌ ନୁହେ; କିନ୍ତୁ ଏଥିଦ୍ୱାରା ପ୍ରତିପାଦିତ ହୋଉଅଛି ଯେ ଯେକି ଗୃହସ୍ଥ ତାହାକୁ ଅବଶ୍ୟ ପୋଷ୍ୟଜନ ବର୍ଗଙ୍କୁ କଷ୍ଟେସୃଷ୍ଟେ ପରିପାଳନ କରିବାକୁ ହେବ । ସେ ସେଥିପାଇଁ ବାଧ୍ୟ ।

(୨) ଅପିଚ

ଚଣ୍ଡାଳାଦପି ସଂଗୃହ୍ୟ ଯଜେଦାବଶ୍ୟକୈର୍ମଖୈଃ ।

ଏ ସ୍ଥଳେ ମଧ୍ୟ ଚଣ୍ଡାଳ ଦ୍ରବ୍ୟରେ ଆବଶ୍ୟକୀୟ ଅଗ୍ନିଷ୍ଟୋମାଦି କ୍ରତୁମାନ କରିବେ, ଏହି ଅର୍ଥ ଧାର୍ଯ୍ୟ ନୁହେଁ । କିନ୍ତୁ ଯେ କି ବ୍ରାହ୍ମଣ, ସେ ଅବଶ୍ୟ ଅଗ୍ନିସିଦ୍ଧିକୁ ସଂପାଦନ କରିବେ, ଏହି ଅର୍ଥ ପ୍ରତିପାଦିତ ହୋଉଅଛି ।

ଏହି ଭାବରେ କେବଳ ଇତଃପୂର୍ବେ ଉକ୍ତ ଶ୍ଳୋକର ଅର୍ଥରେ ଶ୍ରୀରାମ ପ୍ରସାଦନ ବିଷୟର ଅତ୍ୟନ୍ତ ଆବଶ୍ୟକତ୍ୱ କେବଳ ସୂଚୀତ ହୋଇଅଛି ବୋଲି ଅଭିଜ୍ଞବୃନ୍ଦ ଊହା କରିନେବେ ।

ଏତାଦୃଶ ଭାବରେ ପୁଣି ସେହି ବାଲ୍ମୀକି ରାମାୟଣରେ ଅଯୋଧ୍ୟାକାଣ୍ଡର ୧୯ ସର୍ଗରେ ୭ ସପ୍ତମ ଶ୍ଳୋକରେ ରାମ କହିଅଛନ୍ତି–

ଅହଂହି ସୀତାଂ ରାଜ୍ୟଂ ଚ ପ୍ରାଣାନିଷ୍ଟାନ୍ ଧନାନୀ ଚ
ହୃଷ୍ଟୋ ଭ୍ରାତ୍ରେ ସ୍ୱୟଂ ଦଦ୍ୟାଂ ଭରତାୟ ପ୍ରଚୋଦିତଃ ।।

"ମୁ ପରିତୁଷ୍ଟ ହୃଦୟରେ ଆବଶ୍ୟକ ହେଲେ ଭରତଙ୍କୁ ମୋର ସମସ୍ତ ରାଜ୍ୟ, ଧନ ଏବଂ ଅତ୍ୟନ୍ତାଦରଣୀୟ ପ୍ରାଣାଦି ମଧ୍ୟ ଏବଂ ସୀତାଙ୍କୁ ମଧ୍ୟ ଦେଇପକାଇପାରେ ।" ଏ ସ୍ଥଳରେ ଶ୍ରୀରାମଙ୍କ ବଚନର ଅଭିପ୍ରାୟ ସୀତାଙ୍କୁ ଦେଇପକାଇବା ନୁହେ । କିଂତୁ ଶ୍ରୀରାମଚନ୍ଦ୍ର ସ୍ୱୟଂ ଏଷଣାତ୍ରୟବର୍ଜିତ ଏବଂ ଭ୍ରାତାମାନଙ୍କ ପ୍ରତି ଅତ୍ୟନ୍ତ ପ୍ରେମବାନ୍ ଅଟନ୍ତି ଏହି ଅର୍ଥ ହି ଜାଣିବାକୁ ହେବ ।

ଏତ ହେଲା ପ୍ରୋକ୍ତ ଶ୍ଳୋକର ନିଗୂଢ଼ ଭାବପ୍ରକାଶନ ପ୍ରକ୍ରିୟା । ତାପରେ ପ୍ରୋକ୍ତ ଶ୍ଳୋକର ଅନ୍ୟପ୍ରକାର ସଂସ୍ଥାନ ମଧ୍ୟ ଦେଖାଯାଉଅଛି । କେତେକ ପୁସ୍ତକରେ – "ଇତିଲୋକସମାକୃଷ୍ଟଃ" ଇତ୍ୟାକାରକ ଶ୍ଳୋକର "ସୀତାୟାଲକ୍ଷ୍ମଣସ୍ୟବା" ଏ ସ୍ଥଳେ "ସୀତାୟାଶ୍ଚ ପୁନଃ ପୁନଃ" ଇତ୍ୟାକାରକ ପାଠ ଲେଖାଅଛି । ଏହି ପାଠ କେବଳ ପୂର୍ବପାଠ ଅପେକ୍ଷା ଜ୍ୟାୟାନ୍ ବୋଲି କେତେକ ଟୀକାରେ ଏବଂ ଟୀକା ଶିରୋମଣିରେ ଲେଖାଅଛି । ଏହିପାଠ କେବଳ ଉତ୍ତର ଦେଶରୁ ଆନୀତ ବହୁ ରାମାୟଣ ଗ୍ରନ୍ଥରେ ଲେଖାଥିବାର ଦେଖାଯାଉଅଛି । ଅତଏବ ଏହି ଗ୍ରନ୍ଥରେ ସୁଦ୍ଧା "ସୀତାୟାଶ୍ଚ ପୁନଃପୁନଃ"

ଇତ୍ୟାକାରକ ପାଠ କେବଳ ସ୍ୱୀକୃତ ହେଲା । ତାହାହେଲେ ଏହି ପକ୍ଷରେ ଲକ୍ଷ୍ମଣଙ୍କ ପ୍ରତି ଭରତଙ୍କର ଅଭିବାଦନର ପ୍ରସକ୍ତି ସୁଦ୍ଧା ନାହିଁ ।

## ଦ୍ୱିତୀୟ ଯୁକ୍ତି ବିଚାର

ଶ୍ରୀରାମ ପ୍ରଭୃତିଙ୍କ ବିବାହ ଘଟ୍ଟରେ ଜନକ ଭରତଙ୍କ ଅପେକ୍ଷା ଲକ୍ଷ୍ମଣଙ୍କୁ କେବଳ ପ୍ରଥମେ ଉଦ୍ଦେଶ କରିଅଛନ୍ତି ବୋଲି ଯାହା ଉକ୍ତ ଅଛି ସେଥିର ଉପପତ୍ତି କିପରି ? ଏପରି ଯଦି ଆକାଂକ୍ଷା ହୁଏ, ତେବେ ତାର ସିଦ୍ଧାନ୍ତକ୍ରମ ଏହି – ଜନକ ରାମଙ୍କୁ ମନ୍ତ୍ରୋଦକ ପୂର୍ବକ ସୀତାଙ୍କୁ ପ୍ରଦାନ କରି ତଦନନ୍ତର ଲକ୍ଷ୍ମଣ, ଭରତ ଓ ଶତ୍ରୁଘ୍ନଙ୍କୁ ସମ୍ବୋଧନ (କ)ରି ଆପଣମାନେ ଉର୍ମିଳା, ମାଣ୍ଡବୀ ଓ ଶ୍ରୁତକୀର୍ତ୍ତି ଏମାନଙ୍କର ପାଣିଗ୍ରହଣ କରନ୍ତୁ, ଏତିକିମାତ୍ର କହିଲେ । କିଂତୁ ରାମଙ୍କର ପରି ମନ୍ତ୍ରୋଦକ ପୁରଃସର କନ୍ୟାପ୍ରଦାନ ସେମାନଙ୍କୁ କରିନାହାନ୍ତି । ଏ ବିଷୟ ଇତଃପୂର୍ବେ ଉଦାହୃତ ସୀତାବିବାହ ଘଟ୍ଟୀୟ ଶ୍ଳୋକମାନଙ୍କରେ ଦେଖନ୍ତୁ । ସେ ସ୍ଥଳେ ସୀତା ପ୍ରଦାନ କେବଳ ମନ୍ତ୍ରୋଦକ ପୁରଃସ୍କୃତତା ସହ କରାଯାଇଥିବା ଉକ୍ତ ଅଛି । ତାପରେ ଲକ୍ଷ୍ମଣାଦି ବିବାହ ବିଷୟକ ଶ୍ଳୋକମାନଙ୍କରେ ଲକ୍ଷ୍ମଣ ପ୍ରଭୃତିଙ୍କୁ ଉଦ୍ଦେଶ୍ୟ କରି କହିଲେ, ଏହା ଉକ୍ତ ଅଛି । ଏହି ବଚନମାତ୍ରଙ୍କଦ୍ୱାରା ଜନକଙ୍କ କର୍ତ୍ତୃକ ଲକ୍ଷ୍ମଣ ପ୍ରଭୃତି ଉଦ୍ଦିଷ୍ଟ ମାତ୍ର ହୋଇଅଛନ୍ତି, ଅପିଚ ତଦୁପରି ଗ୍ରନ୍ଥରେ –

ଚତ୍ୱାରସ୍ତେ ଚତସୃଣାମ୍ ବଶିଷ୍ଠାନୁମତେ ସ୍ଥିତାଃ ॥

ଏହି ବଚନଦ୍ୱାରା "ଯଥୋକ୍ତେନ ତଥା ଚକ୍ରୁଃ" ଏହି ବାକ୍ୟଦ୍ୱାରା ମଧ୍ୟ ବଶିଷ୍ଠ ମହର୍ଷିଙ୍କଦ୍ୱାରା ପ୍ରଚୋଦିତ ଭରତ, ଲକ୍ଷ୍ମଣ ଓ ଶତ୍ରୁଘ୍ନ ( . )ହେଁ ଶାସ୍ତ୍ରାନୁମତରେ ଜ୍ୟେଷ୍ଠାନୁପୂର୍ବିକତାରେ ପାଣିଗ୍ରହଣ କଲେ, ଏହି ଅର୍ଥ ସମୀଚୀନତା ସହ ପ୍ରତିପାଦିତ ହୋଇଅଛି । ଏହା କେବଳ ମହର୍ଷି ବାଲ୍ମୀକିଙ୍କର ହୃଦୟସ୍ଥ ନିକୃଷ୍ଟାଭିପ୍ରାୟ ବୋଲି ଜାଣିବାକୁ ହେବ ।

ଅତ୍ରତ୍ୟ ସୀତାବିବାହ ଘଟ୍ଟରେ ପୂର୍ବେ ଉକ୍ତ ପାଠର ପର୍ଯ୍ୟାଲୋଚନାଦ୍ୱାରା ସେହି ବିବାହର ସମୟ ଏହିପରି ଜଣାଯାଉଅଛି । ବିବାହକାଳ ନିର୍ଣ୍ଣାୟକ ପ୍ରମାଣ-ବଚନ ଯଥା –

ମଘାହ୍ୟଦ୍ୟ ମହାବାହୋ ! ତୃତୀୟେ ଦିବସେ ପ୍ରଭୋ !
ଫାଲ୍‌ଗୁଣ୍ୟାମୁତ୍ତରେ ରାଜନ୍ ! ତସ୍ମିନ୍ ବୈବାହିକଂ କୁରୁ ॥
ଇତି ବାଳକାଣ୍ଡେ ୭୧ ସ, ୨୪ ଶ୍ଳୋ

ଏକାହ୍ନା ରାଜପୁତ୍ରୀଣାଂ ଚତସ୍ରୃଣାଂ ମହାମୁନେ !
ପାଣିନ୍ ଗୃହ୍ଣନ୍ତୁ ଚତ୍ୱାରଃ ରାଜପୁତ୍ରା ମହାବଳାଃ ॥
ଉତ୍ତରେ ଦିବସେ ବ୍ରହ୍ମନ୍ ଫଲ୍‌ଗୁନୀଭ୍ୟାଂ ମନୀଷିଣଃ
ବୈବାହିକଂ ପ୍ରଶଂସନ୍ତି ଭଗୋଯତ୍ର ପ୍ରଜାପତିଃ ॥

ଇତି ବାଲକାଣ୍ଡେ ୭୨ ସ, ୧୨, ୧୩ ଶ୍ଳୋ

ଏହି ବଚନଦ୍ୱୟରେ ଭଗଦୈବତକ ଉତ୍ତର ଫାଲ୍‌ଗୁନୀ ନକ୍ଷତ୍ର ଘଟିତ ଶୁଭ ଦିବସରେ ରାମାଦି ଭ୍ରାତୃଚତୁଷ୍ଟୟଙ୍କର ବିବାହ ହେଲା, ଏହି ଅର୍ଥ ଉପଲବ୍ଧ ହୋଉଅଛି । ସେହି ଦିବସରେ କେବଳ ରାମାଦିମାନଙ୍କର ତତ୍ ତତ୍ ଜନ୍ମନକ୍ଷତ୍ର ପ୍ରଯୁକ୍ତ ଚନ୍ଦ୍ରବଳ ଏବଂ ତାରାବଳ ମଧ ବିଚାରପୂର୍ବକ ପ୍ରତିପାଦିତ କରୁଅଛୁଁ ।

ରାମଚନ୍ଦ୍ରଙ୍କର ଜନ୍ମତାରା ପୁନର୍ବସୁ ନକ୍ଷତ୍ର, ତାଙ୍କୁ ହେଲା ସାଧନ ତାର । ଭରତଙ୍କର ପୁଷ୍ୟନକ୍ଷତ୍ର, ଗଣନାରେ ତାହାଙ୍କର ହେଲା ପ୍ରତ୍ୟକ୍‌ତାର । ଲକ୍ଷ୍ମଣ ଓ ଶତ୍ରୁଘ୍ନ ଦୁହିଁଙ୍କର ଅଶ୍ଳେଷା ନକ୍ଷତ୍ର, ଏ ଦୁହିଁଙ୍କର ହେଲା କ୍ଷେମତାର । ଏ ସ୍ଥଳେ ଦ୍ୱିତୀୟ ଓ ତୃତୀୟ ଚନ୍ଦ୍ର ଏହି ଉଭୟରୁ ଅନ୍ୟତର ଶୁଦ୍ଧ ଏବଂ ଉଭୟ ତାର ସୁଦ୍ଧା ରାମାଦି ସମ୍ବନ୍ଧେ ଶୁଭଦ କେବଳ । କିଂତୁ ଭରତଙ୍କର ପ୍ରତ୍ୟକ୍‌ତାରବଳ ବିଷମ ଅଟେ ସତ୍ୟ, ପରନ୍ତୁ "ବିବାହେ ପ୍ରତ୍ୟଗୁତ୍ତମଂ" ବିବାହରେ ପ୍ରତ୍ୟକ୍‌ତାର ଉତ୍ତମ ଅଟେ – ଏହି ବଚନ ପ୍ରମାଣରୁ ଅର୍ଥାତ୍ ଏହି ବିଶେଷ ବଚନ ବଳରୁ ଏହି ବିବାହ କର୍ମରେ ପ୍ରତ୍ୟକ୍‌ତାର ସର୍ବୋତ୍ତମ କେବଳ ।

ପରଂତୁ "ନାପ୍ୟେଷ୍ୱଜନ୍ୟ ଦ୍ୱୟୋଃ ଇତି" ଏହି କାଳାମୃତର ବଚନଦ୍ୱାରା ଏକୋଦର ଦୁହିଁଙ୍କର ଲକ୍ଷ୍ମଣ ଶତ୍ରୁଘ୍ନ ଦୁହିଁଙ୍କର ବିବାହ କିପରି ହେଲା ? "ଏକସ୍ୟାପି ସୁତାଦ୍ୱୟଂ ନ ବିହିତ ଇତି" ଏହି ବଚନଦ୍ୱାରା କୁଶଧ୍ୱଜଙ୍କ ଦୁହିତାଦ୍ୱୟଙ୍କୁ ବା କିପରି ଦତ୍ତ କରାଗଲା ? ଏପରି ଆଶଙ୍କାପତ୍ତି ହେବାସ୍ଥଳେ ବାର୍ହସ୍ପତ୍ୟ ବଚନଦ୍ୱାରା ପ୍ରୋକ୍ତ ନିଷେଧ ଯମଜ ସମ୍ବନ୍ଧେ ଦୋଷାବହ ନୁହେ । ଲକ୍ଷ୍ମଣ ଓ ଶତ୍ରୁଘ୍ନ ଯେପରି ଯମଜ କୁଶଧ୍ୱଜଙ୍କ ସୁତାଦ୍ୱୟ ମଧ ସେହିପରି ବୋଲି ଜାଣିନେବାକୁ ହେବ । ଏତାଦୃଶ ନିଷେଧ ବାରଣର ପ୍ରମାଣ ପୁରାଣାନ୍ତରରେ ପ୍ରସିଦ୍ଧ ହୋଇଅଛି । ଏକୋଦରମାନଙ୍କର ବିବାହ ନିଷେଧ ପ୍ରତିପାଦକ ପ୍ରମାଣ ଯଥା–

ଏକସ୍ୟାପି ସୁତାଦ୍ୱୟଂ ନବିହିତଂ ନାପ୍ୟେକଜନ୍ୟଦ୍ୱୟୋଃ
ଏକସ୍ମିନ୍ନୁଦୟେ ଦ୍ୱୟୋଶ୍ଚ ବରୟୋଃ ଦଦ୍ୟାନ୍ନ ପୁତ୍ରୀଦ୍ୱୟମ୍ ॥

ପୁତ୍ରୀପୁତ୍ର ଶୁଭଦ୍ୱୟଂ ନ ଯୁଗପଦ୍ କାର୍ଯ୍ୟଂ ନ ପୁତ୍ର ଦ୍ୱୟୋଃ
ଉଦ୍‌ବାହ ବ୍ରତଯୁଗ୍ମମେକଭବନେ ନାପ୍ୟନ୍ୟୋନ୍ତଦ୍ ଦ୍ୱୟମ୍ ।।
ଇତି କାଳାମୃତେ – ପ୍ରଥମ ଶତକେ – ୫୯ ଶ୍ଳୋ

ଯୁଗଳ ବିଷୟରେ ବିଶେଷ ବିଧି – ଯଥା – ବାର୍ହସ୍ପତ୍ୟେ –

ଏକସ୍ମିନ୍ ବସରେ ଚୈକବାସରେ ମଣ୍ଡପେଽପିତ
କର୍ତବ୍ୟଂ ମଙ୍ଗଳଂ ସ୍ୱସ୍ରୋଃ ଭ୍ରାତ୍ରୋର୍ଯ୍ୟମଳଜାତୟୋଃ ।।
ଗତୀଶଃ କ୍ରିୟମାଣାନାଂ ଯୁଗପଦ୍ ମାତୃପୂଜନମ୍
ନାନ୍ଦିମୁଖଂ ଭବେଦେକଂ ହୋମତନ୍ତ୍ରାଃ ପୃଥକ୍ ପୃଥକ୍ ।।
ଇତି ବାର୍ହସ୍ପତ୍ୟେ

ଏହାଛଡ଼ା ଆଉ ଅନ୍ୟ ପ୍ରକାର ରହସ୍ୟ କଥା ମଧ୍ୟ ଏ ସ୍ଥଳେ ଅଛି – ଯଥା – ଶ୍ରୀରାମାଦିମାନଙ୍କର ଜନନ କାଳରେ "ନକ୍ଷତ୍ରେ ଦିତି ଦୈବତ୍ୟେ" ଇତ୍ୟାଦିଦ୍ୱାରା ରାମାଦିମାନଙ୍କର ଉତ୍ପତ୍ତି କାଳ ଯେପରି ନିଶ୍ଚିତ ହୋଇଅଛି, ସେପରି ଏ ସ୍ଥଳେ ଜନକ କୌଣସି ମୁହୂର୍ତ ବା କୌଣସି ମୁହୂର୍ତାଂଶ ମଧ୍ୟ କହିନାହାନ୍ତି, ମାତ୍ର ପୂର୍ବୋକ୍ତ ପ୍ରକାରରେ କେବଳ ଲକ୍ଷ୍ମଣାଦିଙ୍କୁ ଉଦ୍ଦିଷ୍ଟ ମାତ୍ର କରିଅଛନ୍ତି । ଏତାବଦ୍ ମାତ୍ରଦ୍ୱାରା ଭରତଙ୍କ ଅପେକ୍ଷା ପୂର୍ବେ ଲକ୍ଷ୍ମଣଙ୍କର ବିବାହ ସଂପାଦିତ ହେଲାବୋଲି କେହିହେଲେ କହିପାରିବେ ନାହିଁ ତ । ଏହି ଅର୍ଥର ଅନୁପ୍ରାଣନରେ କେବଳ ବାଲ୍ମୀକିଙ୍କ ହୃଦୟସ୍ଥ ନିଗୂଢ଼ ଅଭିପ୍ରାୟ ଏତାଦୃଶ କ୍ରମରେ ପ୍ରପଞ୍ଚିତ ହୋଇଅଛି, ଯଥା –

ମମ ସତ୍ୟା ପ୍ରତିଜ୍ଞା ଚ ବୀର୍ଯ୍ୟଶୁଳ୍କେତି କୌ ...!
ସୀତା ପ୍ରାଣୈର୍ବହୁମତା ଦେୟା ରାମାୟ ମେ ସୁତା ।।
ଇତି ବାଳକାଣ୍ଡେ ୬୭ ସ. ୨୩ ଶ୍ଳୋ

ଜନକ ଏହା କହି ଧନୁର୍ଭଙ୍ଗାନାନ୍ତର ରାମଙ୍କୁ ଏହି ସୀତାଙ୍କୁ ଦିଆଯିବ ବୋଲି ବୀର୍ଯ୍ୟଶୁଳ୍କା ସୀତାଙ୍କର ମାତ୍ର ବିବାହ ନିଶ୍ଚିତ କଲେ । ଲକ୍ଷ୍ମଣଙ୍କ ବା ଭରତଙ୍କର କିମ୍ବା ଶତ୍ରୁଘ୍ନଙ୍କର ବିବାହ ନିଶ୍ଚିତ କରିନଥିଲେ । ତତଃପର ଋଷିମାନଙ୍କ ସହିତ ଦଶରଥ ଯେତେବେଳେ ମିଥିଳା ନଗରରେ ଉପଗତ ହେଲେ ସେତେବେଳେ ଜନକ ପ୍ରେଷିତ ଦୂତମାନଙ୍କ ସହ ଅତି ଆଦରର ସହକାରେ ଜନକାନୁଜ କୁଶଧ୍ୱଜ ମଧ୍ୟ ସାଂକାଶ୍ୟ ନଗରରୁ ମିଥିଳାକୁ ଆଗତ ହେଲେ । କୁଶଧ୍ୱଜଙ୍କ ଆଗମନ ପରେ କେବଳ ଜନକ ଓ କୁଶଧ୍ୱଜ ଦୁହେଁ ବିଚାର କରି ପୁତ୍ରମାନଙ୍କ ସହିତ ରାଜା ଦଶରଥଙ୍କୁ ସେଠାକୁ ଡାକି ଆଣିବା ପାଇଁ ନିଜର ମନ୍ତ୍ରୀ ସୁଦାମଙ୍କୁ ପଠାଇଥିଲେ ।

ଏହି କ୍ରମରେ ଚରିତ ଅଭିହିତ ଥିବାରୁ ଜଣାଯାଏ ଯେ ଉର୍ମିଳାଙ୍କର ବିବାହ ତେତେବେଳେ କେବଳ ନିଷ୍ଚିତ କଲେ, ଏବଂ ତହିଁ ନିମନ୍ତେ କେବଳ ମନ୍ତ୍ରୀଙ୍କୁ ପ୍ରେଷଣ କରିଥିଲେ ବୋଲି ଜଣାଯାଏ । ଏହିପରି କାହିଁକି ବୋଲାଯିବ ? ଏପରି ଯଦି କହନ୍ତି, ଦେଖନ୍ତୁ, ସୁଦାମ ପ୍ରେଷଣାନ୍ତର କେବଳ ଲକ୍ଷ୍ମଣଙ୍କ ନିମନ୍ତେ ଉର୍ମୀଳାଙ୍କୁ ଦିଆଯାଉ ବୋଲି ବଶିଷ୍ଠ ଋଷି ଜନକଙ୍କୁ କହିଅଛନ୍ତି । ''ଲକ୍ଷ୍ମଣଙ୍କ ନିମନ୍ତେ ଉର୍ମିଳାଙ୍କୁ ଦିଆଯିବ କି ବୋଲି ବଶିଷ୍ଠ ମହର୍ଷି ଜନକଙ୍କୁ ପଚାରି ଅଛନ୍ତି ।'' ଏ ପର୍ଯ୍ୟନ୍ତ ଭରତ ଓ ଶତ୍ରୁଘ୍ନଙ୍କ ନିମନ୍ତେ ମାଣ୍ଡବୀ ଓ ଶ୍ରୁତକୀର୍ତ୍ତି ଦିଆଯାଇନାହାନ୍ତି ।

ଯଥା – ରାମଲକ୍ଷ୍ମଣୟୋରର୍ଥେ ତ୍ୱଦ୍‌ସୁତେ ବରୟେ ନୃପ
ସଦୃଶାଭ୍ୟାଂ ନରଶ୍ରେଷ୍ଠ ସଦୃଶୈଦାତୁମର୍ହସି ॥
ଇତି ବାଳକାଣ୍ଡେ ୭୦ ସ. ୪୬ ଶ୍ଳୋ

ତାପରେ ଜନକ ହୋଇ ସେପରି କେବଳ କରାଯିବ ବୋଲି ଅଙ୍ଗୀକାର କରି ଆପଣାର ଗୋତ୍ରକ୍ରମ ବା ବଂଶାନୁକ୍ରମ ଅନୁବର୍ଣ୍ଣିତ କରିଅଛନ୍ତି । ଜନକରାଜ ନିଜର କନ୍ୟାଦ୍ୱୟଙ୍କୁ ସର୍ବପ୍ରଥମେ ଆଗତ ବଳବୀର୍ଯ୍ୟଗୁଣାଦିରେ ସଂପୂର୍ଣ୍ଣ ପରିଚିତ ରାମ ଓ ଲକ୍ଷ୍ମଣ ଦୁହିଁଙ୍କୁ ପ୍ରଦାନ କରିଦେଲା ପରେ ପୁନଶ୍ଚ ବିଶ୍ୱାମିତ୍ର ଭରତ ଓ ଶତ୍ରୁଘ୍ନଙ୍କପାଇଁ ମାଣ୍ଡବୀ ଓ ଶ୍ରୁତକୀର୍ତ୍ତିଙ୍କୁ ଦେବାକୁ କହିଅଛନ୍ତି । ଯଥା–

ଭରତସ୍ୟ କୁମାରସ୍ୟ ଶତ୍ରୁଘ୍ନସ୍ୟ ଚ ଧୀମତଃ
ବରୟେମ ସୁତେ ରାଜଂସ୍ତୟୋରର୍ଥେ ମହାତ୍ମନୋଃ ॥
ଇତି ବାଳକାଣ୍ଡେ ୭୨ ସ. ୬ ଶ୍ଳୋ

ଏହିପରି ପ୍ରତିପାଦିତ ବଚନମାନଙ୍କରୁ ଏହାହି ସ୍ପଷ୍ଟ ଜଣାଯାଉଅଛି କି ଜନକରାଜ ନିଜର ସ୍ୱାଭିମାନ ପୁତ୍ରୀ ସୀତାଙ୍କର ବିବାହ ନିଷ୍ପନ୍ନ ହୁଅନ୍ତେ ଔରସୀ-ପୁତ୍ରୀ ଉର୍ମୀଳାଙ୍କର ବିବାହ ନ କରିବା ଉଚିତ ନୁହେ ଭାବି ଲକ୍ଷ୍ମଣଙ୍କ ନିମନ୍ତେ ଉର୍ମିଳାଙ୍କୁ ଦେବା ଉଚିତ ବୋଲି ଜନକ ଓ କୁଶଧ୍ୱଜ ବିଚାରକଲେ । ସେ ଦୁହିଁଙ୍କର ନିଷ୍ଚିତ ଅଭିପ୍ରାୟ ବଶିଷ୍ଠ ମନ୍ତ୍ରୀଙ୍କ ମୁଖରୁ ଅବଗତ ହୋଇ ତଦଭିପ୍ରାୟର ଅନୁସାରେ ବଶିଷ୍ଠ ଦଶରଥ ରାଜାଙ୍କୁ ସମାଧା ଦେଇ ଲକ୍ଷ୍ମଣଙ୍କପାଇଁ ଝଟିତି ଉର୍ମିଳାଙ୍କୁ ବରଣ କରିଦେଲେ । ତାର କିଛିକ୍ଷଣ ପରେ ଅଗ୍ରଜ ଭରତ ଅବିବାହିତ ଥାଉଁ କନିଷ୍ଠ ଲକ୍ଷ୍ମଣଙ୍କର ବିବାହକରଣ ଯୁକ୍ତ ନୁହେ, ଏହା ଭାବି ଓ ବିଚାର କରି ଭରତ ଓ ଶତ୍ରୁଘ୍ନଙ୍କପାଇଁ କୁଶଧ୍ୱଜସୁତା ମାଣ୍ଡବୀ ଓ ଶ୍ରୁତକୀର୍ତ୍ତି ଦୁହେଁ ବରଣକରାଯାଉ, ଏହା ବଶିଷ୍ଠ ଦଶରଥ ପ୍ରଭୃତି ବିଶ୍ୱାମିତ୍ରଙ୍କୁ ପ୍ରାର୍ଥନା କଲେ । ସେମାନଙ୍କଦ୍ୱାରା ପ୍ରାର୍ଥିତ ବିଶ୍ୱାମିତ୍ର ଜନକଙ୍କୁ ସେହିପରି ପଚାରିଲେ ।

ଏହିପରି ପୂର୍ବୋତ୍ତର ପାଠପର୍ଯ୍ୟାଲୋଚନାଦ୍ୱାରା ମହର୍ଷି ବାଲ୍ମୀକିଙ୍କର ହୃଦୟସ୍ଥ ଯଥାର୍ଥ (ପରମ) ଅଭିପ୍ରାୟ ସୂଚୀତ ହୋଉଅଛି । ଅନ୍ୟଥା ବଶିଷ୍ଠ ମହର୍ଷି କେବଳ ଲକ୍ଷ୍ମଣଙ୍କ ପାଇଁ ଉର୍ମିଳାଙ୍କୁ ବରଣ କରିବା, ତଥାଚ ବିଶ୍ୱାମିତ୍ର ପୃଥକ୍ତଃ ଭରତ ଓ ଶତ୍ରୁଘ୍ନଙ୍କ ପାଇଁ ମାଣ୍ଡବୀ ଓ ଶ୍ରୁତକୀର୍ତ୍ତିଙ୍କୁ ବରଣ କରିବା, ଏହି ଉଭୟ ପାର୍ଥକ୍ୟ ବରଣର ପାର୍ଥକ୍ୟ ପରବୈୟର୍ଥାପତ୍ତି ଘଟୁଅଛି । ଅତଏବ ବିଶ୍ୱାସକରିବାକୁ ହେବ ଯେ ବାଲ୍ମୀକି ମହର୍ଷି ଲକ୍ଷ୍ମଣଙ୍କ ଅପେକ୍ଷା ଭରତଙ୍କର ଜ୍ୟେଷ୍ଠତା ସର୍ବତ୍ର ଉଦୀରିତ କରିଅଛନ୍ତି ।

ଏ ସ୍ଥଳେ ପୁଣି କେହି କେହି ବ୍ୟାଖ୍ୟାନକର୍ତ୍ତା ପୂର୍ବୋତ୍ତର ପାଠମାନଙ୍କର ପର୍ଯ୍ୟାଲୋଚନା ନକରି ଏତଦ୍‌ଘଟୀୟ ପଦସ୍ୱାରସ୍ୟକୁ ଜାଣିନପାରି ଭରତଙ୍କ ଅପେକ୍ଷା ପୂର୍ବେ ଲକ୍ଷ୍ମଣଙ୍କର ବିବାହ କଥନକୁ ଜ୍ୟେଷ୍ଠାଂଶ ସଂଭୂତ ପାୟସର ପ୍ରଦାନ କ୍ରମର ମୂଳକ ଓ ଜ୍ୟେଷ୍ଠତାକୃତ ବୋଲି କହିଅଛନ୍ତି । ସେହିମାନେ କେବଳ ପୁଣି ବହୁ ସ୍ଥଳରେ ''ଭରତଙ୍କର ଜ୍ୟେଷ୍ଠତା ବର୍ଣ୍ଣନ ଲକ୍ଷ୍ମଣାପେକ୍ଷା ପ୍ରାଥମିକ ଉତ୍ପତ୍ତି-ମୂଳକ ବୋଲି ଜାଣିବାକୁ ହେବ'', ଏହା ମଧ କହିଅଛନ୍ତି ।

କାଳକୃତ ଜ୍ୟେଷ୍ଠତା କେବଳ ଯେ ପ୍ରାଥମିକ ଅଂଶଦାନ ମାତ୍ରରେ ସଂଭବ, ଏପରି କହିବା ବାଳପ୍ରଳପିତ ପରି ଜଣାଯାଏ । କିଂତୁ ଲକ୍ଷ୍ମଣଙ୍କର ରାମାଂଶବତ୍ତାବଳରୁ ସମୟେ ଭରତଙ୍କ ଅପେକ୍ଷା ନିଖିଳ-କଲ୍ୟାଣ ଗୁଣମାନଙ୍କରେ ତେଜଃଶୌର୍ଯ୍ୟ ସାମର୍ଥ୍ୟାଦିରେ ବୈଲକ୍ଷଣ୍ୟ ଦେଖାଯାଇପାରେ, ମାତ୍ର କାଳକୃତ ଜ୍ୟେଷ୍ଠତା-ପ୍ରଯୁକ୍ତ ବିବାହ ପ୍ରଭୃତି ଧର୍ମଶାସ୍ତ୍ରୋଦିତ କାର୍ଯ୍ୟମାନଙ୍କରେ ଭରତଙ୍କ ଅପେକ୍ଷା ଲକ୍ଷ୍ମଣଙ୍କ ଜ୍ୟେଷ୍ଠତା କହିବାପାଇଁ ସ୍ୱୟଂ ବ୍ରହ୍ମା ମଧ ସମର୍ଥ ହୋଇନପାରନ୍ତି । ତାହାହେଲେ ତେବେ ନିଖିଳକଲ୍ୟାଣଗୁଣାକର ଭଗବାନ ରାମଚନ୍ଦ୍ରଙ୍କର ଦଶରଥବିଶ୍ୱାମିତ୍ରାଦି ଋଷିଗଣ ମଧ ବନ୍ଦନୀୟ ହୋଇ ନପାରନ୍ତି । ସେହି କାରଣରୁ ବୟଃପ୍ରଯୁକ୍ତ ଜ୍ୟେଷ୍ଠତା ବିଷୟ ଶୌର୍ଯ୍ୟସାହସାଦି କାରଣ ନୁହନ୍ତି; ଏହାହି ସର୍ବଥା ସମଞ୍ଜସ ଅଟେ ।

ଅପିଚ – ଭରତାଦେବରାମସ୍ୟ ରାଜ୍ୟ ସାଧାରଣାଦ୍ ଭୟଂ
ତଦ୍‌ବିଚିନ୍ତ୍ୟ ବିଷଣ୍ଣାସ୍ମି ଭୟଂ ଭୀତାଦ୍ଧିଜାୟତେ ।।

ଇତି ଅଯୋଧ୍ୟାକାଣ୍ଡେ ୮ ସ, ୫ ଶ୍ଳୋ
(କୈକେୟୀ ପ୍ରତି ମନ୍ଥରା ଉକ୍ତି)

ଏ ସ୍ଥଳରେ 'ଭରତାଦେବେତି' ଅବଧାରଣାର୍ଥକ ଏବ ଅବ୍ୟୟର ପ୍ରୟୋଗ ହେତୁରୁ ଲକ୍ଷ୍ମଣ, ଭରତ, ଶତ୍ରୁଘ୍ନ ଏ ତିନିଙ୍କ ମଧରେ ଭରତଙ୍କଠାରେ କେବଳ ଜ୍ୟେଷ୍ଠତ୍ୱ ପ୍ରବର୍ତ୍ତୁଅଛି । ଏହି ଅର୍ଥ ସମସ୍ତ ଲୋକମାନଙ୍କର ବିଦିତ କେବଳ । ଏହା ପରେ ମନ୍ଥରା

ମଧ୍ୟ ଜାଣିପାରିଲେ, ଏହାହିଁ ବେଦିତବ୍ୟ ଅର୍ଥାତ୍ ଏହି ଅର୍ଥ ହିଁ ଊହା କରିନେବାକୁ ହେବ । ରାମଙ୍କ ଅପେକ୍ଷା ଅତି ଅଳ୍ପକାଳମାତ୍ର ନ୍ୟୂନବୟସ୍କତ୍ୱରୁ ରାଜାଙ୍କର ଅତିପ୍ରେମାସ୍ପଦୀଭୂତ କୈକେୟୀ ପୁତ୍ରତ୍ୱରୁ ରାଜା ପୂର୍ବେ କୈକେୟୀଙ୍କୁ ଦେଇଥିବା ବରର ସ୍ମରଣ ହେତୁରୁ କୈକେୟୀଙ୍କର ପରିଣୟ ସମୟରେ ତାହାଙ୍କ ଜ୍ୟେଷ୍ଠପୁତ୍ରକୁ ସ୍ୱରାଜ୍ୟ ଦେବି ବୋଲି ରାଜା କହିଥିବା କଥାର ସ୍ମରଣ ହେତୁରୁ ଏବଂ ଏତାଦୃଶ ଆଉ କେତେକ ହେତୁରୁ କେଜାଣି ରାଜା କେତେବେଳେ ଭରତଙ୍କୁ ସ୍ୱରାଜ୍ୟ ଦେଇପକାଇବେ ବୋଲି ଭରତଙ୍କଠାରୁ ଶ୍ରୀରାମଚନ୍ଦ୍ରଙ୍କର ଭୀତି ହୁଏ; ଏହିପରି ଅଯୋଧ୍ୟାପୁରନିବାସୀ ଜନସାଧାରଣଙ୍କର ବ୍ୟବହାରକୁ ଜାଣିପାରିଥିବା ମନ୍ଥରାଙ୍କର ଏହି ଅଭିପ୍ରାୟ ବୋଲି ଜାଣିବାକୁ ହେବ । ଅପିଚ, ସୁତରାଂ ଏହି ଅଭିପ୍ରାୟ କେବଳ ଦଶରଥଙ୍କ କଣ୍ଠୋକ୍ତିରେ ମଧ୍ୟ ଅଭିହିତ ହୋଇଅଛି, ଯଥା–

ବିପ୍ରୋଷିତଶ୍ଚ ଭରତଃ ଯାବଦେବ ପୁରାଦିତଃ
ତାବଦେବାଭିଷେକସ୍ତେ ପ୍ରାପ୍ତ କାଲୋମତୋମମ ॥
କାମଂ ଖଲୁ ସତାଂବୃତ୍ତେ ଭ୍ରାତା ତେ ଭରତଃ ସ୍ଥିତଃ
ଜ୍ୟେଷ୍ଠାନୁବର୍ତୀ ଧର୍ମାତ୍ମା ସାନୁକ୍ରୋଶୋ ଜିତେନ୍ଦ୍ରିୟଃ ॥

ଇତି ଅଯୋଧ୍ୟାକାଣ୍ଡ ୪ ସ, ୨୫ ଶ୍ଳୋ
(ରାମ ପ୍ରତି ଦଶରଥ)

ଏ ସ୍ଥଳେ ବିପ୍ରୋଷିତ ଭରତଙ୍କର ପ୍ରତ୍ୟାଗମନ ପୂର୍ବରୁ କେବଳ ଶ୍ରୀରାମଚନ୍ଦ୍ରଙ୍କର ପଟ୍ଟାଭିଷେକ କର୍ତ୍ତବ୍ୟ, ଦଶରଥଙ୍କର ଏହି କଣ୍ଠୋକ୍ତି ଦ୍ୱାରା ଶ୍ରୀରାମଙ୍କର ଉପସ୍ଥିତିରେ ମଧ୍ୟ ଅର୍ଥାତ୍ ରାମ ଥାଉଁ ଥାଉଁ ମଧ୍ୟ ଭରତଙ୍କର ସୁଦ୍ଧା ରାଜ୍ୟାର୍ହତ୍ୱ ନ୍ୟାଯ୍ୟକେବଳ, ଏହି ଅର୍ଥ ବିଦ୍ୟୋତିତ ହୋଉଅଛି । ଏପରି ହୋଇଥିବା ସ୍ଥଳେ ଲକ୍ଷ୍ମଣଙ୍କ ଅପେକ୍ଷା ଭରତ ଯେ ଜ୍ୟେଷ୍ଠ, ଏହା କୈମୁତିକନ୍ୟାୟସିଦ୍ଧ କେବଳ ଅଟେ ।

ହିମବାନ୍ ମନ୍ଦରୋ ମେରୁଃ ତ୍ରୈଲୋକ୍ୟଂ ବା ସହାମରୈଃ
ଶକ୍ୟଂ ଭୁଜାଭ୍ୟାମୁଦ୍ଧର୍ତୁଂ ନ ସଂଖ୍ୟେ ଭରତାନୁଜଃ ॥

ଇତି ଯୁଦ୍ଧକାଣ୍ଡେ ୫୯ ସ. ୧୧୨ ଶ୍ଳୋ

ଏତାଦୃଶ କ୍ରମରେ ଏତଦ୍ ପ୍ରଭୃତି ଶତଶତ ବାକ୍ୟ ସର୍ବତ୍ର ଲକ୍ଷ୍ମଣଙ୍କ ଅପେକ୍ଷା ଭରତଙ୍କର ଜ୍ୟେଷ୍ଠତା ଅର୍ଥାତ୍ ଲକ୍ଷ୍ମଣ ଭରତଙ୍କର ଅନୁଜ ଥିଲେ ବୋଲି ଅଭିବର୍ଣ୍ଣିତ ଅଛି । ଗ୍ରନ୍ଥ ବିସ୍ତର ଭୟରୁ ସେହି ପ୍ରମାଣ ବାକ୍ୟସବୁ ଉଦାହୃତ କଲୁଁନାହିଁ ବୋଲି ସମସ୍ତ ଅଭିଜ୍ଞ ଜନମାନେ ଜାଣିବା ହେବେ । ଇତି ରାମଭରତଙ୍କର ଜ୍ୟେଷ୍ଠକନିଷ୍ଠତ୍ୱ ବିଚାର ।

## (୩) ଶ୍ରୀ ସୀତାରାମ ଦୁହିଁଙ୍କର ବୟୋବିଚାର

ଏ ସ୍ଥଳେ କେହିକେହି ମୂଳ ଗ୍ରନ୍ଥରେ ଉକ୍ତ କେତେକ ବଚନର ଭିନ୍ନ ଅର୍ଥକୁ ଧରି ଶ୍ରୀ ସୀତାରାମ ଦୁହିଁଙ୍କର ବୟସ ସମ୍ବନ୍ଧେ ଅଯଥାର୍ଥ ଶଙ୍କା କରନ୍ତି । ବର୍ତ୍ତମାନେ ତାହାର ପରିହାର ସିଦ୍ଧାନ୍ତ କରୁଅଛୁଁ ।

ଶ୍ରୀମଦ୍ ରାମାୟଣରେ ବାଲ୍ମୀକି ମହର୍ଷି ସୀତାରାମ ଦୁହିଁଙ୍କର ବିବାହଘଟଣସ୍ଥଳେ ସେ ଦୁହିଁଙ୍କର ବୟୋନିର୍ଣ୍ଣୟ କଣ୍ଠୋକ୍ତିରେ ପ୍ରତିପାଦିତ କରିନାହାନ୍ତି କିମ୍ବା ବଚନାନ୍ତରରେ ମଧ୍ୟ ସୂଚିତ କରିନାହାନ୍ତି । ପ୍ରତ୍ୟୁତ ଅନ୍ୟାନ୍ୟ କେତେକ ଘଟସ୍ଥଳେ ସୁଦ୍ଧା ସେ ଦୁହିଁଙ୍କର ବୟଃ ପ୍ରତିପାଦକ ବଚନମାନଙ୍କର ଐକମତ୍ୟ ଦେଖାଯାଉନାହିଁ । ତେବେ ଏ ବିଷୟ କିପରି ବା ନିଶ୍ଚୟ କରାଯାଇପାରେ ? ଏହିପରି ଆକାଂକ୍ଷା ହୋନ୍ତେ ପ୍ରଥମତଃ ସନ୍ଦେହାର୍ଥ ଅଂଶ ପ୍ରତିପାଦନ କରି ତା ପରେ ନିଶ୍ଚୟାର୍ଥ ପ୍ରକାଶ କରାଯାଉଅଛି ।

ଊନଷୋଡ଼ଶବର୍ଷୋମେ ରାମୋ ରାଜୀବଲୋଚନଃ
ନ ଯୁଦ୍ଧ ଯୋଗ୍ୟତାମସ୍ୟ ପଶ୍ୟାମି ସହରାକ୍ଷସୈଃ ॥

ଇତି ବାଳକାଣ୍ଡେ ୨୦ ସ. ୨ ଶ୍ଲୋ
(ବିଶ୍ୱାମିତ୍ର ପ୍ରତି ଦଶରଥ ଉକ୍ତି)

ଏ ସ୍ଥଳେ ଊନଷୋଡ଼ଶ ବର୍ଷ ବୋଲି କହିବାଦ୍ୱାରା ରାମଚନ୍ଦ୍ର କିଂଚିଦ୍‌ନ୍ୟୂନ ଷୋଡ଼ଶ ବର୍ଷିକ ଅଟନ୍ତି, ଏପରି ଅର୍ଥ ଉପଲବ୍ଧ ହୁଏ ।

ଅପିଚ – ପ୍ରତ୍ୟୁବାଚ ମହାଭାଗଂ ବିଶ୍ୱାମିତ୍ରଂ ମହାମୁନିଂ
ବାଳୋ ଦ୍ୱାଦଶ ବର୍ଷୋଽୟମକୃତାସ୍ତ୍ରଶ୍ଚ ରାଘବଃ ॥

ଇତି ଆରଣ୍ୟକାଣ୍ଡେ ୩୮ ସ. ୬ ଶ୍ଲୋ
(ରାବଣ ପ୍ରତି ମାରଚ ଉକ୍ତି)

ଏ ସ୍ଥଳେ ଦ୍ୱାଦଶ ବର୍ଷ ବୋଲି କହିବାଦ୍ୱାରା ପୂର୍ବୋକ୍ତ କିଂଚିଦ୍‌ନ୍ୟୂନ ଷୋଡ଼ଶବର୍ଷମୂଳକ ବଚନର ଉପପତ୍ତି ବା କିପରି ? ଏହିତ ମହାବିରୋଧ ଘଟୁଅଛି । ଉପପତ୍ତି ହୋଉନାହିଁ, ହେବ ବା କିପରି ?

ଅନ୍ୟଚ୍ଚ – ପତିସଂଯୋଗସୁଲଭଂ ବୟୋଦୃଷ୍ଟ୍ୱାତୁ ମେ ପିତା
ଚିନ୍ତାମଭ୍ୟଗମଦ୍ ଦୀନଃ ବିତ୍ତନାଶାଦି ବା ଧବଃ ।

ଇତି ଅଯୋଧ୍ୟା କାଣ୍ଡେ ୧୧୮ ସ. ୩୪ ଶ୍ଲୋ
(ଅନସୂୟାଙ୍କ ପ୍ରତି ସୀତାଦେବୀଙ୍କ ଉକ୍ତି)

ଏ ସ୍ଥଳେ ମୋତେ ବୟୋବତୀ ଦେଖି ମୋର ପିତା ଜନକ ମହତୀଚିନ୍ତା ପ୍ରାପ୍ତ ହେଲେ । ଏହି ଅର୍ଥର ଅବଗମନଦ୍ୱାରା ବିବାହ ପୂର୍ବରୁ କେବଳ ସୀତାଦେବୀଙ୍କର ପତିସଂଯୋଗଯୋଗ୍ୟ ବୟସ ପ୍ରାପ୍ତ ହୋଇଥିବାର ଜଣାଯାଉଅଛି । ଏପରି ହେଲେ ଇତଃପୂର୍ବେ ଉଦାହୃତ ମାରୀଚ ବଚନର ଅନୁସାରେ ମଧ ବିବାହ କାଳରେ ମଧ ଦ୍ୱାଦଶ ବର୍ଷ ବୟସ୍କ ରାମଙ୍କର ବୟୋବତୀ ସୀତାଙ୍କର ବିବାହ ବା କିପରି ହେଲା ? ଏହି ମହାନ୍ ସନ୍ଦେହ ଆସି ଉପସ୍ଥିତ ହୋଉଅଛି

ଏବଂ

ଉଷିତ୍ୱା ଦ୍ୱାଦଶସମା ଇକ୍ଷ୍ୱାକୂଣାଂ ନିବେଶନେ
ଭୁଞ୍ଜନାମାନୁଷାନ୍ ଭୋଗାନ୍ ସର୍ବକାମସମୃଦ୍ଧିନୀ
ତତସ୍ତ୍ରୟୋଦଶେ ବର୍ଷେ ରାଜା ମନ୍ତ୍ରୟତି ପ୍ରଭୁଃ

ପୁଣି ସେହି ସର୍ଗରେ କେବଳ –

ମମଭର୍ତା ମହାତେଜା ବୟସା ପଞ୍ଚବିଂଶକଃ
ଅଷ୍ଟାଦଶ ହି ବର୍ଷାଣି ମମ ଜନ୍ମନି ଗଣ୍ୟତେ ।।

ଇତି ଆରଣ୍ୟକ କାଣ୍ଡେ ୪୭ ସ. ୪ ଶ୍ଳୋ, ୧୦ ଶ୍ଳୋ
(ରାବଣ ପ୍ରତି ସୀତାଦେବୀଙ୍କ ଉକ୍ତି)

''ଉଷିତ୍ୱା ଦ୍ୱାଦଶସମାଃ – ବାରବର୍ଷ ନିବାସ କଲୁଁ'' – ଏହି ବଚନ ଦ୍ୱାରା ବିବାହାନନ୍ତର ଅଯୋଧାରେ ବାରବର୍ଷ ପର୍ଯ୍ୟନ୍ତ ନିବାସ କଲୁଁ, ଏହି ଅର୍ଥ ପ୍ରତିପାଦିତ ହୋଉଅଛି, ଏବଂ ତ୍ରୟୋଦଶ ବର୍ଷରେ ବନକୁ ଆସିଲୁ, ଏହି ଅର୍ଥ ମଧ ସ୍ପଷ୍ଟ ଜଣାଯାଉଅଛି । ତଥାଚ ''ମମଭର୍ତ୍ତା ବୟସା ପଞ୍ଚବିଂଶକଃ = ମୋର ଭର୍ତ୍ତା ବୟସରେ ପଞ୍ଚବିଂଶକ'', ଏହି ଉକ୍ତିଦ୍ୱାରା ବନଗମନାର୍ଥ ଅଯୋଧାରୁ ନିର୍ଗମନ କଲା ସମୟକୁ ରାମଚନ୍ଦ୍ରଙ୍କର ବୟସ ପଞ୍ଚବିଂଶ ହୋଇଥିବା (ଉଭର ପାଠାନ୍ୱୟରୁ) ଜଣାଯାଉଅଛି । ଏପରି ହେଲେ ଇତଃପୂର୍ବେ ଅନସୂୟାଙ୍କ ପ୍ରତି ସୀତାଦେବୀଙ୍କ ଅଭିହିତ ବଚନର ପର୍ଯ୍ୟାଲୋଚନା କରିଗଲେ ବିବାହ ପୂର୍ବରୁ କେବଳ ବୟୋବତୀ ଥିଲେ ଯେ ସୀତା ସେ ପୁଣି ଦ୍ୱାଦଶ ବର୍ଷ ପର୍ଯ୍ୟନ୍ତ ଅଯୋଧାରେ ନିବାସ କଲାପରେ ମଧ କିପରି ବା ଅଷ୍ଟାଦଶ ବର୍ଷ ମାତ୍ର ବୟସ୍କା ହେଲେ ? ଏହି ଯେ ଘୋର ସନ୍ଦେହ ଆସି ମସ୍ତିଷ୍କକୁ ପରିଘୂର୍ଣ୍ଣିତ କରୁଅଛି ।

ଅପିଚ–

ଦଶସପ୍ତ ଚ ବର୍ଷାଣି ତବଜାତସ୍ୟ ରାଘବ !
ଆସ୍ଥିତାନି ପ୍ରକାଂକ୍ଷନ୍ତ୍ୟା ମୟା ଦୁଃଖ ପରିକ୍ଷୟଂ ।।

ଇତି ଅଯୋଧାକାଣ୍ଡେ ୨୦ ସ. ୪୩ ଶ୍ଳୋ
(ରାମ ପ୍ରତି କୌସଲ୍ୟା)

ଏହି ବଚନର ପର୍ଯ୍ୟାଲୋଚନାଦ୍ୱାରା ବନବାସ ଗମନ ସମୟକୁ ଶ୍ରୀରାମଚନ୍ଦ୍ର ସପ୍ତଦଶବର୍ଷ ବୟସ୍କ ଥିବା ଜଣାଯାଉଅଛି । ତାହା ହେଲେ ପୂର୍ବେ ଉକ୍ତ ଥିବା (ବୟସା ପଞ୍ଚବିଂଶକଃ = ବୟସରେ ପଞ୍ଚିଶି ବର୍ଷ ଅଟେ) ଏହି ବଚନାର୍ଥର ସହିତ ଏହାର ତେଜସ୍ତିମିର ନ୍ୟାୟ ପ୍ରତ୍ୟକ୍ଷ ବିରୋଧ ଘଟୁଅଛି ।

ଏହିପରି ପାଞ୍ଚଗୋଟି ଘଟ୍ଟରେ ପ୍ରତିପାଦିତ ବଚନମାନଙ୍କର ପରସ୍ପର ବୈଷମ୍ୟ ଘଟୁଥିବା ସ୍ଥଳେ ସେଥିରେ ପୁଣି ବଚନମାନଙ୍କର ସାମରସ୍ୟ କିପରି ହେବ ? କିପରି ବା ମହର୍ଷି ବାଲ୍ମୀକିଙ୍କର ହୃଦୟସ୍ଥ ନିଶ୍ଚିତ କଥା ଜଣାଯିବ ? ଏପରି ଆକାଂକ୍ଷା ଯଦି ହୁଏ, ତେବେ ସଂପ୍ରଦାୟ ଅର୍ଥର ଅବିରୋଧରେ ଶ୍ରୀମାନ୍ ବାଲ୍ମୀକିଙ୍କ ହୃଦୟକୁ ପ୍ରକାଶ କରୁଅଛୁଁ ।

## ପ୍ରଥମ ଘଟ୍ଟୀୟ ବଚନର ସନ୍ଦେହ ପରିହାର

ଯଥା –

ଊନଷୋଡ଼ଶ ବର୍ଷ ଇତ୍ୟାଦି ରୂପକ ଶ୍ଳୋକର ଅନୁକ୍ରମକୁ ପୂର୍ବୋକ୍ତ ଘଟ୍ଟସ୍ଥଳେ ଦେଖିନେବେ । ଗ୍ରନ୍ଥ ବିସ୍ତର ଭୟରୁ ପୁନରପି ତାହାହି ଏ ସ୍ଥଳେ ଫେର୍ ଉଦାହୃତ ବା ପ୍ରକାଶିତ କରୁଁ ନାହୁଁ । ଏହିପରି ଉତ୍ତରତ୍ର ମଧ୍ୟ ସେହି ସେହି ଘଟ୍ଟମାନଙ୍କରେ ପୂର୍ବୋଦାହୃତ ଶ୍ଳୋକମାନ ଦେଖିନେବେ ।

ଏ ସ୍ଥଳେ "ଊନଷୋଡ଼ଶ ବର୍ଷୋଽୟଂ" ଏହି ଉକ୍ତିରେ ପରିପୂର୍ଣ୍ଣ ଷୋଡ଼ଶବର୍ଷବୟସ୍କତ୍ୱ ପ୍ରାପ୍ତ ହେଲେ ସମୟେ ଶ୍ରୀରାମଚନ୍ଦ୍ରଙ୍କର ରାକ୍ଷସମାନଙ୍କ ସହିତ ଯୁଦ୍ଧ କରିବାର ସାମର୍ଥ୍ୟ ଜନ୍ମିପାରେ, ବର୍ତ୍ତମାନେ ଏହାଙ୍କର ତେତେ ପରିମିତ ବର୍ଷ ବୟସ ଆହୁରି ହୋଇନାହିଁ, ଏହି ଅର୍ଥ ବୁଝାଇବା ପାଇଁ ମାତ୍ର ଊନଷୋଡ଼ଶବର୍ଷ ବୋଲି କୁହାଯାଇଅଛି ।

"ବାଳୋଦ୍ୱାଦଶବର୍ଷୋଽୟଂ" ଏହି ଦ୍ୱିତୀୟ ଘଟ୍ଟୀୟ ଶ୍ଳୋକର ଅର୍ଥ ପର୍ଯ୍ୟାଲୋଚନାରେ "ଊନଷୋଡ଼ଶ–" ଇତ୍ୟାକାରକ ବାକ୍ୟର ଅର୍ଥରେ ପାଦାଂଶ ଊନଷୋଡ଼ଶ ବର୍ଷ ବୋଲି ଗଣିବାକୁ ହେବ, ଅର୍ଥାତ୍ ଷୋଡ଼ଶର ପାଦାଂଶ ଯେ ଚାରି, ସେହି ଚାରିବର୍ଷ ଊଣା ଷୋଡ଼ଶ ବର୍ଷ, ଫଳତଃ ଦ୍ୱାଦଶବର୍ଷ କେବଳ ଗ୍ରହଣୀୟ । ତଥାଚ କୌଶିକ ମହର୍ଷିଙ୍କ ପ୍ରାର୍ଥନାବସରର ସମୟକୁ ଶ୍ରୀରାମଚନ୍ଦ୍ର ଦ୍ୱାଦଶବର୍ଷବୟସ୍କ ମାତ୍ର ଥିଲେ । ଏହି ଅର୍ଥ ହି ଉପଲବ୍ଧ ହୁଏ । ଅତଏବ "କାକପକ୍ଷଧରଂ ଶୂରଂ" ଇତ୍ୟାଦି ଶ୍ଳୋକରେ ପ୍ରତିପାଦିତ ଶ୍ରୀରାମଙ୍କର ଶୈଶବ ସମୟର ଚିହ୍ନମାନ ଯାହା ଉକ୍ତ ଅଛି ତାହା ଯୁକ୍ତିସଂଗତ ଅଟେ ।

## ଦ୍ୱିତୀୟ ଘଟ୍ଟୀୟ ଶ୍ଳୋକାର୍ଥର ସନ୍ଦେହ ପରିହାର

ଯଥା–

ରାବଣ ପ୍ରତି ମାରୀଚ କର୍ତୃକ ଉଦାହୃତ କଥା ପ୍ରସ୍ତାବରେ ଯାହାକି ଉକ୍ତ ଅଛି –

ପ୍ରତ୍ୟୁବାଚ ମହାଭାଗଂ ବିଶ୍ୱାମିତ୍ରଂ ମହାମୁନିଂ
ବାଲୋଦ୍ୱାଦଶବର୍ଷୋଽୟମକୃତାସ୍ତ୍ରଶ୍ଚ ରାଘବଃ ।।

ଅତ୍ରାପି ଶ୍ରୀ ବାଲ୍ମୀକି ମହର୍ଷିଙ୍କର କଣ୍ଠୋକ୍ତିରେ ଦ୍ୱାଦଶବର୍ଷ ବୋଲି ଉକ୍ତ ଥିବାରୁ ପ୍ରଥମ ଘଟ୍ଟସ୍ଥ "ଊନଷୋଡ଼ଶ" ଏହି ପଦର ଏତାଦୃଶ ଅର୍ଥ ବୋଲି ସେହି ମହର୍ଷିଙ୍କ କର୍ତୃକ ଅଭିହିତ ବୋଲି ଜାଣିବାକୁ ହେବ ଏବଂ ସେହି ମହର୍ଷି ମହୋଦୟ ଏହିଭଳି ପଂକ୍ତିକାଦ୍ୱାରା ସେହି ସେହି ଦୁରୂହ ଘଟ୍ଟମାନଙ୍କରେ ସ୍ୱୀୟ ଅଭିପ୍ରାୟକୁ ପ୍ରକଟୀକୃତ କରିଅଛନ୍ତି ବୋଲି ଅଭିଜ୍ଞ ପଣ୍ଡିତମାନଙ୍କର ଊହନୀୟ ।

## ତୃତୀୟ ଘଟ୍ଟୀୟ ଶ୍ଳୋକାର୍ଥର ସନ୍ଦେହ ପରିହାର

ପତିସଂଯୋଗସୁଲଭଂ ବୟୋଦୃଷ୍ଟ୍ୱା ତୁ ମେ ପିତା
ଚିନ୍ତାମଭ୍ୟଗମଦ୍ ଦୀନଃ ବୀତ୍ତନାଶାଦି ବା ଧନଃ ।।

ଏ ସ୍ଥଳେ ବିବାହର ପୂର୍ବରୁ କେବଳ ସୀତାଦେବୀଙ୍କର ପତିସଂଯୋଗଯୋଗ୍ୟ ବୟଃପ୍ରାପ୍ତତ୍ୱ କିପରି ସଂପ୍ରାପ୍ତ ହେଲା ? ଅପିଚ ତେତେବେଳେ ତାହାଙ୍କର ବୟଃ ପରିମାଣ କେତେ ବା ହୋଇଥିଲା ? ଏପରି ଆକାଂକ୍ଷା ହେଲେ, ଏହାହି କୁହାଯାଉଅଛି ।

ଅଯୋନିଜା ସର୍ବଲୋକେଶ୍ୱରୀ ଲକ୍ଷ୍ମୀ ସ୍ୱରୂପିଣୀ ସୀତାଦେବୀଙ୍କର ଉତ୍ପତ୍ତି ପ୍ରଥମତଃ ଲଙ୍କାନଗରୀର ପଦ୍ମସରୋବରରେ ପଦ୍ମକୋଷ ମଧ୍ୟରେ ଘଟିଥିଲା । ସେ ସ୍ଥଳେ ସେ ସର୍ବାଙ୍ଗସୁନ୍ଦରୀ ଯୌବନବତୀ ବେଦମତୀ ନାମରେ ଅଭିହିତା ଦେବୀଙ୍କୁ ରାବଣ ଦେଖି ଏ କିପରି ଘଟଣା !! ବୋଲି ଅତ୍ୟାଶ୍ଚର୍ଯମନା ହୋଇ ପ୍ରହସ୍ତ ପ୍ରଭୃତି ମନ୍ତ୍ରୀମାନଙ୍କ ସହିତ ବିଚାର କରି ମନୀଷା ବଳରେ ଭବିଷ୍ୟଦର୍ଥପରିଜ୍ଞାତା ମନ୍ତ୍ରୀମାନଙ୍କର ପରାମର୍ଶରେ ଏ ସ୍ଥଳେ ଏହାଙ୍କୁ ରଖିବା ଉଚିତ ନୁହେ ବୋଲି ଅନୁବୋଧିତ ହୋଇ ରାବଣ ସେହି ଦେବୀଙ୍କୁ ଏକ ପେଟିକା ମଧ୍ୟରେ ନିକ୍ଷେପ କରି ସମୁଦ୍ର ମଧ୍ୟରେ ପକାଇ ଦେଲେ । ତଦନନ୍ତର ସେହି ଆଦିଶକ୍ତି ସ୍ୱରୂପିଣୀ ସୀତାଦେବୀ ଦୈବଗତିରେ ଭୂମିର ଅନ୍ତର୍ଜଳ ପ୍ରବାହର ଅନୁଗତିରେ ଆସି ମିଥିଳା ନଗରର ଉପକଣ୍ଠ ଭୂମିରେ ସୁଉପଗତ ହେଲେ । ତତ୍ର ଜନକରାଜା ଯଜ୍ଞଶାଳା ନିମିତ୍ତ ଭୂମିର ସମୀକରଣାର୍ଥ କର୍ଷଣ କଲା ସମୟେ ଲାଙ୍ଗଳ ମୁଖରେ ସୀତାଦେବୀଙ୍କର ଅଭ୍ୟୁତ୍ଥାନ ହେଲା । ସୀତା ବା ଲାଙ୍ଗଳ ପଂକ୍ତିରୁ ଏହାଙ୍କର

ଉତ୍ପତ୍ତି ବୋଲି ସେହିଦିନରୁ ପୁଣି ଏ ସୀତା ନାମରେ ଅଭିହିତା ହେଲେ । ଇତ୍ୟାକାରକ କଥାନକ ବାଲ୍ମୀକି ଚରିତରେ, ସ୍କନ୍ଦ ପୁରାଣରେ ଏବଂ ଅନ୍ୟାନ୍ୟ ବୌର୍ବାସାଦି ରାମାୟଣମାନଙ୍କରେ କରତଳାମଳକପ୍ରାୟ ସ୍ପଷ୍ଟତଃ ଅଭିହିତ ଅଛି । ଅପିଚ ଅଯୋନିଜା ସୀତାଦେବୀଙ୍କର ଜନନ ଅବସ୍ଥାରେ କେବଳ ସର୍ବାଙ୍ଗ ସୌଭାଗ୍ୟ ସ୍ୱତଃସିଦ୍ଧ ଅଟେ । ଏହି ବିଷୟ ଏହି ବଚନମାନଙ୍କ ଦ୍ୱାରା (ବକ୍ଷମାଣ ବଚନମାନଙ୍କଦ୍ୱାରା) ପ୍ରକାଶ ପାଉଅଛି ।

ଜନନ୍ୟ କାଳଠାରୁ ଷଟ୍‌ବର୍ଷ ପର୍ଯ୍ୟନ୍ତ ସୀତାଦେବୀ ଭୂମିଭିତରେ ରାବଣ ନିକ୍ଷିପ୍ତ ପେଟିକାରେ ଅବସ୍ଥିତ ଥିଲେ । ଭୂମି ମଧ୍ୟରୁ ଉତ୍‌ଥାନ ହେଲାପରେ ଯେତେବେଳେ ଛଅବର୍ଷ ଅତୀତ ହେଲା, ତେତେବେଳେ ଜନକ ଶ୍ରୀରାମଙ୍କୁ ସୀତାଙ୍କୁ ପ୍ରଦାନ କଲେ, ସେହି ହେତୁରୁ ଦ୍ୱାଦଶ ବର୍ଷ ବୟସ୍କ ଶ୍ରୀରାମଚନ୍ଦ୍ରଙ୍କର ଜନ୍ମ ପ୍ରଭୃତି ନିତ୍ୟ ଯୌବନଯୁକ୍ତା ଷଟ୍‌ବର୍ଷ ମାତ୍ର ବୟଃ ପ୍ରମାଣଯୁକ୍ତା ସୀତାଦେବୀଙ୍କର ବିବାହ ହୋଇଥିଲା । ତେତେବେଳେ ତାହାଙ୍କର ପତିସଂଯୋଗସୁଲଭତାରେ କୌଣସି ପ୍ରକାର କ୍ଷତି ନାହିଁ ବୋଲି ଜାଣିବାକୁ ହେବ ।

ଏହି ପ୍ରତିପାଦିତ ଅର୍ଥର ପ୍ରମାଣ ବଚନମାନ – ଯଥା –

ବେଦମାତା ବେଦମୟୀ ଗାୟତ୍ରୀ ସର୍ବସାକ୍ଷିଣୀ
ରାମଚନ୍ଦ୍ର ପଦାସକ୍ତଚିତ୍ତା ସୀତେତି ବିଶ୍ରୁତା
ପୂର୍ବଂଜାତା ବେଦମତୀ ଲଙ୍କାୟାଂହି ସରୋବରେ
ନିତ୍ୟ ଯୌବନ ସଂପନ୍ନା ପଦ୍ମକୋଷେଷୁ ସଂସ୍ଥିତା । (ଇତି ବିଷ୍ଣୁଜାମଳେ)

ଅପିଚ–

ଅଥ ଲୋକେଶ୍ୱରୀ ଲକ୍ଷ୍ମୀର୍ଜନକସ୍ୟ ନିବେଶନେ
ଶୁଭେକ୍ଷେତ୍ରେ ହଳୋଦ୍‌ଖାତେ ସମୁଦ୍‌ଭୂତା ସୁମଧ୍ୟମା ।।
ବାଳାର୍କକୋଟିସଂକାଶା ପଦ୍ମପତ୍ରନିଭେକ୍ଷଣା
ଲଙ୍କାୟାଂ ବୈ ସରଃଶ୍ରେଷ୍ଠେ ପଦ୍ମକୋଷେ ପୁରାହ୍ୟଭୁତ୍ ।।
ସର୍ବଲକ୍ଷଣ ସଂପନ୍ନା ନିତ୍ୟ ଯୌବନଶାଳିନୀ
ଧୃତ୍ୱା ବକ୍ଷସୀ ଚାର୍ବଙ୍ଗୀ ମାଳାମମ୍ଳାନପଙ୍କଜାମ୍ ।।
ସୀତାମୁଖେ ସମୁତ୍ପନ୍ନା ସୀତେତି ଭୁବି ବଶ୍ରୁତା
ତାଂ ଦୃଷ୍ଟ୍ୱା ଜନକୋ ରାଜା କନ୍ୟାଂ ବେଦମୟୀଂ ଶୁଭାମ୍ ।।
ଉଦ୍ଧୃତ୍ୱାପତ୍ୟଭାବେନ ପୁପୋଷ ମିଥିଳାଧିପଃ
ଜନକସ୍ୟ କୁଳେ ରମ୍ୟେ ସର୍ବଲୋକେଶ୍ୱରପ୍ରିୟା ।।
ବବୃଦ୍ଧେ ସର୍ବଲୋକସ୍ୟ ରକ୍ଷଣାର୍ଥଂ ସୁରେଶ୍ୱରୀ ।

ଅବଶିଷ୍ଟାଂଶ ତ୍ତ୍ରୈବ ଦ୍ରଷ୍ଟବ୍ୟଃ । ଇତି ପାଦ୍ମେ ।

ଅପିଚ–

ପୁରା ଲକ୍ଷ୍ମୀସ୍ତ୍ୱଭୂଜାତା ପଦ୍ମକୋଷେ ସରୋବରେ
ଲଙ୍କାୟାଂ ଶିବପୂଜାର୍ଥଂ ରାବଣେନ ମହାତ୍ମନା ॥
ପଦ୍ମାନ୍ୟାହର୍ତୁଂ କାମେନ ଦୃଷ୍ଟା ସା ଶୁଭଲକ୍ଷଣା
ତାଂ ଦେବୀଂ ପଦ୍ମମଧ୍ୟସ୍ଥାଂ ଯୌବନସ୍ଥାମଯୋନିଜାମ୍ ॥
ଦୃଷ୍ଟ୍ୱାତୁ କେୟମିତି ବୈ ରାବଣୋ ବିସ୍ମୟାକୁଳଃ
ପ୍ରହସ୍ତାଦିଭିରାଲୋଚ୍ୟ ମନ୍ତ୍ରୀଭିର୍ମନ୍ତ୍ରକୋବିଦୈଃ ॥
ନିକ୍ଷିପ୍ୟ ତାଂ ପେଟିକାୟାଂ ସିନ୍ଧୁମଧ୍ୟେ ବ୍ୟନିକ୍ଷିପତ୍
କୃତାର୍ଥମିବଚାତ୍ମାନଂ ମେନେଽସୌ ରାକ୍ଷାସେଶ୍ୱରଃ ॥
ସମୁଦ୍ରମଧ୍ୟେ ନିକ୍ଷିପ୍ତା ନାମ୍ନା ବେଦବତୀ ସ୍ମୃତା
ପେଟିକାନ୍ତଃସ୍ଥିତାତନ୍ୱୀ ମିଥିଳା ନଗରଂ ଗତା ॥
ନଦୀଜଳ ପ୍ରବାହାଚ୍ଚ ଚିରକାଳଂ ସ୍ଥିତାଦ୍ୟଭୂତ୍
ମିଥିଳାୟାଶ୍ଚୋପକଣ୍ଠଂ ଭୂମେରନ୍ତର୍ଗତା ସତୀ ॥ ଇତ୍ୟାଦି
ଅବଶିଷ୍ଟାଂଶ ସ୍ତତ୍ରୈବ ଦ୍ରଷ୍ଟବ୍ୟଃ । ଗ୍ରନ୍ଥ ବିସ୍ତାର ଭୟାନ୍ନାତ୍ରୋ କୃତଃ ଇତି
ବାଲ୍ମୀକିଚାରିତ୍ରେ ।

## ଚତୁର୍ଥ ଘଟୀୟ ଶ୍ଳୋକାର୍ଥର ସନ୍ଦେହ ପରିହାର

ଯଥା –

ଉଷିତ୍ୱା ଦ୍ୱାଦଶସମା ଇକ୍ଷ୍ୱାକୂଣାଂ ନିବେଶନେ
ଭୁଞ୍ଜାନା ମାନୁଷାନ୍‌ଭୋଗାନ୍ ସର୍ବକାମସମୃଦ୍ଧିନୀ ॥
ତତସ୍ତ୍ରୟୋଦଶେବର୍ଷେ ରାଜା ମନ୍ତ୍ରୟତ ପ୍ରଭୁଃ
X X X X X
ମମଭର୍ତା ମହାତେଜା ବୟସା ପଞ୍ଚବିଂଶକଃ
ଅଷ୍ଟାଦଶହି ବର୍ଷାଣି ମମଜନ୍ମନି ଗଣ୍ୟତେ ॥

ତୃତୀୟ ଘଟୀୟ ଶ୍ଳୋକାର୍ଥର ସନ୍ଦେହ ପରିହାର କେବଳ ଏହି ଘଟୀୟ ଶ୍ଳୋକାର୍ଥର ସନ୍ଦେହ ପରିହାରକ ଅଟେ । ତାହା କିପରି ବୋଲି ଯଦି ପ୍ରଶ୍ନ କରନ୍ତି, ତେବେ କହୁଅଛୁଁ ।

ଶ୍ରୀ ସୀତାଦେବୀଙ୍କର ଭୂତଳରୁ ଜନ୍ମଦିବସଠାରୁ ଷଷ୍ଠବର୍ଷରେ ବିବାହକାର୍ଯ୍ୟ ହେଲା । ବିବାହର ଅନନ୍ତର ଦ୍ୱାଦଶବର୍ଷ ପର୍ଯ୍ୟନ୍ତ ସେ ପୁଣି ଶ୍ୱଶୁର ଗୃହରେ ନିବାସ କଲେ । ସେ ହେତୁରୁ ଜନ୍ମଠାରୁ ବନବାସ ଗମନ କାଳ ପର୍ଯ୍ୟନ୍ତ ବର୍ଷ ଗଣନାରେ

ଅଷ୍ଟାଦଶ ବର୍ଷ ନିଃସନ୍ଦେହ ରୂପେ ହୋଇଅଛି । ତଥାଚଶ୍ରୀରାମଚନ୍ଦ୍ରଙ୍କର ବିବାହ ସମୟକୁ ବୟସଗଣନା ଦ୍ୱାଦଶବର୍ଷ କେବଳ ହୋଇଥିଲା । ତତଃ ପ୍ରଭୃତି ଅଯୋଧ୍ୟାରେ ଦ୍ୱାଦଶବର୍ଷ କେବଳ ସେ ସୁଖରେ ଅତିବାହିତ କରିଥିଲେ । ତା ପରେ ପଞ୍ଚବିଂଶତିତମ ବର୍ଷରେ କେବଳ ରାମଚନ୍ଦ୍ର ପିତାଙ୍କ କର୍ତ୍ତୃକ ବନକୁ ଯାଅ ବୋଲି ଆଜ୍ଞପ୍ତ ହେଲେ । ଏପରି ଅର୍ଥ ଅବଗମନ କରିନେଲେ କୌଣସି ପ୍ରକାର ଦୋଷ ସମ୍ଭବୁ ନାହିଁ, ପ୍ରତ୍ୟୁତ ସୁସମଞ୍ଜସ ବୋଧହୁଏ ।

## ପଞ୍ଚମ ଘଟୀୟ ଶ୍ଳୋକାର୍ଥ ସନ୍ଦେହ ପରିହାର

ଯଥା—

ଦଶସପ୍ତ ଚ ବର୍ଷାଣି ତବ ଜାତସ୍ୟ ରାଘବ !
ଆସ୍ଥିତାନି ପ୍ରକାଂକ୍ଷନ୍ତ୍ୟା ମୟା ଦୁଃଖ ପରିକ୍ଷୟଂ ॥

ଏ ସ୍ଥଳେ କୌସଲ୍ୟା ଦେବୀଙ୍କର ଉପନୟନ ପ୍ରଭୃତିକ- କାଳ କେବଳ ଉଦ୍ଦିଷ୍ଟ ଥିବା ଜଣାଯାଏ । ଜନନ ପ୍ରଭୃତିକ କାଳକୁ ସେ ଉଦ୍ଦେଶ କରିନଥିବା ସ୍ପଷ୍ଟ ଜଣାଯାଉଅଛି । କାରଣ ବ୍ରାହ୍ମଣ, କ୍ଷତ୍ରିୟ ଓ ବୈଶ୍ୟ ଏହି ଦ୍ୱିଜାତି ତ୍ରୟର ନିଖିଳ ବୈଦିକ କର୍ମାନୁଷ୍ଠାନ ଯୋଗ୍ୟତାପରତ୍ୱରେ କେବଳ ଦ୍ୱିଜନାମ ବ୍ୟବହାରର ଅନୁଜ୍ଞା ମନ୍ୱାଦି ଧର୍ମଶାସ୍ତ୍ର ମାନଙ୍କରେ ଦିଆଯାଇଅଛି । ଅର୍ଥାତ୍ ଏହି ସମୟରୁ କେବଳ ଏମାନଙ୍କର ଦ୍ୱିତୀୟ ଜନ୍ମ ବା ପରିଶୁଦ୍ଧ ଜନ୍ମଦିବସର ଗଣନା । କୌସଲ୍ୟା ଦେବୀ ସର୍ବଶାସ୍ତ୍ରାର୍ଥତତ୍ତ୍ୱଭିଜ୍ଞା ଥିବାରୁ ଦ୍ୱିତୀୟ ଜନ୍ମ କେବଳ ଶ୍ରେଷ୍ଠଜନ୍ମ ବୋଲି ହୃଦୟରେ ବିଚାର କରି ଏହି ସମୟକୁ ଶ୍ରୀରାମଚନ୍ଦ୍ରଙ୍କର ଦଶସପ୍ତବର୍ଷ ବୋଲି କହିଅଛନ୍ତି ।

ତଥାହି —

ଗର୍ଭୈକାଦଶେଷ୍ଟୁ ରାଜନ୍ୟଂ — ଏହି ଗୃହ୍ୟସୂତ୍ରୋକ୍ତ ବାକ୍ୟରେ ନିହିତ ବହୁବଚନର ପ୍ରୟୋଗ ଗର୍ଭିତ ଅର୍ଥ ଗର୍ଭ ନବମ, ଗର୍ଭ ଦଶମ ଓ ଗର୍ଭୈକାଦଶବର୍ଷବାଚକ ଅଟେ । ଏହାହି ତାର ଗର୍ଭିତ ଅର୍ଥ । ଏହି ଅର୍ଥକ୍ରମ ଗୃହ୍ୟରତ୍ନନାମକ ବୈଦିକ ଗ୍ରନ୍ଥରେ ସମ୍ୟକ୍ ଅଭିହିତ ହୋଇଅଛି । ଜନନକାଳଠାରୁ (ଉପନୟନ ପର୍ଯ୍ୟନ୍ତକ) ଅଷ୍ଟମ ବର୍ଷଟି ଶ୍ରୀରାମଚନ୍ଦ୍ରଙ୍କର ଗର୍ଭନବମ ବର୍ଷ ଅଟେ । ତତଃ ପ୍ରଭୃତି କୌଶଲ୍ୟାଙ୍କ ଉକ୍ତି ପ୍ରକାରେ ଗଣିତ ସପ୍ତଦଶ ବର୍ଷର ଏବଂ ଜନ୍ମଠାରୁ ଉପନୟନ ପର୍ଯ୍ୟନ୍ତ ଗତହେବା ଆଠବର୍ଷର ସମ୍ମିଶ୍ରିତ ଗଣନା ବା ସାକଲ୍ୟ ଗଣନାରେ ପଞ୍ଚବିଂଶତି ବର୍ଷ ସ୍ପଷ୍ଟତଃ ହୋଉଅଛି । ଏହି ଅର୍ଥର ଅବିରୋଧରେ କେବଳ ରାବଣଙ୍କୁ ସୀତାଦେବୀ କହିଅଛନ୍ତି କି ''ମମଭର୍ତା ମହାତେଜା ବୟସା ପଞ୍ଚବିଂଶକଃ'' — ଏହିପରି ପଞ୍ଚବିଂଶତି ବର୍ଷ କେବଳ ଅଭିହିତ ହୋଇଅଛି, ଅନ୍ୟଥା ପ୍ରତିପାଦିତ ହୋଇ ନ ପାରେ । ଏହା ସର୍ବଥା ଅନବଦ୍ୟ ଅଟେ ।

## ଇତି ସୀତାରାମ ଦୁହିଁଙ୍କର ବୟୋବିଚାର

## (୪) ଅଥ ଚତୁର୍ଦ୍ଦଶ ବର୍ଷ ନିର୍ଣ୍ଣୟ ବିଚାର

ପୂର୍ବୋକ୍ତ କ୍ରମାନୁସାରେ ରାମାୟଣର ଅନେକ ଘଟସ୍ଥାନ ରାମାୟଣ ବ୍ୟାଖ୍ୟା-କର୍ତ୍ତାମାନଙ୍କର ଅଭିପ୍ରାୟ ଏବଂ ରାମାୟଣ ଅର୍ଥର ଉପବୃଂହକ ନାନା ପୁରାଣ ଓ ଆଗମ ମାନଙ୍କ ବଚନାର୍ଥର ଯେ ପର୍ଯ୍ୟାଲୋଚନା ତାହାର ସମ୍ୟକ୍ ବିଚାର ପୂର୍ବକ ପ୍ରତିପାଦିତ କରିବା ହି ଉଚିତ; ତଥାପି ଗ୍ରନ୍ଥ ବିସ୍ତର ଭୟରୁ ଇତଃପର ପ୍ରତିପାଦ୍ୟମାନ ଘଟମାନଙ୍କରେ ପୂର୍ବପକ୍ଷ ସିଦ୍ଧାନ୍ତରେ ତତ୍ ତତ୍ ପ୍ରମାଣ ବଚନମାନ ସଂଗ୍ରହରେ ମାତ୍ର ପ୍ରକାଶ କରାଯିବ ।

ତଥାହି –

ଶ୍ରୀରାମଚନ୍ଦ୍ରଙ୍କର ବନବାସର ପ୍ରାରମ୍ଭ ଜଟାବଲ୍କଳଧାରଣଠାରୁ କିମ୍ବା ଭରଦ୍ୱାଜାଶ୍ରମ ପ୍ରବେଶଠାରୁ ଅଥବା ଚିତ୍ରକୂଟ ଗମନଠାରୁ ନୁହେ ବା ଋଷ୍ୟାଶ୍ରମ ସଂଚାରଠାରୁ ଗ୍ରହଣୀୟ ? ଏହିପରି ସନ୍ଦେହ ହେବା ସ୍ଥଳେ ତାହାର ସିଦ୍ଧାନ୍ତ ପ୍ରକାଶ କରାଯାଉଅଛି ।

ଶ୍ରୀରାମଚନ୍ଦ୍ର ଧର୍ମବଦ୍ଧ ଦଶରଥଙ୍କଦ୍ୱାରା ଆଜ୍ଞପ୍ତ ହୋଇ କୌସଲ୍ୟା ପ୍ରଭୃତି ମାତାମାନଙ୍କୁ ପ୍ରଣାମ କରି ସୀତା ଓ ଲକ୍ଷ୍ମଣଙ୍କ ଦ୍ୱାରା ଅନୁସୃତ ହୋଇ ରାଜଯୋଗ୍ୟ ଭୂଷଣ ପ୍ରଭୃତି ତ୍ୟାଗ କରି ମୁନିବେଶଯୋଗ୍ୟ ଚୀରମାନ ଧାରଣକରି ଚତୁର୍ଦ୍ଦଶବର୍ଷ ବ୍ୟାପୀ ବନବାସର ଦୀକ୍ଷାକୁ ସମାପ୍ତ କରିବା ପାଇଁ ଯେତେବେଳେ ଅଯୋଧ୍ୟା ନଗରରୁ ନିର୍ଗତ ହେଲେ ସେହି ସମୟଟି କେବଳ ଚତୁର୍ଦ୍ଦଶ ବର୍ଷରେ ପ୍ରାଥମିକ । ଜଟାଧାରଣବାସର, କିମ୍ବା ଭରଦ୍ୱାଜାଶ୍ରମ ଗମନତିଥି ଅଥବା ଋଷ୍ୟାଶ୍ରମ ସଂଚାରକାଳ ନୁହେତ ଚିତ୍ରକୂଟ ପ୍ରବେଶ ସମୟ ମଧ୍ୟ ପ୍ରାଥମିକ ନୁହେ । କାରଣ ଜଟାବଲ୍କଳ ଧାରଣ ପ୍ରଭୃତି ଘଟସ୍ଥ କଥା ପ୍ରସ୍ତାବରେ ବନବାସ କାଳର ପ୍ରାଥମିକତ୍ୱ – ପ୍ରତିପାଦକ ବଚନମାନଙ୍କର ଅସ୍ତିତ୍ୱ ଅସମ୍ଭବ କେବଳ; ଅପିଚ ଶ୍ରୀରାମଚନ୍ଦ୍ର ନିଜ କଣ୍ଠୋକ୍ତିରେ ଅଯୋଧ୍ୟାରୁ ନିର୍ଗମନ ଦିବସର କେବଳ ବନବାସର ପ୍ରାଥମିକ ଦିବସତ୍ୱ ନିର୍ଦ୍ଦିଷ୍ଟ କରିଅଛନ୍ତି । ଯଥା –

> ଇୟମଦ୍ୟ ନିଶାପୂର୍ବା ସୌମିତ୍ରେ ପ୍ରହିତାବନଂ
> ବନବାସସ୍ୟ ଭଦ୍ରଂତେ ସନୋତ୍କଣ୍ଠିତୁମର୍ହସି ॥
>
> ଇତି ଅଯୋଧ୍ୟାକାଣ୍ଡେ ୪୬ ସ. ୨ ଶ୍ଳୋ

ତେବେ –

> ଅଦେୟଂ ପ୍ରଥମାରାତ୍ରିଃ ଯାତା ଜନପଦାଦ୍ ବହିଃ
> ଯା ସୁମନ୍ତ୍ରେଣ ରହିତା ତାଂ ନୋତ୍କଣ୍ଠିତୁମର୍ହସି ॥
>
> ଇତି ଅଯୋଧ୍ୟାକାଣ୍ଡେ ୫୩ ସ ୨ ଶ୍ଳୋ

ଏ ସ୍ଥଳେ ପୁଣି ପ୍ରଥମାରାତ୍ରି ବୋଲି କିପରି କଥିତ ଅଛି ? ହଁ, ସତ୍ୟ, ଏହି ପ୍ରଥମାରାତ୍ରି ବନବାସ ପ୍ରାରମ୍ଭ ସମୟର ନୁହେ । ଏହି ବଚନର ଅର୍ଥ ଏହି ଯେ ଗଙ୍ଗାବତରଣାନନ୍ତର ଜନପଦମାନଙ୍କରୁ ଯେ ନିର୍ଗମନ ସମୟ, ତାହାର ପ୍ରତିପାଦକ ଅଟେ । ତା ପରେ ପୁଣି –

ଉଷିତ୍ୱା ତୁ ସୁଖଂତତ୍ର ପୂଜ୍ୟମାନୋ ମହର୍ଷିଭିଃ
ଜଗାମ ଚାଶ୍ରମାଂ ସ୍ତେଷାଂ ପର୍ଯ୍ୟାୟେଣ ତପସ୍ୱିନାଂ ।।
ଯେଷାମୁଷିତବାନ୍ ପୂର୍ବଂ ସକାଶେ ସମହାସ୍ତ୍ରବିଦ୍
କ୍ୱଚିତ୍ ପରିଦଶାନ୍ ମାସାନ୍ ଏକଂ ସମ୍ବତ୍ସରଂ କ୍ୱଚିଦ୍ ।।
କ୍ୱଚିଚ୍ଚ ଚତୁରୋମାସାନ୍ ପଞ୍ଚଷଟ୍ ପରାନ୍ କ୍ୱଚିଦ୍
ଅପରାନଧିକାନ୍ ମାସାପ୍ୟର୍ଦ୍ଧମଧିକଂ କ୍ୱଚିଦ୍ ।।
(ଅପରାତ୍ରଧିକଂ ମାସାଦପ୍ୟର୍ଥମଧିକଂ କ୍ୱଚିଦ୍-ଇତ୍ୟପି ପାଠଃ)
ତ୍ରିନ୍‌ମାସାନଷ୍ଟମାସାଂଶ୍ଚ ରାଘବୋ ନ୍ୟବସଦ୍ ସୁଖଂ
ତତଃ ସମ୍ବତ୍ସରଂ ତସ୍ୟ ମୁନୀନାମାଶ୍ରମେଷୁ ବୈ ।।
ରମତଶ୍ଚାନୁକୂଲ୍ୟେନ ଯଯୁଃ ସମ୍ବତ୍ସରା ଦଶ ।

ଇତି ଆରଣ୍ୟକାଣ୍ଡେ ୧୧ ସ. ୨୪ ଶ୍ଳୋ

ଏ ସ୍ଥଳେ 'ପରିଦଶାନ୍' ଏହି ପଦ ଅର୍ଥ ଏପରି କରିବାକୁ ହେବ । (ପରି = ପରତ୍ର ଦଶଯେଷାଂ ତାନ୍ ପରିଦଶାନ୍ ମାସାନ୍ ଇତି ସର୍ବତ୍ରାପ୍ୟେବମେବାନ୍ୱୟଃ । ତଥାଚ ଏକଂ ସମ୍ବତ୍ସରମିତ୍ୟତ୍ର ଦ୍ୱାବିଂଶତି ମାସାନ୍ ଇତି) ପରି ଅର୍ଥାତ୍ ଉପରିଦଶ ଯାହାର ସେ ପରିଦଶ – ଏପରି ବହୁବ୍ରୀହି ସମାସଦ୍ୱାରା ଉପରିଦଶମାସ ଅଧିକ କରି ସର୍ବତ୍ର ଅନ୍ୱୟାର୍ଥ କରିବାକୁ ହେବ । (ଏକଂ ସମ୍ବତ୍ସଂର-) ଏ ସ୍ଥଳେ ଦ୍ୱାବିଂଶତି ମାସ, (କ୍ୱଚିଚ୍ଚ ଚତୁରୋମାସାନ୍-) ଏ ସ୍ଥଳେ ଉପରିସ୍ଥ ଦଶମାସ ସହିତ ଚତୁର୍ଦଶମାସ । ଏତାଦୃଶ କ୍ରମରେ ଅନ୍ୟାନ୍ୟ ସ୍ଥଳର ଅର୍ଥ କରିବାକୁ ହେବ ।

ଏ ସ୍ଥଳେ ଏହି ବଚନାର୍ଥର ପର୍ଯ୍ୟାଲୋଚନାରେ ଏହାହି ସ୍ୱୀକାର କରିବାକୁ ହେବ ଯେ ରାମଚନ୍ଦ୍ରଙ୍କର କେବଳ ଋଷ୍ୟାଶ୍ରମମାନଙ୍କରେ ସଂଚାରରେ ନିର୍ବର୍ତ୍ତିତକାଳ ଏଥିରେ ପ୍ରତିପାଦିତ ହୋଇଅଛି; କିନ୍ତୁ ଅନ୍ୟପ୍ରକାର ନୁହେ । ବନବାସ ପ୍ରାରମ୍ଭର ସମୟ ସହିତ ଏହି ସମୟର ଆନୁପୂର୍ବିକତା ନାହିଁ । ରାମଚନ୍ଦ୍ର ଋଷ୍ୟାଶ୍ରମମାନଙ୍କରେ ଯେଉଁଦିନଠାରୁ ପ୍ରବେଶ କଲେ ଏହି ସମୟ ନିର୍ଦ୍ଧାରଣ ତଦାରମ୍ଭ-ମୂଳକ କେବଳ ।

ବନବାସ, ଏହି ଶବ୍ଦର ଅର୍ଥ ଏହି ଯେ ପତ୍ତନ ଓ ଗ୍ରାମର ଅନ୍ତର୍ଗତ ପ୍ରଦେଶ ଛଡ଼ା ଅନ୍ୟ ପ୍ରଦେଶରେ ନିବାସ କରିବା । କେବଳ ଅରଣ୍ୟରେ ବାସକରା ଏହାର ଅର୍ଥ

ନୁହେ । ଏପରି ଅର୍ଥ ନ ହେଲେ ଶ୍ରୀ ରାମଚନ୍ଦ୍ରଙ୍କଦ୍ୱାରା ଅଧ୍ୟୁଷିତ କିଷ୍କିନ୍ଧାନଗରର ଉପକଣ୍ଠବର୍ତ୍ତୀ ପ୍ରଦେଶ ନିବାସର ସମାଗତ କାଳ ଓ ଲଙ୍କା ପତ୍ତଣର ନିକଟ ପ୍ରଦେଶ ନିବାସର ସମାଗତ କାଳର ଏବଂ ଶୃଙ୍ଗବେରପୁରୋପକଣ୍ଠ ପ୍ରଦେଶନିବାସର ସମାଗତକାଳର ସାମୁଦାୟିକ ଚତୁର୍ଦ୍ଦଶ ବର୍ଷର ଅନ୍ତଃପାତିତ୍ୱରେ ଭଙ୍ଗ ଘଟିବ ।

ଅତଏବ ଏହି ବନବାସ ବ୍ରତରେ ପତ୍ତଣପ୍ରଦେଶ କେବଳ ନିଷିଦ୍ଧ, ଏହା ଶ୍ରୀରାମଚନ୍ଦ୍ର ହୃଦୟରେ ନିଶ୍ଚିତ କରିଥିବାରୁ କିଷ୍କିନ୍ଧା ନଗର ପ୍ରବେଶ ଓ ଲଙ୍କାନଗର ପ୍ରବେଶ ମଧ୍ୟ ସ୍ୱୀକାର କଲେ ନାହିଁ । ତତ୍ ତତ୍ ଉପକଣ୍ଠ ପ୍ରଦେଶମାନଙ୍କରେ ମାତ୍ର ନିବାସ କରିବାପାଇଁ ଅଭିଳାଷ କଲେ । ତଥାଚ ସୁଗ୍ରୀବ ବିଭୀଷଣାଦିମାନେ ମଧ୍ୟ ବହୁ ଯତ୍ନ କରି ସୁଦ୍ଧା ସ୍ୱସ୍ୱ ନଗରକୁ ଶ୍ରୀରାମଚନ୍ଦ୍ରଙ୍କୁ ଆଣିବାରେ ଅସମର୍ଥ ହେଲେ । ଏହିସବୁ ବିଚାରଦ୍ୱାରା ଠିକ୍ ପ୍ରତିପନ୍ନ ହୋଉଅଛି ଯେ ଋଷିବେଶଧାରୀ ଶ୍ରୀରାମଚନ୍ଦ୍ର ସୀତାଙ୍କ ଆଜ୍ଞାରେ ଅନୁବର୍ତ୍ତମାନ ହୋଇ ଦଶରଥଙ୍କ ଆଜ୍ଞାର ଦିବସଠାରୁ ଚତୁର୍ଦ୍ଦଶବର୍ଷ ପର୍ଯ୍ୟନ୍ତ ପିତୃବାକ୍ୟ ପରିପାଳନରୂପ ବ୍ରତକୁ ଅନୁଷ୍ଠିତ କଲେ । ଏହି ଅର୍ଥ ସର୍ବଥା ସମଂଜସ । ଏହି ପ୍ରତିପାଦିତ ଅର୍ଥର ପ୍ରମାଣ ବଚନମାନ ଗ୍ରନ୍ଥବିସ୍ତର ଭୟରୁ ଏ ସ୍ଥଳେ ପ୍ରକାଶିତ କଲୁଁ ନାହିଁ ।

## ଚତୁର୍ଦ୍ଦଶ ବର୍ଷାନ୍ତର୍ଗତ କାଳ ନିର୍ଣ୍ଣୟ ବିଚାର

ପିତୃବାକ୍ୟ ପରିପାଳନରେ ଏକାଗ୍ରମନା ରାମଚନ୍ଦ୍ରଙ୍କର ବନବାସ ଅବସ୍ଥାରେ ତତ୍ ପ୍ରଦେଶ ଗମନ, ସୁହୃଦ୍ ଦର୍ଶନ, ସୁମନ୍ତାଗମନ, ଦଶରଥ ମରଣ, ଭରତାଗମନ, ସୀତା ହରଣ, ବାଳି ସଂହରଣ ପ୍ରଭୃତି ବିଷୟ କେଉଁ କେଉଁ ସମୟରେ ଘଟିଥିଲା ? ଏପରି ସନ୍ଦେହ ପ୍ରାପ୍ତ ହେଲେ ସର୍ବଗ୍ରନ୍ଥସମରସତାରେ, ସଂଗ୍ରହରେ ସିଦ୍ଧାନ୍ତ ନିଷ୍କୟ କରାଯାଉଅଛି ।

ତଥାହି –

ଚୈତ୍ରମାସ ଶୁକ୍ଳପକ୍ଷ ପଞ୍ଚମୀ ଦିନରେ ବନବାସ ନିମନ୍ତେ ଅଯୋଧ୍ୟାରୁ ନିର୍ଗତ ରାମଚନ୍ଦ୍ରଙ୍କର ପ୍ରଥମ ରାତିରେ ତମସା ନଦୀ ତୀରରେ ନିବାସ ହେଲା ।

ଦ୍ୱିତୀୟ ରାତ୍ରିରେ ଗଙ୍ଗାତୀରରେ ସେ ନିବାସ କଲେ । ସେ ସ୍ଥଳେ କେବଳ ରାମଙ୍କ ଦର୍ଶନାର୍ଥ ଗୁହ ଆସି ଉପଗତ ହେଲେ ।

ତୃତୀୟ ରାତ୍ରିରେ ଗଙ୍ଗାଙ୍କ ଦକ୍ଷିଣକୂଳସ୍ଥ ବନସ୍ପତି ମୂଳେ ରହିଲେ ।

ଚତୁର୍ଥ ରାତ୍ରିରେ ପ୍ରୟାଗରେ ରହିଲେ । ସେ ସ୍ଥଳେ ଭରଦ୍ୱାଜଙ୍କୁ ଦର୍ଶନ କଲେ ।

ପଞ୍ଚମ ରାତ୍ରିରେ ଯମୁନା ତୀରରେ ରହିଲେ । ସେଠାରେ ସୁମନ୍ତ୍ର ଷଷ୍ଠ ଦିବସରେ ରାମଚନ୍ଦ୍ର ଚିତ୍ରକୂଟକୁ ବାହାରିଯିବେ, ଏହି ବୃତ୍ତାନ୍ତ ଜାଣି ସାୟାହ୍ନ ସମୟରେ ଅଯୋଧ୍ୟାରେ ଉପଗତ ହେଲେ । ସେହି ଦିନର କେବଳ ଅର୍ଦ୍ଧରାତ୍ରି ସମୟରେ ଦଶରଥ ସ୍ୱର୍ଗାରୋହଣ କଲେ ।

ତାପରେ ସପ୍ତମ ଦିବସରେ କୌଶଲ୍ୟା ପ୍ରଭୃତିଙ୍କର ବିଳାପ ।

ତାପରେ ଅଷ୍ଟମ ଦିବସରେ ଗିରିବ୍ରଜ ପତ୍ତନସ୍ଥ ଭରତଙ୍କ ଆନୟନାର୍ଥ ବଶିଷ୍ଠ ସିଦ୍ଧାର୍ଥ ପ୍ରଭୃତି ଦୂତମାନଙ୍କୁ ପଠାଇଲେ । ସେ ଦୂତମାନେ ତ୍ରିରାତ୍ରି ପର୍ଯ୍ୟନ୍ତ ମାର୍ଗରେ ଅତିବାହିତ କରି ଚତୁର୍ଥ ଦିବସର ରାତ୍ରିରେ ଗିରିବ୍ରଜ ନଗରରେ ଉପସ୍ଥିତ ହେଲେ ।

ତାପରଦିନ ଅର୍ଥାତ୍ ଦୂତଯାତ୍ରାର ପଞ୍ଚମ ଦିବସରେ ଦୂତମାନେ ଭରତଙ୍କୁ ଆହ୍ୱାନ କଲେ । ଅଯୋଧ୍ୟା ପ୍ରତି ଭରତଙ୍କ ଆଗମନରେ ସାତରାତ୍ରି ଅତୀତ ହେଲା ।

ତାପରେ ଭରତ ଶ୍ରବଣ ଦିନଠାରୁ ଦ୍ୱାଦଶ ଦିବସରେ ଏବଂ ତ୍ରୟୋଦଶ ଦିବସରେ ଯଥାବିଧି ଶ୍ରାଦ୍ଧକର୍ମମାନ କଲେ ।

ସେହି ଚତୁର୍ଦ୍ଦଶ ଦିବସରେ ମନ୍ତ୍ରୀ ପ୍ରଭୃତି ଭରତଙ୍କୁ ରାଜ୍ୟରେ ଅଭିଷିକ୍ତ ହେବାପାଇଁ ଜଣାଇଲେ । ସେଦିନ କେବଳ ଭରତ ମାର୍ଗ ସମୀକରଣାର୍ଥ ଶିଳ୍ପୀ ପ୍ରଭୃତି ମାର୍ଗ ପରିଶୋଧକମାନଙ୍କୁ ପଠାଇଲେ । ମାର୍ଗ ସମୀକରଣରେ ଚାରିଦିନ ଅତିବାହିତ ହେଲା ।

ତାପରେ ଭରତ ଶ୍ରୀରାମଚନ୍ଦ୍ରଙ୍କ ସମୀପକୁ ତିନିଦିନରେ ଯାଇ ପ୍ରାପ୍ତ ହେଲେ ।

ତାପରେ ଭରତ ଶ୍ରୀରାମଙ୍କ ଛାମୁରେ ତିନିଦିବସ ଅବସ୍ଥାନ କଲେ ।

| | |
|---|---|
| ତାପରେ ଭରତ ଶ୍ରୀରାମଙ୍କ ଛାମୁରୁ ଆସି ଅଯୋଧ୍ୟାରେ | ୧୮ |
| ତିନିଦିନରେ ପ୍ରବେଶିଲେ । | ୧୪ |
| ଶ୍ରୀରାମଚନ୍ଦ୍ରଙ୍କର ଅଯୋଧ୍ୟାରୁ ନିର୍ଗମନ ସମୟୁ ଆରମ୍ଭ କରି | ୩୨ |
| ଭରତଙ୍କ ପୁନରପି ଅଯୋଧ୍ୟା ପ୍ରତ୍ୟାଗମନ ପର୍ଯ୍ୟନ୍ତକ | ୪ |
| ସାମୁଦାୟିକ ଦିବସ ଗଣନା କଲେ ପଞ୍ଚଚତ୍ୱାରିଂଶ ୪୫ | ୩୬ |
| ଦିବସ ଅତିବାହିତ ହୋଇଥିବା ଜଣାଯାଏ । | ୯ |
| | ୪୫ |

| | |
|---|---|
| ଦୂତପ୍ରେରଣ ଦିବସ ---------------------------------- | ୮ |
| ଦୂତମାନେ ଗିରିବ୍ରଜରେ ପ୍ରବେଶିବାରେ ଅଷ୍ଟମଦିବସ ଛଡ଼ା | |
| ଦିବସ ସଂଖ୍ୟା ---------------------------------- | ୪ |
| ଭରତ ଅଯୋଧ୍ୟାକୁ ଆସିବାରେ ---------------------------------- | ୭ |
| (ଦୂତଗମନରେ ଅଷ୍ଟମଦିବସ ସହ ଚାରିଦିନ ହୋଇଥିଲା) | ୧୯ |

ଭରତ ଦଶରଥଙ୍କ ମରଣର ୧୯ ଦିବସରେ ଅଯୋଧ୍ୟାକୁ
ଆସି ଦଶରଥଙ୍କ ମରଣ ସମାଚାର ଶୁଣିଲେ । ------------------ ୧୯
ଊନବିଂଶ ଦିନଠାରୁ ୧୪ଦିନ ଅନ୍ତ୍ୟେଷ୍ଟି କଲେ ------------------ ୧୩

୩୨

ମାର୍ଗ ସମୀକରଣରେ ୪ ଦିନ -------------------------------- ୪

୩୬

ଭରତ ରାମଙ୍କଠାକୁ ଯିବାରେ ୩ ଦିନ, ସେଠିଁ ରହିବାରେ
ତିନି ଦିନ, ଫେର୍ ପ୍ରତ୍ୟାବୃତ୍ତିରେ ତିନିଦିନ ହୋଇଥିଲା --------------- ୯

୪୫

ଏହିପରି ଦଶରଥଙ୍କ ମରଣଠାରୁ ଭରତ ଆସି ଅନ୍ତ୍ୟେଷ୍ଟି କରି ରାମଙ୍କୁ ଡାକିଯାଇ ଫେର୍ ବାହୁଡ଼ି ଆସିବା ପର୍ଯ୍ୟନ୍ତ ସମଗ୍ର ଦିନ ଗଣନା ପଞ୍ଚଚତ୍ୱାରିଂଶ ହୋଇଥିଲା ।

(୨) ତାପରେ ରାମଚନ୍ଦ୍ର ଚିତ୍ରକୂଟ ପର୍ବତରେ ଅର୍ଦ୍ଧାଧିକ -------ବ ୦.୧୦.୧୫
ଦଶମାସ ନିବାସ କରିଥିଲେ । (–)
ପୂର୍ବୋକ୍ତ ପଞ୍ଚଚତ୍ୱାରିଂଶ ଦିନ ସହ ସମଗ୍ର ଏକବର୍ଷ ହେଲା ----- ୧.୦.୦

(୩) ତଦନନ୍ତର ଚିତ୍ରକୂଟ ତ୍ୟାଗକରି ଦଣ୍ଡକାରଣ୍ୟ ପ୍ରବେଶଠାରୁ
ଋଷିମାନଙ୍କର ଆଶ୍ରମମାନଙ୍କରେ ସଂଚାର କରିବାରେ
ଶ୍ରୀରାମଚନ୍ଦ୍ରଙ୍କର ବନବାସରୁ ଦଶବର୍ଷ ଅତୀତ ହେଲା ------ ୧୦.୦.୦

(୪) ତାପରେ ଶ୍ରୀରାମ ପଞ୍ଚବଟୀରେ ପ୍ରବେଶ କରି ସେଠାରେ ଦୁଇବର୍ଷ
ଅବସ୍ଥାନ କରିଥିଲେ-------------------------------- ୨.୦.୦
ଏ ପର୍ଯ୍ୟନ୍ତ ସମସ୍ତ ସମୟ ଗଣନାରେ ତ୍ରୟୋଦଶ ବର୍ଷ ହେଲା -- ୧୩.୦.୦

ତାପରେ ଚତୁର୍ଦ୍ଦଶ ବର୍ଷରେ ଚୈତ୍ରମାସରେ କୃଷ୍ଣପକ୍ଷରେ ଅଷ୍ଟମୀ ଦିବସରେ ମଧ୍ୟାହ୍ନ ବେଳାରେ ବିନ୍ଦାଖ୍ୟ ମୁହୂର୍ତ୍ତରେ ରାବଣ ସୀତାଙ୍କୁ ବଳେ ଲଙ୍କାକୁ ଘେନିଗଲେ ।

(୫) ସେହି ଜ୍ୟେଷ୍ଠ ମାସରେ ପୌର୍ଣ୍ଣମୀ ଦିନ ବାଳିବଧ ନିଷ୍ପନ୍ନ ହେଲା ।

(୬) ତତଃପର କାର୍ତ୍ତିକ ମାସାନ୍ତରେ ସୁଗ୍ରୀବ ପ୍ରତି ଲକ୍ଷ୍ମଣଙ୍କର ଅତ୍ୟାଗ୍ରହ ପ୍ରଦର୍ଶନ ବ୍ୟାପାର ହେଲା ।

(୭) ମାର୍ଗଶୀର୍ଷ ମାସରେ ନିଖିଳବାନର ସେନାସଂଗ୍ରହ ନିଷ୍ପନ୍ନ ହେଲା ।

(୮) ସେହି ମାର୍ଗଶୀର ମାସରେ କେବଳ ପୁଷ୍ୟ ମାସାନ୍ତ ପର୍ଯ୍ୟନ୍ତ ଏକମାସ ଅବଧି କରି ସୀତାଙ୍କ ଅନ୍ୱେଷଣାର୍ଥ ଚାରିଦିଗକୁ ବାନରଙ୍କୁ ପଠାଇବାର ହେଲା ।

(୯) ତାପରେ ଦକ୍ଷିଣ ଦିଗକୁ ପ୍ରେଷିତ ବାନରମାନଙ୍କ ମଧ୍ୟରୁ ହନୂମାନ୍ ଫାଲ୍‌ଗୁନିକ ଶୁଦ୍ଧ ପଞ୍ଚମୀ ଦିନ ସମୁଦ୍ର ଲଙ୍ଘନ କରି ସେହି ରାତ୍ରିରେ କେବଳ ସୀତାଙ୍କୁ ଦର୍ଶନ କଲେ । ତାର ପରଦିନ ଷଷ୍ଠୀ ଦିବସରେ ହନୂମାନ୍ ଅକ୍ଷାଦି ରାକ୍ଷସଙ୍କୁ ନିହତ କରି ରାବଣଙ୍କୁ ଦେଖି ଲଙ୍କାପୁରୀକୁ ପୋଡ଼ି ପୁନରପି ସୀତାଙ୍କୁ ଦର୍ଶନ କରି ଲଙ୍କାରୁ ନିର୍ଗତ ହେଲେ ।

(୧୦) ତାପରେ ସପ୍ତମୀ ଦିନ ଉତ୍ତର ଫାଲଗୁନି ନକ୍ଷତ୍ର ବେଳାରେ ବିଜୟ ମୁହୂର୍ତ୍ତରେ କିମ୍ୱା ତାର ଅବ୍ୟବହିତ ପରେ ବାନରବାହିନୀର ପ୍ରସ୍ଥାନ ହେଲା । ସେହି ଦିନର ରାତିରେ କେବଳ ସମୁଦ୍ରବେଳାରେ ବାନର ସେନା ନିବେଶ ହେଲା ।

(୧୧) ତାପର ଦିବସ ଅଷ୍ଟମୀଦିନ ସୂର୍ଯ୍ୟଉଦୟ କାଳରେ ଶ୍ରୀରାମଙ୍କ ଦର୍ଶନାର୍ଥ ଚାରିଜଣ ଅନୁଚରଙ୍କ ସହ ବିଭୀଷଣ ଆସିଲେ ।

(୧୨) ସେହି ଦିନଠାରୁ ତିନିଦିନ ପର୍ଯ୍ୟନ୍ତ ଶ୍ରୀରାମ ସମୁଦ୍ରତୀରରେ ପ୍ରାୟୋପବେଶରେ ରହିଲେ ।

(୧୩) ତାପରେ ଏକାଦଶୀ ଦିନଠାରୁ ପାଞ୍ଚଦିନ ପର୍ଯ୍ୟନ୍ତ ନଳଙ୍କ ଦ୍ୱାରା ସମୁଦ୍ରତରଣାର୍ଥ ସେତୁ ନିର୍ମାଣ କରାଗଲା ।

(୧୪) ତାର ସେହି ପଞ୍ଚମ ଦିବସରେ ପୂର୍ଣ୍ଣିମାରେ ସାୟଂକାଳ ସମୟରେ ଶ୍ରୀରାମାଦିଙ୍କର ସୁବେଳାରୋହଣ ହେଲା । ସେହି ରାତ୍ରିରେ କେବଳ ସେହିଠାରେ ସେନାନିବେଶ କରଗଲା ।

(୧୫) ତାର ପରଦିବସ ଚୈତ୍ର କୃଷ୍ଣପକ୍ଷ ପ୍ରଥମ ଦିବସରେ ଯୁଦ୍ଧ ଆରମ୍ଭ ହେଲା । ସେହି ରାତ୍ରିରେ କେବଳ ନାଗପାଶ ବନ୍ଧନ ଏବଂ ମୋକ୍ଷଣ କାର୍ଯ୍ୟ ଘଟିଥିଲା ।

(୧୬) ଦ୍ୱିତୀୟାଦିନ (ପ୍ରଧାନବୀର) ଧୂମ୍ରାକ୍ଷବଧ ହେଲା ।

(୧୭) ତୃତୀୟା ଦିନ (ପ୍ରଧାନବୀର) ବଜ୍ରଦଂଷ୍ଟ୍ରର ବଧ ହେଲା ।

(୧୮) ଚତୁର୍ଥୀଦିନ (ପ୍ରଧାନବୀର) ଅକଂପନର ବଧ ହେଲା ।

(୧୯) ପଞ୍ଚମୀ ଦିନ (ପ୍ରଧାନବୀର) ପ୍ରହସ୍ତର ବଧ ହେଲା ।

(୨୦) ଷଷ୍ଠୀଦିନ ଶ୍ରୀରାମ ରାବଣଙ୍କର ମୁକୁଟ ଭଂଗ କଲେ ।

(୨୧) ସପ୍ତମୀ ଦିନ କୁମ୍ଭକର୍ଣ୍ଣ ବଧ ହେଲା ।

(୨୨) ଅଷ୍ଟମୀଦିନ ଦେବାଂତକ, ନରାଂତକ, ତ୍ରିଶୀର , ଅତିକାୟାଦିଙ୍କ ବଧ ହେଲା ।

(୨୩) ନବମୀ ଦିନ ଇନ୍ଦ୍ରଜିତ ବ୍ରହ୍ମାସ୍ତ୍ର ପ୍ରୟୋଗ କଲେ । ସେହି ରାତ୍ରିରେ କେବଳ ବ୍ରହ୍ମାସ୍ତ୍ରବନ୍ଧ ବିମୁକ୍ତି ହେଲା ।

(୨୪) ଦଶମୀ ଦିନ ମକରାକ୍ଷ, କୁମ୍ଭ, ନିକୁମ୍ଭାଦିଙ୍କ ବଧ ହେଲା ।

(୨୫) ଏକାଦଶୀଠାରୁ ତିନିରାତି ପର୍ଯ୍ୟନ୍ତ ଫେର୍ ଇନ୍ଦ୍ରଜିତ ଯୁଦ୍ଧ କଲେ ।

(୨୬) ତ୍ରୟୋଦଶୀ ଦିନ ଲକ୍ଷ୍ମଣ ଇନ୍ଦ୍ରଜିତକୁ ନିହତ କଲେ ।

(୨୭) ଚତୁର୍ଦ୍ଦଶୀ ଦିନ ଶ୍ରୀରାମ ରାବଣଙ୍କର ମୂଳବଳ ସଂହାର କଲେ ।

(୨୮) ଅମାବାସ୍ୟା ଦିନ ଶ୍ରୀରାମ ଓ ରାବଣଙ୍କର ଅହୋରାତ୍ର ଯୁଦ୍ଧ ହେଲା ।

(୨୯) ତାର ପରଦିବସ ଅବଶିଷ୍ଟ ଅମାବାସ୍ୟାରେ ଶ୍ରୀରାମଚନ୍ଦ୍ର ରାବଣକୁ ନିହତ କଲେ । ସେହି ଚୈତ୍ର ଶୁଦ୍ଧ ପ୍ରଥମ ଦିବସରେ କେବଳ ରାବଣର ସଂସ୍କାର ହେଲା ।

(୩୦) ଚୈତ୍ର ଶୁଦ୍ଧ ଦ୍ୱିତୀୟାଦିନ ବିଭୀଷଣଙ୍କର ରାଜ୍ୟାଭିଷେକ ହେଲା ।

(୩୧) ତୃତୀୟାଦିନ ସୀତାଦେବୀଙ୍କର ସମାଗମ ହେଲା । ସେହିଦିନ କେବଳ ସୀତାଦେବୀଙ୍କର ଅଗ୍ନିପ୍ରବେଶାଦି ହୋଇଥିଲା ।

(୩୨) ଚତୁର୍ଥୀଦିନ ଶ୍ରୀରାମଙ୍କର ଅଯୋଧ୍ୟା ପ୍ରତି ପ୍ରୟାଣ ହେଲା । ସେହିଦିନ କେବଳ ଶ୍ରୀରାମଚନ୍ଦ୍ର ସମୁଦ୍ରତୀରରେ ଶିବଲିଙ୍ଗଙ୍କ ପ୍ରତିଷ୍ଠା କଲେ ।

(୩୩) ପଞ୍ଚମୀଦିନ ଶ୍ରୀରାମାଦି ଭରଦ୍ୱାଜଙ୍କ ଆଶ୍ରମରେ ପ୍ରାପ୍ତ ହେଲେ । ସେହିଦିନ ଅର୍ଥାତ୍ ଚୈତ୍ର ଶୁକ୍ଳ ପଞ୍ଚମୀ ଦିନ ବନବାସର ଚତୁର୍ଦ୍ଦଶ ବର୍ଷର ସମାପ୍ତି ହେଲା ।

(୩୪) ଷଷ୍ଠୀଦିନ ଶ୍ରୀରାମ ନନ୍ଦିଗ୍ରାମରେ ଉପଗତ ହୋଇ ଜଟା ବିଶୋଧନ କରି ଅଯୋଧ୍ୟା ନଗରରେ ପ୍ରାପ୍ତ ହେଲେ ।

(୩୫) ସପ୍ତମୀ ଦିନ ପୁଷ୍ୟ ନକ୍ଷତ୍ରରେ ଶ୍ରୀରାମଚନ୍ଦ୍ରଙ୍କର ପଟ୍ଟାଭିଷେକ ମହୋତ୍ସବ ହେଲା ।

ଏହିପରି କ୍ରମରେ ବନବାସର ଚତୁର୍ଦ୍ଦଶ ବର୍ଷର ଅନ୍ତର୍ଗତ କାଳ ନିର୍ଣ୍ଣୟର କ୍ରମକୁ ଜାଣିବାକୁ ହେବ । ଏ ସ୍ଥଳେ ପ୍ରତିପାଦିତ କାଳବିଶେଷର ସଯୁକ୍ତିକ ପ୍ରମାଣ ବଚନମାନ ଯଥାକ୍ରମେ ସଂଗ୍ରହରେ ପ୍ରକାଶ କରାଯାଉଅଛି ।

(କ) ତତସ୍ତୁ ତମସାତୀରଂ ରମ୍ୟମାଶ୍ରିତ୍ୟ ରାଘବଃ
ସୀତାମୁଦ୍‌ବିକ୍ଷ୍ୟ ସୌମିତ୍ରିଂ ଇଦଂ ବଚନମବ୍ରବୀତ୍ ।।
ଇୟମଦ୍ୟ ନିଶାପୂର୍ବା ସୌମିତ୍ରେ ପ୍ରହିତାବନଂ
ବନବାସସ୍ୟ ଭଦ୍ରଂତେ ସନୋତ୍କଣ୍ଠିତୁମର୍ହସି ।।

ଇତି ଅଯୋଧ୍ୟାକାଣ୍ଡେ ୪୬ ସ, ୧-୨ ଶ୍ଳୋ

ଏହି ଶ୍ଳୋକଦ୍ୱୟର ଅର୍ଥ ପର୍ଯ୍ୟାଲୋଚନାଦ୍ୱାରା ପ୍ରଥମଦିନର ରାତ୍ରିରେ ତମସାନଦୀ ତୀରରେ ନିବାସ କରିଥିବା ଜଣାଯାଏ ।

(ଖ) ଜଳମେବାଦଦେ ଭୋଜ୍ୟଂ ଲକ୍ଷ୍ମଣେନହୃତଂ ସ୍ୱୟଂ ॥
ତସ୍ୟ ଭୂମୌ ଶୟାନସ୍ୟ ପାଦୌ ପ୍ରକ୍ଷାଲ୍ୟ ଲକ୍ଷ୍ମଣଃ
ସଭାର୍ଯ୍ୟସ୍ୟ ତତୋଽଭେତ୍ୟ ତସ୍ଥୌ ବୃକ୍ଷମୁପାସ୍ଥିତଃ ॥
ଗୁହୋଽପି ସହସୂତେନ ସୌମିତ୍ରିମନୁଭାଷୟନ୍
ଅନ୍ୱଜାଗ୍ରଦ୍ ତତୋରାମମପ୍ରମତ୍ତ ଧନୁର୍ଦ୍ଧରଃ ॥
ତଥା ଶୟାନସ୍ୟ ତତୋଽସ୍ୟ ଧୀମତଃ
ଯଶସ୍ୱୀନୋ ଦାଶରଥେର୍ମହାତ୍ମନଃ
ଅଦୃଷ୍ଟ ଦୁଃଖସ୍ୟ ସୁଖୋଚିତସ୍ୟ ସା
ତଦା ବ୍ୟତୀୟାୟ ଚିରେଣ ଶର୍ବରୀ ॥

ଇତି ଅଯୋଧ୍ୟାକାଣ୍ଡେ ୫୦ ସ. ୪୯-୫୧ ଶ୍ଳୋ

ଏ ସ୍ଥଳେ ପୂର୍ବୋକ୍ତ ରୀତି ଅନୁସାରେ ଗଙ୍ଗାତୀରରେ ଦ୍ୱିତୀୟ ରାତ୍ରିରେ ନିବାସ ଅଭିହିତ ହୋଇଅଛି ।

(ଗ) ସ ତଂ ବୃକ୍ଷଂ ସମାସାଦ୍ୟ ସନ୍ଧ୍ୟାମନ୍ୱାସ୍ୟ ପଶ୍ଚିମାଂ
ରାମୋ ରମୟତାଂ ଶ୍ରେଷ୍ଠ ଇତିହୋବାଚ ଲକ୍ଷ୍ମଣଂ ॥
ଅଦ୍ୟେୟଂ ପ୍ରଥମାରାତ୍ରିଯାତା ଜନପଦାଦ୍ ବହିଃ
ଯା ସୁମନ୍ତ୍ରେଣରହିତା ତାଂ ନୋତ୍କଣ୍ଠିତୁମର୍ହସି ॥

ଇତି ଅଯୋଧ୍ୟାକାଣ୍ଡେ ୫୩ ସ. ୧, ୨ ଶ୍ଳୋ

ଏହି ବଚନର ଅର୍ଥ ପର୍ଯ୍ୟାଲୋଚନାରେ ଜଣାଯାଏ ଗଙ୍ଗାଙ୍କ ଦକ୍ଷିଣକୂଳସ୍ଥ ବନସ୍ପତି ମୂଳେ ତୃତୀୟ ରାତିରେ ନିବାସ ଅଭିହିତ ଅଛି ।

(ଘ) ତସ୍ୟ ପ୍ରୟାଗେ ରାମସ୍ୟ ତଂ ମହର୍ଷିମୁପେୟୁଷଃ
ପ୍ରସନ୍ନାରଜନୀପୁଣ୍ୟା ଚିତ୍ରାଃ କଥୟତଃ କଥାଃ ॥
ସୀତାତୃତୀୟଃ କାକୁସ୍ଥ ପରିଶ୍ରାନ୍ତ ସୁଖୋଚିତଃ
ଭରଦ୍ୱାଜାଶ୍ରମେ ରମ୍ୟେ ତାଂ ରାତ୍ରିମବସଦ୍ ସୁଖମ୍ ॥

ଇତି ଅଯୋଧ୍ୟାକାଣ୍ଡେ ୫୪ ସ. ୨୯-୪୪ ଶ୍ଳୋ

ଏହି ବଚନଦ୍ୱୟ ଦ୍ୱାରା ଚତୁର୍ଥ ରାତ୍ରିରେ ପ୍ରୟାଗରେ ନିବାସ ଅଭିହିତ ହୋଇଥିବା ଜଣାଯାଏ ।

(ଙ) ବହୂନ୍ ମେଧ୍ୟାନ୍ ମୃଗାନ୍ ହତ୍ୱା ଚେରତୁର୍ଯସୁନା ବନେ ।।
ବିହୃତ୍ୟ ତେ ବର୍ହିଣପୂଗନାଦିତେ ଶୁଭେବନେ ବାନରବାରଣାୟତେ
ସମଂ ନଦୀବପ୍ରମୁପେତ୍ୟ ସଂମତଂ ନିବାସମାଜଗ୍ମୁ ରଜ୍ଞୀନଦର୍ଶନାଃ ।।
ଇତି ଅଯୋଧାକାଣ୍ଡେ ୫୫ ସ. ୩୪ ଶ୍ଳୋ

ଏହି ବଚନାର୍ଥର ପର୍ଯ୍ୟାଲୋଚନାରେ ଜଣାଯାଏ, ପଞ୍ଚମ ରାତ୍ରିରେ ଯମୁନା ତୀରରେ ନିବାସ ଅଭିହିତ ଅଛି ।

(ଚ) ଭରଦ୍ୱାଜାଦିଗମନଂ ପ୍ରୟାଗେ ଚ ସହାସନଂ
ଆ ଗିରେର୍ଗମନଂ ତେଷାମ୍ ତତ୍ରସ୍ଥୈରଭିଲକ୍ଷିତଂ ।।
ତତଃ ସାୟାହ୍ନ ସମୟେ ତୃତୀୟେଽହନି ସାରଥିଃ
ଅଯୋଧ୍ୟାଂ ସମନୁପ୍ରାପ୍ୟ ନିରାନନ୍ଦାଂ ଦଦର୍ଶ ହ ।।
ଇତି ଅଯୋଧାକାଣ୍ଡେ ୫୭ ସ. ୨-୫ ଶ୍ଳୋ

(ଅତ୍ର ଆ ଗିରେର୍ଗମନମିତ୍ୟସ୍ୟ ଗମନୋଦ୍‌ଯୋଗ ଇତ୍ୟର୍ଥ)

(ଏ ସ୍ଥଳେ "ଆଗିର୍ରେଗମନଂ" ଏହି ପଦର ଅର୍ଥ ଗମନୋଦ୍ୟୋଗ ବୋଲି ଜାଣିବେ) ଏ ସ୍ଥଳେ "ତୃତୀୟେଽହନି" ଏହାର ଅର୍ଥ ତୃତୀୟ ଦିବସରେ ନୁହେ; କିନ୍ତୁ ଦିବସର ତୃତୀୟ ଭାଗରେ – ତାହା ନହେଲେ ଉପରିବକ୍ଷମାଣ "ପଞ୍ଚରାତ୍ରୋଽଦ୍ୟଗଣ୍ୟତେ" ବର୍ତମାନେ ଗଣନାରେ ପଞ୍ଚରାତ୍ରି ହେଲା, ଏହି ଯେ କୌସଲ୍ୟାଙ୍କ ଉକ୍ତି ଏବଂ "ସ ରାଜା ରଜନୀଷଷ୍ଠୀଂ" "ସେହି ରାଜା ଷଷ୍ଠ ରାତ୍ରିରେ" – ଏହି ଉକ୍ତିର ମଧ ବିରୋଧ – ଘଟିବ ।

ଏହି ଶ୍ଳୋକ ଦ୍ୱୟର ଅର୍ଥ ପର୍ଯ୍ୟାଲୋଚନାରେ ଜଣାଯାଏ ଅଯୋଧ୍ୟା ପ୍ରତି ସୁମନ୍ତ୍ରଙ୍କ ପ୍ରତ୍ୟାଗମନ ରାମନିର୍ଗମନର ଷଷ୍ଠ ଦିବସରେ ହୋଇଥିଲା ।

(ଛ) ସ ରାଜା ରଜନୀଂ ଷଷ୍ଠୀଂ ରାମେ ପ୍ରବ୍ରଜିତେ ବନଂ
ଅର୍ଦ୍ଧରାତ୍ରେ ଦଶରଥଃ ସଂସ୍ମରଂ ଦୁଷ୍କୃତଂ କୃତଂ ।।୪।।
ଅଥ ରାତ୍ର୍ୟାଂ ବ୍ୟତୀତାୟାଂ ପ୍ରାତରେବାପରେଽହନି
ବନ୍ଦିନଃ ପର୍ଯ୍ୟୁପାତିଷ୍ଠଂ ସ୍ତତ୍‌ପାର୍ଥିବନିବେଶନଂ ।।୧।।
ଗତେତୁ ଶୋକାତ୍ ତ୍ରିଦିବଂ ନରାଧିପେ ମହୀତଳସ୍ଥାସୁ ନୃପାଙ୍ଗନାସୁ ଚ
ନିବୃତ୍ତଚାରଃ ସହସାଗତୋ ରବିଃ ପ୍ରବୃତ୍ତଚାରା ରଜନୀ ହ୍ୟୁପସ୍ଥିତା ।।୨୬।।

ବ୍ୟତୀତାୟଂ ଶର୍ବର୍ଯ୍ୟାଂ ଆଦିତ୍ୟସ୍ୟୋଦୟେ ତତଃ
ସମେତ୍ୟ ରାଜକର୍ତାରଃ ସଭାମୀୟୁର୍ଦ୍ୱିଜାତୟୋଃ ।।୨।।
ଇତି ଅଯୋଧ୍ୟାକାଣ୍ଡେ ୬୩ ସ. ୪ ଶ୍ଳୋ; ୬୫ ସ. ୧ ଶ୍ଳୋ; ୬୬ ସ. ୨୬ ଶ୍ଳୋ;
୬୭ ସ. ୨ ଶ୍ଳୋ

ଏହି ବଚନ ଚତୁଷ୍ଟୟର ପର୍ଯ୍ୟାଲୋଚନାରେ ଜଣାଯାଏ ଯେ ରାମ ନିର୍ଗମନର ଷଷ୍ଠ ଦିବସରେ ଦଶରଥ ମରଣ, ସପ୍ତମ ଦିନରେ କୌସଲ୍ୟାଦିଙ୍କ ବିଳାପ, ଅଷ୍ଟମ ଦିବସରେ ଭରତାନୟନାର୍ଥ ଦୂତ ପ୍ରେଷଣ ହୋଇଥିଲା ।

(ଛ) ଯାମେବ ରାତ୍ରିଂ ତେ ଦୂତାଃ ପ୍ରବିଶ୍ୟନ୍ତିସ୍ମ ତାଂ ପୁରୀଂ
ଭରତେନାପି ତାଂ ରାତ୍ରୀଂ ସ୍ୱପ୍ନୋ ଦୃଷ୍ଟୋଽୟମପ୍ରିୟଃ ।।୧।।

ବ୍ୟୁଷ୍ଟାମେବ ତୁ ତାଂ ରାତ୍ରୀଂ ଦୃଷ୍ଟ୍ୱା ତଂ ସ୍ୱପ୍ନମପ୍ରିୟଂ
ପୁତ୍ରୋ ରାଜାଧିରାଜସ୍ୟ ସୁଭୃଶଂ ପର୍ଯ୍ୟତପ୍ୟତ ।।୨।।

ଭରତେ ବ୍ରୁବତି ସ୍ୱପ୍ନଂ ଦୂତାସ୍ତେ କ୍ଲାନ୍ତ ବାହନାଃ
ପ୍ରବିଶ୍ୟା ସଦ୍ୟ ପରିଘଂ ରମ୍ୟଂ ରାଜଗୃହଂ ପୁରଂ ।।୧।।

ସମାଗମ୍ୟ ତୁ ରାଜ୍ଞା ଚ ରାଜପୁତ୍ରେଣଚାର୍ଥତଃ
ରାଜ୍ଞଃ ପାଦୌ ଗୃହିତ୍ୱା ତେ ତମୂଚୁର୍ଭରତଂ ବଚଃ ।।୨।।
ଇତି ଅଯୋଧ୍ୟାକାଣ୍ଡେ ୬୯ ସ. ୧/୨ ଶ୍ଳୋ; ୭୦ସ. ୧/୨ ଶ୍ଳୋ

ଏହି ବଚନାର୍ଥ ପର୍ଯ୍ୟାଲୋଚନାଦ୍ୱାରା ଜଣାଯାଏ, ବଶିଷ୍ଠ ପ୍ରେଷିତ ଦୂତମାନେ ରାତ୍ରି ବେଳାରେ ଗିରିବ୍ରଜପୁରରେ ପ୍ରବେଶିଲେ, ତେଣୁ ତା ପରଦିନ ଭରତଙ୍କୁ ବଶିଷ୍ଠଙ୍କ ବଚନ ବିଜ୍ଞାପନ କଲେ, ଏ ଅର୍ଥ ଏ ସ୍ଥଳେ ସିଦ୍ଧ ହୋଉଅଛି ।

ଏ ସ୍ଥଳେ ଦୂତମାନଙ୍କର ଗିରିବ୍ରଜ ନଗର ପ୍ରତି ଗମନ ଅବସ୍ଥାରେ ତିନିଦିନ ଅତୀତ ହୋଇଥିବା କଥା ପୁରାଣାନ୍ତରମାନଙ୍କରେ ପ୍ରସିଦ୍ଧ ଥିବା ଶୁଣାଯାଏ । ଗ୍ରନ୍ଥବିସ୍ତର ଭୟରୁ ସେହି ବଚନମାନ ଏସ୍ଥଳେ ପ୍ରକାଶିତ କଲୁଁ ନାହିଁ ବୋଲି ଅଭିଜ୍ଞମାନେ ଜାଣିବେ ।

(ଝ) ଅଯୋଧ୍ୟାଂ ମନୁନା ରାଜ୍ଞା ନିର୍ମିତାଂ ସ ଦଦର୍ଶ ହ
ତାଂ ପୁରୀଂ ପୁରୁଷବ୍ୟାଘ୍ରଃ ସପ୍ତରାତ୍ରୋଷିତଃ ପଥି ।।୧୮।।
ଅନ୍ୟ ମେ ସପ୍ତମୀ ରାତ୍ରିଃ ଚ୍ୟୁତସ୍ୟାର୍ଯବବେଶ୍ମନଃ
ଅମ୍ବାୟାଃ କୁଶଳୀ ତାତଃ ଯୁଧାଜିତ୍ ମାତୁଳଶ୍ଚ ମେ ।।୮।।
ଇତି ଅଯୋଧ୍ୟାକାଣ୍ଡେ ୭୧ ସ. ୧୮ ଶ୍ଳୋ; ୭୨ ସ. ୮ ଶ୍ଳୋ

ଏହି ବଚନାର୍ଥ ପର୍ଯ୍ୟାଲୋଚନାରେ ଅଯୋଧ୍ୟା ପ୍ରତି ଭରତଙ୍କ ଆଗମନରେ ବାଟରେ ସପ୍ତରାତ୍ରି ଅତୀତ ହେବାର ଅର୍ଥ ଉପଲବ୍ଧ ହୋଉଅଛି ।

(ଞ) ତତୋ ଦଶାହେଽତିଗତେ କୃତଶୌଚୋ ନୃପାତ୍ମଜଃ
ଦ୍ୱାଦଶେଽହନି ସଂପ୍ରାପ୍ତେ ଶ୍ରାଦ୍ଧକର୍ମାଣ୍ୟକାରୟତ୍ ॥୧॥
ବଶିଷ୍ଠୋ ଭରତଂ ବାକ୍ୟମୁତ୍ଥାପ୍ୟ ତମୁବାଚ ହ
ତ୍ରୟୋଦଶୋଽୟଂ ଦିବସଃ ପିତୃର୍ବୃତ୍ତସ୍ୟ ତେ ବିଭୋ ॥୨୨॥
ସାବଶେଷାସ୍ଥି ନିଚୟେ କିମିହ ତ୍ୱଂ ବିଲମ୍ବସେ ।

ଇତି ଅଯୋଧ୍ୟାକାଣ୍ଡେ ୭୭ ସ. ୧-୨୨-୨୩ ଶ୍ଳୋ

ଏତଦ୍ ବଚନାର୍ଥ ପର୍ଯ୍ୟାଲୋଚନାରେ ଶ୍ରବଣ ଦିନଠାରୁ ଦ୍ୱାଦଶ ତ୍ରୟୋଦଶ ଦିନ ଦ୍ୱୟରେ ପୈତୃକ କୃତ୍ୟମାନ କଲେ, ଏହି ଅର୍ଥ ଜଣାଯାଉଅଛି ।

(ଟ) ତତଃ ପ୍ରଭାତସମୟେ ଦିବସେଽଥ ଚତୁର୍ଦଶେ
ସମେତ୍ୟ ରାଜକର୍ତାରଃ ଭରତଂ ବାକ୍ୟମବ୍ରୁବନ୍ ॥୧॥
କ୍ରିୟତାଂ ଶିଳ୍ପୀଭିଃ ପନ୍ଥାଃସମାନି ବିଷମାଣି ଚ
ରକ୍ଷିଣଶ୍ଚାନୁସଂଯାନ୍ତୁ ପଥି ଦୁର୍ଗବିଚାରକାଃ ॥

ଇତି ଅଯୋଧ୍ୟାକାଣ୍ଡେ ୭୯ ସ. ୧-୧୩ ଶ୍ଳୋ

ଏହି ଶ୍ଳୋକଦ୍ୱୟର ଅର୍ଥ ପର୍ଯ୍ୟାଲୋଚନାରେ ନିଜର ଅଭିଷେକ ନିମନ୍ତେ ରାଜକର୍ମଚାରୀମାନଙ୍କଦ୍ୱାରା ଭରତ ପ୍ରାର୍ଥିତ ହେଲେ, ଏହା ଜଣାଯାଏ; ଏବଂ ସେହିଦିନ କେବଳ ଭରତ ନିଜାଭିଷେକ ନିଷେଧ ପୂର୍ବକ ଶ୍ରୀରାମଦର୍ଶନାର୍ଥ ଯିବାପାଇଁ ମାର୍ଗ ପରିଶୋଧନ କରାଅ ବୋଲି ଆଜ୍ଞା ଦେଇଥିବା ସ୍ପଷ୍ଟ ଜଣାଯାଉଅଛି ।

(ଠ) ତତୋ ନାନ୍ଦୀମୁଖୀଂ ରାତ୍ରିଂ ଭରତଂ ସୂତମାଗଧାଃ
ତୁଷ୍ଟୁବର୍ବାକ୍ବିଶେଷଜ୍ଞାଃ ସ୍ତବୈର୍ମଙ୍ଗଳସଂହିତୈଃ ॥୧॥
ହ୍ରଦଇବ ତିମିନାଗସଂବୃତଃ ସ୍ତିମିତଜଲୋ ମଣିଶଂଖଶାର୍କରଃ
ଦଶରଥସୁତଶୋଭିତା ସଭା ସଦଶରଥେବ ବଭୌ ଯଥା ପୁରା ॥୧୬॥

ଇତି ଅଯୋଧ୍ୟାକାଣ୍ଡେ ୮୧ ସ. ୧-୧୬ ଶ୍ଳୋ

ଏହି ଶ୍ଳୋକଦ୍ୱୟର ଅର୍ଥ ପର୍ଯ୍ୟାଲୋଚନାରେ ମାଗଧମାନଙ୍କ ଦ୍ୱାରା ସଂସ୍ତୁତ ଭରତ ପଞ୍ଚଦଶ ଦିବସରେ ସଭାରେ ପ୍ରବେଶ କରିଥିଲେ, ଏହି ଅର୍ଥ ଜଣାଯାଉଅଛି ।

ଏହି ଘଟଣାକେ ପୁରାଣାନ୍ତର ବଚନମାନଙ୍କଦ୍ୱାରା ଜଣାଯାଏ ଯେ ମାର୍ଗ ପରିଷ୍କରଣ ପାଇଁ ଚାରିଦିନ ଅତୀତ ହୋଇଥିଲା; ତାପରେ କେବଳ ଭରତ ଶ୍ରୀରାମଙ୍କ ଦର୍ଶନାର୍ଥ ପ୍ରସ୍ଥାନ କରିଥିଲେ ।

(ଡ) ତତଃ ସମୁତ୍‌ଥିତଃ କାଲ୍ୟଂ ଆସ୍ଥାୟ ସ୍ୟନ୍ଦନୋତ୍ତମଂ
ପ୍ରଯଯୌ ଭରତଃ ଶୀଘ୍ରଂ ରାମଦର୍ଶନକାଂକ୍ଷୟା ॥୧॥

ଇତି ଅଯୋଧ୍ୟାକାଣ୍ଡେ ୮୩ ସ. ୧ ଶ୍ଳୋ

ବ୍ୟୁଷ୍ୟ ରାତ୍ରିଂ ତୁ ତତ୍ରୈବ ଗଙ୍ଗାକୂଳେ ସ ରାଘବଃ
ଭରତଃ କାଲ୍ୟମୁତ୍‌ଥାୟ ଶତ୍ରୁଘ୍ନମିଦମବ୍ରବୀତ୍ ॥୧॥

ଇତି ଅଯୋଧ୍ୟାକାଣ୍ଡେ ୮୯ ସ. ୧ ଶ୍ଳୋ

ଏହାର ଅର୍ଥ ପର୍ଯ୍ୟାଲୋଚନାରେ ରାମାନୟନାର୍ଥ ଅଯୋଧ୍ୟାରୁ ନିର୍ଗତ ଭରତଙ୍କର ପ୍ରଥମ ଦିନ ରାତ୍ରିରେ ଗଙ୍ଗାକୂଳରେ ନିବାସ ହୋଇଥିବା ଜଣାଯାଏ ।

(ଢ) ତତସ୍ତାଂ ରଜନୀଂ ବ୍ୟୁଷ୍ୟ ଭରତଃ ସପରିଚ୍ଛଦଃ
କୃତାତିଥ୍ୟୋଭରଦ୍ୱାଜଂ କାମାଦଭିଜଗାମହ ॥

ଇତି ଅଯୋଧ୍ୟାକାଣ୍ଡେ ୯୨ ସ. ୧ ଶ୍ଳୋ

ଏହାର ଅର୍ଥ ପର୍ଯ୍ୟାଲୋଚନାରେ ଭରତ ଦ୍ୱିତୀୟ ଦିନ ରାତ୍ରିରେ ଭରଦ୍ୱାଜଙ୍କ ଆଶ୍ରମରେ ରହିଥିବା ଜଣାଯାଏ ।

(ତ) ତତଃ ପୁରୁଷସିଂହାନାଂ ବୃତାନାଂ ତୈଃ ସୁହୃଦ୍‌ଗଣୈଃ
ଶୋଚତାମେବ ରଜନୀ ଦୁଃଖେନ ବ୍ୟତ୍ୟବର୍ତ୍ତତ ॥୧॥

ଇତି ଅଯୋଧ୍ୟାକାଣ୍ଡେ ୧୦୫ ସ. ୧-୨-୪ ଶ୍ଳୋ

ଏହାର ଅର୍ଥ ପର୍ଯ୍ୟାଲୋଚନାରେ ଭରତ ଶ୍ରୀରାମଙ୍କ ସନ୍ନିଧାନରେ ତୃତୀୟ ଦିନର ନିଶାକୁ ଅତୀତ କରିଥିବା ଜଣାଯାଏ ।

ରଜନ୍ୟାଂ ସୁପ୍ରଭାତାୟାଂ ଭ୍ରାତରସ୍ତେ ସୁହୃଦ୍‌ବୃତାଃ
ମନ୍ଦାକିନ୍ୟାଂ ହୁତଂ ଜପ୍ୟଂ କୃତ୍ୱା ରାମମୁପାଗମନ୍ ॥
ସାଂତ୍ୱିତା ମାମିକା ମାତା ଦତ୍ତଂ ରାଜମିଦଂ ମମ
ତଦ୍ଦଦାମି ତବୈବାହଂ ଭୁଙ୍‌କ୍ଷ୍ୱ ରାଜ୍ୟମକଣ୍ଟକମ୍ ॥

ଏହାର ଅର୍ଥ ପର୍ଯ୍ୟାଲୋଚନାରେ ଜଣାଯାଏ ଯେ ଚତୁର୍ଥ ଦିବସରେ ଭରତ ରାମଙ୍କ ଛାମୁରେ ନିବାସ କରିଥିଲେ ।

(ଥ) ଏବମୁକ୍ତ୍ୱା ତୁ ବିରତେ ରାମେ ବଚନମର୍ଥବତ୍
ତତୋ ମନ୍ଦାକିନୀତୀରେ ରାମଂ ପ୍ରକୃତିବତ୍ସଲଂ ॥

ଇତି ଅଯୋଧ୍ୟାକାଣ୍ଡେ ୧୦୬ ସ. ୧ ଶ୍ଳୋ

ଏହାର ଅର୍ଥ ପର୍ଯ୍ୟାଲୋଚନାରେ ପଞ୍ଚମ ଦିବସରେ ସୁଦ୍ଧା ଭରତ ରାମଙ୍କ ସନ୍ନିଧାନରେ ରହିଥିଲେ, ଏହା ଊହା କରିନେବାକୁ ହେବ । ଏହି ଘଟସ୍ଥଳେ କେବଳ ପୁରାଣାନ୍ତରମାନଙ୍କରେ ପୃଥକ୍‌ତଃ ଦିନ ପରିଗଣନା କରାହୋଇଅଛି ।

(ଦ) ତଂ ମାତରୋ ବାଷ୍ପଗୃହୀତକଣ୍ଠ୍ୟଃ ଦୁଃଖେନ ନାମନ୍ତ୍ରୟିତୁଂ ହି ଶେକୁଃ
ସତ୍ୱେବ ମାତୃରବିବାଦ୍ୟ ସର୍ବାରିଦନ୍ କୁଟୀଂ ସ୍ୱାଂ ପ୍ରବିବେଶ ରାମଃ ॥
ଇତି ଅଯୋଧ୍ୟାକାଣ୍ଡେ ୧୧୨ ସ. ୩୧ ଶ୍ଳୋ

ଏହାର ଅର୍ଥ ପର୍ଯ୍ୟାଲୋଚନାରେ ଷଷ୍ଠ ଦିବସରେ ମଧ ଭରତ ରାମଙ୍କ ସନ୍ନିଧାନରେ ନିବାସ କରିଥିବା ଧ୍ୱନିତ ହୋଉଅଛି ।

(ଧ) ତତଃ ଶିରସିକୃତ୍ୱା ତୁ ପାଦୁକେ ଭରତସ୍ତଦା
ଆରୁରୋହ ରଥଂ ହୃଷ୍ଟଃ ଶତ୍ରୁଘ୍ନେନ ସମନ୍ୱିତାଃ ॥
ଇତି ଅଯୋଧ୍ୟାକାଣ୍ଡେ ୧୧୩ ସ. ୧ ଶ୍ଳୋ

ଏହାଦ୍ୱାରା ଭରତ ସପ୍ତମ ଦିନରେ ଶ୍ରୀରାମ ପାଦୁକା ଧରି ଅଯୋଧ୍ୟା ପ୍ରତି ପ୍ରସ୍ଥାନ କରିଥିବାର ଅର୍ଥ ଊହନୀୟ । ଏହି ସର୍ଗରେ କେବଳ ୨୨ ଶ୍ଳୋକ ଏହି ଯେ–

ତାଂ ରମ୍ୟଜଳସଂପୂର୍ଣ୍ଣାଂ ସଂତୀର୍ଯ ସହବାନ୍ଧବଃ
ଶୃଙ୍ଗବେରପୁରଂ ରମ୍ୟଂ ପ୍ରବିବେଶ ସସୈନିକଃ ॥

ଏହାର ଅର୍ଥ ପର୍ଯ୍ୟାଲୋଚନାରେ ଜଣାଯାଏ ଯେ ଭରତ ଅଯୋଧ୍ୟାକୁ ପ୍ରତ୍ୟାଗତ ହେଲା ସମୟେ ସପ୍ତମ ଦିନରେ କେବଳ ଶୃଂଗବେରପୁରରେ ନିବାସ କରିଥିଲେ ।

(ନ) ସଂପତଦ୍‌ଭିରଯୋଧ୍ୟାୟାଂ ନାଭିଭାନ୍ତି ମହାପଥାଃ
ଏବଂ ବହୁବିଧଂ ଜଳ୍ପନ୍ ବିବେଶ ବସତିଂ ପିତୁଃ ॥
ଇତି ଅଯୋଧ୍ୟାକାଣ୍ଡେ ୧୧୪ ସ. ୩୦ ଶ୍ଳୋ

ଏତଦ୍ ଶ୍ଳୋକାର୍ଥ ପର୍ଯ୍ୟାଲୋଚନାରେ ପୁନରପି ଭରତ ଅଷ୍ଟମ ଦିବସରେ ଅଯୋଧ୍ୟାରେ ଉପଗତ ହେଲେ, ଏହା ଜଣାଯାଏ ।

(ପ) ରଥସ୍ଥଃ ସ ହି ଧର୍ମାତ୍ମା ଭରତୋ ଭ୍ରାତୃବତ୍ସଳଃ
ନନ୍ଦିଗ୍ରାମଂ ଯଯୌ ତୂର୍ଣ୍ଣଂ ଶିରସ୍ୟାଧାୟ ପାଦୁକେ ॥
ଇତି ଅଯୋଧ୍ୟାକାଣ୍ଡେ ୧୧୫ ସ. ୧୨ ଶ୍ଳୋ

ଏହି ଶ୍ଳୋକର ଅର୍ଥ ପର୍ଯ୍ୟାଲୋଚନାରେ ଜଣାଯାଏ ଯେ ଭରତ ନବମଦିନରେ ନନ୍ଦିଗ୍ରାମରେ ନିବାସ କଲେ ।

(୩) ରାମଚନ୍ଦ୍ରଙ୍କର ଋଷିମାନଙ୍କ ଆଶ୍ରମମାନଙ୍କ ସଂଚାର ଅବସ୍ଥାରେ ଅତୀତ ଦଶ-ସମ୍ବତ୍ସରର ପ୍ରମାଣ ବଚନମାନ ଇତଃପୂର୍ବେ ପ୍ରତିପାଦିତ ହୋଇଥିବାରୁ ପୁନରପି ଏ ସ୍ଥଳେ ପ୍ରକାଶିତ କରାଯାଇନାହିଁ ।

(୪) <1> ବିନ୍ଦୋନାମ ମୁହୂର୍ତ୍ତୋଽୟଂ ସ ଚ କାକୁତ୍ସ୍ଥ ନାବୁଧତ୍
ତତ୍ ପ୍ରିୟାଂ ଜାନକୀଂ ହୃତ୍ୱା ରାବଣୋ ରାକ୍ଷସେଶ୍ୱରଃ ॥
ଇତି ବାଲ୍ମୀକି ରାମାୟଣେ ଆରଣ୍ୟକାଣ୍ଡେ ୬୮ ସ. ୧୩ ଶ୍ଲୋ

<2> ଚୈତ୍ରମାସେ କୃଷ୍ଣପକ୍ଷେ ତ୍ୱଷ୍ଟମ୍ୟାଂ ରାକ୍ଷସେଶ୍ୱରଃ
ଭିକ୍ଷୁରୂପେଣ ଚାଗତ୍ୟ ଗୃହିତ୍ୱା ଜାନକୀଂ ଯଯୌ ॥
ଇତି ବାଶିଷ୍ଠ ରାମାୟଣେ-ଆରଣ୍ୟକାଣ୍ଡେ

<3> ଅର୍ଦ୍ଧରାତ୍ରେ ଦିନସାର୍ଦ୍ଧେଽପ୍ୟର୍ଦ୍ଧଚନ୍ଦ୍ରେଽର୍ଦ୍ଧ ଭାସ୍କରେ
ରାବଣେନ ହୃତା ସୀତା କୃଷ୍ଣପକ୍ଷେଽସୀତାଷ୍ଟମୀ ॥
ଇତି ଅଗସ୍ତ୍ୟ ରାମାୟଣ ।

(ଅତ୍ରତୁ ଯ୍ୟତ୍ରେତି ବାକ୍ୟଶେଷେଣାନ୍ୱୟ କାର୍ଯ୍ୟଃ)

ଏହି ବଚନ ଦ୍ୱୟର ଅର୍ଥ ପର୍ଯ୍ୟାଲୋଚନାରେ ଜଣାଯାଏ, ଚୈତ୍ର ମାସରେ, କୃଷ୍ଣପକ୍ଷରେ, ଅଷ୍ଟମୀ ଦିବସରେ, ବିନ୍ଦାକ୍ଷ ମୁହୂର୍ତ୍ତରେ ରାବଣଦ୍ୱାରା ସୀତାଦେବୀ ଅପହୃତା ଥିଲେ ।

(୫) ଇନ୍ଦ୍ରଧ୍ୱଜ ଇବୋଦ୍ଧୃତଃ ପୌର୍ଣ୍ଣମାସ୍ୟାଂ ମହିତଲେ
ଆଶ୍ୱଯୁକ୍ ସମୟେ ମାସେ ଗତଶ୍ରୀକୋ ବିଚେତନଃ ॥
ଇତି କିଷ୍କିନ୍ଧାକାଣ୍ଡେ ୧୬ ସ. ୩୭ ଶ୍ଲୋ

ଏ ସ୍ଥଳେ "ଆଶ୍ୱଯୁକ୍" ଏହି ବଚନଦ୍ୱାରା ବାଳିବଧ ସମୟ ପ୍ରତିପାଦିତ ହୋଇନାହିଁ; କିନ୍ତୁ ତେତେବେଳେ ଇନ୍ଦ୍ରଧ୍ୱଜର ଉତ୍ସବ ଏବଂ ତଦୁତ୍ଥାପନ ସେହି ମାସରେ କରାଯାଏ, ଏହାହି ତାତ୍ପର୍ଯ୍ୟାର୍ଥ । ତାହା ନହେଲେ ଗ୍ରନ୍ଥାନ୍ତର ବଚନମାନଙ୍କର ତଥାଚ ଏହାର ଅଗ୍ରୀମ ପାଠରେ ବକ୍ଷ୍ୟମାଣ ବଚନମାନଙ୍କର "ବୟମାଶ୍ୱଯୁଜେମାସେ କାଳସଂଖ୍ୟା ବ୍ୟବସ୍ଥିତାଃ" ଇତ୍ୟାଦି କାଳ ନିର୍ଣ୍ଣାୟକ ବଚନମାନଙ୍କର ବିରୋଧ ଘଟିବ । ସେହେତୁ ଜ୍ୟେଷ୍ଠମାସରେ, ଶୁକ୍ଳପକ୍ଷରେ, ପୂର୍ଣ୍ଣିମା ଦିନରେ କେବଳ ତାହାଙ୍କର (ବାଳିଙ୍କର) ବଧ ହୋଇଥିଲା ବୋଲି ଜାଣିବାକୁ ହେବ । ଏ ସମ୍ବନ୍ଧେ ଗ୍ରନ୍ଥାନ୍ତର ବଚନ ପ୍ରମାଣ–

ଯଥା— ଜ୍ୟେଷ୍ଠମାସେ ଶୁକ୍ଳପକ୍ଷେ ପୌର୍ଣ୍ଣମାସ୍ୟାଂ ରଘୂଦ୍ୱହଃ
ବାଳିନଂ ପାତୟାମାସ ବାଣେନୈକେନ ବୀର୍ଯ୍ୟବାନ୍ ।।
ଇତି ବାଲ୍ମୀକି ଚାରିତ୍ରେ

(୬) କାର୍ତ୍ତିକେ ସମନୁପ୍ରାପ୍ତେ ତ୍ୱଂ ରାବଣବଧେ ଯତ
ଏଷ ନଃ ସମୟଃ ସୌମ୍ୟ ପ୍ରବିଶତ୍ୱଂ ସ୍ୱମାଳୟଂ ।।
ଇତି କିଷ୍କିନ୍ଧାକାଣ୍ଡେ ୨୯ ସ. ୧୬ ଶ୍ଳୋ

ଏଥିଦ୍ୱାରା ଶ୍ରୀରାମଚନ୍ଦ୍ର ଯୁଦ୍ଧଯାତ୍ରା ସମୟକୁ କାର୍ତ୍ତିକ ମାସ ପ୍ରଥମ ଦିବସରେ ନିର୍ଦ୍ଦିଷ୍ଟ କରିଥିବା ଜଣାଯାଏ ।

ସ କାଳଂ ପରସଂଖ୍ୟାୟ ସୀତାୟାଃ ପରିମାର୍ଗଣେ
କୃତାର୍ଥଃ ସମୟଂ କୃତ୍ୱା ଦୁର୍ମତିର୍ନାବବୁଧ୍ୟତେ ।।୬୬।।
ବର୍ଷା ସମୟ କାଳଂତୁ ପ୍ରତିଜ୍ଞାୟ ହରୀଶ୍ୱରଃ
ବ୍ୟତୀତାଂ ଶ୍ଚତୁରୋମାସାନ୍ ବିହରନ୍ନାବବୁଧ୍ୟତେ ।।୬୫ ।।

ଇତ୍ୟାଦି ବଚନମାନଙ୍କରେ ପୂର୍ବେ ଯୁଦ୍ଧଯାତ୍ରାର୍ଥ ନିର୍ଣ୍ଣୀତ କାର୍ତ୍ତିକ ମାସର ମଧ କେତେକ ଦିନ ଅତୀତ ହୋଇଯାଇଥିବାର ଅର୍ଥ ଉପଲବ୍ଧ ହୁଏ । ସେ ହେତୁରୁ କାର୍ତ୍ତିକ ମାସାନ୍ତରେ କେବଳ ସୁଗ୍ରୀବ ପ୍ରତି ଲକ୍ଷ୍ମଣଙ୍କର ଆଗ୍ରହ ଜନ୍ମିଥିବାର ଜଣାଯାଏ ।

(୯) ପ୍ରଦୋଷ କାଳେ ହନୁମାଂସ୍ତୂର୍ଣ୍ଣମୁତ୍ପ୍ଲୁତ୍ୟ ବୀର୍ଯ୍ୟବାନ୍
ପ୍ରବିବେଶ ପୁରୀଂ ରମ୍ୟାଂ ସୁବିଭକ୍ତ ମହାପଥାମ୍ ।।୫୦।।
ଇତି ସୁନ୍ଦରକାଣ୍ଡେ ୨ସ. ୫୦ ଶ୍ଳୋ

ଏହାଦ୍ୱାରା ହନୂମାନ ପ୍ରଦୋଷ ସମୟରେ ଲଙ୍କାପୁରୀରେ ପ୍ରବେଶିଥିବା ଅର୍ଥ ସିଦ୍ଧ ହୋଉଅଛି ।

ଚନ୍ଦ୍ରୋଽପି ସାଚିବ୍ୟମିବାସ୍ୟକୁର୍ବନ୍ ତାରାଗଣୈର୍ମଧ୍ୟଗତୋ ବିରାଜନ୍
ଜ୍ୟୋତ୍ସ୍ନା ବିତାନେନ ବିତତ୍ୟଲୋକଂ ଉତ୍ତିଷ୍ଠତେ ନୈବ ସହସ୍ରରଶ୍ମିଃ ।।
ଇତି ସୁନ୍ଦରକାଣ୍ଡେ ୨ସ. ୫ ଶ୍ଳୋ

ଏହି ବଚନର ଅର୍ଥ ପର୍ଯ୍ୟାଲୋଚନାଦ୍ୱାରା ଏବଂ ଅଗ୍ରିମ ପାଠର ଅର୍ଥ ପର୍ଯ୍ୟାଲୋଚନାଦ୍ୱାରା ଶୁକ୍ଳପକ୍ଷ ପଞ୍ଚମୀ ଏପରି ଅର୍ଥ ଉପଲବ୍ଧ ହୁଏ ।

(୧୦) ଅସ୍ମିନ୍ ମୁହୂର୍ତ୍ତେ ସୁଗ୍ରୀବେ ପ୍ରୟାଣମଭିରୋଚୟେ
ଅସ୍ମିନ୍ ମୁହୂର୍ତ୍ତେ ବିଜୟେ ପ୍ରାପ୍ତେ ମଧ୍ୟଂ ଦିବାକରେ ।।୩।।

ଜୀବିତାଂତେଽମୃତଂସ୍ପୃଷ୍ଟ୍ୱା ପୀତ୍ୱା ବିଷମିବାତୁରଃ
ଉତ୍ତରାଫାଲ୍‌ଗୁନୀହ୍ୟଦ୍ୟ ଶ୍ୱସ୍ତୁହସ୍ତେନ ଯୋକ୍ଷ୍ୟତେ ॥୫॥

ଇତ୍ୟାଦି ବଚନଦ୍ୱାରା ଉତ୍ତରାଫାଲ୍‌ଗୁନୀ ନକ୍ଷତ୍ର କାଳବ୍ୟାପ୍ତିରେ ବିଜୟାକ୍ଷ ମୁହୂର୍ତ୍ତରେ ବାନରସେନା ପ୍ରସ୍ଥାନ କରିଥିବା ଅର୍ଥ ଉପଲବ୍ଧ ହୁଏ ।

ସାମ୍ପ୍ରଯାତି ଦିବାରାତ୍ରଂ ମହତୀ ହରିବାହିନୀ
ହୃଷ୍ଟାଃ ପ୍ରମୁଦିତାଃ ସର୍ବେ ସୁଗ୍ରୀବେଣାଭିରକ୍ଷିତାଃ ॥

ଇତି ଯୁଦ୍ଧକାଣ୍ଡେ ୪ ସ. ୩-୫-୭୦ ଶ୍ଳୋ

ଏହି ବଚନଦ୍ୱାରା ସେହି ରାତିରେ କେବଳ ଅରୁଣୋଦୟ ସମୟରେ ସମୁଦ୍ରବେଳାରେ ବାନର ବାହିନୀ ସୁଗ୍ରୀବଙ୍କଦ୍ୱାରା ସମ୍ୟକ୍ ବିନିବେଶିତ କରାଗଲା, ଏହି ଅର୍ଥ ଜାଣିବାକୁ ହେବ ।

(୧୨) ତସ୍ୟ ରାମସ୍ୟ ସୁପ୍ତସ୍ୟ କୁଶାସ୍ତୀର୍ଣ୍ଣେ ମହୀତଳେ
ନିୟମାଦପ୍ରମତ୍ତସ୍ୟ ନିଶାସ୍ତିସ୍ରୋଽତିଚକ୍ରମୁଃ ॥୧୦॥

ଇତି ଯୁଦ୍ଧକାଣ୍ଡେ ୨୧ସ. ୧୦ ଶ୍ଳୋ

ଏହି ବଚନଦ୍ୱାରା ରାମଙ୍କର ପ୍ରାୟୋପ୍ରବେଶରେ ତିନିରାତି ଅତୀତ ହୋଇଥିବା ସ୍ପଷ୍ଟ ଜଣାଯାଏ ।

(୧୩) ବଭୂବ ତୁମୁଳଃ ଶବ୍ଦଃ ତଦାତସ୍ମିନ୍ ମହୋଦଧୌ
କୃତାନି ପ୍ରଥମେନାହ୍ନା ଯୋଜନାନି ଚତୁର୍ଦ୍ଦଶ ॥୬୮
ପ୍ରହୃଷ୍ଟୈର୍ଗଜସଂକାଶୈଃ ତ୍ୱରମାଣୈଃ ପ୍ଲବଙ୍ଗମୈଃ
ଦ୍ୱିତୀୟେନ ତଦାଚାହ୍ନା ଯୋଜନାନି ତୁ ବିଂଶତିଃ ॥୬୯
କୃତାନି ପ୍ଲବଗୈସ୍ତୂର୍ଣ୍ଣଂ ଭୀମକାୟୈର୍ମହାବଳୈଃ
ଅହ୍ନା ତୃତୀୟେନ ତଦା ଯୋଜନାନି କୃତାନି ତୁ ॥୭୦
ତ୍ୱରମାଣୈର୍ମହାକାୟୈଃ ଏକବିଂଶତିରେବଚ
ଚତୁର୍ଥେନ ତଥାଚାହ୍ନା ଦ୍ୱାବିଂଶତି ରଥାପି ଚ ॥୭୧
ଯୋଜନାନି ମହାବେଗୈଃ କୃତାନି ତ୍ୱରିତୈସ୍ତୁତୈଃ
ପଞ୍ଚମେନ ତଥାଚାହ୍ନା ପ୍ଲବଗୈଃ କ୍ଷିପ୍ରକାରିଭିଃ ॥୭୨
ଯୋଜନାନି ତ୍ରୟୋବିଂଶଦ୍ ସୁବେଳମଧିକୃତ୍ୟ ବୈ ।

ଇତି ଯୁଦ୍ଧକାଣ୍ଡେ ୨୨ସ. ୬୮-୭୨ ଶ୍ଳୋ

ଏଥିଦ୍ୱାରା ସେତୁବନ୍ଧନ ପାଞ୍ଚଦିନରେ ନିଷ୍ପନ୍ନ ହୋଇଥିବା ଜଣାଯାଏ ।

(୧୪) ତତୋଽସ୍ତମଗତଦ୍‌ସୂର୍ଯ୍ୟଃ ସନ୍ଧ୍ୟୟା ପ୍ରତିରଞ୍ଜିତଃ

ଇତି ଯୁଦ୍ଧକାଣ୍ଡେ ୩୮ ସ. ୧୮ ଶ୍ଳୋ

ପୂର୍ଣ୍ଣଚନ୍ଦ୍ର ପ୍ରଦୀପ୍ତାଚ କ୍ଷପା ସମଭିବର୍ତ୍ତତେ ॥୧୮ ସ. ୧୯ ଶ୍ଳୋ

ତତଃ ସ ରାମୋ ହରିବାହିନୀପତିଃ ବିଭୀଷଣେନ ପ୍ରତିନନ୍ଦ୍ୟ ସତ୍କୃତଃ

ସ ଲକ୍ଷ୍ମଣୋ ଯୂଥପ ଯୂଥ ସଂବୃତଃ ସୁବେଳପୃଷ୍ଠେ ନ୍ୟବସଦ୍ ଯଥାସୁଖଂ ॥୧୯

ଏହି ବଚନାର୍ଥକୁ ସମ୍ୟକ୍ ଆଲୋଚନା କଲେ ଜଣାଯାଏ ଯେ ସୂର୍ଯ୍ୟାସ୍ତ ସମୟର ଅବ୍ୟବହିତ କାଳରେ ପୂର୍ଣ୍ଣଚନ୍ଦ୍ର ଉଦିତ ହୋଇଥିଲେ । ଅତଏବ ଫାଲ୍‌ଗୁନିକ ମାସରେ ପୂର୍ଣ୍ଣମୀ ଦିବସରେ ସୁବେଳ ପର୍ବତରେ ଶ୍ରୀରାମଚନ୍ଦ୍ରଙ୍କର ସେନାସନ୍ନିବେଶ ହୋଇଥିଲା ବୋଲିବାକୁ ହେବାଭଳି ଅର୍ଥ ସିଦ୍ଧ ହୋଉଅଛି ।

(୧୫) ଯୁଧ୍ୟତାମେବ ତେଷାଂ ତୁ ତଦା ବାନରରକ୍ଷସାଂ

ରବିସ୍ତଂଗତୋ ରାତ୍ରିଃ ପ୍ରବୃତ୍ତା ପ୍ରାଣହାରିଣୀ ॥

ଇତି ଯୁଦ୍ଧକାଣ୍ଡେ ୪୪ ସ. ୧ ଶ୍ଳୋ

ଏଥିଦ୍ୱାରା ଯୁଦ୍ଧ ପ୍ରଥମ ରାତ୍ରିରୁ ପ୍ରାରମ୍ଭ ଜଣାଯାଏ ।

ବଦ୍ଧୌ ତୁ ସରବନ୍ଧେନ ତାବୁଭୌ ରଣମୂର୍ଦ୍ଧନି

ନିମେଷାନ୍ତର ମାତ୍ରେଣ ନ ଶେକତୁରୁଦୀକ୍ଷିତୁଂ ॥

ଇତି ଯୁଦ୍ଧକାଣ୍ଡେ ୪୫ ସ. ୧୬ ଶ୍ଳୋ

ଏଥିଦ୍ୱାରା ଯୁଦ୍ଧ ପ୍ରାରମ୍ଭ ଦିନର ରାତ୍ରିରେ କେବଳ ରାମ ଲକ୍ଷ୍ମଣ ଦୁହିଁଙ୍କୁ ଇନ୍ଦ୍ରଜିତ ନାଗପାଶରେ ବନ୍ଧନ କରିପକାଇଥିବା ଜଣାଯାଏ ।

ତତୋ ମୁହୂର୍ତ୍ତାଦ୍ ଗରୁଡ଼ଂ ବୈନତେୟଂ ମହାବଳଂ

ବାନରା ଦଦୃଶୁଃ ସର୍ବେ ଜ୍ୱଳନ୍ତମିବପାବକଂ ॥୩୬

ତମାଗତମଭିପ୍ରେକ୍ଷ୍ୟ ନାଗାସ୍ତେ ବିପ୍ରଦୁଦ୍ରୁବୁଃ

ଯୈସ୍ତୌ ସତ୍ପୁରୁଷୌ ବଦ୍ଧୌ ଶରଭୂତୈର୍ମହାବଳୌ ॥

ଇତି ଯୁଦ୍ଧକାଣ୍ଡେ ୫୦ ସ. ୩୬-୩୭ ଶ୍ଳୋ

ଏହି ବଚନଦ୍ୱୟରୁ ଜଣାଯାଏ, ରାମଲକ୍ଷ୍ମଣ ଦୁହେଁ ସେହି ପ୍ରଥମ ଦିନ ରାତ୍ରିରେ କେବଳ ଗରୁଡ଼ଙ୍କଦ୍ୱାରା ନାଗବନ୍ଧନରୁ ବିମୋଚିତ ହୋଇଥିଲେ ।

(୨୭) ଅହୋରାତ୍ରୈସ୍ତ୍ରିଭିର୍ବୀରଃ କଥଂଚିଦ୍ ବିନିପାତିତଃ
ନିରମିତ୍ରଃ କୃତୋଽସ୍ମାଦ୍ୟ ନିର୍ଯାସ୍ୟତି ହି ରାବଣଃ ।।
ଇତି ଯୁଦ୍ଧକାଣ୍ଡେ ୯୨ ସ. ୧୫ ଶ୍ଳୋ

ଏ ବଚନଦ୍ୱାରା ଇନ୍ଦ୍ରଜିତଙ୍କ ଯୁଦ୍ଧ ତିନିରାତ୍ରି ବୋଲି ଜଣାଯାଉଅଛି ।

(୨୯) ମରଣାଂତାନି ବୈରାଣି ନିର୍ବୃତଂ ନଃ ପ୍ରୟୋଜନଂ
କ୍ରିୟତାମସ୍ୟ ସଂସ୍କାରୋ ମମାପ୍ୟେଷ ଯଥା ତବ ।।
ତତ୍ସକାଶାଦ୍ ଦଶଗ୍ରୀବାଃ ସଂସ୍କାରଂ ବିଧିପୂର୍ବକଂ
ପ୍ରାପ୍ତୁମର୍ହତି ଧର୍ମଜ୍ଞ ! ତ୍ୱଂ ଯଶୋଭାକ୍ ଭବିଷ୍ୟସି (ତି) ।।
ରାଘବସ୍ୟ ବଚଃ ଶ୍ରୁତ୍ୱା ତ୍ୱରମାଣୌ ବିଭୀଷଣଃ
ସଂସ୍କାରେଣାନୁରୂପେଣ ଯୋଜୟାମାସ ରାବଣଂ ।
ଇତି ଯୁଦ୍ଧକାଣ୍ଡେ ୧୧୪ ସ.

ଏହି ବଚନମାନଙ୍କରୁ ଜଣାଯାଏ, ରାମଙ୍କଦ୍ୱାରା ଆଜ୍ଞପ୍ତ ବିଭୀଷଣ ରାବଣଙ୍କର ସଂସ୍କାର କ୍ରିୟା କଲେ ।

**[ ୧୦ାରୁ ୩୦ ମଧ୍ୟରେ ୧, ୨, ୭, ୮, ୧୧, ୧୬-୨୬, ୨୮, ୩୦ ସଂଖ୍ୟାଗୁଡ଼ିକ ନଥିବା ଲକ୍ଷ୍ୟ କରୁଥିବେ । ପାଣ୍ଡୁଲିପିରେ ସଂଖ୍ୟାଗୁଡ଼ିକ କ୍ରମାନ୍ୱୟରେ ଲେଖା ଥିଲେ ସୁଦ୍ଧା ଉଲ୍ଲିଖିତ ସଂଖ୍ୟାଗୁଡ଼ିକ ସମ୍ମୁଖରେ କୌଣସି ପାଠ ନାହିଁ । ମାନସିକ ପ୍ରସ୍ତୁତି ଥିଲେ ହେଁ ଅକାଳ ବିୟୋଗ ଯୋଗୁଁ ପଣ୍ଡିତ ମହାଶୟ ଏଗୁଡ଼ିକୁ ପୂରଣ କରିବାପାଇଁ ବୋଧହୁଏ ସମୟ ପାଇନାହାନ୍ତି । ]**

❑❑❑

# ପରିଶିଷ୍ଟ

## ଶ୍ରୀମଦ୍ ରାମାୟଣ ସମାଲୋଚନା ସଂପର୍କୀୟ ଗୋପୀନାଥ ନନ୍ଦଙ୍କ ଟିପାଖାତା

## ଅଯୋଧ୍ୟାକାଣ୍ଡ

x x x x x x x x x x x x x x x x x x

୨୪ରେ – କୌସଲ୍ୟା ବନବାସ ଜନିତ ଦୁଃଖ ସମ୍ବନ୍ଧେ ଶୋକପ୍ରକାଶ କଲାପରେ ରାମଙ୍କ ସଂଗେ ଯିବାକୁ କହିଲେ । ରାମ କହିଲେ କି ପିତା କୈକେୟୀଦ୍ୱାରା ବଞ୍ଚିତ ହୋଇଅଛନ୍ତି । ଆପଣ ତ୍ୟାଗ କଲେ ଆଉ ଜିଁଇବେ ନାହିଁ, ସୁତରାଂ ପତିଙ୍କୁ ସ୍ତ୍ରୀ ତ୍ୟାଗ କରିବା ନିତାନ୍ତ ଗର୍ହିତ କଥା । ଆପଣ ତାହା ମନରେ ଧରିବା ମଧ ଉଚିତ ନୁହେ । ଯେତେଦିନ ପିତା ଜୀବିତ ଥିବେ, ଆପଣ ଶୁଶ୍ରୁଷା କରୁଥାନ୍ତୁ । କୌସଲ୍ୟା ସ୍ୱୀକାର କଲେ (ଏବମୁକ୍ତ ତୁ ରାମେଣ- ------ ୧୪) ଫେର୍ କୌସଲ୍ୟା ମୋତେ ସଂଗେ ନିଅ ବୋଲିବାରୁ ପତ୍ନୀ ଧର୍ମମାନଙ୍କୁ ବୁଝା(ଇ) କହିଲେ (ଗଚ୍ଛ ପୁତ୍ର ! -------- ୩୪) ।

୨୫ରେ – ରାମଙ୍କ ବନଗମନର ସ୍ୱସ୍ତ୍ୟୟନ ମଙ୍ଗଳ କାର୍ଯ୍ୟମାନ କୌସଲ୍ୟା ସମସ୍ତ ଦେବଦେବୀଙ୍କୁ ଜଣା କଲେ, ବ୍ରାହ୍ମଣମାନଙ୍କୁ ଦକ୍ଷିଣା ଦିଆଇଲେ (ଔଷଧୀ ଚାପି --- ୩୮) ଇତ୍ୟାଦି ।

୨୬ରେ – ଏସବୁ କଥା ସୀତା କିଛି ଜାଣିନାହାଁନ୍ତି । ଦେବପୂଜା କଲାପରେ ରାମଙ୍କୁ ଅପେକ୍ଷା କରି ବସିଅଛନ୍ତି । ଏସମୟେ ରାମ ପ୍ରବିଷ୍ଟ ହେଲେ । ସୀତା ରାମଙ୍କୁ ବିବର୍ଣ୍ଣମୁଖ ଦେଖି ଏ କଣ ପ୍ରଭୋ ! ବୋଲି ପଚାରିଲେ । ଆଜି ତ ଅଭିଷେକ କଥା । ଆଭିଷେଚନିକ ଲକ୍ଷଣମାନ କାହିଁକି ଦିଶୁନାହିଁ ? ବୋଲି ଯାହା ଯାହା ମହାରାଜୋପଚାରମାନ ହେବା ଉଚିତ ସେସବୁ କହିଅଛନ୍ତି । ରାମ ଯାବତୀୟ ଘଟଣା କହିଲେ । ଭରତଙ୍କଠାରେ ଯେପରି ଆଚରିବାକୁ ହେବ, ତାହା ବୁଝାଇଲେ (ବନମଦୈବ ଯ୍ୟାସ୍ୟାମି-----) । ଏହାପରେ

ସୀତା ପ୍ରତ୍ୟହ ଯାହା କରିବା ଉଚିତ, ତାହା ବୁଝାଇଦେଲେ । ପରିଶେଷରେ କହିଲେ କି (ଅହଂ ଗମିଷ୍ୟାମି ମହାବନଂ ------୩୮)

୨୭ରେ – ସୀତା କିଂଚିତ୍ କ୍ରୋଧଯୁକ୍ତ ହେଲାପରି କହିଲେ, ଆର୍ଯ୍ୟପୁତ୍ର ! ଅବୀରୋଚିତ କଥା କଣ ଏପରି କହୁଛନ୍ତି ? ସ୍ତ୍ରୀ କେବଳ ଭର୍ତ୍ତାଙ୍କ ଭାଗ୍ୟକୁ ଭୋଗକରେ ବୋଲି ମୋର ଏହିପରି ଢୋର୍କରି କହିବା ଉଚିତ୍ (ଭର୍ତ୍ତୁର୍ଭାର୍ଯ୍ୟ-------୫, ୬, ୭, ୮) । ଆପଣଙ୍କ ସଂଗେ ଅବଶ୍ୟ ଯିବି । ବନପଲ୍ଲକାଦି ଦେଖିବା ଇଛା ଅଛି । ଆପଣଙ୍କର କୌଣସି କଷ୍ଟ କରିବି ନାହିଁ । ଆପଣଙ୍କ ସହବାସପାଇଁ ମୁଁ ସ୍ୱର୍ଗବାସ ସୁଦ୍ଧା ତ୍ୟାଗ କରିବି (ଅହଂ ଗମିଷ୍ୟାମି ------ ୨୨, ୨୩) ।

୨୮ରେ – ରାମ ବନବାସରେ ଦୁଃଖମାନ ବୁଝାଇକରି କର୍ତ୍ତବ୍ୟକରି ରହିବାକୁ କହିଅଛନ୍ତି ।

୨୯ରେ – ରାମ ବନବାସରେ ଯାହା ଯାହା ଦୁଃଖକର ବୋଇଲେ ସେସବୁ ସୁଖକର ବୋଲି ସୀତା ନାନା ପ୍ରକାରେ କହି ଜଣାଇଲେ । କ୍ରନ୍ଦନ କରି ନେବାପାଇଁ କଟାକ୍ଷ କରି ନିବେଦନ କଲେ । (ତ୍ୱୟାଚ ସହଗନ୍ତବ୍ୟଂ ------- ୫, ୨୦, ୨୧) ।

୩୦ରେ – ସୀତା କାନ୍ଦିକାନ୍ଦି ପ୍ରଣୟ ଓ ଅଭିମାନପୂର୍ବକ କେତେକ କହିଅଛନ୍ତି (କିଂତ୍ୱା–ମନ୍ୟତ ବୈଦେହଃ------ ୩, ୬, ୮, ୧୬, ୧୯) । ଏହା କହି ବହୁତ କାନ୍ଦିଲେ । ତେତେବେଳେ ରାମ ଆଲିଙ୍ଗନ ଦେ ସାନ୍ତ୍ୱନା ଦେଲେ । ପିତୃସତ୍ୟ ପାଳନ କର୍ତ୍ତବ୍ୟ ଇତ୍ୟାଦି କଥା କହିଲେ (ନ ଦେବି ! ତବ ଦୁଃଖେନ-------- ୨୭, ୨୮, ୨୯, ୪୨) ।

୩୧ରେ – ଲକ୍ଷ୍ମଣ ମଧ ବନକୁ ସଂଗେ ଯିବାକୁ ଜଣାଇଲେ । ଭରତ କୌସଲ୍ୟା ସୁମିତ୍ରାଙ୍କର ଭଲ ଶୁଶ୍ରୂଷା କରିବେ ନାହିଁ, ତୁମେ ଘରେ ରହି ସେମାନଙ୍କ ଶୁଶ୍ରୂଷା କର ବୋଲି ରାମ କହିଲେ । ଲକ୍ଷ୍ମଣ କହିଲେ ସେ ଅବଶ୍ୟ ଆପଣଙ୍କ ଭୟରେ କୌସଲ୍ୟାଙ୍କର ସେବା ଶୁଶ୍ରୂଷା କରିବେ । ସେ ଯଦି ଭଲ କାର୍ଯ୍ୟ ନ କରନ୍ତି ତେବେ (ତମହଂ ଦୁର୍ମତିଂ କ୍ରୁରଂ ବଧିଷ୍ୟାମି ନଶଂସୟଃ) ତଥାପି କୌସଲ୍ୟାଙ୍କୁ ଅନ୍ୟକେହି କଣ ପାଳନ କରିବେ ! ତାଙ୍କରି ତ ସହସ୍ର ଗ୍ରାମ ନିଜସ୍ୱ ଅଛି (ଯସ୍ୟାଂ ସହସ୍ରଂ ଗ୍ରାମାଣାଂ ସଂପ୍ରାପ୍ତମୁପଜୀବନଂ) ସେ ମୋର ପରି ସହସ୍ର ଲୋକଙ୍କୁ ପାଳନ

କରିପାରିବେ । ମୋତେ ଅନୁଜ୍ଞା ଦିଅନ୍ତୁ ମୁଁ ଆପଣମାନଙ୍କର ଅନୁଗମନ କରି ସର୍ବାବସ୍ଥାରେ ରକ୍ଷକ ଓ ସେବକ ହୋଇ ରହିବି ।

୩୨ରେ – ରାମ ବଶିଷ୍ଠଙ୍କ ପୁତ୍ର ସୁଯଜ୍ଞଙ୍କୁ ବହୁ ଅଳଙ୍କାରାଦି ଦେଲେ । ସୀତା ତାହାଙ୍କ ଭାର୍ଯ୍ୟାଙ୍କ ପାଇଁ ଅନେକ ଅଳଙ୍କାର ଦେଲେ । ତାପରେ ଅଗସ୍ତ୍ୟ ଓ କୌଶିକ ବ୍ରାହ୍ମଣଙ୍କୁ ରାମ ଅନେକ ଗୋଧନାଦି ଦେଲେ । ତାପରେ ଅନ୍ୟାନ୍ୟ ବହୁ ବ୍ରାହ୍ମଣମାନଙ୍କୁ ଧନ, ବସ୍ତ୍ର, ଶଯ୍ୟା, ଅଳଙ୍କାରାଦି ବିବିଧ ମହାର୍ଘ ପଦାର୍ଥମାନ ଦେଲେ । ପରିଶେଷରେ ତ୍ରିଜଟପିଙ୍ଗଳଗାର୍ଗ୍ୟ ନାମକ ବ୍ରାହ୍ମଣ ରାମଙ୍କଠାକୁ ଯାଇ ଧନ ମାଗିବାରୁ ରାମ ସେହି ବୃଦ୍ଧଙ୍କ ସହିତ ସନ୍ତୋଷରେ ଖିଆଲ କରି ତାହାଙ୍କୁ ସହସ୍ର ଗାଭୀ ପ୍ରଦାନ କଲେ । (ତତ୍ରାସୀଦ୍ ପିଙ୍ଗଳୋଗାର୍ଗ୍ୟଃ ------ ୨୯)

୩୩ରେ – ରାମ ସୀତାଙ୍କ ସହ ପିତାଙ୍କ ଦର୍ଶନାର୍ଥ ଯିବା, ବାଟରେ ପ୍ରଜାମାନେ ରାମଙ୍କୁ ଦେଖି ଦୁଃଖ ପ୍ରକାଶ ପୂର୍ବକ ତାହାଙ୍କ ସଂଗେ ବନକୁ ଯିବାର ଇଚ୍ଛା ପ୍ରକାଶ କରିବା ଉକ୍ତ ଅଛି ।

୩୪ରେ – ସୁମନ୍ତ୍ର ଦଶରଥଙ୍କୁ ରାମ ଦର୍ଶନାର୍ଥ ଆସିବା ଜଣାଇଲେ । ରାଣୀମାନଙ୍କ ସହିତ ରାମଙ୍କୁ ମୁ ଦେଖିବି ବୋଲି ଦଶରଥ କହିଲାରୁ ସୁମନ୍ତ୍ର ରାଣୀମାନଙ୍କୁ ମଧ ଉପସ୍ଥାପିତ କଲେ (ଏ ସ୍ଥଳେ ଉକ୍ତ ଅଛି କି ଦଶରଥଙ୍କ ୭୫୦ ସ୍ତ୍ରୀ ଥିଲେ – ଅର୍ଦ୍ଧସପ୍ତଶତାସ୍ତାସ୍ତୁ --- ୧୩) ପରେ ସୁମନ୍ତ୍ର ରାମଙ୍କୁ ଆଣିଲେ । ଦଶରଥ ଦୂରରୁ ଦେଖି ପୋଟାଳି ଭୂମିରେ ମୂର୍ଚ୍ଛିତ ହୋଇପଡ଼ିଲେ । ହାରାମ ! ଧ୍ୱନି ତୁମୁଳ ହୋଇଉଠିଲା । ସେ ସଂଜ୍ଞା ଲଭିଲା ପରେ ରାମ ଜଣାଇଲେ କି ଆଦେଶ ଦିଅନ୍ତୁ ମୁଁ ଲକ୍ଷ୍ମଣ ଓ ସୀତାଙ୍କ ସହ ବନକୁ ଯାଉଅଛି । ରାଜା କହିଲେ କି (ଅହଂ ରାଘବ କୈକେୟ୍ୟା ବରଦାନେନ ମୋହିତଃ, ଅଯୋଧ୍ୟାୟା ସ୍ତନୋବାଦ୍ୟ ଭବରାଜା ନିଗୃହ୍ୟ ମାମ୍, ୨୬) । ରାମ କହିଲେ ମୁ ଆପଣଙ୍କ ପ୍ରତିଜ୍ଞାନୁସାରେ ଚଉଦ ବର୍ଷ ବନବାସ କରି ପରେ ଆପଣଙ୍କର ପାଦସେବା କରିବି । ତେତେବେଳେ କୈକେୟୀଙ୍କଦ୍ୱାରା ଆଦିଷ୍ଟ ଦଶରଥ କହିଲେ କି (କୈକେୟ୍ୟା ଚୋଦ୍ୟମାନସ୍ତୁ-------- ୩୧) ତାପରେ ଦଶରଥ ଏକା ରହିବା ପାଇଁ ଅନୁରୋଧ କରିଛନ୍ତି । (ଅଦ୍ୟ ତ୍ୱିଦାନିଂ ରଜନୀଂ ----- ୩୩, ୩୪) ରାମ କହିଲେ ମୁ ଏହି ରାଜସୁଖ ଐଶ୍ୱର୍ଯ୍ୟ କିଛି ଇଚ୍ଛାକରୁନାହିଁ । ଏଥିପାଇଁ କୌଣସି ବିଚାର ନାହିଁ । ଆପଣ ଏସବୁ ଭରତଙ୍କୁ ପ୍ରଦାନ କରନ୍ତୁ । ମୁଁ ମଧ ଭରତଙ୍କ ପାଇଁ ଏସବୁ

ତ୍ୟାଗ କଲି । ଆପଣଙ୍କ ସତ୍ୟରକ୍ଷାର୍ଥ ମୁଁ ସୀତାଙ୍କୁ ଏବଂ ପ୍ରାଣଙ୍କୁ ସୁଦ୍ଧା ତ୍ୟାଗ କରିପାରେ । ଏକ୍ଷଣି ବନକୁ ଯାଉଅଛି । ଆପଣ ଶୋକ କରନ୍ତୁ ନାହିଁ (ପୁରଂ ସରାଷ୍ଟ୍ରଂ------ ୫୫, ଇତ୍ୟାଦି) ରାଜା ପୁତ୍ରଙ୍କର ସର୍ବତ୍ୟାଗ ଏବଂ ସଦ୍ୟ ବନଗମନରେ ସତ୍ୱରତା ଦେଖି ମୂର୍ଚ୍ଛିତ ହୋଇପଡ଼ିଲେ । (ଦେବ୍ୟସ୍ତତଃ-------୬୧)

୩୫ରେ – ସୁମନ୍ତ୍ର କୈକେୟୀଙ୍କୁ ଅନେକଧା ନିନ୍ଦା କରିଛନ୍ତି ଏବଂ ଏହି କ୍ରୂର କାର୍ଯ୍ୟରୁ ନିବର୍ତାଇ ଅଛନ୍ତି । (ନୈହ୍ୟକାର୍ଯ୍ୟତମଂ କିଞ୍ଚିଦ୍ ------- ୬, ୧୦, ୧୫, ୧୬, ୧୭, ୧୮, ୧୯, ୨୦, ୨୧, ୨୨, ୨୩, ୨୪, ୨୫, ୨୬, ୩୦, ୩୧ ଇତ୍ୟାଦି)

୩୬ରେ – ରାଜା ଦଶରଥ ରାମଙ୍କ ସଂଗେ ଚତୁର୍ବିଧ ବାହିନୀ ଏବଂ ଗଣିକାଦି ରାଜୋପକରଣମାନ ଯିବାକୁ ଏବଂ ଧାନ୍ୟକୋଷ, ଧନକୋଷ, ନାନାଶସ୍ତ୍ରପାଣି ବ୍ୟାଧ ପ୍ରଭୃତି ସଂଗେଯାନ୍ତୁ – ରାମ ସୁଖରେ ବନରେ କାଳଯାପନ କରନ୍ତୁ, ଭରତ ଦେଶପାଳନ କରୁଥାନ୍ତୁ ବୋଲି ଆଦେଶ କଲେ । ଏହା ଶୁଣି କୈକେୟୀଙ୍କ ମନରେ ଭୟ ହେଲା । ସେ ଦଶରଥଙ୍କୁ ବୋଇଲେ କି ରାମ ତ ସଂଗେ ବନକୁ ଏସବୁ ନେଇ ସୁଖେ ରହିବେ, ଭରତ ଶୁଷ୍କ ରାଜ୍ୟରେ କଣ କରିବ ? ଏବଂ କହିଲେ ଯେ (ତବୈବ ବଂଶେ ସଗରୋ-----୧୬) । ସମସ୍ତେ କୈକେୟୀଙ୍କୁ ନିନ୍ଦା କଲେ । (ଏ ସ୍ଥଳେ ସିଦ୍ଧାର୍ଥ ନାମକ ମନ୍ତ୍ରୀ ଅସମଂଜଙ୍କ ଦୁଷ୍ଟାଚରଣରେ ସମସ୍ତ ପ୍ରଜା ରାଜାଙ୍କୁ ବାଧା ଦେବାରୁ ରାଜା ନିଜ ପୁତ୍ର ଅସମଞ୍ଜଙ୍କୁ ତ୍ୟାଗ କରିଥିବା, ପରଂତୁ ରାମ ତ ସେଭଳି ବ୍ୟକ୍ତି ନୁହନ୍ତି ବୋଲି କହିଥିବା ଉକ୍ତ ଅଛି) ଦଶରଥ କହିଛନ୍ତି କି (ଅନୁବ୍ରଜିଷ୍ୟାମ୍ୟମଦ୍ୟରାମଂ ------ ୩୩) ।

୩୭ରେ – ରାମ ଦଶରଥଙ୍କୁ କହିଲେ, ମୁ ବନବାସୀ ହେବି, ମୋର ରଥ, ଗଜ ବାହିନୀରେ କି ପ୍ରୟୋଜନ, ମୋତେ ଖନିତ୍ର ପିଟକ ଦିଅନ୍ତୁ । ଏହା ଶୁଣି କୈକେୟୀ ଚୀରାଦିଆଣିଦେଲେ । (ସର୍ବାଣ୍ୟେବା x x x ୪, ୫, ୬) । ରାମଲକ୍ଷ୍ମଣ ଚୀରପରିଧାନ କଲେ । ଚୀର କିପରି ପିନ୍ଧିବାକୁ ହୁଏ ସୀତା ଜାଣି ନପାରିଥିବାରୁ ସ୍କନ୍ଧରେ ଧାରଣ କରି ଲଜ୍ଜିତା ହେଲେ । (କୃତ୍ୱାକଣ୍ଠ ଚ ସାଚୀର x x x ୧୩, ୧୫) । ଏ ସ୍ଥଳେ ମାତ୍ର ବଶିଷ୍ଠଙ୍କ କଥା ଲେଖାଅଛି । ସୀତା ଚୀର ଗ୍ରହଣ କରିବା ଦେଖି ବଶିଷ୍ଠ କୈକେୟୀଙ୍କୁ

ଭର୍ତ୍ସନା କରିଅଛନ୍ତି ଏବଂ କହିଅଛନ୍ତି କି (ଆତ୍ମହି ଦାରାଃ ସର୍ବେଷାଂ x x ୨୪, ୨୫, ୨୬, ୨୭, ୨୮, ୨୯, ୩୦, ୩୧ ଇତ୍ୟାଦି) ତଥାଚ ସୀତାଙ୍କୁ ଚୀର ପରିବର୍ତ୍ତରେ ମହାର୍ଘ ବସ୍ତ୍ରମାନ ଏବଂ ଅଳଙ୍କାରମାନ ଦେବାପାଇଁ ମଧ୍ୟ ବଶିଷ୍ଠ କହିଅଛନ୍ତି ।

୩୮ରେ – ସମସ୍ତ ପ୍ରଜା ଦଶରଥଙ୍କୁ ଧିକ୍କାର କରିବାରୁ ଦଶରଥ ଜୀବିତାଶା ତ୍ୟାଗ କରିଅଛନ୍ତି । ଏବଂ କହିଛନ୍ତି କି (କୈକେୟୀ କୁଶଚୀରେଣ ସୀତା ଗନ୍ତୁ ମର୍ହତି – ଇତ୍ୟାଦି) ସୀତାଙ୍କ ଉଦ୍ଦେଶରେ ଦୁଃଖ କରି ଦଶରଥ ମୂର୍ଚ୍ଛିତ ହେଲେ । ପରିଶେଷରେ ରାମ କୌସଲ୍ୟାଙ୍କୁ କୌଣସି ପ୍ରକାର ଦୁଃଖ ଦେବେ ନାହିଁ ବୋଲି ପିତାଙ୍କୁ ଅନୁରୋଧ କଲେ । (ଇମାଂମହେନ୍ଦ୍ରୋପମ x x x ୧୮)

୩୯ରେ – ରାମଙ୍କ ଏପରି ଦୁରବସ୍ଥା ଦେଖି ଦଶରଥ ପୁନଃପୁନଃ ଅଚେଷ୍ଟ ହୋଇପଡ଼ିଲେ । ପରେ ସଚେଷ୍ଟ ହୋଇ ଦୁଃଖେ କହିଲେ ଯେ ''ଔକବାହ୍ୟଂ ରଥଂଯୁକ୍ତା ------- ୧୦'', ରଥାନୟନରେ କହିଲେ (ବାଚାଂସି ଚ ମହାର୍ହାଣି--- ୧୫) । ତାପରେ ଶ୍ୱଶ୍ରୁ ସୀତାଙ୍କୁ ଅନେକ ଉପଦେଶ ଦେଲେ – ସୀତା ମଧ୍ୟ ପତିସେବା ସମ୍ବନ୍ଧେ କହିଲେ । ରାମ ମଧ୍ୟ କୌସଲ୍ୟାଙ୍କଠାରୁ ଏବଂ ୩୫୦ ଅନ୍ୟାନ୍ୟ ମାତାଙ୍କଠାରୁ (ତ୍ରୟଃଶତଶତାର୍ଦ୍ଧାହି ଦଦର୍ଶାବେକ୍ଷ ମାତରଃ---- ୩୬) ବିଦାୟ ନେଲେ । ତେତେବେଳେ ସେମାନେ ଉଚ୍ଚରେ କ୍ରନ୍ଦନ କଲେ । (ମୁରଜପଣବ ମେଘ----) ।

୪୦ରେ – ରାମାଦି ଦଶରଥାଦିଙ୍କୁ ପ୍ରଣାମ କଲେ । ସୁମିତ୍ରା ଲକ୍ଷ୍ମଣଙ୍କୁ କହିଲେ ଯେ ୪ ଗୋଟି ଶ୍ଳୋକ ମାତ୍ର (ସୃଷ୍ଟସ୍ତ୍ୱଂ ବନବାସାୟ ----- ୫, ୬, ୭, ୮) । ରଥରେ ଅଳଙ୍କାର, ବସ୍ତ୍ର, ଅସ୍ତ୍ରଶସ୍ତ୍ରାଦି ରଖିଲେ (ବନବାସଂହି ସଂଖ୍ୟାୟ ------- ୧୫, ୧୬) । ରାମ ରଥରେ ଯାତ୍ରା କଲେ । ସମଗ୍ର ଅଯୋଧ୍ୟାଆବାଳବୃଦ୍ଧ ତାଙ୍କୁ ବିଳାପ ପୂର୍ବକ ଅନୁଧାବନ କଲେ । ସ୍ତ୍ରୀମାନଙ୍କ ସହିତ ଦଶରଥ ବାହାରକୁ ଆସି କ୍ରନ୍ଦନ କରି ମୋହିତ ହୋଇପଡ଼ିଲେ । ତେତେବେଳେ ଘୋର ହଳହଳା ଶବ୍ଦ ହେଲା । ରାମମାତା ଶୋକରେ ଅନୁଧାବନ କଲେ (ତଥା ରୁଦନ୍ତି କୌସଲ୍ୟାଂ-----୪୪, ୪୬) ।

୪୧ରେ – ରାମାନୁସ୍ମରଣରେ ରାଜାବରୋଧରେ କ୍ରନ୍ଦନ ହୋଲାହଳ ଶୁଣି ଦଶରଥ ସର୍ବକାର୍ଯ୍ୟ ତ୍ୟାଗ କରିବା, ଅଯୋଧ୍ୟାରୁ ରାମ ବାହାରିଯିବା ମାତ୍ରକେ

ମନୁଷ୍ୟ, ପଶୁ, ପକ୍ଷୀ ବୃକ୍ଷାଦିର ମଧ୍ୟ ଦୁରବସ୍ଥା ଘଟିଲା; ଗ୍ରହନକ୍ଷତ୍ରାଦି ତେଜ ମଳିନ ହେଲା (ସର୍ବଂ ପର୍ଯ୍ୟାକୁଳଂ ଜଗତ୍---୧୮) ଏ ଦୁରବସ୍ଥା ବର୍ଣ୍ଣିତ ଅଛି (ତତସ୍ତ୍ୱୟୋଧ୍ୟା--- ୨୧)।

୪୨ରେ – ଦଶରଥ ମୋହିତ ହେବା, ଚେତନା ପରେ କୈକେୟୀଙ୍କୁ ଭର୍ତ୍ସନା ପୂର୍ବକ ତ୍ୟାଗ କରିବା, ରାମଙ୍କ ବନବାସ ଦୁଃଖକୁ ଅନୁଶୋଚନା କରିବା, ରାଜା କୌସଲ୍ୟାଙ୍କ ପୁରକୁ ବାହାରିଯିବା (କୌସଲ୍ୟାଃ ଗୃହଂ----୨୭,୨୯) ଏପରି ଦୁଃଖରେ ରାତ୍ରି ପ୍ରବେଶ ହେଲା। ଅର୍ଦ୍ଧରାତ୍ରିରେ ଦଶରଥ କୌସଲ୍ୟାଙ୍କୁ କହିଲେ କି (ଅଥ ରାତ୍ର୍ୟାଂ ପ୍ରବୃତାୟାଂ--- ୩୩, ୩୪, ୩୫)।

୪୩ରେ – କୌସଲ୍ୟା ଦଶରଥଙ୍କ ନିକଟରେ କୈକେୟୀ ରାମଙ୍କୁ ବନକୁ ପଠାଇଦେଇ ଦୁଃଖ ଦେବା ଏବଂ କେବେ ରାମ ପୁନରାବୃତ୍ତ ହୋଇ ସୁଖ ଦେବେ ଏହି କଥାର ଅନୁଶୋଚନାରେ ବିଳାପ କରିଅଛନ୍ତି।

୪୪ରେ – ସୁମିତ୍ରା କୌସଲ୍ୟାଙ୍କୁ ଆଶ୍ୱାସିତା କରିବାପାଇଁ ରାମ ବନକୁ ଯାଇ ସତ୍ୟରକ୍ଷାର୍ଥ ଉଚିତ କାର୍ଯ୍ୟ କରିଅଛନ୍ତି, ତାଙ୍କପାଇଁ ଶୋଚନା କରିବା ଅନାବଶ୍ୟକ, ସେ ଗୃହରେ ଥିଲା ପରି ବନରେ ସୁଖେ ରହିବେ, ଲକ୍ଷ୍ମଣ ତାଙ୍କ ଅନୁବର୍ତ୍ତୀ ଅଛନ୍ତି, କୌଣସି ଭୟ ବା ଚିନ୍ତା ନାହିଁ, ସେ ପୁଣି ଅଚିରେ ପ୍ରତ୍ୟାବୃତ୍ତ ହୋଇ ଅଭିଷିକ୍ତ ହେବେ, ତୁମେ ଶୋକ ତ୍ୟାଗ କର, ତୁମେ ସିନା ଅନ୍ୟମାନେ ଦୁଃଖିତ ହେଲେ ସାନ୍ତ୍ୱନା ଦେବା ଉଚିତ, ତୁମେ ଏପରି ଦୁଃଖିତ ହେବା ଉଚିତ ନୁହେ, ଇତ୍ୟାଦି କଥା କହିଅଛନ୍ତି।

୪୫ରେ – ରାମଙ୍କୁ ଅନୁଗମନ କରି ଯେତେ ପ୍ରଜା ଯାଇଥିଲେ ସେମାନଙ୍କୁ ରାମ ନିଜ ସନ୍ତାନ ପ୍ରାୟ ମଣି ନାନା ପ୍ରକାର ପ୍ରବୋଧ ଦେଇ ନିବର୍ତ୍ତାଇଲେ ସୁଦ୍ଧା ସେମାନେ ପ୍ରତ୍ୟାବୃତ୍ତ ହେଲେ ନାହିଁ। ତାପରେ ବୃଦ୍ଧମାନେ ରାମଙ୍କ ପ୍ରତି ତନ୍ମନସ୍କ ହୋଇ ରଥବାହକ ଘୋଟକମାନଙ୍କୁ ମଧ୍ୟ ରାମଙ୍କ ପ୍ରତ୍ୟାବୃତ୍ତି ନିମନ୍ତେ ପ୍ରାର୍ଥନା କଲେ। ତେତେବେଳେ ରାମ ରଥରୁ ଅବତରି କହିଲେ (ଏବମାର୍ତ୍ତ ପ୍ରଳାପାଂସ୍ତାଂ ବୃଦ୍ଧଂ---- ୧୭, ୧୮, ୧୯)। ତାପରେ ବ୍ରାହ୍ମଣମାନେ ନିଜ ଧୃତ ବୈଦିକାଗ୍ନି ଓ ବୈଦିକ ଛତ୍ର ପ୍ରଭୃତିକୁ ପ୍ରଦର୍ଶାଇ ନାନା ପ୍ରକାର କହି ରାମଙ୍କୁ ନିବର୍ତ୍ତାଇବାର ଚେଷ୍ଟା କଲେ। ଏପରି ପଦବ୍ରଜରେ ଯାଉଁ ଯାଉଁ ସମସ୍ତେ ତମସାତୀରରେ ଉପଗତ ହେଲେ (ତତଃ ସୁମନ୍ତ୍ରୋଽପି---)।

୪୬ରେ – ରାମ ପିତାମାତା ଏବଂ ଅଯୋଧ୍ୟାର ଭାବନା କରିଛନ୍ତି । ଭରତଙ୍କ ସୁଗୁଣରେ ମୁ ବିଶ୍ୱାସ କରି ପିତାମାତାଙ୍କର ଶୋଚନା କରୁନାହିଁ । ଅବଶ୍ୟ ଭରତ ପିତାମାତାଙ୍କୁ ଆଶ୍ୱାସନା କରିବେ ବୋଲି ରାମ ଲକ୍ଷ୍ମଣଙ୍କୁ କହିଛନ୍ତି । ତା ପରେ ସାୟଂ ସନ୍ଧ୍ୟାଦି କଲେ । ରାମଙ୍କପାଇଁ ଲକ୍ଷ୍ମଣ ଓ ସୁମନ୍ତ୍ର ଶଯ୍ୟା ସଜାଇଲେ । ଏ ସ୍ଥଳେ ପୌରଜନ ସୁପ୍ତ ଥିଲାବେଳେ ସେମାନଙ୍କୁ ଛାଡ଼ି ରାମାଦି ଅରଣ୍ୟରେ ପ୍ରବେଶିଲେ – ରାମ ସୂତଙ୍କୁ କହିଲେ ରଥ ପ୍ରଥମେ ଉତ୍ତର ଦିଗକୁ ନେଇ ପରେ ଅନ୍ୟଆଡ଼େ ଗନ୍ତବ୍ୟ ମାର୍ଗରେ ଚଳାଅ, ଯେପରି ପୌରଜନମାନେ ମୋର ଯିବାବାଟ ଜାଣି ନ ପାରିବେ । ସୂତ ସେପରି କଲେ (ତତଃ ସମାସ୍ଥାୟ ରଥଂ----୩୪) ।

୪୭ରେ – ପୌରଜନ ପ୍ରଭାତରୁ ଉଠି ରାମଙ୍କୁ ନଦେଖି ବହୁ ବିଳାପ କଲେ । ମାର୍ଗକୁ ଅନୁସରି ବହୁଦୂର ଗଲେ । ତାପରେ ମାର୍ଗଭଂଗ ହେବା ଦେଖି ଫେର ବାହୁଡ଼ି ଆସିଲେ । ଅଗ୍ନିରେ ଦେହତ୍ୟାଗ କରିବାର ସଂକଳ୍ପ ମଧ କରିଥିଲେ । ପରିଶେଷରେ ବଡ଼ ଦୁଃଖିତ ହୋଇ ଅଯୋଧ୍ୟାକୁ ବାହୁଡ଼ିଲେ (ରାମଗମନର ଦ୍ୱିତୀୟ ଦିନ ପୌରଜନମାନେ ଅଯୋଧ୍ୟାକୁ ଆସିଲେ)

୪୮ରେ – ରାମଙ୍କ ବିବାସନରେ ଅଯୋଧ୍ୟାବାସୀଙ୍କ ନିରାନନ୍ଦକ ଅବସ୍ଥା ବର୍ଣ୍ଣନ (ପୁତ୍ରଂ ପ୍ରଥମଜଂ ଲବ୍ଧ୍ୱା ଜନନୀ ନଭ୍ୟନନ୍ଦତ----୫) ଏହିକଥା ବହୁସ୍ଥଳେ ଲେଖାଅଛି । ଏଥିରୁ ସେମାନଙ୍କର ମନୋଦୁଃଖର ପରିମାଣ ଜ୍ଞାତବ୍ୟ । ପୁରୁଷ ଓ ସ୍ତ୍ରୀ ପ୍ରଜାମାନେ ରାମଙ୍କଠାରୁ ଯାଇ ସୁଖଶାନ୍ତି ପାଇବାକୁ ଭାବନା କରିବା, ରାମଙ୍କ ଗୁଣାନୁବାଦନ କରିବା, ସମସ୍ତେ ନିଜନିଜର ବ୍ୟାପାର ତ୍ୟାଗ କରିବା ଉକ୍ତ ଅଛି । (ପ୍ରଶାନ୍ତ ଗୀତୋତ୍ସବ----- ୩୭) ।

୪୯ରେ – ରାମ ଯାଉଁ ଯାଉଁ ବାଟରେ ଜନପଦବାସୀଙ୍କ ମୁଖରୁ ଦଶରଥଙ୍କ ଓ କୈକେୟୀଙ୍କ ଧିକ୍କାର ଶୁଣିବା, ତାପରେ (ତତୋ ବେଦଶ୍ରୁତିଂ ନାମ----- ୧୦, ୧୧, ୧୨) ଏ ସ୍ଥଳେ ରାମ ସୁମନ୍ତ୍ରଙ୍କୁ କହିଛନ୍ତି କି, ମୁ କେବେ ପ୍ରତ୍ୟାବୃତ୍ତ ହୋଇ ସରଯୁ ତୀରସ୍ଥ ପୁଷ୍ପିତବନରେ ମୃଗୟା କରିବି, ଇତ୍ୟାଦି ।

୫୦ରେ – ରାମ ବିଶାଳା କୋଶଳଦେଶ ଉତୀର୍ଣ୍ଣ ହୋଇ ଅଯୋଧ୍ୟାକୁ ପ୍ରାର୍ଥନା କଲେ କି ମୁଁ ଯେପରି ବନବାସରୁ ପ୍ରତ୍ୟାବୃତ୍ତ ହୋଇ ମୋର ପିତୃମାତୃ ସହିତ ଅଯୋଧ୍ୟାକୁ ସେବା କରିବି । ତାପରେ ଅନୁଗତ ଜାନପଦମାନଙ୍କୁ ଆଶ୍ୱାସିତ



କରି କହିଲେ । କ୍ରମେ ଗଙ୍ଗା ତୀରରେ ପ୍ରବେଶିଲେ । (ଏ ସ୍ଥଳେ ଗଙ୍ଗାଙ୍କ ବର୍ଣ୍ଣନା ଉକ୍ତ ଅଛି । ରାମ ଇଙ୍ଗୁଦୀ ବୃକ୍ଷ ମୂଳକୁ ଗଲେ । ଏ ସମୟେ ନିଷାଦାଧିପତି ଗୁହ ଆସିଲେ (ତମାର୍ତ୍ତଃ ସଂପରିଷ୍ୱଜ୍ୟ ଗୁହୋ ରାଘବମବ୍ରବୀତ----- ୩୬) ରାମଙ୍କୁ ଆଲିଙ୍ଗନ କଲେ ? ଟୀକାରେ କଣ ଅଛି ଦେଖିବୁଁ । ଗୁହଙ୍କ ସଂଗେ ଆଳାପ କରୁଁ କରୁଁ ରାତ୍ରି ହେଲା । ସନ୍ଧ୍ୟା ବନ୍ଦନା କରିଲେ । ରାତ୍ରି ସେଠାରେ ରହିଲେ ।

୫୧ରେ – ଅନିଦ୍ରିତ ଲକ୍ଷ୍ମଣ ଏବଂ ଗୁହଙ୍କର ରାମଙ୍କୁ ନେଇ ନାନାବିଧ କଥାବାର୍ତ୍ତା ଉକ୍ତ ଅଛି ।

୫୨ରେ – ରାମଙ୍କ ଆଦେଶରେ ଗଙ୍ଗା ପାର ହେବା ପାଇଁ ଗୁହ ସୁଦୃଢ଼ ନାବ ଠିକଣା କରିଦେଲେ । ଏ ସ୍ଥଳେ ରାମ ସୁମନ୍ତ୍ରଙ୍କୁ ଅଯୋଧ୍ୟା ପ୍ରତ୍ୟାବୃତ୍ତ ହେବାକୁ କହିଅଛନ୍ତି । (ତତୋଽବ୍ରବିଦ୍ ଦାଶରଥିଃ----୧୩) । ରାମଙ୍କ ବିଯୋଗରେ ସୁମନ୍ତ୍ର ଦୁଃଖ ପ୍ରକାଶ କଲେ । ରାମ ସୁମନ୍ତ୍ରଙ୍କୁ ପିତାଙ୍କୁ ସାବଧାନରେ ରକ୍ଷା କରିବ, ପିତାମାତାଙ୍କୁ ନମସ୍କାର କହିବ, ଇତ୍ୟାଦି ନାନା କଥା କହିଅଛନ୍ତି । ଭରତଙ୍କ ଠାକୁ ମଧ ଭଲକରି ରାଜ୍ୟ ପାଳିବ ବୋଲି କହି ପଠାଇଅଛନ୍ତି । ମୁଁ ଆପଣ ବିନା କିପରି ଶୂନ୍ୟ (ରଥ) ଧରି ଅଯୋଧ୍ୟାକୁ ଯିବି ବୋଲି ସୁମନ୍ତ୍ର ଅନେକ ଭାବି-ଦୁଃଖ ପ୍ରକାଶ କରିଅଛନ୍ତି । ତୁମେ ମୋତେ ବନକୁ ସଂଗେ ନନେଲେ ଅଶ୍ୱାଦିସହ ମୁଁ ଅଗ୍ନିରେ ପ୍ରବେଶ କରିବି ବୋଲିଛନ୍ତି । (ଯଦିମେ ଯାଚମାନସ୍ୟ ---୪୯) ଏବଂ ଏହା ପୂର୍ବେ କହନ୍ତନ୍ତି କି (ଅହଂ ବୀରାପି ବକ୍ଷାମୀ -----୪୫ – ଏହା ଟୀକାରେ



କଣ ଅଛି ପଟ୍ଟନାୟକ ରାମାୟଣରେ କଣ ଅଛି ଦେଖିବୁଁ) । ରାମ ସୁମନ୍ତ୍ରଙ୍କୁ ଏବଂ ଗୁହଙ୍କୁ ନାନାକଥାରେ ଆଶ୍ୱାସୀତ

x x x x x x x x

୫୫ରେ – ରାମାଦିଙ୍କ ସଂଗେ ମୁନି (ଭରଦ୍ୱାଜ) ପିତାଙ୍କ ପରି ଖଣ୍ଡେ ଦୂର ଗଲେ । (ପ୍ରସ୍ଥିତାଂ ଚୈବ ତାଂ ପ୍ରେକ୍ଷପିତାପୁତ୍ରାନ୍ନିବାନ୍ୱେଗାତ୍ --- ୨) ଭରଦ୍ୱାଜ ମାର୍ଗ ବତାଇଲେ କି – ପଶ୍ଚିମମୁଖୀ କାଳିନ୍ଦୀ ତୀର ବାଟେ ଯାଇ ଅଂଶୁମତୀ ନଦୀ ତରିବ (ତତ୍ପ୍ଲୁୟୀ ପ୍ଲବଂହୃତ୍ୱା ତରତୀସୁମତୀଂ ନଦୀଂ – ୬) ସେଠାରେ ଶ୍ୟାମ ବଟବୃକ୍ଷ ଦେଖିବେ, ସୀତା ପ୍ରଣାମ କରି ଶୁଭବାଞ୍ଛା କରିବେ; ତାର କ୍ରୋଶକ ପରେ ଯମୁନା ତୀରରେ ନୀଳବନ ଦେଖିବେ ।

କାଳିନ୍ଦୀ ପାର ହେଲେ ତେତେବେଳେ ସୀତା ଯମୁନାଙ୍କୁ ଜଣାଇଲେ (ବେ) କି ମୁଁ ପତିଙ୍କ ଦେବରଙ୍କ ସହ ସୁଖରେ ବନବାସରୁ ପ୍ରତ୍ୟାବର୍ତ୍ତ ହେଲେ ବହୁ ଉପହାର ଓ ସୁରାସହ ତୁମକୁ ପୂଜା କରିବି । ଅଂଶୁମତୀ ପାର ହେଲେ, ଶ୍ୟାମ ବଟକୁ ଗଲେ, ସୀତା ପ୍ରଣାମ କଲେ, ତାପରେ ବାଟ ଚାଲିଲେ, ଯମୁନା ବନରେ ସେ ରାତ୍ରି ରହିଲେ ।

୫୬ରେ – ପ୍ରଭାତରୁ ନିତ୍ୟକୃତ୍ୟ କରି ପ୍ରସ୍ଥାନ କଲେ – ଯାଉଁ ଯାଉଁ ରାମ ସୀତାଙ୍କୁ ବନଶୋଭା ପ୍ରଦର୍ଶାଇ ଅଛନ୍ତି, କ୍ରମେ ଚିତ୍ରକୂଟରେ ପ୍ରବେଶିଲେ, ଏଠାରେ ବାଲ୍ମୀକିଙ୍କୁ ଦର୍ଶନ କଲେ (ଇତି ସୀତା ଚ ରାମଶ୍ଚ----୧୬) ବାଲ୍ମୀକି ଆସନାଦି ଦେଇ ସତ୍କାର କଲେ । ରାମାଦେଶରେ ଲକ୍ଷ୍ମଣ କାଷ୍ଠାଦିରେ ପର୍ଣ୍ଣଶ୍ୟାଳା ନିର୍ମାଣ କଲେ । ରାମାଦେଶରେ ଲକ୍ଷ୍ମଣ କୃଷ୍ଣମୃଗ ମାରି ଅଗ୍ନିରେ ପକ୍ୱ କରିଲେ । ରାମ ତଦ୍ ଦ୍ୱାରା ବୈଦିକ କ୍ରିୟା କରି ଶ୍ୟାଳା ପ୍ରତିଷ୍ଠା କଲେ । (ସୁରମ୍ୟମସାଦ୍ୟତୁ ଚିତ୍ରକୂଟଂ----୩୮)

୫୭ରେ – ତୃତୀୟ ଦିବସ ସାୟାହ୍ନ ସମୟରେ ସୁମନ୍ତ୍ର ଯାଇ ଅଯୋଧ୍ୟାରେ ପ୍ରବେଶିଲେ । (ତତଃ ସାୟାହ୍ନ ସମୟେ----୫) ପ୍ରଜାମାନେ ଆସି ରାମଙ୍କ ସମ୍ବାଦ ପଚାରି ଉତ୍ତର ଶୁଣି ବଡ଼ ଦୁଃଖିତ ହେଲେ । ଦଶରଥ ଏକଥା ସୁମନ୍ତ୍ର ମୁଖରୁ ଶୁଣି ମୂର୍ଚ୍ଛିତ ହୋଇପଡ଼ିଲେ । କୌସଲ୍ୟା ପତିଙ୍କୁ ଆଶ୍ୱାସନା କରି କରି ମୋହିତ ହୋଇପଡ଼ିଲେ । ନାରୀ ସମସ୍ତେ କ୍ରନ୍ଦନ କଲେ ।

୫୮ରେ – ରାଜା ରାମଙ୍କ ଦୂରବସ୍ଥା ଶୋଚନାକରି ସୁମନ୍ତ୍ରଙ୍କୁ ପଚାରିଲେ । ସୁମନ୍ତ୍ର ରାମଙ୍କର ସମସ୍ତଙ୍କ ପ୍ରତି ପ୍ରଣାମାଦି ଜଣାଇଲେ ।

୫୯ରେ – ରାଜା ସୁମନ୍ତ୍ରଙ୍କୁ ଆଉ ସମ୍ବାଦ କଣ କହ ବୋଲିବାରୁ ସେ ସବିସ୍ତରେ କହିଲେ କି ରାମ ଲକ୍ଷ୍ମଣ ଜଟାବାନ୍ଧି ପ୍ରୟାଗାଭିମୁଖରେ ଗଲେ । (ଗୁହେନା ସାର୍ଥଂ ତତ୍ରୈବ----୭) (ଦିନତ୍ରୟରେ ତ ବାହୁଡ଼ି ଆସିଲେ, ବହୁ ଦିବସ

ଅପେକ୍ଷା କଲେ କିପରି ? ଟିକା ଦେଖିବୁଁ) ରାମଙ୍କ ଦୁଃଖରେ ବୃକ୍ଷଲତା ନଦୀ ପ୍ରଭୃତିର ମଧ ଦୁଃଖଶୋଷଣ ଦଶାପ୍ରାପ୍ତ ହେଲା । ମୁଁ ଆସି ଦେଖିଲି ଯେ ଅଯୋଧ୍ୟାରେ ନରନାରୀ ପ୍ରଭୃତି ସମସ୍ତେ ଦୁଃଖରେ ବିଶୀର୍ଣ୍ଣ, (ନିରାନନ୍ଦା ମହାରାଜ---୨୦) ଦଶରଥ କହିଲେ ମୁଁ ମନ୍ତ୍ରୀମାନଙ୍କ ସହ, ପୌରଜନଙ୍କ ସହ ମନ୍ତ୍ରଣା କରି ସ୍ତ୍ରୀ ହେତୁରୁ କିପରି ସର୍ବନାଶ କଥା

ସହସା କହିଦେଲି ଅଥବା ଏହା ନିୟତି ନିର୍ଦ୍ଦିଷ୍ଟ କୂଳକ୍ଷୟ କାର୍ଯ୍ୟ । ରାମ ବିନା ମୁଁ କ୍ଷଣେ ଜିଇଁପାରିବି ନାହିଁ । (ଅଥବାପି ମହାବାହୁଃ---୨୭) ଏପରି ବିଳାପ କରିକରି ଶୟନରେ ମୂର୍ଚ୍ଛିତ ହୋଇପଡ଼ିଲେ ।

୬୦ରେ — କୌସଲ୍ୟା ମଧ ମୋତେ ନେଇ ରାମଙ୍କଠାରେ ଛାଡ଼ିଦିଅ ବୋଲି ବିଳାପ କଲେ । ସୁମନ୍ତ୍ର ପ୍ରବୋଧ ଦେଇ କହିଲେ ରାମାଦି ନଗରରେ ଥିଲାପରି ସୁଖରେ ଅଛନ୍ତି । ସୀତା ନାନା ସୁଦୃଶ୍ୟ ଦେଖି ଆନନ୍ଦରେ ରାମଙ୍କ ସହ ବିହାର କରୁଛନ୍ତି । ଅଯୋଧ୍ୟାକୁ କେହି ମନେପକାଉ ନାହାନ୍ତି । ପରିଶେଷରେ କୌସଲ୍ୟା ସୀତାଙ୍କ ଉଦ୍ଦେଶ୍ୟରେ ଦୁଃଖ ପ୍ରକାଶ କରିଛନ୍ତି ।

୬୧ରେ — କୌସଲ୍ୟା ରାଜାଙ୍କଠାରେ ସୀତା ଉଦ୍ଦେଶ୍ୟରେ ଦୁଃଖ ପ୍ରକାଶ କରିଚନ୍ତି ଏବଂ କହିଚନ୍ତି (ଯଦି ପଞ୍ଚଦଶେ ବର୍ଷେ ---୧୧) ଏହି କଥା ନେଇ ରାମଙ୍କ ଭାବି ଅବସ୍ଥା ସମ୍ବନ୍ଧେ ଏବଂ ତାହାଙ୍କ ଗୁଣ ସମ୍ବନ୍ଧେ କୌସଲ୍ୟା ନାନାକଥା କହିଚନ୍ତି ।

୬୨ରେ — ଦଶରଥ ଚେତନା ପାଇ ନିଜର ଅକାର୍ଯ୍ୟକୁ ସ୍ମରଣ କରି କୌସଲ୍ୟାଙ୍କୁ ଏହା ପ୍ରାର୍ଥନା କରିଚନ୍ତି କି (ପ୍ରସାଦୟେ ତ୍ୱାଂ କୌସଲ୍ୟେ----୭, ୮, ୯) ଏପରି ବଚନ ଶୁଣି କୌସଲ୍ୟା କରୁଣ ସ୍ୱରରେ ପତିଙ୍କ ପାଦଧରି କ୍ଷମା ପ୍ରାର୍ଥନାରେ କେତେକ କହିଲେ । (ବନବାସାୟ ରାମସ୍ୟ ପଞ୍ଚରାତ୍ରୋଽଦ୍ୟଗଣ୍ୟତେ---୧୮) ଏହିପରି ଦୁଃଖ ଆଳାପରେ ସନ୍ଧ୍ୟା ହେଲା । ରାଜା ଶୋଇବାକୁ ଇଛାକରି ଶୋଇଲେ । (ଏବଂ ହି କଥାୟନ୍ତ୍ୟାସ୍ତୁ----୨୦, ୨୧)

ସମୟ



୬୩ରେ — ପୂର୍ବ ଅଧ୍ୟାୟରେ ଏ ସମୟକୁ ରାମବନବାସର ପଞ୍ଚରାତ୍ରି ହୋଇଥିବା ଉକ୍ତ ଅଛି, ତାପର ଅଧ୍ୟାୟରେ ସେଦିନ କେବଳ ଦଶରଥ କ୍ଷଣେ ନିଦ୍ରା କଲାପରେ ଅର୍ଦ୍ଧରାତ୍ର ସମୟରେ ରାମ ପ୍ରବ୍ରଜନ କଥା ଭାବି ଦୁଃଖିତ ହେବା ସନ୍ଦର୍ଭ ଛଅ ରାତ୍ରି ବୋଲି ଉକ୍ତ ଅଛି । ଏହାର ସମାଧାନ କିପରି ? ଟିକାରେ ଏବଂ ଅନୁବାଦରେ କଣ ଅଛି ? (ସ ରାଜା ରଜନୀଂ ଷଷ୍ଠୀଂ ରାମେ ପ୍ରବ୍ରାଜିତେ ବନଂ---୪ ଇତ୍ୟାଦି) ରାଜା କୌସଲ୍ୟାଙ୍କୁ ବିବାହ ହେବା ପୂର୍ବେ ଯୁବରାଜ ଥିଲାବେଳେ ମୃଗୟା କଲାବେଳେ ଯେଉଁ ଋଷିକୁମାରଙ୍କୁ ନିହତ କରିଥିଲେ ସେହି ଚରିତଟିକୁ କୌସଲ୍ୟାଙ୍କୁ କହିଅଛନ୍ତି ।

୬୪ରେ – ଏଥିରେ ମଧ୍ୟ ପୂର୍ବ ଚରିତ ଉକ୍ତ ଅଛି, ଶ୍ୟାପ ଉକ୍ତ ଅଛି, ଦଶରଥ ପ୍ରାଣତ୍ୟାଗ ଉକ୍ତ ଅଛି । ଦଶରଥ କହିଲେ କି ଋଷିଶ୍ୟାପ ଦେଲେ ଯେ (ପୁତ୍ର ବ୍ୟସନଜଂ ଦୁଃଖଂ---୫୫, ୬୬, ୬୭, ୭୩, ୭୯)

୬୫ରେ – ବହୁ ସମୟ ପର୍ଯ୍ୟନ୍ତ ଦଶରଥ ଶଯ୍ୟାରୁ ନଉଠିବା ଦେଖି ପତ୍ନୀମାନେ ଯାଇ ଉଠାଇ ଦେଖିଲେ ଯେ ସେ ମୃତ ହୋଇ ପଡ଼ିଚନ୍ତି । ସମସ୍ତେ କ୍ରନ୍ଦନ କଲେ ।

୬୬ରେ – କୌସଲ୍ୟା ବହୁ ବିଳାପ ଏବଂ ସହଗମନାର୍ଥ ନିଶ୍ଚୟ କରା । ପୁତ୍ରବିନା ଅନ୍ତ୍ୟେଷ୍ଟି ହେବ ନାହିଁ ବୋଲି ତୈଳଦ୍ରୋଣୀରେ ଶବରଖିବା । ସ୍ତ୍ରୀମାନେ ସାୟଂ ପର୍ଯ୍ୟନ୍ତ ଏପରି ବିଳାପ କଲେ । (ଗତେତୁ ଶୋକାତ୍ ତ୍ରିଦିବଂ--୨୬)

୬୭ରେ – ପରଦିନ ପ୍ରାତଃକାଳରେ ରାଜକର୍ମୀ x x x ଓ ବଶିଷ୍ଠାଦି ବ୍ରାହ୍ମଣଗଣ ସଭା କରି ରାଜାଙ୍କର ବିସ୍ତର ଦୁର୍ଦ୍ଦଶାଦାନପୂର୍ବକ ଏବଂ ରାଜ ମହାତ୍ମ୍ୟ କଥନ । ରାଜପୁତ୍ରଙ୍କୁ ରାଜି କରିବା ସ୍ଥିର କରା ।

୬୮ରେ – ବଶିଷ୍ଠ ଆଦେଶ କଲେ (ତତ୍ଶୀଘ୍ରଂ ଜବନା ଦୂତାଃ x x ୩, ୫) (ଏ ସ୍ଥଳେ ଦୂତମାନେ ଯେଉଁ ଯେଉଁ ଦେଶ ଡେଇଁ କେକୟ ବା ଗିରିବ୍ରଜକୁ ଯାଇଥିଲେ ତାହା ଉକ୍ତ ଅଛି) । (ଗିରିବ୍ରଜଂ ପୁରବରଂ ---୨୧,୨୨)

୬୯ରେ – ଯେଉଁ ଦିନ ରାତ୍ରିରେ ଦୂତମାନେ ପ୍ରବିଷ୍ଟ ହେଲେ ସେ ରାତ୍ରିରେ ଭରତ ଦୁଃସ୍ୱପ୍ନ ଦେଖି କ୍ଷୁଭିତ ହେବାର ଉକ୍ତ ଅଛି ।

୭୦ରେ – ଦୂତମାନେ ରାଜଦର୍ଶନ କରି ଭରତଙ୍କୁ ବଶିଷ୍ଠ ଆଦେଶମାନ ଜଣାଇଲେକି (ପୁରହିତସ୍ତ୍ୱଂ କୁଶଳଂ ପ୍ରାହ--- ୩, ୪, ୧୨) ଭରତ ଶତ୍ରୁଘ୍ନ ସହ କେକୟରୁ ପ୍ରସ୍ଥାନ କଲେ ।

୭୧ରେ – ଭରତ କେକୟରୁ ଅଯୋଧ୍ୟା ଆସିବା ମାର୍ଗରେ ଯେ ଯେ ସ୍ଥାନ ଦେଇ ଆସିଲେ ତାହା ଉକ୍ତ ଅଛି । ଭରତ ବାଟରେ ସପ୍ତରାତ୍ରି ପର୍ଯ୍ୟନ୍ତ ପ୍ରୟାଣ କରି ଅରୁଣୋଦୟ ସମୟେ ଅଯୋଧ୍ୟାକୁ ଆସିଥିବା ଉକ୍ତ ଅଛି । (ଭରତଃ କ୍ଷିପ୍ରମାଗଚ୍ଛତ୍---୧୭, ୧୮) ଭରତ ଅଯୋଧ୍ୟାର କୁଲକ୍ଷଣ ଦେଖି ଦୂତମାନଙ୍କୁ କାରଣ ପଚାରିଅଛନ୍ତି । ଏ ସ୍ଥଳେ ଅଯୋଧ୍ୟାର ପରିଦୃଶ୍ୟମାନ ବହୁତ ଅଲକ୍ଷଣ ଉକ୍ତ ଅଛି । (ବହୂନି ପଶ୍ୟନ୍----୪୬)

୭୨ରେ — ଭରତ ପିତାଙ୍କ ଗୃହରେ ପିତାଙ୍କୁ ଦେଖି ନପାରି ମାତାଙ୍କଠାକୁ ଗଲେ । ପ୍ରଣାମାଦିପରେ ମାତାଙ୍କ ପ୍ରଶ୍ନରେ କହିଛନ୍ତି କି (ଅଦ୍ୟମେ ସପ୍ତମୀରାତ୍ରିଃ---୮) ମାତାଙ୍କ ମୁଖରୁ ପିତୃ ମରଣ ଶୁଣି ଦୁଃଖିତ ହେବା । ପିତୃଗୁଣ ସ୍ମରଣ ପରେ ଭରତ ବୋଇଲେ ଯେ (ଯୋ ମେ ଭ୍ରାତା ପିତାବନ୍ଧୁଃ---୩୨, ୩୩) କୈକେଇ କହିଲେ ତୁମ୍ଭ ପିତା ହା ରାମ ହାସୀତେ ବୋଲି ପ୍ରାଣତ୍ୟାଗ କଲେ । ପରିଶେଷରେ ସେ ଏହିକଥା କହିଅଛନ୍ତି । (ସିଦ୍ଧାର୍ଥାସ୍ତେନରାରାମ---୩୮) ଏହା ଶୁଣି ଭରତ ଚମକି ସେମାନେ କେଉଁଠି ଅଛନ୍ତି କି ବୋଲି ପଚାରିଲେ । କୈକେଇ ସେ ବନକୁ ଯିବା କଥା କହିଲେ । ଭରତ ବିସ୍ମିତ ହୋଇ ସେ କଣ ବ୍ରାହ୍ମଣ ବଧାଧି କଲେ କି ବୋଲି ପଚାରିଲେ । କୈକେଇ ନିଜ ବର ଦ୍ୱାରା ଏପରି କରାଇଥିବା କହିଲେ ।

୭୩ରେ — ଭରତ ଏ ଦୁଃସମ୍ବାଦ ଶୁଣି ମାତାଙ୍କୁ ବହୁ ନିନ୍ଦା କରିବା (ଅଥବା ମେ ଭବେଦ୍ ଶକ୍ତିଃ---୧୭) ରାମଙ୍କୁ ବନରୁ ନିବର୍ତ୍ତାଇ ଆଣିବାର ଚେଷ୍ଟା କଲେ । କ୍ରନ୍ଦନ କଲେ । (ଇତ୍ୟେବମୁକ୍ତ୍ୱା---୨୮) ।

୭୪ରେ — ଭରତ କ୍ରୋଧରେ କୈକେଇଙ୍କୁ ବହୁ ଭର୍ତ୍ସନା କରିଅଛନ୍ତି (ରାଜ୍ୟାଦ୍‌ଭ୍ରଂଶସ୍ୱ କୈକେଇ--- ୨, ୪, ୭, ୯) ଏକପୁତ୍ରୀ କୌସଲ୍ୟାଙ୍କୁ ଏପରି ଦୁଃଖ ଦେଲ ବୋଲି ଭରତ ଏସ୍ଥଳେ ନିଜ ପୁତ୍ରମାନେ ଭାରବହନ କରିବା ଦେଖି ସୁରଭୀ ଇନ୍ଦ୍ରଙ୍କଠାରେ ଦୁଃଖ ପ୍ରକାଶ କରିଥିବା ଚରିତ କହିଅଛନ୍ତି । ଏପରି ନାନା ଦୁଃଖ କଥା କହି ଭରତ ଭୂମୀରେ ମୋହିତ ହୋଇପଡ଼ିଲେ । (ସଂଶକ୍ତ ନେତ୍ରାଃ----୩୬)

୭୫ରେ — ଭରତ ବହୁକ୍ଷଣ ପରେ ସଚେତ ହୋଇ ମନ୍ତ୍ରୀମାନଙ୍କ ସମକ୍ଷରେ ମାତାଙ୍କୁ ଧିକ୍‌କାର କଲେ, ରାଜା ନ ହେବାକୁ କହିଲେ । ଭରତ ଶବ୍ଦରୁ କୌସଲ୍ୟା ଭରତଂ ଆସିବା ଜାଣି ସୁମିତ୍ରାଙ୍କୁ କହି ସଂଗେ ଧରି ଭରତଙ୍କଠାକୁ ଆସିଲେ । ଏଣୁ ଭରତ ଶତ୍ରୁଘ୍ନଙ୍କୁ ସଂଗେ ଧରି କୌସଲ୍ୟାଙ୍କଠାକୁ ଗଲେ । ଦୁଃଖ ପ୍ରକାଶ ପରେ କୌସଲ୍ୟା ଅନୁରୋଧ କଲେ (କ୍ଷୀପ୍ରଂ ମାମପି କୈକେଇ---୩, ୧୪) ଭରତ କୌସଲ୍ୟାଙ୍କ ଏପରି କଠିନ ବଚନ ଶୁଣି କାନ୍ଦିକାନ୍ଦି ପାଦରେ ପଡ଼ିଲେ ଏବଂ ମୂର୍ଚ୍ଛିତ ହେଲେ । ପରେ କହିଲେ ଯେ (ପ୍ରେଶ୍ୟଂ ପାପୀୟାସାଂ ଯ୍ୟାତୁ--୨୨) ଇତ୍ୟାଦି ଶପଥ କଲେ । ୨୨ ଶ୍ଳୋକଠାରୁ

୫୮ ଶ୍ଳୋକ ପର୍ଯ୍ୟନ୍ତ ୩୬ ଗୋଟି ଶ୍ଳୋକରେ ନାନାବିଧ ପାପ ଦେଖାଇ ଶପଥ କରିଅଛନ୍ତି । କୌସଲ୍ୟା ଆଶ୍ୱାସନା କରି ଏପରି ଶପଥ କରନାହିଁ ମୋତେ ଅଧିକ ଦୁଃଖ ବୋଧ ହୋଉଅଛି ବୋଲି କୋଳରେ ଧରିଲେ । (ଲାଲପ୍ୟମାନସ୍ୟ ବିଚେତନସ୍ୟ---୬) ଏଠାରେ ଭରତ ଆସିବାର ପ୍ରଥମ ଦିବସ ଶେଷ ହେଲା ।

୭୬ରେ – ଭରତ ଦଶରଥଙ୍କୁ ଉଦ୍ଦେଶ୍ୟକରି ବହୁ ବିଳାପ କଲାପରେ ପ୍ରେତକାର୍ଯ୍ୟାର୍ଥ ତତ୍ପର ହେଲେ । ଶବ ସଂସ୍କାର କଲେ ।

୭୭ରେ – ଦ୍ୱାଦଶ ଦିନ ପର୍ଯ୍ୟନ୍ତ ଅନ୍ତ୍ୟେଷ୍ଟି ପ୍ରେତକାର୍ଯ୍ୟ ଶେଷ କଲେ । ପିତାଙ୍କୁ ଉଦ୍ଦେଶ୍ୟ କରି ବହୁ ବିଳାପ କଲେ ।

୭୮ରେ – ଭରତ ଓ ଶତ୍ରୁଘ୍ନ ଶୋକ କରୁଅଛନ୍ତି । ଏ ସମୟେ କୁବ୍ଜା ଅଳଂକୃତା ହୋଇ ରାଜଦ୍ୱାରରେ ପ୍ରବିଷ୍ଟ ହେଲା । ତାକୁ ଶତ୍ରୁଘ୍ନ ନାନା ପ୍ରକାର ଦଣ୍ଡ ଦେଲେ । କୈକେଇ ଶତ୍ରୁଘ୍ନଙ୍କଠାରୁ ଭୟପାଇ ଭରତଙ୍କଠାରେ ଶରଣ ଗଲେ । ଭରତ ସ୍ତ୍ରୀ ଅବଧ୍ୟା ବୋଲି ଶତ୍ରୁଘ୍ନଙ୍କୁ ନିବାରଣ କଲେ । (ହନ୍ୟାମହ ମିମାଂପାପାଂ----୨୨, ୨୩)

୭୯ରେ – (ତତଃ ପ୍ରଭାତ ସମୟେ ଦିବସେ ଚ ଚତୁର୍ଦ୍ଦଶେ--- ୧-୩, ୪) ଭରତ କହିଲେ, ଏପରି କହନାହିଁ, ରାମ କେବଳ ରାଜା ହେବେ । ମୁ ବନକୁ ଯିବି, ରାମଙ୍କୁ ଅଭିଷେକ କରାଇ ସଂଗେ ଧରି ଆସିବି । ଶିଳ୍ପୀମାନଙ୍କ ଦ୍ୱାରା ବନମାର୍ଗ ପରିଷ୍କାର କରାଅ ଇତ୍ୟାଦି । ଏହା ଶୁଣି ସମସ୍ତେ ସନ୍ତୁଷ୍ଟ ହେଲେ ।

୮୦ରେ – ମାର୍ଗ ନିର୍ମାଣ ଏବଂ ମାର୍ଗାଳଂକରାଣାଦି ଉକ୍ତ ଅଛି । (ସଚନ୍ଦ୍ରତାରାଗଣ ମଣ୍ଡିତଂ---୨୨)

୮୧ରେ – ପରଦିନ ପ୍ରାତଃକାଳରୁ ବନ୍ଦୀମାନଙ୍କ ସ୍ତବ, ଦୁନ୍ଦୁଭି ପ୍ରଭୃତି ବାଦ୍ୟଶ୍ୱନ ଶୁଣି ଭରତ ଦୁଃଖ ମନରେ ନିବାରଣ କଲେ ଏବଂ ମୁ ରାଜା ନୁହେ ବୋଇଲେ । ନିରାଲମ୍ୱା ରାଜଶ୍ରୀ ଏବଂ ରାମଙ୍କୁ ଉଦ୍ଦେଶ୍ୟ କରି ବିଳାପ କଲେ । ତା ଶୁଣି ସମସ୍ତେ କ୍ରନ୍ଦନ କଲେ । ବଶିଷ୍ଠ ଆସି ସଭା କରାଇଲେ ।

୮୨ରେ – ସଭାରେ ବଶିଷ୍ଠ ଭରତଙ୍କୁ ରାଜା ହେବାକୁ କହିଲେ । ଭରତ ରାମଙ୍କୁ ମନେ ପକାଇ ସଭାରେ କାନ୍ଦିଲେ । ନ୍ୟାୟ ଧର୍ମ ପ୍ରଦର୍ଶନ ପୂର୍ବକ ରାମ

କେବଳ ରାଜା ହେବା ଉଚିତ ବୋଲି କହିଲେ । ମୁ ରାମାନୟନାର୍ଥ ଯିବି, ମାର୍ଗ ଶୋଧନାର୍ଥ ଲୋକଙ୍କୁ ପଠାଇଅଛି । ଯାତ୍ରା ଯୋଗାଡ଼ କର ବୋଲି ସୁମନ୍ତ୍ରଙ୍କୁ ପଠାଇଲେ, ସମସ୍ତେ ସ୍ୱ ସ୍ୱ ବାହନାଦି ଠିକଣା କଲେ ।

୮୩ରେ – ରାମାନୟନାର୍ଥ ଭରତଙ୍କ ଯାତ୍ରା ସମାରୋହ ବର୍ଣ୍ଣନା । (ଏସ୍ଥଳେ ଭରତଙ୍କ ସଂଗେ ନାନା ରକମ ଶିଳ୍ପୀମାନେ କାର୍ଯ୍ୟକାରୀମାନେ ଯିବା ଉକ୍ତ ଅଛି । ଏହା ଦାସଙ୍କ ରାମାୟଣରେ କିପରି ଅଛି ?) ପ୍ରଥମାବସଥରେ ଶୃଙ୍ଗବେରପୁରରେ ରହିଲେ । ସେଦିନ ସେଠାରେ ରହିଲେ । (ବିଶ୍ରାନ୍ତାଃ ପ୍ରତରଷ୍ୟାମଃ---୨୩) (କୈକେଇ ଚ ସୁମିତ୍ରା ଚ---୬)

୮୪ରେ – ଗୁହ ଭରତାଗମ ଶୁଣି ରାମଙ୍କୁ ନିହତ କରିବାକୁ ବା ମୋତେ ବନ୍ଧନ କରିବାକୁ ଆସିଛନ୍ତି ବୋଲି ଶଙ୍କା କରିଥିଲେ । ଗୁହ ଅନେକ ଉପହାର ସହ ଭରତଙ୍କୁ ଦେଖିଲେ । ତେତେବେଳେ ସୁମନ୍ତ୍ର ଭରତଙ୍କୁ ଗୁହଙ୍କ ପରିଚୟ ଦେଇଥିଲେ ।

୮୫ରେ – କେଉଁ ବାଟେ ଭରଦ୍ୱାଜାଶ୍ରମକୁ ଯିବାକୁ ହେବ ବୋଲି ଭରତ ପଚାରିବାରୁ ଦାସମାନଙ୍କ ସଂଗେ ମୁ ଆସିବି ବୋଲି ଗୁହ ଜଣାଇଲେ । ଏତେ ସୈନ୍ୟ ମୋର ମନରେ ଶଙ୍କା ହେଉଅଛି ବୋଲିବାରୁ ଭରତ ସ୍ପଷ୍ଟରେ କହିଲେ କି ସେପରି ଭୟ କିଛି ନାହିଁ । ମୁ ରାମଙ୍କୁ ଆଣିବାକୁ ଯାଉଅଛି । ଆଉ ଅନ୍ୟକଥା କିଛି ନୁହେ । ଦୁହେଁ ଏପରି କଥା ହେଉଁ ହେଉଁ ସାୟଂ ହେଲା (ବର୍ତୌ ନଷ୍ଟପ୍ରଭଃ ସୂର୍ଯ୍ୟୋ ରଜନୀଚାଭ୍ୟବର୍ତ୍ତତ – ୧୪) ରାମଙ୍କ ଉଦ୍ଦେଶରେ ଭରତ ଶୋକ କରିବା ଗୁହ ଶାନ୍ତ୍ୱନା କରିବା ଉକ୍ତ ଅଛି ।

୮୬ରେ – ଗୁହ ଭରତଙ୍କୁ ଲକ୍ଷ୍ମଣଙ୍କୁ ସେ ପୂର୍ବରାତିରେ ସୁଖେ ଶୟନ କର, ମୁ ରାମଙ୍କୁ ଜଗି ରହିବି ବୋଲି କହିବାରୁ ସେ ଯାହା ଯାହା କହିଥିଲେ ସେସବୁ କହିଲେ ଏବଂ ରାମଲକ୍ଷ୍ମଣ ଏଠାରେ ଜଟା ବାନ୍ଧିବା କହିଲେ ।

୮୭ରେ – ଭରତ ରାମଙ୍କ ଜଟାବନ୍ଧନ କଥା ଶୁଣି ନିତାନ୍ତ ମର୍ମ ପୀଡ଼ାରେ ମୋହିତ ହୋଇପଡ଼ିଲେ । କୌସଲ୍ୟାଦି ମାତାମାନେ ଧାଇଁ ଆସିଲେ । କୌସଲ୍ୟା ଦୁଃଖ କାରଣ ପଚାରି ଆଶ୍ୱାସନା କଲେ । ଭରତ କ୍ଷଣେ ପରେ ଆଶ୍ୱାସିତ ହୋଇ ଗୁହଙ୍କୁ ପଚାରିଲେ କି (ଭ୍ରାତାମେ କ୍ୱାବସତ୍---୧୨) । ଗୁହ ସମସ୍ତ କହିଲେ ।

୮୮ରେ – ଭରତ ପୂର୍ବେ ରାମ ଶୋଇଥିବା ଶଯ୍ୟାଠାକୁ ଯାଇ ଦେଖିଲେ । ରାମଙ୍କ ନାନା ପ୍ରକାର ପୂର୍ବ ସୁଖ ଚିନ୍ତାକରି ଶୋକ କଲେ ଏବଂ କହିଲେ (ଅଦ୍ୟ ପ୍ରଭୃତି--- ୨୬ ଇତ୍ୟାଦି) ।

୮୯ରେ – ଗୁହଙ୍କ ସାହାଯ୍ୟରେ ଗଙ୍ଗା ପାର ହୋଇ ପ୍ରୟାଗ ବନରେ ପ୍ରବେଶିବା । ଭରଦ୍ୱାଜଙ୍କ ଦର୍ଶନାର୍ଥ ଯିବା ଉକ୍ତ ଅଛି ।

୯୦ରେ – ଭରଦ୍ୱାଜଙ୍କୁ ଦର୍ଶନ କରିବା, ବିଶିଷ୍ଠାଦିଙ୍କ ସହିତ ଏବଂ ଭରତଙ୍କ ସହ ଭରଦ୍ୱାଜଙ୍କର ଆଳାପାଦି, କୁଶଳପ୍ରଶ୍ନାଦି ଉକ୍ତ ଅଛି ।

୯୧ରେ – ଭରଦ୍ୱାଜ କହିଲେ ତୁମର ସମସ୍ତ ସେନାଙ୍କୁ ମୁ ପାନ ଭୋଜନ ଦେବାକୁ ଇଚ୍ଛୁକ ଅଛି । ତୁମେ ଦୂରରେ ସେନାରଖି ଆସିଲ କାହିଁକି ? (ଆନୀୟତାମିତଃ – ୧୦) ସେନା ଅଣାଗଲେ, ତେତେବେଳେ ଭରଦ୍ୱାଜ ''ଅଗ୍ନୀଶ୍ୟାଲାଂ ପ୍ରବିଶ୍ୟାଥ---୧୧ ଇତ୍ୟାଦି'' ଏପରି ଦେବ ଗନ୍ଧର୍ବ ଦିଗ୍‌ପାଳ ନଦୀ ଅପ୍‌ସରା ପ୍ରଭୃତିଙ୍କୁ ଆହ୍ୱାନ କରି ଆତିଥ୍ୟଭାର ଜଣାଇ ଦେଲେ । ଏହି ଅଲୌକିକ ଆତିଥ୍ୟ କ୍ରମ ଉକ୍ତ ଅଛି । ସେ ରାତ୍ରି ଭରଦ୍ୱାଜଙ୍କ ଆଶ୍ରମରେ ରହିଲେ ।

୯୨ରେ – ପରଦିନ ପ୍ରାତଃକାଳରୁ ରାମଦର୍ଶନାର୍ଥ କେଉଁବାଟେ ଯିବାକୁ ହେବ ବୋଲି ପଚାରିବାରୁ ଋଷି କହିଲେ (ଭରତାର୍ଥ ତୃତୀୟେଷ୍ଣୁ---୧୦,୧୧,୧୨) ଭରତଙ୍କ ମାତାମାନେ ଯାଇ ମୁନିଙ୍କୁ ପ୍ରଣାମ କଲେ । ଭରତ କହିଲେ (ବିଶେଷଂ ଜ୍ଞାତୁମିଚ୍ଛାମି ମାତୃଣାଂତବ ରାଘବ – ୧୯) । ଭରତ କୌସଲ୍ୟା ଓ ସୁମିତ୍ରାଙ୍କୁ ଚିହ୍ନାଇ ଦେଲାପରେ କହିଲେ (ଯସ୍ୟାକୃତେ ନରବ୍ୟାଘ୍ରୌ---୨୪, ୨୫, ୨୬) ଭରଦ୍ୱାଜ କହିଲେ କି (ନଦୋଷେଣାବଗନ୍ତବ୍ୟା---୩୦, ୩୧) ତାପରେ ଭରତ ଋଷିଙ୍କ ଆଦେଶ ପାଇ ଯାତ୍ରା କଲେ ।

୯୩ରେ – କ୍ରମେ ବନ ମଧ୍ୟରେ ଯାତ୍ରାକରି ଚିତ୍ରକୂଟ ନିକଟରେ ପ୍ରବେଶିବା, ସେହି ସ୍ଥାନର ଦୃଶ୍ୟ ବର୍ଣ୍ଣନା କରି ଭରତ ଏହି କେବଳ ଚିତ୍ରକୂଟ ହୋଇଥିବ ବୋଲି ବଶିଷ୍ଠଙ୍କୁ କହିବା, ଲୋକେ ବନ ମଧ୍ୟରେ ପଶି ଧୂମ ବାହାରିବା ଦେଖି ଏଥିରେ କେବଳ ରାମ ନିବାସ କରିଥିବେ ବୋଲି ଜଣାଇବା ଉକ୍ତ ଅଛି । ତେତେବେଳେ ଭରତ କହିଲେ କି (ସୈନ୍ୟାନୁବାତ୍ ସର୍ବାଂସ୍ତାଂ– ୨୫)

୯୪ରେ – ରାମ ଚିତ୍ରକୂଟର ରମଣୀୟ ବର୍ଣ୍ଣନା କରି ସୀତାଙ୍କୁ ଦେଖାଇ ବିନୋଦ କରିବା ଉକ୍ତ ଅଛି । (ବସ୍ୱୌକ ସାରାଂ---୨୬, ୨୭)

୯୫ରେ – ମନ୍ଦାକିନୀ ନଦୀର ରମଣୀୟତା ବର୍ଣ୍ଣନା ପୂର୍ବକ ସୀତାଙ୍କୁ ଦେଖାଇ ବିନୋଦ କରିବା ଉକ୍ତ ଅଛି । (ଇତୀବରାମ ବହୁସଙ୍ଗତଂ ବଚଃ–୧୯)

୯୬ରେ – ରାମ ସୀତାଙ୍କ ସହ ଗିରିପ୍ରସ୍ଥରେ ବସିଅଛନ୍ତି । ଏ ସମୟେ ସୈନ୍ୟଧୂଳି ଓ ଶବ୍ଦ ଶୁଣିଲେ ଦେଖିଲେ ମହତୀ ସେନା ଆସୁଅଛି, ଲକ୍ଷ୍ମଣଙ୍କୁ ଡାକି କହିଲେ । ଲକ୍ଷ୍ମଣ ଶାଳ ବୃକ୍ଷରେ ଚଢ଼ି ଦେଖିଲେ ମହତୀ ଚତୁରଙ୍ଗ ସେନା ଆସୁଅଛି, କହିଲେ କି (ଅଗ୍ନିଂସଂଶମୟ-ତୁ–୧୪) ରାମ କହିଲେ କାହାର ସେନା ଏ ଭଲ କରି ଦେଖ । ଲକ୍ଷ୍ମଣ ଦେଖି କହିଲେ କୋବିଦାର ଧ୍ୱଜ ଦିଶୁଅଛି, ଭରତ ଆମ୍ଭ ଦୁହିଁଙ୍କୁ ନିହତ କରିବାକୁ ଆସୁଅଛନ୍ତି ଇତ୍ୟାଦି । (ସଂପ୍ରାପ୍ତୋଽୟମରିର୍ବୀର---୨୪-୨୮ ଇତ୍ୟାଦି)

୯୭ରେ – ଏଥିରେ ସଦ୍‌ଭାତୃମାନଙ୍କର ପବିତ୍ର ସ୍ନେହର ସ୍ୱର୍ଗୀୟ ପ୍ରଭାର ମହାସୌରଭ ବିଦ୍ୟମାନ ଅଛି । ଭରତ ଯେପରି ଦୁଃଖାବସ୍ଥା ଅନୁଭବ କରିଆସିଛନ୍ତି, ତାହା ଅବିକଳ ଅନୁମାନ କରି ରାମ ଲକ୍ଷ୍ମଣଙ୍କୁ କହିଦେଲେ । (ଅମ୍ୱାଂଚ କୈକେଇ---୧୨) ଏବଂ କହିଲେ କି ଲକ୍ଷ୍ମଣ ! ତୁମେ ଭରତଙ୍କ ପ୍ରତି ଏପରି ଅପ୍ରିୟ କହିବା ଉଚିତ ନୁହେ । ତୁମେ ଯଦିଚ ରାଜ୍ୟ ଲୋଭରେ ଏପରି କହୁଅଛ, ତେବେ (ଯଦି ରାଜ୍ୟସ୍ୟହେତୋ---୧୭, ୧୮) ଲକ୍ଷ୍ମଣ ତାହା ଶୁଣି ଲଜ୍ଜିତ ହେଲେ, କହିଲେ ବୋଧହୁଏ ପିତା ଆପଣଙ୍କୁ ଦେଖିବାକୁ ଆସୁଅଛନ୍ତି । ରାମ କହିଲେ ଆମମାନଙ୍କୁ ନେବାକୁ ଆସିଥିବେ କିନ୍ତୁ ପିତାଙ୍କ ଛତ୍ର ଦିଶୁ ନାହିଁ, ସଂଶୟ ଜନ୍ମୁଅଛି, ଭଲକରି ଦେଖ । ଲକ୍ଷ୍ମଣ ଦେଖି ଜଣାଇଲେ ଯେ ସେନାକୁ ଭରତ କେବଳ ଆଦେଶ କରୁଅଛନ୍ତି ।

୯୮ରେ – ଭରତ ବଶିଷ୍ଠାଦିଙ୍କ ସହ ପାଦଚାରରେ ଯାଉଁ ଯାଉଁ ରାମଙ୍କ ଦର୍ଶନ ସହବାସାଦିର ସୌଭାଗ୍ୟ ଆଳାପ କରିଥିବା ଉକ୍ତ ଅଛି ।

୯୯ରେ – ଭରତ ରାମଙ୍କ ନିବାସ ଠିକ୍‌କରି ବଶିଷ୍ଠଙ୍କ ସହ ମାତାମାନଙ୍କୁ ଆଣିବାପାଇଁ ଶତ୍ରୁଘ୍ନଙ୍କୁ ପଠାଇଲେ । ଋଷି ଆଶ୍ରମମାନ ଦେଖି ଭରଦ୍ୱାଜ କହିବା ସ୍ଥାନ ଏହି ବୋଲି ନିଶ୍ଚୟ କଲେ । ଭରତ ରାମଙ୍କୁ ଓ ସୀତାଙ୍କୁ ପ୍ରଣାମ କରିବି ବୋଲି ଉତ୍କଣ୍ଠିତ ହୋଉଅଛନ୍ତି, ଏ ସମୟେ ରାମଙ୍କ ପର୍ଣ୍ଣଶାଳା ଦେଖିଲେ, ଅସ୍ତ୍ରଶସ୍ତ୍ରାଦି ଦେଖିଲେ । ଏସବୁ ଦେଖି ରାମ ଦୁଃଖରେ ଅବଶ

ହୋଇଗଲେ । (ମନ୍ନିମିତ୍ତମିମଂଦୁଃଖଂ---୩୬) (ତତଃ ସୁମନ୍ତ୍ରେଣ---୪୧)

୧୦୦ରେ – ରାମ ପାଦପତିତ ଭରତଙ୍କୁ ଆଲିଙ୍ଗନ କରି ପିତାଙ୍କ ବର୍ତ୍ତମାନରେ ତୁମେ ଅରଣ୍ୟକୁ କାହିଁକି ଆସିଲ ବୋଇଲେ । ଦଶରଥାଦିଙ୍କର କୁଶଳ ପ୍ରଶ୍ନ ପ୍ରଭୃତି ପଚାରିଲେ । (ଇତି ମଧ୍ୟରେ ଅନେକ ନୀତି ଉକ୍ତ ହୋଇଅଛି) (ରାଜକର୍ତ୍ତବ୍ୟମାନ ଉକ୍ତ ହୋଇଅଛି) (ରାଜ୍ୟରକ୍ଷଣ କ୍ରମ ଉକ୍ତ ଅଛି) (ରାଜଦୋଷମାନ ଉକ୍ତ ଅଛି) ଏହି ଅଧ୍ୟାୟକୁ ରାଜଧର୍ମସଂହିତା କହିଲେ ହେଲା ।

୧୦୧ରେ – ଭରତ କହିଲେ ମୋର ଧର୍ମହୀନର ରାଜଧର୍ମରେ କି ପ୍ରୟୋଜନ ! ଆପଣ ଆସି ଅଯୋଧ୍ୟାରେ ଅଭିଷିକ୍ତ ହୋଇ ଆମ୍ଭମାନଙ୍କୁ ଧନ୍ୟ କରନ୍ତୁ । ଆପଣ ବନକୁ ଆସିଲାରୁ ପିତା ସ୍ୱର୍ଗକୁ ଗଲେ ।

୧୦୨ରେ – ପିତାଙ୍କ ମରଣ ବାର୍ତ୍ତା ଶୁଣି ରାମ ହତଚେତନ ହୋଇପଡ଼ିଲେ । ଭ୍ରାତାମାନେ ଓ ସୀତାଦେବୀ କ୍ରନ୍ଦନ କରି କରି ଜଳସେଚନରେ ସଚେତ କରାଇଲେ । ରାମ୍ ବହୁ ବିଳାପ କଲେ । ରାମାଦି ସ୍ନାନ କଲାପରେ ନିବାପାଞ୍ଜଳୀ ପ୍ରଦାନ କଲେ । ରାମାଦିଙ୍କ କ୍ରନ୍ଦନ ଧ୍ୱନି ଶୁଣି ସୈନିକାଦି ବୀରମାନେ ସମସ୍ତେ ରାମ ଦର୍ଶନାର୍ଥ ଆଶ୍ରମକୁ ଧାଇଁଗଲେ । ଏ ସ୍ଥଳେ ସେନାଜନମାନଙ୍କ ଗଜାଶ୍ୱାଦି ଧ୍ୱନି ଓ କୋଳାହଳରେ ବନଜନ୍ତୁ ପ୍ରଭୃତିଙ୍କର ଯେ ଚେଷ୍ଟାମାନ ତାହା ବର୍ଣ୍ଣିତ ଅଛି ।

୧୦୩ରେ – କୌସଲ୍ୟାଦି ରାଣୀମାନେ ରାମଙ୍କ ପ୍ରଦତ୍ତ ଇଙ୍ଗୁଦି ଅର୍ପଣ୍ୟାକ ପିଣ୍ଡ ଦେଖି ଦୁଃଖ ପ୍ରକାଶ କରିବା, ମାତାମାନେ ରାମଙ୍କଠାକୁ ଯିବା, ରାମ ସମସ୍ତଙ୍କ ଚରଣ ବନ୍ଦନା କରିବା, ଭରତାଦିମାନେ ରାମଙ୍କୁ ପରିବେଷ୍ଟନ କରି ବସିଲେ । ଭରତ ରାମଙ୍କୁ କଅଣ ଜଣାଇବେ ବୋଲି ସମସ୍ତେ ଶୁଣିବା ଇଚ୍ଛାରେ ରହିଲେ ।

୧୦୪ରେ – ରାମ ପଚାରିଲେ କି (x x କିଂ ନିମିତ୍ତମିମଂ ଦେଶଂ---୩) ଭରତ ଜଣାଇଲେ କି – ମୋର ମାତାଙ୍କ ଦୁର୍ବିଚାରରେ ଯାହା ଯାହା ହୋଇଗଲା ତାହା କ୍ଷନ୍ତବ୍ୟ ମନେକରି ମୋର ଏବଂ ମନ୍ତ୍ରୀମାନଙ୍କର ଓ ପ୍ରଜାବର୍ଗର ପ୍ରାର୍ଥନା ସଫଳ କରି ଆପଣ ଭୂମିକୁ ସନାଥା କରିବାକୁ ଅଭିଷିକ୍ତ ହୁଅନ୍ତୁ (ଏବମୁକ୍ତ୍ୱା ମହାବାହୁଃ–୧୪) ରାମ ଭରତଙ୍କୁ ଧର୍ମନୀତି ସହ ପିତାଙ୍କ

ଆଜ୍ଞା ପାଳନୀୟ ବୋଲି ଅନେକ କହିଅଛନ୍ତି । ପିତାଙ୍କ ଆଦେଶରେ ମୁ ବନରେ ଚଉଦ ବର୍ଷ ରହିବା ଏବଂ ତୁମେ ରାଜ୍ୟ ପାଳିବା ଉଚିତ ବୋଲି ଆଦେଶ କରିଅଛନ୍ତି ।

୧୦୫ରେ – ଏପରି କଥାବାର୍ତ୍ତାରେ ରାତ୍ରି ହେଲା । ପରଦିନ ପ୍ରାତଃକାଳରୁ ସମସ୍ତେ ମନ୍ଦାକିନୀରେ ସ୍ନାନାଦି ସାରି ରାମଙ୍କ ଛାମୁରେ ଉପବେଶନ କଲେ । ଭରତ ସମୁପଯୁକ୍ତ ଦୃଷ୍ଟାନ୍ତ ଦେଖାଇ ରାମଙ୍କୁ ରାଜା ହେବା ପାଇଁ ପ୍ରାର୍ଥନା କଲେ ଏବଂ ଦୁଃଖରେ କାତର ହୋଇ ଜଣାଇଲେ । ରାମ ଭରତଙ୍କୁ ୧୫ ଶ୍ଳୋକଠାରୁ ୩୧ ଶ୍ଳୋକ ପର୍ଯ୍ୟନ୍ତ ସଂସାର ଅନିତ୍ୟ, ଜୀବନ ଅନିତ୍ୟ, ଏଥିରେ କେହି କାହାର ନୁହନ୍ତି – ଏ ସମ୍ବନ୍ଧେ ଜ୍ଞାନ ଉପଦେଶ କରିଅଛନ୍ତି । ତାପରେ ପିତା ଯାହା ମୋତେ ଏବଂ ତୁମ୍ଭଙ୍କୁ କରିବା ପାଇଁ ଆଦେଶ କରିଅଛନ୍ତି ତାହା ପାଳନ କରିବା ଉଚିତ ବୋଲି ଭରତଙ୍କୁ ଭଲ କରି ବୁଝାଇଅଛନ୍ତି । (ଇତ୍ୟେବମୁକ୍ତ୍ୱା ବଚନଂମହାତ୍ମା---)

୧୦୬ରେ – ଭରତ ରାମଙ୍କୁ ଜଣାଇଲେ କି ମୁ ଦେଶାନ୍ତର ଗତ ଥିଲାବେଳେ ମୋର ମାତା ଏପରି ପାପାଚରଣ କରିଅଛନ୍ତି । (ଧର୍ମବନ୍ଧେନ ବଦ୍ଧୋଽସ୍ମି–୯) ପିତା ବୃଦ୍ଧତ୍ୱମୂଳକ ଦୁର୍ମତିତ୍ୱରୁ ଅକାର୍ଯ୍ୟ କରିଅଛନ୍ତି । ଆପଣ ଆମ୍ଭମାନଙ୍କୁ କ୍ଷମା କରି ରକ୍ଷା କରନ୍ତୁ । ରାଜ୍ୟପାଳନ କରନ୍ତୁ । ଭରତ କେତେ ପ୍ରଳାପ କରି କେତେ ପ୍ରାର୍ଥନା କଲେ ମଧ ରାମ ପିତାଙ୍କ ଆଜ୍ଞାରେ ବନବାସ ତ୍ୟାଗ କରିବାକୁ ସ୍ୱୀକାର କଲେନାହିଁ ।

୧୦୭ରେ – ରାମ ଭରତଙ୍କୁ ତାହାଙ୍କ ମାତା ଯୁଦ୍ଧ ସମୟରେ ଦଶରଥଙ୍କୁ ଦୁଇଗୋଟି ବର ପ୍ରାର୍ଥନା କରିଥିବା, ସେ ବର ଦ୍ୱୟରେ ଭରତ ରାଜା ଏବଂ ରାମ ବନବାସୀ ହେବାପାଇଁ ଦଶରଥ ସତ୍ୟ କରିଥିବାର କହି ତୁମେ ଅଯୋଧ୍ୟାରେ ରାଜା ହୁଅ ମୁ ବନରେ ରାଜା ହୋଇଥିବି ବୋଲି କହିଲେ । (ତ୍ୱଂ ରାଜା ଭରତ ଭବ ସ୍ୱୟଂ---୧୭)

୧୦୮ରେ – ଜାବାଳୀ ରାମଚନ୍ଦ୍ରଙ୍କୁ ପିତାମାତାଦି କିଏ କାହାର ନୁହନ୍ତି, ତୁମେ ଏପରି ଦୁର୍ବିଚାରରେ କାହିଁକି ପିତୃସତ୍ୟ ପାଳିବି ବୋଲି ବନରେ ବୁଲିବ ଇତ୍ୟାଦି କ୍ରମରେ ଉପଦେଶ ଦେଇଅଛନ୍ତି ।

୧୦୯ରେ – ରାମ ଜାବାଳୀଙ୍କ ବଚନ ଶୁଣି ଚାରିତ୍ର ସମ୍ବନ୍ଧେ ବହୁ ପ୍ରମାଣ ବାକ୍ୟମାନ କହିଅଛନ୍ତି । ନାନା ଯୁକ୍ତିରେ ଜାବାଳୀଙ୍କ ନାସ୍ତିକ ବାକ୍ୟମାନ ଖଣ୍ଡନ କରିଅଛନ୍ତି ।

୧୧୦ରେ – ବଶିଷ୍ଠ ଜାବାଳୀଙ୍କ କଥାରେ ଗୌରବ ସ୍ଥାପନ ପୂର୍ବକ ସୃଷ୍ଟି ଆଦ୍ୟରୁ ମନୁବଂଶୀୟ ମାନଙ୍କ ଉତ୍ପତ୍ତି କହି ସେମାନେ ଯେପରି ଜ୍ୟେଷ୍ଠତ୍ୱରେ ରାଜ୍ୟ ଭୋଗ କରିଥିଲେ ତୁମେ ମଧ୍ୟ ସେପରି କର ବୋଲି ରାମଙ୍କୁ କହିଲେ । (ସରାଘବଣାଂ କୁଳଧର୍ମମାତ୍ମନଃ–୩୬) ।

୧୧୧ରେ – ବଶିଷ୍ଠ ରାମଙ୍କୁ କହିଲେ ମୁ ତୁମର ଆଚାର୍ଯ୍ୟ, ମୋର ବଚନ ଗ୍ରହଣ କର, ଭରତଙ୍କ କଥା ରକ୍ଷା କର । ତାପରେ ରାମ ବଶିଷ୍ଠଙ୍କୁ କହିଲେ କି ମୁ ପିତାଙ୍କ ସତ୍ୟ ତ୍ୟାଗ କରି ନପାରେ ଭରତ ତେତେବେଳେ ସେଠାରେ କୁଶଶଯ୍ୟା କରିବାର ଚେଷ୍ଟା କଲେ । (ଇହମେ ସ୍ଥଣ୍ଡଲେ ଶୀଘ୍ରଂ– ୧୪) । ରାମ ଏପରି କର ନାହିଁ ବୋଲି ଭରତଙ୍କୁ ନିବାରିଲେ । ଭରତ କହିଲେ ଯେ (ଯଦି ତ୍ୱବଶ୍ୟଂ ବସ୍ତବ୍ୟଂ–୨୬) ଏପରି ଦୁଇଭାଇ ଅନ୍ୟୋନ୍ୟ ଅପେକ୍ଷାରେ ରାଜ୍ୟ ତ୍ୟାଗରେ ଅକୁଣ୍ଠିତ ବାକ୍ୟ ପ୍ରକାଶ କରିଅଛନ୍ତି ।

୧୧୨ରେ – ସମାଗତ ବନୌକସ ଋଷିମାନେ ଗନ୍ଧର୍ବମାନେ ଉଭୟ ଭ୍ରାତାଙ୍କ ବଚନରେ ବିସ୍ମିତ ଓ ଆନନ୍ଦିତ ହୋଇ ମନରେ ରାବଣବଧ କଥା ରଖି ଭରତଙ୍କୁ କହିଲେ କି ତୁମେ ରାମଙ୍କ ବଚନ ପାଳନ କର । ଭରତ ରାମଙ୍କ ପାଦରେ ପଡ଼ି ଆପଣଙ୍କୁ କେବଳ ପ୍ରଜାମାନେ ଇଚ୍ଛା କରନ୍ତି, ଆପଣ ରାଜ୍ୟ ପାଳନ୍ତୁ ବୋଲି କହିଲେ । ରାମ ଭରତଙ୍କୁ କୋଳକରି ମନ୍ତ୍ରୀମାନଙ୍କ ସାହାଯ୍ୟରେ ରାଜ୍ୟ ପାଳିବାକୁ କହିଲେ । ପ୍ରତିନିଧି ସ୍ୱରୂପ ନିଜ ପାଦୁକା ଦେବାକୁ ସ୍ୱୀକାର କଲେ । ଭରତ କହିଲେ କି (ତବ ପାଦୁକୟୋର୍ନ୍ୟସ୍ତ–୨୫) ।

୧୧୩ରେ – ଭରତଙ୍କ ପ୍ରତ୍ୟାବୃତ୍ତି, ଭରଦ୍ୱାଜଙ୍କ ପୁନର୍ଦର୍ଶନ – ରାମଙ୍କ ପାଦୁକା ପ୍ରଦାନ ଜଣାଇବା, ଯମୁନା ଓ ଗଙ୍ଗା ପାର ହୋଇ ଶୃଙ୍ଗବେର ପୁରରେ ପ୍ରବେଶିବା – ଅଯୋଧ୍ୟାରେ ପ୍ରବେଶିବା.ଉକ୍ତ ଅଛି ।

୧୧୪ରେ – ଅଯୋଧ୍ୟାର ଦୁରବସ୍ଥା ବର୍ଣ୍ଣନ ଉକ୍ତ ଅଛି ।

୧୧୫ରେ – ଭରତ ମାତାମାନଙ୍କୁ ଅଯୋଧ୍ୟାରେ ରଖି ନିଜେ ନନ୍ଦିଗ୍ରାମକୁ ଯିବା, ରାମ ପାଦୁକାରେ ଛତ୍ର ଚାମରାଦି ରାଜ ଉପକରଣମାନ ଚଳାଇବା (ସ ବଲ୍କଳ ଜଟାଧାରୀ–୨୩) ରାମ ପାଦୁକାଦ୍ୱୟଙ୍କୁ ଅଭିଷେକ କରାଇଲେ । (ତଦାହି ଯତ୍କାର୍ଯ୍ୟ–୨୭)

୧୧୬ରେ – ଚିତ୍ରକୂଟରେ ରାମଙ୍କୁ ଦେଖି ଋଷିମାନେ ଭୟୋତ୍ସୁକ ହେବା । ରାମ ସେମାନଙ୍କୁ ମୋଠାରୁ ଆପଣମାନଙ୍କୁ କିଛି ଭୟ ନାହିଁ ବୋଲି ବୁଝାଇବା, ଲକ୍ଷ୍ମଣ ବା ସିତାଙ୍କ ଦ୍ୱାରା କିଛି ଅବିନୟ ଦେଖାଗଲା କି ବୋଲି ପଚାରିବା । ତେତେବେଳେ ଜଣେ ବୃଦ୍ଧ ଋଷି ସେପରି କିଛି ନୁହେଁ, ରାକ୍ଷସମାନଙ୍କ ଉଦ୍‌ବେଗରେ ମୁନିମାନେ ଭୀତ ହୋଇଅଛନ୍ତି ବୋଲି ଜଣାଇବା, ରାବଣାବରଜ ଖରାସୁର ଦଣ୍ଡକାରଣ୍ୟରେ ବହୁ ଋଷିମାନଙ୍କୁ ନାଶ କରି ବାସ କରିଅଛି, ତୁମେ ଆସି ଏଠାରେ ରହିବା ଜାଣି ଋଷିମାନଙ୍କ ପ୍ରତି ରାକ୍ଷସମାନେ ରୋଷ କରୁଅଛନ୍ତି – ନାନା ଅତ୍ୟାଚାର କରୁଅଛନ୍ତି, ଏହେତୁ ଋଷିମାନେ ଏଠାରୁ ଅନ୍ୟ ସ୍ଥାନକୁ ଯିବାର ଇଚ୍ଛା କରନ୍ତି । ତୁମକୁ ମଧ ବାଧା ଦେବାକୁ ଭାବି ଅଛନ୍ତି, ଏଠାରୁ ଅନତିଦୂରରେ ପୁରାଣାଶ୍ରମକୁ ଆମ୍ଭେ ଯିବୁ, ତୁମର ଇଚ୍ଛା ହେଲେ ଆମ୍ଭମାନଙ୍କ ସଂଗେ ଆସ – ଇହା କହି ଋଷିମାନେ ଚିତ୍ରକୂଟରୁ ବାହାରିଯିବା ଉକ୍ତ ଅଛି ।

୧୧୭ରେ – ରାମ ଚିତ୍ରକୂଟରୁ ଅତ୍ରିଙ୍କ ଆଶ୍ରମକୁ ଯିବା, ଅତ୍ରି ରାମଙ୍କ ଆଦେଶରେ ସୀତା ଅନସୂୟାଙ୍କୁ ଅନୁସରିବା । ଅନସୂୟା ସୀତାଙ୍କୁ ପତିମାହାତ୍ମ୍ୟ କହିବା ।

୧୧୮ରେ – ସୀତା ନିଜର ହୃଦୟ ଭାବାନୁସାରେ ଅନସୂୟାଙ୍କ ବଚନ ଅନୁମୋଦିତ କରିବା, ଅନସୂୟା ସପ୍ରୀତ ହୋଇ ଗୁଣ ପ୍ରଦର୍ଶନ ପୂର୍ବକ ଏହା ଦେଲେ । (ଇଦଂ ଦିବ୍ୟବରଂ ମାଲ୍ୟଂ---୧୮, ୧୯, ୨୦) ସୀତା ସନ୍ତୋଷରେ ସେସବୁ ଗ୍ରହଣ କଲେ । ପରେ ଅନସୂୟା ପଚାରିଲେ ରାମ ତୁମକୁ ସ୍ୱୟଂବରରେ କିପରି ପ୍ରାପ୍ତ ହେଲେ କହ । ସୀତା ନିଜର ଉତ୍ପତ୍ତିଠାରୁ ରାମ ବିବାହ ପର୍ଯ୍ୟନ୍ତ ସମସ୍ତ କଥା କହିଲେ ।

୧୧୯ରେ – ଅନସୂୟା ଓ ସୀତାଙ୍କ ଆଳାପାବସାନରେ ସାୟଂ ପ୍ରବେଶ ହେଲା । ଅନସୂୟା ସୀତାଙ୍କୁ ସନ୍ତୋଷରେ ରାମଙ୍କଠାକୁ ଯିବାପାଇଁ ଆଦେଶିଲେ । ସୀତା ରାମଙ୍କୁ ଅନସୂୟାଙ୍କ ସମସ୍ତ କଥା କହିଲେ । ସେହି ରାତ୍ର ସେଠାରେ ସେମାନେ ସୁଖେ ରହିଲେ । ପ୍ରାତଃକାଳରୁ ରାମ ଋଷିମାନଙ୍କୁ ଆଦେଶ ମାଗିଲେ, ଋଷିମାନେ କହିଲେ କି ଏ ବନରେ ପୁରୁଷାଦ ରାକ୍ଷସମାନେ ବାସ କରନ୍ତି, ସେମାନଙ୍କୁ ନିବାରଣ କର (ଇତୀବତୈଃ---୨୨) ।

**ଏହିଠାରୁ ଅଯୋଧ୍ୟାକାଣ୍ଡ ସଂପୂର୍ଣ୍ଣ**

## ଏହିଠାରୁ ମୂଳ ଯୁଦ୍ଧକାଣ୍ଡ ପ୍ରାରମ୍ଭ

୧ ସର୍ଗରେ— ରାମ ହନୁମାନଙ୍କୁ ସମୁଦ୍ର ଲଙ୍ଘନ ହେତୁ ପ୍ରଶଂସା କରିବା ଏବଂ ଉତ୍ତମାଧମ ମଧ୍ୟମ ଭୃତ୍ୟର ଲକ୍ଷଣ କହିବା ଉକ୍ତ ଅଛି ଏବଂ ସେନା କିପରି ସମୁଦ୍ର ଦକ୍ଷିଣ ତୀରକୁ ଯିବେ ବୋଲି ଚିନ୍ତିତ ହେବା ଉକ୍ତ ଅଛି ।

୨ରେ — ରାମ ସନ୍ତାପ କଲାରୁ ସମୁଦ୍ର ଲଂଘି ଶତ୍ରୁ ନାଶିବା ବୋଲି ସୁଗ୍ରୀବ ପ୍ରବୋଧ ଦେବା । ସେତୁ ବାନ୍ଧି ଯେପରି ଶତ୍ରୁ ନାଶ କରିବା, ତାର ବିଚାର କରନ୍ତୁ ବୋଲିବା ଏବଂ ପ୍ରାସାଦ ପ୍ରାକାରାଦିର ଆକାର ପ୍ରକାରାଦି କହିବା ।

୩ରେ — ରାମ ସୁଗ୍ରୀବ ବଚନରେ ସମୁତ୍ସାହିତ ହୋଇ ଲଙ୍କାର ଦୁର୍ଗ ପ୍ରଭୃତିର ସଂଖ୍ୟା ଲକ୍ଷଣାଦି ହନୂମାନଙ୍କୁ ପଚାରିବା, ହନୂମାନ ଲଙ୍କାର ଦୁର୍ଗ, ସୈନ୍ୟ ବିଭାଗ, ସମୃଦ୍ଧି, ଆକାର ପ୍ରାକାରାଦିର ପ୍ରକାର କହିବା ଏବଂ ସେ ଲଙ୍କା ଦଗ୍ଧ କରିଥିବାର କଥା ମଧ୍ୟ କହିବା ଉକ୍ତ ଅଛି ।

୪ରେ — ରାମ ହନୁଙ୍କ ବାକ୍ୟ ଶୁଣି ସେକ୍ଷଣି ପ୍ରୟାଣାର୍ଥ ଆଦେଶିବା (ଯ୍ୟାମ୍ ନିବେଦୟସେ ଲଙ୍କାଂ ---- ୨, ୩, ୪ x x ୬) । ତାପରେ ନିଳାଦି ସେନାପତିଙ୍କୁ ସେନା ସହ ଅଗ୍ରେ ଯିବାକୁ ଆଦେଶିବା । ଅଗ୍ର ପଶ୍ଚାଦ୍ ଭାଗରେ ଯିବା ବୀରମାନଙ୍କର ନିର୍ଦ୍ଧାରଣ କରିବା । (ଯ୍ୟାଷ୍ୟାମୀ ବଲମଧ୍ୟେଽହଂ---୧୯, ୨୦) ପ୍ରୟାଣ କ୍ରମ (ଅଦାଶ୍ୟଂସ୍ତେ---୩୮) (ଅପିଜ୍ଞାମୂହ୍ୟମାନୌ--୪୨) ଏ ସ୍ଥଳେ ଲକ୍ଷ୍ମଣ ରାମଙ୍କୁ ପରିଦୃଶ୍ୟମାନ ସୁନିମିତ୍ତମାନ କହିଅଛନ୍ତି । ବାନରମାନଙ୍କର କିଳକିଳାରାବ ଉକ୍ତ ଅଛି । (ସାପ୍ଲୟାତିଦିବାରାତ୍ରଂ – ୭୦, ୭୨) ଏ ସ୍ଥଳେ ଏ ପର୍ବତର ଦୃଶ୍ୟ ବର୍ଣ୍ଣନା ଉକ୍ତ ଅଛି (ମହେନ୍ଦ୍ରମଥ ସଂପ୍ରାପ୍ୟ – ୯୫, ୯୬, ୯୭, ୯୮) ତତ୍ର ସେନା ସନ୍ନିବେଶ କରିବା, ସମୁଦ୍ର ଲଙ୍ଘନାର୍ଥ ମନ୍ତ୍ରଣାର ଆଦେଶ କରିବା (ଏସ୍ଥଳେ ସମୁଦ୍ର ବର୍ଣ୍ଣନା ସଂକ୍ଷେପତଃ) ଉକ୍ତ ଅଛି ।

ସମୟ

୫ରେ — ରାମଙ୍କ କପି ବାହିନୀ ସନ୍ଦୋହରେ ଅନ୍ୟାନ୍ୟ କେତେକ ସେନାପତି ଥିଲେ ସୁଦ୍ଧା ନୀଳ ସେନାପତିଙ୍କ ନାମ ଅନେକ ପ୍ରଧାନତଃ ଉଲ୍ଲେଖ ଅଛି । ସର୍ବାଦୌ ସର୍ବାଗ୍ରତଃ ସେନା ସଂପ୍ରେଷଣ ସ୍ଥଳେ ରାମଚନ୍ଦ୍ର ନୀଳ ସେନାପତିଙ୍କ ତତ୍ତ୍ୱାବଧାନରେ କେବଳ ସେନା ସଂପ୍ରେଷଣ କରିଅଛନ୍ତି, ତାପରେ ସମୁଦ୍ର

ତୀରରେ ସମସ୍ତେ ଉପଗତ ହେଲାପର ମଧ ନୀଳଙ୍କ ଦ୍ୱାରା ସେନା ସନ୍ନିବେଶିତ ହେବାର ଉକ୍ତ ଅଛି (ସାତୁ ନୀଳେନ ବିଧିବଦ୍ ସ୍ୱରକ୍ଷାସୁ---୧)

ଶ୍ରୀମଦ୍ ମହାଭାରତରେ କୌରବ ବାହିନୀ ମଧରେ ବିନ୍ଦାନୁବିନ୍ଦ ସେନାପତି ଦୁହିଁଙ୍କର ନାମ ଯେପରି ଗ୍ରାହ୍ୟ ଶ୍ରୀମଦ୍ ରାମାୟଣରେ ରାମ ବାହିନୀରେ ବୈନ୍ଦଜ୍ଞୀବିଦ ସେହିପରି ବୋଧ ହୁଅନ୍ତି (ବୈନ୍ଦଷ୍ଟ ଜ୍ଞୀବିଦଷ୍ଟୋଭୌତତ୍ର ବାନର ପୁଙ୍ଗବୌ—୨)

ଏହି ସର୍ଗରେ ସୀତାଙ୍କର ସ୍ନେହ ଓ ସୌନ୍ଦର୍ଯ୍ୟ ସ୍ମରଣରେ ରାମଙ୍କ ବିଳାପ ଉକ୍ତ ଅଛି (ଏବଂ ବିଳପତ ସ୍ତସ୍ୟ---୨୨)

୬ରେ — ଲଙ୍କାରେ ରାବଣ ଅସୁରମାନଙ୍କ ନିକଟରେ ହନୂମାନ ଆସି ଲଙ୍କାକୁ ଲଣ୍ଡଭଣ୍ଡ କରିଯାଇଅଛି ବୋଲି ଦୁଃଖ ପ୍ରକାଶତଃ କଣ କରିବାକୁ ହେବ ବୋଲି ପଚାରିବା ଏବଂ ମନ୍ତ୍ରଣାର ଆବଶ୍ୟକତା ଓ କେତେ କାର୍ଯ୍ୟ ନୀତି ଉକ୍ତ ଅଛି ।

୭ରେ — ରାକ୍ଷସମାନେ ରାବଣଙ୍କୁ କହିଲେ କି ଆପଣଙ୍କୁ ମଧୁଦୈତ୍ୟ ଭାର୍ଯ୍ୟାର୍ଥ ନିଜ ଦୁହିତା ଦେଇଅଛନ୍ତି । ଆପଣ ଇନ୍ଦ୍ରଯମାଦିଙ୍କୁ ଜୟ କରିଛନ୍ତି, ଭୋଗବତୀରେ ଜୟ ପ୍ରକାଶ କରିଛନ୍ତି, ଆପଣଙ୍କର ବହୁଶସ୍ତ୍ରଧାରୀ ଯୋଦ୍ଧାମାନେ ଅଛନ୍ତି, ଆପଣଙ୍କୁ କିଏ ସରି ନୁହେ ଇତ୍ୟାଦି ଇତ୍ୟାଦି, ଆପଣ ଅବଶ୍ୟ ରାଘବଙ୍କୁ ନିହତ କରିପାରିବେ ।

୮ରେ — ପ୍ରହସ୍ତ ସେନାପତି ରାବଣଙ୍କୁ କହିଲେ ଯେ ଆପଣ ଦେବଦାନବାଦିଙ୍କୁ ଜିଣିଅଛନ୍ତି, କପିମାନେ ଅବା କେତେ ? ହନୂମାନ ଆମ୍ଭମାନଙ୍କୁ ବଞ୍ଚନାସିନା କଲା, ଆଦେଶ ଦିଅନ୍ତୁ ଜଗତକୁ କପିଶୂନ୍ୟ କରିବି । ତାପରେ ଦୁର୍ମୁଖ ରାକ୍ଷସ, ତାପରେ ବଜ୍ରଦଂଷ୍ଟ୍ର ହନୂମାନାଦିଙ୍କୁ ଓ ରାମାଦିଙ୍କୁ ମାରିବା ପାଇଁ ପ୍ରତାପ ପ୍ରକାଶିଲେ । ତାପରେ କେତେକ କହିଲେ ମନୁଷ୍ୟ ବେଶଧାରୀ ରାକ୍ଷସମାନେ ଯାଇ ଭରତ ଆମ୍ଭମାନଙ୍କୁ ପଠାଇଅଛନ୍ତି ବୋଲି ରାମଙ୍କୁ କହନ୍ତୁ, ଏ ଉପାୟରେ ତାଙ୍କୁ ନାଶ କରନ୍ତୁ । ତାପରେ କୁମ୍ଭକର୍ଣ୍ଣଙ୍କ ପୁତ୍ର ନିକୁମ୍ଭ ରାକ୍ଷସ କହିଲେ କି ତୁମ୍ଭେ ସମସ୍ତେ ଥାଅ, ମୁଁ ଏକମାତ୍ର ଯାଇ ରାମାଦିଙ୍କୁ ନିହତ କରିବି । ତାପରେ ବଜ୍ରହନୂ ରାକ୍ଷସ ମଧ ଏପରି କେବଳ କହିଲା ।

୯ରେ – ନିକୁମ୍ଭ, ରଭସ, ସୂର୍ଯ୍ୟଶତ୍ରୁ, ସୁପ୍ତଘ୍ନ, ଯଜ୍ଞହା, ମହାପାର୍ଶ୍ୱ, ମହୋଦର, ଅଗ୍ନିକେତୁ, ରଶ୍ମିକେତୁ ଓ ଇନ୍ଦ୍ରଜିତ ପ୍ରଭୃତି ବୀରମାନେ ଶସ୍ତ୍ରାସ୍ତ୍ର ହସ୍ତରେ କହିଲେ ଯେ ଆମ୍ଭେମାନେ ରାମାଦିଙ୍କୁ ନିହତ କରିବୁ, କିଛି ବିଚାର ନାହିଁ । ଏ ସମୟେ ବିଭୀଷଣ ସେ ସମସ୍ତଙ୍କୁ ବସାଇ କହିଲେ କି (ଅପ୍ୟୁପାୟୈ ସ୍ତ୍ରୀଭୀସ୍ତାତ !---୮, ୧୦, ୧୧, ୧୨, ୧୩, ୧୬, ୧୭, ୨୨, ୨୩) । ବିଭୀଷଣଙ୍କର ଏ କଥାମାନ ଶୁଣି ରାବଣ ଗୃହ ଭିତରକୁ ବାହାରି ଗଲେ ।

[ ୭, ୮, ୯ ସର୍ଗରେ ରାକ୍ଷସବୀରମାନେ ନିଜନିଜ ବୀରମହତ୍ୱ ବିଭା ପ୍ରକାଶନରେ ରାକ୍ଷସେଶ୍ୱରଙ୍କର ଧୈର୍ଯ୍ୟ ସଂସ୍ଥାପନ ଓ ଯୁଦ୍ଧ ପ୍ରରୋଚନା କରିଅଛନ୍ତି, କିନ୍ତୁ ବିଭୀଷଣ ସେସବୁ ଅଯଥା ମନେକରି ସୀତାଙ୍କୁ ପ୍ରତ୍ୟର୍ପଣାର୍ଥ ଅଗ୍ରଜଙ୍କୁ ଜଣାଇଅଛନ୍ତି ]

୧୦ରେ – ପରଦିନ ପ୍ରାତଃକାଳରୁ ବିଭୀଷଣ ରାବଣ ଗୃହକୁ ଯାଇ ତାଙ୍କୁ ଦର୍ଶନ କଲେ । (ଏ ସ୍ଥଳେ ବେଦବିଦ୍ ବ୍ରାହ୍ମଣମାନେ ବୈଦିକ ସ୍ୱସ୍ତିକ୍ରିୟା କରୁଥିବା ଉକ୍ତ ଅଛି) ଯଥା ସମୟରେ କହିଲେ କି (ଯଦା ପ୍ରବୃତି ବୈଦେହୀ--- ୧୪) (କେତେକ ଦୁର୍ନିମିତ୍ତ ଲେଖାଅଛି) x x x x x x x (ତଦେବଂ ପ୍ରସ୍ତୁତେ କାର୍ଯେ---୨୨ ଇତ୍ୟାଦି) ରାବଣ କହିଲେ କି (ଭୟଂ ନ ପଶ୍ୟାମି---୨୮)

୧୧ରେ – ରାଘବ ବୀର ସମାରୋହରେ ସଭାକୁ ଯିବା, ରାକ୍ଷସମାନଙ୍କୁ ଡକାଇ ଅଣାଇବା ଉକ୍ତ ଅଛି ।

୧୨ରେ – ମହାଭାରତରେ "ବିରାଟଂ ବାହିନୀପତିଂ" ଯେପରି ରାମାୟଣରେ "ପ୍ରହସ୍ତଂ ବାହିନୀପତିଂ" ସେପରି ଅନେକତ୍ର ଲେଖାଥିବା ଜଣାଯାଏ । ରାବଣ ପ୍ରହସ୍ତ ନଗର ରକ୍ଷାର୍ଥ ଆଦେଶିବା, ବୀରମାନଙ୍କୁ ଆତ୍ମୀୟତା ପ୍ରକାଶିବା (ଏ ସ୍ଥଳେ କୁମ୍ଭକର୍ଣ୍ଣଙ୍କ ନିଦ୍ରା ଛଅ ମାସ ହୋଇଥିବା ଉକ୍ତ ଅଛି – ଅୟଂ ହି ସୁପ୍ତଃ ଷଟ୍‌ମାସାନ୍ – ୧୧) । ସୀତାଙ୍କୁ ଆଣିବା ସେ ଅସ୍ୱୀକାର କରିବାର ଜଣାଇବା, ହନୂମାନ ତ ଏପରି କଲା, ଏବେ ବାହିନୀ ସହ ରାମ ଆସିଲେ, ବର୍ତ୍ତମାନ କର୍ତ୍ତବ୍ୟ କି ବୋଲି ପଚାରିବା, ରାବଣଙ୍କର ଏପରି ପରିବେଦନା ଶୁଣି କୁମ୍ଭକର୍ଣ୍ଣ କହିଲେ କି (କୁମ୍ଭକର୍ଣ୍ଣଂ ପ୍ରବୃଦ୍ଧକ୍ରୋଧ – ୨୮, ୨୯ ଇତ୍ୟାଦି) (ଏହାର ଅର୍ଥ ଟିକା ଦେଖିବୁଁ) ଏବଂ କୁମ୍ଭକର୍ଣ୍ଣ କହିଲେ ମୁଁ ରାମାଦିଙ୍କୁ ନିହତ କରିବି, ତୁମେ ଚିନ୍ତା ଛାଡ଼, ରାମ ମୃତ ହେଲେ ସୀତା ତୁମକୁ ଭଜିବେ ଇତ୍ୟାଦି ।

କୁମ୍ଭକର୍ଣ୍ଣ ନିଦ୍ରିତ କର ଟିକା ଦେଖିବୁଁ

୧୩ରେ – ମହାପାର୍ଶ୍ୱ ରାବଣଙ୍କୁ ଅଭୟ ପ୍ରକାଶି ରାମ ବିନାଶରେ ସୀତାଙ୍କୁ ଅନୁଭବ କର ବୋଲି କହିବା, ରାବଣ ବଳାତ୍କାରରେ ନାରୀ ହରିଲେ ମସ୍ତକ ଶତଧା ହେବାର ଶାପ ବ୍ରହ୍ମାଙ୍କଠାରୁ ପାଇଥିବା କଥା କହିବା (ରାବଣ ପୁଞ୍ଜିକସ୍ଥଳାଙ୍କୁ ବଳେ ରମିବାରୁ ବ୍ରହ୍ମା ତାଙ୍କୁ ଶାପ ଦେଇଅଛନ୍ତି କି – ଅଦ୍ୟ ପ୍ରଭୃତି ଯାମନ୍ୟାଂ---୧୪) ସେ ହେତୁ ମୁ ସୀତାଙ୍କୁ ଧର୍ଷି ପାରୁନାହିଁ ବୋଲି ରାବଣ କହିବା । ମୋର ବଳରାମ ଜାଣେ ନାହିଁ, ମୁଁ ଅବଶ୍ୟ ତାଙ୍କୁ ନିହତ କରିବି ଇତ୍ୟାଦି ଇତ୍ୟାଦି କଥା କହିବା ଉକ୍ତ ଅଛି ।

୧୪ରେ – ବିଭୀଷଣ ରାମ ମାହାତ୍ମ୍ୟ ପ୍ରଦ୍ୟୋତନ ପୂର୍ବକ ସୀତାଙ୍କୁ ପ୍ରତ୍ୟର୍ପଣ କରିବାକୁ କହିବା (ଯାବନ୍ନଲଙ୍କାଂ ସମଭିଦ୍ରବ--- ୩ x x ୬, ୭) ବିଭୀଷଣ ବଚନ ଶୁଣି ପ୍ରହସ୍ତ କହିଲେ କି ମୋର କାହାଠାରୁ ଭୟ ନାହିଁ, ବିଭୀଷଣ ରାମଙ୍କ ଅଲୌକିକ ବୀରତ୍ୱ ପ୍ରକାଶନରେ କହିଛି (x x x ନରାବଣୌ ନାପିବଳ--- ୧୫ x x ୧୭ x x ୨୧) ୧୨ ଏବଂ ୧୩ରେ ମଧ କୁମ୍ଭକର୍ଣ୍ଣାଦି ବୀରମାନେ ରାମ ନାଶନରେ ଆପଣାକୁ ସମର୍ଥ ବୋଲି ରାବଣଙ୍କୁ ଜଣାଇ ତାଙ୍କୁ ଉତ୍ସାହିତ କରିଅଛନ୍ତି । ପରଂତୁ ବିଭୀଷଣ ପୂର୍ବବତ୍ ସୀତା ପ୍ରତ୍ୟର୍ପଣ ଜଣାଇ ଅଛନ୍ତି ଏବଂ ରାମଙ୍କ ଅଲୌକିକ ବୀରତ୍ୱ ଜଣାଇଅଛନ୍ତି ।

୧୫ରେ – ଇନ୍ଦ୍ରଜିତ ବିଭୀଷଣଙ୍କୁ କହିଲେ କି ଏ ବଂଶରେ ଜାତ ହୋଇ ଆପଣ ଏପରି କଣ ଭୀତି କରି କହୁଅଛନ୍ତି, ଆଉ ଭୀତ କରାଉଅଛନ୍ତି । ମୁ ଇନ୍ଦ୍ରାଦି ଦେବତାଙ୍କୁ ପରାସ୍ତ କରିଅଛି, ମନୁଷ୍ୟ ମାତ୍ରକୁ ପାରିବି ନାହିଁ କି ଇତ୍ୟାଦି । ତେତେବେଳେ ବିଭୀଷଣ କହିଲେ କି ତୁମେ ଅପରିଣତ ମନସ୍କ ବାଳକ ଉଚିତ ମନ୍ତ୍ରଣା ଜାଣନାହିଁ, କାର୍ଯ୍ୟାକ୍ରମ ଜାଣନାହିଁ, ରାଘବଙ୍କ ଶରରୁ କେହି ମୁକ୍ତି ପାଇବେ ନାହିଁ, ଅତଏବ ସୀତାଙ୍କୁ ସମର୍ପଣ କରି ସୁଖେ ରହିବା ।

୧୬ରେ – ରାବଣ ବିଭୀଷଣଙ୍କ ବଚନରେ କ୍ରୁଦ୍ଧ ହୋଇ ଜ୍ଞାତିମାନେ ଜ୍ଞାତିର ହାନି ଭାବନ୍ତି ବୋଲି କେତେକ କଥା କହି ବିଭୀଷଣଙ୍କୁ ଧିକ୍କାର କରିଅଛନ୍ତି (ଅନ୍ୟସ୍ତ୍ୱେ ବଂ ବିଧଂବୃୟାତ୍--- ୧୫, ୧୬) ବିଭୀଷଣଙ୍କୁ ରାବଣ ଲଙ୍କାରୁ ବାହିରିଯିବା ପାଇଁ ଅଧିକ ଆଉ କିଛି କହିଥିବା ଏ ସ୍ଥଳେ ଉକ୍ତ ନାହିଁ । କେବଳ ଏପରି ଧିକ୍କାର ମାତ୍ର କରିଥିବା ଉକ୍ତ ଅଛି । ବିଭୀଷଣ

ଆକାଶରେ ରହି ରାବଣଙ୍କୁ ଭକ୍ତିତଃ କେତେକ ଉପଦେଶ ଦେଇ ମୁ ଯାଉଅଛି ବୋଲି କହିଲେ (ସୁଳଭାଃ ପୁରୁଷାରାଜନ୍--- ୨୦ ଇତ୍ୟାଦି) ।

୧୭ରେ – ଆକାଶରେ ଚାରି ମନ୍ତ୍ରୀଙ୍କ ସହ ବିଭୀଷଣଙ୍କୁ ସୁଗ୍ରୀବ ଦେଖି ବିଚାର କରି କହିଲେକି (ଏଷ ସର୍ବାୟୁଧୋପ୍ରେତଃ---୭) ବାନରମାନେ ସେମାନଙ୍କୁ ନିହତ କରିବା ପାଇଁ ଆଦେଶ ମାଗିଲେ । ବିଭୀଷଣ ଏସବୁ କଥା ଶୁଣୁଅଛନ୍ତି, ସୁଗ୍ରୀବ ଏବଂ ବାନର ମାନଙ୍କୁ ଉଦ୍ଦେଶି କହିଲେ କି ମୁ ରାବଣଙ୍କର ଅନୁଜ, ସେ ସୀତାଙ୍କୁ ହରି ମୋର ହିତକଥା ଶୁଣିଲେ ନାହିଁ, ସୀତାଙ୍କୁ ପ୍ରତ୍ୟର୍ପଣ କର ବୋଲି କହିଲି, ଶୁଣିଲେ ନାହିଁ (ସୋଽହଂ ପରୁଷେଣ ତ୍ତେନ---୧୬, ୧୭) ସୁଗ୍ରୀବ ଲକ୍ଷ୍ମଣଙ୍କ ସହ ରାମଙ୍କଠାରେ ଏକଥା ନିବେଦିଲେ ଏବଂ ଚ କହିଲେ ଯେ ଏ ରାବଣର ଦୂତ ହୋଇଥିବେ, ଆମ୍ଭମାନଙ୍କ ଭେଦ କରିବାକୁ ଆସିଥିବେ, ଅଥବା ସମୟ ଦେଖି ନାଶ କରିବାକୁ ଆସିଥିବେ । ଏ ତ ଶତ୍ରୁର ଭ୍ରାତା, କିପରି ବିଶ୍ୱାସ କରିବାକୁ ହେବ ଇତ୍ୟାଦି । ରାମ ସୁଗ୍ରୀବଙ୍କ କଥାର ବିଚାର ହନୂମାନ ପ୍ରଭୃତିଙ୍କୁ ପଚାରିଲେ । ଅଙ୍ଗଦ କହିଲେ (ଶତ୍ରୋଃସକାଶାଦ୍---୩୯) ଅନ୍ୟାନ୍ୟ ବାନରମାନେ ଆଉ ଅନ୍ୟାନ୍ୟ ପ୍ରକାର କହିଲେ । ହନୂମାନ ମଧ୍ୟ ନୀତିଯୁକ୍ତ କେତେକ କହିଲେ ।

୧୮ରେ – ରାମ କହିଲେ (ମିତ୍ରଭାବେନ ସଂପ୍ରାପ୍ତଂ---୩) ସୁଗ୍ରୀବ କହିଲେ କି (ସୁଦୁଷ୍ଟୋ ବାପ୍ୟ ଦୁଷ୍ଟୋବା--- ୫) ରାମ ଲକ୍ଷ୍ମଣଙ୍କୁ ଚାହିଁ ସୁଗ୍ରୀବଙ୍କ ବଚନର ସମର୍ଥନ କଲେ । କେତେକ ନୀତି ଦେଖାଇ ବିଭୀଷଣ ଗ୍ରାହ୍ୟ ବୋଲି କହିଲେ । ତେବେକେ ସଲକ୍ଷ୍ମଣ ସୁଗ୍ରୀବ କହିଲେ କି (ରାବଣେନ ପ୍ରଣିହିତଂ---୧୮) ସୁଗ୍ରୀବଙ୍କ ବାକ୍ୟ ଶୁଣି ରାମ କହିଲେ ଯେ ମୁ ଦାନବ, ରାକ୍ଷସ, ଯକ୍ଷ ପ୍ରଭୃତିଙ୍କୁ ଅଙ୍ଗୁଳି ଅଗ୍ରରେ ନିହତ କରିପାରେ ତଥାପି (ଶ୍ରୂୟତେ ହି କପୋତେନ---- ୨୫, ୨୬, ୨୮, ୨୯ ଇତ୍ୟାଦି) (ଅଭୟଂ ସର୍ବଭୂତେଭ୍ୟୋ----୩୫) ସୁଗ୍ରୀବ ବିଭୀଷଣଙ୍କୁ ଆଣି ଉପସ୍ଥାପିତ କଲେ ।

୧୯ରେ – ରାମ ସନ୍ତୁଷ୍ଟ ମନରେ ବିଭୀଷଣଙ୍କୁ ରାବଣଙ୍କ ବଳକଥା ପଚାରିବାରୁ ସେ କହିଲେ– ରାବଣ, କୁମ୍ଭକର୍ଣ୍ଣ, ପ୍ରହସ୍ତସେନାପତି, ଇନ୍ଦ୍ରଜିତ, ମହାପାର୍ଶ୍ୱ, ମହୋଦରଙ୍କ ପରିଚୟ ଦେଲେ । ରାମ କହିଲେ (ଅହଂହତ୍ୱା ଦଶଗ୍ରୀବଂ---୧୯) ରାମାୟଣରେ ସେନାପତିମାନଙ୍କରେ ପ୍ରହସ୍ତଙ୍କ ଉତ୍କର୍ଷ ସମଧିକ

ସ୍ଥଳେ ଉକ୍ତ ଅଛି (x x x ଅହତ୍ୱା ରାବଣଂ ସଂଖ୍ୟେ---୨୧) ବିଭୀଷଣ ମଧ୍ୟ ରାକ୍ଷସ ବିନାଶରେ ପ୍ରତିଜ୍ଞା କଲାରୁ ରାମ ସମୁଦ୍ରରୁ ଜଳ ଆଣିବା ପାଇଁ ଏବଂ ବିଭୀଷଣଙ୍କୁ ଅଭିଷେକ କରିବା ପାଇଁ ଲକ୍ଷ୍ମଣଙ୍କୁ ଆଦେଶିଲେ । ଲକ୍ଷ୍ମଣ ତାଙ୍କୁ ଅଭିଷିକ୍ତ କଲେ । ବିଭୀଷଣଙ୍କୁ ହନୁମାନ ପ୍ରଭୃତି ସାଗର ତରିବାର ଉପାୟ ପଚାରନ୍ତେ ବିଭୀଷଣ କହିଲେ କି (ସମୁଦ୍ରଂ ରାଘବୋ ରାଜା ଶରଣଂଗନ୍ତୁମରହତି – ୩୧) ରାମ ଲକ୍ଷ୍ମଣ ଓ ସୁଗ୍ରୀବଙ୍କ ସହ ମନ୍ତ୍ରଣା କରି କୁଶାସନରେ ଦର୍ଭଶୟନ କଲେ ।

୨୦ରେ – ରାବଣ ଦୂତ ଶାର୍ଦ୍ଦୁଳ ପ୍ରବେଶି ସବୁଦେଖି ରାବଣଙ୍କୁ କହିବା । ରାବଣ ଶୁକଙ୍କ ଦ୍ୱାରା ସୁଗ୍ରୀବଙ୍କଠାକୁ ସମ୍ବାଦ ଦେବା (ନ କଶ୍ଚିତ୍ ଅର୍ଥଃ ତବ--- ୧୦) (କିଷ୍କିନ୍ଧାଂ ପ୍ରତିଗମ୍ୟତାଂ---୧୧) ଶୁକ ପକ୍ଷୀରୂପେ ଆସିଲେ, ରାବଣଙ୍କ ସନ୍ଦେଶ ସୁଗ୍ରୀବଙ୍କୁ ଜଣାଇଲେ । ବାନରମାନେ ଆକାଶକୁ ଡେଇଁ ତାଙ୍କୁ ଧରି ପ୍ରହାର କଲେ । ରାମଙ୍କ ଆଦେଶରେ ଛାଡ଼ିଦେଲେ । ମୁ ରାବଣଙ୍କୁ କଣ କହିବି ବୋଲି ପଚାରିବାରୁ ସେ କହିଲେ (ନମେଽସିମିତ୍ରଂ ନ ତଥା – ୨୪ ଇତ୍ୟାଦି) ତାପରେ ଅଙ୍ଗଦ କହିଲେକି, ହେ ପ୍ରଭୋ ! ଏ ଦୂତ ନୁହେ, ସୈନ୍ୟ କଳନାର୍ଥ ଆସିଅଛି, ଏହାକୁ ଧରିବା ଉଚିତ । ସୁଗ୍ରୀବଙ୍କ ଆଦେଶରେ ବାନରମାନେ ଶୁକକୁ ବାନ୍ଧିଲେ । ରାମଙ୍କୁ ଦୁଃଖରେ ପ୍ରାର୍ଥନା କଲାରୁ ସେ ତାକୁ ଛାଡ଼ିଦେବାକୁ ଆଜ୍ଞା କଲେ ।

୨୧ରେ – (ଅଦ୍ୟ ମେ ମରଣଂ ବାଥ ତରଣଂ--- ୯, ୧୦, ୧୧) ସାଗର ଦେଖା ନ ଦେବାରୁ ରାମ କିଞ୍ଚିତ୍ କ୍ରୁଦ୍ଧ ହେଲେ (ଏ ସ୍ଥଳେ ଦୁଷ୍ଟଲୋକ ପ୍ରତି ନିର୍ଗୁଣ ପ୍ରତି ଶାନ୍ତାଦି ସୁଗୁଣର ବିପରୀତ ଫଳ ହେବାର ନୀତିବାକ୍ୟମାନ ଉକ୍ତ ଅଛି) ଏବଂ କହିଲେ (ଚାପମାନୟ ସୌମିତ୍ରେ---୨୨ ଇତ୍ୟାଦି) ରାମଶରଘାତରେ ସମୁଦ୍ରର ଦୁରବସ୍ଥା ଘଟିଲା, ଜଳଜନ୍ତୁମାନେ ଆକୁଳ ହେଲେ (ତତସ୍ତୁ ତଂ ରାଘବ ମୁଗ୍ରବେଗଂ---୩୩) ।

୨୨ରେ – ତୋତେ ଶୁଖାଇ ଧୂଳି କରିଦେବି ବୋଲି ରାମ ସମୁଦ୍ର ପ୍ରତି କ୍ରୋଧ ପ୍ରକାଶିବା, ରାମ ବ୍ରହ୍ମାସ୍ତ୍ର ଯୋଗ କଲାରୁ ଭୂମି ଆକାଶାଦି କଂପିତ ହେବା, ଉତ୍ପାତମାନ ଜନ୍ମିବା (ଏ ସ୍ଥଳେ ସମୁଦ୍ରର ଭୟଙ୍କର ଅପୂର୍ବ ବିକାରମାନ ଉକ୍ତ ଅଛି) ସମୁଦ୍ର ସଶରୀରରେ ଦେଖାଦେଇ ରାମଙ୍କୁ ସ୍ତୁତି କରିବା, ରାମ କହିଲେ କି (ଅମୋଘୋଽୟଂ ମହାବାଣଃ କସ୍ମିନ୍ ଦେଶେ ନିପାତ୍ୟତାଂ – ୩୦) ସମୁଦ୍ର କହିଲେ କି (ଉତ୍ତରେଣାବକାଶୋଽସ୍ତି---

ଏହାର ଅର୍ଥ ଟିକାରେ ଦେଖିବୁଁ

୩୨, ୩୩, ୩୪) ରାମ ଶର ମୋକ୍ଷ କଲାରୁ (x x ତେନ ତତ୍ ମରୁକାନ୍ତାରଂ--- ୩୬ x x ୩୮, ୩୯, ୪୦, ୪୧, ୪୨, ୪୩–) ସମୁଦ୍ର କହିଲେ ବିଶ୍ୱକର୍ମା ସମାନ ଆପଣଙ୍କର ଯେ ନଳ ସେନାପତି ଏ ସେତୁ ନିର୍ମାଣ କରନ୍ତୁ, ମୁ ସେତୁକୁ ଧରିବି । ତାପରେ ନଳ ସେତୁ କରିବାକୁ ବାହାରିଲେ ଏବଂ କହିଲେ ମୋର ଗୁଣ ମୁ କହୁନଥିଲି, ସମୁଦ୍ର ସ୍ମରଣ କରାଇ ଦେଲେ, ମୋଦ୍ୱାରା ବାନରମାନେ ସେତୁ ବାନ୍ଧନ୍ତୁ । ରାମାଦେଶରେ ବାନରମାନେ ବୃକ୍ଷ ପର୍ବତରେ ସେତୁ ଆରମ୍ଭ କଲେ (ପର୍ବତାଂଶ୍ଚ ସମୁତ୍ପାଟ୍ୟ ଯନ୍ତ୍ରୈଃ ପରିବହନ୍ତି ଚ – ଯନ୍ତ୍ର କଣ ? ଟୀକା ଦେଖିବୁ – ୬୧) (ଦଶଯୋଜନ ବିସ୍ତାରଂ ଶତଯୋଜନ ମାୟତଂ --- ୬୪)

| | | |
|---|---|---|
| (1) | କୃତାନି ପ୍ରଥମେନାହ୍ନା ଯୋଜନାନି ଚତୁର୍ଦଶ ।।୬୮ | 14 |
| (2) | ଦ୍ୱିତୀୟେନ ତଥା ଚାହ୍ନା ଯୋଜନାନି ତୁ ବଂଶତିଃ ।।୬୯ | 20 |
| (3) | ଅହ୍ନା ତୃତୀୟନ ତଥା ଯୋଜନାନି କୃତାନି ତୁ ତ୍ୱରମାଣୈ ମହାକାୟୈ ରେକବିଂଶତି ରେବଚ ।।୭୦ | 21 |
| (4) | ଚତୁର୍ଥେନ ତଥା ଚାହ୍ନା ଦ୍ୱାବିଂଶତିରଥାପିଚ ।।୭୧ | 22 |
| (5) | ପଞ୍ଚମେନ ତଥା ଚାହ୍ନା ପ୍ଲବଂଗୈଃ କ୍ଷିପ୍ରକାରିଭିଃ ଯୋଜନାନି ତ୍ରୟୋବିଂଶଦ୍ ସୁବେଲମଧିକୃତ୍ୟ ବୈ ।।୭୨ | 23 |
| | | 100 |

ହନୁମାନଙ୍କ ଆନୀତ ପର୍ବତକୁ ନଳ ବାମ ହସ୍ତରେ ସ୍ପର୍ଶ କରିବାରୁ ଭଭୟଙ୍କ କଳି ଢନ୍ଳିବା କଥା ଏ ସ୍ଥଳେ ଉକ୍ତ ନାହିଁ ।

ସେତୁର ଉପମା | ସନଳେନ କୃତଃସେତୁଃ ସାଗରେ ମକରାଳୟେ
ଶୁଶୁଭେ ଶୁଭଗଃ ଶ୍ରୀମାନ୍ ସ୍ୱାତିପଥ ଇବାମ୍ବରେ ।।୭୫
ଅଶୋଭତ ମହାସେତୁଃ ସୀମନ୍ତ ଇବସାଗରେ ।।୮୦

୨୩ରେ – ଲଙ୍କା ପ୍ରତି ପ୍ରସ୍ଥାନ – ରାମ ଲକ୍ଷ୍ମଣଙ୍କୁ ପ୍ରଦୃଷ୍ଟ ଦୁର୍ନିମିତ୍ତାଦି ଉତ୍ପାତ ମାନ କହିବା ଉକ୍ତ ଅଛି ।

୨୪ରେ – ରାମ ଲଙ୍କାର ସୌନ୍ଦର୍ଯ୍ୟ ଲକ୍ଷ୍ମଣଙ୍କୁ କହିବା ଏବଂ ପ୍ରଧାନ ପ୍ରଧାନ ବୀରମାନଙ୍କୁ ଯଥା ସ୍ଥାନରେ ରହିବାକୁ ଆଦେଶିବା ଉକ୍ତ ଅଛି । ତେତେବେଳେ ରାମ ସୁଗ୍ରୀବଙ୍କୁ କହିଲେ କି (ସୁବିଭକ୍ତାନି ସୈନ୍ୟାନି ଶୁକ ଏଷ ବିମୁଚ୍ୟତାଂ – ୨୩) (ମୁଚୟାମାସ ତଂ ଦୂତଂ ଶୁକଂ ରାମସ୍ୟ

ଶାସନାତ୍ – ୨୪) ଶୁକ ବାନରଙ୍କ ଦ୍ୱାରା ପୀଡ଼ିତ ହୋଇ ରାବଣଠାକୁ ଯାଇ ସମସ୍ତ କହିଲା (ସୀତାଂ ବାସ୍ମୈ ଦ୍ରୟଚ୍ଛାସୁ ସୁଯୁଦ୍ଧଂ ବା ପ୍ରଦୀୟତାଂ – ୩୫) ରାବଣ ନିଜ ଗରିମା ପ୍ରକାଶ କରି ଅନେକ କହିଲେ – (x x x x ନୈବସୀତାଂ ପ୍ରୟଚ୍ଛାମି ସର୍ବଲୋକ ଭୟାଦପି – ୩୭) (x x x x ନବାସବେ ନାପି ସହସ୍ର ଚକ୍ଷୁଷା---୪୫)

[ ୨୫-୨୬-୨୭-୨୮ରେ ରାବଣ ପରୋକ୍ଷ ଓ ପ୍ରତ୍ୟକ୍ଷ ଭାବରେ ରାମବାହିନୀ କଳିବା ଏବଂ ସାରଣ ମୁଖରୁ ରାମବୀରମାନଙ୍କର ମହତ୍ତ୍ୱର ପରିଚୟ ଶୁଣିବା ଉକ୍ତ ଅଛି ]

୨୫ରେ – ରାବଣ ଶୁକ ସାରଣ ଦୁଇ ମନ୍ତ୍ରୀଙ୍କୁ କହିଲେ ଯେ ରାମ ତ ସାଗରରେ ସେତୁ ବାନ୍ଧି ଅସଂଖ୍ୟ କପି ସେନା ଧରି ସାଗର ଲଙ୍ଘିଲେ । ତୁମେ ଦୁହେଁ ଯାଇ ତାଙ୍କର ସୈନ୍ୟ କଳନା କର, କିଏ କିଏ ପ୍ରଧାନ ବୀର, ପ୍ରଧାନମନ୍ତ୍ରୀ, ସେତୁ କି ରକମ ବନ୍ଧା ହୋଇଅଛି, ରାମଙ୍କ ବଳ କିପରି, ବ୍ୟବସାୟ କିପରି, ଲକ୍ଷ୍ମଣଙ୍କ ବଳ କିପରି ଇତ୍ୟାଦି କଥା ବୁଝିଆସ । ଶୁକ ସାରଣ ଦୁହେଁ ବାନର ରୂପରେ ପ୍ରବେଶିଲେ । ବିଭୀଷଣ ତାହା ଜାଣିପାରି ସେ ଦୁହିଁଙ୍କୁ ଧରାଇ ରାମଙ୍କୁ ନିବେଦନ କଲେ । ଆପଣଙ୍କ ବଳ କଳନା ପାଇଁ ରାବଣାଦେଶରେ ଆମେ ଆସିଅଛୁ ବୋଲି ସେ ଦୁହେଁ ଜଣାଇଲେ । ରାମ ଆଦେଶ କଲେ କି ଭଲକରି ମୋର ସୈନ୍ୟ ଦେଖ, ଯାହା ତୁମେ ଦେଖି ନପାର ତାହା ବିଭୀଷଣ ଦେଖାଇ ଦିଅନ୍ତୁ, ରାବଣଙ୍କୁ କହ ବୋଲି କହିଲେ କି (ଯଦ୍ ବଳଂ ଚ ସମାଶ୍ରିତ୍ୟ---- ୨୩, ୨୪ ଇତ୍ୟାଦି) ମନ୍ତ୍ରୀ ଦୁହେଁ ଆସି ଯାବତ ଘଟଣା ଓ ରାମଙ୍କ ବଳ ଓ ଚେଷ୍ଟାଦି ରାବଣଙ୍କୁ ଜଣାଇଲେ (ପ୍ରହୃଷ୍ଟ ରୂପା ଧ୍ୱଜିନୀ----୩୬)

ସମୟ | ୨୬ରେ – ରାବଣ ସାରଣ ମୁଖରୁ ରାମ ସମ୍ବାଦ ଶୁଣି ସୀତାଙ୍କୁ ବାହୁଡ଼ାଇବାରେ ଅନିଚ୍ଛା ପ୍ରକାଶ କରି (ନୈବ ସୀତାଂ ପ୍ରଦାଷ୍ୟାମୀ ସର୍ବଲୋକ ଭୟାଦପି– ୨) ରାମବାହିନୀ ଦିଦୃକ୍ଷାରେ ଶୁକ ସାରଣ ସହ ମହୋଚ୍ଚ ପ୍ରାସାଦରେ ଚଢ଼ିଲେ, ଦେଖିଲେ ଯେ ସମଗ୍ର ଭୂମି ବାନରମାନଙ୍କରେ ଆବୃତ ହୋଇଅଛି । ରାବଣଙ୍କ ପ୍ରଶ୍ନରେ ସାରଣ ନୀଳ, ଅଙ୍ଗଦ, ନଳ, କୁମୁଦ (ଏ ଗୋମତୀ ତୀରରେ ରାଜ୍ୟ କରିଥିଲେ) ରମ୍ଭ (ରମ୍ଭୋନାମୈଷ ଯୂଥପଃ – ୩୨) ଶରଭ, ପନସ, ବୀନତ (ବୀନତୋ ନାମ ଯୂଥପଃ

– ୪୩) କ୍ରୋଧନ (କ୍ରୋଧନୋନାମ ଯୂଥପଃ----୪୫) ଗବୟ ଏହି ସେନାପତିମାନଙ୍କର ପରିଚୟ ଦେଇଅଛନ୍ତି ।

୨୭ରେ – ସାରଣଙ୍କ ମୁଖରେ ମଧ କେତେକ ସେନାପତିମାନଙ୍କର ସବିଶେଷ ପରିଚୟ ଉକ୍ତ ଅଛି । ଏହାର ଠିକ୍ ଅନୁବାଦ ପଟ୍ଟନାୟକ ରାମାୟଣରେ ଲେଖାଅଛି କି ଦେଖିବୁଁ ।

୨୮ରେ – ଶୁକ ରାବଣଙ୍କୁ କେତେକ ବାନର ବୀର ଓ ଲକ୍ଷ୍ମଣାଦିଙ୍କର ପରିଚୟ ଦେଇଅଛନ୍ତି । (ନ୍ୟଗ୍ରୋଧାନୀବ ଗାଙ୍ଗେୟାଂ ଶାଳାଂ ହୈମବତାନୀବ– ୨–ଏପରି ମହତ୍ ବା ବଡ଼ ଅଟନ୍ତି) (ଭାରତରେ ବିନ୍ଦାନୁବିନ୍ଦପରି ରାମାୟଣରେ ମୈନ୍ଦ ଓ ଦ୍ୱିବିଦ ମହାବୀର ଥିଲେ – ଯୌତୌପଶ୍ୟସି---୬) (ହନୁମାନଙ୍କ ପରିଚୟରେ ସେ ସୂର୍ଯ୍ୟଙ୍କୁ ଧର୍ଷଣ କରିଥିବା ଉକ୍ତ ଅଛି) ଏ ସର୍ଗର ଅନ୍ତରେ କୋଟିଠାରୁ ମହୌଘ ପର୍ଯ୍ୟନ୍ତ ବହୁ ସଂଖ୍ୟାକ୍ରମ ଉକ୍ତ ଅଛି । ଏହା ପଟ୍ଟନାୟକ ରାମାୟଣରେ ଅଛି କି ? ଦାସେ କଣ ଲେଖିଛନ୍ତି ମିଳାଇବୁଁ ।

(ଉପମା | ଉକ୍ଷା ସନ୍ନିଧାନ ସ୍ଥଳେ)

୨୯ରେ – ରାବଣ ଶୁକ ସାରଣଙ୍କ ମୁଖରୁ ଶତ୍ରୁମାନଙ୍କ ଉତ୍କର୍ଷ ଶୁଣି କ୍ରୋଧହେବା କ୍ରମ ଉକ୍ତ ଅଛି । ରାବଣ ମହୋଦରଙ୍କଦ୍ୱାରା ଚାରମାନଙ୍କୁ ପଠାଇବା, ଶାର୍ଦ୍ଦୂଳାଦି ଚାର ଯାଇ ବିଭୀଷଣଙ୍କ ଦ୍ୱାରା ଧୃତ ହେବା, ରାମାଦେଶରେ ମୁକ୍ତିପାଇ ରାବଣଙ୍କୁ ସମସ୍ତ ଜଣାଇବା ଉକ୍ତ ଅଛି ।

୩୦ରେ – ରାବଣଙ୍କ ପ୍ରଶ୍ନରେ ଶାର୍ଦ୍ଦୂଳ ରାମ ବାହିନୀର ମହତ୍ୱାଦିର କଥା କହିଚନ୍ତି । ମୋତେ ରାମ ବନ୍ଧନରୁ ମୁକ୍ତକରି ଯୁଦ୍ଧାର୍ଥ ପ୍ରସ୍ତୁତ ଅଛନ୍ତି (ଗରୁଡ଼ ବ୍ୟୂହ-ମାସ୍ଥାୟ ସର୍ବତୋ ହରିଭିଃବୃତଃ---୧୨, ୧୩) ଶାର୍ଦ୍ଦୂଳ କଥା ଶୁଣି ରାବଣ ସୀତାଙ୍କୁ ଦେବାକୁ ନାହିଁକରି କିଏ କିଏ ମହାଶୂର ଇତ୍ୟାଦି କଥା କହ ବୋଲି ପଚାରିଲେ । ଏ ସ୍ଥଳେ ଶାର୍ଦ୍ଦୂଳ କହିଚନ୍ତି କି (ଜାମ୍ବବାନ = ବ୍ରହ୍ମାଙ୍କ ପୁତ୍ର) (ସୁଷେଣ = ଧର୍ମଙ୍କ ପୁତ୍ର) (ଦଧିମୁଖ = ସୋମପୁତ୍ର) (ସୁମୁଖ ଓ ଦୁର୍ମୁଖ = ମୃତ୍ୟୁପୁତ୍ର) (ନୀଳ = ଅଗ୍ନିପୁତ୍ର) (ମୈନ୍ଦଦ୍ୱିବିନ୍ଦ = ଅଶ୍ୱୀପୁତ୍ର) (ଗଜ, ଗବାକ୍ଷ, ଗବୟ, ସରଭ, ଗନ୍ଧମାଦନ = ଯମଙ୍କ ପୁତ୍ର) ଏହାପରେ ରାମ ଲକ୍ଷ୍ମଣ ବୀରତ୍ୱ କହିଛନ୍ତି ।

୩୧ରେ – ରାବଣ ମନ୍ତ୍ରୀମାନଙ୍କ ସହ ମନ୍ତ୍ରଣା କରିବା ପରେ ଗୃହକୁ ଯାଇ ବିଦ୍ୟୁତ୍‌ଜିହ୍ୱ ସହ ମାୟାରାମ ମସ୍ତକ ସୀତାଙ୍କୁ ଦେଖାଇବାକୁ ଯିବା, ସମସ୍ତ ବୀରମାନଙ୍କୁ

ନିହତ କଲୁ ବୋଲି ଜଣାଇବା, ରାମଙ୍କ ମାୟା ମସ୍ତକ ଓ ଧନୁଶର ଦେଖାଇବା ଉକ୍ତ ଅଛି ।

୩୨ରେ – ସୀତା ସେ ମାୟା ଜାଣି ନପାରି କୈକେଇଙ୍କ ନିନ୍ଦାପୂର୍ବକ ଶୋଚନା କଲେ, ତାପରେ ସେହି ମସ୍ତକ ଧରି ବହୁ ବିଳାପ କଲେ । ଏ ସମୟେ ଚାରମାନେ ଅତି ଆବଶ୍ୟକ କାର୍ଯ୍ୟରେ ମନ୍ତ୍ରୀମାନେ ଦେଖିବାକୁ କହନ୍ତି ବୋଲି ଜଣାଇବାରୁ ରାବଣ ସେଠାରୁ ବାହାରି ଗଲେ । ରାବଣ ବାହାରିଗଲା କ୍ଷଣି ମାୟାମୁଣ୍ଡ ଓ ଧନୁ ଅନ୍ତର୍ହିତ ହୋଇଗଲା ।

୩୩ରେ – ଦୁଃଖିତା ସୀତାଙ୍କୁ ସରମାନାମ ରାକ୍ଷସୀ ସମସ୍ତ ବୁଝାଇ ଆଶ୍ୱାସିତା କରିବା ଉକ୍ତ ଅଛି । (ନହତୋ ରାଘବଃ ଶ୍ରୀମାନ୍ ସୀତେ ଶତ୍ରୁନିର୍ବହଣଃ – ୧୩) (ଇୟଂ ପ୍ରଯୁକ୍ତା ରୌଦ୍ରେଣ ମାୟା ମାୟାବିନା ତ୍ୱୟି – ୧୪) (ଧ୍ରୁବଂତ୍ୱାଂ ଭଜତେ ଲକ୍ଷ୍ମୀଃ ପ୍ରିୟଂ ପ୍ରୀତିକରଂ ଶୃଣୁ – ୧୫) ମୁଁ ଦେଖିଆସିଅଛି ରାମ ଭ୍ରାତୃ ଓ ସେନା ସହ ସୁଖେ ସମୁଦ୍ରର ଦକ୍ଷିଣ ତୀରରେ ସୁଖେ ଅଛନ୍ତି । ସରମା ଏପରି କହୁଛନ୍ତି, ଏ ସମୟରେ (ସର୍ବୈତଦା ଜାଗେନ- -୨୦) (ରାବଣଂ ସମରେ ହତ୍ୱା---୩୬)

୩୪ରେ – ସୀତାଙ୍କ ଆଦେଶରେ ସରମା ରାବଣର ପ୍ରବୃତ୍ତି ବୁଝିବା ପାଇଁ ଯିବା, ମାୟା ବୁଝି ଆସି ସୀତାଙ୍କୁ କହିବା । ରାବଣ ଜନନୀ କହିଲେ ଜନସ୍ଥାନାଦିରେ ରାମଙ୍କର ଅମାନୁଷିକ କର୍ମମାନ ଦେଖିଲୁଁ, ସୀତା ନେଇ ସମର୍ପଣ କରିବା ଶ୍ରେୟସ୍କର ଇତ୍ୟାଦି, କିନ୍ତୁ ରାବଣ ସ୍ୱୀକାର କଲେ ନାହିଁ । ସରମା ଏପରି କହୁଚନ୍ତି ତେଣେ ଭେରୀ ଶଂଖାଦି ଶବ୍ଦ ଶୁଭିଲା । ରାବଣଙ୍କୁ ନିବର୍ତ୍ତାଇବା ବ୍ୟକ୍ତି (1) ବିଭୀଷଣ (2) ମାଲ୍ୟବାନ (3) ରାବଣ ଜନନୀ ।

୩୫ରେ – ରାମଙ୍କ ଅଭିଯାନ ଜାଣି ରାବଣ ଅସୁରଙ୍କୁ ଯୁଦ୍ଧାର୍ଥ ସତ୍ୱର କରାଇବା, ଏ ସମୟେ ମାଲ୍ୟବାନ କହିଲେ – (ତଦ୍‌ମୈହଂରୋଚତେ ସନ୍ଧିଃ---୧୦) ଏ ସ୍ଥଳେ ମାଲ୍ୟବାନ ଧର୍ମାଧର୍ମ ଅନେକ କଥା ବୁଝାଇ ଅଛନ୍ତି (ବିନାଶମନୁପଶ୍ୟାମୀ---୨୫) ଏ ସ୍ଥଳେ ବହୁ ଦୁର୍ନିମିତ ଉକ୍ତ ଅଛି (ମାଲ୍ୟବାନଙ୍କ ଉକ୍ତିରେ) ।

୩୬ରେ – ରାବଣ ମାଲ୍ୟବାନଙ୍କୁ ତୁମେ ଶତ୍ରୁ ପ୍ରୋତ୍ସାହନରେ ଏପରି କହୁଅଛ ବୋଲି କ୍ରୋଧ ପ୍ରକାଶ କଲେ, ସୀତାଙ୍କୁ ଦେବିନାହିଁ କହିଲେ (ଦ୍ୱିଧା ବିଭଜ୍ୟ--- -୧୧) ତାପରେ ରାବଣ ବହୁ ସେନା ସହ ପୂର୍ବ ଦିଗରେ ପ୍ରହସ୍ତଙ୍କୁ,

ଦକ୍ଷିଣରେ ମହାପାର୍ଶ୍ୱ ମହୋଦରଙ୍କୁ, ପଶ୍ଚିମରେ ଇନ୍ଦ୍ରଜିତଙ୍କୁ, ଉତ୍ତରରେ ଶୁକ ସାରଣଙ୍କୁ ନିଯୁକ୍ତ କରି ମଧ୍ୟରେ ଗୁଳ୍ମ ସ୍ଥାପନ କଲେ ।

୩୭ରେ — ରାମ ଲକ୍ଷ୍ମଣ ସୁଗ୍ରୀବାଦିଙ୍କୁ ଏବଂ ବିଭୀଷଣଙ୍କୁ ବସାଇ ଲଙ୍କା ସୁରାସୁରରେ ଦୁର୍ଦ୍ଧର୍ଷ ଅଟେ । ଏଥିରେ କିପରି କାର୍ଯ୍ୟସିଦ୍ଧ ହେବ, ମନ୍ତ୍ରଣା କର ବୋଲିବାରୁ ବିଭୀଷଣ କହିଲେ କି (ଅନଳଃଶରଭଶ୍ଚୈବ--- ୭, ୮, ୯) ଇତିପୂର୍ବେ ପୂର୍ବାଧ୍ୟାୟରେ ଉକ୍ତ ରାବଣଦ୍ୱାରା ଚାରିଦ୍ୱାରରେ ବୀରସନ୍ନିବେଶ କ୍ରମ ଜଣାଇଲେ ଏବଂ କହିଲେ ଆପଣ ଭୟ କରନ୍ତୁ ନାହିଁ, ବ୍ୟୂହ ରଚନା କରନ୍ତୁ, ଅବଶ୍ୟ ରାବଣଙ୍କୁ ଧ୍ୱସ୍ତ କରିବେ । ରାମ ଲଙ୍କାର ପୂର୍ବ ଦ୍ୱାରକୁ ନୀଳଙ୍କୁ, ଦକ୍ଷିଣରେ ଅଙ୍ଗଦଙ୍କୁ, ପଶ୍ଚିମରେ ହନୂମାନ, ଉତ୍ତରରେ (ଉତ୍ତର ନଗର ଦ୍ୱାରଂ---୩୨) ଗୁଳ୍ମରେ ସୁଗ୍ରୀବ ବିଭୀଷଣାଦି ରହନ୍ତୁ । (ନଚେବ ମାନୁଷଂରୂପଂ--- ୩୩, ୩୪, ୩୫, ୩୬) — ଏଥିଦ୍ୱାରା ଜଣାଯାଏ ଯେ ପ୍ରଥମତଃ ବାନରମାନେ ବାନର ରୂପରେ କେବଳ ଯୁଦ୍ଧ କରିଅଛନ୍ତି ଏବଂ ବିଭୀଷଣାଦି ରାକ୍ଷସମାନେ ମଧ୍ୟ ସାଧାରଣ ମନୁଷ୍ୟ ରୂପେ କେବଳ ।

ଯୁଦ୍ଧରେ ବୀରମାନଙ୍କ କିଦୃଶ ରୂପ

୩୮ରେ — ରାମାଦି ସୁବେଳ ଆରୋହଣ କରି ସେ ରାତ୍ରିରେ ସେଠାରେ ରହି ଲଙ୍କାର ସମ୍ୟକ୍ ଅବଲୋକନ କରିବା (ସୁବେଳଂ ସାଧୁ ଶୈଳେନ୍ଦ୍ର--- ୩, ୪) — ରାମାଦି ସୁବେଳାରୋହଣ କଲାପରେ ସାୟଂ ହେଲା । ସେକ୍ଷଣି ପୂର୍ଣ୍ଣଚନ୍ଦ୍ର ଉଦୟ ହେଲେ । ଏଥିରୁ ଜଣାଯାଏ ସେଦିନ ପୌର୍ଣ୍ଣମୀ ବା ତାର ପୂର୍ବ କିମ୍ବା ପର ଦିବସ ହେବ । ଯଥା— (ତତୋଽସ୍ତମଗମତ୍ ସୂର୍ଯ୍ୟଃ--- ୧୮, ୧୯)

ସମୟ

୩୯ରେ — ରାତ୍ରିରେ ପର୍ବତ ଉପରୁ ଲଙ୍କାର ଶୋଭା ଦେଖିବା, କେତେକ ବାନର ସୁଗ୍ରୀବଙ୍କ ଆଦେଶରେ ଲଙ୍କାରେ ଉପବନମାନଙ୍କରେ ପ୍ରବେଶିବା ଏବଂ ଲଙ୍କାପୁର ବର୍ଣ୍ଣନା ଉକ୍ତ ଅଛି (ତାଂ ରତ୍ନପୂର୍ଣ୍ଣାଂ---୨୯)

୪୦ରେ — ସୁଗ୍ରୀବ ସୁବେଳ ଶିଖରରୁ ଲଙ୍କାଗୋପୁରକୁ ଡେଇଁଯିବା, ମୁହୂର୍ତ୍ତେ ବସି ରାବଣଙ୍କୁ ଭର୍ତ୍ସନା କରି ମୁକୁଟ ଟାଣି ନେବା (ସ୍ଥିତ୍ୱା ମୁହୂର୍ତ୍ତଂ ସଂପ୍ରେକ୍ଷ--- ୯, ୧୦, ୧୧) ପରେ ଦୁହିଁଙ୍କର ବାହୁଯୁଦ୍ଧ ହେବା (ପରସ୍ପରଂ ସ୍ୱେଦବିଦଗ୍ଧ ଗାତ୍ରୌ--- ୧୪, ୧୫) ଏ ସ୍ଥଳେ ସେ ଦୁହିଁଙ୍କ ବାହୁଯୁଦ୍ଧର କ୍ରମ ଓ ଲକ୍ଷଣମାନ ବର୍ଣ୍ଣିତ ଅଛି (ଅଥ ହରିବର ନାଥଃ---୨୯)

୪୧ରେ – ସୁଗ୍ରୀବଙ୍କୁ ରାମ ବୋଇଲେ କି ମିତ୍ର ମୋତେ ନକହି ଏପରି ସାହସ

ଏହା ଦାସେ କହିଛନ୍ତି କି | କାହିଁକି କଲ ? ମତେ ଏପରି ଶଙ୍କିତ କରି ଆଉ ଏପରି ସାହସ କେବେ କର ନାହିଁ (ଇଦାନୀଂ ମାକୃଥା ବୀର--- ୪, ୫)

ଏଥିଦ୍ୱାରା ସୁଗ୍ରୀବଙ୍କ ପ୍ରତି ରାମଙ୍କର ସହୋଦରାପେକ୍ଷା ସମଧିକ ସ୍ନେହ ଓ ଆଦର ସୂଚୀତ ହୁଏ । ରାମ ଏବଂ କହିଲେ ଯେ ଆପଣ ନ ଆସିବା ପୂର୍ବେ ମୁଁ ଭାବିଥିଲି ଆପଣ ଯଦି ନ ଆସନ୍ତି ତେବେ ରାବଣକୁ ମାରି ଲଙ୍କାରେ ବିଭୀଷଣଙ୍କୁ ଅଯୋଧ୍ୟାରେ ଭରତଙ୍କୁ ରାଜାକରି ଶରୀର ତ୍ୟାଗ କରିବି । ରାମ ଲକ୍ଷ୍ମଣଙ୍କୁ ବ୍ୟୂହ ରଚନାର୍ଥ ଆଦେଶ କରି ସଂଘଟିତ ଦୁର୍ନିମିତମାନ କହିଅଛନ୍ତି । ପରେ ଲଙ୍କାଭିଯାନରେ ରାମାଦିମାନେ ଉତ୍ତରାଦି ଦ୍ୱାରକୁ ଅବରୁଦ୍ଧ କରିବା (ଏ ସ୍ଥଳେ ଉକ୍ତ ଅଛି ଯେ ୩୬ କୋଟି ଯୂଥପତି ବାନର ଥିଲେ – ବାନରାଣାଂ ତୁ ଷଟତ୍ରିଂଶଦ୍ କୋଟ୍ୟଃ ପ୍ରକ୍ଷାପ ଯୂଥପାଃ – ୪୧) ଏ ସ୍ଥଳେ ସୈନ୍ୟମାନଙ୍କ ସନ୍ନିବେଶର ବର୍ଣ୍ଣନା ଉକ୍ତ ଅଛି । ରାମ ଏପରି ସୈନ୍ୟ ସମାବେଶ କଲାପରେ ମନ୍ତ୍ରଣା ପୂର୍ବକ ଅଙ୍ଗଦକୁ ଡାକି କହିଲେ କି (ଗତ୍ୱା ସୌମ୍ୟ ଦଶଗ୍ରୀବଂ--୬୦) ତୁ ବହୁ ଅନ୍ୟାୟ କରି ଦେବଗନ୍ଧର୍ବାଦିଙ୍କୁ ପୀଡ଼ାଦେଇ ସମସ୍ତଙ୍କର କଣ୍ଟକ ହୋଇଅଛୁ, ଏବେ ତୁ ତୋ ପାପର ଫଳ ପାଇବୁ ଇତ୍ୟାଦି । (ଅରାକ୍ଷସ ମିମଂ ଲୋକଂ---୬୭ ଇତ୍ୟାଦି) ଅଙ୍ଗଦ ଯାଇ ନିଜର ପରିଚୟ ଦେଇ ରାମଙ୍କ ଆଦେଶାଦି ଜଣାଇଲେ । କ୍ରୁଦ୍ଧ ରାବଣଙ୍କ ଆଦେଶରେ ରାକ୍ଷସମାନେ ଧରିବାକୁ ଯାଇ ଅଙ୍ଗଦଙ୍କ ଉତ୍‌ପତନରେ ଭୂପତିତ ହୋଇପଡ଼ିଲେ । (ଭଂକ୍ତ୍ୱା ପ୍ରାସାଦ ଶିଖରଂ---୯୦)

୪୨ରେ – ରାମ ସୈନ୍ୟଗଣ ଲଙ୍କାରୋଧ କରିବା ସମ୍ବାଦ ଶୁଣି ରାବଣ କ୍ରୁଧ ହେବା, ପ୍ରାସାଦାରୋହଣ କରି ଦେଖିବା, ରାମଙ୍କ ଆଦେଶରେ ବାନର ସେନା ଯୁଦ୍ଧାର୍ଥ ସନ୍ନଧ ହେବା, ତୋରଣ ଗୋପୁରାଦି ଭାଙ୍ଗିବା – ରାଜା ଜୟତୀ ସୁଗ୍ରୀବୋ ରାଘବେଣାଽଭିପାଳିତଃ, ଏହା କହି ବାନରବୀରମାନେ ସର୍ବତ୍ର ଧାବନ କରିବା (ଏତସ୍ମିନ୍ନନ୍ତରେ ଚକ୍ରୁଃ ସ୍କନ୍ଧାବାର ନିବେଶନଂ – ୨୩) ରାବଣାଦେଶରେ ବୀରବାଦ୍ୟ ବଜାଇ ରାକ୍ଷସ ସେନା ଘୋର ରାବ କରି ବାହାରିବା, ଏହି ଧ୍ୱନିରେ ମଳୟ ପର୍ବତ ପୁରିତ ହେବା ଉକ୍ତ ଅଛି (ମଳୟଃ ପୁରିତୋ ଯେନ --- ୩୯) ତାପରେ ଉଭୟ ପକ୍ଷର ଯୁଦ୍ଧାରମ୍ଭ ଉକ୍ତ ଅଛି ।

୪୩ରେ – ପ୍ରଥମତଃ ଦ୍ୱନ୍ଦ୍ୱଯୁଦ୍ଧ ଆରମ୍ଭ ହେଲା (ଅଙ୍ଗଦେନେନ୍ଦ୍ରଜିତ୍---୬ ଇତ୍ୟାଦି)

ଯୁଦ୍ଧ ଇତୋପମା | ଏ ସ୍ଥଳେ ଅନେକ ଦ୍ୱନ୍ଦ୍ୱ ବୀରମାନଙ୍କ ନାମ ଉକ୍ତ ଅଛି ଏବଂ ଏ ସମସ୍ତ ଦ୍ୱନ୍ଦ୍ୱ ବୀରମାନଙ୍କର ଯୁଦ୍ଧର କ୍ରମ ଓ ଫଳାଫଳ ବିବରଣ ଉକ୍ତ ଅଛି (–

ଗଦୟା – ବଜ୍ରେଣୈବ ଶତକ୍ରତୁଃ) (– ରଥଚକ୍ରେଣ ନୀଳୋ ବିସ୍ଫୁରିବାହବେ, ଶରଶ୍ଛିଛେଦ–) (ପପାତ ସରଥଃ ସାଶ୍ୱଃ ପୁରାଟ ଇବ ଭୂତଳେ) (ବିଦାର୍ଯ୍ୟମାଣା ହରିପୁଙ୍ଗବୈଃ---୪୮)

୪୪ରେ – (ଯୁଧ୍ୟତାମେବ ତେଷାଂ ତୁ – ୧) ଏଥିରୁ ଜଣାଯାଏ ପ୍ରଭାତରୁ ରାତ୍ରିଯାଏ

ଉପମା ସମୟ | ପ୍ରଥମ ଯୁଦ୍ଧ ଲାଗିଥିଲା (ସଂପ୍ରବୃତ୍ତଂ ନିଶାଯୁଦ୍ଧଂ ତଦା ବାନରରକ୍ଷସାଂ–୨) (ରାକ୍ଷସୋଽସୀତି ହରୟୋ--- ୩, ୪, ୫, ୬) ଇତ୍ୟାଦି ବାକ୍ୟରୁ ଜଣାଯାଏ ପ୍ରାଥମିକ ରାତ୍ରିଯୁଦ୍ଧ ଅନ୍ଧାର ପରେ ହୋଇଥିଲା ।

ଯୁଦ୍ଧଭୂମିର ଉପମା ବାଣୋପମା | ରୁଧିରୋଦା ମହାଘୋରା......ଏପରି ଅନେକ ରକ୍ତନଦୀ ବର୍ଣ୍ଣନା ଉକ୍ତ ଅଛି । (ଶସ୍ତ୍ରପୁଷ୍ପୋ ହାରା ଚ ଚିତ୍ରାସୀଦ୍ ଯୁଦ୍ଧ-ମେଦିନୀ) (ରାମନାମାଙ୍କିତେ ବାଣୈଃ---୨୩) ଏଥିରୁ ଜଣଯାଏ ବୀରମାନଙ୍କର ନାମ ମଧ୍ୟ ବାଣରେ ଖୋଦିତ ଥାଏ । (ସ୍ୱର୍ଣ୍ଣ ପୁଂଖୈର୍ବିଶିଖୈ.....)

ବାନର ମଧ୍ୟ ଅସୁରଙ୍କୁ ଖାଇଲେ । | (ଗୋ ଲାଙ୍ଗୁଲା ମହାକାୟାସ୍ତମସା ତୁଲ୍ୟ ବର୍ଚ୍ଚସଃ । ସଂପରିଷ୍ୱଜ୍ୟ ବାହୁଭ୍ୟାଂ ଭକ୍ଷୟନ୍ ରଜନୀ ଚରାନ୍) ଏ ଯୁଦ୍ଧରେ ଅଙ୍ଗଦଙ୍କ ଦ୍ୱାରା ହତାଶ୍ୱ ହତସାରଥି ହୋଇ ଇନ୍ଦ୍ରଜିତ ଅନ୍ତର୍ହିତ ହେଲେ । ଦେବଗନ୍ଧର୍ବାଦି ମଧ୍ୟ ଅଙ୍ଗଦଙ୍କୁ ଧନ୍ୟବାଦ ଦେଲେ । ପରେ କୂଟଯୋଧୀ ଇନ୍ଦ୍ରଜିତ ଲୁଚରହି ବାଣ ପ୍ରହାର କଲେ । ନାଗପାଶ ଶରରେ ରାମଲକ୍ଷ୍ମଣଙ୍କୁ ବନ୍ଧ କଲେ । (ପ୍ରକାଶରୂପସ୍ତୁ ଯଦା ନ ଶକ୍ତଃ----୪୩)

୪୫ରେ – ରାମଙ୍କ ଆଦେଶରେ ନୀଳ ଅଙ୍ଗଦ ପ୍ରଭୃତି ଦଶବୀର ଆକାଶରେ ଇନ୍ଦ୍ରଜିତଙ୍କୁ ଖୋଜିଲେ । ଇନ୍ଦ୍ରଜିତ ଆକାଶରେ ରହି ରାମଲକ୍ଷ୍ମଣଙ୍କୁ ବହୁ ଶରଦ୍ୱାରା ପୀଡ଼ିତ କରି ପୁନଃପୁନ ଗର୍ଜନ କଲେ । ରାମଲକ୍ଷ୍ମଣ ଶରରେ ବିଦ୍ଧ ଏବଂ ପୀଡ଼ିତ ହୋଇ ଭୂମିରେ ନିପତିତ ହେଲେ । ରାମ ଶରରେ ନିତାନ୍ତ ପୀଡ଼ିତ ହେଲେ ।

| | | |
|---|---|---|
| ନାରାଚ | ଅଞ୍ଜଳିକା ଶର | କ୍ଷୁରନାମ ଶର |
| ଅର୍ଦ୍ଧ ନାରାଚ | ବିଷଦନ୍ତ ଶର | |
| ଭଲ୍ଲ ଶର | ସିଂହଦ୍ରଷ୍ଟ ଶର | |

(ବଦ୍ଧୌ ତୁ ବୀରୌ ପତିତୌ ଶୟାନୌ--------- ୨୮ ଶ୍ଳୋ)

୪୬ରେ – ସସୁଗ୍ରୀବ ସବିଭୀଷଣ ବାନରମାନଙ୍କ ଦୁଃଖ ପ୍ରକାଶ । ଆକାଶରେ ମାୟାରେ ଅବସ୍ଥିତ ରାବଣିଙ୍କୁ ବିଭୀଷଣ ବରଦାନ ବଳରୁ ଦେଖିପାରିଲେ । ତେତେବେଳେ ଇନ୍ଦ୍ରଜିତ ସନ୍ତୋଷରେ କହିଲେ (ଦୂଷଣସ୍ୟ ଚ

ହନ୍ତାରୌ..........୧୨ ଇତ୍ୟାଦି) ଏପରି କହି ସୁଗ୍ରୀବ ହନୂମାନ ପ୍ରଭୃତିଙ୍କୁ ଶରରେ ପୀଡ଼ିତ କଲେ । ଅସୁରମାନଙ୍କୁ ନିଜ ଅଲୌକିକ ପରାକ୍ରମ ଜଣାଇଲେ । ଅସୁରମାନେ ଭାବିଲେ ଯେ ରାମଲକ୍ଷ୍ମଣ ନିହତ ହେଲେ । ଇନ୍ଦ୍ରଜିତ ଅସୁରମାନଙ୍କୁ ହସାଇ ହସାଇ ସ୍ୱପୁରରେ ପ୍ରବେଶିଲେ । ରାମଙ୍କୁ ନିତାନ୍ତ ଶର ପୀଡ଼ିତ ଦେଖି ସୁଗ୍ରୀବ ଭୟ କଲେ, କାନ୍ଦିଲେ । ବିଭୀଷଣ ପାଣି ହାତରେ ସୁଗ୍ରୀବଙ୍କ ଲୁହ ପୋଛି ଆଶ୍ୱାସନ କଲେ । ତାପରେ (ତତଃ ସଲିଳମାଦାୟ---------- ୩୮ ଶ୍ଳୋକ) ଅନ୍ୟାନ୍ୟମାନଙ୍କୁ ଆଶ୍ୱାସିତ କରିବା ପାଇଁ ଉତ୍ସାହିତ କଲେ । ତେଣେ ଇନ୍ଦ୍ରଜିତ ଯାଇ ପିତାଙ୍କୁ କହିଲେ କି (ନିହତୌ ରାମଲକ୍ଷ୍ମଣୌ – ୪୨) ରାବଣ ବଡ଼ ତୁଷ୍ଟ ହେଲେ ।

୪୭ରେ – ରାମଙ୍କୁ ବାନରମାନେ ବେଢ଼ି ରହିଲେ । ତେଣେ ରାବଣ ସୀତାରକ୍ଷକା ରାକ୍ଷସୀମାନଙ୍କୁ ଡକାଇ କହିଲେ କି (ହତାବିନ୍ଦ୍ରଜିତା ଖ୍ୟାତ------ ଇତ୍ୟାଦି ୭) ସେ ଏଥର ହତାଶ ହୋଇ ମୋତେ ଭଜିବ ଇତ୍ୟାଦି) ରାକ୍ଷସୀମାନେ ପୁଷ୍ପକ ବିମାନଠାକୁ ଗଲେ, ପୁଷ୍ପକ ଆଣି ସୀତାଙ୍କୁ ବସାଇ ତ୍ରିଜଟା ସହ ରାମଲକ୍ଷ୍ମଣଙ୍କୁ ଦେଖାଇବାକୁ ନେଲେ । (ତତଃ ସୀତା ଦଦର୍ଶୋଭୌ------୧୯ x x x x ସବାଷ୍ପ ଶୋକାଭିହତା-------୨୪)

୪୮ରେ – ସୀତାଙ୍କ ବିଳାପ, ନିଜ ଅବୟବମାନଙ୍କ ସୁଲକ୍ଷଣମାନ ପ୍ରକାଶି ମୁଁ କିପରି ବିଧବା ହେଲି ବୋଲି ବିଳାପ କରିଛନ୍ତି । (ଏ ସ୍ଥଳେ ସଦ୍ ସ୍ତ୍ରୀଙ୍କ ସମୁଚିତ ଅବୟବ ଲକ୍ଷଣମାନ ଉକ୍ତ ଅଛି) ବିଳାପକାରିଣୀ ସୀତାଙ୍କୁ ତ୍ରିଜଟା କହିଲେ ଯେ ଆପଣଙ୍କ ପତି ଜୀବିତ ଅଛନ୍ତି, ଏହାର କାରଣମାନ ଶୁଣନ୍ତୁ । ପତି ଯଦି ମୃତ ହୋଇଥାନ୍ତେ ତେବେ ବାନର ବୀରମାନଙ୍କର ମୁଖ କ୍ରୋଧଯୁକ୍ତ ସୋତ୍ସୁକ ହୋଇ ନଥାନ୍ତା । ଯଦି ରାମଲକ୍ଷ୍ମଣ ଗତଜୀବିତ ହୋଇଥାନ୍ତେ ତେବେ ଆପଣଙ୍କୁ ଏହି ଦିବ୍ୟ ବିମାନ ବହନ କରନ୍ତା ନାହିଁ । (ଏଥିଦ୍ୱାରା ରାବଣଙ୍କ ଅପେକ୍ଷା ତ୍ରିଜଟାଙ୍କ ସମଧିକ ବିଦ୍‌ବତ୍ତା ଜଣାଯାଏ) ଏବଂ ଦେଖୁଅଛି ଏହି ସେନା ନିରୁଦ୍‌ବିଗ୍ନ ହୋଇ ରାମଲକ୍ଷ୍ମଣଙ୍କୁ ଚତୁର୍ଦ୍ଦିଗରୁ ରକ୍ଷା କରୁଅଛି । (ନେମୌ ଶକ୍ୟୌ ରଣେ ଜେତୁଂ------- ୩୦, ୩୧, ୩୨)

୪୯ରେ – ଶ୍ରମଙ୍କେ ଦୁଃଖରେ ବସି ଅଛନ୍ତି (ଏତସ୍ମିନ୍ନନ୍ତରେ ରାମଃ----- ୩) ଲକ୍ଷ୍ମଣଙ୍କୁ ଗାଢ଼ପୀଡ଼ିତ ଦେଖି ଦୁଃଖ ପ୍ରକାଶ କଲେ । (କିଂ ନୁ ମେ ସୀତୟା କାର୍ଯ୍ୟଂ----- ୫, ୬, ୭ ଇତ୍ୟାଦି) ଲକ୍ଷ୍ମଣଙ୍କ ଗୁଣଗାନରେ ବହୁ ବିଳାପ କରିଅଛନ୍ତି (x x x x ବିସସର୍ଜ୍ଜକ ବେଗେନ -----୨୦) ମୁଁ ନିତାନ୍ତ ବଳହୀନ, ଆପଣମାନେ ମୋତେପ୍ରାଣପଣେ ଉପକାର କଲେ କିନ୍ତୁ (ନିରତିକ୍ରମିତୁଶକ୍ୟଂ

ଦୈବଂ ସୁଗ୍ରୀବ ମାନୁଷୈଃ) ହେ ସୁଗ୍ରୀବ ! ଆପଣ ଧର୍ମ ଭୟରେ ମୋର ଖୁବ୍ ମିତ୍ର କାର୍ଯ୍ୟ କରି ଅଛନ୍ତି କିଂତୁ ବର୍ତ୍ତମାନେ (ଅନୁଜ୍ଞାତାମୟା ସର୍ବେ ଯଥେଷ୍ଟଂ ଗନ୍ତୁମର୍ହଥ) ଏପରି ହତାଶ ହୋଇ ଏପରି ବିଳାପ କରିବାରୁ ବାନରମାନେ କାନ୍ଦିଲେ । ଏପରି ସମୟରେ ବିଭୀଷଣ ତେଣେ ସେନାମାନଙ୍କୁ ସୁସ୍ଥିର କରି ଏଠାକୁ ଧାଇଁ ଆସୁଅଛନ୍ତି । ତତ୍ରତ୍ୟ ବାନରମାନେ ଗଦାପାଣି ବିଭୀଷଣଙ୍କୁ ଇନ୍ଦ୍ରଜିତ ଭାବି ଏଣେତେଣେ ଧାବମାନ ହେଲେ ।

୫୦ରେ – ସୁଗ୍ରୀବ ପଚାରିଲେ ସେନାମାନେ ଏପରି ଦୁରବସ୍ଥ କାହିଁକି ? ଅଙ୍ଗଦ କହିଲେ ଆପଣ କି ଦେଖୁ ନାହାନ୍ତି, ରାମଲକ୍ଷ୍ମଣ ଏପରି ଶରତଳ୍ପରେ ପଡ଼ିଅଛନ୍ତି; ସୁଗ୍ରୀବ କହିଲେ ମୁ ତାହା କହୁନାହିଁ, ଏଣେ କାହିଁକି ସେନାମାନେ ଭୟରେ ପଳାୟନ କରୁଅଛନ୍ତି ? ଏ ସମୟେ ବିଭୀଷଣ ଆସି ସୁଗ୍ରୀବଙ୍କୁ ସମ୍ବର୍ଦ୍ଧନା କଲେ । ସୁଗ୍ରୀବ ଜାମ୍ବବାନଙ୍କୁ କହିଲେ କି ସେନାମାନେ ଇନ୍ଦ୍ରଜିତର ଆଗମନ ଭାବି ଭୟରେ ପଳାଉଅଛନ୍ତି, ତାଙ୍କୁ କହ ବିଭୀଷଣ ଆସିଅଛନ୍ତି । ସେମାନଙ୍କୁ ସୁସ୍ଥିର କରାଅ । ବିଭୀଷଣ ଜଳହସ୍ତରେ ରାମଲକ୍ଷ୍ମଣଙ୍କ ନେତ୍ରମାର୍ଜନ କରି ବିଳାପରେ ରୋଦନ କଲେ । (ଜୀବନ୍ତ୍ୟ ବିପନ୍ନୋଽସ୍ମି---------୧୯) ବିଭୀଷଣଙ୍କୁ ସୁଗ୍ରୀବ ଆଶ୍ୱସ୍ତ କରି କହିଲେ – (x x x ନ ରୁଜା ପୀଡ଼ିତା------ ୨୨) (ସୁଷେଣଂ ଶ୍ୱଶୁରଂ ପାର୍ଶ୍ୱେ------ ୨୪, ୨୫) ସୁଷେଣ କହିଲେ କି ଦେବ ରାକ୍ଷସ ଯୁଦ୍ଧରେ ମୃତ ଦେବଙ୍କୁ ଉଜ୍ଜୀବନ କରି ବୃହସ୍ପତି ଯେ ଔଷଧିମାନ ପ୍ରୟୋଗ କରନ୍ତି ସେସବୁ ଆଣିବାକୁ (ତାନ୍ୟୌଷଧାନ୍ୟାନୟିତୁଂ------ ୨୯) ଏବଂ କ୍ଷୀରୋଦତଟରେ ଚନ୍ଦ୍ର ପର୍ବତ ଓ ଦ୍ରୋଣପର୍ବତ ଅଛି, ସେଠାରେ ପରମୌଷଧିମାନ ଅଛି (ଅୟଂ ବାୟୁସୁତୋ------ ୩୨) ଏପରି ସମୟରେ ଘୋର ପବନ ବହିଲା, ବୃକ୍ଷଲତାଦି ଭଗ୍ନ ହୋଇ ସମୁଦ୍ରରେ ପଡ଼ିଲା, ନାଗମାନେ ଭୀତ ହୋଇ ସମୁଦ୍ରରେ ଲୁଚିଲେ ଇତ୍ୟାଦି ଭୟଙ୍କର ଦୃଶ୍ୟମାନ ଦେଖାଗଲା । (ତତୋ ମୁହୂର୍ତ୍ତାଦ୍ ଗରୁଡ଼ ବୈନତେୟଂ-------- ୩୬) ଗରୁଡ଼ ରାମଲକ୍ଷ୍ମଣ ଦୁହିଁଙ୍କୁ ନିଜ ହସ୍ତରେ ମୁଖ ମାର୍ଜନ କରି ଆଶ୍ୱସ୍ତ କଲେ । ସମସ୍ତ ବ୍ରଣ ଦୂର ହେଲା । ଦୁହେଁ ସତେଜ ହୋଇ ଉଠିଲେ । ପୂର୍ବାପେକ୍ଷା ତେଜ, ବଳ, ଓଜ, ଉତ୍ସାହାଦି ବଢ଼ିଲା, ବୁଦ୍ଧି ସ୍ମୃତି ମଧ୍ୟ ଦ୍ୱିଗୁଣ ବଢ଼ିଲା । ଗରୁଡ଼ ଦୁହିଁଙ୍କୁ ଉଠାଇ ଆଲିଙ୍ଗନ କଲେ । ରାମ କହିଲେ (ଯଥା ତାତଂ ଦଶରଥଂ------- ୪୦) ଆପଣ କିଏ ? ଗରୁଡ଼ କହିଲେ (x ଅହଂ ସଖା ତେ କାକୁସ୍ଥ ----- ୪୬)



ଗରୁଡ଼ ରାମଙ୍କ ସଖା କିପରି ? ଶ୍ଳୋକଗୁଡ଼ିକର ଭାବ କଣ ? ଟୀକା ଦେଖିବୁଁ ।

ଅସୁରମାନେ ବଡ଼ ମାୟାବୀ, ଏହି ଯେ ଘୋର ସର୍ପମାନେ ଶରରୂପେ ମାୟାବଳରେ ଆପଣମାନଙ୍କୁ ପୀଡ଼ିତ କରିଥିଲେ, ଏ ସମ୍ବାଦ ମୁ ଶୁଣି ସହସା ଆସିଲି (ଇମଂ ଶ୍ରୁତ୍ୱା ତୁ ବୃତ୍ତାନ୍ତଂ------- ୫୧) ରାକ୍ଷସମାନେ କୂଟଯୋଧୀ, ମାୟାବୀ ଅଟନ୍ତି । ଏଣିକି ସାବଧାନ ରହନ୍ତୁ । (ସଖେ ରାଘବ ଧର୍ମଜ୍ଞ------- ୫୬, ୫୭) ଇତ୍ୟାଦି । ଆପଣ ଅବଶ୍ୟ ସପୁତ୍ର ବାନ୍ଧବ ରାବଣକୁ ନିହତ କରି ସୀତାକୁ ପାଇବେ ଇତ୍ୟାଦି । ତେତେବେଳେ ବାନରମାନେ ଅଭୂତପୂର୍ବ ଆନନ୍ଦ ଓ ଉତ୍ସାହାଦି ପାଇ ଘୋର ଗର୍ଜନ ତର୍ଜନାଦି କଲେ । ସେହି ଅର୍ଦ୍ଧରାତ୍ର ମଧ୍ୟରେ ଯାଇ ଲଙ୍କାର ଚାରିଦ୍ୱାର ରୁନ୍ଧିଲେ । (ତତସ୍ତୁ ଭୀମସ୍ତୁ ମୁଲୋ ନିନାଦଃ ------- ୬୫)

୫୧ରେ — ଏହି ଘୋର ନାଦରେ ରାବଣ ଶଙ୍କିତ ହୋଇ ରାମଲକ୍ଷ୍ମଣ ତ ଶରବିଦ୍ଧ ହୋଇ ପଡ଼ିଥିଲେ, ଦୁଃଖ ସମୟରେ ଏମାନଙ୍କର ଏହି ଆନନ୍ଦ ଗର୍ଜନର କାରଣ କଣ ବୁଝି ଆସ ବୋଲି ରାକ୍ଷସମାନଙ୍କୁ ପଠାଇଲେ । ସେମାନେ ପ୍ରାକାର ଚଢ଼ି ରାମଲକ୍ଷ୍ମଣାଦିଙ୍କୁ ଦେଖି ରାବଣଙ୍କୁ ଜଣାଇଲେ । ରାମ ଲକ୍ଷ୍ମଣ ଉଜ୍ଜୀବିତ ହେବା ଜାଣି ରାବଣ ଚିନ୍ତିତ ହେଲେ । ସେପରି ଅମୋଘ ଶରରେ ଆବଦ୍ଧ ଥିଲେ, କିପରି ସେ ଶର ବ୍ୟର୍ଥ ହେଲା ମୋର ସନ୍ଦେହ ହେଉଅଛି ଏପରି ବିଚାର କଲାପରେ ଯୁଦ୍ଧାର୍ଥ ଧୂମ୍ରାକ୍ଷଙ୍କୁ ପଠାଇଲେ । (ତେ ବଦ୍ଧ ଘଣ୍ଟାବଲି ନୋ ଘୋରରୂପା ନିଶାଚରାଃ---୨୩) ଖର ନିସ୍ୱନ ଧୂମ୍ରାକ୍ଷ ଖରଯାନରେ ଆସିଥିବା ଉକ୍ତ ଅଛି, (ବୃକସିଂହ ମୁଖୈର୍ଯୁକ୍ତଂ------- ୨୮) ଧୂମ୍ରାକ୍ଷ ବହୁ ଦୁର୍ନିମିତ୍ତମାନ ଦେଖି ଚିନ୍ତିତ ହେଲେ । ପଶ୍ଚିମ ଦ୍ୱାରରେ ହନୁମାନଙ୍କ ଠାରେ ଯାଇ ଭେଟିଲେ ।

୫୨ରେ — ବୀରମାନେ ଜାନୁରେ ଘଣ୍ଟା ବାନ୍ଧିଥାନ୍ତି । ଗଦା, ପଟିଶ,ଆୟସ ଦଣ୍ଡ, ମୁଷଳ, ପରିଘ, ଭିଣ୍ଡିପାଳ, ଭଲ୍ଲାପ୍ରାସ ପରଶ୍ୱଧ ଏ ଅସ୍ତ୍ରମାନ ଧରିଥାନ୍ତି ।

ଯୁଦ୍ଧରେ ଏପରି ଗାନ ମଧ ହୋଉଥାଏ ----
ଯଥା– ଧନୁର୍ଜ୍ୟାତନ୍ତ୍ରି – ମଧୁରଂ ହିକ୍କାତାଳ ସମନ୍ୱିତଂ
ମନ୍ଦ୍ରସ୍ତନିତ ସଂଗୀତଂ ଯୁଦ୍ଧ ଗାନ୍ଧର୍ବମାବଭୌ । ୨୪

ଟୀକା ଦେଖିବୁଁ ହିକ୍କା କଣ ?

ଗଦାର ପରିଚୟ

ଧୂମ୍ରାକ୍ଷ ବଧ

ତତ୍ର କ୍ରୁଦ୍ଧସ୍ତୁ ବେଗେନ ଗଦାଂ ତାଂ ବହୁ କଣ୍ଟକାଂ ପାତୟାମାସ---------------୩୪

ଏଥିରୁ ଜଣାଯାଏ ଗଦାରେ ବହୁ କଣ୍ଟକାକାର ଶୃଙ୍ଗମାନ ଥାଏ । ହନୁମାନ୍ ପରିଶେଷରେ ଧୂମ୍ରାକ୍ଷକୁ ନିହତ କଲେ ।

୫୩ରେ — ତା ପରେ ରାବଣ ବ୍ରଜଦଂଷ୍ଟ୍ରକୁ ପଠାଇଲେ । ଏ ଦକ୍ଷିଣ ଦ୍ୱାରରେ ଅଙ୍ଗଦଙ୍କୁ ଭେଟିଲେ । ବଜ୍ରଦଂଷ୍ଟ୍ର ଦୁର୍ନିମିତ୍ତମାନ ଦେଖି ଚିନ୍ତିତ ହେଲେ । ପ୍ରଥମେ ଯୁଦ୍ଧରେ ରାକ୍ଷସମାନେ ବାନରମାନଙ୍କୁ ପୀଡ଼ିତ କଲେ ।

ଶୂଳ, ଶକ୍ତି ଯଷ୍ଟି, ପାଶ, ତୋମର, ତ୍ରିଶୂଳ, ଖଡ଼୍‌ଗ, ଚକ୍ର

୫୪ରେ — ବଜ୍ରଦଂଷ୍ଟ୍ର ବହୁ ଯୁଦ୍ଧରେ ବାନରମାନଙ୍କୁ ପୀଡ଼ା ଦେଲେ, ଅଙ୍ଗଦଙ୍କୁ ରକ୍ତାକ୍ତ କରିଦେଲେ । ଅଙ୍ଗଦ ଶିଳା ପ୍ରହାରରେ ତଦୀୟ ରଥ ଅଶ୍ୱ ପ୍ରଭୃତିଙ୍କୁ ଚୂର୍ଣ୍ଣ କଲେ । ବଜ୍ରଦଂଷ୍ଟ୍ର ଓ ଅଙ୍ଗଦଙ୍କର ମୁଷ୍ଟି ଯୁଦ୍ଧ ହେଲା । ଦୁହେଁ ବୁଧମଙ୍ଗଳ ପ୍ରାୟ ଯୁଦ୍ଧ କଲେ । (ବଭୂବ ତୁ ସୁସଂଭ୍ରାନ୍ତା -------- ) ଅଙ୍ଗଦ ଖଡ଼୍‌ଗରେ ବଜ୍ରଦଂଷ୍ଟ୍ରଙ୍କର ମସ୍ତକ ଛେଦିଲେ ।

ବୀର ଉପମା

ବଜ୍ରଦଂଷ୍ଟ୍ର ବଧ

୫୫ରେ — ରାବଣ ଅକଂପନ ସେନାପତିକୁ ପଠାଇଲେ । ଅକଂପନ ଆସିବା ବେଳେ ଉତ୍‌ପାତମାନ ଦେଖାଗଲା । (ରାକ୍ଷସାଶ୍ଚାପି ରକ୍ଷ୍ୟାଂସି-------୨୩) ଏଥିରୁ ସ୍ପଷ୍ଟ ଜଣାଯାଏ ପ୍ରଥମ ରାତ୍ରିର ଯୁଦ୍ଧ ଆହୁରି ଏ ପର୍ଯ୍ୟନ୍ତ ଶେଷ ହୋଇନାହିଁ ।

୫୬ରେ — ଅକମ୍ପନ ବାନରବୀରଙ୍କ ଦ୍ୱାରା ନିଜ ବଳର ପୀଡ଼ା ଦେଖି କ୍ରୁଦ୍ଧ ହେଲେ । ବାନରମାନେ ପୀଡ଼ା ସହି ନ ପାରି ପଳାଇଲେ । ତେତେବେଳେ ହନୁମାନ କ୍ରୁଦ୍ଧ ହୋଇ ବାହାରିଲେ । (ପୁରା ହି ନମୁଚିଂ ସଂଖ୍ୟେ ବଜ୍ରେଣୈବ ପୁରନ୍ଦରଃ) ରାକ୍ଷସମାନେ ହନୁମାନଙ୍କୁ ମୃତ୍ୟୁ ପ୍ରାୟ ଦେଖି ପଳାୟନ କଲେ । (ପୁଷ୍ପିତାଶୋକ ସଂକାଶୋ ବିଧୂମ ଇବ ପାବକଃ) ପରିଶେଷରେ ହନୁମାନ ଅକମ୍ପନକୁ ନିହତ କଲେ । ଦେବଗଣ ମଧ୍ୟ ହନୁମାନଙ୍କୁ ଧନ୍ୟବାଦ ଦେଲେ । ରାମଲକ୍ଷ୍ମଣ ସୁଗ୍ରୀବ ବିଭୀଷଣାଦି ସମ୍ମାନ କଲେ ।

ବୀର ଉପମା

୫୭ରେ — (ଅକମ୍ପନ ବଧଂ ଶ୍ରୁତ୍ୱା---------୨, ୩) ଏଥିରୁ ଅନୁମେୟ ଯେ ଏହା ପର ଦିନରେ ପୂର୍ବ ଦିବସର କାର୍ଯ୍ୟ ।

ଟୀକା ଦେଖିବୁଁ, ପଟରା ଦେଖିବୁଁ

ପ୍ରହସ୍ତ ସେନାପତିଙ୍କୁ ପ୍ରଶଂସା କରି ପଠାଇଲେ । ସେ ବୋଇଲେ କି, ହେ ରାଜନ୍, ମୁ ପୂର୍ବେ କହିଅଛି (ପ୍ରଦାନେନ ତୁ ସୀତାୟାଃ-------୧୪) କିଂତୁ ମୁ ଆପଣଙ୍କ ପାଇଁ ପୁତ୍ରଦାରାଦି ତ୍ୟାଗ ପୂର୍ବକ ଯୁଦ୍ଧରେ ପ୍ରାଣ ଦେବାକୁ ପ୍ରସ୍ତୁତ । ଇହା କହି ଯୁଦ୍ଧାର୍ଥ ସନ୍ନଦ୍ଧ ହେଲେ । (ହୁତାଶନଂ ତର୍ପୟତାଂ------ ୨୨, ୨୩ ଓ ୩୧) ତାପରେ ବହୁ ଦୁର୍ନିମିତ୍ତ ଦେଖାଗଲା ।

ରାକ୍ଷସମାନଙ୍କର ସଂଗ୍ରାମ ସମୟରେ ହୋମ ବ୍ରାହ୍ମଣ ପୂଜାଦି ଥିବା ଉକ୍ତ ଅଛି

ପ୍ରହସ୍ତଙ୍କ ମନ୍ତ୍ରଣା

[ ଅସଂପୂର୍ଣ୍ଣ ]

# ଶ୍ରୀମଦ୍ ଭାଗବତ ସମାଲୋଚନା

---

ଗଞ୍ଜାମ ଓଡ଼ିଆମାନଙ୍କ ପ୍ରତି

ଆନ୍ତରିକ ସହାନୁଭୂତି ନିମନ୍ତେ

ଏହି ପୁସ୍ତକ ଖଣ୍ଡିକ

ଗଞ୍ଜାମ ଜିଲ୍ଲା କଲେକ୍ଟର

ଶ୍ରୀମାନ୍ ସି.ସି. କଟର଼ଲ୍ ଏସ୍କ୍ୱେର ସି.ଆଇ.ଇ.; ଆଇ.ସି.ଏସ୍.

ମହୋଦୟଙ୍କ ନାମରେ

ତାଙ୍କ ବିନୀତ ସେବକ

ଓ

ଗୁଣାନୁବାଦକ ଗ୍ରନ୍ଥକାର

ଦ୍ୱାରା

ଉତ୍ସୃଷ୍ଟ ହେଲା ।

---

ଗ୍ରନ୍ଥକାର

ପଣ୍ଡିତ ଶ୍ରୀ ଗୋପୀନାଥ ନନ୍ଦଶର୍ମା

**Sreemat Bhagabat Samalochana**

---

This criticism

on

Sreemat Bhagabat

is

(with permission)

dedicated

to

C.B. COTTERELL Esqr, C.I.E.; I, C, S, ;

District Collector of Ganjam,

for

his sincere sympathy for the Oriyas of Ganjam

by

his humble Servant and faithful admirer

The author.

---

Author

*Pandit G.N. Sarma*

# ଜଗନ୍ନାଥ ଦାସଙ୍କ କୃତ
# ଶ୍ରୀମଦ୍ ଭାଗବତ ସମାଲୋଚନା
## [ ଉପକ୍ରମଣିକା ]

ଭଗବାନ ଶ୍ରୀକୃଷ୍ଣଙ୍କ ଚରଣାରବିନ୍ଦ-ଯୁଗଳକୁ ଏକାନ୍ତ ଶରଣ କରି ଶ୍ରୀମଦ୍ ବ୍ୟାସଦେବ ପ୍ରମୁଖ ଭାଗବତ ମହାତ୍ମାମାନଙ୍କର ପ୍ରଣାମ ପୂର୍ବକ ଏହି ସମାଲୋଚନିକ-ପ୍ରବନ୍ଧ ଲେଖାରେ ପ୍ରବୃତ୍ତ ହେଉଅଛୁଁ । ଏହି ସମାଲୋଚନା ସକାଶେ ବ୍ୟାସକୃତ ଏବଂ ଜଗନ୍ନାଥ ଦାସାନୁବାଦିତ ଭାଗବତ ଗ୍ରନ୍ଥ ଦ୍ୱୟର ଅଖଣ୍ଡ ପାଠ ଓ ବିଷୟାଦି ପରିଶୀଳନରେ ଅପିଚ ବକ୍ଷ୍ୟମାଣ ବିଷୟମାନଙ୍କର ଆନୁଷଙ୍ଗିକ କଥାସବୁ ସପ୍ରମାଣ କରିବାପାଇଁ ଆବଶ୍ୟକସ୍ଥଳେ ଅନ୍ୟାନ୍ୟ ଗ୍ରନ୍ଥ ଓ ପୁରାଣମାନଙ୍କ ବିଚାରରେ ଯଥାର୍ଥତାର ପ୍ରତିପାଦନ କରିବାରେ କିଛିମାତ୍ର ତ୍ରୁଟି କରିବୁଁ ନାହିଁ । କିନ୍ତୁ ଅଭିଜ୍ଞ ପାଠକ ମହୋଦୟମାନଙ୍କର ସୁବିଚାରରେ ଏ ଯେ କେତେଦୂର ସମାଦୃତ ହେବ କହି ନ ପାରୁଁ । ଇତଃପୂର୍ବେ ମହାଭାରତ ସମାଲୋଚନାରେ କେତେକ ପାଠକମାନଙ୍କର ବିଚିତ୍ର ରୁଚିମତ୍ତା ବୁଝିଅଛୁଁ । ବିଷୟର ଗୁରୁତ୍ୱ ଓ ସାଧାରଣତ୍ୱ ଅପିଚ ଉପାଦେୟତ୍ୱ ଓ ଅନୁପାଦେୟତ୍ୱ ପ୍ରଭୃତି ସୁଗୁଣାଗୁଣ ବୁଝିପାରିବା ଭଳି ପାଠକମାନଙ୍କର ସଂଖ୍ୟା ଆମ୍ଭମାନଙ୍କ ଦେଶରେ ସମଧିକ ନୁହେଁ । ବିରାଗ ଭୟରୁ କହିବାର କଥା ନୁହେଁ ତଥାପି ବଡ଼ ଦୁଃଖର ସହିତ ବୋଲୁଅଛୁଁ, ଏ ଦେଶରେ ପାଠକ ହେବାକୁ ଅନେକେ ଅନିଚ୍ଛୁକ, ଯଥାର୍ଥ ପାଠକତ୍ୱର ମହିମା ଓ ଗୌରବ ବୁଝିବାରେ ଅସମର୍ଥ । କିନ୍ତୁ ସାରସ୍ୱତ କ୍ଷେତ୍ରରେ ଯେ କୌଣସି ଅବସ୍ଥାରେ ଅବସ୍ଥିତ ଥାଆନ୍ତୁ ପଛକେ ସମସ୍ତେ ଲେଖକ ବୋଲାଇବା ପାଇଁ ଲାଳାୟିତ । ଅନେକେ ପଦାର୍ଥ ଚିହ୍ନିବାକୁ ପାରନ୍ତୁ ବା ନ ପାରନ୍ତୁ ସାହସିକତାରେ ଗୋଟିଏ ଉଚ୍ଛୃଙ୍ଖଳତା-ମୂଳକ ଅଭିମତ ଜାରି କରିଦେବା ପାଇଁ ଖୁବ୍ ସଚେଷ୍ଟ ହୋଇପଡ଼ନ୍ତି । ଏହା ବଡ଼ ଭୟଙ୍କର ବ୍ୟାପାର । ଏଥିଦ୍ୱାରା ଯେ କେବଳ ନିଜର କ୍ଷତି ହୁଏ ତାହା ନୁହେଁ, ଜାତି ଓ ଜାତୀୟ ସାହିତ୍ୟର ପରିବର୍ଦ୍ଧିଷ୍ଣୁ-ମହିମାର ଏବଂ ଉନ୍ନତିର ଲୋପ ସାଧନ ସୁଦ୍ଧା ହୋଇଥାଏ ।

ଏ ଦେଶରେ ଯଦି ଭାଷାର ସମୁନ୍ନତି-ପିପାସୁ ସମୁଚିତ ପାଠକମାନଙ୍କର ସଂଖ୍ୟା ଅତିରିକ୍ତ ହୋଇଥାନ୍ତା ତାହାହେଲେ ଆମ୍ଭମାନଙ୍କର ପ୍ରଧାନ ପ୍ରାଚୀନ ସାହିତ୍ୟ ଯାହାକି ଇତଃପୂର୍ବରୁ ଦୁରବସ୍ଥା ବା ଦୁଃସ୍ଥାନସ୍ଥିତି ହେତୁରୁ ସ୍ୱାଭାବିକ ସୌନ୍ଦର୍ଯ୍ୟ ହରାଇ କଳଙ୍କିତ

ସେହି ପୁରାଣମାନ ଅଦ୍ୟାପି ଦୋଷସଙ୍କୁଳ ରହନ୍ତା ନାହିଁ । ଅନେକେ ସମୟେ ସମୟେ ପୁରାଣାଦି ପ୍ରାଚୀନ ସାହିତ୍ୟ ପାଠ କରନ୍ତି ସତ୍ୟ, କିନ୍ତୁ ସେଥିମଧ୍ୟରୁ କେତେଜଣ କେବଳ ଚରିତ ପ୍ରବାହରେ ଭାସିଭାସି ନ ଯାଇ ତତ୍ରତ୍ୟ ଆଲୋଚନୀୟ ବିଷୟଗୁଡ଼ିକର ପର୍ଯ୍ୟାଲୋଚନା କରନ୍ତି ? କେତେଜଣ ତାହାର ଗଭୀର ସ୍ଥଳରୁ ତତ୍ତ୍ୱରତ୍ନ ଅନୁସନ୍ଧାନ କରନ୍ତି ? କହି ନ ପାରୁଁ । ଏପରି ଅନେକେ ଅଛନ୍ତି ଯେ ପ୍ରାଚୀନ ସାହିତ୍ୟ କିଂଭୂତକିମାକାର ବିଶିଷ୍ଟ ସେମାନେ ଆଦୌ କିଛି ଜାଣନ୍ତି ନାହିଁ; ମାତ୍ର ତନ୍ମୂଳକ ପ୍ରସ୍ତାବ ଉତ୍‌ଥାପିତ ହେଲେ ସାହସୈକ-ଶରଣତାରେ ସେମାନେ ପୁଣି ଆପଣାର ଅଭିଜ୍ଞମନ୍ୟମାନତାର ସହିତ ପୌରାଣିକ ପ୍ରାଚୀନ ସାହିତ୍ୟର ଦୋହାଇଦେବାକୁ କୁଣ୍ଠିତ ହୁଅନ୍ତି ନାହିଁ । ଏଥିରେ ଯେ କେତେକ କେବଳ ପଦଗୌରବାପନ୍ନ ବ୍ୟକ୍ତିମାନଙ୍କର କାପଟିକ – ସର୍ବତୋମୁଖ ଅଭିଜ୍ଞତାର ପ୍ରଖ୍ୟାପନ ପରିପାଟୀ ତାହା ତ ସର୍ବତ୍ର ସ୍ୱତନ୍ତ୍ରତାସହ ଆଧିପତ୍ୟ ସ୍ଥାପନ କରୁଅଛି । ଏହାଛଡ଼ା ଆଉ ଏକ ରକମ ସୌଖୀନ ପାଠକଦଳ ଅଛନ୍ତି, ଏମାନଙ୍କର ସଂଖ୍ୟା ଏ ଦେଶରେ ସମଧିକ । ଏମାନେ ଆପାତତଃ ମନୋବିନୋଦକର ପ୍ରେମିକ ଲଳିତ ଅବୟବ ବର୍ଣ୍ଣନାନୁପ୍ରାଣିତ ପୁସ୍ତକ ପଢ଼ିବେ । ତଥାପି ଗୁଣ ଦୋଷ ବିଚାରରେ ନିଷ୍ଣାତ ହେବାକୁ ଶକ୍ତି ନ ଥାଉ ପଛକେ ''ମୂଢ଼ପର-ପ୍ରତ୍ୟୟ-ନେୟ ବୁଦ୍ଧିଃ'' ଏହି ପ୍ରଥାରେ ପଡ଼ି ଭଲ ହେଉ ବା ମନ୍ଦ ହେଉ ଗୋଟାଏ ହୋ ରେ ମାତି ଉଠିବେ । ଏହାପରେ କେତେଗୁଡ଼ିଏ ଲେଖକ ମଧ୍ୟରେ ଯେ ଅଯଥାଚରଣ, ତାହା ତ ଅଭିଜ୍ଞ ମାତ୍ରକେ ଅନୁଭବ କରୁଅଛନ୍ତି । ଏ ସମ୍ବନ୍ଧେ ବିଶେଷ କହି କାହାରି ବିରକ୍ତି ଭାଜନ ହେବାର ପ୍ରବୃତ୍ତି ଜନ୍ମୁ ନାହିଁ, ପ୍ରୟୋଜନ ସୁଦ୍ଧା ଜଣାଯାଉ ନାହିଁ । ତଥାପି ବିନୀତ ଭାବରେ ଏତିକି ମାତ୍ର କହିବାକୁ ସାହସ କରୁଅଛୁଁ । ଏକ୍ଷଣି ଓଡ଼ିଆ ସାହିତ୍ୟରେ ପଦ୍ୟସମ୍ଭାରର କିଛିମାତ୍ର ନ୍ୟୁନତା ନାହିଁ । ବିଶେଷତଃ ପୁରାଣ ଯୁଗ ଓ କାବ୍ୟଯୁଗର ଯେ ଅସୀମ ପଦ୍ୟ ଗ୍ରନ୍ଥମାନ ବିରାଜମାନ, ବୋଧହୁଏ ସେଥିମଧ୍ୟରୁ ସମଧିକ ଭାଗ ଅନେକଙ୍କର ଜ୍ଞାନ-ଗୋଚରର କଥା ତେଣେ ଥାଉ ପ୍ରତ୍ୟୁତ ନେତ୍ରଗୋଚରକୁ ଆସିନାହିଁ । ସେସବୁ କିପରି ଭାବରେ କିପରି ଆକାରରେ ପ୍ରଥମତଃ ଲିଖିତ ହୋଇଥିଲା, ତା' ପରେ ଅନଭିଜ୍ଞ ଲୋକଙ୍କର କରବଦରାୟମାଣ ହୋଇ କେତେଦୂର କଳୁଷିତ ହୋଇ ଯାଇଅଛି ତା'ର ବିଚାର କରିବେ କିଏ ? ହେ ଲେଖକ ଓ ପାଠକ ମହାଶୟମାନେ ! ସୁବିଚାର କରନ୍ତୁ, ଆବଶ୍ୟକୀୟ କର୍ତ୍ତବ୍ୟରେ ସାବଧାନ ହୁଅନ୍ତୁ । ଆମ୍ଭମାନଙ୍କର ପଡ଼ୋଶୀ ଭାଇମାନଙ୍କର ମାତୃସାହିତ୍ୟପ୍ରପଞ୍ଚରେ ତଦ୍‌ତଦ୍ ଭାଷାଗତ ପୁରାଣମାନ ଯେପରି ନିର୍ଦ୍ଦୋଷତା ଓ ସମୁଜ୍ଜ୍ୱଳତାରେ ପ୍ରକାଶମାନ ଆମ୍ଭମାନଙ୍କର ଅଖିଳ ପୁରାଣ ରତ୍ନରାଜି ଅଧୁନା ସ୍ୱାଭାବିକ ସୌନ୍ଦର୍ଯ୍ୟ ଓ ନିର୍ଦ୍ଦୋଷତାର ସହିତ ସେପରି ପ୍ରକାଶମାନ ରହିପାରିଅଛି କି ? ଏଥିର

ଦାୟିତ୍ୱ ଆମ୍ଭମାନଙ୍କଠାରେ ରହି ନାହିଁ କି ? ପ୍ରାତିବେଶିକ-ଭାଷାର ପୁରାଣମାନଙ୍କ ସହିତ ଓଡ଼ିଆର ଇଦାନୀଂତନ ଦୋଷ-ସଂକୁଳ ଆକାରରେ ପରିଣତ ପୁରାଣ-ସାହିତ୍ୟର ତୁଳନା ଓ ପରିଶୀଳନା କରିବାକୁ ଗଲେ ନିଜେ ଲଜ୍ଜିତ ହେବାକୁ ପଡ଼େ ନାହିଁ କି ? ଏ ସ୍ଥଳରେ ଆଗେ ଆମ୍ଭମାନଙ୍କର ଆଦିମ ମହାଗ୍ରନ୍ଥ ଏକମାତ୍ର ସାରଳା ଭାରତର କଥା ବିଚାର କରନ୍ତୁ । ଏହି ଗ୍ରନ୍ଥଟିର କବିଦତ୍ତ ଆକୃତି କେତେଠାରେ ଅନୁଲେଖକଙ୍କଦ୍ୱାରା ବିଲୁପ୍ତ ହୋଇଯାଇଅଛି, କେତେଠାରେ ଅନ୍ୟାନ୍ୟ ମତି-ଦୁର୍ବିଧଙ୍କ ମତିମାନ୍ଦ୍ୟ-କାଳିମାରେ ବିଲିପ୍ତ ହୋଇ ପଡ଼ିଅଛି, କେତେ ସ୍ଥଳ ବା ଅପାର୍ଥ ହୋଇଯାଇଅଛି, ଆଉ କେତେକ ସ୍ଥଳ ଅନର୍ଥ ବିକୃତି ଲିପିମାଳାରେ କେବଳ ଦୁର୍ଭାର ହୋଇପଡ଼ିଅଛି, ଏସବୁ ବୁଝି ଅଛନ୍ତି ତ ? ଆପଣମାନେ ପୂର୍ବପୁରୁଷମାନଙ୍କର ଅଖଣ୍ଡ-ଅନନ୍ୟ ସାମାନ୍ୟ-ମହତୀ ସାରସ୍ୱତ କୀର୍ତ୍ତିମାନଙ୍କର ଯାହାଯାହା କଳୁଷିତ ହୋଇ ପଡ଼ିଅଛି, ସେସବୁ ଆଗେ ପରିଷ୍କୃତ କରି ତାହାର ନୈସର୍ଗିକ ସୁବିଦ୍ୟୋତକ-ଆଲୋକ ସର୍ବତ୍ର ପ୍ରକାଶ କରନ୍ତୁ; ତା' ପରେ ନିଜର ବୋଲି ଯେ କୌଣସି ପ୍ରକାର ଗୋଟାଏ ଆକ୍ଷରିକ-କୀର୍ତ୍ତି-ପ୍ରାସାଦ ରଚିବାରେ ବ୍ୟସ୍ତ ହେବେ । ଆପଣମାନେ ତ ଅବଶ୍ୟ ଜାଣନ୍ତି, ପୂର୍ବପୁରୁଷଙ୍କକୃତ ଜୀର୍ଣ୍ଣ ପ୍ରାସାଦର ଉଦ୍ଧାର କଲେ ଶତ ପ୍ରାସାଦ କରଣର ଫଳଭାଗୀ ହେବାକୁ ହୁଏ । ଅତଏବ ବିନୀତ ଭାବରେ ବୋଲୁଅଛୁଁ, ଯେଉଁମାନଙ୍କର ବିଦ୍‌ବତ୍ତାର ସହିତ ରଚନାପାଟବ ଅଛି, ମାତୃସାହିତ୍ୟ ପ୍ରତି ନିର୍ବିଳୀକ ଅଭିମାନ ଅଛି, ତା'ର ଉନ୍ନତି ସାଧନର ପିପାସା ଅଛି, ସେମାନେ ପ୍ରାଚୀନ ଉତ୍କଳ ପୁରାଣ ନିଚୟର କବିଦତ୍ତ ସ୍ୱାଭାବିକ – ରମଣୀୟ ରୂପକୁ ଉଦ୍ଧାର କରି ସମାଜ ସମକ୍ଷରେ ପ୍ରଦର୍ଶନ କରନ୍ତୁ । ଏଟା ସାମାନ୍ୟ ବାହାଦୁରୀ ନୁହେଁ, ସାମାନ୍ୟ ଲେଖକତ୍ୱ ନୁହେଁ, ସାମାନ୍ୟ କବିତ୍ୱ-ଗୌରବ ନୁହେଁ । ଆଜିକାଲିର ଏଣୁତେଣୁ ଆନୀତ ତଥାପି ଦୋଷମିଳିତ ଅଢ଼ାଇପତ୍ରିଆ-କବିତ୍ୱ-ପରିଚାୟକ-ପଦ୍ୟଲେଖା ଅପେକ୍ଷା ଏହା ଶତ ଗୁଣରେ ସମୁତ୍କୃଷ୍ଟ; ଶତ ଗୁଣରେ ସମାଦୃତ । ଏହାକୁ ବୁଝି ରଖନ୍ତୁ, ଏଥିରେ ମନୋଯୋଗ କରନ୍ତୁ ।

ଅଭିଜ୍ଞ ପାଠକବୃନ୍ଦ ! ଶ୍ରୀମଦ୍ ଭାଗବତର ସମାଲୋଚନାର ପ୍ରାରମ୍ଭ ପୂର୍ବରୁ ତଦୀୟ ରଚୟିତା ବ୍ୟାସଦେବ ଏବଂ ସେହି ଭାଗବତର ସାମୁଦୟିକ ବିଚାରରେ କେତେଗୁଡ଼ିଏ କଥା ଆପଣମାନଙ୍କ ସମ୍ମୁଖରେ ଉପସ୍ଥାପିତ କରିବା ନିତାନ୍ତ ଆବଶ୍ୟକ । ଏତତ୍‌ଦ୍ୱାରା ଶ୍ରୀ ମହାଭାରତ, ବ୍ରାହ୍ମାଦି ପୁରାଣ ସମୁଦାୟ ଓ ଶ୍ରୀମଦ୍ ଭାଗବତ ଗ୍ରନ୍ଥ କିପରି ଭାବରେ କେଉଁ ସମୟରେ ଲିଖିତ ଓ ପରିଷ୍କୃତ ଏବଂ ପରିବର୍ଦ୍ଧିତ ରୂପେ ଲୋକରେ ପ୍ରଥିତ ହୋଇଅଛି, ଇତ୍ୟାଦି ବିଷୟମାନ ସ୍ପଷ୍ଟତଃ ଉପଲବ୍ଧ ହୋଇପାରିବ । ତଥାଚ ତଦ୍‌ଦ୍ୱାରା ଶଂସିତ ବିଷୟରେ ଯେ କର୍ତ୍ତବ୍ୟ-ତତ୍ପରତା ତାହା ସପ୍ରମାଣ ହୋଇପାରିବ । ତଥାପି ଏଥିପାଇଁ

ବାକ୍ୟ ସନ୍ଦର୍ଭକୁ ବୃଥା ପଲ୍ଲବିତ ନ କରି ସମାସତଃ କେବଳ ସୁବିଚାର-ପୂର୍ବକ ତାହା ଲେଖିବାକୁ ପ୍ରବୃତ୍ତ ହେଉଅଛୁଁ ।

ଅଖିଳ ବ୍ରହ୍ମାଣ୍ଡନାୟକ ନିଖିଳଭୂତାନ୍ତରାତ୍ମା ଶ୍ରୀମନ୍ନାରାୟଣ ଏହି ସଂସାର ମଧ୍ୟରେ ସାଧୁଜନ ରକ୍ଷଣ ଓ ଦୁଷ୍ଟଜନ ଶିକ୍ଷଣାର୍ଥ ବହୁ ଲୀଳାବତାରମାନ ଧାରଣ କରିଥାନ୍ତି । ପରଂବ୍ରହ୍ମ ମୂର୍ତ୍ତି ଶ୍ରୀ ଭଗବାନଙ୍କର ଲୀଳାବତାର ସମବାୟରେ ଏକବିଂଶଗୋଟି (କାହାରି ୨ ମତରେ ଚତୁର୍ବିଂଶ ଗୋଟି ଅବତାର ପ୍ରଧାନତଃ ଅଭିହିତ । ସେଥିମଧ୍ୟରେ ଅଷ୍ଟାଦଶ (କାହାରି ୨ ମତରେ ସପ୍ତଦଶାବତାର) ଅବତାରରେ ନିଖିଳ ଶ୍ରୁତି, ସ୍ମୃତି, ଇତିହାସ ପୁରାଣାଦି ଅଖିଳ ବିଦ୍ୟା ସମୁଦାୟ ସମୁଦ୍ଧରଣାର୍ଥ ସ୍ୱୟଂ ଭଗବାନ ପରମେଶ୍ୱର ସତ୍ୟବତୀଙ୍କ ଗର୍ଭରୁ ପରାଶରଙ୍କ ଔରସରେ ଆବିର୍ଭୂତ ହୋଇ ପ୍ରଥମତଃ କୃଷ୍ଣଦ୍ୱୈପାୟନ ନାମରେ ପ୍ରଖ୍ୟାତି ପାଇଥିଲେ । ତା'ପରେ ସେ ପୁଣି ଏହି କଳିକାଳର ମନ୍ଦବୁଦ୍ଧି, ମନ୍ଦପ୍ରଜ୍ଞ, ସ୍ୱଳ୍ପାୟୁ-ଲୋକମାନଙ୍କ ପ୍ରତି ଅକମ୍ପାନୁକମ୍ପ ହୋଇ ଏକତ୍ରୀଭୂତ ବେଦସନ୍ଦୋହକୁ ଋକ୍, ଯଜୁଃ, ସାମ ଓ ଅଥର୍ବ ନାମରେ ବିଭକ୍ତ କଲାରୁ ବେଦବ୍ୟାସ ନାମରେ ଅଭିହିତ ହେଲେ । ଭଗବାନ ବ୍ୟାସ, ମହର୍ଷି ସମସ୍ତ ଲୋକୋପକାର ନିମନ୍ତେ ଅତ୍ୟନ୍ତ ନିଗୂଢ଼ ବେଦମାନ ଏବଂ ତଦର୍ଥ ନିଚୟରେ ସମୁପବୃଂହିତ ସ୍ମୃତି, ଇତିହାସ ପୁରାଣାଦି ଶାସ୍ତ୍ରପ୍ରପଞ୍ଚକୁ ସୁସଙ୍ଗତ ଓ ସୁସନ୍ଦର୍ଭାନୁକ୍ରମରେ ପରିଷ୍କୃତ କରିଅଛନ୍ତି, ଏକଥା ଜଗତରେ ସର୍ବଜନବିଦିତ ଥିବା ସର୍ବତ୍ର ଶୁଣାଯାଏ । ସମସ୍ତ ଶାସ୍ତ୍ରରେ ଏହି କଥାର ପ୍ରମାଣପୁଞ୍ଜ ଦେଦୀପ୍ୟମାନ ଥିବା ମଧ ଅଭିଜ୍ଞ ସମାଜର ନେତ୍ରଗୋଚର ଓ ଜ୍ଞାନଗୋଚର ଅଟେ ।

ବ୍ୟାସଦେବ ପ୍ରଥମେ ଦୁରଧିଗମ୍ୟ ସମଷ୍ଟୀଭୂତ ବେଦସଂଘାତକୁ ଋଗାଦି ଭାଗ ଚତୁଷ୍ଟୟରେ ବିଭକ୍ତ କରି ପୈଳନବୈଶମ୍ପାୟନ ପ୍ରମୁଖ ଶିଷ୍ୟମାନଙ୍କୁ ଅଧ୍ୟାପନ କରାଇଥିଲେ । ସେ ତାହାଙ୍କର ସେହି ଶିଷ୍ୟବର୍ଗଦ୍ୱାରା ବେଦ ସକଳ ଯେପରି ଉତ୍ସନ୍ନ ନ ହୁଏ, ତଦନୁକୂଳତାରେ ନାନାବିଧ ଶାଖାରେ ପରିଣତ କରାଇଥିଲେ । ସେ ସମସ୍ତ କେବଳ ଇଦାନୀଂ ଲୋକରେ ପ୍ରଚଳିତ ଓ ସମାଦୃତ ହେଉଅଛି । ସେ ପୁଣି ଏହାପରେ ନିଖିଳ ବେଦ-ପ୍ରତିପାଦ୍ୟ ପରମ ତତ୍ତ୍ୱମାନଙ୍କର ଅବବୋଧନାର୍ଥ ଏବଂ ମୋକ୍ଷପ୍ରାପ୍ତି — ନିରୋଧକ — ଅଜ୍ଞାନାନ୍ଧକାର-ପଟଳର ଦୂରୀକରଣ ପୂର୍ବକ ସୁଜ୍ଞାନ ପ୍ରଦାନାର୍ଥ ଅଖିଳ-ଶ୍ରୁତି-ସମୁଦାୟ-ମଣି-ଗଣ-ଗ୍ରଥନର ସୂତ୍ର ସ୍ୱରୂପ ବ୍ରହ୍ମସୂତ୍ରମାନ ରଚନା କଲେ । ବେଦ ଲକ୍ଷଣ ପ୍ରତିପାଦକ ଶିକ୍ଷାଦି ଶାସ୍ତ୍ରମାନ ମଧ ଲେଖିଲେ । ସେହି ବେଦମାନ କେବଳ ମେଧାବୀ ଶାସ୍ତ୍ର-ନିଷ୍ଣାତ-ମତି ଦ୍ୱିଜାତି ପୁରୁଷମାନଙ୍କର ବୋଧଗମ୍ୟ ଅଟେ । ସେମାନେ କେବଳ ବେଦମାନଙ୍କର ଅଧ୍ୟୟନ ଅଧ୍ୟାପନା କରିପାରନ୍ତି । ଅଧମୋଦ୍ଧାରଣା-ବ୍ରତୈକନିଷ୍ଠ କରୁଣାମୟ ମହର୍ଷି ବେଦବ୍ୟାସ ଯେଉଁମାନଙ୍କର ବେଦରେ ଅଧିକାର ନାହିଁ, ସେହି

ସ୍ତ୍ରୀ, ଶୂଦ୍ର ଏବଂ ତ୍ରୈବର୍ଣ୍ଣିକାଧମମାନଙ୍କର ବେଦ ଶ୍ରବଣ ଫଳପ୍ରାପ୍ତି ଓ ତତ୍ରତ୍ୟ ବିଷୟନିଚୟର ଉପଲବ୍ଧି ସକାଶେ ପଞ୍ଚମବେଦ ସ୍ୱରୂପ ଭାରତ ଆଖ୍ୟାନ ରଚନା କଲେ । ସେ ମହୋଦୟ ନିଖିଳ ବେଦାର୍ଥୋପବୃଂହିତ ମହାଭାରତ ନାମକ ଶତପର୍ବ-ସମନ୍ୱିତ ଇତିହାସ-ରତ୍ନକୁ ବିରଚିତ କରି ତାହା ଅତି ରମଣୀୟ ଥିଲେ ସୁଦ୍ଧା ଅତି ବାହୁଲ୍ୟ ହେତୁରୁ ଅନଧୀତ-ଶ୍ରୁତିସ୍ମୃତ୍ୟାଦି ଅଧ୍ୟେତୃମାନଙ୍କର ସମୟେ ଅପରିଜ୍ଞେୟ ହେବ ବୋଲି ଅର୍ଥାତ୍ ସର୍ବସାଧାରଣ ମନୀଷିମାନଙ୍କର ମଧ୍ୟ ତାହା ସଂପୂର୍ଣ୍ଣତଃ ବୋଧଗମ୍ୟ ହୋଇ ନ ପାରେ, ଏହି ଭାବନାରେ ସନ୍ଦିହାନ ହୋଇ ନିଜ ଶିଷ୍ୟ ବୈଶମ୍ପାୟନ ଆଉ ଜୈମିନିଙ୍କୁ ଡକାଇ ଶତପର୍ବାତ୍ମକ ମହାଭାରତକୁ ଅଷ୍ଟାଦଶ ପର୍ବ ସନ୍ନିଭାଗରେ ସଂଗ୍ରହ ରୂପେ ନିର୍ମାଣ କରିବାପାଇଁ ଆଦେଶ ଦେଲେ । ସେ ଦୁହେଁ ଗୁରୁଦେବଙ୍କ ଆଦେଶାନୁସାରେ ତଦୀୟ ମୂଳ ଗ୍ରନ୍ଥର ଅନୁସରଣରେ ଦୁଇଗୋଟି ସଂଗ୍ରହ ଭାରତ ଗ୍ରନ୍ଥ ନିର୍ମାଣ କଲେ । ସେ ଦୁଇଗ୍ରନ୍ଥ ମଧ୍ୟରୁ ବୈଶମ୍ପାୟନକୃତ ଭାରତ କେବଳ ଆମ୍ଭମାନଙ୍କ ଦେଶରେ ପଣ୍ଡିତମାନଙ୍କ କର୍ତ୍ତୃକ ପରିପଠିତ ହେଉଅଛି । ଜୈମିନିକୃତ ଭାରତ ସର୍ବତ୍ର ମିଳେ ନାହିଁ । ଜୈମିନୀୟ ଭାରତର ଅଶ୍ୱମେଧ ପର୍ବମାତ୍ର ସର୍ବତ୍ର ଦେଖିବାକୁ ମିଳେ । ଅପିଚ ଇତଃପୂର୍ବେ ବ୍ୟାସଦେବ ବେଦାର୍ଥାନୁପ୍ରାଣିତ ଅଷ୍ଟାଦଶ ମହାପୁରାଣମାନ ରଚନା କରିଥିଲେ ଏବଂ ତତ୍ତତ୍ ପୁରାଣମାନଙ୍କରେ ଅନଭ୍ୟୁଦିତ କୌଣସି ୨ ସନ୍ଦିଗ୍ଧ ବିଷୟରେ ସନ୍ଦିହାନ ଲୋକମାନଙ୍କର ସନ୍ଦେହ ମୋଚନାର୍ଥ ଅଷ୍ଟାଦଶ ଉପପୁରାଣମାନ ମଧ୍ୟ ରଚନା କରିଥିଲେ । ଏ ସ୍ଥଳରେ ପାଠକ ମହାଶୟମାନେ ସମାହିତ ମନରେ ବୁଝି ରଖିବାକୁ ହେବ ଯେ – 'ବ୍ୟାସଦେବ ମହାପୁରାଣ ଓ ଉପପୁରାଣ-ନିଚୟ କରିଥିଲେ ।' ଏହାର ଭାବ ଏହି ଯେ ବ୍ୟାସଦେବଙ୍କ ତତ୍ତ୍ୱାବଧାନରେ ତଦୀୟ ଆଦେଶକ୍ରମରେ ଅନ୍ୟାନ୍ୟ ଋଷିମାନଙ୍କଦ୍ୱାରା ସେସବୁ ପରିଷ୍କୃତ ଓ ପରିବର୍ଦ୍ଧିତ କରାଯାଇଅଛି ।

ଯେପରି କ୍ରମରେ ଶତପର୍ବାତ୍ମକ ବ୍ୟାସକୃତ ମହାଭାରତ ଅଷ୍ଟାଦଶପର୍ବାତ୍ମକ ରୂପେ ସଂଗ୍ରହାକାରରେ ବୈଶମ୍ପାୟନ ଓ ଜୈମିନିଙ୍କ କର୍ତ୍ତୃକ ପରିଷ୍କୃତ ହୋଇଅଛି, ଅନ୍ୟାନ୍ୟ ପୁରାଣମାନଙ୍କର ମଧ୍ୟ ସେହି କ୍ରମ ଘଟିଅଛି । ପୂର୍ବବର୍ତ୍ତୀ ଋଷିମାନଙ୍କଦ୍ୱାରା ପ୍ରଥମତଃ ବ୍ରାହ୍ମ, ବୈଷ୍ଣବ, ଗାରୁଡାଦି ବହୁ ପୁରାଣ ଗ୍ରନ୍ଥମାନ ବିବିଧ ବିଚିତ୍ର କଥାସନ୍ଦର୍ଭ ସଂଘଟନାରେ ରଚନା ପରିପାଟୀର ଅତ୍ୟନ୍ତ ରମଣୀୟତା ସହ ବିରଚିତ ହୋଇଥିଲା । କିନ୍ତୁ ସେଗୁଡ଼ିକ ମଧ୍ୟରୁ କେତେକ ଉତ୍ସନ୍ନ, କେତେକ ବା ବିଚ୍ଛିନ୍ନ ପୂର୍ବୋତ୍ତର ସମ୍ବନ୍ଧ, ଆଉ କେତେକ ନିତାନ୍ତ ନିଗୂଢ଼ାର୍ଥତାରୁ ଅବିଜ୍ଞେୟ ହୋଇ ପଡ଼ିଥିଲା । ଶ୍ରୀମାନ୍ ମହର୍ଷି ବେଦବ୍ୟାସ ସେହି ସେହି ଗ୍ରନ୍ଥମାନଙ୍କର ବିଚ୍ଛିନ୍ନ ବିଷୟାଦିକୁ ସମ୍ୟକ୍ ଆଲୋଚନା କରି ଦେଶ-କାଳାନୁସରଣ ପୂର୍ବକ ତତ୍ତତ୍ ସନ୍ଦର୍ଭାନୁକୂଳତାରେ ଜୀର୍ଣ୍ଣାଳୟ ସମୁଦ୍ଧରଣନ୍ୟାୟ ପୂର୍ବକୃତ ପୁରାଣମାନଙ୍କୁ

ପରିଷ୍କୃତ କେବଳ କରିଅଛନ୍ତି । ପୁରାଣମାନଙ୍କର ପରିଷ୍କାର-କର୍ତ୍ତା ବ୍ୟାସଦେବ ଥିବାରୁ ସେସବୁ ବ୍ୟାସକୃତ ବୋଲି ଅଭିହିତ ହୋଇଥାଏ । ପୌରାଣିକ ବିଷୟ ସନ୍ଦୋହରେ ପ୍ରପଞ୍ଚିତ ଦେଶକାଳ ତଥା ସନ୍ଦର୍ଭାଦିର ସମ୍ୟକ୍ ବିଚାରଦ୍ୱାରା ମନୀଷିମାନେ ଏହା ସ୍ଥିର କରି ଅଛନ୍ତି । ଅତଏବ ''ଅଷ୍ଟାଦଶ ପୁରାଣାନାଂ କର୍ତ୍ତା ସତ୍ୟବତୀସୁତଃ'' ଇତ୍ୟାକାରକ କାବ୍ୟମାନଙ୍କରେ ନିହିତ କର୍ତ୍ତୃ-ଶବ୍ଦର ଅର୍ଥ ପ୍ରବର୍ତ୍ତକ ବୋଲି ମନୀଷିମାନେ ନିଶ୍ଚିତ କରିଅଛନ୍ତି ।

ବ୍ୟାସଦେବଙ୍କର ଏହି ପୁରାଣ ସମୁଦ୍ଧରଣ ପ୍ରକ୍ରିୟାକୁ ଅନ୍ୟାନ୍ୟ ଶାସ୍ତ୍ରତତ୍ତ୍ୱାନୁସନ୍ଧିତ୍ସୁମାନେ କହନ୍ତି କି ବ୍ରାହ୍ମ ପ୍ରଭୃତି ନିଖିଳ ପୁରାଣ ସମୁଦାୟରେ ତଦ୍‌ତଦ୍ ଉପକ୍ରମ ଓ ଉପସଂହାରାଦି ପ୍ରକରଣମାନଙ୍କରେ ପ୍ରତିପାଦିତ ବିଷୟାଦି ବିଚାର କଲେ ମହର୍ଷି ପରାଶର, ମାର୍କଣ୍ଡେୟ, ସନତ୍‌କୁମାର ପ୍ରଭୃତି ଋଷିମାନଙ୍କ କର୍ତ୍ତୃକ କେବଳ ସେହି ପୁରାଣ ସକଳ ବିରଚିତ ହୋଇଥିବା ଜଣାଯାଏ । ମାତ୍ର କାଳ ବୈପରିତ୍ୟାଦି ହେତୁରୁ ସେଥିମଧ୍ୟରୁ କେତେକ ପୁରାଣ ଅଂଶତଃ ବିଭ୍ରଷ୍ଟ ହୋଇଯାଇଥିଲା, କେତେକ ସଂଖ୍ୟାଦି ବିଭାଗ କ୍ରମରେ ରହିତ ହୋଇପଡ଼ିଥିଲା, କେତେକ ପୁଣି ସନ୍ଦର୍ଭ-ସନ୍ଧାୟକ ବିଷୟ ପ୍ରତିପାଦକ ଶ୍ଳୋକମାନଙ୍କର ଅଭାବବଶରୁ ସାଙ୍ଗତ୍ୟ-ରହିତ ହୋଇଯାଇଥିଲା; କେତେକ ଅସମ୍ପୂର୍ଣ୍ଣତାରେ ରହିଥିଲା, କେତେକ ପୁଣି ଅନ୍ତତଃ ବିଭ୍ରଷ୍ଟ ହୋଇଯାଇଥିଲା, ଆଉ କେତେକ ବିଭାଗଶଃ ବିବିଧ ଦେଶରେ ବିକୀର୍ଣ୍ଣ ହୋଇପଡ଼ିଥିଲା । ଏହି ପ୍ରକାର ବିଭ୍ରଷ୍ଟ ଗ୍ରନ୍ଥ ସମୁଦାୟକୁ ଭଗବାନ ବ୍ୟାସଦେବ ସ୍ୱୟଂ ସମ୍ୟକ୍ ପରିଷ୍କୃତ କଲାପରେ ସ୍ୱକୀୟ ଶିଷ୍ୟମାନଙ୍କଦ୍ୱାରା ସେହିସବୁ ପୁରାଣ ଗ୍ରନ୍ଥମାନଙ୍କର ରୀତି ଓ ପାକାଦି କ୍ରମକୁ ଠିକ୍ ସୁସଙ୍ଗତ କରାଇ ସେସବୁର ଉପୋଦ୍‌ଘାତ ପ୍ରକରଣ, ବିଷୟାନୁକ୍ରମ ପଦ୍ଧତି, ତଦ୍ ତଦ୍ ପୁରାଣଘଟିତ ଶ୍ଳୋକମାନଙ୍କର ନିର୍ଣ୍ଣାୟକ ସଂଖ୍ୟା, ଅନୁକ୍ରମଣିକା-ପ୍ରତିପାଦକ ଶ୍ଳୋକାବଳୀ ଶ୍ରୋତା ଏବଂ ପ୍ରବକ୍ତୃ ଓ ଶ୍ରାବକମାନଙ୍କର ପରସ୍ପର ସଂଜାତ ପ୍ରଶ୍ନୋତ୍ତରାବଳୀ ଇତ୍ୟାଦି ବିଷୟକୁ ସନ୍ଦର୍ଭୋଚିତ କ୍ରମରେ ପ୍ରଣୟନ କରି ପୁରାଣନିଚୟକୁ ସୁପରିଷ୍କୃତ କରନ୍ତୁ ବୋଲି ରୋମହର୍ଷଣ ପ୍ରଭୃତି ଶିଷ୍ୟମାନଙ୍କୁ ଆଦେଶ ଦେଇଥିଲେ । ସେମାନେ ଗୁରୁଙ୍କ ଆଜ୍ଞାନୁସାରେ ଅଖିଳ ପୁରାଣମାନଙ୍କୁ ଯଥୋଚିତ ବିଷୟ ସଂଯୋଗ ଓ ସଂଘଟନରେ ସୁପରିଷ୍କୃତ କରି ଅଛନ୍ତି । ଅତଏବ ସମଗ୍ର ପୁରାଣମାନଙ୍କର ପରିଷ୍କରଣ ଏକକାଳୀନ ଏବଂ ଏକ ମହାତ୍ମାଙ୍କ ଅଭିମତାନୁମତ ବୋଲି ନିଶ୍ଚିତ ହୋଇଅଛି ।

ଶ୍ରୀମାନ୍ ବ୍ୟାସଦେବ ପ୍ରାଣୀବର୍ଗଙ୍କର ଶ୍ରେୟଃସାଧନକାରକ ଏସବୁ କରି ସୁଦ୍ଧା ଅତୃପ୍ତ ଅନାପ୍ୟାୟିତମନା ହୋଇ ଅତ୍ୟନ୍ତ ଚିନ୍ତାକୁଳ ହୃଦୟରେ ବେଦମାତା ସରସ୍ୱତୀ ନଦୀ ତୀରରେ ବସିରହିଲେ । ଏକଦା ତତ୍ରାଗତ ନାରଦଙ୍କ ଉପଦେଶକ୍ରମରେ ପୁରାଣ

ନିବହରେ ସର୍ବୋତ୍କୃଷ୍ଟ କରିବା ପାଇଁ ନିଖିଳ ଉପନିଷଦରେ ପ୍ରତିପାଦ୍ୟ ପରମ ତତ୍ତ୍ୱାର୍ଥରତ୍ନରେ ସମୁଜ୍ଜ୍ୱଳ, ପୁରାଣନିବହରେ ସଂପୂର୍ଣ୍ଣ ରହସ୍ୟମୟ, ଭଗବାନ୍ନାରାୟଣଙ୍କ ଅଖିଳ ମହିମାତିପୂର୍ଣ୍ଣ ବିଷ୍ଣୁଭକ୍ତି ସଂଜନକ, ଜ୍ଞାନବୈରାଗ୍ୟ ସାଧକ ଅମୃତାୟମାନ (୧) ଶ୍ରୀମଦ୍ ଭାଗବତ ଗ୍ରନ୍ଥକୁ ସ୍ୱୟଂ ରଚନାକରି ସ୍ୱକୀୟ ସୁତ ଶ୍ରୀ ଶୁକଦେବଙ୍କୁ ଉପଦେଶ ଦେଲେ । ଶୁକଦେବ ମୁମୁକ୍ଷୁ-ପରୀକ୍ଷିତଙ୍କୁ ତାହା ହିଁ ଉପଦେଶ ଦେଇଥିଲେ । ମହର୍ଷି ବ୍ୟାସଦେବ ଅନ୍ୟାନ୍ୟ ପୁରାଣମାନଙ୍କର ପରିଷ୍କରଣ ଯେପରି କରାଇଥିଲେ ସେହିପରି ଏହି ଭାଗବତ ଗ୍ରନ୍ଥକୁ ମଧ୍ୟ ନିଜ ଶିଷ୍ୟ ମୁଖରେ ଲୋକରେ ପ୍ରବର୍ତ୍ତାଇ ଅଛନ୍ତି । ପୁରାଣ ସମବାୟ ମଧ୍ୟରେ ଯାହାକି ଶୁକମୁଖାର୍ଥ ପ୍ରଥମତଃ ବ୍ୟାସଦେବଙ୍କ ଦ୍ୱାରା ଉପଦିଷ୍ଟ ସେହି ଶ୍ରୀମଦ୍ ଭାଗବତ ଗ୍ରନ୍ଥ କେବଳ ସଂପୂର୍ଣ୍ଣତଃ ପରମ ତତ୍ତ୍ୱ-ପ୍ରତିପାଦକ ଅଟେ । ଅନ୍ୟ ଗ୍ରନ୍ଥ ବା ଅନ୍ୟ ପୁରାଣ ଏତାଦୃଶ କଦାଚ କଥଂଚିତ ହୋଇ ନପାରେ । ବ୍ୟାସୋପଦିଷ୍ଟ ସେହି ପରମାର୍ଥ ଗ୍ରନ୍ଥକୁ କେବଳ ସୂତି ମଧ୍ୟ ଶୁକଙ୍କ ମୁଖରୁ ଆପାତତଃ ସମ୍ୟକ୍ ବୁଝିପାରି ଶୌନକାଦି ଋଷିମାନଙ୍କୁ କହିଥିଲେ । ତାପରେ ରୋମହର୍ଷଣାଦି ଋଷିମାନେ ସେ ସବୁର ସମ୍ୟକ୍ ଆଲୋଚନାପୂର୍ବକ ଶିଷ୍ୟ ପରମ୍ପରା-ପ୍ରତିପାଦକ-ଶ୍ଳୋକରୂପ ଗ୍ରନ୍ଥର ସମ୍ମେଳନ ଦ୍ୱାରା ପରିଷ୍କାର କରିଅଛନ୍ତି । ଶ୍ରୀମଦ୍ ଭାଗବତ ଗ୍ରନ୍ଥ ମଧ୍ୟରେ ବ୍ୟାସଙ୍କର ଅବତାର ପ୍ରଭାବାଦିର ଅଭିବର୍ଣ୍ଣନା ଏବଂ ଶୌନକାଦି ଋଷିମାନଙ୍କର ସ୍ତୁତି ପ୍ରଭୃତି ଯେ ଯେ କଥା ନିହିତ ଅଛି, ସେସବୁ ମଧ୍ୟ ରୋମହର୍ଷଣାଦି ଋଷିମାନେ ରଚନା କରିଅଛନ୍ତି ।

ଏହି ଶଂସିତ ଆଉ ଅନ୍ୟାନ୍ୟ ବିଷୟସବୁ ସୁବିଚାର କରିନେଲେ ସ୍ପଷ୍ଟତଃ ପ୍ରତିପନ୍ନ ହୁଏ ଯେ, ଏହି ଦଶ ଲକ୍ଷଣ-ଲକ୍ଷିତ, ବ୍ରହ୍ମ ସୂତ୍ରାର୍ଥ ପ୍ରକାଶକ ମହାଭାରତାର୍ଥ ନିର୍ଣ୍ଣାୟକ, ଶ୍ରୀହୟଗ୍ରୀବ ବ୍ରହ୍ମବିଦ୍ୟା ପ୍ରଭୃତି ବିରୁଦାବଳୀ-ଅଙ୍କିତ, ବୃତ୍ରାସୁର ବଧାଦି ବିବିଧ ବିଚିତ୍ର ପବିତ୍ର କଥା ସନ୍ନିଧାନକ, ପୁରାଣନିଚୟରତ୍ନ ଶ୍ରୀମଦ୍ ଭାଗବତଗ୍ରନ୍ଥର ସାକ୍ଷାତ୍ ପ୍ରବକ୍ତା ସ୍ୱୟଂ ଭଗବାନ ବ୍ୟାସଦେବ ଅଟନ୍ତି । ଏହା ବିବେକ-ପ୍ରବେକ ମନୀଷିପ୍ରବରମାନଙ୍କର ସ୍ଥିର ସିଦ୍ଧାନ୍ତ ମତ । କିନ୍ତୁ ବ୍ରାହ୍ମ ପ୍ରଭୃତି ଅନ୍ୟାନ୍ୟ ପୁରାଣମାନଙ୍କର ପ୍ରବକ୍ତା ପରାଶରାଦି ମୁନିମାନେ ଥିବା ଜଣାଯାଏ । ତଥାପି ସମଗ୍ର-ପୁରାଣ ନିଚୟର ପ୍ରବର୍ତ୍ତକ ଭଗବାନ ବ୍ୟାସଦେବ କେବଳ ବୋଲି ସଂପୂର୍ଣ୍ଣ ବିଶ୍ୱାସ ହେଉଅଛି । ତାହାହେଲେ ଦ୍ୱାପର ଯୁଗର ଆଦ୍ୟଭାଗରେ ଅବତୀର୍ଣ୍ଣ ବ୍ୟାସଦେବଙ୍କ କର୍ତ୍ତୃକ ପରମ ତତ୍ତ୍ୱାପାଦକ ଗ୍ରନ୍ଥନିଚୟ ପ୍ରଣୀତ

---

୧ କସ୍ମୈଯେନ ବିଭାଷିତୋଽୟମତୁଲୋ ଜ୍ଞାନ-ପ୍ରଦୀପଃ ପୁରା ।
ତଦ୍ରୂପେଣଂଚ ନାରଦାୟ ମୁନୟେ କୃଷ୍ଣାୟ ତଦ୍ରୂପିଣା ।
ଯୋଗୀନ୍ଦ୍ରାୟ ତଦାତ୍ମନାଚ ଭଗବଦ୍ରାତାୟ କାରୁଣ୍ୟତଃ ।
ତଚ୍ଛୁଦ୍ଧଂ ବିମଳଂ ବିଶୋକମମୃତଂ ସତ୍ୟଂ ପରଂ ଧୀମହି । ଇତି ଶ୍ରୀମଦ୍ ଭ ଗବତ

ହୋଇଥିବାସ୍ଥଳେ ତତ୍‌ପରବର୍ତ୍ତୀ-କାଳରେ ଜନିଷ୍ୟମାଣ ଯୁଧିଷ୍ଠିର ପରୀକ୍ଷିତ୍ ପ୍ରଭୃତି ଭୂପତିମାନଙ୍କର କଥାଭିବର୍ଣ୍ଣନର ଇଚ୍ଛା ଏବଂ ତତ୍ରତତ୍ର ନିହିତ ଆତ୍ମସ୍ତୁତିମାନଙ୍କରେ କଦାପି ତାହାଙ୍କର ଅପେକ୍ଷା ଜନ୍ମି ନ ପାରେ ତ । ତେବେ ଏହାର ସମାଧି ବା କିପରି ? ଏ ସ୍ଥଳରେ ଅକୁଟିଳମତି ବିଦ୍ୱଦ୍‌ପ୍ରବରମାନଙ୍କର ଅକୁଟିଳ ଜ୍ଞାନ ଦୃଷ୍ଟିରେ ଯଥାର୍ଥତଃ ଏହା ହିଁ ଆକଳନୀୟ ଯେ ପରବର୍ତ୍ତି ସମୟରେ ବ୍ୟାସଶିଷ୍ୟ ପୈଳ, ବୈଶମ୍ପାୟନ, ଜୈମିନି, ସୁମନ୍ତୁ, ରୋମହର୍ଷଣ, ମୈତ୍ରେୟ ପ୍ରଭୃତି ଋଷିମାନେ ତଦାଜ୍ଞା ପୁରଃସରଣରେ ଲୋକୋପକାର ନିମନ୍ତେ ଅପିଚ ପଠିତୃମାନଙ୍କର ପଠନ ପ୍ରବୃତ୍ତିର ଉତ୍ପାଦନ ସକାଶେ ସ୍ୱକୀୟ ଗୁରୁଦେବଙ୍କର ମହିମାନୁବର୍ଣ୍ଣନ ପୂର୍ବକ ପୁରାଣ ପ୍ରବକ୍ତା ସୂତ ଏବଂ ଶ୍ରୋତୃବର୍ଗ ଶୌନକାଦିଙ୍କର ନାମଧାମାଦି ସେହି ସେହି ଘଟସ୍ଥଳମାନଙ୍କରେ ପୂର୍ବୋକ୍ତ ରୀତିମତେ ଯଥାଯଥ ପ୍ରସଙ୍ଗ ସନ୍ଦର୍ଭାନୁସାରେ ସେସବୁ ଯୋଗ କରି ପୁରାଣମାନ ପରିଷ୍କୃତ କରିଅଛନ୍ତି । ପରନ୍ତୁ ଯେଉଁମାନେ ବିବେକ-ଶୂନ୍ୟତା ବଶରୁ (ଭାରତ ପ୍ରଣୟନର ପରବର୍ତ୍ତି-କାଳରେ ପ୍ରଣୀତ ଏହି ପୁରାଣ-ରତ୍ନ ଶ୍ରୀମଦ୍ ଭାଗବତ ଗ୍ରନ୍ଥଟି ତତ୍‌ପୂର୍ବକାଳିକ-ପୁରାଣ ସମୁଦାୟରେ ଅନ୍ତର୍ଭୁକ୍ତ କିପରି ହୋଇପାରେ ?) ବୋଲି ଯେଉଁ ଅମୂଳକ ଆଶଙ୍କା କରନ୍ତି; ତାହା କଥଂଚିତ୍ ସଙ୍ଗତ ନୁହେଁ । ଏ ସ୍ଥଳରେ ଶାସ୍ତ୍ରନିଗଦିତ ଯୁକ୍ତି ପଂକ୍ତି ଦ୍ୱାରା ନିର୍ଦ୍ଧାରିତ ଯଥାର୍ଥ ସିଦ୍ଧାନ୍ତ ପ୍ରକ୍ରିୟାମାନ ପର୍ଯ୍ୟାଲୋଚନା କରିନେଲେ ସ୍ୱୟଂ ଭଗବାନ ବ୍ୟାସଦେବଙ୍କ କୃତ ଭାରତ ଭାଗବତାଦି ଗ୍ରନ୍ଥ ଏବଂ ତାହାଙ୍କଦ୍ୱାରା ପରିଷ୍କୃତ ବ୍ରହ୍ମାଦି ପୁରାଣମାନଙ୍କର ଯେ ପୁନଃ ପରିଷ୍କରଣ ତାହା ପୁଣି ତଦାଜ୍ଞାନୁସାରେ କଳିଯୁଗର ଆଦ୍ୟ ଭାଗରେ ଅପିଚ ଏକ ସମୟରେ କେବଳ ରୋମହର୍ଷଣ ବୈଶମ୍ପାୟନ ଜୈମିନ୍ୟାଦି ମୁନିମାନଙ୍କ ଦ୍ୱାରା ସମ୍ପାଦିତ ହୋଇଥିବା ସୁସ୍ପଷ୍ଟତଃ, ପ୍ରତିପନ୍ନ ହୋଇଅଛି ତ । ତେବେ ଏ ାଳ– ପରିଷ୍କୃତ ବା ଏକକାଳ-ପରିଷ୍କୃତ ଗ୍ରନ୍ଥ ସନ୍ଦୋହର ପୌର୍ବାପର୍ଯ୍ୟ ବିଚାର କରିବାପାଇଁ ମୂଢ଼ ଲୋକର ସୁଦ୍ଧା ବୃଥା ପ୍ରବୃତ୍ତି ଜନ୍ମି ନ ପାରେ । ସୁତରାଂ ଆମ୍ଭମାନଙ୍କର ଯେ ଯେ ସଦ୍-ଗ୍ରନ୍ଥ ସମୂହ ତାର କୌଣସି ସ୍ଥଳରେ ସୁଦ୍ଧା ଲେଖା ଥିବାର ଦେଖାଯାଏ ନାହିଁ ଯେ ଭାରତପ୍ରଣୟନ ପୂର୍ବରୁ କେବଳ ନିଖିଳ ପୁରାଣମାନଙ୍କର ପରିଷ୍କରଣ ସମ୍ପାଦିତ ହୋଇଥିଲା; କିନ୍ତୁ ବ୍ୟାସ ମହର୍ଷି ସ୍ୱପ୍ରଣୀତ ଶତପର୍ବାତ୍ମକ ମହାଭାରତର ପ୍ରଣୟନର ଅନ୍ତରକାଳରେ କେବଳ ସରସ୍ୱତୀ ନଦୀର ପଶ୍ଚିମତଟବର୍ତ୍ତୀ ଶମ୍ୟାପ୍ରାସାଦାସଂଜ୍ଞକ ଆଶ୍ରମରେ ନାରଦଙ୍କ ଉପଦେଶମତେ ପ୍ରଣୀତ ପରମ-ତତ୍ତ୍ୱାପାଦକ ଶ୍ରୀମଦ୍ ଭାଗବତାର୍ଥକୁ ଶୁକମହର୍ଷିଙ୍କୁ ଉପଦେଶ କ୍ରମରେ କହିଥିବାର ସ୍ପଷ୍ଟତଃ ବିଦ୍ୱଦ୍‌ପ୍ରବରମାନଙ୍କଦ୍ୱାରା ଅନୁମୋଦିତ ହୋଇଅଛି । ଅତଏବ ବୃଥା ଆଶଙ୍କା ଭୟରେ କଥା ପଲ୍ଲବିତ କରିବାର କୌଣସି ପ୍ରୟୋଜନ ନାହିଁ ।

ନିଖିଳ ଉପନିଷଦ୍‌ମାନଙ୍କରେ ପ୍ରତିପାଦ୍ୟ ପରମରହସ୍ୟ ଭଗବତ୍ତତ୍ତ୍ୱମାନ ଏଥିରେ ପ୍ରତିପାଦିତ ହୋଇଥିବାରୁ ଅପରିମେୟ ସୁବିସ୍ତୃତ ଅଖିଳ ବେଦସେଦୋହର ବିଭାଜକ ଆଉ ସମଗ୍ର ପୁରାଣାଦି ସଦ୍‌ଗ୍ରନ୍ଥ-ପ୍ରଣେତା ଭଗବାନ୍ ସ୍ୱୟଂ ବ୍ୟାସଦେବ ଭଗବଦ୍-ଗୁଣସମୁଦାୟ– ସମୁଦାୟର ପ୍ରଧାନତାରେ ଏହାକୁ ରଚନା କରିଥିବାରୁ ଏହି ଶ୍ରୀମଦ୍ ଭାଗବତ ଗ୍ରନ୍ଥଟି ମାସ୍ୟ, ଗାରୁଡ଼, ବ୍ରହ୍ମାଣ୍ଡାଦି ପୁରାଣଗଣ ମଧ୍ୟରେ ସର୍ବଥା ସମୁତ୍କୃଷ୍ଟ ଅଟେ । ଉପପଦ ବିନା ଗୀତା, ସହସ୍ରନାମ ଓ ରାମାୟଣ, ଏହି ନାମମାନ ଅଭିହିତ ହେଲାକ୍ଷଣି ଯେପରି ଯଥାକ୍ରମେ ଭଗବଦ୍‌ଗୀତା, ବିଷ୍ଣୁ ସହସ୍ର ନାମ ଓ ବାଲ୍ମୀକି ରାମାୟଣ ବାଚକତ୍ୱ ଲୋକରେ ପ୍ରତିପନ୍ନ ହୋଇଥାଏ, ସେହିପରି ଉପପଦ-ବିହୀନ ଭାଗବତ ନାମର ସମାଖ୍ୟାନରେ ଶ୍ରୀମଦ୍ ବିଷ୍ଣୁ ଭାଗବତ ବାଚକତ୍ୱ ସମଗ୍ର-ସୁଗୁଣ-ବିଶିଷ୍ଟ ଶିଷ୍ଟ ସମାଜରେ ସ୍ୱୀକୃତ ଅଟେ । ଏକଥା ଏ ସ୍ଥଳରେ କହିବାର କାରଣ ଏହି ଯେ କେହି କେହି ଶାକ୍ତ ମତାବଲମ୍ବୀ ଭାଗବତର ଅନନ୍ୟ ସାମାନ୍ୟ ମହିମାର ପ୍ରଖ୍ୟାପନାବସରରେ କୁଟିଳ କୌଶଳ କ୍ରମରେ ଦେବୀ ଭାଗବତକୁ ଏତଦ୍ ସ୍ଥାନୀୟ କରଣାର୍ଥ ସାହସ କରିଥାନ୍ତି; କିନ୍ତୁ ସେମାନଙ୍କର ଦୁଃସାହସ-କୁହୁକ-କୁଜ୍‌ଝଟିକା ଶ୍ରୀମଦ୍ ଭାଗବତର ଜଗତବିଦ୍ୟୋତକ ଭାସ୍ୱର-ମହିମା-ଭାସ୍କରୋଦୟରେ ଏକାବେଳକେ ବିଧ୍ୱସ୍ତ ହୋଇପଡ଼େ । ସୁତରାଂ ନିଖିଳ ଲୋକାଭିବନ୍ଦ୍ୟ ମୁନିଗଣ-ସଂସେବ୍ୟମାନ-ପଦାରବିନ୍ଦ, ନିରବଦ୍ୟ-ଜ୍ଞାନଗରିଷ୍ଠ ମହର୍ଷି ଶୁକଦେବ ଶ୍ରୀମଦ୍ ଭାଗବତ ଗ୍ରନ୍ଥକୁ ମୋକ୍ଷଶାସ୍ତ୍ର ବୋଲି ସଂପୂର୍ଣ୍ଣ ବିଶ୍ୱାସରେ ପାଠ କରିଥିଲେ, ତଥାଚ ମୁମୁକ୍ଷୁ ପରୀକ୍ଷିତ କ୍ଷିତିପାଳଙ୍କୁ ଏହି ମୋକ୍ଷ ବିଦ୍ୟାରେ ପରିନିଷ୍ଣାତ କରିଥିଲେ । ଏସବୁ କାରଣରୁ ଶ୍ରୀମଦ୍ ଭାଗବତ ପୁରାଣ ସମବାୟର ଶ୍ରେଷ୍ଠତମ ଓ ନିଖିଳ ଉପନିଷଦ୍ ତୁଲ୍ୟ, ଏହା ସ୍ପଷ୍ଟତଃ ଜଣାଯାଉଅଛି ।

ପୁରା ଏକ ସମୟରେ ଶୌନକ ଋଷି ପୌରାଣିକ ସୂତଙ୍କୁ ସବିନୟ ପ୍ରାର୍ଥନା କଲେ କି, ହେ ଋଷି ପ୍ରବର ! ଆପଣ ମୋତେ କର୍ଣ୍ଣରସାୟନ ଭଗବଦ୍‌କଥାସାରକୁ ଦୟାପୂର୍ବକ ଶ୍ରବଣ କରାନ୍ତୁ; ଯେପରି ଜ୍ଞାନ-ଭକ୍ତି-ବୈରାଗ୍ୟ-ସମ୍ବଳିତ ବିବେକ ଜନ୍ମିପାରେ ତାଦ୍ୃଶ ଅନୁଗ୍ରହ କରାନ୍ତୁ । ବିଷ୍ଣୁଭକ୍ତି ପ୍ରାପ୍ତିରେ ମାୟାମୋହର ନିରସନ କିପରି ହୋଇପାରେ ? ଅତ୍ୟନ୍ତ ଘୋର ଏହି କଳିଯୁଗରେ ଜୀବକୋଟି ପ୍ରାୟଶଃ ଆସୁରଭାବାପନ୍ନ ହୋଇ ନିତାନ୍ତ କ୍ଳେଶଜାଳରେ ନିଷ୍ପୀଡ଼ିତ ହେଉଅଛନ୍ତି, ଏମାନଙ୍କର ସଦ୍‌ଗତି ବା କିପରି ହୋଇପାରେ ? ଯାହା ଯାହା କି ପାବନ ସେ ସମସ୍ତ ମଧ୍ୟରେ ପରମପାବନ ପଦାର୍ଥ କଣ ? ଶ୍ରୀକୃଷ୍ଣ ପ୍ରାପ୍ତିକାରକ ସାଧନା ବା କଣ ? ଏହା ହିଁ ମୋର ବିନୀତ ଜିଜ୍ଞାସା । ଏହାର ପରମାର୍ଥ ଉତ୍ତରରେ ମୋର ହୃଦ୍‌ଗ୍ରନ୍ଥି ବିଚ୍ଛିନ୍ନ କରନ୍ତୁ । ତେତେବେଳେ ସୂତ କହିଲେ, ଆପଣଙ୍କ ହୃଦୟରେ ଯେଉଁ ଅଭିଳାଷ ଜନ୍ମିଅଛି, ତାହା ଏହି ପ୍ରଶ୍ନଗୁଡ଼ିକ

ସୂଚନା କରିଦେଇଅଛି । ଭବଦୀୟ ଅଭିଳାଷର ଚରିତାର୍ଥତା ସକାଶେ ମୁଁ ସମ୍ୟକ୍ ବିଚାରପୂର୍ବକ ଜଣାଉଅଛି । ଆପଣ ସମାହିତ-ମନରେ ଶ୍ରବଣ କରନ୍ତୁ । ସର୍ବସିଦ୍ଧାନ୍ତ-ନିଷ୍ପନ୍ନ, ସଂସାର ଭୟ ବିନାଶନ, ଜ୍ଞାନଭକ୍ତି ବୈରାଗ୍ୟବର୍ଦ୍ଧନ ଶ୍ରୀକୃଷ୍ଣ ସନ୍ତୋଷ-ନିଦାନ ଶ୍ରୀମଦ୍ ଭାଗବତ ଗ୍ରନ୍ଥ କେବଳ କାଳ-ବ୍ୟାଳ-ମୁଖଗ୍ରାସ-ତ୍ରାସ ବିନାଶନାର୍ଥ ପୂର୍ବରୁ ଶୁକ ମୁଖରେ ନିଗଦିତ ହୋଇଅଛି । ମନଃ ଶୁଦ୍ଧି ନିମନ୍ତେ ଭାଗବତ ଅପେକ୍ଷା ଅନ୍ୟ ପରମ ଶାସ୍ତ୍ର ଲୋକରେ ଆଉ ନାହିଁ । ଯାହାଙ୍କର ଜନ୍ମାନ୍ତର ସମ୍ପାଦିତ ମହାପୁଣ୍ୟପୁଞ୍ଜ ସଂଚିତ ନ ଥାଏ ସେଭଳି ଲୋକଙ୍କୁ ଶ୍ରୀମଦ୍ ଭାଗବତ ଶାସ୍ତ୍ର କଦାପି ପ୍ରାପ୍ତ ହୁଏ ନାହିଁ । ଏ ସମ୍ବନ୍ଧେ ଗୋଟାଏ ଐତିହାସିକ ଘଟନା ଶ୍ରବଣ କରନ୍ତୁ । ଯୋଗିନ୍ଦ୍ର ଶୁକଦେବ ପରୀକ୍ଷିତ ମହାରାଜାଙ୍କୁ ଶ୍ରୀମଦ୍ ଭାଗବତ ପୁରାଣ ଶୁଣାଇବାର ଉପକ୍ରମ କରିଅଛନ୍ତି, ଇତ୍ୟବସରରେ ଦେବତାମାନେ ତତ୍ର ଭାଗବତ ସଭାରେ ଅମୃତକୁମ୍ଭ ହସ୍ତରେ ଉପଗତ ହେଲେ । ସେମାନେ ଭାଗବତ ବିବକ୍ଷୁ ଶୁକଦେବଙ୍କୁ ଦର୍ଶନ ପରେ ପ୍ରାର୍ଥନା କଲେ କି ଭୋ ଯୋଗିପ୍ରବର ! ଆପଣ ଏହି ଅମୃତକୁମ୍ଭକୁ ସଦୟେ ପରିଗ୍ରହଣ କରନ୍ତୁ, ରାଜା ପରୀକ୍ଷିତଙ୍କୁ ଏହି ଅମୃତ ଦାନରେ ପରିତୃପ୍ତ କରି ଆମ୍ଭମାନଙ୍କୁ ଭଗବଦ୍-କଥାମୃତ ପ୍ରଦାନ କରନ୍ତୁ । ଆମ୍ଭେମାନେ ଭଗବଦ୍ କଥାମୃତ ପାନ କରିବାକୁ ବଡ଼ ସତୃଷ୍ଣ ଅଛୁଁ, ଆପଣ ଆମ୍ଭମାନଙ୍କର ଏହି ପିପାସା ଚରିତାର୍ଥ କରନ୍ତୁ । ତେତେବେଳେ ସର୍ବଜ୍ଞ ଶୁକଦେବ ବୁଝିପାରିଲେ ଯେ ରାଜସ-ହୃଦୟ ଦେବତାମାନଙ୍କର ଭଗବଦ୍ କଥା ଶ୍ରବଣରେ ତାଦୃଶ ଭକ୍ତି ନାହିଁ । ସେ ଏହି ବିଚାରରେ ଦେବଗଣଙ୍କୁ ଅମୃତର ବିନିମୟରେ ଭଗବଦ୍ କଥାମୃତ ଦାନ କଲେ ନାହିଁ । ଅତଏବ କହିବାକୁ ହେବ ଯେ ଅମୃତ ଅପେକ୍ଷା ଶତଗୁଣ ଗରିଷ୍ଠ ଭଗବଦ୍‌କଥାମୃତ ଦେବତାମାନଙ୍କର ମଧ୍ୟ ସୁଦୁର୍ଲ୍ଲଭ । ସେହି ଦେବଦୁର୍ଲ୍ଲଭ ଭଗବ[illegible]ଥାମୃତ ପାନରେ ପରୀକ୍ଷିତ ମହାରାଜ ମୋକ୍ଷପଦବୀ ପ୍ରାପ୍ତ ହୋଇଅଛନ୍ତି, ଏହା ଜାଣିପାରି ଲୋକବିଧାତା ପିତାମହ ତଦାନୀଂ ସାନନ୍ଦ ବିସ୍ମିତ ମନରେ ଭକ୍ତି ମୁକ୍ତି ସାଧନର ଏକାନ୍ତ ଗରିଷ୍ଠତା ପ୍ରାୟ (୨) ଭଗବଦ୍ କଥାମୃତସାର ସହିତ ତଦିତର ସାଧନମାନଙ୍କର ତୁଳନାରେ ପ୍ରବୃତ୍ତ ହେଲେ । ଫଳତଃ ବୁଝିପାରିଲେ ଯେ ମୁକ୍ତିର ସକଳବିଧ ସାଧନ ମଧ୍ୟରେ ଭଗବଦ୍ କଥାମୃତସାରର କେବଳ ସମଧିକ ଉତ୍କୃଷ୍ଟତା ଉପଲବ୍ଧ ହେଲା । ତଦା ତତ୍ରତ୍ୟ ଋଷିବୃନ୍ଦ ତଦ୍ଦର୍ଶନରେ ବିସ୍ମୟାନନ୍ଦଯୁକ୍ତ ହୃଦୟରେ ''ଧନ୍ୟ ଧନ୍ୟ ଭାଗବତ ମହିମା'' ଏହି ବାକ୍ୟକୁ ମୁକ୍ତକଣ୍ଠରେ ଉଦ୍‌ଘୋଷିତ କରିବାକୁ ଲାଗିଲେ । ସାକ୍ଷାତ୍ ଭଗବାନଙ୍କ ସ୍ୱରୂପ ସଦୃଶ ଶ୍ରୀମତ୍ ଭାଗବତ ଗ୍ରନ୍ଥର ପଠନ ଓ ଶ୍ରବଣ କେବଳ କଳିଯୁଗରେ ଆଶୁମୁକ୍ତି ଦାୟକ ବୋଲି ତତ୍ରାଗତ ସମସ୍ତ ଋଷିବୃନ୍ଦ ବିଶ୍ୱସ୍ତ ହୃଦୟରେ ନିର୍ଦ୍ଧାରିତ କଲେ । ସମଗ୍ର ଭାଗବତ

---

୨ ଛାପାରେ ଗରିଟଷ୍ଠା ପାୟ ହୋଇଅଛି ।

ଗ୍ରନ୍ଥକୁ ନିଷ୍ଠା ନିଷ୍ଠରି ଓ ଭକ୍ତି ସମ୍ପତ୍ତି ସହ ଏକ ସପ୍ତାହମଧରେ ଶ୍ରବଣ କଲେ ଅବଶ୍ୟ ଶ୍ରୋତା ଏବଂ ବକ୍ତା ମୁକ୍ତିପ୍ରାପ୍ତ ହୁଅନ୍ତି । ପୁରା ସନକାଦି ଋଷିମାନେ ନାରଦଙ୍କୁ ଏହା ଉପଦେଶ ଦେଇଥିଲେ । ଏହାର ସାପ୍ତାହିକ ଶ୍ରବଣ ବିଧି ପୁରାକଳରୁ ନିର୍ଣ୍ଣୀତ ହୋଇ ଆସିଅଛି । ଶ୍ରୀମଦ୍ ଭାଗବତ ମହାତ୍ମ୍ୟରେ ବିଶେଷତଃ ନିଗଦିତ ଅଛି ଯେ ବେଦାନ୍ତ ଶ୍ରବଣ ଓ ଭଗବଦ୍ ଗୀତାଦି ପଠନରେ ଅଲଭ୍ୟ ଭକ୍ତି ଜ୍ଞାନ ବୈରାଗ୍ୟ-ବୈଭବ ସମୃଦ୍ଧିକୁ ଅବଶ୍ୟ ଲୋକେ ଭାଗବତ ଶ୍ରବଣ ଦ୍ୱାରା ପ୍ରାପ୍ତ ହୋଇଥାନ୍ତି ଏବଂ ମୁକ୍ତି ସାମ୍ରାଜ୍ୟରେ ସୁଖସଂଚରଣ କରିପାରନ୍ତି । ଶ୍ରୀମଦ୍ ଭାଗବତର ଏତାଦୃଶ ମହାତ୍ମ୍ୟମାନ ପଦ୍ମପୁରାଣ ଉତ୍ତର ଖଣ୍ଡରେ ପ୍ରାଥମିକ ଅଧ୍ୟାୟଷଟ୍କରେ ସୁନ୍ଦର ବିବୃତ ଅଛି ।

ପ୍ରିୟ ଅଭିଜ୍ଞ ପାଠକଗଣ ! ଆମ୍ଭମାନଙ୍କର ଉତ୍କଳ ଦେଶରେ ଶ୍ରୀମଦ୍ ଭାଗବତର ଦୁଇଖଣ୍ଡି ଅନୁବାଦିତ ଗ୍ରନ୍ଥ ପ୍ରଚାରିତ ଥିବାର ଦେଖାଯାଉଛି । ପ୍ରଥମଟି ଶ୍ରୀ ଜଗନ୍ନାଥ ଦାସଙ୍କ କୃତ । ଦ୍ୱିତୀୟଟି ଖାଡ଼ଙ୍ଗା ଭାଗବତ ନାମରେ ଅଭିହିତ । ବର୍ତ୍ତମାନ (୩) ଏହି ପ୍ରବନ୍ଧର ଆଲୋଚ୍ୟ ଗ୍ରନ୍ଥ ଶ୍ରୀ ଜଗନ୍ନାଥ ଦାସଙ୍କ ଭାଗବତ । ଜଗନ୍ନାଥ ଦାସଙ୍କ ପ୍ରଣୀତ ଶ୍ରୀମଦ୍ ଭାଗବତ ଗ୍ରନ୍ଥର ଆମୂଳାନ୍ତ ପାଠର ରଚନା ପରିପାଟୀ ବିଚାର କରିନେଇ ସ୍ଥୂଳତଃ ସାମୁଦାୟିକ ଭାବରେ କହିବାକୁ ହେଲେ ନାତିଦୀର୍ଘ-ସମାସାନ୍ତ, ଶବ୍ଦପାରୁଷ୍ୟ-କଳୁଷହୀନ, ଅକଠିନ ପଦମାନଙ୍କର ପ୍ରୟୋଗ ପରିପାଟୀରୁ ରଚନା କ୍ରମଟି ବୈଦର୍ଭୀରୀତି-ସମ୍ପନ୍ନ ବୋଲି କୁହାଯାଇ ପାରେ । ତଥାପି ଯୁଦ୍ଧାଦିର କେତେକ ସ୍ଥଳରେ ଓଜୋଗୁଣର ସମୁଜ୍ଜୃମ୍ଭଣରୁ ଗୌଡ଼ିୟା ରୀତିର କିଛିନା କିଛି ସଦ୍ଭାବ ମଧ୍ୟ ଦେଖାଯାଏ । ଅପିଚ ଯେ ଯେ ସ୍ଥଳରେ ସୁକୁମାର ମଧୁରତ୍ୱ ଆଉ ଓଜଃ-କାନ୍ତି- ସମ୍ବଳିତତ୍ୱର ଆବଶ୍ୟକତା, ସେପରି ସ୍ଥଳମାନଙ୍କରେ ପ୍ରୋକ୍ତ ଉଭୟ ରୀତିରେ ଅନୁପ୍ରାଣିତ ପାଞ୍ଚାଳୀ ରୀତିର ବିକଶନ ମଧ୍ୟ ଦେଖାଯାଏ । ସୁତରାଂ ଏହି ଗ୍ରନ୍ଥ ମଧ୍ୟରେ ପ୍ରାୟଶଃ ସର୍ବତ୍ର ଅର୍ଥ ସନ୍ଦର୍ଭ ବଡ଼ ସୁକୁମାର ବା ମୃଦୁମଧୁର ଅଟେ । ଅର୍ଥ ଗମ୍ଭୀରିମାର ବିଚାରରେ କହିବାକୁ ଗଲେ ଏଥିମଧ୍ୟରେ ନାରୀକେଳ-ପାକର କ୍ରମ ନାହିଁ କହିଲେ ଚଳେ । ସର୍ବତ୍ର ଦେଖିବେ, କେବଳ କଦଳୀ ପାକରେ ନୁହେଁ ତ ଦ୍ରାକ୍ଷା ପାକରେ ବହିଃ ଓ ଅନ୍ତରେ ତଦ୍ ତଦ୍ ଭାବ ଓ ରସ ପ୍ରଦ୍ୟୋତିତ ରହିଅଛି । ପରଂତୁ ପାଠକ ମନେ ରଖନ୍ତୁ ଯେ ଏହାର ଯେ ଯେ ସ୍ଥାନମାନଙ୍କରେ ଅର୍ଥାବଗତି ସୁଗମ ହେଉ ନାହିଁ ବା ହୋଇ ନାହିଁ, ସେ ସ୍ଥଳମାନଙ୍କରେ ନାରୀକେଳ ପାକ ବୋଲି କୁହଯାଇ ନ ପାରେ । ତାହାର ଲକ୍ଷଣ ଭିନ୍ନ ପ୍ରକାର । ନାରୀକେଳ ପାକର କ୍ରମ ପୃଥକ୍, ଅତ୍ରତ୍ୟ ଅବୋଧ ସ୍ଥଳମାନଙ୍କର କ୍ରମ ପୃଥକ୍ । ନାରୀକେଳ ପାକ ଭାରବି କବିଙ୍କ ରଚନା ପରି କ୍ଲିଷ୍ଟ, ବହିରାବରଣରେ ଆବୃତ, କିନ୍ତୁ ଅନ୍ତର୍ନିଗୂଢ଼ ଭାବ ବା ଅର୍ଥ ବଡ଼ ବିମଳ ଓ

---

୩ ବୋଧହୁଏ ବର୍ତ୍ତମାନ ହେବ ।

ମୁଦ୍ରଳ । ଏହି ଅନୁବାଦିତଭାଗବତର ଯେ ଯେ ସ୍ଥଳ ଦୁର୍ବୋଧ, ତାହା ହୁଏତ ଅନୁବାଦନର ଯତ୍‌କିଞ୍ଚିଦ୍ ତ୍ରୁଟିରେ ଯୁକ୍ତ । କିମ୍ବା ଅନୁଲେଖକମାନଙ୍କର ମତିମାନ୍ଦ୍ୟ-ଦୋଷରେ ବିଦୂଷିତ ଓ ବିପରିଣାମରେ ପରିଣତ ।

ଜଗନ୍ନାଥ ଦାସଙ୍କ କବିତ୍ୱ ମୃଦୁ-ମଧୁର ପଦ-ସଂଘଟିତ କର୍ଣ୍ଣରସାୟନ ଏବଂ ଯଥୋଚିତପ୍ରମିତ ଶବ୍ଦାର୍ଥାଳଂକାର-ଭାସ୍ୱର ଓ ଭାବବ୍ୟଞ୍ଜକ ଥିବାରୁ ଆପାମର ପଣ୍ଡିତ-ଜନ-ମନୋରଞ୍ଜନ ରୂପେ ସମସ୍ତଙ୍କର ହୃଦୟରେ ଅମନ୍ଦାନନ୍ଦସନ୍ଦୋହ ଜନ୍ମାଇ ଦେଉଅଛି । ଏହି ଅନୁବାଦିତ ଭାଗବତର ପ୍ରାୟଶଃ ସର୍ବାଂଶରେ ଅର୍ଥାବବୋଧ ଆପାତତଃ ହୃଦୟଙ୍ଗମ ହେବାରେ ଅସୁବିଧା ଘଟେ ନାହିଁ । ଏହି ପାରମାର୍ଥିକ ଗ୍ରନ୍ଥରେ ବର୍ଣ୍ଣିତ ଜ୍ଞାନତତ୍ତ୍ୱାଦି ବିଷୟର ନିଗୂଢ଼ତା ଓ ଦୁର୍ବୋଧତାରେ ଯୁକ୍ତ କେତେକ ସ୍ଥଳ ଛଡ଼ା ଅନ୍ୟାନ୍ୟ ଚରିତ ପରିପାଟୀପ୍ରବାହରେ ଅର୍ଥସ୍ଫୂର୍ତ୍ତି ସମୁଲ୍ଲସନ ପଠନ ମାତ୍ରେ ମନକୁ ଉତ୍‌ଫୁଲ୍ଲ କରିଦିଏ । ଏହି ଗ୍ରନ୍ଥର ରଚନାରେ ବିଶେଷତଃ ପ୍ରସାଦ ଓ ମାଧୁର୍ଯ୍ୟଗୁଣର ସମୁଜ୍ଜୃମ୍ଭଣ ଦେଖାଯାଏ ଏବଂ ରଚନାର ଶୈଳୀ ବା ରୀତି ପ୍ରାୟ ସର୍ବତ୍ର ରସର ଅନୁଗୁଣ ଥିବାରୁ ରସର ପରିପୁଷ୍ଟି ସାଧନ କରେ । ଏଥିରେ କବି ମହାଶୟଙ୍କର ଖୁବ୍ ଆଶୁ କବିତ୍ୱ ଧୋରଣୀରେ ଧୂରୀଣତ୍ୱ ତାହା ସ୍ପଷ୍ଟତଃ ପ୍ରକାଶ ପାଉଅଛି । ନାନାବିଧ ବର୍ଣ୍ଣନାରେ ଯଥାଯଥ ଭାବସ୍ଫୂର୍ତ୍ତି, ମୌଳିକ-ଅର୍ଥବିବୃତି ଏବଂ ମାଧୁର୍ଯ୍ୟମୟ-କବିତ୍ୱ ଧାରାରେ ଭାସମାନ ଏହି ଭାଗବତ ପ୍ରବନ୍ଧଟିର ପାଠରେ ପାଠକମାନଙ୍କର ହୃଦୟରେ ଅମୃତବାହିନୀର ପ୍ରବାହ ପ୍ରବାହିତ ହୁଏ, ତଥାଚ ଶ୍ରୋତୃବର୍ଗଙ୍କ ହୃଦୟରେ ସମୁଲ୍ଲାସ-ଜନକ ସନ୍ତୋଷ ପାରାବାର ଉଦ୍‌ବେଳିତ ହୋଇଉଠେ । ଏଥିରେ ପଦବାକ୍ୟ ଗ୍ରଥନପାଟବ ଓ ଅର୍ଥ ସରସତାର ତାଦୃଶ ହ୍ରାସ ନାହିଁ କହିଲେ ଚଳେ । କୁତ୍ରାପି ପଦ କିମ୍ବା ବାକ୍ୟର ବୃଥା ଆଡ଼ମ୍ବର ଅପିଚ ରଚନାଆର୍ତ୍ତିର ଆଭାସ ମଧ ଦେଖାଯାଏ ନାହିଁ । କବି ମହାଶୟ ମୂଳଗ୍ରନ୍ଥକୁ ସମ୍ମୁଖରେ ରଖି କିମ୍ବା ହୃଦୟସ୍ଥ କରି ଆଶୁରଚନା ପରିପାଟୀରେ ଅନୁବାଦ କରିଯାଇଥିବାର ଅନୁମିତ ହେଉଅଛି ।

ଶ୍ରୀମାନ୍ ଜଗନ୍ନାଥ ଦାସେ ଏହି ଭାଗବତ ଗ୍ରନ୍ଥଟିକୁ ସାର୍ଦ୍ଧଚତୁଃଶତବର୍ଷ ପୂର୍ବେ ଅନୁବାଦିତ କରିଅଛନ୍ତି । ଏହି ସାର୍ଦ୍ଧଚତୁଃଶତବର୍ଷ ମଧରେ ତତ୍କାଳୀନ ପଣ୍ଡିତ ସମାଜର ପ୍ରଥିତ ରୀତିନୀତି ବିଚାର କରିଗଲେ ବିଶେଷତଃ ଅଜ୍ଞଙ୍କ ଲୋକଙ୍କ ହାତରେ କେବଳ ଗ୍ରନ୍ଥଟି ଲାଳିତ ପାଳିତ ହୋଇ ଆସିଥିବାର ଜଣାଯାଏ । ସର୍ବାଂଶତଃ ସମୁପଯୁକ୍ତ ମହାତ୍ମାଙ୍କ କର୍ତ୍ତୃକ ଉପଯୁକ୍ତ କ୍ରମରେ ଗ୍ରନ୍ଥଟି ଅନୁବାଦିତ ହୋଇଆସିଥିଲେ ସୁଦ୍ଧା, ସୁତରାଂ ସେହିଟି ପୂର୍ଣ୍ଣମାତ୍ରାରେ ସମାଦରଣୀୟ ଓ ଆରାଧନୀୟ ଥିଲେ ସୁଦ୍ଧା, ସଂସ୍କୃତାଭିଜ୍ଞ ପଣ୍ଡିତମାନେ ଏହାର ଅଖଣ୍ଡ ପରିଶୀଳନ, ପରିପଠନ ଓ ଅନୁଲେଖନାଦି କରିବାରେ ତତ୍ପର ହୋଇଅଛନ୍ତି,

ଏପରି ବିଶ୍ୱାସ ହେଉ ନାହିଁ । କାରଣ ଦେଶୀୟ ଭାଷାରେ ରଚିତ ଗ୍ରନ୍ଥମାନଙ୍କ ପ୍ରତି ଅସ୍ମଦ୍ଦେଶୀୟ କେତେକ ଦୁରଭିମାନଦୁର୍ଗ୍ରହାବିଷ୍ଟ ଅଶିକ୍ଷାହଂକାରଗ୍ରନ୍ଥିଳ-ହୃଦୟ ସଂସ୍କୃତିଆ ପଣ୍ଡିତମାନେ ଯାଦୃଶଯଦ୍‌ପରିମିତ ଅଯଥା ଘୃଣା ପ୍ରକାଶ କରନ୍ତି, ତାହା ଅଦ୍ୟାପି ସ୍ଥାନେ ୨ ଦେଖାଯାଉଅଛି । ସେ ସମୟରେ ଯେ ଏହି ଦୁଷ୍ଟ ଚେଷ୍ଟା ଅଧିକ ମାତ୍ରାରେ ସେଭଳି ବ୍ୟକ୍ତିମାନଙ୍କ ହୃଦୟକୁ ବିକ୍ଷୋଭିତ କରି ପକାଉଥିଲା, ଏଥିରେ ସନ୍ଦେହ ହେଉ ନାହିଁ । ସେକାଳର ପଣ୍ଡିତମାନେ ବିଷୟଟା ଯେଡ଼େ ଗୁରୁତର, ଯେଡ଼େ ପ୍ରୟୋଜନୀୟ, ଯେଡ଼େ ଉପାଦେୟ ହେଉ ପଛକେ ସେଟା ଯଦି ଦେଶୀୟ ଭାଷାରେ ଲିପିବଦ୍ଧ ହୋଇଯାଏ, ତେବେ ତାର ସମଗ୍ର ମହତ୍ତ୍ୱ ବିନଷ୍ଟ ହେଲା ବୋଲି ମନେ କରି ଥାଆନ୍ତି । ଅତଏବ ଏହି ଗ୍ରନ୍ଥର ଜନ୍ମାବଧି ଅନୁଲେଖନ କ୍ରିୟା କେବଳ ଅଜ୍ଞଙ୍କ ଅଧୀନ ହୋଇ ରହିଲା । ସେମାନେ ଆଦର୍ଶ ଗ୍ରନ୍ଥରୁ ଯେ ଯେ ସ୍ଥାନ ବୁଝିବାକୁ ନ ପାରିଲେ ତାକୁ ନିଜର ବିଲକ୍ଷଣ ମତିମତାନୁସାରେ ଅନ୍ୟାକାରରେ ପରିଣତ କଲେ; କେଉଁଠି ବା ଅଯଥା ବାକ୍ୟ ଯୋଗ କରିଗଲେ କିମ୍ବା କେତେକ ବିଯୋଗ କରିନେଲେ । ଏହି ଗ୍ରନ୍ଥର ସଙ୍ଗତାସଙ୍ଗତତ୍ୱ ସେହି ଅଜ୍ଞମାନଙ୍କର ଅପ୍ରବେକବିବେକର ବଶବର୍ତ୍ତୀ ହୋଇ ପଡ଼ିଲା । ସେମାନଙ୍କର ବୁଦ୍ଧି ବିଚାରରେ ଯେ ରକମ ପରିକର୍ତ୍ତନ ଓ ପରିବର୍ତ୍ତନ ସୁନ୍ଦର ବୋଧହେଲା, ସେଭଳି ପରିଣତି ଓ ବିକୃତିର ହୁନ୍ଦର ଲଗାଇନେଲେ ଏବଂ ନିଜର ପଣ୍ଡିତଂମନ୍ୟମାନତାରେ କେତେକ ସ୍ଥଳ ପୁଣି ମତିମାନ୍ଦ୍ୟ-କାଳିମାରେ କଳଂକିତ କରିନେଲେ । ଏହାପରେ ପୁଣି ଲିପିବୃତ୍ତ୍ୟନୁଜୀବୀ କାଳାକ୍ଷରିକ (୪) ଲେଖକମାନେ ଯେ ଯେ (ତାଳପତ୍ର) ପୁସ୍ତକମାନ ଲେଖିଅଛନ୍ତି, ସେଥିରେ ଦୋଷ ସଂକୁଳତା ବା କଣ ହୋଇ ନପାରେ ! ଏମାନେ କେବଳ ଅକ୍ଷରର ଆକାରରେ ଦୃଷ୍ଟି ରଖି ଯେଉଁଠି ଯେଉଁ ଅକ୍ଷର ବୁଝିଲେ, ତାହା ଯଥାର୍ଥ ହେଉ ବା ଅଯଥାର୍ଥ ହେଉ ଅଙ୍କିତ କରିଗଲେ । ଅବୁଝା ସ୍ଥଳରେ ମନଗଢ଼ା ଅକ୍ଷରଟାଏ ବିନ୍ୟାସ କରିଦେବାକୁ କୁଣ୍ଠିତ ହେଲେ ନାହିଁ । ଏମାନଙ୍କ ଲେଖାରେ ମୌଳିକ ଅର୍ଥ ଅନେକ ସ୍ଥଳରେ ଅନର୍ଥ ଅପାର୍ଥ ହୋଇ ପଡ଼ିଲା । ଏତାଦୃଶ କ୍ରମରେ ଦେଶ ମଧ୍ୟରେ ବହୁ ତାଳପତ୍ର ପୁସ୍ତକମାନଙ୍କରେ ଏହି ଗ୍ରନ୍ଥ ଖଣ୍ଡିକ ନାନା ଆକାରରେ ପ୍ରଚଳିତ ହେଲା । ତାପରେ ମୁଦ୍ରଣ ଯୁଗରେ ମଧ କୀଦୃଶ ଦୁରବସ୍ଥା ଘଟିଅଛି । ଛାପାକାର ମହାଶୟମାନେ ଦୁଇ ଚାରି ତାଳପତ୍ର ପୁସ୍ତକ ଧରି ମୁଦ୍ରଣକ୍ରିୟା ଆରମ୍ଭ କରିଥିଲେ ସୁଦ୍ଧା, ମୂଳଗ୍ରନ୍ଥ ଆଡ଼େ ଦୃଷ୍ଟି ଦେଇନାହାନ୍ତି କିମ୍ବା ଆପାତତଃ କବିଙ୍କ ଲେଖାରେ ପାଠ କିପରି ଥିଲା, ବର୍ତ୍ତମାନ କୀଦୃଶ ହୋଇ ଯାଇଅଛି, ତାହା ସୁଦ୍ଧା ସମ୍ୟକ୍ ବିଚାର କରିନାହାନ୍ତି; କରିଛନ୍ତି କେବଳ ଏତିକି ଯେ ଦୁଇ ଚାରି ତାଳପତ୍ର ପୁସ୍ତକ ମିଳାଇ ନିଜର ପାଣ୍ଡିତ୍ୟ-ବିତ୍ତରୁ କିଛି ବ୍ୟୟ

୪ ଯେଉଁମାନଙ୍କର ଅକ୍ଷର ଶିକ୍ଷା ବହୁକାଳରେ ସାଧ ହୁଏ ।

କରି ଯେ କୌଣସି ପ୍ରକାରେ ଅକ୍ଷର ମିଳାଇଦେଇ ମୁଦ୍ରଣ ସମାଧାରେ କୃତ-କୃତ୍ୟ ହୋଇ ଯାଇଅଛନ୍ତି । ବଡ଼ ଦୁଃଖର କଥା, ଛାପା ପୁସ୍ତକମାନଙ୍କର ମଧ ଏପରି କେତେକ ସ୍ଥଳ ଦେଖାଯାଏ ଯେ ସେଥିରୁ ପାଠକ କିଛିମାତ୍ର ଅର୍ଥ ଉନ୍ନୟନ କରିବାକୁ ପାରିବେ ନାହିଁ ।

ସମ୍ୟକ୍ ପ୍ରକାରେ ବିଚାରପୂର୍ବକ ଗଣନା କରିବାରେ ନିର୍ଦ୍ଧାରିତ ହୋଇଅଛି ଯେ ଜଗନ୍ନାଥ ଦାସଙ୍କ ଅନୁବାଦିତ ଶ୍ରୀମଦ୍ ଭାଗବତ ଗ୍ରନ୍ଥର ପାଠସଂଖ୍ୟା ସାକଲ୍ୟତଃ ପ୍ରାୟ ସପ୍ତବିଂଶତି ସହସ୍ର । ଦ୍ୱାତ୍ରିଂଶଦ୍ ସହସ୍ର ଲିପିମାଳାରେ ଏକ ସହସ୍ର ପାଠ ହୁଏ । ଶଂସିତ ଗଣନାନୁପାତରେ ପଦ୍ୟାବଳୀ ସବୁ ଗଣନା କରି ନେଲେ ଜଣାଯାଉଅଛି ଯେ ପ୍ରଥମ ସ୍କନ୍ଧର ପାଠସଂଖ୍ୟା କିଂଚିଦ୍ ନ୍ୟୂନାଧିକତଃ ଏକ ସହସ୍ର ପାଞ୍ଚଶତ ପଞ୍ଚାଶଦ୍, ଦ୍ୱିତୀୟ ସ୍କନ୍ଧର ପାଠ ଛଅଶତ ଛୟାଣୋଇ, ତୃତୀୟ ସ୍କନ୍ଧର ପାଠ ଦୁଇ ସହସ୍ର ଏକଶତ ତିରିଶି, ଚତୁର୍ଥ ସ୍କନ୍ଧର ପାଠ ଦୁଇ ସହସ୍ର ଚାରିଶତ ଶତାଣୋଇ, ପଞ୍ଚମ ସ୍କନ୍ଧର ପାଠ ଏକ ସହସ୍ର ଦୁଇଶତ ତେପନ, ଷଷ୍ଠ ସ୍କନ୍ଧର ପାଠ ଏକସହସ୍ର ଦୁଇଶତ ଅଶୀତି, ସପ୍ତମ ସ୍କନ୍ଧର ପାଠ ଏକସହସ୍ର ନବୋତ୍ତର ଶତତ୍ରୟ, ଅଷ୍ଟମ ସ୍କନ୍ଧର ପାଠ ଏକସହସ୍ର ପାଞ୍ଚଶତ ବାବନ, ନବମ ସ୍କନ୍ଧର ପାଠ ଏକସହସ୍ର ଚାରିଶତ ଏକତିରିଶି, ଦଶମ ସ୍କନ୍ଧ ପ୍ରଥମ ଭାଗର ପାଠ ତିନି ସହସ୍ର ସପ୍ତଶତ ଅଠଷଠି ଏବଂ ଦ୍ୱିତୀୟ ଭାଗର ପାଠ ଚାରିସହସ୍ର ସପ୍ତଶତ ବୟାଣୋଇ, ଏକାଦଶ ସ୍କନ୍ଧର ପାଠ ଅଷ୍ଟଶତୋତ୍ତର ଦ୍ୱିସହସ୍ର ଏବଂ ଦ୍ୱାଦଶ ସ୍କନ୍ଧର ପାଠସଂଖ୍ୟା ଏକସହସ୍ର ସପ୍ତଶତ ପଞ୍ଚାବନ ହେଉଅଛି । ଏହାର ମୂଳଭୂତ ବ୍ୟାସଦେବଙ୍କ ରଚିତ ଗ୍ରନ୍ଥର ପାଠସଂଖ୍ୟା ଅଷ୍ଟାଦଶ ସହସ୍ର ଥିବା ସମସ୍ତେ ବିଦିତ ଅଛନ୍ତି । ମୂଳ ଗ୍ରନ୍ଥ ଅଷ୍ଟାଦଶ ସହସ୍ର ପାଠକୁ ସର୍ବସାଧାରଣଙ୍କ ବୋଧଗମ୍ୟ ରୂପରେ ଭାଷାନ୍ତରୀକରଣରେ ଯେ ଅଧିକତଃ ନଅ ଦଶ-ସହସ୍ର ପାଠ ବଢ଼ିବ ଏହା କଥଂଚିଦ୍ ଅସମ୍ଭବ ନୁହେଁ । ଶ୍ରୀମଦ୍ ଭାଗବତ ମୂଳଗ୍ରନ୍ଥରେ ଉକ୍ତ ଅତ୍ୟନ୍ତ ରହସ୍ୟ ପ୍ରତିପାଦକ ସ୍ଥଳମାନ ଓ ବେଦାନ୍ତ ପ୍ରତିପାଦ୍ୟ ଭଗବଦ୍ ଗୁଣଗଣାପାଦକ ବିଷୟମାନ, ଭଗବଦ୍‌ଲୀଳା ଗୁଣ ବର୍ଣ୍ଣନାଦିର ଘଟସ୍ଥାନମାନ ମୂଳ ପ୍ରତପାଦିତ କ୍ରମାନୁପାତରେ ବ୍ୟାଖ୍ୟା ସ୍ୱରୂପ ବର୍ଣ୍ଣନା କରିବାକୁ ହେଲେ, ଅଥଚ କବିଙ୍କର ଭଗବତ୍‌ଭକ୍ତ୍ୟାତିଶୟ-ପ୍ରଦ୍ୟୋତନ ପୂର୍ବକ ଅନବଦ୍ୟକବିତ୍ୱ ବିଦ୍ୟାଚାତୁରୀ-ସଂପ୍ରାପ୍ତ ନିରଙ୍କୁଶତ୍ୱ ଅକ୍ଷୁଣ୍ଣ ରଖି ନିଖିଳ ବିଦ୍ୱଜ୍ଜନମାନଙ୍କର ମନୋରଞ୍ଜନ କରିବାକୁ ହେଲେ କବିଙ୍କୁ ମୌଳିକ ଭାବମାନ ଟିକିଏ ସବିସ୍ତର ବର୍ଣ୍ଣନା କରିବାକୁ ହୋଇଥାଏ । ଏ ହେତୁରୁ ମୌଳିକ ପରିମାଣ ସଂଖ୍ୟା ଅପେକ୍ଷା ଅନୁବାଦିତ ଗ୍ରନ୍ଥର ପାଠ ସଂଖ୍ୟା ଅତିରିକ୍ତ ହେବା ସ୍ୱାଭାବିକ କେବଳ । ଏହି କ୍ରମ ସକଳ ଦେଶରେ ସକଳ ଭାଷାର ଅନୁବାଦରେ ଘଟିଥାଏ । ଏଥିରେ କେହି ମତଦ୍ୱୈଧ କରି ନ ପାରନ୍ତି

କିମ୍ବା କାହାରି ସନ୍ଦେହ ହୋଇ ନପାରେ । ବ୍ୟାସ ବାଲ୍ମୀକି ପ୍ରମୁଖ ମହର୍ଷିମାନଙ୍କ ପ୍ରତିପାଦିତ ଯଥାର୍ଥ କଥା ସଂବିଧାନାଦି ଏବଂ ଭଗବଦ୍ ମାହାତ୍ମ୍ୟ-ବିଦ୍ୟୋତକ-ତତ୍ତ୍ୱ-ସଂବଳିତ ବିଷୟାଦି ସମଗ୍ରତଃ ପ୍ରକାଶ ନକରି କେବଳ ସ୍ଥୂଳ କଥାଂଶର ଅନୁବର୍ଣ୍ଣନାରେ ପୁରାଣାଦି ଅନୁବାଦ କରିଗଲେ, ଅନୁବାଦିତ ଗ୍ରନ୍ଥ ଋଷି-ପ୍ରୋକ୍ତ ଗ୍ରନ୍ଥସଦୃଶ ଅତ୍ୟାଦରଣୀୟ ହୁଏନାହିଁ । ଏ ହେତୁରୁ ଶ୍ରୀ ଜଗନ୍ନାଥ ଦାସ ମହୋଦୟ ଶ୍ରୀମାନ୍ ବ୍ୟାସଙ୍କ ପ୍ରଣୀତ ଭାଗବତର ସମଗ୍ର ଭାବ ଅକ୍ଷୁନ୍ନ ରଖି ଅନୁବାଦ କରିଯାଇଅଛନ୍ତି । ସୁତରାଂ ସମଗ୍ର ଉତ୍କଳ-ଦେଶରେ ଏହି ଅନୁବାଦିତ ଭାଗବତ ଗ୍ରନ୍ଥର ଗୌରବ ଅକ୍ଷୁଣ୍ଣ ରହିଅଛି । ଲୋକେ ବେଦବ୍ୟାସଙ୍କ ଭାଗବତକୁ ଯେପରି ଐହିକାମୁଷ୍ମିକ ଫଳପ୍ରଦ ବୋଲି ଭକ୍ତିର-ସହ ପାଠ କରନ୍ତି ଜଗନ୍ନାଥ ଦାସ୍-ଭାଗବତକୁ ମଧ ତାଦୃଶ ଭକ୍ତି କରନ୍ତି ।

ଶ୍ରୀମାନ୍ ଜଗନ୍ନାଥ ଦାସ ମହୋଦୟଙ୍କର ଅନୁବାଦ କ୍ରମରେ ମୌଳିକତା ସଂପୂର୍ଣ୍ଣ ଅବିକଳ ରହିଅଛି ବୋଲିବାକୁ ହେବ । ଏ ମହାଶୟ ପ୍ରତ୍ୟେକ ଅଧ୍ୟାୟର ଶ୍ଳୋକସମୂହ ଏକୈକଶଃ ଅନୁବାଦ କରିଯାଇ ଅଛନ୍ତି । ଓଡ଼ିଆ ସାହିତ୍ୟରାଜ୍ୟରେ ପୁରାଣାଦି ଅନୁବାଦନରେ ଏହାଙ୍କର କାର୍ଯ୍ୟ କେବଳ ପ୍ରାଥମିକ । ଏହାଙ୍କ ପୂର୍ବେ କୌଣସି ପୁସ୍ତକ ଏଭଳି ଅନୁବାଦିତ ହୋଇଥିବାର ଜଣାଯାଉ ନାହିଁ । ଏହାଙ୍କର ଅନୁବାଦନ ପୂର୍ବରୁ ଯେ ମହାଭାରତାଦି ଲେଖାଅଛି, ତାହା ଠିକ୍ ଅନୁବାଦିତ ନୁହେଁ । ସେ ସବୁ କେବଳ ମୌଳିକ ସ୍ଥୂଳଘଟାନାନୁସରଣରେ ମାତ୍ର ଲେଖା ହୋଇଅଛି । ଏହାଙ୍କ ପରେ ଯେ ସବୁ ପୁରାଣ ଅନୁବାଦିତ ହୋଇଅଛି, ସେଥିରେ ସୁଦ୍ଧା ଏତାଦୃଶ ମୌଳିକ– ଅବିକଳତ୍ୱ ରହିପାରି ନାହିଁ । ଏହା ବୋଲିବା ଅତ୍ୟୁକ୍ତି ନୁହେଁ । ଜଗନ୍ନାଥ ଦାସଙ୍କ ଅନୁବାଦିତ ଭାଗବତରେ ମୌଳିକଭାବର ଯାଦୃଶ ଅବିକଳତ୍ୱ ବିଦ୍ୟମାନ, ତାହା ସପ୍ରମାଣ କରିବାପାଇଁ କେତେଗୁଡ଼ିଏ ସ୍ଥଳର ପାଠ ମାତ୍ର ସ୍ଥାଳୀପୁଲାକ ନ୍ୟାୟ ଏଠାରେ ଉଦ୍ଧୃତ କରି ଅନୁବାଦର କ୍ରମ ବ୍ୟକ୍ତ କରିବୁଁ । ଯେ କୌଣସି ଗ୍ରନ୍ଥ ହେଉ, ତାର ଧାରାବାହିକ ଚରିତ ପ୍ରଣାଳୀର ଅନୁବାଦରେ ମୌଳିକ ଅର୍ଥ ଓ ଭାବ ଅବିକଳ ରଖିବା ସହଜ ଅଟେ । ଅତଏବ ଏହି ଗ୍ରନ୍ଥ ମଧରୁ ତାଦୃଶ ସ୍ଥଳର ପାଠ ପ୍ରମାଣ ସ୍ୱରୂପ ଉଦ୍ଧୃତ ନକରି, ପୂର୍ବାପର ଧାରାବାହିକ ଚରିତ ସଂବିଧାନରୁ ବିଚ୍ଛିନ୍ନ, ଅନ୍ୟାନ୍ୟ ପ୍ରାସ୍ତାବିକ ସ୍ଥଳମାନ କେବଳ ଉଦ୍ଧୃତ କରିବୁଁ । ପାଠକଗଣ ତଦ୍ଦ୍ୱାରା ବୁଝିପାରିବେ ଯେ କବିମହୋଦୟ ସର୍ବସାଧାରଣ କାହିଁକି ମନୀଷିମାନଙ୍କର ମଧ ଦୁରଧିଗମ୍ୟ ଏହି ଗ୍ରନ୍ଥର ଅନୁବାଦନରେ ମୌଳିକ ଭାବର ରକ୍ଷଣାର୍ଥ କାଦୃଶ ସଚେଷ୍ଟ ହୋଇଥିଲେ । ଆପଣମାନେ ମୂଳସହିତ ଅନୁବାଦିତ ପଂକ୍ତିଗୁଡ଼ିକୁ ମିଳାଇନେଲେ ସ୍ପଷ୍ଟତଃ ଦେଖିବାକୁ ପାଇବେ । ଏ ମହୋଦୟଙ୍କର ଅନୁବାଦନର ବହୁସ୍ଥଳରେ ମୌଳିକ ପଦମାନ ମଧ

ସୁସଙ୍ଗତକ୍ରମେ ଯଥାଯଥ ଅବିକଳ ରହି ଅଛି ଏବଂ ପ୍ରତ୍ୟେକ ଶ୍ଳୋକର ଅନୁବାଦିତ ପଦ୍ୟମାନ ଅତି ସୁନ୍ଦର ପୃଥକ୍ ପୃଥକ୍ ହୋଇ ରହିଅଛି । ଯଥା,

(୧) ସ ବା ଇଦଂ ବିଶ୍ୱମମୋଘ ଲୀଳଃ ।
ସୃଜତ୍ୟବତ୍ୟତ୍ତି ନ ସଜ୍ଜତେଽସ୍ମିନ୍ ।।
ଭୂତେଷୁ ଚାନ୍ତର୍ହିତ ଆତ୍ମତନ୍ତ୍ରଃ
ଷାଡ଼୍‌ବର୍ଗିକଂ ଜିଘ୍ରତି ଷଡ଼୍‌ଗୁଣେଶଃ ।

ପ୍ର୧ । ସ୍କ । ୩ଅ । ୩୬ ଶ୍ଳୋ ।

| | |
|---|---|
| ଅମୋହ (ଅମୋଘ) ଲୀଳା ନରହରି । | ଆତ୍ମାରେ ବିଶ୍ୱମାୟା କରି ।। |
| ବ୍ରହ୍ମାଣ୍ଡ ସର୍ଜଇ ପାଳଇ । | ଅନ୍ତେ ତା ଆପଣା (ଆପଣେ) ଭକ୍ଷଇ ।। |
| ପ୍ରାଣୀଙ୍କ ମଧ୍ୟେ ଆତ୍ମାତନ୍ତ୍ରେ । | ଷଡ଼୍‌ବର୍ଗେ ଭୋଗ କରେ ନିତ୍ୟେ ।। |
| ଏଣୁ ହୃଷୀକେଶ ବୋଲାଇ । | ସେ ଦୋଷ ତାକୁ ନ ଲାଗଇ ।। |

ପ୍ର । ସ୍କ । ୩ଅ ।

(୨) ସ୍ୱନିୟମମପହାୟ ମତ୍ ପ୍ରତିଜ୍ଞାଂ ।
ଋତମଧିକର୍ତ୍ତୁମବପ୍ଲୁତୋରଥସ୍ଥଃ ।
ଧୃତ-ରଥ-ଚରଣୋଽଭ୍ୟଗାଚ୍ଚଳଦ୍‌ଗୁରୁଃ ।
ହରିରିବ ହନ୍ତୁମିଭଂ ଗତୋତ୍ତରୀୟଃ

| | |
|---|---|
| ମୋହର ତୀକ୍ଷ୍ଣବାଣେ କୋପି । | ମୋର ବଚନେ ମୋତେ ସ୍ଥାପି ।। |
| ତକ୍ଷଣେ ଚକ୍ର ଧରି ହସ୍ତେ । | ରଥୁଁ ଧାଇଁଲା ଭୂମିଗତେ ।। |
| ଧାମନ୍ତେ ଅବନୀ କମ୍ପିଲା । | ଉତ୍ତରୀ କନ୍ଧୁ ଉଡ଼ିଗଲା ।। |
| ଚକ୍ର ଉଞ୍ଚାଇ ମହାକୋପେ । | ମିଳିଲା ମୋହର ସମୀପେ ।। |
| ଧର୍ମେଣ ସମର ଉପେକ୍ଷି । | ସିଂହ ଯେସନେ ଗଜ ଦେଖି ।। |

ପ୍ର । ସ୍କ । ୯ଅ ।

ଏ ସ୍ଥଳେ ମହାମତି ଅନୁବାଦକ ମହାଶୟ ଶ୍ଳୋକାନ୍ତର୍ଗତ ଏହି "ମତ୍ ପ୍ରତିଜ୍ଞାଂ ଋତମେଧିକର୍ତ୍ତୁଂ" ଖଣ୍ଡର ଅର୍ଥକୁ ଯାହାକି ଭଙ୍ଗ୍ୟନ୍ତରରେ "ମୋର ବଚନେ ମୋତେ ସ୍ଥାପି" ଏପରି ପ୍ରକାଶ କରୁଅଛନ୍ତି, ବଡ଼ ଚମତ୍କାର ବୋଧହୁଏ ଏବଂ ଶ୍ଳୋକର ପ୍ରାରମ୍ଭରେ ନିହିତ "ସ୍ୱନିୟମମପହାୟ" ଏହି ବାକ୍ୟାଂଶର ଭାବକୁ ପଦ୍ୟର ସର୍ବାନ୍ତିମ ଭାଗରେ ସୁସଙ୍ଗତ ରୂପରେ ସ୍ପଷ୍ଟତଃ "ଧର୍ମେଣ ସମର ଉପେକ୍ଷି" ଏହି ପଦ୍ୟାର୍ଦ୍ଧ ଦ୍ୱାରା ପ୍ରକାଶ କରିଅଛନ୍ତି । ଅନୁବାଦ କଲାବେଳେ ମୌଳିକ ଅଂଶମାନ ଯେଉଁଠି ଯେ ପ୍ରକାର ରଖିଲେ

ଭାଷାର ତଥାଚ ଅନୁବାଦନର ସୌନ୍ଦର୍ଯ୍ୟ ରକ୍ଷା ହୋଇପାରେ, ତାହା ଏ ମହାଶୟ ଭଲକରି ଅବଗତ ଥିଲେ ।

(୩) ଯସ୍ମିନ୍ନହନି ଯର୍ହ୍ୟେବ ଭଗବାନୁତ୍ସସର୍ଜଗାଂ
ତଦୈବେହାନୁ ବୃତୋଽସାବଧର୍ମ-ପ୍ରଭବଃ କଳିଃ ।
ନାନୁଦ୍ୱେଷ୍ଟି କଳିଂ ସମ୍ରାଟ୍ ସାରଙ୍ଗଇବସାରଭୁକ୍ ।
(ସାରଙ୍ଗୋ ଭ୍ରମର ଇବ ସାର ଭୁକ୍ ସାରଗ୍ରାହୀ)
ପ୍ର । ସ୍କ । ୧୮ଅ । ୬ ଶ୍ଳୋ

ନନ୍ଦନନ୍ଦନ ଯେତେବେଳେ । ତନୁ ଛାଡ଼ିଲା ମହୀତଳେ ।।
ତକ୍ଷଣେ ଅଧର୍ମ ପୁରୁଷ । ସଂସାରେ ହୋଇଲା ପ୍ରବେଶ ।।
ସେ ରାଜା ତାକୁ ଥାନ ଦେଇ । ସାରଙ୍ଗ ପ୍ରାୟ ସାର ଖାଇ ।।

ନାନୁ ଦ୍ୱେଷ୍ଟି କଳିଂସମ୍ରାଟ = ସେ ରାଜା ତାକୁ ଥାନ ଦେଇ (ଦେଲେ) । ଏ ସ୍ଥଳେ ସ୍ପଷ୍ଟତଃ ଫଳିତାର୍ଥର ବ୍ୟକ୍ତିକରଣାର୍ଥ ଏପରି ଅନୁବାଦ କରାଯାଇ ଅଛି ।

ସାରଙ୍ଗଇବସା ରଭୁକ୍ = ସାରଙ୍ଗ ପ୍ରାୟ ସାରଖାଇ ।

ଏ ସ୍ଥଳେ କବି ମୌଳିକତା ଅବିକଳ ରଖିବା ଇଚ୍ଛାରେ ଏଭଳି ଅନୁବାଦ କରିଅଛନ୍ତି । ଏ ମହାଶୟ ଅନେକ ସ୍ଥଳରେ ମୌଳିକତାର ରକ୍ଷଣ ପିପାସାରେ ଅନୁବାଦିତ ଅଂଶର ଭାବ ସାଧାରଣଙ୍କ ଅବବୋଧରେ ଟିକିଏ ଏପରି କ୍ଳିଷ୍ଟ ହେଲେ ସୁଦ୍ଧା ମୌଳିକତାକୁ ଅନୁସରଣ କରିଅଛନ୍ତି ।

(୪) ତୁଳୟାମ ଲବେନାପି ନସ୍ୱର୍ଗଂ ନାପୁନର୍ଭବଂ ।
ଭଗବତ୍ସଙ୍ଗି– ସଙ୍ଗସ୍ୟ ମର୍ତ୍ତ୍ୟାନାଂ କିମୁତାଶିଷଃ ।।

ହରଭଗତ ଜନ ସଙ୍ଗେ । ଯେ କ୍ଷଣେ ବଞ୍ଚେ ନରଅଙ୍ଗେ ।।
ସେ ସାଧୁ ସଙ୍ଗେ ସ୍ୱର୍ଗ ମୋକ୍ଷ । କେ ତୁଲ୍ୟ କରିବ ପ୍ରତ୍ୟକ୍ଷ ।।
ଏଣୁ ଯେ କରେ ସାଧୁସଙ୍ଗ । ସେ ତରେ ଏ ଭବ ତରଙ୍ଗ ।।
ପ୍ରାଣୀ ଜୀବନ୍ତେ ଆଶା ଯେତେ । ଅଧିକ କିବା ଏ ଜଗତେ ।।
ପ୍ର । ସ୍କ । ୧୮ଅ ।

କବି ମହାଶୟ ଏହି ଶ୍ଳୋକର "ମର୍ତ୍ତ୍ୟାନାଂ କିମୁତାଶିଷଃ" ଏହ ବାକ୍ୟାର୍ଦ୍ଧର ତାତ୍ପର୍ଯ୍ୟାର୍ଥକୁ "ପ୍ରାଣୀ ଜୀବନ୍ତେ ଆଶା ଯେତେ। ଅଧିକ କିବା ଏ ଜଗତେ ।" ଇତ୍ୟାକାରକ

ରୂପେ ଏବଂ ପୂର୍ବାର୍ଦ୍ଧରେ ଅନ୍ତର୍ନିହିତ ଫଳିତାର୍ଥ ଭାବକୁ "ଏଣୁ ଯେ କରେ ସାଧୁସଙ୍ଗ । ସେ ତରେ ଏ ଭବ ତରଙ୍ଗ ।।" ଏହି ଉଦ୍‌ବୃତ୍ତ ପଦ୍ୟରେ ବ୍ୟକ୍ତ କରି ଦେଇଅଛନ୍ତି । ପାଠକ ଏଥିରୁ ବୁଝିରଖିବେ ଯେ କେବଳ ଏହି ସ୍ଥଳ ନୁହେ, ଏତାଦୃଶ କ୍ରମରେ ଅନେକଗୁଡ଼ିଏ ପାଠ ଆବଶ୍ୟକୀୟମତେ ମୂଳର ଅନୁବାଦିତ ଅଂଶରେ ମିଳିତ ହୋଇଅଛି ।

(୫) ତପସ୍ୱିନୋ ଦାନପରା ଯଶସ୍ୱିନୋ । ମନସ୍ୱିନୋ ମନ୍ତ୍ରବିଦଃ ସୁମଙ୍ଗଳାଃ ।।
କ୍ଷେମଂ ନବିନ୍ଦନ୍ତି ଯଦର୍ପଣଂ ବିନା । ତସ୍ମୈ ସୁଭଦ୍ର-ଶ୍ରବସେ ନମୋନମଃ ।।
କିରାତ ହୂଣାନ୍ଧ୍ର ପୁଳିନ୍ଦ ପୁକ୍କସାଃ । ଆଭୀର କଙ୍କାଯବନାଖଷାଦୟଃ ।।
ୟେଽନ୍ୟେଚ ପାପାଯଦୁପାଶ୍ରୟାଶ୍ରୟାଃ । ଶୁଦ୍ଧ୍ୟନ୍ତି ତସ୍ମୈ ପ୍ରଭବିଷ୍ଣବେ ନମଃ ।।

ଯେ ପ୍ରାଣୀ ତପ-ଦାନ କରେ । ଯଶ ସମ୍ପାଦି (ଦେ) ଏ ସଂସାରେ ।।
ସୁବୁଦ୍ଧି ପଣେ ମନ୍ତ୍ର ସାଧି (ଧେ) । ମଙ୍ଗଳ କର୍ମକୁ ଆରାଧି (ଧେ) ।।
ଏଣେ ଅର୍ଜିତ ଯେତେ ଫଳ । ତୋତେ ନ ସମର୍ପେ (ର୍ପି) ନିଷ୍ଫଳ ।।
କିରାତ ହୂଣ ଆଦି ଯେତେ । ପୁଳିନ୍ଦ ଚଣ୍ଡାଳ ସମେତେ ।।
ଆଭୀର ପୁକ୍‌କସ ଯବନ । ଏ ଆଦି ଯେତେ ପାପୀଜନ ।।
ଦୁଷ୍କର (ଦୁଷ୍କାର୍ଯ୍ୟ) କର୍ମ ଯେ କରନ୍ତି । ତୋ ପାଦ ଆଶ୍ରିତେ ତରନ୍ତି ।।
ଦ୍ୱି । ସ୍କ । ୪ । ଅ ।

ଏହି ପଦ୍ୟଗୁଡ଼ିକ ମୂଳପାଠର ସମାଶ୍ରୟରେ ଅବିକଳାନୁବାଦିତ ସତ୍ୟ, ତଥାପି ଯଥାଯଥ କ୍ରିୟାପଦ ପ୍ରୟୋଗ କରାଯାଇ ନାହିଁ ବୋଲି ନିରବଚ୍ଛିନ୍ନ ଅନ୍ୱୟ ସୌନ୍ଦର୍ଯ୍ୟର କିଞ୍ଚିତ୍ ଅଭାବ ଘଟୁଥିବାରୁ ଅପିଚ ସ୍ଥାନେ ସ୍ଥାନେ ମୁଦ୍ରଣ କ୍ରମର କିଛି ଅସାବଧାନତା ବଶରୁ ପ୍ରଥମ ଶ୍ଳୋକର ଅନୁବାଦ ପଢ଼ିଦେଲାକ୍ଷଣି ତଦର୍ଥ ବୋଧ ଓ ଅନ୍ୱୟାବଗତି ସର୍ବସାଧାରଣଙ୍କର ସୁଗମ ହୋଇ ନପାରେ । ପରନ୍ତୁ ଏ ଧରଣର ଅନୁବାଦ ଅନେକ ସ୍ଥଳରେ ନିହିତ ଥିବା ଦେଖାଯାଏ । ବୋଧହୁଏ କବି ମହାଶୟ ଅତ୍ରତ୍ୟ ପ୍ରଥମ ଶ୍ଳୋକର ଅନୁବାଦରେ "ତୋତେ ନସମର୍ପି-ନିଷ୍ଫଳ" ଏପରି କେବଳ ଲେଖିଥିଲେ । ମାତ୍ର ଅନୁଲେଖକ "ଅସମର୍ପି" ପଦକୁ "ନସମର୍ପେ" କରି ଦେଇଅଛନ୍ତି । କିନ୍ତୁ "ସାଧି" "ଆରାଧି" ଏ ଦୁଇଟି ଅସମାପିକା କ୍ରିୟାପଦ ସମପିକାର୍ଥରେ କବିଙ୍କ ଦ୍ୱାରା କେବଳ ପ୍ରୟୋଜିତ ଥିବା ଅନୁମିତ । ଏହାର କାରଣ ଆପଣମାନେ ଅବଶ୍ୟ ବିଦିତ ଥିବେ । ତଥାପି ଏହା ସମ୍ୟକ୍ ହୃଦୟଙ୍ଗମ କରି ରଖିବାକୁ ସାଦରେ ଅନୁରୋଧ କରୁଁ । ପ୍ରାଚୀନ ସାହିତ୍ୟରେ ବିଶେଷତଃ ପୁରାଣସାହିତ୍ୟରେ ଏଭଳି (ଇ) ପ୍ରତ୍ୟୟାନ୍ତ କ୍ରିୟାପଦର ଶକ୍ତି ଗରୀୟସୀ ଓ ସର୍ବତୋମୁଖୀ ଅଟେ । ଏଭଳି କ୍ରିୟାପଦମାନ ସ୍ଥାନ ବିଶେଷରେ ସାହିତ୍ୟିକ-କାମଧେନୁର ନ୍ୟାୟ ସାର୍ବକାଳିକ ଅର୍ଥକୁ ବୁଝାଇବାରେ ସାଧୁ ହୋଇଥାଏ ।

(୬) (କ) ଆୟୁର୍ହରତି ବୈ ପୁଂସାଂ ଉଦ୍ୟନ୍ନସ୍ତଂଚ ଯନ୍ନସୌ ।
ତସ୍ୟାର୍ତ୍ତେ ଯତ୍‌କ୍ଷଣୋନୀତ ଉତ୍ତମଶ୍ଳୋକବାର୍ତ୍ତୟା ॥
"ଏ ରବି ଉଦେ ଅସ୍ତକାଳେ । ଜନ୍ତୁ ଜୀବନ ଘେନି ଚଳେ ॥
ଯେ ହରି ଭାବେ ଥାନ୍ତି ଜଡ଼ି । ତାଙ୍କ ଜୀବନ ଦୂରେ ଏଡ଼ି ॥"

(ଖ) ବିଳେବତୋରୁକ୍ରମ ବିକ୍ରମାନ୍ ଯେ ନଶୃଣ୍ୱତଃ କର୍ଣ୍ଣପୁଟେ ନରସ୍ୟ ।
ଜିହ୍ୱାସତୀ ଦର୍ଦ୍ଦୁରିକେବ ସୂତ ! ନଚୋପଗାୟତ୍ୟୁରୁଗାୟ ଗାଥାଃ ।
"କୃଷ୍ଣର ନାମ ଉଚ୍ଚାରଣ । ନ ଶୁଣେ ଯାହାର ଶ୍ରବଣ ॥
ତାହାର କର୍ଣ୍ଣ ଯୁଗ ପଥେ (ପଥ)। ବିବରେ ଦିଶନ୍ତି ଯେମନ୍ତେ (ଯେମନ୍ତ)
ତୁଣ୍ଡର ମଧ୍ୟେ ଜିହ୍ୱା ବହି । ଯେ ହରି ନାମ ନ ଭାଷଇ ॥
ଦର୍ଦ୍ଦୁର ବାଣୀ ବୋଲି ତାରେ । ଯେ ହରି ନାମ ନ ଉଚ୍ଚାରେ ॥

(ଗ) ଭାରଃପରଂ ପଟ୍ଟ କୀରିଟ ଜୁଷ୍ଟଂ । ଅପ୍ୟୁତ୍ତମାଂଗ ନନମେନ୍ମୁକୁନ୍ଦଂ ।
ଶାବୌକରୌନୋକୁରୁତଃ ସପର୍ଯ୍ୟାଂ । ହରେର୍ଲସକ୍ରାଞ୍ଚନ କଙ୍କଣୌଚ ।
ଯାର ଉତ୍ତମ ଶିର ସାଜେ । ସୁବର୍ଣ୍ଣ ମୁକୁଟ ବିରାଜେ ॥
ପାଟ ବସନେ ବାନ୍ଧି (ନ୍ଧେ) ଚୂଳ । ଶ୍ରବଣେ ବିରାଜେ କୁଣ୍ଡଳ ॥
ସେ ଯେବେଁ ହରିଙ୍କି ନ ନମେ । ସେ ଭଣ୍ଡ ଭାର ବହେ ଭ୍ରମେ ॥
ଯେବା ସୁନ୍ଦର ବେନି ଭୁଜେ । କାଞ୍ଚନ କଙ୍କଣ ବିରାଜେ ॥
ବିଷ୍ଣୁର କାର୍ଯ୍ୟେ ଯେବେ ନୋହେ । ଶ୍ମଶାନେ ଅସ୍ଥି ପ୍ରାୟେ ଶୋହେ॥

(ଘ) ବର୍ହାୟିତେ ନୟନେ ନରାଣାଂ ଲିଙ୍ଗାନି ବିଷ୍ଣୋ ନିନିରୀକ୍ଷଣେ ଯେ ।
ପାଦୌନୃଣାଂ ତୌ ଦ୍ରୁମଜନ୍ମଭାଜୌ କ୍ଷେତ୍ରାଣି ନାନୁବ୍ରଜତେ ହରେ ଯୌ ॥
"ଲୋଚନ ବେନି ଥାଉଁ ସୁଖେ । ଯେ ହରି ଭକତ (ମୁରତି) ନ ଦେଖେ ॥
ମୟୂର ପୁଚ୍ଛ ବୋଲି ତାରେ । ସେ ଅନ୍ଧ ସଂସାର ସାଗରେ ॥
ଚରଣ ଯୁଗ ବହି ନରେ । ଯେବେ ନ ଗମେ ବିଷ୍ଣୁପୁରେ ॥
ସେ ପାଦ-ଭଗ୍ନ ବୃକ୍ଷ ଦୁଇ । ସେ ଯେହ୍ନେ ପଦେ ନ ଚଳଇ ॥
ଦ୍ୱି । ସ୍କ । ୩ । ଅ ।

ପାଠକ ମହାଶୟ, ଦେଖନ୍ତୁ, କି ସୁନ୍ଦର ଅନୁବାଦ । ମୂଳ ଏବଂ ଅନୁବାଦିତ ପଂକ୍ତିଗୁଡ଼ିକର ଭାବ ବିଚାର କରି ନିଅନ୍ତୁ । ଅନୁବାଦନ ପରିପାଟୀ କୀଦୃଶୀ ମନୋହରିଣୀ ବୁଝିପାରିବେ । ସାର୍ଦ୍ଧଚତୁଃଶତଃ ବର୍ଷ ପୂର୍ବେ ସୁଦ୍ଧା ଏଭଳି ଅବିକଳ ଅନୁବାଦରେ ମଧ ଭାଷା ନିବନ୍ଧନ-ସୌଷ୍ଠବ ରକ୍ଷିତ ହୋଇଅଛି । ଏହାକି ସାମାନ୍ୟ ପାଣ୍ଡିତ୍ୟ ଓ କବିତ୍ୱରେ ସାଧ ହୋଇପାରେ ?

(୭) ଅଜ୍ଞାନାଦଥବା ଜ୍ଞାନାଦ୍ ଉତ୍ତମଶ୍ଳୋକ ନାମଯତ୍ ।
ସଂକୀର୍ତ୍ତିତମଘଂପୁଂସୋଦହେଦେଧୋ ଯଥାନଳଃ ॥
''ଜ୍ଞାନେ ଅଜ୍ଞାନେ ଯେହୁ ପ୍ରାଣୀ । ସ୍ମରଣ କରେ ଚକ୍ରପାଣି ॥
ନାମ କରନ୍ତି ସଂକୀର୍ତ୍ତନ । ପାପକୁ କରନ୍ତି ଦହନ ॥
ସେ ଯେହ୍ନେ ବହୁ କାଷ୍ଠରାଶି । ଅନଳ ପ୍ରବେଶେ ବିନାଶି ॥''
ଷଷ୍ଠ । ସ୍କ । ଦ୍ୱି । ଅ ।

(୮) ଯତ୍‌ଯଦାଚରତି ଶ୍ରେୟାନିତରସ୍ତତ୍ତଦୀହତେ ।
ସ ଯତ୍ ପ୍ରମାଣଂ କୁରୁତେ ଲୋକସ୍ତଦନୁବର୍ତ୍ତତେ ।
''ମହତେ ଯାହା ଆଚରିବେ । (ଇତରେ) ହିତରେ ତାହାହିଁ କରିବେ ॥
ସେ ଯାହା ପ୍ରମାଣ କରିବେ । ଲୋକେ ତଦନୁବର୍ତ୍ତୀ ହେବେ ॥''
ଷଷ୍ଠ । ସ୍କ । ଦ୍ୱି । ଅ ।

ଏ ସ୍ଥଳେ ମୂଳ ନିହିତ ଶବ୍ଦ କେବଳ ନୁହେଁ ବାକ୍ୟାଂଶପଂକ୍ତି ମଧ୍ୟ ଅପରିବର୍ତ୍ତିତ ରହିଅଛି । କିନ୍ତୁ କବିଦତ୍ତ ''ଇତରେ'' ପଦଟିକୁ ଅନୁଲେଖକ ଓ ଛାପାକାର ''ହିତରେ'' କରିଦେଇ ଅଛନ୍ତି ।

(୯) ଅତ୍ରୈବ ନରକଃ ସ୍ୱର୍ଗ ଇତିମାତଃ ପ୍ରଚକ୍ଷତେ ।
ଯା ଯାତନାବୈ ନାରକ୍ୟ ସ୍ତାଇହାପ୍ୟୁପଲକ୍ଷିତାଃ ।

''ହେ ମାତ ଦେଖ ସୁବିଚାରେ । ନରକ-ସ୍ୱର୍ଗ ଏହିଠାରେ ॥
ନରକ ଯାତନା ଏତେକ । ସ୍ୱର୍ଗଟି ନାନାଭୋଗ ଦୁଃଖ ॥
ଏ ବେନି ବୁଝ ପରିମାଣି । ବିବେକ ମୁଖେ ଶାସ୍ତ୍ରେ ଭଣି ॥''
ତୃ । ସ୍କ । ୩୦ । ଅ ।

ଏ ସ୍ଥଳରେ କବି ମୌଳିକାର୍ଥକୁ ଠିକ୍ ଅନୁବାଦ କରି ପଦଟିକୁ ଶ୍ଳୋକର ଅନ୍ତର୍ନିହିତ ଭେଦ୍ୟଭାବର ବ୍ୟାଖ୍ୟା ସ୍ୱରୂପ ଅଧିକତଃ ମିଶାଇ ଅଛନ୍ତି । ଅନେକ ସ୍ଥଳରେ ଏପରି ଭାବର ସୁବ୍ୟକ୍ତିକରଣାର୍ଥ ସୁସଙ୍ଗତତଃ ଅଧିକ ପଦ୍ୟମାନ ମଧ୍ୟ ଲେଖାଯାଇ ଥିବାର ଦେଖାଯାଉଅଛି । ପାଠକଗଣ ! ଆପଣମାନେ ଅବଶ୍ୟ ଏତକରୁ କବିମହୋଦୟଙ୍କର ଅବିକଳ ଅନୁବାଦର କ୍ରମ କିପରି ରୀତିରେ ମୌଳିକ ଭାବକୁ ଅକ୍ଷୁଣ୍ଣ ରଖି ସୁସାଧିତ, ତାହା ବୁଝିପାରିବେ । ଏହି ସଂବିଧାନରେ ଆଉ ଅଧିକ ଗୁଡ଼ାଏ ସ୍ଥଳ ପ୍ରଦର୍ଶନ କରିବା ଅନାବଶ୍ୟକ ମନେକରୁଁ । ଯଦିଚ ଅନୁବାଦକ୍ରମରେ ଯାହାକିଛି ତ୍ରୁଟି ଅସାଙ୍ଗତ୍ୱାଦି ଦୋଷ

ଥିବାର ଦେଖାଯାଏ, ସେ ସବୁ ବିଷୟ-ସଂବିଧାନ ସ୍ଥଳରେ ପ୍ରଦର୍ଶିତ କରିବୁଁ । ବର୍ତ୍ତମାନେ ଅନୁଲେଖନ ଓ ମୁଦ୍ରଣ କ୍ରିୟାରୁ ଜନିତ ଯେ ଯେ ରକମ ଦୋଷ ନିଚୟ ଏହି ଅବିକଳାନୁବାଦିତ ପରିଶୁଦ୍ଧ ଗ୍ରନ୍ଥଟିକୁ ଯେ ପରିମାଣରେ ଦୋଷ ସଂକୁଳ କରିଅଛି ତାହାର ବିଚାର କରି ପ୍ରତ୍ୟକ୍ଷ ପ୍ରମାଣ ସ୍ୱରୂପ କେତେଗୁଡ଼ିଏ ସ୍ଥଳମାତ୍ର ଆପଣମାନଙ୍କ ଜ୍ଞାନ ସମକ୍ଷରେ ଉପସ୍ଥାପିତ କରିବୁଁ । ଅବଶିଷ୍ଟ ବିଷୟ ସଂବିଧାନ ସ୍ଥଳେ ଦେଖିବାକୁ ପାଇବେ ।

(୧) (କ) ''ଯାହାନୁଗ୍ରହେ ଉପୁଜନ୍ତି । ଯାହାନୁଗ୍ରହେ ଲୀନ ଯାନ୍ତି ।''

ଦ୍ୱି । ସ୍କ । ୧୦ । ଅ ।

''ଯାହା'' ଏହି ଷଷ୍ଠ୍ୟନ୍ତ ଓଡ଼ିଆ ସର୍ବନାମ ପଦର ସହିତ ଅନୁଗ୍ରହି ପଦର ସନ୍ଧୀକରଣ ଅନୁଚିତ । ତଥାପି ଛାପା ଏବଂ କେଉଁ କେଉଁ ତାଳପତ୍ର ପୁସ୍ତକରେ ମଧ ଅନେକ ସ୍ଥଳରେ ଏତାଦୃଶ ଓଡ଼ିଆ (ଶବ୍ଦର କଥା ପୃଥକ) ପଦର ସହିତ ସଂସ୍କୃତ ଶବ୍ଦର ସଂଧି ହୋଇଥିବାର ଦେଖାଯାଏ, ଏଭଳି ବ୍ୟାକରଣିକ ଅସମଞ୍ଜସତା କବିକୃତ ନୁହେ । ଏହା ଅନୁଲେଖକ ଓ ଛାପାକାରଙ୍କର ଅବିଚାର ଜନିତ କେବଳ । କବି ମହୋଦୟ ''ଯା ଅନୁଗ୍ରହେ ଉପୁଜନ୍ତି । ଯା ଅନୁଗ୍ରହେ ଲୀନ ଯାନ୍ତି'' । ଏପରି ଆକାରରେ କେବଳ ଲେଖିଥିଲେ । କେତେକ ତାଳପତ୍ର ପୁସ୍ତକରେ ମଧ ଏପରି ଲେଖା ଦେଖାଯାଏ । ପରନ୍ତୁ ଏଭଳି ବ୍ୟାକରଣିକ ଦୋଷ ଗୁଡ଼ିଏ ଯଦି ଗ୍ରନ୍ଥ ମଧରେ ଅନୁଲେଖକଙ୍କ କର୍ତ୍ତୃକ ଇତସ୍ତତଃ ଭରତି ହୋଇ ଥାଏ ତେବେ ଅବିମୃଷ୍ୟକାରିଗଣ ଅବଶ୍ୟ ସେ ଦୋଷଗୁଡ଼ିକୁ କବିକୃତ ବୋଲି ମନେକରି ପାରନ୍ତି, ମାତ୍ର ଯଥାର୍ଥତା ଅନୁସନ୍ଧାନପୂର୍ବକ ନାନା ସ୍ଥାନମାନ ଦେଖି ସୁବିଚାର କଲେ ସେପରି ଦୋଷସବୁ କବିଙ୍କର ନୁହେଁ ବୋଲି ବିଶ୍ୱାସ କରିବେ ।

(ଖ) (୧) ନାନା ପକ୍ଷିଏ ରସଭରେ । କୋକିଳ ଡାକନ୍ତି ସୁଖରେ ।।

ତୃ । ସ୍କ । । ୧୫ । ଅ ।

ଏ ସ୍ଥଳେ ଛାପାରେ ''ପକ୍ଷିୟେ'' ପରିବର୍ତ୍ତରେ ''ପକ୍ଷିଏ'' ହୋଇଅଛି ଗ୍ରନ୍ଥ ମଧରେ ଏଭଳି ବହୁବଚନାର୍ଥକ ଶବ୍ଦ ବିଭକ୍ତିର ପ୍ରାତ୍ୟୟିକ ଦୋଷ ଅପରିମିତ ଦେଖାଯାଏ । ଏଗୁଡ଼ିକ ଅନୁଲେଖକ ଏବଂ ଛାପାକାରଙ୍କଦ୍ୱାରା କେବଳ ପରିଦୁଷ୍ଟ ହୋଇଅଛି, ଏଥିରେ କିଛି ହିଁ ସନ୍ଦେହ ନାହିଁ ।

(୨) ଉତ୍ପାତ ଦିଶେ ଗୁରୁତରେ । ପ୍ରଜାୟେ କମ୍ପିଲେ ନିର୍ଭରେ ।।

ସେମାନେ ''ପ୍ରଜାଏ'' ପଦକୁ ''ପ୍ରଜାୟେ'' କରିଦେଇ ଅଛନ୍ତି ।

୩ । ସ୍କ । ୧୭ । ଅ ।

(୩) ପୁଣ୍ୟକୁଟୀଯେ ସୋଭିଥାଇ । ସେ ନଦୀ ତୀରେ ସୁଖେ ରହି ॥
(କୁଟୀଏ ହେବା ଉଚିତ) ୩ । ସ୍କ । ୨୨ । ଅ ।

(୪) ପ୍ରାଣ ଯିବାବେଳେ ମାଯେ । ଅତି ବେଦନା ଜୀବପାଯେ (ପାଏ) ॥
(ସମ୍ବୋଧନାର୍ଥରେ 'ମାଏ' ହେବା ଉଚିତ ।) ୩ । ସ୍କ । ୩୦ । ଅ ।

(୫) ମୁନିଯେ ଦେଲେ କରେ ଦର୍ଭ । ତେଜମଣ୍ଡଳ ବେଦଗର୍ଭ ॥
ଋଷିଯେ ବ୍ରହ୍ମତେଜ ଦେଲେ । ସ୍ତୁତି ବଚନେ ସ୍ତୁତିକଲେ ॥
(ମୁନିଏ, ଋଷିଏ, ହେବା ଉଚିତ) । ଅଷ୍ଟମ । ସ୍କ । ୧୭ । ଅ ।

(ଖ) (୧) ବକ୍ଷରେ ମୁକ୍ତା ମାଳା ସୋହେ । ହେମାଦିରତ୍ନେ ଶୋଭାପାଯେ ॥
(ପାଏ ହେବା ଉଚିତ) ୩ । ସ୍କ । ୧୫ । ଅ ।

ଏତାଦୃଶ କ୍ରିୟା ବିଭକ୍ତିର 'ଏ' ପ୍ରତ୍ୟୟକୁ ଅନୁଲେଖକ ଓ ଛାପାକାରବହୁ ସ୍ଥଳରେ ଅଜ୍ଞାନତଃ 'ଯେ' ଆକାରରେ ପରିଣତ କରି ଦେଇଅଛନ୍ତି ।

(୨) ସେ ଅଣ୍ଡକୋଷ ମଧ୍ୟେ ହରି । ଶୋଯେ ଅନନ୍ତ ଶଯ୍ୟାକରି ॥
(ଶୋଏ ହେବା ଉଚିତ ।) ଦ୍ବି । ସ୍କ । ୨୦ । ଅ ।
ପ୍ରାଣ ଯିବାବେଳେ ମାଯେ । ଅତି ବେଦନା ଜୀବ ପାଯେ ॥
(ପାଏ ହେବା ଉଚିତ) । ଦ୍ବି । ସ୍କ । ୩୦ । ଅ ।

(୨) (କ) ଭୀଷ୍ମ ଦୁହିବା ହିତେ ହରି । କୁନ୍ତୀ ନଗରେ ବିଜେକରି ॥
(ଭୀଷ୍ମ ଦୁହିତା ହିତେ ହରି । କୁଣ୍ଡିନ ନଗ୍ରେ ବିଜେ କରି ।)

ଏପରି ହେବାର ଥିଲା । ଛାପାକାର ମହାଶୟମାନେ ଏତାଦୃଶ ବିରୁଦ୍ଧ ବର୍ଣ୍ଣାନ୍ତର ଯୋଗରେ ଭୂରି ଭୂରି ସ୍ଥଳ ଦୋଷଯୁକ୍ତ କରି ପକାଇ ଅଛନ୍ତି । ଏପରି ଦୋଷଦୂଷିତ ସ୍ଥଳମାନଙ୍କର ଇୟତ୍ତା କରାଯାଇ ନ ପାରେ ।

(ଖ) ସମ୍ବର ଦ୍ବିବିନ୍ଧ ବାନର । ସୁର ବିଳୋଳ ବାଣାସୁର ॥
୩ । ସ୍କ । ୩ । ଅ ।

ସମ୍ବର ଦ୍ବିବିଦ ବାନର – ଏପରି ହେବା ଉଚିତ ।

(ଗ) – ପ୍ରବା ସେ ମିଳିଲେ ସମସ୍ତେ ।
ସେ ଜଳେ ସାରିଲେ ସ୍ନାହାନ । ପିତୃ ତର୍ପଣ ପିଣ୍ଡଦାନ ॥
୩ । ସ୍କ । ୩ । ଅ ।

(ପ୍ରଭାସେ ମିଳିଲେ ସମସ୍ତେ – ଏପରି ହେବା ଉଚିତ ।)

(ଘ) ବିଷ୍ଣୁ ଚରଣେ ଚିତ୍ତଧ୍ୟାୟି । କହନ୍ତି ବିଦୁରକୁ ଚାହିଁ ॥

ତୃ । ସ୍କ । ୮ । ଅ ।

(ବିଷ୍ଣୁ ଚରଣ ଚିତ୍ତେଧାୟି – ଏପରି ହେବାର ଥିଲା ।)

(ଙ) ପାଷାଣେ ଛେଦି ଆକୁବଳେ ॥ ନିକ୍ଷେପ କ୍ଷୀରସିନ୍ଧୁ ଜଳେ ॥

ତୃ । ସ୍କ । ୬ । ଅ ।

(ୟାକୁ) ପରିବର୍ତ୍ତରେ (ଆକୁ) କରିଦେଇ ଅଛନ୍ତି । ଏତାଦୃଶ ବହୁ ସ୍ଥଳେ ଦେଖାଯାଏ ।

(ଚ) (୧) ସର୍ବଜନ୍ତୁଙ୍କ ବନ୍ଧମୋକ୍ଷ । ତୁ ନାଥ ଈଶ୍ୱର ପ୍ରତ୍ୟକ୍ଷ ॥

୮ । ସ୍କ । ୭ । ଅ ।

ବହୁସ୍ଥଳରେ ବନ୍ଧ ପରିବର୍ତ୍ତରେ ବନ୍ଧଶବ୍ଦ ଏବଂ ବନ୍ଧମୋକ୍ଷ ପରିବର୍ତ୍ତରେ ବନ୍ଧମୋକ୍ଷ ପଦ ଲେଖାଯାଇଅଛି । ଯଥାର୍ଥତଃ ଏଗୁଡ଼ିକ କବିକୃତ ଦୋଷ ନୁହେଁ । ପ୍ରଥମତଃ ଅନୁଲେଖକ ଏପରି ବିକୃତ କରିଥିଲେ । ତା ପରେ ଛାପାକାର ମଧ୍ୟ ଅବିମୃଷ୍ୟକାରିତାବଶରୁ ସେଥିରେ ମାତିଗଲେ ।

(୨) କଟାକ୍ଷେ ଚାହାନ୍ତି ଶ୍ରୀମୁଖ । ଖଣ୍ଡିଲେ ଜନ୍ମ ବନ୍ଧ ଦୁଖ ॥

୧୦ । ସ୍କ । ୩୪ । ଅ ।

(ଜନ୍ମବନ୍ଧ ହେବା ଉଚିତ ।)

(୩) ଯାହାର ବନ୍ଧ ମୋକ୍ଷ ନାହିଁ । ଇଚ୍ଛା ସମ୍ପଦେ ଯାରଦେହି ॥

୧୦ । ସ୍କ । ୩୪ । ଅ ।

(ବନ୍ଧ ମୋକ୍ଷ ହେବା ଉଚିତ ।)

(୪) ଯେ ଆତ୍ମାବନ୍ଧ ମୋକ୍ଷ ଜାଣେ । ସେ ପ୍ରାଣୀ ପଣ୍ଡିତ ବଖାଣେ ॥

ଯେ ପ୍ରାଣୀ ଆତ୍ମର ବନ୍ଧ ମୋକ୍ଷ ଜାଣନ୍ତି ସେ ପଣ୍ଡିତ କୁହାଯାଆନ୍ତି । ଏପରି ଅର୍ଥ ।

୧୧ । ସ୍କ । ୨୦ । ଅ ।

(ଛ) ସନସଫର ତାର ନାମ । ସକଳ ଗୁଣେ ଗୁଣ ଧାମ ॥

୯ । ସ୍କ । ୭ । ଅ ।

ସନସଫର କଥାଯେତେ । ପଛେ କହିବା ତୋ ଅଗ୍ରତେ ॥

୯ । ସ୍କ । ୭ । ଅ ।

'ଶୁନଃଶେଫ' ପଦକୁ ସନସଫ ଓ ସନସଫର କରିଦେଇ ଅଛନ୍ତି ।

(ଜ) ସୁଦାସ ତାହାର ସନ୍ତତି । ତା ପୁତ୍ର ମୋଦୟନ୍ତୀପତି ॥

୯ । ସ୍କ । ୯ । ଅ

ଏହାଙ୍କର ନାମ ମୋଦୟନ୍ତୀ ନୁହେଁ । ମଦୟନ୍ତୀ ବୋଲି ମୂଳରେ ଏବଂ କେତେକ ତାଳପତ୍ର ପୁସ୍ତକରେ ମଧ୍ୟ ଲେଖାଅଛି । ମୌଳିକ ପ୍ରମାଣ – ଯଥା –

ବଶିଷ୍ଠ ସ୍ତଦନୁଜ୍ଞାତୋ ମଦୟନ୍ତ୍ୟା ପ୍ରଜାମଘାତ୍ ।

୯ସ୍କ । ୯ଅ । ୩୮ । ଶ୍ଳୋ

(୩) (କ) କୁରୁ ଜ୍ୟାଗଳ ମଧ୍ୟଦେଶ । ଜିଣି ଯମୁନାରେ ପ୍ରବେଶ ॥

ତୃ । ସ୍କ । ୧ । ଅ

ଛାପାକାର ମହାଶୟ କୁରୁଜାଙ୍ଗଳ ପଦକୁ କୁରୁଜ୍ୟାଗଳ କରିଅଛନ୍ତି ।

ଏଭଳି ଅସାବଧାନତା-ଜନିତ ଦୋଷମାନ ଗ୍ରନ୍ଥମଧରେ କେତେ ଯେ ଅଛି ସେ ସବୁର ଗଣନା କରାଯାଇ ନ ପାରେ । ମୌଳିକ ପ୍ରମାଣ ଯଥା – ତତସ୍ତ୍ୱିତିବ୍ରଜ୍ୟ ସୁରାଷ୍ଟ୍ରମୃଦ୍ଧଂ । ସୌବୀର ମସାନ୍ କୁରୁଜାଙ୍ଗଳାଂଶ୍ଚ ।

କାଳେନ ତାବଦ୍ ଯମୁନାମୁପେତ୍ୟ । ତତ୍ରୋଦ୍ଧବଂ ଭାଗବତଂ ଦଦର୍ଶ

ତୃ । ସ୍କ । ୧ଅ । ୨୪ ।

(ଖ) ଶୌନକ ଆଦି ସପ୍ତଭାଇ । ଦେଖନ୍ତି ଶୂନ୍ୟମାର୍ଗେ ରହି ॥
(ସନକଆଦି ହେବାସ୍ଥଳେ ଶୌନକ ଆଦି କରି୍ଛନ୍ତି ।)

ତୃ । ସ୍କ । ୧୭ । ଅ

(ଗ) ମୋହର ଦର୍ପ ଏବେ ହର । ସୁଖେ ରାଜସ୍ୱୀୟଯାଗ କର ॥

ତୃ । ସ୍କ । ୧୭ । ଅ

ବୋଧହୁଏ, ଏ ସ୍ଥଳରେ କବି ମହାଶୟ "ସୁଖେ ରାଜୁସି ଯାଗ କର" ଏପରି ଲେଖିଅଛନ୍ତି । କିନ୍ତୁ "ରାଜୁସି" ଏହି ତଦ୍‌ଭବ ଶବ୍ଦର ସାଧୁତାକୁ ଛାପାକାର ବୁଝି ନପାରି ତାକୁ ରାଜସୂୟ କରିବାକୁ ଯାଇ ଅସାବଧାନତା ଯୋଗୁଁ ରାଜସ୍ୱୀୟ କରିପକାଇ ଅଛନ୍ତି ।

(ଘ) ସେ ନୋହେ କାଳଗ୍ରସ୍ତେ ଗ୍ରସ୍ତ । ତୃ । ସ୍କ । ୨୧ । ଅ ।
(କାଳଗ୍ରାସେ ଗ୍ରସ୍ତ – ଏପରି ହେବାର ଥିଲା ।)

(ଡ) ମହାକର୍କତସ୍ତମ୍ଭ ଯହି । ବିଦୃମ ବେଦୀ ବିରାଜଇ ॥

ତୃ । ସ୍କ । ୨୩ । ଅ ।

ମହାମର୍କତ-ସ୍ତମ୍ଭ ଯହିଁ । ବିଦ୍ରୁମ ବେଦୀ ବିରାଜଇ । ଏପରି ହେବାର ଥିଲା । ମୌଳିକ ପ୍ରମାଣ – ଯଥା ।

ମହାମରକତ ସ୍ଥଲ୍ୟାଂ ଜୁଷ୍ଟଂ ବିଦ୍ରୁମ ବେଦିଭିଃ –

ତୃ । ସ୍କ । ୨୩ । ଅ । ୧୭ ଶ୍ଳୋ ।

(ଚ) ଏମନ୍ତ ଯୋଗ ଅନୁଭାବେ । ରମିଲେ ଦମନ୍ତି ସ୍ୱଭାବେ ॥

ତୃ । ସ୍କ । ୨୩ଅ

ଏ ସ୍ଥଳରେ ଦମ୍ପତି ଶବ୍ଦକୁ ଦମନ୍ତି କରିପକାଇ ଅଛନ୍ତି ।

(ଛ) ଅଶେଷ ଜନ୍ମ ପାପ ଦେହେ । ନିର୍ଭୟ ଚିରେ ସୁଖେ ରହେ ॥

ତୃ । ସ୍କ । ୩୩ । ଅ ।

ଅଶେଷଜନ୍ମ ପାପ ଦହେ – ଏପରି ହେବାର ଥିଲା ।

(ଜ) ବିପ୍ରଚିତ୍ତି ବୃଷ ପାର୍ବଣ – ନମୁଚି ପୁଲୋମ ହୋ ଶୁଣ ॥

ଷଷ୍ଠ । ସ୍କ । ୧୧ଅ ।

(ବୃଷ ପର୍ବଣ ହେବା ଉଚିତ ।)

(ଝ) ସ୍ଥିତି ଉଭବ ଲୟେ କାର୍ଯ୍ୟେ । ତୁମ୍ଭର ଶରୀର ବିରାଜେ ।

୪ । ସ୍କ । ଅ ।

ଲୟ ପଦକୁ ଲୟେ କରିଦେଇଥିବାରୁ ଅନ୍ୱୟ ଦୋଷ ପ୍ରତିପାଦିତ ହୋଇଅଛି । ଏପରି ଯେ କେବଳ ଦୁଇ ଚାରି ସ୍ଥଳ, ତାହା ନୁହେ ବହୁ ସ୍ଥଳରେ ଏପରି ଯକାରକୁ ୟେକାରରେ ପରିଣତ କରି କବି ପ୍ରଦର୍ଶିତ ଅନ୍ୱୟ ସରଣୀ ଓ ଅର୍ଥକୁ ବିକୃତ କରି ଦେଇଅଛନ୍ତି ।

(ଞ) କାମଧେନୁରେ ପ୍ରାୟେ ରହି । ବହୁତ ଖିର ଦ୍ୟନ୍ତି ଗାଈ ॥

୧ ସ୍କ । ୧୦ ଅ

କାମଧେନୁର ପ୍ରାୟେ ରହି – ଏପରି ହେବାର ଥିଲା ।

(ଟ) ଏ଼ ଯେ ଦ୍ୱାରିକା ଧର୍ମପୁରୀ । ସ୍ୱର୍ଗ ଯଶର ତିରସ୍କରି ॥

୧ ସ୍କ । ୧୦ଅ

ସ୍ୱର୍ଗ ଯଶର ତିରସ୍କାରୀ (ତିରସ୍କାରିଣୀ) ଏପରି ହେବା ଉଚିତ ।

(୦) (୧) ହସ୍ତେ ଅମଳ ଫଳପ୍ରାୟେ । ତୁମ୍ଭ ଗୋଚରେ ଛାନ ରହେ ॥

୪ ସ୍କ । ୫ଅ ।

(୨) ମଦିରା ଅର୍ଥେ ଭୋଳ ହୋଇ । ଯେମନ୍ତେ ଦିବସ ସେ ହୋଇ

ତୃ ସ୍କ । ୨୮ ଅ ।

ହସ୍ତ ଆମଳ (ହସ୍ତାମଳକ) ପଦକୁ ହସ୍ତେ ଅମଳ ଇତ୍ୟାଦି । ଏବଂ ବିବଶ ପଦକୁ ଦିବସ ଆକାରରେ ମୁଦ୍ରିତ କରିଥିବାରୁ ପ୍ରକୃତାର୍ଥ ପ୍ରତିପନ୍ନ ହୋଇ ପାରୁନାହିଁ । ଏସବୁ ଯେ ଗୋଟିଏ ଗୋଟିଏ ପଦ୍ୟ ପ୍ରଦର୍ଶନରେ ଗୋଟିଏ ଗୋଟିଏ ରକମର ଦୋଷ ପ୍ରଦର୍ଶିତ କରାଗଲା ତାଦୃଶ ଦୋଷନିଚୟ ଛାପା ପୁସ୍ତକ ମଧ୍ୟରେ କେତେ ଯେ ଅଛି, ସେ ସବୁ ଏକତ୍ରିତ କଲେ ଗୋଟିଏ ଛୋଟ ପୁସ୍ତକ ହୋଇପାରେ ।

(୪) (କ) କରଞ୍ଜ ପନସ ରସନ । କୁନ୍ଦ ମନ୍ଦାର ଚୂତବନ ।

ତୃ ସ୍କ । ୨୧ଅ

ଉଦ୍ଧୃତ ପଦ୍ୟଟି ଏବଂ ତଦୀୟ ପୂର୍ବୋତ୍ତର ପଦ୍ୟମାନ ଟିକିଏ ମାତ୍ର ବିଚାର କଲେ ସ୍ଥାନାନୁଗୁଣରେ ବର୍ଣ୍ଣନୀୟ ଏହି ସଜାତୀୟ ବୃକ୍ଷମାନଙ୍କ ମଧ୍ୟରେ କେଉଁଟି ବିଜାତୀୟ ନାମ ଅଥଚ ତତ୍ର ବର୍ଣ୍ଣନାର୍ହ ନୁହେଁ; ସୁତରାଂ ଏପରି ସ୍ଥଳେ ପ୍ରୟୋଜ୍ୟ ହେବା ଅସମ୍ଭବ, ଏହା ଅବଶ୍ୟ ପ୍ରତିପନ୍ନ ହୋଇପାରେ । ମାତ୍ର ଛାପାକାର ମହାଶୟ ସେପରି ବିଚାର ଆଦୌ ନକରି କରଞ୍ଜ ପନସାଦି ସ୍ଥଳରେ ଅସନ ପରିବର୍ତ୍ତରେ ରସନ ଶବ୍ଦ ଯୋଗକରି ଦେଇଅଛନ୍ତି । ଏତାଦୃଶ ଅବିଚାର ମୂଳକ ଦୋଷ ମଧ୍ୟ ଗ୍ରନ୍ଥ ମଧ୍ୟରେ ବିରଳ ନୁହେଁ । ମୌଳିକପ୍ରମାଣ – ଯଥା –

କଦମ୍ବ ଚମ୍ପକାଶୋକ କରଞ୍ଜ ବକୁଳା ସନୈ
କୁନ୍ଦ ମନ୍ଦାର କୂଟଜୈଶ୍ଚୂତ ପୋତୈରଲଂକୃତଃ ।

ତୃ ସ୍କ । ୨୧ ଅ । ୪୨ ଶ୍ଳୋ

(ଖ) ଅଷ୍ଟମେ ସୂର୍ଯ୍ୟେ ଯାହା ଚିନ୍ତି । ଅନନ୍ତ ଅନନ୍ତ ବିଭୂତି ।

ତୃ । ସ୍କ ।୨୫ । ଅ

ଅତ୍ର ଅଷ୍ଟ ଐଶ୍ବର୍ଯ୍ୟ ପଦକୁ ଅଷ୍ଟମ ସୂର୍ଯ୍ୟ କରିପକାଇ ଅଛନ୍ତି । ମୌଳିକ ପ୍ରମାଣ– ଯଥା–

ଅଥୋ ବିଭୂତିଂ ମମମାୟାବିନସ୍ତାମୈଶ୍ବର୍ଯ୍ୟମଷ୍ଟାଙ୍ଗ ମନୁପ୍ରବୃତ୍ତଂ ।

ତୃସ୍କ । ୨୫ ଅ ।୩୭ଶ୍ଳୋ

(ଗ) ତୁମ୍ଭେ କାଳାଦି ରୂପ ଧରି । ଧର୍ମ ସ୍ଥାପିଲ ଦୁଷ୍ଟ ମାରି ॥
ଏବେ ଏ ଶରୀରେ ଗୋସାଇଁ । ଏ ଭାବ ଜ୍ଞାନ ଦେବା ପାଇଁ ॥
ଏଣୁ କୃତାର୍ଥ ମୋତେ କଲ । ପୁତ୍ର ସ୍ୱରୂପେ ପ୍ରକାଶିଲ ॥

ଏ ସ୍ଥଳରେ କବି ମହୋଦୟ ସୂକରାର୍ଥକ କୋଳଶବ୍ଦ ବ୍ୟବହୃତ କରିଅଛନ୍ତି । କିନ୍ତୁ ତାହା ଅନୁଲେଖକ ବିଶେଷତଃ ଛାପାକାର ବୁଝି ନ ପାରି କୋଳ ଶବ୍ଦର ପରିବର୍ତ୍ତରେ କାଳ ଶବ୍ଦ ଯୋଗ ଦ୍ୱାରା ପ୍ରକୃତାର୍ଥକୁ ବିକୃତ ଓ ଅନର୍ଥ କରି ପକାଇ ଅଛନ୍ତି । ପାଠକ ଅଭିଜ୍ଞ ହେଲେ ସୁଦ୍ଧା ପାଠ ଯଦି ଏପରି ଅପାର୍ଥ ହୋଇ ପଡ଼ିଥାଏ ତେବେ ତହିଁରୁ କି ଭାବ ଅବା ଗ୍ରହଣ ପାରିବେ ? ଏତାଦୃଶ ଭୂରି ଭୂରି ଦୋଷ ମିଶ୍ରଣବଶରୁ ଏହି ଗ୍ରନ୍ଥର ଅନେକ ସ୍ଥଳ ପାଠକମାନଙ୍କର ଅବୋଧ ହୋଇ ପଡ଼ିଅଛି । ମୌଳିକ ପ୍ରମାଣ ଯଥା–

ଯଥା ବତାରାସ୍ତବ ସୂକରାଦୟସ୍ତଥାୟମପ୍ୟାପୃପଥୋପଲବ୍‌ଧୟେ
ତୃ । ସ୍କ । ୩୩ ଅ । ସୂକର– କୋଳ

(ଘ) କୃଶିତ ଲାବଣ୍ୟ ଶରୀରେ । ପରିଧାପନ କଳାମ୍ବରେ ॥
ଏମନ୍ତେ ତପସ୍ୱିନୀ ବେଶ । ସେ ଦେବହୂତୀ ଧରି ତୋଷ ॥

ଏ ସ୍ଥଳରେ ଗ୍ରନ୍ଥକର୍ତ୍ତା ମହାଶୟ ଠିକ୍ ମୌଳିକ କ୍ରମରେ "ପରିଧାନ କବଳାମ୍ବରେ" ଏପରି ପଦ ସଂଘଟନ କରିଅଛନ୍ତି । ମାତ୍ର ଛାପାକାର ବିଚାରଶୂନ୍ୟତା ବଶରୁ ଅର୍ଥାନବଗତିରେ ଏପରି ବିକୃତ କରି ପକାଇଅଛନ୍ତି । ବଡ଼ ଆଶ୍ଚର୍ଯ୍ୟର କଥା । ଛାପାକାର ମହାଶୟ ପ୍ରକୃତାର୍ଥ ବୁଝି ପାରିଲେ ନାହିଁ ତ ନ ହେଲା, ପରଂତୁ ତପସ୍ୱିନୀ ପତିବିହୀନା ନୀଳବସ୍ତ୍ର ବା କଳାବସ୍ତ୍ର ପରିଧାନ କରିବା ଅବିଧେୟ, ପ୍ରତ୍ୟେକ ହେଲେ ବିଚାର କରି ପାରିଲେ ନାହିଁ !!

ମୌଳିକ ପ୍ରମାଣ ଯଥା–

ଆମ୍ନାନଂ ଚୋପ୍ରତିପସା ବିଭ୍ରତିଚୀରିଣଂ କୃଶଂ ।
ତୃ । ସ୍କ । ୩୩ ଅ । ୧୪ ଶ୍ଲୋ ।

(ଡ) ସର୍ବ ଜୀବରେ ଦୟା ବହେ । ଭଗବାନ ବାସୁଦେବାୟେ ।

ଏପରି ଛାପା ପୁସ୍ତକରେ ଲେଖାଅଛି; କିନ୍ତୁ

ସର୍ବ ଜୀବରେ ଦୟା ବହେ । ଭଗବାନ ବାସୁଦେବ ଏ ॥

୫ମ । ସ୍କ । ୧ । ଅ

(ଏପରି ହେବା ଉଚିତ ।)

ଏ ଭଗବାନ ବାସୁଦେବ ସର୍ବଜୀବରେ ଦୟାବହେ— ଏପରି ଅନ୍ୱୟ । ବୋଧହୁଏ ପ୍ରଥମତଃ କବି– ଅଙ୍କିତ ରୂପଟିରେ ଅନୁଲେଖକଙ୍କର ଉଚ୍ଛୃଙ୍ଖଳତା ଓ ଅଜ୍ଞତାରେ ସର୍ବନାମାର୍ଥକ ଏ କାରଟି ଯେକାରରେ ପରିଣତ ଏବଂ ଅଯଥା ଆକାର ଯୋଗ ଘଟିଥିଲା । ତାପରେ ଛାପାକାର ଟିକିଏ ବିଚାର ନ କରି ସେହି ବିକୃତ ରୂପକୁ କେବଳ ମୁଦ୍ରିତ କରି ଦେଇଅଛନ୍ତି । ଏତାଦୃଶ ଅବିଚାରମୂଳକ ବିକୃତ ଚିତ୍ରଣ ତାଳପତ୍ର ଏବଂ ଛାପା ପୁସ୍ତକମାନଙ୍କରେ ବହୁ ସ୍ଥଳରେ ନିହିତ ଅଛି ।

(ଚ) ଏବେ ଏମନ୍ତ ତୁମ୍ଭେ କର । ମନକୁ ସମର୍ଥେଣ ଧର ।

୫ ସ୍କ । ୫ଅ ।

ତାଳପତ୍ର ଆଉ ଛାପା ପୁସ୍ତକମାନଙ୍କର ବହୁ ସ୍ଥଳେ ସାମର୍ଥ୍ୟ ଅର୍ଥରେ ସମର୍ଥ ଶବ୍ଦ ଲେଖାଥିବାର ଦେଖାଯାଏ । ପ୍ରାଚୀନ ସାହିତ୍ୟିକ ପୁସ୍ତକମାନଙ୍କରେ ଏତାଦୃଶ ଅନ୍ୟାନ୍ୟ କେତେକ ବିଶେଷ୍ୟ ଶବ୍ଦମାନଙ୍କ ପରିବର୍ତ୍ତରେ ତଦ୍ ତଦ୍ ବିଶେଷଣ ଶବ୍ଦମାନଙ୍କର ବ୍ୟବହାର ପ୍ରଚୁର ଅଛି ସତ୍ୟ, ତଥାପି କବି ମହୋଦୟ ପଦଟିକୁ ସୁଦ୍ଧା ସେପରି କ୍ରମରେ ପ୍ରୟୋଗ କରି ଆସିଅଛନ୍ତି; ଏହା ବିଶ୍ୱାସ କରାଯାଏ ନାହିଁ । ବୋଧହୁଏ କବିଙ୍କ କର୍ତ୍ତୃକ ସଙ୍ଗତ କ୍ରମରେ ଭାବାର୍ଥ ଅ ପ୍ରତ୍ୟୟାନ୍ତ ବା ଯ ପ୍ରତ୍ୟୟାନ୍ତ ସାମର୍ଥ ବା ସାମର୍ଥ୍ୟ ପଦ କେବଳ ପ୍ରଯୁକ୍ତ ହୋଇଥିଲା । ଅନୁଲେଖକଙ୍କ ଲେଖାରେ ତାହା କ୍ରମଶଃ ସମର୍ଥ ରୂପରେ ପରିଣତ ହୋଇ ଯାଇଛି । ଏହି ଛାପାକାର ମଧ ଅନୁଲେଖକଙ୍କ ଲେଖାରେ ଆସ୍ଥାବାନ ହୋଇଅଛନ୍ତି । ତଥାଚ ଯାହାକି ତାଳପତ୍ର ଏବଂ ଛାପା ପୁସ୍ତକର ପଞ୍ଚମ ସ୍କନ୍ଧ ଦଶମାଦି ଅଧ୍ୟାୟରେ ଅନେକତ୍ର ମୌଳିକ ବହୁ ଗଣ ଶବ୍ଦ ରଘୁରାଣ ଆକାରରେ ଲିଖିତ ଅଛି; ତାହା ପ୍ରଥମତଃ ଭାଗବତାନଭିଜ୍ଞ ଅନୁଲେଖକ ତଦୀୟ ପ୍ରକୃତତା ଓ ଅଭିଧେୟତା ବୁଝି ନ ପାରି ପ୍ରତ୍ୟୁତ ଅନ୍ୟଥାକୃତ ହେଉ ପଛକେ ରଘୁରାଣ ପଦର ଅର୍ଥ ସୁଗମ ମନେକରି ହକାରରେ ଉଚ୍ଚାରଣ-ସୁଲଭ ଘକାର ଏବଂ ଶକାରରେ ଗୋଟିଏ ଛାଟଣି ଯୋଗ ଦ୍ୱାରା ଅଭିଧେୟତାକୁ ଉଜାଡ଼ି କରି ସୁଦ୍ଧା ସଜାଡ଼ି ନେବାର ଚେଷ୍ଟା କରିଥିଲେ । ତା' ପରେ ଆମ୍ଭାକୁ ସଂସ୍କୃତମନ୍ୟମାନ ମତିମାନ୍ ଛାପାକାର ମଧ ନିଜର ବିଲକ୍ଷଣ ମତିମତ୍ତାରେ ତାହା ହିଁ କରିଅଛନ୍ତି । ମୌଳିକ ପ୍ରମାଣ ଯଥା–

ବହୁଗଣୈତତ୍ ତପସା ନ ଯାତି ।

୫ ସ୍କ । ୧୨ ଅ ।

(ଛ) ପରମ ଭାଗବତ ଜନ । ମହାପୁରୁଷ ହେ ରାଜନ ।
ଦୈତ୍ୟ ଦାନବ କମଳଣି । ସୁଶୀଳ ସାଧୁ ସତ୍ୟବାଣୀ ।
ପ୍ରହଲାଦ ନାମ ବହଇ । ପ୍ରଭୁର ପ୍ରିୟ ସେ ଅଟଇ ।

୫ ସ୍କ । ୧୮ ଅ ।

ଅତ୍ରତ୍ୟ ମଧମ ପଦ୍ୟର ପୂର୍ବ ଦଳଟି ସପ୍ତଦଶାଧ୍ୟୟରେ ଯଥାର୍ଥ ରୂପରେ ''ଦୈତ୍ୟଦାନବକୁଳମଣି'' ଏପରି ଲେଖା ବା ମୁଦ୍ରିତ ଅଛି; କିନ୍ତୁ ଅଷ୍ଟାଦଶାଦି ଅଧ୍ୟାୟରେ ''ଦାନବ କମଳଣି'' ଏପରି ବିକୃତି ପ୍ରାପ୍ତ ରୂପରେ ଅନର୍ଥ ବା ଅପାର୍ଥ ହୋଇ ପଡ଼ିଅଛି । ଏତଦ୍ ଦ୍ୱାରା ଛାପାକାରଙ୍କର ଛାପାକରଣ ପ୍ରତି କିଛି ହିଁ ବିଚାରଶୀଳତା ଥିଲାପରି ଜଣାଯାଉ ନାହିଁ । ଏହାର ମୂଳ ପ୍ରମାଣ ଯଥା –

ମହାଭାଗବତୋ ଦୈତ୍ୟ ଦାନବକୁଳ ତୀର୍ଥୀ-କରଣ
ଶୀଳାଚରିତଃ ପ୍ରହ୍ଲାଦଃ । ଇତି ।

୫ ସ୍କ । ୧୮ । ଅ । ୭ ଗଦ୍ୟ ।

ଦୈତ୍ୟ ଦାନବକୁଳତୀର୍ଥୀକରଣ ଶୀଳାଚରିତଦୈତ୍ୟ ଦାନବ କୁଳମଣି । ଆଉ ଏକ ସ୍ଥଳ ଦେଖନ୍ତୁ ।

ରୂପେ ରୁଚିଲା ପୃଥୁ ଯେଣୁ
ଏହାର ଆରୁ ନାମ ତେଣୁ । ୪ । ସ୍କ ।୧୭ ଅ ।

ମୂଳଗ୍ରନ୍ଥରେ ଏହି କନ୍ୟାଙ୍କର ନାମ ଅର୍ଚ୍ଚି ବୋଲି ଲେଖାଅଛି । ଅପିଚ ଅନୁବାଦକ ତାହା ହିଁ ଲେଖିଥିଲେ । କିନ୍ତୁ ଅନୁଲେଖକ ଓ ଛାପାକାର ମହାଶୟ ସେହି ପଦଟିକୁ ସ୍ଥାନେ ଅରୁ ଅନ୍ୟତ୍ର ଆରୁ କରିଦେଇଅଛନ୍ତି । ଏହାର ମୌଳିକ ପ୍ରମାଣ ଯଥା –

ଇୟଂତୁ ସୁଦତୀ ଦେବୀ ଗୁଣ ଭୂଷଣ ଭୂଷଣା
ଅର୍ଚ୍ଚିର୍ନାମ ବରାରୋହା ପୃଥୁମେବାବରୁନ୍ଧତୀ ।

୪ ସ୍କ । ୧୫ ଅ । ୫ ଶ୍ଳୋ ।

ଛାପା ଓ କେତେକ ତାଳପତ୍ର ପୁସ୍ତକରେ ମଧ ବେନଙ୍କ ଚରିତ ସନ୍ନିଧାନରେ ତାହାଙ୍କର ନାମ ବହୁସ୍ଥଳେ ବେନୁ ବୋଲି ଲେଖାଅଛି । କେବଳ ଏତିକି ନୁହେଁ, ଏତାଦୃଶ

ଅଯଥା ନାମୋଲ୍ଲେଖ ଅନେକ ଚରିତ ସନ୍ଦର୍ଭମାନଙ୍କରେ ଦେଖିବାକୁ ମିଳେ । ସେ ସବୁ ଏକାଠି ରାଶୀକୃତ କରିବା ଅନାବଶ୍ୟକ ମନେକରୁଁ । ପାଠକ ମହାଶୟ ସ୍ଥାଳୀପୁଳାକ ନ୍ୟାୟରେ ଏତକରୁ ଅବଶ୍ୟ ଏଭଳି ଦୋଷରେ ସାର୍ବ୍ବତିକତା ମନୋନୀତ କରିବେ । ଶ୍ରୀମଦ୍ ଭାଗବତ ପରି ଅତ୍ୟନ୍ତ ଉପାଦେୟ ପୂଜନୀୟ ସଦ୍‌ଗ୍ରନ୍ଥ ପ୍ରତି ଏଭଳି ଅବିମୃଷ୍ୟକାରିତା ସହ ମୁଦ୍ରଣ-ଅତ୍ୟାଚାର ଓ ଉଚ୍ଛୃଙ୍ଖଳତା ନିତାନ୍ତ ଶୋଚନୀୟ ନୁହେଁ କି ?

(ଛ) ନନ୍ଦନବନ ଆଦିପରି । କଳ୍ପ ପାଦପ ବିରାଜନ୍ତି ।
ବିଭଙ୍ଗ ମିଥୁନ ବିଦିତ । ମତ୍ତ କୋକିଳ ଉନମତ ।

୮ ସ୍କ । ୧୪ ଅ ।

ଏ ସ୍ଥଳରେ ଛାପାକାର ପଦ୍ୟର ଅର୍ଥ ପ୍ରତି ଟିକିଏ ହେଲେ ବିଚାର ନ ରଖି ପନ୍ତି ଶବ୍ଦକୁ ପରି ଏବଂ ବିହଙ୍ଗ ଶବ୍ଦକୁ ବିଭଙ୍ଗ ଲେଖିଦେବା ଦ୍ୱାରା ପ୍ରକୃତାର୍ଥର ବିଭଙ୍ଗ କରିପକାଇ ଅଛନ୍ତି । ମୂଳ ପ୍ରମାଣ ଯଥା –

ରମ୍ୟାମୁପବନୋ୍ୟାଦାନୈଃ ଶ୍ରୀମଦ୍‌ଭିଃ ନନ୍ଦନାଦିଭିଃ ।
କୂଜଦ୍ ବିହଙ୍ଗ ମିଥୁନୈଃ ଗାୟନ୍ମତ୍ତମଧୁବ୍ରତୈଃ । (୧) ।

୮ ସ୍କ । ୧୫ ଅ । ୧୨ ଶ୍ଲୋ ।

(ଜ) (୧) କୁଳିଚାପକ୍ଷୀ ପତ୍ନୀମେଳେ । ବସି ଯେ ଥିଲା ବୃକ୍ଷଡାଳେ ।
ଆହାର ଦେଖି ଜାଲ ତଳେ । ପଶିଲା ଆହାର ବିକଳେ ।
(୨) ଏମନ୍ତ ବୃକ୍ଷ ଡାଳେ ଥାଇ । ବିକଳେ କୁଳିଚା କାନ୍ଦଇ ।

୭ ସ୍କ । ୨ ଅ ।

ଏହିଠାରେ ଛାପାକାର କୁଳିଙ୍ଗ ଶବ୍ଦକୁ କୁଳିଚା କରିଦେଇ ଅଛନ୍ତି । ମୌଳିକ ପ୍ରମାଣ ଯଥା–

କୁଳିଙ୍ଗ ମିଥୁନ ତତ୍ର ବିଚରତ୍ ସମଦୃଶ୍ୟତ ।
ତୟୋଃ କୁଳିଙ୍ଗୀ ସହସା ଲୁବ୍‌ଧକେନ ପ୍ରଲୋଭିତା × ×
ଏବଂ କୁଳିଙ୍ଗଂ ବିଲପନ୍ତମାରାଦ୍ ପ୍ରିୟା ବିଯୋଗାତୁରମଶ୍ରୁକଣ୍ଠଂ ।
ସ ଏବ ତଂଶାକୁନିକଃ ଶରେଣ ବିବ୍ୟାଧକାଳ ପ୍ରହିତୋ ବିଲୀନଃ ।

୭ ସ୍କ । ୧ ଅ । ୫୧ । ୫୬ ଶ୍ଲୋ ।

---

୧ ମୂଳ ଭାଗବତ ଅଷ୍ଟ ସ୍କନ୍ଧ ଅପେକ୍ଷା ଜଗନ୍ନାଥ ଦାସଙ୍କ ଭାଗବତର ଅଷ୍ଟମ ସ୍କନ୍ଧରେ ଗୋଟିଏ ଅଧ୍ୟାୟ ନ୍ୟୂନ ହୋଇଅଛି ।

(ଝ) ଗ୍ରନ୍ଥ ମଧ୍ୟରେ ଏକୈକଶଃ ପ୍ରସ୍ତାବମାନଙ୍କର ପ୍ରାରମ୍ଭରେ ଯେ ଯେ ସ୍ଥଳମାନଙ୍କରେ (ଏକବଚନାର୍ଥରେ) ଉବାଚ ଏବଂ (ବହୁବଚନାର୍ଥରେ) ଉଚୁଃ ପଦ ଦିଆଯାଇଅଛି, ତାର ପ୍ରଭେଦ ଛାପା ପୁସ୍ତକରେ ଆଉ ରହି ନାହିଁ। ପ୍ରାୟ ସର୍ବତ୍ର (ଉବାଚ) ପଦ କେବଳ ପ୍ରାକରଣିକ ଯଥାର୍ଥତାର ଅବାଚକରୂପେ ଦିଆଯାଇଅଛି। ସୁତରାଂ ଅନେକ ସ୍ଥଳରେ ଆଲୋ, ବୋଇଲେ କାଲୋ, ପରି ଅସଙ୍ଗତ ବିରୁଦ୍ଧ ପଦମାନ ପଡ଼ିଯାଇଅଛି। ସପ୍ତମସ୍କନ୍ଧ ଅଷ୍ଟମ ଅଧ୍ୟାୟରେ ଦେଖିବେ "ବୈତାଳିକା ଉଚୁ" ଏହାର ପରିବର୍ତ୍ତରେ "ଦେତ୍ୟାରି ଉବାଚ" ଏପରି ପ୍ରସ୍ତାବ ବିରୁଦ୍ଧ ଅନର୍ଥ ପଦ ନିହିତ ହୋଇ ଯାଇଅଛି। ପାଠକ ପ୍ରକୃତ ବ୍ୟୁତ୍ପନ୍ନ ହେଲେ ସୁଦ୍ଧା ଏପରି ସ୍ଥଳମାନଙ୍କରୁ କିପରି ଅବା କଅଣ ଯଥାର୍ଥତା ବୁଝିବାକୁ ପାରିବେ ? ଗ୍ରନ୍ଥ ଯେତେ ମହତ୍ ଯେତେ ପୂଜନୀୟ ହେଲେ ସୁଦ୍ଧା ଏତାଦୃଶ ଦୁରବସ୍ଥାରେ ଅବସ୍ଥିତ ହେଲେ ତା'ର ଗୌରବ ଅବା କିପରି ରକ୍ଷିତ ହୋଇପାରିବ ?

(ଟ) ବିପ୍ରଙ୍କ ବାକ୍ୟେ କ୍ଷୀରୀପାତ୍ର। କରେ ଘେନିଲା ନୃପନାଥ।
ଆଘ୍ରାଣ କରି ନାସା ଦ୍ୱାରେ। ଦେଲା ସେ ନିଜ ପତ୍ନୀକରେ।
ସେ ପୁଷ୍ପବନେ କ୍ଷୀରୀ ଆଣି। ରହି ଭୁଞ୍ଜିଲା ତା ଘରଣୀ।
ତକ୍ଷଣେ ସୁପବନ ଭାଗେ। ପୁତ୍ର ରହିଲା ତାର ଗର୍ଭେ।

ଏ ସ୍ଥଳରେ ଛାପାକାର ମହାଶୟ ପୁଂସବନ ଶବ୍ଦକୁ ପୁଷ୍ପବନ ଏବଂ ସୁପବନ ରୂପରେ ପରିଣତ କରିବା ଦ୍ୱାରା ପାଠକୁ ଅ(ପା)ର୍ଥ କରିପକାଇ ଅଛନ୍ତି। ମୌଳିକ ପ୍ରମାଣ ଯଥା –

ହିରଣ୍ମୟେନ ପାତ୍ରେଣ ସିଦ୍ଧମାଦାୟ ପାୟସଂ।
ସବିପ୍ରାନୁମତୋ ରାଜା ଗୃହିତ୍ୱାଞ୍ଜଳିନୋଦନଂ।
ଅବଘ୍ରାୟ ମୁଦାଯୁକ୍ତଃ ପ୍ରାଦାତ୍ ପତ୍ନ୍ୟା ଉଦାରଧୀଃ।
ସା ତତ୍ ପୁଂସବନଂ ରାଜ୍ଞୀ ପ୍ରାଶ୍ୟବୈପତ୍ୟୁରାଦଧେ।
ଗର୍ଭଂ କାଳ ଉପାବୃତ୍ତେ କୁମାରଂ ସୁଷୁବେଽପ୍ରଜା।

୪ ସ୍କ।୧୩ ଅ। ୩୬, ୩୭, ୩୮ ଶ୍ଳୋ।

(ଠ) ଆରମ୍ଭ କଲେ ବ୍ରହ୍ମବ୍ରତେ। ଶୁଯାଚୀ ସରସ୍ୱତୀ ତୀର୍ଥେ।

୪ ସ୍କ। ୨୧ ।ଅ

ଏଠାରେ ମୁଦ୍ରଣକାରକ ସେ ପ୍ରାଚୀ ପଦକୁ ଶୁଯାଚୀ କରିଦେଇ ଅନର୍ଥତା ଘଟାଇ ଅଛନ୍ତି । ମୌଳିକ ପ୍ରମାଣ ଯଥା :

ଅଥା ଦୀକ୍ଷିତ ରାଜାତୁ ହୟମେଧ ଶତେନ ସଃ ।
ବ୍ରହ୍ମାବର୍ତ୍ତେ ମନୋଃ କ୍ଷେତ୍ରେ ଯତ୍ର ପ୍ରାଚୀ ସରସ୍ୱତୀ ।

୪ ସ୍କ । ୧୯ ଅ (୧)

(ଡ) ସେ କନ୍ୟା ନାମ କ୍ଷମାରିସା । ପଦ୍ମଲୋଚନୀ ପିକ ଭାଷା ।

୪ ସ୍କ । ୩୦ ଅ ।

ଯଥାର୍ଥତଃ ମୂଳଗ୍ରନ୍ଥରେ ଯେପରି ଏହି କନ୍ୟାଟି ମାରିଷା ନାମରେ ଅଭିହିତ । ଠିକ୍ ସେହିପରି ଦାସ ମହୋଦୟ ଅନୁବାଦନରେ (ସେ କନ୍ୟା ନାମ ଯେ ମାରିଷା) ଏଭଳି ପଦବିନ୍ୟାସରେ ତାହା ହିଁ ଲେଖିଥିବା କେତେକ ତାଳପତ୍ର ପୁସ୍ତକରୁ ପ୍ରମାଣ ମିଳୁଅଛି । କିନ୍ତୁ କେତେକ ଅନୁଲେଖକଙ୍କ ମତି-ଦୁର୍ବିଧତାରେ କଳଂକିତ ଅନ୍ୟାନ୍ୟ ତାଳପତ୍ର ପୁସ୍ତକରେ କେବଳ ଆସ୍ଥାରଖି ଛାପାକାର ମୁଦ୍ରିତ ପୁସ୍ତକକୁ ଦୂଷିତ କରିଦେଇ ଅଛନ୍ତି । ପ୍ରଥମେ ଏ ସ୍ଥଳରେ ଅନୁଲେଖକ କେବଳ କବି ନିହିତ ଯ କାରକୁ ରୂପ ସାଦୃଶ୍ୟରୁ କ୍ଷକାର ମନେକରି ଏପରି ଦୂଷିତ କରି ଦେଇଥିଲେ ବୋଲି ପ୍ରତୀତି ହୁଏ । ମୂଳ ପ୍ରମାଣ ଯଥା –

ତେ ଚ ବ୍ରହ୍ମଣ ଆଦେଶାଦ୍ ମାରୀଷାମୁପଯେମିରେ ।

୪ ସ୍କ । ୩୦ ଅ । ୪୮ । ଶ୍ଳୋ ।

(ଢ) ଯେହ୍ନେ ଜୀବନ ପ୍ରାଣ ପାଇ । ସହସା ଉଠିଲେ ଭୁଷାଇ ।
ତ୍ରିଦଶ୍ୟ ଆଦି ଯେତେ ଥିଲେ । ସତ୍ୱରେ ସକଳେ ଉଠିଲେ ।

୪ ସ୍କ ।୨୨ ଅ ।

ଏହି ପଦ୍ୟ ଦ୍ୱୟରୁ ପ୍ରଥମଟିରେ ଭୁଷାଇ ଦ୍ୱିତୀୟରେ ତ୍ରିଦଶ୍ୟ ପଦ ନିହିତ ହୋଇଯାଇଥିବାରୁ ଅର୍ଥାବଗତିର ଅଧୋଗତି ଘଟିଅଛି । ଏଭଳି ଅର୍ଥାବଗତି-ବିଘାତ ସ୍ଥଳମାନଙ୍କରେ ଛାପାକାର ମହାଶୟ ଅବଶ୍ୟ ଟିକିଏ ଅତିରିକ୍ତ ମନୋଯୋଗ କରିଥିଲେ କବିଙ୍କ ପ୍ରଦତ୍ତ ଯଥାର୍ଥ ରୂପକୁ ଉନ୍ନୀତ କରି ପାରିଥାଆନ୍ତେ । ବୋଧହୁଏ ଅନୁବାଦକ ମହୋଦୟ ଏ ସ୍ଥଳରେ ଲେଖିଥିଲେ ଯେ –

---

(୧) ମୂଳ ଭାଗବତ ଅପେକ୍ଷା ଏହି ଭାଗବତର କେତେକ ସ୍କନ୍ଧରେ ଅଧ୍ୟାୟ ବିଭାଗରେ ତାରତମ୍ୟ ରହିଅଛି ।

ଯେହ୍ନେ ଜୀବନ ପ୍ରାଣ ପାଇ । ସହସା ଉଠିଲେ ଭୂସାଇଁ ।
ସଦସ୍ୟ ଆଦି ଯେତେ ଥିଲେ । ସତ୍ୱରେ ସକଳେ ଉଠିଲେ ।

ଅନୁମାନ ହୁଏ ପ୍ରଥମତଃ ଅନୁଲେଖକମାନଙ୍କ ଲେଖାରେ ଭୂସାଇଁ ପଦ ଭୂଷାଇ ଆଉ ସଦସ୍ୟ ପଦ ତ୍ରିଦସ୍ୟ ହୋଇ ଯାଇଥିଲା । ତାପରେ ଛାପାକାର ମହାଶୟ ବିଚାରଶୂନ୍ୟତା-ବଶରୁ ତାହା ହିଁ ଅଙ୍କିତ କରି ଯାଇଅଛନ୍ତି । ଅନ୍ୟାନ୍ୟ ସ୍ଥାନମାନଙ୍କ କଥା ଥାଉ, କେବଳ ଏହି ଅଧ୍ୟାୟରେ ଏଭଳି ଅନେକ ସ୍ଥଳ ଏତାଦୃଶ ଦୋଷ ଯୋଗରୁ ପ୍ରାକରଣିକ ଅର୍ଥ ଏବଂ ଅନ୍ୱୟ କ୍ରମରୁ ବିଚ୍ଛିନ୍ନ ହୋଇ ପଡ଼ିଅଛି । ଅନୁବାଦନରେ ଯେ କବିଦତ୍ତ ଆକୃତି ତାହା ଅନେକ ସ୍ଥଳରୁ ଅନ୍ତର୍ହିତ ହୋଇଯାଇଅଛି । ସୁତରାଂ ଗ୍ରନ୍ଥ ମଧ୍ୟରେ ଯେତେ ସ୍ଥଳରେ ପୂର୍ବଜନ୍ମାଭିଜ୍ଞ, ଏହି ଅର୍ଥବୋଧକ ଜାତିସ୍ମର ଶବ୍ଦର ବ୍ୟବହାର ହୋଇଅଛି, ସେ ସବୁ ଛାପା ପୁସ୍ତକରେ ଜାତୀଶ୍ୱର ରୂପରେ ପରିଣତ ହୋଇ ଯାଇଅଛି । ଦର୍ଶିତ ପଦ୍ୟର ମୂଳ ପ୍ରମାଣ : —

ତଦ୍ଦର୍ଶନୋଦ୍‌ଗତାନ୍ ପ୍ରାଣାନ୍ ପ୍ରତ୍ୟାଦିତ୍ସୁରିବୋତ୍‌ଥିତଃ ।
ସ ସଦସ୍ୟାନୁଗୋବୈନ୍ୟଇନ୍ଦ୍ରିୟେଶୋଗୁଣାଦିବ ।

୪ ସ୍କ । ୨୨ ଅ । ୩ ଶ୍ଳୋ ।

(ଣ) ଅହିଂସା ଧର୍ମ୍ମେ ଯେବାଥାନ୍ତି । ଏ ବ୍ରହ୍ମଜ୍ଞାନ ସେ ଲଭନ୍ତି ।
ପରମହଂସ ଚୌର୍ଯ୍ୟ ବିଧି । ତପସ୍ୟା ଶମଦମ ରାଧି ।

× ×　　× ×　　× ×

ବୋଧହୁଏ ଅତ୍ରତ୍ୟ ଦ୍ୱିତୀୟ ପଦ୍ୟଟିକୁ ଅନୁର୍ବାଦକ ମହୋଦୟ ନିମ୍ନରେ ଅଙ୍କିତ ଆକାରରେ ନିହିତ କରିଥିଲେ । ଯଥା —

ପରମହଂସ ଚର୍ଯ୍ୟାବିଧି । ତପସ୍ୟା ଶମ ଦମ ସାଧି ।
ଏହାର ମୌଳିକ ପ୍ରମାଣ ଯଥା
ଅହିଂସୟା ପରମହଂସ୍ୟ ଚର୍ଯ୍ୟୟା ସ୍ମୃତ୍ୟା ମୁକୁନ୍ଦାଚରିତାଗ୍ର୍ୟସୀଧୁନା ।

୪ ସ୍କ । ୨୨ ଅ ।୨୪ ଶ୍ଳୋ ।

(ତ) ଅସୁର ବୃତ ଧରି ରାୟେ । କଠିନ ହୃଦୟ ନିର୍ଦ୍ଦୟେ ।।
ନାହିଁ ତା ଅନୁଗ୍ରହ ଚିତ୍ତେ । ମୃଗୟା ଛଳେ ବିମୋହିତେ ।।
ଇଷିତ ବାଣେ ସେ ରାଜନ । ବଧିଲେ ବନ-ପଶୁମାନ ।।

୪ ସ୍କ । ୨୬ ଅ ।

ଅତ୍ରତ୍ୟ କବିଦତ୍ତ ବୃତ୍ତି ନିଶିତ ଶବ୍ଦଦ୍ୱୟ ବୃତ ଓ ଇଷିତ ରୂପରେ ବିପରିଣତ ହୋଇଯାଇଥିବାରୁ ପ୍ରକୃତ ଅର୍ଥ ପ୍ରତିପନ୍ନ ହୋଇପାରୁ ନାହିଁ ।

ଏହାର ମୌଳିକ ପ୍ରମାଣ ଯଥା –

ଆସୁରୀଂ ବୃତ୍ତି ମାଶ୍ରିତ୍ୟ ଘୋରାତ୍ମା ନିରନୁଗ୍ରହଃ ।
ନ୍ୟହନନ୍ନିଶିତୈର୍ବାଣୈ ବିନେଷ୍ୱୁ ବନଗୋଚରାନ୍ ।

୪ ସ୍କ । ୨୬ ଅ । ୫ ଶ୍ଲୋ ।

(ଥ) ସେ କାମ ଭୋଗେଣ ନୃପତି । ଫୁଟିଣ ଶ୍ରମ ହେଲା ଅତି ।
ଉପାଧି କରି ପତ୍ନୀକର । ହାରି ଶୋଇଲା ନୃପବର ।

୪ ସ୍କ । ୨୬ ଅ । ୫ ଶ୍ଲୋ ।

ଏହିଠାରେ ମଧ କବିଦତ୍ତ ଉପଧି ପଦଟି ଅନୁଲେଖକଙ୍କ ଲେଖାରେ ଉପାଧିରେ ପରିଣତ ହୋଇଯାଇଥିବାରୁ ଅର୍ଥର ଅସାଙ୍ଗତ୍ୟ ସହ ପାଠକଙ୍କର ମାନସିକ ଆଧି ଜନ୍ମାଇ ଦେଉଅଛି ।

ମୌଳିକ ପ୍ରମାଣ ଯଥା –

ଶୟାନ ଉନ୍ନଦ୍ଧ ମଦୋମହାମନା ମହାର୍ହତଳ୍ପେ ମହିଷୀ ଭୁଜୋପଧିଃ

୪ ସ୍କ । ୨୭ ଅ । ୪ ଶ୍ଲୋ ।

(ଦ) କବି ମହୋଦୟ ଅନେକ ସ୍ଥଳରେ ମୂଳ ଗ୍ରନ୍ଥରେ ଅନୁକ୍ତ ସତ୍ତ୍ୱେ ସୁଦ୍ଧା ନିଜର ଅଭୀଷ୍ଟ ଓ ଆରାଧ ଦେବତା ଗଣେଶାଦିଙ୍କର ପ୍ରାର୍ଥନା ମୂଳକ ସ୍ତୁତିପାଠ ଲେଖିବା ଆପାତତଃ ମନସ୍ଥ କରିଥିବାରୁ ଚତୁର୍ଥ ସ୍କନ୍ଧର ଧ୍ରୁବ ଚରିତ ପ୍ରାରମ୍ଭରେ ବିଘ୍ନାଦ୍ରି ଭେଦ-ଶତଧାର-ଧୁରନ୍ଧର ଗଣେଶଙ୍କୁ ବୋଧହୁଏ ଏହି ଶ୍ଲୋକର ଅନୁବାଦନରେ ସ୍ତୁତି କରିଅଛନ୍ତି ।

"ଅନିଶମଦବିଘୁର୍ଣ୍ଣଂ ସ୍ୱର୍ଣ୍ଣ ବର୍ଣ୍ଣଂ ସୁକର୍ଣ୍ଣଂ ।
ଶୃଣି ମଣି ବରପାଶା ଭୀତ୍ୟଭୀଷ୍ଟଂ ଦଧାନଂ ॥

ଦନୁଜ ମନୁଜ ଦେବୈଃ ସେବନୀୟାଂ ଘ୍ରିଯୁଗ୍ମଂ ।
ବିମଳ କମଳ ମଧ୍ୟାସୀନ ମୀଡ଼େ ଗଣେଶଂ ।

କିନ୍ତୁ ବଡ଼ ଦୁଃଖର କଥା, କବି ଚିତ୍ରିତ ପଦ ବିନ୍ୟାସ ଏ ସ୍ଥଳେ ଅପାର୍ଥ ଓ ବିପରିତାର୍ଥ ହୋଇ ପଡ଼ିଅଛି । ଏହାର ଅନ୍ୟାନ୍ୟ ସ୍ଥଳ ଯାହାହେଉ, "ଅମ୍ବରୀଶ ଗିରି ସମୁଦ୍ର କଳେବର" ଏପରି ସ୍ଥଳର ଅର୍ଥ ବା କଣ ? ତାହା ପ୍ରାକରଣିକ ବା ପୂର୍ବାପର

ସନ୍ଦର୍ଭରେ ଲେଶତଃ ଅନ୍ୱିତ ଓ ସଂଗତ ହୋଇପାରୁଅଛି କି ନାହିଁ ? ଛାପାକାର ମହାଶୟ ଏହା ମଧ ଥରେ ବିଚାର ନ କରି ବାତୁଳ ପ୍ରଳାପ ନ୍ୟାୟ ଖାଲି ଗୁଡ଼ାଏ ଅପାର୍ଥ ଅକ୍ଷରମାନ, ବିନ୍ୟାସ କରିଯିବା ବଡ଼ ଅନ୍ୟାୟର କଥା ନୁହେଁ କି ? ପାଠକମାନଙ୍କୁ ଏପରି ବହୁ ସ୍ଥଳରେ ବଞ୍ଚନା କରି ସ୍ୱୋଦର-ପୂରକ-ତାର ସମ୍ପାଦନରେ ଯେ କୌଣସି ମତରେ ସଫଳକାମ ହେବାକୁ ଯିବା ବଡ଼ ପାପର କଥା ନୁହେଁ କି ? ଅନୁମାନତଃ ଆମ୍ଭମାନଙ୍କ ଦେଶରେ ଏହି ଭାଗବତ ଗ୍ରନ୍ଥର ବିକ୍ରୟ ଦ୍ୱାରା ପ୍ରତ୍ୟହ ବିକ୍ରେତାମାନଙ୍କର ସହସ୍ରାଧିକ ଟଙ୍କା ଆଦାୟ ହେଉଅଛି । ଏତେଗୁଡ଼ାଏ ଧନ ସହଜେ ପାଉଥିବା ସ୍ଥଳେ ଛାପାକାରମାନେ ଉପଯୁକ୍ତ ପଣ୍ଡିତମାନଙ୍କ ଦ୍ୱାରା ଗ୍ରନ୍ଥଟିକୁ ପରିଶୁଦ୍ଧ କରାଇ ନ ନେବା ବଡ଼ ଅନ୍ୟାୟର କଥା ନୁହେଁ ତ ଆଉ କ'ଣ ?

ଶଂସିତ ଶ୍ଳୋକର ଅନୁବାଦିତ ପଂକ୍ତି ଛାପାରେ ଏହି ବିକୃତ ଆକାରରେ ଲିଖିତ ଅଛି ।

ନମାମି ଅମ୍ବିକା ସୁତଚରଣ ପଙ୍କଜ ।
ସର୍ବ ଦେବଙ୍କ ମଧେ ଯା ନାମ ବିଘ୍ନରାଜ ॥
ଅମ୍ବରୀଶ ଗିରି ସମୁଦ୍ରର କଳେବର ।
କିରୀଟ କୁଣ୍ଡଳ କଣ୍ଠେ ହାର ମନୋହର ॥
ଭୃଙ୍ଗ ବକ୍ଷସ୍ଥଳ ଦୀର୍ଘଶୋଭା ଭୁଜଗିରି ।
ଅଜେୟ ଅମୃତ ଶୁଣି ପାଶାଙ୍କୁଶ ଧରି ॥ ଇତ୍ୟାଦି ॥

ଅଭିଜ୍ଞ ପାଠକଗଣ ! ଦୋଷଦୁଷ୍ଟ ସ୍ଥଳମାନ ଆଉ କେତେଗୁଡ଼ାଏ ପ୍ରଦର୍ଶିତ କରିବୁଁ ? ସଂକ୍ଷେପତଃ ଉଲ୍ଲେଖ କରୁ କରୁ ଏ ଭାଗଟି ବଳେ କିଛି ଦୀର୍ଘ ହୋଇଗଲାଣି । ସୁତରାଂ ବିସ୍ତୃତି-ଭୀତ କେତେକ ପାଠକମାନଙ୍କଠାରୁ ଅଯଥା ବିରାଗ ଜନିତ ଭୀତି ଏଣେ ହୃଦୟକୁ ଦବାଇ ଅଛି । ଏପରି ଦୋଷଦୁଷ୍ଟ ସ୍ଥଳଗୁଡ଼ିଏ ପ୍ରଦର୍ଶିତ କରିଦେଇଥିଲେ ସମୟେ ଛାପାକାରମାନଙ୍କର ପୁନଃ ସଂସ୍କରଣରେ ଅପିଚ ଅନ୍ୟାନ୍ୟମାନଙ୍କର ମଧ ଉପକାରଜନକ ହୁଅନ୍ତା ସତ୍ୟ, ତଥାପି କଣ କରିବୁ ? ବାହୁଲ୍ୟ ଭୟରୁ ବିରତ ହେଲୁ । ପାଠକେ ! ଆପଣମାନେ ଅବଶ୍ୟ ଏତକରୁ ବୁଝିପାରିବେ ଯେ ପ୍ରତ୍ୟେକ ସ୍କନ୍ଧର ପ୍ରତ୍ୟେକ ଅଧ୍ୟାୟର କିଛି ନା କିଛି ପାଠ ଏତାଦୃଶ ଦୋଷ ଜାଲରେ ଦୂଷିତ ହୋଇପଡ଼ିଅଛି । କବିଙ୍କର ପଦବିନ୍ୟାସ ବହୁସ୍ଥଳେ ବିଲୁପ୍ତ ହୋଇଯାଇଅଛି । ଏସବୁ ଛଡ଼ା ଅନୁଲେଖକ ଓ ଛାପାକାରମାନେ କେତେଗୁଡ଼ାଏ ସ୍ୱକପୋଳକଳ୍ପିତ ଦୋଷ ମଧ ଏଥିମଧରେ ଯୋଗ କରିଦେଇଥିବାର ଜଣାଯାଏ । ତାହାର ପ୍ରମାଣ ସ୍ୱରୂପ ଗୋଟିଏ ସ୍ଥଳ ମାତ୍ର ପ୍ରଦର୍ଶନ କରି ଏହି ଉପକ୍ରମଣିକା ଭାଗ ଶେଷ କରୁଅଛୁଁ ।

ନିରତେ ବିଳଦ୍ୱାରେ ଥାଇ । କୃଷ୍ଣ ଆଗମେ ମନ ଦେଇ ।
ବଞ୍ଚିଲେ ଦ୍ୱାଦଶ ବରଷ । ନ ଦେଖି ହୋଇଲେ ନିରାଶ ।
୧୦ ସ୍କ । ୬୦ ଅ ।

ଏ ସ୍ଥଳରେ ବିଳ ପ୍ରବିଷ୍ଟ ଶ୍ରୀକୃଷ୍ଣଙ୍କୁ ଅନୁଯାତ୍ରୀମାନେ ଦ୍ୱାଦଶ ଦିବସ ପର୍ଯ୍ୟନ୍ତ ବିଳଦ୍ୱାରରେ ଅପେକ୍ଷାରେ ରହିଥିବାର କଥାକୁ ମୂଳାନୁମତରେ ଅନୁବାଦକ ମହୋଦୟ ଦ୍ୱାଦଶ ଦିବସ ପଦଯୋଗେ ଅନୁବାଦ କରିଥିଲେ । ଛାପାକାର ମହାଶୟ ଦ୍ୱାଦଶ ବର୍ଷ ପର୍ଯ୍ୟନ୍ତ ଏ ସ୍ଥଳରେ ଅପେକ୍ଷା କରଣ ସମ୍ଭବ କି ଅସମ୍ଭବ, ଟିକିଏ ବିଚାର ନ କରି ଦିବସ ଶବ୍ଦକୁ ବରଷ ଶବ୍ଦରେ ପରିଣତ କରି ପକାଇ ଅଛନ୍ତି । ମୌଳିକ ପ୍ରମାଣ ଯଥା

ଅଦୃଷ୍ଟ୍ୱା ନିର୍ଗମଂ ଶୌରେଃ ପ୍ରବିଷ୍ଟସ୍ୟ ବିଳଂଜନାଃ ।
ପ୍ରତୀକ୍ଷ ଦ୍ୱାଦଶାହନି ଦୁଃଖିତାଃ ସ୍ୱପୁରଂ ଯଯୁଃ ।।
ଉପତସ୍ଥୁର୍ମହାମାୟାଂ ଦୁର୍ଗାଂ କୃଷ୍ଣୋପଲବ୍‌ଧୟେ ।
୧୦ ସ୍କ । ୫୬ ଅ । ୩୩ ଶ୍ଳୋ । (*)

ଅତଃପର ଏହି ଭାଗବତ ସମାଲୋଚନା ପ୍ରବନ୍ଧକୁ ପ୍ରଧାନତଃ ତିନିଗୋଟି ସ୍କନ୍ଧରେ ବିଭକ୍ତ କରି ତଦୀୟ ଯଥାଯଥ ବିଚାରରେ ପ୍ରବୃତ୍ତ ହେଉଅଛୁଁ । ତଥାପି ଆପାତତଃ ସଂକଳ୍ପ କରିଅଛୁଁ ଯେ ବକ୍ଷମାଣ ବିଷୟସବୁ ବୃଥା ବାକ୍ୟରେ ଅଯଥା ପଲ୍ଲବିତ ନ କରି, ଯେତେଦୂର ହୋଇପାରେ, ସଂକ୍ଷିପ୍ତ ଲେଖାରେ ବିଚାର କରିନେବୁ । ଏଥିରେ ଯଥାକ୍ରମେ ବିଷୟ ସନ୍ନିଧାନ, ଭାଷା ଓ ସାହିତ୍ୟ ବିଚାର ଏବଂ କବିଙ୍କର ପରିଚୟ ପ୍ରଦତ୍ତ ହେବ । ପ୍ରଥମତଃ ବିଷୟ ସନ୍ନିଧାନର ମହତ୍ତରତା ବହୁ ବିସ୍ତୃତତାର ବିବକ୍ଷାରେ ତାହାକୁ ଦୁଇ ଭାଗରେ ବିଭକ୍ତ କରି ଅଛୁଁ । ତାର ପ୍ରଥମ ଭାଗଟି ଅଧ୍ୟାୟ ବିମର୍ଶ, ଦ୍ୱିତୀୟଟି ଅନୁବାଦ ବିମର୍ଶ ନାମରେ ଅଭିହିତ । ଏତଦୀୟ ପରମାର୍ଥତାର ଅବଗତି ସକାଶେ ଯେତେଦୂର ପ୍ରଗାଢ଼ ଅନୁସନ୍ଧାନ ଓ ପରିଶୀଳନ କରିବାରେ ପାରୁଁ, ସେଥିରେ କିଛି ମାତ୍ର ଅବହେଳା ବା ତ୍ରୁଟି କରି ନାହୁଁ । ତତ୍ରାପି ଯଦିଚ କୁତ୍ରାପି ପ୍ରମାଦ ବା ଭ୍ରମ ବଶତଃ ଦୋଷ ବା ତ୍ରୁଟି ପରିଲକ୍ଷିତ ହୁଏ, ତେବେ ସହୃଦୟ ଭାଗବତ ଭକ୍ତ ମହୋଦୟମାନଙ୍କୁ ବିନୀତ ପ୍ରାର୍ଥନା କରୁଁ ଯେ, ତାହା କ୍ଷନ୍ତବ୍ୟ ମନେକରି ସ୍ୱକୀୟ ନିସର୍ଗ-ସୁଲଭ- ଦୟା- ପ୍ରବଣତା ପୂର୍ବକ ଜଣାଇଦେଇ ଆମ୍ଭମାନଙ୍କୁ ଉପକୃତ କରିବେଁ ।

---

(*) ମୂଳ ଏବଂ ଜଗନ୍ନାଥ ଦାସ ଭାଗବତରେ କେତେକ ସ୍କନ୍ଧର ଅଧ୍ୟାୟ ବିଭାଜନରେ ନ୍ୟୂନାଧିକତା ରହିଅଛି ।

ପବିତ୍ରତମ ଶ୍ରୀମଦ୍ ଭାଗବତ ଗ୍ରନ୍ଥର ଅଧ୍ୟାୟ ବିମର୍ଶ ଯେପରି ଅବିମୃଶ୍ୟକାରିତା କଳଙ୍କରେ କଳଙ୍କିତ ନ ହୁଏ, ସେଥିପାଇଁ ଲେଖକ ଅତି ସାବଧାନତା ପୂର୍ବକ ଏକତାନ ରହି ବିଚାର୍ଯ୍ୟ ଗ୍ରନ୍ଥର ବହୁ ତାଳପତ୍ର ଓ ମୁଦ୍ରିତ ପୁସ୍ତକମାନଙ୍କ ସଙ୍ଗେ ସଙ୍ଗେ ଓଡ଼ିଆରେ ଅନୁବାଦିତ ପଣ୍ଡିତ ଦୀନବନ୍ଧୁ ଖାଡ଼ଙ୍ଗା ମହାଶୟଙ୍କ ପ୍ରଣୀତ ଭାଗବତ, ଓଡ଼ିଆ ଲିପିରେ ଲିଖିତ (ସଂସ୍କୃତ) ମୂଳଗ୍ରନ୍ଥ ଏବଂ ତ୍ରୈଲଙ୍ଗାକ୍ଷରରେ ମୁଦ୍ରିତ, ଆଉ ଦେବନାରାକ୍ଷରରେ ମୁଦ୍ରିତ ବହୁ ସ୍ଥାନର ବହୁ (ସଂସ୍କୃତ) ପୁସ୍ତକମାନ ଦେଖି ଦେଖି ପରିଶୀଳନ କରିବାରେ ତ୍ରୁଟି କରି ନାହିଁ । ଭାବିଥିଲୁ, ଶ୍ରୀମାନ୍ ଜଗନ୍ନାଥ ଦାସ ମହୋଦୟ ଗ୍ରନ୍ଥାରମ୍ଭ ପ୍ରାରମ୍ଭରୁ 'ଜନ୍ମାଦ୍ୟସ୍ୟ ଯତୋ'– ଏହି ଶ୍ଳୋକର ଅନୁବାଦ କରିବାରେ ପ୍ରବୃତ୍ତ ହେଉଁ ହେଉଁ ପ୍ରଥମତଃ ଶ୍ରୀ ନୃସିଂହଦେବଙ୍କ ବନ୍ଦନା ପାଠ ତ ଲେଖିଅଛନ୍ତି, ତେବେ ନୃସିଂହୋପାସକ ଶ୍ରୀଶ୍ରୀଧର ସ୍ୱାମୀଙ୍କ ପ୍ରଦର୍ଶିତ ପାଠ ପ୍ରଣାଳୀର ଅନୁଗତ ହୋଇ ଶ୍ରୀମଦ୍ ଭାଗବତର ସମଗ୍ର ଅଂଶର ଭାଷାନ୍ତରୀକରଣରେ ତଦୀୟ କ୍ରମ– ସୌଷ୍ଠବକୁ କେବଳ ଅନୁସରଣ କରିଥିବେ; ଅର୍ଥାତ୍ ଯାହାକି ଏହି ଗ୍ରନ୍ଥର ବିଜୟଧ୍ୱଜୀୟ, ବୀରରାଘବୀୟ ଓ ଶ୍ରୀଧରୀୟ ନାମରେ ନାମିତ ତ୍ରିତୟ ପାଠକ୍ରମ ପ୍ରଚଳିତ ଅଛି, ସେଥିମଧ୍ୟରୁ ଏ ମହାଶୟ ଶ୍ରୀଧରୀୟ କ୍ରମପାଠକୁ ଅନୁସରି ଅନୁବାଦନରେ ପ୍ରବୃତ୍ତ ହୋଇଥିବେ । କିନ୍ତୁ ଏକ୍ଷଣି ବୁଝିପାରି ଅଛୁଁ ଯେ ସେହି କ୍ରମ ବା ସେହି ପାଠ ଏହାଙ୍କର ସମ୍ପୂର୍ଣ୍ଣତଃ ଅନୁସୃତ ନୁହେଁ । କାରଣ ଦେଖିବେ, ଶ୍ରୀଧରୀୟ ପାଠର ଅଧ୍ୟାୟ ବିରାମ ଏହାଙ୍କ ଗ୍ରନ୍ଥ ଅପେକ୍ଷା ଅନେକତ୍ର ଅନ୍ୟପ୍ରକାର । ଶ୍ରୀମଦ୍ ଭାଗବତ ଗ୍ରନ୍ଥ ଖଣ୍ଡିକ ସମଗ୍ର ହିନ୍ଦୁ ଜାତିର ଗୃହ ଦେବତା ତୁଲ୍ୟ ନିତ୍ୟ ଆରାଧ୍ୟ ଓ ଆଦରଣୀୟ; ଏହା ସମସ୍ତେ ଅକୁଣ୍ଠ ହୃଦୟରେ ବିଶ୍ୱାସ କରିବେ । ଲୋକରେ ଯେପରି ଭକ୍ତିଜନ ନିଜର ସମାରାଧ୍ୟ ଦେବତାଙ୍କୁ ସ୍ୱକୀୟ ଭକ୍ତି ଓ ଅଭିରୁଚି ଅନୁପାତରେ ଦୈନନ୍ଦିନ ବା ସାମୟିକ ସେବାରେ ଅଭିମତ ସାଜସଜ୍ଜାରେ ଅଭିନବ କମନୀୟ ବେଶରେ ସଜାଇ ଥାଆନ୍ତି, ଭାଗବତ ଭକ୍ତମାନେ ମଧ୍ୟ ଏହି ସମର୍ଚ୍ଚନୀୟ ଗ୍ରନ୍ଥଟିକୁ ଅଧ୍ୟାୟ ସାଜସଜ୍ଜାରେ ସେହିପରି କରିଅଛନ୍ତି ।

ଶ୍ରୀମଦ୍ ଭାଗବତାଭିଧଃ ସୁରତରୁସ୍ତାରାଙ୍କୁରସଜ୍ଜନିଃ ।
ସ୍କନ୍ଧୈର୍ଦ୍ୱାଦଶଭିସ୍ତତଃ ପ୍ରବିସତ୍– ଭକ୍ତ୍ୟାଳବାଳୋଦୟଃ ।।
ଦ୍ୱାତ୍ରିଂଶଦ୍ ତ୍ରିଶତଂ ଚ ଯସ୍ୟ ବିଳସଦ୍ ଶାଖାଃ ସହସ୍ରାଣ୍ୟଳଂ ।
ପର୍ଣାଣ୍ୟଷ୍ଟ ଦଶେଷ୍ଟ ଜ୍ୟୋତିସୁଲଭୋ ବର୍ବର୍ତ୍ତି ସର୍ବୋପରି ।।

ଶ୍ରୀମଦ୍ ଭାଗବତ ଗ୍ରନ୍ଥର ସଂଖ୍ୟାଦିର ପରିଚାୟକ ଓ ମହିମା-ବିଧାୟକ ଏହି ଶ୍ଳୋକଟି ଆମ୍ଭମାନଙ୍କ ଦେଶରେ ପ୍ରାୟ ସର୍ବତ୍ର ପ୍ରଚଳିତ ଅଛି । ତାଳପତ୍ରରେ ଲିଖିତ

ମୂଳ ସଂସ୍କୃତ ଓ ଅନୁବାଦିତ ଗ୍ରନ୍ଥମାନଙ୍କର ସର୍ବାଦ୍ୟ ପୃଷ୍ଠାରେ ଲେଖା ଅଛି, ବହୁ ଅଭିଜ୍ଞମାନଙ୍କ ମୁଖରୁ ଶୁଣାଯାଉଅଛି, ସୁତରାଂ ଓଡ଼ିଆରେ ମୁଦ୍ରିତ ନାନା ସ୍ଥାନରୁ ପ୍ରକାଶିତ ଏହି ଭାଗବତ ଗ୍ରନ୍ଥର ପ୍ରସ୍ତାବନା ବା ଅବତରଣିକା ସ୍ଥଳେ ସୁଦ୍ଧା ଏହା ମୁଦ୍ରିତ ଅଛି; ତଦପି ଜଣାଯାଏ ଯେ କୌଣସି ମୁଦ୍ରଣକାର ମହାଶୟଙ୍କର ପ୍ରଜ୍ଞାନ ଦୃଷ୍ଟି କିମ୍ବା ପ୍ରବେକ ବିବେକତା ଏଥିପ୍ରତି ଆକୃଷ୍ଟ ହୋଇନାହିଁ । କାରଣ ଯେଉଁ ମହାଶୟଙ୍କ ଦ୍ୱାରା ମୁଦ୍ରିତ ଗ୍ରନ୍ଥର ସର୍ବାଦିମ ସ୍ଥାନରେ ଏହି ଅନବଦ୍ୟ ପଦ୍ୟଟି ମୁଦ୍ରିତ ଅଛି ତାହାଙ୍କ ପ୍ରଚାରିତ ମୁଦ୍ରିତ ଗ୍ରନ୍ଥର ମଧ ଅଧ୍ୟାୟ ଗଣନା ସଂଖ୍ୟା ତଦନୁଗତ ହୋଇପାରି ନାହିଁ, କିମ୍ବା କରାଯାଇ ପାରି ନାହିଁ । ଶଂସିତ ଶ୍ଲୋକରେ ଶ୍ରୀମଦ୍ ଭାଗବତଟି ୩୩୨ ତିନିଶତ ବତିଶି ଅଧ୍ୟାୟରେ ସଙ୍କଳିତ ଥିବା ଉକ୍ତ ଅଛି । ଏହି ଦେଶ ମଧରେ ଏହି ଭାଗବତିଆ ଉପାସକ ଭକ୍ତ ଆଉ କେତେକ ପାଠକମାନଙ୍କ ମୁଖରୁ ମଧ ଏହାହିଁ ଶୁଣାଯାଇଥାଏ; କିନ୍ତୁ ଏକୈକଶଃ ଗଣନା କରିନେଲେ ଜଗନ୍ନାଥ ଦାସଙ୍କ ଭାଗବତର ଅଧ୍ୟାୟ ସଂଖ୍ୟା ଛାପା ପୁସ୍ତକମାନଙ୍କରେ ୩୪୧ ଏକ ଚତ୍ୱାରିଂଶୋତ୍ତର ତ୍ରିଶତ ତାଳପତ୍ର ପୁସ୍ତକମାନଙ୍କରେ ୩୪୫ ପଞ୍ଚଚତ୍ୱାରିଂଶୋତ୍ତର ତ୍ରିଶତ ଥିବା ଦେଖାଯାଏ । ଅତଏବ ବୋଲିବାକୁ ହେବ ଯେ ପ୍ରୋକ୍ତ ପ୍ରାମାଣିକ ଶ୍ଲୋକର ନିୟମ ଅପେକ୍ଷା ଏହାର ଛାପା ପୁସ୍ତକ ମତରେ ନଅଗୋଟି ଅଧ୍ୟାୟ, ତାଳପତ୍ର ପୁସ୍ତକ ମତରେ ତେରଗୋଟି ଅଧ୍ୟାୟର ସଂଖ୍ୟା ବଢ଼ିଅଛି, ଏହି ଯେ ବୈଷମ୍ୟ କେବଳ ଜଗନ୍ନାଥ ଦାସଙ୍କ ଭାଗବତରେ ଘଟିଅଛି, ତାହା ନୁହେଁ, ନାନା ସ୍ଥାନର ମୁଦ୍ରିତ କେତେକ ମୂଳଗ୍ରନ୍ଥରେ ମଧ ଏତାଦୃଶ କ୍ରମ ଦେଖାଯାଏ । ତୈଲଙ୍ଗ ଲିପିରେ ମୁଦ୍ରିତ ଆଉ ପୁନାର ଯନ୍ତ୍ରାଳୟରେ ଏକତ୍ର ଏକଖଣ୍ଡ ଆକାରରେ ଦେବନାଗର ଅକ୍ଷରରେ ମୁଦ୍ରିତ ଶ୍ରୀଧରୀୟ ପାଠରେ ଗ୍ରନ୍ଥର ଅଧ୍ୟାୟ ସଂଖ୍ୟା ହେଉଅଛି ପଞ୍ଚତ୍ରିଂଶୋତ୍ତର ତ୍ରିଶତ ୩୩୫ । ଅପିଚ ବୋମ୍ବାଇରେ ଦେବନାଗରାକ୍ଷରରେ ମୁଦ୍ରିତ ଦ୍ୱୈତ ବିଶିଷ୍ଟାଦ୍ୱୈତ ପାଠୋପେତ ଶ୍ରୀଧରୀୟ ପାଠାନୁଗତ ଗ୍ରନ୍ଥର ଅଧ୍ୟାୟ ସଂଖ୍ୟା ମଧ ୩୩୫ ପଞ୍ଚତ୍ରିଂଶୋତ୍ତର ତ୍ରିଶତ ହୋଇଅଛି, କିନ୍ତୁ ତତ୍ର ନିହିତ ବୀରବଘବୀୟ ପାଠର ସମଗ୍ର ଅଧ୍ୟାୟ ସଂଖ୍ୟା ୩୩୪ ଚତୁଃତ୍ରିଂଶୋତ୍ତର ତ୍ରିଶତ ଏବଂ ବିଜୟଧ୍ୱଜୀୟ ପାଠର ଅଧ୍ୟାୟ ସଂଖ୍ୟା ୩୪୫ ପଞ୍ଚଚତ୍ୱରିଂଶୋତ୍ତର ତ୍ରିଶତରେ ସର୍ବାପେକ୍ଷା ଅଧିକ ହୋଇଅଛି । ପରନ୍ତୁ ଏହା ଓଡ଼ିଆ ସମାଲୋଚ୍ୟ ଭାଗବତର ତାଳପତ୍ର ପୁସ୍ତକର ଅଧ୍ୟାୟ ସଂଖ୍ୟାର ସମାନ ଅଟେ । ତେବେ କାହା କାହାରି ମତରେ କେଉଁ କେଉଁ ସ୍କନ୍ଧ କେତେ କେତେ ଅଧ୍ୟାୟରେ ବିଭକ୍ତ, ତାହାର ଅବଗମନ ପାଠକମାନଙ୍କ ପକ୍ଷେ ସୁଗମ କରଣାର୍ଥ ପ୍ରତ୍ୟେକର ଗୋଟିଏ ଗୋଟିଏ ସଂଖ୍ୟାତ୍ମକ ବିବରଣ ପଟ୍ଟିକା ନିମ୍ନରେ ପ୍ରଦର୍ଶିତ କରୁଅଛୁଁ ।

| ଜଗନ୍ନାଥ ଦାସଙ୍କ ଭାଗବତର ଛପା ପୁସ୍ତକର ଅଧ୍ୟାୟ ସଂଖ୍ୟାକ୍ରମ | | ସମାଲୋଚ୍ୟ ଭାଗବତର ତାଳପତ୍ର ପୁସ୍ତକର ଅଧ୍ୟାୟ ସଂଖ୍ୟା କ୍ରମ | |
|---|---|---|---|
| ସ୍କନ୍ଧ | ଅଧ୍ୟାୟ ସଂଖ୍ୟା | ସ୍କନ୍ଧ | ଅଧ୍ୟାୟ ସଂଖ୍ୟା |
| ପ୍ରଥମ | ୧୯ | ପ୍ରଥମ | ୧୯ |
| ଦ୍ୱିତୀୟ | ୧୦ | ଦ୍ୱିତୀୟ | ୧୦ |
| ତୃତୀୟ | ୩୩ | ତୃତୀୟ | ୩୩ |
| ଚତୁର୍ଥ | ୩୧ | ଚତୁର୍ଥ | ୩୧ |
| ପଞ୍ଚମ | ୨୬ | ପଞ୍ଚମ | ୨୬ |
| ଷଷ୍ଠ | ୧୯ | ଷଷ୍ଠ | ୧୯ |
| ସପ୍ତମ | ୧୫ | ସପ୍ତମ | ୧୫ |
| ଅଷ୍ଟମ | ୨୩ | ଅଷ୍ଟମ | ୨୩ |
| ନବମ | ୨୪ | ନବମ | ୨୬ |
| ଦଶମ | ୯୬ | ଦଶମ | ୯୮ |
| (ପୂର୍ବାର୍ଦ୍ଧ ୪୮ ଉତ୍ତରାର୍ଦ୍ଧ ୪୮) | | (ପୂର୍ବାର୍ଦ୍ଧ ୫୦ ଉତ୍ତରାର୍ଦ୍ଧ୪୮) | |
| ଏକାଦଶ | ୩୨ | ଏକାଦଶ | ୩୨ |
| ଦ୍ୱାଦଶ | ୧୩ | ଦ୍ୱାଦଶ | ୧୩ |
| ସମଗ୍ର | ୩୪୧ | ସମଗ୍ର | ୩୪୫ |

| ଖାଡ଼ଙ୍ଗା ଭାଗବତର ଅଧ୍ୟାୟ ସଂଖ୍ୟା କ୍ରମ ଯଥା— | | ତ୍ରୈଲଙ୍ଗାକ୍ଷରରେ ମୁଦ୍ରିତ ଏବଂ ପୁନାରେ ଦେବନାଗରାକ୍ଷରରେ ଏକ ଖଣ୍ଡାକାରରେ ମୁଦ୍ରିତ ମୂଳଗ୍ରନ୍ଥର ଅଧ୍ୟାୟ ସଂଖ୍ୟା ସର୍ବଥା ସମାନ । | |
|---|---|---|---|
| ସ୍କନ୍ଧ | ଅଧ୍ୟାୟ ସଂଖ୍ୟା | ସ୍କନ୍ଧ | ଅଧ୍ୟାୟ ସଂଖ୍ୟା |
| ପ୍ରଥମ | ୧୯ | ପ୍ରଥମ | ୧୯ |
| ଦ୍ୱିତୀୟ | ୧୦ | ଦ୍ୱିତୀୟ | ୧୦ |
| ତୃତୀୟ | ୩୩ | ତୃତୀୟ | ୩୩ |
| ଚତୁର୍ଥ | ୩୧ | ଚତୁର୍ଥ | ୩୧ |
| ପଞ୍ଚମ | ୨୬ | ପଞ୍ଚମ | ୨୬ |
| ଷଷ୍ଠ | ୧୯ | ଷଷ୍ଠ | ୧୯ |

| | | | |
|---|---|---|---|
| ସପ୍ତମ | ୧୫ | ସପ୍ତମ | ୧୫ |
| ଅଷ୍ଟମ | ୨୪ | ଅଷ୍ଟମ | ୨୪ |
| ନବମ | ୨୪ | ନବମ | ୨୪ |
| ଦଶମ | ୯୦ | ଦଶମ | ୯୦ |
| | | (ପୂର୍ବାର୍ଦ୍ଧ ୪୯ ଉତ୍ତରାର୍ଦ୍ଧ ୪୧) | |
| ଏକାଦଶ | ୩୧ | ଏକାଦଶ | ୩୧ |
| ଦ୍ୱାଦଶ | ୧୩ | ଦ୍ୱାଦଶ | ୧୩ |
| ସମଗ୍ର | ୩୩୫ | ସମଗ୍ର | ୩୩୫ |

ଏଥିରେ ଦଶମ ସ୍କନ୍ଧର ପୂର୍ବାର୍ଦ୍ଧ ପରାର୍ଦ୍ଧର ବିଭାଜନ କ୍ରମ ରହି ନାହିଁ ।

ଶ୍ରୀଧରୀୟ ପାଠାନୁମତ ମୂଳ ଗ୍ରନ୍ଥର ଅଧ୍ୟାୟ ସଂଖ୍ୟା କ୍ରମ ।

ବୀର ରାଘବୀୟ ପାଠାନୁମତ ମୂଳ ଗ୍ରନ୍ଥର ଅଧ୍ୟାୟ ସଂଖ୍ୟାକ୍ରମ ।

| ସ୍କନ୍ଧ | ଅଧ୍ୟାୟ ସଂଖ୍ୟା | ସ୍କନ୍ଧ | ଅଧ୍ୟାୟ ସଂଖ୍ୟା |
|---|---|---|---|
| ପ୍ରଥମ | ୧୯ | ପ୍ରଥମ | ୧୯ |
| ଦ୍ୱିତୀୟ | ୧୦ | ଦ୍ୱିତୀୟ | ୧୦ |
| ତୃତୀୟ | ୩୩ | ତୃତୀୟ | ୩୩ |
| ଚତୁର୍ଥ | ୩୧ | ଚତୁର୍ଥ | ୩୦ |
| ପଞ୍ଚମ | ୨୬ | ପଞ୍ଚମ | ୨୬ |
| ଷଷ୍ଠ | ୧୯ | ଷଷ୍ଠ | ୧୯ |
| ସପ୍ତମ | ୧୫ | ସପ୍ତମ | ୧୫ |
| ଅଷ୍ଟମ | ୨୪ | ଅଷ୍ଟମ | ୨୪ |
| ନବମ | ୨୪ | ନବମ | ୨୪ |
| ଦଶମ | ୯୦ | ଦଶମ | ୯୦ |
| (ପୂର୍ବାର୍ଦ୍ଧ ୪୯ ଉତ୍ତରାର୍ଦ୍ଧ ୪୧) | | (ପୂର୍ବାର୍ଦ୍ଧ ୪୯ ଉତ୍ତରାର୍ଦ୍ଧ ୪୧) | |
| ଏକାଦଶ | ୩୧ | ଏକାଦଶ | ୩୧ |
| ଦ୍ୱାଦଶ | ୧୩ | ଦ୍ୱାଦଶ | ୧୨ |
| ସମଗ୍ର | ୩୩୫ | ସମଗ୍ର | ୩୩୩ |

ବିଜୟଧ୍ୱଜୀୟ ପାଠାନୁମତ ମୂଳ ଗ୍ରନ୍ଥର ଅଧ୍ୟାୟ ସଂଖ୍ୟାକ୍ରମ ।

| ସ୍କନ୍ଧ | ଅଧ୍ୟାୟ ସଂଖ୍ୟା | ସ୍କନ୍ଧ | ଅଧ୍ୟାୟ ସଂଖ୍ୟା |
|---|---|---|---|
| ପ୍ରଥମ | ୨୦ | ଅଷ୍ଟମ | ୨୩ |
| ଦ୍ୱିତୀୟ | ୧୦ | ନବମ | ୨୧ |
| ତୃତୀୟ | ୩୪ | ଦଶମ | ୧୦୩ |
| ଚତୁର୍ଥ | ୩୧ | | (ପୂର୍ବାର୍ଦ୍ଧ ୪୮ ଉତ୍ତରାର୍ଦ୍ଧ ୫୫) |
| ପଞ୍ଚମ | ୨୪ | ଏକାଦଶ | ୩୧ |
| ଷଷ୍ଠ | ୧୯ | ଦ୍ୱାଦଶ | ୧୩ |
| ସପ୍ତମ | ୧୬ | | |
| | | ସମଗ୍ର | ୩୪୫ |

ଏସବୁ ସମ୍ୟକ୍ ବିଚାର କରିନେଲେ ଆନୁମାନିକ ଜଣାଯାଏ * ଯେ ବୀର ରାଘବୀୟ ଏବଂ ବିଜୟଧ୍ୱଜୀୟ ଆଚାର୍ଯ୍ୟ ମହାଶୟମାନେ ନିଜର ସମାଦରଣୀୟ ବିଶିଷ୍ଟାଦ୍ୱୈତ ଓ (ଦ୍ୱୈତ) ମଧ୍ୱମତର ଯେ କୌଣସି ପ୍ରକାର ଅଭିପ୍ରାୟ ବା ପ୍ରୟୋଜନର ପରିପୋଷକତା ନିମନ୍ତେ ଏହି ଗ୍ରନ୍ଥର ଅଧ୍ୟାୟ ବିରାମର ନ୍ୟୂନାଧିକତା ସହ ପାଠ ବୈଷମ୍ୟର ପ୍ରତିପାଦନ କରିଅଛନ୍ତି ।

ପରଂତୁ ଶ୍ରୀଧରସ୍ୱାମୀ ଅଦ୍ୱୈତ ବା ଦ୍ୱୈତ କିମ୍ୱା ବିଶିଷ୍ଟାଦ୍ୱୈତ ମତର ପକ୍ଷପାତିତା ଅବଲମ୍ୱନ ନ କରି ଏହି ଗ୍ରନ୍ଥର ଅଧ୍ୟାୟ ବିରାମ ଆଉ ଟୀକା ପରିପାଟୀ ପ୍ରଦର୍ଶନରେ ତଦ୍ ପୂର୍ବକାଳରୁ ସମାହିତ ଋଜୁମାର୍ଗରେ କେବଳ ଚାଲିଯାଇ ଅଛନ୍ତି । ଜନଶ୍ରୁତିରୁ ଜଣାଯାଏ, ଏ ମହାଶୟ ଶ୍ରୀମଦ୍ ଭାଗବତର ଟୀକା ରଚନାରେ ଅଭିନିବେଶ ଦେବା ପୂର୍ବରୁ ତାହା କେଉଁ ସ୍କନ୍ଧ କେତୋଟି ଅଧ୍ୟାୟରେ ବିଭକ୍ତ ଅପିଚ ପ୍ରତ୍ୟେକ ଅଧ୍ୟାୟରେ କି କି ଚରିତ ବର୍ଣ୍ଣିତ, ସେ ସବୁ ପ୍ରଥମେ ଶ୍ଳୋକ ନିବନ୍ଧନରେ, ଗ୍ରଥିତ କରିଅଛନ୍ତି । ବର୍ତ୍ତମାନ ଦେଖୁଅଛୁଁ, ନାନାଦେଶୀୟ ଲିପିରେ ମୁଦ୍ରିତ ଓ ଲିଖିତ ମୂଳଗ୍ରନ୍ଥର ବହୁ ପୁସ୍ତକମାନଙ୍କରେ ଅଧ୍ୟାୟ ଓ ଚରିତର ନିବନ୍ଧନାତ୍ମକ ସେହି ଔପୋଦ୍‌ଘାତିକ ଶ୍ଳୋକାବଳୀ ଯଥାସ୍ଥାନମାନଙ୍କରେ ସନ୍ନିବେଶିତ କରାଯାଇଥାଏ; କିନ୍ତୁ କେହି କେହି କହନ୍ତି, ପ୍ରୋକ୍ତ ଶ୍ଳୋକ ସମବାୟ ଶ୍ରୀଧର-ସ୍ୱାମୀଙ୍କ ଆବିର୍ଭାବ ପୂର୍ବରୁ ଗ୍ରନ୍ଥ ମଧ୍ୟରେ ଗୁମ୍ଫିତ ଥିଲା । ତାହାକୁ ହିଁ ସ୍ୱାମୀ ମହୋଦୟ ସମୀଚୀନ ବୋଲି ମନୋନୀତ କରିନେଇ ଅଛନ୍ତି । ସେ ଯାହାହେଉ, ଶ୍ରୀମଦ୍ ଭାଗବତର ଅଧ୍ୟାୟ ବିଭାଜନ ଓ ତତ୍ର ତତ୍ର ସନ୍ନିବିଷ୍ଟ ଚରିତ ପରଂପରା କ୍ରମର ପରିଚାୟକ ସେହି ଔପୋଦ୍‌ଘାତିକ ଶ୍ଳୋକମାନ ଯେ ବହୁ ପ୍ରାଚୀନକାଳରୁ ଗ୍ରନ୍ଥମଧ୍ୟରେ ଆନୁଷଙ୍ଗିକ ରହିଅଛି,

* ଏହାଙ୍କ ପାଠରେ ଚତୁର୍ଥ ଓ ଦ୍ୱାଦଶ ସ୍କନ୍ଧରେ ମାତ୍ର କିଞ୍ଚିତ ବୈଷମ୍ୟ ଅଛି ।

ଏଥିରେ କୌଣସି ସନ୍ଦେହ ନାହିଁ । ତେବେ ଯଦିଚ ଶ୍ରୀଧର ସ୍ୱାମୀଙ୍କର ଅଧ୍ୟାୟ ବିରାମ କରଣାଦିର କ୍ରମ ପ୍ରୋକ୍ତ ପ୍ରାଚୀନ ନିବନ୍ଧନର ଅନୁଗତ, ତେବେ ତାହାକୁ ହିଁ ସୁସଂଗତ ମନେକରିବା ଉଚିତ । ବୀର ରାଘବୀୟ ଆଉ ସମଧିକତଃ ବିଜୟଧ୍ୱଜୀୟ ପାଠ ଏହି କ୍ରମ ପ୍ରଦର୍ଶିତ ମାର୍ଗକୁ ଉଲ୍ଲଂଘନ କରିଥିଲେ ସୁଦ୍ଧା ଇତଃପୂର୍ବରୁ କି ତାଳପତ୍ର କି ମୁଦ୍ରିତ ଅନ୍ୟାନ୍ୟ ଯାବତୀୟ ମୂଳ ପୁସ୍ତକମାନଙ୍କରେ ପୂର୍ବାଚାର୍ଯ୍ୟମାନେ ସର୍ବତ୍ର ଶ୍ରୀଧରଙ୍କର କ୍ରମକୁ କେବଳ ଆଦର୍ଶ କରିଅଛନ୍ତି । ତାହାହେଲେ ସମାଲୋଚ୍ୟ ଭାଗବତର ଅଧ୍ୟାୟ ବିରାମକ୍ରମରେ ଶ୍ରୀଧରୀୟ ପାଠ ଅପେକ୍ଷା କେଉଁ କେଉଁଠାରେ ବୈଷମ୍ୟ ଘଟିଅଛି, ତାହାର ବିଚାର ନିତାନ୍ତ ଆବଶ୍ୟକ । ଶ୍ରୀ ଜଗନ୍ନାଥ ଦାସଙ୍କ ଭାଗବତର ପ୍ରଥମାଦି ସ୍କନ୍ଧ ସପ୍ତକ ଏବଂ ନବମ ଓ ଦ୍ୱାଦଶ ସ୍କନ୍ଧରେ ଏହି ବୈଷମ୍ୟ ଦେଖାଯାଏ ନାହିଁ । କିନ୍ତୁ ଅଷ୍ଟମ ସ୍କନ୍ଧ ଚତୁର୍ବିଂଶତି ଅଧ୍ୟାୟ ହେବାସ୍ଥଳେ ତ୍ରୟୋବିଂଶତି ଅଧ୍ୟାୟରେ, ଏକାଦଶ ସ୍କନ୍ଧ ଏକତ୍ରିଂଶ ଅଧ୍ୟାୟ ହେବା ସ୍ଥଳେ ଦ୍ୱାତ୍ରିଂଶ ଅଧ୍ୟାୟରେ ଏବଂ ଦଶମ ସ୍କନ୍ଧଟି ନବତି ଅଧ୍ୟାୟ ସୀମାର ଅତିକ୍ରମରେ ଷଣ୍ଣବତି ଅଧ୍ୟାୟରେ ପରିକଳିତ ହୋଇଅଛି । ଏଥିରେ ପୁଣି ଛାପା ଓ ତାଳପତ୍ର ପୁସ୍ତକମାନଙ୍କ ମଧ୍ୟରେ ମଧ୍ୟ ଅଧ୍ୟାୟ ଗଣନାର ତାରତମ୍ୟ ରହିଅଛି । ତେବେ ଶ୍ରୀଧରୀୟ ପାଠ ଅପେକ୍ଷା ଏହାର ଅଷ୍ଟମ ସ୍କନ୍ଧରେ ଅଧ୍ୟାୟ ସଂଖ୍ୟା ଏକ ନ୍ୟୂନ ଏକାଦଶରେ ଏକ ଅଧିକ ଏବଂ ଦଶମ ସ୍କନ୍ଧରେ ଛଅଗୋଟି ଅଧ୍ୟାୟ ପର୍ଯ୍ୟନ୍ତ ଅତିରିକ୍ତ ହୋଇଅଛି । ଶ୍ରୀମାନ୍ ଜଗନ୍ନାଥ ଦାସଙ୍କ ଭାଗବତ ପରି ବିଜୟ ଧ୍ୱଜୀୟ ପାଠରେ ମଧ୍ୟ ଅଷ୍ଟମ ସ୍କନ୍ଧ ତ୍ର୍ୟଧିକ ବିଂଶତି ଅଧ୍ୟାୟରେ କେବଳ ବିଭକ୍ତ । ପରଂତୁ ବିଜୟ ଧ୍ୱଜାଚାର୍ଯ୍ୟ ସପ୍ତମ ସ୍କନ୍ଧକୁ ଷୋଡ଼ଶ ଅଧ୍ୟାୟାତ୍ମକ କରି ଗୋଟିଏ ସଂଖ୍ୟା ବଢ଼ାଇବା ଦ୍ୱାରା ଏଠି ଏହି ନ୍ୟୂନତା କ୍ଷତିଟାର ନିରସନ କରି ଦେଇ ଅଛନ୍ତି । ତଥାପି ତାହା ଅଷ୍ଟମ ସ୍କନ୍ଧ ପାଠରୁ ଉନ୍ନୀତ ନୁହେଁ, ଅନ୍ୟଥା ସାଧିତ ହୋଇଅଛି । ଏ ମହାଶୟ ସପ୍ତମ ସ୍କନ୍ଧର ଦଶମାଧ୍ୟୟକୁ ଦୁଇଗୋଟି ଅଧ୍ୟାୟରେ ବିଭକ୍ତ କରିଅଛନ୍ତି, ଅର୍ଥାତ୍ ଏହି ଅଧ୍ୟାୟର ପଞ୍ଚାଶତ୍ ୫୦ ଶ୍ଳୋକଠାରେ ପ୍ରହ୍ଲାଦଙ୍କ ବରପ୍ରଦାନୀୟ ଚରିତର ଅବସାନରେ ଦଶମାଧ୍ୟୟର ପରିସମାପ୍ତି ଏବଂ ତଦ୍ ପରବର୍ତ୍ତୀ ତ୍ରିପୁର ବଧ କଥାନକୁ ପ୍ରହ୍ଲାଦ ଚରିତରୁ ବିଚ୍ଛିନ୍ନ ରଖି ପ୍ରଥମତଃ ଏକାଦଶ ଅଧ୍ୟାୟ ନାମରେ ଅଭିହିତ କରା ସଙ୍ଗତ ମନେକରି ଅଛନ୍ତି । ଅତଏବ ଏହାଙ୍କ ମତରେ ସପ୍ତମ ସ୍କନ୍ଧ ଷୋଡ଼ଶ ଗୋଟି ଅଧ୍ୟାୟରେ ବିଭାଜିତ ହୋଇଅଛି । ଏହାପରେ ଅଷ୍ଟମ ସ୍କନ୍ଧର ବିଜୟଧ୍ୱଜୀୟ ପାଠରେ ଶ୍ରୀଧରୀୟ ପାଠର ଅଷ୍ଟମ ଓ ନବମ ଅଧ୍ୟାୟର ଚରିତମାନ ଏକତ୍ର ଏକମାତ୍ର ଅଷ୍ଟମାଧ୍ୟାୟରେ ଅନ୍ତର୍ଭୁକ୍ତ ହୋଇଅଛି । ଯେହେତୁ ଶ୍ରୀଧରୀୟ ପାଠର ଯେଉଁସ୍ଥଳେ ଅଷ୍ଟମାଧ୍ୟାୟ ଅବସନ୍ନ ତତ୍ର ବିଜୟ ଧ୍ୱଜୀୟ ପାଠରେ ଅଧ୍ୟାୟ ବିଚ୍ଛେଦ ନ ହୋଇ ଶ୍ରୀଧରୀୟ ନବମାଧ୍ୟାୟର ଶେଷରେ ଅଷ୍ଟମାଧ୍ୟାୟର ଅବସାନ

ହୋଇଅଛି । ଏ ହେତୁ ବିଜୟଧ୍ୱଜୀୟ ମତରେ ଅଷ୍ଟମ ସ୍କନ୍ଧଟି ତେଇଶିଗୋଟି ଅଧ୍ୟାୟରେ ବିଭାଜିତ; କିନ୍ତୁ ଜଗନ୍ନାଥ ଦାସଙ୍କ ଅଷ୍ଟମ ସ୍କନ୍ଧର ବୈଷମ୍ୟ କ୍ରମ ଏତାଦୃଶ ନୁହେଁ । ଶ୍ରୀଧରୀୟ ପାଠରେ ଯେପରି ଏହି ସ୍କନ୍ଧର ପ୍ରଥମାଧ୍ୟାୟ ପରେ ତିନିଗୋଟି ଅଧ୍ୟାୟରେ ଗଜେନ୍ଦ୍ର ମୋକ୍ଷ ଚରିତ ଏବଂ ତାପରେ ଆଠଗୋଟି ଅଧ୍ୟାୟରେ ଅମୃତାଖ୍ୟାନ ଉକ୍ତଅଛି, ଜଗନ୍ନାଥ ଦାସେ ମଧ୍ୟ ଠିକ୍ ସେହିପରି ଦ୍ୱାଦଶ ଅଧ୍ୟାୟ ଅନ୍ତରେ ଅମୃତାହରଣ ଉପାଖ୍ୟାନ ସମାଖ୍ୟାନର ଶେଷ କରିଅଛନ୍ତି । ପରଂତୁ ତ୍ରୟୋଦଶ ଓ ଚତୁର୍ଦ୍ଦଶ ଅଧ୍ୟାୟ ଦ୍ୱୟରେ ଯାହାକି ସପ୍ତମାଦି ଚତୁର୍ଦ୍ଦଶ ମନ୍ୱନ୍ତର ବର୍ଣ୍ଣନା ଓ ସମସ୍ତ ମନ୍ୱନ୍ତରମାନଙ୍କରେ ମଧ୍ୟ ମନ୍ୱାଦିମାନଙ୍କର ସାଧାରଣ  କର୍ମ ଉକ୍ତ ଅଛି, ସେ ସବୁକୁ ସଂକ୍ଷେପତଃ ଏକତ୍ରିତ ରଖି ଏକମାତ୍ର ତ୍ରୟୋଦଶ ଅଧ୍ୟାୟ ରୂପରେ ପରିଣତ କରିଦେଇ ଅଛନ୍ତି ।

ଅତଏବ ଅତଃପର ବର୍ଣ୍ଣିତ ନଅଗୋଟି ଅଧ୍ୟାୟରେ ପରିସମାପ୍ତ ବାମନାଚରିତ ଚରିତତକ ଏବଂ ସର୍ବାନ୍ତିମ ଅଧ୍ୟାୟରେ ନିହିତ ମହ୍ୟାବତାର ଚରିତ ଏଥିରେ ଠିକ୍ ଶ୍ରୀଧରୀୟ ମତାନୁମତ ହୋଇ ସୁଦ୍ଧା ଅଷ୍ଟମ ସ୍କନ୍ଧଟି ତ୍ର୍ୟଧିକ ବିଂଶତି ଅଧ୍ୟାୟରେ ବିଭାଜିତ ହୋଇପାରିଅଛି । ତେବେ ଶ୍ରୀଧରୀୟ ବିଜଧ୍ୱଜୀୟ ଏବଂ ବୀରରାଘବୀୟ ପାଠରେ ମଧ୍ୟ ଏକତ୍ରିଂଶ ଅଧ୍ୟାୟରେ ବିଭକ୍ତ ଏକାଦଶସ୍କନ୍ଧଟି ଜଗନ୍ନାଥ ଦାସଙ୍କ ମତରେ ଦ୍ୱାତ୍ରିଂଶ ଅଧ୍ୟାୟରେ ବିଭାଜିତ ହୋଇଅଛି କିପରି ? ଏହାର କାରଣ ଦେଖାଯାଉ । ମୌଳିକ ଦ୍ୱିତୀୟାଧ୍ୟାୟଟି ଦେଖନ୍ତୁ, ଜଗନ୍ନାଥ ଦାସଙ୍କ ଭାଗବତରେ ଦୁଇଗୋଟି ଅଧ୍ୟାୟରେ ବିଭକ୍ତ ହୋଇଅଛି । ଏ ମହାଶୟ ପ୍ରୋକ୍ତ ଅଧ୍ୟାୟର (ଇତ୍ୟ ଚ୍ୟୁତାଂଘ୍ରି ଭଜତୋଽନୁବୃତ୍ତ୍ୟା ଭକ୍ତି-ର୍ବିରକ୍ତି-ର୍ଭଗବତ୍-ପ୍ରବୋଧଃ । ଭବନ୍ତିବୈ ଭାଗବତସ୍ୟ ରାଜଂ ସ୍ତତଃ ପରାଂ ଶାନ୍ତିମୁପୈତି ସାକ୍ଷାଦ୍) ଏହି ୪୩ ତ୍ରିଚତ୍ୱାରିଂଶ ଶ୍ଳୋକାନ୍ତରେ ଦ୍ୱିତୀୟ ଅଧ୍ୟାୟ ସମାପ୍ତ କରି (ରାଜୋବାଚ ଅଥ ଭାଗବତଂ ବ୍ରୂତ୍ୟତଧର୍ମୋ ଯାଦୃଶୋ ନୃଣାଂ । ଯଥା ଚରତି ଯଦ୍ ବ୍ରୂତତି ଯୈର୍ଲିଙ୍ଗୈ ର୍ଭଗବତ୍ ପ୍ରିୟଃ ।) ଏହି ୪୪ ଚତୁଷ୍ଟତ୍ୱାରିଂଶ ଶ୍ଳୋକଠାରୁ ଅବଶିଷ୍ଟ ଅଂଶକୁ ତୃତୀୟ ଅଧ୍ୟାୟ ନାମରେ ଅନୁବାଦିତ କରିଅଛନ୍ତି । ଅତଏବ ଏକାଦଶ ସ୍କନ୍ଧର ତୃତୀୟ ଅଧ୍ୟାୟଠାରୁ ଏହାଙ୍କର ଅଧ୍ୟାୟ ଗଣନାରେ ଏକ ସଂଖ୍ୟା ଅତିରିକ୍ତ ହୋଇଅଛି । ଏହାପରେ ଏହାଙ୍କର ଦଶମ-ସ୍କନ୍ଧର ଅଧ୍ୟାୟ ବୈଷମ୍ୟର କଥା ବିଚାର କରାଯାଉ । ଶ୍ରୀଧରୀୟ ଏବଂ ବୀର ରାଘବୀୟ ମତରେ ଦଶମ ସ୍କନ୍ଧଟି ନବତି ଅଧ୍ୟାୟରେ ବିଭକ୍ତ । ଏହାର ପୂର୍ବାର୍ଦ୍ଧ ଏକୋନପଞ୍ଚାଶଦ୍ ୪୯ ଆଉ ଉତ୍ତରାର୍ଦ୍ଧ ଏକଚତ୍ୱାରିଂଶ ୪୧ ଅଧ୍ୟାୟରେ ଯୁକ୍ତ ରହିଅଛି । ମାତ୍ର ଜଗନ୍ନାଥ ଦାସଙ୍କ ଭାଗବତର ଦଶମ ସ୍କନ୍ଧର ପୂର୍ବାର୍ଦ୍ଧ ଓ ଉତ୍ତରାର୍ଦ୍ଧ ସମଭାଗରେ ଅଷ୍ଟଚତ୍ୱାରିଂଶ ଲେଖାରେ ବିଭକ୍ତ ହୋଇ ସମଗ୍ର ଷଣ୍ଣବତି ଅଧ୍ୟାୟରେ ପରିସମାପ୍ତି ପାଇଅଛି । ଦାସ ମହାଶୟଙ୍କ ପରି ବିଜୟଧ୍ୱଜାଚାର୍ଯ୍ୟ ମଧ୍ୟ ଦଶମ ପୂର୍ବାର୍ଦ୍ଧର ଅଷ୍ଟଚତ୍ୱାରିଂଶ

ଅଧ୍ୟାୟରେ ବିରାମ କରିଅଛନ୍ତି, ପରଂତୁ ସଂଖ୍ୟାଟା ସମାନ ହେଲେ ସୁଦ୍ଧା ଅତ୍ରତ୍ୟ ଚରିତାବତରଣ ବିରାମ ସମାନ ନୁହେଁ । ବିଶେଷତଃ ଏହାଙ୍କର ତଦୀୟ ଉତ୍ତରାର୍ଦ୍ଧଟି ୫୫ ପଞ୍ଚପଞ୍ଚାଶତ ଅଧ୍ୟାୟ ପର୍ଯ୍ୟନ୍ତ ବଢ଼ି ଚାଲିଅଛି, ଅର୍ଥାତ୍ ଶ୍ରୀଧରୀୟ ଓ ବୀରରାଘବୀୟ ମତରେ ନବତି ଅଧ୍ୟାୟରେ ସମାପ୍ତ ଦଶମ ସ୍କନ୍ଧଟି ବିଜୟଧ୍ୱଜୀୟ ମତରେ ୧୦୩ ତ୍ର୍ୟଧିକଶତାଧ୍ୟାୟରେ ବିସ୍ତୃତ ହୋଇଅଛି । ଶ୍ରୀଧରୀୟ ଓ ବୀରରାଘବୀୟ ଦଶମ-ସ୍କନ୍ଧ ଅପେକ୍ଷା ବିଜୟଧ୍ୱଜୀୟ ଦଶମରେ ଆହୁରି ବହୁବିଧ ପ୍ରଭେଦ ଲକ୍ଷିତ ହୁଏ । ଅନେକତ୍ର ପାଠର ସଂଯୋଗ ବିଯୋଗ ଦେଖାଯାଏ । ଏପରିକି, କେତେକ ଅଧ୍ୟାୟ ଅନ୍ୟ ସଂଖ୍ୟାତ୍ମକ ହୋଇ ବହୁ ବିପ୍ରକୃଷ୍ଟରେ ରହିଅଛି, କେତେକ ସ୍ଥଳରେ ପୂର୍ବାପର ଉଭୟ ଅଧ୍ୟାୟ ମଧ୍ୟରେ ଏବଂ କେଉଁଠି ଏକମାତ୍ର ଅଧ୍ୟାୟର ଭାଗଦ୍ୱୟ ମଧ୍ୟରେ ଅନେକଗୁଡ଼ାଏ ଅଧିକ ପାଠ ସନ୍ନିବେଶିତ ହୋଇ ରହିଅଛି । ଶ୍ରୀଧରୀୟ ଦଶମ ସ୍କନ୍ଧ ଅପେକ୍ଷା ବିଜୟଧ୍ୱଜୀୟ ଦଶମ ସ୍କନ୍ଧରେ ଯେପରି ତେରଗୋଟି ଅଧ୍ୟାୟ ପାଠ ଅଧିକା ଦିଶୁଅଛି, ସେପରି ଶ୍ରୀ ଜଗନ୍ନାଥ ଦାସଙ୍କ ଦଶମ ସ୍କନ୍ଧରେ ଛଅଗୋଟି ଅଧ୍ୟାୟ ପାଠ ଅଧିକା ରହିଅଛି । ଦାସଙ୍କ ଭାଗବତରେ ଛଅଗୋଟି ଅଧ୍ୟାୟ ଅଧିକା କିପରି ? ଏହା ଜାଣିବା ପାଇଁ ଆମ୍ଭମାନଙ୍କୁ ଏହି ଭାଗବତ ଏବଂ ବିଜୟଧ୍ୱଜୀୟ ପାଠ ସମ୍ୟକ୍ ପରିଶୀଳନ କରିବାକୁ ହେବ । ଶ୍ରୀଧରୀୟ ଦଶମର ପ୍ରଥମ ଅଧ୍ୟାୟକୁ ଦାସେ ଦୁଇଗୋଟି ଅଧ୍ୟାୟରେ ବିଭକ୍ତ କରିଥିବାର କହିଅଛୁଁ । ବିଜୟଧ୍ୱଜୀୟ ମତରେ ସୁଦ୍ଧା ଏହିପରି । ପ୍ରଥମାଧ୍ୟାୟର –

"ନହ୍ୟସ୍ୟାସ୍ତେ ଭୟଂ ସୌମ୍ୟ
ଯଦ୍‌ବାଗାହା ଶରୀରିଣୀ ।
ପୁତ୍ରାନ୍ ସମର୍ପୟିଷ୍ୟେଽସ୍ୟ ।
ଯତସ୍ତେ ଭୟ ମୁତ୍‌ଥିତଂ ।।"

ଏହି ୫୪ ଚତୁପଞ୍ଚାଶତ୍ତମ ଶ୍ଳୋକର ଅବସ୍ଥାନରେ ପ୍ରଥମାଧ୍ୟାୟ ଅବସନ୍ନ ହୋଇଅଛି । ଏବଂ ତାପରେ "ଶ୍ରୀ ଶୁକ ଉବାଚ" ଏ ସ୍ଥଳରୁ ଅବଶିଷ୍ଟ ଅଂଶ ଦ୍ୱିତୀୟ ଅଧ୍ୟାୟ ରୂପେ ପରିଣତ ହୋଇଅଛି । ଅତଏବ ଶ୍ରୀଧରୀୟ ଏହି ଦ୍ୱିତୀୟ ଅଧ୍ୟାୟଠାରୁ ବିଜୟଧ୍ୱଜୀୟ ଓ ଜଗନ୍ନାଥ ଦାସୀୟ ଭାଗବତ ପାଠରେ ତୃତୀୟାଦି ଅଧ୍ୟାୟ ନାମରେ ଅଭିହିତ ହୋଇଅଛି । ଏତାଦୃଶ ଏକାଧିକ ସଂଖ୍ୟାରେ ଏକାଦଶ ଅଧ୍ୟାୟ ଶେଷ ପର୍ଯ୍ୟନ୍ତ ପ୍ରୋକ୍ତ ଉଭୟବିଧ ପାଠର ଅଧ୍ୟାୟ ଗଣନା ସମାନ ଚାଲିଅଛି । ଅର୍ଥାତ୍ ଶ୍ରୀଧରୀୟ ଏକାଦଶ ଅଧ୍ୟାୟର ପାଠ ଏ ଉଭୟଙ୍କ ମତରେ ଦ୍ୱାଦଶ ଅଧ୍ୟାୟ ନାମରେ ନାମିତ ହୋଇଅଛି । ଅତଃପର କେବଳ ବିଜୟ ଧ୍ୱଜୀୟ ପାଠରେ ଶ୍ରୀଧରୀୟ ଦ୍ୱାଦଶାଦି ଚତୁର୍ଦ୍ଦଶାନ୍ତ

ଅଧ୍ୟାୟ ତ୍ରୟର ଚରିତମାନ ଏକାବେଳକେ ରହିତ ହୋଇଅଛି । ଅର୍ଥାତ୍ ଦ୍ୱାଦଶାଧ୍ୟାୟର ଅଘାସୁର ହନନ, ତ୍ରୟୋଦଶର ବ୍ରହ୍ମାଙ୍କଦ୍ୱାରା ବତ୍ସାହରଣାଦି ଏବଂ ଚତୁର୍ଦ୍ଦଶାଧ୍ୟାୟର ବ୍ରହ୍ମାଙ୍କ କର୍ତ୍ତୃକ ଶ୍ରୀବାଳକୃଷ୍ଣଙ୍କ ସ୍ତୁତି, ଏହି ଚରିତମାନ ଉକ୍ତ ହୋଇନାହିଁ । ପରନ୍ତୁ ଏସବୁ ଚରିତମାନ ଜଗନ୍ନାଥ ଦାଶଙ୍କ ପାଠରେ ଯଥାକ୍ରମେ ପଞ୍ଚଦଶ ଅଧ୍ୟାୟ ଶେଷଯାଏ ଉକ୍ତ ଅଛି । – ✱

ଶ୍ରୀଧରୀୟ ପାଠର ପଞ୍ଚଦଶାଧ୍ୟାୟରେ ରାସଭରୂପୀ ଧେନୁକାସୁରର ନିଧନ ଏବଂ କାଳୀୟବିଷଦୂଷିତ କାଳିନ୍ଦୀର ଜଳପାନରେ ମୃତବତ୍ସମାନଙ୍କର ପୁନରୁଜ୍ଜୀବନ କ୍ରମ ଉକ୍ତ ଅଛି; ଏସବୁ କଥା ଜଗନ୍ନାଥ ଦାସଙ୍କ ଭାଗବତର ଷୋଡ଼ଶାଧ୍ୟାୟରେ ଏବଂ ବିଜୟଧ୍ୱଜୀୟ ପାଠର ତ୍ରୟୋଦଶାଧ୍ୟାୟରେ ରହିଅଛି । କାରଣ ବିଜୟଧ୍ୱଜ ଏହା ପୂର୍ବରୁ ତିନିଗୋଟି ଅଧ୍ୟାୟ ବିଯୋଗ କରିଦେଇ ଅଛନ୍ତି । ପରନ୍ତୁ ଏହି ଚରିତ ସନ୍ନିଧାନରେ ବୀରରାଘବୀୟ ପାଠର ଚତୁର୍ଦ୍ଦଶାଧ୍ୟାୟ ଶେଷ ହୋଇଅଛି; କାରଣ ଏହାଙ୍କ ମତରେ ଶ୍ରୀଧରୀୟ ଦ୍ୱାଦଶ ଅଧ୍ୟାୟ ଶେଷରେ ଅଧ୍ୟାୟ ବିଚ୍ଛେଦ ହୋଇନାହିଁ, ଦ୍ୱାଦଶ ଏବଂ ତା ପର ଅଧ୍ୟାୟଟି ଏକତ୍ର ଏକମାତ୍ର ଅଧ୍ୟାୟ ରୂପେ ପରିଣତ ହୋଇଅଛି । ଏହିଠାରୁ ଅର୍ଥାତ୍ ଶ୍ରୀଧରୀୟ ପଞ୍ଚଦଶାଧ୍ୟୟଠାରୁ ରାସୋତ୍ସବାବସାନ ତ୍ରୟସ୍ତ୍ରିଂଶ ଅଧ୍ୟାୟ ପର୍ଯ୍ୟନ୍ତ ଜଗନ୍ନାଥ ଦାସଙ୍କ ଭାଗବତରେ ଅଧ୍ୟାୟ ନିର୍ଦ୍ଦେଶର ସଂଖ୍ୟା ଏକମାତ୍ର ଅଧିକ ହୋଇ ଚାଲିଅଛି । ଅତଏବ "ଉନତ୍ରିଃଶେତୁରାସାର୍ଥଂ ଭକ୍ତି ପ୍ରତ୍ୟୁକ୍ତୟୋଃ ହରେଃ–" ରାସୋତ୍ସବର ଆରମ୍ଭ ଉନତ୍ରିଂଶ ଏବଂ ଅବସାନ ତ୍ରୟସ୍ତ୍ରିଂଶ ଅଧ୍ୟାୟ "ତ୍ରୟସ୍ତ୍ରିଂଶେତତୋଗୋପୀମଣ୍ଡଳୀମଧଗୋହରିଃ । ପ୍ରିୟାସ୍ତାରମୟାମାସ ଦ୍ରାଦିନୀବନକେଳିଭିଃ" ହେବାସ୍ଥଳେ ଦାସଙ୍କ ଭାଗବତରେ ତ୍ରିଂଶ ଅଧ୍ୟାୟଠାରୁ ଆରମ୍ଭ ହୋଇ ଚତୁସ୍ତ୍ରିଂଶ ଅଧ୍ୟାୟରେ ଅବସାନ ପାଇଅଛି । ପରନ୍ତୁ ଏସରି କି ବିଜୟଧ୍ୱଜୀୟ ପାଠରେ ଅଧ୍ୟାୟ ଗଣନାରେ ଏକତ୍ରିଂଶ ବୋଲି ଉକ୍ତଅଛି । ଶ୍ରୀଧରୀୟ ୩୪

---

✱ ... ବତ୍ସା ହରଣାଦି ଚରିତ ମୂଳକ ଶଂସିତ ଅଧ୍ୟାୟ ତ୍ରୟର ପାଠମାନ ମଧ୍ୱମତାବଲମ୍ବୀ ଶ୍ରୀ ବିଜୟଧ୍ୱଜଙ୍କ ମତରେ ଅନୁକ୍ତ ଥିବାର କାରଣ ଅନୁମିତ ହୁଏ ଯେ ପ୍ରୋକ୍ତ କଥା ସନ୍ଦର୍ଭରେ ବ୍ରହ୍ମାଙ୍କର ମାହାତ୍ମ୍ୟ ବା ମହତ୍ତ୍ୱର ଲଘୁତ୍ୱ ବ୍ୟଞ୍ଜିତ ହୋଇଥିବାରୁ ବିଜୟଧ୍ୱଜାଚାର୍ଯ୍ୟ ସେସବୁ ଉଠାଇ ଦେଇ ଅଛନ୍ତି । ମଧ୍ୱମତରେ ବ୍ରହ୍ମାଙ୍କ ପ୍ରତି ଅପେକ୍ଷାକୃତ ସମଧିକ ମାହାତ୍ମ୍ୟ ଓ ଭାଗବତ୍ତା ପ୍ରତ୍ୟୋଦିତ ହୋଇ ଥାଏ । ସେମାନେ ଆବ୍ରହ୍ମସ୍ତମ୍ଭପର୍ଯ୍ୟନ୍ତଙ୍କ ଜୀବ କୋଟି ସଂସ୍ଥାନ ମଧରେ ବ୍ରହ୍ମାଙ୍କୁ ଅତ୍ୟନ୍ତ ସମୁତ୍କୃଷ୍ଟ ଉଚ୍ଚାଧିକାରୀ ମୁକ୍ତଜୀବ ମାନନ୍ତି । ପାଠକେ– ଏ ସମ୍ବନ୍ଧେ କେବଳ ଏତିକିମାତ୍ର ବକ୍ତବ୍ୟର ଅବସାନ ନୁହେ । ପ୍ରତ୍ୟେକ ଅଭିଜ୍ଞ ନିଜ ନିଜର ବିବେକାନୁମୋଦିତ ନିଦାନ ଅନୁସନ୍ଧାନ କରିବା ଆବଶ୍ୟକ ।

ଚତୁସ୍ତ୍ରିଂଶରେ ଶ୍ରୀକୃଷ୍ଣ ସର୍ପ-ଗ୍ରସ୍ତ ନନ୍ଦଙ୍କୁ ମୁକ୍ତ କରିଥିବା ଏବଂ ଶଙ୍ଖଚୂଡ଼କୁ ନିହତ କରିଥିବା ଉକ୍ତଅଛି, କିନ୍ତୁ ଏହି ଅଧ୍ୟାୟଟି ଜଗନ୍ନାଥ ଦାସଙ୍କ ଭାଗବତରେ ୩୫ ପଞ୍ଚତ୍ରିଂଶ ଓ ୩୬ ଷଟ୍‌ତ୍ରିଂଶ ନାମରେ ଦୁଇଗୋଟି ଅଧ୍ୟାୟରେ ବିଭକ୍ତ । (ତାଳପତ୍ର ପୁସ୍ତକମାନଙ୍କରେ ମଧ୍ୟ ଏହି ଅଧ୍ୟାୟଟି ଦୁଇଗୋଟି ଅଧ୍ୟାୟରେ ନିହିତ ରହିଥିବାରୁ ଅଧ୍ୟାୟ ଗଣନା ୩୬ ପର୍ଯ୍ୟନ୍ତ ଯାଇଅଛି ।) ମାତ୍ର ବିଜୟଧ୍ୱଜୀୟ ମତରେ ଏ ସ୍ଥଳରେ ଦ୍ୱାତ୍ରିଂଶ ଅଧ୍ୟାୟ ଶେଷ ହୋଇଅଛି । ସୁତରାଂ ଷଟ୍ ଚତ୍ୱାରିଂଶ ୪୬ ଅଧ୍ୟାୟ ଶେଷ ପର୍ଯ୍ୟନ୍ତ ଶ୍ରୀଧରୀୟ ଅପେକ୍ଷା ବିଜୟଧ୍ୱଜୀୟରେ ଦୁଇଗୋଟି ସଂଖ୍ୟାର ନ୍ୟୂନତାରେ ଅଧ୍ୟାୟ ଗଣନା ଚାଲିଅଛି । ଶ୍ରୀଧରୀୟ ୩୪ ଚତୁସ୍ତ୍ରିଂଶ ଅଧ୍ୟାୟଟି ଯେପରି ଜଗନ୍ନାଥୀୟ ଭାଗବତରେ ଦୁଇଗୋଟି ଅଧ୍ୟାୟରେ ବିଭକ୍ତ ହୋଇଅଛି, ୩୬ ଷଟ୍‌ତ୍ରିଂଶ ଅଧ୍ୟାୟଟି ମଧ୍ୟ ସେହିପରି । ଅତଏବ ଶ୍ରୀକୃଷ୍ଣବଳରାମ – ଆନୟନାର୍ଥକ କଂସାଦେଶ ଚରିତ ପର୍ଯ୍ୟନ୍ତ ଦାସଙ୍କ ମତରେ ଊନଚତ୍ୱାରିଂଶ ୩୯ ଅଧ୍ୟାୟ ଶେଷ ହୋଇଅଛି । (ଓଡ଼ିଆ ତାଳପତ୍ର ପୁସ୍ତକମାନଙ୍କରେ ମଧ୍ୟ ଏପରି) ସୁତରାଂ ଏହିଠାରୁ ଶ୍ରୀଧରୀୟ ୪୪ ଚତୁଃଚତ୍ୱାରିଂଶ ଅଧ୍ୟାୟର ଶେଷ ପର୍ଯ୍ୟନ୍ତ ଦାସଙ୍କ ଭାଗବତରେ ତିନିଗୋଟି ଅଧିକା ସଂଖ୍ୟାରେ ଅଧ୍ୟାୟ ଗଣନା ଚାଲିଅଛି । ଅତଏବ ୪୪ ଚତୁଷ୍ଟତ୍ୱାରିଂଶ ଅଧ୍ୟାୟରେ ଉକ୍ତ କଂସହନନାଦି ଚରିତତକ ଜଗନ୍ନାଥ ଦାସ ଭାଗବତରେ ୪୭ ସପ୍ତଚତ୍ୱାରିଂଶ ଅଧ୍ୟାୟରେ ନିହିତ ଅଛି । ତାପରେ ପୁଣି ୫୫ (ଚତୁଷ୍ଟତ୍ୱାରିଂଶ) ପଞ୍ଚପଞ୍ଚାଶଦ୍ ଅଧ୍ୟାୟକୁ ଏ ମହାଶୟ ଅଷ୍ଟଚତ୍ୱାରିଂଶ ଓ ଊନପଞ୍ଚାଶତ୍ତମ ନାମରେ ଦୁଇଗୋଟି ଅଧ୍ୟାୟରେ ବିଭକ୍ତତଃ ଅନୁବାଦ କରିଅଛନ୍ତି । ଛାପା ପୁସ୍ତକରେ ସେଥିରୁ ଗୋଟିଏ ଅଧ୍ୟାୟ ମାତ୍ର ପୂର୍ବାର୍ଦ୍ଧରେ ଅପରଟି ଉତ୍ତରାର୍ଦ୍ଧରେ ଦିଆଯାଇଅଛି, କିନ୍ତୁ ତାଳପତ୍ର ପୁସ୍ତକମାନଙ୍କରେ ପ୍ରୋକ୍ତ ଅଧ୍ୟାୟ ଦ୍ୱୟ ପୂର୍ବାର୍ଦ୍ଧରେ କେବଳ ଲେଖା ଅଛି । ଏ ହେତୁ ଏହାର ଛାପା ଦଶମ ସ୍କନ୍ଧର ପୂର୍ବାର୍ଦ୍ଧ ୪୮ ଅଷ୍ଟଚତ୍ୱାରିଂଶ ଏବଂ ତାଳପତ୍ର ପୁସ୍ତକମାନଙ୍କରେ ୪୯ ଏକୋନପଞ୍ଚାଶତ୍ ଅଧ୍ୟାୟରେ ବିରାମ ଭଜିଅଛି । ଶ୍ରୀଧରୀୟ ୪୭ ସପ୍ତଚତ୍ୱାରିଂଶ ଅଧ୍ୟାୟଟି ବିଜୟଧ୍ୱଜଙ୍କ ମତରେ ଦୁଇ ଅଧ୍ୟାୟରେ ବିଭକ୍ତ । ଏ ମହାଶୟ ଏହି ଅଧ୍ୟାୟର "ହେ ନାଥ ହେ ରମାନାଥ ବ୍ରଜନାଥାର୍ତ୍ତିନାଶନଂ ମଗ୍ନମୁଦ୍ଧର ଗୋବିନ୍ଦ ଗୋକୁଳଂ ବୃଜିନାର୍ଣ୍ଣବାଦ୍" ଏହି ଦ୍ୱିପଞ୍ଚାଶତ୍ତମ ଶ୍ଳୋକଠାରେ ତଦୀୟ ଗମନାନୁକ୍ରମରେ ପଞ୍ଚଚତ୍ୱାରିଂଶ ୪୫ ଅଧ୍ୟାୟର ଅବସାନ କରି ତତ୍ରତ୍ୟ "ଶ୍ରୀ ଶୁକ ଉବାଚ" ଠାରୁ ଅବଶିଷ୍ଟ ଅଂଶକୁ ଷଟ୍‌ଚତ୍ୱାରିଂଶ ଅଧ୍ୟାୟ କରିଅଛନ୍ତି । ଅତଏବ ଦଶମ ପୂର୍ବାର୍ଦ୍ଧଟି ଶ୍ରୀଧରୀୟ ମତରେ ଏକୋନପଞ୍ଚାଶତ ଅଧ୍ୟାୟରେ ସଂପୂର୍ଣ୍ଣ ଥିଲେହେଁ ତାହାହିଁ

ବିଜୟଧ୍ୱଜୀୟ ମତରେ ୪୮ ଅଷ୍ଟାଚତ୍ୱାରିଂଶ ଅଧ୍ୟାୟରେ ସମାପ୍ତି ପାଇଅଛି । ତତ୍ରାପି ଉଭୟତ୍ର (ବିଯୁକ୍ତ ପାଠ ଛଡ଼ା) ବର୍ଣ୍ଣିତ ଚରିତ ପରଂପରା ସମାନ କେବଳ, ଅର୍ଥାତ୍ ଅଧ୍ୟାୟ ନିର୍ଦ୍ଦେଶରେ ବୈଷମ୍ୟ କିମ୍ବା ଅବସ୍ଥାନର ସ୍ଥାନ ବୈଷମ୍ୟ ଥିଲେ ହେଁ ତତ୍ର ତତ୍ର ବର୍ଣ୍ଣିତ ଚରିତମାନଙ୍କର ବୈଷମ୍ୟ ନାହିଁ ।

ଅଷ୍ଟଚତ୍ୱାରିଂଶ ଅଧ୍ୟାୟରେ ଶ୍ରୀକୃଷ୍ଣ ଯାହାକି ତ୍ରିବକ୍ରା (କୁବ୍‌ଜା)ଙ୍କର ଆଉ ଅକ୍ରୂରଙ୍କର ଗୃହରେ ବିଜେ ହେବା ଏବଂ ଅକ୍ରୂରଙ୍କୁ ହସ୍ତିନାନଗରକୁ ପ୍ରେଷଣ କରିବା କଥାନକମାନ ବର୍ଣ୍ଣିତ, ବୋଧହୁଏ, ସେଥି ମଧ୍ୟରୁ ଏକମାତ୍ର ତ୍ରିବକ୍ରାଙ୍କର କଥାରେ କେବଳ ଗୋଟିଏ ଅଧ୍ୟାୟ କରି ଅକ୍ରୂରଙ୍କ କଥା ଅନ୍ୟ ଅଧ୍ୟାୟରେ ରଖିବାପାଇଁ ଶ୍ରୀମାନ୍ ଜଗନ୍ନାଥ ଦାସେ ପ୍ରୋକ୍ତ ଅଧ୍ୟାୟଟିକୁ ଦ୍ୱିପଞ୍ଚାଶତ୍ତମ ଓ ତ୍ରିପଞ୍ଚାଶତ୍ତମ ନାମରେ ଦୁଇଗୋଟି ଅଧ୍ୟାୟ କରିଥିବେ । କିନ୍ତୁ ଏହାର ପ୍ରତ୍ୟକ୍ଷ ପ୍ରମାଣ ତାଳପତ୍ର ପୁସ୍ତକମାନଙ୍କରେ ମାତ୍ର ଦେଖାଯାଏ । ଛାପା ପୁସ୍ତକରେ ସେ ସବୁ ଏକ ଅଧ୍ୟାୟରେ କେବଳ ଗୃହୀତ ହୋଇଅଛି । ଶ୍ରୀକୃଷ୍ଣ ଅକ୍ରୂରଙ୍କୁ ହସ୍ତିନାପ୍ରତି ପ୍ରେଷଣ କରିଥିବାର ଚରିତତକ ତାଳପତ୍ରରେ ତେପନ ଅଧ୍ୟାୟରେ ଆଉ ଛାପା ପୁସ୍ତକରେ ବାବନ ଅଧ୍ୟାୟରେ ହିଁ ଶେଷ ହୋଇଅଛି । ତାଳପତ୍ର ପୁସ୍ତକରେ କୁବ୍‌ଜାଙ୍କ ସମାଗମାଦି ଘଟନାର ଶେଷରେ ଯାହାକି "ଅଜ୍ଞାନ ବିପ୍ର ଜଗନ୍ନାଥ । କାହିଁ ପାଇବ କୃଷ୍ଣ ପଥ ।" ଏହି ଭଣତି ପଦ୍ୟଟି ଦେଖାଯାଏ । ସେହିଠାରେ ବାବନ ଅଧ୍ୟାୟର ଅବସାନ ଏବଂ "ଶୁଣ ହୋ ଅଭିମନ୍ୟୁ ସୁତ । ମଥୁରା ପୁରେ ଯଦୁନାଥ ।" ଏହି ନବକଥାର ଉପୋଦ୍‌ଘାତିକ ପଦ୍ୟର ଆରମ୍ଭରୁ ତେପନ ଅଧ୍ୟାୟର ଆରମ୍ଭ ହୋଇଅଛି । ପ୍ରୋକ୍ତ ଭଣତି ଏବଂ ନୂତନ କଥୋପକ୍ରମର ପଦ୍ୟ ଦ୍ୱୟକୁ ଯଥାଯଥ ରଖି ସୁଦ୍ଧା ଏ ସବୁକୁ ଛାପାପୁସ୍ତକରେ ବାବନ ଅଧ୍ୟାୟରେ କେବଳ ସମାବିଷ୍ଟ କରାଯାଇଅଛି । * ଶ୍ରୀଧରୀୟ ଏକୋନପଞ୍ଚାଶତ୍ତମାଧ୍ୟାୟରେ ହସ୍ତିନାପୁରରେ ଉପଗତ ଅକ୍ରୂର ପାଣ୍ଡବମାନଙ୍କ ପ୍ରତି ଧୃତରାଷ୍ଟ୍ରଙ୍କର ବିଷମ ବୁଦ୍ଧି ଜାଣିପାରି ଫେର ମଥୁରାକୁ ପ୍ରତ୍ୟାବୃତ୍ତ ହୋଇଥିବାର ଚରିତ ପର୍ଯ୍ୟନ୍ତ ବର୍ଣ୍ଣିତ ଅଛି ଏବଂ ଏହିଠାରେ ଦଶମ ପୂର୍ବାର୍ଦ୍ଧ ବିରାମ ଭଜିଅଛି । ମାତ୍ର ଏହି କଥାସବୁ ଜଗନ୍ନାଥଙ୍କ ଭାଗବତର ତାଳପତ୍ର ପୁସ୍ତକରେ ଚଉବନ ୫୪ ଆଉ ଛାପାପୁସ୍ତକରେ ୫୩ ଅଧ୍ୟାୟରେ

* ଏହିଠାରୁ ଅର୍ଥାତ୍ ୫୨ ଅଧ୍ୟାୟଠାରୁ ଜଗନ୍ନାଥୀୟ ଦଶମ ସ୍କନ୍ଧର ତାଳପତ୍ର ଓ ଛାପା ପୁସ୍ତକର ମଧ୍ୟ ଅଧ୍ୟାୟ ଗଣନାରେ ନ୍ୟୂନାଧିକତା ରହିଅଛି । ଏହିପରି ଏକ ସଂଖ୍ୟାର ନ୍ୟୂନାଧିକତା ୮୪ ଚତୁରଶୀତିତମାଧ୍ୟାୟ ପର୍ଯ୍ୟନ୍ତ ଚାଲିଅଛି ।

ଲେଖାଅଛି । ପାଠକ ମହାଶୟ, ଆଗେ ଦେଖି ଅଛନ୍ତି, ଦଶମ ସ୍କନ୍ଧଟି ଶ୍ରୀଧରୀୟ ମତରେ ନବତି ଅଧ୍ୟାୟରେ ଆଉ ଶ୍ରୀ ଜଗନ୍ନାଥୀୟ ମତରେ ଷଣ୍ଣବତି ଅଧ୍ୟାୟରେ ସମାପ୍ତ । ଏ ସରିକି ନ ଦେଖିଲେ, ଶ୍ରୀଧରୀୟ ଅପେକ୍ଷା ଜଗନ୍ନାଥଙ୍କ ଅଧ୍ୟାୟ ଗଣନାରେ ଚାରିଗୋଟି ସଂଖ୍ୟା ଅଧିକା ଦିଶିଅଛି । ତେବେ ତାଦୃଶ ଆଉ ଦୁଇଗୋଟି ସଂଖ୍ୟା କିପରି ଅଧିକା ହୋଇଅଛି ? ତାହାର ବିଚାର କରାଯାଉ । ଏ ସ୍ଥଳରେ ପାଠକମାନଙ୍କ ପ୍ରତି ଏହି ବିନୀତ ପ୍ରାର୍ଥନା ଯେ ବିଜୟ ଧ୍ୱଜୀୟ ମତରେ ଦଶମ ସ୍କନ୍ଧର ଉତ୍ତରାର୍ଦ୍ଧର ଅଧ୍ୟାୟ ନିର୍ଦ୍ଦେଶ ଯେପରି ଅତି ଜଟିଳ, ତାର ସମ୍ୟକ୍ ଅବଗତିକୁ ଚିତ୍ତବିନୋଦନାର୍ଥକ ମନେ କରନ୍ତୁ । କିମ୍ବା ବହୁ ବିଷୟର ମର୍ମାବବୋଧକ ଅଥବା ଆଉ କିଛି ମନେ କରନ୍ତୁ ସେଥିପାଇଁ ଟିକିଏ ଅତିରିକ୍ତ ସାବଧାନତା ଯୋଗ କରିବେ । ଏହି ଜଟିଳାବରଣକୁ ଭେଦ କଲେ କେବଳ ଯଥାର୍ଥତା ସଂପୂର୍ଣ୍ଣତଃ ହୃଦୟଙ୍ଗମ ହୋଇ ପାରିବ ।

ଶ୍ରୀଧରୀୟ ୫୦ ପଞ୍ଚାଶତ୍ତମ ଅଧ୍ୟାୟରେ ଦୃଢ଼ସ୍କନ୍ଧ ଜରାସନ୍ଧ ସ୍ୱକୀୟ ଜାମାତାଙ୍କ ହନନରେ ପ୍ରକୁପିତ ହୋଇ ସମଗ୍ର ଯାଦବ ଜିଘାଂସାରେ ମଥୁରା ପ୍ରତି ସମାକ୍ରମଣ କଲାରୁ ଶ୍ରୀକୃଷ୍ଣ ନିଜ ଲୋକ ସଂରକ୍ଷଣାର୍ଥ ସମୁଦ୍ର ମଧ୍ୟରେ ଦ୍ୱାରକା ନିର୍ମାଣିଥିବା ଉକ୍ତଅଛି; କିନ୍ତୁ ଏହି ଅଧ୍ୟାୟର "ଆୟୋଧନ ଗତଂ ବିତ୍ତଂ ଅନନ୍ତଂ ବୀରଭୂଷଣଂ । ଯଦୁରାଜାୟ ତତ୍‌ସର୍ବଂ ଆହୃତଂ ପ୍ରାଦିଶତ ପ୍ରଭୁଃ" । ଏହି ଏକଚତ୍ୱାରିଂଶ ଶ୍ଳୋକାନ୍ତରେ ବିଜୟଧ୍ୱଜୀୟ ମତରେ "ଏକୋନପଞ୍ଚାଶୋଽଧ୍ୟାୟ" ବୋଲି ଲେଖାଅଛି । ଅପିଚ ଏଥିରେ ଇତଃପର ଅର୍ଥାତ୍ ପ୍ରୋକ୍ତ ପଞ୍ଚାଶତ୍ତମାଧ୍ୟାୟର ୪୧ ଏକଚତ୍ୱାରିଂଶ ଓ ୪୨ ଦ୍ୱିଚତ୍ୱାରିଂଶ ଶ୍ଳୋକଦ୍ୱୟର ବ୍ୟବଧାନ ରଖି ତଦନ୍ତରାଳରେ ଭାଗବତର ଅନୁକ୍ତ ଚରିତ-ମୂଳକ ଏକାବେଳକେ ତିନିଟା ଅଧ୍ୟାୟ ପାଠ ଏବଂ ଚତୁର୍ବିଂଶ ଗୋଟି ଶ୍ଳୋକ ଅଧିକାପାଠ ନିହିତ କରାଯାଇଅଛି । ପାଠକ ମହାଶୟ ଶ୍ରୀଧରୀୟ ଦଶମ ସ୍କନ୍ଧ ପୂର୍ବାର୍ଦ୍ଧର କିମ୍ବା ୪୯ ଏକୋନପଞ୍ଚାଶତ୍ତମାଧ୍ୟାୟର ସମାପ୍ତି ସ୍ଥଳରେ ବିଜୟଧ୍ୱଜୀୟ ପାଠରେ ୪୮ ଅଷ୍ଟଚତ୍ୱାରିଂଶତ୍ତମ ଅଧ୍ୟାୟ ହୋଇଥିବା ମନେ ରଖି ଅଛନ୍ତି ତ, ତାପରେ ପୁଣି ମନେକରନ୍ତୁ, ଶ୍ରୀଧରୀୟ ପଂଚାଶତ୍ତମ ଅଧ୍ୟାୟର ୪୧ ଏକଚତ୍ୱାରିଂଶ ଶ୍ଳୋକ ପରେ ଏହାଙ୍କର ଏକୋନପଞ୍ଚାଶତ୍ତମ ଅଧ୍ୟାୟର ବିରାମ ହୋଇଅଛି; ତତଃପର ସେଥିରେ ପ୍ରକ୍ଷିପ୍ତ ତିନିଗୋଟି ଅଧ୍ୟାୟ ପଂଚାଶତ୍ତମ, ଏକପଞ୍ଚାଶତ୍ତମ ଓ ଦ୍ୱିପଞ୍ଚାଶତ୍ତମ ନାମରେ ଅଭିହିତ, ତାପରେ ଯାହାକି ଅଧିକା (ପ୍ରକ୍ଷିପ୍ତ) ଚତୁର୍ବିଂଶ ଗୋଟି ଶ୍ଳୋକ; ତେତକ ଏବଂ ଶ୍ରୀଧରୀୟ ପାଠର ପଂଚାଶତ୍ତମ ଅଧ୍ୟାୟର ଶଂସିତ ଦ୍ୱିଚତ୍ୱରିଂଶ ଶ୍ଳୋକଠାରୁ

ଅବଶିଷ୍ଟ ପାଠତକ, ଏ ଉଭୟ ଅଂଶରେ ତ୍ରିପଞ୍ଚାଶତ୍ତମ ଅଧ୍ୟାୟ ଗଠିତ ହୋଇଅଛି। ଅତଏବ ଶ୍ରୀଧରୀୟ ପଞ୍ଚାଶତ୍ତମ ଅଧ୍ୟାୟ ଶେଷରେ ବିଜୟଧ୍ୱଜୀୟ ମତରେ ତ୍ରିପଞ୍ଚାଶତ୍ତମ ଅଧ୍ୟାୟର ସମାପ୍ତି ଘଟିଲା। ✱

x x x x

[ ଅସଂପୂର୍ଣ୍ଣ ]

---

✱ ବିଜୟଧ୍ୱଜ ମହାଶୟ ଏହି ପ୍ରକ୍ଷିପ୍ତ ଅଧ୍ୟାୟମାନଙ୍କରେ ବର୍ଣ୍ଣିତ ଚରିତମାନ ବୋଧହୁଏ ହରିବଂଶ ଗ୍ରନ୍ଥରୁ ଆନୟନ କରିଥିବେ। ଅନ୍ୟ ଗ୍ରନ୍ଥୋକ୍ତ ଏତେଗୁଡ଼ାଏ କେବଳ ଐତହାସିକ ପାଠ ଆଣି ଗୋଟିଏ ଧାରାବାହିକ ଅଧ୍ୟାୟକୁ ବିଶ୍ଳିଷ୍ଟ କରିପକାଇ ସେଥି ମଧ୍ୟରେ ଭର୍ତ୍ତି କରିଥିବାର ତାଦୃଶ ପ୍ରୟୋଜନ କିଛି ଦିଶୁନାହିଁ। ଅନୁମିତ ହୁଏ, ଆଗେ ଯାହା ଦଶମ ପୂର୍ବାର୍ଦ୍ଧରୁ ତିନିଗୋଟି ଅଧ୍ୟାୟ ଉଠାଇ ଦେଇ ଅଛନ୍ତି, ହୁଏତ ସେହି କ୍ଷତିର ପ୍ରତୀକାର ଏପରି କରିଥିବେ। ସେ ଯାହାହେଉ ସଂକ୍ଷିପ୍ତ ପାଠଗୁଡ଼ିକରେ ବର୍ଣ୍ଣିତ ଚରିତ ସମୁଦାୟର ସଂକ୍ଷିପ୍ତ ବିବରଣ ପାଠକମାନଙ୍କର ଅବଗତି ସୂଚିତ କରା ଆବଶ୍ୟକ ମନେ କରୁଅଛୁଁ। ଏହାଙ୍କର ୫୦ ପଞ୍ଚାଶତ୍ତମ ଅଧ୍ୟାୟରେ ଜୟସନ୍ଧ ଜରାସନ୍ଧ ପୁନଶ୍ଚ ଯୁଦ୍ଧ କରଣାର୍ଥ ଶ୍ରୀକୃଷ୍ଣଙ୍କୁ ଆକ୍ରମଣ କରିବା, ୫୧ ଏକପଞ୍ଚାଶତ୍ତମ ଅଧ୍ୟାୟରେ ସେ ପୁଣି ଶୋଣିତ ପୁରକୁ ଯାଇ ବାଣାସୁରକୁ ସାହାଯ୍ୟାର୍ଥ ବରଣ କରିବା ଅପିଚ ବାଣ-ପ୍ରେଷିତ କୁମ୍ଭାଣ୍ଡ ଓ କୂପ କର୍ଣ୍ଣ ସହିତ ମାଗଧ ଫେର ମଥୁରା ନିରୁଦ୍ଧ କଲା ପରେ ପରାଜିତ କୁମ୍ଭାଣ୍ଡ ଓ କୂପକର୍ଣ୍ଣ ଦୁହେଁ ଶୋଣିତପୁର ପ୍ରତି ପ୍ରତ୍ୟାବୃତ୍ତ ହେବା, ଦ୍ୱିପଞ୍ଚାଶତ୍ତମ ଅଧ୍ୟାୟରେ। ବଳରାମଙ୍କ ମୂଷଳ ପ୍ରହାରରେ ପରାସ୍ତ ଜରାସନ୍ଧ ସ୍ୱନଗରକୁ ପଳାୟନ କରିବା ଏବଂ ମାଗଧ ବିଜୟପରେ ପ୍ରତି ନିବର୍ତ୍ତମାନ ଶ୍ରୀକୃଷ୍ଣ ପର୍ଶୁରାମଙ୍କ ଆଦେଶରେ ଗୋମନ୍ତ ପର୍ବତକୁ ଯାଇ (ଶ୍ରୀକୃଷ୍ଣ ଗୋମନ୍ତ ପର୍ବତକୁ ଯାଇଥିବାର କଥା ଶ୍ରୀଧରୀୟ ୫୨ ଅଧ୍ୟାୟରେ ସୂଚିତ ମାତ୍ର ଅଛି।) କରବୀର ପୁରାଧିପ ଶୃଗାଳ ବାସୁଦେବଙ୍କୁ ନିହତ କରିଥିବା ଉକ୍ତ ଅଛି। ଏହାପରେ ପୁଣି ୫୩ ତ୍ରିପଞ୍ଚାଶତମ ଅଧ୍ୟାୟରେ ରାମକୃଷ୍ଣ ଦୁହେଁ ଗୋମନ୍ତ ପର୍ବତରେ ଆରୋହଣ କରିବା ସମୟରେ ମହାବଳୀ ନାମକ ବୀର ଶ୍ୱେତଦୀପକୁ ଯାଇ ଭଗବାନଙ୍କର କିରୀଟ ହରଣ ପୂର୍ବକ ବାହାରି ଯାଉଁ ଯାଉଁ ତାକୁ ପୁଣି ହରିବାହନ ଗରୁଡ଼ ପରାଜିତ କରି ପ୍ରୋକ୍ତ କିରୀଟକୁ ନେଇ ଗୋମନ୍ତ ପର୍ବତସ୍ଥ ଶ୍ରୀକୃଷ୍ଣଙ୍କର ମସ୍ତକୋପରି ସଂସ୍ଥାପନ କରିବା ଏବଂ ତାପରେ ଶ୍ରୀରାମକୃଷ୍ଣ ଦୁହେଁ ମଥୁରାରେ ପ୍ରବିଷ୍ଟ ହୋଇ ଫେର ଯୁଦ୍ଧାର୍ଥ ଆଗତ ଜରାସନ୍ଧକୁ ପରାସ୍ତ କରିଥିବା ଉକ୍ତ ଅଛି।



ଗଞ୍ଜାମ ଜିଲ୍ଲା ସୁବର୍ଣ୍ଣପୁରର (ଜରଡା) ପ୍ରଖ୍ୟାତ ପଣ୍ଡିତରାୟ ପରିବାରର ଦାୟାଦଭାବେ ପ୍ରଫେସର ସୁଦର୍ଶନ ଆଚାର୍ଯ୍ୟଙ୍କ ଜନ୍ମ (ତା ୨୮-୧-୧୯୩୯) । ପିତା ପଣ୍ଡିତରାୟ ଯତିରାଜ ଆଚାର୍ଯ୍ୟ ଏବଂ ଶିକ୍ଷାଗୁରୁ ସ୍ୱନାମଧନ୍ୟ ଡକ୍ଟର ନଟବର ସାମନ୍ତରାୟଙ୍କ ପ୍ରଭାବରୁ ଅନୁସନ୍ଧିତ୍ସା ତାଙ୍କର ପ୍ରବଳ । ଗବେଷଣା ସନ୍ଦର୍ଭ 'ଓଡ଼ିଆ କାବ୍ୟ କୌଶଳ' ତାର ଫଳଶ୍ରୁତି । ସେ ଫକୀରମୋହନଙ୍କ 'ରାମାୟଣ' (ଆଦ୍ୟ ଓ ଅଯୋଧ୍ୟା) ଏବଂ 'ଜୀବନ ଚରିତ'ର ପୁନରୁଦ୍ଧାର କରିଛନ୍ତି; ପୁନଃ ସଂପାଦନା କରିଛନ୍ତି ଊନବିଂଶ ଶତାବ୍ଦୀର ତିନୋଟି ବସ୍ଥିତ ପତ୍ରିକା 'ଇନ୍ଦ୍ରଧନୁ', 'ଉତ୍କଳମଧୁପ' ଓ 'ପ୍ରଦୀପ' ସହିତ 'ଜଗନ୍ନାଥ ଦେବ ନାରାୟଣ ଗ୍ରନ୍ଥାବଳୀ', 'ରାମଚନ୍ଦ୍ର ଆଚାର୍ଯ୍ୟ ଗ୍ରନ୍ଥାବଳୀ'(ଚାରିଖଣ୍ଡ), ଉପେନ୍ଦ୍ର ଭଞ୍ଜଙ୍କ 'ଚିତ୍ରଲେଖା' ଏବଂ ଅନ୍ୟମାନଙ୍କ ସହ କେନ୍ଦ୍ର ସାହିତ୍ୟ ଏକାଡେମୀ ପାଇଁ ମଧ୍ୟଯୁଗୀୟ ସାହିତ୍ୟ ଖଣ୍ଡ, ଉଷା ଅଭିଳାଷ ଇତ୍ୟାଦି । ଗୋପୀନାଥ ନନ୍ଦଙ୍କ ପରି ଗବେଷଣା ଓ ସଂପାଦନା ତାଙ୍କ ପାଇଁ ଏକ ଜାତୀୟ କାର୍ଯ୍ୟ, ଏଥିରେ ଖାମଖିଆଲି ମନୋବୃତ୍ତି ଅକ୍ଷମଣୀୟ ଜାତୀୟ ଅପରାଧ ।

